# ପ୍ରହରାଜ ଗ୍ରନ୍ଥାବଳୀ

## ରମ୍ୟରଚନା ୧ମ ଖଣ୍ଡ



ଗୋପାଳ ଚନ୍ଦ୍ର ପ୍ରହରାଜ

ବିଦ୍ୟାପୁରୀ

ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ରଚନାର ଏହି ବିପୁଳତା, ଯେକୌଣସି ପାଠକ ପାଇଁ ଏକ ଆଶ୍ଚର୍ଯ୍ୟ । ମାତ୍ର ତାଙ୍କ ଜୀବିତାବସ୍ଥାରେ 'ବାଇ ମାହାନ୍ତି ପାଞ୍ଜି', 'ଭାଗବତ ଟୁଙ୍ଗିରେ ସନ୍ଧ୍ୟା' ଓ ମୃତ୍ୟୁ ପରେ 'ଆମ ଘରର ହାଳଚାଲ' ବହି ଆକାରରେ ପ୍ରକାଶିତ ।

ଏହି ଗ୍ରନ୍ଥ ତାଙ୍କ ରମ୍ୟରଚନା-ଗୁଡ଼ିକର ସର ଘର - ଯାହା ସମକାଳରେ ପ୍ରକାଶିତ ଉତ୍କଳ ସାହିତ୍ୟ, ରସଚକ୍ର, ନବଭାରତ, ସତ୍ୟ ସମାଚାର ଓ ଭଞ୍ଜ ପ୍ରଦୀପ ଆଦି ପତ୍ରିକା ପୃଷ୍ଠାରୁ ସଂଗୃହୀତ ଓ ସମ୍ପାଦିତ ।

# ପ୍ରହରାଜ ଗ୍ରନ୍ଥାବଳୀ

## ରମ୍ୟରଚନା ୧ମ ଖଣ୍ଡ

ଗୋପାଳ ଚନ୍ଦ୍ର ପ୍ରହରାଜ



ସଂପାଦନା

ଗୌରାଙ୍ଗ ଚରଣ ଦାଶ

ବିଦ୍ୟାପୁରୀ

PRAHARAJ GRANTHABALI
RAMYA RACHANA PART I
Edited by Dr. Gaurang Charan Dash
Published by Vidyapuri, Cuttack-753002
First Published June 2005

ISBN 81-7411-531-5

ପ୍ରଥମ ପ୍ରକାଶ
ଦେବସ୍ନାନ ପୂର୍ଣ୍ଣିମା
୨୨, ଜୁନ ୨୦୦୫

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
[illegible]ବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ମୁଦ୍ରଣ
ପଦ୍ମସଖା ପ୍ରକାଶନ, କଟକ

ମୂଲ୍ୟ ଟ ୨୮୦.୦୦

# ଆମୁଖ

## ।। ଏକ ।।

ବିଚାରର ବିଭିନ୍ନ ଆୟତନରେ ଚମକ ସୃଷ୍ଟିକାରୀମାନଙ୍କୁ ଚାହିଁବାକୁ ମୋତେ ଭଲ ଲାଗେ । ମୁଁ କେବଳ ଠିଆହୋଇ ଚାହେଁନି, ସେମାନଙ୍କ ଭିତରକୁ ଯାଏ । ସେମାନଙ୍କୁ ସେମାନଙ୍କ ଯାତ୍ରା ସମ୍ପର୍କରେ ପ୍ରଶ୍ନ କରେ । ଯେଉଁମାନଙ୍କ ପାଖରେ ମନ ଲାଗେ, ଉତ୍ତର ପାଏ, ରହିଯାଏ । ଏହି ଚମକସୃଷ୍ଟିକାରୀମାନଙ୍କୁ ସମାଜର ଭଦ୍ରଲୋକମାନେ ଅବଶ୍ୟ ଅପଥଗାମୀ, ବିପଥଗାମୀ, ନୀବାରବୀଜ, ସୃଷ୍ଟିଛଡ଼ା ଆଦି ଅଗଡ଼ବଗଡ଼ ଶବ୍ଦର ଅଳଂକାରରେ ଶୋଭାବନ୍ତ କରୁଥା'ନ୍ତି । ମାତ୍ର ଗ୍ରହବିପ୍ରମାନଙ୍କ ଅପବାଦ ସୃଷ୍ଟିଛଡ଼ାମାନଙ୍କୁ ଜମାରୁ ଭେଟଣା କରିପାରେ ନାହିଁ । ସେମାନେ ଆପଣା ଆପଣା ବାଟରେ ଥା'ନ୍ତି । ବିପଜ୍ଜନକ ପଥରେ ପାଦ ପକାଇବା ପରି ଦୁଃସାହସିକତାକୁ ଜୀବନର ମନ୍ତ୍ର କରିନେଇଥା'ନ୍ତି ଏବଂ ସେଇ ଅଳପ ନେଇ ବଞ୍ଚନ୍ତି ।

କଣ୍ଟାଝଟାକୁ ପରିଷ୍କାର, ଖାଲଖମାକୁ ସମତୁଲ, ଶ୍ୱାପଦ ସରୀସୃପମାନଙ୍କୁ ସ୍ୱପ୍ନାବିଷ୍ଟ କରି ଯେଉଁମାନେ ନୂଆ ନୂଆ ରାସ୍ତାମାନ ତିଆରି କରୁଥା'ନ୍ତି - ସେମାନେ ଯେ କେଉଁ ଭିନ୍ନ କଳ୍ପିତ ଜଗତରୁ ଏ ପୃଥିବୀକୁ ଆସିଥା'ନ୍ତି -, ତାହା ନୁହେଁ । ଏବଂ ଏହା ମଧ୍ୟ ଗ୍ରହଣଯୋଗ୍ୟ ନୁହେଁ ଯେ, ସେମାନଙ୍କ ବିଚାର୍ ବିଧି-ନିର୍ଦ୍ଦିଷ୍ଟ ଓ ଆକସ୍ମିକ । ସେମାନେ ଗତିଶୀଳ ବ୍ୟବସ୍ଥା, ଅନ୍ୟ ଭାଷାରେ କହିଲେ - ପ୍ରକ୍ରିୟାର ଜଣେ ଜଣେ ସ୍ୱତନ୍ତ୍ର ଉଦ୍‌ଗାତା । ସ୍ଥିତାବସ୍ଥାର ବିଭାଜକ । ବିଂଶ ଶତାବ୍ଦୀରେ ଓଡ଼ିଶା ନାମକ ଆୟତନରେ ବଞ୍ଚୁଥିବା ମଣିଷମାନଙ୍କ ସମାଜ-ଜୀବନ, ରାଜନୀତି ଓ ସାହିତ୍ୟ ଆଦି ବିଭିନ୍ନ କ୍ଷେତ୍ରରେ ଯେଉଁ କେତେଜଣ ଚମକ ଆଣିଥିଲେ, ବିଶ୍ୱ ଦୃଷ୍ଟିରେ ଆପଣାର ଜୀବନ, ସଂସ୍କୃତି ଓ ପରମ୍ପରାର ପରୀକ୍ଷଣ ଓ ଆକଳନରେ ସମର୍ଥ ହୋଇଥିଲେ, ସେମାନଙ୍କ ମଧ୍ୟରେ ଜଣେ ଥିଲେ ଗୋପାଳ ଚନ୍ଦ୍ର ପ୍ରହରାଜ । ତାଙ୍କ ଜୀବନ, ବିଚାର ଓ ବକ୍ତବ୍ୟରୀତି ମତେ ତାଙ୍କୁ ପ୍ରଥମେ ପଢ଼ିବା ଦିନରୁ ହିଁ ଛୁଇଁଥିଲା । ଆଜି ତାଙ୍କ ବିଚାରର ଏ ସଂକଳାୟନ, ସେକାଳର ସେଇ କଞ୍ଚା ବୟସର ଟିକିଏ ଛୁଆଁର ସୁମନାୟନ ।

ସତ କଥା କହିଲେ - ମୋତେ ଭଲ ଲାଗୁଥିବା ମଣିଷଜଣଙ୍କର ଏ ରୂପାନ୍ତରଣର ପ୍ରକୃତ ପ୍ରେରଣାଦାତା, ବିନୋଦ ଚନ୍ଦ୍ର ନାୟକ । ତାହା ପ୍ରାୟ ୧୯୮୯/୯୦ ମସିହାର କଥା । ସେତେବେଳେ ଶ୍ରୀ ନାୟକ ଥା'ନ୍ତି ଓଡ଼ିଶା ସାହିତ୍ୟ ଏକାଡେମୀର ଉପସଭାପତି । ଦିନେ ଏକାଡେମୀର କର୍ତ୍ତୃପକ୍ଷଙ୍କ ପାଖରୁ ଚିଠିଟିଏ ପାଇଲି - ପ୍ରହରାଜଙ୍କ ମନୋଗ୍ରାଫ ପ୍ରସ୍ତୁତ କରିବା ପାଇଁ । ଏପରି ଚିଠି ପଢ଼ି, ତାହା ସତ କି ମିଛ ବିଶ୍ୱାସ କରିପାରୁ ନ ଥିଲି । ଏକାଡେମୀ, ମୁଁ ଓ ପ୍ରହରାଜ : ତିନିଗୋଟି ଅଲଗା ଅଲଗା ବିନ୍ଦୁ - ଗୋଟିଏ ଧାଡ଼ିରେ

ଏମାନଙ୍କର ଯୋଡ଼ଣ, ମତେ ଅସ୍ୱାଭାବିକ ମନେହେଲା । ମାତ୍ର ସବୁଠାରୁ ମଜା କଥା- ଏ କାମ ପାଇଁ ମଜୁରି ମାତ୍ର ହଜାରେ ଟଙ୍କା । ଏ ମଜୁରି ଅର୍ଥର ପରିମାଣ ମଧ୍ୟ ପ୍ରସ୍ତାବ ଠାରୁ ଅଧିକ କିମ୍ଭୂତ । ମୁଁ କହିଲି - "ନା ପାରିବିନି । ଯଦି କରିବି, ହଜାରରେ ନୁହେଁ ଯେତେ ଲାଗିବ, ଆପଣ ସବୁ ଦେବେ ।" ମୁଁ କ'ଣ କ'ଣ କରିବି, ତତ୍ ସମ୍ପର୍କରେ ଟିକିନିଖି ଜଣେଇଲି । ଲେଖିଥିଲି - "ପ୍ରହରାଜଙ୍କ ଲିଖିତ ଏବଂ ତାଙ୍କ ସମ୍ପର୍କରେ ଅନ୍ୟମାନଙ୍କ ଦ୍ୱାରା ଲିଖିତ ପ୍ରାୟ ସବୁ ରଚନା ସଂଗ୍ରହ କରିବି, ସେଗୁଡ଼ିକର ବିବ୍ଲିଓଗ୍ରାଫି ପ୍ରସ୍ତୁତ କରିବି । ତାଙ୍କ ପରିବାରର ସଦସ୍ୟ ଏବଂ ତାଙ୍କ ସଂସ୍ପର୍ଶରେ ଆସିଥିବା ଲୋକମାନଙ୍କ ସହିତ କଥା ହେବି, ଆଲୋଚନାକୁ ରେକର୍ଡ଼ିଂ କରିବି ଏବଂ ସମସ୍ତ ସମ୍ପତ୍ତି ଏକାଡେମୀର ସଂଗ୍ରହାଳୟରେ ଦାଖଲ କରିଦେବି । ଏକାଡେମୀ କର୍ତ୍ତୃପକ୍ଷ ଏହି କାର୍ଯ୍ୟରେ ମୋତେ ସାହାଯ୍ୟ କରିବା ଆବଶ୍ୟକ ।"

ଏକାଡେମୀର ତାତ୍‌କାଳିକ ସମ୍ପାଦକ ଓ ସଭାପତିଙ୍କ ମନକୁ ମୋ କଥା ସମ୍ଭବତଃ ଘେନିଲା ନାହିଁ । ନା କହିଦେଲେ । ଲେଖିଥିଲେ - ଯେତିକି କହିଛୁ, ସେତିକି । ହାକିମମାନଙ୍କର ଉତ୍ତର ମୋତେ ତୋବା କରିଦେଲା । ମୁଁ ବି ମନା କରିଦେବାକୁ ମନସ୍ଥ କରିଥିଲି । ମାତ୍ର ଶ୍ରୀଯୁକ୍ତ ନାୟକ ତାଙ୍କ ଶ୍ରଦ୍ଧାର ସୂତ୍ରରେ ମତେ ଅସହାୟ କରିଦେଲେ । କହିଲେ - "ମୋ କଥା ରଖିବ, ସମ୍ମାନର ପ୍ରଶ୍ନ ।" ମୁଁ ତାଙ୍କୁ ଫାଙ୍କି ଦେଇପାରିଥାନ୍ତି । ମାତ୍ର ଆରପାରିରେ ଥାଇ ବିନୋଦ ଚନ୍ଦ୍ର ସମ୍ଭବତଃ ତାଙ୍କ ପ୍ରତି ମୋ ଭିତରେ ଥିବା ଦୁର୍ବଳତାର ଫାଇଦା ଉଠେଇଲେ । ମୋତେ ନୀରବରେ କ'ଣ କହିଲେ କେଜାଣି, ଫସିଗଲି । ଏଇ ଫସାଫସିର ଫଳ - 'ପ୍ରହରାଜ ଗ୍ରନ୍ଥାବଳୀ' ।

ପ୍ରହରାଜ ମନୋଗ୍ରାଫ ପ୍ରସ୍ତୁତ ପୂର୍ବରୁ ମୋର ପ୍ରଥମ କାମ ଥିଲା - ତାଙ୍କ ରଚନା ସମଗ୍ରର ସଂଗ୍ରହ ଓ କାଳକ୍ରମିକ ସଜ୍ଜୀକରଣ । ସେହି ଉଦ୍ଦେଶ୍ୟରେ ଭୁବନେଶ୍ୱରସ୍ଥ ରାଜ୍ୟ ଅଭିଲେଖାଗାର, ରାଜ୍ୟ ସଂଗ୍ରହାଳୟ, କେଦାରନାଥ ଗବେଷଣା ପ୍ରତିଷ୍ଠାନ, ଉତ୍କଳ ବିଶ୍ୱବିଦ୍ୟାଳୟ ପାଠାଗାର, ଉଦୟପୁରସ୍ଥ ଯଦୁମଣି ପାଠାଗାର, କଟକସ୍ଥ ରାଧାନାଥ ଟ୍ରେନିଂ ସ୍କୁଲ, ରାମଚନ୍ଦ୍ର ଭବନ ପାଠାଗାରରେ ସଂରକ୍ଷିତ ପତ୍ରିକା ଓ ବହିଗୁଡ଼ିକର ପୃଷ୍ଠାଗୁଡ଼ିକୁ ଆଉଡ଼େଇଲି । ପ୍ରାୟ ସବୁ ଲେଖାର ଜେରକ୍ସ କପି କଲି । ଉତ୍କଳ ଦୀପିକା, ମୁକୁର, ସହକାର, ନବଭାରତ, ସତ୍ୟ ସମାଚାର, ରସଚକ୍ର, ନିଆଁଖୁଣ୍ଟା, ଭଞ୍ଜ ପ୍ରଦୀପ ଆଦି ପୁରୁଣା ପତ୍ରିକାମାନଙ୍କର ପାପରା ଦେହ ଉପରେ ବର୍ବରଙ୍କ ପରି ଦର୍ପ ପ୍ରକାଶିବାକୁ ମୁଁ କିନ୍ତୁ ମଣିଲି ନାହିଁ । ଅନୁଷ୍ଠାନର କର୍ମକର୍ତ୍ତାମାନେ ଇଚ୍ଛା ବିରୋଧରେ, ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ମୋତେ ଏ ଖଟରନାକ୍ କାର୍ଯ୍ୟରେ ସହଯୋଗ କଲେ । ଛାତିରେ ହାତ ରଖି କହୁଛି - ସେମାନଙ୍କୁ କିଛି ବୋଲି କିଛି ଦେଇନି । କେବଳ ସେମାନଙ୍କ ପାଖରେ ଋଣୀ ହୋଇଛି । ପ୍ରଥମ ସେମାନଙ୍କ ଶ୍ରଦ୍ଧାକୁ ସମ୍ମାନ ଜଣାଉଛି ।

ଦାତାମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ଫତୁରାନନ୍ଦ, କୃଷ୍ଣଚନ୍ଦ୍ର କର, କୁଳମଣି କର, ଡକ୍ଟର ଜାନକୀବଲ୍ଲଭ ମହାନ୍ତି ଏବେ ଆଉ ଆମ ଭିତରେ ନାହାନ୍ତି । ଶ୍ରୀଯୁକ୍ତ ଚିରରଞ୍ଜନ ଦାସ,

ଡଃ କୃଷ୍ଣଚରଣ ବେହେରା, ଶ୍ରୀଯୁକ୍ତ ରବୀନ୍ଦ୍ର କୁମାର ସାହୁ, ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶ ସେମାନଙ୍କ ପାଠାଗାର, ଅନୁଭବ ଓ ବିଚାରରେ ମୋତେ ପୁଷ୍ଟ କରିଛନ୍ତି । ପ୍ରହରାଜଙ୍କ ଗାଁ ସିଦ୍ଧେଶ୍ୱରପୁରର ଅନେକ ବୟସ୍କ, ତାଙ୍କ ବୋହୂ, ନାତି, ଅଣନାତୁଣୀ ସେହି ବିଚିତ୍ର ମଣିଷଙ୍କ ଜୀବନର ବହୁ ଗୋପନୀୟ କଥା ମୋ ପାଖରେ ଖୋଲି ଦେଇଛନ୍ତି । ଅନେକ ମତେ ମନା କରିଛନ୍ତି - କଥା ପେଡ଼ି ନ ଫିଟାଇବା ପାଇଁ । ମୁଁ ସେମାନଙ୍କ କଥା ରଖିଛି । ସେମାନଙ୍କ ବୟସ୍କ ବିଚାରକୁ ସମ୍ମାନ ଜଣାଇଛି ।

ପ୍ରହରାଜ ଗ୍ରନ୍ଥାବଳୀକୁ ସମ୍ପୂର୍ଣ୍ଣ ଅପବାଦମୁକ୍ତ କରିବା ମୋ ପକ୍ଷରେ ସମ୍ଭବ ହୋଇପାରିଲା ନାହିଁ । ଏହାର କାରଣ ମୋର ଅଯୋଗ୍ୟତା ନୁହେଁ, ଏ ଉତ୍କଳ ଖଣ୍ଡରେ ଆପଣା ଆପଣାକୁ ଦିଗ୍‌ଗଜ ବୋଲି ଘୋଷଣା କରୁଥିବା ଭୂମିଦ୍ରୋହୀମାନଙ୍କର । ସେମାନେ ବିଭିନ୍ନ ପାଠାଗାର, ସଂଗ୍ରହାଳୟ ଓ ବ୍ୟକ୍ତିବିଶେଷଙ୍କ ସମ୍ପତ୍ତିଗୁଡ଼ିକୁ ନାନା ଉପାୟରେ ନିଜର ବ୍ୟକ୍ତିକ ସମ୍ପତ୍ତି କରିନେଇଛନ୍ତି । ଏବଂ ଅନ୍ୟମାନଙ୍କ ଆଖିରେ ସେସମସ୍ତ ନ ପଡ଼ିବାର ବିହିତ ବ୍ୟବସ୍ଥାମାନ କରିଛନ୍ତି । ଅନେକ ଉପାଦାନ ଆମ ଅଜ୍ଞତା ଓ ଉଦାସୀନତା ଯୋଗୁଁ ମଧ୍ୟ ନଷ୍ଟ ହୋଇଯାଇଛି । ଫଳତଃ ମୋ ପରି ମୂର୍ଖମାନେ ନିଜ ନିଜ ଅଯୋଗ୍ୟତା ଘୋଷଣା କରିବାକୁ ଉଚିତ ମଣିଛନ୍ତି । ପ୍ରହରାଜଙ୍କ ପ୍ରକାଶିତ ପୁସ୍ତକଗୁଡ଼ିକର ପ୍ରଥମ ପ୍ରକାଶନ ଏବଂ ତାଙ୍କ ଜୀବିତାବସ୍ଥାର ଶେଷ ସଂସ୍କରଣକୁ ଆଧାର କରି ସେଗୁଡ଼ିକର ନିର୍ଭରଯୋଗ୍ୟ ସମ୍ପାଦନା ଉଦ୍ଦେଶ୍ୟ ପୂରଣପାଇଁ ଯଥାସମ୍ଭବ ଚେଷ୍ଟା କରିଛି । ଉତ୍କଳର କାହାଣୀ ପ୍ରଥମ ଭାଗ, ବାଇମହାନ୍ତି ପାଞ୍ଜି, ବାଇ ଦାସଙ୍କ ଭଜନ ଓ ଶିଶୁଗୀତ, ଜେଜେବାପାଙ୍କ କାହାଣୀ, ଭାଗବତ ଟୁଙ୍ଗିରେ ସନ୍ଧ୍ୟା, ଓଡ଼ିଆ ଲୌକିକ ପଦ ଢଗ-ଢମାଳି ବଚନ ଓ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର 'ଉତ୍କଳର କାହାଣୀ' ପ୍ରଥମ ଭାଗ ରାଧାନାଥ ଟ୍ରେନିଂ ସ୍କୁଲ ପାଠାଗାରରୁ ଅସୁରକ୍ଷିତ ଅବସ୍ଥାରେ ଆବିଷ୍କାର କରିଛି । ପ୍ରାୟ ସାତ ଆଠ ବର୍ଷ ତଳେ ପାଠାଗାରରେ ଊନବିଂଶ ଓ ବିଂଶ ଶତାବ୍ଦୀରେ ପ୍ରକାଶିତ ବହୁ ଉପାଦେୟ ବହି ଯେଉଁ ଅବସ୍ଥାରେ ଦେଖିଥିଲି, ସେମାନଙ୍କୁ ସେମିତି ରଖିଥିଲେ, ଆଉ ସମ୍ଭବତଃ ଏବେ କେହି ନ ଥିବେ । ପଂଚାମୃତ ପତ୍ରିକାର ସମସ୍ତ ସଂଖ୍ୟା ମୋ ଆଖିରେ ପଡ଼ିନି । ପଂଚାମୃତ ଦେଖିବାପାଇଁ କେବଳ ଓଡ଼ିଶା ନୁହେଁ, କଲିକତାସ୍ଥ ଜାତୀୟ ପାଠାଗାର ଓ ଶାନ୍ତିନିକେତନର ବନ୍ଧୁମାନଙ୍କ ସହ ସମ୍ପର୍କ କରିଛି । ମାତ୍ର ବିଫଳ ହୋଇଛି । ବହି ଓ ପତ୍ରିକାମାନଙ୍କର ସବୁ ସଂସ୍କରଣ ଦେଖିବା ପାଇଁ ବହୁ ବିଶିଷ୍ଟ ଗବେଷକଙ୍କ ଦ୍ୱାରସ୍ଥ ହୋଇଛି । କିଛି ଲାଭ ହୋଇନି । ମୋ ଜୀବନର ଏହାକୁ ଚରମ ବିଫଳତା ବୋଲି ସ୍ୱୀକାର କରୁଛି ।

ପ୍ରହରାଜଙ୍କ ଲେଖାଗୁଡ଼ିକୁ ସଜାଡ଼ିବା ପ୍ରୟାସ ମୋର ଯେ ପ୍ରଥମ - ଏକଥା ଆଦୌ ସତ ନୁହେଁ । ମାତ୍ର ଯେଉଁମାନେ ତାଙ୍କୁ ସଂକଳନାବଦ୍ଧ କରିବାକୁ ଚେଷ୍ଟା କରିଛନ୍ତି ପ୍ରାୟ ପ୍ରତ୍ୟେକ ଭ୍ରମର ଶିକାର ହୋଇଛନ୍ତି ଏବଂ ଜାଣତରେ ଅଥବା ଅଜାଣତରେ ହେଉ, ଲେଖକଙ୍କୁ ବହୁଭାବରେ କ୍ଷତାକ୍ତ କରିଛନ୍ତି । କଟକ ଟ୍ରେଡିଂ କମ୍ପାନୀ, ଜଗନ୍ନାଥ କମ୍ପାନୀ, ନିୟୁ ଷ୍ଟୁଡେଣ୍ଟସ୍

ଷ୍ଟୋରର ଅଧିକାରୀମାନେ ଉତ୍କଳ କାହାଣୀ, ଆମ ଘରର ହାଲଚାଲ, ଓଡ଼ିଆ ଲୌକିକପଦ ଏବଂ ଡଃ କୃଷ୍ଣଚରଣ ବେହେରାଙ୍କ ପରାମର୍ଶକ୍ରମେ ଉତ୍କଳ ସାହିତ୍ୟ ପ୍ରକାଶକ କର୍ତ୍ତୃପକ୍ଷ ଦୁନିଆର ହାଲଚାଲ, ବାଇନାନୀଙ୍କ ବୁଢ଼ୁଲି, ଧାରତାବଂଧାର ପୁଞ୍ଜିପାଣ୍ଠି, ଭାଷାକୋଷ ପାଇଁ ସଫର, ମିଆଁ ସାହେବଙ୍କ ରୋଜନାମଚା ଆଦି ରଚନାଗୁଡ଼ିକୁ ସଙ୍କଳିତ କରିଛନ୍ତି । ପ୍ରହରାଜଙ୍କ ମନୋଗ୍ରାଫ ପ୍ରସ୍ତୁତ କାଳରେ ମୁଁ ଉପର୍ଯ୍ୟୁକ୍ତ ପ୍ରକାଶନଗୁଡ଼ିକ ଉପରେ ନିର୍ଭର କରିଥିଲି । ମାତ୍ର ପରବର୍ତ୍ତୀକାଳରେ ପତ୍ରିକାରେ ପ୍ରକାଶିତ ଓ ପୁସ୍ତକରେ ସମ୍ପାଦିତ ରଚନାଗୁଡ଼ିକୁ ଏକତ୍ର କରି ଦେଖିବା ମାତ୍ରେ ମୋତେ ସବୁଆଡ଼ ଅନ୍ଧାର ଦେଖାଗଲା । ପ୍ରକାଶିତ ପୁସ୍ତକଗୁଡ଼ିକ ଅତ୍ୟନ୍ତ ବିପଜ୍ଜନକ ଭାବରେ ପ୍ରମାଦପୂର୍ଣ୍ଣ । ଦୁନିଆର ହାଲଚାଲ ଓ ଆମ ଘରର ହାଲଚାଲ ବହି ଦୁଇଖଣ୍ଡରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ବହୁ ଅଧ୍ୟାୟ ସଂଯୋଜିତ ହୋଇ ନାହିଁ । ଅନେକ ଅଧ୍ୟାୟର କ୍ରମ ବଦଳି ଯାଇଛି, ଗୋଟିଏ ଗୋଟିଏ ଅଧ୍ୟାୟର ପାଠ, ଅନ୍ୟ ଅଧ୍ୟାୟଗୁଡ଼ିକରେ ମିଶିଯାଇଛି ଏବଂ ଅନେକତ୍ର ପ୍ରହରାଜଙ୍କ ଶବ୍ଦ ଓ ବାକ୍ୟମାନେ ମଧ୍ୟ ସମାର୍ଜିତ ଓ ବିକୃତ ହୋଇପଡ଼ିଛନ୍ତି । ମୋ ବିଚାରରେ ସଂପୃକ୍ତ ପୁସ୍ତକଗୁଡ଼ିକର ସଂକଳକମାନେ ଅପରାଧୀ ନୁହନ୍ତି; ବରଂ ସେମାନଙ୍କ ଉଦ୍ୟମ ପ୍ରଶଂସନୀୟ । କାରଣ ପ୍ରହରାଜଙ୍କ ପରି ଜଣେ ପ୍ରତିଭାଙ୍କୁ ପାଠକମାନଙ୍କ ପାଖରେ ଦେଖାଇବାର ଶ୍ରଦ୍ଧା ଓ ତଜ୍ଜନିତ ପରିଶ୍ରମ ଯେ ଦୁଃସାହସିକ ପଦକ୍ଷେପ, ଏହା ଲେଖକଙ୍କୁ ଜାଣିଥିବା ଯେ କୌଣସି ପାଠକ ସ୍ୱୀକାର କରିବ ।

ମାତ୍ର 'ଉତ୍କଳର କାହାଣୀ'ର ସମ୍ପାଦକ ଓ ପ୍ରକାଶକମାନଙ୍କର ଦାୟିକତା ଅତ୍ୟନ୍ତ ଅମାର୍ଜିତ ବୋଲି ମୋର ନମ୍ର ବିଚାର । ମୋ ଜାଣିବାରେ ଓଡ଼ିଶାରେ ଏଯାବତ୍ ସବୁଠାରୁ ଅଧିକ ସଂଖ୍ୟାରେ ବିକ୍ରି ହୋଇଥିବା ପ୍ରକାଶିତ ବହିଗୁଡ଼ିକ ମଧ୍ୟରେ ଉତ୍କଳର କାହାଣୀର ସ୍ଥାନ ନିଶ୍ଚିତ ଭାବରେ ପ୍ରଥମ । ଉତ୍କଳର କାହାଣୀକୁ ସବୁ ଶ୍ରେଣୀ, ବୟସ ଓ ମାନସିକତାର ମଣିଷମାନେ କିଣନ୍ତି ଓ ପଢ଼ନ୍ତି । ବାବୁ ବାବୁଆଣୀମାନେ କିଣନ୍ତି, ମଫୁ ମଫୁଆଣୀମାନେ ବି କିଣନ୍ତି । ଓଡ଼ିଶାର ଅନେକ ଲେଖକ 'ଉତ୍କଳର କାହାଣୀ'ର ରଚନା ଶୈଳୀ ଅନୁକରଣରେ କାହାଣୀମାନ ଲେଖିଛନ୍ତି । 'ଉତ୍କଳ କାହାଣୀ' ଶୀର୍ଷକରେ ଓଡ଼ିଶାରେ ପ୍ରସାରିତ କେତେକ ବହିକୁ ଦେଖିଲେ - ମୋର ଯାହା ମନେହୁଏ, କେତେକ ଲେଖକ ପ୍ରହରାଜଙ୍କ ନାଁରେ ନିଜ ନିଜ ଲେଖାଗୁଡ଼ିକ ଚଳେଇ ଦେଇଛନ୍ତି । ପ୍ରହରାଜଙ୍କ ଅନ୍ୟତମ ପ୍ରିୟ ମଣିଷ ଶ୍ରୀ ରମଳା କର ଉତ୍କଳ କାହାଣୀ ବହି ସମ୍ପାଦନା କାଳରେ (ପ୍ର.ପ୍ର.୧୯୬୪, ପ୍ରକାଶକ : କଟକ ଟ୍ରେଡିଂ କମ୍ପାନୀ) କାହାଣୀଗୁଡ଼ିକୁ ବଦଳାଇ ଦେଇଛନ୍ତି । ସମ୍ପାଦିତ ବହିରେ ପ୍ରହରାଜଙ୍କୁ ଚିହ୍ନି ହେଉନି । ପ୍ରହରାଜଙ୍କର ଅବଶ୍ୟ ଉତ୍କଳ ସାହିତ୍ୟ ପ୍ରେସ୍‌ର ସ୍ୱତ୍ୱାଧିକାରୀମାନଙ୍କ ସହିତ କ୍ଷୀରନୀର ସମ୍ପର୍କ ଥିଲା । ଆପଣା ପୁସ୍ତକ ବିକ୍ରିଲବ୍ଧ ଅର୍ଥର କିଛି ଅଂଶ ପାଇବା ପାଇଁ ପ୍ରେସର ଉତ୍ତରାଧିକାରୀମାନେ ହକ୍‌ଦାର ବୋଲି ସେ ଇଚ୍ଛାପତ୍ରରେ ଉଲ୍ଲେଖ କରିଥିଲେ । ଆତ୍ମୀୟତା ଓ ଅଧିକାରର ଅର୍ଥ ନୁହେଁ, ଲେଖକଙ୍କ ଅନ୍ତେ, ତାଙ୍କ ଲେଖାଗୁଡ଼ିକୁ ନିଜ ଇଚ୍ଛା ଅନୁସାରେ ଖଣ୍ଡନ ମଣ୍ଡନ କରି ବିପଣୀସ୍ଥ କରିବା । ତେଣୁ 'ଉତ୍କଳର କାହାଣୀ'ର ଶୁଦ୍ଧ ସମ୍ପାଦନା ଏକ

ଗିରିଇଛି ପ୍ରୟାସ । ଓଡ଼ିଶାର ବିଖ୍ୟାତ ଗବେଷକମାନେ ପ୍ରହରାଜଙ୍କ ନାମରେ ପ୍ରକାଶିତ "ଉତ୍କଳ କାହାଣୀ" ବହିର ପ୍ରଥମ ସଂସ୍କରଣ ମଧ୍ୟ ଦେଖି ନାହାନ୍ତି । ଦେଖିଥିଲେ ବହିର ନାଁ 'ଉତ୍କଳ କାହାଣୀ' ନୁହେଁ, 'ଉତ୍କଳର କାହାଣୀ' ଏହା ଉଲ୍ଲେଖ କରିଥା'ନ୍ତେ । ପୁନଶ୍ଚ କାହାଣୀରେ ସଂଯୋଜିତ କେତେକ ଲେଖାର ରଚନାକର୍ତ୍ତ୍ରୀ ଶ୍ରୀମତୀ ପୀତାମ୍ବରୀ ଦେବୀ । ଶ୍ରୀମତୀ ପୀତାମ୍ବରୀଙ୍କ ନାମରେ ପ୍ରକାଶିତ କେତୋଟି କାହାଣୀ 'ପଂଚାମୃତ' ଓ ଉତ୍କଳ ସାହିତ୍ୟରେ ପ୍ରକାଶ ପାଇଥିଲା । ଶ୍ରୀମତୀଙ୍କ ନାମରେ ପ୍ରକାଶିତ କାହାଣୀଗୁଡ଼ିକ ଯେ କେବଳ ତାଙ୍କର, ଏହା ଆଦୌ ସତ ନୁହେଁ । ଲେଖାଗୁଡ଼ିକ ଭିତରେ ପ୍ରହରାଜ ଅଛନ୍ତି ଏବଂ ପ୍ରହରାଜଙ୍କ ଜୀବନୀରୁ ଆମେ ଯାହା ଜାଣୁ, ସେ ଏବଂ ପୀତାମ୍ବରୀଙ୍କ ମଧ୍ୟରେ ସମ୍ପର୍କ ଥିଲା ଅବିଚ୍ଛିନ୍ନ । ମାତ୍ର ମୋର ଦୁର୍ଭାଗ୍ୟ - ମୁଁ ପଂଚାମୃତ ପତ୍ରିକାର ସବୁ ସଂଖ୍ୟା ଦେଖି ନାହିଁ । ତେଣୁ ଉତ୍କଳର କାହାଣୀ ସମ୍ପାଦନା କ୍ଷେତ୍ରରେ ମୁଁ ଯେ ପୂରାପୂରି ପ୍ରମାଦମୁକ୍ତ - ଏକଥା କହିପାରିବି ନାହିଁ ।

ଗ୍ରନ୍ଥାବଳୀରେ ସଂଯୋଜିତ 'ମନର ପାଂଚ' ଶୀର୍ଷକ ଆଲୋଚନା, 'ସତ୍ୟ ସମାଚାର' ନାମକ ସମାଚାର ପତ୍ରରେ ପ୍ରକାଶିତ । ୧୯୩୦ ମସିହା ଜୁନ ମାସ ୧୪ ତାରିଖ ଶନିବାର ଦିନଠାରୁ ପ୍ରକାଶିତ 'ସତ୍ୟ ସମାଚାର' ସାପ୍ତାହିକୀକୁ କେବଳ ଏକ ସମ୍ବାଦପତ୍ର କହିଲେ ଠିକ୍ ହେବ ନାହିଁ । ଏଥିରେ ଅବଶ୍ୟ ଓଡ଼ିଶା, ଭାରତ, ପୃଥିବୀର ବହୁ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ପ୍ରକାଶ ପାଉଥିଲା । ଏହାର ଆଭିମୁଖ୍ୟ ଥିଲା, ଭାରତୀୟ ଜାତୀୟ କଂଗ୍ରେସର ବିଭିନ୍ନ କାର୍ଯ୍ୟକ୍ରମ, ସ୍ୱାଧୀନତା ଆନ୍ଦୋଳନରେ ନିଜ ନିଜକୁ କ'ଣ ନାହିଁ କ'ଣ ଭାବୁଥିବା ନେତାମାନଙ୍କର ସୁବିଧାବାଦୀ ମାନସିକତାର ଅନାବରଣ, ଇଂରେଜମାନଙ୍କର ପ୍ରଶସ୍ତିଗାନ ଏବଂ ଆତ୍ମସମୀକ୍ଷଣ । ମାତ୍ର ପ୍ରହରାଜ ପତ୍ରିକାର ଅନେକ ଆଲୋଚନାରେ ଗାନ୍ଧିଜୀଙ୍କ ବିଚାର, କେତେକ ସଂଗ୍ରାମୀଙ୍କ ତ୍ୟାଗପୂତ ମାନସିକତାର ବିଶ୍ଳେଷଣ କରୁଥିଲେ ଏବଂ ଓଡ଼ିଆ ଓ ଭାରତୀୟମାନଙ୍କୁ ସେମାନଙ୍କ ସଂକୀର୍ଣ୍ଣତା ଓ ପ୍ରମାଦଗୁଡ଼ିକ ସମ୍ପର୍କରେ ସଚେତନ କରିଦେଉଥିଲେ । ସମାଚାରର ଗୁରୁତ୍ୱପୂର୍ଣ୍ଣ ବିଭବ - ଏହାର ସମ୍ବାଦ ପରିବେଷଣ ରୀତି ଓ ବିଚାରଗତ ସୂକ୍ଷ୍ମତା । ଅବଶ୍ୟ ସମାଚାରର ସମ୍ପାଦକ ଭାବରେ, ବିଭିନ୍ନ ସମୟରେ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ (୧୯୩୦ ମସିହା ସେପ୍‌ଟେମ୍ବର ୩ ତାରିଖ ପର୍ଯ୍ୟନ୍ତ), ଶ୍ରୀଯୁକ୍ତ ବିଶ୍ୱନାଥ କର (୧୯୩୪ ଅକ୍‌ଟୋବର ୨୩ ତାରିଖ ପର୍ଯ୍ୟନ୍ତ), ଶ୍ରୀଯୁକ୍ତ ଶ୍ରୀକୃଷ୍ଣ ମହାପାତ୍ର (୧୯୩୪ ଅକ୍‌ଟୋବର ୩୧ ତାରିଖଠାରୁ ଶେଷ ପର୍ଯ୍ୟନ୍ତ) ନାମ ତାଙ୍କ ନାମ ସହିତ ଯୋଡ଼ାଯାଇଛି । ମାତ୍ର ସମ୍ବାଦଗୁଡ଼ିକୁ ପଢ଼ିଲେ, ଏହାର ପ୍ରତ୍ୟେକ ଅକ୍ଷର, ଶବ୍ଦ ଓ ବାକ୍ୟ ଭିତରେ ତାଙ୍କ ବ୍ୟକ୍ତିତ୍ୱକୁ ଅନୁଭବ କରିହୁଏ । ସତ୍ୟ ସମାଚାରର ବହୁ ଲେଖା ଯେ ପ୍ରହରାଜଙ୍କର, ଏକଥା କେବଳ ପାଠକ ନୁହନ୍ତି, ଅନ୍ୟତମ ସମ୍ପାଦକ ଶ୍ରୀକୃଷ୍ଣ ମହାପାତ୍ର ମଧ୍ୟ ୧୯୩୬ ମସିହା ଏପ୍ରିଲ ମାସ ଆଠ ତାରିଖରେ ସ୍ୱୀକାର କରିଛନ୍ତି । ସେହି ନ୍ୟାୟରେ ସତ୍ୟ ସମାଚାରର ଲେଖାଗୁଡ଼ିକୁ ଗ୍ରନ୍ଥାବଳୀରେ ସଂଯୋଜନ ସମ୍ପର୍କରେ କେହି କେହି ହୁଏତ ଯୁକ୍ତି କରିପାରନ୍ତି । ମାତ୍ର ମୁଁ ତାହା କରି ନାହିଁ । ସମାଚାରରେ ପ୍ରକାଶିତ କେତେକ ସ୍ୱତନ୍ତ୍ର ସମ୍ବାଦ, ସମୀକ୍ଷା,

ବିଶେଷ ଆଲୋଚନା, ମନର ପାଂଚ ଓ ପୁସ୍ତକ ସମୀକ୍ଷାଗୁଡ଼ିକୁ ଏଥିରେ ପ୍ରକାଶ କରିବାକୁ ଉଚିତ ମଣିଛି । ଏହା ମୋର ଅତି ସାହସିକତା ହୋଇପାରେ । ମାତ୍ର ପାଠକମାନଙ୍କୁ ମୋ ବିଚାର ସହିତ ସୂତ୍ରାୟିତ ହେବାପାଇଁ ଅନୁରୋଧ କରୁଛି ।

## ।। ଦୁଇ ।।

ମୁଁ ପ୍ରଥମରୁ କହିଛି - ଗୋପାଳ ଚନ୍ଦ୍ର ପ୍ରହରାଜ ଏମିତି ଜଣେ ସ୍ରଷ୍ଟା, ଯାହାଙ୍କ ବ୍ୟକ୍ତିତ୍ୱରୁ ସାହିତ୍ୟକୁ ଆଦୌ ବିଯୁକ୍ତ କରାଯାଇପାରିବ ନାହିଁ । ତାଙ୍କ ସାହିତ୍ୟ କହିଲେ - ବ୍ୟକ୍ତିତ୍ୱ ଓ ବହୁଜ୍ଞତାର ସାଙ୍ଗୋପାଙ୍ଗତାକୁ ହିଁ ବୁଝାଏ । ପ୍ରସଂଗକ୍ରମେ ସେ ଭାଷା, ସାହିତ୍ୟ, ଧର୍ମ, ରାଜନୀତି, ସଂସ୍କୃତି, ସମାଜ-ବ୍ୟବସ୍ଥା, ମନୋବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ ଆଦି ଯେ କୌଣସି ବିଷୟରେ ତୁଣ୍ଡ ଖୋଲିଲାବେଳେ କିମ୍ବା କଲମ ଧରିଲାବେଳେ ଆପଣାର ଅଧ୍ୟୟନ ଓ ଅନୁଭବର ରସକୁ ଯେପରି ନିଗାଡ଼ି ଦେଉଥାନ୍ତି । ତେଣୁ ତାଙ୍କ ଲେଖାଗୁଡ଼ିକ ଗୋଟିଏ ପ୍ରକାରର ଲାଗେ, ଯେଉଁଠି ଯେମିତି ପଢ଼ିଥିଲେ ବି ସହଜରେ ବାରି ହୋଇଯାଏ, ସେଗୁଡ଼ିକୁ ବାବଦ ବାବଦ କରି ତର୍ଜମା କରିବାକୁ ଡର ମାଡ଼େ । ମାତ୍ର ମୁଁ ତାଙ୍କ ସମଗ୍ର ରଚନାକୁ ସମ୍ପାଦନା କରିବା କାଳରେ ଚାରିଗୋଟି ସ୍ୱତନ୍ତ୍ର ପାତ୍ରରେ ସ୍ୱୀକୃତି ଦେଇଛି । ଏପରି କରିବା ତାଙ୍କ ବିଚାରର ବିଭକ୍ତୀକରଣ ମାନସିକତା ନୁହେଁ, ବରଂ ଜ୍ଞାନବିଜ୍ଞାନର ବିଭିନ୍ନ କ୍ଷେତ୍ରରେ ତାଙ୍କ ପ୍ରଜ୍ଞା ଓ ବିଚାରର ଗଣ୍ଠିଗୁଡ଼ିକୁ ଅଧିକ ରୁଚିପୂର୍ଣ୍ଣ ରୀତିରେ ସୂତ୍ରାୟିତ କରିବା ।

ପ୍ରହରାଜ ଓଡ଼ିଶାର ପାଠକମାନଙ୍କ ପାଖରେ ଅଧିକ ପରିଚିତ ଜଣେ ରମ୍ୟରଚନାକାର ରୂପରେ । ଯାବତୀୟ ଅରମ୍ୟ କଥାଗୁଡ଼ାକୁ ସେ ରମ୍ୟରୀତିରେ କହିଥା'ନ୍ତି । କହିଲାବେଳେ ନିଜ ମୁହଁକୁ ବି ଅନିଷା କରନ୍ତି ନାହିଁ । କେଉଁ ବିଚିତ୍ର ଧାତୁରେ ତାଙ୍କ ଜୀବନ ଗଢ଼ା ହୋଇଥିଲା କେଜାଣି ? 'ଭାଗବତ ଟୁଙ୍ଗିରେ ସନ୍ଧ୍ୟା' ଠାରୁ ଆରମ୍ଭ କରି 'ଦୁନିଆର ରୀତି ଏ' ପର୍ଯ୍ୟନ୍ତ ସବୁ ରଚନାରେ ତାଙ୍କ ଲିଖନ ଚାତୁରୀର ସ୍ୱାତନ୍ତ୍ର୍ୟ ବାରି ହୋଇପଡ଼େ । ଉତ୍କଳ ସାହିତ୍ୟ ପତ୍ରିକାର ୧୩୦୫ ସାଲ ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ସଂଖ୍ୟାରେ ଶ୍ରୀ ପଞ୍ଚୁଚନ୍ଦ୍ର ଧୀରେନ୍ଦ୍ର ମହାନ୍ତି ଛଦ୍ମ ନାମରେ ପ୍ରକାଶିତ 'ନନାଙ୍କ ପାଞ୍ଜି'କୁ କେହି କେହି ପ୍ରହରାଜଙ୍କ ରଚନା ବୋଲି ମତ ଦେଇଥାନ୍ତି । ମାତ୍ର ଏହି ଲେଖାର ଶୈଳୀ ଫକୀର ମୋହନଙ୍କ ଗଦ୍ୟ ଶୈଳୀର ଅନୁରୂପ ହୋଇ ଥିବାରୁ ଗବେଷକମାନଙ୍କ ମତାନୈକ୍ୟ ଯୋଗୁଁ ଏହାକୁ ଗ୍ରନ୍ଥାବଳୀରେ ସଂଯୋଜନା କରାଯାଇ ନାହିଁ । 'ଶୈଳୀତତ୍ତ୍ୱ' ଆଧାରରେ ତାଙ୍କ ଗଦ୍ୟରୀତିକୁ କେବଳ 'ପ୍ରହରାଜୀୟ' ହିଁ କୁହାଯାଇପାରେ; ତେଣୁ ଗ୍ରନ୍ଥାବଳୀର ପ୍ରଥମ ଭାଗ - ତାଙ୍କ ରମ୍ୟରଚନାଗୁଡ଼ିକର ସରସର, ଆତ୍ମସମୀକ୍ଷଣର କାବ୍ୟାୟନ ।

ଗ୍ରନ୍ଥାବଳୀର ଅନ୍ୟ ଏକ ଭାଗ : ଭାଷାତତ୍ତ୍ୱବିଦ୍ ପ୍ରହରାଜଙ୍କ ବ୍ୟକ୍ତିତ୍ୱର ଗ୍ରନ୍ଥାୟନ । ସମଗ୍ର ଓଡ଼ିଶାରେ ତାଙ୍କର ପରିଚିତି - ଜଣେ ଆଭିଧାନିକ ରୂପରେ । ଆଭିଧାନିକ ଶବ୍ଦଗୁଡ଼ିକର କେବଳ ଅର୍ଥକେବଳ ନୁହେଁ, ସେଗୁଡ଼ିକର ଉତ୍ପତ୍ତି, କାଳକ୍ରମିକ ରୂପାନ୍ତର, ସାହିତ୍ୟ ଓ ଜନ

ମୁଖରେ ବ୍ୟବହାର, ଅନ୍ୟ ଭାଷା ସହିତ ସମ୍ବନ୍ଧ ଆଦି ନାନା ବିଷୟରେ ତଦ୍‌ବିଦ । ଜଣେ ଭାଷାତତ୍ତ୍ୱବିଦ୍ ଯେ କେବଳ ଆଭିଧାନିକ ହୋଇପାରିବେ - ପୃଥିବୀର ଭାଷା ବିଜ୍ଞାନୀମାନେ ଏହା ସ୍ୱୀକାର କରିଛନ୍ତି । ପ୍ରହରାଜଙ୍କ ଭାଷାଭିଜ୍ଞ ବ୍ୟକ୍ତିତ୍ୱର କାଳଜୟୀ ଅଭିବ୍ୟକ୍ତି 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' । କୋଷଗ୍ରନ୍ଥର ସଂକଳନ କାର୍ଯ୍ୟ ଶେଷ କରିବାକୁ ତାଙ୍କୁ ଜୀବନର ପ୍ରାୟ କୋଡ଼ିଏ ବର୍ଷରୁ ଅଧିକ ସମୟ ଖର୍ଚ୍ଚ କରିବାକୁ ପଡ଼ିଥିଲା । ସେ କେବଳ ଓଡ଼ିଆ ନୁହେଁ, ହିନ୍ଦୀ, ବଙ୍ଗଳା, ଇଂରାଜୀ, ଉର୍ଦ୍ଦୁ, ପାର୍ଶୀ ଆଦି ବହୁଭାଷାରେ ପଣ୍ଡିତ ଥିଲେ । ସାଧାରଣ ମଣିଷର ଜୀବନ ଓ ଆତ୍ମାର ଭାଷାକୁ ସାହିତ୍ୟ-ଭାଷାର ମାନ୍ୟତା ଦେବାପାଇଁ ସମଗ୍ର ଜୀବନ ସାଧନା କରିଥିଲେ । ଭାଷା ଅଧ୍ୟୟନ କାଳରେ ବ୍ୟକ୍ତି ଓ ଜାତିର ଜୀବନ ଏବଂ ସଂସ୍କୃତି ପରିଶୀଳନ ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । ବିଶେଷତଃ ଲୋକମୁଖରେ କଥିତ ଶବ୍ଦଗୁଡ଼ିକର କୋଷାୟନ ଆଦର୍ଶକୁ ସମକାଳୀନ ପଣ୍ଡିତ ସମାଜ ଗ୍ରହଣ କରିପାରୁ ନ ଥିଲା । ପ୍ରହରାଜ ପଣ୍ଡିତମାନଙ୍କ ବିଚାରକୁ ଅବଶ୍ୟ ସମ୍ମାନ ଦେଉଥିଲେ, ମାତ୍ର ଆପଣା ବିଚାର ଓ ଆଦର୍ଶକୁ ସେ ଅସ୍ୱୀକାର କରିପାରୁ ନ ଥିଲେ । ତେଣୁ ଭାରତବର୍ଷର ବୃହତ୍ତମ ଓ ପୃଥିବୀର ଅନ୍ୟତମ ଦୃଷ୍ଟି ଆକର୍ଷଣକାରୀ ଶବ୍ଦକୋଷ ସଙ୍କଳକ ଭାବରେ ଭାଷା ସଂକ୍ରାନ୍ତ ତାଙ୍କ ବିଚାର, ଅଧ୍ୟୟନ, ଅନୁଭବର ସୂକ୍ଷ୍ମତା ପ୍ରତିପାଦନ ଉଦ୍ଦେଶ୍ୟରେ ଗ୍ରନ୍ଥାବଳୀର ଦ୍ୱିତୀୟ ଭାଗରେ ଭାଷା ସମ୍ପର୍କିତ ଆଲୋଚନା, ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ମୁଖବନ୍ଧ, ଗ୍ରନ୍ଥ ସଂକଳନ କାଳରେ ସେ ସମ୍ମୁଖୀନ ହେଉଥିବା ବୌଦ୍ଧିକ, ମାନସିକ ଓ ଆର୍ଥିକ ସମସ୍ୟା ବିଷୟକ ଲେଖାଗୁଡ଼ିକ ଯୋଜନା କରାଯାଇଛି । ଓଡ଼ିଆ ଲୌକିକ ପଦ ବା ଢଗଢମାଳି ବଚନ ପ୍ରହରାଜଙ୍କ ଭାଷାକୈନ୍ଦ୍ରିକ ବିଚାରର ଅନ୍ୟତମ ବହୁ ଆଲୋଚିତ ଗ୍ରନ୍ଥ । ଏହା ଦୁଇଗୋଟି ଭାଗରେ ପ୍ରକାଶିତ ଓ ପ୍ରକାଶକାଳ ୧୯୨୬, ୨୭ ମସିହା । ଗ୍ରନ୍ଥ ଦୁଇଟିର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଛି ୧୯୯୦ ମସିହାରେ । ମାତ୍ର ଆଶ୍ଚର୍ଯ୍ୟର କଥା ଭାଷାକୋଷ ସଂକଳନ କାଳରେ ତାଙ୍କ ଶବ୍ଦ ଚୟନ ଓ ବିଶ୍ଳେଷଣ, ମୁଦ୍ରଣ, ଅର୍ଥସଂଗ୍ରହ ଏବଂ ବ୍ୟକ୍ତିକ ଜୀବନକୁ କେନ୍ଦ୍ରକରି ଓଡ଼ିଶାର କେତେକ ସମ୍ମାନାସ୍ପଦ ବ୍ୟକ୍ତି ତାଙ୍କୁ କଟୁ ସମାଲୋଚନା କରୁଥିଲେ । ସେମାନଙ୍କ ସମାଲୋଚନା ଅନେକ ସମୟରେ ଥିଲା ଆବେଗ ଓ ବ୍ୟକ୍ତିକ ବିଶ୍ୱାସ ପ୍ରଚୋଦିତ । ପ୍ରହରାଜ ମଧ ତାଙ୍କ ଉପରେ ଚାଲିଥିବା କୋରଡ଼ା ପ୍ରହାର ଓ ବୋଲୁଅ ମାଡ଼ର ମୁକାବିଲା କରୁଥିଲେ, ସେମାନଙ୍କ ଲାଗି ଶବ୍ଦମାନଙ୍କରେ ଜବାବ ଦେଉଥିଲେ, ନିଜ ବିଚାରଧାରାରୁ ଆଦୌ ବିଚ୍ୟୁତ ହେଉ ନ ଥିଲେ । ତେଣୁ 'ଭାଷାକୋଷ'କୁ ଆଧାର କରି ପ୍ରହରାଜ ଓ ଅନ୍ୟମାନଙ୍କ ମଧ୍ୟରେ ସଂଘଟିତ ବିଚିତ୍ର ସମର ସମ୍ପର୍କରେ ପାଠକମାନଙ୍କୁ ଅବଗତ କରିବା ଉଦ୍ଦେଶ୍ୟରେ ତତ୍‌ସଂକ୍ରାନ୍ତ କେତେକ ବିଶେଷ ଆଲୋଚନାର ନିର୍ବାଚିତ ଅଂଶ ଏବଂ 'ଭାଷାକୋଷ ପାଇଁ ସଫର' ଶୀର୍ଷକ ରଚନା ଏଥିରେ ପତ୍ରସ୍ଥ କରିବାକୁ ଉଚିତ ମଣିଛି ।

ଗ୍ରନ୍ଥାବଳୀର ଅନ୍ୟ ରଚନାଗୁଡ଼ିକ ତାଙ୍କ ସର୍ଜନଶୀଳ ଓ ସମୀକ୍ଷାତ୍ମକ ଅବବୋଧର କୋଠଘର । ସେ ଓଡ଼ିଆମାନଙ୍କ ତୁଣ୍ଡରେ କଥିତ କାହାଣୀଗୁଡ଼ିକୁ ସଂଗ୍ରହ କରିଛନ୍ତି, ସାଧାରଣ

ମଣିଷମାନଙ୍କର ଶବ୍ଦ ଓ କଥନ ଶୈଳୀରେ ସେଗୁଡ଼ିକୁ ପ୍ରକାଶ କରିଛନ୍ତି । ଗାଁର ଅପାଠୁଆ ମଣିଷମାନଙ୍କ ମୁହଁର ଭାଷା, ସାହିତ୍ୟର ଭାଷା ହେବା ଯେ ଅନୁଚିତ, ପଣ୍ଡିତମାନଙ୍କର ଗୀର୍ବାଣମନସ୍କ ବିଚାରରେ ବିରୋଧ କରିଛନ୍ତି । ସେ ବୟସ୍କ ଓ ବାଳୁତମାନଙ୍କ ବିଚାରକୁ ପୁଷ୍ଟ କରିବା ପାଇଁ କବିତା ଲେଖିଛନ୍ତି । ଓଡ଼ିଶା ଏବଂ ଭାରତର ସମାଜ ଜୀବନ ଓ ସାହିତ୍ୟ ଅଧ୍ୟୟନରେ ଦିଶାରୀମାନଙ୍କ ଜୀବନ ଓ ଆଦର୍ଶ ସମ୍ପର୍କରେ ଆପଣା ଅନୁଭବ ପ୍ରକାଶ କରିଛନ୍ତି । ସାହିତ୍ୟ ଓ ପାଠ୍ୟପୁସ୍ତକର ଇତିହାସ ଓ ଆବଶ୍ୟକତା ସମ୍ବନ୍ଧିତ ବହୁ ତଥ୍ୟ ପୁଷ୍ଟ ଓ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ଲେଖିଛନ୍ତି । ସମକାଳରେ ପ୍ରକାଶିତ କେତେକ ପୁସ୍ତକର ମୁଖବନ୍ଧ ଲେଖିଛନ୍ତି ଓ ଶତାଧିକ ପୁସ୍ତକର ସମୀକ୍ଷା କରିଛନ୍ତି । ଯେଉଁ ଲେଖକ ଯେତିକି ସମ୍ମାନର ଅଧିକାରୀ, ତାହା ପ୍ରକାଶ କରିବାରେ ଏତେ ଟିକିଏ କୁଣ୍ଠା ପ୍ରକାଶ କରି ନାହାନ୍ତି । ସମ୍ବାଦପତ୍ର, ସାହିତ୍ୟପତ୍ର ସମ୍ପାଦନା କରିଛନ୍ତି । ବହୁ ସଭାସମିତିରେ ଲିଖିତ ଭାଷଣ ଦେଇଛନ୍ତି ଏବଂ ସଭା ସମ୍ପର୍କିତ ବିବରଣୀ ମଧ୍ୟ ପ୍ରସ୍ତୁତ କରିଛନ୍ତି । ବିଭିନ୍ନ ପତ୍ରପତ୍ରିକାରେ ସାହିତ୍ୟ, ଜୀବନ ଓ ସମାଜକୈନ୍ଦ୍ରିକ ବହୁ ପତ୍ର ପ୍ରକାଶ ପାଇଛି । ତେଣୁ ପ୍ରହରାଜଙ୍କ ବ୍ୟକ୍ତିତ୍ୱ ଓ ବିଚାରର ମୂଲ୍ୟାୟନ କ୍ଷେତ୍ରରେ ଉପର୍ଯ୍ୟୁକ୍ତ ରଚନାଗୁଡ଼ିକୁ ଗୁରୁତ୍ୱହୀନ ବିବେଚନା କରାଯାଇ ନ ପାରେ । ମୋ ବିଚାରରେ ଗ୍ରନ୍ଥାବଳୀର ଚତୁର୍ଥ ଭାଗ ଏକ ଆଲ୍ଲିମାଲିକା ପେଡ଼ି । ଏ ପେଡ଼ି ଭିତରର ଯେକୌଣସି ଚିଜ ଛୁଇଁଲେ ମନରେ ଚମକ ଲାଗେ, ଅମୂଲ୍ୟ ନିଧିର ପ୍ରତ୍ୟୟ ଜନ୍ମେ । କ୍ଷୁଦ୍ର ଭିତରେ ବିରାଟତ୍ୱକୁ ଅନୁଭବ କରି ହୁଏ ।

ଚତୁର୍ଥ ଭାଗରେ ମଧ୍ୟ ସଂଯୋଜିତ ହୋଇଛି ଦୁଇଗୋଟି ତଥ୍ୟଭିତ୍ତିକ ରଚନା - ଲେଖକଙ୍କ ଆତ୍ମଜୀବନୀ ଓ ଉଇଲ । ମୋ ଜାଣିବାରେ ଓଡ଼ିଶା, ନା ଓଡ଼ିଶା କାହିଁକି ସମଗ୍ର ବିଶ୍ୱରେ ସ୍ୱୀକାରୋକ୍ତିମୂଳକ ଏପରି ଆତ୍ମକଥାର ସଂଖ୍ୟା ଖୁବ୍ ଅଳ୍ପ । ଲେଖକଙ୍କ ଜୀବନର ଶୈଶବ ଓ ଯୌବନ କାଳର ଅନେକ ବିଷୟ ଏଥିରୁ ଜଣାଯାଏ । ଶୁଣାଯାଏ - ପ୍ରହରାଜ ଆପଣାର ବିବଦମାନ ବୟସ୍କ ଜୀବନର ଯାବତୀୟ ଗୋପନୀୟତାକୁ ଆଉ ଏକ ଖାତାରେ ଲେଖିଯାଇଥିଲେ । ନାନା କାରଣରୁ ତାଙ୍କ ନିକଟତମମାନେ ସେ ବଞ୍ଚିଥିବା ବେଳେ ଅଥବା ତାଙ୍କ ମୃତ୍ୟୁପରେ ଖାତାଟିକୁ ନଷ୍ଟ କରିଦେଇଥିଲେ । ଆତ୍ମଜୀବନୀର ଯେଉଁ ଅଂଶ ପ୍ରକାଶ ପାଇଛି, ତାହା ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ଶ୍ରମର ଫଳ । ପୁନଶ୍ଚ ପ୍ରହରାଜ ନାମକ ବହୁଚର୍ଚ୍ଚିତ ମଣିଷଜଣକ ଯେ କେତେ ଭାବବାଦୀ ଓ ବିଚାରବନ୍ତ - ଏହି ଇଚ୍ଛା ପତ୍ର ବା ଉଇଲ, ତାହାର ସ୍ପଷ୍ଟ ପ୍ରମାଣ । ତାଙ୍କ ଜୀବନ କାଳରେ ଏହା ତିନିଥର ପରିବର୍ତ୍ତିତ ହୋଇଛି । ପୈତୃକ ସମ୍ପତ୍ତି ଓ ଉପାର୍ଜିତ ବିତ୍ତରେ କିଏ କେତେ ଅଂଶର ଅଧିକାରୀ, ଇଚ୍ଛାପତ୍ରରେ ସେ ତାହା ଉଲ୍ଲେଖ କରିଛନ୍ତି । ଶୁଣାଯାଏ ଏହି ଇଚ୍ଛାପତ୍ର କାଳେ ଥିଲା ତାଙ୍କ ଜୀବନର କରୁଣ ପରିଣତିର କାରଣ । କୋର୍ଟ ସଂଗ୍ରହାଳୟରୁ ଏହାକୁ ଆବିଷ୍କାର କରିଛନ୍ତି ମୋର ବନ୍ଧୁ, ଗବେଷକ ଡକ୍ଟର ବିଜୟ କୁମାର ଚୌଧୁରୀ । ଏହି ଅବକାଶରେ ମୁଁ ଡଃ ଶତପଥୀ ଓ ଡଃ ଚୌଧୁରୀଙ୍କ ଶ୍ରମ ଓ ସାଧନାକୁ ସମ୍ମାନ ଜଣାଉଛି ।

## ।। ତିନି ।।

ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ରଚନାଗୁଡ଼ିକର ଗ୍ରନ୍ଥାୟନ, ମୋ ଜୀବନର ପ୍ରାୟ ଚଉଦବର୍ଷର ପରିଶ୍ରମର ଫଳ । ମାତ୍ର ପ୍ରହରାଜଙ୍କ ସମଗ୍ର ଜୀବନ ସଂକଳନରେ ମୁଁ ଯେ ସମର୍ଥ ହୋଇଛି - ଏକଥା ସତ ନୁହେଁ । ଗ୍ରନ୍ଥାବଳୀ କହିଲେ ମୁଁ ବୁଝେ - ଏହା ଜଣେ ମଣିଷର ସମଗ୍ର ରଚନାର ସଙ୍ଗୀକରଣ ନୁହେଁ, ତାର ଜୀବନର ଗ୍ରନ୍ଥାୟନ । ଅନୁରୂପ ମାନସିକତାକୁ ଭିତ୍ତିକରି ମୁଁ ତାଙ୍କୁ ଅନ୍ୟମାନଙ୍କ ପାଖରେ ଚିହ୍ନେଇ ଦେବାକୁ ଚେଷ୍ଟା କରିଥିଲି । ମାତ୍ର ପାରିଲିନି, ହାରିଗଲି । ଫଳତଃ ମୋ ଗ୍ରନ୍ଥାବଳୀ ସ୍ୱତନ୍ତ୍ର ହୋଇପାରିଲା ନାହିଁ । ଥାକରେ ଥୁଆ ହୋଇଥିବା ଅନ୍ୟ ବହିମାନଙ୍କ ଗହଣରେ ଆଉ ଖଣ୍ଡିଏ ହୋଇ ରହିଗଲା ।

ମୋର ଏ ବିଫଳତାର କାରଣ ଯେ ମୁଁ, ଏକଥା ସ୍ୱୀକାର କରିବାକୁ ମୁଁ ପ୍ରସ୍ତୁତ ନୁହେଁ । ଏଥିପାଇଁ ଦାୟୀ ମୁଁ ବଞ୍ଚୁଥିବା ଓଡ଼ିଶା ନାମକ ଏକ ଆୟତନର ତଥାକଥିତ ଗବେଷକ ଓ ଦେଶପ୍ରେମୀମାନେ । ସେମାନଙ୍କ ମଧ୍ୟରୁ ଅନେକ ଏତେ ମାତ୍ରାରେ ଆତ୍ମ-କୈନ୍ଦ୍ରିକ ଯେ, ଯେଉଁ ଘରେ ଅତିଥି ହୁଅନ୍ତି, ଯାହାର ରସରେ ଆପଣା ଜୀବନକୁ ପୁଷ୍ଟ କରନ୍ତି, ସେ ଘରକୁ ଉଜାଡ଼ି ଦେଇ ଆସନ୍ତି । ସବୁ ମାଲ ତାଙ୍କ ପାଖରେ ଅଛି ବୋଲି ବୋବାଳ କରନ୍ତି । ଉତ୍ତରାଧିକାରୀମାନଙ୍କୁ ହେଙ୍ଗୁ ଶୁଘାଇ ଦେଇ ପୁଲକିତ ହୁଅନ୍ତି । ସେମାନେ ସଂସ୍କୃତିକୁ ସମ୍ପାଦି ଜାଣନ୍ତି ନାହିଁ, ଶୋଷି ଜାଣନ୍ତି । କେବଳ ଆଧୁନିକ କାଳର ଓଡ଼ିଆମାନଙ୍କର ନୁହେଁ, ଏହା ଓଡ଼ିଆ ଜାତିର ବିଶେଷତ୍ୱ ।

ମୁଁ ଅତି ଶ୍ରଦ୍ଧାର ସହିତ ପ୍ରହରାଜଙ୍କୁ, ନା କେବଳ ପ୍ରହରାଜଙ୍କୁ କହିଲେ ଭୁଲ ହେବ, ଗତ ଶତାବ୍ଦୀରେ ସାଧନା କରୁଥିବା ଓଡ଼ିଆମାନଙ୍କୁ ଯେଉଁ ବିଶେଷ ଆୟତନମାନଙ୍କରେ ଖୋଜିବାକୁ ଯାଇଛି - କିଛି ପାଇଛି, ଖୁସି ହୋଇଛି, ମାତ୍ର ନିଲାମ ହୋଇଯାଇଥିବା ବିଭବମାନଙ୍କୁ ଅଧିକ ମାତ୍ରାରେ ଭେଟିଛି । ୧୯୯୦ ମସିହାରେ ଯେଉଁ ଆୟତନରେ ଯାହା ପାଇଛି, ତାର କେତେ ମାସ ପରେ ସେଇ ଆୟତନରେ ତାହା ଆଉ ପାଇନି । ସେମାନେ କୁଆଡ଼େ ଗାଏବ ହୋଇଯାଇଛନ୍ତି । ଆୟତନର ଅଧିକାରୀମାନଙ୍କୁ ପଚାରିଛି ସେମାନଙ୍କ ଠିକଣା ସମ୍ପର୍କରେ ଏବଂ ଉତ୍ତରରେ ପାଇଛି କିଛି ନାକଟେକା ଭାବ । ପ୍ରତିବାଦ ବି କରିପାରିନି । କାରଣ ଏବଂ ପ୍ରତିବାଦ କରିବାର ପରିଣତି ଯେ କେତେ କରୁଣ - ତାହା ଅଂଗେ ନିଭେଇଛି । ଉତ୍କଳ ଦୀପିକା, ଉତ୍କଳ ସାହିତ୍ୟ, ସମ୍ବଲପୁର ହିତୈଷିଣୀ, ଆଶା, ମୁକୁର, ସହକାର, ନବଭାରତ, ରସଚକ୍ର, ଦି ଓରିଆ, ନିଆଁଖୁଣ୍ଟା, ପଂଚାମୃତ, ସତ୍ୟସମାଚାରର ପ୍ରତ୍ୟେକ ସଂଖ୍ୟା ଦେଖିବାକୁ ସୁଯୋଗ ପାଇନି । କେତେକ ପତ୍ରିକାରେ ପ୍ରହରାଜଙ୍କ ଲେଖାଗୁଡ଼ିକୁ ମହାମାନବମାନେ ଚିରି ନେଇଛନ୍ତି । ଫଳତଃ ଓଡ଼ିଶା ସରକାରଙ୍କ ପରିଚାଳିତ ଓ ବ୍ୟକ୍ତିବିଶେଷଙ୍କ ପାଠାଗାରରୁ ପାଇଥିବା ଉପାଦାନଗୁଡ଼ିକୁ ପୁଞ୍ଜି କରି ମୁଁ ପ୍ରହରାଜଙ୍କୁ ସାଧମତେ ପାଇବାକୁ ଚେଷ୍ଟା କରିଛି ।

ଭାଷାକୋଷ ସଙ୍କଳନ କାଳରେ ପ୍ରହରାଜଙ୍କ ଶବ୍ଦ-ସାଧନ ପଦ୍ଧତିକୁ ଜାଣିବା ପାଇଁ ମୋର ଇଚ୍ଛା ଥିଲା । ସେ ଯେଉଁଠିକୁ ଯାଉଥିଲେ, କୁମ୍ଭାର ଘର ବୋହୂପରି ଲୋକମୁଖରେ କଥିତ ଶବ୍ଦମାନଙ୍କୁ ଟିପାଖାତାରେ ସମାହୃତଥିଲେ । ସେ ନିଜେ ଲେଖିଛନ୍ତି - ଭାଷାକୋଷର ଶେଷ ଖଣ୍ଡ ପ୍ରକାଶ ପାଇବା ପରେ ତାଙ୍କ ଟିପାଖାତାରେ ଅସଂକଳିତ ଅବସ୍ଥାରେ ପ୍ରାୟ ପଚ୍ଚଶହଜାରଶବ୍ଦ ରହିଯାଇଥିଲା । ଏ ଟିପାଖାତା ସମ୍ବନ୍ଧରେ ମୁଁ ତାଙ୍କ ଉତ୍ତରାଧିକାରୀମାନଙ୍କୁ ପଚାରିଛି । ଉତ୍ତର ପାଇନି । ଶବ୍ଦସାଧନ ଓ ସଜ୍ଜୀକରଣ କାଳରେ ସେ ଖର୍ଚ୍ଚ କରୁଥିବା ଗଦାବହନ କାଗଜର କେତୋଟି ପୃଷ୍ଠା ମାତ୍ର ଦେଖାଇବାପାଇଁ ମୁଁ ଅନେକଙ୍କୁ ଅନୁରୋଧ କରିଛି । କିଛି ପାଇନି । ତାଙ୍କ ନାତିମାନେ କିନ୍ତୁ ତାଙ୍କ ହିସାବ ଖାତା ମୋତେ ଦେଖାଇଛନ୍ତି । ସେ କେଉଁମାନଙ୍କ ପାଖରୁ କେଉଁ ସୂତ୍ରରେ କେତେ ଅର୍ଥ ଆଣିଛନ୍ତି ଏବଂ ସଂଗୃହୀତ ଅଥ କେଉଁ ବାବଦକୁ ଖର୍ଚ୍ଚ କରିଛନ୍ତି, ତାହାର ଟିକିନିଖି ବିବରଣୀ ଖାତାରେ ରହିଛି । ଏପରିକି କେଉଁମାନଙ୍କ ପାଖକୁ ତାର କରୁଥିଲେ, ଚିଠି ଲେଖୁଥିଲେ, ସେ ହିସାବ ମଧ ରହିଛି । ମୁଁ ତାଙ୍କ ନାତିମାନଙ୍କୁ ଅନୁରୋଧ କରିଥିଲି, ଖାତାର କେତୋଟି ପତ୍ରର ଜେରକ୍ସ କରିବାକୁ ସୁଯୋଗ ଦେବାପାଇଁ । ମାତ୍ର ସେମାନେ ମୋତେ ମନା କରିଦେଇଛନ୍ତି । କୋର୍ଟ କଚେରି ମାମଲାରେ ଏ ଖାତାର ଆବଶ୍ୟକତା ଥିବାରୁ ତାହା କାଳେ ବନ୍ଧୁଯାଇଛି । ତାଙ୍କ ବଂଶଧରମାନେ ମୋତେ ସୁଯୋଗ ଦେଲେ ହିସାବ ଖାତାର କେତୋଟି ଫର୍ଦ୍ଦ ଗ୍ରନ୍ଥାବଳୀରେ ସଂଯୋଜନର ଆଶା ରଖିଛି ।

ପ୍ରହରାଜ ଗଦା ଗଦା ଚିଠି ଲେଖୁଥିଲେ । ରଜା, ମହାରଜା, ସାହିତ୍ୟିକ, ବନ୍ଧୁ, ସଂଗ୍ରାମୀ, ଗ୍ରାହକ ଆଦି କେତେ କେତେ ବୃତ୍ତି ଓ ମାନସିକତାର ମଣିଷଙ୍କୁ ସେ ଚିଠିରେ ବାନ୍ଧି ରଖିଥିଲେ । କେଉଁ ବିଶିଷ୍ଟଙ୍କ ପାଖରେ ତାଙ୍କ ହାତଲେଖା ଚିଠି ଥିଲେ, ଗ୍ରନ୍ଥାବଳୀରେ ତାହା ପ୍ରକାଶ କରିବା ନିମିତ୍ତ ଖବରକାଗଜରେ ଅନୁରୋଧ କରିଛି । ଖଣ୍ଡିଏ ବୋଲି ଚିଠି ମୋ ହାତରେ ପଡ଼ିନି । ଯେଉଁ କେତୋଟି ଡଃ ନିତ୍ୟାନନ୍ଦ ଶତପଥୀ ସଂଗ୍ରହ କରି 'ପ୍ରହରାଜ ପରିକ୍ରମା'ରେ ପତ୍ରସ୍ଥ କରିଛନ୍ତି, ସେଗୁଡ଼ିକୁ ଏବଂ ବିଭିନ୍ନ ପତ୍ରପତ୍ରିକାରୁ ସଂଗୃହୀତ ଚିଠି ଓ ବହିଗୁଡ଼ିକୁ ଗ୍ରନ୍ଥାବଳୀରେ ହିଁ ପୁନର୍ମୁଦ୍ରଣ କରାଯାଇଛି ।

ଓଡ଼ିଶାର ପ୍ରତ୍ୟେକ ସଚେତନ ପାଠକ ଏହା ସ୍ୱୀକାର କରିବେ ଯେ, ପ୍ରହରାଜଙ୍କ ଶବ୍ଦଚୟନ, କଥନ ଓ ଲିଖନ ଶୈଳୀ ଅନ୍ୟମାନଙ୍କ ଠାରୁ ସ୍ୱତନ୍ତ୍ର । ଫକୀରମୋହନ ସେନାପତି, ଗୋପାଳ ଚନ୍ଦ୍ର ପ୍ରହରାଜ, କୃଷ୍ଣପ୍ରସାଦ ଚୌଧୁରୀ, ଗୋବିନ୍ଦ ତ୍ରିପାଠୀ, ଚିତ୍ତରଞ୍ଜନ ଦାସ ପ୍ରମୁଖଙ୍କ ରଚନା ଶୈଳୀ ପରସ୍ପର ସହିତ ବହୁ ଭାବରେ ସମ୍ବନ୍ଧିତ ବୋଲି ଆମେ କହିପାରିବା । ମାତ୍ର ଏମାନଙ୍କ ମଧ୍ୟରେ ପ୍ରହରାଜଙ୍କ ବିଶେଷତ୍ୱ - ହିନ୍ଦୁସ୍ଥାନୀ, ପାର୍ଶୀ, ଇଂରାଜୀ, ସଂସ୍କୃତ ଓ ଲୋକମୁଖ କଥିତ ଶବ୍ଦଗୁଡ଼ିକର ଚମତ୍କାର ସହବନ୍ଧନ । ଶବ୍ଦମାନଙ୍କର ଏହି ଭାବାତ୍ମକ ପରିଣୟକୁ ତାଙ୍କ ସାମସମୟିକ ଅନେକ ସ୍ରଷ୍ଟା ସ୍ୱୀକାର କରିପାରି ନାହାନ୍ତି । ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଭାଷା ପ୍ରୟୋଗ ଉପରେ ସେମାନେ ଗୁରୁତ୍ୱ ଦେଇଛନ୍ତି । ତେଣୁ ସାଧାରଣ ପାଠକ

ପ୍ରହରାଜଙ୍କୁ ପଢ଼ିଲା ବେଳେ ସନ୍ଦର୍ଭବିଶେଷରେ ଝୁଣ୍ଟିବାକୁ ବାଧ ହୁଏ । ଏପରିକି ଆଜିକାଲିର ଅନେକ ପାଠକ ତାଙ୍କୁ ବୁଝିବା ପାଇଁ ଶବ୍ଦକୋଷର ସାହାଯ୍ୟ ନିଅନ୍ତି ଏବଂ ଶବ୍ଦଗୁଡ଼ିକୁ ପା'ନ୍ତି ନାହିଁ । ତେଣୁ ଗ୍ରନ୍ଥାବଳୀ ସମ୍ପାଦନା କାଳରେ ପାଠକୀୟ ଅବବୋଧ ଉଦ୍ଦେଶ୍ୟରେ ଶବ୍ଦଗୁଡ଼ିକର ଅର୍ଥ ଉଲ୍ଲେଖ କରିବାକୁ ମୁଁ ମନସ୍ଥ କରିଥିଲି । ମାତ୍ର ଅନୁଭବ କଲି, ଶବ୍ଦଗୁଡ଼ିକର ଅର୍ଥ ଲେଖିବସିଲେ ଗ୍ରନ୍ଥାବଳୀର ପୃଷ୍ଠା ଆଶାତୀତ ଭାବରେ ବଢ଼ିଯିବ, ପୃଷ୍ଠାଗୁଡ଼ିକ ଆଖିକୁ କେମିତି କେମିତି ଦେଖାଯିବ । ଏଥିପାଇଁ ବରଂ ଏକ ସ୍ୱତନ୍ତ୍ର 'ପ୍ରହରାଜ ଶବ୍ଦକୋଷ' ସଙ୍କଳନ କରାଯାଇପାରେ । ସମୟ ଓ ସୁଯୋଗ ପାଇଲେ ନିଜକୁ ପ୍ରକାଶ କରିବାରେ ମୁଁ ସମର୍ଥ ହେବି ବୋଲି ପାଠକମାନଙ୍କୁ ପ୍ରତିଶ୍ରୁତି ଦେଉଛି ।

ପ୍ରହରାଜଙ୍କ ଗ୍ରନ୍ଥାୟନ ମୋ ଏକକ ଉଦ୍ୟମର ଫଳଶ୍ରୁତି ନୁହେଁ । ଏଥିପାଇଁ ମୋତେ ଅନେକ ଅନୁଷ୍ଠାନ, ଅନେକ ସୁହୃଦ, ଶିକ୍ଷକ, ଅଗ୍ରଜ ଓ ଅନୁଜ ସେମାନଙ୍କ ପାଖରେ ଋଣୀ କରିଦେଇଛନ୍ତି । ସେମାନଙ୍କ ମଧ୍ୟରୁ ଅନେକ ସକର୍ମୀ କୃଷ୍ଣଚନ୍ଦ୍ର କର, ଫତୁରାନନ୍ଦ, ଜାନକୀ ବଲ୍ଲଭ ମହାନ୍ତି, କୁଳମଣି କର, ଦାଶରଥୀ ପଟ୍ଟନାୟକ, ବିନୋଦ ଚନ୍ଦ୍ର ନାୟକ ଆକାଶର ତାରା ହୋଇଯାଇଛନ୍ତି । ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ, ଡକ୍ଟର କୃଷ୍ଣଚରଣ ବେହେରା, ପ୍ରଫେସର ନିତ୍ୟାନନ୍ଦ ଶତପଥୀ, ଶ୍ରୀଯୁକ୍ତ ରବୀନ୍ଦ୍ର କୁମାର ସାହୁ, ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶ, ଡକ୍ଟର ବାବାଜି ଚରଣ ପଟ୍ଟନାୟକ, ଶ୍ରୀ କ୍ଷୀରୋଦ ଚନ୍ଦ୍ର ମହାନ୍ତି, ଡକ୍ଟର ବିଜୟ କୁମାର ଚୌଧୁରୀ ସେମାନଙ୍କ ଅନୁଭବ ଓ ସଂଗୃହୀତ ସମ୍ପତ୍ତିକୁ ମୋ ହାତକୁ ଶ୍ରଦ୍ଧାର ସହିତ ଟେକି ଦେଇଛନ୍ତି । ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ବୋହୂ ଶ୍ରୀମତୀ ତିଳୋତ୍ତମା ଦେବୀ ଓ ନାତି ଶ୍ରୀଯୁକ୍ତ ଉମାକାନ୍ତ ପ୍ରହରାଜଙ୍କ ବକ୍ତବ୍ୟ ମୋ ବିଚାରକୁ ପୁଷ୍ଟ କରିଛି । ଏହି ଅବକାଶରେ ମୁଁ ସକଳଙ୍କ ପାଖରେ ଋଣ ସ୍ୱୀକାର କରୁଛି । ପ୍ରଣାମ ଜଣାଉଛି ।

ଶ୍ରୀଯୁକ୍ତ ପୀତାମ୍ବର ମିଶ୍ରଙ୍କ ସମ୍ପର୍କରେ ମୁଁ କିଛି ଲେଖିବିନି । ଯେତେ ଲେଖିଲେ, ତଥାପି କିଛି ଅପୂର୍ଣ୍ଣ ରହିଯିବ । ଗ୍ରନ୍ଥାବଳୀ ପ୍ରକାଶନ ସଂକ୍ରାନ୍ତ ମୋର ଦୁଃସାହସିକ ପ୍ରସ୍ତାବକୁ ସେ ଛେପ ନ ଢୋକି, ହଁ କରିଦେଇଛନ୍ତି । ମୋ ପ୍ରତି ତାଙ୍କ ହୃଦୟର ଅବିମିଶ୍ର ଶ୍ରଦ୍ଧା ଓ ଅତୁଟ ବିଶ୍ୱାସ ଏବଂ ପ୍ରହରାଜଙ୍କ ପ୍ରତି ତାଙ୍କ ସମ୍ମାନବୋଧର ଫଳଶ୍ରୁତି ହେଉଛି 'ପ୍ରହରାଜ ଗ୍ରନ୍ଥାବଳୀ' । ବିଶ୍ୱାସ, ଓଡ଼ିଶାର ସଚେତନ ପାଠକମାନେ ଆମ ବିଚାର ଓ ଶ୍ରମକୁ ସ୍ୱୀକାର କରିବେ । ମୋତେ ନୁହେଁ, ଶ୍ରୀଯୁକ୍ତ ମିଶ୍ରଙ୍କୁ ଧନ୍ୟବାଦ ଦେବେ ।

ଆନନ୍ଦ ଆଶ୍ରମ
କୁଟାରିମୁଣ୍ଡା, ଅନୁଗୋଳ

ଗୌରାଙ୍ଗ ଚରଣ ଦାଶ

# ଗୋପାଳ ଚନ୍ଦ୍ର ପ୍ରହରାଜ
# ଜୀବନ ଓ ସାଧନା

ଗୋପାଳ ଚନ୍ଦ୍ର ପ୍ରହରାଜ ନାମରେ ପରିଚିତ ମଣିଷଜଣକ ସଂପର୍କରେ ସଂକ୍ଷେପରେ କେବଳ ଏତିକି ମାତ୍ର କୁହାଯାଇପାରେ ଯେ - ସେ ଏମିତି ଏକ କାଟର ମଣିଷ ଥିଲେ, ଯାହା ମଥାରେ ଇଚ୍ଛା ନାମକ ବିଷାକ୍ତ ପୋକ ଯେତେବେଳେ ଯେମିତି କାମୁଡୁଥିଲା, କିଛି ବାଛବିଚାର ନ କରି ସେ ସେମିତି ଆଚରଣ କରୁଥିଲେ । ଜୀବନରେ ଯାହା ଅନୁଭବ କରୁଥିଲେ, ଠିକ୍ ବିଚାରୁଥିଲେ, ତାହା କିଛୁ ନ ରଖି ସକଳଙ୍କ ପାଖରେ କହୁଥିଲେ ଏବଂ ଲେଖୁଥିଲେ । ଅବଶ୍ୟ ବେଳେବେଳେ ଅନୁଭବର ଗୁମର କଥା ସେ ଯେ ଘୋଡ଼େଇ ରଖିବାକୁ ଯେ ଚାହୁଁ ନ ଥିବେ, ସେ କଥା ନୁହେଁ; ମାତ୍ର ସେପରି କଳାତ୍ମକ ଓ ସାଧନା ସାପେକ୍ଷ କାର୍ଯ୍ୟ ସଂପାଦନରେ ସମର୍ଥ ହେଉ ନ ଥିଲେ, ଚଟ୍‌କିନା ଅନ୍ୟମାନଙ୍କ ଆଗରେ ଧରା ପଡ଼ିଯାଉଥିଲେ ଏବଂ ସେଥିପାଇଁ ପରିଣତ ବୟସରେ କାଳେ ଜଣେ ନିକଟତମଙ୍କ ହାତରେ ମରିବାକୁ ବାଧ ହୋଇଥିଲେ । ଅପମୃତ୍ୟୁର କଟାଳକୁ ଟାଳି ଦେଇ ପାରି ନ ଥିଲେ । ତେଣୁ ତାଙ୍କ ସାହିତ୍ୟ ଓ ଜୀବନକୁ ପରସ୍ପରଠାରୁ ଅଲଗା ନ କରି - ଉଭୟର କଳାତ୍ମକ ସମବାୟ ଭାବରେ ବିଶ୍ଳେଷଣ କରାଯାଇପାରେ ।

ପ୍ରହରାଜ ବିଚରଣ କରୁଥିବା ସଂସାର ଓ ପରସ୍ପର ସହିତ ନିର୍ଭରଶୀଳ ସାମାଜିକମାନଙ୍କ ସଂପର୍କରେ ଯେତେ ଯାହା କହିଛନ୍ତି - ସେ ସମସ୍ତ ଭିତରେ ଏକ ନିର୍ଦ୍ଦିଷ୍ଟ ଦର୍ଶନ ଯେପରି କଥା କହିଛି । ସେ କହୁଥିଲେ - ଏ ସଂସାର ଗୋଟିଏ ଭଡ଼ାଗାଡ଼ି ଖାନା । ଏଠି ସମସ୍ତେ ଅତିଥି । ଏତେ ବଡ଼ ଘରର ମାଲିକ ଜଣେ । ତା ଘରକୁ ସମସ୍ତେ ଆସନ୍ତି । ତାରି ଇଚ୍ଛାରେ, କେତେ ଭଙ୍ଗୀରେ ଥେଇ ଥେଇ ହୋଇ ନାଚନ୍ତି । ଯେତେ ଜୀବନ- ସେତେ ଭଙ୍ଗୀ, ସେତେ କଥା, ସେତେ ଗୀତ । ଛଇ କାଢ଼ି କାଢ଼ି ସମସ୍ତେ ଅଥା ହୋଇଯାଉଥାନ୍ତି । ମାତ୍ର ଯାହାର କୁହୁକରେ ସେମାନେ ଏତେ ସରି ହେଉଥାନ୍ତି, ତାକୁ ସେମାନେ ଚିହ୍ନି ନ ଥାନ୍ତି କି ଦେଖି ନ ଥାନ୍ତି । ତା ତୁଣ୍ଡର ଭାଷା ବି ଶୁଣି ନ ଥାନ୍ତି । ପ୍ରହରାଜେ ସେହି ଅଦୃଶ୍ୟ ଘରର ଅତିଦୃଶ୍ୟମାନ ମାଲିକକୁ 'କେଳା' କହିଛନ୍ତି । ତାର ବିଚିତ୍ର ରୁଚି ଓ ବିଚାରକୁ 'ବିଜାର' କହିଛନ୍ତି । କାରଣ ତା ଘରେ ଆତଯାତ ମଣିଷମାନଙ୍କର ଜୀବନ ବଞ୍ଚିବାର ଭାବ ବଡ଼ ବିଚିତ୍ର । କେତେବେଳେ ସେମାନେ ମହମହ ବାସୁଥାନ୍ତି ତ, ଆଉ କେତେବେଳେ ମଡ଼ା ପରି ଗନ୍ଧେଉଥାନ୍ତି । କେତେବେଳେ ଠୋ ଠୋ ହସୁଥାନ୍ତି ତ, କେତେବେଳେ ଭେଁ ଭେଁ କାନ୍ଦୁଥାନ୍ତି । ମଣିଷ ଗନ୍ଧେଇବାର ପ୍ରଧାନ କାରଣ, ତା ପେଟରେ ଜମାଟ ବାନ୍ଧି ରହିଥିବା ପଚରା ମଳ । ଯୋଉ ମଣିଷ ଗନ୍ଧ ସୃଷ୍ଟିକାରୀ ମଳକୁ ବାହାର କରିପକାଏ - ସେ ନିଜ ଭିତରେ ଏକ ସୁଖକର ଜୀବନ ବଞ୍ଚୁଥାଏ । ମାତ୍ର ଅନେକେ ମଳକୁ ପଦାରେ ପକାଇବାକୁ ସାହସ କରିପାରନ୍ତି ନାହିଁ । ଅନ୍ୟମାନେ କାଳେ ସେମାନଙ୍କ ମଳମୟ 'ମହ'କୁ ଦେଖିଦେବେ, ବାହାରକୁ ଶତପୁଟ ସୁନାପରି ଚକ୍ ଚକ୍ କରୁଥିବା ସେମାନଙ୍କ ମହାନ୍ ବ୍ୟକ୍ତିତ୍ୱର ଭିତର ବିଭବ କାଳେ ଧରାପଡ଼ିଯିବ,

ସେଥିପାଇଁ ଅତି ଯତନରେ ମଳଗୁଡ଼ିକୁ ଥାକମାରି ରଖିଥାନ୍ତି । ଏଇ ସାଇତି ରଖିବା ମାନସିକତା ସେମାନଙ୍କ ପାଇଁ କାଳ ହୁଏ । ତାହା ସେମାନଙ୍କୁ କେବଳ ଅସୁସ୍ଥ କରେ ନାହିଁ, ସମଗ୍ର ପରିବେଶକୁ ପ୍ରଦୂଷିତ କରେ । ପ୍ରହରାଜ ଜୀବନ ଓ ସଂସାରର ଏଇ ଗୂଢ଼ ସତ୍ୟକୁ ବୁଝିଥିଲେ ବୋଲି ସକଳଙ୍କ ପାଖରେ ଆପଣାକୁ ଖୋଲି ଦେଉଥିଲେ । ସେମିତି କାମ ସବୁ ବି କରୁଥିଲେ । ତେଣୁ ସେଥିପାଇଁ ସଂସାରୀମାନଙ୍କ ବିଶେଷ ବିଶେଷ ଅଂଗମାନଙ୍କରୁ ପୁରସ୍କାରସ୍ୱରୂପ ବିଧା, ଚାପୁଡ଼ା, ଖୁନ୍ଦା, ନାତ, ଗୋଇଠାମାନ ବି ପାଉଥିଲେ । ଅନ୍ୟମାନଙ୍କ ଅନୁକଂପାରୁ ଯେତେ ବିଶେଷ ବିଶେଷ ପଦାର୍ଥ ପାଇଲେ ମଧ ଜମାରୁ ଦବି ଯାଉ ନ ଥିଲେ, ବରଂ ଅଧିକ ଉତ୍ସାହର ସହିତ ଆପଣାକୁ ଖୋଲି ଦେଉଥିଲେ । ସମ୍ଭବତଃ ଏମିତି ଖୋଲି ହୋଇଯିବା ତାଙ୍କ ଜନମ ଘଡ଼ିମୂଳ ଥିଲା । ତେଣୁ ପ୍ରହରାଜଙ୍କ ସମଗ୍ର ଜୀବନ ଓ ସାହିତ୍ୟକୁ ଆମେ ଆତ୍ମସମୀକ୍ଷଣ ଓ ବିରେଚନ ମାନସିକତାର ମହାଗ୍ରନ୍ଥ କହିପାରିବା ଏବଂ ସେହି ଗ୍ରନ୍ଥରେ ସଂଯୋଜିତ ସୂତ୍ରମାନଙ୍କ ମାଧମ ଦେଇ ସମକାଳୀନ ସମାଜ ଓ ଜନଜୀବନକୁ ମଧ ପଢ଼ିପାରିବା । ତାଙ୍କ ଜୀବନ ଗ୍ରନ୍ଥ ଆମ ଜୀବନକୁ ପ୍ରଦୂଷିତ କରେନି, ବରଂ ଚେତନାକୁ ଯେ ପରିଶୋଧନ କରେ - ଅନୁରୂପ ମନ୍ତବ୍ୟକୁ ସ୍ୱୀକାର କରିବା ।

ପ୍ରହରାଜଙ୍କ ସୁଦୀର୍ଘ ଜୀବନକାଳ ଭାରତବର୍ଷର ନବଜାଗରଣର ପଲ୍ଲବନରୁ ପ୍ରାୟ ପଳାୟନ ପର୍ବ ପର୍ଯ୍ୟନ୍ତ ପ୍ରସାରିତ । ଅର୍ଥାତ୍ ସେତେବେଳକୁ ଭାରତୀୟମାନେ ବିଦେଶୀମାନଙ୍କ ସଂସ୍ପର୍ଶରେ ଆସି ଭାରତୀୟତାକୁ ଅନୁଭବ କଲେଣି ଏବଂ ଦେଶୀମାନଙ୍କ ଚେତନାରେ ଭାରତୀୟତାର ବୀଜାୟନ ଭାବକୁ ଲକ୍ଷ୍ୟ କରି ଗୌରବାନ୍ୱିତ ଉପନିବେଶବାଦୀମାନେ ଆତଙ୍କିତ ହୋଇପଡ଼ିଲେଣି । ମଣିଷ ଭିତରେ ଭାଷା, ଧର୍ମ, ଜାତି, ବୃତ୍ତି ଓ ବିଚାରକୁ ଆଳ କରି ଯେଉଁ ଅହଂପଣ ଗମାତ୍ କରୁଥାଏ, ତାକୁ ସେନାପତି କରି ଆପେ ମଙ୍ଗଳବାର ପାଳନରେ ମତ୍ତ ରହିଲେଣି । ଭାରତୀୟମାନଙ୍କ ବିଚାରରେ ପାରମ୍ପରିକତା - ଆଧୁନିକତା, ଆଞ୍ଚଳିକତା - ମହାଜାତୀୟତା, ଧାର୍ମିକତା - ଆଧାତ୍ମିକତାକୁ ଭିତ୍ତି କରି ମହାଗୋଳମାନେ ରାଜକୀୟ ରୀତିରେ ମଂଚାସୀନ ହେଲେଣି । ଦେଶମାନଙ୍କର ସାଂସ୍କୃତିକ, ରାଜନୀତିକ ଓ ସାମାଜିକ ଅବହାଉଆ ବଦଳିବାକୁ ଆରମ୍ଭ କଲାଣି ଏବଂ ଏକ ଅରୁଣାୟିତ ଦିଗନ୍ତ ଆଡ଼କୁ ସେମାନଙ୍କ ଅଭୀପ୍ସା ଉନ୍ମୁଖତା ପ୍ରକାଶ କଲାଣି ।

ତାଙ୍କ ଜନ୍ମ ଜମିଦାର ପରିବାରରେ, ସେକାଳର କଟକ ଜିଲ୍ଲାର କୋଦିଣ୍ଡା ପ୍ରଗଣା ଅନ୍ତର୍ଗତ ସିଦ୍ଧେଶ୍ୱରପୁର ଗ୍ରାମରେ - ୧୮୭୪ ମସିହା ସେପ୍ଟେମ୍ବର ମାସ ନଅ ତାରିଖରେ । ତାଙ୍କ ପୂର୍ବପୁରୁଷ ଶ୍ରୀଯୁକ୍ତ କିଣେଇ ଆଚାର୍ଯ୍ୟ ପୁରୀ ଜିଲ୍ଲାର ବୀରଗୋବିନ୍ଦପୁର ଶାସନର ଅଧିବାସୀ ଥିଲେ । ପ୍ରଗଣାର ଜମିଦାର ଅଯୋଧାରେ ରହୁଥିଲେ ଏବଂ ଆଚାର୍ଯ୍ୟ ତାଙ୍କ ପ୍ରତିନିଧି ହୋଇ ଜମିଦାରିର ତଦାରଖ କରୁଥିଲେ । କିଣେଇ ଆପଣାର ବିଚକ୍ଷଣ ବୁଦ୍ଧି ଓ ଶ୍ରମ ବଳରେ ସମୟକ୍ରମେ ଜମିଦାରିକୁ ନିଜର କରିନେଲେ, ପ୍ରଜାମାନଙ୍କର ଶାସକ ହେଲେ ଏବଂ ଶାସନ କ୍ଷେତ୍ରରେ ପ୍ରଜାମାନଙ୍କର ପ୍ରୀତିଭାଜନ ହୋଇପାରିଥିଲେ । କାର୍ଯ୍ୟଦକ୍ଷତା ଯୋଗୁଁ ଓଡ଼ିଶାର ଗଜପତିଙ୍କଠାରୁ ତାଙ୍କ ଉତ୍ତରାଧିକାରୀମାନେ ଚୌଧୁରୀ, ରାୟଗୁରୁ, ପାତ୍ରଷୀ, ପ୍ରହରାଜ ଓ ସାମନ୍ତରାୟ ଆଦି ବିଶେଷ ଉପାଧିମାନ ପାଇଥିଲେ । ସେହି ନ୍ୟାୟରେ କିଣେଇଙ୍କର ପୁତ୍ର ଶ୍ରୀଧର ଆଚାର୍ଯ୍ୟ, ଶ୍ରୀକର ପ୍ରହରାଜ ହେଲେ । ଗୋପାଳ ଚନ୍ଦ୍ର ପ୍ରହରାଜ ଶ୍ରୀକରଙ୍କର ପୌତ୍ର ଓ ନରସିଂହଙ୍କର ପୁତ୍ର ।

ଗୋପାଳଙ୍କ ଚେତନାରେ ଜଣେ ବ୍ରାହ୍ମଣ ଓ ସାମନ୍ତ, ଉଭୟର ଅହଙ୍କାର ବେଶ୍ ସକ୍ରିୟ ଥିଲା । ସେ ପ୍ରାଚୁର୍ଯ୍ୟ ଓ ରକ୍ଷଣଶୀଳତାର ଭୂମି ଉପରେ ବଢ଼ିଥିଲେ । ନିଜ ବଂଶ ଦ୍ୱାରା ପ୍ରତିଷ୍ଠିତ ସ୍କୁଲରେ ଚତୁର୍ଥ ଶ୍ରେଣୀ ପର୍ଯ୍ୟନ୍ତ ପାଠପଢ଼ିଥିଲେ ଏବଂ ୧୮୮୭ ମସିହାରେ, ମାତ୍ର ଏଗାର ବର୍ଷ ବୟସରେ କଟକସ୍ଥ ରେଭେନ୍‌ସା କଲେଜିଏଟ ସ୍କୁଲରେ ପଞ୍ଚମ ଶ୍ରେଣୀରେ ନାଁ ଲେଖାଇଲେ । ଏଗାର ବର୍ଷ ବୟସରେ ସେ କଟକୀ ହୋଇଗଲେ । କଟକ ଆସିବାର କାରଣ - ତାଙ୍କ ବାପା ବୋଉଙ୍କ ମନରେ ବଡ଼ପୁଅକୁ ହାକିମ ବେଶରେ ଦେଖିବା ସପନ ତଙ୍କ ମେଲୁଥିଲା । ୧୮୯୧ ମସିହାରେ ସେ ରେଭେନ୍‌ସା କଲେଜିଏଟ ସ୍କୁଲରୁ ଏନ୍‌ଟ୍ରାନ୍‌ସ ପାସ୍ କଲେ, ରେଭେନ୍‌ସା କଲେଜରେ ଏଫ୍.ଏ. ଶ୍ରେଣୀରେ ନାଁ ଲେଖାଇଲେ । ଏନ୍‌ଟ୍ରାନ୍‌ସ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରିଥିବାରୁ ମାସକୁ ପନ୍ଦର ଟଙ୍କା କରି ସରକାରୀ ବୃତ୍ତି ବି ପାଇଲେ । ମାତ୍ର ନାନା କାରଣରୁ ଏଫ.ଏ. ଶ୍ରେଣୀର ଗାର ଡେଇଁବା ତାଙ୍କ ପକ୍ଷେ ସହଜ ହେଲା ନାହିଁ । ଥରେ ନୁହେଁ, ଦୁଇଥର କଚଡ଼ା ଖାଇଲେ ଏବଂ ତୃତୀୟ ଡିଆଁରେ ଅନ୍ୟମାନଙ୍କୁ ପଛରେ ପକାଇ, ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଗଲେ । ଏଥର ସେ କଟକରୁ ଗଲେ କଲିକତା ଇଂଜିନିୟରିଂ ପଢ଼ିବା ପାଇଁ । ଇଂଜିନିୟରିଂ ପରିବର୍ତ୍ତେ ଓକିଲାତି ପଢ଼ିଲେ । ୧୯୦୨ ମସିହାରେ, ୨୮ ବର୍ଷ ବୟସରେ ବି.ଏଲ. ଡିଗ୍ରୀ ଧରି କଲିକତାରୁ କଟକ ଫେରିଲେ । ଓକିଲାତିକୁ ଜୀବନର ବୃତ୍ତି କଲେ ।

ସେକାଳରେ କଟକ ସହରର ପ୍ରହରାଜ ସାଂଗ୍ୟାଧାରୀ ଯେଉଁ ପ୍ରାୟ ତିରିଶ ବର୍ଷ ବୟସ୍କ ମଣିଷଜଣକ ସ୍ୱାତନ୍ତ୍ର୍ୟ ଜାହିର ପାଇଁ ଆପଣାକୁ ପ୍ରସ୍ତୁତ କରୁଥିଲେ, ତାଙ୍କ ମାନସିକତା ବହୁ ପରସ୍ପର ବିରୋଧୀ ଆଦର୍ଶର ଥିଲା ଚମତ୍କାର ସମବାୟ । ବ୍ରାହ୍ମଣ୍ୟବାଦ, ସାମନ୍ତବାଦ ଓ ସୁବିଧାବାଦ - ବାଦତ୍ରୟୀର ଭୂତାଣୁରେ ଆପଣା ଜୀବନକୁ ପୁଷ୍ଟ କରି ସେ ସମାଜ ଜୀବନକୁ ଆସିଲେ । ସେ ପ୍ରଥମେ ଜବର ଧକ୍‌କା ଖାଇଲେ ଭାଙ୍ଗି ପଡୁଥିବା ସାମନ୍ତବାଦୀ ଅହଂକାର ପଥରଗଦାରେ । ସାଆନ୍ତମାନଙ୍କ ଜୀବନ ବଡ଼ ବିଚିତ୍ର ଥିଲା । ସେମାନେ ସାହେବ ବନିବାକୁ ନାକବୁଡ଼ା ଚେଷ୍ଟା କରୁଥିଲେ । ମାତ୍ର ହାରି ଯାଉଥିଲେ । ମିଛ ବଡ଼ଲୋକିର ଗୁମାନ ସେମାନଙ୍କ ଘିଅ ଘଡ଼ିକୁ ପୋଡ଼ି ପକାଉଥିଲା । ଆଗରେ ଭେକର ଝାଡ଼ ଧରି, ବାଣ ମାରି, ରୋଶଣି କରି ସେମାନେ ବାଟ ଚାଲୁଥିଲେ । ଭେକକୁ ଆକାଶୀ କରିବା ପାଇଁ ମହାଜନମାନଙ୍କ ସିରସ୍ତାରେ ହାତ ପାତୁଥିଲେ । ବିନୋଦ ପାଇଁ ନାଟ, ତାମସା ଓ ଉତ୍ସବମାନଙ୍କର ଆୟୋଜନ କରୁଥିଲେ । ସଂପତ୍ତି ବିକୁଥିଲେ । ପ୍ରଜାମାନଙ୍କୁ ବିଲ, ବାରିରେ ଆଠପହର ଖଟାଉଥିଲେ । ଭୟ ଦେଖାଇ ମନଇଚ୍ଛା ଖଜଣା ଆଦାୟ କରୁଥିଲେ । ଶୋଷଣର ହଜାର ଗଳି ଉପଗଳି ତିଆରି କରିଥିଲେ । ପ୍ରତିବାଦୀମାନଙ୍କୁ କଳ, ବଳ, କଉଶଳ ପ୍ରୟୋଗ କରି ମଣେଉଥିଲେ ଛଳନାକୁ ଜୀବନ ବଞ୍ଚିବାର କୋସର କରିନେଇଥିଲେ । ପ୍ରହରାଜଙ୍କ ମଗଜରେ ଏହି ବିଶେଷ ଗୁଣମାନେ ଗୋଟାପଣେ ଭେଦି ରହିଥିଲେ । ସେ କଟକ ସହରରେ ତ ରହୁଥିଲେ । ନିଜ ହିଂସାରେ ପଡ଼ିଥିବା ଜମିଦାରିର ତଦାରଖ କରିବା ପାଇଁ ଘୋଡ଼ାଗାଡ଼ିରେ ଚଢ଼ି ମଝିରେ ମଝିରେ ଗାଁକୁ ଯାଉଥିଲେ । ଅନେକ ଦଂଠାମାର୍କା ରୟତଙ୍କୁ ହାତରେ ରଖିଥିଲେ । ଯାନି, ଯାତ୍ରା, ପର୍ବ ପାର୍ବଣରେ ବିଶ୍ୱାସୀମାନଙ୍କୁ ବକ୍‌ସିସ୍, ନୂଆ ଲୁଗା, ଆହୁରି କେତେ କଣ ଦେଇ ତୁଷ୍ଟ କରୁଥିଲେ ଏବଂ ଦୁଷ୍ଟିଆମାନଙ୍କୁ ମଣ କରିବା ପାଇଁ

ପାଟ, ଯଥା ଓ ମୁକୁଟ ପରିହିତ ରଜା, ମହାରଜା, ମହନ୍ତ, ଜମିଦାର ଓ ବାବୁମାନଙ୍କର ମହା ମେଲଣ, ଆତସବାଜିର ଚମକ, ପ୍ରସ୍ତାବମାନଙ୍କର ଆଗତ ଓ ସ୍ୱୀକୃତି, ଧୁମ୍ ଭୋଜିଭାତ, ଉଚ୍ଛକିତ ଭାଷଣ ଏବଂ ଅନ୍ୟ ଏକ ବର୍ଷ ପର୍ଯ୍ୟନ୍ତ ମହାଶୟନକୁ ସେ ସହିପାରୁ ନ ଥିଲେ । ନେତାମାନେ "ଓଡ଼ିଶା ମାତାକୁ କେତେବେଳେ ପାଟପଟନୀ, କେତେବେଳେ ପିଚା ପାଡ଼ିଆଶାଢ଼ି, କେତେବେଳେ କେକୁଣୀ କଛା, କେତେବେଳେ ଗାଉନ, କେତେବେଳେ ବାହୁ ଖଡୁ, କେତେବେଳେ ବ୍ରାସଲେଟ ଏବଂ ଯେତେବେଳେ ଯାହା ମନ ତାହା ପିନ୍ଧେଇ ମଞ୍ଚ ଉପରେ ତାମସା କରନ୍ତି," ଭୋଗୀ ନେତାମାନେ "ଏ ଭୂମିକୁ ମୌରସୀ ସମ୍ପତ୍ତି ଭଳି ନିଗୂଢ଼ ଦଖଲି ସ୍ୱତ୍ୱ ପ୍ରମାଣ କରିବାକୁ ଦିବାନିଶି ତତ୍ପର", "ଅଧିକାର କାଳେ ସେମାନଙ୍କର ହାତଛଡ଼ା ହୋଇଯିବ ବୋଲି ଭୀତତ୍ରସ୍ତ" ଏବଂ ସେହି ନ୍ୟାୟରେ ସେମାନେ "ପରସ୍ପରର ବାଜା ବଜେଇବାରେ ଓସ୍ତାଦ, ମିଉଚୁଆଲ ଆପ୍ରିସିଏସନ ସୋସାଇଟିର ସଭ୍ୟ" ଆଦି କଡ଼ା ଶବ୍ଦରେ ନିଜ ବିଚାର ବ୍ୟକ୍ତ କରୁଥିଲେ । ସମସ୍ତ ଉତ୍କଳବାସୀ ଓ ଉତ୍କଳଭାଷୀ ଏକ ଶାସନାଧୀନ ହୋଇଗଲେ ସେମାନଙ୍କର ଜାତୀୟ ଉନ୍ନତି, ରାଜନୀତିକ ଏକତା, ଜାତୀୟ ଜୀବନ ଯେ ବହଳ ହୋଇପାରିବ - ଏକଥା ସେ ବିଶ୍ୱାସ କରୁ ନ ଥିଲେ । ଓଡ଼ିଶା ବା ଓଡ଼ିଆ ଜାତିର ଜନ୍ମଜାତକ ତାଙ୍କ ପାଇଁ ଥିଲା - ପାଟକନାରେ ଗୁଡ଼ା ହୋଇଥିବା ସୁଲିଖିତ ଓ ସୁଦୃଶ୍ୟ 'ଭଣ୍ଡ ଇସ୍ତାହାର' (ଆମ ଘରର ହାଲଚାଲ) ମଞ୍ଚ ଉପରର ଭାଷଣବାଜିରେ ନେତାମାନଙ୍କର ଲାଭଖୋରି ଓ ଫିସାଦି ମାନସିକତାକୁ ସେ ଠାବ କରିଥିଲେ ଏବଂ କହୁଥିଲେ - ଯେପର୍ଯ୍ୟନ୍ତ ଉତ୍କଳର ଜାତୀୟ ଅଭିଧାନରୁ ଓଡ଼ିଆ ଜାତିର ଆଧୁନିକ କନ୍‌ସେନ୍‌ଟ୍ରିକ (କେନ୍ଦ୍ରିକ), ଅର୍ଥ (ଓଡ଼ିଆ ଜାତିର ଅନ୍ତର୍ଭୁକ୍ତ, ମୋ ସଂପ୍ରଦାୟର ଅନ୍ତର୍ଭୁକ୍ତ, ମୋ ଗ୍ରାମର ଅନ୍ତର୍ଭୁକ୍ତ, ମୋ ଦଳର ଅନ୍ତର୍ଭୁକ୍ତ, ମୋ ଅନୁଗ୍ରହ ଦୃଷ୍ଟିର ଅନ୍ତର୍ଭୁକ୍ତ, ସୌଭାଗ୍ୟବନ୍ତ ବ୍ୟକ୍ତି ବିଶେଷ), ସଂସ୍କାର ପ୍ରକ୍ରିୟା ଆରମ୍ଭ ହୋଇ ନାହିଁ, ଯେପର୍ଯ୍ୟନ୍ତ ହୋମରୁଲ (ସ୍ୱାୟତ୍ତ-ଶାସନ) ବୋଲ, ଉତ୍କଳ ଇଉନିଅନ (ସମଗ୍ର ଉତ୍କଳଭାଷୀ ପ୍ରଦେଶର ଏକତ୍ରୀକରଣ) ବୋଲ, ଓଡ଼ିଶା ଫର ଓଡ଼ିଆ (ଓଡ଼ିଶାରେ ଓଡ଼ିଆଙ୍କର ଷୋଳପଣ କିସ୍‌ମତ) ବୋଲ, ଏଗୁଡ଼ିକ ଜାତୀୟ ଅବନତି ଦିଗକୁ ଅଗ୍ରସର ହେଉଥିବ ଏବଂ ଯେଉଁ ସାଂପ୍ରଦାୟିକ ଓ ବ୍ୟକ୍ତିଗତ ନୀଚତା ଆମକୁ ଇଣ୍ଡିଆନ (ଭାରତୀୟ) ସୀମାରୁ ଟାଣି ଆଣି ଓଡ଼ିଆରେ ପହଞ୍ଚାଇଛି- ସେହି ସଂକୀର୍ଣ୍ଣତା ଯୋଗୁଁ ଆମରି ଭିତରେ ଚାରି ଜାତି, ଛତିଶ ପାଟକ, ବ୍ରାହ୍ମଣ-ଶୂଦ୍ର, କରଣ-ଖଣ୍ଡାୟତ, କ୍ଷତ୍ରିୟ-ମହାନାୟକ, ଶାସନୀ-ପଣ୍ଡା, ତନ୍ତୀ-ତାମିଳ, ତେଲୀ-ତୁଳାଭିଣା, ଜାତୀୟା-ଅନ୍ତର, କଟକୀ-ପୁରିଆ, ସମ୍ବଲପୁରିଆ, ଗଞ୍ଜାମିଆ, ସହରୀ-ମଫସଲୀ, ବଜାରୀ-ହାଟୁଆ, ଛୁଆଁ-ଅଛୁଆଁ ଆଦି ହରେକ୍ କିସମର ଭେଦ ଜ୍ଞାନରେ ପକାଇ ସ୍ୱାର୍ଥାନ୍ଧତାର ପଙ୍କରେ ଆମକୁ ଘୋଷାରୁ ଥିବ । ଏଥିରୁ କେତେଗୁଡ଼ିଏ ଦୁର୍ଗୁଣ ଶିକ୍ଷା ଦ୍ୱାରା ପରିହାର୍ଯ୍ୟ, କେତେଗୁଡ଼ିଏ ଦୁର୍ଗୁଣ ମାନବ ପ୍ରକୃତିର ଅପରିହାର୍ଯ୍ୟ, ସେଗୁଡ଼ିକ ଯଥାସାଧ୍ୟ ଦୂର ଓ କମ୍ କରିବା ହିଁ ମନୁଷ୍ୟତା । ବ୍ୟକ୍ତିଗତ ଉନ୍ନତି ଓ ଉଦାରତା ବ୍ୟତିରେକେ ଜାତୀୟ ଉନ୍ନତିର ଆଶା ସୁଦୂର ପରାହତ, ଓଡ଼ିଆମାନଙ୍କ ଦାବି ବୃଥା ଭାବୁକୀ ଆଧାରିତ ଏବଂ ତାହା ସେମାନଙ୍କର କେବଳ ଜାତୀୟ କିଳିକିଳା ରଡ଼ି, ଦୋହି ଜଗନ୍ନାଥ ରଡ଼ି ବୋଲି "ଆମ ଘରର ହାଲଚାଲ" ଓ "ଦୁନିଆର ହାଲଚାଲ" ଆଲୋଚନାର ବହୁ ଅଧ୍ୟାୟରେ ଉଲ୍ଲେଖ କରିଥିଲେ । ବୃଥା ଗୋଳକୁ

ନିବୃତ୍ତ ହେବା ପାଇଁ ଉତ୍କଳପ୍ରେମୀମାନଙ୍କୁ ପରାମର୍ଶ ଦେଇଥିଲେ ଏବଂ ସମଗ୍ର ଭାରତବର୍ଷ ରେସ୍‌ପନସିବ୍‌ଲ ଫର୍ମ ଅଫ ଗଭର୍ଣ୍ଣମେଣ୍ଟ (ଦାୟିତ୍ୱଶୀଳ ସରକାର) ହେବା କାଳରେ ଓଡ଼ିଶା ଇଂରେଜମାନଙ୍କ ଦ୍ୱାରା ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ ହେବ ନାହିଁ - ଅନୁରୂପ ଆଶା ପୋଷଣ କରିଥିଲେ ।

୧୯୧୯ ମସିହା ବେଳକୁ ସମ୍ମିଳନୀର କାର୍ଯ୍ୟଧାରା ପ୍ରତି ସେ ଅତି ବିମୁଖ ହୋଇ ପଡ଼ିଥିଲେ । ସମ୍ମିଳନୀରେ ଆପଣା ଆପଣାକୁ ସ୍ୱାଭିମାନୀ, ଜାତୀୟତାବାଦୀ ଦାବି କରୁଥିବା କେତେକ ବ୍ୟକ୍ତିଙ୍କର ''ହାମ୍ ବଡ଼ା ନୀତି, ବ୍ୟକ୍ତିଗତ ଖିଆଲ । ବ୍ୟକ୍ତିଗତ ଗୋପଲୀଳା ସୁଆଙ୍ଗ ଓ ବ୍ୟକ୍ତିଗତ ପ୍ରତିଷ୍ଠା ଆକାଙ୍କ୍ଷା''ର ରଙ୍ଗମଞ୍ଚ ଓ ''ମନଗଢ଼ା ମିଆଦ'' ବୋଲି ସେ ଆକ୍ଷେପ କରିଥିଲେ । ଅନୁଷ୍ଠାନର ଆର୍ଥିକ ସ୍ଥିତି ଓ ସଫଳତା ସମ୍ପର୍କରେ କର୍ମକର୍ତ୍ତାମାନଙ୍କୁ ସେ ପ୍ରଶ୍ନ କରିଥିଲେ ଏବଂ ମଞ୍ଚପାଖରୁ ଦୂରେଇ ଯାଇଥିଲେ । ମାତ୍ର ଏହାର କାରଣ ନୁହେଁ ଯେ, ସେ ଉତ୍କଳୀୟମାନଙ୍କ ପାଇଁ ମଞ୍ଚର ଆବଶ୍ୟକତାକୁ ଅସ୍ୱୀକାର କରୁଥିଲେ । ମଞ୍ଚର ଆର୍ଥିକ ସ୍ଥିତି ଓ ଓଡ଼ିଆମାନଙ୍କର ଦାବି ଉପସ୍ଥାପନର ଦୁର୍ବଳ ଦିଗ ସମ୍ପର୍କରେ କର୍ମକର୍ତ୍ତାମାନଙ୍କୁ ସେ ବାରମ୍ବାର ସଚେତନ କରିଦେଉଥିଲେ, ଲୋକମାନଙ୍କୁ ଆନ୍ଦୋଳନରେ ସାମିଲ କରିବା କଥା କହୁଥିଲେ ଏବଂ ତାଙ୍କ ବିଚାର ପ୍ରତି ଗଦିନସିନମାନଙ୍କ ଉପେକ୍ଷା ଭାବ, ମଞ୍ଚ ଛାଡ଼ିବା ନିମିତ୍ତ ତାଙ୍କୁ ଏକ ପ୍ରକାରର ବାଧ୍ୟ କରିଥିଲା । ମାତ୍ର ମଧୁବାବୁଙ୍କ ସହିତ ତାଙ୍କ ବ୍ୟକ୍ତିକ ସଂପର୍କ ଥିଲା ଖୁବ୍ ଆନ୍ତରିକ । କୁଳବୃଦ୍ଧଙ୍କୁ ସେ''ଉତ୍କଳର ନବନିର୍ମାତା'' ବୋଲି ଘୋଷଣା କରିଥିଲେ ଏବଂ ବଙ୍ଗଳାର 'ସୁରେନ୍ଦ୍ର ନାଥ'ଙ୍କ ସହିତ ତାଙ୍କୁ ତୁଳନା କରିଥିଲେ ।

ନିଜ ଗାଁ ସିଦ୍ଧେଶ୍ୱରପୁର ଓ କଟକ ସହରରେ ବହୁ ଲୋକହିତକର ଅନୁଷ୍ଠାନ ଗଢ଼ଣର ସେ ସୂତ୍ରଧର ଥିଲେ । ନିଜ ଗାଁରେ ମାଇନର ସ୍କୁଲ, ପାଠାଗାର, ହରିଭକ୍ତି ପ୍ରଦାୟିନୀ ସଭା, କଟକ ସହରରେ ରାମକୃଷ୍ଣ କୁଟୀର (ତେଲଙ୍ଗା ବଜାର) ଗୋଶାଳା (ଚାଉଳିଆଗଞ୍ଜ) ତାଙ୍କ ଅର୍ଥ, ଶ୍ରଦ୍ଧା ଓ ଶ୍ରମର ସ୍ୱାକ୍ଷର । ଏତଦ୍‌ବ୍ୟତୀତ ସାକ୍ଷିଗୋପାଳ ଓ ଲିଙ୍ଗରାଜ ମନ୍ଦିର ପରିଚାଳନା ବୋର୍ଡ଼ରେ ମଧ୍ୟ ସେ ସଦସ୍ୟ ଥିଲେ ।

ସମାଜ-ଜୀବନ ପରି ପ୍ରହରାଜଙ୍କ ବ୍ୟକ୍ତିକ ଜୀବନ ଥିଲା ବହୁ ବିରୋଧାଭାସର ଚମତ୍କାର ସ୍ୱୀକାରୋକ୍ତି । ଆପଣା ଭିତରୁ ବାହାରି ସେ ବୃହତ୍ତର ସମାଜର ସୀମା ଭିତରକୁ ପଶି ଯାଉଥିଲେ । ସମାଜର ସକଳ ଶ୍ରେଣୀର ମଣିଷମାନଙ୍କ ସହିତ ମିତ ବସୁଥିଲେ ଏବଂ ପୁଣି ଫେରିଆସୁଥିଲେ ନିଜ ପାଖକୁ । ଆପଣାର ଅନୁଭବକୁ ରମ୍ୟ ରୀତିରେ ପ୍ରକାଶ କରୁଥିଲେ । ତେଣୁ ଆମେ ତାଙ୍କ ରଚନାସମୂହକୁ ଆତ୍ମସମୀକ୍ଷଣ ଓ ପ୍ରଜ୍ଞାର ସମୀକରଣ କହିପାରିବା ।

ସମକାଳୀନ ସମାଜରେ ବଞ୍ଚୁଥିବା ଯେଉଁ ବିଶିଷ୍ଟମାନଙ୍କର ଜୀବନ ତାଙ୍କୁ ଚକିତ ଓ ବ୍ୟଥିତ କରୁଥିଲା - ସେମାନେ ଆମ ସାଂସ୍କୃତିକ ଜୀବନରେ ଥିଲେ ସ୍ୱତନ୍ତ୍ର ଓ ମର୍ଯ୍ୟାଦା ସମ୍ପନ୍ନ । ମାତ୍ର ସମାଜ-ଅୟନରେ ସେମାନେ ଥିଲେ ଅନ୍ୟ କିଛି । ଜଣକୁ ଆଉଜଣକ ସହିତ ସମଗ୍ର ଜୀବନ ବଞ୍ଚିବା ଲାଗି ପରିବାର ଓ ସାମାଜିକ ବିଧି ଅନୁଗତ ହେବାକୁ ପଡୁଥିଲା । ନାରୀ ଓ ପୁରୁଷ ସଂସାର କରିବା ଆଗରୁ ସଂସାରକୁ ଜାଣୁ ନ ଥିଲେ । କିଏ କାହା ସହିତ ସଂସାର ବାନ୍ଧିବ ସେକଥା

ସ୍ଥିର କରୁଥିଲା ପରିବାର ଓ ସମାଜ ଏବଂ ସେଥିପାଇଁ ବିଧି, ପ୍ରବିଧି ଓ ଉପବିଧିମାନଙ୍କୁ କଡ଼ା କରି ସେମାନଙ୍କ ହାତ ଓ ବେକରେ ଏତେ ଯତନରେ ଗଳେଇ ଦିଆଯାଉଥିଲା ଯେ, ହଲଚଲ ହେବା ପାଇଁ ସେମାନଙ୍କର ଜୁ ନ ଥିଲା । ନାରୀମାନଙ୍କର ଜୀବନ ଥିଲା ପୁରୁଷମାନଙ୍କଠାରୁ ଅଧିକ କରୁଣ । ଦାଣ୍ଡରେ ଧୂଳି ଖେଳୁ ଖେଳୁ କୋଉ ସଂପର୍କୀୟର କାଖରେ ବସି ସାରା ଜନମ ବଞ୍ଚିବା ପାଇଁ ଆଉ କାହା ସହିତ ଗଣ୍ଠି ପଡ଼ିଯାଉଥିଲେ । କେତେକ ଧବକୁ ଆଖି ଖୋଲି ଦେଖିବା ଆଗରୁ ଧବହୀନ ହୋଇ ପଡୁଥିଲେ, ଆଉ କେତେକ ଧବଙ୍କ ବାର୍ଦ୍ଧକ୍ୟକୁ ବଳାୟିତ କରୁଥିଲେ । ଧବ-ମନସ୍କତାର ପ୍ରମାଣସ୍ୱରୂପ ଆପେ ଧବଳାୟିତ ହୋଇ ଜୀବନକୁ ତର୍ପଣ କରୁଥିଲେ । ଈଶ୍ୱରଙ୍କ ଅପାର କରୁଣାରୁ ଯେଉଁମାନେ ସଂସାରର କୋଳାହଳ ଭିତରେ ଜୀବନ ବଞ୍ଚୁଥିଲେ, ସେମାନଙ୍କ ବଞ୍ଚିବାର ମାର୍ଗ ମଧ୍ୟ ଥିଲା ବିଚିତ୍ର । ଦୁଇପ୍ରାଣୀ ଦିନର ଆଲୁଅରେ କେହି କାହାକୁ ଭେଟିପାରୁ ନ ଥିଲେ ଏବଂ ରାତିରେ ଆଲୁଅ ଲିଭାଇ ଦେଇ ଆପଣା ଗୁମୁଟି ଭିତରେ ଗୃହଧର୍ମ ପାଳନ କରୁଥିଲେ । ଅନେକ ବଡ଼ ବଡ଼ ପରିବାରରେ ଦୁଇପ୍ରାଣୀ ତ ପରସ୍ପରକୁ ଚିହ୍ନିପାରୁ ନ ଥିଲେ ଏବଂ ଆପଣା ଆବେଗକୁ ଲଗାମ ଦେଇ ନ ପାରି ଯଦି ଅକାଳେ ସକାଳେ ବିକାଳେ କୋଉଠି ଚତୁରାକ୍ଷ ହୋଇ ଯାଇଥିଲେ - ସେମାନଙ୍କୁ ଚାରିପାଖରେ ଜଗି ରହିଥିବା ଆଉମାନେ ତତ୍‌କ୍ଷଣାତ୍ ସେମାନଙ୍କ ଦେହରେ 'ଅଲାଜୁକ, ଅଲାଜୁକୀ'ର ଛାପ ଦେଇ ଦାଣ୍ଡରେ ଥୋଇ ଦେଉଥିଲେ । ସମାଜରେ ନାରୀମାନଙ୍କର ଯେମିତି ଏକମାତ୍ର ଆବଶ୍ୟକତା ଥିଲା ଭବିଷ୍ୟଦ୍‌ମାନଙ୍କୁ ଜନ୍ମଦେବା, ଲାଳନପାଳନ କରିବା ଏବଂ ପୁରୁଷପୁଙ୍ଗବମାନଙ୍କର ଯାବତୀୟ ସ୍ୱେଚ୍ଛାଚାରିତାର ଶିକାର ହେବା ।

ପ୍ରହରାଜଙ୍କ ଜୀବନକୁ ଆମେ ଉପର୍ଯ୍ୟୁକ୍ତ ବ୍ୟବସ୍ଥାର ଏକ ଚମତ୍କାର ଉଦାହରଣ ରୂପରେ ଗ୍ରହଣ କରିପାରିବା । ସେ ଅଠର ବର୍ଷ ବୟସରେ ବାହା ହୋଇଥିଲେ, ତାଙ୍କ କନିଆଁ ମୁକ୍ତାମଣିଙ୍କର ବୟସ ସେତେବେଳକୁ ଥିଲା ମାତ୍ର ଆଠ । ବାହାହେଲା ବେଳକୁ ବ୍ରହ୍ମା ବିଷ୍ଣୁ ବି ଶିଖି ନ ଥିଲେ । କଲେଜପଢୁଆ ପ୍ରହରାଜ ପରମ୍ପରାର ଦୌରାତ୍ମ୍ୟକୁ ମାନସିକ ସ୍ତରରେ ସ୍ୱୀକାର କରିପାରୁ ନ ଥିଲେ ସତ, ମାତ୍ର ଗୁରୁଜନମାନଙ୍କ ଆଗରେ ତୁଣ୍ଡ ଖୋଲି କିଛି କହିବାର ସାହସ ତାଙ୍କର ନ ଥିଲା । ପତ୍ନୀକୁ ପାଠ ପଢ଼ାଇବା ଲାଗି ସେ ସିଦ୍ଧାନ୍ତ ନେଲେ, ଉପାୟ ଖୋଜିଲେ ଏବଂ ଏ କ୍ଷେତ୍ରରେ ତାଙ୍କୁ ବିଶେଷ ସାହାଯ୍ୟ କଲେ ପରିବାରର ବିଦେଇ ବାରିକ । ବିଦେଇଙ୍କ ହାତରେ ମୁକ୍ତାମଣିଙ୍କ ପାଖକୁ ଲୁଚେଇ ଲୁଚେଇ ବହି, ଖାତା, ସିଲଟ, ଖଡ଼ି, କଲମ ପଠାଇଲେ । ମାତ୍ର ତାଙ୍କ ଚତୁରପଣ ବୋଉ ପାଖରେ ଧରା ପଡ଼ିଗଲା । ବୋଉ ତାଙ୍କୁ ତାଗିଦ କରି କହିଲେ - ''ଗୋପାଳ, ତୁ ତ ମୋତେ ବୋହୂପାଖକୁ ଜିନିଷ ପଠେଇବା କଥା କହିଥିଲେ, ମୁଁ ବିଦେଇ ବାରିକ ହାତରେ ପଠେଇ ପାରିଥା'ନ୍ତି । ତୁ ଲୋକ ପଠେଇବାରୁ ରାହଙ୍ଗରେ ହାଟ ବସିଛି । ଯାହା ବୋହୂପାଖକୁ ପଠେଇବା କଥା ଏଣିକି ମତେ କହିବୁ । ମୁଁ ପଠେଇଦେବି ।'' (ପ୍ରହରାଜ ପରିକ୍ରମା : ପୃ ୧୧୬) ସବୁଠାରୁ ମଜା କଥା- ସ୍ତ୍ରୀ ବାରବର୍ଷ ବୟସରେ ଘରଯୋଗ୍ୟା ହେବା ପର୍ଯ୍ୟନ୍ତ ସେ ମାତ୍ର ଚାରି ପାଞ୍ଚଥର ତାଙ୍କ ଭେଟ ପାଇଥିଲେ ଏବଂ ପ୍ରତିଥର ଭେଟଣା ହେବାର ସମୟ ଥିଲା ପ୍ରାୟ ଚାରି/ପାଞ୍ଚ ମିନିଟ୍ । ଏଥିପାଇଁ ତାଙ୍କ ବୋଉକୁ ମଧ୍ୟ କମ୍ ଫିସାଦି କରିବାକୁ ପଡୁ ନ ଥିଲା । ନୂଆ ବୋହୂକୁ ଘର ଭିତରେ ପୂରେଇ ଦେଉଥିଲେ ଏବଂ କାଉ କୋଇଲିଟିଏ ଯେପରି

ତାର ଟେର୍ ନ ପାଏ, ସେଥିପାଇଁ ଦୁଆର ମୁହଁରେ ଜଗି ବସୁଥିଲେ । ପ୍ରଥମ ରଜୋଦର୍ଶନ ପରେ ପତ୍ନୀଙ୍କର ଗଣ୍ଡଦୋଷ ଲାଗିଯିବାରୁ ତାଙ୍କ ମୁଖ ଦର୍ଶନ କରିବା ପାଇଁ ବିଚରା ତରୁଣ ସ୍ୱାମୀଙ୍କୁ ଆହୁରି ଗୋଟିଏ ବର୍ଷ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଥିଲା । ଯଥାସମୟରେ ପାପ କ୍ଷାଳନ ଉଦ୍ଦେଶ୍ୟରେ ପାରମ୍ପରିକ ବିଧିବିଧାନ ପାଳନ କରାଗଲା । ପ୍ରହରାଜ ବଡ଼ ଆଗ୍ରହରେ ଶ୍ରୀମତୀଙ୍କୁ ଭେଟିବାକୁ ଗଲେ । ମାତ୍ର ସାଂସାରିକ ସୁଖ ଆସ୍ୱାଦିବାରେ ସେ ସମର୍ଥ ହୋଇପାରିଲେ ନାହିଁ । ଆନୁଷ୍ଠାନିକ ସ୍ୱୀକୃତି ସତ୍ତ୍ୱେ ସେ ଘରଯୋଗ୍ୟା ହୋଇ ନ ଥିଲେ । ଏପରି ବ୍ୟବସ୍ଥା ଭିତରେ ଜୀବନ ବଞ୍ଚୁଥିବା ଗୋପାଳଙ୍କ ପାଦ ଆପଣାଛାଏଁ ଖସଡ଼ା ବାଟରେ ପଡ଼ିଯାଇଥିଲା । ତାଙ୍କ ସୁଖବଂଚିତ ତାରୁଣ୍ୟ ଦେହ ଓ ମନର ଶୋଷ ମେଣ୍ଟାଇବା ପାଇଁ ଅନ୍ୟ ଘାଟମାନଙ୍କରେ ବୁଡ଼ ପକାଇବା ଆରମ୍ଭ କରିଦେଲା ।

ଶୋଷ ମେଂଟଣ ପାଇଁ ବହୁଘାଟୀ ହେବା ସମକାଳୀନ ପ୍ରହରାଜମାନଙ୍କର ଏକ ପ୍ରକାରର ଅହଙ୍କାର ଓ ବିଳାସ ଥିଲା । ଗାଁମାଟି ଛାଡ଼ି ସହର ଛୁଉଁଥିବା ଅଧିକାଂଶ କଲେଜ ପଢ଼ୁଆ ଓ ଚାକିରିଆବାବୁ, ଜମିଦାର, ସାମନ୍ତ ଓ ସେମାନଙ୍କର ଔଲାଦମାନେ ବେଶ୍ୟା ଘରକୁ ଯାଉଥିଲେ । ମଦ ଓ ଅଫିମ ସେବନ କରୁଥିଲେ । ଏହା ଥିଲା ସେବକାଳର ଫେସନ । ଏ ଫେସନ କ୍ରମଶଃ ଆବଶ୍ୟକତାରେ ରୂପାନ୍ତରିତ ହୋଇଯାଉଥିଲା । ଅନେକ ରକ୍ଷିତା ରଖୁଥିଲେ ଏବଂ ଏହା ଥିଲା ସେମାନଙ୍କର ବଂଶ ଓ ପଦବୀର ଆଭିଜାତ୍ୟର ଲକ୍ଷଣ । ସେମାନେ ମୁଖଲଜ୍ଜା ମଧ ପାସୋରି ପକାଉଥିଲେ । ବିଶିଷ୍ଟ ବ୍ୟକ୍ତିମାନଙ୍କ ଦ୍ୱାରା ଆୟୋଜିତ ଗଣେଶ ମୂର୍ତ୍ତି ଶୋଭାଯାତ୍ରାରେ ବାଈମାନଙ୍କୁ ନଚାଯାଉଥିଲା । ଅନେକଙ୍କ ବୈଠକଖାନାରେ ମଧ ଓସ୍ତାଦ ଓ ବାରବିଳାସିନୀମାନଙ୍କର ଆସର ଜମୁଥିଲା । ରାଜା ଓ ଜମିଦାରମାନଙ୍କ ଉଆସକୁ କଳା ଓ ଲାବଣ୍ୟର ପସରା କରି ସୁରସିକାମାନଙ୍କୁ ପଠାଯାଉଥିଲା ଏବଂ ସେମାନଙ୍କ ମଧ୍ୟରୁ ଅନେକ ନିଜ ନିଜର ବ୍ୟକ୍ତିତ୍ୱ ବଳରେ ସାମନ୍ତତନ୍ତ୍ରକୁ ନିୟନ୍ତ୍ରଣ କରୁଥିଲେ । ସହର ଓ ଧର୍ମପୀଠଗୁଡ଼ିକ ଥିଲା କାମତୃଣୀମାନଙ୍କର ବିହାର ଓ ଯୋଗାଣ ଭୂମି । ଜମିଦାର ପୁତ୍ର ଓ ନବଶିକ୍ଷିତ ପ୍ରହରାଜ ଅନ୍ୟ ଅନେକଙ୍କ ପରି ସେଇ ବାଟରେ ଚାଲିଲେ । ତଳତେଲଙ୍ଗା ବଜାରରେ ରସର ପସରା ମେଲିଥିବା ବରବର୍ଣ୍ଣିନୀମାନଙ୍କ ପଣତରେ ପଣିଦେଲେ । ରସିକ ବେଶରେ ପ୍ରଥମେ ପ୍ରଥମେ ରାତିରେ ଯାଉଥିଲେ । ସଙ୍ଗ ସୁଖ ଏତେ ମଜା ଲାଗିଲା ଯେ, ଦିନରେ ବି ଗଲେ । ଦିନ ଓ ରାତିକୁ ସମାନ ଭାବିଲେ । ଗଲାବେଳେ ଆଉ କୁଆଡ଼କୁ ଚାହୁଁ ନ ଥିଲେ, ଆଉ କାହାକୁ ଡରୁ ନ ଥିଲେ । ସେ ଅଧିକାଂଶ ଦିନ କଲେଜ ଯାଉ ନ ଥିଲେ, ଯିବାବାଟ ବି ଭୁଲି ଯାଉଥିଲେ । କଲେଜର ହାଜିରା ଖାତାରେ ଉପସ୍ଥାନ ପକାଇବା ବ୍ୟବସ୍ଥା କରିଥିଲେ । ବାରାଙ୍ଗନାମାନଙ୍କ ଆନନ୍ଦ ପାଇଁ ଏବଂ ସେମାନଙ୍କ ଫରମାସି ମୁତାବକ କେତେ ପ୍ରକାରର ଅଙ୍ଗଲାଗି ବଜାରରୁ କିଣି ନେଉଥିଲେ । ଦେହ ଖେଳକୁ ଅଧିକ ପ୍ରୀତିପ୍ରଦ କରିବା ଉଦ୍ଦେଶ୍ୟରେ ‘ମକାର’ ପଦାର୍ଥମାନଙ୍କ ପରିଚର୍ଚ୍ଚାରେ ମତ୍ତ ହେଲେ ଏବଂ ତାଙ୍କ ଐକାନ୍ତିକ ସେବାରେ ତୁଷ୍ଟ ହୋଇ ଦେହ ଭିତରକୁ ପଶିଆସିଲେ ମଧୁମେହ ଓ ଉପଦଂଶ ଆଦି ବ୍ୟାଧି-ସାମନ୍ତମାନେ । ତାଙ୍କ ମାର୍ଜାର ପଣ କିନ୍ତୁ ଦିନେ ବାପାଙ୍କ ଆଖିରେ ଧରା ପଡ଼ିଗଲା । ବାପା ତାଙ୍କୁ ରାଜକୀୟ ରୀତିରେ ଶାସନ କରି ନ ଥିଲେ । ମଜା ଗପଟିଏ କହିଥିଲେ । ଜୀବନ ବିଷୟରେ ସଚେତନ କରିଦେଇଥିଲେ ।

ଓକିଲାତି ବୃଦ୍ଧିର ବାଣ ମାରୁଥିଲେ । ବିଶେଷତଃ ପୈତୃକ ସଂପତ୍ତି ତାଙ୍କ ସହର ନିର୍ଭର ଜୀବନକୁ ସବୁବେଳେ ହଟହଟା କରୁଥିଲା ।

ସେମାନେ ଥିଲେ ସାତ ଭାଇ, ଆଠ ଭଉଣୀ । ବାପା ନରସିଂହ ପ୍ରହରାଜ ବଞ୍ଚିଥିଲାବେଳେ ସଂପତ୍ତି ବାଣ୍ଟୁରାକୁ କେନ୍ଦ୍ର କରି ସେମାନଙ୍କ ମନରେ ଅବଶ୍ୟ ଅସନ୍ତୋଷର ନିଆଁ ଜଳୁଥିଲା । ମାତ୍ର କେହି ତୁଣ୍ଡ ଖୋଲି ଅନ୍ତରର କଥା କହି ପାରୁ ନ ଥିଲେ । ବୁଢ଼ା ଚାଲିଗଲା ପରେ (୧୯୧୪) ଘରପୋଡ଼ା ନିଆଁ ତାର ପ୍ରକୃତ ନାଟ ଆରମ୍ଭ କରିଦେଲା । ୧୯୧୫ ମସିହାରେ ସାନଭାଇମାନେ ନିଜ ନିଜ ପାଇଁ ନିଆରା ନିଆରା ହାଣ୍ଡି କଲେ । ଏକାନ୍ନବର୍ତ୍ତୀ ପରିବାରରେ ଚାଲିଥିବା ବାଦୀ ପାଲାର ଚଅଁର ଖେଞ୍ଚାର ମୁକାବିଲା କରି ନ ପାରି ପ୍ରହରାଜ ଗାଁର ପଶ୍ଚିମ ମୁଣ୍ଡରେ ନୂଆ ଘର ତିଆରି କଲେ । ସେଠିକି ଉଠିଆସିଲେ । ଅନ୍ୟ ଭାଇମାନେ ରହିଲେ ପୁରୁଣା ଖଞ୍ଜାରେ । ପରିବାରର ପ୍ରାୟ ପ୍ରତ୍ୟେକ ନିଜ ନିଜର ଜୀବନକୁ ସୁଖ ଓ ଅୟସରେ ବଞ୍ଚିବା ପାଇଁ ଅଧିକରୁ ଅଧିକ ଟଙ୍କା ଖୋଜୁଥିଲେ । ମହାଜନମାନଙ୍କର ଦ୍ୱାରସ୍ଥ ହେଉଥିଲେ । ମାତ୍ର ଠିକ୍ ସମୟରେ ଦେଣା ପରିଶୋଧ କରିପାରୁ ନ ଥିଲେ କି ଜମିଦାରିର ଛଳ ପରମ୍ପରାକୁ ମଧ ଛାଡ଼ି ପାରୁ ନ ଥିଲେ । ନିଜ ନିଜର ଭବିଷ୍ୟତ୍‌କୁ ସଜାଡ଼ିବା ପାଇଁ ଚାକରବାକର, ଦାସୀ, ପୋଇଲୀ, ଗୁମାସ୍ତା ଓ ପାଖଲୋକମାନେ ଓର ଉଣ୍ଡି ସେମାନଙ୍କ ଅଣ୍ଟି ପୂରୋଉଥିଲେ । ଉଜୁଡ଼ା ଢିଅ ଉପରେ ସମୟ ତାର ସହଚର, ସହଚରୀମାନଙ୍କ ସହିତ ଖେମଟା ନାଚୁଥିଲା । ପ୍ରହରାଜ ସେହି ନାଟର ଥିଲେ ପ୍ରଧାନ ଅଭିନେତା । ସଂପତ୍ତିର ଭାଗ ବଣ୍ଟୁରା ଧନ୍ଦାରେ ସେ ପ୍ରାୟ ସବୁ ସମୟରେ ବ୍ୟସ୍ତ ରହୁଥିଲେ । ଜୀବନର ପ୍ରାୟ ଆଠ ନ' ବର୍ଷ ଯାବତୀୟ ବାଜେ କାମରେ ପାଣିପରି ବହିଗଲା । ଅହଂର ଅଣଚାଶ ପବନରେ ପାପରା ସାମନ୍ତବାଦର ପରମ୍ପରା ବୃଷଣହୀନ ବୃଷଭ ପରି ମାଟି ଉପରେ ପେଟେଇ ପଡ଼ିଲା । ସେ ସବୁ ଦେଖୁଥିଲେ । ଅଥଚ ତୁଣ୍ଡ ଖୋଲି ଆହା କରିପାରୁ ନ ଥିଲେ ।

ପ୍ରହରାଜ ଆପଣା ବୃତ୍ତି ପ୍ରତି ମଧ ଏତେ ଶ୍ରଦ୍ଧାଶୀଳ ନ ଥିଲେ । ତାଙ୍କ ମାନସିକତାରେ ଓକିଲାତି - ଅଲରା, ଅସନା ଓ ନିଉଛୁଣା ବୃତ୍ତି ଓ ଓକିଲମାନେ ଗୋଳିଆ ପାଣିର ଓଧ । ସେମାନେ ପୋଖରୀରେ ପଶନ୍ତି । ପାଣି ଗୋଳିଆ କରନ୍ତି । ଜଳଚର ବଂଶ ବୁଡ଼ାନ୍ତି ଓ ବୁଡ଼େଇବାର କାରଣ ହୁଅନ୍ତି । ସେମାନେ ଘରମାନ ଭାଙ୍ଗନ୍ତି ଓ ସମାଜକୁ ଉଚ୍ଛନ୍ନ କରନ୍ତି । ବିଚରା ସରଳ ମଣିଷମାନଙ୍କ ମଥା ମଧ ବିଗାଡ଼ି ଦିଅନ୍ତି । କଳାକୁ ଧଳା ଓ ଧଳାକୁ କଳା ପ୍ରମାଣ କରିବାରେ ସଫଳ ହୁଅନ୍ତି । ପ୍ରହରାଜଙ୍କ ପରି ଜଣେ ଭାବବାଦୀ ସମ୍ଭବତଃ ଅନୁରୂପ ଜୀବନକୁ ସ୍ୱୀକାର କରିପାରୁ ନ ଥିଲେ । ସ୍ୱୀକାର କରିପାରିଥିଲେ ଭାରି ଭୟଙ୍କର ମଣିଷ ହୋଇପାରିଥାନ୍ତେ । କାରଣ ସେ କେବଳ ଓକିଲ ନ ଥିଲେ, ଜମିଦାର ବି ଥିଲେ । ସେହି ନ୍ୟାୟରେ ହଜାର ରୟତଙ୍କ ସହିତ ତାଙ୍କୁ ଝଗଡ଼ିବାକୁ ପଡୁଥିବ, ଅରଣାମାନଙ୍କୁ ମଣ କରିବାକୁ ପଡୁଥିବ, ମଣ କରିବାପାଇଁ ଘର ଉଜାଡ଼ିବା, ଥାଳ ଭାଙ୍ଗିବା ଆଦି କେତେ କେତେ ଅପ୍ରୀତିକର ଓ ଅମାନୁଷିକ ସିଦ୍ଧାନ୍ତମାନ ନେବାକୁ ପଡୁଥିବ । ଅଧିକରୁ ଅଧିକ ଅର୍ଥ ଉପାର୍ଜନ ପାଇଁ ଅନ୍ୟ ରାଜା ଓ ଜମିଦାରମାନଙ୍କ ପକ୍ଷରେ ମଧ ଓକିଲାତି କରିବାକୁ ପଡୁଥିବ । ହଁ, ଏ କାମମାନ କରିବା ଲାଗି ସେ କଳା କୋଟ ପିନ୍ଧି ଅବଶ୍ୟ ମିସଲ ତଳେ ଠିଆ ହେଉଥିଲେ । ମାତ୍ର କୋର୍ଟକୁ ପ୍ରେମିକା କରିପାରି ନ ଥିଲେ ।

ଭଲ ଓକିଲର ବାନା ଆକାଶରେ ଉଡ଼େଇ ପାରି ନ ଥିଲେ । କଥା ପ୍ରସଙ୍ଗରେ ବନ୍ଧୁ ଓ ସମଧର୍ମାମାନଙ୍କ ପାଖରେ ଏବଂ ଲେଖାରେ ନିଜକୁ ପୋଖତ ଟାଉଟର, ପେଞ୍ଚ ବିଦ୍ୟା ବିଶାରଦ 'ଗୋପାଳପୁରିଆ' ବିଶେଷଣରେ ପ୍ରକାଶ କରୁଥିଲେ । ଫଳତଃ କଚେରି ତାଙ୍କ ପାଇଁ ଥିଲା ଏକ ନିରର୍ଥକ ଆୟତନ, ପ୍ରହସନ ।

ସେ କେବଳ ଓକିଲାତି କରୁ ନ ଥିଲେ, ରାଜନୀତିର ପଶାପାଲିରେ ମଧ୍ୟ ସଜ ହୋଇ ବସି ପଡ଼ୁଥିଲେ । ପରାଧୀନ ଭାରତୀୟମାନଙ୍କୁ ଆତ୍ମ-ଶାସନର ସୁଯୋଗ ଦେବା ପାଇଁ ଗୋରା ସରକାର ସେକାଳରେ ମିଉନିସପାଲିଟି ପରିଷଦ, ଜିଲ୍ଲା ପରିଷଦ ଓ ବ୍ୟବସ୍ଥାପକ ସଭା ନାମରେ ଯେଉଁ ଆୟତନମାନ ଖୋଲିଥିଲେ, ସେଥିରେ ଅବୈତନିକ ସଦସ୍ୟ ବେଶରେ ଘୂରାଫେରା କରିବାକୁ ସେ କିଛି କମ୍ ଆଗ୍ରହୀ ନ ଥିଲେ । ଅନ୍ୟ ପ୍ରତିଯୋଗୀମାନଙ୍କ ସହିତ ସମରଭୂମିକୁ ସେ ଓହ୍ଲାଇ ପଡ଼ୁଥିଲେ । କେତେଥର ସେ ଜିଲ୍ଲା ପରିଷଦ ମିଉନିସ୍‌ପାଲିଟି ପରିଷଦର ସଭ୍ୟ ହୋଇଥିଲେ । ମାତ୍ର ବ୍ୟବସ୍ଥାପକ ସଭାର ସଦସ୍ୟ ହେବାର ଇଚ୍ଛା ତାଙ୍କର ଅପୂରଣ ରହିଯାଇଥିଲା । ମୁକୁଟ ହାତ ପାଖରୁ ଖସି ଯାଉଥିଲା । ସମକାଳୀନ ନେତାମାନଙ୍କର ଭିତିରି ପେଞ୍ଚରେ ସେ ଚାପି ହୋଇଯାଉଥିଲେ । ବିଦେଶୀ ଶାସକ ପ୍ରବର୍ତ୍ତିତ ସ୍ୱାୟତ୍ତ-ଶାସନ ବ୍ୟବସ୍ଥା ବା ହୋମରୁଲ ଏବଂ ଏହାର ଅନାହାରୀ ଅଧିକାରୀ (ଅନରାରି)ମାନଙ୍କ ମାନସିକତାକୁ ଭେଦିବା ପାଇଁ ତାଙ୍କ ଚାଣକ୍ୟ ଆଖି ଚଉପାଖକୁ ଉଖାରୁଥିଲା । ସେ ଅନୁଭବ କରିଥିଲେ - ଅନରାରି ନାମକ ସମ୍ମାନସୂଚକ ଶବ୍ଦରେ ଶୋଭାବନ୍ତ ପଦବୀ ପ୍ରକୃତପକ୍ଷେ 'ଅନାହାରୀ' ନୁହେଁ । ତୁଣ୍ଡରେ ଆତ୍ମ-ଶାସନର ନାରା ଦେଇ, ମଥାରେ ମହାସେବକର ପଗଡ଼ି ବାନ୍ଧି, ସୁଦୃଶ୍ୟ ଖଟୁଲିମାନଙ୍କୁ ଅଧିକାର କରିବାପାଇଁ ପରସ୍ପର ସହିତ ଝଗଡୁଥିବା ସାମନ୍ତମାନେ ସେବକ ନୁହନ୍ତି, ଅନ୍ୟ କିଛି । ଜାତି, ଧର୍ମ, ଭାଷା, ବୃତ୍ତି ଓ ଅର୍ଥ ସେବକ ନିର୍ବାଚନରେ ସତେ ଯେପରି ମୋହରା ହୋଇ ଭୋଟଦାତାମାନଙ୍କ ଅନ୍ଦର ମହଲମାନଙ୍କରେ ଭେଳିକି ଲଗାଉଥିଲେ ଏବଂ ମୋହବଡପୁଷ୍ଟ ଭାରତୀୟମାନେ ପ୍ରମାଣ କରିଦେଉଥିଲେ ଯେ ସେମାନେ ସ୍ୱାୟତ୍ତ ଶାସନ ଅଧିକାର ପାଇବା ପାଇଁ ଯୋଗ୍ୟ ନୁହନ୍ତି, ଅତି ଯୋଗ୍ୟ ।

କ୍ଷମତା ହାସଲ ଉଦ୍ଦେଶ୍ୟରେ ଯାବତୀୟ ଅକାର୍ଯ୍ୟକୁ ଆପଣେଇ ନେଇଥିବା ଶିକ୍ଷିତମାନେ ପ୍ରହରାଜଙ୍କ ବିଚାରରେ ଥିଲେ 'ନାମ୍‌ବଡ଼ା ଓ ଦର୍ଶନ ଥୋଡ଼ା' ଏବଂ ସାଧାରଣ ମଣିଷମାନେ ଥିଲେ 'ଚାହିଁ ଜଳକା' ଓ ମହାନ୍‌ମାନଙ୍କ ସ୍ୱାର୍ଥ ଯଜ୍ଞରେ 'ବଳିଭୋଗ' । ଦେଶ ସେବା, ଆତ୍ମତ୍ୟାଗ, ପ୍ରେମ, ଅହିଂସା ଆଦି ସୁଶ୍ରାବ୍ୟ ଶବ୍ଦ କପଟୀ ସେବକମାନଙ୍କ ଆତ୍ମସେବାର ଇସ୍ତାହାର । ପ୍ରହରାଜ କହୁଥିଲେ - ''ଯେଉଁ ଦେଶରେ ଆତ୍ମ-ଶାସନ ନାମରେ କର୍ମକର୍ତ୍ତାମାନଙ୍କର ଏପରି ଯୋଗ୍ୟତା ଅଛି । କେଉଁ ନିମକ ହାରାମ କହେ ଯେ, ଏ ଦେଶଟା ଆତ୍ମ-ଶାସନ ପାଇଁ ଉପଯୁକ୍ତ ନୁହେଁ । ଯେଉଁ ଦେଶରେ ଅନାହାରୀ ପ୍ରଭୁମାନଙ୍କର ପଦମାର୍ଜନ ପାଇଁ କଣ୍ଡପୁରୀ ଜଡ଼ାତେଲ ଆମଦାନୀ ହୁଏ, କେଉଁ ସୁପୁତ୍ର କହେ ଯେ, ଦେଶ ଆତ୍ମଶାସନ ପାଇଁ ପ୍ରସ୍ତୁତ ନୁହେଁ ।'' କଂଗ୍ରେସୀମାନଙ୍କୁ ସେ କହୁଥିଲେ 'କଂସେଇ' ଏବଂ ''ମହାତ୍ମାଗାନ୍ଧି ଥିବାଯାଏ ଟାଣିଓଟାରି ହୋଇ ଖଦଡ଼ ଆନ୍ଦୋଳନ ବଞ୍ଚି ରହିବ ଏବଂ ଏହାପରେ ଲୋପ ପାଇଯିବ'', ଏପରି ଅପ୍ରୀତିକର ମନ୍ତବ୍ୟ ଦେବାକୁ ସେ କିନ୍ତୁ ମଣୁ

ନ ଥିଲେ । ତାଙ୍କ ବିଚାରରେ ଭାରତୀୟ ଜାତୀୟ କଂଗ୍ରେସ୍ - ''ଅସାମାଜିକ ଓ ସ୍ୱାର୍ଥପରମାନଙ୍କର ଆପଦମୁକ୍ତ ଆୟତନ'', ନନ୍-କୋ-ଅପରେସନ, ନନ୍-ହେଟ୍ରେଡ୍ ଓ ନନ୍-ଭାଓଲେନ୍ସ-ସୁବିଧାବାଦର ଅଭିନବ ଅୟନ/ ଭାରତୀୟମାନେ ମାନସିକତାରେ ''ବଂଶମରା ଡାହୁକ, ଦରପୋଡ଼ା କାଠ'' ଏବଂ ଗାନ୍ଧିଜୀଙ୍କ ବିଚାର ଓ ଆଦର୍ଶ ଅନେକ ସୁବିଧାବାଦୀଙ୍କ ସୁଖ ବିହାର ପାଇଁ ଏକ କଣ୍ଟକାମୁକ୍ତ ମାର୍ଗ ।

ପ୍ରହରାଜଙ୍କ ଉପର୍ଯ୍ୟୁକ୍ତ ବକ୍ତବ୍ୟ ସମକାଳୀନ ଜାତୀୟତାବାଦୀମାନଙ୍କ ଚେତନାରେ ନିଆଁ ଲଗାଇ ଦେଇଥିଲା । ସେମାନେ ତାଙ୍କୁ ସହଜରେ ଛାଡ଼ି ଦେଇ ନ ଥିଲେ । ତାଙ୍କ ବଜାରୀ ମୁହଁରେ ତୁଣ୍ଡୀ ଦେବା ଲାଗି ସମପର୍ଯ୍ୟାୟୀ ଶବ୍ଦଗୁଡ଼ିକର ବାଣ ମାରୁଥିଲେ । ଇଂରେଜମାନଙ୍କର ଅଧମାଙ୍ଗ ମର୍ଦ୍ଦନକାରୀ, ତୋଷାମୋଦକ ବେଶରେ ତାଙ୍କୁ ବଜାରରେ ଠିଆ କରାଉଥିଲେ । ହଁ, ଏହା ଅବଶ୍ୟ ସତ ଯେ, ପ୍ରହରାଜ ଆପଣାର ଲେଖା ଓ କଥାରେ ଇଂରେଜମାନଙ୍କର ପ୍ରଶଂସା କରୁଥିଲେ । ଭାରତୀୟମାନଙ୍କର 'ସ୍ୱାଧୀନତା' ଦାବିକୁ ଅମୂଳକ କହୁଥିଲେ । ସଭାସମିତିରେ ଅତିପୁଲକିତ ଭାବରେ ଗୋରାମାନଙ୍କର ବନ୍ଦନା ଗାଉଥିଲେ । କହୁଥିଲେ - ''ଇଂରେଜମାନେ ପୃଥିବୀରେ ସ୍ୱାଧୀନତା ପ୍ରିୟ ଓ ସଭ୍ୟତମ ଜାତି ଏବଂ ସେମାନଙ୍କ ସଂସ୍ପର୍ଶରେ ଆସି ଭାରତ ଧନ୍ୟ ହୋଇଛି ।'' ଅସହଯୋଗ ଆନ୍ଦୋଳନ ଏକ ମହାଭ୍ରମ । ଗୋରା ଚମଡ଼ାର ମଣିଷ ଦେଖିଲେ, ସେ ଆନନ୍ଦରେ କୁରୁଳି ଉଠୁଥିଲେ । ସେମାନଙ୍କ କରୁଣାରୁ କୈଶର-ଇ-ହିନ୍ଦ୍ (୧୯୩୩), ରାୟବାହାଦୁର ଆଦି ଉପାଧିର ପାଗ ମଥାରେ ବାନ୍ଧିବା ଲାଗି ଭାରି ଲାଳାୟିତ ଥିଲେ ଏବଂ ପାଇଥିଲେ । ସେହି ମତଲବରେ ୧୯୩୦ ମସିହାରୁ ୧୯୩୬ ମସିହା ପର୍ଯ୍ୟନ୍ତ 'ସତ୍ୟ ସମାଚାର' ଏବଂ ୧୯୩୬ ମସିହା ନଭେମ୍ବର ୧୭ ତାରିଖଠାରୁ 'ପ୍ରଜାମିତ୍ର' ନାମକ ଅର୍ଦ୍ଧ ସାପ୍ତାହିକ ସମ୍ବାଦପତ୍ର ମଧ୍ୟ ପ୍ରକାଶ କଲେ । ମାତ୍ର ଇଂରେଜମାନେ ଯାବତ୍ ଚନ୍ଦ୍ରାର୍କ ଭାରତକୁ ଶାସନ କରୁଥାନ୍ତୁ, ଭାରତୀୟମାନେ ପରାଧୀନ ହୋଇ ରହିଥାନ୍ତୁ, ଏମତି ଏକ ବିଚାର-ବ୍ୟାଧିରେ ସେ ଯେ ସଂକ୍ରମିତ ଥିଲେ - ଏକଥା ଆଦୌ ସତ ନୁହେଁ । ଏପରିକି ଖଦଡ଼ ବ୍ୟବହାର ପ୍ରଚାରକମାନଙ୍କ ଧାଡ଼ିରେ ସାମିଲ ହୋଇଯାଉଥିଲେ । ଭାରତୀୟମାନଙ୍କର ସ୍ୱରୂପକୁ ସମ୍ଭବତଃ ସେ ଭିତିରି ଆଖିରେ ଅନୁଶୀଳନ କରିଥିଲେ ଏବଂ ସେମାନଙ୍କ ମନ୍ଦଗୁଡ଼ିକୁ ହିଁ ସେମାନଙ୍କ ଭିତର ଘରେ ଏବଂ ରାଜରାସ୍ତା ଉପରେ କେଡ଼େ ସୂତରରେ ରଖି ଦେଉଥିଲେ ।

ସେ ଲେଖିଥିଲେ - ଗୋରା-ଚମଡ଼ା-ମନସ୍କତା ପ୍ରଚଣ୍ଡ ଦାସତ୍ୱବୋଧ, ପରାଧୀନବୋଧ ଓ ପାଷାଣ୍ଡତା । କୌଣସି ଜାତି ଗୋରାମାନଙ୍କର ଅଧମାଙ୍ଗ ମର୍ଦ୍ଦନ କରି ବଡ଼ ହୋଇ ନାହିଁ ଏବଂ ଆପଣାର ସ୍ୱାର୍ଥ ପୂରଣରେ ଏତେ ଟିକିଏ ବାଧା ଆଣୁଥିବା ପ୍ରତିବାଦୀମାନଙ୍କୁ ଯେ କୌଣସି ଉପାୟରେ ଶେଷ କରିଦେବା ପାଇଁ ପଣ କରିଥିବା ଜାତୀୟତାବାଦୀମାନେ ସ୍ୱାଧୀନତା ପାଇବାକୁ ଯେ ଅଯୋଗ୍ୟ । ଏହା ସେ ଅନୁଭବ କରିଥିଲେ । ଭାରତୀୟମାନେ ସ୍ୱାଧୀନତା ପାଇବା ପାଇଁ ନିଜକୁ ଯୋଗ୍ୟ ଓ ସମର୍ଥ କରିପାରି ନାହାନ୍ତି, ଶିକ୍ଷା, ରାଜନୀତି, ଦେଶସେବା, ଭାଷା ଓ ସାହିତ୍ୟ-ପ୍ରୀତି ଓ ସଂସ୍କୃତି-ମନସ୍କତା ଆଦି ସକଳ କ୍ଷେତ୍ରରେ ଆପଣାର ଜୀବନୀ ଶକ୍ତିକୁ ଆକଳନ କରିପାରି ନାହାନ୍ତି । କ୍ଷମତା, ଅର୍ଥ ଓ ପ୍ରତିପତ୍ତି ବିସ୍ତାର ପାଇଁ ସେମାନେ ଯେପରି ନିଜ ନିଜ

ମଧରେ ସଂଗ୍ରାମରତ । ଦେଶସେବା, ଜନସେବା, ବିଦେଶୀ ଦ୍ରବ୍ୟ ବର୍ଜନ, ଜାତୀୟ ସ୍ୱାଭିମାନ ସେମାନଙ୍କ ଛଳ-ତ୍ୟାଗବୋଧର ଉଦାହରଣ । ଏ ଜାତି ଯେତେବେଳେ ନିଜକୁ ଚିହ୍ନିବ - ଗାନ୍ଧି ନାମକ ମଣିଷର ବିଚାରକୁ ଭେଦିବ, ନିଜର ସଂସ୍କୃତି ଓ ମର୍ଯ୍ୟାଦାବୋଧରେ ଜୀବନର ସତ୍ୟକୁ ଅନୁଭବ କରିବ, ଅର୍ଥାତ୍ ସ୍ୱାଧୀନତା ପାଇବା ପାଇଁ ଯୋଗ୍ୟ ହେବ, ସେତିକିବେଳେ ଅସଲ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେବ । ଜାତୀୟତାବୋଧ କହିଲେ - ଶତ୍ରୁ ଆଗରୁ ଆପଣାର ଦୋଷଗୁଡ଼ିକୁ ଗୋପନୀୟ ରଖିବା ନୁହେଁ, ତ୍ରୁଟିକୁ ପରିଷ୍କରଣ କରିବା; ଆନ୍ଦୋଳନ କହିଲେ - ତୁଚ୍ଛା ଆସ୍ଫାଳନ ନୁହେଁ, ଆତ୍ମ-ସମୀକ୍ଷଣ, ଆପଣାର ଗରୁତମ ଅହଂମାନଙ୍କୁ ମାଜି ସୂକ୍ଷ୍ମ କରିବା, ଅନ୍ୟ ଉନ୍ନତ ଜାତିମାନଙ୍କ ଆଡ଼କୁ ଚାହିଁବା ଏବଂ ସେମାନଙ୍କୁ ଆଦର୍ଶ ଭାବରେ ଗ୍ରହଣ କରି ନିଜ ପାଇଁ ବାଟ ତିଆରି କରିବା; ଦେଶାତ୍ମବୋଧ କହିଲେ - ଉପର୍ଯ୍ୟୁକ୍ତ ଆଦର୍ଶଗୁଡ଼ିକୁ ଜୀବନଗତ କରିବା କଥା ହିଁ ସେ ବୁଝୁଥିଲେ । ସଂଗ୍ରାମୀମାନଙ୍କୁ ଦେଖି, ବଜାରଘାଟରେ ଏଡ଼େ ବଡ଼ ପାଟିରେ ଯାହା ପାଟିକୁ ଆସୁଥିଲା ବକି ଯାଉଥିଲେ, ମାତ୍ର ତାଙ୍କ ଭିତରର ମଣିଷ ଆତ୍ମାରୁ ଲୁହ ଝରାଉଥିଲା । ଅନ୍ୟମାନଙ୍କୁ ଆତ୍ମସମୀକ୍ଷା କରିବା ପାଇଁ ଆହ୍ୱାନ ଦେଉଥିଲେ । ଜାତିରୋଗର ବୀଜାଣୁଗୁଡ଼ିକୁ ସମସ୍ତଙ୍କ ଆଗରେ ଧରା ପକାଇ ଦେଉଥିଲେ । ଯିଏ ଯେତେ ଧମକ ଦେଲେ, ସେ ଦବି ଯାଉ ନ ଥିଲେ । ବରଂ ଯୁଦ୍ଧଂ ଦେହିର ଡାକ ଦେଉଥିଲେ । ବାଣ ବିନ୍ଧିବା ଆଗରୁ ନିଜକୁ ସଜାଡ଼ିବା ପାଇଁ କହୁଥିଲେ । ସେ ବିଶ୍ୱାସ କରୁଥିଲେ - ଏକ ପ୍ରୀତିପ୍ରଦ ହୋରେ ମାତିଯିବା ଆନ୍ଦୋଳନ ନୁହେଁ, ତାହା ସାମୟିକ ଉତ୍ତେଜନା/ ଜାତି ଗଢ଼ିବା ପାଇଁ ଲୋଡ଼ା ଆଚାର ଓ ବିଚାରଗତ ପରିଶୁଦ୍ଧତା, ଉତ୍ସର୍ଗୀକୃତ ମାନସିକତା । ଯେଉଁ ମଣିଷଜଣକ ଜାତୀୟତାବୋଧ କହିଲେ ଏମିତି ଗୂଢ଼ ତତ୍ତ୍ୱକୁ ବୁଝିଥିଲେ, ତାଙ୍କୁ କ'ଣ ବିଜାତୀୟ କୁହାଯାଇପାରେ ? ମାତ୍ର ସମକାଳୀନ ସଂଗ୍ରାମୀମାନେ ତାଙ୍କ କଥାକୁ କିନ୍ତୁ ମଣୁଥିଲେ । ଅନ୍ୟ ଶବ୍ଦରେ କହିଲେ - ତାଙ୍କୁ ବୁଝିବାର ମାନସିକତାରେ ନ ଥିଲେ । ତାଙ୍କ କଥା ଓ ବିଚାରକୁ ପରିହାସ କରୁଥିଲେ ଏବଂ କହୁଥିଲେ - ଗୋରା ସେବକ, ବିଜାତୀୟ, ଗୋତ୍ରମାରୁ ଓ ଛିଦ୍ରାନ୍ୱେଷୀ ।

ପ୍ରହରାଜ ଭାରତକୁ ଯେମିତି ଭଲ ପାଉଥିଲେ, ଭାରତ ଭିତରେ ଓଡ଼ିଶା ନାମରେ ପରିଚିତ ଏକ ଆୟତନକୁ ସେମିତି ଭଲ ପାଉଥିଲେ । ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତିକୁ ନିଜ ଜୀବନ ପରି ମଣୁଥିଲେ । ଓଡ଼ିଆ ଭାଷା କହୁଥିବା ଏବଂ କହୁ ନ ଥିବା ଅଥଚ ଓଡ଼ିଶା ନାମକ ରାଜନୀତିକ ଆୟତନରେ ବଞ୍ଚୁଥିବା ମଣିଷମାନଙ୍କ ପାଇଁ ଏକ ନିର୍ଦ୍ଦିଷ୍ଟ ସୀମା ନିର୍ଦ୍ଧାରଣ ନିମିତ୍ତ ମଧୁସୂଦନ ଦାସଙ୍କ ନେତୃତ୍ୱରେ ଯେଉଁ ମଞ୍ଚ 'ଉତ୍କଳ ସମ୍ମିଳନୀ' ନାମରେ ଗଢ଼ା ଯାଇଥିଲା, ସେ ମଧ୍ୟ ତାହାର ଜଣେ ସଚେତନ କର୍ମୀ ଥିଲେ । ଉତ୍କଳ ସମ୍ମିଳନୀର ଜାତକ ତିଆରିରେ ସେ ପାଟଜ୍ୟୋତିଷ ଥିଲେ । ଯେଉଁ ସମକାଳୀନ ବିଶିଷ୍ଟମାନେ ମଧୁ ମଞ୍ଚକୁ ଏକ ଭୂତ କାରଖାନା କହି ନାକ ଟେକୁଥିଲେ, ସେ ସେମାନଙ୍କୁ କୁଳାଙ୍ଗାର, ଦେଶଦ୍ରୋହୀ ଓ ଜାତିଦ୍ରୋହୀ ଆଦି ଶବ୍ଦରେ ସମ୍ବୋଧନ କରୁଥିଲେ । ମାତ୍ର ୧୯୦୬ ମସିହା ବେଳକୁ ସମ୍ମିଳନୀ ସଂକ୍ରାନ୍ତ ତାଙ୍କ ବିଚାର ଓ ମତ କ୍ରମଶଃ ବଦଳିବାକୁ ଆରମ୍ଭ କଲା । ଏବଂ ପ୍ରାୟ ୧୭/୧୮ ମସିହା ବେଳକୁ ସମ୍ପର୍କ ତିକ୍ତ ହୋଇପଡ଼ିଥିଲା । ମଧୁବାବୁ ଓ ତାଙ୍କ ସମ୍ମିଳନୀର କାର୍ଯ୍ୟଧାରକୁ ସେ ସମାଲୋଚନା କଲେ । ପ୍ରତିବର୍ଷ ସମ୍ମିଳନୀ ମଞ୍ଚରେ

ଫିରିଙ୍ଗୀ ରୋଗ ସଂକ୍ରମିତ ବାବୁମାନେ ପ୍ରଥମେ ପ୍ରଥମେ ମହା ଆନନ୍ଦରେ ମୋଗଲବନ୍ଦି ଇଲାକାରେ କରାମତି ଜାହିର କରୁଥିଲେ । ସେମାନେ କ୍ରମଶଃ ବେଳକାଳ ଓ ସୁଯୋଗ ଉଣ୍ଡି ସିଂହ, ବାଘ, ବରାହ, ମହିଷ, ମଶକ, ଶ୍ୱାନ, ଶୃଗାଳ, ବାନର, ଘୁଷୁରି, ଶୂକର, ବେଙ୍ଗ ଓ କଙ୍ଗାରୁ ଆଦି କେତେ କେତେ ବେଶଧରି ଗଡ଼ଜାତ ମହଲ ଭିତରକୁ ପଶିଗଲେ । ଶ୍ୱାନ ଓ ଶ୍ୱାପଦ ଇବ ଆଟବି ଓ ହଜାର ପ୍ରକାର ସେବକ ଓ ସାମନ୍ତମାନଙ୍କ ଅଭୟଦାତା, ଅଧିପତି ଥିଲେ ରଜା ଓ ରାଣୀ । ସେମାନେ ଆପଣା ଆପଣାକୁ ସ୍ୱୟଂ ଈଶ୍ୱରପତ୍ର ଓ ପୁତ୍ରୀବତ୍ ଜ୍ଞାନ କରୁଥିଲେ । ସାହେବମାନେ ଦେଶୀ ସାମନ୍ତମାନଙ୍କୁ ସାଙ୍ଗରେ ନେଇ ସାକ୍ଷାତ୍ ଈଶ୍ୱର ଈଶ୍ୱରୀମାନଙ୍କ ସହିତ ମିତ ବସିଲେ । ମିତ୍ରତ୍ୱକୁ ଏତେ ମାତ୍ରାରେ ଗାଢ଼ ଓ ଗୂଢ଼ କରିଦେଲେ ଯେ ଗୋସ୍ପଦତୁଲ୍ୟ ଭୂମିର ଅଧିକାରୀମାନେ ନିଜ ନିଜକୁ ବିଶ୍ୱବିଜୟୀ ବୋଲି ଦାବି କଲେ ଏବଂ ନବତନ ମିତମାନଙ୍କ ବିହୁନେ ଜୀବନକୁ ଅସାର ମଣିଲେ । ତେଣୁ ସେକାଳ ଓ ଏକାଳ, ସେପଟ ଓ ଏପଟର କୋଳାକୋଳିରୁ ଯେଉଁ ନବ-ସଂକରମାନ ଜନ୍ମ ନେଲେ, ସେମାନେ ଭାରତର ଜନସାଧାରଣଙ୍କ ଜୀବନକୁ ରାଜକୀୟ ରୀତିରେ ମଣ କରିବାରେ ମତ୍ତ ରହିଲେ । ପ୍ରହରାଜଙ୍କ ଆଖିକୁ ପଣ୍ଡିମା, ଗଡ଼ଜାତିଆ ଓ ମୋଗଲବନ୍ଦିଆମାନେ ଗଧ, ବାନର, ତୋବଡ଼ା, ବାଆଁରା, ଅପାନ, ପୋଡ଼ା, ବିରୁଡ଼ି, ପିମ୍ପୁଡ଼ି, ରକତ, ଆମ୍ଭୁଲ, ସଳିତା, ଘଡ଼ି, ଜଳଜଳା, ପଲମ, ପିହାଣ ଛଂଚି, ଗୋ, ଗଧ, ଛତା, ମନ୍ତ୍ରୀ, ସନ୍ତ୍ରୀ, ହେଟା, ବାନ୍ଦର, ବାଘ, ଧନୁ, ଦରପୋଡ଼ା, ଭାଲୁ, ଛଉକା, ଭଙ୍ଗ, ସିଂହ, କୋକି, ପଟା, ବୋତଲ, ଶିଶି, ଟେରି, ଟିକା, ଗମ୍ଭୀରା, ଗାତି, ଭାଲିଆ, ବିଛୁଆତି, ଚଷମା, ଦାଢ଼ିଆ, ମିଛୁଆ, ଥାକୁଲା, ଲାଜକୋଳି, କୁଆ, ଶାଗୁଣା, ଚାଳ, ପାଳଚୁଂଟା, ବସନ୍ତ, ବରୁଣ, ଶଗଡ଼ଦଣ୍ଡା, ଚେମିଣି, ଗୋଧି, ବେଙ୍ଗ, ବିଛୁଡ଼ି, ଓଲୁଅ, ଲଙ୍କା, କଖାରୁ, କଦଳୀ ଓ ସାରୁ ମୁହଁପରି ଦିଶୁଥିଲେ । ସେମାନଙ୍କ ସୁଖ ବିହାର ଓ ପ୍ରୀତି ବର୍ଦ୍ଧନ ପାଇଁ ରାଜବାଟୀ, ମହାରାଜବାଟୀ, ଜମିଦାରବାଟୀ, ସାଆନ୍ତବାଟୀ, ଅନ୍ତରବାଟୀ, ପ୍ରତ୍ୟୟବାଟୀ, ପାଟରାଣୀବାଟୀ, ମହାରାଣୀବାଟୀ, ବାବାଜିବାଟୀ, ମାତାଜୀବାଟୀ, ମହନ୍ତବାଟୀ, ଶେଠବାଟୀ, ସାହୁକାରବାଟୀ, ମହାଜନବାଟୀ ଆଦି ଯେଉଁ ଯେଉଁ ବିଚିତ୍ର ବାଟୀମାନଙ୍କର ବ୍ୟବସ୍ଥା ଥିଲା ସେଗୁଡ଼ିକର ମଧ ବର୍ଣ୍ଣନା କରିଥିଲେ । ବିଶେଷତଃ ରାଜାମାନଙ୍କର "କାଠି ଲାଗି, ଶୂଳେଇ ବିଜେ, ତୁରଟ୍ ଲାଗି, ପନିଅର ଲାଗି, ଫୁଲୁରି ଲାଗି, ଦିହଲାଗି ଆଦି ଚଉଷଠୀ ଲାଗିଗୁଡ଼ିକର ବିଶଦ ବିବରଣୀ ଦେଲାବେଳେ ତାଙ୍କ ଦେହ ଯେମିତି କ'ଣ ହୋଇଯାଉଥିଲା, କଲମ ବିଳାପ କରୁଥିଲା । ମଦ୍ୟ, ମାଂସ, ମହିଳା ଆସକ୍ତ, ବର୍ବର ଓ ଅଲାଜୁକ, ଦେବମନସ୍କ ଏବଂ ଗୋବେ ପ୍ରମାଣ ଭୂମିର ବିଚରା ଈଶ୍ୱରମାନଙ୍କୁ ସ୍ୱପ୍ନରେ ଯୋଗ, ସ୍ୱପ୍ନରେ ରାଜଧାନୀ ଯୋଗ, ନନାଙ୍କ ବସ୍ତାନି ଆଦି ରଚନାଗୁଡ଼ିକରେ ସେ କଟୁ ସମାଲୋଚନା କରୁଥିଲେ ।

ଧର୍ମପୀଠ, ପୀଠାଧୀଶ ମହନ୍ତ ମହାରଜାମାନଙ୍କ ମହାତ୍ମ୍ୟ, ଭକତମାନଙ୍କର କିଳିକିଳା ରବ ପ୍ରହରାଜଙ୍କ ବିଚାରକୁ କିଛି କମ୍ ଚକିତ କରୁ ନ ଥିଲା । ଦୁନିଆର ହାଲଚାଲ ଆଲୋଚନାର ଗୋଟିଏ ଜାଗାରେ ସେ ଲେଖିଥିଲେ - ମକ୍କା, ମଦିନା, ଜେରୁଜେଲମ୍, ପୁରୀ, ବୃନ୍ଦାବନ, ବନାରସ ଯେଉଁ ଭୂମି ହେଉ, ସବୁଠି ମାତାଜୀ ଥା'ନ୍ତି, ବାବାଜି ବି ଥା'ନ୍ତି, ସେମାନଙ୍କର ଚେଲା

ଓ ଚାମୁଣ୍ଡାମାନେ ବି ଥା'ନ୍ତି । ସେମାନେ ବିଚରା ଦୂରାଗତ ଭକତ ଓ ବିଶ୍ୱାସୀମାନଙ୍କୁ ପାପପଙ୍କରୁ ଉଦ୍ଧାର କରିବା ଉଦ୍ଦେଶ୍ୟରେ ଦେବତାଙ୍କ ରୂପ ଓ ଗୁଣର ବେପାର କରୁଥା'ନ୍ତି । ସେମାନଙ୍କ ତାପ ଓ କୋପରେ ସବୁ ଅସମ୍ଭବ ସମ୍ଭବ ହେଉଥାଏ, ସବୁ ସମ୍ଭବ ଅସମ୍ଭବ ହେଉଥାଏ, ସବୁକିଛି ଚାଲୁଥାଏ ହାଉଆରେ । ଦେହର ବିଶେଷ ବିଶେଷ ଅଂଗମାନଙ୍କରେ ଚନ୍ଦନ, ରଙ୍ଗ ବେରଙ୍ଗର ଚିହ୍ନ ଲେଖି, ଭଳିକି ଭଳି ଲୁଗାପିନ୍ଧି, ତୁଣ୍ଡରେ ଦେବତାମାନଙ୍କର ଗୁଣଗାନ କରି, ବିଶ୍ୱାସ ଆୟତନର ଚାରିପାଖରେ ଦର୍ପ ପ୍ରକାଶୁଥିବା ଲଙ୍ଗଳାମାନେ ଯେ ପ୍ରକୃତରେ ସୁବିଧାବାଦୀ, ବହୁଭୋଗୀ, ବହୁଶୋଷୀ, ବହୁଭାବୀ, ବହୁଲାଗୀ ପରି ବହୁମାନଙ୍କର ଚଳମାନ ବିଶୃଙ୍ଖଳା - ଏକଥା ଜାଣି ସୁଦ୍ଧା ସାଧାରଣମାନେ ସେମାନଙ୍କୁ ଅବଜ୍ଞା କରିପାରନ୍ତି ନାହିଁ । ସେମାନେ ଦେହ କାଳଣ ବିଦ୍ୟାରେ ଧୁରୀଣ, ଉପଭୋଗ ପ୍ରବଣ, ଛଳବାହିନୀ ଓ ପ୍ରବଞ୍ଚକ, ମଣିଷର ସୂକ୍ଷ୍ମ ବିଶ୍ୱାସ, ଅଧ୍ୟାତ୍ମ ଅବବୋଧର ହତ୍ୟାକାରୀ । ଧର୍ମ ଶୋଷଣ ଓ ପ୍ରତାରଣାର ଯେ ଏକ ସୁଚିନ୍ତିତ ଘୋଡ଼ଣୀ - ସମାଜବିଜ୍ଞାନୀମାନଙ୍କର ଉପର୍ଯ୍ୟୁକ୍ତ ବିଚାରକୁ ସେ ସ୍ପଷ୍ଟ ଶବ୍ଦରେ ପ୍ରକାଶ କରୁଥିଲେ । ପ୍ରହରାଜ କେବଳ ବହି ପଢ଼ି ଏତେ କଥା ବୁଝି ନ ଥିଲେ । ଓଡ଼ିଶାର ମଠ, ମନ୍ଦିର, ମସଜିଦ୍‌ଗୁଡ଼ିକ ସହିତ ତାଙ୍କର ସମ୍ପର୍କ ଥିଲା । ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର, ପୁରୀର ସାକ୍ଷିଗୋପାଳ ମନ୍ଦିର ପରିଚାଳନା ସମିତିର ସେ ସକ୍ରିୟ ସଭ୍ୟ ଥିଲେ । ଶ୍ରୀଜଗନ୍ନାଥଙ୍କ ବିଚରଣ ଭୂମି ଶ୍ରୀକ୍ଷେତ୍ରରେ ଜୀବନର ତିନି ଚାରିବର୍ଷ ଖର୍ଚ୍ଚ କରିଥିଲେ । ମନ୍ଦିରଗୁଡ଼ିକର ସମ୍ପତ୍ତି, ସ୍ୱତ୍ୱ ଓ ମାଲିକାନାକୁ ଆଳ କରି ଚାଲିଥିବା କଳହର ସମାଧାନ ପାଇଁ ଅଦାଲତରେ ମୁଦେଇ ଓ ମୁଦାଲାମାନଙ୍କ ପକ୍ଷରୁ ଲଢ଼େଇ କରୁଥିଲେ । ତେଣୁ ଧର୍ମ ଓ ପୀଠ ସଂକ୍ରାନ୍ତ ତାଙ୍କ ବିଚାର ଥିଲା ଅଧ୍ୟୟନ ଓ ଅନୁଭବର ଇସ୍ତାହାର ।

ପ୍ରହରାଜ ନିଜ ଆଖି ଆଗରେ ଆପଣା ଭୂମିର ଅଧିବାସୀମାନଙ୍କ ପାରିବାରିକ ଓ ସାମାଜିକ ସଂପର୍କ ତୁଟିଯାଉଥିବା ଦୃଶ୍ୟ ଦେଖୁଥିଲେ । ସଭ୍ୟତାର କିମିଆରେ ଜଳକା ଶିକ୍ଷିତମାନଙ୍କର ନୂଆ ଗୃହଖିଆ ଡାଆଣୀ ପରି ଛଟକ ତାଙ୍କୁ ଅବଶ୍ୟ ଅନ୍ୟମନସ୍କ କରି ଦେଉଥିଲା; ମାତ୍ର ସାଧାରଣ ମଣିଷମାନଙ୍କର ସହର ପ୍ରୀତିକୁ ସେ ଆଦୌ ସ୍ୱୀକାର କରିପାରୁ ନ ଥିଲେ । ଓଧ ସାଙ୍ଗରେ ଭୂଆଁ ବିରାଡ଼ି ବାଇ ହେଲାପରି, ପାଠୁଆମାନଙ୍କ ପଛେ ପଛେ ସେମାନେ ସହରକୁ ଧପାଲୁ ଥିଲେ । ବଢ଼ି, ମରୁଡ଼ି, ପବନର ପ୍ରତାପ ମଧ୍ୟ ସେମାନଙ୍କୁ ଦାଣ୍ଡରେ ବସେଇ ଦେଉଥିଲା, ସେମାନଙ୍କ ଘର ଉଜାଡ଼ି ଦେଉଥିଲା । ପଶ୍ଚିମର ତାପରେ କୌଳିକ ବୃତ୍ତି ନିର୍ଭର ବଢ଼େଇ, କମାର, କୁମ୍ଭାର, ତନ୍ତୀ, ତୁଳାଭିଣା, ତେଲୀ, ଗୁଡ଼ିଆ, ଗଉଡ଼, ଭଣ୍ଡାରି ଆଦି ନିମ୍ନ ଜାତିର ଲୋକମାନେ ଅଭାବୀ ହୋଇପଡୁଥିଲେ । ଅତୀତର ସମାଜ-ବ୍ୟବସ୍ଥାରେ ଅବଶ୍ୟ ଜାତିଗତ ବୈଷମ୍ୟ ସକ୍ରିୟ ଥିଲା । ଉଚ୍ଚବର୍ଗୀମାନଙ୍କଦ୍ୱାରା ସେମାନେ ଶୋଷିତ ହେଉଥିଲେ । ତଥାପି ସେମାନେ ନିଜ ନିଜ ହାତ ଓ ବୁଦ୍ଧିର ତେଜରେ ବିଶିଷ୍ଟମାନଙ୍କୁ ବାନ୍ଧି ରଖିଥିଲେ । ପରସ୍ପରର ସୁଖଦୁଃଖରେ ସମଭାଗୀ ହେଉଥିଲେ, ପେଟ ପୂରୋଉ ଥିଲେ । ନାଚ, ନାଟ, ଗୀତ ଓ ଅନ୍ୟ ସାଂସ୍କୃତିକ, ଧର୍ମୀୟ ଉତ୍ସବଗୁଡ଼ିକରେ ପର ଆପଣା ଭେଦଭାବକୁ ଭୁଲୁଥିଲେ, ଜୀବନର ସତ୍ୟକୁ ଅନୁଭବ କରୁଥିଲେ । ଗାଁଗୁଡ଼ିକ ଯେମିତି ଥିଲା ଗୋଟିଏ ଗୋଟିଏ ଘରପରି । ମାତ୍ର କ୍ରମଶଃ ସେମାନଙ୍କ ମଧ୍ୟରେ ଥିବା ସକ୍ରିୟ ସହୃଦୟତା ଊଣା ପଡ଼ି ଆସିଲା । ସହରୀ ଚରଣୀମାନେ ସେମାନଙ୍କ ସୁସ୍ଥ ମଥାଗୁଡ଼ିକୁ ବିଗାଡ଼ି ଦେଲେ ।

ସେମାନେ ସରଳ ମଣିଷମାନଙ୍କ ଚେତନାରେ ସ୍ୱାର୍ଥ ଓ ସୁବିଧାବାଦର ମଞ୍ଜି ପୋତିଲେ । ସେମାନଙ୍କ ଯାବତୀୟ ସମସ୍ୟାର ସମାଧାନ ପୀଠ ଭାଗବତ ଘର, ଶିବ ମନ୍ଦିର ଅଥବା ଠାକୁରାଣୀ ପୀଠ ପାଖରୁ ସେମାନଙ୍କୁ ଉଠେଇ ଆଣିଲେ ସହରକୁ । ସହରର ନାଲିକୋଠା ଓ ବରଗଛ ତଳେ ସେମାନଙ୍କୁ ଯୋଡ଼ ହସ୍ତରେ ଠିଆ କରେଇଲେ । ଓକିଲମାନଙ୍କ ଜାଲରେ ଧରାପକେଇ ଦେଲେ । ଅହଂର ତୋଡ଼ ସମ୍ଭାଳି ନ ପାରି ବିଚରାମାନେ ଦେଶୀ ସାହେବଙ୍କ ପାଦ ତଳେ ନିଜ ନିଜର ବୁଦ୍ଧି, ବିବେକକୁ ସମର୍ପି ଦେଲେ । ନିଃସ୍ୱ ହୋଇଗଲେ ତଥାପି ନ୍ୟାୟ ପାଇଲେନି । ସହରୀ ସଭ୍ୟତାର ଦନୁଜ, ମଲାଙ୍ଗ ପରି ଗ୍ରାମ୍ୟ-ସଂସ୍କୃତିର ରସକୁ ଧୀରେ ଧୀରେ ଶୋଷି ନେଲା । ମଣିଷ ପୁଣି ଆଦିମ ହୋଇଗଲା । ଭୌତିକ ସୁଖ ପାଇବା ଲୋଭରେ ନିଜ ନିଜ ମଧ୍ୟରେ ଲଢ଼େଇ କଲା । ଗାଁର ମଥା ବିଗିଡ଼ିଗଲା, ହାତଗୋଡ଼ ଭାଙ୍ଗିଗଲା । ଅଧିକାଂଶ ଢିଅରେ ବିଲୁଆ ଡେଇଁଲେ । ଅକର୍ମାମାନେ ଗାଁ ଦାଣ୍ଡରେ ବସି ବିଡ଼ି ଟାଣିଲେ, କୀର୍ତ୍ତନ କଲେ । ପ୍ରହରାଜ ଆପଣାର ''ପାଞ୍ଜି ବିଡ଼ା ଓ ହାଲଚାଲ'' ଗୁଡ଼ିକରେ ନୂଆ ପିଢ଼ିର ମଣିଷମାନଙ୍କୁ ଠିକ୍ ସେଇସବୁ କଥା ହିଁ କହୁଥିଲେ । ଗାଁକୁ ମିତ୍ର କି ସହରକୁ ଶତ୍ରୁ ବୋଲି କହୁ ନ ଥିଲେ । ମାଟି ଓ ମଣିଷ ସହିତ ମିତ ବସିବା ପାଇଁ, ବିଦ୍ୟା ଓ ବିବେକକୁ ଜାତିର ସମୃଦ୍ଧି ଓ ବିକାଶ କ୍ଷେତ୍ରରେ ଖଟେଇବା ପାଇଁ ଆଧୁନିକମାନଙ୍କୁ ଚେତାଇ ଦେଉଥିଲେ । ମାତ୍ର କେହି ବୋଲି କେହି ତାଙ୍କ କଥା ଶୁଣୁ ନ ଥିଲେ । ପ୍ରତ୍ୟେକ ଯେପରି ସ୍ରୋତର ପ୍ରତିକୂଳରେ ପହଁରିବା ସାମର୍ଥ୍ୟ ହରେଇ ବସିଥିଲେ, ତଳକୁ ତଳକୁ ଭାସି ଚାଲିଥିଲେ ଏବଂ ତାଙ୍କ ତାଙ୍କ କଥା ଶୁଣି ମୁହଁମୋଡ଼ି ଦେଇ କହୁଥିଲେ - ହଁ, କହୁଥାଉ ।

ପ୍ରହରାଜଙ୍କ ଜୀବନର ଅନ୍ୟ ଏକ ବିଶେଷତ୍ୱ - ଆପଣା ଭାଷା ଓ ସାହିତ୍ୟ ପ୍ରତି ଶ୍ରଦ୍ଧା ଓ ଅନୁରାଗ । ସେ ସଂସ୍କୃତ, ଇଂରାଜୀ, ପାର୍ଶୀ, ବଙ୍ଗଳା, ହିନ୍ଦୁସ୍ଥାନୀ ଆଦି ଭାଷାରେ ପଣ୍ଡିତ ଥିଲେ । ମାତ୍ର ନିଜ ଭାଷା ଓ ସାହିତ୍ୟକୁ ନିଜ ପରି, ମନରେ କିଛି ନ ରଖି ଭଲ ପାଉଥିଲେ । ଭାଷା ପାଇଁ ଆପଣାର ସମଗ୍ର ଜୀବନ ଓ ବିତ୍ତକୁ ଖର୍ଚ୍ଚ କରିଦେଇଥିଲେ । ଓଡ଼ିଶାରେ ବିଗତ ପ୍ରାୟ ଦୁଇ ଶତାବ୍ଦୀ ମଧ୍ୟରେ ତାଙ୍କ ପରି ଆଉଜଣେ ଭାଷା-ଭାବୁକ ଜନ୍ମ ନେଇଛନ୍ତି ବୋଲି ସହଜରେ ସ୍ୱୀକାର କରିହୁଏ ନାହିଁ ।

ସେ ସମକାଳୀନ ସ୍ରଷ୍ଟାମାନଙ୍କ ମଧ୍ୟରେ ଥିଲେ ବ୍ୟତିକ୍ରମ, ସ୍ୱତନ୍ତ୍ର । ସେ ବହୁ ଭାଷା ଜାଣିଥିଲେ ସୁଦ୍ଧା ନିଜ ଭାଷା ଓ ନିଜ ଶୈଳୀରେ, ନିଜ ଅନୁଭବ ଓ ବିଚାରକୁ ପ୍ରକାଶ କରୁଥିଲେ । ଫକୀରମୋହନ, ଗୌରୀଶଙ୍କର, କୃଷ୍ଣପ୍ରସାଦ ଓ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ପରି ଅଳପ କେତେଜଣଙ୍କ ବ୍ୟତୀତ ଅନ୍ୟ ସମକାଳୀନମାନେ ଥିଲେ ଇଂରାଜୀ, ସଂସ୍କୃତ ଓ ବଙ୍ଗଳା ଭାଷାମନସ୍କ । ପ୍ରଥମେ ସେ ଲୋକମାନଙ୍କ ଦ୍ୱାରା କଥିତ କାହାଣୀଗୁଡ଼ିକୁ ସଂଗ୍ରହ କଲେ ଏବଂ ସେଗୁଡ଼ିକୁ କଥକ କଥିକାମାନଙ୍କ ବର୍ଣ୍ଣନା ରୀତିରେ ଲେଖିଲେ । ବିଶ୍ୱନାଥ କର ସେହି କାହାଣୀଗୁଡ଼ିକୁ ଉତ୍କଳ ସାହିତ୍ୟ ପତ୍ରିକାରେ ଛାପିଲେ । ୧୯୦୧ ମସିହାରେ ପ୍ରକାଶିତ କାହାଣୀଗୁଡ଼ିକର ଏକ ସଂଗ୍ରହ 'ଉତ୍କଳର କାହାଣୀ' ନାମରେ ପ୍ରକାଶ ପାଇଲା । ମାତ୍ର ପଣ୍ଡିତ-ମନସ୍କମାନେ ତାଙ୍କ ରଚନା ଶୈଳୀକୁ ଗ୍ରହଣ କରିପାରିଲେ ନାହିଁ । ଏହା ଅସାହିତ୍ୟ ଓ ଅସୁସ୍ଥ ପରମ୍ପରାରେ ଚମତ୍କାର ଉଦାହରଣ ବୋଲି କହିଲେ । ସାହିତ୍ୟ ଓ ସାହିତ୍ୟର ଭାଷା କହିଲେ ସେମାନେ କ'ଣ ନାଇଁ କ'ଣ

ବୁଝୁଥିଲେ । ଦେବମନସ୍କତା, ଗିର୍ବାଣଧର୍ମିତା ସେମାନଙ୍କ ଆଧୁନିକ ବିଚାରକୁ ତଥାପି ବଡ଼ ଦରିଦ୍ର କରି ରଖିଥିଲା । ପ୍ରହରାଜ କାହାରି କଥାକୁ କାନ ଦେଲେନି । ଓଡ଼ିଆମାନଙ୍କ ଆତ୍ମାର କଥାକୁ ସେମାନଙ୍କ ତୁଣ୍ଡର ଭାଷାରେ ଲେଖିଲେ । କାହାଣୀ ପରି, ଆଲୋଚନାଗୁଡ଼ିକରେ ମଧ୍ୟ ସମରୀତିରେ ପ୍ରୟୋଗ କଲେ । ଅବଶ୍ୟ ଆପଣାକୁ ଶ୍ରୀ ଦୁର୍ମୁଖ ଶର୍ମା, ପାଣିପାତ୍ର ଶର୍ମା କେତୋଟି ଛଦ୍ମ ନାମରେ ପରିଚିତ କରାଉଥିଲେ । ମାତ୍ର ପରବର୍ତ୍ତୀ କାଳରେ ଚୁପ୍ ସଇତାନି ଭାବଠାରୁ ସେ ଦୂରେଇ ଯାଇଥିଲେ । ବିଖ୍ୟାତ ଆମେରିକୀୟ ଲେଖକ ଅଲିଭର ଓଏଣ୍ଡଲ ହୋମଙ୍କୁ ଆପଣାର କଲେ । କ୍ରମଶଃ ତାଙ୍କ ଭିତରେ ନିଜ ପ୍ରତି ବିଶ୍ୱସ୍ତ ଭାବ ଅଧିକ ଘନ ହେଉଥିଲା ଏବଂ ମୃତ୍ୟୁ ପର୍ଯ୍ୟନ୍ତ ଆପଣା ଅନୁଭବର ଘନତା ଭିତରେ ସେ ବଞ୍ଚୁଥିଲେ, ଅନୁଭବ ଓ ବିଚାରକୁ ଓଡ଼ିଆମାନଙ୍କ ଭାଷା ଏବଂ ସେମାନଙ୍କ କଥନ ଶୈଳୀରେ ପ୍ରକାଶ କରୁଥିଲେ ।

ତାଙ୍କ ଭାଷା ପ୍ରୀତିର ଦୁଇଗୋଟି କାଳଜୟୀ ପ୍ରତୀକ 'ଢଗ ଢମାଳି ବଚନ' ଓ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' । 'ଢଗ ଢମାଳି ବଚନ' ଦୁଇଗୋଟି ଭାଗରେ ଯଥାକ୍ରମେ ୧୯୨୬ ଓ ୧୯୨୭ ମସିହାରେ କଟକ ଟ୍ରେଡିଂ କଂପାନୀ ଦ୍ୱାରା ପ୍ରକାଶ ପାଇଲା । ପ୍ରଥମ ଭାଗରେ ସଂଯୋଜିତ ଓଡ଼ିଆ ଲୌକିକ ପଦର ସଂଖ୍ୟା ପ୍ରାୟ ୨୬୦୦ ଓ ଦ୍ୱିତୀୟ ଭାଗରେ ପ୍ରବଚନ, ପ୍ରବାଦ, ଆପ୍ତବଚନ ଓ ନ୍ୟାୟ ଇତ୍ୟାଦିର ସଂଖ୍ୟା ପ୍ରାୟ ୩୮୫୦ । ଗ୍ରନ୍ଥ ଦୁଇଖଣ୍ଡର ବିଶେଷତ୍ୱ - ଏହାର ଛବିଶ ପୃଷ୍ଠା ବିଶିଷ୍ଟ ମୁଖବନ୍ଧ । ପ୍ରହରାଜଙ୍କ ଜୀବନ ବ୍ୟାପୀ ସାଧନାର ସିଦ୍ଧି 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ।' ଏହା ୧୯୧୩ ମସିହାର କଥା । କଟକ କଲେଜିଏଟ ସ୍କୁଲର ପ୍ରଧାନ ଶିକ୍ଷକ ହଣ୍ଡରସନ ବିଦ୍ୟାଳୟର ଏକ ଉତ୍ସବରେ ଓଡ଼ିଆ ଭାଷାରେ ଶବ୍ଦକୋଷର ଅଭାବ ସମ୍ପର୍କରେ ତାଙ୍କୁ ସଚେତନ କରିଦେଇଥିଲେ । ତାଙ୍କ ଆଗରେ ଇଂରାଜୀ ଶବ୍ଦକୋଷଗୁଡ଼ିକର ନଜିର ଦେଇଥିଲେ । ହଣ୍ଡରସନଙ୍କ କେଇପଦ କଥା ତାଙ୍କୁ ଆପଣା ଜାତି ଅଭାବ ସମ୍ପର୍କରେ ସଚେତନ କରିଦେଲା । ସେ ଜଣେ ଅଲଗା ମଣିଷ ହୋଇଗଲେ । ଓଡ଼ିଆ ସାହିତ୍ୟରେ ଲିଖିତ ଓ ଓଡ଼ିଆମାନଙ୍କ ତୁଣ୍ଡରେ କଥିତ ଶବ୍ଦମାନଙ୍କୁ ସାଉଁଟିଲେ । ପ୍ରତ୍ୟେକ ଶବ୍ଦ ଥିଲା ତାଙ୍କ ପାଇଁ ଅପୂରୁବ ଅସରପି । ଓଡ଼ିଆ, ବଙ୍ଗଳା, ହିନ୍ଦୀ, ସଂସ୍କୃତ ଓ ଇଂରାଜୀ ଭାଷାଭିଜ୍ଞ ପଣ୍ଡିତମାନଙ୍କ ପାଖକୁ ଗଲେ । ଭାଷାକୁ ଚିହ୍ନିବା ଓ ବୁଝିବା ପାଇଁ ସେମାନଙ୍କର ସାହାଯ୍ୟ ନେଲେ । ୧୯୧୯ ମସିହା ବେଳକୁ ଶବ୍ଦ ସାଉଁଟା କାର୍ଯ୍ୟ ପ୍ରାୟ ଶେଷ ହୋଇଆସିଲା । ଶବ୍ଦଗୁଡ଼ିକର ସଜ୍ଜୀକରଣ କାର୍ଯ୍ୟ ଚାଲିଲା - ୧୯୧୯ ରୁ ୨୭ ମସିହା ପର୍ଯ୍ୟନ୍ତ । ମୟୂରଭଞ୍ଜର ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଦେବଙ୍କ ନାମ ଅନୁସାରେ ଅଭିଧାନର ନାମ ରଖାଗଲା - 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ।'

ପ୍ରଥମେ ସଂଗୃହୀତ ଶବ୍ଦଗୁଡ଼ିକୁ ସେ ଦୁଇଗୋଟି ଭାଗରେ ସଂକଳିତ କରିବାକୁ ଯୋଜନା କରିଥିଲେ । ମାତ୍ର ସେଗୁଡ଼ିକର ସଂଖ୍ୟା ଏତେ ଅଧିକ ହୋଇଯାଉଥିଲା ଯେ ଅନେକକୁ ସଂକଳନରୁ ବାଦ କରିଦେବାକୁ ସେ ମହାଅପରାଧ ମଣିଲେ । ଦୁଇଖଣ୍ଡ ସାତଖଣ୍ଡ ହୋଇଗଲା । ମୁଦ୍ରଣ କାର୍ଯ୍ୟ ଶେଷ ହେବା ପାଇଁ ୧୯୩୦ ମସିହା ସେପ୍‌ଟେମ୍ବର ମାସରୁ ୧୯୪୦ ମସିହା ସେପ୍‌ଟେମ୍ବର ମାସ ପର୍ଯ୍ୟନ୍ତ, ପ୍ରାୟ ଦଶ ବରଷ ସମୟ ଲାଗିଗଲା । ତଥାପି ସବୁ ସଂଗୃହୀତ ଶବ୍ଦ କୋଷବଦ୍ଧ ହୋଇପାରି ନ ଥିଲା । ତାଙ୍କ ଟିପାଖାତାରେ ସେମିତି ପ୍ରାୟ ପନ୍ଦରହଜାର ଶବ୍ଦ ରହିଯାଇଥିଲା ।

ସେଇ ଗପ ଦେହ-ମନସ୍କ ପ୍ରହରାଜଙ୍କୁ ବଦଳେଇ ଦେଲା । ଦେହ-ସୁଖକୁ ଛି କରିଦେଲେ, ବନ୍ଧୁ ଓ ବାରାଙ୍ଗନାମାନଙ୍କ ଆୟତନରୁ ମୁହଁ ଫେରାଇଲେ । ପାଠ ପଢ଼ିଲେ । ସମାଜରେ ନିଜକୁ ଭବ୍ୟ ବେଶରେ ଠିଆ କରେଇଲେ । ମାତ୍ର ସେଦିନର ସେହି ଦେହ-ସୁଖ-ଭୋଗ ରୋଗର ବୀଜାଣୁମାନେ ସମ୍ଭବତଃ ତାଙ୍କ ମଗଜକୁ ସବୁକାଳ ପାଇଁ କାବୁକରି ନେଇଥିଲେ ।

ପ୍ରହରାଜଙ୍କ ପତ୍ନୀ ମୁକ୍ତାମଣି ଦେଖିବାକୁ ବେଶ୍ ସୁନ୍ଦରୀ ଥିଲେ । ଭଲ ଘରଣୀ ହେବାର ସକଳ ଯୋଗ୍ୟତା ବି ତାଙ୍କର ଥିଲା । ଗାଁରେ ରହି ସେ ଜମିଦାରିର ବୁଝାଶୁଝା କରୁଥିଲେ । ପ୍ରହରାଜ ତାଙ୍କ ଲାଗି ଉଆସ ପରି କୋଠାଘର ତୋଳି ଦେଇଥିଲେ । ନିଜେ ରହୁଥିଲେ କଟକ ସହରରେ ଏବଂ ନିଜ ପାଇଁ ସହରରେ ଘର ବି ତିଆରି କରିଥିଲେ । ଓକିଲାତି, ରାଜନୀତି ଓ ଦେଶସେବା ଧନ୍ଦାରେ ପ୍ରାୟ ବୁଡ଼ି ରହୁଥିଲେ । ସମୟ ଓ ସୁବିଧା ଦେଖି ଘରକୁ ଯାଉଥିଲେ । ମୁକ୍ତାଙ୍କ ହାତରେ ଉପାର୍ଜିତ ଅର୍ଥ ଓ ଘରର କୁଞ୍ଚିକାଠି ଧରେଇ ଦେଇ ଏକ ଅଲଗା ପ୍ରକାରର ଜୀବନ ବଞ୍ଚୁଥିଲେ । ବେଶ୍ ସୁଖୀ ଥିଲେ । ମାତ୍ର ପରିଣତ ବୟସରେ ତାଙ୍କ ଯୌନ ଜୀବନରେ ଆଉ ଏକ ବିପଜ୍ଜନକ ଉଦ୍‌ବେଳନ ସୃଷ୍ଟି ହୋଇଥିଲା । ପତ୍ନୀଙ୍କର ଅନୁଜା ପୀତାମ୍ବରୀଙ୍କ ବର୍ତ୍ତମାନ ହିଁ ଥିଲା ଏହାର କାରଣ ।

ପୀତାମ୍ବରୀଙ୍କ ଜନ୍ମ ୧୯୦୫ ମସିହାରେ- ତାଙ୍କ ପୁଅ ଜନ୍ମର ପ୍ରାୟ ପାଞ୍ଚ ବର୍ଷ ପରେ । ତେଣୁ ପ୍ରହରାଜ ପୀତାମ୍ବରୀଙ୍କୁ ଝିଅପରି ଦେଖୁଥିଲେ । ତାଙ୍କୁ ଅକ୍ଷର ଶିଖାଇଥିଲେ । ମନଲାଖି ଘର ଦେଖି ବାହା କରିଦେଇଥିଲେ । ମାତ୍ର ପୀତାମ୍ବରୀଙ୍କ ଭବିଷ୍ୟତ୍ ଥିଲା ଭିନ୍ନ ପ୍ରକାରର । ବାରବର୍ଷ ବୟସରେ ତାଙ୍କୁ ମଥାରୁ ସିନ୍ଦୂର ଲିଭାଇବାକୁ ପଡ଼ିଲା । ଜୀବନର ଅବଶିଷ୍ଟ ଆୟୁଷ ଧଳାଲୁଗାକୁ ସର୍ବସ୍ୱ କରି ବଞ୍ଚିବା ଲାଗି ଈଶ୍ୱରଙ୍କ ପାଖରୁ ସେ ପାର୍ଚ୍ଚା ପାଇଗଲେ । ତାଙ୍କର ଆଉ ଭାଇ କି ଭଉଣୀ ନ ଥିଲେ । ଦୁଃଖ ପାସୋରିବା ପାଇଁ ବଡ଼ଭଉଣୀର ଉଆସକୁ ଚାଲିଆସୁଥିଲେ । ଭଉଣୀ ଘର କ୍ରମଶଃ ନିଜର ହୋଇଗଲା । ଭଉଣୀ ଘରୁ ସେ ବେଳେ ବେଳେ କଟକ ସହର ଆସୁଥିଲେ । ଭିଣୋଇଙ୍କ ପାଖରେ ରହୁଥିଲେ ଏବଂ, କାମ ଆଳରେ ଏମିତି ବେଳେ ବେଳେ ରହୁ ରହୁ ଜୀବନର ଅବଶିଷ୍ଟ କାଳ ରହିବା ପାଇଁ ପଟ୍ଟା କରିନେଲେ । ପ୍ରହରାଜଙ୍କ ଏକଲାପଣର ଅନ୍ୟ ଏକ ଆବଶ୍ୟକତା ହୋଇଗଲେ । ସ୍ୱାମୀ ଅନୁରାଗିଣୀ ମୁକ୍ତାମଣି ଅନୁଜା ଓ ପତିଙ୍କ ମଧ୍ୟରେ ଗଢ଼ି ଉଠିଥିବା ସମ୍ପର୍କକୁ ଆଦୌ ସନ୍ଦେହ କରିପାରୁ ନ ଥିଲେ । କାରଣ ପ୍ରହରାଜ ପୀତାମ୍ବରୀଙ୍କୁ ତାଙ୍କ ଶଶୁରଘରର ସମ୍ପତ୍ତିର ଅଧିକାରିଣୀ କରିବା ଉଦ୍ଦେଶ୍ୟରେ ଅଦାଲତର ସାହାଯ୍ୟ ନେଇଥିଲେ, ସଫଳ ହୋଇଥିଲେ । ନ୍ୟାୟାଳୟ ମଧ୍ୟ ପୀତାମ୍ବରୀ ଦେଓ୍ୱାଙ୍କ ତତ୍ତ୍ୱାବଧାରକ ରୂପରେ ତାଙ୍କୁ ସ୍ୱୀକାର କରିଥିଲା । ଆପଣାର ଦୁଇ ପାଖରେ, ଦୁଇ ସହୋଦରାଙ୍କ ହାତ ଧରି ସେ ସୁଖକର ଜୀବନ ବଞ୍ଚିବା ପାଇଁ ସତେଯେପରି ଭାଗ୍ୟ ଦେବତାଙ୍କ ଦପ୍ତରରୁ ପାର୍ଚ୍ଚା ପାଇଯାଇଥିଲେ ।

ମାତ୍ର ଅଧିକ କାଳ ଏମିତି ଜୀବନ ବଞ୍ଚିବା ତାଙ୍କ ପକ୍ଷରେ ସମ୍ଭବ ହୋଇ ନ ଥିଲା । ଶାଳୀଙ୍କ ସହିତ ତାଙ୍କ ଭିନ୍ନ ସମ୍ପର୍କ କାହାଣୀ ହାଟରେ ବାଟରେ ଗଡ଼ଗଡ଼େଇଲା । ମୁକ୍ତା ଏକଥା ଶୁଣିଲେ । ପ୍ରଥମେ ପ୍ରଥମେ କଥାକୁ ସତ ବୋଲି ବିଶ୍ୱାସ କରିପାରିଲେ ନାହିଁ । ସତ୍ୟ ଜାଣିବା ଲାଗି ଫାନ୍ଦ ବସେଇଲେ । ସୁଯୋଗ ଉଣ୍ଡି ଆସାମୀମାନଙ୍କ ଅସଲ ସମ୍ପର୍କକୁ ଠାବ କଲେ । ଅନୁଜାକୁ ସ୍ୱାମୀଙ୍କ

ସେବାକାରିଣୀ ଓ ସହକର୍ମିଣୀର ମାନ୍ୟତା ଦେବାକୁ ତାଙ୍କ ନାରୀତ୍ୱ ଯେପରି ଗ୍ରହଣ କରିପାରୁ ନ ଥିଲା । ସେ ଦୁଇ ନିକଟତମଙ୍କ ମଝିରେ ଠିଆ ହେଲେ - ଅବିଶ୍ୱାସ ଓ ଘୃଣାର ମେଘନାଦ ପାଚେରି ପରି । ଫଳ ବିଷମ ହେଲା । ସମ୍ପର୍କ ତୁଟିଗଲା । ସହର ଓ ଗାଁ, ସବୁଆଡ଼େ ଅପବାଦ ଓ ଅପନିନ୍ଦାର ବାଜା ବାଜିଲା । ବଡ଼ଘରର ଗୁମର କଥା ହାଟବଜାରରେ ଗଡ଼ଗଡ଼େଇଲା । ବଡ଼ ବଡ଼ପଣ୍ଡାମାନଙ୍କର କଲମ ମଧ୍ୟ ସେମାନଙ୍କ ଅବୈଧ ସଂପର୍କ ସଂକ୍ରାନ୍ତରେ ଚର୍ଚ୍ଚା କଲା । ପ୍ରହରାଜଙ୍କ ପରି ସ୍ପଷ୍ଟବାକ୍ ଓ ଛିଦ୍ରଖୋର ପତ୍ନୀ କି ପ୍ରତିବାଦୀମାନଙ୍କ ବିରୋଧରେ ତୁଣ୍ଡ ଖୋଲିଲେନି । ସେ ଚାହିଁଥିଲେ ପୀତାମ୍ବରୀଙ୍କୁ ଦ୍ୱିତୀୟାର ମର୍ଯ୍ୟାଦା ଦେଇପାରିଥାନ୍ତେ । ମାତ୍ର ନାନା କାରଣରୁ ଏହା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ସେ ନିଜ ଭିତରେ କେବଳ ଜଳୁଥିଲେ । ସ୍ତ୍ରୀଙ୍କ ସହିତ କଟି ପକେଇଦେଲେ । ଗାଁକୁ ଯିବା ଏକ ପ୍ରକାରର ବନ୍ଦ କରିଦେଲେ । ଯେବେ ଯାଉଥିଲେ, ପୁଅ କି ସ୍ତ୍ରୀ କାହା ସହିତ ପ୍ରାୟ କଥା ହେଉ ନ ଥିଲେ । ସମ୍ପତ୍ତିକୁ କେନ୍ଦ୍ର କରି ପୁଅ ତାଙ୍କ ବିରୋଧରେ ଅଦାଲତରେ ଠିଆ ହେଲେ । ନିଜ ପ୍ରିୟ ଭୂମିରେ ସେ ଯେପରି ଏକ ଅନାବଶ୍ୟକ ଜୀବ ହୋଇ ପଡ଼ିଥିଲେ । ପ୍ରତ୍ୟେକ ନିଜ ନିଜ ଭିତରେ ବଡ଼ ଦୟନୀୟ ଓ ଭାବରେ ବଞ୍ଚୁଥିଲେ । ଏ ଅନ୍ତର୍ଜ୍ୱଳନର ଶେଷ ହୋଇଥିଲା ୧୯୩୪ ମସିହା ଜୁନ୍‌ମାସ ୨୩ ତାରିଖ ଦିନ । ସେଦିନ ପ୍ରାୟ ଖରାବେଳେ କୌଣସି ଜଣେ ଆତତାୟୀ ତଣ୍ଟି ଚିପି ମୁକ୍ତାଙ୍କୁ ହତ୍ୟା କରିଥିଲା ଏବଂ ଏଥିସହିତ ପ୍ରହରାଜଙ୍କ ଜୀବନକୁ ଆକଟୁଥିବା ଅଧିକାରବୋଧର ସ୍ୱର ସବୁଦିନ ପାଇଁ ନିରବ ହୋଇଯାଇଥିଲା । ହତ୍ୟାକାରୀର ଟେର ମଧ୍ୟ ମିଳିଲାନି । ଏ ଘଟଣା ଘଟିବାର କିଛି ଦିନ ପରେ ସେ କଟକରୁ ଶତାଧିକ ଲୋକ ନେଇ ନିଜେ ତିଆରି କରିଥିବା ଉଆସ ପରି କୋଠାକୁ ମାଟିରେ ମିଶାଇ ଦେଇଥିଲେ । ପାଠାଗାର, ଆସବାବପତ୍ର ଓ ଜମିଦାରିର ଅହଙ୍କାରକୁ ନିଲାମରେ ସଫା କରିଦେଲେ । ତାଙ୍କ ସିଦ୍ଧାନ୍ତର ପ୍ରତିବାଦ କରିବାକୁ କାହାରି ଜିଭରେ ହାଡ଼ ନ ଥିଲା । ସିଦ୍ଧେଶ୍ୱରପୁର ସହିତ ସବୁଦିନ ପାଇଁ ତାଙ୍କର କଟି ପଡ଼ିଗଲା ।

ପ୍ରହରାଜଙ୍କ ବ୍ୟକ୍ତିକ ଜୀବନର ଏହି ବିଶେଷ ଘଟଣାଗୁଡ଼ିକୁ ସମକାଳୀନ ସମାଜ-ବ୍ୟବସ୍ଥା ଆଧାରରେ ମଧ୍ୟ ବିଶ୍ଳେଷଣ କରାଯାଇପାରେ । ଭାଗବତ ଟୁଙ୍ଗିରେ ସନ୍ଧ୍ୟା, ବାଇ ନାନୀଙ୍କ ବୁଜୁଳି, ଆମ ଘରର ହାଲଚାଲ, ମିଆଁ ସାହେବଙ୍କ ରୋଜନାମଚା, ଦୁନିଆର ହାଲଚାଲ, ନନାଙ୍କ ବସ୍ତାନି ଆଦି ରଚନାରେ ନାରୀମାନଙ୍କର ସମସ୍ୟା ସମ୍ପର୍କରେ ରମ୍ୟ ରୀତିରେ ସେ ଚର୍ଚ୍ଚା କରୁଥିଲେ । ବିଶେଷତଃ ବାଇନାନୀଙ୍କ ବୁଜୁଳି ନାରୀ-କୈନ୍ଦ୍ରିକ ସାମାଜିକ, ସାଂସ୍କୃତିକ ବ୍ୟବସ୍ଥା ବିରୋଧରେ ଏକ ଉଚ୍ଚକିତ ଆହ୍ୱାନ । ବାଇନାନୀ ସମାଜପତି, ସଂସ୍କୃତି ଓ ଧରମପୀଠର ଗଦିୟାନ, ରାଜନୀତି ବିଶାରଦ ଓ ଅଧିକାର ପ୍ରମତ୍ତ ଗିରସ୍ତମାନଙ୍କୁ ନାରୀର ଅଧିକାର, କର୍ତ୍ତବ୍ୟ, ଦାୟିତ୍ୱ ଓ ଜୀବନ ସମ୍ପର୍କରେ ବହୁ ଗୂଢ଼ ଓ ଅସମାଧିତ ପ୍ରଶ୍ନ ପଚାରିଛନ୍ତି । ତାଙ୍କ ବିଚାରରେ ନାରୀ କାମଦୁଣୀ ନୁହେଁ, ପ୍ରଜନନବତୀ ଓ ସନ୍ତାନଉତ୍ପାଦିକା ଯନ୍ତ୍ରବିଶେଷ ନୁହେଁ, ପୁରୁଷ ପୁଙ୍ଗବମାନଙ୍କ ଶ୍ରୀହସ୍ତର ପୁତ୍ତଳିକା, ଆଜ୍ଞାପାଳନକାରିଣୀ; କାମତାପ-ପ୍ରସମିତା ନୁହେଁ; ପରିବାରର ସକଳଙ୍କ ଇଚ୍ଛାର ଅଧୀନା କି ଅନ୍ୟ ଅନେକଙ୍କର କରୁଣା ଲାଭର ପାତ୍ରୀ ବିଶେଷ ନୁହେଁ, ସେ ଅନ୍ୟ କିଛି । ଉଭୟ ବାପଘର ଓ ଶାଶୁଘରର ସମ୍ପତ୍ତି ଉପରେ ତାର ଅଧିକାର ଅଛି । ସେ ନିଜ ଦେହ ଓ ମନ ପାଇଁ ସାଥି

ବାଛିପାରେ; ଜୀବନ, ସଂସାର ଓ ସଂସ୍କୃତିକୁ ବୁଝିବା ପାଇଁ ପାଠ ପଢ଼ିପାରେ; ଯେକୌଣସି ବୃତ୍ତି ଗ୍ରହଣ କରିପାରେ; ବଜାର, ରାସ୍ତା ଘାଟ ଯେକୌଣସି ସ୍ଥାନରେ, ଯେକୌଣସି ସମୟରେ ପୁରୁଷ ପୁଙ୍ଗବମାନଙ୍କ ପରି ଘୂରାଫେରା କରିପାରେ । ଇଚ୍ଛା ଅନୁସାରେ ସେ ଆପଣା ଜୀବନ ବଞ୍ଚିପାରେ । ସେ ଦୁର୍ବଳା ନୁହେଁ - ଶକ୍ତିମୟୀ; ସେ ଭୋଗୀ ନୁହେଁ - ତ୍ୟାଗମୟୀ; ସେ ଜନ୍ମଦାତ୍ରୀ ନୁହେଁ - ପାଳନକର୍ତ୍ତ୍ରୀ; କରୁଣାମୟୀ; ସାଂସାରିକ ବ୍ୟବସ୍ଥାର ସୂତ୍ରଧାରିଣୀ । ପ୍ରହରାଜଙ୍କ ଶବ୍ଦରେ କହିଲେ - ''ପାଶବ ଶକ୍ତିବଳରେ ନାରୀମାନଙ୍କୁ ପରିଚାରିକା, ପଦସେବିକା, କ୍ରୀଡ଼ାପୁତ୍ତଳିକା, ସନ୍ତାନୋତ୍ପାଦିକା, ପାକଶାଳିକା, ଅନ୍ତଃକାନିକା, ବହିର୍ହାରିକା, ଚରଣ ମଞ୍ଜାଳିକା, ତୈଳମର୍ଦ୍ଦିକା, ଜଳୋତ୍ତଳିକା, ଭାରବାହିକା, ବନ୍ଦିନୀ, ବିଶ୍ୱାସଘାତିନୀ, ପାପିନୀ ନୁହେଁ - ଏ ସକଳର ଊର୍ଦ୍ଧ୍ୱରେ । ତେଣୁ ପୁରୁଷପ୍ରଧାନ ସମାଜ-ବ୍ୟବସ୍ଥାରେ କାଳ କାଳ ଧରି ଅପବାଦ ଓ ଅପନିନ୍ଦାର ବୋଝ ବୋହି ବୋହି ଥକ୍‌କି ପଡ଼ିଥିବା ନାରୀକୁ ମୁକ୍ତିର ଆଲୋକ ଦେଖାଇବା ପାଇଁ ତାଙ୍କ ସପନ ଜୀବନକାଳରେ ଅମଳ ଦେବାକୁ ଆରମ୍ଭ କରିଥିଲା । ଉତ୍କଳ ସମ୍ମିଳନୀ ମଞ୍ଚରେ ମଧୁସୂଦନ ଦାସ ଓ ପରବର୍ତ୍ତୀ କାଳରେ ମହାତ୍ମା ଗାନ୍ଧି ତାଙ୍କ ବିଚାରକୁ ଯେପରି ଭିନ୍ନ ଭିନ୍ନ ଶବ୍ଦରେ ପ୍ରକାଶ କରିଥିଲେ । ପ୍ରତ୍ୟେକ ଭାରତୀୟ ସଂସ୍କୃତିକୁ ଭିତ୍ତି କରି ଜାତିର ଗଢ଼ଣ ପ୍ରକ୍ରିୟାରେ ନାରୀ ଶିକ୍ଷା ଓ ସ୍ୱାଧୀନତା ଯେ ଅଣୁଘଟକ ପରି କାର୍ଯ୍ୟ କରେ - ଏ ସମ୍ପର୍କରେ ସମାଜକୁ ସଚେତନ କରିଦେଇଥିଲେ । ଏପରିକି ଯୌନ-ବିଦ୍ୟା ସମ୍ପର୍କରେ ଉଭୟ ନାରୀ ଓ ପୁରୁଷକୁ ଶିକ୍ଷାଦେବା ସମ୍ପର୍କରେ ସେମାନେ ଗୁରୁତ୍ୱ ଆରୋପ କରିଥିଲେ । ନାରୀ ଯେ ଯନ୍ତ୍ର ନୁହେଁ - ଯନ୍ତ୍ରୀ, କୁଳଟା ନୁହେଁ - କୁଳପାଳିକା, ପତନର ଗହ୍ୱର ନୁହେଁ - ମୋକ୍ଷଦାତ୍ରୀ, ପୁଂସଘାତିନୀ ନୁହେଁ - ଜୀବନସାଥୀ, ଏ କଥାଗୁଡ଼ିକୁ ସେ କେବଳ କହୁ ନ ଥିଲେ କି ଲେଖୁ ନ ଥିଲେ, ଜୀବନରେ ପରୀକ୍ଷା କରିଥିଲେ । ତେଣୁ ପ୍ରହରାଜଙ୍କ ନାରୀକୈନ୍ଦ୍ରିକ ବିଚାର ଓ ମାନସିକତାକୁ - ତରୁଣ ବୟସରେ ଶ୍ରୀ ଅକ୍ଷର ବିବର୍ଜିତା ବାଳିକା ପତ୍ନୀକୁ ଅକ୍ଷରପାୟୀ ଏବଂ ପ୍ରୌଢ଼ ବୟସରେ ବିଧବା ଶାଳିକାଙ୍କୁ ବେଉଆରୁ ଦେବୀ (ପୀତାମ୍ବରୀ ବେଉଆ ପରିବର୍ତ୍ତେ ସେ ଦେବୀ ଲେଖୁଥିଲେ ଏବଂ ଶଶୁରଘରର ସଂପତ୍ତିର ଅଧିକାରିଣୀ କରିବାରେ ସମର୍ଥ ହୋଇଥିଲେ) କରିବା ପ୍ରବଣତାର ଯେ ପଲ୍ଲବନ - ଏହା ଅସ୍ୱୀକାର କରାଯାଇ ନ ପାରେ ।

ପ୍ରହରାଜ ଥିଲେ ସମକାଳୀନ ସମାଜ ବ୍ୟବସ୍ଥାର ଅନ୍ୟତମ ଭାବବାଦୀ ବିଶ୍ଳେଷକ । ବର୍ତ୍ତମାନର ଭୂମି ଉପରେ ଠିଆହୋଇ ସେ ଭବିଷ୍ୟତ୍‌ର କଥା କହୁଥିଲେ ଏବଂ ଭବିଷ୍ୟବାଣୀ ତାଙ୍କୁ ବିବାଦୀୟ ମଣିଷଟିଏ କରିଦେଇଥିଲା । ଆମର ଯାହା ଥିଲା ଏବଂ ଆମେ ଯାହା କହୁଛୁ - ତାହା ଯେ ଆମ ଭବିଷ୍ୟତ୍ ପାଇଁ ସ୍ୱାସ୍ଥ୍ୟପ୍ରଦ- ଏହା ସେ ଗ୍ରହଣ କରିପାରୁ ନ ଥିଲେ । ତାଙ୍କ ବିଚାରଗତ ସୂକ୍ଷ୍ମତା ଓ ପରିଚ୍ଛନ୍ନତାର କାରଣ ଥିଲା - ଆପଣାର ବଂଶ ପରମ୍ପରା, ଶିକ୍ଷାବ୍ୟବସ୍ଥା ଓ ଜୀବନ ସହ ଆତ୍ମିକ ସମ୍ପର୍କ ।

ସେ ଗାଁ ଚାଟଶାଳୀରେ ପଢ଼ିଥିଲେ । ଇଂରେଜ ପ୍ରତିଷ୍ଠିତ ସ୍କୁଲ ଓ କଲେଜରେ ବି ପଢ଼ିଥିଲେ । ଗାଁଲୋକଙ୍କ ଭାଷା, ସଂସ୍କୃତ ଓ ଇଂରାଜୀ ଭାଷାରେ ସୁପଣ୍ଡିତ ଥିଲେ । ଓକିଲ ଥିବାରୁ ଉର୍ଦ୍ଦୁ ଓ ପାର୍ଶୀଭାଷା ବି ଜାଣିଥିଲେ । ମାତ୍ର ସଂସ୍କୃତ ବିଦ୍ୟାବିତ୍ ଓ ସଂସ୍କୃତମନସ୍କମାନଙ୍କ ବିଚାରଗତ ଭ୍ରମ

ତାଙ୍କୁ ବିଚଳିତ କରୁଥିଲା । ପାଠକମାନେ ତାଙ୍କ ଭାଗବତ ଟୁଙ୍ଗିରେ ଭେଟୁଥିବା ସଂସ୍କୃତ ଭାଷାଭିଜ୍ଞ ପଣ୍ଡିତ ମହାଶୟ ଲୋକମୁଖର ଭାଷାର ଘୋର ବିରୋଧୀ, ଆମ ସଂସ୍କୃତ-ମନସ୍କତାର ନିର୍ବୋଧ ପ୍ରତିନିଧି । ସେଇ ଟୁଙ୍ଗିରେ ଆମେ ଆଉ ଜଣେ ନବ-ଶିକ୍ଷିତ, ଇଂରେଜୀ ପଢୁଆ ବାବୁ ଶିକ୍ଷକଙ୍କ ସାନ୍ନିଧ ପାଉ । ସେ ଆମ ପଶ୍ଚିମ-ମନସ୍କ ମାନସିକ ଦାରିଦ୍ର୍ୟର ଦିଶାହୀନ ଅଧିପତି । ପଶ୍ଚିମା ପବନରେ ଏ ଦେଶର ତରୁଣମାନଙ୍କ ନିଦ୍ରିତ ଆଖିଗୁଡ଼ିକ ଅବଶ୍ୟ ଖୋଲି ଯାଉଥିଲା । ବିଶ୍ୱର ବିଚାର ସେମାନଙ୍କ ମଗଜରେ ପଶିଲା । ସୀମାବଦ୍ଧ ଆୟତନ ଅତିକ୍ରମ କରି ବୃହତ୍ତର ଆୟତନକୁ ଅନୁଭବ କରିବାର ସୁଯୋଗ ଦେଲା । ମାତ୍ର ତାହା ସେମାନଙ୍କ ପାଇଁ ଥିଲା ମାଘମାସର କୁହୁଡ଼ିପରି । ସେମାନଙ୍କ ଗିରିସମ ଗୁମାନମାନଙ୍କୁ ତାହା କେଶ ପ୍ରମାଣ ଚହଲେଇ ଦେଇପାରିଲା ନାହିଁ । ସେମାନଙ୍କ ମନରେ ହଜାର ପ୍ରକାର ନୂଆ ନୂଆ ରୋଗର ଜୀବାଣୁମାନେ ଆସି ଡେରା ପକେଇଲେ । ସେମାନେ ବିଦେଶୀମାନଙ୍କ ପାଠ ପଢ଼ିଲେ, ବିଦେଶୀ ଭାଷା ଶିଖିଲେ । ସେମାନଙ୍କ ଭାଷାରେ ଲେଖିଲେ ଏବଂ କଥା କହିଲେ । ସେମାନଙ୍କ ପରି ବେଶ ହେଲେ । ବଇଶାଖ ମାସର ଖରାବେଳେ କୋଟ ପିନ୍ଧି ବେକରେ ଟାଇ ଭିଡ଼ିଲେ । ଗାଁର ମଳିମୁଣ୍ଡିଆମାନଙ୍କ ପାଖରେ ପଶ୍ଚିମାମାନଙ୍କ ଭାଷାରେ ବି ଆଳାପ କଲେ । ସତେଯେମିତି ଏପଟର ସାଆନ୍ତ ନୁହନ୍ତି ସେପଟର ସାଇବ ।

ନୂଆ ସାଇବମାନେ ନୂଆ ଡାଆଣୀ ପରି ଯୋଉ କାଣ୍ଡମାନ ଭିଆଇଲେ - ତାହା ଥିଲା ବଡ଼ ବିଚିତ୍ର । ଗୋରାସାହେବମାନଙ୍କ ଖଟୁଲି ତଳେ ଆଣ୍ଠେଇ, ହାତ ମଳି, ସାର୍, ଇଓର ଅନର ଆଦି ଶବ୍ଦମାନଙ୍କୁ ଜପାମାଳି କରି ଦରଜ ଓ ଜଖମ ହୋଇଯାଇଥିବା ଗୋଡ଼, ଅଣ୍ଟା ଏବଂ ବସି ଯାଇଥିବା ତଣ୍ଟିକୁ ନେଇ ସେମାନେ ଆପଣା ମାଟିର ଅଧା ନଙ୍ଗଳା ମଣିଷମାନଙ୍କ ପାଖରେ ଠିଆ ହେଲେ । ଶ୍ରୀମୁଖରୁ ଶୁଣିଥିବା ରଷ୍ଟିକ, ହିଦେନ୍ ନେଟିଭ, ଗଧ, ମୂର୍ଖ, ହନୁ ଆଦି ଶବ୍ଦମାନଙ୍କୁ ସେମାନଙ୍କ ଉପରେ ଅଜାଡ଼ି ପକେଇଲେ । ହାତ, ଗୋଡ଼ମାନଙ୍କୁ ମଧ ଇସ୍ତମାଲ କଲେ । ବାପା, ମା, ଗୁରୁ ଗୁରୁଜନମାନଙ୍କୁ ମଧ ବାଦ ଦେଲେନି । ବେଳ ଆସିଲା, ଗାଁକୁ ମଧ ଗଲେନି । ଗାଁ ନାଁ ଶୁଣିଲେ ସେମାନଙ୍କ ଦେହରେ ଯେମିତି ଘା' ହୋଇଯାଉଥିଲା, ନାକ ଲାଗିଯାଉଥିଲା ତ୍ରିକୂଟରେ । ଆମ ମାଟିର ସାମନ୍ତ ପରମ୍ପରାରେ ଚଳୁଥିବା ପାଞ୍ଚପ୍ରକାରର 'ମ' ମାନଙ୍କୁ ବେଭାର କଲେ । ପାନଶାଳା ଓ ପାନପ୍ରମତ୍ତାମାନଙ୍କ କୋଳରେ ବିହାର କଲେ । ଘରଣୀମାନଙ୍କୁ କାଠ ପିତୁଳା, କାମ ଅକୁଶଳୀ, ହେଂସ ମୁତୁରୀ କହି ମୁହଁ ମୋଡ଼ିଦେଲେ । ବଜାରର ଚାକର ଓ ଗଉଁମାନଙ୍କୁ ତୁଷ୍ଟ କରିବା ପାଇଁ ଗାଉଁଲିମାନଙ୍କୁ ସହରରେ ଶୋଷଣର ପସରା ଖୋଲି ବସିଥିବା କଚେରି ପାଖକୁ ଘୋଷାରିଲେ । ସେମାନଙ୍କ ସପନ ଓ ସମ୍ପତ୍ତିଗୁଡ଼ିକୁ ନିଜର କରିନେଲେ । ଜୀବନଠାରୁ ଯୋଜନ ଯୋଜନ ଦୂରକୁ ଚାଲିଗଲେ । ପଶ୍ଚିମର ଆଲୋକ ସେମାନଙ୍କ ମାନସିକ ଦାରିଦ୍ର୍ୟକୁ ବିଭଶାଳୀ, ସେମାନଙ୍କ ବିଚାରକୁ ସୂକ୍ଷ୍ମ ଓ ଆଲୋକିତ କଲାନି ବରଂ ସେମାନଙ୍କ ଶରୀର ଓ ମନକୁ ରୁଗ୍ଣ ଓ ଦରିଦ୍ର କରିଦେଲା । ସଂସ୍କୃତିର ଜୀବନ ନାଁଟି ଶୁଖି ସେମିଟିଗଲା । ଆତ୍ମାରେ ଫୁଲ ଫୁଟିଲାନି । ଆଧୁନିକ ସମାଜ ଓ ସଭ୍ୟତା ହାକିମ ଅଧୁଷିତ ଓ ବାବୁମୟ ହୋଇଗଲା । ଉପନିବେଶବାଦ ନାମକ ମହା-ଦୈତ୍ୟର ଭୋଜବାଜିରେ ଭାରତୀୟମାନଙ୍କ ବିଚାର ବାଟ ହୁଡ଼ିଗଲା ।

ରୟାଲ ଡିମାଇ ସାଇଜରେ ମୁଦ୍ରିତ ଭାଷାକୋଷର ପୃଷ୍ଠା ସଂଖ୍ୟା ୯୫୦୩, ସଂକଳିତ ଶବ୍ଦ ସଂଖ୍ୟା ପ୍ରାୟ ଏକଲକ୍ଷ ପଚାଶ ହଜାର ଏବଂ ବ୍ୟୟିତ ଅର୍ଥର ପରିମାଣ ପ୍ରାୟ ଏକ ଲକ୍ଷ ପଚାଶ ହଜାର ଟଙ୍କା । ତେଣୁ ୧୯୪୦ ମସିହା ବେଳକୁ ଓଡ଼ିଆ ଭାଷାର ଶବ୍ଦଭଣ୍ଡାର ପ୍ରାୟ ଦୁଇ ଲକ୍ଷରୁ ଯେ ଅଧିକସଂଖ୍ୟକ ଥିଲା, ପ୍ରହରାଜଙ୍କ ଉକ୍ତିକୁ ଆଧାର କରି ଏକଥା କୁହାଯାଇପାରେ ।

ଭାଷାକୋଷର ବୈଶିଷ୍ଟ୍ୟ - ଏହା ଏକ ଚାତୁର୍ଭାଷିକ (ଓଡ଼ିଆ, ଇଂରାଜୀ, ହିନ୍ଦୀ ଓ ବଙ୍ଗଳା) ଅଭିଧାନ । ଏଥିରେ ଶବ୍ଦଗୁଡ଼ିକର କେବଳ ଅର୍ଥ ଉଲ୍ଲେଖ କରାଯାଇ ନାହିଁ - ଅର୍ଥ ସହିତ ସେଗୁଡ଼ିକର ଉତ୍ପତ୍ତି, ଜାତି, ବୈୟାକରଣିକ ରୂପ, ଐତିହାସିକ ବିକାଶକ୍ରମ ଏବଂ କେତେକ ଶବ୍ଦର ବିଶଦ ବ୍ୟାଖ୍ୟା କରାଯାଇଛି । ସେହି ନ୍ୟାୟରେ ଗବେଷକମାନେ ଭାଷାକୋଷକୁ ଜ୍ଞାନକୋଷିକ ଅଭିଧାନ ବୋଲି ସ୍ୱୀକାର କରୁଥାନ୍ତି । ପୁନଶ୍ଚ ଏଥିରେ ଓଡ଼ିଶାର ବିଭିନ୍ନ ଜାତି ଓ ପାଟକ ମୁଖରେ କଥିତ ଗ୍ରାମ୍ୟ ଶବ୍ଦଗୁଡ଼ିକୁ ସଂଯୋଜନ କରିବା ନିମିତ୍ତ ଅଧିକ ଆଗ୍ରହ ପ୍ରକାଶ ପାଇଛି । ବିଶେଷତଃ ଲୋକମୁଖରେ କଥିତ, ବିକୃତ, ବୈୟାକରଣିକ ଦୋଷଦୁଷ୍ଟ ଓ ଅଶ୍ଳୀଳ ଶବ୍ଦଗୁଡ଼ିକୁ ଲିପିବଦ୍ଧ କରିବା ଫଳରେ ତାଙ୍କୁ ଗାଳି ଶୁଣିବାକୁ ପଡ଼ିଛି । ଭାଷାକୋଷକୁ ଅନେକ 'ପାଳକୋଷ' କହିଛନ୍ତି । ମାତ୍ର ସେ କାହା ଆଲୋଚନା ପ୍ରତି ଗୁରୁତ୍ୱ ଦେଇ ନାହାନ୍ତି । ପଣ୍ଡିତମାନଙ୍କର ବିଚାର ଯେ ପ୍ରମାଦପୂର୍ଣ୍ଣ, ପାର୍ଶ୍ୱିକ ଓ ଈର୍ଷାପ୍ରଣୋଦିତ - ଯୁକ୍ତିର ସହିତ ଏକଥା 'ଭାଷାକୋଷ ପାଇଁ ସଫର' ଶୀର୍ଷକ ଆଲୋଚନାରେ ପ୍ରକାଶ କରିଛନ୍ତି । କେବଳ ଭାରତବର୍ଷରେ ନୁହେଁ, ସମଗ୍ର ପୃଥିବୀରେ ସଙ୍କଳିତ କୋଷଗ୍ରନ୍ଥ ଇତିହାସରେ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ର ସ୍ୱତନ୍ତ୍ର୍ୟ - ସ୍ୱୀକୃତି ହୋଇଛି ।

ଯାହା ଏକ ଜାତିର କାର୍ଯ୍ୟ-ତାହା ସମ୍ପାଦନ କରୁଥିଲେ ଗୋପାଳ ଚନ୍ଦ୍ର ପ୍ରହରାଜ ନାମରେ ପରିଚିତ ଜଣେ ବ୍ୟକ୍ତିବିଶେଷ । ସେ କୁମ୍ଭାରଘର ବୋହୂଟିଏ ହୋଇଯାଇଥିଲେ । ଶବ୍ଦଗୁଡ଼ିକର ସଂଗ୍ରହ, ସଂକଳନ, ସମାର୍ଜନ ଓ ମୁଦ୍ରଣ ସହିତ ପ୍ରକାଶନ ପାଇଁ ଆବଶ୍ୟକ ଅର୍ଥ ମଧ ଯୋଗାଡ଼ କରୁଥିଲେ । ରାଜା, ମହାରାଜ, ଜମିଦାର, ମହନ୍ତ, ବିଦେଶୀ ଓ ଦେଶୀ ପ୍ରଶାସକ ଓ ଧନୀମାନଙ୍କ ପାଖରେ ହାତ ପାତୁଥିଲେ । ଭାଷାକୋଷରେ ଗ୍ରାହକ ହେବା ପାଇଁ ବିଶିଷ୍ଟ ବ୍ୟକ୍ତି ଓ ଅନୁଷ୍ଠାନଗୁଡ଼ିକୁ ଅନୁରୋଧ କରୁଥିଲେ । କୋଉଠୁ ପୁରସ୍କାର ତ କୋଉଠୁ ତିରସ୍କାର ପାଉଥିଲେ । ମାତ୍ର ଉଭୟ ଥିଲା ତାଙ୍କ ପାଇଁ ଏକାପରି । ଭୂତାବିଷ୍ଟ ମଣିଷ ପରି ସମଗ୍ର ଓଡ଼ିଶା ଓ ଓଡ଼ିଶାରୁ ଦିଲ୍ଲୀ ଦରବାର ପର୍ଯ୍ୟନ୍ତ ହାତରେ ଭିକ୍ଷାଥାଳ ଧରି, ଧାଁ ଧଉଡ଼ କରୁଥିଲେ । ଯେଉଁଠୁ ଯାହା ପାଖରୁ ଯାହା ପାଉଥିଲେ, ହିସାବ ଖାତାରେ ସେସବୁ ଟିପି ରଖୁଥିଲେ ଏବଂ ଭାଷାକୋଷର ମୁଖବନ୍ଧରେ ସେମାନଙ୍କର ନାମ ପ୍ରକାଶ କରୁଥିଲେ । ଶବ୍ଦ ପ୍ରେମରେ ପଡ଼ି ଜମିଦାରି ଓ ଓକିଲାତି ବୃତ୍ତି - ଉଭୟଙ୍କ ପାଖରୁ ପ୍ରାୟତଃ ଦୂରେଇ ଯାଇଥିଲେ ଏବଂ ଉପାର୍ଜିତ ବିତ୍ତକୁ ମଧ ଶବ୍ଦ ପରିଚର୍ଚ୍ଚାରେ ଖର୍ଚ୍ଚ କରିଦେଉଥିଲେ । ଜଣେ ସାଧାରଣ କର୍ମଚାରୀ ପରି ନିଜେ ଦରମା ନେଉଥିଲେ । ଆୟ ବ୍ୟୟର ଟିକିନିଖି ହିସାବ ରଖୁଥିଲେ । ତଥାପି ଅର୍ଥତୋଷରପାତକାରୀ ଭାବରେ ତାଙ୍କ ନାଁରେ ଅପବାଦର ବାଜା ବାଜୁଥିଲା ।

ସଂଗୃହୀତ ଶବ୍ଦଗୁଡ଼ିକର ବ୍ୟବଚ୍ଛେଦ କାର୍ଯ୍ୟ ସେ ଏକା ଏକା ନିଜ ଇଚ୍ଛାନୁସାରେ କରୁ ନ ଥିଲେ । ବିଭିନ୍ନ ଭାଷା ଓ ବିଭିନ୍ନ ବିଷୟର ତଦ୍‌ବିଦମାନଙ୍କର ସାହାଯ୍ୟ ନେଉଥିଲେ । କଟକସ୍ଥ ଆପଣା ଘରର ନାଁ ରଖିଥିଲେ - ଭାଷାକୋଷ ଆଶ୍ରମ । ସେ ସହଯୋଗୀମାନଙ୍କ ସହିତ ଦୈନିକ ସତର ଅଠର ଘଣ୍ଟା କାଳ ପରିଶ୍ରମ କରୁଥିଲେ । ରାତିରେ ସେ ଭାତ ନ ଖାଇ ଶିଝା ଦୁଧ ପିଉଥିଲେ । ବିଛଣା ସହିତ ତାଙ୍କର ସଂପର୍କ ଥିଲା ପ୍ରାୟ ରାତି ନ'ରୁ ପାହାନ୍ତା ସାଢ଼େ ତିନି ପର୍ଯ୍ୟନ୍ତ । ମୁହଁ ଧୋଇ କିଛି ସମୟ ପାଇଁ କୀର୍ତ୍ତନ କରୁଥିଲେ ଏବଂ ତା'ପରେ ବାସୀକାମ ଶେଷ କରିଦେବାରେ ଲାଗିଯାଉଥିଲେ । ସକାଳୁ ସକାଳୁ ତାଙ୍କ ପାଖରେ ପହଞ୍ଚି ଯାଉଥିଲେ ଘନିଷ୍ଠ ବନ୍ଧୁ, ରାଧାନାଥ ରାୟଙ୍କର - ସୁପୁତ୍ର ଶଶିଭୂଷଣ ରାୟ । ଦୁଇବନ୍ଧୁ କିଛି ସମୟ ପାଇଁ ସୁଖଦୁଃଖ ହେଉଥିଲେ, ଚା' ଖାଉଥିଲେ ଏବଂ ନିର୍ଦ୍ଦିଷ୍ଟ ସମୟରେ ପରସ୍ପର ପାଖରୁ ଦୂରେଇ ଯାଉଥିଲେ । ଗାଧୁଆପାଧୁଆ ଶେଷ କରି ସେ ପୂଜା ଅର୍ଚ୍ଚନାରେ ମଜ୍ଜି ରହୁଥିଲେ । ସବୁଦିନେ ଅଗ୍ନିରେ ଆହୂତି ଦେଉଥିଲେ । ଭାଷାକୋଷ କାମ ଆରମ୍ଭରୁ ଶେଷ ହେବା ପର୍ଯ୍ୟନ୍ତ ସର୍ବତୋମୁଖମଙ୍କ ସେବା ଓ ସନ୍ତୁଷ୍ଟୀକରଣରେ ସେ ଏତେ ଟିକିଏ ହେଳା କରି ନ ଥିଲେ । ପ୍ରତ୍ୟେକ ଶବ୍ଦକୁ ସେ ଈଶ୍ୱରବଦ୍ ଜ୍ଞାନ କରୁଥିଲେ ଏବଂ ନିଜ ବିଚାରରେ ଶବ୍ଦ ଶକ୍ତିର ଆକଳନ ପରେ ଅନ୍ୟମାନଙ୍କ ହାତରେ ସମର୍ପି ଦେଉଥିଲେ । ତାଙ୍କୁ ଏପରି ବିପଜ୍ଜନକ ଅଥଚ ଆନନ୍ଦଦାୟକ କାର୍ଯ୍ୟରେ ଶ୍ରଦ୍ଧାର ସହିତ ସହଯୋଗ କରୁଥିଲେ ଦୁଇଜଣ ସହୃଦୟ । ଜଣେ ବିଶ୍ୱନାଥ କର, ଭାଷାକୋଷର ସୂତ୍ରଧର ମୁଦ୍ରକ, ପ୍ରଜ୍ଞାର ପ୍ରତୀକ ଏବଂ ଆଉ ଜଣେ ପତ୍ନୀଙ୍କର ଅନୁଜା ପୀତାମ୍ବରୀ ଦେବୀ । ଭାଷାକୋଷରୂପୀ ଶବ୍ଦ କୋଣାର୍କ ସତେଯେପରି ପୀତାମ୍ବରୀଙ୍କୁ ପ୍ରହରାଜଙ୍କର ନିକଟତମ କରିଦେଇଥିଲା । ଭାଷାକୋଷ ଆଶ୍ରମର ଥିଲେ ସେ ପ୍ରକୃତ ଈଶ୍ୱରୀ । ଶ୍ୱେତ ସାରସ ପରି ଆଶ୍ରମ ସାରା ସେ ଘୂରି ବୁଲୁଥିଲେ । ସମସ୍ତଙ୍କ କଥା ବୁଝୁଥିଲେ । ମାତ୍ର ଦୁଷ୍ଟ ପ୍ରହରାଜଙ୍କୁ ଅତ୍ୟନ୍ତ ଶିଷ୍ଟ କରି ରଖିଥିଲେ ଆପଣାର ହୃଦକମଳର ଫରୁଆ ଭିତରେ- ଭଅଁରଟିଏ ପରି । ପ୍ରହରାଜଙ୍କ ଦେହ ଓ ମନର ସବୁ କଥା ବୁଝୁଥିଲେ । ଖୁଆଇ ଦେଉଥିଲେ, ଶୁଆଇ ପକାଉଥିଲେ । ତାଙ୍କ ଅଣ୍ଟାରେ ଏକ କରାଟ ସୁରକ୍ଷିତ ଥିଲା ଶତ ପୁଟ ଅହିଫେନ ଏବଂ ପ୍ରହରାଜ ଅହିଫେନର ଆବଶ୍ୟକତା ଅନୁଭବ କଲା ମାତ୍ରକେ ହିଁ, ତାହା ଶୁଭିଯାଉଥିଲା ପୀତାମ୍ବରୀଙ୍କୁ । ଦାତା ଓ ଗ୍ରହୀତା କେହି ତୁଣ୍ଡ ଖୋଲୁ ନ ଥିଲେ, ଅଥଚ ସକଳ ଆବଶ୍ୟକତା ଆପେ ଆପେ ପୂରଣ ହୋଇଯାଉଥିଲା । ପୀତାମ୍ବରୀ ମଧ୍ୟ ଭାଷାକୋଷର ସେବିକା ଥିଲେ । ଅନ୍ୟମାନଙ୍କ ପରି ତନଖା ନେଉଥିଲେ । ମାତ୍ର ଅନ୍ୟମାନଙ୍କ ପାଖରେ ତାଙ୍କର ପରିଚୟ ଥିଲା ସାଧାରଣମାନଙ୍କଠାରୁ ବହୁମାତ୍ରାରେ ସ୍ୱତନ୍ତ୍ର । ସେ କାହାରି ଅନୁଶାସିକା ନ ଥିଲେ, ଥିଲେ ପ୍ରୀତିପ୍ରଦା ଓ ସହୃଦୟା ।

ଭାଷା ପ୍ରେମରେ ଫସିଯିବା ପରଠାରୁ ଯାବତୀୟ ଅରମ୍ୟ ଓ ରଇଜଳା କଥା କହି ଅନ୍ୟମାନଙ୍କୁ ତତେଇବା ଓ ଖେଞ୍ଚିବା ପାଇଁ ସେ ସମ୍ଭବତଃ ଅଧିକ ସମୟ ପାଉ ନ ଥିଲେ । ତାଙ୍କ ସମସ୍ୟା ସଚେତନ କଲମ ଯେପରି ଥକ୍‌କି ଯାଇଥିଲା । ୧୯୩୦ ମସିହାରେ 'ସତ୍ୟ ସମାଚାର' ନାମରେ ଏକ ସାପ୍ତାହିକ ସମ୍ବାଦପତ୍ର ପ୍ରକାଶ କଲେ । ତାଙ୍କ କଂଗ୍ରେସ ବିରୋଧୀ ଓ ବ୍ରିଟିଶ୍ ସ୍ତାବକ ମାନସିକତାର ଏହା ଥିଲା ପ୍ରମାଣପତ୍ର । ସବୁ ସମ୍ବାଦ ସେ ନିଜ଼ ଶୈଳୀରେ ଲେଖୁଥିଲେ ଏବଂ

ଏଥିପାଇଁ ତାଙ୍କୁ ଅଧିକ ସମୟ ଦେବାକୁ ପଡୁଥିଲା । ଏଣେ ଭାଷାକୋଷର ପ୍ରକାଶନ ଶେଷ ହେବା ବେଳକୁ ସେ ପ୍ରାୟ ଛଷଠି ବର୍ଷର ବୟସ୍କ ମଣିଷ । ତାଙ୍କ ବୟସ୍କ ପ୍ରାଣ ଭାଷାକୋଷକୁ କେନ୍ଦ୍ରକରି କେତେ ସପନ ଦେଖୁଥିଲା । ଏହାକୁ ଆକରଗ୍ରନ୍ଥ ଭାବରେ ଗ୍ରହଣ କରି ବିଭିନ୍ନ ବିଷୟକ କୋଷଗ୍ରନ୍ଥମାନ ସଂକଳନ କରିବାକୁ ସେ ଯୋଜନା କରିଥିଲେ । ମାତ୍ର ସୁବିଧାବାଦୀ ସହକର୍ମୀମାନେ ତାଙ୍କୁ ଆଉ ଧରାଛୁଆଁ ଦେଉ ନ ଥିଲେ । ସେମାନଙ୍କ ମଧ୍ୟରୁ କେତେଜଣ ନିଜ ନିଜ ନାମରେ କୋଷଗ୍ରନ୍ଥମାନ ସଂକଳନ କଲେ । ଏହା ତାଙ୍କୁ ଖୁବ୍ ବାଧୁଥିଲା । ମାତ୍ର କାହାକୁ କିଛି କହିପାରୁ ନ ଥିଲେ । ଜଣକ ପରେ ଜଣେ ବନ୍ଧୁ ଆଶ୍ରମ ଛାଡ଼ି ଚାଲିଯାଉଥିଲେ । ଭାଷାକୋଷ ଅବିକ୍ରି ଅବସ୍ଥାରେ ଅଚଳ ପରି ପଡ଼ିରହିଥିଲା । କୋଷଗ୍ରନ୍ଥଗୁଡ଼ିକୁ ଦାନ କରି ଦେବାକୁ ସେ ମନସ୍ଥ କରିଥିଲେ । ତଥାପି ମହାମାନୀ ଗ୍ରାହକମାନେ ଆଗ୍ରହ ଦେଖାଉ ନ ଥିଲେ । ଏଣେ ପୀତାମ୍ବରୀ ଦେବୀଙ୍କ ସହିତ ତାଙ୍କ ସନ୍ଦେହଜନକ ସମ୍ପର୍କ ଏବଂ ଜାତୀୟତାବାଦୀମାନଙ୍କ ପ୍ରତି ବିଦ୍ରୂପକୁ ଆଳକରି ସମକାଳୀନ ସଂଗ୍ରାମୀମାନେ ତାଙ୍କ ଉପରକୁ କିଳିକିଳା ରବରି ବୋଲୁଅ ଫିଙ୍ଗୁଥିଲେ । ଆତ୍ମୀୟସ୍ୱଜନମାନଙ୍କ ସହିତ ତାଙ୍କ ସମ୍ପର୍କ ପ୍ରାୟ ତୁଟି ଯାଇଥିଲା । ଏପରିକି ପୈତୃକ ସମ୍ପତ୍ତିକୁ କେନ୍ଦ୍ର କରି ପୁଅ ବିପକ୍ଷରେ ତାଙ୍କୁ ନ୍ୟାୟାଳୟରେ ଠିଆ ହେବାକୁ ପଡୁଥିଲା । ଅନେକଙ୍କ ସହିତ ଲଢ଼ି ଲଢ଼ି ସେ କ୍ଲାନ୍ତ ହୋଇ ପଡ଼ିଥିଲେ ।

ପ୍ରହରାଜଙ୍କ ଜୀବନର କରୁଣତମ ଅଧ୍ୟାୟ ଥିଲା - ପରିଣତ ବୟସରେ ପ୍ରାୟ ଚାଳିଶ ବର୍ଷ ବୟସ୍କା ପୀତାମ୍ବରୀଙ୍କ ସହିତ ମନାନ୍ତର । ପୀତାମ୍ବରୀଙ୍କୁ ସେ ବିପୁଳ ସମ୍ପତ୍ତିର ଅଧିକାରିଣୀ କରିଥିଲେ । ତାଙ୍କ ଇଚ୍ଛାକୁ ସମ୍ମାନ ଜଣାଇ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ସ୍ୱୀକୃତି ଦେଇଥିଲେ । ଫଳତଃ ସେ ଜଗବନ୍ଧୁ ନାମକ ଶିଶୁକୁ ନିଜର କରିଥିଲେ । ମାତ୍ର ଏକୋଇଶ, ବାଇଶ ବର୍ଷ ବୟସରେ 'ଢଗଢମାଳି ବଚନ ରଚନା' ଓ ଛବିଶ/ସତେଇଶ ବର୍ଷ ବୟସରେ ଭାଷାକୋଷ ସଂକଳନର ପ୍ରମୁଖ ସହଯୋଗୀ ହେବାର ଗୌରବ ଦେଇଥିଲେ । ତାଙ୍କରି ଯୋଗୁଁ ପୀତାମ୍ବରୀ ଜଣେ କାହାଣୀକାର ଓ ଔପନ୍ୟାସିକା ଭାବରେ ଓଡ଼ିଶାରେ ପରିଚିତା ହୋଇଥିଲେ । ବିଶିଷ୍ଟମାନଙ୍କ ଗହଣରେ ବିଚରଣ କରିବାର ସୁଯୋଗ ପାଇଥିଲେ । କେବଳ ସେତିକି ନୁହେଁ, ଆପଣାର ପୈତୃକ ଓ ଉପାର୍ଜିତ ସମ୍ପତ୍ତିକୁ ମଧ୍ୟ ପୌତ୍ର, ପୀତାମ୍ବରୀ ଦେବୀ, ଭାଷାକୋଷର ସହଯୋଗୀ, ଉତ୍କଳ ସାହିତ୍ୟ ପ୍ରେସ୍‌ର ସ୍ୱତ୍ୱାଧିକାରୀ ଏବଂ ଉତ୍କଳ ସାହିତ୍ୟ ସମାଜ ନାମରେ ଭାଗବଣ୍ଟା କରିଦେଇଥିଲେ । ଏ ସଂକ୍ରାନ୍ତ ଇଚ୍ଛାପତ୍ର (ଉଇଲ୍) ପ୍ରଥମେ ୧୯୩୬ ମସିହାରେ କୋର୍ଟରେ ସ୍ୱୀକୃତି ପାଇଥିଲା । ମାତ୍ର କୌଣସି କାରଣରୁ ପ୍ରହରାଜ ଆପଣାର ଜୀବଦ୍ଦଶାରେ ଦୁଇଥର ଏଥିରେ ପରିବର୍ତ୍ତନ ଆଣିଥିଲେ ଏବଂ ଏ ପରିବର୍ତ୍ତନରେ କ୍ଷତିଗ୍ରସ୍ତା ହୋଇଥିଲେ ପୀତାମ୍ବରୀ ଦେବୀ । ପ୍ରହରାଜଙ୍କ ଜୀବନର ସବୁ ଗଳି, ଉପଗଳିର ଗୋପନୀୟ ରହସ୍ୟକୁ ଠାବ କରିପାରିଥିଲେ ପୀତାମ୍ବରୀ । ସେ ସମ୍ଭବତଃ ତାଙ୍କ ପୋତା ଓ ଉଭା ବିତ୍ତରୁ ଅଧିକ ଅଧିକାର ପାଇବାକୁ ଚାହୁଁଥିଲେ ଏବଂ ହାରିଯାଉଥିଲେ । ପ୍ରତିବାଦ କରୁଥିଲେ । ଏ ପ୍ରତିବାଦ ପତ୍ନୀର ନୁହେଁ, ଦ୍ୱିତୀୟାର । ଜଣେ ନାରୀକୁ ଉଭୟ ସମ୍ପତ୍ତି ଓ ସମ୍ମାନ, ଅନେକ କିଛି ଦେବାପରେ, ତଥାପି କିଛି ଅଦେୟ ରହିଯାଇଥିବା ଅଭିଯୋଗ ଓ ତଜ୍ଜନିତ ଅସନ୍ତୋଷ, ସମ୍ଭବତଃ ପ୍ରହରାଜଙ୍କୁ ଅନ୍ୟମନସ୍କ କରି ଦେଉଥିଲା ।

ପୀତାମ୍ବରୀ ମଧ ଭାଷାକୋଷ ଆଶ୍ରମରେ ମଝିରେ ମଝିରେ ଅନୁପସ୍ଥିତ ରହୁଥିଲେ । ସନ୍ଧଗାଁରେ, ତାଙ୍କ ଶଶୁରଘରେ ପ୍ରହରାଜ ଗଢ଼ିଦେଇଥିବା କୋଠାଘରକୁ ଜୀବନ ଖୋଜି ଖୋଜି ଚାଲିଯାଉଥିଲେ ଏବଂ ତାଙ୍କ ମୁହୂର୍ତ୍ତକର ଅନୁପସ୍ଥିତିକୁ ସହିପାରୁ ନ ଥିଲେ ବୟସ୍କ ପ୍ରହରାଜ । ଉଭୟଙ୍କ ଭିତରେ କେଉଁଠି ନା କେଉଁଠି ଅବିଶ୍ୱାସ ଓ ଅପ୍ରାପ୍ତିବୋଧର କ୍ଷତ ଗଭୀରତର ହେଉଥିଲା - ତାହା ସେମାନେ ଅବଶ୍ୟ ଜାଣିଥିଲେ । ମାତ୍ର ତାହା ପଦାରେ ପଡୁ ନ ଥିଲା । ଶାନ୍ତି ପାଇବା ପାଇଁ ବୃଦ୍ଧ ପ୍ରହରାଜଙ୍କ ଅନୁଭବୀ ଓ ଚଳଚଞ୍ଚଳ ପାଦ ଦୁଇଟି ପୁଣି କଟେରି ହତା ଭିତରେ ଘୂରାଫେରା ଆରମ୍ଭ କରିଦେଇଥିଲା । ସେଠି ସେମାନେ ଅଧିକ ସମୟ ରହିପାରୁ ନ ଥିଲେ । ଆଶ୍ରମ ଆଡ଼କୁ ଟାଣିହୋଇ ଆସୁଥିଲେ ଏବଂ ଆଶ୍ରମର ଅଳିନ୍ଦ ଓ ନିଳୟ ଭିତରେ ସେ ଯାହାକୁ ଖୋଜୁଥିଲେ, ପାଉ ନ ଥିଲେ । ସେ କେବେ କେବେ ଅନୁଭବ କରୁଥିଲେ ମଧୁର ସମ୍ପର୍କୀୟାଙ୍କ ଅନୁପସ୍ଥିତି ଓ ଆଉ କେବେ କେବେ ରାଗରୁଷା, ପର୍ବତ ପ୍ରମାଣ ଅଭିଯୋଗ । ତାଙ୍କୁ ଅଧିକ ଯନ୍ତ୍ରଣା ଦେଉଥିଲା ଅବିକ୍ରି ଅବସ୍ଥାରେ ପଡ଼ି ରହିଥିବା ଅଚଳାୟିତ ଭାଷାକୋଷ । ସେ ମାନସିକ ଭାରସାମ୍ୟ ହରାଇ ବସୁଥିଲେ ।

ସେଦିନ ୧୯୪୫ ମସିହା ମେ ମାସ ଷୋହଳ ତାରିଖ ରାତି । ସବୁଦିନ ପରି ପ୍ରାୟ ସାଢ଼େ ଆଠଟା ବେଳକୁ ଶିଝାଦୁଧ ପିଇ ସେ ବିଛଣାକୁ ଗଲେ ଏବଂ ହଠାତ୍ ଛାତିରେ ଅନୁଭବ କଲେ ମରଣାନ୍ତକ ଯନ୍ତ୍ରଣା । ଚିତ୍କାର କରିଉଠିଲେ । ଭୟଙ୍କର ଚିତ୍କାର ପଡ଼ୋଶୀମାନଙ୍କୁ ମଧ ଆତଙ୍କିତ କରିଦେଇଥିଲା । ତାଙ୍କୁ କଟକ ବଡ଼ ଡାକ୍ତରଖାନା ନିଆଗଲା । ମାତ୍ର ଡାକ୍ତରଖାନା ନେବାର କୌଣସି ଆବଶ୍ୟକତା ହିଁ ନ ଥିଲା । ଆପଣା ହାତ ତିଆରି ଘରକୁ ନ ଫେରି, ଅନ୍ୟମାନଙ୍କ କାନ୍ଧରେ ପାଦ ଦେଇ ସେ ଅଦେଖା ମାଲିକର ଘର ଆଡ଼କୁ ଚାଲିଯାଇଥିଲେ ।

ସେ ପ୍ରାୟ ସବୁବେଳେ କହୁଥିଲେ - 'ମୁଁ ଫିସାଦିଆ', 'ଗୋପାଳପୁରିଆ', 'ଉଡ଼ାଗାଡ଼ିଖାନାର ନିଃସଙ୍ଗ ପଥିକ' ଏବଂ ଏ ସଂସାରର ସବୁଆଡ଼େ କେବଳ 'କୋଦିଣ୍ଡା ନିଷାପ' । ସଂସାରର ପୂର୍ଣ୍ଣତା ଓ ନିଃସଙ୍ଗତା ଉଭୟକୁ ସ୍ୱୀକାର କରୁଥିବା ଏବଂ ଗୋପାଳପୁରରେ ପରିପୂର୍ଣ୍ଣ ମଳର ପରିଷ୍କରଣ ପାଇଁ ସପନ ଦେଖୁଥିବା, ତୁଣ୍ଡ ଖୋଲୁଥିବା ମଣିଷ ସେଇ ଗୋପାଳପୁରିଆମିର ଶିକାର ହେଲେ । ଘର ତିଆରି କରିଥିଲେ ରହିବା ପାଇଁ; ରହି ପାରିଲେନି । ସତ କହିବା ପାଇଁ ପଣ କରିଥିଲେ - କହି ପାରିଲେନି । ଭିତରର ମଳକୁ ବିଭ କରି, ସଂସାରଠାରୁ ଦୂରେଇଗଲେ । ମାତ୍ର ସତ କହିବାକୁ ଗଲେ - ସେ ଆଉ କେଉଁଆଡ଼େ ଯାଇ ନାହାନ୍ତି । ସେ ଏଇଠି ଆମରି ଭିତରେ ଅଛନ୍ତି । ଆପଣା ସୃଷ୍ଟିର ଉଷ୍ଣତାରେ ଆମକୁ ଉଦ୍ଦୀପିତ କରୁଛନ୍ତି ଏବଂ ଓଡ଼ିଆ ଭାଷାର ଅନୁପମ ଶବ୍ଦ-କୋଣାର୍କ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ପାଖରେ ଠିଆ ହୋଇ ବିଶ୍ୱର ଅନ୍ୟ ମଣିଷମାନଙ୍କ ପାଖରେ ନିଜକୁ, ନିଜ ଭୂମିକୁ ଚିହ୍ନେଇ ଦେଉଛନ୍ତି । କହୁଛନ୍ତି - ମୁଁ, ମୁଁ ନୁହେଁ, ଆମ୍ଭେମାନେ ।

# ପ୍ରକାଶକଙ୍କ ତରଫରୁ

ଓଡ଼ିଶାର ଯଶସ୍ୱୀ ସାରସ୍ୱତ ପୁରୁଷ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ପ୍ରଣେତା ଗୋପାଳ ଚନ୍ଦ୍ର ପ୍ରହରାଜ ଓଡ଼ିଆ ପାଠକ-ପାଠିକାମାନଙ୍କ ନିକଟରେ ସୁପରିଚିତ । ଲୋକସାହିତ୍ୟ, ପ୍ରବନ୍ଧ ଓ ରମ୍ୟରଚନାରେ ତାଙ୍କର ଅପୂର୍ବ କଳାକୁଶଳତା ଲକ୍ଷଣୀୟ । ଫକୀରମୋହନଙ୍କ ପରେ ପ୍ରହରାଜ, ରମ୍ୟରଚନା ପାଇଁ ଏକ ପ୍ରଶସ୍ତ ଭୂମି ଓ ଭୂମିକା ପ୍ରସ୍ତୁତ କରିଛନ୍ତି । 'ଭାଗବତ ଟୁଙ୍ଗିରେ ସନ୍ଧ୍ୟା', 'ଆମ ଘରର ହାଲଚାଲ', 'ବାଇ ମାହାନ୍ତି ପାଞ୍ଜି' ପରି କେତୋଟି ସଂକଳନ ପୂର୍ବରୁ ପ୍ରକାଶ ପାଇଥିଲା । ତେବେ ତାଙ୍କର ଶତାଧିକ ରଚନା ସାମସମୟିକ ପତ୍ରିକାରେ ପ୍ରକାଶ ପାଉଥିଲା, ଯାହା ଏବେ ଦୁର୍ଲଭ ହୋଇ ପଡ଼ିଛି ।

ପ୍ରହରାଜଙ୍କ ସମଗ୍ର ରଚନାକୁ ବିଧିବଦ୍ଧ ଭାବରେ ସଂକଳିତ କରି ପୂର୍ଣ୍ଣାଙ୍ଗ ଗ୍ରନ୍ଥାବଳୀ ପ୍ରକାଶ କରିବାର ଅଭିଳାଷ ଥିଲା । ଏହି ଆଶା ପରିପୂରଣ ଦିଗରେ ସହାୟକ ହୋଇଛନ୍ତି ଶ୍ରୀ ଗୌରାଙ୍ଗ ଚରଣ ଦାଶ । ତାଙ୍କର ଶ୍ରଦ୍ଧା, ଶ୍ରମ ଓ ସମୟର ଯଥାର୍ଥ ବିନିଯୋଗ କରି ପତ୍ରିକାର ଜୀର୍ଣ୍ଣ ପୃଷ୍ଠାରୁ ଅମୂଲ୍ୟ ରଚନାବଳୀର ସଂଗ୍ରହ ଓ ସଂଗ୍ରଥନ କାର୍ଯ୍ୟ ସମ୍ପନ୍ନ ହୋଇଛି ।

ପ୍ରହରାଜଙ୍କ ବିପୁଳ ରଚନାବଳୀକୁ ଗୋଟିଏ ଖଣ୍ଡରେ ପ୍ରକାଶ କରିବା ସମ୍ଭବ ନୁହେଁ । ପ୍ରଥମ ଭାଗରେ ତାଙ୍କର ସମସ୍ତ ରମ୍ୟରଚନାକୁ ସ୍ଥାନ ଦିଆଯାଇଛି । ପ୍ରହରାଜଙ୍କ ଜୀବିତାବସ୍ଥାରେ ପ୍ରକାଶିତ ସବିଶେଷ ସଂସ୍କରଣର ପାଠ ଏଥିରେ ଗୃହୀତ । ଗ୍ରନ୍ଥର ଆରମ୍ଭରେ ପ୍ରହରାଜଙ୍କ ଜୀବନୀ ଏବଂ ତାଙ୍କ ରମ୍ୟରଚନା ସମ୍ପର୍କିତ ସବିଶେଷ ତଥ୍ୟ ସନ୍ନିବେଶିତ । ଏହା ପାଠକ ଏବଂ ଗବେଷକମାନଙ୍କ ଆବଶ୍ୟକତା ପୂରଣ ଦିଗରେ ସହାୟକ ହେବ ବୋଲି ଆଶା ।

ଗ୍ରନ୍ଥାବଳୀର ଅନ୍ୟାନ୍ୟ ଭାଗରେ ପ୍ରହରାଜଙ୍କ 'ଲୋକସାହିତ୍ୟ ଓ ଅନ୍ୟ ସମସ୍ତ ଦୁଷ୍ପ୍ରାପ୍ୟ ରଚନାବଳୀ' ପ୍ରକାଶ ପାଇବ । ଏହି ଦୁରୂହ କାର୍ଯ୍ୟ ସମ୍ପାଦନ ପାଇଁ ଏହାର ସଂକଳକ ଶ୍ରୀ ଦାଶଙ୍କୁ ସାଧୁବାଦ ଜ୍ଞାପନ କରୁଛି ।

ଆଶା, ଆମର ଏ ପ୍ରଚେଷ୍ଟା ଓଡ଼ିଆ ଭାଷା ଓ ସାହିତ୍ୟ ଅନୁରାଗୀମାନଙ୍କର ଅଭିଳାଷ ପୂରଣ କରିବାରେ ସମର୍ଥ ହେବ ।

ପୀତାମ୍ବର ମିଶ୍ର

୫ ମେ ୨୦୦୫
କଟକ

# ସୂଚୀ

# ଭାଗବତ ଟୁଙ୍ଗିରେ ସନ୍ଧ୍ୟା

## ୧୯୦୧-୧୯୦୨

'ଭାଗବତ ଟୁଙ୍ଗିରେ ସନ୍ଧ୍ୟା' ପ୍ରହରାଜଙ୍କ ପ୍ରଥମ ପ୍ରକାଶିତ ପୁସ୍ତକ । ପ୍ରକାଶ କାଳ ୧୯୦୩ ମସିହା । ପାରଳାଖେମିଡିର ସେକେଣ୍ଡ ପ୍ରିନ୍ସ ଶ୍ରୀ ପଦ୍ମନାଭ ନାରାୟଣ ଦେବ, ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବଙ୍କ ଆର୍ଥିକ ସାହାଯ୍ୟରେ ଏହା ପ୍ରକାଶ ପାଇଥିଲା । ମାତ୍ର ପୂର୍ବରୁ ପୁସ୍ତକରେ ବର୍ଣ୍ଣିତ ବିଭିନ୍ନ ସନ୍ଧ୍ୟା 'ଉକ୍ଳଳ ସାହିତ୍ୟ' ପତ୍ରିକାର ଚତୁର୍ଥ ବର୍ଷ ୭/୮ (୧୩୦୭ ସାଲ) ସଂଖ୍ୟାଠାରୁ ଆରମ୍ଭ ହୋଇ ପଞ୍ଚମ ବର୍ଷର ଦଶମ ସଂଖ୍ୟା (୧୩୦୮ ସାଲ) ପର୍ଯ୍ୟନ୍ତ ଦଶଗୋଟି ସଂଖ୍ୟାରେ ପ୍ରକାଶ ପାଇଥିଲା । ଲେଖକଙ୍କ ଛଦ୍ମ ନାମ ଥିଲା 'ଶ୍ରୀ ଦୁର୍ମୁଖ ଶର୍ମା' । ପୁସ୍ତକର ପ୍ରଥମ ସଂସ୍କରଣରେ ଲେଖକଙ୍କ ନାମ ଦୁର୍ମୁଖ ଶର୍ମା ରହିଥିଲା ବେଳେ, ଦ୍ୱିତୀୟ ସଂସ୍କରଣରେ ଶ୍ରୀ ଦୁର୍ମୁଖ ଶର୍ମା ଓରଫ ଗୋପାଳ ଚନ୍ଦ୍ର ପ୍ରହରାଜ ଉଲ୍ଲେଖ ରହିଛି ।

ସଂପାଦକ

### ଭୂମିକା

[ ୧୯୦୩ ]

ଗଞ୍ଜାମ ଅନ୍ତର୍ଗତ ପାରଳାଖେମିଡିର ସେକେଣ୍ଡ ପ୍ରିନ୍ସ ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବ ଓ ମୟୂରଭଞ୍ଜାଧୀଶ୍ୱର ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ବାହାଦୁର ସାହିତ୍ୟ କ୍ଷେତ୍ରରେ ନୂତନ Patron ନୁହନ୍ତି । ତେବେ ଏ ସୌଭାଗ୍ୟ ଶର୍ମାଙ୍କ ଭାଗ୍ୟରେ ଘଟିଛି, ଏହା ନବୀନ ସାହିତ୍ୟସେବକଙ୍କ ପ୍ରତି ଅବଶ୍ୟ ସୁସମାଚାର । ଏ ଦୁଇ ଜଣ 'ଗ୍ରାହକ'ଙ୍କୁ ନ ପାଇଥିଲେ ଓ ସୁଯୋଗରୁ ହେଉ ବା ଦୁର୍ଯୋଗରୁ ହେଉ ଏମାନଙ୍କର ଆଂଶିକ ଆନୁକୂଲ୍ୟ ଲାଭ କରି ନ ଥିଲେ ଏ ପୁସ୍ତକ ଖଣ୍ଡି ଏତେ ଶୀଘ୍ର ପ୍ରକାଶିତ ହୋଇଥା'ନ୍ତା କି ନାହିଁ ସନ୍ଦେହ । 'ଏତେ ଶୀଘ୍ର' ନିମନ୍ତେ ଶର୍ମାଙ୍କ ଗୁରୁଗୋସାଇଁ ଖୋଦ୍ ଦାୟୀ । ତାଙ୍କରି

ମନ୍ତ୍ରଣାରେ 'ସନ୍ଧ୍ୟା'ର ଜନ୍ମ ଓ ଆଜି ଉପନୟନ ହେଲା ଖିରିପିଠା ପରେ । କେବେ ଯେ 'ବ୍ରହ୍ମଚର୍ଯ୍ୟ' ଶେଷ ହେବ, ତାହା ଭଗବାନ୍ ଜାଣନ୍ତି । ତେବେ ଗୃହସ୍ଥାଶ୍ରମର ପଥ ବହୁ ଦୂର, ଏ କଥା ଏକପ୍ରକାର ନିଶ୍ଚିତ । କୃତଜ୍ଞତାର କାରଣ ଢେର ଅଛି । କିନ୍ତୁ ଦୁଃଖର ବିଷୟ କି ସୁଖର ବିଷୟ, ସମୟ ଓ ସୁବିଧାର ଅଭାବ । ଅଭାବ ନ ଥିଲେ ସୁଦ୍ଧା ପ୍ରକୃତିକୁ ଏଡ଼ିବା କାଠିକର ପାଠ । ସନ୍ଧ୍ୟାର ପ୍ରଥମ ଜନ୍ମ ସମୟରେ ଷଠୀ-ପଞ୍ଚୁଆତି ବେଳେ ଅନେକ ମହାନୁଭବ ଅତିଥି ଅଯାଚିତୋପସ୍ଥିତ ହୋଇଥିଲେ । ବ୍ରତବେଳେ ସେମାନଙ୍କୁ ନ ଲୋଡ଼ିବାଟା ଅଡୁଆ ଲାଗିବ । ଧୂଳିରେ ଗୁରୁଣ୍ଡିଲା ବେଳେ ଯେଉଁମାନେ ଧୂଳି ଝାଡ଼ିଦେଇ କାଖେଇ ପକାଇଛନ୍ତି, ସେମାନେ ଯୌବନ ସମୟରେ ଯେ ଆଦର ନ କରିବେ, ଏହା କିଏ କହିବ ? ସେତେବେଳେ ଯେଉଁ ସୁହାଗ ଯଥେଷ୍ଟ ହୋଇଥିଲା, ଏତେବେଳେ ତାହା 'ଅଯଥା' ହୋଇପାରେ ।

ଆଧୁନିକ କାଇଦା 'ଉତ୍ସର୍ଗ' କରିବାକୁ ଶର୍ମାଙ୍କର ଉପାୟ ନାହିଁ । ଥିଲେ ସେ ସୁଯୋଗଟା ଶର୍ମା କି ଛାଡ଼ିବା ଜନ୍ତୁ ? 'ଆପଣା ହସ୍ତେ ଜିହ୍ୱା ଛେଦି, କେ ତାର ଅଛି ପ୍ରତିବାଦୀ ।' ହାତରୁ ଛୁଟିଲେ ଅଣବାହୁଡ଼ ।

ଶର୍ମା ପାଠ୍ୟାବସ୍ଥାରେ ମହାମତି ଆମେରିକା ଲେଖକ Oliver Wendal Holmesଙ୍କୁ ଦିନାକେତେ ଗୁରୁ ପାଇଥିଲେ । ସନ୍ଧ୍ୟାର ଛଟା ସେହି ଓସ୍ତାତି ଘତର ବିକୃତ ଓ ବିଭଙ୍ଗ ଅନୁସରଣ ମାତ୍ର । ଧୂଆଁକଳ 'ସାଗରକେଶରୀ' ଯେଉଁ ବାଟେ ଯାଏ, ସେ ବାଟେ ରାମ ମହାରଣା କାଠପଟାଳି ମଧ ଓଟାରୁଛି । ଯାହାଠାରେ ଯେଉଁପ୍ରକାର ଉପାଦାନ ମହଜୁଦ୍, ସେ ତହିଁକି ଚାହିଁ ଦଣ୍ଡେ ଘଡ଼ିଏ କସରତ୍ କଲେ ଖଲାସ । ଛୋଟା ଛୋଟେଇ ଚାଲିବା ସ୍ୱାଭାବିକ ।

ଶର୍ମାଙ୍କର ଜଣେ M.A.B.L.* ଓ ଜଣେ B.A. ବନ୍ଧୁ ସନ୍ଧ୍ୟାକୁ ଆଦ୍ୟୋପ୍ରାନ୍ତ ପଢ଼ି କେତେ ସ୍ଥଳ ସଂଶୋଧନ କରି ଦେଇଅଛନ୍ତି । ସେମାନଙ୍କୁ ମୌଖିକ କୃତଜ୍ଞତା ଛୁଇଁ ପାରିବ ନାହିଁ ବୋଲି ଶର୍ମା ଏ ଯାତ୍ରାରୁ ରକ୍ଷା ପାଇଲେ । ପୋଷାକ ସିନା ବହିର୍ଜଗତ ପାଇଁ, ଘରେ ପୋଷାକ ପିନ୍ଧିଲେ ଘିମିରି ମାତ୍ର ସାର ହେବ ।

ଏ ସନ୍ଧ୍ୟାରେ ଯେତେ ବିଷୟ ଅଛି, ସେଗୁଡ଼ିକ ଶର୍ମାଙ୍କର ନିଜସ୍ୱ ନୁହେଁ । ଟୁଙ୍ଗିର ଅନ୍ୟାନ୍ୟ ସଭ୍ୟମାନଙ୍କୁ ଉଚିତ ପ୍ରାପ୍ୟ ନ ଦେଇ ସମସ୍ତଙ୍କ ପ୍ରଦତ୍ତ ଚାନ୍ଦାରୁ ଆପେ ଏକା 'ଅଯସ' କରିନେବାର କ୍ଷମତା ଶର୍ମାଙ୍କର ନାହିଁ । ଥିଲେ ଶର୍ମା ଛାଡ଼ି ଦିଅନ୍ତେ ବୋଲି ପାଠକ ମନେ କରିଅଛନ୍ତି କି ?

---

* ଶ୍ରୀ ଅଭିରାମ ଭଂଜ

## ବିଜ୍ଞାପନ

ପୁସ୍ତକ ବା ପ୍ରବନ୍ଧର ଶିରୋନାମା ପ୍ରତି ଦୃଷ୍ଟି କରି ଯେଉଁମାନେ ଲେଖକଙ୍କର ସାଂସାରିକ, ଶାରୀରିକ, ମାନସିକ, ବାଚିକ, ସାମାଜିକ, ଐହିକ, ପାରତ୍ରିକ ଅବସ୍ଥା ସୂକ୍ଷ୍ମବୁଦ୍ଧି ପ୍ରସାଦରୁ ନିରୂପଣ କରିପାରନ୍ତି, ସେମାନଙ୍କ ନିମନ୍ତେ ଏହି ପୁସ୍ତକ ଲିଖିତ ବିଷୟମାନ ସଂଗୃହୀତ ହୋଇ ନାହିଁ । ଅର୍ଦ୍ଧପ୍ରସ୍ଫୁଟିତ ବା ଅପ୍ରସ୍ଫୁଟିତ ଭାବମାନ (ଯସ୍ଥାମାନ୍ୟ ବ୍ୟକ୍ତି ମୁଖରୁ ଶୁଣିଲେ ଦୋଷ ନାହିଁ  ଅମେଧ୍ୟାଦପି କାଞ୍ଚନଂ ଗ୍ରହଣ କରିବା ପଦ୍ଧତି ଚାଣକ୍ୟ ଚତୁର୍ମୁଖରେ ବର୍ଣ୍ଣନା କରି ଅନୁମୋଦନ କରି ଯାଇଅଛନ୍ତି ।) ପ୍ରାପ୍ତ ହୋଇ ଯେଉଁମାନେ କଳ୍ପନା ସାହାଯ୍ୟରେ ସୁପରିସ୍ଫୁଟ ବା ଉଚ୍ଚତର ଭାବମାନଙ୍କରେ ଆରୋହଣ କରନ୍ତି, ସେମାନେ ଗୁଣୀ । ପ୍ରଚ୍ଛନ୍ନ ଭାବ ଓ ଉପମାମାନ ହୃଦୟଙ୍ଗମ କରିବାକୁ ଚେଷ୍ଟା କଲେ ବୃତ୍ତି ପରିମାର୍ଜ୍ଜିତ ଓ ଉନ୍ନତ ହୁଏ ।

ଆମ୍ଭମାନଙ୍କ ଗ୍ରାମରେ ଗୋଟିଏ ଭାଗବତ ଟୁଙ୍ଗି ଅଛି । ଟୁଙ୍ଗିର ଇତିହାସ ଆମ୍ଭେମାନେ ସବିଶେଷ ଅବଗତ ନୋହୁଁ । ଅଧୁନା ଟୁଙ୍ଗିରେ ତାଳପତ୍ର ପୋଥି ଖଣ୍ଡିଏ ସୁଦ୍ଧା ନାହିଁ । ମହାମାରୀ ଭୟ ଓ ବସନ୍ତ ରୋଗର ପ୍ରାଦୁର୍ଭାବ ସମୟରେ ଟୁଙ୍ଗିରେ 'ସପ୍ତା ଭାଗବତ' ବସିବାରୁ 'ଭାଗବତ ଟୁଙ୍ଗି' ନାମଟି କେତେକ ପରିମାଣରେ ସାର୍ଥକତା ଲାଭ କରିଅଛି । ସମୟ ସମୟରେ ଅତିଥି, ଅଭ୍ୟାଗତ, ବାବୁଭୟା, ସରକାରୀ ଲୋକ ଆସିଲେ ଏଠାରେ ସ୍ଥାନ ପାଆନ୍ତି । ପ୍ରାୟ ପ୍ରତିଦିନ ଗ୍ରାମର ୧୦/୧୫ ଜଣ ସନ୍ଧ୍ୟା ସମୟରେ ଏଠାରେ ଏକତ୍ର ହୋଇ କ୍ଷମତା ଅନୁସାରେ ନାନାଦି ବିଷୟ ଆଲୋଚନା କରୁଁ । ଏ ଗ୍ରାମଟି ବୃହତ୍ ଓ ନଗରର ନିକଟବର୍ତ୍ତୀ ଥିବାରୁ ପ୍ରତିଦିନ ନଗରର ସମ୍ବାଦ (ଉଡ଼ାଖବର) ଆମ୍ଭେମାନେ ପ୍ରାପ୍ତ ହେଉଁ । ଗ୍ରାମର କେତେକ ଲୋକ ଗୃହରେ ଶୀଘ୍ର ଶୀଘ୍ର ସ୍ନାନ ଭୋଜନାଦି ପୂର୍ବାହ୍ଣକୃତ୍ୟ ସମାପନ କରି ନଗରର କାର୍ଯ୍ୟାଳୟମାନଙ୍କରେ କାର୍ଯ୍ୟ କରିବାକୁ ଯା'ନ୍ତି ଓ ସନ୍ଧ୍ୟା ପରେ ପ୍ରତିଦିନ ଗୃହକୁ ପ୍ରତ୍ୟାଗତ ହୁଅନ୍ତି । ଏଠାରେ ଗୋଟିଏ ଅପର ପ୍ରାଇମେରୀ ବିଦ୍ୟାଳୟ ଓ ପୂର୍ବ ରୀତିରେ ଗୋଟିଏ ଟୋଲ ଅଛି । ଗ୍ରାମର ୩/୪ ଜଣ ଯୁବକ ଏଣ୍ଟ୍ରାନ୍ସ, ପଣ୍ଡିତ ବିଭାଗ ଓ ସର୍ଭେ ପାସ୍ କରିଅଛନ୍ତି । ଜଣେ ଦୁଇଜଣ ଶିକ୍ଷାର ଉଚ୍ଚତର ସୋପାନ (ସୋପାନକୁ ଆପଣ ଶିଖର ବୋଲି ମନେ କରି ନେବେ ନାହିଁ) ଆରୋହଣ କରିଅଛନ୍ତି । ଏ ଗ୍ରାମକୁ ୩/୪ ଖଣ୍ଡ ଉତ୍କଳ ଓ ବଙ୍ଗଳା ପତ୍ରିକା ଆନୀତ ହୁଏ । ଗ୍ରାମଟିରେ ବ୍ରାହ୍ମଣ, କରଣ ଓ ଖଣ୍ଡାଏତଙ୍କ ସଂଖ୍ୟା 'ହାଟୁଆ'ଙ୍କ ଅପେକ୍ଷା ନ୍ୟୂନ ।

ଟୁଙ୍ଗିଟି ଗ୍ରାମପ୍ରାନ୍ତ ଠାକୁରାଣୀ ଓ ଗ୍ରାମର ପୁଷ୍କରିଣୀ ମଧ୍ୟରେ ଅବସ୍ଥିତ । ସନ୍ଧ୍ୟାବେଳେ ଗ୍ରାମର ବର୍ଷୀୟସୀମାନେ ବ୍ୟବହାରସିଦ୍ଧ ସାୟଂକୃତ୍ୟ ସମାପନ କରିବାକୁ ଯାଇ ପୁଷ୍କରିଣୀରୁ ପ୍ରତ୍ୟାବର୍ତ୍ତନ କରିବା ସମୟରେ ଟୁଙ୍ଗି ପାର୍ଶ୍ୱ ଦେଇ ଆସନ୍ତି । ଯେଉଁଦିନ ସେମାନଙ୍କ ଚିତ୍ତରଞ୍ଜନ କୌଣସି ବିଷୟ ଟୁଙ୍ଗିରେ ଉତ୍ଥାପିତ ହୋଇଥାଏ, ସେଦିନ

ଦଣ୍ଡେ ଘଡ଼ିଏ ବାହାରେ ଠିଆହୋଇ ଶୁଣନ୍ତି ଓ ଯେବେ ସେମାନଙ୍କର କେହି ମାନ୍ୟଲୋକ ଟୁଙ୍ଗିରେ ଉପସ୍ଥିତ ନ ଥା'ନ୍ତି, ତେବେ ବର୍ଷୀୟସୀମାନେ ଟୁଙ୍ଗି ଦ୍ୱାରକୁ ଆସି ଆପଣାର ମତ ପଦେ ଅଧେ ପ୍ରକାଶ କରିପାରନ୍ତି । ଖୁବ୍ ଅଳ୍ପ ସମୟରେ ଗ୍ରାମର ଜଣେ ଦୁଇଜଣ ଅଳ୍ପବୟସ୍କା କନ୍ୟା ଏମାନଙ୍କ ସାଙ୍ଗରେ ଥା'ନ୍ତି । କିନ୍ତୁ ସ୍ତ୍ରୀମାନଙ୍କ ଉପସ୍ଥିତି ଅତି ଅଳ୍ପକାଳ ସ୍ଥାୟୀ । ଟୁଙ୍ଗିର ଜିନିଷପତ୍ର ମଧ୍ୟରେ ଦୁଇ ଖଣ୍ଡ ସଉପ ମସିଣା, ଗୋଟିଏ ଦୀପରୁଖା ଓ ପ୍ରଦୀପ, ଖଣ୍ଡେ ନଡ଼ିଆ ଚାଞ୍ଚ ଏବଂ ଖଣ୍ଡେ ଜରାଜୀର୍ଣ୍ଣ ପଖାଉଜ । ବ୍ୟୟ ମଧ୍ୟରେ ପ୍ରତିଦିନ ଅଧଲା ଖଣ୍ଡକର ତେଲ (ଏ ଶବ୍ଦଟି ଅର୍ଥ କଲେ ତିଳ ସ୍ଥାନରେ ଖଣି ବସାଇ ଅର୍ଥ କରିବେ) ଓ ପଇସାକର ପାନ ଗୁଆ ଗୁଣ୍ଡି । ଗ୍ରାମର ୬/୭ ଜଣ ଯୁବକ ପାଳି କରି ଏ ବ୍ୟୟ ବହନ କରନ୍ତି ।

ସମସ୍ତେ ସବୁଦିନ ଗ୍ରାମରେ ଉପସ୍ଥିତ ଥା'ନ୍ତି, ଗ୍ରାମରେ ଉପସ୍ଥିତ ଥାଇ ସୁଦ୍ଧା ଗୃହକାର୍ଯ୍ୟାନୁରୋଧରେ ସମୟ ସମୟରେ କେହି ଉପସ୍ଥିତ ହୋଇପାରନ୍ତି ନାହିଁ କିମ୍ବା ଟୁଙ୍ଗିରେ ଉପସ୍ଥିତ ହେବା ପରେ କାହାର କିଛି ବିଶେଷ ଆବଶ୍ୟକ ହେଲେ ଅଥବା କଥୋପକଥନର ସ୍ରୋତ କାହାରି ଶ୍ରୁତିକଟୁ ହେଲେ ସେ ଟୁଙ୍ଗିରୁ ପ୍ରସ୍ଥାନ କରନ୍ତି । ଟୁଙ୍ଗିରେ ବ୍ୟକ୍ତିଗତ ଆକ୍ରମଣକୁ କେବେହେଁ ପ୍ରଶ୍ରୟ ଦିଆଯାଏ ନାହିଁ । ଟୁଙ୍ଗିରୁ ଆସିବାକୁ କାହାକୁ ବାଚିକ ବା ପାତ୍ରିକ ଆମନ୍ତ୍ରଣ କରାଯାଏ ନାହିଁ । ଅଶିକ୍ଷିତ, ସୁଶିକ୍ଷିତ, ଅର୍ଦ୍ଧଶିକ୍ଷିତ, ନବ୍ୟ-ଶିକ୍ଷିତ, ପୂର୍ବ-ଶିକ୍ଷିତ, ଅପୂର୍ବ-ଶିକ୍ଷିତ, ଧର୍ମ-ଶିକ୍ଷିତ, ଅଧର୍ମ-ଶିକ୍ଷିତ, ବିଧର୍ମ-ଶିକ୍ଷିତ ସମସ୍ତେ ଏଠାକୁ ଆସନ୍ତି, କେତେକ ବିଷୟ ଶିଖନ୍ତି ଓ ଶିଖାନ୍ତି, ଯା'ନ୍ତି । ଟୁଙ୍ଗିରେ ସମୟକ୍ରମେ ଗ୍ରାମର ପ୍ରାୟ ସମସ୍ତେ ଯୋଗ ଦେଇଥା'ନ୍ତି । ଯେଉଁମାନେ କର୍ମୋଲକ୍ଷ୍ୟରେ ବିଦେଶରେ ରହନ୍ତି, ସେମାନେ ଦୁର୍ଗାପୂଜା, ବଡ଼ଦିନ, ମହରମ ଇତ୍ୟାଦି ଅବସରରେ ଗ୍ରାମକୁ ଆସନ୍ତି ଓ ଟୁଙ୍ଗିରେ ଯୋଗ ଦିଅନ୍ତି । ରାତ୍ରିଯାପନ ନିମନ୍ତେ ଉପଗତ ପଥିକମାନଙ୍କ କଥାସୁଖ ଓ ପରାମର୍ଶରୁ ମଧ୍ୟ ଆମ୍ଭେମାନେ ସମୟ ସମୟରେ ବଞ୍ଚିତ ହେଉ ନାହିଁ ।

ଗ୍ରାମରେ ମୁଁ ନିଷ୍କର୍ମା । ଦିନଯାକ ଏଣେତେଣେ ବୁଲି ସନ୍ଧ୍ୟାବେଳେ ଟୁଙ୍ଗିକୁ ଆସେ । ସୁବିଧା ହେଲେ ଖଣ୍ଡେ ଅଧେ ସମ୍ବାଦପତ୍ର ବା ପୁସ୍ତକ ପାଠ କରେ । ଘରକୁ ଆସି ଟୁଙ୍ଗିର 'ଅଧିବେଶନମାନଙ୍କରେ ଟିପ୍ପଣୀ' ଲେଖି ରଖେ । ('ବସିବାଠାରୁ କାଶିବା ଭଲ' ଏ ପ୍ରବାଦଟି ସଙ୍ଗେ ପ୍ରବନ୍ଧମାଳାର 'ବରଂ ଉଚ୍ଛୃଙ୍ଖଳତା ଭଲ ତଥାପି ସ୍ଥିରତା ଭଲ ନୁହେଁ' ବାକ୍ୟଟି ମିଳାଇ ନେବେ ।)

ସାହିତ୍ୟଗତ ଅଶୁଦ୍ଧି ପ୍ରତି ଦୃଷ୍ଟି କଲେ ଚଳିବ ନାହିଁ । ବଡ଼ ବଡ଼ 'ଖିରିପିଠା'ରେ ମହୁର ତିଅଣରୁ ସବୁବେଳେ ଖଣ୍ଡମାଛ ମିଳେ ନାହିଁ; ତେବେ ନିତାନ୍ତ ଯେ ନ ମିଳିବ, ଏହା ମଧ୍ୟ କେହି କହିପାରିବେ ନାହିଁ । ସବୁ ବିଷୟରେ କପାଳ ଅନୁସାରେ ଫଳ ଫଳେ । ଖିରିପିଠା ସ୍ଥଳରେ ବିଭିନ୍ନ ରୁଚି ଓ ପ୍ରକୃତିର ଲୋକ ଉପସ୍ଥିତ ହୁଅନ୍ତି । କିଏ ଅଲଣା, କିଏ ଉଚ୍ଚ ଲୁଣିଆ, କିଏ ରାଗ, କିଏ ଖଟା, କିଏ ଥଣ୍ଡା, କିଏ ଗରମ, କିଏ ମିଠା, କିଏ ପିତା

ଦ୍ରବ୍ୟର ବିଶେଷ ପ୍ରିୟ । ଗୋଟିଏ ଗୋଟିଏ ପାତ୍ରରୁ ସମସ୍ତଙ୍କ ମନ ରଖି ପରିବେଷଣ କରିବା ସହଜ ନୁହେଁ । ପରିବେଷଣର ପ୍ରଣାଳୀ ମଧ୍ୟ କେତେକ ଲୋକଙ୍କ ମନକୁ ଆସି ନ ପାରେ । ତେବେ ଏତିକି ମାତ୍ର ବୋଲାଯାଇପାରେ ଯେ, ଆଗନ୍ତୁକ ଭୋଜନାର୍ଥୀମାନଙ୍କ ମଧ୍ୟରୁ କେହି ମୁଠାଏ ନ ପାଇ ଫେରିଯା'ନ୍ତି ନାହିଁ । ଖାଇବେ ନ ଖାଇବେ, ସେ ଅଲଗା କଥା । ଆମିଷଭୋଜୀ, ନିରାମିଷଭୋଜୀ, ଫଳାହାରୀ ସମସ୍ତଙ୍କର ଯଥାବିହିତ ଚର୍ଚ୍ଚା କରିବାକୁ ଗୃହସ୍ୱାମୀ ପ୍ରସ୍ତୁତ ଥା'ନ୍ତି । ଯେଉଁମାନେ ଖିରିପିଠାକୁ ଯାଇ ବିଶେଷ ଆଦର ଅଭ୍ୟର୍ଥନା, ଭୋଜନ ପଦ୍ଧତି ବା ପରିବେଷଣ ପଦ୍ଧତି ପ୍ରତି ଆକାଙ୍‌କ୍ଷା ରଖନ୍ତି, ସେମାନଙ୍କୁ ନିବେଦନ ଯେ, ସେମାନେ ଆମନ୍ତ୍ରଣ ରକ୍ଷା କରି ନ ପାରିଲେ ଗୃହସ୍ୱାମୀ ବ୍ୟଥିତ ହେବେ ନାହିଁ । ବରଞ୍ଚ ହୃଦୟବତ୍ତାର ଏପରି ଜ୍ୱଳନ୍ତ ପ୍ରମାଣ ମିଳିଲେ ମହାପୁରୁଷମାନଙ୍କୁ ଖିରିପିଠା ବାସିଦିନ ସିଧାସାମଗ୍ରୀ ଓ ଡାଲା ଯିବାର ଆୟୋଜନ କରାଯିବ । ଖିରିପିଠା ସମୟରେ ଓ ପରେ କେତେକ ଦିନ ପର୍ଯ୍ୟନ୍ତ ସୂର୍ପ, ଚାଳନୀ, ବାୟସ, ମକ୍ଷିକା ଓ ଶୂକରମାନଙ୍କୁ ଉତ୍ତମ ଉପାୟ ମିଳିଯାଏ ।

ତେବେ ଆମ୍ଭମାନଙ୍କ ଖିରିପିଠା ଊନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ପଡ଼ିବାରୁ ଦିଓଟି ଶତାବ୍ଦୀର ସଭ୍ୟତା ଓ ବୁଦ୍ଧି ଓ ଏଥିର ପରିଚାଳନାରେ ନିୟୋଜିତ ହେବ । ପୂର୍ବରୁ ଖିରିପିଠାର ସମ୍ବାଦ ଦିଆଯିବ ଓ ପରୀକ୍ଷାସ୍ୱରୂପ ଖିରିପିଠାର ଗୋଟିଏ ଗୋଟିଏ ସାମଗ୍ରୀ ସ୍ୱତନ୍ତ୍ର ପାଚକ-ପାଚିକାମାନଙ୍କଦ୍ୱାରା ପ୍ରସ୍ତୁତ ହୋଇ ଜ୍ଞାତି, କୁଟୁମ୍ବ, ବନ୍ଧୁ, ପ୍ରୀତିବନ୍ଧୁମାନଙ୍କ ନିକଟକୁ ପ୍ରେରିତ ହେବ । ପଥରେ ଯେପରି ପଚି ନ ଯାଏ ବା କୀଟଦଷ୍ଟ ନ ହୁଏ ବା ରେଳରେ ଚୋରି ନ ହୁଏ, ସେଥିନିମନ୍ତେ ବୈଜ୍ଞାନିକ ସତର୍କତା ଅବଲମ୍ବିତ ହେବ । ସାମଗ୍ରୀମାନ ଆସ୍ୱାଦନ କରି ଯେବେ ସନ୍ତୁଷ୍ଟଙ୍କ ସଂଖ୍ୟା ଅସନ୍ତୁଷ୍ଟଙ୍କ ସଂଖ୍ୟା ଅପେକ୍ଷା ଅଧିକ ଦେଖାଯିବ, ତେବେ ଖିରିପିଠାର ଆୟୋଜନ କରାଯିବ, ନଚେତ୍ ବିଦାୟ ।

## ପ୍ରଥମ ସନ୍ଧ୍ୟା

ଆଜି ଟୁଙ୍ଗିରେ ଉପସ୍ଥିତ ବ୍ୟକ୍ତିମାନଙ୍କର କିଞ୍ଚିତ୍ ପରିଚୟ ଦେବାର ଆବଶ୍ୟକ-

ପଣ୍ଡିତ-ମହାଶୟ – ଗ୍ରାମବାସୀ ବ୍ରାହ୍ମଣ, ବୟସ ୫୦, କାବ୍ୟ, ବ୍ୟାକରଣ, ମହାନାଟକ, କର୍ମକାଣ୍ଡରେ, ଜ୍ୟୋତିଷରେ ବେଶ ପ୍ରବେଶ । ସର୍ବଦା ସଂସ୍କୃତ ପଢ଼ି ଉକ୍ତ ଭାଷାର କେତେକ ଭାବ ଓ ବ୍ୟାକରଣ ଏବଂ ଶବ୍ଦଗତ ବିଶେଷତ୍ୱ ତାଙ୍କ ମନରେ ଦୃଢ଼ମୂଳ ହୋଇ ରହିଯାଇଅଛି । ଓଡ଼ିଆରେ ପଦେ ଅଧେ ଖାଣ୍ଟି ସଂସ୍କୃତ ନ ମିଶିଲେ ତାଙ୍କୁ ଭଲ ଲାଗେ ନାହିଁ । ଓଡ଼ିଆ ଭାଷାକୁ ସଂସ୍କୃତରେ ପରିଣତ କରିବା ତାଙ୍କ ଜୀବନର ପ୍ରଧାନ ଉଦ୍ଦେଶ୍ୟ ବୋଲି କହନ୍ତି । ଅତ୍ୟନ୍ତ ରକ୍ଷଣଶୀଳ ।

ମାଷ୍ଟର-ମହାଶୟ – ଏଠା ଅପର ପ୍ରାଇମେରୀ ସ୍କୁଲର ଶିକ୍ଷକ । ବୟସ ୨୫, ମାଇନର ଫେଲ, ଗୁରୁବିଭାଗ (୩ୟ ଶ୍ରେଣୀ) ପାସ୍, ଘରେ ବହୁତ ଇଂରାଜୀ ବହି ପଢ଼ିଅଛନ୍ତି, ୪ ମାସ ଉମେଦ୍ୱାରି କରି ଏଠାରେ ୩ ମାସ ହେଲା ଅଛନ୍ତି । ଆଜିଯାକେ କିନ୍ତୁ ଚାକିରିର ଏକ ସପ୍ତାହ ପୂର୍ବରୁ ଯେଉଁ ଟ୨୦/- କରଜ କରିଥିଲେ, ତାହା ପରିଶୋଧ ହୋଇ ନାହିଁ । ଓଡ଼ିଆ ଭାଷା ପ୍ରତି ଗୋଟାଏ ବିଜାତୀୟ ଘୃଣା/ ଇଂରାଜୀ ଶବ୍ଦମାନଙ୍କର ସାହାଯ୍ୟ ନ ନେଲେ ଓଡ଼ିଆର ଭାବମାନ ବ୍ୟକ୍ତ କରିବା ଅସମ୍ଭବ ମନେକରନ୍ତି । ଖୁବ୍ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସଙ୍ଗେ କଥା କହୁଁ କହୁଁ ପଦେ ଅଧେ ଇଂରାଜୀ ଶବ୍ଦ ଅତର୍କିତ ଭାବରେ ମୁହଁରୁ ବାହାରିଯାଏ । ବାଧହୋଇ ଓଡ଼ିଆ ବିଦ୍ୟାଳୟରେ ଚାକିରି; କିନ୍ତୁ ମନରେ ପିଲାଦିନୁ ଗୋଟିଏ କ୍ଷୋଭ ରହିଅଛି ।

ମୁକ୍ତ୍ୟାରବାବୁ – ଏ ଗ୍ରାମର ଜଣେ କରଣ ଯୁବକ, ଲେଖାପଢ଼ିରେ ଖୁବ୍ ଟାଣ, ନଗରର ଜଣେ ଖ୍ୟାତନାମା ଓକିଲଙ୍କ ମୋହରିର । କିନ୍ତୁ ଗ୍ରାମରେ ମୁକ୍ତିଆରବାବୁ ବୋଲି ଖ୍ୟାତ । ଏଠାରେ ସମସ୍ତ ମାମଲା ମକଦ୍ଦମା ଓକିଲବାବୁଙ୍କଠାରେ ହାଜର କରନ୍ତି । ଅବଶ୍ୟ ଟଙ୍କାମୁଣ୍ଡେ ଛ' ଅଣାଟି ରୋକ୍‌ଠୋକ୍ । ଏହାଛଡ଼ା ମିଠେଇଖିଆ । ଦୋଳ ଦଶହରାରେ ଚନ୍ଦ୍ରକଣା ଯୋଡ଼, ମିଠେଇ ହାଣ୍ଡିଟା ଛାଡ଼ ନାହିଁ । ଆଇନିଆ ସମସ୍ତ ଫନ୍ଦି ଫିକରରେ କୁଶଳ, ବିଶେଷତଃ ଚୋରି, ଜନାକାରୀ, ଫୌଜଦାରୀ, କାଞ୍ଜିହାଉସ ଓ ଜଳଡୁବି ବିଷୟକ ଆଇନ ଏହାଙ୍କ ଜିଭ ଅଗରେ ଥୁଆ । ଶନିବାର, ରବିବାର ଓ ପୂର୍ବ ଛୁଟିରେ ଘରକୁ ଆସନ୍ତି । ମଫସଲରେ ବେଶ୍ ପ୍ରତିପତ୍ତି । ନ୍ୟାୟ-ନିଶାପ, କଜିଆ ତକରାର, ବଣ୍ଟୁଆରା ସବୁଠାକୁ ଆମନ୍ତ୍ରିତ ହୁଅନ୍ତି । ଗ୍ରାମରେ କିଛି ତଦାରଖି ମାମଲା ପଡ଼ିଲେ ମୁକ୍ତ୍ୟାରବାବୁ ଯେବେ ଗ୍ରାମରେ ଉପସ୍ଥିତ ଅଛନ୍ତି, ତଦାରଖି ହାକିମ ମଧ୍ୟ ତାଙ୍କୁ ପଦେ ମିଠା କଥା ନ କହି ଯିବେ କାହିଁ ? କଚେରିକୁ ଓ ସହରକୁ ନ ଗଲେ କୌଣସି

ବିଷୟ ଉତ୍ତମରୂପେ ନିଷ୍ପତ୍ତି ହୁଏ ନାହିଁ ବୋଲି ଏହାଙ୍କର ଧାରଣା । ଅଭ୍ୟାସବଶତଃ ଘରର ପିଲାଙ୍କ ସଙ୍ଗେ ସୁଦ୍ଧା କଥାବାର୍ତ୍ତା କରୁ କରୁ ପଦେ ପଦେ କଚିରିଆ କଥା ମିଶିଯାଏ ।

ମହାଜନ - ଏ ଗ୍ରାମବାସୀ ଯୁବକ ସାହୁ ଉପାଧିକାରୀ, ଖୁବ୍ ସମ୍ପତ୍ତି, ଗ୍ରାମ ପ୍ରାନ୍ତରେ ନିଜର ଗୋଟିଏ ଗୋଦାମ । ଏହାଙ୍କ ପିତା ଟ୧୦ ମୂଳଧନରେ ଦୋକାନଟି ଆରମ୍ଭ କରିଥିଲେ । କିନ୍ତୁ ବର୍ତ୍ତମାନ ସାହୁ ବଂଶ ଖୁବ୍ ବଢ଼ିଆ, ୪/୫ ଦିନେ ଗାଡ଼ି ସହରକୁ ସଉଦା ନିମନ୍ତେ ଯାଏ । ଗ୍ରାମର ଚାଉଳ, ରବି, ସୋରିଷ, ଧନିଆର ଏହାଙ୍କର ଏକଚାଟିଆ ଅଧିକାର । ଜିନିଷ ପାଇବା ପୂର୍ବରୁ ଟଙ୍କା ଦାନ ଦେଇଥାନ୍ତି । ଟଙ୍କାମୁଣ୍ଡେ ସୁଉକିଏ ଲାଭ ଥିଆ । କିପରି ଟଙ୍କାରେ ପଇସାଟିଏ ମିଳିବ, ଦିନ ରାତି ଏହି ଚିନ୍ତା ।

ମସ୍ତରାମ ପାଗଳ - ଦିନରାତି ପାଟିର ବିରାମ ନାହିଁ । ସ୍ଥାନାତସ୍ଥାନ, ପାତ୍ରାପତ୍ର, ସମୟାସମୟ, ବିଷୟାବିଷୟର କିଛି ବିଚାର ନାହିଁ । ଯାହା ଯେତେବେଳେ ମନକୁ ଆସେ, କହିପକାଏ । କିନ୍ତୁ ବେଳେବେଳେ ସେ ଯେଉଁ ପଦେ ପଦେ କଥା ଓ ମନ୍ତବ୍ୟ କହେ, ତହିଁରେ ଆମ୍ଭେମାନେ ଏକାଧାରରେ ଆନନ୍ଦିତ ଓ ବିସ୍ମିତ ହେଉ । ବାକ୍ୟାଳାପ ସମୟରେ ତାହାର ଚିନ୍ତା ସୋପାନକୁ ଅନୁସରଣ କରିବା ବିଶେଷ ଆୟାସସାଧ୍ୟ ।

ଆଜି ସନ୍ଧ୍ୟାବେଳେ ଏହି ପାଞ୍ଚଜଣ ଓ ମୁଁ ଟୁଙ୍ଗିରେ ଉପସ୍ଥିତ ।

ପଣ୍ଡିତ ମହାଶୟ ପ୍ରସଙ୍ଗ ଆରମ୍ଭ କଲେ-

ଆହା ! ଶରତ୍ ପୂର୍ଣ୍ଣିମାର ଶୋଭା ସନ୍ଦର୍ଶନ କରି ଅସ୍ମାଦାଦି ଅକଥିତପୂର୍ବ ଆନନ୍ଦୋପଲବ୍ଧ କରୁଁ । ଏ ସମ୍ବନ୍ଧେ ଆମ୍ଭେ ଗୋଟିଏ ପଦ୍ୟ ରଚନା କରିଥିଲୁଁ । ପାଠାନ୍ତେ ସେ ପଦ୍ୟଟି ଭବଦୀୟାନୁମତି ହେଲେ ମୁଦ୍ରିତାର୍ଥେ ଯତ୍ନ କରିବୁଁ ।

ମୁକ୍ତ୍ୟାରେ କହିଲେ- ମୁଁ ଚାନ୍ଦା ଅସୁଲ କରି ବହିଖଣ୍ଡିକ ଛପାଇଦେବି । ସହରର ବଡ଼ ଲୋକମାନେ ମୋତେ ବି ଖାତିର କରନ୍ତି । ତୁମର ଏଥିରେ ଦି'ପଇସା ରୋଜଗାର ହେବ; କିନ୍ତୁ ବହିଖଣ୍ଡିକ ଜୟରାମଲାଲବାବୁଙ୍କୁ ଉତ୍ସର୍ଗ କରିବ ।

ମହାଜନ କହିଲେ- ବହି ବିକ୍ରିରେ ମୂଳ ଉଠିବା କଷ୍ଟ । ଥରେ ଛାପାଖାନାରୁ ଶଏ ଖଣ୍ଡ 'ଶାଶୂବୋହୂ ରହସ୍ୟ' କିଣି ଆଣିଥିଲି । ଫି ଟଙ୍କାରେ ଦି' ପଇସା ସୁଦ୍ଧା ମିଳିଲା ନାହିଁ ।

ଏଣେ ପଣ୍ଡିତ-ମହାଶୟ ମୁକ୍ତ୍ୟାରଙ୍କ 'ଉତ୍ସର୍ଗ' କଥା ଶୁଣି ଆଁ କରି ଚାହିଁ ରହିଲେ ଓ ଅତି ବିଷଣ୍ଣ ଭାବରେ କହିଲେ- ଏଡ଼େ ବଡ଼ ଲୋକ ଥିଲା, ଶୁଦ୍ଧ ଶ୍ରାଦ୍ଧ ବେଳକୁ କେହି ପଣ୍ଡିତାଶୀର୍ବାଦାର୍ଥେ ଯତ୍ନୀ ହେଲେ ନାହିଁ । ପରକାଳରେ କି ଦୁଃଖଭୋଗୀ ହେବ ।

ମୁଁ ଈଷଦ୍ ହାସ୍ୟ କରି କହିଲି- ପଣ୍ଡିତ-ମହାଶୟ, ଦୁଃଖିତ ହେବାର କାରଣ ନାହିଁ । ଜୟରାମବାବୁ ବର୍ତ୍ତମାନ ଜୀବିତ । ପୂର୍ବେ ଯେପରି ଭୋଜ୍ୟବସ୍ତୁ କିମ୍ବା ଅର୍ଥ ଜୀବିତ କିମ୍ବା ମୃତବ୍ୟକ୍ତିଙ୍କ ନାମରେ ଉତ୍ସୃଷ୍ଟ ହେଉଥିଲା, ଆଜିକାଲି ପୁସ୍ତକମାନଙ୍କର ସେହିପରି ହେଲାଣି । ଏପରି କରିବା ଦ୍ୱାରା ଦେଶର ଓ ଆପଣାର ଅନେକ ପ୍ରକାର

ଲାଭଯୋଗ୍ୟଲୋକର ପୂଜା, ନିଜର ଅର୍ଥଲାଭ 'କୁସୁମ ପରଶେ ପଟ ନିଷ୍ଠରେ' ଖ୍ୟାତନାମା ବ୍ୟକ୍ତିଙ୍କ ସଙ୍ଗେ ଘନିଷ୍ଠତା, ବିଶେଷତଃ ଯାହାଙ୍କ ନାମରେ ଉତ୍ସର୍ଗ ହୋଇଥାଏ, ଯେବେ କୌଣସି ପ୍ରକାରେ ତାଙ୍କର ଅନୁକୂଳମତପୂର୍ଣ୍ଣ ପ୍ରଶଂସପତ୍ର ଖଣ୍ଡେ ସେ ପୁସ୍ତକରେ ଯୁକ୍ତ ହୁଏ, ତେବେ ସେ ସର୍ବୋତ୍କୃଷ୍ଟ ପୁସ୍ତକ ହେଲା ଓ ତାହା ଦେଶଯାକ ବିକ୍ରି ହୋଇଯାଏ ।

ମାଷ୍ଟର-ମହାଶୟ କହିଲେ- Certificate (ପ୍ରଶଂସାପତ୍ର) ପାଇବା ସହଜ କଥା, regularly (ନିୟମିତରୂପେ) ଦୁଇଓଳି ଜଣକ ନିକଟକୁ ଯାଅ, କେତେବେଳେ ଶାଗଟାଏ, ମାଛଟାଏ, ଆଚାର ଟିକିଏ, କେତେବେଳେ ବା child (ପିଲା)କୁ ପ୍ରେମରେ କାଖେଇ ପକାଇଲେ ଆହୁରି easy (ସହଜ) । ତେବେ ଖଣ୍ଡେ good certificate (ଉତ୍ତମ ପ୍ରଶଂସାପତ୍ର) ମିଳିଲା । ଅନେକ ସ୍ଥଳରେ Certificate (ପ୍ରଶଂସାପତ୍ର) ମାନଙ୍କରେ author (ଗ୍ରନ୍ଥକର୍ତ୍ତା)ଙ୍କୁ ଅଯଥା ବାହାଦୁରି ଦିଆଯାଇଥାଏ । ଯେଉଁଠାରେ ଏ class (ଶ୍ରେଣୀ)ର certificate (ପ୍ରଶଂସାପତ୍ର ଦେଖିବ, ନିଶ୍ଚୟ ଜାଣିବ ଯେ ଉମେଦ୍ୱାରଙ୍କ repeated (ଉପର୍ଯ୍ୟୁପରି) ଜ୍ୱାଳାରୁ ରକ୍ଷା ପାଇବା ନିମନ୍ତେ ଏ Plan (ଉପାୟ) କରାଯାଇଥିଲା । Certificate (ପ୍ରଶଂସାପତ୍ର) ଦାତାଙ୍କର କିଛି ଦୋଷ ନାହିଁ । ପ୍ରକୃତ quality (ଗୁଣ) ପରୀକ୍ଷା କରି certificate (ପ୍ରଶଂସାପତ୍ର) ଦେବାକୁ ହେଲେ time (ସମୟ) ଏବଂ labour (ପରିଶ୍ରମ) ଆବଶ୍ୟକ । ଏତେ trouble (କଷ୍ଟ) କରୁଛି କିଏ ? ଟିକିଏ ଭଲ କରି ଲେଖିଦେଲେ ଖଲାସ । ଏହାଦ୍ୱାରା ମଧ୍ୟ ପରୋପକାର କରାଯାଏ । ମୋର ନାମରୂପ flag (ବାନା)ଧରି ଯେବେ ଜଣେ କିଛି earn (ଉପାର୍ଜନ) କରି ନେଲା, ତେବେ ଦାତାଙ୍କର ଇହକାଳରେ ପରୋପକାର ଓ ପରକାଳରେ ସ୍ୱର୍ଗଲାଭ । ଅଳ୍ପଦିନ ପୂର୍ବେ ଜଣେ famous (ପ୍ରସିଦ୍ଧ) ଏବଂ ଦେଶମାନ୍ୟ ଲୋକ ତାଙ୍କ ନାମରେ ଉତ୍ସର୍ଗ କରି ଖଣ୍ଡେ ବହି ଲେଖିବାକୁ ମୋତେ କହିଥିଲେ । ହାୟ ! ମୋର ସେ power (କ୍ଷମତା) ନାହିଁ । Newspaper (ସମ୍ବାଦପତ୍ର)ରେ ପ୍ରକାଶିତ certificate (ପ୍ରଶଂସାପତ୍ର) ମାନଙ୍କ କଥା ଭିନ୍ନ class (ଶ୍ରେଣୀ)ର ।

ମୁଁ କହିଉଠିଲି - 'ମାଷ୍ଟର ମହାଶୟ ! ବନ୍ଦ କରନ୍ତୁ । Certificate (ପ୍ରଶଂସାପତ୍ର) ମାହାତ୍ମ୍ୟ ବୋଲି ଖଣ୍ଡେ ବହି ଛପାଇଲେ ଆପଣ ଦୁଇପଇସା ଆୟ କରନ୍ତେ ଓ ବାଟରେ ହଗିଲେ ନାଁ ପଡ଼େ', ଆପଣଙ୍କୁ ଦେଶ ବିଦେଶରେ ଅନେକ ଲୋକ ଜାଣିଯାଆନ୍ତେ ।

ମହାଜନ କହିଲେ- ପଣ୍ଡିତ ଗୀତଟି ଆରମ୍ଭ କରିଥାନ୍ତେ, ତୁମେ ବାଜେଗପ ବନ୍ଦ କର, ନଇଲେ କାଲ ଆଗରେ କାହିଁକି ମୂଳା ଚୋବାଉଛ ? ମୁଁ ଯାଉଛି ।

ମହାଜନଙ୍କୁ ଗମନୋନ୍ମୁଖ ଦେଖି ଆମ୍ଭେମାନେ ଅଗତ୍ୟା ପଣ୍ଡିତ-ମହାଶୟଙ୍କୁ ଅନୁରୋଧ କଲାରୁ ସେ ପଦ୍ୟଟି ଆରମ୍ଭ କଲେ ।

ଶାରଦୀ ପୌର୍ଣ୍ଣମାସୀ ।

କୌମାରୀ ପୂର୍ଣ୍ଣିମାରେ ଜଳଦଗଣ ବିନା ନିର୍ମଳାକାଶଦେଶେ
ପୂର୍ଣ୍ଣେନ୍ଦୁଃଖେ ବିରାଜେ ଜୀବଗଣମୁଦକ ବିଞ୍ଚଇ ଦେଶଦେଶେ ।
ଅନୂଢ଼ା କନ୍ୟକାଏ ନିଜ ନିଜ ଗୃହରେ ଭୋଗଚାଙ୍ଗୁଡ଼ିମାନ
ଯତ୍ନେ ନୈବେଦ୍ୟପୂର୍ଣ୍ଣେ କରି ଚଳିଗଲେଣି ଚନ୍ଦ୍ରନୈବେଦ୍ୟଦାନେ ।
ଶସ୍ୟେ କେଦାର ପୂର୍ଣ୍ଣଃ ପଥଗଣ ଶୁଖଇ ଦେବୀପର୍ବ ପ୍ରକାଶେ
ଆନନ୍ଦେ ଚାଷୀମାନେ ନିଜ ନିଜ ବିଲକୁ ଚାହିଁ ନାଚନ୍ତି ହର୍ଷେ ।

ମସ୍ତରାମ ପାଗଳ ଏହି ସମୟରେ ଚିତ୍କାର କରିଉଠିଲା-

କେଶାକର୍ଷଣ ହାବୁକା ଗଡ଼ଗଡ଼ା ଚାପୋଡ଼ ବିନ୍ଧା କଡ଼ି
ଲେଡ଼ା ନାକମୋଡ଼ା କହୁଣି କୋରଡ଼ା ପାଣ୍ଠୋଇ ଠେଙ୍ଗା ହଡ଼ି ।
ଝିଙ୍କା ବାହୁଛଟା ସମର୍ଥ ଗୋଇଠା ଚେଙ୍ଗା ମୁଖୀ ଚେଙ୍ଗିବା ।
ଶାଙ୍କୋଳି ତଡ଼କାନ୍ତି ଚାବୁକଡିହଃ ତୋଟ୍ୟାଧିକନ୍ନାଧିକ ।

ପଣ୍ଡିତ-ମହାଶୟ 'ଚିତ୍ରାର୍ପିତାରମ୍ଭଇବାବତସ୍ଥେ' କିଛୁକ୍ଷଣ ପରେ ଅତି ବିରକ୍ତ ଓ ରାଗାନ୍ୱିତ ହୋଇ କହିଲେ, 'ଅରସିକେଷୁ ରସସ୍ୟ ନିବେଦନଂ - ଶିରସି ମା ଲିଖ, ମା ଲିଖ ।' ଏହା କହି ଟୁଙ୍ଗି ପରିତ୍ୟାଗ କରିବାକୁ ଉଦ୍ୟତ ହେଲେ ।

ମୁକ୍ତ୍ୟାରେ ଏଥି ମଧ୍ୟରେ ତନ୍ଦ୍ରାଭିଭୂତ ଥିଲେ । ସହସା ଏ କୋଳାହଳ ଶୁଣି ତନ୍ଦ୍ରାତ୍ୟାଗ କରି କହିଲେ - 'ପଣ୍ଡିତେ, ପିଙ୍ଗଳ କୋଡ଼ର ୩୩୫ ଦଫା, ଆମେ ଜଣେ ସାକ୍ଷୀ, ଆମେ ବସୁ ବସୁ ଏପରି ଦଙ୍ଗା ଫିସାଦ !'

ଆମ୍ଭେମାନେ ମଫସଲୀ - ଆଇନ କଥା ଶୁଣିଲେ ଆମ୍ଭେମାନେ ଡରୁଁ । ଦେଖିଲି ଯେ 'ଦିଅଁ ଗଢୁ ଗଢୁ ମାଙ୍କଡ଼ ।' ମୁକ୍ତ୍ୟାରବାବୁଙ୍କୁ ପ୍ରକୃତ କଥା ବୁଝାଇ ଦେବାରୁ ମୁକ୍ତ୍ୟାର ଟିକିଏ ଥଣ୍ଡା ହେଲେ । ମୁଁ ପଣ୍ଡିତ-ମହାଶୟଙ୍କୁ ସମ୍ବୋଧନ କରି କହିଲି-

ଆପଣଙ୍କ ପଦ୍ୟଟି ମନ୍ଦ ହୋଇ ନାହିଁ । (ସତ୍ୟଂ ବ୍ରୂୟାତ୍ ପ୍ରିୟ ବ୍ରୂୟାତ୍, ସତ୍ୟମପ୍ରିୟଂ ।' ବିଶେଷତଃ ପଣ୍ଡିତ-ମହାଶୟଙ୍କର ଜ୍ୱଳନୋନ୍ମୁଖ କେରୋସିନ ତୈଳର ଅବସ୍ଥା) କିନ୍ତୁ ଏପରି ଚେଷ୍ଟା କରିବାରେ ଆପଣଙ୍କ ମୂଲ୍ୟବାନ୍ ସମୟ ବ୍ୟୟ ନ କରି ଉତ୍କଳଭାଷା ପ୍ରଚଳିତ ଛନ୍ଦମାନଙ୍କରେ ପଦ୍ୟ ରଚନା କଲେ, ସମୟରେ ଜଣେ ଉତ୍କୃଷ୍ଟ କବି ହୁଅନ୍ତେ । ସଂସ୍କୃତ ରାଗରେ ଉତ୍କଳ ପଦ୍ୟ ଲେଖିବା ଆମ୍ଭମାନଙ୍କ ପକ୍ଷରେ ସହଜ ନୁହେଁ । ସଂସ୍କୃତରେ ସନ୍ଧି ଓ ସମାସର ସାହାଯ୍ୟରେ ପଦ୍ୟ ରଚନାର ଯେଉଁ ସୁବିଧା ଅଛି, ଉତ୍କଳ ଭାଷାରେ ତାହା ନ ଥିବାରୁ ଉତ୍କଳୀୟ କବିମାନେ ଦୀର୍ଘ, ହ୍ରସ୍ୱ, ଗୁରୁ, ଲଘୁ ଇତ୍ୟାଦି ବର୍ଣ୍ଣଯୋଜନ ପ୍ରଣାଳୀ ଭାଷାରେ ଚଳାଇ ପାରି ନାହାନ୍ତି । ସଂସ୍କୃତ ପଦ୍ୟରେ କ୍ଲିଷ୍ଟତା ଦୋଷ, ଦୋଷ ମଧ୍ୟରେ ଗଣ୍ୟ ନୁହେଁ; କିନ୍ତୁ ଉତ୍କଳ ପଦ୍ୟରେ ଅପ୍ରଚଳିତ କ୍ଲିଷ୍ଟତା

ଦୋଷ ଉପର୍ଯ୍ୟୁପରି ଲକ୍ଷିତ ହେଲେ ପଦ୍ୟଟିକୁ ନିରସ କରିପକାଏ । ଆଉ ମଧ୍ୟ ସଂସ୍କୃତରେ ଶବ୍ଦରୂପ ନିୟମ ଅପେକ୍ଷା ଉତ୍କୃଷ୍ଟତର ଥିବାରୁ ପଦ୍ୟ ରଚନା ସଂସ୍କୃତ ଭାଷାରେ ସହଜତର । ସଂସ୍କୃତ ଛନ୍ଦରେ ଉତ୍କଳପଦ୍ୟ ରଚନା କରିବାକୁ ଗଲେ ଯତିଭଙ୍ଗ ଅବଶ୍ୟମ୍ଭାବୀ ହୋଇଉଠେ । କିନ୍ତୁ ଆପଣଙ୍କର ଏପରି ଚେଷ୍ଟା ପ୍ରଶଂସାଯୋଗ୍ୟ ।

ପଣ୍ଡିତ-ମହାଶୟ ଟିକେ ସ୍ଥିର ହୋଇ କହିଲେ- 'ବାତୁଳାଃ କିଂ ନ ଜଳ୍ପନ୍ତି ।' ଯେତେବେଳେ ସଂସ୍କୃତ ଆମ୍ଭମାନଙ୍କ ଭାଷାର ମାତୃଭାଷା, ପରନ୍ତୁ ଦେବଭାଷା, ତେତେବେଳେ ଉତ୍କଳୀୟ ଭାଷାକୁ ଯଥାଶକ୍ତି ମାତୃଭାଷା ସଙ୍ଗେ ମିଳନ କରିବା ଅସ୍ମଦୁଦ୍ଦେଶ୍ୟ ।

ମସ୍ତରାମ ମିଠାସ୍ୱରରେ କହିଲା-

'ହକ୍ କହେଗା, ଗୁରୁ ଚିଢ଼େଗା ତ ଚିଢ଼େଗା' । ଗଛ ଗଣ୍ଡିରୁ ସିନା ଡାଳ ବାହାରେ, ଡାଳ କେବେ ଗଣ୍ଡି ହେବ ? କେଜାଣି ଅବା ଡାଳରେ କାଦୁଅ ଲେସିଲେ ଗଣ୍ଡି ପରି ମୋଟ ଦିଶିବ । ଏକା ଅସ୍ରାଏ ବର୍ଷାରେ ସବୁ ଧୋଇଯିବ ।

ମୁଁ ଓ ମାଷ୍ଟର-ମହାଶୟ ପାଗଳର ଲୁପ୍ତୋପମାଟିକୁ ହୃଦୟଙ୍ଗମ କରି ଆନନ୍ଦିତ ହେଲୁଁ । ମାଷ୍ଟର-ମହାଶୟ ମୋତେ ଗୁପ୍ତ ଭାବରେ କହିଲେ, ସଂସ୍କୃତ Poem (ପଦ୍ୟ) ଲେଖିବା ପଣ୍ଡିତଙ୍କର ଗୋଟିଏ Whim (ଖିଆଲ) । ବେଶି argue (ଯୁକ୍ତି) କଲେ ସେ ନିଆଁ ହୋଇଯିବେ । ଅତଏବ ଅନ୍ୟ matter (ବିଷୟ) ପକାଅ ।

କିନ୍ତୁ ପଣ୍ଡିତ-ମହାଶୟ ନଛୋଡ଼ବନ୍ଧା । ସ୍ୱରଚିତ ପଦ୍ୟଟି ଶେଷ କରିବାକୁ ଅତ୍ୟନ୍ତ ବ୍ୟାକୁଳ ହେବାର ଦେଖି ମୁଁ କହିଲି, ପଣ୍ଡିତ-ମହାଶୟ ! ଆପଣଙ୍କୁ ଚାଳିଶ ହେଲାଣି । ଆପଣ ଆଉ କଷ୍ଟ ସ୍ୱୀକାର କରି ପଢ଼ିବେ କାହିଁକି ? ସେ ପଦ୍ୟଟି ମତେ ଦିଅନ୍ତୁ, ମୁଁ ପଢ଼ିସାରି ମୁକ୍ତ୍ୟାରବାବୁଙ୍କୁ ଦେଲେ ସେ ଛପାଇବାରେ ଉଦ୍‌ଯୋଗ କରିବେ ।

ମୁକ୍ତ୍ୟାରବାବୁ ଏଥି ମଧ୍ୟରେ ପୁନର୍ବାର ତନ୍ଦ୍ରାଭିଭୂତ ଥିଲେ । ନିଜର ନାମ ଉଚ୍ଚାରିତ ହେବାମାତ୍ରେ ତନ୍ଦ୍ରା ତ୍ୟାଗ କରି କହିଲେ, 'ପଣ୍ଡିତେ, ମତେ ସେ ବହିଟି ଦିଅ, ମୁଁ ଆରଥରକୁ ଛପାଇ ଆଣିବି । ଏହା କହି ପଦ୍ୟଟି ପଣ୍ଡିତଙ୍କ ହାତରୁ ନେଲେ । ମାଷ୍ଟର ମୁକ୍ତ୍ୟାରଙ୍କୁ ପଚାରିଲେ, କାହା ନାମରେ dedicate (ଉତ୍ସର୍ଗ) ହେବ ?

ମୁକ୍ତ୍ୟାରେ- ଯାହାଙ୍କ ନାମରେ ଉତ୍ସର୍ଗ ହେବ, ତାହାଙ୍କ ନାମ କେତେ ଆଡ଼େ ବାଜିବ । ଯେ ବେଶି ଜରସମନ ଦେବେ, ତାଙ୍କରି ନାମରେ ହେବ । ଆମେ କଣ ଫୋକଟ ପାଣି ବାଡ଼େଇବୁଁ ? ଆଉ ବି ଯେଉଁମାନେ ଗଦା ଗଦା ଟଙ୍କା ଗଣୁଛନ୍ତି, ସେମାନେ କଣ ପାଗଳ ?

ଏହା କହି ମୁକ୍ତ୍ୟାର ପ୍ରସ୍ଥାନ କଲେ ଓ ଆମ୍ଭେମାନେ ଟୁଙ୍ଗିରୁ ଯିବାକୁ ବସିଅଛୁ, ଏହି ସମୟରେ ମାଷ୍ଟର-ମହାଶୟଙ୍କ ଉପରେ ଗୋଟିଏ ବିପତ୍ତି ପଡ଼ିଲା । ହଠାତ୍ ବଳଦଙ୍କ ଘଣ୍ଟି ଶୁଭିବାରୁ ଆମ୍ଭେମାନେ ବାହାରକୁ ଯାଇ ଦେଖିଲୁଁ ଯେ, ଜଣେ ସ୍କୁଲର ଅତିଥି ବାବୁ

ସଦଳବଳ ସଯାନବାହନ ଆସି ହାଜର । ମାଷ୍ଟର-ମହାଶୟଙ୍କର ସବୁ ସରସତା କେଉଁଆଡ଼େ ଉଭେଇ ଗଲା । 'ଇସ୍କୁଲର ବାବୁ' ବୋଲି ମାଷ୍ଟରଙ୍କ ଇଙ୍ଗିତରୁ ଜାଣିଲୁ । କେଉଁ ଇସ୍କୁଲର କି ବାବୁ, କିଛି ଠିକ୍ କରିପାରିଲୁ ନାହିଁ । ବାବୁଙ୍କ ଗାଡ଼ି ଅପର ପ୍ରାଇମେରୀ ସ୍କୁଲ ଅଭିମୁଖରେ ଶ୍ରୁତିମଧୁର ଟୁଣୁ ଟୁଣୁ ଓ କେଁ କେଁ କରି ଚାଲିଲା । ମାଷ୍ଟର-ମହାଶୟ ଯାଇଁ ମହାଜନ ସାହୁଙ୍କ ହାତ ଧରିଲେ । ଦୁଇମାସ ତଳେ କିଏ ଜଣେ ବାବୁ ମାଷ୍ଟରଙ୍କ ବସାରେ ଅତିଥି ହୋଇଥିବା ସମୟରେ ମାଷ୍ଟର ମହାଜନ ସାହୁଙ୍କ ଦୋକାନରୁ ହାଣ୍ଡି, କାଠ, ଚାଉଳ, ଡାଲି, ଦାନା, କୁଣ୍ଡା, ଘିଅ, ତେଲ, ପାନଗୁଆ ଇତ୍ୟାଦି ଇତ୍ୟାଦି ଯାହା ଯାହା ନେଇଥିଲେ, ତାହା ଗତ ଦୁଇ ମାସର ବିଲ୍‌ରୁ ସମ୍ପୂର୍ଣ୍ଣରୂପେ ପରିଶୋଧ ହୋଇ ନାହିଁ ବୋଲି ମହାଜନ ସାହୁ ଆଜ ସଉଦା ଦେବାକୁ ନିତାନ୍ତ ଅନିଚ୍ଛୁକ ହେଲେ । ଆମ୍ଭେମାନେ ମାଷ୍ଟରଙ୍କ ବିପଦ ବୁଝିପାରି ସାହୁଙ୍କ ନିକଟରେ ଜାମିନ ରହିଲୁଁ । ମାଷ୍ଟର ବିଚରା, ସଉଦାପତ୍ରର ବନ୍ଦୋବସ୍ତ କରି ଗଉଡ଼ସାହି, ଗୁଡ଼ିଆସାହି ଓ କଣ୍ଡରାସାହି ଅଭିମୁଖରେ ଦଉଡ଼ିଲେ ଓ ପଣ୍ଡିତ-ମହାଶୟଙ୍କ ଘରୁ ସ୍କୁଲରୁ ଗୋଛାଏ କୁଟା, ପୁଞ୍ଜାଏ ନଡ଼ିଆ, ଦୁଇପୁଞ୍ଜା କଖାରୁବଡ଼ି, କେରାଏ କୋଶଳା ଶାଗ ଯିବାର ବନ୍ଦୋବସ୍ତ କରିଗଲେ । ମୁଁ ଓ ମହାଜନ ସାହୁ ନବାଗତ ଅତିଥିଙ୍କ ଗୁଣାବଳୀ ସ୍ମରଣ କରି କରି ଟୁଙ୍ଗିରୁ ଫେରିଲୁଁ । ବିଚାରିଲୁଁ, ଆଜି ସକାଳେ ମାଷ୍ଟରେ କାହା ମୁହଁ ଚାହିଁ ଉଠିଥିଲେ !

ଉତ୍କଳ ସାହିତ୍ୟ/୪ର୍ଥ ଭାଗ/୭-୮ମ ସଂଖ୍ୟା ୧୩୦୭ ସାଲ

## ଦ୍ୱିତୀୟ ସନ୍ଧ୍ୟା

ପୂର୍ବବର୍ଣ୍ଣିତ ସନ୍ଧ୍ୟାଠାରୁ ଆଜିପର୍ଯ୍ୟନ୍ତ ଯେତେ ବୈଠକ ହୋଇଥିଲା, ସେଥିରେ ବିଶେଷ ଉଲ୍ଲେଖଯୋଗ୍ୟ କିଛି ନ ଥିବାରୁ ତାହା ପାଠକମାନଙ୍କୁ ଜଣାଇବାର ଆବଶ୍ୟକ ବୋଧହେଲା ନାହିଁ ।

ଆଜି ଆମ୍ଭମାନଙ୍କର ପୂର୍ଣ୍ଣ ବୈଠକ (Full Bench) କହିଲେ ଅତ୍ୟୁକ୍ତି ହେବ ନାହିଁ । ବଡ଼ଦିନ (Christmas) ପର୍ବ ଉପଲକ୍ଷ୍ୟରେ କାର୍ଯ୍ୟାଳୟ ଓ ବିଦ୍ୟାଳୟମାନ ବନ୍ଦ ଥିବାରୁ ଅନେକ ପ୍ରବାସସ୍ଥ ଗ୍ରାମବାସୀ ଆଜି ଗ୍ରାମରେ ଉପସ୍ଥିତ । ଆଜି ରାତିରେ ଗ୍ରାମରେ ଭେଦା ହୋଇ ବୋହୂସୁଆଙ୍ଗ ଯାତ୍ରା ହେବାର ବରାଦ ଅଛି । ଟୁଙ୍ଗି ମଧ୍ୟ ସରଗରମ । ୧୦/୧୫ ଜଣ ଗ୍ରାମବାସୀ ଆଜି ଟୁଙ୍ଗିରେ ରୁଣ୍ଡ – ମୁଖ୍ୟାରେ, ମୁଁ, ମସ୍ତରାମ ପାଗଳ, ମାଷ୍ଟର-ମହାଶୟ, ବନ୍ଦୋବସ୍ତ ଅଫିସର କେତେକ ଅମଲା, ଅବକାରୀ ସିରସ୍ତାର ଜଣେ କିରାନି ରାମବାବୁ (ବୟସ ୨୫/୨୬ ମାସିକ ବେତନ ୧୫ ଟଙ୍କା, ଲଣ୍ଡା କିନ୍ତୁ ଚୈତନ୍ୟ ଚୁରକି ଅଛି, ସର୍ବଦା ଚଟିଜୋତା ବ୍ୟବହାର, ସ୍ତ୍ରୀ-ସ୍ୱାଧୀନତାର ପକ୍ଷପାତୀ, ବର୍ଷକେ ଦଶହରା ଓ ବଡ଼ଦିନ ଛୁଟିରେ ଗ୍ରାମକୁ ଆସନ୍ତି, ଗ୍ରାମର ଦୁଇ ତିନିଗୋଟି ଲୋକଙ୍କୁ ତାଙ୍କ

ସିରସ୍ତାର ପିଆଦାଗିରି କାମରେ ରଖାଇ ଦେଇଅଛନ୍ତି । ଗ୍ରାମର ଶାମ ପ୍ରଧାନ ଘରୁ କିଛି ପତି ବରାମଦ ହେବାରୁ ସେ ବିଚାରା ଚଲାଣ ହୋଇଯାଇଥିଲା, ବହୁତ ଯୋଗାଡ଼ କରି ପଧାନ ବିଚରାକୁ ଖଲାସ ଦେଇଦେଲେ) ।

ପୁଲିସ୍ ରାଇଟର୍ କନ୍‌ଷ୍ଟେବଲ୍ କାଶୀବାବୁ, (ବୟସ ୩୫; ଦରମା ୭ ଟଙ୍କା ମଫସଲରେ ସମସ୍ତେ ଡରନ୍ତି, ସମସ୍ତେ ଜମାଦାରବାବୁ ବୋଲି ଡାକନ୍ତି; ଅନୁସରଣିଆ ଗ୍ରାମର ତିନୋଟି ଲୋକଙ୍କୁ ଦାରୋଗାଙ୍କ ପାଖରେ ସୁପାରିସ କରି ଦଫାଦାର କାମରେ ମୁକ୍ରର୍ କରାଇ ଦେଇଅଛନ୍ତି । ଗ୍ରାମର ଜମିଦାର ରଘୁନାଥ ଚୌଧୁରୀଙ୍କ ସଙ୍ଗେ ଚିରନ୍ତନ ବିବାଦ; ଜମିଦାରଙ୍କୁ ଜବଦ୍ କରିବେ ବୋଲି ନିଜର ଭବିଷ୍ୟତ ଆଶାରେ ଜଳାଞ୍ଜଳି ଦେଇ ପୁଲିସରେ ଭର୍ତ୍ତି ହୋଇଅଛନ୍ତି । ଥାନାର ମୁନ୍‌ସିବାବୁଙ୍କର 'ଆଳିଆ ଲେଖାରେ ବାଳିଆ' ସମ୍ପର୍କରେ ବନ୍ଧୁ । ପୂର୍ବେ ମୁନ୍‌ସିବାବୁଙ୍କ ସଙ୍ଗେ ପରିଚୟ ନ ଥିଲା; କିନ୍ତୁ ପୁଲିସ ଇଲାକାରେ ରହିବା ଦିନୁ ମୁନ୍‌ସିଙ୍କ ସଙ୍ଗରେ ଏହାଙ୍କର ବିଶେଷଭାବ । ପ୍ରାୟ ପ୍ରତିଦିନ ଏହାଙ୍କ ଘରୁ ମୁନ୍‌ସିଙ୍କ ଘରଠାରୁ ଶାଗଟାଏ, ମାଛଟାଏ ଯାଏ । ଦୂର ସମ୍ପର୍କରେ ବନ୍ଧୁ ଥିବାରୁ ମୁନ୍‌ସିବାବୁ ଏହାଙ୍କ ଉପହାର ଫେରାଇ ପଠାନ୍ତି ନାହିଁ ଓ ତଦ୍‌ବିନିମୟରେ ମୁନ୍‌ସିଙ୍କ ଘରୁ ଏହାଙ୍କ ନିକଟକୁ କେଉଁ ଦିନ ଆଚାର ଟିକିଏ, କେଉଁ ଦିନ କିଛି ମିଷ୍ଟାନ୍ନ, କେଉଁ ଦିନ ପନିପରିବା ଆସେ । ମୁନ୍‌ସି ଏପରି ଧାର୍ମିକ ସତ୍ ଯେ, ତାଙ୍କୁ ଅପର କେହି ସୁନାମୁଣ୍ଡାଏ ଯାଚିଲେ ନିଅନ୍ତି ନାହିଁ; କିନ୍ତୁ ସମ୍ପର୍କ ଥିବାରୁ କାଶୀବାବୁଙ୍କୁ ସବୁ ଛାଡ଼ । ଏହାଙ୍କୁ ଅନୁସରଣ କରି ଏ ଗ୍ରାମର ଶିବା ସେଠୀ, ଧର୍ମୁ ଭୋଇ ଓ ମାଧବ ମଳିକ ଜମିଦାରଙ୍କୁ ଖାତିର କରନ୍ତି ନାହିଁ । ଗ୍ରାମର ଚୌକିଦାର ଓ ଦଫାଦାର ମଧ୍ୟ ଏହାଙ୍କୁ ବିଶେଷ ସମ୍ମାନ କରନ୍ତି । ଆମ ଗ୍ରାମର ମୁକ୍ତ୍ୟାରବାବୁ ଏହାଙ୍କ ପରାମର୍ଶ ବିନା କୌଣସି ମକଦ୍ଦମାରେ ହାତ ଲଗାନ୍ତି ନାହିଁ । କାଶୀବାବୁଙ୍କୁ ଗ୍ରାମର ଜମିଦାର ପ୍ରାଣେ ଭୟ କରନ୍ତି । ଏପରି କି କାଶୀବାବୁଙ୍କ 'ଘରଆଡ଼େ' ଯାହା କରନ୍ତି ବା କହନ୍ତି, ସେଥିରେ ଜମିଦାରଙ୍କ ଘରର ସ୍ତ୍ରୀଲୋକମାନେ କିଛି ପାଟି ଫିଟାନ୍ତି ନାହିଁ । ଜମିଦାର କଥା ପଡ଼ିଲେ କହନ୍ତି:- ପାଣିରେ ଘର କରି କିମ୍ଭୀର ସଙ୍ଗେ କଳି କଲେ କିପରି ଚଳିବ ? ସୁଦକ୍ଷିଣାଙ୍କ ଗର୍ଭାବସ୍ଥାରେ କବି ଯାହା ବର୍ଣ୍ଣନା କରିଅଛନ୍ତି, ସେହିପରି ଜମାଦାରବାବୁଙ୍କର 'ସ୍ୱର୍ଗ ଚାନ୍ଦ' ସୁଦ୍ଧା ଖାଇ ମନ ହେଲେ ଜମିଦାରବାବୁ ଆଣି ଉପସ୍ଥିତ କରନ୍ତି ।)

ଏ ଗ୍ରାମର ଜମିଦାର ରଘୁନାଥ ଚୌଧୁରୀ, (ସୁଯୋଗରୁ ଜମିଦାରବାବୁ) ଆଜି ଟୁଙ୍ଗିରେ ଉପସ୍ଥିତ । ଏହାଙ୍କର ଟୁଙ୍ଗିକୁ ଆସିବା କ୍ୱଚିତ୍ ଘଟେ । ଏକେ ଜମିଦାରି କାର୍ଯ୍ୟରେ ଦିନରାତି ବ୍ୟସ୍ତ, ତା ଉପରେ କାଳେ ଟୁଙ୍ଗିକୁ ଆସି ଗ୍ରାମର ଅନ୍ୟାନ୍ୟ ଲୋକଙ୍କ ସଙ୍ଗରେ ମିଶିଲେ ଆପଣାର ସମ୍ମାନଟକ ଯିବ ଓ ଲୋକେ ମାନିବେ ନାହିଁ । ଜମିଦାରବାବୁ ପ୍ରବୀଣବୟସ୍କ, ପରମାର୍ଥୀଦୀକ୍ଷାଧାରୀ, ଉଆସରେ ଅଧିକାଂଶ ସମୟ କାଟନ୍ତି । କେବଳ ମାମଲା ମକଦ୍ଦମା ପଡ଼ିଲେ ବାଧ୍ୟ ହୋଇ ସହରକୁ ଯା'ନ୍ତି । ଗାଁରେ ସମସ୍ତେ କହନ୍ତି ଯେ

ବାବୁ ଯୋଡ଼ୀ (Jury)ରେ ବସନ୍ତି, କିନ୍ତୁ ଯୋଡ଼ୀକୁ ଯିବାର ଆମ୍ଭେମାନେ କେବେ ଦେଖି ନାହୁଁ । ଯୋଡ଼ୀର ସମନ ଆସିଲେ ବାବୁ ମଫସଲକୁ ବା ଜଗନ୍ନାଥ ଦର୍ଶନକୁ ଯାଇଥିବାର ଚାକରମାନେ କହି କୌଣସି ପ୍ରକାରେ ପିଆଦାକୁ ବୋଧବାଧ କରନ୍ତି ଓ ପିଆଦା ସଦର ଦରଜାରେ ସମନ ଖଣ୍ଡି ଟାଙ୍ଗି ଦେଇ ଗ୍ରାମ ଚୌକିଦାରର ଇସାଦ୍ ଓ ସନ୍ତକ ନେଇ ମନଖୁସିରେ ଅଣ୍ଟାରେ ହାତ ବୁଲେଇ ବୁଲେଇ ଚାଲିଯାଏ । ଓଡ଼ିଆ ସାହିତ୍ୟରେ ବିଶେଷ କିଛି ଧାର ଧାରନ୍ତି ନାହିଁ । ସିରସ୍ତାରେ ତାଳପତ୍ର ପରିବର୍ତ୍ତରେ କାଗଜ ଚଳାଇବା ପ୍ରସ୍ତାବକୁ ଘୃଣାଚକ୍ଷୁରେ ଦେଖନ୍ତି । ଧାନ ମହାଜନି ଖୁବ୍ । ଆଡ଼ ଦୀର୍ଘରେ ୫ କ୍ରୋଶ ମୁଲକରେ ଲୋକେ ଡରନ୍ତି । ଏବକୁ ପୋଲିସଙ୍କ ପ୍ରତାପ ହେତୁ ଏହାଙ୍କ ବଂଶର ଅନେକ କ୍ଷମତା ଓ ଆୟୁଃ ଲୁପ୍ତ ହେଲାଣି । ସଙ୍ଗରେ ୫/୭ ଜଣ ମୋସାହେବ ସର୍ବଦା ମହଜୁଦ୍ । ଦୋଷ ମଧରେ (ଅବଶ୍ୟ ଏକୋହି ଦୋଷୋଗୁଣସନ୍ନିପାତେ ନିମଜ୍ଜତୀନ୍ଦୋଃ କିରଣେଷ୍ୱିବାଙ୍କଃ ତାହା ଧର୍ତ୍ତବ୍ୟ ନୁହେଁ) ଦି'ବେଳା ଟିକିଏ ଲେଖାଏଁ ଭାଙ୍ଗ ଅଭ୍ୟାସ, ସରକାରୀ ମାଲଗୁଜାରି ୯୦୦ ଟଙ୍କା, ପ୍ରାୟ ୧୦,୦୦୦ ଟଙ୍କା ପର୍ଯ୍ୟନ୍ତ କରଜ ହେଲାଣି, କିନ୍ତୁ ବାବୁ ଦିନେ ବିଚାରିଲେ ସବୁ କରଜ ପରିଶୋଧ କରିଦେବେ ବୋଲି ଗର୍ବ କରନ୍ତି । ନିଜ ବ୍ୟୟରେ ଗୋଟିଏ ସଙ୍ଗୀତ ପିଲା ଓ ଗୁରୁ ରଖି ଆଖଡ଼ାଟିଏ ସ୍ଥାପନ କରିଅଛନ୍ତି । ମଫସଲରେ ବାଘ, କିନ୍ତୁ କଚେରିର ନାମ ଶୁଣିଲେ ଉଆସରେ ପଶନ୍ତି । ହାକିମହୁକୁମାଙ୍କ ପାଖରେ କାର୍ଯ୍ୟ ପଡ଼ିଲେ କ୍ଷମତାପ୍ରାପ୍ତ କାପରଦାଜମାନଙ୍କ ଦ୍ୱାରା କାର୍ଯ୍ୟ ଚଳାଇଥାନ୍ତି । ମୋସାହେବମାନେ କହନ୍ତି 'ଯେଉଁ କାମ ଚାକରଙ୍କ ଦ୍ୱାରା ହେବ, ସେଥିସକାଶେ ଛାମୁଙ୍କ ଶ୍ରୀଅଙ୍ଗକୁ କିଆଁ ବାଧା ଲାଗିବ ?'' କିନ୍ତୁ କେତେକ ଦୁଷ୍ଟ ଲୋକ କହନ୍ତି ଯେ, ବାବୁ ଥରେ ଦୁଇ ଥର ଅନୁଭବ ଦ୍ୱାରା ଶିକ୍ଷା ପାଇଅଛନ୍ତି ଯେ ବାବୁଙ୍କ ଭଳି ଲୋକ କଚେରିକୁ ହାକିମହୁକୁମାଙ୍କ ପାଖକୁ ଯିବାଟା ନିତାନ୍ତ ନିରାପଦ ନୁହେଁ । ଇଂରାଜୀରେ ଆପଣା ନାମଟା ଦସ୍ତଖତ୍ କରି ଶିଖିବେ ବୋଲି ବାବୁ ଖୁବ୍ ଯତ୍ନ କରିଥିଲେ, ଏମନ୍ତ କି ୩ ଟଙ୍କା ବାଦ୍ ଖୋରାକ ପୋଷାକରେ ଜଣେ ମାଷ୍ଟର ଇଂରାଜୀ ଦସ୍ତଖତ୍ ଶିଖାଇବାକୁ ୬ ମାସ ରଖିଥିଲେ ଓ ଗାରଗୁଡ଼ାକ ଟାଣି ବା ହିସାବ ମନେରଖି ବାବୁ ଦସ୍ତଖତ୍‌ଟା ଶିଖି ଯାଇଥିଲେ; କିନ୍ତୁ ମାଷ୍ଟରଙ୍କ ରୋକ୍‌ସୋଦ୍ ହେବା ସଙ୍ଗେ ସଙ୍ଗେ 'ଯତ୍ପଠିତଂ ତଦ୍‌ଗୁରବେ ନିବେଦିତଂ ।' ହେଲେ କ'ଣ ହେବ, ଦସ୍ତଖତ୍‌ର ପ୍ରଥମ ୨/୩ଟା ଗାର ଆଜିଯାଏ ବାବୁଙ୍କର ମନେଅଛି । ମୋସାହେବମାନେ କହନ୍ତି 'ଛାମୁ ଅଂରେଜୀ ନ ପଢ଼ି ଏଡ଼େ ଚଞ୍ଚଳ ଦସ୍ତଖତ୍ ଶିଖିଗଲେ, ଯେବେ କିଛି ଅଂରେଜୀ ପଢ଼ିଥାନ୍ତେ, ତେବେ ଆଜି ଛାମୁ ଜଜ କିଇଟର ହୋଇ ବସିଥାନ୍ତେ' ।

ଏହାଛଡ଼ା ଆଜି ଟୁଙ୍ଗିରେ ଅନେକ ଦେଖଣାହାରି । ଜମିଦାରଙ୍କ ଘରୁ ମହମବତି ଦିଆ ଲଣ୍ଠନଖଣ୍ଡକ ଆଜି ଟୁଙ୍ଗିକୁ ଆଲୋକିତ କରିଅଛି । ଏହିପରି ବିଶେଷ କାର୍ଯ୍ୟୋପଲକ୍ଷରେ ଲଣ୍ଠନ ଖଣ୍ଡିକ ବ୍ୟବହୃତ ହୁଏ । ନଇଲେ ଅନ୍ୟ ସମୟରେ କନା ଗୁଡ଼ିଆ ହୋଇ ଜମିଦାରଙ୍କ ପହୁଡ଼ ଘରେ ଟଙ୍ଗା ହୋଇଥାଏ ।

ଆଜି କାଶୀବାବୁ ସଭାର ନେତା । କହିଲେ - 'ଚଉଧୁରି ! ଆଜି ରାତିରେ ଗାଁ ମୁଣ୍ଡ ବରଗଛ ମୂଳେ ନାଚ ହେବ, ତୁମ୍ଭଙ୍କୁ ପଇସା ପଡ଼ିବ ନାହିଁ । ନାଚ ଦେଖିବାକୁ ଆଜି ତୁମ୍ଭଙ୍କୁ ଆମ୍ଭେ ନିମନ୍ତ୍ରଣ କଲୁଁ ।' ଚୌଧୁରୀ ବଡ଼ ଚଲାଖ ଲୋକ । କହିଲେ- 'ଆଜ୍ଞା, ସେ ନାଚବାଲା ଆମଠାରୁ ବିଦାକି ପାଇବେ । ଆମେ ଥାଉଁ ଥାଉଁ ଆପଣ ପଇସା ଖର୍ଚ୍ଚ କରି ନାଚ ଦେଖିବେ ? ଆପଣ ବସିଥିଲେ ଆମର କେତେ ପଇସା-'

କାଶୀବାବୁ 'ନା ନା' କହି ଆପଣାର ଅବ୍ୟକ୍ତ ସମ୍ମତି ଜଣାଇଲେ ।

ମୋର ପରିବାରସ୍ଥ ଲୋକଙ୍କ ଛଡ଼ା ଗ୍ରାମର ଅନ୍ୟ ସମସ୍ତେ ମୋର ସ୍ୱଭାବସୁଲଭ ଚପଳତା କ୍ଷମା କରିଥା'ନ୍ତି । ମୁଁ ଜମିଦାରବାବୁଙ୍କୁ କହିଲି -

ଜମିଦାରବାବୁ ! ଦିନକୁ ଦିନ ଦେଶର ଉନ୍ନତି ଆପଣମାନଙ୍କ ହାତରେ, 'ବୋହୂନାଟ'କୁ ଆପଣଙ୍କର ପ୍ରଶ୍ରୟ ଦେବାଟା ଭଲ ହେଉ ନାହିଁ । ଆପଣମାନେ କ୍ଷମତାପନ୍ନ, ଆପଣମାନଙ୍କ ଇଙ୍ଗିତରେ ଯାହା ହୋଇପାରେ, ଆମ୍ଭମାନଙ୍କ ସହସ୍ର ଲୋଚନରେ ତାହା ସମ୍ଭବ ନୁହେଁ । ଗ୍ରାମରେ ନାଟକ ଅଭିନୟ ଦଳ ସୃଷ୍ଟି କରନ୍ତୁ ।

ଜମିଦାର ମୋ କଥାରେ ବିରକ୍ତ ହୋଇ ଜମାଦାରଙ୍କ ଅଜ୍ଞାତରେ ମୋ ଆଡ଼କୁ ଭ୍ରୂକ୍ଷେପ କଲେ । (ବୋଧହୁଏ ବିଚାରିଲେ ଯେ ଏ ନାଚ ଖର୍ଚ୍ଚ ବାଦ୍ ତାଙ୍କୁ ଆଉ କିଛି ତହଖର୍ଚ୍ଚରେ ପଡ଼ିବାକୁ ହେବ) ଓ ଜମାଦାରବାବୁ ଈଷତ୍ ହାସ୍ୟ କରି କହିଲେ-

'ସୁଆଙ୍ଗ ନ ହେଲେ ଓ ପାଟି ନ ହେଲେ ଯାତ୍ରା ଜମେ ନାହିଁ । ଦେଖଣାହାରୀ କମିଯାନ୍ତି । ଦେଖଣାହାରୀ ନ ଥିଲେ କି ଯାତ୍ରା ଶୋଭା ପାଏ ? ଯେତିକି ବେଶି ହସିବ, କୁଦିବ, ଯେତିକି ବେଶି ହସ ହସ କଥା ଓ 'ଭାଣ୍ଡସଣ୍ଡ' ପଡ଼ିବ ତେତିକି ବେଶି ଲୋକ ଜମିବେ ।'

(Fit audience though few ବିଖ୍ୟାତ କବିଙ୍କ ପଦଟି ମୋ ମନେ ପଡ଼ିଲା) ମୁଁ କହିଲି - ଜମିଦାରବାବୁ ! ମାର୍ଜିତ ରୁଚିର ୨/୪ ଜଣଙ୍କ ପ୍ରଶଂସା ଅପେକ୍ଷା ଜଘନ୍ୟ ରୁଚିର ପାଞ୍ଚ 'ବାହାବା' କୌଣସି ଗୁଣରେ ଉତ୍କୃଷ୍ଟ ନୁହେଁ । ଗୁଡ଼ାଏ ବିକଟ ଚିତ୍ର ଲୋକଙ୍କ ଆଗରେ ଦେଖାଇବା ଶିକ୍ଷିତ ଲୋକର ଉଚିତ ନୁହେଁ । ଆମ୍ଭମାନଙ୍କ ଯାତ୍ରାରେ ବାପ-ପୁଅ, ଭାଇ-ଭାଇ, ଭାଇ-ଭଉଣୀ, ସମସ୍ତେ ଏକତ୍ର ଯାତ୍ରା ଦେଖନ୍ତି । ଏମାନଙ୍କ ସମକ୍ଷରେ ବୀଭତ୍ସ ଚିତ୍ର ଓ କଥୋପକଥନ ଅତି ଅଡୁଆ ବୋଧହୁଏ । ଯାତ୍ରାରେ ଯାହା କହିବ କି କରିବ, ତାହା ସ୍ୱଭାବସଙ୍ଗତ ଓ ପ୍ରକୃତ ଘଟଣାମାନଙ୍କର ଅବିକଳ ଅନୁରୂପ ହେବା ଆବଶ୍ୟକ । ମନେ କରନ୍ତୁ, ସାଧାରଣ ବ୍ୟବହାରରେ ଯେତେବେଳେ ଜଣକୁ ଡାକନ୍ତି, ସେ ଆସି ପହଞ୍ଚେ । କିନ୍ତୁ ଯାତ୍ରାରେ ମଦନାମା'କୁ ଡାକିବାମାତ୍ରକେ, ମଦନାମା' କଦର୍ଯ୍ୟ ବେଶରେ ''ମଦନାମା' ମଦନାମା' କିଏ ଡାକୁଛି, ମଦନା ଲାଗି ମୋ ଦିହ ଝଡ଼ିପଡୁଛି'' ବୋଲି ନାଚି ନାଚି ଆସି ଯାତ୍ରାସ୍ଥଳରେ ପହଞ୍ଚେ । ଏ କଣ ସ୍ୱାଭାବିକ ଘଟନାର ଅନୁକରଣ

ହେଲା ? ମଦନାମା'ର ପୁଅ ପୀଡ଼ିତ ଓ ମରିବା ଉପରେ ପଡ଼ିଛି; ଏପରି ସ୍ଥଳରେ ତାକୁ ଦେଖିଲେ ମନରେ ଦୟାର ଉଦୟ ହୁଅନ୍ତା; କିନ୍ତୁ ମଦନାମା'ର ବେଶ, ନାଚ ଓ କଥାବାର୍ତ୍ତାର ଭଙ୍ଗୀରୁ ଲୋକେ ଠୋ ଠୋ ନ ହସି ରହିପାରନ୍ତି ନାହିଁ । ପୁଣି ପୂର୍ବରୁ ପ୍ରସଙ୍ଗକ୍ରମେ ଯାହାର ଆସିବା ଜଣା ନ ଥାଏ କିମ୍ବା ଅନାହୂତ ହୋଇ ଉପସ୍ଥିତ ହେଲେ, ଯାତ୍ରାରେ ହେଉ ବା ସଂସାରରେ ହେଉ, ଆତ୍ମପରିଚୟ ଆବଶ୍ୟକ ହୁଏ । କିନ୍ତୁ ଯାହାକୁ ଡାକନ୍ତି ବା ଯାହାର ଆସିବା ପୂର୍ବରୁ ଜଣାଯାଏ, ସେ ଆସି 'ମୁଁ ଅମୁକ ଆସିଲି, ମୁଁ ଅମୁକ ଆସିଲି' ଏପରି ଚିତ୍କାର କରିବା ଅସ୍ୱାଭାବିକ ଓ ହାସ୍ୟାସ୍ପଦ ! ଭାରତ ଲୀଳା ସୁଆଙ୍ଗରେ ଦ୍ୱାରୀ ସୁଆଙ୍ଗ ନିତାନ୍ତ ଅସ୍ୱାଭାବିକତା । ସଂସାରରେ ଦ୍ୱାରୀ ରାଜାଙ୍କ ଆଗରେ କର ଯୋଡ଼ି ଥର ଥର ହୋଇ ଆଜ୍ଞା ଶୁଣିବା ନିମନ୍ତେ କର୍ଣ୍ଣ ଡେରି ରହିଥାଏ, କିନ୍ତୁ ଯାତ୍ରାରେ ଦେଖ, ଦ୍ୱାରୀ ଓ ରାଜାଙ୍କ ମଧ୍ୟରେ କଥାବାର୍ତ୍ତା ଓ ବ୍ୟବହାର ନିତାନ୍ତ ଅଶ୍ଳୀଳ ଓ ଅରୁଚିକର । ଦ୍ୱାରୀର ରାଣୀଙ୍କ ପ୍ରତି ସମ୍ବୋଧନ ଓ ଅଙ୍ଗଭଙ୍ଗୀ କି ବିକଟ, ପ୍ରକୃତ ଜୀବନରେ ସ୍ୱପ୍ନରେ ସୁଦ୍ଧା ତାହା ଘଟେ କି ନାହିଁ ସନ୍ଦେହ ! ଆମ୍ଭମାନଙ୍କ ଦେଶର ଯାତ୍ରାରେ ଅନେକ ସୁଆଙ୍ଗରେ ଅଶ୍ଳୀଳତା ଷୋଳ କଳାରେ ବିରାଜିତ । ଏହାଛଡ଼ା ଏ ସ୍ଥାନରେ ସ୍ୱନାମଖ୍ୟାତ 'କବି'ମାନଙ୍କ ରଚନାଚାତୁରୀ ଆହୁରି ଆଶ୍ଚର୍ଯ୍ୟଜନକ – ହିନ୍ଦୀ, ବଙ୍ଗଳା ଓ ଓଡ଼ିଆ ଭାଷା ଏବଂ ବ୍ୟାକରଣର ଏକ ଅଦ୍ଭୁତ ଘାଣ୍ଟତିଅଣ ! ଏମାନଙ୍କ ରଚନା ଭାଷାର ଝାଟୁଆ ବୋଲି କହିଲେ ଚଳିବ ! ମଫସଲର ଅଭିଧାନରେ 'କବି'ର ଅର୍ଥ ଯାତ୍ରାର କବି, ଆଉ ଉତ୍କୃଷ୍ଟ କବି (କୋବି ?)ର ଅର୍ଥ- ଯାହାର ଘାଣ୍ଟତିଅଣ ଇତର ଲୋକଙ୍କୁ ସୁସ୍ୱାଦୁ ଲାଗେ । ଥିଏଟର ଆରମ୍ଭ କଲେ ଅନେକ ଦୋଷ ମାର୍ଜିତ ହୁଅନ୍ତା । ଶିକ୍ଷିତ ଲୋକଙ୍କ ରଚିତ ନାଟକରେ ଅଶିକ୍ଷିତ 'କବି'ଙ୍କ ରଚିତ ସୁଆଙ୍ଗ ଅପେକ୍ଷା ଅବଶ୍ୟ ଅଳ୍ପ ଦୋଷ ଦେଖାଯିବ ।

ଥିଏଟର ନାମ ଶୁଣି ଜମାଦାରବାବୁ କହିଲେ ଥିଏଟର ହେଲେ 'ବାଈନାଚ' ହେବ, ବେଶ୍ କଥା । ଏଠାକୁ ବେଶ୍ୟା ଆଣିଲେ ଜିଆଦା ଖରଚ ପଡ଼ିବ । ଆଚ୍ଛା, ସେ କଥା ଆମେ ବନ୍ଦୋବସ୍ତ କରିଦେବା । ଏପର-

ରାମବାବୁ କହିଉଠିଲେ- 'ଏପର' ଆଉ କଣ ? ଏଠାରେ ଥିଏଟର ହେଲେ ଅବକାରୀ ଇଲାକାର ବି ଦି'ପଇସା ବଢ଼ନ୍ତା - ତୁମ୍ଭେମାନେ ବି ଉପବାସରେ ଫେରି ଯା'ନ୍ତ ନାହିଁ । ବାଈ ନ ଆଣି ଘର ସ୍ତ୍ରୀମାନଙ୍କୁ ଶିଖାଇଲେ ସେମାନେ ବେଶ୍ ନାଚନ୍ତେ ।

ମସ୍ତରାମ କହିଲା- ବାଈଙ୍କ ଭଳି ଘରର ମାଇପଙ୍କୁ ଏତେ ଢଙ୍ଗ କାହୁଁ ଆସିବ ? ଘର ମାଇପଙ୍କ ନାଚ ଦେଖିଲାବେଳେ କାହାଁତକ ମଣିଷ ମୁହଁ ବନ୍ଦ କରି କାଠ ପିତୁଳାଟି ପରି ବସି ନାଚ ଦେଖୁଥିବ ? ବାଈମାନେ ନ ଥିଲେ ଘର ମାଇପେ କି ସହଜରେ ଠିକଣା ପଡୁଥାନ୍ତେ ?

ମୁକ୍ତ୍ୟାରବାବୁ- ସହରରେ କେତେ ଥେଟର ହେଲାଣି, କିନ୍ତୁ ଆଜିତକ୍ ଗୋଟିଏ ବି ନାହିଁ । ଆମ ବାବୁ (ସହରର ଉକିଲ)ଙ୍କ ସଙ୍ଗେ ବିନା ଦର୍ଶନରେ ଆମେ ଥେଟର ଦେଖିବାକୁ ଯାଇଥିଲୁଁ । ସେଥିରୁ କିଛି ମଜା ପାଇଲୁ ନାହିଁ । ଥେଟର କଥାବାର୍ତ୍ତା ଶୁଣି ଆମକୁ ନିଦ ମାଡ଼ିଲା ।

ମାଷ୍ଟର-ମହାଶୟ- ଓଡ଼ିଶାର ଏତେ Theatre (ଥିଏଟର) ମଧ୍ୟରେ କୋଠପଦା ମହନ୍ତପୁରୀ ଗୋସାଇଁଙ୍କ Theatre (ଥିଏଟର)କୁ Long live (ଦୀର୍ଘଜୀବୀ) କରନ୍ତୁ । ସେଠାରେ ସ୍ତ୍ରୀମାନଙ୍କ Part (ଅଂଶ) ନାଟୁଆପିଲାମାନଙ୍କଦ୍ୱାରା ଚଳେ । Dancing boys (ନାଚପିଲାମାନେ) ଥିଏଟର ସମୟରେ ଥିଏଟରରେ ଅନ୍ୟ time (ସମୟ)ରେ ସଙ୍ଗୀତ ଆଖଡ଼ାରେ ଥା'ନ୍ତି – ତା'ଛଡ଼ା country (ଦେଶ) ଓ ଭାଷାର ଉନ୍ନତି ନିମନ୍ତେ ମହନ୍ତ ମହାରାଜ ଥିଏଟରରେ ଓ guest (ଅତିଥି) ମାନଙ୍କ ଚର୍ଚ୍ଚାରେ ବହୁତ spend (ବ୍ୟୟ) କରନ୍ତି । ଅଧିକ ପରିମାଣରେ ଦୁଧ, ଦହି, sweet (ମିଷ୍ଟାନ୍ନ) ଲୁଚି ଇତ୍ୟାଦି ଖର୍ଚ୍ଚ ହୁଏ । କେତେ ଦିନ ଥିଏଟର ସମୟରେ ମଠଟି ଅବାରିତ ଦ୍ୱାର ହୁଏ ।

ମସ୍ତରାମ ପାଗଳ ଏହି ସମୟରେ ପାଟିକରି ଉଠିଲା- ଆହା ! ଆଜି କିଛି ଦହି ମିଳନ୍ତା ! ଦହି ଖାଇ ଯାତ୍ରା ଦେଖିଲେ ଆମକୁ ଆଉ ପୋଖରୀପାଣି ବା ପରିସ୍ତ୍ରା ମାଡ଼େ ନାହିଁ । ଏକ ଜାଗାରେ ବସି ଯାତ୍ରା ଦେଖିବାକୁ ସୂତ୍ର ହୁଏ ।

ମୁଁ କହିଲି- ମଫସଲରେ ଥିଏଟର ଆରମ୍ଭ କରି ଜନସାଧାରଣଙ୍କର ଥିଏଟର ପ୍ରତି ପ୍ରବୃତ୍ତି ଜନ୍ମାଇବା ସାମାନ୍ୟ ସୁଖର ବିଷୟ ନୁହେଁ । ଜମାଦାରବାବୁ, ଆପଣ ଯାହା ଭୟ କରୁଅଛନ୍ତି, ବାସ୍ତବରେ ତାହା ନୁହେଁ । ବେଶ୍ୟା ନାଚ ଓ ମଦ୍ୟପାନ ଥିଏଟରର ଅଙ୍ଗବିଶେଷ ନୁହେଁ । ବାଳକମାନଙ୍କ ଦ୍ୱାରା ଥିଏଟରରେ ସ୍ତ୍ରୀମାନଙ୍କ ଅଂଶ ଉତ୍ତମରୂପେ ଚାଳିତ ହୋଇପାରେ । ଇଂଲଣ୍ଡରେ ପୂର୍ବେ ବାଳକମାନଙ୍କ ଦ୍ୱାରା ସ୍ତ୍ରୀମାନଙ୍କ ଅଂଶ ଚଳୁଥିଲା, ଏବେ କୁଳକନ୍ୟା ବା ଯୁବତୀମାନେ ଥିଏଟରରେ ଯୋଗ ଦିଅନ୍ତି । ଏ ଦେଶରେ ତାହା ହେବାକୁ ଅନେକ ଦିନ ଅଛି । ତାହା ନ ହେବା ପର୍ଯ୍ୟନ୍ତ ଅନ୍ତତଃ ବାଳକମାନଙ୍କ ଦ୍ୱାରା କାର୍ଯ୍ୟ ଚଳିବ । ତେବେ ବାଳକମାନଙ୍କୁ ଅଙ୍ଗଭଙ୍ଗୀ, ସ୍ୱର ଇତ୍ୟାଦି ବିଷୟରେ ଶିକ୍ଷା ଦେବା ନିମନ୍ତେ ଉପଯୁକ୍ତ ଶିକ୍ଷୟିତ୍ରୀ ଆବଶ୍ୟକ ।

ଜମାଦାରବାବୁ କହିଲେ- ଆରେ ସେ କଥା କଣ କହୁଚ, ଆଜିକାଲି ଓସ୍ତାଦିଆଣୀ ମିଳିବା କାଠିକର ପାଠ । ଯେବେ ଗୋଟିଏ ମିଳିବ, ତେବେ ନାଚିବାକୁ କିଆଁ ପାଞ୍ଚୋଟି ନ ମିଳିବେ ? ଯେଉଁମାନେ ବହି ତିଆରି କରୁଛନ୍ତି, ସେମାନେ ଯେତେବେଳେ ସ୍ତ୍ରୀମାନଙ୍କ ପରାମର୍ଶ ନ ନେଇ ଆପଣା ମନରୁ ସ୍ତ୍ରୀମାନଙ୍କ ମନର ଭାବ କାଢ଼ି ଲେଖି ପକାଉଛନ୍ତି, ଆମ୍ଭେମାନେ ସ୍ତ୍ରୀଙ୍କି ନ ନେଇ ପିଲାଙ୍କୁ କି ତାଲିମ କରିପାରିବା ନାହିଁ ? ଆଚ୍ଛା, ସେ କାମ ଆମତକ୍ ।

ମୁଁ କହିଲି- ଆପଣ ଯାହା କହିଲ ତାହା ପ୍ରକୃତ । କିନ୍ତୁ ଅଙ୍ଗଭଙ୍ଗୀ ଓ ସ୍ୱରଗାନ ଶିଖାଇବା ଆପଣ ଯେତେ ସହଜବୋଧ କରୁଅଛନ୍ତି, ପ୍ରକୃତରେ ତାହା ନୁହେଁ । ଯାହାହେଉ ଥିଏଟର ପ୍ରତି ଚେଷ୍ଟା କରନ୍ତୁ । ନାନା ସ୍ଥାନ ବୁଲି ଦେଖାଇବା ଯେ, ଓଡ଼ିଆ ଭାଷା ଶୁଖିଲା ଭାଷା ନୁହେଁ । 'ହାତ ଅଳସେ ନିଶ ବଙ୍କା' ବୋଲି ଆଜି ଓଡ଼ିଆ ଭାଷା ପ୍ରତି ଲୋକଙ୍କର ଆସ୍ଥା ନାହିଁ । ଅନ୍ତତଃ ଏହା ବଙ୍ଗଭାଷାର ସମକକ୍ଷ ହେବାର ଯୋଗ୍ୟ । ପହିଲେ ରଙ୍ଗମଞ୍ଚ, ଚିତ୍ରିତ ପରଦା ଓ ବେଶ ପରିଚ୍ଛଦ ଇତ୍ୟାଦିରେ କେତେକ ବ୍ୟୟ କରିବାକୁ ହେବ, କିନ୍ତୁ ସମ୍ପୂର୍ଣ୍ଣ ଶିକ୍ଷା କରି ଥରେ ସହରକୁ ଗଲେ ଲାଭ ହେବ, ନିତାନ୍ତ ପକ୍ଷରେ ଖର୍ଚ୍ଚଟା ଉଠିଯିବ ।

ମହାଜନ କହିଲେ (ଅତି ବ୍ୟଗ୍ର ଭାବରେ ଓ ଜମାଦାରଙ୍କୁ ନ ଶୁଣାଇଲା ପରି ହୋଇ)- ଯେବେ ଲାଭ ହବ ବୋଲି ସମସ୍ତେ କହୁଛ, ତେବେ ଏ କାମଟି ଆରମ୍ଭ କର, ମୁଁ ଆଗତୁରା ଟଙ୍କା ଦେବି । ତୁମର ଲାଭ ହେଲେ ମତେ ମାସକେ ଟଙ୍କା ମୁଣ୍ଡେ ତିନି ପଇସା ସୁଧ ଦବ, ଲାଭତକ ତୁମେ ନବ ।

ଜମାଦାର- ଚୌଧୁରୀଙ୍କ ଭଳି ବଡ଼ଲୋକ ଥାଉ ଥାଉ ଟଙ୍କା ମହାଜନ ଘରୁ କାହିଁକି ଆସିବ ? ଚୌଧୁରୀ ଏ କାମ ଚଳାଇ ଦେଇଥିବେ, ଟଙ୍କା ମିଳିଲେ ନେବେ ।

ଜମିଦାରବାବୁ ଏ କଥା ଶୁଣି ପ୍ରଥମେ ତାଙ୍କର ବାକ୍‌ରୋଧ ହୋଇଗଲା । ଏକେ ତ ୧୦,୦୦୦ ଟଙ୍କା କରଜ । ସହରର ମହାଜନ କେହି ପାଖରେ ପୂରାଇ ଦେଉ ନାହାନ୍ତି । ଏଥିକି ଯେଉଁ ବିଚାର ? ପଛକୁ ଏହି ଗ୍ରାମର ମହାଜନ ସାହୁଠାରୁ ଟଙ୍କା କରଜ ନେବାର ସ୍ଥିର ହେଲା । କିନ୍ତୁ ମହାଜନ ସାହୁ ନିୟମ କରିଛି ଯେ, ବିନା ବନ୍ଧକରେ ସେ କାହାକୁ ପଇସାଟିଏ ଦେବ ନାହିଁ । ମହାଜନର ନିଜର ଖୁବ୍ ଆଳାପୀ ଲୋକ ଆସି ବନ୍ଧକରେ ଟଙ୍କା କରଜ ମାଗିଲେ ମହାଜନ କହେ, 'ଆହା ! ମୋର ତୁମକୁ ଟଙ୍କା ଦବାର ଭାରି ଇଚ୍ଛା ଥିଲା । ଦି' ତିନି ଜାଗାରେ ଟଙ୍କା ବୁଡ଼ିଯିବାରୁ ମୁଁ ନିର୍ମାଲ୍ୟ କୋଥଳି ଛୁଇଁ ଗୋଟାଏ ନିୟମ କରି ପକେଇଛି, ବିନା ବନ୍ଧକରେ ଗୁରୁଗୋସେଇଁକି ସୁଦ୍ଧା ପଇସାଟିଏ ଦେବି ନାହିଁ ।' ମହାଜନର ଏ ନିୟମ ଜମିଦାରଙ୍କୁ ଜଣା । ପଛକୁ ଜମିଦାର ଚାଣକ୍ୟଙ୍କର ମହାବାକ୍ୟ 'ଆତ୍ମାନଂ ସତତଂ ରକ୍ଷେତ୍ ଦାରୈରପି ଧନୈରପି' (ଦାରୈରପି ଧନୈରପି - ଦାରଣାଂଚ ଧନୈରପି ଦାରାଳଙ୍କରଣୈରପି) ସ୍ମରଣ କରି ନିଜ ଘରର କେତେକ ଅଳଙ୍କାର ମହାଜନ ଘରେ ଥୋଇ ଟଙ୍କା ଆଣି ଥିଏଟର କରିବା ସିଦ୍ଧାନ୍ତ କଲେ ।

ଲେଖିବାକୁ ଏତେ ସମୟ ଲାଗିଲା । କିନ୍ତୁ 'ଆହା କିବା ଅଦ୍ଭୁତ ମନର ଗତି' ମନର ଗତି ଲେମ୍ବାଳର ହାବିଳୀ ଅପେକ୍ଷା ଚଞ୍ଚଳ - ଏକଥା ସିଦ୍ଧାନ୍ତ କରିବାକୁ ଜମିଦାରଙ୍କୁ ମୁହୂର୍ତ୍ତେ ସୁଦ୍ଧା ଲାଗିବ ନାହିଁ ।

ଜମାଦାରଙ୍କୁ ସମ୍ବୋଧନ କରି ଚୌଧୁରୀ କହିଲେ, ଆପଣ ଯେତେବେଳେ କହିଲେଣି, ଆଉ କି ସେ କଥା ବନ୍ଦ ହେବ ? ଟଙ୍କା କଥା ? ଯେବେ ଦରକାର ହେବ ଆଣି ହାଜର କରିବି ।

ବନ୍ଦୋବସ୍ତ କଚେରିର ଅମଲା ମଧ୍ୟରୁ ଜଣେ ଦୁଇଜଣ ପ୍ରସ୍ତାବ କଲେ ଯେ, ଆଗାମୀ ଶନିବାର ଦିନ ସେ କଚେରିରେ ତାମ୍ବୁ, ଚେୟାର, ଶତରଞ୍ଜି, ବେଞ୍ଚ ଇତ୍ୟାଦି ନିଲାମ ହେବାର ଅଛି, ଥିଏଟର ପାଇଁ ଆଣିବାର ହେଲେ ଆମେ ସେ ଜିନିଷମାନ ଶସ୍ତାରେ କରାଇଦେବୁ ।

ମସ୍ତରାମ୍ ଚିତ୍କାର କଲା, 'ଗଛମେ କଠଲ୍, ଓଠମେ ତେଲ୍, ଛେଳି ନ ବେଉଁ ବୋଦାକୁ କାଢ଼ିଆ !' ପଛକୁ ବ୍ରାହ୍ମଣଙ୍କ ଘର ଶ୍ରାଦ୍ଧ ଭଳିଆ ହଉ, ଶ୍ରାଦ୍ଧ ସାମଗ୍ରୀ ତାଲିକା ଦେଖିଲେ ତାଟକା । ଏଣେ ଖଣ୍ଡେ ପତ୍ର ପଡ଼ିବ ନାହିଁ ।

ଜମାଦାର ଚୌଧୁରୀଙ୍କ ପ୍ରତି ସସ୍ନେହ ଦୃଷ୍ଟି ନିକ୍ଷେପ କରି ହର୍ଷ ଗଦ୍‌ଗଦ ସ୍ୱରରେ ସମ୍ବୋଧନ କଲେ, "ସାବାସ୍ ଚୌଧୁରୀ ! ଖାନ୍ଦାନ ଘର ପିଲା ଯେଡ଼େ ଗରିବ ହେଲେ ଅମିର୍ ମିଜାସ୍ କି ଛାଡ଼ିଯିବ ? ତେବେ ଏ ବର୍ଷ ହୋରି ଯାତ୍ରାକୁ ଥିଏଟର କରିବା । ଖଣ୍ଡେ ନୂଆ ରଙ୍ଗଢଙ୍ଗିଆ ନାଟକ ବହି ଠିକ୍ କର । କିଏ କଣ ହବ, ତାହା ମଧ ଠିକ୍ କରିଦିଅ, ଶୀଘ୍ର କାମ ଆରମ୍ଭ କରିବା । ଆମ ହୁକୁମରେ ସବୁ ହବ; କିନ୍ତୁ ଆମେ ଯେପରି କିଛି କଥାରେ ପଦାରେ ଚିହ୍ନା ନ ପଡୁ । ସରକାରୀ କାମ ବଡ଼ ଜବାବଦେହୀ କାମ ।"

ମସ୍ତରାମ ଜମାଦାରଙ୍କୁ ହାତଯୋଡ଼ି କହିଲା, "କେବେ ଥେଟର ହବ ବୋଲି ଆଜି ଯେପରି ନାଚ ବନ୍ଦ ହବ ନାହିଁ । ଦି' ନାବରେ ଗୋଡ଼ ଦେଇ ବୁଡ଼ି ମରିବା କଥା ପଛକୁ ନ ହଉ ! ନା ଥେଟର, ନା ଆଜି ରାତିରେ ନାଚ ।"

ମୁଁ ମଧ ବିଚାରିଲି, ଜମାଦାରବାବୁଙ୍କର ଏ ଆଗ୍ରହ ସବୁଦିନେ ରହିଲେ ତ ହୁଏ ! ନଇଲେ ନୂଆ ନୂଆ ଦିନାକେତେ । ପରେ ସେ କଥା ପଚାରେ କିଏ ?

ରାତ୍ରି ପ୍ରାୟ ପହରକ ବଳିଯିବାରୁ ସମସ୍ତେ ଯିବାକୁ ଉଦ୍ୟତ ହେଲେ । ମହାଜନ ସାହୁଙ୍କଠାରେ ଭେଦା ହେଲା ମୋଟ ତେଲ ୨ ସେର; ଚୌକିଦାରଙ୍କୁ ଭଣ୍ଡାରିଙ୍କ ଘରକୁ ପଠାଗଲା । ଭଣ୍ଡାରି ଆସି ବେଠିରେ ମଶାଲ ଧରିବେ । ଶିବ ସେଠାଠାକୁ ହୁକୁମନାମା ଗଲା । ଖଡ଼େଦମ୍ ମଶାଲକନା ତିନି ବିଡ଼ା ଆଣି ହାଜର କରିବ । ନାଟବାଲାଙ୍କ ନିମନ୍ତେ ଜଳଖିଆ, ମୋଟ ତେଲ, ଫୁଲ ଇତ୍ୟାଦିର ବରାଦ ଚୌଧୁରୀଙ୍କଠାରେ ରହିଲା । ଜମାଦାରବାବୁ ଗ୍ରାମର ଚୌକିଦାର ଓ ଦଫାଦାରଙ୍କୁ ଯାତ୍ରାକୁ ଦରେସ୍ ପିନ୍ଧି ଆସିବାକୁ ହୁକୁମ ହେଲାରୁ ଆମ୍ଭେମାନେ ଟୁଙ୍ଗିରୁ ପ୍ରସ୍ଥାନ କଲୁ ।

ଉତ୍କଳ ସାହିତ୍ୟ/୪ର୍ଥ ଭାଗ/୧୦ମ ସଂଖ୍ୟା/୧୩୦୭ ସାଲ

## ତୃତୀୟ ସନ୍ଧ୍ୟା

ଆଜି ଫାଲ୍‌ଗୁନ ମାସ । ବସନ୍ତ ସମୟ । ଦୋଳ ପୂର୍ଣ୍ଣିମା ଆଉ ୧୦/୧୨ ଦିନ ଅଛି । ଆଜି ବିଚାରା ମସ୍ତରାମ ଟୁଙ୍ଗିରେ ନାହିଁ । ମୁଁ, ପଣ୍ଡିତ-ମହାଶୟ, ମହାଜନ ସାହୁ, ଜମିଦାରଙ୍କ ତହସିଲଦାର, ଗ୍ରାମର ସଂକୀର୍ତ୍ତନ ଆଖଡ଼ାର ଗୁରୁ ଓ ଜମିଦାରଙ୍କ ଗୋରୁଜଗା ଚାକର ଗଉଡ଼ଟୋକା ଉପସ୍ଥିତ ଅଛୁ ।

ଜମିଦାରଙ୍କ ତହସିଲଦାର ଏ ଗ୍ରାମରେ ନ ଥା'ନ୍ତି । ଗ୍ରାମରୁ ପାଞ୍ଚ କ୍ରୋଶ ଦୂର ଜମିଦାରୀ ତାଲୁକେ ମଲାଚଣ୍ଡିଆ କଚେରିରେ ତହସିଲଦାରି କରନ୍ତି ଓ ବିଶେଷ କାର୍ଯ୍ୟ ଉପଲକ୍ଷରେ ଜମିଦାରଙ୍କ ଘରଠାକୁ ଆସନ୍ତି । ଆଜି ତହସିଲଦାର ହାତରେ ଜମିଦାରଙ୍କ ସ୍ୱାକ୍ଷରଯୁକ୍ତ ଖଣ୍ଡେ ତାଳପତ୍ର ହୁକୁମନାମା ଧରି ବଡ଼ ଭାବିତ ଅଛନ୍ତି । ଦୋଳ ଖର୍ଚ୍ଚ ତାଲିକା ଦିଆଯାଇଛି । କିନ୍ତୁ ଏ ବର୍ଷର ଫସଲର ଅବସ୍ଥା ଭଲ ନ ଥିବାରୁ ପ୍ରଜାମାନେ ଖାଇବା ବିନା ଗଡ଼ି ମରୁଅଛନ୍ତି । କିପରି ଟଙ୍କା ଅସୁଲ ହେଲେ ଜମିଦାରଙ୍କ ଘରକୁ ଦୋଳ ସରଞ୍ଜାମ ଓ ଟଙ୍କା ଆସିବ, ଏହି କଥା ନେଇ ଆଜି ତହସିଲଦାରେ ବ୍ୟସ୍ତ । ତହସିଲଦାରେ ଯାହାକୁ ଦେଖୁଛନ୍ତି, ତା ଆଗରେ ତାଳପତ୍ର ହୁକୁମନାମା ଖଣ୍ଡିକ ଥରେ ଆମୂଳ ପାଠ କରି ଆପଣାର ଦୁଃଖ-କାହାଣୀ ପ୍ରକାଶ କରୁଅଛନ୍ତି । ଆମ୍ଭମାନଙ୍କୁ ଦେଖି ତହସିଲଦାର ଅଣ୍ଟାରୁ କରଣି ଅକ୍ଷରରେ ଲେଖା ହୁକୁମନାମାଖଣ୍ଡିକ କାଢ଼ି ପାଠ କଲେ । (ଆହା ! ବଡ଼ ଦୁଃଖର ବିଷୟ, ୨/୩ ଛାପାଖାନା ବୁଲି ବୁଝିଲି, କରଣି ଟାଇପ୍ (type) କେଉଁଠାରେ ନାହିଁ । ଯେଉଁମାନଙ୍କଠାରେ ଅଛି, ସେମାନେ କରଣି ଅକ୍ଷର ଛାପିବେ ବୋଲି ବେଶି ଚାର୍ଜ କଲେ । ଅଗତ୍ୟା ମନର କଥା ମନରେ ଫୁଟି ଝଡ଼ିଲା ।)

ଶ୍ରୀ ଶ୍ରୀ ଜମିଦାର ଚୌଧୁରୀ
ଶ୍ରୀ ଶ୍ରୀ ରଘୁନାଥ ଚୌଧୁରୀଙ୍କର

ତହସ୍ଲୀଦାର ଲଖୀ ବିଶ୍ୱାଳଙ୍କୁ ଯେ ବିଧି । ଯେ ନୀମନ୍ତେ ଲେଖାଗଲା କୀ ଏ ତପସ୍ଲି । ବା ସରଜାମ ଓ ଟଙ୍କା ଦୋଳ ଖର୍ଚ୍ଚ ସକାଶେ ଦ୍ୱାଦଶୀଦିନ ଆଣି ହାଜର ହେବ । ଏ କାମକୁ ଅତି ଆକଟ ଯାଣିମ । ଏ ତାଲିକା । ମୁଁ ।

| | |
|---|---|
| ଲୁଗା ନିମନ୍ତେ | ଟ ୫୫ । ୭ |
| କଟକ ସଉଦା ନୀମନ୍ତେ | ଟ ୪୩ । ୬ |
| ନାଚବାଲା | ପ ୨ ଞା |
| କ୍ରିତନ ଏସ୍ମ | ମ ୨ ଣ୍ଡଳ |
| ବେଠିଆ ଭଣ୍ଡାରି | ଯ ୭ ଣ |
| ମସାଲ କନା | ଗୋ ୪ ଛା |
| ବିବାନ କାନ୍ଧିଆ ଗଉଡ଼ | ଯ ୮ ଣ |
| ବଯନ୍ତ୍ରୀ | ଯ ୧୦ ଣ |

ଆଉ ଆଉ ସରଞ୍ଜାମ ମାମୁଲି ତାଲିକା । ମୁ ପଠାଇବ । ତାରିଖ ସ୍ନ ସଦର । ଏ ହୁକୁମନାମାକୁ ଗଉର କରିବ । ଏ ।

(ସ୍ୱାକ୍ଷର) ଶ୍ରୀ ଶ୍ରୀ ରଘୁନାଥ ଚୌଧୁରିଏ

ତହସିଲଦାର ଆପଣା ଦୁଃଖ କାହାଣୀ ଆମ୍ଭମାନଙ୍କୁ କହୁଅଛନ୍ତି, ଏହି ସମୟରେ ମାଷ୍ଟର ମହାଶୟ ଗ୍ରାମଆଡୁ ଗୁଣୁ ଗୁଣୁ ହୋଇ ଆସିଲେ-

"Cuckoo, jug jug pui tui ta woo' ମୁଁ କହିଲି- ମାଷ୍ଟର-ମହାଶୟ ! ଆପଣ ବର୍ତ୍ତମାନ Palgrave's Lyrics ବନ୍ଦ କରି ଆସିଲେ ପରା ?

ମାଷ୍ଟର-ମହାଶୟ - ହଁ ସେ book (ବହି) ଅନେକ ଦିନ ତଳେ ପଢ଼ିଥିଲି । ଆଜି evening (ସନ୍ଧ୍ୟା) ପୂର୍ବରୁ କୋକିଳର song (ଗୀତ) ଶୁଣି ମନେପଡ଼ିଗଲା । ଆହା ! spring (ବସନ୍ତ) କି ସୁଖର time (ସମୟ), ଏ ବର୍ଷ ବିଦେଶରେ spring (ବସନ୍ତ)ଟା ଦୁଃଖରେ କଟିଗଲା । ଏ (spring) (ବସନ୍ତ) ବିଷୟରେ ମୁଁ ଇଂରାଜୀ ଓଡ଼ିଆ ମିଶାଇ ଗୋଟିଏ song (ଗୀତ) ଲେଖିଛି, ଶୁଣନ୍ତୁ । ଏ ଗୀତରେ ଆଦ୍ୟ ପ୍ରାନ୍ତ ଯମକ ଅଛି । ଏ ଗୀତଟି କିପରି Newspaperରେ (ସମ୍ବାଦପତ୍ରରେ) ଛାପା ହେବ ?

Future ସାହେବଙ୍କ ପୁସ୍ତକ ଖଣ୍ଡ ମୋର ମନେପଡ଼ିଲା । ଇଂରାଜୀ ଓ ଓଡ଼ିଆ ମିଶା ଆଦ୍ୟ ପ୍ରାନ୍ତ ଯମକ- ମଣିକାଞ୍ଚନ ସଂଯୋଗ- ଅବତରଣିକାରୁ ମୁଁ ଗୀତଟିକୁ କଳ୍ପନା କରିନେଲି, ମୋହବଦ୍‌ରେ ମାଷ୍ଟର-ମହାଶୟଙ୍କୁ କିଛି କହିପାରିଲି ନାହିଁ । ମନେ ମନେ କହିଲି, ''ପ୍ରାର୍ଥନା କରୁଛି, ମାଫ୍ କରନ୍ତୁ । ଦିନଯାକ ଶୁଷ୍କ ଚିନ୍ତାରେ ବିରକ୍ତ ବୋଧ ହେବାରୁ ମନ ପରିବର୍ତ୍ତନ ନିମନ୍ତେ ଟୁଙ୍ଗିକୁ ଆସେ, କିନ୍ତୁ ଏଠାରେ ମଧ ଅତ୍ୟାଚାର !''

ଏହା ବିଚାରୁଛି, ଏହି ସମୟରେ ପଣ୍ଡିତ-ମହାଶୟ ବଜ୍ରନିର୍ଘୋଷରେ ତାନ ମାନ ମିଳାଇ ଗାଇଉଠିଲେ-

ଚୂତାଙ୍କୁରାସ୍ୱାଦକଷାୟକଣ୍ଠଃ ପୁଂସ୍କୋକିଳୋଯନ୍ମଧୁରଂ ଚୁକୂଜ ।
ମନସ୍ୱିନୀମାନବିଘାତଦକ୍ଷଂ ତଦେବ ଜାତଂ ବଚନଂ ସରସ୍ୟ ।

ଅବସର ପାଇ ମୁଁ ମାଷ୍ଟରଙ୍କୁ ପଚାରିଲି, ସେ ଗୀତଟି ପରେ ଦେଖିବା ମାଷ୍ଟରବାବୁ ! ଆପଣଙ୍କୁ ବସନ୍ତ ସମୟ କିପରି ଲାଗେ ?

ମାଷ୍ଟର- Home (ଗୃହ)ରେ ଥିଲେ ଖୁବ୍ glad (ଆନନ୍ଦିତ) ହୁଏ କିନ୍ତୁ ବିଦେଶରେ ଥିଲେ ବଡ଼ sorry (ଦୁଃଖିତ) ହୁଏଁ । ବିଶେଷତଃ କୋକିଳର song (ଗୀତ) ଶୁଣି Mind (ମନ) ଥୟ ହୋଇପାରେ ନାହିଁ । କୋକିଳର song (ଗୀତ) ବଡ଼ ଉତ୍ତେଜକ ।

ତହସିଲଦାରେ କହିଲେ, ମାଷ୍ଟରେ ! କୋକିଳର ଗୀତ ତ ମିଠା ଲାଗେ । ତୁମେ କିପରି କହୁଛ ଯେ କୋକିଳ ବଡ଼ ତେଜ ।

ମାଷ୍ଟର- ତହସିଲଦାରେ, କୋକିଳ ବଡ଼ ତେଜ ବୋଲି ମୁଁ କହୁ ନାହିଁ । କୋକିଳର ରାବ ଶୁଣିଲେ ମନ ଚଞ୍ଚଳ ହୁଏ, ମୁଁ ଏ ଅର୍ଥରେ କହିଲି । (ଧନ୍ୟ ତହସିଲଦାରେ ! ତୁମ୍ଭ ଭୟରେ ଆଜି ଅନେକ ଚେଷ୍ଟାକରି ମାଷ୍ଟର-ମହାଶୟ ଏତକ କଥା ଶୁଦ୍ଧ ଓଡ଼ିଆରେ କହିଲେ, ତେବେ ସୁଦ୍ଧା ୨/୩ ସ୍ଥାନରେ ପ୍ରଥମେ ଇଂରାଜୀ ଶବ୍ଦ ଲଗାଇଥିଲେ; କିନ୍ତୁ ପୁନର୍ବାର ତାକୁ ପ୍ରତ୍ୟାହାର କରି ଓଡ଼ିଆରେ ବାକ୍ୟ ସମାପ୍ତ କଲେ ।)

ମୁଁ କହିଲି- ମାଷ୍ଟର-ମହାଶୟ ! ବୁଝିଲ, ଯେପରି ମୁରବ୍ବି ଜୋରରେ ଜଣେ ଜଣେ ଲୋକ ନିର୍ଗୁଣ ହେଲେ ସୁଦ୍ଧା ଉଚ୍ଚ ପଦ ପା'ନ୍ତି, ସାହିତ୍ୟ-କ୍ଷେତ୍ରରେ ମଧ୍ୟ ସେହିପରି । ଜଣେ ବିଖ୍ୟାତ କବି ନିଜ ଅନୁଭବରୁ ଗୋଟିଏ କଥା ଲେଖି ଯାଇଅଛନ୍ତି । ମୁରବି ଜୋରରୁ ସେ କଥାଟି ଜାତୀୟ ଭାବରେ ଲାଖିଗଲା । କୋକିଳ ରାବ ଶୁଣି ବିରହୀମାନେ ଝୁରି ମରନ୍ତି, ଏହା କେବଳ ଏ ଦେଶର କଥା । ମନର ଭାବ ଅନୁସାରେ ବାହ୍ୟ ବିଷୟମାନଙ୍କରୁ ରସ ନିଃସୃତ ହୁଏ । ସୁଖୀଲୋକ ମନରେ ବାହ୍ୟ ବିଷୟମାନ ସୁଖର ଉଦ୍ରେକ କରାଏ । ଦୁଃଖୀ ଲୋକ ମନରେ ଦୁଃଖର, କାମୀ ମନରେ କାମର, ପାପୀ ମନରେ ପାପର, ଧାର୍ମିକ ମନରେ ଧର୍ମର ଉଦ୍ରେକ ହୁଏ । କୋକିଳକୁ କୌଣସି ପ୍ରଧାନ କବି 'କାମଦୂତ' ବୋଲି କହି ଯାଇଅଛନ୍ତି । ରାମଲୀଳା, କୃଷ୍ଣଲୀଳା ଆଖଡ଼ାରେ କୋକିଳର ନାମ ପଡ଼ିଲେ ଆଖଡ଼ା କବିମାନେ 'କାମଦୂତ' ଶବ୍ଦଟି ପ୍ରୟୋଗ କରି ବସିଲେ । କିନ୍ତୁ 'କୋଇଲି ଲୋ କେଶବ ଯେ ମଥୁରାକୁ ଗଲା, କାହା ବୋଲେ ଗଲା ପୁତ୍ର ବାହୁଡ଼ି ନଇଲା- ଲୋ କୋଇଲି' ଏଠାରେ କୋକିଳ 'କାମଦୂତ' ନ ହୋଇ 'ଶୋକଦୂତ' ହେଲା କିପରି ? କୋକିଳର ରାବ ଶୁଣି ଇଂଲଣ୍ଡୀୟ ଜଣେ ବିଖ୍ୟାତ କବିଙ୍କ ମନରେ ପାଠ୍ୟାବସ୍ଥାର ସ୍ମୃତି ଜାଗ୍ରତ ହେଲା କିପରି ? ମନର ଭାବ ଘେନି ସବୁ କଥା । ମନେକର, ବସନ୍ତ କାଳରେ ଜଣେ କାମାର୍ତ୍ତ ବିରହୀ ବିଦେଶରେ ରହି କୋକିଳ ରାବ ଶୁଣି କୋକିଳ ଉପରେ ବଡ଼ ରାଗିଗଲେ ! ତା ବୋଲି କି କୋକିଳ ରାବରେ ସମସ୍ତେ କାମାର୍ତ୍ତ ହେବେ ? ମୁନିମାନେ ତ ତେବେ ବସନ୍ତାଗମରେ ଆଶ୍ରମର ବନକୁ ପଦା କରି ପକାଉଥାନ୍ତେ ! ବିଶେଷତଃ ଆମ୍ଭେମାନେ ଶୁଣିଛୁ, ଆଶ୍ରମରେ ଆମ୍ରଗଛମାନ ମଧ୍ୟ ଥାଏ, କୋକିଳ ଆମ୍ର ବଉଳର ବିଶେଷ ପ୍ରିୟ । ପ୍ରକୃତ କଥା କହିବାକୁ ଗଲେ, ମାଷ୍ଟର-ମହାଶୟ, କୋକିଳ ରାବ ଶୁଣିଲେ ମୋ ମନ ବିରହଚିନ୍ତା ଆଡ଼କୁ ଦଉଡ଼ିପାରେ ନାହିଁ । ମୋର ପ୍ରାଣପ୍ରତିମା ତିନି ବର୍ଷର କନ୍ୟାଟି କଥା ମନରେ ପଡ଼େ । ଦିନେ ସେ ରାତି ନ ପାହୁଣୁ ଉଠିଥିବା ସମୟରେ କୋକିଳ ରାବ ଶୁଣି ପଚାରିଲା, ''ଏ କଅଣ ?'' ମୁଁ କହିଲି, ''ଏ କୋଇଲି ବୋଲି ଗୋଟିଏ ଚଢ଼େଇର ରାବ ।'' ସେ ଉତ୍ତର କରିଥିଲା, ''ମୋର ଯେମିତି ଗୋଟିଏ 'ନନା' (ବାପା) ଗୋଟିଏ 'ବୋଉ' (ମା) ଅଛନ୍ତି, ତାର ସେମିତି ଅଛନ୍ତିଟି ?'' ମୁଁ ପ୍ରେମରେ ହସି ହସି କହିଲି, 'ହଁ' । ସେ କହିଲା, ''ତା ବୋଉ ତାକୁ ଦୁଧ ନ ଦେଲାରୁ ସେ କଣ କାନ୍ଦୁଛି ?'' ତାହାର

ମା'ଟା ମୋ ଆଡ଼କୁ ଚାହିଁ ମୁରୁକି ହସି ତାକୁ କହିଥିଲା, ''ତା ନନା ତାକୁ ମିଠେଇ ନ ଦେଲାରୁ ସେ ଅବୁଝା ହୋଇ କାନ୍ଦୁଛି ।'' ଆମ୍ଭମାନଙ୍କ ଦେଶରେ ବସନ୍ତର ଆମୋଦ ଆନନ୍ଦ 'ହୋରି' ଗୀତରେ ଶେଷ ହୁଏ ।

ଆମ୍ବ ବଉଳର ନାମୋଲ୍ଲେଖ ଶୁଣି ଜମିଦାରଙ୍କ ଚାକିରିଆ ଗଉଡ଼ଟୋକା କହିଲା, 'ଗୋଦସ୍ତା ଖୁବ୍ ଆମ୍ବ ଖାଇବାକୁ ମିଳିଥିଲା । ଏସନ କୁହୁଡ଼ିରେ ଆମ୍ବ ବଉଳଯାକ ଜଳିଗଲାଣି ।'

ମହାଜନ ଟିକିଏ ତୀବ୍ର ଦୃଷ୍ଟିରେ ଗଉଡ଼ଟୋକା ଆଡ଼କୁ ଚାହିଁ କହିଲେ, 'ଠାକୁରଙ୍କ ଇଚ୍ଛାରୁ ଏ ବର୍ଷ ଆମ୍ବଟା ମହରଗ ହେଲେ ଆର ବର୍ଷ ତୁଟି ଭରଣା ହୋଇଯିବ । ଗଲା ବର୍ଷ ଆମ୍ବ ପାଚିବା ଯାଏ ଥରେ ସୁଦ୍ଧା ବତାସ କଲା ନାହିଁ । ମହାଜନଯାକ ହାତରୁ ପଇସା ଗଣି ଜିଭ କାମୁଡ଼ି ବସିଲେ ।'

ଗଉଡ଼ଟୋକା- ସାଆନ୍ତେ, ଆମ୍ବ ବେଶି ହେଲେ ଗରିବଗୁରୁବାଙ୍କୁ ଗୋଟାଏ ଅଧେ ମିଳନ୍ତା; ଆମ୍ବ ମହରଗ ହେଲେ ଗରିବଗୁରୁବା ମରିଯିବେ ।

ମହାଜନ- ତେବେ କଣ ଆମେ ବେପାର କରିଛୁଁ ମାଗଣା ? ଘରୁ ଖାଇ କଣ ବଣିଜ ଶିଖିବୁଁ ? ତୁମ୍ଭେମାନେ ଥିଲେ କେତେ, ମଲେ କେତେ ?

(ମୁଁ ମନେ ମନେ ବିଚାରିଲି, ମହାଜନେ ! ଚିରଞ୍ଜୀବୀ ହୁଅ ! ତୁମ୍ଭମାନଙ୍କ ପରି ମହାଜନଙ୍କଦ୍ୱାରା ପ୍ରକୃତରେ ଦେଶର ଉପକାର । ଦେଶରେ ଦୁର୍ଭିକ୍ଷ ହେଲେ ତୁମ୍ଭର ଅନ୍ତତଃ ଦୁଇ ପଇସା ଲାଭ ବଢ଼ିବ । ଗେଣ୍ଡା ଶାମୁକାର ତୁମ୍ଭର କିଛି ପ୍ରଭେଦ ନାହିଁ । ନିଜର ଲାଭ ଚିନ୍ତା ତୁମ୍ଭଙ୍କୁ ଏପରି ବେଢ଼ି ରହିଛି ଯେ ନଗଦ ଲାଭ କିଛି ପାଇଲେ ଦେଶ ଉଚ୍ଛନ୍ନ ହେଉ ପଛକେ କିଛି ଚିନ୍ତା ନାହିଁ । କିନ୍ତୁ ଟିକିଏ ଭାବି ଦେଖୁ ନାହଁ ଯେ ଦେଶ ଉଚ୍ଛନ୍ନ ହେଲେ ତୁମ୍ଭ ଲାଭ ବା କାହୁଁ ପାଇବ ? ଆହା ! ଏ ଦେଶର ଶିକ୍ଷିତ ଲୋକମାନେ ଉମେଦ୍ୱାରି ନ କରି ମହାଜନୀ ବ୍ୟବସାୟରେ ମତି ବଳାଇଲେ ଦେଶର କେତେ ଉପକାର ହୁଅନ୍ତା ! ପୁନର୍ବାର ବିଚାରିଲି - ଯେଉଁଠାରେ ସୁବିଧା ଅଛି, ସେଠାରେ ଇଚ୍ଛା ନାହିଁ ଓ ଯେଉଁ ଲୋକଙ୍କର ଇଚ୍ଛା ଅଛି, ସେମାନଙ୍କର ସୁବିଧା ନାହିଁ । ଅଭିଭାବକମାନେ ନିଜ ନିଜ ବାଳକମାନଙ୍କ ସମ୍ମୁଖରେ ଉଚ୍ଚ ଚାକିରିର ଆଦର୍ଶ ନ ରଖି ବାଣିଜ୍ୟ, କୃଷି ଇତ୍ୟାଦିରେ ଆଦର୍ଶ ରଖୁଥିଲେ ଦେଶ ରତ୍ନପ୍ରସୂ ହୁଅନ୍ତା । ପୁଅ ଚାକିରି କରି ନ ପାରିଲେ ସବୁ ବ୍ୟର୍ଥ ହେଲା । ଧନ୍ୟ ଆମ୍ଭମାନଙ୍କ ଦେଶ !!) ଗଉଡ଼ଟୋକା ଉପରେ ଆଉ କିଛି କିଛି ଗାଳିବୃଷ୍ଟି ହେବା ଭୟରେ ମୁଁ କଥାକୁ ଅନ୍ୟଆଡ଼େ ଫେରାଇଲି ।

ମୁଁ କହିଲି- ପଣ୍ଡିତ-ମହାଶୟ ! ବସନ୍ତ କାଳଟା ଆନନ୍ଦର ଦିନ, ବସନ୍ତ କାଳରେ ହିନ୍ଦୁମାନଙ୍କର ଶ୍ରୀପଞ୍ଚମୀ, ବସନ୍ତରାସ, ଶିବରାତ୍ରି, ଦୋଳ, ପଞ୍ଚଦୋଳ ଅନେକ ପର୍ବ ପଡ଼େ । ବସନ୍ତ କାଳରେ ଚାଷୀମାନେ ମଧ୍ୟ ଅବସର ପାଆନ୍ତି ।

ତହସିଲଦାରେ କହିଲେ- ଚଷାମାନଙ୍କର ଆନନ୍ଦର ଦିନ କାହିଁ ? ଏ ସମୟରେ ସିନା ସେମାନେ ବିଲବାଡ଼ି ଧନ୍ଦାରୁ ଫୁରୁସତ ପା'ନ୍ତି, ହେଲେ କଅଣ ହେବ, ଏତିକିବେଳେ ଖଞ୍ଜଣା ଅସୁଲର ଜୁଲମ ଲାଗେ, ଚଷାମାନଙ୍କର ସବୁଦିନେ ଦୁଃଖ ।

ମାଷ୍ଟର-ମହାଶୟ କହିଲେ- ତହସିଲଦାରେ ! ଆମ୍ଭମାନଙ୍କର country (ଓଃ ରାମ୍ !) ଦେଶରେ ସମସ୍ତଙ୍କର ଧାରଣା ଯେ, ମୂର୍ଖର ପ୍ରଧାନ ପେସା ଚାଷ । ପଢ଼ି ଶୁଣି ଜାଣିଲେ ଚାଷରେ mind (ଓଃ !) ମନ ଦେବାର ପୋଷାଏ ନାହିଁ । ନିତାନ୍ତ ଅନ୍ୟ କିଛି ଉପାୟ ନ ମିଳିଲେ ଲୋକେ ଚାଷ କରନ୍ତି ।

ମୁଁ ଆଖଡ଼ା ଗୁରୁଙ୍କୁ ଲକ୍ଷ୍ୟ କରି ନ ଜାଣିଲା ପରି ହୋଇ ତହସିଲଦାରଙ୍କୁ କହିଲି- ଆମ୍ଭମାନଙ୍କ ଦେଶର ମୂର୍ଖଲୋକଙ୍କୁ ଯୋଡ଼ିଏ କଥା ସାଜେ ।

୧- ଚାଷ, ତହିଁରେ ନୂଆ କିଛି ନାହିଁ । ବାପା-ଅଜାଙ୍କ ଅମଳର ପଦ୍ଧତି ଅନୁସାରେ ସବୁ ହେବ । ଫଳ ମଧ୍ୟ ତହିଁକି ଚାହିଁ । ପୂର୍ବ ପଦ୍ଧତିରେ ଚାଷ କରି ଯେଉଁ ଜମିରେ ୫ ଜଣଙ୍କର ପେଟ ପୂରୁଥିଲା, ଆଜି କିପରି ବା ୧୦ ଜଣ ତହିଁରେ ପୋଷିହେବେ ? ଚାଷ ବିଷୟ ଯଦି ଶିକ୍ଷିତମାନେ ଚର୍ଚ୍ଚା କରି ଚାଷୀମାନଙ୍କୁ ଶିକ୍ଷା ଓ ସାହାଯ୍ୟ ଦିଅନ୍ତେ, ତେବେ ଚାଷ ଖୁବ୍ ଉନ୍ନତି କରନ୍ତା ଓ କୃଷିରେ ସର୍ବାପେକ୍ଷା ଅଧିକ ଲାଭ ହୁଅନ୍ତା । ଗରିବ ମୂର୍ଖମାନେ ଚାଷରେ ଲାଭବାନ୍ ହେବା ଭଳି ସେମାନଙ୍କର ବୁଦ୍ଧି ଓ ମୂଳଧନ କାହିଁ ?

୨- ଆମ୍ଭମାନଙ୍କ ଦେଶର ସଂକୀର୍ତ୍ତନ । ସଂକୀର୍ତ୍ତନର ଉଦ୍ଦେଶ୍ୟ ଆମ୍ଭମାନଙ୍କ ଦେଶର ଲୋକମାନେ ଅନେକ ଦିନରୁ ଭୁଲି ସାରିଲେଣି । ଓଡ଼ିଶାର ସଂକୀର୍ତ୍ତନ ବଙ୍ଗଳା ସଂକୀର୍ତ୍ତନର ବିକୃତ ଅବସ୍ଥା । ବଙ୍ଗଳା ଗୀତ ବଙ୍ଗଳା ନ ଜାଣିବା ମୂର୍ଖମାନଙ୍କ ମୁହଁରେ କିପରି ଶୋଭା ପାଏ, ତାହା ଯେ ଥରେ ନ ଶୁଣିଛି, ସେ ବୁଝିପାରିବ ନାହିଁ । ଓଡ଼ିଶାର ସଂକୀର୍ତ୍ତନରେ କେବଳ ଖୋଳ କରତାଳ ମାଡ଼ରେ ବାହାଦୁରି । ଯେ ଯେତିକି ଶ୍ରୁତିକଠୋର ସ୍ୱରରେ ଝାଞ୍ଜ ମୃଦଙ୍ଗ ବାଦେଇ ପାରିଲା, ତାହାର ସଂକୀର୍ତ୍ତନରେ ସେତିକି ବାହାଦୁରି । ଶିକ୍ଷିତମାନଙ୍କର ଏଥିପ୍ରତି ଦୃଷ୍ଟି ରହିଲେ ଅବଶ୍ୟ ବର୍ତ୍ତମାନ ପ୍ରଚଳିତ ବିକୃତ ଓଡ଼ିଆ ସଂକୀର୍ତ୍ତନ ଅନେକ ପରିମାଣରେ ପରିମାର୍ଜ୍ଜିତ ହୁଅନ୍ତା । କାହିଁ ହରିନାମର ମିଷ୍ଟତା, କାହିଁ ଆମ୍ଭମାନଙ୍କ ଦେଶପ୍ରଚଳିତ କର୍ଣ୍ଣବଧିରକାରୀ ଅର୍ଥଶୂନ୍ୟ ପ୍ରଳାପ । ସଂକୀର୍ତ୍ତନର ଭାବ ଯା ଇଚ୍ଛା ତାହା ହେଉ, ବାଡ଼ିଆପିଟା ଖୋଳ କଳାରେ ନ ହେଲେ ସମୁଦାୟ କଥା ବ୍ୟର୍ଥ ହେଲା । କିରେ ବାବୁ, ଓଡ଼ିଆ ଭାଷା ଥାଉ ଥାଉ ବଙ୍ଗଳା କାହିଁକି ? ଏଥିରେ ମଧ୍ୟ ସେମାନଙ୍କର ଦୋଷ ନାହିଁ । ଓଡ଼ିଆରେ ସଂକୀର୍ତ୍ତନ ଗୀତ କେହି କରି ନ ଥିବାରୁ ମୂର୍ଖ ଓ ଚଷାମାନେ ଯାହା ପାଇଲେ ତାହା ଧରିଲେ । ପ୍ରଚଳିତ ସଂକୀର୍ତ୍ତନ ବଙ୍ଗଳାରୁ ଆମଦାନୀ । ଚୈତନ୍ୟଙ୍କ ପ୍ରଚାରିତ ଧର୍ମ ଓଡ଼ିଶାରେ ବ୍ୟାପିବାର ପରିଚୟ ଏକ ସଂକୀର୍ତ୍ତନ, ଦ୍ୱିତୀୟ ମାଳିବନ୍ଧା । ଚୁରକୀ ପରିବର୍ତ୍ତେ ତ ଗୋଛାଏ ଲେଖାଏଁ ଚଅଁର ଆଗରୁ ଅଛି ।

(ମୁଁ ସଂକୀର୍ତ୍ତନକୁ ନିନ୍ଦା କରିବାରୁ ଆଖଡ଼ା ଗୁରୁ ମୋ ଆଡ଼କୁ ବକ୍ର ଦୃଷ୍ଟିରେ ଚାହିଁଲେ- ତହସିଲଦାରେ ସେ ସ୍ଥାନ ତ୍ୟାଗ କଲେ, ମହାଜନ ସାହୁ ମୋ ଆଡ଼କୁ ଚାହିଁ ମୁହଁ ମୋଡ଼ିଦେଲେ ।)

ଏହି ସମୟରେ ଜମିଦାରଙ୍କ ଘରର 'ସୁନା' ପୋଇଲୀ ଆସି ପହଞ୍ଚିଲା ଓ ଆମ୍ଭମାନଙ୍କୁ ଦେଖି ନିଜର କେତେ ଦୁଃଖ କହିବସିଲା ।

ମାଷ୍ଟର-ମହାଶୟ ପଚାରିଲେ, 'ସୁନା, ତୋ ଘର ତ ଏଠେଇଁ ନୁହେଁ । ତୁ ଏଠେଇଁ କିପରି ରହିଲୁଁ ?'

(ମୁଁ ମାଷ୍ଟର-ମହାଶୟଙ୍କୁ ହାତ ଟିପି ନିବାରଣ କଲି । କିନ୍ତୁ ଚେଷ୍ଟା ନିଷ୍ଫଳ ହେଲା ।)

ସୁନା କାନ୍ଦି କାନ୍ଦି କହିଲା, ''ମୋ କରମ କି ଘର ଛାଡ଼ିଲି । ମୁଁ ତ ଜାଣିଥିଲି ସବୁଦିନେ ମୋ ବଳ ବୟସ ଥିବ, ହାତଗୋଡ଼ ଚଳୁଥିବ, ଯୋଉଠି ବସିବି ଖାଇବି । 'ଦେ କଉଡ଼ି ଖା ପିଠା, ଏଥିପେଇଁ କିଆଁ ଦାନ୍ତ ନିକୁଟା' ? ବୟସ ଗଲାରୁ ଯେ ପାଉଚି ସେ ପଦେ ଟାପରା କରୁଚି, ଟିକିଏ ଆଡ଼ତି ପତ୍ର ନ କଲେ ସାଆନ୍ତାଣୀ ନିଆଁ ବାଣ । ଚଢ଼େଇ ଚିରୁଗୁଣୀଙ୍କର ତ ବାସ ଅଛି, ମୋର ବୁଢ଼ୀଦିନେ କିଛି ଆଶ୍ରା ନାହିଁ ।'' ଏହା କହି ସୁନା କଇଁ କଇଁ କାନ୍ଦିଲା । ଆମ୍ଭେମାନେ ଦେଖିଲୁ ଯେ ସୁନାର ପୂର୍ବ ସ୍ମୃତି ଜାଗରିତ କରାଇବା ଆପାତତଃ ଭଦ୍ରତାନୁମୋଦିତ ନୁହେଁ । ବିଶେଷତଃ ଜମିଦାରଙ୍କ ଘର ।

ସୁନାକୁ ଅନେକ ପ୍ରକାର ବୋଧଶୋଧ କଲୁ । ଦେଶର କେତେକ କୁଳରେ 'ପୋଇଲୀ' ରଖିବା ପ୍ରଥାକୁ ମନେ ମନେ ଶତସହସ୍ର ଧନ୍ୟବାଦ ଦେଲୁ ଓ ସମାଜଚେତାମାନଙ୍କୁ ତପ୍ତହୃଦୟନିଃସୃତ କେତେ କେତେ ଆଶୀର୍ବାଦ କରି ଟୁଙ୍ଗିରୁ ପ୍ରସ୍ଥାନ କଲୁ । ସୁନା କିନ୍ତୁ ଜମିଦାରଙ୍କ ଘରୁ ରୁଷି ଆସିଛି ବୋଲି ଆମ୍ଭେମାନେ ଯେତେ ବୁଝାଇଲେ ସୁଦ୍ଧା ସେ ଟୁଙ୍ଗି ପିଣ୍ଡାରେ ବସି ରହିଲା । ପରଦିନ ଶୁଣିଲୁ ସୁନା ଆଉ ଗ୍ରାମରେ ନାହିଁ ।

ଉତ୍କଳ ସାହିତ୍ୟ/୪ର୍ଥ ଭାଗ/୧୨ଶ ସଂଖ୍ୟା/୧୩୦୭ ସାଲ

## ଚତୁର୍ଥ ସନ୍ଧ୍ୟା

ଆମ୍ଭମାନଙ୍କ ଗ୍ରାମରେ ଶ୍ରୀଯୁକ୍ତ ଭାଗୀରଥି ସାମନ୍ତରାୟ ସହରରେ ଅନେକ ଦିନ ହେଲା ମୁକ୍ତ୍ୟାରି କରନ୍ତି । ଆଜିକାଲି ଧରଣର ସେ ପାସ୍‌କରା ମୁକ୍ତ୍ୟାର ନୁହନ୍ତି । ସେ ଜଣେ ମରହଟ୍ଟୀ । ବର୍ଷେ ଦୁଇ ବର୍ଷକେ ଥରେ ଗ୍ରାମକୁ ଆସନ୍ତି । ତେବେ ସୁଦ୍ଧା ସହରରେ ସପରିବାର ବାସ କରିବାର ସମ୍ପୂର୍ଣ୍ଣ ବିରୋଧୀ । ଜାତିରେ ବ୍ରାହ୍ମଣ, ବଡ଼ କର୍ମନିଷ୍ଠ, ନିତି ଦୁଇ ଘଣ୍ଟା ପୂଜାପୂଜି ନ କଲେ ଜଳ ଗ୍ରହଣ କରିବେ ନାହିଁ । ନିତାନ୍ତ ପରୋପକାର ଦାୟରେ ପଡ଼ିଲେ ମିଥ୍ୟା କହିବାକୁ ବା ଯୋଗାଡ଼ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଆମ୍ଭେମାନେ କହୁଁ 'ପରୋପକାରଂ ସ୍ୱର୍ଗାୟ' । ('ପର' ଅର୍ଥ ଆପଣାକୁ ଛାଡ଼ି ଗୃହର

ପରିବାରବର୍ଗ 'ଉପକାର' ଭରଣପୋଷଣ) ଦୁର୍ଜ୍ଜନମାନେ ଦୋଷାନ୍ୱେଷୀ । ସେ ଯାହାହେଉ, ସାମନ୍ତରାୟ ମହାଶୟଙ୍କର ଗ୍ରାମକୁ ଆସିବା କ୍ୱଚିତ୍ ଘଟେ । କନିଷ୍ଠା କନ୍ୟାର ବିବାହ ଉପଲକ୍ଷରେ କେତେକ ଦିନ ହେଲା ଗ୍ରାମକୁ ଆସିଅଛନ୍ତି । ଆଜି ବିବାହ ଦିନ, ସହରର କେତେଗୁଡ଼ିଏ ଭଦ୍ରଲୋକ ଆଜି ଗ୍ରାମକୁ କୃତାର୍ଥ କରୁଅଛନ୍ତି । ଆମନ୍ତ୍ରିତ ବ୍ୟକ୍ତିମାନଙ୍କ ମଧ୍ୟରୁ କେତେକ ଯୁବକ କୃତବିଦ୍ୟ ଓ ଆମ୍ଭମାନଙ୍କର ପୂର୍ବପରିଚିତ । ଆଜି ଆମ୍ଭମାନଙ୍କ ଅନୁରୋଧ ରକ୍ଷା କରି ୫/୬ ଜଣ ନବାଗତ ଯୁବକ ଟୁଙ୍ଗିରେ ଉପସ୍ଥିତ । ଗ୍ରାମର ମହାଜନ ସାହୁ, ପଣ୍ଡିତ ମହାଶୟ ଆଜି ଟୁଙ୍ଗିକୁ ଆସିଥିଲେ, କିନ୍ତୁ ପଞ୍ଚାଏ କଳିକାଳ ପିଲାଙ୍କୁ ଟୁଙ୍ଗିରେ ଦେଖି 'ଗତି ଭଲ ନୁହେଁ' ସିଦ୍ଧାନ୍ତ କରି ଟୁଙ୍ଗି ତ୍ୟାଗ କଲେ ! ମସ୍ତରାମ ମଧ୍ୟ ଆଜି ଭୋଜନ ଲୋଭରେ ଗ୍ରାମରେ ଉପସ୍ଥିତ । ତାର ଆଜି ପ୍ରଧାନ ଚିନ୍ତା ଭୋଜନ । ଦଣ୍ଡେ ଘଡ଼ିକେ ସେହି ଭୋଜନ କଥା ଆଣି ପକାଇଅଛି । ଟୁଙ୍ଗିରେ ଯେଉଁ ଯୁବକମାନେ ସମବେତ ହୋଇଅଛନ୍ତି, ସେମାନଙ୍କ ମଧ୍ୟରୁ କାହାରି ପରିଚୟ ଶୁଣନ୍ତୁ ।

ବାବୁ ଗୌରାଙ୍ଗ ଦାସ B.L.M.S. ସମ୍ପର୍କରେ ସାମନ୍ତରାୟଙ୍କର ଝିଆରୀର ପୁଅ, ବୟସ ୨୫/୨୬, ଦୁଇବର୍ଷ ହେଲା ଡାକ୍ତରୀ ପାସ୍‌କରି ସହରରେ ଗୋଟିଏ ଔଷଧାଳୟ ଖୋଲିଅଛନ୍ତି । ବିନା ଦର୍ଶନୀରେ ଅନେକ ଗରିବଙ୍କର ଉପକାର କରନ୍ତି ।

ବାବୁ ରାମହରି ମିଶ୍ର B.A.- ୪ ବର୍ଷ ହେଲା B.A. ପାସ୍ କରି ସହରରେ କଚେରିରେ ଖଣ୍ଡେ ଚାକିରି ପାଇଅଛନ୍ତି । ଅର୍ଥାଭାବରୁ ଇଚ୍ଛାସତ୍ତ୍ୱେ କୌଣସି ଉଚ୍ଚ ଆକାଙ୍କ୍ଷା ପୂର୍ଣ୍ଣ ହେଲା ନାହିଁ । ତେବେ ଯେ ନିତାନ୍ତ ଉଚ୍ଚ ଆଶାରେ ଜଳାଞ୍ଜଳି ଦେଇଅଛନ୍ତି, ତାହା ନୁହେଁ । ଘରେ ବସି କେତେକ ପୁସ୍ତକ ଆଲୋଚନା କରନ୍ତି । ବୟସ ୨୮ ।

ବାବୁ କୃଷ୍ଣଚରଣ ମହାନ୍ତି- ଏ ବର୍ଷ ଏଣ୍ଟ୍ରାନ୍‌ସ ପାସ୍ କରିଅଛନ୍ତି । ବାରିକମିସ୍ତ୍ରି ଲାଇନ୍‌ରେ ପଶିବା ତାଙ୍କର ଇଚ୍ଛା । କିନ୍ତୁ ବର୍ତ୍ତମାନ ସର୍ଭେ ସ୍କୁଲରେ ପଢୁଅଛନ୍ତି । ବେଶ୍ ବୁଦ୍ଧିମାନ୍ । ବୟସ ୨୦ ।

ବାବୁ ଶ୍ୟାମଚରଣ ପଟ୍ଟନାୟକ- ମୁଖ୍ୟାରଙ୍କର ପ୍ରୀତିବନ୍ଧୁ । ପଣ୍ଡିତ ବିଭାଗର ତୃତୀୟ ବାର୍ଷିକ ପରୀକ୍ଷାରେ ଉଚ୍ଚ ସ୍ଥାନ ଲାଭ କରି ମଫସଲରେ ଗୋଟିଏ ମାଇନର ବିଦ୍ୟାଳୟରେ ହେଡ୍‌ପଣ୍ଡିତ କାର୍ଯ୍ୟ କରନ୍ତି । ପ୍ରସଙ୍ଗକ୍ରମେ କହିପକାଇଲେ ପଣ୍ଡିତ ବିଭାଗ ପାସ୍ କର, ଗୁରୁ ବିଭାଗ ପାସ୍ କର, ମାଷ୍ଟର ବିଭାଗ ପାସ୍ କର, ବଳଦଙ୍କ ପାଇଁ କୁଣ୍ଡା ଦାନା ଓ ବିଛାଲି ଆପଣା ହାତରୁ ନ ଯୋଗାଇଲେ 'ଯୋଗ୍ୟ' ମଧ୍ୟରେ ପରିଗଣିତ ହେବାର ଆଶା ଦୁରାଶା । ବେଶ୍ ସଂସ୍କୃତଜ୍ଞ, ଉନ୍ନତଚରିତ୍ର ଲୋକ, ବୟସ ୩୦ ମଧ୍ୟରେ ।

ବାବୁ ଶ୍ୟାମସୁନ୍ଦର ମିଶ୍ର- ମୁଖ୍ୟାରଙ୍କର ଜ୍ୟେଷ୍ଠ ଜାମାତା, ମୁକ୍ତିଆରେ ଏହାଙ୍କ ପିଛା ଅନେକ ଅର୍ଥ ବ୍ୟୟ କଲେ । କିନ୍ତୁ ଏ ଅନେକ ଚେଷ୍ଟା କରି ସୁଦ୍ଧା ଏଣ୍ଟ୍ରାନ୍‌ସ ଖଣ୍ଡକ ପାସ୍ କରିପାରିଲେ ନାହିଁ । ବର୍ତ୍ତମାନ କିଲଟରିରେ କିରାନିଗିରି କରନ୍ତି ।

(ପାଠକ ମହୋଦୟ କ୍ଷମା କରିବେ, 'ପ୍ରତିବଧ୍ନାତି ଶ୍ରେୟ ପୂଜ୍ୟପୂଜା ବ୍ୟତିକ୍ରମଃ' । ଏତେ ଲୋକଙ୍କ ପରିଚୟ ଦେଇ ନିଜର ପରିଚୟ ନ ଦେଲେ ପୂଜ୍ୟପୂଜା ବ୍ୟତିକ୍ରମ ହୁଏ । ଏଣେ ଫେର୍ 'ଆତ୍ମନାମ ଗୁରୋର୍ନାମ ଯନ୍ନାମ କୃପଣସ୍ୟ ଚ' ଏ ସବୁ ଅପ୍ରକାଶ୍ୟ । ଅନ୍ତତଃ କଚେରି ମିସଲରେ ସାକ୍ଷୀ ଜବାନ୍‌ବନ୍ଦି ଛଡ଼ା ଅନ୍ୟତ୍ର ଅପ୍ରକାଶ୍ୟ । ଆଜିକାଲି ସମୟରେ ଋଷିବାକ୍ୟ ଧରି ଚାଲିବା ସର୍ବତ୍ର ଅସମ୍ଭବ; ଆପଣା ନାମ ନ କହିଲେ ପିଙ୍ଗଲକୋଡ଼ର ୧୭୯ ଦଫା ଧରାବନ୍ଧା । ସେଥିପାଇଁ ଏ ସମସ୍ୟା ଅତିକ୍ରମ କରିବାକୁ ଲୋକେ ଜନ୍ମପତ୍ରିକାରେ ଗୋଟିଏ ନାମ ଓ ଅନ୍ୟ ଗୋଟିଏ ଶ୍ରଦ୍ଧାନାମ, ଏପରି ଦିଓଟି ନାମ ଗ୍ରହଣ କରିଥାନ୍ତି । ଶ୍ରଦ୍ଧା ନାମରେ ଆପଣାର ପରିଚୟ ଦିଅନ୍ତି ଓ ଜନ୍ମପତ୍ରିକା ନାମଟି ପ୍ରକାଶ କରନ୍ତି ନାହିଁ । ସେ ଯା ହେଉ, ମୋର ଟିକିଏ ପରିଚୟ ଦେବି । ଯେବେ କେବଳ ଗୁଣଗୁଡ଼ିକ ବ୍ୟାଖ୍ୟା କରିବି, ତେବେ ଆପଣମାନେ କହିବେ ଅହଂକାରୀ, କେବଳ ଦୋଷଗୁଡ଼ିକ ବର୍ଣ୍ଣନା କଲେ ଆତ୍ମନିନ୍ଦା ଯୋଗୁଁ ଈଶ୍ୱରଙ୍କ ନିକଟରେ ଦୋଷୀ । ଏପରି ସ୍ଥଳରେ ମୁଁ ବୈଜ୍ଞାନିକ ପ୍ରଣାଳୀରେ ମୋର ପରିଚୟ ଦେବି । Aristotleଙ୍କ Golden mean ବୋଧହୁଏ ଆପଣଙ୍କ ମଧ୍ୟରୁ ଅନେକ ଜାଣିଅଛନ୍ତି । 'ମୁରାରେସ୍ତୃତୀୟଃ ପନ୍ଥା କେବଳ ଦୋଷ ବା କେବଳ ଗୁଣ ବର୍ଣ୍ଣନା ନ କରି ଗୋଟିଏ ଗୁଣ ଓ ତହିଁ ସଙ୍ଗେ ସଙ୍ଗେ ପୂରଣକାରୀ (compensating) ଗୋଟିଏ ଦୋଷ ଏହିପରି ଦେଖାଇ ମୋର ପରିଚୟ ସାଙ୍ଗ କରିବି । ନାମଟା ଅବଶ୍ୟ ପୂର୍ବରୁ ଜାଣିଅଛନ୍ତି, ତେବେ ଏଇ ଶୁଣନ୍ତୁ, ଦେଖନ୍ତୁ, ଭାବନ୍ତୁ ।

ଶ୍ରୀ ଦୁର୍ମୁଖ ଶର୍ମା- ଏଇଟି ମୋର ଶ୍ରଦ୍ଧା ନାମ । ପିଲାଦିନେ ସ୍ଥାନ ଅସ୍ଥାନ ନ ବୁଝି ବୃଥାରେ ଅନେକ ବାକ୍ୟ ବ୍ୟୟ କରିଥିଲି ଓ ଅତ୍ୟନ୍ତ କଳହପ୍ରିୟ ଥିଲି ବୋଲି ଏ ନାମକରଣ; କିନ୍ତୁ ମୋର ଜନ୍ମପତ୍ରିକା ନାମ ଗୁଣନିଧି । (ବୋଧହୁଏ ଆପଣମାନେ ବୁଝି ପାରୁଛନ୍ତି ଯେ ମୋର ପ୍ରଥମ ଲିଖିତ ନାମର ଦୋଷ ଦ୍ୱିତୀୟ ଲିଖିତ ନାମ ଗୁଣରେ କଟିଗଲା ।)

ଖାଣ୍ଟି ମାଳିବନ୍ଧା ହିନ୍ଦୁ - କିନ୍ତୁ ସନ୍ଧ୍ୟାପୂଜା କର୍ମକର୍ମାଣିର ପାଖେ ଯାଏ ନାହିଁ (ଇଂରାଜୀରେ ଯାହାକୁ Orthodox Hindu କହନ୍ତି । ବାହାରେ କିନ୍ତୁ ତିଳକ କାଟେ, ମାଳି ଗଡ଼ାଏ; କିନ୍ତୁ ବେଳ ଦେଖି କାର୍ଯ୍ୟରେ 'ଅଖାଣ୍ଟି'ଙ୍କୁ ବେଳେ ବେଳେ ଚିତା କାଟିଦିଏ, ଆଖିରେ ଧୂଳି ପକାଇଲା ବେଳେ ଧୂଳିଗଣ୍ଡାକ ଆଖି ବୁଜି ମନ୍ତୁରି ପାରିଲେ ଆଉ ଭାବନା କଣ ?)

ପରୋପକାରକ - କିନ୍ତୁ କଜିଆ ତକରାର ହେଲେ ଯେଉଁ ଯେଉଁ ଉପକାର କରିଥାଏ, ତାହାର ଦ୍ୱାହି ଦେଇ ବିପକ୍ଷଙ୍କୁ ପରାସ୍ତ କରେ ଓ ନିଜକୃତ ଉପକାର ସମସ୍ତଙ୍କୁ କହିବୁଲେ ।

ଯୁବକ ବୟସ ୩୦ - କିନ୍ତୁ କେତେ ଅନିବାର୍ଯ୍ୟ କାରଣରୁ (କେତେଟା ଅବଶ୍ୟ ଆପଣ ଅନୁଭବରୁ ଶିଖିଅଛନ୍ତି ବା ଦେଖିଅଛନ୍ତି) ମସ୍ତକର ଅର୍ଦ୍ଧେକ କେଶ ସେମାନଙ୍କ ଯୁବାସୁଲଭ କୃଷ୍ଣବର୍ଣ୍ଣକୁ ୩/୪ ବର୍ଷ ହେଲା ଭୁଲିଗଲେଣି ।

ନ୍ୟାୟ ଅନ୍ୟାୟ ଉତ୍ତମ ରୂପେ ବୁଝିପାରେ - କିନ୍ତୁ ପରିସ୍ଥିତି ଲୋକଙ୍କ ମନ ଢଗି କାର୍ଯ୍ୟ କରିବାକୁ ବାଧ ହୁଏ, ବର୍ଷା ଦେଖି ଛତା ଧରେ । (ତା ନ ହେଲେ ଯେ ଦେହ ଓଦା ହୋଇଯିବ । ଯେ ଛତା ଧରିଜାଣେ, ତାହା ନିମନ୍ତେ ଛତାର ସୃଷ୍ଟି । ଯେ ଛତା ଧରି ନ ଜାଣେ, ତା ନିମନ୍ତେ ପଖିଆ କିମ୍ୱା ଟୋପର)

ପରର ଦୁଃଖ ଦେଖିଲେ କାନ୍ଦେ - କିନ୍ତୁ ତାକୁ ଦୁଃଖରୁ ଉଦ୍ଧାର କରିବାକୁ ଚେଷ୍ଟା କରେ ନାହିଁ, କାରଣ ଈଶ୍ୱର ତାକୁ ଦୁଃଖ ଦେଇଛନ୍ତି, ତାର ଦୁଃଖ ମୋଚନ କଲେ ଈଶ୍ୱରଙ୍କ ଇଚ୍ଛାବିରୁଦ୍ଧ କାର୍ଯ୍ୟ ହେବ ବୋଲି ମୋର ଧାରଣା ।

କୃତବିଦ୍ୟ - କିନ୍ତୁ 'ଯଥା ଖରଶ୍ଚନ୍ଦନଭାରବାହୀ ଭାରସ୍ୟ ବେତ୍ତା ନ ହି ଚନ୍ଦନସ୍ୟ ।' ସବୁଦିନେ ବାଡ଼ି ବାଇଗଣ ପୋଥି ବାଇଗଣରେ ପ୍ରଭେଦ ରଖିଥାଏ । ବହି ଧରି ସଂସାରରେ ଚଳି ହେବ ନାହିଁ, ଏହା ସିଦ୍ଧାନ୍ତ କରିଅଛି (ପ୍ରଥମେ କିନ୍ତୁ ପଢ଼ା ଛାଡ଼ି ପୁସ୍ତକଚିତ୍ରିତ ଆଦର୍ଶ ଖୋଜି ବୁଲିଲି । ଫଳରେ ଯାହା ଦେଖିଲି, ସ୍ଥିର କଲି ଏଡ଼େ ଏଡ଼େ ବଡ଼ ଲୋକ ଚଳିଯାଉଛନ୍ତି, ମୁଁ ଆଉ ରହିଯିବି ?)

ମୋଦକ ସେବନର ନିତାନ୍ତ ବିରୋଧୀ - କିନ୍ତୁ ବେଜାୟ ମୋଦକ (ମିଷ୍ଟାନ୍ନ) ପ୍ରିୟ ।

ଗାର୍ହସ୍ଥ୍ୟଜୀବନର ଉଚ୍ଚ ଆଦର୍ଶମାନ ପାଠ କରି ଦେହ ପୁଲକିତ ହୁଏ - କିନ୍ତୁ ଘରେ ସବୁଦିନେ କଳି; ପୁଣି ମୋର ରୁକ୍ଷପ୍ରକୃତି ହେତୁ ଘରେ ସମସ୍ତେ ବିରକ୍ତ ।

ଇତ୍ୟାଦି - (ବିଯୁକ୍ତ) ଇତ୍ୟାଦି (ସମାନ)

(ଏତିକି ପରିଚୟରୁ ମୋର ରୁଚି, ବୈଷୟିକ ଜ୍ଞାନ ଇତ୍ୟାଦି ବୁଝିପାରିବେ । ଆପଣମାନେ ବିଚାରୁଥିବେ ଲୋକଟା ଏକ ପ୍ରକାର ନୈପାତନିକ; କିନ୍ତୁ ମୋର ଭାରି ଭାରି ବଡ଼ିଆ ନଜିର ଅଛି, ମୋ ପକ୍ଷ ସମର୍ଥ କରିବାକୁ ଅନେକ ଉପାଧିଭୂଷିତ ଓସ୍ତାଦ୍ ବିରାଜମାନ । ଅତଏବ ମୋ ମୁଣ୍ଡରେ ଯାହା ଅପବାଦ ମୁଣିଟା ଝାଡ଼ିଦେବେ ବୋଲି ବସିଥିଲେ, ତାହା କିନ୍ତୁ ଆପଣଙ୍କ ମନେ ମନେ ରହିଲା ।)

ଆମ୍ଭେମାନେ ଏହି ୬ ଜଣ ଓ ମସ୍ତରାମ ଆଦି ଟୁଙ୍ଗିର ଅଧିକାରୀ । ସମସ୍ତେ ବିଭାଘର ଧୁମ୍‌ଧାମ୍ ଯୋଗୁଁ ଅସ୍ଥିର । ଆଜି କେବଳ ବାଜେ ଗଳ୍ପରେ କାଳ କାଟିଲୁ ।

ଆଗନ୍ତୁକମାନେ ପ୍ରଥମେ ଏ ଗ୍ରାମର ସମସ୍ତ ସମାଚାର ଠିକେ ଠିକେ ଶୁଣିଲେ । ଭାଗବତ ଘରଟି ଜୀର୍ଣ୍ଣାବସ୍ଥା ପ୍ରାପ୍ତ ହୋଇଥିବାରୁ ରାମହରିବାବୁ ପ୍ରସ୍ତାବ କଲେ, ଏ ଗୃହଟିର ସଂସ୍କାର ନିମନ୍ତେ ଗୋଟିଏ ଚାନ୍ଦା ଅସୁଲ କର ।

ବାବୁ ଶ୍ୟାମଚରଣ ପଟ୍ଟନାୟକ ଆପଣା ପକେଟରୁ ଖଣ୍ଡେ କାଗଜ ଓ ପେନସିଲ ବାହାର କରି ଦେଲେ ଓ ଟୁଙ୍ଗିରେ ଉପସ୍ଥିତ ବ୍ୟକ୍ତିମାନଙ୍କଠାରୁ ପ୍ରଥମେ ଚାନ୍ଦା ସ୍ୱାକ୍ଷରର ଯୋଗାଡ଼ ହେଲା । ପ୍ରଥମେ ଆମ୍ଭେମାନେ ରାମହରିବାବୁଙ୍କୁ ସେ କାଗଜଖଣ୍ଡକ ଦେଲୁ ।

ରାମହରିବାବୁ ଆପଣା ନାମ 'ରାମହରି ମିଶ୍ର' ଲେଖି ସ୍ୱୀକୃତ ଅର୍ଥର ପରିମାଣ ଲେଖିଦେଲେ ଓ ଗୌରାଙ୍ଗବାବୁଙ୍କ ଆଡ଼କୁ ସେ କାଗଜ ଖଣ୍ଡକ ବଢ଼ାଇଦେଲେ । ଗୌରାଙ୍ଗବାବୁ ସେ କାଗଜ ଦେଖି ରାମହରିବାବୁଙ୍କୁ ସମ୍ବୋଧନ କରି କହିଲେ, 'ମହାଶୟ, ଆପଣଙ୍କ ନାମ ପୂର୍ବରେ 'ଶ୍ରୀ' ବ୍ୟବହାର ନ କରିବା କି ଯୁକ୍ତିସଙ୍ଗତ ?' ରାମହରିବାବୁ ଶାନ୍ତ ଭାବରେ ଉତ୍ତର କଲେ, କୌଣସି ବିଷୟରେ ଅନ୍ୟକୁ ପ୍ରବର୍ତ୍ତାଇବା ଯୁକ୍ତିଯୁକ୍ତ ହୋଇ ନ ପାରେ; କିନ୍ତୁ ନିଜର ମତ ଅନୁସାରେ କାର୍ଯ୍ୟ କରିବା ତ ଯୁକ୍ତିଯୁକ୍ତ, ଏପରି ପ୍ରଶ୍ନ କଲେ କାହିଁକି ? 'ଶ୍ରୀ' ଗୋଟିଏ ସମ୍ମାନସୂଚକ ଶବ୍ଦ ଓ ନାମ ପୂର୍ବରେ ଶ୍ରୀ ଶବ୍ଦ ପ୍ରୟୋଗ କରିବା ଭଦ୍ରାତାନୁମୋଦିତ । ତାହା ବୋଲି ମୋ ମତରେ ନିଜର ନାମ ପୂର୍ବରେ 'ଶ୍ରୀ' ଲେଖିବା ଉଚିତ ନୁହେଁ । ଇଂରାଜୀରେ Mr. (ମିଷ୍ଟର) ବା Esquire (ଏସ୍କୁୟାର) ଯେପରି ସମ୍ମାନ ସୂଚନାରେ ପ୍ରଯୁକ୍ତ ହୁଏ, ମୋ ମତରେ ଦେଶୀୟ ଭାଷାରେ ଶ୍ରୀର ସେହି ସ୍ଥାନ । ଅନ୍ୟ ଜଣେ ମୋ ନାମ ଲେଖିଲେ Mr. କିମ୍ବା Esq. କିମ୍ବା ଶ୍ରୀ ଲେଖିବା ଉଚିତ । କିନ୍ତୁ ନିଜେ ନିଜର ନାମରେ ଏପରି କିଛି ଲଗାଇଲେ ମତେ ଅଡୁଆ ବୋଧହୁଏ ।

ଶ୍ୟାମଚରଣବାବୁ କହିଲେ, ରାମହରିବାବୁ, ତାହା ନୁହେଁ, ଶ୍ରୀ ଅର୍ଥ ଲକ୍ଷ୍ମୀ । ପ୍ରଥମେ କୌଣସି ମଙ୍ଗଳାଚରଣ କରି କୌଣସି କଥା ଲେଖିବା କି କରିବା ଆମ୍ଭମାନଙ୍କ ଦେଶରେ ଚଳି ଆସୁଅଛି । ଏଥିର ଉଦାହରଣ ପ୍ରାୟ ସମସ୍ତ ସଂସ୍କୃତ ପୁସ୍ତକମାନଙ୍କରେ ମିଳେ । ନାମ ପୂର୍ବରେ 'ଶ୍ରୀ' ଲେଖିବା ଅର୍ଥ ମଙ୍ଗଳାଚରଣ ।

ରାମହରିବାବୁ ଈଷତ୍ ହାସ୍ୟ କରି କହିଲେ, ପୁସ୍ତକ ବା କାର୍ଯ୍ୟର ଆରମ୍ଭରେ ମଙ୍ଗଳାଚରଣ ତ ବେଶ୍ କଥା । କିନ୍ତୁ ନାମ ପୂର୍ବରେ 'ଶ୍ରୀ'ର ଆପଣ ଏପରି ଏକ ଆଧାତ୍ମିକ ଅର୍ଥ ବାହାର କଲେ, ମୁଁ ବଡ଼ ଆନନ୍ଦିତ ହେଲି । ବିଚାର କରି ଦେଖିବି ଯେ ଆପଣଙ୍କ ଯୁକ୍ତି ଗ୍ରାହ୍ୟ କି ନା ?

କୃଷ୍ଣଚରଣ ମହାନ୍ତି କହିଲେ, ବୋଧହୁଏ ମଙ୍ଗଳାଚରଣ ଉଦ୍ଦେଶ୍ୟରେ କେତେକ ଜମିଦାର ଓ ଭଦ୍ରଲୋକମାନେ ଆପଣା ଆପଣା ନାମରେ ଦୁଇ ତିନି ଥର 'ଶ୍ରୀ' ଲଗାନ୍ତି ଓ ଜଗନ୍ନାଥ ମହାପ୍ରଭୁଙ୍କ ନାମ ପୂର୍ବରେ ମଧ୍ୟ 'ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀ ଚରଣେ ଶରଣ' ଏପରି ଲେଖନ୍ତି ।

ରାମହରିବାବୁ କହିଲେ, 'ଏପରି ଖୋଳ ପର୍ବତ ମାର ମୂଷା' ଯୁକ୍ତିରେ ମନର ଗତି ବିଶେଷଭାବରେ ଚାଳିତ ହୁଏ ସତ୍ୟ; କିନ୍ତୁ ମୋ ମତରେ ଶ୍ରୀ, ଶ୍ରୀଯୁକ୍ତ, ଶ୍ରୀମାନ୍, ଶୀଳ, ଶ୍ରୀଯୁକ୍ତ ଏ ସମସ୍ତ ସମ୍ମାନସୂଚକ ପଦ । ନିଜେ ସ୍ୱାକ୍ଷର କଲାବେଳେ ଏ ସବୁ ନ ଲେଖିଲେ ଚଳେ । ବ୍ୟକ୍ତିବିଶେଷରେ ଏ ବିଷୟରେ ମତବିଶେଷ ଅନୁସାରେ କାର୍ଯ୍ୟ କଲେ କିଛି କ୍ଷତି ହେବ, ଏପରି ବୋଧ ହେଉ ନାହିଁ । ଅନ୍ୟ ଜଣେ ମୋ ନାମ ଲେଖି ତା ପୂର୍ବରେ ଶ୍ରୀ ଲେଖିଲେ ତହିଁରେ କିଛି ଆପତ୍ତି ନାହିଁ । କିନ୍ତୁ ସ୍ୱାକ୍ଷର ବିଷୟରେ ଯାହାର ଯେପରି

ରୁଚି ହେଲା, ସେଥିରେ କ୍ଷତି ନାହିଁ । ସ୍ୱାକ୍ଷର କରିବାର ଅର୍ଥ ଏହି ଯେ, ଆବଶ୍ୟକ ହେଲେ ଭବିଷ୍ୟତରେ ମୁଁ ମୋର ସ୍ୱାକ୍ଷରିତ ବିଷୟ ଚିହ୍ନିପାରିବି । ଯେ ଯେଉଁପରି ଲେଖୁ ସେଥିରେ ଆପତ୍ତି କଣ ?

ମୁଖ୍ୟାରଙ୍କ ଜାମାତା ଶ୍ୟାମସୁନ୍ଦର ମିଶ୍ରେ କହିଲେ ଯେ, ଯେବେ ଶ୍ରୀ ମଙ୍ଗଳାଚରଣ ଅର୍ଥରେ ଲେଖା ଯାଉଥାନ୍ତା, ତେବେ ପୁରୁଷମାନଙ୍କ ନିମନ୍ତେ ଏକପ୍ରକାର ମଙ୍ଗଳାଚରଣ, ସ୍ତ୍ରୀମାନଙ୍କ ନିମନ୍ତେ ଅନ୍ୟପ୍ରକାର ମଙ୍ଗଳାଚରଣ କାହିଁକି ହୁଅନ୍ତା ? ପୁରୁଷମାନଙ୍କ ବେଳେ ଶ୍ରୀ ଅମୁକ ଓ ସ୍ତ୍ରୀମାନଙ୍କ ବେଳେ ଶ୍ରୀମତ୍ୟା ଅମୁକେଇ ଦେବ୍ୟା, ଏପରି କାହିଁକି ଲେଖାଯାଆନ୍ତା ?

ଶ୍ୟାମଚରଣ କହିଲେ- ଆରେ ତୁମ କଚେରିଆ ଭାଷାରେ ସିନା ଲେଖାଯାଏ 'ଶ୍ରୀମତ୍ୟା- ଦେବ୍ୟା' କିନ୍ତୁ ପ୍ରକୃତରେ ''ଶ୍ରୀମତୀ- ଦେବୀ' ଦେବ୍ୟା ଅର୍ଥ ଦେବୀଙ୍କର । ''ଅମୁକ ଦେବୀଙ୍କର ଏହି ନିବେଦନ - ଏପରି ଭାବରେ ସଂସ୍କୃତ ପତ୍ରମାନଙ୍କରେ ଦେବ୍ୟା ଲେଖାଯିବାର ବିଧି ଥିଲା; କିନ୍ତୁ ବର୍ତ୍ତମାନ ପ୍ରକୃତ ଭାବ ଗଲାଣି । ଅସ୍ଥିକଙ୍କାଳଯୁକ୍ତ ଶବ୍ଦଟି ମାତ୍ର ରହି ଯାଇଅଛି ।

ମସ୍ତରାମ ଆଜି ପରିପୂର୍ଣ୍ଣ ଖିରିପିଠା ଭୋଜନ କରିବ ବୋଲି ଆନନ୍ଦରେ ମାତି ନାଚୁଛି । 'ଶ୍ରୀମତୀ' ଶବ୍ଦ ଶୁଣି 'ପୀତପଟ କପଟ ପ୍ରୀତି କରି ଶ୍ରୀମତୀଙ୍କୁ ଜଡ଼ାଇଲେ ହେ' ଚଉପଦୀଟି ରାଗତାଳ ବଢ଼ାଇ ଚିତ୍କାର କଲା ଓ ଗୋଟିଏ ଶ୍ଲୋକ ବୋଲି ଉଠିଲା କହିଲା, ଚାଲ ଯିବା ପତଙ୍ଗର ଉଦ୍ୟମ ଦେଖିବା :-

ପଣ୍ଡା ପିଣ୍ଡାତଳକୁ ବସିଲେ ମଣ୍ଡପେ ଶାସନୀଏ
ଗଣ୍ଡା ଗଣ୍ଡା ବସି ବସି ଗଲେ ଚତ୍ୱରେ ପାଢ଼ୀ ଧାଡ଼ି ।
ମଣ୍ଡା ଗଣ୍ଡା ଲଡୁ ଗଡୁ ସମେ ଖଣ୍ଡପାକେ ସଙ୍ଗାଡ଼ି
ଭେଣ୍ଡା ଭେଣ୍ଡା ଦ୍ୱିଜ ପରଷିଲେ ପୂର୍ଣ୍ଣପାତ୍ରେ ଅଙ୍ଗାଡ଼ି ।

ଫେର ଈଶ୍ୱରଙ୍କ ଇଚ୍ଛାରୁ କ୍ଷଣକ ପାଇଁ ନିସ୍ତବ୍ଧ ହୋଇଗଲା ଓ ଏହି ସମୟରେ ଗ୍ରାମର ବୈଦ୍ୟ 'ଆର୍ତ୍ତ ସତପସ୍ତିଏ' ଆସି ଟୁଙ୍ଗିରେ ଯୋଗ ଦେଲେ । ବୈଦ୍ୟରାଜ ଗର୍ବ କରି କହନ୍ତି ଯେ, ତାଙ୍କ ଘରେ ଯେତେ ବୈଦ୍ୟଶାସ୍ତ୍ର ଅଛି, ଏତେ ପୋଥି ଏ ଅଞ୍ଚଳରେ ନାହିଁ । ଆମ୍ଭେମାନେ ଯେତେଦୂର ବୁଝିଅଛୁ, ବୈଦ୍ୟରାଜ ସେ ପୋଥିର କିଛି ଧାର ଧାରନ୍ତି ନାହିଁ । କେବଳ କେତେଗୁଡ଼ିଏ ଶ୍ଲୋକ ମୁଖସ୍ଥ କରିଅଛନ୍ତି । ବୈଦ୍ୟରାଜେ ସେ ଶ୍ଲୋକମାନ ଯେପରି ଅର୍ଥ କରନ୍ତି, ତାହା ବୁଝିବାକୁ ମଲ୍ଲୀନାଥ ଦିନାକେତେ ପୁନର୍ବାର ଅର୍ଥଶାସ୍ତ୍ର ଶିକ୍ଷା କରନ୍ତେ । 'ଛ'ମାଣ ଆଠଗୁଣ୍ଠ' * ଉପସଂହାରରେ ବର୍ଣ୍ଣିତ ଗୋପୀ

* ଫକୀରମୋହନ ସେନାପତିଙ୍କ ରଚିତ ଉପନ୍ୟାସ ।

କବିରାଜେ ଜାତିରେ ତନ୍ତୀ । କିନ୍ତୁ 'ସତପସ୍ତିଏ' ବ୍ରାହ୍ମଣ । ବୈଦ୍ୟରାଜେ ଯେଉଁ ଔଷଧ ପ୍ରସ୍ତୁତ କରନ୍ତି, ସେ ଔଷଧର ଉପକରଣମାନ ସର୍ବସାଧାରଣରେ ପ୍ରକାଶ କରିବାକୁ ନିତାନ୍ତ ନାରାଜ । ଯେବେ କେହି ନିତାନ୍ତ ଜିଗର କରେ, ତେବେ ଚାଣକ୍ୟଙ୍କ 'ନବ ଗୋପ୍ୟାନି କାରୟେତ୍' ଦ୍ୱାହି ଦିଅନ୍ତି । କିପରି ଡାକ୍ତରବାବୁଙ୍କୁ ପରାସ୍ତ କରିବେ, ଚାରି ଦିନ ହେଲା କେବଳ ସେହି ସୁଯୋଗ ଖୋଜି ବୁଲୁଛନ୍ତି । ଡାକ୍ତରବାବୁ ୨/୩ ଦିନ ହେଲା ୫/୭ ଜଣ ଲୋକଙ୍କୁ ଆରୋଗ୍ୟ କରିଅଛନ୍ତି । ଏହାଦ୍ୱାରା ବୈଦ୍ୟରାଜଙ୍କ ପ୍ରସାର ଯିବ । ସେଥିପାଇଁ ପରା ଲୋକେ କହନ୍ତି, 'ଭଗାରି ନ ଥିଲେ ଯାତ୍ରାକାଳି ଭଗାରି' । ପର୍ବରେ ବୈଦ୍ୟରାଜେ ବିଚାରିଥିଲେ 'ମହୀମଣ୍ଡଳେ ନାହିଁ ଏମନ୍ତ ଜନ, ମୋ ଅଧିକାର ଲୋଡେ କରିବ ରଣ; କିନ୍ତୁ ଡାକ୍ତର ଆସି ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ହେଲେ, ଏହା କ୍ରମଶଃ ଅସହନୀୟ ହୋଇଉଠିଲା । ଡାକ୍ତରବାବୁ, ରାମହରିବାବୁ ଓ ମୁଁ ବୈଦ୍ୟଙ୍କ ଅଭିପ୍ରାୟ ଉତ୍ତମରୂପେ ବୁଝି ପାରୁଥିଲୁ । ସେ ପ୍ରଥମେ ଆସି ଡାକ୍ତରୀ ଚିକିତ୍ସାର ଅଯଥା ନିନ୍ଦା ଓ ସ୍ୱୀୟ ଚିକିତ୍ସା ପଦ୍ଧତିର ପ୍ରଶଂସା କରି କେତେ ଶ୍ଲୋକ ବୋଲିଲେ । ପ୍ରଥମ ଶ୍ଲୋକଟି ଶୁଣନ୍ତୁ:-

କ୍ଷୁଦ୍ରାଦପିକ୍ଷୁଦ୍ର ମନୁଷ୍ୟଦେହରେ ନାନାଦି ରୋଗ କରୁଥାନ୍ତି ବାସଃ
ବଢ଼ନ୍ତି ଯେବେ କଫବାତପିତ୍ତେ ନାନାଦି ରୋଗଙ୍କ ହୁଅନ୍ତି ଖଣି ।

ପଛକୁ ମସ୍ତରାମ ଚିତ୍କାର କରି ବୈଦ୍ୟରାଜଙ୍କ ଉପରେ ତର୍ଜନ ଗର୍ଜନ କରି ଡାକ୍ତରଙ୍କ ପକ୍ଷରେ କହିଲା । (ମସ୍ତରାମ ବିଚାର 'ଆମବାଇ, ବୈଦ୍ୟଙ୍କୁ କେତେ ଅନୁସରଣ କଲା । ବୈଦ୍ୟରାଜ ଯେଉଁ ଚୂର୍ଣ୍ଣକ ଦେଲେ ତହିଁରେ କିଛି ଉପକାର ହେଲା ନାହିଁ । ୩/୪ ଦିନ ହେଲା ଡାକ୍ତରଙ୍କୁ ଅନୁସରଣ କରିବାରୁ ଡାକ୍ତର ପାନେ Seidlitz powder ଓ ୩ ପାନ Essence Anisi ଦେବାରୁ ମସ୍ତରାମ ଖୁବ୍ ଆରାମରେ ଅଛି । ଏଥିଯୋଗୁଁ ବୈଦ୍ୟରାଜଙ୍କ ଉପରେ ବଡ଼ ଖପା ଓ ଡାକ୍ତରବାବୁଙ୍କଠାରେ ଭାରି ପ୍ରସନ୍ନ ।)

''ବୈଦ୍ୟେ, କାହା ସାଙ୍ଗରେ କାହାକୁ ତୁଳୁଛ ? ଶରାଟାଏ, ଘୋଡ଼ାଟାଏ ! ଆର୍ଭ ସତପସ୍ତି ବୈଦ୍ୟ, ଆଉ ଗୌରାଙ୍ଗବାବୁ ଡାକ୍ତର । ତୁମର ଗୋସେଇଁ ନାହିଁ । କିଛି କଥାରେ ସୁବେ ପଡ଼ିଲେ ଯାଇ ଘରେ ପୋଥି ଫିଟେଇବେ । ଡାକ୍ତର ଯାଇ ତାଙ୍କ ଉପର ଡାକ୍ତରଙ୍କୁ ପଚାରିବେ । ନଇଲେ ସାହାବଙ୍କୁ ପଚାରିବେ । କିଛି ବେମାରି ହେଲେ ତୁମେ ବିଶାଏ ଓଷଧ ଗିଳେଇବ । ଡାକ୍ତର ଟୋପାଏ ଅରକ ଦେଲେ ସବୁ ଠିକ୍‌ଠାକ୍ । ବଥଟିଏ ହେଲେ ତୁମେ ମୋଢ଼େ ଲେଖାଏଁ ଓଷଦ ବାଟି ପନ୍ଦର ଦିନେ ବଥକୁ ପଚେଇବ, ଡାକ୍ତର ସେହିକ୍ଷଣି ଖାରି ଦେଇ ଓଷଧ ପଟି ଲଗେଇ ଦେବେ । ଉପର ଓଳିକି ଆରାମ । ତୁମେ ସତ ମିଛ ନାଡ଼ି ଟିପି ଦେଇ ଆଖି ବୁଜି ରୋଗଟାମାନଙ୍କୁ ଗିରଫ କରିପକେଇ ମୁଣି ଫିଟେଇ ବସିବ । ଡାକ୍ତର ବିନା ସବୁ ଲକ୍ଷଣ ନ ଦେଖିଲେ ମଲୁକୁ ଔଷଧ ଦେବେ ନାହିଁ ।''

ଆମ୍ଭେମାନେ ମସ୍ତରାମ କଥା ଶୁଣି ହସିଲୁ । ବୈଦ୍ୟରାଜ ମସ୍ତରାମକୁ ଗୁଡ଼ାଏ ବକି ଦେଇ ଗଲେ ଓ 'ଆଚ୍ଛା, ପରଖାପରଖି ହବା' ବୋଲି ଡାକ୍ତରବାବୁଙ୍କୁ ଧମକ ଦେଇ ଟୁଙ୍ଗିରୁ ବାହାରିଗଲେ ।

ରାମହରିବାବୁ କହିଲେ- ଆହା ! ଚରକ, ଶୁଶ୍ରୁତଙ୍କର ପଛକୁ ଏହି ଦଶା ହେଲା ! ଆମ ଦେଶରେ ଅଧିକାଂଶ 'ବୈଦ୍ୟରାଜ' ଆଖ୍ୟାଧାରୀ ଲୋକ ସତ୍‌ପଥୀଙ୍କ ଶ୍ରେଣୀର, ଚିକିତ୍ସାଶାସ୍ତ୍ର ଧାର ଧାରିବେ ନାହିଁ । ବାପ ଅଜା ଯାହା କାଛରେ ଲେଖିଦେଇ ଯାଇଅଛନ୍ତି, ସେହି 'ଚୂର୍ଣ୍ଣକ' 'ବଟିକା' 'ପାଚନ' ଓ 'ମୋଦକ' ଛଡ଼ା ଆଉ କିଛି କଥା ଜଣା ନାହିଁ । ସବୁ ରୋଗକୁ ଏକ 'ପାଚନ' ବା 'ଚୂର୍ଣ୍ଣ' ! ମଲୁ ଭଲ ହେଲେ କେତେ ! ଔଷଧ ଖର୍ଚ୍ଚା ବୋଲି ଯାହା କିଛି ଭଣ୍ଡେଇ ନେଇ ଆପଣା କାର୍ଯ୍ୟ କଲେ ହେଲା । ଆମ୍ଭମାନଙ୍କ ଦେଶର ଅଧିକାଂଶ ବୈଦ୍ୟ ଅନେକ ଚେର ମୂଳ ଚିହ୍ନିଅଛନ୍ତି କି ନାହିଁ ସନ୍ଦେହ । ଇଉରୋପୀୟମାନେ ଧାରାବାହିକ ଅନୁଶୀଳନ କରି ଚିକିତ୍ସାଶାସ୍ତ୍ରର କେତେ ଉନ୍ନତି କରିଅଛନ୍ତି । ପୁରାତନ ଚିକିତ୍ସାଶାସ୍ତ୍ରର ଚର୍ଚ୍ଚା ନିମନ୍ତେ ଯେବେ ବିଦ୍ୟାଳୟମାନ ସ୍ଥାପିତ ହୁଅନ୍ତା, ତେବେ ଆୟୁର୍ବେଦର କେତେ ଉନ୍ନତି ହୁଅନ୍ତା ! ରାଜା ଅନୁଗତ ଧର୍ମ, ଯଦି ଆମ୍ଭମାନଙ୍କ ଦୟାଳୁ ଶାସନକର୍ତ୍ତାମାନେ ଆୟୁର୍ବେଦକୁ ଟିକିଏ ଆଡ଼ ଆଖିରେ ଚାହାନ୍ତେ, ତେବେ ନିଶ୍ଚୟ ଆୟୁର୍ବେଦର ଟେକ ବଜାୟ ରହନ୍ତା । ଦେଶ-ବିଦେଶରେ ଯେପରି ଡାକ୍ତରୀ ଶିକ୍ଷା ଦିଆଯାଉଅଛି, ଯେବେ ସେହିପରି ଆୟୁର୍ବେଦ ବିଦ୍ୟାଳୟମାନ ସ୍ଥାପିତ ହୁଅନ୍ତା, ତେବେ ଆୟୁର୍ବେଦର ମହିମା ସମ୍ପୂର୍ଣ୍ଣ ପ୍ରକାଶିତ ହୁଅନ୍ତା । Pathology (ନିଦାନ), Surgery (ଅସ୍ତ୍ରଚାଳନ), Midwifery (ଧାତ୍ରୀବିଦ୍ୟା) ସମସ୍ତ ଆମ୍ଭମାନଙ୍କ ଦେଶରେ ଥିଲା । କିନ୍ତୁ ଉପଯୁକ୍ତ ଚର୍ଚ୍ଚା ଅଭାବରୁ ସେ ସମସ୍ତ ଆଜି ଧୂଳିରେ ପୋତି ହୋଇଗଲାଣି । କି ଦୁର୍ଭାଗ୍ୟ ! ଆଉ ମଧ୍ୟ ଯେତେ ଦିନଯାକେ ଚିକିତ୍ସା ବିଷୟରେ ପାଶ୍ଚାତ୍ୟ ପଦ୍ଧତି ସଙ୍ଗେ ପ୍ରାଚ୍ୟ ପଦ୍ଧତିର ସଂସ୍ରବ ନ ଘଟିବ, ସେତେ ଦିନଯାକେ ଭାରତବର୍ଷରେ ଚିକିତ୍ସାବିଦ୍ୟା ଯେ ବିଶେଷ କିଛି ଉନ୍ନତି କରିବ - ଏହା ମୋର ଧାରଣା ହେଉ ନାହିଁ ।

ଆନନ୍ଦର ବିଷୟ ଯେ, ଗୌରାଙ୍ଗବାବୁ ଏ ବିଷୟରେ ତିଳେମାତ୍ର ଦୁଃଖିତ ନ ହୋଇ କହିଲେ- ମୁଁ ନିଜେ ଅନେକ ସ୍ଥାନରେ ମୋ ଅନୁଭବରୁ ବୁଝିପାରିଅଛି ଯେ, କୌଣସି କୌଣସି ରୋଗୀ ଡାକ୍ତରୀ ଔଷଧର ପ୍ରୟୋଗରେ ଆରୋଗ୍ୟ ଲାଭ ନ କରି ଶେଷକୁ କବିରାଜୀ ଔଷଧରେ ଉପକାର ପାଇଅଛନ୍ତି । ଅଶିକ୍ଷିତ ଲୋକମାନଙ୍କ ହାତରେ ବୈଦ୍ୟଶାସ୍ତ୍ରମାନ ପଡ଼ିଥିବାରୁ ଆୟୁର୍ବେଦର ଏତେ ନିଗ୍ରହ ।

ଶ୍ୟାମଚରଣ ପଟ୍ଟନାୟକ କହିଲେ - ଏ ଦେଶର ଜଳବାୟୁ, ଲୋକଙ୍କ ଶାରୀରିକ ଅବସ୍ଥା ଇତ୍ୟାଦି ସମ୍ୟକ୍ ବିଚାର କରି ପୁରାକାଳର ଋଷିମାନେ ଆୟୁର୍ବେଦୀୟ ଔଷଧମାନଙ୍କର ବ୍ୟବସ୍ଥା କରିଯାଇଅଛନ୍ତି । ୟୁରୋପୀୟମାନଙ୍କ ଆବିଷ୍କୃତ ଔଷଧମାନ ସେମାନଙ୍କ ଦେଶରେ ବିଶେଷ ଫଳ ଦେଖାଇପାରେ । ଆମ୍ଭମାନଙ୍କ ଦେଶୀୟ ଔଷଧ

ଆମ୍ଭମାନଙ୍କ ପକ୍ଷରେ ଯେପରି ହିତକର, ବିଦେଶୀୟ ଔଷଧ କଦାପି ସେ ଫଳ ଦେଖାଇ ପାରନ୍ତା ନାହିଁ । କେବଳ ଆୟୁର୍ବେଦ ଚର୍ଚ୍ଚା ବୁଡ଼ିଯିବାରୁ ବାଧ ହୋଇ ଲୋକେ ଡାକ୍ତରୀ ଔଷଧର ଆଶ୍ରୟ ନିଅନ୍ତି ।

ମସ୍ତରାମ ଭୋଜନ ଚିନ୍ତାରେ ନିତାନ୍ତ ଅସ୍ଥିର; କହିଲା- 'ପାଗ ବାନ୍ଧୁ ବାନ୍ଧୁ କଚେରି ବରଖାସ୍ତ !' ଆମେ ଯାଉଁ ଯାଉଁ ସମସ୍ତେ ଖାଇ ସାରିଥିବେ । ଆମେ ଆଜି ଓପାସ ରହିବା । ସମସ୍ତେ ଉଠ, ନଇଲେ ମୁଁ ବାହାରିଲି । ଏଆଡ଼େ ମୂଳକର ଉପକାର କଥା ବିଚାରୁ ବିଚାରୁ ରାତିରେ ଓପାସ ଯୋଗ ହେଲେ ବାବୁମାନଙ୍କ ଦିହରେ ବଳେ ବୁଦ୍ଧି ପଶିଯିବ ଯେ ।

ଏହି ସମୟରେ ସାମନ୍ତରାୟଙ୍କ ଘରୁ ମନୁଷ୍ୟ ଆସି ଆମ୍ଭମାନଙ୍କୁ 'ଆଶୀର୍ବାଦ ସଭା'କୁ ଡାକିଲା । ବ୍ରାହ୍ମଣମାନଙ୍କ ବିବାହ ବ୍ରତ ଇତ୍ୟାଦିରେ 'ଆଶୀର୍ବାଦ ସଭା' କିପରି ହୁଏ, ତାହା ଦେଖିବାକୁ ଶ୍ୟାମଚରଣବାବୁ ଓ କୃଷ୍ଣଚରଣ ମହାନ୍ତି ଆଗ୍ରହ ପ୍ରକାଶ କଲାରୁ ସେମାନଙ୍କୁ ସଙ୍ଗରେ ନେଇ ଆମ୍ଭେମାନେ ଟୁଙ୍ଗିରୁ ବାହାରିଲୁଁ ଓ ସେମାନଙ୍କୁ ପୂର୍ବରୁ କହି ରଖିଥିଲୁ ଯେ, ଏଠାରେ 'ଆଶୀର୍ବାଦ ସଭା' କେବଳ ଗୋଟିଏ ଅସ୍ଥିକଙ୍କାଳବିଶିଷ୍ଟ ପ୍ରଥା । ଆଶୀର୍ବାଦ ସଭାରେ ଚାଣକ୍ୟ, ମଣିରତ୍ନମାଳା, ରଘୁ, କୁମାରସମ୍ଭବ ଇତ୍ୟାଦିରୁ ମୁଖସ୍ଥ ଶ୍ଳୋକ କେତେ ଲୋକ ବୋଲନ୍ତି । କିଏ ବା ଶୁଦ୍ଧ ଅଶୁଦ୍ଧ କରି ବେଦରୁ କାଣ୍ଡିଏ ଅଧେ ମନ୍ତ୍ର ବୋଲନ୍ତି । କ୍ୱଚିତ୍ କେହି ଆଶୀର୍ବାଦ ଶ୍ଳୋକ ବା ମନ୍ତ୍ର ପଢ଼ନ୍ତି । ଅଛ ବହୁତ ସମସ୍ତେ 'ସଙ୍ଖୁଡ଼ି ସଭା'ର ଚିନ୍ତା କରୁଥା'ନ୍ତି । ଆଶୀର୍ବାଦ ଶୁଣିବାକୁ ବା କରିବାକୁ ଯେତେ ଲୋକ ନ ଆସନ୍ତି, 'ଆଶୀର୍ବାଦ ଦକ୍ଷିଣା' ବା 'ସଭାକ୍ଷତ' ଲୋଭଟା ବେଶି ଲୋକଙ୍କୁ ଟାଣିପକାଏ ।

ଶ୍ୟାମଚରଣବାବୁ କହିଲେ- ତୁମ ବ୍ରାହ୍ମଣଙ୍କର 'ଦକ୍ଷିଣା ଲୋଭ' ଓ 'ଚୁଡ଼ାଦହି' ପ୍ରିୟତା ଛାଡ଼ି ନ ଯିବାଯାକେ ବ୍ରାହ୍ମଣଙ୍କ କଥା ଯେପରି ଅଛି, ସେହିପରି ରହିବ । ପଇସାଟିଏ ଓ ଧକାଏ ଦି'ଧକା ପଇସା ଲୋଭରେ ଯେ ପାଞ୍ଚ କୋଶ ଦଉଡ଼ିପାରେ, ତା'ର ଉଚ୍ଚ ଆଶା କରିବା ସ୍ୱପ୍ନ ।

ମୁଁ କହିଲି ଯେ, ଦେଶରୁ ଯେଉଁମାନେ ପଇସା ଟାଣି ନେଉଅଛନ୍ତି, ଅନ୍ତତଃ ବ୍ରାହ୍ମଣଯାକ ଦକ୍ଷିଣା ଓ ଚୁଡ଼ାଦହିରେ ସେଥିରୁ କିଛି ଓଟାରି ରଖୁଅଛନ୍ତି । ଏତିକି ହେଲେ ଆଶ୍ୱାସନା ଥାଉ । ପୂର୍ବ କାଳରେ ରାଜା, ମହାରାଜା, ଜମିଦାରମାନେ ସୁବିଚାରକ ଏବଂ ବିଜ୍ଞ ଥିଲେ, ତେଣୁ ସେମାନେ ବ୍ରାହ୍ମଣମାନଙ୍କୁ ଆର୍ଥିକ ଚିନ୍ତାରୁ ମୁକ୍ତ କରି ଅଧ୍ୟାପନାଦି କାର୍ଯ୍ୟରେ ବ୍ରତୀ କରିପାରୁଥିଲେ; କିନ୍ତୁ ଆଜିକାଲି ଚଉଧୁରୀ ଛାମୁକରଣମାନେ ଚଉକିଦାରଙ୍କ ସଙ୍ଗାତ, କାନ ମୋଡ଼ାଟିଏ ପାଇଲେ ଆଣ୍ଠୁଆଟିଏ ଖାଇଲେ; ସାଙ୍ଗେ ସାଙ୍ଗେ ପାଞ୍ଚୋଟି ଟଙ୍କା ନାଲି ପଗଡ଼ିଧାରୀଙ୍କ ଅଣ୍ଟାରେ ଦେବେ; କିନ୍ତୁ ଦେଶର ଶିକ୍ଷା ବୃଦ୍ଧି ବା ଉତ୍ସାହ ସକାଶେ ଚଉଧୁରୀଙ୍କ ଅଣ୍ଟିରୁ ବ୍ରାହ୍ମଣ ପଣ୍ଡିତକୁ ଦେବାଲାଗି ପାଞ୍ଚ

ଅଧଲା ବାହାରିବା କାଠିକର ପାଠ । ଦେଶର ଦାରିଦ୍ର୍ୟ ନ ଯିବା ପର୍ଯ୍ୟନ୍ତ କି ବ୍ରାହ୍ମଣ କି କ୍ଷତ୍ରିୟ ସମସ୍ତେ ହୀନ କାର୍ଯ୍ୟମାନ କରୁଥିବେ ।

ଶ୍ୟାମଚରଣବାବୁ କ୍ଷଣକାଳ ମୌନ ହୋଇ କହିଲେ - ଦେଶର ଦାରିଦ୍ର୍ୟ ଆମ୍ଭେମାନେ ଦୂର କରିବା ନା ଆମ ଲାଗି ଆଉ କେହି ଅନୁଗ୍ରହ କରିବେ ? ଯେଉଁ ବ୍ରାହ୍ମଣମାନେ ଦେଶ,କାଳ,ପାତ୍ର ବିବେଚନା କରି ସହସ୍ର ସହସ୍ର ବର୍ଷକାଳ ସମଗ୍ର ହିନ୍ଦୁ ସମାଜକୁ ବିଦ୍ୟାବୁଦ୍ଧିରେ ଦୃଢ଼ କରି ରଖିପାରିଥିଲେ, ଆଜି ସେମାନେ ପରହାତକୁ ଚାହିଁଲେ ଅନ୍ୟ ଲୋକେ କରିବେ କଣ ? ଆଜିକାଲି ଦେଶର ଯେପରି ଅବସ୍ଥା, ତଦନୁବର୍ତ୍ତୀ ହୋଇ କିପରି କାର୍ଯ୍ୟ କଲେ ଧନ ଆସିବ, ଏ ବିଷୟ ବ୍ରାହ୍ମଣମାନଙ୍କୁ ଯଦି ଶିଖାଇବାକୁ ହେବ, ତାହାହେଲେ ସମାଜର ପୁନରୁତ୍‌ଥାନ ଏତିକି । ଶିଳ୍ପବାଣିଜ୍ୟରେ ଆଗେ ବ୍ରାହ୍ମଣମାନେ ବାଟ କଢ଼ାଇବା ପ୍ରୟୋଜନ ହୋଇଅଛି ।

ଶ୍ୟାମଚରଣବାବୁଙ୍କ ଯୁକ୍ତିଗୁଡ଼ିକ ହୃଦୟଗ୍ରାହୀ ବୋଲି ଭାବିଲି । ଆମ୍ଭର ଜଣେ ଯାଜପୁରିଆ ବନ୍ଧୁ ଦୁଃଖ ପ୍ରକାଶ କରି କହିଥିଲେ ଯେ, ସେଠାରେ ଜଣେ ବ୍ରାହ୍ମଣ ନିଜର ପ୍ରତିଭା ବଳରେ ରୁପାର ତାରକସୀ କାମ ଏପରି ଶିକ୍ଷା କରିଅଛି ଯେ, କଟକ ବଣିଆମାନେ ତାହାର ଗୁଣ ନିଶ୍ଚୟ ମାନିବେ, କିନ୍ତୁ ତଦ୍ଦ୍ୱାରା ଜୀବିକା ନିର୍ବାହ କରିବାରୁ ବ୍ରାହ୍ମଣଟି ସମାଜରେ ଅଟକ ଅଛି । ଏହି କଥାଟି ମନରେ ପଡ଼ିବାରୁ ଉତ୍ତରସ୍ୱରୂପ ଏକ ଦୀର୍ଘନିଃଶ୍ୱାସ ଛାଡ଼ିଲି ।

ଉତ୍କଳ ସାହିତ୍ୟ/୫ମ ଭାଗ/୧ମ ସଂଖ୍ୟା/୧୩୦୮ ସାଲ ।

## ପଞ୍ଚମ୍ ସନ୍ଧ୍ୟା

ଆମ୍ଭମାନଙ୍କ ଗ୍ରାମରେ ଶ୍ରୀଯୁକ୍ତ ସାମନ୍ତରାୟଙ୍କ କନିଷ୍ଠା କନ୍ୟାର ବିବାହୋପଲକ୍ଷ୍ୟରେ ଯେଉଁ ବ୍ୟକ୍ତିମାନେ କାଲି ଗ୍ରାମରେ ଉପସ୍ଥିତ ଥିଲେ, ସେଥିମଧ୍ୟରୁ ବାବୁ ରାମହରି ମିଶ୍ର B.A., ବାବୁ ଗୌରାଙ୍ଗ ମହାପାତ୍ର V.L.M.S., ବାବୁ ଶ୍ୟାମସୁନ୍ଦର ମିଶ୍ର (ସାମନ୍ତରାୟଙ୍କ ଜ୍ୟେଷ୍ଠ ଜାମାତା), ବାବୁ ଶ୍ୟାମଚରଣ ପଟ୍ଟନାୟକ (ପଣ୍ଡିତ) ଗ୍ରାମରୁ ବିଦାୟ ହୋଇ ନାହାନ୍ତି । ଦୈବକ୍ରମେ ଏ ଗ୍ରାମର ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଆଜି ଗ୍ରାମରେ ଉପସ୍ଥିତ । ଏ ମହାଶୟ ଏଫ୍. ଏ. ପାସ୍ କରି କଲିକତାରେ ରିପନ୍ କଲେଜରେ ବି.ଏ. କ୍ଲାସ ଏ କୋର୍ସରେ ଅଧ୍ୟୟନ କରୁଅଛନ୍ତି । କଲିକତାରେ ମହାମାରୀ ରୋଗର ପ୍ରାବଲ୍ୟ ଯୋଗୁଁ ଏହାଙ୍କ କଲେଜ କେତେକ ଦିନ ବନ୍ଦ ଥିବାରୁ ଏ ମହାଶୟ ଗ୍ରାମକୁ ଆସିଛନ୍ତି । ସୁଖର ବିଷୟ ଯେ, ଏ ମହାଶୟ କଲିକତାରେ ଥାଇ ସୁଦ୍ଧା ମାତୃଭାଷା ପ୍ରତି ମମତା ରଖିଅଛନ୍ତି । ଅନେକ କଲିକତାବାସୀ ଓଡ଼ିଆଙ୍କଠାରୁ ଯେପରି ବଙ୍ଗଳାମିଶା ଓଡ଼ିଆ ଶୁଣାଯାଏ, ଏହାଙ୍କ ଭାଷା ସେପରି ନୁହେଁ । ଏ ମହାଶୟ ଅତ୍ୟନ୍ତ ସରଳପ୍ରକୃତିକ ଓ ବନ୍ଧୁମାନଙ୍କ ନିକଟରେ

କୌଣସି କଥା ଲୁଚାନ୍ତି ନାହିଁ । ଏଥିନିମନ୍ତେ ସମୟ ସମୟରେ ଗୃହର ଅଭିଭାବକମାନଙ୍କଠାରୁ ଅନେକ ନିଗ୍ରହ ଭୋଗ କରନ୍ତି । ସେ ଯାହାହେଉ, ଆଜି ଏ ପାଞ୍ଚଜଣ ଓ ଦୁର୍ମୁଖ ଶର୍ମା ଟୁଙ୍ଗିକି ମଣ୍ଡିତ କରିଅଛନ୍ତି ।

ବାବୁ ରାମଚନ୍ଦ୍ର ମର୍ଦ୍ଦରାଜ କହିଲେ, ''ଶର୍ମାଙ୍କୁ ଆଜି 'ଡାଇରି'ରେ ବେଶି ଟିପ୍‌ପଣୀ ଲେଖିବାକୁ ହେବ ନାହିଁ । ମୁଁ ଗୋଟିଏ ପଦ୍ୟ ରଚନା କରିଛି । ସେ ପଦ୍ୟଟି ଆଜି ପାଠ କରୁଛି । ମୋ ପରି ଅନୁଭବୀ ଆମ୍ଭମାନଙ୍କ ମଧ୍ୟରେ, ଏମନ୍ତ କି ଆମ୍ଭମାନଙ୍କ ଗ୍ରାମରେ ଅନେକ ଅଛନ୍ତି । ମାତ୍ର ମୁଁ ଯାହା ପ୍ରକାଶ କରିବି, ତାହା ପ୍ରକାଶ କରିବାର ସାହସ ସମସ୍ତଙ୍କର ନାହିଁ । ମର୍ଦ୍ଦରାଜେ ଜଣେ ସାହିତ୍ୟସେବକ ବୋଲି ଆମ୍ଭେମାନେ ପୂର୍ବରୁ ଜାଣୁ, ଏପରି ସ୍ଥଳରେ ତାଙ୍କର ପଦ ଅବଶ୍ୟ ପଣ୍ଡିତ-ମହାଶୟ ଓ ମାଷ୍ଟର-ମହାଶୟଙ୍କ ରଚିତ ପଦ୍ୟ ଅପେକ୍ଷା ଉତ୍କୃଷ୍ଟ ହୋଇଥିବ, ଏହା ଭାବି ସ୍ଥିର କରିବାକୁ ଆମ୍ଭମାନଙ୍କୁ ଅଧିକ ସମୟ ଲାଗିଲା ନାହିଁ । 'ମୌନଂ ସମ୍ମତି ଲକ୍ଷଣଂ' ଦେଖିପାରି ମର୍ଦ୍ଦରାଜେ ପଦ୍ୟଟି ଆରମ୍ଭ କଲେ ।

'Two silent sufferers meet'

ଦିଓଟି ନିଭୃତ ଦୁଃଖୀଙ୍କର ମିଳନ

ଆସ ଆସ ଭକ୍ତପ୍ରିୟେ କମଳବାସିନୀ,
ଆସ ଆସ ବାକ୍ୟଦେବି, ନମଇ ପ୍ରେମରେ,
ଦିଅ ଏହି କ୍ଷୀଣ କଣ୍ଠେ ଶକ୍ତି ବର୍ଣ୍ଣିବାକୁ
ଯାହା ଅନୁଭବୀ ବିନା ଆନ କେ ନ ଜାଣେ
ଦିଅ ସେହି ଚିତ୍ରଶକ୍ତି, ଯାହାର ପ୍ରଭାବେ
ଅନୁଭବୀ ନୋହି ସୁଦ୍ଧା ଯେବେ ଏ ରଚନା
ବୁଝିବ, ଜାଣିବ ତେବେ ମୋ ଇଚ୍ଛା ପୂରଣ ।
ସଂସାରର ଦୁଃଖ ସୁଖ ମୋହ ମାୟା ଆଦି,
'ବିପଦ ଦୁର୍ଦ୍ଦିନତମ ଘୋର ଭୟଙ୍କର'
ଅନୁଭବେ ବୁଝିଛନ୍ତି ସର୍ବେ ନ୍ୟୂନାଧିକ,
କିନ୍ତୁ କେତେ ଲୋକ ପଡ଼ି ଆଳସ୍ୟ ଜଡ଼ତା ।
ପ୍ରକାଶନ୍ତି ନିଜ ଦୁଃଖ ଜନସମାଜରେ-?
ନିଜ ଦୁଃଖ ନୁହେଁ ତାହା ସଂସାରର ଦୁଃଖ,
ସମାଜର ଦୁଃଖ, ପୁଣି ଅନିଷ୍ଟର ହେତୁ-
ସମାଜକୁ ମଣଇ ମୁଁ ଦୁରନ୍ତ ଦୁର୍ଦ୍ଦମ,
ଯାହାର କରାଳ ମୁଖେ କେତେ ଦୀନହୀନ,
କେତେ ନିର୍ଦ୍ଦୋଷମାନଙ୍କ ଉତ୍ସର୍ଗି ରୁଧିର
କରନ୍ତି ଦୁର୍ଦ୍ଦମ କ୍ଷୁଧା ଅଳ୍ପ ପ୍ରଶମିତ-
ରାବଣର ଚିତାପରି ଜ୍ୱଳଇ ସେ କ୍ଷୁଧା,
ଦୋଷୀ ନିର୍ଦ୍ଦୋଷ ମଧ୍ୟରେ ନାହିଁ ବିଭିନ୍ନତା ।
ବୁଲୁଥିଲି ସଂସାରରେ ଉଲ୍‌କାମୁଖୀ ପ୍ରାୟେ,
ନ ଥିଲା ଉଦ୍ଦେଶ୍ୟ କିବା ନ ଥିଲା ଉଦ୍ୟମ ।
ମାର୍ଜାରୀର ଶିଶୁ ଗୃହୁଁ ହେଲେ ଅପହୃତ
ମାର୍ଜାରୀ ଭ୍ରମଇ ଯଥା ଶିଶୁ ଅନ୍ୱେଷଣେ-
ଗୃହାନ୍ତରେ ଭ୍ରମେ କେବେ, କେବେ ଗ୍ରାମାନ୍ତରେ,
କେବେ ଜଳାଶୟ ତଟେ, କେବେ ନଦୀ ତୀରେ,
ଗ୍ରାମ ପ୍ରାନ୍ତ କ୍ଷୁଦ୍ର ବନ, କ୍ଷେତ୍ର ଉପବନ
ଦୁର୍ଗମ ସ୍ଥାନ ସକଳ ଅତି ଆୟାସରେ
ଅତିକ୍ରମ କରେ ନିଜ ଶିଶୁ ଲାଭ ଆଶେ ।
କ୍ରୋଧ, ଶୋକ, ଅନୁତାପ, ସେନେହ, ମମତା,
ଅତୀତର ସ୍ମୃତି, ପୁଣି ସଂସାରର ମାୟା,
ଦୁଃଖିନୀ ହୃଦୟ ସଦା କରେ ଆଲୋଡ଼ିତ ।

ସବୁ ସ୍ଥାନ ଭ୍ରମି ଶେଷେ ନିରସ୍ତ ହୋଇଣ
ଫେରଇ ସେ ନିଜ ସ୍ୱାମୀ ଗୃହକୁ ନିରାଶେ ।
ଯେଉଁ ହୃତ ମଣିପାଇଁ କାନ୍ଦଇ ହୃଦୟ,
ଯାହାପାଇଁ ଏତେ ବାଧା କରି ଅତିକ୍ରମ
ଭ୍ରମିଥିଲା ଏ ଦୁଃଖିନୀ ଦୁର୍ଗମ ସ୍ଥାନରେ,
ସେହି ଶିଶୁଲାଭ ଆଶା ଦୁରାଶା ହୋଇଲା ।
ବିଚାରିଲା, "ଆଉ ପ୍ରାଣେ କିସ ପ୍ରୟୋଜନ ?
ପ୍ରାଣ ବିନା ପିଣ୍ଡେ ଅବା କି ଲାଭ ହୋଇବ ?
ଶିଶୁ ଯୋଗୁଁ ସିନା ମୋର ଜୀବନ ସାର୍ଥକ-
ପର୍ବତ ଶିଖରେ ଯାଇ ମହାସମୁଦ୍ରକୁ ।
ଡେଇଁପଡ଼ି ନିଭାଇବି ଏ ଜୀବନ ଦୀପ ।"
ଏ ସମୟେ ତାହା କର୍ଣ୍ଣେ କିଏ ଦେଲା କହି-
"କିପାଇଁ ହେଉଛୁ ତୁହି ବୃଥାରେ ବାଉଳା ?
ଥରେ ଯାଇ ଦେଖିଆସ ତୋ ସ୍ୱାମୀର ଗୃହ
ଯେବେ ତହିଁ ନ ପାଇବୁ ହୋଇବୁ ବିମୁଖ ।"
ମାର୍ଜାରୀ ବିଚାରେ ସତେ ଏହା କି ସମ୍ଭବେ ?
ଆଉ କି ପାଇବି ସତେ ମୁହିଁ ସ୍ୱର୍ଗସୁଖ ?
କିନ୍ତୁ ଆଶା ନିରାଶାରେ ଦେଉଥାଏ ଦେଖା-
ଅବଶେଷେ ସେ ଦୁଃଖିନୀ ଯାଇ ପ୍ରବେଶଇ
ନିଜ ସ୍ୱାମୀଗୃହେ- ଦେଖେ ଅପରୂପ ଦୃଶ୍ୟ-
ଗୃହସ୍ୱାମୀ-ପୁତ୍ର କ୍ରୋଡ଼େ ଶିଶୁକୁ ଶୁଆଇ
କେତେ ରଙ୍ଗେ ଖେଳୁଅଛି ଶାବକ ସଙ୍ଗରେ ।
ମାର୍ଜାରୀ ବିଚାରେ ମୋର ଦିବ୍ୟ ଚକ୍ଷୁ ହେଲା,
ହଜିଥିବା ମଣି ମୋତେ ମିଳିଲା ଆନନ୍ଦେ,
କେ ଜାଣି ବିଧାତା ହରି ନେଇଥିଲା ଶିଶୁ
କରିବାକୁ ମୋର ସୁଖୋଲ୍ଲାସ ଦ୍ୱିଗୁଣିତ ?
ଶିଶୁକୁ ଆଣଇ ପାଶେ, କେତେ ଚୁମ୍ବଦିଏ,
ସବୁ କଷ୍ଟ, ସବୁ ଦୁଃଖ ହୁଅଇ ବିସ୍ମୃତ-
ସଫଳ କ୍ଳେଶ, କ୍ଳେଶରେ ଗଣନା ନୁହଇ-
ଆଜି ବନ୍ଧୋ ! ତୋତେ ପାଇ ମୋହର ହୃଦୟ
ନାଚଇ, ସେହି ମାର୍ଜାରୀ ଶିଶୁ ପାଇ ଯଥା ।
କାନ୍ଦିଛି ନୀରବେ କେତେ ଯେଉଁ ଧନ ପାଇଁ,
ଡାକିଛି ଈଶ୍ୱରେ କେତେ କେଉଁ ଧନ ଆଶେ,
ଆଜି ସେହି ରତ୍ନ ମୋତେ ମିଳିଲା ହସ୍ତରେ ।
ବିଚାରିଲି, ଜନ୍ମିଥିଲି ନୀରବେ କାନ୍ଦିବି,
ବିଚାରିଲି, ଜନ୍ମିଥିଲି ମରିବି ନୀରବେ,
ମୋ ଦୁଃଖ କାହାଣୀ ନାହିଁ ଶୁଣିବାକୁ
ମୋର ଅନୁଭବ ନାହିଁ କେହି ଅନୁଭବୀ,
ଏହି ଚିନ୍ତା - ଚିତା ଜଳି ଲିଭିବ ନିଭୃତେ
ଏ ସଂସାର ଅଟେ ଏକା ଦୁଃଖ-ଭୂମି,
ଯହିଁରେ ଜନମେ ସଦା ପାପ ତାପ ଶୋକ
'ଗୃହାରମ୍ଭ କଲେ ଦୁଃଖ'- ଏ ମହାବାକ୍ୟକୁ
ଜପୁଥିଲି, ଜପୁଅଛି, ଜପିଛି ନିରତେ ।
କିନ୍ତୁ ବନ୍ଧୋ ! ଆଜି ହେଲା କି ପରିବର୍ତ୍ତନ ।
ତୋତେ ଦେଖି ଆଜି ଅନୁଭବ ପରିପକ୍ୱ
"ନିଜ ଦୁଃଖ ବନ୍ଧୁଠାରେ ହେଲେ ପ୍ରକାଶିତ,
ଦୁଃଖଭାର ଦ୍ୱିଧା ହୋଇ ହୁଏ ସହନୀୟ ।"
ଏହି ଯେ ମହତ ବାକ୍ୟ କବି-ଉଚ୍ଚାରିତ
ଅକ୍ଷରେ ଅକ୍ଷରେ ସତ୍ୟ ଜାଣିଲି ମୁଁ ଆଜି ।
ଯାହା ମୁଁ ବିଚାରିଥିଲି ପୂରୁବେ ନିରତେ,
ସେସବୁ ତ ନିଭିଗଲା ମୁହୂର୍ତ୍ତକ ମଧ୍ୟେ ।
ଜଳୁଥିଲା ହୃଦେ ଯେଉଁ ରାବଣର ଚିତା,
ସେହି ଚିନ୍ତା-ଚିତା ହେଲା କ୍ଷଣମଧ୍ୟେ ଲୟ ।
ଯାହାକୁ ମୁଁ ମଣୁଥିଲି ଦୁଃଖ-ମରୁଭୂମି
ପାପ ତାପ ଶୋକ ଚିନ୍ତା ଯହିଁ ଜନମଇ-
ସେ ସଂସାରେ ଦେଖିଲି ମୁଁ ଶ୍ୟାମଳ ଭୂଖଣ୍ଡ,
ଯହିଁ ବିରାଜଇ ସୁଖ ସେନେହ ମମତା-
ଯାହା ସ୍ୱାଦେ ବ୍ରହ୍ମାନନ୍ଦ ଲଭଇ ମାନବ,
ଯାହା ପାଇ ରାଶିକୃତ ଧନ ତୁଚ୍ଛ ମଣେ ।
'ଗୃହାରମ୍ଭ କଲେ ଦୁଃଖ' ଏହି ମହାବାକ୍ୟ

ଅଟଇ ଅକ୍ଷରେ ସତ୍ୟ ଏହାଟି ନିଶ୍ଚିତ,-
କିନ୍ତୁ ବେଳେ ବେଳେ ସୁଖ ପ୍ରସ୍ରବଣ ପ୍ରାୟେ
ଉଛୁଳି ଉଠେ ଲବଣ ସମୁଦ୍ର ବକ୍ଷରେ ।
(କିମ୍ବା ଯଥା ଦଶାଗ୍ରସ୍ତ ପଥିକ ପଡ଼ିଲେ
ନିର୍ଜନ କାନ୍ତାରେ, ଘନ ବରଷା ଅନ୍ଧାରେ,
ଦେଖାଏ ତାହାକୁ ପଥ କ୍ଷଣିକ ବିଦ୍ୟୁତ,
ଅବା ଯଥା ଅମାରାତ୍ରେ ସମୁଦ୍ରର ବକ୍ଷ
ମୁହୁଃ ଆଲୋକିତ ହୁଏ ବଡ଼ବା ପ୍ରସାଦେ ।)
କେଉଁ କେଉଁ ଅନୁଭବେ ଦୁହେଁ ସମଭାବେ
ଜଡ଼ିତ ହୋଇଛନ୍ତି ବନ୍ଧୋ ! ତାହା ବର୍ଣ୍ଣିବାକୁ
ଇଚ୍ଛଇ ମୁଁ, କିନ୍ତୁ କାହିଁ ସେ କ୍ଷମତା ମୋର ।
ଉତ୍ତମ ଉଦ୍ଦେଶ୍ୟ ବୁଝି ପରର ମଙ୍ଗଳେ
ଆଚରିଲି କେତେ କର୍ମ ବହୁତ ଆୟାସେ
କିନ୍ତୁ ଧାତା ଲେଖିଅଛି ଅଭାଗା କପାଳେ
ଅଧମ ଉଦ୍ଦେଶ୍ୟ ତହିଁ ଆରୋପନ୍ତି ନରେ ।
ମୁହିଁ ଯାହା ହିତ ପାଞ୍ଚେ ହୁଏ ସେ ମୋ ରିପୁ,
ଜନସମାଜରେ ରଟେ ମୋ ଅସତ ଭାବ ।
ରଟୁ ପଛେ ନାହିଁ ତହିଁ ମୋହର ଆକ୍ଷେପ,
କେବଳ ଆକ୍ଷେପ ବିଭୋ ! ଏହି କଥା ଲାଗି-
କେଜାଣି, ଶୁଣିଣ ସଦା ଏ ନିଷ୍ଠୁର ନିନ୍ଦା
ଭୁଲିଯିବ ପାପମନ ମହତ ଉଦ୍ଦେଶ୍ୟ । (୧)
ଦେଖୁଛି, ସମ୍ମୁଖେ ମୋର ଅନ୍ୟାୟ ଘଟଇ,
କିନ୍ତୁ କହିବାକୁ କିପାଁ ନାହିଁ ପରାକ୍ରମ ?
ଯାହା ମୋ ବିବେକଶକ୍ତି କହୁଛି ଅନ୍ୟାୟ,
ଇତର ଘୋଷୁଅଛନ୍ତି ତାକୁ ନ୍ୟାୟ ବୋଲି,
(ନ ଘୋଷିଲେ ନ୍ୟାୟ ବୋଲି, ବୁଡ଼ିଯିବ ଆୟ !)
ବିବେକ ଦେଲ ବିଭୋ ! ଅପବ୍ୟବହାର-
କରି ମୁହିଁ ଜଗିଥିବି ଇତରଙ୍କ ମନ ?
ଦିଅନ୍ତୁ ଇତରେ ମୋତେ ତାଡ଼ନା ଅନେକ,
ବିବେକକୁ ଲଘି କେବେ ନ କହିବି ବାକ୍ୟ,
ଦିଅନ୍ତୁ ପଛକେ ମୋତେ ସମାଜରୁ ତଡ଼ି,
ନ ମିଳୁ ଦିନାନ୍ତେ ହେଲେ ଥରେ ସୁଦ୍ଧା ଅନ୍ନ,
ଛାଡୁ ନିରଶନେ ପ୍ରାଣ ପ୍ରାନ୍ତର ମଧ୍ୟରେ,
କିନ୍ତୁ ନ କହିବି କେବେ ଅନ୍ୟାୟକୁ ନ୍ୟାୟ । (୨)
ଦେଖିଲି ଏ ସଂସାରେ ଧନ ମାନ ପାଇ
ରହି କେତେ ଲୋକ, 'ବଡ଼ଲୋକ' ନାମେ ଖ୍ୟାତ,
ତହିଁ ମଧ୍ୟେ ପୁଣି କେତେ ଧରିଣ ବିବେକ
ଅସାଧ୍ୟେ କରନ୍ତି ସାଧ୍ୟ କି ବୁଝିବି ମୁହିଁ ।
'ଭାବିବା ଉଚିତ ଅଟେ ପ୍ରତିଜ୍ଞା ବେଳରେ
ଏହି ଉପଦେଶ ହୃଦେ ନ ଦିଅନ୍ତି ସ୍ଥାନ ।
କାର୍ଯ୍ୟକ୍ଷେତ୍ରେ ଦେଖେଁ, କେଣେ ଗଲା ସେ ପ୍ରତିଜ୍ଞା,
ପ୍ରତିଜ୍ଞା ଲଂଘନ୍ତି କେତେ ଛଳନା ଦେଖାଇ ।
ଲଘଂନ୍ତୁ, ତହିଁକି ନାହିଁ ମୋହର ଭାବନା
କି ଉତ୍ତର ଦେବେ ? ଯେବେ ହେବେ ଉପନୀତ
ପ୍ରଧାନ ଧର୍ମାଧିକାରେ ବିଭୁ-ସନ୍ନିଧାନେ । (୩)
ପୃଥିବୀରେ ଅସନ୍ତୋଷ କାରଣ ଯେତେକ
ଅଧିକାଂଶ ହୁଏ ନିଜ ଗୃହରୁ ଜନମ ।
ନିଜ ରକ୍ତ ସଙ୍ଗେ ଯାର ଶୋଣିତ ସମ୍ବନ୍ଧ,
ସେ କରଇ ଭିନ୍ନ, ଦିଏ ମନେ କେତେ ବ୍ୟଥା ।
ବାହାରେ ଦେଖାଇ କ୍ଷତ ପାଏ ମୁଁ ସାନ୍ତ୍ୱନା,
ଘରେ ଦେଖାଇଲେ ତହିଁ କ୍ଷାର ହୁଏ ଯୁକ୍ତ,
ମୋର ଦୁଃଖ ଦେଖି ଅନ୍ୟେ ହୁଅନ୍ତି କାତର
କିନ୍ତୁ ନିଜ ଲୋକେ ଦେଖି ତାହା ଆନନ୍ଦିତ,
ଯାହାକୁ ମୋହର ବୋଲି ବାଲ୍ୟକାଳୁଁ ମଣି
ସମର୍ପଇଁ ପ୍ରାଣ, ସେହି କାଟଇ ଗଳାକୁ ! (୪)
ନୈତିକ ସାହସ ଶିକ୍ଷା ପାଇ ଚିରଦିନ
ଆଚରନ୍ତି କେତେ ଲୋକ ଦୃଢ଼ ଯତିବ୍ରତ,
ଗର୍ବ, ଦମ୍ଭ, ଅଭିମାନ, ପାପ, ତାପ, ମୋହ
ବିଦୂରିତ କରି ଭବେ ହୁଅନ୍ତି ପୂଜିତ,
ଦେଖ ଆହା ପରକ୍ଷଣେ କି ବିକୃତ ଦୃଶ୍ୟ !-

କେଉଁ ଆଡ଼େ ଗଲ ଏତେ କଠୋର ତପସ୍ୟା !
ମୁହୂର୍ତ୍ତକ ପାଇଁ ଦେଖି ପ୍ରଲୋଭନ ଶିଖା
ତହିଁରେ ଝାସନ୍ତି ନିଜ ଶୁଦ୍ଧ କଳେବର !
'ବାରବର୍ଷ ତପସ୍ୟାକୁ ଶୁଖୁଆ ପୋଡ଼ାରେ'
ନଷ୍ଟ କରି ଚିରଦିନ ଲଭନ୍ତି ସେ ଶୋକ ।
ମୁହୂର୍ତ୍ତକୁ ପୂର୍ବେ ଯେଉଁ କୁକର୍ମକୁ ନିନ୍ଦା
କରୁଥିଲେ, ଏହିକ୍ଷଣି କରନ୍ତି ପ୍ରଶଂସା । (୫)
ବକ ମଧ୍ୟେ ହଂସ ଯଥା ସୁଗୁଣେ ଭୂଷିତ
ହେଲେ କିସ ହେବ ? କିନ୍ତୁ ଦେଖ ତା ଦୁର୍ଦ୍ଦଶା-
କାହିଁ ପାଆନ୍ତା ସମ୍ମାନ, ଆଦର ବହୁତ,
କିନ୍ତୁ ବକେ ଆଚରନ୍ତି ଘୋର ନିଷ୍ଠୁରତା,
'ମୂଢ଼ ମଧ୍ୟେ ଗୁଣୀ ଲୋକ ହେଲେ ସମ୍ଭାବିତ
ବଢ଼ିବ ସମସ୍ତଙ୍କର ସମ୍ମାନ ବହୁତ ।'
ପରଶ୍ରୀକାତରତାରେ ହୋଇ ଜର୍ଜ୍ଜରିତ
ହଂସକୁ ଧିକ୍‌କାର, ସଦା ନିଅନ୍ତି ତା ପ୍ରାଣ ।
ମୂଢ଼େ ବୁଝି ନ ପାରନ୍ତି ନିଜର ଦୁର୍ଦ୍ଦଶା,
ତୁମ୍ଭ ମଧ୍ୟେ ହଂସ ଥାଇ ମଣ୍ଡନ୍ତା ତୁମ୍ଭଙ୍କୁ,
ଏବେ ତଡ଼ିଦେଲ, ଅଛି ତାହା ପାଇଁ ସ୍ଥାନ,
ପଦ୍ମବନେ ଯାଇ ହଂସ ସହଚର ମଧ୍ୟେ
କରୁଥିବ କ୍ରୀଡ଼ା ପାଇ ସଙ୍ଗୀଙ୍କ ଆଦର,
କିନ୍ତୁ ବକେ ! ପଙ୍କ ମଧ୍ୟେ ଚିରକାଳ ପାଇଁ
ହେବଟି ଲୁଣ୍ଠିତ, କରି ନିଜ ଭାଗ୍ୟେ ନିନ୍ଦା ।
ପୂଜ୍ୟପୂଜା ବ୍ୟତିକ୍ରମ ହେଲେଟି ନିଶ୍ଚୟ
ପଡ଼ଇ ଦୁର୍ଦ୍ଦଶା ଅବମାନକାରୀ ପ୍ରତି ।
ପୂଜ୍ୟକୁ ଅବମାନନା କଲେଟି ସତତ
ପୂଜ୍ୟର ତିଳେକ କ୍ଷତି କେବେହେଁ ନୋହିବ
ଅବମାନକାରୀ ଲୋକ ନିଜ ହୃଦୟକୁ
କରିବ ସ୍ୱାର୍ଥାନ୍ଧ ଲୋଭେ ସଦା କଳୁଷିତ ।
ମଣି ଲୋଟୁ ପାଦତଳେ, କାଚ ଶିରେ ଥାଉ,
କାଚ କି ହୋଇବ ମଣି ଉଚ୍ଚ ସ୍ଥାନେ ଥାଇ ?
ମଣି ଉଜ୍ଜ୍ୱଳତା ବଢ଼େ କଠୋର ଶାଣରେ,
କାଚ ଖଣ୍ଡ ଖଣ୍ଡ ହୋଇ ମିଶଇ ଧୂଳିରେ । (୬)
ହଂସ ଆଗେ ଜଳମିଶ୍ର ଦୁଗ୍ଧ ରଖିଦେଲେ
ଦୁଗ୍ଧ ଟାଣି ନେଇ ଜଳ ଛାଡ଼ଇ ପାତ୍ରରେ,
ବିବେକୀ ଲୋକ ତା ଦେଖି ହଂସେ ପ୍ରଶଂସଇ
କହେ, 'ଧନ୍ୟ ତୁହି-ଜୀବ ! ବାଛି ନେଲୁ ସାର,
ଜାଣିଲି ଦୁଗ୍ଧରେ କେତେ ମିଶି ଥିଲା ଜଳ,
ଏବେ ମୁଁ ଏଥିକି କରିବିଟି ପ୍ରତିକାର ।'
କିନ୍ତୁ ଅବିବେକୀ ଲୋକ ଜଳଶେଷ ଦେଖି
ଧିକ୍‌କାରେ ହଂସକୁ କହି ନିଷ୍ଠୁର ବଚନ
'ଜଳ ଥାଉ' ଲାଭ କିସ ମୋର ତାହା ଜାଣି,
କିପାଇଁ ଏ ଭ୍ରମ ତୋର ଆରେ କ୍ଷୁଦ୍ର ହଂସ ।
ଦେଖାଇ ମୋର ଅନ୍ଧତା କଲୁ ପ୍ରତିପନ୍ନ
ତୋଠାରୁ ଅଧମ ପ୍ରାଣୀ ନାହିଁ ଏ ସଂସାରେ । (୭)
ଯେଉଁମାନେ ମୋର ପ୍ରତି ହୃଦେ ଈର୍ଷାଭାବ
ଯତନେ ପୋଷନ୍ତି କେତେ ଅନିଷ୍ଟ ପାଞ୍ଚିଣ
ଯାହାଙ୍କ ପ୍ରକୃତି ମୋର ପ୍ରକୃତି ସଙ୍ଗରେ
ଏକ ଉପାଦାନେ ନୁହେଁ ଗଠିତ କିପରି
ଏଡ଼ିଣ ବିବେକ ଡାକ, ତାଙ୍କ ସଙ୍ଗେ ମିଶି
କଟାଇବି କାଳ, ବିଭୋ ! ଅହୋ କି ଯନ୍ତ୍ରଣା !
କିପରି ହୃଦରେ ଜାଣି, ସେମାନେ ମୋ ରିପୁ,
ଆଶଙ୍କିତ ଚିତ୍ତେ କରିବି ମୁଁ ବ୍ୟବହାର ?
ବେଶ୍ୟା-ହାସ୍ୟ ମୁହିଁ ପରା କେବେ ଶିଖି ନାହିଁ,
ବିବେକ ନ ଦିଏ ଏହି ହାସ୍ୟକୁ ପ୍ରଶ୍ରୟ ।
ଅନ୍ତରେ ଯା'ଇଚ୍ଛା ଥାଉ, ବାହ୍ୟେ ନ ହସିବେ,
ବାହ୍ୟେ, ବେଶ୍ୟା ଆଚରଣ କରି ନ ପାରିଲେ,
ହେଲି ଅପରାଧୀ, ଅପମାନରେ ପ୍ରୋଥିତ !
କେବେହେଁ ଏ ଦୁଃଖ ବିଭୋ ! ନ ଦିଅ ଶତ୍ରୁକୁ । (୮)
କବି ଯାହା କହିଛନ୍ତି ଅମର ସଙ୍ଗୀତେ,
'ଅନ୍ୟ ଦୁଃଖ ଯେତେ ଇଚ୍ଛା, ପ୍ରଭୋ ! ଯେତେ ଦିଅ,

ସହିବି ତାହା ସମସ୍ତ ନତମସ୍ତକରେ
ଅରସିକଠାରେ ରସ-ନିବେଦନ-ଦୁଃଖ
କେବେହେଁ ନ ଲେଖ ବିଭୋ ! ଅଧମ କପାଳେ ।
ଗୁଣୀ ପୁଣି ପୂଜା କରେ, ନ ଜାଣେ ନିର୍ଗୁଣ
ମୂରୁଖ ହାତରେ ଗୁଣ ହୁଏ ବିମାନିତ,
ଏହାଠାରୁ ବଳି ଦୁଃଖ କିବା ଅଛି ଆଉ ?
ଦୁଃଖ ଦିଅ ବିଭୋ ! ନାହିଁ ତହିଁକି ଆକ୍ଷେପ,
କିନ୍ତୁ ଦୁଃଖ ସହିବାକୁ ହୃଦେ ଦିଅ ବଳ ।
ଅନ୍ତର୍ଯାମି ! ପାଦ ତଳେ କରୁଛି ପ୍ରାର୍ଥନା
ହେଲେ ସୁଦ୍ଧା ନିରାଶାରେ ଜର୍ଜରିତ ପ୍ରାଣ,
ତବ ମହିମାର ନିନ୍ଦା ଏ ମୁଖୁଁ ନ ଫିଟୁ । (୯)
ଗୋଟିଏ ସମସ୍ୟା ମୁହିଁ ସାଧନେ ଅକ୍ଷମ-
କରି କେତେ ବୃଥା ଚେଷ୍ଟା ନ ଗଲା ସନ୍ଦେହ-
ଯେଉଁଠାରେ ମନ ଅଛି ମହତ ଉଦ୍ଦେଶ୍ୟ,
ସେଠାରେ କିପାଇଁ ଦେଇ ନାହଁଟି ସୁବିଧା ?
କେତେ କେତେ ସାଧୁ ଚେଷ୍ଟା ସୁବିଧା ଅଭାବେ
ଅରଣ୍ୟରୋଦନେ ହେଉଅଛି ପରିଣତ ।
ସଂସାର ବିକଟ ସ୍ୱରେ କରୁଛି ଚିତ୍କାର -
'ଅର୍ଥ, ଅର୍ଥ, ଅର୍ଥ ଛଡ଼ା ନାହିଁ ଅନ୍ୟ ଗତି,
ସଂସାର ମୁଖ-ଗହ୍ୱରେ ଡାଳୁଥାଅ ଅର୍ଥ,
ତେବେ ସିନା ସଂସାରରେ ହୋଇବ ପୂଜିତ,
"ଯେବେ ଅର୍ଥ ନାହିଁ ତେବେ ଯାଅ ଅରଣ୍ୟକୁ,
"ଅରଣ୍ୟ-ରୋଦନ ସାର କରି ଯାପ ପ୍ରାଣ ।" (୧୦)
ବ୍ୟାଧଶର-ପ୍ରପୀଡ଼ିତା ହରିଣୀ ଯେସନ
ଜୀବନ ବିକଳେ ଧାଇଁଥାଏ ଅରଣ୍ୟରେ,
କ୍ଷତ ସ୍ଥାନୁଁ ବହୁଥାଏ ଅଜସ୍ର ଶୋଣିତେ,
କ୍ଷତ ସ୍ଥାନୁଁ ଉଠୁଥାଏ ମର୍ମଦାହୀ ଜ୍ୱାଳା,
କିପରି ହୋଇବ ଏହି ବ୍ୟଥା ପ୍ରଶମିତ ?
ଧାଉଁ ଧାଉଁ କେତେ ବୃକ୍ଷେ ଘଷି କ୍ଷତସ୍ଥାନ
ଲଭେ ବ୍ୟଥା-ପ୍ରଶମନ ! ବିଚାରେ ସେ ମନେ
'ଏ ବ୍ୟଥା-ପ୍ରଶମ ସୁଖ ଅଟଇ କ୍ଷଣିକ',
କିନ୍ତୁ କିଛି ଦୂର ଯାଇ ଦେଖିଲାବେଳକୁ
କ୍ଷତ ଚିହ୍ନଯାକ କେଣେ ହେଲାଟି ଲୁପତ !
ଦୈବକ୍ରମେ ଲାଗି କ୍ଷତ 'ଔଷଧି-ବୃକ୍ଷରେ'
ଲୁପ୍ତ ହୋଇ ଯାଇଅଛି ଜଣା ନାହିଁ ତାକୁ ।
ସେହିପରି ବନ୍ଧୋ ! ବିଷ ଜର୍ଜରିତ ପ୍ରାଣେ
ବୁଲୁ ବୁଲୁ ଏ ସଂସାର ଅରଣ୍ୟ ମଧ୍ୟରେ,
ଜାଣି ନ ଜାଣିଲି, ତୋର ସେନେହ ଔଷଧି
ଲାଗି ହୋଇଗଲା ମୋର କ୍ଷତଟି ପୂରିତ (୧୧)

ମର୍ଦ୍ଦରାଜେ ତାଙ୍କ ପଦ୍ୟଟି ଶେଷ କଲେ । ଅଚ୍ଛ ବହୁତ ସମସ୍ତଙ୍କ ଚକ୍ଷୁ ଲୋତକପୂର୍ଣ୍ଣ । ଅଚ୍ଛ ବହୁତ ପ୍ରତ୍ୟେକଙ୍କ ମନରେ କେତେ ଅତୀତ ଅନୁଭବ ଚିତ୍ରିତ ହୋଇଗଲା । ବାବୁ ରାମହରି ମିଶ୍ର B.A. କହିଲେ "ମର୍ଦ୍ଦରାଜ ମହାଶୟ, ଏ ପଦ୍ୟଟିର ନାମ 'ତିନୋଟି ନିଭୃତ ଦୁଃଖୀଙ୍କ ମିଳନ' ଦିଅନ୍ତୁ । ଆପଣଙ୍କ ପଦ୍ୟ ଶୁଣି ମୋର ନୈରାଶ୍ୟଜର୍ଜରିତ ପ୍ରାଣରେ ଆଶାର ସଞ୍ଚାର ହୋଇଅଛି । ମୁଁ ଜଣେ ଆପଣଙ୍କର ସହଅନୁଭବୀ ।" ବାବୁ ଗୌରାଙ୍ଗ ମହାପାତ୍ର V.L.M.S. କହିଲେ, "ଏ ପଦ୍ୟଟିର ନାମ 'ଚାରୋଟି ନିଭୃତ ଦୁଃଖୀଙ୍କ ମିଳନ' ଦିଅନ୍ତୁ ।" କ୍ରମଶଃ ଶ୍ୟାମସୁନ୍ଦରବାବୁ ଓ ଶ୍ୟାମଚରଣବାବୁ ଏ ପଦ୍ୟର ଯଥୋଚିତ ନାମ ପରିବର୍ତ୍ତନ କରିବାର ପ୍ରସ୍ତାବ କଲେ । ଅବଶେଷରେ ମୁଁ ସେମାନଙ୍କ ପ୍ରଥା ଅନୁସରଣ କରିବାକୁ ପ୍ରୟାସୀ ହେଲି ଓ ପ୍ରସ୍ତାବ କଲି ଯେ ବର୍ତ୍ତମାନ ନାମ ବଦଳାଇବାର ଆବଶ୍ୟକ ନାହିଁ । କାରଣ ଏହା Final decision (ଶେଷ ନିଷ୍ପତ୍ତି)

ହୋଇ ନ ପାରେ । ପଦ୍ୟଟି ଯେଉଁ ପତ୍ରିକାରେ ପ୍ରକାଶିତ ହେବ, ସେହି ପତ୍ରିକାର ସମ୍ପାଦକ ଯେବେ ପୁନର୍ବାର ନାମ ପରିବର୍ତ୍ତନର ପ୍ରସ୍ତାବ କରିବସନ୍ତି, ତାହାହେଲେ ଆଉ ଥରେ ଏ ପଦ୍ୟର 'Title' (ଶିରୋନାମ)ଟି ବଦଳାଇବାକୁ ଆପଣ (ଅର୍ଥାତ୍ ମର୍ଦ୍ଦରାଜେ) ବାଧ ହେବେ । ଅତଏବ ସେ ବିଷୟ ଉତ୍ତମରୂପେ ବୁଝି ଶେଷ ନିଷ୍ପତ୍ତି କରିବା । ମସ୍ତରାମ ପଦ୍ୟର ଶେଷଭାଗ ପଢ଼ାହେବା ସମୟକୁ ଆସି ପହଞ୍ଚି ପିଣ୍ଡାରେ ବସିବାର ଆମ୍ଭମାନଙ୍କୁ ଜଣା ନାହିଁ । ଆମ୍ଭେମାନେ କଥାବାର୍ତ୍ତା ବନ୍ଦ କଲୁଣି, ଏହି ସମୟରେ ବାହାରେ ବସି ଚିତ୍କାର କଲା ।

'ଯେ ଯାହା କହ, ସବୁ କଥାର ମୂଳ ଟଙ୍କା, ଟଙ୍କା ବାପର ପୁଅ, ଟଙ୍କା ପୁଅର ବାପ, ଟଙ୍କା ବନ୍ଧୁର ବନ୍ଧୁ, ଟଙ୍କା ଅନ୍ଧର ଆଖି, ଟଙ୍କା ସବୁ । ଆଲୋ ମଉସା, ଛଡ଼ ପଇସା ।'

ଅନ୍ନ ବିନା ତନୁ ଖିନ୍ନ ଭାଇ
ତରକାରି ବିନା ଜୀଉ ଯାତି ହେ
ଅର୍ଥ ବିନା ଦମ୍ ଛୁଟିଗଲା, ଦମ୍ ଛୁଟିଗଲା, ଦମ୍ ଛୁଟିଗଲା ।

ସେଦିନ ଟୁଙ୍ଗିରେ ଉପସ୍ଥିତ ସମସ୍ତଙ୍କ ମନ ଏତେଦୂର ପର୍ଯ୍ୟନ୍ତ 'ବିଭୋର' ହୋଇଥିଲା ଯେ, ଆଉ ସେ 'ବାଜେ ଗପ' କରିବାକୁ କାହାରି ମନ ବଳିଲା ନାହିଁ ଓ 'ପୂର୍ଣ୍ଣ ହୃଦୟ'ରେ ଆମ୍ଭେମାନେ ଟୁଙ୍ଗିରୁ ପ୍ରସ୍ଥାନ କଲୁଁ । (ପାଠକ-ମହାଶୟ ! କ୍ଷମା କରିବେ, ଇଂରାଜୀ ଭାଷାର Full heartର 'ପୂର୍ଣ୍ଣ-ହୃଦୟ' ଛଡ଼ା ଅନ୍ୟ କୌଣସି ଶବ୍ଦ ମୋର ମନେ ହେଲା ନାହିଁ ।)

ଉତ୍କଳ ସାହିତ୍ୟ/୫ମ ଭାଗ/୨ୟ ସଂଖ୍ୟା/୧୩୦୮ ସାଲ ।

## ଷଷ୍ଠ ସନ୍ଧ୍ୟା

ଆଜି ଟୁଙ୍ଗିରେ ପଣ୍ଡିତ-ମହାଶୟ, ମାଷ୍ଟର-ମହାଶୟ, ରାମଚନ୍ଦ୍ର ମର୍ଦ୍ଦରାଜ, ମସ୍ତରାମ ଓ ମୁଁ ଉପସ୍ଥିତ ଥିଲୁଁ । ମୁଁ ମାଷ୍ଟର-ମହାଶୟଙ୍କୁ କହିଲି, ''ମାଷ୍ଟର-ମହାଶୟ, ଆପଣ ପୂର୍ବ ସନ୍ଧ୍ୟାରେ ଉପସ୍ଥିତ ନ ଥିଲେ । 'ଦିଓଟି ନିଭୃତ ଦୁଃଖୀଙ୍କ ମିଳନ' ଶୀର୍ଷକ ମର୍ଦ୍ଦରାଜଙ୍କ ରଚିତ ପଦ୍ୟଟି ଶୁଣିପାରିଲେ ନାହିଁ । ବଡ଼ ଦୁଃଖର ବିଷୟ ।''

ମାଷ୍ଟର-ମହାଶୟ- ''ମର୍ଦ୍ଦରାଜ ମତେ ସେ Poem (ପଦ୍ୟ)ଟି show (ଦେଖାଇ) କରିଥିଲେ । ପଦ୍ୟଟି ତେତେ good (ଭଲ) ଲାଗିଲା ନାହିଁ । ଭାଗବତଟୁଙ୍ଗି ବାଜେ talk (ଗପ)ର place (ସ୍ଥାନ) । ଏଠାରେ ଏପରି poem (ପଦ) ପଢ଼ା ହେଲେ 'ଠିକ୍ ହାଟ ମଧ୍ୟରେ ବ୍ରହ୍ମଜ୍ଞାନ' ପରି ହୁଏ । ସେଥିକି ଖଣ୍ଡେ note (ଟୀକା) ପଣ୍ଡିତ-ମହାଶୟଙ୍କ ସାହାଯ୍ୟରେ prepare (ପ୍ରସ୍ତୁତ) କରୁଛି ।''

ପଣ୍ଡିତ-ମହାଶୟ- ''ମଲିର୍ଲୁଣ୍ଠତି ପାଦେଷୁ କାଚଃ ଶିରସି ଧାର୍ଯ୍ୟତେ, ଯଥୈବାସ୍ତେ ତଥୈବାସ୍ତାଂ କାଚଃ କାଚଃ ମଣିର୍ମଣିଃ ।'' 'ଅରସିକେଷୁ ରସସ୍ୟ ନିବେଦନଂ ସିରସି ମା

ଲିଖ' ତସ୍ମାଦର୍ଥ ମୁପର୍ଜୟସ୍ୱ ହି ସଖେ ହ୍ୟର୍ଥେନ ସର୍ବେ ବସାଃ ।' ଏବଂଭୂତ କତିପୟ ଶ୍ଳୋକାନୁବାଦରେ ପାଣ୍ଡିତ୍ୟ ପ୍ରକାଶ କରି ମର୍ଦ୍ଦରାଜେ ଯଶୋଲିପ୍‌ସା କରିଅଛନ୍ତି । ମଦୀୟା କୌମାରୀ ପୂର୍ଣ୍ଣିମା ପଦ୍ୟଟି ଯଶୋଲିପ୍‌ସୁମାନଙ୍କର ଆଦରଣୀୟ ଏବଂ ଚ ଅନୁକରଣୀୟ ।''

ମୁଁ ଓ ମର୍ଦ୍ଦରାଜ ଦେଖିଲୁଁ ଯେ, ପଣ୍ଡିତ-ମହାଶୟଙ୍କର ଆଜି 'ମହତାପ ଦିଆସିଲାଇ'ର ଅବସ୍ଥା, ଟିକିଏ ଘଷିଦେଲେ କେତେ ରକମର ଫୁଲ ଝଡ଼ିବାର ସମ୍ଭାବନା ! ମୁଁ ଦିଆସିଲାଇ ଘଷିବାକୁ ଆରମ୍ଭ କଲି ।

''ପଣ୍ଡିତ-ମହାଶୟ, ଗତ ସନ୍ଧ୍ୟା କଥା ଆଉ କାହିଁକି ପକାଉଛନ୍ତି ? ସେ ପଦ୍ୟଟି ଆପଣଙ୍କ ପଦ୍ୟଠାରୁ ନୀରସ । ସେ କଥା ଛାଡ଼ନ୍ତୁ, ଆଜି ଆପଣଙ୍କଠାରୁ କେତେକ ବିଷୟ ଶୁଣିବାର ଇଚ୍ଛା । ସ୍ତ୍ରୀ ଶିକ୍ଷା ବିଷୟରେ ଆପଣଙ୍କ ମତ କଣ ?''

ପଣ୍ଡିତ-ମହାଶୟଙ୍କ Engine (କଳ) ଚାଲିଲା, ''ସ୍ତ୍ରୀ ଶିକ୍ଷା ପ୍ରଚଳିତ ନ ହେବା ପର୍ଯ୍ୟନ୍ତ ସ୍ୱହସ୍ତରେ ପାକ କରିବାକୁ ହେଉ ନାହିଁ । କିୟଦ୍ଦିବସାନନ୍ତର ତୁମ୍ଭମାନଙ୍କ ସମୟକୁ ବଡ଼ଲୋକ ଓ ମଧ୍ୟବିତ୍ତ ମନୁଷ୍ୟ ପାକ ଓ ଗୃହମାର୍ଜନାଦିରେ ଭୃତ୍ୟ ନିଯୁକ୍ତ କରିବେ ଓ ନିରର୍ଥକମାନେ (ପଣ୍ଡିତ-ମହାଶୟ ଗରିବ ଲୋକ ଅର୍ଥରେ ଏ ଶବ୍ଦ ବ୍ୟବହାର କଲେ ପରା ?) ନିଜେ ନିଜେ ରନ୍ଧନ ପରିବେଷଣାଦି କ୍ରିୟା ସମାପନ କରି ଶିକ୍ଷାଗ୍ରସ୍ତ ସ୍ତ୍ରୀମାନଙ୍କର କିଙ୍କରୀଭୂତ ହେବେ । ହା କଷ୍ଟଂ ଖଳୁ ବର୍ତ୍ତତେ କଳିଯୁଗେ ଧନ୍ୟା ମୃତା ଯୋ ନରାଃ । ବେଶି ଦିନ ରହିଲେ ବେଶି କଥା ଦେଖିବାକୁ ହୁଏ । ଆମ୍ଭର ବାଲ୍ୟାବସ୍ଥାରେ ସ୍ତ୍ରୀମାନେ ରାତ୍ର ଦୁଇ ଦଣ୍ଡ ଥାଇଁ ଗାତ୍ରତ୍ୟାଗ (ବୋଧହୁଏ ଗାତ୍ରୋତ୍‌ଥାନ) କରି ପ୍ରାତଃକୃତ୍ୟ ବହିର୍ଦ୍ଦେଶମାର୍ଜନାଦି ସମାପନାନ୍ତେ ଗ୍ରାମବାସୀଙ୍କ ଅଜ୍ଞାତରେ ଗୃହକୁ ଆବର୍ତ୍ତିତା ହେଉଥିଲେ । ଆଜିକାଲି ନବାଗତା ବଧୂମାନେ ଦିନ ଦୁଇ ଘଡ଼ି ନ ହେଲେ ତୂଳିତଳ୍ପ ସହବାସ ସୁଖତ୍ୟାଗିନୀ ହେବାକୁ ଅନିଚ୍ଛୁକା । ପୂର୍ବେ ସ୍ତ୍ରୀମାନେ ଅର୍ଦ୍ଧବୃଦ୍ଧା ହେବା ପର୍ଯ୍ୟନ୍ତ ତାଙ୍କ କଣ୍ଠକୂଜନ କାହାର ଶ୍ରୁତିବିଷୟୀଭୂତ ହେଉ ନ ଥିଲା । ଅଧୁନା ନବାଗତା ବଧୂମାନେ ଶ୍ୱଶ୍ରୁ ପ୍ରଭୃତି ଗୁରୁଜନମାନଙ୍କ ସଙ୍ଗେ ବାକ୍ୟୁଦ୍ଧ କରିବାକୁ ଅକୁଣ୍ଠିତା ଓ ତାମ୍ବୂଳଖଣ୍ଡ ଦ୍ୱାରା ଦନ୍ତୋଷ୍ଠ ପକ୍ୱକରି ବହିର୍ଦ୍ୱାରର ଦଣ୍ଡାୟିତା ଓ ସ୍ୱାମୀସହ ସଙ୍ଗୀତାଳାପ କଲେଣି । ଏତେ ସ୍ୱାଧୀନତାଧୀନରେ ସଂସାରର ପରନ୍ତୁ ସମାଜର ଅମଙ୍ଗଳ । ଗୀତାରେ ଅର୍ଜୁନ କହିଅଛନ୍ତି 'ଅଧର୍ମାଭିଭବାତ୍ କୃଷ୍ଣ ! ପ୍ରଦୁଷ୍ୟନ୍ତି କୁଳସ୍ତ୍ରୟଃ । ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ ! ଜାୟତେ ବର୍ଣ୍ଣସଙ୍କରଃ ।' ଅଧୁନା 'ନାରୀବଶା ମାନବାଃ । ଆଜିକାଲି ସ୍ତ୍ରୀମାନଙ୍କ ସ୍ୱାତନ୍ତ୍ର୍ୟ ପରାକାଷ୍ଠାକୁ ଲଭିଲାଣି । ଏବେ ସ୍ତ୍ରୀମାନଙ୍କଠାରୁ ଭୟ କରି ଚଳିବାକୁ ବାଧ । ନବ୍ୟମାନେ ଅତିଶୟିତ ସ୍ତୈଣ ହୋଇ ଅବଳାମାନଙ୍କୁ ବଳ ପ୍ରଦାନ କରୁଅଛନ୍ତି । ଅତଏବ 'କଳୟେ ନମସ୍ତେ ।' ସ୍ତ୍ରୀମାନଙ୍କୁ ଶାସନ କରିବା ଦୂରେ ଥାଉ, ସେମାନଙ୍କୁ ଜଗତ୍‌ସର୍ବସ୍ୱ ମଣି ପାଦପୂଜା

କରୁଅଛନ୍ତି ଓ ଗୁରୁଜନମାନଙ୍କ ସଙ୍ଗରେ ଯୁଦ୍ଧ କରିବାକୁ ମନ୍ତ୍ରଣା ଦେଉଅଛନ୍ତି । ତ୍ରିକାଳଜ୍ଞ ମହର୍ଷିମାନଙ୍କର ଭବିଷ୍ୟଦ୍‌ବାଣୀ କି ମିଥ୍ୟା ହେବ ?

ମର୍ଦ୍ଦରାଜେ କହିଲେ, 'ପଣ୍ଡିତ-ମହାଶୟ, ଆପଣ ଯାହା ରିପନ କଲେଜର ସଂସ୍କୃତ ପ୍ରଫେସର ନ ହେଲେ, ଏହା ଆକ୍ଷେପର ବିଷୟ । ଆପଣଙ୍କର ବାଗ୍ମିତା 'ବାଉରି ସାଇରେ ମାଣିକ୍ୟ' ପଡ଼ିବା ପରି ଏ ଟୁଙ୍ଗିରେ ଅନାଦୃତ ହେଉଅଛି । ଆପଣ ଟିକିଏ ସ୍ଥିରଚିତ୍ତ, ଧୀରବୁଦ୍ଧିରେ ବିଚାର କରନ୍ତୁ ଯେ, ଆପଣ ନିଜେ ଆପଣଙ୍କ ଯୁକ୍ତିଦ୍ୱାରା ପରାସ୍ତ ହେବେ । ଆପଣ କହୁଛନ୍ତି ଯେ କଳିଯୁଗରେ ସ୍ତ୍ରୀ ସ୍ୱାଧୀନତା ଘଟିବ ବୋଲି ତ୍ରିକାଳଜ୍ଞ ମହର୍ଷିମାନେ କହିଯାଇଅଛନ୍ତି । ତାହା ଘଟିଲା ବୋଲି ଆପଣ କ୍ଷୋଭ କରୁଅଛନ୍ତି । ଆପଣ କହିବା ଅନୁସାରେ କଳିଯୁଗ ତ ସତ୍ୟଯୁଗ ହେବ ନାହିଁ । ଯାହା ଅବଶ୍ୟମ୍ଭାବୀ ତା ନିମନ୍ତେ କ୍ଷୋଭ କରିବା ଅସାର ପ୍ରଳାପ ଛଡ଼ା ଆଉ କିଛି ନୁହେଁ । ଯୁଗର ସ୍ରୋତ ବିରୋଧରେ ବକିବା କେବଳ ଅରଣ୍ୟରୋଦନ । ଆଧୁନିକ ସଭ୍ୟତା ସ୍ତ୍ରୀ ଶିକ୍ଷା ଓ ସ୍ତ୍ରୀ ସ୍ୱାଧୀନତାର ପକ୍ଷପାତୀ, ଯେତିକି ସେମାନଙ୍କୁ ପିଞ୍ଜରାବଦ୍ଧ ପକ୍ଷୀ କରିଥିଲ ସେତିକି !''

ମସ୍ତରାମ କହିଲା, ''ପଣ୍ଡିତେ ! ତୁମେ ତ ବୁଢ଼ା ହେଲ, ବଳବୟସ ଗଲା, ସୁଖ କରିପାରିଲ ନାହିଁ । ଏବେ ପିଲାଙ୍କ ସୁଖ ଦେଖି ମନ ରବେଇ ଖବେଇ ହଉଛି । ମୁଁ ମଧୁଆ ମା'କୁ (ମସ୍ତରାମ ପୁଅର ନାମ ମଧୁ) ଦିନେ ପଚାରିଲି, 'ହଇରେ, ତୁ ବୋହୂକୁ ଏତେ ଅବସ୍ଥା ଦଉଛୁ କିଆଁ ? ସେ କହିଲା, ମୋ ଶାଶୂ ମତେ ଯେତେ ଅବସ୍ଥା ଦେଇଥିଲା, ମୁଁ ତାକୁ ଶୁଝୁଛି ପରା !'' ଧନ୍ୟରେ କାଳ ! ବାପ ମା ଆପଣା ପୁଅବୋହୂଙ୍କ ସୁଖ ଦେଖି ନ ପାରି ରବେଇ ଖବେଇ ହେବେ । କଳିଯୁଗକୁ ଦୋଷ ଦେବେ । ବିଚାରନ୍ତି, ଆମେ ତ ସଢ଼ିପଚି ଦିନ କାଟିଲୁଁ । ଆମର ତ ଦି'ହାତ ଦି'ଗୋଡ଼, ଯାଙ୍କର ତ ଦି' ହାତ ଦି' ଗୋଡ଼ । ଏ କିଆଁ ଆଜି ସୁଖରେ ରହିବେ ? ପଣ୍ଡିତେ, ତୁମ ଘରେ ଶାଶୂ ବୋହୂଙ୍କର ନିତି କଜିଆ ଲାଗେ କାହିଁକି ? ଶାଶୂ ତ ସାଇକି ସାଇ ବୁଲି ତୁମ ବୋହୂର ଗୁଣ ଗାଇ ବୁଲୁଥାନ୍ତି । ଯେ ଶୁଣୁଥାଏ ସେ ଶାଶୂଙ୍କ ଏକତରଫା ଡିଗିରି ଦିଏ । ଅବୁଝାମଣା ରଜାକୁ ପାଳବିଣ୍ଡା ମନ୍ତ୍ରୀ ! ଆଜିକାଲି ଶାଶୂ ବୋହୂ କଳି ହେଲା ସବୁଠେଇଁ । ବୋହୂ ଟିକିଏ ପାନ ଖାଉଛି, ଦେଖ ଶାଶୂଙ୍କଠାରୁ ପୁରାଣ ବାହାରିଲା । ଯେବେ ବୋହୂର ପୁଅର ଦିନବେଳେ ଟିକିଏ ଦେଖା ହେଲା, ଘଣ୍ଟାକ ବାଦ ସାଇ ତମାମ ନାଗରା ବାଜିଗଲା । ଦିନ ଘଡ଼ିକେ ବୋହୂ ବିଚାରୀ ଉଠିଲା, ସାଇ ମାଇପେ ଘଡ଼ିକ ସରିକି ତାକୁ କାଉ କାଉ କରି ଖାଇଯିବେ । ଗାଧୁଆ ତୁଠରେ ହୁରି ପଡ଼ିଯିବ, ଆଜି ଅମୁକ ଘର ବୋହୂ ଦିନ ଦି' ଘଡ଼ିରେ ଉଠିଲା । କି ନିର୍ଲଜ୍ଜ କାଳ ହେଲା ! 'ମୁଁ ଖାଏଁ ମୋହର ଭାତ, ତୋର କିଆଁ ଗାଲରେ ହାତ' ।''

ପଣ୍ଡିତ-ମହାଶୟ ନିଜ ଗୃହଛିଦ୍ର ପଦାରେ ପ୍ରକାଶିତ ହେବାର ଦେଖି କ୍ଷଣକାଳ କିଂକର୍ତ୍ତବ୍ୟବିମୂଢ଼ ହେଲେ । ପଛକୁ ଚିତ୍କାର କରିଉଠିଲେ, ''ଭଦ୍ରଂ କୃତଂ କୃତଂ ମୌନଂ କୋକିଳୈର୍ଜ୍ଜଳଦାଗମେ । ଦର୍ଦ୍ଦୁରାଯତ୍ର ବକ୍ତାର ସ୍ତତ୍ର ମୌନଂ ହି ଶୋଭନଂ ।''

ମୁଁ ଦେଖିଲି ଯେ, ପ୍ରସଙ୍ଗର ସ୍ରୋତକୁ ଅନ୍ୟ ଆଡ଼କୁ ନ ଫେରାଇଲେ ପଣ୍ଡିତେ ଓ ମସ୍ତରାମ ମାଡ଼ ମରାମରି ହେବେ । ବିଶେଷତଃ ପଣ୍ଡିତଙ୍କର ଓ ମସ୍ତରାମର ପୂର୍ବରୁ ବିବାଦ ।

ଆମ୍ଭେମାନେ ଏପରି ଅବସ୍ଥାରେ ବସିଛୁଁ, ଏହି ସମୟରେ ଟୁଙ୍ଗି ଦାଣ୍ଡରେ 'ଜଏ ରାମଜୀକି ଜଏ, ସୀତାରାମ ଧନୁକଧାରୀ' ଧ୍ୱନି ଉଠିଲା । ଆମ୍ଭେମାନେ ଦେଖିଲୁଁ ଯେ ଯାନବାହନ, ଦାସଦାସୀ, ଧେନୁବତ୍ସାରେ ପରିବୃତ ଲାଠିଶୋଠାରେ ସଜ୍ଜିତ ୨୦/୨୫ ଜଣ ବୈଷ୍ଣବ ଆସି ଉପସ୍ଥିତ । ବାଟରେ ଯାକୁ ମାର ତାକୁ ଧର ଏହିପରି କରି ଆଜି ଗ୍ରାମର ଜମିଦାରଙ୍କ ଘରେ ଜବରଦସ୍ତି ଆତିଥ୍ୟ ଗ୍ରହଣ କରିବାର ସଂକଳ୍ପ କରି ଆସିଅଛନ୍ତି । ଟୁଙ୍ଗିରେ ଆମ୍ଭମାନଙ୍କୁ ଦେଖି 'ଜମାଉତ'ର ମହନ୍ତ ମହାରାଜ ବଜ୍ରଗମ୍ଭୀର ସ୍ୱରରେ ଚିତ୍କାର କରି ଜମିଦାରଙ୍କ ଘର ଦେଖାଇ ଦେବାକୁ କହିଲେ ଓ ସୁଯୋଗରୁ ଜମିଦାରଙ୍କ ଘର ଦେଖାଇ ଦେବାକୁ ପଣ୍ଡିତ-ମହାଶୟ 'ବାବାଜି'ମାନଙ୍କ ସଙ୍ଗରେ ଗଲେ । ମୁଁ କହିଲି, 'ପଣ୍ଡିତ-ମହାଶୟ ଆଜି ପାନେ କଡ଼ା ଔଷଧ ପାଇଲେ ।'

ମାଷ୍ଟର-ମହାଶୟ- ଆଗେ ଶାଶୂମାନେ ବୋହୂଟିଏ ଘରକୁ ଆଣିଲେ butcher (କଂସାଇ) ଗୋଟିଏ fat lamb (ପୃଥୁଳ ମେଷ) ପାଇ ଯେପରି glad (ଆନନ୍ଦିତ) ହୁଏ, ସେହିପରି ହେଉଥିଲେ । ବିଚାରୁଥିଲେ I am the monarch of all survey ।' ବଧୂମାନଙ୍କ ଜୀବନ slave (କ୍ରୀତଦାସ) ଜୀବନ ଅପେକ୍ଷା କଷ୍ଟକର ଥିଲା । Day and night (ଦିନରାତି) ଘରେ ମାଡ଼ ଖାଇ, ଗାଳି ଖାଇ ପଦା ଲୋକଙ୍କ ଥଣ୍ଟହଣା bear କରି କରି (ସହି ସହି) କବାଟ କଣରେ innocent creature (ନିର୍ଦ୍ଦୋଷ ପ୍ରାଣୀ) ଏପରି cruelty (ନିଷ୍ଠୁରତା) ସହି ନ ପାରି untimely death (ଅକାଳ ମୃତ୍ୟୁ)କୁ ଆଗ୍ରହ ସହକାରେ ଆଲିଙ୍ଗନ କରିଅଛନ୍ତି ।

ମର୍ଦ୍ଦରାଜ କହିଲେ- ଜଣେ ବିଖ୍ୟାତ ଆମେରିକା ଲେଖକ ଗୋଟିଏ ପଦ୍ୟ ଲେଖିଛନ୍ତି । ସେ ପଦ୍ୟରୁ ଗୋଟିଏ ଛତ୍ର ମନେପଡ଼ିଲା ।

'O hearts that break and give on sign
Save whitening lip and fading tresses.
Till death pours out his cordial wine
Slow dropped from misery's crushing presses
If singing breath or echoing chord
To every hidden pang were given,
What endless melodies were poured
As sad as earth, as sweet as heaven !'

ଏହାର ତାତ୍ପର୍ଯ୍ୟ ଏହି କି ଯଦ୍ୟପି ପ୍ରତ୍ୟେକ ଅପ୍ରକାଶିତ ଦୁଃଖ ପଦାରେ ପ୍ରକାଶିତ ହେଉଥାନ୍ତା, ତେବେ ଆହା ! କିଂଭୂତ ମଧୁମୟ ଓ ଦୁଃଖପୂର୍ଣ୍ଣ ସଂଗୀତ ଅଜସ୍ର ଧାରାରେ ବହୁ ନ ଥାନ୍ତା ।

ଏହି ସମୟରେ ଗ୍ରାମ ମଧ୍ୟରେ ଜମିଦାରଙ୍କ ଗୃହ ନିକଟରେ ଘୋର କୋଳାହଳ ଶ୍ରୁତିଗୋଚର ହେବାରୁ ଆମ୍ଭେମାନେ ଟୁଙ୍ଗି ତ୍ୟାଗ କରି ଘଟନାସ୍ଥଳକୁ ଯାଇଁ ଦେଖିଲୁ ଯେ, ଜମିଦାରବାବୁ ଜମାଉତଙ୍କ ପାଖରେ ବାବାଜିମାନଙ୍କ ସିଧା ସରଞ୍ଜାମ, ଗୋରୁ ଘୋଡ଼ାଙ୍କ ପାଇଁ ଘାସକୁଟା ଓ ଦାନା, ହାଣ୍ଡି କାଠ ଉପସ୍ଥିତ କରାଇ ଗଳଲଗ୍ନୀ-କୃତବସ୍ତ୍ର ହୋଇ ଠିଆ ହୋଇଅଛନ୍ତି ଓ ବାବାଜି ଓ ବାବାଜିମାନେ 'ଗଞ୍ଜା ଖର୍ଚ୍ଚା' ୧୫ ଟଙ୍କା ନ ପାଇଲେ ଜମିଦାରଙ୍କ ଘରୁ ପ୍ରସାଦ ନ ପାଇ ବାହାରିଯିବେ ଓ ଅଭିଶାପ ଦେବେ ବୋଲି ଚିତ୍କାର କରୁଅଛନ୍ତି । ଅବଶେଷରେ ଜମିଦାରବାବୁ ଗଞ୍ଜା ଖର୍ଚ୍ଚା ପାଇ ୫ ଟଙ୍କା ଆଣି ଦେବାରୁ ବାବାଜିମାନେ ଜମିଦାରଙ୍କ ଦାଣ୍ଡରେ ଗୋରୁ, ଘୋଡ଼ା, ଉଟ ଇତ୍ୟାଦି ବାନ୍ଧି ଗଣ୍ଠିରିପତ୍ର ଉଭାରିଲେ ଓ ଭୋଜନର ଆୟୋଜନ କଲେ ।

ଆମ୍ଭେମାନେ ମନେ ମନେ ଭାବିଲୁ, ଧନ୍ୟ ବାବାଜିମାନେ, ତୁମ୍ଭେମାନେ ସଂସାରରେ 'ବୈରାଗୀ' ନାମରେ ଅଭିହିତ । କିନ୍ତୁ ସଂସାରୀମାନଙ୍କ ଅପେକ୍ଷା ତୁମ୍ଭେମାନେ ଇନ୍ଦ୍ରିୟସୁଖରେ ଦୃଢ଼ତର ଭାବରେ ଲଗ୍ନ । ହାୟ ! ଭଗବାନ୍‌ଙ୍କ ବାନାର ତୁମ୍ଭେମାନେ କି ଅପବ୍ୟବହାର କରୁଅଛ ! ଗଞ୍ଜା ନ ହେଲେ ଦଣ୍ଡେ ରହିପାରିବ ନାହିଁ । ସିଧା ସାମଗ୍ରୀର ପରିମାଣ କିଛି ଅଳ୍ପ ହେଲେ ସୃଷ୍ଟି ପ୍ରଳୟ । ତୁମ୍ଭମାନଙ୍କ ମଧ୍ୟରେ ବିବାଦର ସୀମା ନାହିଁ । ତୁମ୍ଭମାନଙ୍କ ମଧ୍ୟରେ ସନ୍ତୋଷ ନାହିଁ । ସଂସାରର ସମସ୍ତ ଦୋଷ ତୁମ୍ଭମାନଙ୍କଠାରେ ଷୋଳକଳାରେ ପୂର୍ଣ୍ଣ । ତୁମ୍ଭମାନଙ୍କର କିଛି ଅସାଧ ନାହିଁ । ମୁହଁରେ ବୈରାଗ୍ୟ ଦେଖାଇଲେ ପ୍ରକୃତ ବୈରାଗ୍ୟ ହୁଏ ନାହିଁ । କାହିଁ ଈଶ୍ୱର ଧ୍ୟାନରେ ସମୟ ଯାପନ କରନ୍ତ, ତାହା ନ କରି ପେଟଚିନ୍ତାରେ ତୁମ୍ଭମାନଙ୍କ ସମୟ ଯାଉଛି । ତେବେ ସଂସାର ଛାଡ଼ିଲ କିଆଁ ? ସଂସାର ଛାଡ଼ିବା ସହଜ ନୁହେଁ । ଜୀବ ଥିବାଯାକେ ସଂସାର ଛାଡ଼ି ହେବ ନାହିଁ । ବୈରାଗୀ ହୋଇ ଆତ୍ମମ୍ଭରିତାର ଜ୍ୱଳନ୍ତ ପ୍ରମାଣ ଦେଖାଉଅଛ । ତୁମ୍ଭମାନଙ୍କ ମଧ୍ୟରେ 'ବୈରାଗୀ' ପଦବାଚ୍ୟ ଶତକରା ଜଣେ ଅଧେ ମିଳିବା କଷ୍ଟ । କେବଳ ଧର୍ମର ଦ୍ୱାହି ଦେଇ ଲୋକମାନଙ୍କୁ ଠକାଉଅଛ । ଈଶ୍ୱରଙ୍କ ଧ୍ୟାନରେ ସମୟ କାଟ । ଯେବେ ସେ ପନ୍ଥା ଧରିବ, ତେବେ ଈଶ୍ୱର ଅବଶ୍ୟ ତୁମ୍ଭମାନଙ୍କୁ ଦିନାନ୍ତେ ଭୋଜନ ଦେବେ । ସଂସାରରେ ବାପା ଓ ମାଙ୍କ ମଧ୍ୟରେ ଯେଉଁ ଶାରୀରିକ ସମ୍ପର୍କ, ତୁମ୍ଭମାନଙ୍କ ମହଲରେ 'ବାବାଜି' ଓ 'ମାତାଜୀ'ଙ୍କ ମଧ୍ୟରେ ସମ୍ପର୍କଟା ତା ଅପେକ୍ଷା ଆହୁରି ଘନ ।''

ମସ୍ତରାମ ଚିତ୍କାର କଲା, ''ମୁଁ ଦିନାକେତେ ଜମାଉତଙ୍କ ସାଙ୍ଗରେ ଥିଲି । ଦିବ୍ୟ ଅରୁଆ ଅନ୍ନ, ଗୁଆ ଘିଅ, ଦେଉଳିଆ ଡାଲି ଭୋଜନ ମିଳେ । ଏଣେ ମୁଁ ନୁଚାଇ କରି ମାଛ ପୋଡ଼ି ଖାଏଁ । ପହିଲେ ପହିଲେ ମୋତେ ଘୋଡ଼ାଘାସ କାଟିବାକୁ ହେଲା, କେତେଦିନ ବର୍ତ୍ତନ ମଳିବାକୁ ପଡ଼ିଲା । ଦିନେ ମୋ ମାଛଖିଆ ଧରାପଡ଼ିବାରୁ ବୈଷ୍ଣବମାନେ ଚୁମୁଟା ତତେଇ ମୋଠେଇଁ ଚିଆଁ ଦେଲେ । 'ମା'କୁ କହିବ ବଳଦ ବିକିବ ନାହିଁ, ମୋ ବଇଷମ ହବାକଥା ନୋହିଲା' । ମୁଁ ପଳେଇ ଆସିଲି ।''

ମୁଁ କହିଲି, ''ଦିନ୍‌କୁ ଦିନ ଏମାନଙ୍କ ଅତ୍ୟାଚାର କମୁଛି । ଲୋକେ କ୍ରମଶଃ ଏମାନଙ୍କ ପ୍ରତାରଣା ବୁଝିପାରୁଅଛନ୍ତି । ଏମାନଙ୍କ ସଂଖ୍ୟା କମିଯିବାକୁ ବେଶି ଦିନ ନାହିଁ । ମହାପୁରୁଷମାନେ ଯେତେବେଳେ ଲକ୍ଷ ଲକ୍ଷ ଟଙ୍କାର ସ୍ଥାବର ସମ୍ପତ୍ତି ସାଧାରଣ ଦାନ ଓ ଯୋଗ୍ୟଲୋକଙ୍କ ସାହାଯ୍ୟକଳ୍ପେ ଖଞ୍ଜି ଦେଇ ଯାଇଥିଲେ, ସେ ସମୟରେ ସେବାୟତମାନଙ୍କର ଏପରି ଭାବୀ ବଂଶଧର ହେବ ବୋଲି କିଏ କଳ୍ପନା କରିଥିଲେ ? ସଦାବର୍ତ୍ତ ସମ୍ପତ୍ତିର ଅଧିକାଂଶ ସ୍ଥଳରେ ଯେଉଁ ସଦ୍‌ବ୍ୟବହାର ହେଉଅଛି, ତହିଁକି ଦେଶହିତୈଷୀମାନଙ୍କ ଚକ୍ଷୁ ଅନ୍ଧ । ଚତୁର୍ଥ ଶ୍ରେଣୀର ଗଞ୍ଜାଖିଆ ବାବାଜି ଶତକରା କେତେ ?

ଏ କଥୋପକଥନ ପରେ ଆମ୍ଭେମାନେ ଦେଖିଲୁ ଯେ ବାବାଜିମାନଙ୍କ ଗଞ୍ଜାଟଣା ଆରମ୍ଭ ହେଲା । ଏହି ସମୟରେ ଗ୍ରାମର ପ୍ରଧାନ ଦୁଷ୍ଟ ବାଳକ ଜଗା ଜନୈକ ବାବାଜିଙ୍କୁ ପ୍ରଶ୍ନ କଲା- 'ବାବାଜି, ତୁମେ ଗଞ୍ଜେଇ ଖାଅ କାହିଁକି ?'

ମହାରାଜ ଉତ୍ତର ଦେଲେ, 'ଆରେ ଛୋକ୍‌ରା ! ତୁ କ୍ୟା ବୁଝେଗା ?

ଭକୁଆ ଖାଏ, ଭକଭକାଏ    ହାଣ୍ଡିକା ଭାତ ଉଜାଡ଼ନେକୁ,
ରସିଆ ଖାଏ, ରସରସାଏ    କାମିନୀକେ ମନ୍ ମୋହନେକୁ
ଛତ୍ରୀ ଖାଏ, ମାଲଯୁଦ୍ଧ କରେ    ହାତୀକା ଦାନ୍ତ ଉଖାଡ଼ନେକୁ
ଯୋଗୀ ଖାଏ, ଯୋଗଧ୍ୟାନ କରେ    ହରିକା ନାମ ଉଚାର୍‌ନେକୁ ।

ଜଗା କହିଲା, ''ତୁମେ କ'ଣ ଭାତ ଉଜାଡ଼ିବାକୁ ଖାଉଛ କି ଉଖାଡ଼ିବାକୁ ଖାଉଛ ?'' ବାବାଜି ମହାଜନ ଚୁମୁଟା ଧରି ଗୋଡ଼ାଇବାରୁ ଜଗା ଚମ୍ପଟ୍ ଦେଲା । ଗଲାବେଳେ ବୋଲି ଗଲା-

ଭଇଁସା ଖାଏ, ଭସଭସାଏ, ପଙ୍କ ସେ ବଦନ ଘୋଷାଡ଼ନେକୁ ।'

ଆମ୍ଭେମାନେ ମଧ୍ୟ ସେମାନଙ୍କ ନିକଟରୁ ପ୍ରସ୍ଥାନ କଲୁଁ ।

ଉତ୍କଳ ସାହିତ୍ୟ/୫ମ ଭାଗ/୩ୟ ସଂଖ୍ୟା/୧୩୦୮ ସାଲ ।

## ସପ୍ତମ ସନ୍ଧ୍ୟା

ମର୍ଦ୍ଦରାଜେ ଇତିମଧ୍ୟରେ କଲିକତା ଯାଇ ପୁନର୍ବାର ଫେରି ଆସିଅଛନ୍ତି । କିନ୍ତୁ ଆଜି ସେ ପୂର୍ବର ମର୍ଦ୍ଦରାଜେ ନୁହନ୍ତି ! ଆଜି ସେ 'ଶ୍ରୀଯୁକ୍ତ ରାମଚନ୍ଦ୍ର ମର୍ଦ୍ଦରାଜ ବି.ଏ. ।' ବି.ଏ. ପାସ୍ କରି କଲିକତାରେ 'ବଡ଼ ଓକିଲାତି' କ୍ଲାସରେ ଭର୍ତ୍ତି ହୋଇ ପୂଜା ଛୁଟିରେ ଗ୍ରାମକୁ ଆସିଅଛନ୍ତି ।

ମୁକ୍ତ୍ୟାରବାବୁ (ପ୍ରଥମ ସନ୍ଧ୍ୟାରେ ଯେଉଁ ମୁକ୍ତ୍ୟାରବାବୁ ଉପସ୍ଥିତ ଥିଲେ ଏ ସେହି, ଏହାଙ୍କୁ ଗ୍ରାମର ସ୍ୱନାମଧନ୍ୟ ଭାଗୀରଥି ସାମନ୍ତରାୟ ମୁକ୍ତ୍ୟାର ବୋଲି ଭ୍ରମ କରିବେ ନାହିଁ), ମସ୍ତରାମ, ମହାଜନ ସାହୁ, ପୁଲିସ ରାଇଟର, କନିଷ୍ଟବଳ କାଶୀବାବୁ (ଗ୍ରାମରେ ଜମାଦାରବାବୁ ବୋଲି ଖ୍ୟାତ), ମାଷ୍ଟର-ମହାଶୟ, ଗ୍ରାମର ସଂକୀର୍ତ୍ତନ ଆଖଧା ଗୁରୁ (ଆଖଡ଼ା ଗୁରୁ) । ଆଖଡ଼ା ରସିକର ବର୍ଣ୍ଣନାଟା ତ ଅବଶ୍ୟ ଆପଣଙ୍କର ଜାଣି ରଖିବା ଉଚିତ । ସଂକ୍ଷେପରେ ଶୁଣନ୍ତୁ- ସଭାବାଳ, ପାଟିଲା ଗାମୁଛା, ହୈୟଙ୍ଗୀବନ-ବାସିତ, ଯତ୍ନବର୍ଦ୍ଧିତ ଓ ଗ୍ରନ୍ଥିତ କେଶ-ଗୁଚ୍ଛ, ରୁପା ଭୁଣ୍ଡିଲଗା ପିମ୍ପୋଲ ବଟୁଆ, ଠସା ନୋଳି, ରୁପା ମୁଦି, ଅନନ୍ତକଡ଼ା, ଖଇର ଟୋପା, ସିନ୍ଦୂର କଲି, ସୁନାକଣ୍ଠିଯୁକ୍ତ କାଠର ମାଳି । ଏ ତ ନିୟମ ଅନୁସାରେ ଧରାବନ୍ଧା । ଏହାଛଡ଼ା ଗୁରୁଙ୍କର କେତେକ ବ୍ୟକ୍ତିଗତ ବିଶେଷତ୍ୱ ଅଛି । ଦକ୍ଷିଣ ବାହୁରେ ମାଳେ ଡେଉଁରିଆ, ଏଠାରେ ପ୍ରସିଦ୍ଧ ଗୁଣୀ, ''ଗୁଣୀ ଗୁଣଂ ବେତ୍ତି ନ ବେତ୍ତି ନିର୍ଗୁଣଃ'' ଏ ସେପରି ଗୁଣୀ ନୁହନ୍ତି । ଏହାଙ୍କର ଭୂତ, ଡାହାଣୀ ମନ୍ତ୍ର ଯନ୍ତ୍ର ଇତ୍ୟାଦି ଗାରିଡ଼ି ବିଦ୍ୟା ସଙ୍ଗେ ବେଶ୍ ପରିଚୟ । ଗ୍ରାମରେ ଯେତେ ଲୋକଙ୍କୁ ଡାହାଣୀ ଲାଗେ, ଏ ନ ଥିଲେ ପ୍ରାୟ ସେମାନଙ୍କ ମଧ୍ୟରୁ ଶତକଡ଼ା ୧୦୦ ବଞ୍ଚୁଥାନ୍ତେ କି ନାହିଁ ସନ୍ଦେହ । ଆମ ଗ୍ରାମର ଭାଗୁ ରାଉତ ଘରକୁ କିଏ 'ବୀର' ପେଷିଥିଲା । ଗୁରୁ ବିଚାରା ବହୁତ ପରିଶ୍ରମ କରି ରାଉତ ଘରୁ 'ବୀର' ଛଡ଼ାଇ ଦେଲେ । ରାଉତର ତିନିପୁଅ ଧୁରନ୍ଧର; କିନ୍ତୁ ତିନିପୁଅଯାକ କଲିକତାରେ ଚାକିରି କରି ୨/୩ ବର୍ଷରେ ଥରେ ଘରକୁ ଆସନ୍ତି । ରାଉତ ବିଚାରାର ଘରେ 'ବୀର' ଲାଗିବାରୁ ରାଉତ ବୁଢ଼ା ଅତି ଅସ୍ତବ୍ୟସ୍ତ ହୋଇ ଯାଇଥିଲା । କିନ୍ତୁ ଏ ଗୁରୁ ପାଞ୍ଚ ସାତ ଦିନ ମଧ୍ୟଚେ 'ବୀର' ଛଡ଼ାଇଦେଲେ । ରାଉତ ବୁଢ଼ା ଗୁରୁଙ୍କ ସଙ୍ଗେ ସେହି ଦିନଠାରୁ ଧର୍ମବାପ ବସିଛି । ଗ୍ରାମର ଯେବେ କାହାର ଗାଇ ବିଗିଡ଼ିଲା କିମ୍ବା ପିଠା ନ ସିଝିଲା କିମ୍ବା କାହାକୁ କିଏ ବାଣ ମାଇଲା (ବାଣ ମାଇଲା ଅର୍ଥ ଆତସବାଜି କରିବସିବେ ନାହିଁ ।) ସେ ପ୍ରକାର ବାଣ ମାରିବା ଦ୍ୱାରା କାହାର କିଛି ଅନିଷ୍ଟ ହେଲେ ସେଥି ନିମନ୍ତେ ଥାନା ଓ ଫଉଜଦାରି କଚେରି ଥୁଆ । ଦେଖିଲେ ନାହିଁ, ସେ ଦିନ ସହର ତମାମ୍ ବାଣମରା ଏକ ମନାଦିରେ ବନ୍ଦ ହୋଇଗଲା । ଏ ବାଣମରା ବେଳକୁ ମନାଦି ନାହିଁ କି ପୁଲିସ୍ ନାହିଁ । ତେବେ ଏ ଗୁରୁ ରାତି ଅଧରେ ଶୁଣିଲେ ସୁଦ୍ଧା ଦଣ୍ଡେ ବିଳମ୍ବ ନ କରି ଘଟଣାସ୍ଥଳରେ ପହଞ୍ଚି ସବୁ ଠିକ୍ କରି ଦେଇଆସନ୍ତି ।

ସେଥିପାଇଁ ପରା ପଣ୍ଡିତ-ମହାଶୟ କହନ୍ତି, 'ପରୋପକାରାୟ ସତାଂ ବିଭୂତିଃ' । ଗ୍ରାମର ଦୁଇ ତିନୋଟି ବନ୍ଧ୍ୟା ସ୍ତ୍ରୀଙ୍କୁ ମନ୍ତ୍ର, ଯନ୍ତ୍ର ଓ ଔଷଧ ବଳରେ ଉତ୍ପାଦିକା ଶକ୍ତି ମଧ୍ୟ ଦେଇଥିବାର ଆମ୍ଭେମାନେ ଅକାଟ୍ୟ ଯୁକ୍ତି ଦେଖାଇପାରୁ । ଗୁରୁଙ୍କ ଅନ୍ତେ ଗ୍ରାମଟି କିପରି ଚଳିବ, ଗ୍ରାମର ବୃଦ୍ଧ ଓ ବିଶେଷତଃ ସ୍ତ୍ରୀ ମହଲରେ ଭାରି ଭାବନା । ଅବଶ୍ୟ ଗୁରୁ ଏ ଗ୍ରାମବାସୀ ନୁହନ୍ତି, ଦୁଇ ବର୍ଷହେଲା ଏଠାରେ ସଂକୀର୍ତ୍ତନ ଆଖଡ଼ାର ଗୁରୁ ପଦରେ ନିଯୁକ୍ତ ହୋଇଅଛନ୍ତି । ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କର ଏହାଙ୍କ ପ୍ରତି ସ୍ନେହ, ସମସ୍ତଙ୍କ ଗୃହ ଗୁରୁଙ୍କ ଅବାରିତ ଦ୍ୱାର । ଆମ୍ଭେମାନେ ମଧ୍ୟ ଗୁରୁଙ୍କୁ ଭୟ କରୁଁ, ବିଶେଷତଃ 'ଭାରିଯା ଉପରୋଧରୁ ସାନ ଶଳାକୁ ନମସ୍କାର' । ଆମ୍ଭମାନଙ୍କ ଗ୍ରାମର ଅଧିକାଂଶ ଶିକ୍ଷିତ ଯୁବକଙ୍କର ଗୁରୁଙ୍କ ପ୍ରତି ଗୋଟାଏ ଆନ୍ତରିକ ଘୃଣା । କିନ୍ତୁ ନାଚାର ! ଯେବେ କିଛି କଥା କହି ଗୁରୁଙ୍କୁ ଚିଡ଼େଇଦେବେ, ତେବେ ସ୍ତ୍ରୀ ମହଲରେ ହୁଲସ୍ଥୂଲ ଲାଗିଯିବ । ସ୍ତ୍ରୀମାନଙ୍କ ଧାରଣା ଯେ, ଗୁରୁ ବିଚାରିଲେ ଘଣ୍ଟାକେ ଗ୍ରାମକୁ ଭସ୍ମସାତ୍ କରି ଦେଇପାରନ୍ତି । ଯୁବକମାନେ ନିତାନ୍ତ ଅନୁରୋଧରେ ପଡ଼ି ପାଟି ବନ୍ଦ କରି ରହନ୍ତି । ଏ ଗ୍ରାମରେ ଜମିଦାରଙ୍କ ପୁଅ ଗୁରୁଙ୍କୁ ଦିନେ ଗାଳି ଦେଇଥିଲେ, ତହିଁ ଆରଦିନ ଜମିଦାରଙ୍କ ଘରେ କାନ୍ଦବୋବାଳି ପଡ଼ିଗଲା, ପୁଅଠାରୁ ରକ୍ତବାନ୍ତି ହେଲା । ସୁଯୋଗକୁ ଗୁରୁଙ୍କଠାରୁ କାଟପାଣି ନେଲାରୁ ରକ୍ତବାନ୍ତି ବନ୍ଦ ହୋଇ ପୁଅ ବଞ୍ଚିଲା । ମୁଁ ଜାଣେ ଯେ, ଯୁବକମାନେ ଗୁରୁଙ୍କ ପରି ଗ୍ରାମରେ ସମ୍ମାନ ନ ପାଇବାରୁ ଗୁରୁଙ୍କୁ ସହି ନ ପାରି ନାନାଦି ଅପବାଦ ଦିଅନ୍ତି । କିନ୍ତୁ ମୁଁ ଧୀରଚିତ୍ତ, ସ୍ଥିରବୁଦ୍ଧିରେ, ବିନା କାହାରି ଜୋରଜୁଲୁମ ବଳାତ୍କାରରେ ପରଶିକ୍ଷାରେ ନ ପଡ଼ି, ମନସ୍ୱଚ୍ଛରେ କହୁଛି ଯେ, ଗୁରୁ ଜଣେ-ଆଦର୍ଶ ମନୁଷ୍ୟ । ଅନେକ ସଂକୀର୍ତ୍ତନ ମଣ୍ଡଳ ଆମ ଗ୍ରାମର ସଂକୀର୍ତ୍ତନ ମଣ୍ଡଳ ସଙ୍ଗେ ପ୍ରତିଦ୍ୱନ୍ଦ୍ୱୀ ହୁଅନ୍ତି । କିନ୍ତୁ ମୃଦଙ୍ଗରେ ହାତ ନ ବାଜୁଣୁ ବିପକ୍ଷ ପକ୍ଷଙ୍କ ମୃଦଙ୍ଗ ଚୂନା ହୋଇଯାଏ, କାହାର କଣ୍ଠ ବସିଯାଏ, କିଏ ରକ୍ତବାନ୍ତି କରେ, ସମସ୍ତେ ଏହିପରି ପରାସ୍ତ ହୁଅନ୍ତି । ଗୁରୁ କହନ୍ତି, ସେ ପରୋପକାର କରିବେ ବୋଲି 'ଗୁଣି' ଶିଖିଛନ୍ତି । ତେବେ ନିତାନ୍ତ ଆପଣା ଦିହ ଜଗିବାକୁ ପଦେ ଅଧେ ଏଣୁ ତେଣୁ ଶିଖିଛନ୍ତି । ଅଧିକ ଲେଖିଲେ ଗୋଟାଏ ପୋଥି ହୋଇଯିବ । ଅତଏବ ପଣ୍ଡିତ-ମହାଶୟଙ୍କ କଥାରେ 'ବହୁନାଳଂ' ବା ('ଅଳମତିବିସ୍ତରେଣ') । ପଣ୍ଡିତ-ମହାଶୟ, ଜମିଦାରଙ୍କ ପୁରୋହିତ ମହାପାତ୍ରେ, ଆପଣେ ଓ ଗ୍ରାମର ଆଉ ଦୁଇ ଚାରୋଟି ଯୁବକ ଉପସ୍ଥିତ ଅଛନ୍ତି । ସହୃଦୟ ପାଠକ ମହୋଦୟ, ଆପଣ ବିରକ୍ତ ହୁଅନ୍ତୁ ପଛକେ ମୋର ନିଜର ଆତ୍ମସମ୍ମାନ ଆପଣମାନଙ୍କ ବିରକ୍ତି ଅପେକ୍ଷା ବେଶି ମୂଲ୍ୟବାନ୍ । ଆଜି ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ନିକଟକୁ ଡାକରେ ଖଣ୍ଡେ ଚିଠି ଆସିଥିଲା, ତା ଉପରେ ଠିକଣାରେ ଲେଖାଅଛି- ଶ୍ରୀ ବାବା ରାମଚନ୍ଦ୍ର ମର୍ଦ୍ଦରାଜ, ବି.ଏ.- ଏହା ଦେଖି ମୋ ମନରେ ବାସ୍ତବିକ ଟିକିଏ ଈର୍ଷା ହୋଇଅଛି । ମୁଁ ମଧ୍ୟ ଏଫ୍.ଏ.ପର୍ଯ୍ୟନ୍ତ ପଢ଼ିଥିଲି, କିନ୍ତୁ ଦ୍ୱିତୀୟ ଶ୍ରେଣୀକୁ ପ୍ରମୋଶନ୍ ନ ପାଉଣୁ ବିଦାୟ । ହେଲେ କଣ ହେବ, ମୋର ଭାରି ବୁଦ୍ଧି, ମୁଁ ଯେତେବେଳେ

ମୋର ବୁଦ୍ଧିମତ୍ତା କଥା ଭାବେ, ସମୟ ସମୟରେ ବିଚାରେ ଯେ ମୁଁ ନିଶ୍ଚେ ଫାଷ୍ଟ ଡିଭିଜନରେ ଏଫ୍. ଏ. ପାସ୍ କରିଥାନ୍ତି । ମୁଁ ସିନା ବଗୁଲିଆ ବୁଦ୍ଧି କରି ନ ପଢ଼ିଲି । ଆହା ! ଏତକ ସାନ୍ତ୍ୱନା ନ ଥିଲେ କେତେ ଲୋକ ଅକାଳ ମୃତ୍ୟୁରେ ପଡୁଥାନ୍ତେ । ଅତଏବ ଏଫ୍.ଏ. ଉପାଧି ପ୍ରତି ମୋର ଅବଶ୍ୟ କିଛି ଅଧିକାର ଅଛି । ମୁଁ ଆଜିଠାରୁ ସଂକଳ୍ପ କଲି ଯେ ମୋ ନାମ ଦୁର୍ମୁଖ ଶର୍ମା ଏଫ.ଏ. (ଅର୍ଥାତ୍ ଅର୍ଦ୍ଧ ଏଫ୍.ଏ.) ଲେଖିବି । ଆତ୍ମସନ୍ତୋଷ ପରର ସାର୍ଟିଫିକେଟ୍ ଅପେକ୍ଷା ଢେର ମୂଲ୍ୟବାନ୍ ।

ଆଜି ଟୁଙ୍ଗିରେ ଏମାନେ ସମସ୍ତେ ଓ ଶ୍ରୀ ଦୁର୍ମୁଖ ଶର୍ମା ଏଫ୍.ଏ. ଉପସ୍ଥିତ ଅଛୁଁ । ଜମାଦାରବାବୁଙ୍କ ପ୍ରସ୍ତାବ ଓ ଅନୁରୋଧ ଅନୁସାରେ ଆଜି ଟୁଙ୍ଗିରେ 'ଭାଙ୍ଗ' ପ୍ରସ୍ତୁତ ହୋଇଥିଲା; ସମସ୍ତେ ଅଳ୍ପ ବହୁତ ସିଦ୍ଧି ପକାଇଅଛନ୍ତି । ମସ୍ତରାମ ଆଜି ମଧ୍ୟ ଭାଙ୍ଗ ନିଶାରେ ଚୁର୍ ।

ଜମିଦାରଙ୍କ ଘରେ ଆଜି ସତ୍ୟନାରାୟଣ ପୂଜା (ଠିଆପାଲା ନୁହେଁ ପୋଥିପାଲା) ହେବ । ସେଥି ନିମନ୍ତେ ଆମ୍ଭେମାନେ ସମସ୍ତେ ଆମନ୍ତ୍ରିତ । ଜମିଦାର ବଡ଼ଲୋକ । ବଡ଼ଲୋକଙ୍କର ବଡ଼ କଥା, ପ୍ରସାଦ ପାଉ ପାଉ ରାତି ଶେଷ । ଏପରି ସ୍ଥଳରେ ଆଜି ଆମ୍ଭମାନଙ୍କୁ ଟୁଙ୍ଗିରେ ଅନେକ ସମୟ ବସିବାକୁ ହେଲା ଓ ନିଶା ଜୋରରେ ନିର୍ଭୟ ଚିତ୍ତରେ ଆମ୍ଭେମାନେ ଗଳ୍ପ କରିବାକୁ ଆରମ୍ଭ କଲୁ । ମୁଁ ମନେ ମନେ ମାଦକଦେବଙ୍କର ସ୍ତବ ଆରମ୍ଭ କଲି - ''ହେ ପରାତ୍ପର ମାଦକଦେବ ! ଯେ ତୁମ୍ଭର ଭକ୍ତ ନୁହେଁ, ସେ ମନୁଷ୍ୟ ନୁହେଁ । ହେ ଭକ୍ତବାଞ୍ଛାବିଧାୟକ, ହେ କଳ୍ପତରୁ ! ତୁମ୍ଭ ଭକ୍ତର ଅସାଧ କିଛି ନାହିଁ । ''ମୂକଂ କରୋତି ବାଚାଳଂ, ପଙ୍ଗୁଂ ଲଙ୍ଘଂୟତେ ଗିରିଂ । ଯତ୍କୃପାତମହଂ ବନ୍ଦେ ପରମାନନ୍ଦ ମାଧବ । ପୂର୍ବକାଳରେ ଛାପାଖାନା ଥିଲେ ବୋଧହୁଏ ଏ ଭ୍ରମ ସଂଶୋଧିତ ହୋଇଥାନ୍ତା । ଭାଗବତ ପ୍ରଣେତା ମାଦକ ଲେଖିବାକୁ ଯାଇ ମାଧବ ଲେଖି ପକାଇଲେ । ଛାପାଖାନା ଥିଲେ ଥରେ କମ୍ପୋଜ (compose) ହୋଇଥାନ୍ତା, ଥରେ ଗାଲି ପ୍ରୁଫ୍ (galley proof) ନିଆ ଯାଇଥାନ୍ତା, ଥରେ ପେଜ୍ ପ୍ରୁଫ୍ (page proof) ନିଆ ଯାଇଥାନ୍ତା, ସେଥିରେ ମନ ବୋଧ ନ ହେଲେ ଶେଷକୁ (final proof) ଶେଷ ପ୍ରୁଫ୍ ନିଆ ଯାଇଥାନ୍ତା । ଏଥିରେ ମଧ୍ୟ ମନ ନ ମାନିଲେ ପୁସ୍ତକ ଛାପାହେବା ପରେ ପୁସ୍ତକରେ ଖଣ୍ଡେ ଶୁଦ୍ଧିପତ୍ର ମରାହୋଇ ଛାପାଖାନାର ଦୋଷ ଧରାଯାଇ ଆପଣାଉପରୁ ଦାୟିତ୍ୱଟା ବା ନିନ୍ଦାଟା ଖସିଥାନ୍ତା । ଏତେଥର ସଂଶୋଧିତ ହୋଇଥିଲେ କି ଭୁଲ ଥାନ୍ତା ? କିନ୍ତୁ ତାହା ନ ହୋଇଥିବାରୁ ତାଳପତ୍ରରେ ଲେଖୁ ଲେଖୁ ଗଞ୍ଜେଇ ନିଶାରେ ଭୋଳ ବ୍ୟାସଦେବ ମାତ୍ରା ଛାଡ଼ିଯାଇ ଅର୍ଥାତ୍ 'ଦ'ର ଉପର ଭାଗ ଓ 'ବ'ର ଅଙ୍କୁଶୀ ଛାଡ଼ିଯାଇ 'ମାଦକ'କୁ 'ମାଧବ' କରି ଚାଲିଗଲେ ଓ ତାହା ଋଷିବାକ୍ୟ ହୋଇ ନଜିର ରହିଗଲା । ଶେଷ ଫଳ ଏହି ହେଲା ଯେ, ମାଦକଦେବ ନିଜର ପ୍ରଭୁତ୍ୱ ହରାଇଲେ ।) ହେ ସନ୍ତାପହାରୀ ଦେବଦେବ ! ତୁମ୍ଭର ଦାସ ଏକା ସୁଖୀ । ଲକ୍ଷ୍ମୀ ମାଧବଙ୍କର ଅର୍ଦ୍ଧାଙ୍ଗ, ତୁମ୍ଭେ ଏ ଅଂଶରେ ମାଧବଙ୍କୁ ଜିଣିଅଛ ।

ଅ-ପୂର୍ବ ଲକ୍ଷ୍ମୀ (ଅଲକ୍ଷ୍ମୀ) ତୁମ୍ଭର ଅଙ୍କଗତା । ମାଧବ ଯେପରି ସୁଦାମା ଦାରିଦ୍ର୍ୟଭଞ୍ଜକ ତୁମ୍ଭେ ମଧ ତୁମ୍ଭ ଭକ୍ତର ପର୍ଣ୍ଣକୁଟୀରକୁ ନିମିଷକ ମଧ୍ୟରେ ରମ୍ୟ ହର୍ମ୍ମ୍ୟରେ ପରିଣତ କରିପାର । ତୁମ୍ଭର ଭକ୍ତମାନଙ୍କ ସୁଖ ଅପୂର୍ବ ରସିକତା ଅ-ପୂର୍ବ ଏବଂ ବାଗ୍ମିତା ଅ-ପୂର୍ବ (ଏଠାରେ ଅର୍ଥ ପଶ୍ଚିମରୁ ଆମଦାନୀ) । ସଂସାରରେ କେହି ତୁମ୍ଭର ମାହାତ୍ମ୍ୟକୁ ଏଡ଼ିପାରି ନାହାନ୍ତି । 'କବିତାଦେବୀ' ତୁମ୍ଭର ଆଶ୍ରିତା ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହଂ' କିଏ କେଉଁ ପ୍ରକାରେ ତୁମ୍ଭଠାରେ ପ୍ରସନ୍ନ । 'ସର୍ବଦେବଂ ନମସ୍କାରଂ କେଶବଂ ପ୍ରତିଗଚ୍ଛତି' । କିଏ ଧୂମ ରୂପରେ, କିଏ ଜଳ ରୂପରେ, କିଏ କୃଷ୍ଣ ରୂପରେ, କିଏ Extract (ସାରାଂଶ) କିଏ ରସ ରୂପରେ ତୁମ୍ଭଙ୍କୁ କଳ୍ପନା କରି ପୂଜା କରୁଅଛନ୍ତି ।'' 'ରୁଚିଣାଂ ବୈଚିତ୍ର୍ୟାଦ୍ ରୁଜୁକୁଟିଳନାନାପଥଯୁଷାଂ ନୃଣାମେକୋ ଗମ୍ୟଃ ତ୍ୱମସି ପୟସାମର୍ଣ୍ଣବ ଇବା' ଦେବାଧିଦେବ ! ସନ୍ଦିହାନ ହୁଅନା, ତୁମ୍ଭର ଭକ୍ତଗଣ ଏକାଶ୍ରେଣୀର । 'କ୍ଷିତ୍ୟପ୍ ତେଜ ମରୁତ ବ୍ୟୋମ' ତୁମ୍ଭେ ସବୁ ରୂପରେ ବିରାଜିତ । ତୁମ୍ଭର ବାନା ଧରିଲେ ଲୋକର ସମଜ୍ଞାନ ଆସେ ସ୍ଥାନାସ୍ଥାନ, ପାତ୍ରାପାତ୍ର, ବାକ୍ୟାବାକ୍ୟ, ଜ୍ଞାନାଜ୍ଞାନ, ବିବେକାବିବେକ କୌଣସି ପ୍ରଭେଦ ରହେ ନାହିଁ । ଯାହା କଠୋର ତପସ୍ୟା କରି ସୁଦ୍ଧା ଋଷିମାନେ ପାଇ ନାହାନ୍ତି, ଦୁଇ ପଇସା ଖରଚ କଲେ ଲୋକେ ମୁହୂର୍ତ୍ତକେ ତବ ପ୍ରସାଦାତ୍ ସେହି ଉଦାର ପ୍ରକୃତିକୁ ପାଇପାରେ । ତୁମ୍ଭର ଦେବାଳୟମାନଙ୍କରେ ରାତ୍ର ଦିବସ ଉପାସନାଭିଷେକାଦି ଅନୁଷ୍ଠିତ । ତୁମ୍ଭର ଭକ୍ତମାନେ ଯେତେବେଳେ ତୁମ୍ଭର ଦେବାଳୟରେ ସ୍ତବ କରୁଥାନ୍ତି, ସେତେବେଳେ ଏହା ସଂସାରରେ 'ବିଶ୍ୱଜନୀନ ମୈତ୍ରୀ ବ୍ରତ'ର ଜ୍ୱଳନ୍ତ ଉଦାହରଣ ମିଳେ । ତୁମ୍ଭର ଭକ୍ତମାନେ ସଂସାରବିରାଗୀ; ସେମାନଙ୍କର ସ୍ତ୍ରୀ ପୁଅଙ୍କଠାରେ ମମତା ନ ଥାଏ । ଜଣେ ଦିବାରାତ୍ର ସଂସାରର ଦୁଶ୍ଚିନ୍ତା ନେଇ ବ୍ୟସ୍ତ ହେଉଅଛି, ସେ ତୁମ୍ଭର ବାନା ଆଶ୍ରୟ କଲାମାତ୍ରକେ ସବୁ ପାସୋରିପକାଏ । କିନ୍ତୁ ହେ ବିଶ୍ୱମୋହନ ! ତୁମ୍ଭର ପୁଣି ଶତ୍ରୁ ଅଛନ୍ତି; ତୁମ୍ଭର ଧର୍ମଧ୍ୱଜା ନଷ୍ଟ କରିବାକୁ କେତେ ଲୋକ ସାହସ ବାନ୍ଧିଅଛନ୍ତି । କିନ୍ତୁ 'ପ୍ରାଂଶୁଲଭ୍ୟ ଫଳଲୋଭୀ' ବାମନ ପରି ସେମାନଙ୍କ ଶ୍ରମ ବିଫଳ । 'ଦିନେ ଦିନେ ସିଦ୍ଧି ଘଟୋସ୍ତୁପୂର୍ଣ୍ଣଃ, ଦିନେ ଦିନେ ସାଧକସଙ୍ଗମୋସ୍ତୁ' । ମା ଭୈଃ । ତୁମ୍ଭର ଏକ ହୁଙ୍କାରରେ ଜାହାଜ ବୁଡ଼ିଯାଇପାରେ, ବ୍ରହ୍ମାଣ୍ଡ ଉଡ଼ି ଯାଇପାରେ, ଛାର ପତଙ୍ଗ ଅଗ୍ନିଶିଖାର କ'ଣ କରିପାରେ ? ତୁମ୍ଭର ସହାୟ ଧନୀମାନେ, ତୁମ୍ଭର ସହାୟ ରାଜା ଓ ତୁମ୍ଭର ଭକ୍ତ ମୁଁ ଓ ଶ୍ରୀ ସୁନ୍ଦରୀପୂଜକମାନେ । ଅଯଥା ଅବମାନନା ହେଲେ ଆମ୍ଭେମାନେ ତହିଁର ପ୍ରତିଶୋଧ ନେବାକୁ ପ୍ରସ୍ତୁତ । ଯେଉଁ ଗ୍ରନ୍ଥର ଆଦ୍ୟ ତୁମ୍ଭେ, ସେ ଗ୍ରନ୍ଥର ଶେଷ ତୁମ୍ଭେ । ''ଆହା ! ସ୍ତବ ଶେଷ କରିପାରିଲି ନାହିଁ । ମର୍ଦ୍ଦରାଜେ ମୋର ସୁନାର ସଂସାର ଚୂନା କରିଦେଲେ । ଶର୍ମା, ଆଜି କାହିଁକି ଚୁପ୍ ହୋଇ ବସିଛ ? କିଛି ପ୍ରସଙ୍ଗ ପଡୁ । ଆଜି ଚୌଧୁରୀଙ୍କ ଘରେ ସତ୍ୟନାରାୟଣ ପୂଜା, ପ୍ରସାଦ ମିଳିବାକୁ ବହୁତ ଡେରି ଅଛି । ଏପରି ଚୁପ୍ ହୋଇ ବସିଲେ ସମୟ କାଟିବା କିପରି ?''

ମସ୍ତରାମର ଆଜି ଅଗ୍ନିରେ ଆହୁତି ପଡ଼ିଛି; ଏକେତ ତ ପାଗଳ, ତା ଉପରେ ସିଦ୍ଧି :-

ପାଲାରେ କହିଲା ସତ୍ୟପୀର, ତୁମ୍ଭେ କହୁଛ ସତ୍ୟନାରାୟଣ 'ସତ୍ୟପୀର ବୋଲି ବାବା ବାଦ୍ କହୁଁ ତୋରେ ।' ତୁମ ନାରାୟଣ କେଉଁ ଦିନ ବୁଢ଼ା ଫକିର ହେଲେ । କାହିଁ ମହାପ୍ରଭୁ ବାଙ୍କଚୂଳ ବାନ୍ଧି ବଂଶୀ ଧରି କଦମ୍ବମୂଳେ ତ୍ରିଭଙ୍ଗୀ ଠାଣିରେ ରାଧିକାଙ୍କ ପାଖରେ ଠିଆ ହେବେ, କାହିଁ ବୁଢ଼ା ଫକିର ହୋଇ ଶିରନୀ ଖାଇ ବୁଲୁଥିବେ । ଆମ ଶ୍ରୀକୃଷ୍ଣ ସିନା ସରଲବଣି ଖୋଜୁଥିଲେ, ସେ ତ ସଓଆ ସେର ଶିରିନୀ ଖୋଜନ୍ତେ ନାହିଁ ।

ମୁଁ, ମର୍ଦ୍ଦରାଜେ ଓ ଜମାଦାର ହସି ପକାଇଲୁଁ ।

ମର୍ଦ୍ଦରାଜ କହିଲେ 'ଜମାଦାରବାବୁ' ଆପଣଙ୍କ ମତ କଣ ? ମସ୍ତରାମ କଥା ଶୁଣି ହସ ମାଡ଼େ; କିନ୍ତୁ ବେଳେ ବେଳେ କାହୁଁ କାହୁଁ କଥାମାନ ବାହାର କରେ ।'

ଜମାଦାର- ଆମ୍ଭେ ଜାଣୁ ଯେପରି ଭଗବାନ୍ ଏକ ଠାକୁର, ମହାଦେବ ଆଉ ବି ଏକ ଠାକୁର, ପାର୍ବତୀ ଏକ, ଦୁର୍ଗା ଏକ, ଲିଙ୍ଗରାଜେ ଏକ, ଜଗନ୍ନାଥ ଏକ, ସେହିପରି ସତ୍ୟପୀର ଏକ ଠାକୁର । ଆମ ହିସାବରେ ଲିଙ୍ଗରାଜଙ୍କୁ ଭୋଗ ଦେଲେ ଆଉ ଠାକୁର ପାଇବେ ନାହିଁ ।

ପୁରୋହିତ- ସତ୍ୟନାରାୟଣ ପୂଜାରେ ନାରାୟଣଙ୍କ ମନ୍ତ୍ରରେ ନୈବେଦ୍ୟ ହୁଏ ଓ ମୁକାମ ପୂଜାରେ ଦୁର୍ଗା, ଗଣେଶ, ସୂର୍ଯ୍ୟ ଆଦି ଦେବତାଙ୍କ ଆବାହନ ହୁଏ । ନୈବେଦ୍ୟ ନାରାୟଣଙ୍କୁ ସମର୍ପଣ ହୁଏ; କିନ୍ତୁ ସତ୍ୟପୀର ବାବାଙ୍କ ପାଲା ବୋଲାଯାଏ ।

ମହାଜନ ସାହୁ - ପାଲାରେ ଯେଉଁ ଚରିତ୍ର ପଡ଼େ, ସେ ହଉଚି ଅସଲ । ତା ନ ହେଲେ ଲୋକେ ଠିଆପାଲା କରନ୍ତେ କିଆଁ ? ଭୋଗରେ ଖର୍ଚ୍ଚ ହବ ଆଠଅଣା, ଏଣେ ପାଲାବାଲା ନେବେ ରାତିକେ ୫ ଟଙ୍କା । ଲୋକେ କଣ ବେକୁବ୍, ମିଛରେ ମିଛରେ ଏତେ ଟଙ୍କା ଖରଚ କରନ୍ତେ ? ତୁମେ ବୁଝି ନାହଁ ସତ୍ୟପୀରଙ୍କ ପାଲା ଅସଲ ।

ମସ୍ତରାମ କହିଲା- ଆରେ, ପାଲା କି ଅସଲ ? ପୂଜାରେ ଭଜନ ଅସଲ, ଠିଆ ପାଲାରେ କାଏଦା ଅସଲ । ବିନା ଚଉପଦୀ, ଦାଏକା ନ ହେଲେ ସେ କି ଠିଆପାଲା ? ମେଷଯୁଦ୍ଧ ହବ, ବ୍ୟାଘ୍ରଗତି ହବ, ଯମକ ହବ, ତେବେ ସିନା ଯାଇଁ ପାଲା । ପାଲା ଚରିତ ପଡ଼ିଥିବ, ମଝିରେ ମଝିରେ ଗୋଟାଏ ରସରସିଆ ରଙ୍ଗଢଙ୍ଗିଆ ଚଉପଦୀ, ଦାଏକା ପଡ଼ିଥିବ, ଚଅଁର ଡିହ ମରାମରି ହଉଥିବ, ତେବେ ସିନା ପାଲାର ମଉଜ ! ଯାଉଁଳି ବାଦୀ ପାଲା ନ ହେଲେ ସେ କି ପାଲା ? ଆମ ଚକଡ଼ାରେ ଥିଲା ସେ ଭଣ୍ଡାରିଟୋକା, ତା ସମାନ କେହି ପାଲା କରିପାରିବେ ନାହିଁ । ତାକୁ ମା ଶାରଳା ସାହା ଥିଲେ । ଫିରିଙ୍ଗି ସୁଦ୍ଧା ତା ପାଲା ଦେଖି ତାକୁ 'ବାଘ ବଳିଆର ସିଂହ'ନାଁ ଦେଇଥିଲା । ସଂସ୍କୃତ ପଢ଼ା ବି ତାକୁ ଭାରି ଜଣା ଥିଲା । ସବୁଠେଇଁ ପାଲାରେ ସେ ଜିତେ । ତାକୁ ଗୁଣିଗାରେଡ଼ି କାଟୁ ନ ଥିଲା । ତା ନାଁ' ଗେଜେଟ୍‌ରେ ସୁଦ୍ଧା ଛାପା ହୋଇଥିଲା ।

ମସ୍ତରାମ୍ ଏହା କହି 'ଧନ୍ୟ ଲାବଣ୍ୟ ସରୋବରରେ କି ସୁନ୍ଦର' ଗୀତଟି ସ୍ୱର ମାନ ମିଳାଇ ଗାଇବାକୁ ଆରମ୍ଭ କଲା ଓ ଜମାଦାରବାବୁଙ୍କ ଭୟରେ କେତେ କଷ୍ଟରେ ନିବୃତ୍ତ ହେଲା ।

ଜମାଦାର କହିଲେ- ଆଚ୍ଛା ପଣ୍ଡିତେ, ସତ୍ୟପୀର ତ ପଠାଣଙ୍କ ଠାକୁର, ସେ ଆମର ସତ୍ୟନାରାୟଣ କିପରି ହେଲେ ?

ପଣ୍ଡିତ-ମହାଶୟ- ସମାଲୋଚନା କରି ଆମ୍ଭେ ସ୍ଥିରୀକୃତ କରିଅଛୁ ଯେ ସତ୍ୟପୀର ଏବଂ ସତ୍ୟନାରାୟଣ ଏକ ଦେବ ।

ଜମାଦାର- ଯେବେ ଏକ ଦେବ ତେବେ 'ନାରାୟଣଙ୍କୁ ନୈବେଦ୍ୟ କଥା ଲୋକେ ନ କହି 'ସତ୍ୟପୀର ପାଲା' ବୋଲି କାହିଁକି କହୁଅଛନ୍ତି ?

ମର୍ଦ୍ଦରାଜେ- ଜମାଦାରବାବୁ, ପଣ୍ଡିତ-ମହାଶୟ ଯାହା କହିଲେ ତାହା ସତ୍ୟ । ଏଥିରେ ଆମ୍ଭମାନଙ୍କ ଉପାସ୍ୟ ଦେବତା ଏକ । କିନ୍ତୁ ଇତର ଲୋକମାନେ ଭ୍ରାନ୍ତ ଭାବରେ ବୁଝି 'ସତ୍ୟପୀର ପାଲା' କରନ୍ତି ଓ ମନେକରନ୍ତି ଯେ ସତ୍ୟପୀର ଓ ନାରାୟଣ ଭିନ୍ନ । ଏଥିରେ ମଧ କେତେକ ଐତିହାସିକ ରହସ୍ୟ ଅଛି । ସତ୍ୟପୀର ପୂଜା ପ୍ରଥା ମୁସଲମାନ ରାଜତ୍ୱର ଚିହ୍ନସ୍ୱରୂପ ହିନ୍ଦୁମାନଙ୍କ ମଧରେ ରହିଅଛି । ମୁସଲମାନ ରାଜତ୍ୱ ସମୟରେ ହିନ୍ଦୁମାନେ ଧର୍ମ ବିଷୟରେ ନିରାପଦ ନ ଥିଲେ । ମୁସଲମାନ ରାଜାମାନଙ୍କୁ ତୁଷ୍ଟ କରିବା ନିମିତ୍ତ ହିନ୍ଦୁମାନେ ନିଜ ଭଗବାନ୍‌ଙ୍କୁ ସତ୍ୟପୀର ବେଶରେ ଠିଆ କରାଇଲେ । କାରଣ ଉଚ୍ଚଭାବାପନ୍ନ ହିନ୍ଦୁମାନେ ବୁଝୁଥିଲେ ଓ ବୁଝୁଅଛନ୍ତି ଯେ, ହିନ୍ଦୁମାନଙ୍କର ଭଗବାନ୍ ଓ ମୁସଲମାନମାନଙ୍କର ଆଲ୍ଲା ମଧରେ ପ୍ରଭେଦ ନାହିଁ ଓ 'ଶିରନୀ'ଠାରୁ 'ଅମୃତ ରସାବଳୀ' ପର୍ଯ୍ୟନ୍ତ ଯାବତୀୟ ଦ୍ରବ୍ୟ 'ପତ୍ରଂ ପୁଷ୍ପଂ ଫଳଂ ତୋୟଂ' ଭଗବାନ୍‌ଙ୍କୁ ସମର୍ପଣ କରାଯାଇ ପାରେ । ସତ୍ୟପୀର ବୋଲି ଡାକିଲେ ସେ ଶୁଣିବେ, ସତ୍ୟନାରାୟଣ ବୋଲି ଡାକିଲେ ମଧ ଶୁଣିବେ । କିନ୍ତୁ ସତ୍ୟପୀର ବୋଲି ଡାକି ଯେବେ ରାଜାଙ୍କ ଅତ୍ୟାଚାରରୁ ରକ୍ଷା ମିଳିଲା, ଅଥଚ ଧର୍ମଭାବର ବ୍ୟାଘାତ ନୋହିଲା, ତେବେ ହାନି କଣ ? କିନ୍ତୁ ଦେଖନ୍ତୁ, ଦିଅଁ ଗଢୁ ଗଢୁ କିପରି ମାଙ୍କଡ଼ ହେଲା । ଇତର ଲୋକଙ୍କ ହାତରେ ସତ୍ୟପୀର ଓ ନାରାୟଣ ଦୁଇ ବିଭିନ୍ନ ମୂର୍ତ୍ତି ଗଠିତ ହେଲେ 'ଭ୍ରମରବର ପାଲା', 'ମର୍ଦ୍ଦଗାଜି ପାଲା', 'ବିଦ୍ୟାସୁନ୍ଦର ପାଲା' ଇତ୍ୟାଦି ଇତର ଲୋକଙ୍କ ସୃଷ୍ଟି । କ୍ରମଶଃ ପାଲା ସଙ୍ଗେ ଦାଏକା, ଚଉପଦୀ ଇତ୍ୟାଦି ବଦ୍‌ରସିକତା ଯୁକ୍ତ ହେଲା । ବର୍ତ୍ତମାନ ସମୟକୁ ବାଦୀ ପାଲା କିମ୍ବା 'ଲଢ଼ାଇ ପାଲା' ଏକ କିଂଭୂତ ଅପରୂପ ବେଶ ଧାରଣ କରିଛି । ଆଉ ମଧ ଆମ୍ଭେମାନେ ଏ ପାଲା ପଦ୍ଧତିକୁ ବଙ୍ଗ ଦେଶରୁ ଆଣିଅଛୁ । 'ପାଲା' ଶବ୍ଦଟି ବଙ୍ଗୀୟ ଓ ପାଲାର ଭାଷା ବଙ୍ଗଳା । ମୁସଲମାନମାନଙ୍କ ପ୍ରଭାବରୁ ସତ୍ୟପୀର ପାଲା ପ୍ରଥମେ ବଙ୍ଗ ଦେଶରେ ସୃଷ୍ଟି ହୋଇ କ୍ରମେ ଓଡ଼ିଶାକୁ ଆସିଅଛି ଓ ବଙ୍ଗଭାଷାନଭିଜ୍ଞ ଓଡ଼ିଆ ପାଲାବାଲାଙ୍କ ମୁହଁରେ

ବଙ୍ଗଳାଭାଷାର ପାଲା ଓ ତହିଁରେ ସଂଲଗ୍ନ (ରୁଦ୍ରାକ୍ଷ ସଙ୍ଗରେ ସୁନା କଣ୍ଠି ଗୁନ୍ଥିଲା ପରି ଓଡ଼ିଆ ଭାଷାର ଦାଏକା, ଚଉପଦୀ, ଯମକ ଓ ମେଷଯୁଦ୍ଧ ଇତ୍ୟାଦି ପୃଥିବୀରେ ଅତୁଳନୀୟ, ଅଚିନ୍ତନୀୟ ଓ ଅକଥନୀୟ । ଧନ୍ୟରେ ଆମ ଦେଶ ! ଆମ ଦେଶ ଛଡ଼ା ଏପରି ଘାଣ୍ଟତିଅଣ ଅନ୍ୟ କେଉଁଠାରେ ଏତେ ଆଦୃତ ହୁଅନ୍ତା ନାହିଁ । କେବଳ ଯେ ପାଲାବାଲାମାନେ ବଙ୍ଗଳା ଗୀତ ବୋଲିବେ ତାହା ନୁହେଁ; ତହିଁରେ ପୁଣି ମା ଶାରଳା କଣ୍ଠରେ ବସି ଓଡ଼ିଆ ପାଲାବାଲାଙ୍କୁ ବଙ୍ଗଳା ପଦ ଶିଖାଇ ଦେଉଥିବେ । ମା ଶାରଳା ଓଡ଼ିଆଣୀ, କିନ୍ତୁ ତାଙ୍କ ଭଗିନୀ କଲିକତାରେ କାଳୀଙ୍କ ସଙ୍ଗରେ ଡାକରେ ଚିଠିପତ୍ର ଚଳୁଥିବାରୁ ଅଧାବଙ୍ଗଳାରେ କଥାବାର୍ତ୍ତା କରିପାରନ୍ତି ଓ ଭାଷା ଲେଖନ୍ତି ।)

ମସ୍ତରାମ କହିଲା- ଠିକ୍ ଯେମିତି ଅଧ ରାତିରେ ବର୍ଷା ଦିନେ ଧାନ ବିଲରେ ବେଙ୍ଗ ବେଙ୍ଗୁଲୀ ବୋବାନ୍ତି, ସିମିତି ଶୁଭେ । ଫେର୍ ସେଥିରେ ହିନ୍ଦୀ ଗୀତ ମିଶୁଥାଏ । ପଶ୍ଚିମରେ (ଚିବଣା) ଚାଉଳ ଭଜା, ବୁଟ ଭଜା, ଚଣା ଭଜା ଏକାଠେଇଁ ମିଶି ବଜାରରେ ବିକ୍ରି ହୁଏ । ଆମ ପାଲାବାଲାଙ୍କ ଗୀତ ମତେ ସିମିତି ଲାଗେ- ଗୋଟିଏ ରୁଟ୍, ଗୋଟିଏ ମୁଟ୍, ଗୋଟିଏ ଟାଣ, ଗୋଟିଏ କଅଁଳ ।

''ଶୁଣ ଶୁଣ ସଭାଜନେ ନିବେଦନ
ବାବା କଲି ନିବେଦନ,
ସତ୍ୟପୀରବାବୁଙ୍କୁ ମୁଁ କରେଛେ ବନ୍ଦନ ।''

ମସ୍ତରାମ ଚିତ୍କାର କରି ପାଲା ଆରମ୍ଭ କରିବାକୁ ବସିଲା । ଫେର୍ ଥରେ ଜମାଦାରବାବୁ ଧମକ ଦେବାରୁ ଚୁପ୍ ହେଲା ।

ମୁକ୍ତ୍ୟାରଙ୍କର କେତେବେଳେ ସଚେତନ, କେତେବେଳେ ଅଚେତନ ଅବସ୍ଥା । (ବୋଧୋଦୟ, ବୋଧାଙ୍କୁର ଇତ୍ୟାଦିରେ 'ବସ୍ତୁ ଦୁଇ ଭାଗରେ ବିଭକ୍ତ' କଥାଟା କାଟି 'ବସ୍ତୁ ତିନି ଭାଗରେ ବିଭକ୍ତ' ଲେଖିବାକୁ ହେବ ।-

ସଚେତନ- ଯଥା, ମସ୍ତରାମ୍

ଅଚେତନ- ଯଥା, ଭାଗବତ ଟୁଙ୍ଗି

ସଚେତନାଚେତନ- ଯଥା, ତନ୍ଦ୍ରା ଦେବୀଙ୍କ କ୍ରୋଡ଼ର ଦୋଳାୟମାନ ମୁକ୍ତ୍ୟାରବାବୁ ।)

ମୁକ୍ତ୍ୟାରବାବୁ କହିଲେ- ଆମ ହିନ୍ଦୁଙ୍କର କଣ ମୁସଲମାନ ଠାକୁରରେ ବିଶ୍ୱାସ ନାହିଁ ? କାଇପଦରରେ ପୀରଙ୍କ ମୁଲାକାତ୍ କରିବାକୁ ହଜାର ହଜାର ଲୋକ ଯାଉଛନ୍ତି । କଦମରସୁଲଙ୍କଠାରେ କେତେ ଲୋକ ଫାତିଆ ମାନୁଛନ୍ତି ଓ ଚୂନ ଲିପାଉଛନ୍ତି । ଯେବେ ମୁସଲମାନ ଠାକୁରଙ୍କର କିଛି କରାମତ୍ ନ ଥାନ୍ତା, ତେବେ ଲୋକେ କଣ ଫୋକଟ୍ ଏତେ କଥା କରନ୍ତେ ? ଆମ ନିଜ କଥାରୁ ଆମେ ବୁଝିଛୁଁ । ଆମର ରାଜଯକ୍ଷ୍ମା ହୋଇଥିଲା,

କେତେ ଠାକୁରଙ୍କୁ କେତେ ମାନସିକ କଲୁ କିଛି ହେଲା ନାହିଁ; ଏକା ଦଫେ କାଇପଦରରେ କିଛି ଫାତିଆ କରେଇ ଦେଲୁଁ, ଚାରି ମାସରେ ସବୁ ଆରାମ ପାଇଲୁଁ । ଆଜିକାଲି ଆମକୁ ଖୁବ୍ ଫୁରୁସଦ୍ ଅଛି । ସେ ବେମାରି ଅବ୍‌ତକ୍ ଥିଲେ ଆମ ଜାନ୍ ନେଇ ସାରନ୍ତାଣି ।

ପଣ୍ଡିତ-ମହାଶୟ କହିଲେ- ଧନ୍ୟ ରେ କାଳ ! ଯବନଦେବତାରାଧନପରତାର ପ୍ରାବଲ୍ୟ ହେଲା । କାଳଏବ କରୋତି ବଳାବଳଂ । ଧର୍ମତତ୍ତ୍ୱ ନିଗୂଢ଼ତାଭେଦରେ ଅସମର୍ଥ ହୋଇ ଆଧୁନିକ ମାନବ ତଳଗାମୀ ହେଲା । ଯବନଙ୍କ ଦେବତାଙ୍କୁ ସିନା ଆମ୍ଭ ଦେବତାଙ୍କ ସମାନ ବୋଲି ମୁହଁରେ ଉଚ୍ଚାରଣ କରିବା; କିନ୍ତୁ କାର୍ଯ୍ୟାତ୍ ଯବନମନ୍ଦିରସ୍ଥ ହୋଇ ଫାତିଆ ସମର୍ପଣରେ ମନୋଯୋଗୀ ହେବା !!! (ପଣ୍ଡିତ-ମହାଶୟ ମୌଖିକ ଖୁବ୍ କହିପାରନ୍ତି; କିନ୍ତୁ ଭିତରେ ସବୁ କଥାରେ ବାଡ଼ି ବାଇଗଣ ପୋଥି ବାଇଗଣର ପ୍ରଭେଦ । ମୁହଁରେ ସବୁ ମାନିବାକୁ ସହଜ; କିନ୍ତୁ କାର୍ଯ୍ୟରେ ପରିଣତ କରିବାକୁ ହେଲେ ପଣ୍ଡିତ-ମହାଶୟ ପଛଘୁଞ୍ଚା ଦିଅନ୍ତି ।) ଯବନଙ୍କ ଦେବତା କିପରି ଆମ୍ଭର ଆରାଧ୍ୟ ଦେବତା ହେବେ ?

ମର୍ଦ୍ଦରାଜ କହିଲେ- ପଣ୍ଡିତ-ମହାଶୟ, ଟିକିଏ ଚକ୍ଷୁ ଖୋଲନ୍ତୁ । ଯେଉଁ ଚାରି ବେଦର ଦ୍ୱାହି ଦେଇ ସବୁ କଥା କରୁଅଛନ୍ତି, ଥରେ ସେଇ ବୈଦିକ ପ୍ରମାଣ ଆଡ଼କୁ ଚାହାଁନ୍ତୁ । ଅଥର୍ବ ବେଦରେ ଗୋଟିଏ ସୂକ୍ତରେ ଆଲ୍ଲାଙ୍କ ବିଷୟ କଣ ଲେଖାଅଛି ଶୁଣନ୍ତୁ । ଅଥର୍ବ ବେଦ ସର୍ବଶେଷରେ ଲିଖିତ । ଅଥର୍ବ ବେଦ ଲିଖନ ସମୟକୁ ଭାରତକୁ ମୁସଲମାନମାନେ ଆସିଥିବାର (ଅନ୍ତତଃ ମହମ୍ମଦଙ୍କ ଧର୍ମ ପ୍ରଚାରିତ ହେବାର) ଅନୁମିତ ହୁଏ । କିନ୍ତୁ ଯେତେବେଳେ ଆଲ୍ଲାଙ୍କ କଥା ବେଦରେ ଲିଖିତ ଅଛି, ଆପଣ ଏପରି କିଂକର୍ତ୍ତବ୍ୟବିମୂଢ଼ତାନ୍ୱିତ- ଭୟସ୍ତବ୍ଧଚିତ୍ତ (ମର୍ଦ୍ଦରାଜେ ପଣ୍ଡିତଙ୍କ କଥନ ପଦ୍ଧତିକୁ ଅନୁକରଣ କରି ଏ ଦେଢ଼ ମାଇଲିଆ ଶବ୍ଦଟି ବ୍ୟବହାର କଲେ ପରା ?) ହେଉଅଛନ୍ତି କିଆଁ ? ଶୁଣନ୍ତୁ-

'ଓଁ ଅସ୍ମଲ୍ଲାଂ ଇଲ୍ଲେ ମିତ୍ରାବରୁଣୋ ଦିବ୍ୟାନି
ଧତ୍ତେ ଇଲ୍ଲଲ୍ଲେ ବରୁଣଂ ରାଜା ପୁନର୍ଦ୍ଦଦୁଃ'

ମୋର ଆଉ ବେଶି ମନେ ନାହିଁ । ବଙ୍ଗଳା ଭାଷାରେ ବିଶ୍ୱକୋଷର 'ଆଲ୍ଲା' ଶବ୍ଦ ତଳେ ଏହି ସୂକ୍ତଟି ଦେଖିବେ ।

(ମଫସଲରେ ବିଶ୍ୱକୋଷ ମିଳିବା କଥା ଦୂରେ ଥାଉ, ବିଶ୍ୱକୋଷର ନାମ ଶୁଣିବା କଥା ଅସମ୍ଭବ ।)

ମୁଁ କହିଲି ମର୍ଦ୍ଦରାଜବାବୁ, ଏଠାରେ ଆମ୍ଭେମାନେ ବିଶ୍ୱକୋଷ କେଉଁଠାରୁ ପାଇବୁଁ ? (ସହରରେ ୨/୪ ଜଣ ବଡ଼ଲୋକଙ୍କ ପାଖରେ ଅବା ମିଳିପାରେ । କିନ୍ତୁ ଆହା ! ମୋର କାହା ସଙ୍ଗେ ବିଶେଷ ଘନିଷ୍ଠତା ନାହିଁ ଓ କେତେକ ଲୋକ ଅନୁଭବରୁ ବୁଝି ପାରିଅଛନ୍ତି ଯେ, ମତେ ବହି ଉଧାର ଦେବା ଯୁକ୍ତିଯୁକ୍ତ ନୁହେଁ । ପରର ବହି ଦେଖିଲେ ମୋ ପାଟିରୁ ପାଣି ବହେ । ମୁଁ ବହି ନ ପଢ଼େ ପଛକେ, ବହି ପରଠାରୁ ଆଣି ଆପଣା ଘରେ ସଜାଇ

ରଖିବାକୁ କେତେ ଭଲ ଲାଗେ । ଆଉ ମଧ ପରର ପୁସ୍ତକକୁ ଦଖଲୀସ୍ୱତ୍ୱ ଅନୁସାରେ ନିଜସ୍ୱ କରିବାର ସୁବିଧା ଢେର୍ । ଯେଉଁ ଯେଉଁ ପୁସ୍ତକାଧିକାରୀମାନେ ପୂର୍ବଜନ୍ମ ତପସ୍ୟା ବଳରେ ମୋଠାରୁ ବହି ଫେରସ୍ତ ପାଇଅଛନ୍ତି, ଉକ୍ତ ବହିମାନଙ୍କର ପ୍ରତ୍ୟେକ ପୃଷ୍ଠାରେ ମୁଁ କିମ୍ବା ଗୃହର ପିଲାମାନେ ବା 'ଆମ ଘରଆଡ଼େ' ପୁସ୍ତକ ଦ୍ୟବହାର କରିଥିବାର ସ୍ପଷ୍ଟ ଚିହ୍ନମାନ ଦେଖିଥିବେ । ଚକ୍ଷୁଲଜ୍ଜା ଏଡ଼ି ମତେ କେହି ମୁହଁରେ ମନା କରିପାରନ୍ତି ନାହିଁ; କିନ୍ତୁ ମୁଁ ମାଗିଲେ ବହି ନାହିଁ ବା କିଏ ନେଇଛି ଏପରି ଛଳନାରେ ମୋତେ ଭଣନ୍ତି ।) ଅତଏବ 'ଆଲ୍ଲାଙ୍କ ସୂକ୍ତ'ଟି ଦେଖିବାର ଆଶା ଆମ୍ଭମାନଙ୍କ ପକ୍ଷରେ ଦୁରାଶା ।)

ମର୍ଦ୍ଦରାଜ- ବିଶ୍ୱକୋଷରୁ ସେ ସୂକ୍ତଟି ମୁଁ ଲେଖି ଆଣିଥିଲି । ମୋ bundle (କାଗଜପତ୍ର) ଖୋଜିଲେ ସେ କାଗଜଖଣ୍ଡ ମିଳିବ । ମୁଁ ଆପଣଙ୍କୁ ପରେ ଦେଖାଇବି ।

(ମର୍ଦ୍ଦରାଜ ତହିଁ ଆରଦିନ ସେ କାଗଜଖଣ୍ଡିକ ମତେ ଦେଇଥିଲେ ଓ ତହିଁରେ ତଳଲିଖିତ ଶ୍ଳୋକଗୁଡ଼ିକ ଲେଖା ଥିବାର ଦେଖିଲି :-

'ଅଲ୍ଲା'-

ଓଁ ଅସ୍ମଲ୍ଲଂ ଇଲ୍ଲେ ମିତ୍ରାବରୁଣୋଦିବ୍ୟାନି ଧତ୍ତେ ।
ଇଲ୍ଲଲ୍ଲେ ବରୁଣଂ ରାଜା ପୁନର୍ଦ୍ଦୁଃ ।
ଇୟାମି ମିତ୍ରୋ ଇଲ୍ଲାଂ ଇଲ୍ଲଲ୍ଲେତି
ଇଲ୍ଲାଲାଂ ବରୁଣୋ ମିତ୍ରୋ ତେଜକାମାଃ
ହୋବାରମିନ୍ଦ୍ରେ । ହୋତାରମିନ୍ଦ୍ରେ । ମାହାସୁରିନ୍ଦ୍ରାଃ ।
ଅଲ୍ଲୋଜ୍ୟେଷ୍ଠଂ ଶ୍ରେଷ୍ଠଂପରମଂ ପୂର୍ଣ୍ଣଂ ବ୍ରାହ୍ମଣମଲ୍ଲାଂ
ଅଲ୍ଲୋ ରସୁରମହମଦରକଂ ବରସ୍ୟ ଅଲ୍ଲୋ
ଆଲ୍ଲାଂ ଆଦଲ୍ଲାବୁକମେକକଂ ।
ଅଲ୍ଲାଂ ବୁକଂ ନିଖାତକଂ ।
ଅଲ୍ଲୋ ଯଜ୍ଞେନ ହୁତହୁତ୍ୱଃ ଅଲ୍ଲା
ସୂର୍ଯ୍ୟଚନ୍ଦ୍ର ସର୍ବନକ୍ଷତ୍ରାଃ, ଅଲ୍ଲୋ ଋଷିଣାଂ
ସର୍ବଦ୍ୟା ଇନ୍ଦ୍ରାୟ ପୂର୍ବଂ ମାୟା ପରମନ୍ତ
ଅନ୍ତରୀକ୍ଷାଃ, ଅଲ୍ଲୋ ପୃଥିବ୍ୟା ଅନ୍ତରୀକ୍ଷଂ
ବିଶ୍ୱରୂପଂ ଦିବ୍ୟାନି ଧତ୍ତେ, ଇଲ୍ଲଲ୍ଲେ
ବରୁଣୋ ରାଜା ପୁନର୍ଦ୍ଦୁଃ ।
ଇଲ୍ଲାକବର ଇଲ୍ଲାକବର ଇଲ୍ଲଲେତି
ଇଲ୍ଲଲ୍ଲାଃ ଇଲ୍ଲା ଇଲ୍ଲାଲା ଅନାଦି

ସ୍ୱରୂପା ଅଥର୍ବଣୀଶାଖାଂ ହୁଁ ହ୍ରୀଂ
ଜନାନ୍ ପଶୂନ୍ ସିଦ୍ଧାନ୍ ଜଳଚରାନ୍
ଅଦୃଷ୍ଟଂ କୁରୁ କୁରୁ ଫଟ୍ ।
ଅସୁରସଂହାରିଣୀଂ ହୁଁ ଅଲ୍ଲୋରସୁର
ମହମ୍ମଦରକଂ ବରସ୍ୟ ଅଲ୍ଲୋ
ଅଲ୍ଲାଂ ଇଲ୍ଲଲ୍ଲେତି ଇଲ୍ଲଲ୍ଲଃ ।)

ପଣ୍ଡିତ-ମହାଶୟ ସୂକ୍ତଟି ପ୍ରଥମ ଦୁଇ ଧାଡ଼ି ଶୁଣି ଓ ବିଶ୍ୱକୋଷର ନାମ ଶୁଣି-

''ଆଧୁନିକମାନଙ୍କର ନବନବୋନ୍ମେଷଶାଳିନୀ ପ୍ରତିଭା (ପଣ୍ଡିତ-ମହାଶୟ ଅମରକୋଷକୁ ପାଣି ପରି ମୁଖସ୍ଥ କରିଅଛନ୍ତି) ବିସ୍ମୟୋତ୍ପାଦିକା ଆମ୍ଭର ଭୂମିଷ୍ଠାବଧି ଏବଂଭୂତ ସୂକ୍ତର ନାମଧାମୋଲ୍ଲେଖ ଆମ୍ଭର ଶ୍ରୁତିଗୋଚରୀଭୂତ ହୋଇ ନ ଥିଲା । କିଏ ଜଣେ ମିଥ୍ୟାରେ ଏତାଦୃଶ ସୂକ୍ତୋଲ୍ଲେଖ କରିଅଛନ୍ତି । ଏହା ବେଦୋକ୍ତ ସୂକ୍ତ ହୋଇଥିଲେ ଆଜିପର୍ଯ୍ୟନ୍ତ ଅସ୍ମଦ୍‌ଜ୍ଞାତସାରକୁ ଅବଶ୍ୟ ଆସିବାକୁ ଯୋଗ୍ୟ ହୋଇଥାନ୍ତା । କଳିକାଳ ପିଲାଙ୍କ ପ୍ରତି କିଛି ଅସମ୍ଭବ ନୁହେଁ । ମନୋଭାବନ କରି ଲେଖନୀ ଧାରଣ କରିବାରେ ଅକୁଣ୍ଠିତ ।''

ପଣ୍ଡିତ-ମହାଶୟଙ୍କ ମନରୁ ଏ ଅଯଥା ଧାରଣା ଦୂର କରିବାର ପ୍ରୟାସ ବୃଥା ମଣି ମୁଁ ଓ ମର୍ଦ୍ଦରାଜେ କିଛି ଉତ୍ତର ଦେଲୁ ନାହିଁ ।

ମସ୍ତରାମ କହିଲା- ଆରେ ଆଲ୍ଲାଙ୍କୁ ଧର, ନାରାୟଣଙ୍କୁ ଧର, କି ହରପାର୍ବତୀଙ୍କୁ ଧର, କି ଭାଗବତଗୋସେଇଁକି ଧର, ଖାଇବାକୁ ଭଲ ମାଲ ମିଳିଲେ ହେଲା । ଆଗେ ସିନା ଖାଇବା ଜିନିଷ ଭୋଗ ହଉଥିଲା, ଏଣିକି ତ୍ରିନାଥ ମେଳାରେ ଗଞ୍ଜେଇ ସୁଦ୍ଧା ଭୋଗ ହେଲାଣି । ତିନିନାଥଙ୍କୁ ତିନି ଚିଲମ ଗଞ୍ଜେଇ ! ଫେର୍ ଦିନାକେତେ ଗଲେ ଅଫିମ ମଧ୍ୟ ଭୋଗ ହବ । ଗୁଳି (ମଦତ) ମଧ୍ୟ ଭୋଗ ଲାଗିବାକୁ ବେଶି ଦିନ ନାହିଁ । ଖାଲିବେଳେ ସିନା ଗଞ୍ଜେଇ ଟାଣିଲେ ଦୋଷ, ଠାକୁରଙ୍କ ବାନା ଧରି ଠାକୁରଙ୍କ ପ୍ରସାଦ ଗଞ୍ଜେଇ ଯେତେ ଟାଣୁଥାଅ, କାହା ବାପର ମଗଦୁର ଅଛି କେହି କିଛି କହିବ ! କହିଲେ ଠାକୁର ରାଗିଯିବେ ! ପ୍ରସାଦକୁ ନିନ୍ଦା କଲେ ବଡ଼ ଦୋଷ ।

ଆମ୍ଭେମାନେ ଦେଖିଲୁଁ ଯେ, ଆଜି ମସ୍ତରାମର Bioscope (ଜୀବନ୍ତ ଚିତ୍ରପ୍ରଦର୍ଶନ ଯନ୍ତ୍ର) ଅବସ୍ଥା । ଯେଉଁ କଥାଟି ଧରୁଛି, ସେ କଥାର ତତ୍‌କ୍ଷଣାତ୍ ଏକ ଜୀବନ୍ତ ଚିତ୍ର ଆଙ୍କିଦେଉଛି । ସେଥିପାଇଁ କବି କହିଅଛନ୍ତି- ''There is pleasure in being mad, which none but mad men know'' ବାତୁଳ ହେବାର ସୁଖ ବାତୁଳମାନେ ଏକା ଜାଣନ୍ତି । ମନେ ମନେ ବିଚାରିଲି - ମସ୍ତରାମ ତୁ ଏକା ସୁଖୀ - କାହାରି ପ୍ରତିକୂଳ ମତ ପ୍ରତି ତୋର ଭ୍ରୂକ୍ଷେପ ନାହିଁ । ତୋର ସ୍ୱାଧୀନତାର ଦଶମାଂଶ ମୋର ଥିଲେ ମୁଁ କେଡ଼େ

ସୁଖୀ ହୋଇ ନ ଥାନ୍ତି ! ଅମୁକଙ୍କୁ କାଳେ ମୋ କଥା ଭଲ ନ ଲାଗିବ, କାଳେ ଅମୁକ ବିରକ୍ତ ହେବେ; ଅମୁକଙ୍କର ନିଗ୍ରହ ସହ୍ୟ କରିବାକୁ ହେବ, ଅମୁକ ଖଣ୍ଡେ ସୁପାରିସ ଦେବେ ନାହିଁ ପରା, ଅମୁକଙ୍କଠାରେ ପାଉଣାତକ ବୁଡ଼ିଯିବ ପରା, ଏପରି କେତେ ଭୟ କରି ଆମ୍ଭମାନଙ୍କ ମୁହଁ ବନ୍ଦ; କିନ୍ତୁ ତୁ ଯାହା ମନରେ ଭାବୁ, ତାହା ପ୍ରକାଶ କରୁ । ପ୍ରକୃତ କଥା କହୁ- ''ହକ୍ କହେଗା, ଗୁରୁ ଚିଢ଼େଗା ତ ଚିଢ଼େଗା ।'' କବି କହିଛନ୍ତି- ''ହିତଂ ମନୋହାରୀଚ ଦୁର୍ଲ୍ଲଭଂ ବଚଃ ।''

ଏହି ସମୟରେ ଜମିଦାରଙ୍କ ଘରୁ ପୁରୋହିତଙ୍କୁ ଡାକରା ଆସିଲା- ପୁରୋହିତ ପୋଥିପୂଜା ଆରମ୍ଭ କରିବାକୁ ପୋଥି, କାଣ୍ଡ ଇତ୍ୟାଦି ନେଇ ବାହାରିଲେ ଓ ଜମାଦାରବାବୁ, ପଣ୍ଡିତ-ମହାଶୟ, ମହାଜନ ସାହୁ, ଆଖଡ଼ା ଗୁରୁ, ମସ୍ତରାମ ଓ ଉପସ୍ଥିତ ଦୁଇ ତିନୋଟି ଯୁବକ ପୋଥିପୂଜା ଶୁଣିବାକୁ ଗଲେ ।

ଟୁଙ୍ଗିରେ ମୁଁ, ମର୍ଦ୍ଦରାଜେ ମୁକ୍ତ୍ୟାର ଓ ମାଷ୍ଟର-ମହାଶୟ ବାକି ରହିଲୁଁ ।

ମାଷ୍ଟର-ମହାଶୟ କହିଲେ- ଓଃ ! ଗୋଟାଏ load (ବୋଝ)ର ଖଲାସ୍ ପାଇଲି । ଜମାଦାରବାବୁ ଏଠାରୁ ନ ଯିବା ପର୍ଯ୍ୟନ୍ତ ମୋ body (ଶରୀର)ରେ life (ଜୀବନ) ନ ଥିଲା । (ଜମାଦାରବାବୁ ଗ୍ରାମର ଅପର ପ୍ରାଇମେରୀ ସ୍କୁଲର ମ୍ୟାନେଜିଂ କମିଟିର ମେମ୍ୱର ହୋଇଅଛନ୍ତି । ସେଥିନିମନ୍ତେ ଜମାଦାରବାବୁଙ୍କ ଦୁଇ ପୁଅଙ୍କୁ ବିନା ଦରମାରେ ମାଷ୍ଟର-ମହାଶୟ ଦୁଇଓଳି ଘରେ ପଢ଼ାଇବେ । ତାହା ହୋଇ ସୁଦ୍ଧା ଜମାଦାରବାବୁଙ୍କ ମନ ଜଗିବା ଦୁଃସାଧ । ଜମାଦାରଙ୍କ ପିଲାର ଏ ବର୍ଷ ନିମ୍ନ ପ୍ରାଇମେରୀ ବୃତ୍ତି ନ ହେଲେ ମାଷ୍ଟର-ମହାଶୟଙ୍କ ଦରମା କଟାଯିବ ବୋଲି ଜମାଦାରବାବୁ କହିଅଛନ୍ତି । ଏଥି ଉପରେ ଫେର୍ ଏକପଟୀ, ଦୋପଟୀ, ତିନିପଟୀଙ୍କ ପାଖରେ ହାତ ଯୋଡ଼ା, ଅର୍ଦ୍ଦଳି କାମ କରିବା କଥା ତ ଓପରି କାମ ମାସେ ପକ୍ଷକେ ଲାଗିଛି । ଜମାଦାରବାବୁ ଟୁଙ୍ଗିରେ ଉପସ୍ଥିତ ଥିବାଯାକେ ମାଷ୍ଟର ମୂଷାଟି ପରି ବସିଥିଲେ । ଜମାଦାରଙ୍କ ପ୍ରସ୍ଥାନ ସଙ୍ଗେ ସଙ୍ଗେ ମାଷ୍ଟର-ମହାଶୟଙ୍କ ପ୍ରତି ବାକ୍‌ଦେବୀ ପ୍ରସନ୍ନା ହେଲେ ।)

ମୁଁ କହିଲି- ଆଜି ଆଖଡ଼ା ଗୁରୁଙ୍କୁ ଗୁଣିଗାରୁଡ଼ି ବିଷୟରେ ପଦେ ଅଧେ ଶୁଣାଇବାର ଇଚ୍ଛା ଥିଲା; କିନ୍ତୁ ଜମାଦାରବାବୁଙ୍କ ସଙ୍ଗେ ଗୁରୁ ଚାଲିଗଲେ ।

ମାଷ୍ଟର-ମହାଶୟ- ମୁଁ ମଧ୍ୟ ତାଙ୍କୁ (a bit of my heart) ମୋ ମନ କଥାରୁ ପଦେ ଅଧେ (speak) କରି କହିଥାନ୍ତି !

ମର୍ଦ୍ଦରାଜେ କହିଲେ- ମୁଁ ବିଚାରା ଗୁଣିଗାରୁଡ଼ି ବଳରେ ଏ ଗ୍ରାମରେ ଆଦୃତ । କେତେ ଲୋକଙ୍କ ଆଖିରେ ଧୂଳି ପକାଇ ସମ୍ମାନ ପାଉଅଛି । ଆଚ୍ଛା, ସେ କଥା ଆଉ ଦିନେ ହେବ ! 'ପୂଜା ସନ୍ଧ୍ୟାପଦ୍ଧତି' କଥା କିଛି ଆଲୋଚନା କର ।

ମାଷ୍ଟର- ଘଣ୍ଟି (bell) ବାଜିଲେ, ନାକ ବାଳ ଛୁଇଁଲେ, ତାଳି ମାଇଲେ ପୂଜା ହେଲା । ଅନୁସାର ବିସର୍ଗ ଲଗେଇ ପୋଥି ଧରି ଥୋଡ଼ା by heart (ମୁଖସ୍ଥ) କରିନେଲେ ହେଲା ।

ମୁଁ କହିଲି ଶବରେ କି ଆଉ ଜୀବନ ଥାଏ । ଜୀବନ ଗଲାରୁ ପୋତି ନ ପକେଇ ଯେତେ ବେଶି ଦିନ ପକେଇ ରଖିବ, ସେତିକି ବେଶି ଦୁର୍ଗନ୍ଧ ଓ ସଂକ୍ରାମକ ବ୍ୟାଧି ବଢ଼ିବ । ଫିନାଇଲ ଢାଳ, ନଚେତ୍ ପୋତ, ତା ନ ହେଲେ ସର୍ବନାଶ । ପିଲାଏ ବ୍ରତ ହେଲାରୁ ବେଦାଧ୍ୟୟନ ତ ଆରମ୍ଭ ହେବା ଦରକାର । ପାଠରେ ତ ବେଦଜ୍ଞାନ କଥା ଲେଖା ନାହିଁ । ଅଧ୍ୟୟନ ଅର୍ଥ ପୋଥିରୁ ଶୁଦ୍ଧ ଅଶୁଦ୍ଧ ମୁଖସ୍ଥ ଓ ନାକବାଳ ଧରିବା । ପିଲାଏ ସନ୍ଧ୍ୟା ନ କଲେ ଯେ କିରସ୍ତାନ୍ ହୋଇଯିବେ । ଜପତୋନାସ୍ତି ଦୁର୍ଗତିଃ ।

ମୁକ୍ତ୍ୟାରେ ଆଜି ବନ୍ଦ କର । ଟିକିଏ ଆସନ କରିବା (ଆସନ ଶୟନ) । ଆଜି ଷଷ୍ଠୀ, ଚାନ୍ଦ ବୁଡ଼ିଲାଣି, ଛ' ଘଡ଼ି ରାତିରୁ ବଳିଲାଣି, ଏ ଅନ୍ଧକାରରେ କିପରି ଘରେ ପହଞ୍ଚିବା । ଏଥରକ ତୁମର ବିଷୟ ପ୍ରସଙ୍ଗ ବନ୍ଦ କର । ମୁଁ ମହଲତ୍ ମାଗୁଛି । ଆଉ ଦିନେ ସେ କଥା ପକେଇବା ।

ଏହି ସମୟରେ ଗ୍ରାମର ହୀନାମା ଆଈ ବହିର୍ଦ୍ଦେଶ କାର୍ଯ୍ୟ ସାରି ଟୁଙ୍ଗି ଦ୍ୱାର ବାଟେ ଗୃହକୁ ଫେରୁଥିଲେ । ଆମ୍ଭମାନଙ୍କ ମଧ୍ୟରେ ତାଙ୍କର ମାନ୍ୟ ଲୋକ କେହି ନ ଥିବାର ଦେଖି ଟୁଙ୍ଗି ଦ୍ୱାରରେ ଆସି ପହଞ୍ଚିଲେ ଓ ମାଷ୍ଟରଙ୍କୁ ସମ୍ବୋଧନ କରି କହିଲେ -

''ହଇହେ ମାଷ୍ଟରେ ! ତୁମ୍ଭେ ସେ ମସ୍ତାକୁ (ମସ୍ତରାମ) କଣ ଶିଖେଇ ଦେଇଛ କି ? ସେ ଯାଇ ଆମ ଦାଣ୍ଡରେ ଠିଆ ହୋଇ ଗାଁର ବୁଢ଼ୀଙ୍କି ଦେଖେଇ ଶିଖେଇ କେତେ ଉଲୁଗୁଣା ଦଉଛି - କେତେ ଶମ୍ଭୁଛି । କହୁଛି, ମାଷ୍ଟର ମତେ ଶିଖେଇ ଦେଇଛନ୍ତି । ଧଣ୍ଡସଣ୍ଡ କେତେ କଥା ବକୁଛି, ଯା ଶୁଣି ମୋ ମଝିଆଣୀ ବୋହୂ ଏ ଅମାସ୍ୟା ଦିନୁ ମତେ ମାନିବାକୁ ନାହିଁ । ବୁହେ ଲେଖାଏଁ କଳି କରୁଛି । ମୋ ସୁନାକୁ ମସ୍ତା ଅନ୍ଧେଇଷା ଭେଣ୍ଡି କରିଦେଲା । ମଝିଆଣୀକି ଚାରି ବରଷ ହେଲା ଘରକୁ ଆଣିଲିଣି ଯେ, ଆଗେ ତା କାନ କାଟିଲେ ବଚନ ବାହାରୁ ନ ଥିଲା । ଗଛଜଳା ମସ୍ତା ଆମକୁ ଗାଳି ଦେଲାଦିନୁଁ ମୋ ବୋହୂ ମତେ ମାନିବାକୁ ନାହିଁ । କାଲି ଟିକିଏ ତାକୁ ହାତ ଛୁଇଁଦେଲି ବୋଲି ଗର୍ଜନ କରି ସାତ ସାଇ କମ୍ପେଇଲା । ଯେ ଶୁଣୁଛି ସେ ହସୁଛି, ଛି ଛି କରୁଛି ! ତା କଥା ଶୁଣି ପରା ଋଷି ବାଳ ଛିଣ୍ଡେଇ ମରିବ ।''

ମୁକ୍ତ୍ୟାରେ ଟିକିଏ ଫୂର୍ତ୍ତିରେ କହିଲେ, 'ମାଷ୍ଟରବାବୁ, ତୁମେ ପରଘର କିଆଁ ଭାଙ୍ଗୁଛ ?''

ମାଷ୍ଟରବାବୁ ହୀନାମା ଆଈ କିମ୍ବା ମୁକ୍ତ୍ୟାରଙ୍କ କଥା କିଛି ନ ବୁଝିପାରି, ପିଲା ଖାଇ ବସିଲାବେଳକୁ ଥାଳିରୁ ବିରାଡ଼ି ମାଛଭଜା ଖଣ୍ଡକ ଝାମ୍ପିନେଇ ପଳାଇଲେ ପିଲା ବିଚାରା

ଆବାକାବା ହୋଇ କ୍ଷଣକାଳ ଚାହିଁ ରହିଲା ପରି ମୁହୂର୍ତ୍ତେ କର୍ତ୍ତବ୍ୟ ଜ୍ଞାନଶୂନ୍ୟ ହୋଇ ମୁଖ୍ୟାରଙ୍କ ମୁହଁକୁ ଚାହିଁଲେ ।

ମର୍ଦ୍ଦରାଜେ- ମୁଖ୍ତ୍ୟାରବାବୁ, ଏଥିରେ ପର ଘର ଭାଙ୍ଗିବା କଥା କିଛି ନାହିଁ । ଗତ ଥର ସନ୍ଧ୍ୟାବେଳେ ଟୁଙ୍ଗିରେ ଶାଶୂମାନଙ୍କ ଅତ୍ୟାଚାର କଥା ପଡ଼ିଥିଲା । ମସ୍ତରାମ ବୋଧହୁଏ ଗ୍ରାମ ଗ୍ରାମରେ ସେହି କଥା ରାଷ୍ଟ୍ର କରିଛି ।

ହୀନାମା ଆଈ- କେଉଁଦିନ ମୁଁ ବୋହୂକୁ ମାରିଥିଲି ? ଅବସ୍ଥା ଦେଉଥିଲି (ପାଠକ-ମହାଶୟ ! ସ୍ମରଣ ଥିବ, କିଛିକ୍ଷଣ ପୂର୍ବେ ହୀନାମା ଆଈ ତାଙ୍କ ବୋହୂଠାରେ ହାତ ଛୁଇଁଦେବା କଥା ଅସତର୍କ ଭାବରେ କହି ପକାଇଅଛନ୍ତି) କିଏ ଦେଖିଛ ? ମିଛରେ ମତେ ମସ୍ତା ବୁଢ଼େଇ ଦଉଛି । ନିଆଁଲଗା ସବୁ ବୁଢ଼ୀଙ୍କି ଦେଖେଇ ଶିଖେଇ କେତେ କଥା କହୁଛି ମ ! ତୁମେ କଣ ଆମକୁ ଏଡ଼େ 'ନିପାରିଲାର' କରି ଦେଖିଛ ! ଆମ ଆଡ଼କୁ ସିନା କହିବାକୁ କେହି ନାହିଁ ବୋଲି ଯା କରୁଛ ! ଯାହା ମନକୁ ଅଇଲା କହୁଛ ତୁଣ୍ଡରେ ବାଟୁଳି ବାଜୁ ନାହିଁ ! ବୋହୂଯାକ ତୁଳସୀ ଗଛ ହେଲେ ଆମେ ହେଲୁ ବଇରି ! କି ଅଲାଜୁକ କାଳ ହେଲା ! ପଦେ ଅଧେ ଭଲରେ ମନ୍ଦରେ ଆମେ କହିବୁ ନାହିଁ ? ତେବେ ଆଉ ଶାଶୂ ହେଲୁଁ କିଆଁ ? 'ପାଖରେ ଶୁଏ, କାନରେ କୁହେ, ତା କଥା କି ଅନାସ୍ଥା ହୁଏ ?' ଆମକୁ ପଚାରେ କିଏ ?

ମୁଖ୍ତ୍ୟାରେ କହିଲେ- ମାଷ୍ଟରବାବୁ ! ହୁସିଆର୍- (ହୀନାମା ଆଈଙ୍କୁ ସମ୍ବୋଧନ କରି) ମାଉସୀ, କିଛି ପରେଇ ନାହିଁ । ଗାଁର ଯେତେ ଶାଶୂ ଅଛ, ଥରେ ଆମ ସାଙ୍ଗରେ ସହରକୁ ଚାଲ, ନଇଲେ ଆମକୁ ଖଣ୍ଡେ ଖେମତାପତ୍ର ଦିଅ । ଆମେ ସମସ୍ତଙ୍କୁ ଜବତ୍ କରିଦେବା । ଆମେ ବି ଏ କଥା ଆଗରୁ କିଛି କିଛି ଶୁଣିଛୁଁ । ପିଙ୍ଗଳକୋଡ୍ ୫୦୦ ଦଫା ଜଣା ନାହିଁ ପରା ? ତୁମେ ତ ପିଲାଙ୍କୁ ପଢ଼େଇବ, ତୁମର ପର ନାଁରେ ମିଥ୍ୟାପବାଦ ଦେବାର ଆବିଶେକ (ଆବଶ୍ୟକ) କଣ ? ଟୁଙ୍ଗିରେ ବସି ମଉଜି କଲାବେଳକୁ ଉଆରେଣ୍ଟ ଜାରି ହେଲା ବେଳର ବହୁତ ତଫାତ୍ !'' ଦିନାକେତେ ମାମୁଘର ଦେଖିଆସିଲେ ମିଜାସ ଥଣ୍ଡା ହୋଇଯିବ । ତୁମ କାମରେ ତୁମେ, ମୋତେ ପର କଥା କହିବାର ଦରକାର କଣ ?

ମର୍ଦ୍ଦରାଜେ କହିଲେ- ମୁଖ୍ତ୍ୟାରବାବୁ, ଆପଣ କହିଲେ ପର କଥା କହିବାର ଦରକାର କଣ ? କିନ୍ତୁ ମାଷ୍ଟରେ ତ ପର କଥା କହି ନାହାନ୍ତି, ଘର କଥା କହିଅଛନ୍ତି । ଯେବେ ସେ କଥାରେ କିଛି ମିଛ ଥାଏ, ତେବେ ତହିଁର ପ୍ରତିବାଦ କରନ୍ତୁ, ଧମକ ଦେଉଛନ୍ତି କିଆଁ ? ଦାଣ୍ଡଲୋକ କହିଲେ ସହିବେ, କିନ୍ତୁ ଯେବେ ଆପଣା ଭିତରୁ କିଏ କହିଲା, ତେବେ ତା ଉପରେ ରାଗ ! 'କାଣୀ ବିରାଡ଼ି କୁଜି ଅସର୍ପା ଉପରକୁ ରଜା ।' କଥାରେ କହନ୍ତି, 'ସୁନାମୁଦିଆ ହାତରୁ ଟାକର ଖାଇଲେ ଗଙ୍ଗାସ୍ନାନର ଫଳ ।' ମାଷ୍ଟର-ମହାଶୟ କହିଦେଲେ ବୋଲି ଏତେ ଡରାଣ । ମୁଖ୍ତ୍ୟାରବାବୁ, ଆପଣ ବିଚାରନ୍ତୁ ନାହିଁ ଯେ, ଆଇନ୍

କାନୁନ୍ ମୁଣିଟା ବିଶ୍ୱାମିତ୍ର ଆପଣଙ୍କ ଉପରେ ଝାଡ଼ି ଦେଇଛନ୍ତି । କାଲି ଥରେ ସେ ଦିନର ଟିପ୍‌ପଣୀ ଦେଖିବେ ଓ ଆପଣଙ୍କ ଅପବାଦ ଦଫାଟା ତା ସଙ୍ଗରେ ମିଳାଇବେ । ଆପଣ ପୋଥିରୁ ଯେଉଁ ନଜିର ବାହାର କରି କଥା କହୁଛନ୍ତି, ତାକୁ କାଟିବାର ଅନେକ ବଢ଼ିଆ ନଜିର ଅଛି । ଯେ କାଦୁଅରେ ପଶିଥାଏ, ସେ ଗୋଡ଼ ଧୋଇବା ଉପାୟ ଆଗରୁ କରିଥାଏ । ଆଇନ୍ ଆପଣଙ୍କର ନୁହେଁ । ଆଇନ୍‌ର ଉଦ୍ଦେଶ୍ୟ ଖୁବ୍ ମହତ୍ । ଗୁପ୍ତ କ୍ରୋଧ ବା ହିଂସା ଚରିତାର୍ଥ କରିବାକୁ କଣ୍ଟାବାଡ଼ରେ ଲୁଗା ପକାଇ କଜିଆ କରିବା ଉଚିତ ? (ମାଷ୍ଟରେ ଦିନେ ମୁଖ୍ୟାରଙ୍କ ସାନପୁଅକୁ ପଢ଼ା ନ ଆସିବାରୁ ପାହାରେ ପକାଇ ଥିଲେ । ମୁଖ୍ୟାରେ ଆଜି ସୁଯୋଗ ପାଇ ପ୍ରତିଶୋଧ ନେବାକୁ ବସିଥିଲେ । କିନ୍ତୁ ମର୍ଦ୍ଦରାଜେ ସବୁ ବିଗାଡ଼ିଦେଲେ ।)

'All's well that ends well' 'ମଧୁରେଣ ସମାପୟେତ୍' ଏ ଉକ୍ତିର ଅନୁସରଣ କରି ମୁଁ ଉଭୟ ପକ୍ଷଙ୍କୁ ବୋଧ କରି ୟାଙ୍କ ଆଡ଼କୁ ଦି'ପଦ ତାଙ୍କ ଆଡ଼କୁ ଦି'ପଦ କହି କଜିଆ ମୀମାଂସା (ମୁଖ୍ୟାର କହନ୍ତି, ନିମାଂସା) କରିଦେଲି ଓ ଏ' କଥା ବୁଝିବା ବୋଲି ହୀନାମାଆଇକୁ ସାନ୍ତ୍ୱନା ଦେଲାରୁ ସମସ୍ତେ ଟୁଙ୍ଗିରୁ ପ୍ରସ୍ଥାନ କରି ଜମିଦାରଙ୍କ 'ପୂଜା'ଠାରେ ଉପସ୍ଥିତ ହେଲୁଁ । କିନ୍ତୁ ମୁଖ୍ୟାରଙ୍କ 'ମୁଣ୍ଡ ଧରିଛି' ବୋଲି ମୁଖ୍ୟାରେ ନିଜ ଗୃହକୁ ଗଲେ । (ମୁଁ ମନେ ମନେ ବିଚାରିଲି ଯେ, ଗତ ସନ୍ଧ୍ୟାରେ ମାଷ୍ଟରଙ୍କର ସ୍ୱରଟା ଟିକିଏ ଚଢ଼ା ଥିଲା । ମସ୍ତରାମ ତ ପାଗଳ, ତା କଥା ଛାଡ଼ । 'ଶନୈଃ ପନ୍ଥା, ଶନୈ କନ୍ଥା, ଶନୈଃ ପର୍ବତଲଘଂନଂ । କୌଣସି କଥା କରିବାକୁ ହେଲେ ଟିକିଏ ନମ୍ରଭାବରେ କଲେ ତାହାର ଫଳ ଶୀଘ୍ର ଫଳେ । ଗ୍ରାମର ଶାଶୂମାନେ ଚିଡ଼ିଗଲେ ଲାଭ ଏତିକି ହେବ ଯେ, ବୋହୂମାନଙ୍କ ଉପରେ ଅତ୍ୟାଚାରର ମାତ୍ରା ବଢ଼ିବ, ଦିଅଁ ଗଡୁ ଗଡୁ ମାଙ୍କଡ଼ର ପନ୍ଥା ପ୍ରତି ଦୃଷ୍ଟି ରଖିବା ଉଚିତ ।)

ଉତ୍କଳ ସାହିତ୍ୟ/୫ମ ଭାଗ/୪ର୍ଥ ସଂଖ୍ୟା/୧୩୦୮ ସାଲ ।

## ଅଷ୍ଟମ ସନ୍ଧ୍ୟା

''ଆହା ! ଗୋଟିଏ ଗୋଟିଏ କ୍ଷୁଦ୍ର କ୍ଷୁଦ୍ର ଘଟନା ଦେଖିଲେ ବା ଦୁଇ ଧାଡ଼ି ପଢ଼ିଲେ ମନରେ କେତେ ପ୍ରକାର ଅତୀତର ସ୍ମୃତି ଜାଗରୂକ ହୁଏ ! ମନୁଷ୍ୟ ପୁନର୍ଜନ୍ମ ଲଭି ଆଉ ଥରେ ବାଲ୍ୟାବସ୍ଥା ଲାଭ କରିବାକୁ ଉତ୍କଣ୍ଠିତ ହୁଏ !'' ଆଜି ମୋର କନିଷ୍ଠ ଛାନ୍ଦମାଳାରୁ -

'ଆଖୁ ଭାଙ୍ଗି ରସ ମଧୁର ପିଇ ବାଳକଗଣ
ବୁଲନ୍ତି ଚୌଦିଗେ, ହରଷେ ପୂରିଅଛି ବଦନ'

ପଢୁଥିବାର ଶୁଣି ମୋ ମନ ଅତୀତ ସ୍ମୃତିରେ ପୂର୍ଣ୍ଣ ହୋଇଥିଲା । ମର୍ଦ୍ଦରାଜଙ୍କର ଏହି ଉକ୍ତିଟି ଶୁଣି ମୁଁ ବିମୋହିତ ହୋଇଗଲି ।

ମାଷ୍ଟର-ମହାଶୟ କହିଲେ, ମୁଁ ସେଥିପାଇଁ Cuckoo (କୋକିଳ) ବିଷୟରେ poem (ପଦ୍ୟ) ଲେଖିଥିଲି, କିନ୍ତୁ ତାକୁ କେହି like (ଆଦର) କଲେ ନାହିଁ ।

ମୁଁ ମନେ ମନେ ବିଚାରିଲି ଯେ, ବାଲ୍ୟସ୍ମୃତି କିମ୍ବା ଅତୀତ ସ୍ମୃତିରେ ପୂର୍ଣ୍ଣ ରଚନା ସିନା ଭଲ ଲାଗିବ; କିନ୍ତୁ ମାଷ୍ଟର-ମହାଶୟଙ୍କ ଇଂରାଜୀ ମିଶା ଓଡ଼ିଆ ଯମକ ବା କିପରି ଭଲ ଲାଗିବ ?

ରାମହରି ମିଶ୍ରେ କହିଲେ (ରାମହରି ମିଶ୍ରେ ଏଥିପୂର୍ବେ ଆମ୍ଭମାନଙ୍କଠାରୁ ମାଷ୍ଟରଙ୍କ ପଦ୍ୟର ଆନୁଷଙ୍ଗିକ ବର୍ଣ୍ଣନା ଶୁଣିଥିଲେ) ମାଷ୍ଟର-ମହାଶୟ !

Full many a flower is born to blush unseen
And waste its sweetness on the desert air.

ଆପଣଙ୍କ ପଦ୍ୟ ଆଦୃତ ନ ହୋଇ 'ବନର ମାଲତୀ' ପରି ବନେ ଫୁଟି ଝଡ଼ିଲା । ମାଷ୍ଟର-ମହାଶୟ ! ଆପଣ ମନରେ ଦୁଃଖ କରନ୍ତୁ, କିନ୍ତୁ ମତେ ମନଜଗା କଥା ଆସେ ନାହିଁ । ଏପରି ଅନେକ ଲୋକ ଅଛନ୍ତି, ଯାହାଙ୍କୁ 'ଅପ୍ରିୟ ସତ୍ୟ' ନ କହିଲେ ସେମାନେ ଆପଣାର ନିର୍ବୁଦ୍ଧିତା ସ୍ୱୀକାର କରିବାକୁ ରାଜି ହୁଅନ୍ତି ନାହିଁ । ଆପଣଙ୍କ ପଦ୍ୟର ମଧୁରତା ପୂର୍ବରୁ ଜଣାଯିବାରୁ ଆପଣଙ୍କ ପଦ୍ୟ ଟୁଙ୍ଗିରେ ପ୍ରକାଶିତ ହେଲା ନାହିଁ । ଓଡ଼ିଆମିଶା ଇଂରାଜୀ କବିତା, କବିତା ପଦବାଚ୍ୟ ନୁହେଁ । ତା ଉପରେ ପୁଣି ଆଦ୍ୟ ପ୍ରାନ୍ତ ଯମକ ! ଯାହାକି ଆଧୁନିକ ଇଂରାଜୀ କବିତାରେ ଘୃଣ୍ୟ ଓ ପରିହାର୍ଯ୍ୟ । ଇଂରାଜୀ କବିତା ରଚନା କରିବାକୁ ହେଲେ ପ୍ରଗାଢ଼ ବିଦ୍ୟା ଓ ସ୍ୱରନିୟମରେ ପାଣ୍ଡିତ୍ୟ ଆବଶ୍ୟକ । ଗୋଟିଏ ସାଧାରଣ ନିୟମ ଆପଣ ଜାଣି ରଖନ୍ତୁ, ଯେବେ କୌଣସି ରଚନାରେ କିଛି ବାହାଦୁରି ବା କୃତିତ୍ୱ ଥାଏ, ତାହା ପାଞ୍ଚଜଣଙ୍କ ଆଗରେ ପଢ଼ିଲେ ଅବଶ୍ୟ ଅନ୍ତତଃ କେହି ତାହା ଆଗ୍ରହ ସହକାରେ ଗ୍ରହଣ କରିବେ । ଅନେକ ଲୋକ ଦୁଃଖ କରନ୍ତି ଯେ ସେମାନଙ୍କ ରଚନାକୁ ସର୍ବସାଧାରଣ କିମ୍ବା ସମ୍ପାଦକମାନେ ଗ୍ରାହ୍ୟ କଲେ ନାହିଁ । (ଅବଶ୍ୟ ଦୈପାତନିକ ଦୃଷ୍ଟାନ୍ତମାନ ଛାଡ଼ି ଦିଅ ।) ସମାନଙ୍କ ମଧ୍ୟରୁ ଅଧିକାଂଶ ଏଡ଼େ ନିର୍ବୋଧ ଯେ, ସେମାନେ ଇଙ୍ଗିତରେ କୌଣସି ବିଷୟ ବୁଝିପାରନ୍ତି ନାହିଁ ଓ ମୁହେଁ ମୁହେଁ ପ୍ରହାର ନ ପାଇବାଯାକେ ଆପଣାର ଦୋଷ ବୁଝିପାରନ୍ତି ନାହିଁ । କାଲି ଆପଣ ମୋ ନିକଟକୁ ଆପଣଙ୍କ ପଦ୍ୟଟି ଆଣିବେ, ମୁଁ ଆପଣଙ୍କୁ ଉତ୍ତମରୂପେ ବୁଝାଇଦେବି ।

ମୁଁ କହିଲି ଯେ ଆପଣା ନିର୍ବୁଦ୍ଧିତା ବୁଝି ନ ପାରେ ତାକୁ 'ପ୍ରିୟ ସତ୍ୟଂ' କହି କି ବୁଝାଇ ହେବ ନାହିଁ ?

ରାମହରି ମିଶ୍ର କହିଲେ, ଅନୁଭବ କରି ନାହାନ୍ତି । ନିର୍ବୋଧଙ୍କୁ ବୁଝାଇ ସମୁଝାଇ ବୋଧ କରିବା ଅନେକ ସ୍ଥଳରେ ଅସମ୍ଭବ ।

ପଣ୍ଡିତ-ମହାଶୟ କହିଲେ, 'ଆକାରୈରିଙ୍ଗିତୈର୍ଗତ୍ୟା ଚେଷ୍ଟୟା ଭାଷିତେନ ଚ ନେତ୍ରବକ୍ତ୍ର ବିକାରୈଶ୍ଚ ଗୃହ୍ୟତେନ୍ତର୍ଗତଂ ମନ ।' ଆମ୍ଭ ମତରେ ଯେଉଁ ଲୋକ ବାକ୍ୟରେ ବୋଧ ନ ହେବେ, ଈଦୃଶ ଲୋକ ପ୍ରତି ନେତ୍ର ବକ୍ତ୍ର ବିକାର ଆବଶ୍ୟକୀୟଭୂତ । କିନ୍ତୁ 'ଭାଷିତ' ଦ୍ୱାରା ପରୀକ୍ଷା ନ କରି 'ନେତ୍ରବକ୍ତ୍ରବିକାର' ଆଦୌ ପ୍ରଯୋଜ୍ୟ ନୁହେଁ ।

ମର୍ଦ୍ଦରାଜ- ଆପଣ ଯାହା କହିଲେ ତାହା ଅନେକ ସ୍ଥଳରେ ସତ୍ୟ; କିନ୍ତୁ କେତେ ପ୍ରସ୍ଫୁଟନୋନ୍ମୁଖ କବି ଓ ରଚକ ଏହିପରି ଅକାଳ କରକାପାତରେ ଶୁଖି ଝଡ଼ି ପଡ଼ିଅଛନ୍ତି, ଥରେ ବିଚାର କରି ଦେଖନ୍ତୁ । ବିଶେଷତଃ ଯଦି ସେ କରକାପାତ ଅସମୟରେ ଓ ସମ୍ୟକ୍ ବିଚାର ବିନା ହୋଇଥାଏ !

ରାମହରି ମିଶ୍ର- ମର୍ଦ୍ଦରାଜେ ! ସବୁ ନିୟମର ନିପାତନସିଦ୍ଧ ଅଛି । ସେହିପରି ସବୁ କ୍ଷମତାର ଅପବ୍ୟବହାର ଅପରିହାର୍ଯ୍ୟ । ଯେଉଁ ଅସ୍ତ୍ରଦ୍ୱାରା ଦୁର୍ବଳ ଓ ବିପଦଗ୍ରସ୍ତ ଲୋକଙ୍କୁ ଉଦ୍ଧାର କରାଯାଏ, ସେହି ଅସ୍ତ୍ରଦ୍ୱାରା ନିର୍ଦ୍ଦୋଷ ପ୍ରାଣୀ ମଧ୍ୟ ହତ ହୁଏ । ଅତଏବ ସବୁ କ୍ଷମତା ଓ ନିୟମ (ବିଶେଷତଃ ତୀକ୍ଷ୍ଣଧାର ନିୟମ) ଅତି ସାବଧାନତା ସହିତ ପ୍ରୟୋଗ କରିବା ବିଧେୟ । ନିପାତନ ଅବସ୍ଥାର ଉପସ୍ଥିତିରେ ସାଧାରଣ ନିୟମର ଅସତ୍ୟତା ପ୍ରତିପନ୍ନ ହୋଇ ନ ପାରେ । ତାହାହେଲେ ଥରେ ବାତୁଳାଶ୍ରମ ବୁଲି ଦେଖି ଆସିଲେ "Man is a rational being' (ମନୁଷ୍ୟ ବିଚାରବନ୍ତ ପ୍ରାଣୀ), ଏ ସାଧାରଣ ନିୟମର ସତ୍ୟତା ରହନ୍ତା ନାହିଁ ।

ମର୍ଦ୍ଦରାଜ- ଆମ୍ଭମାନଙ୍କ କଥାପ୍ରସଙ୍ଗକୁ ଚାଲନ୍ତୁ । ଆଜି ଅତୀତର ସ୍ମୃତି କଥା ପଡ଼ିଥିଲା । ମୁଁ Wordsworth, Shelley, Keats, Goldsmith ଇତ୍ୟାଦିଙ୍କର କବିତା ପଢ଼ୁ ପଢ଼ୁ ଅତୀତର ସ୍ୱର୍ଗରେ କ୍ଷଣକାଳ ପାଇଁ ବାସ କରେ । ଶକୁନ୍ତଳା, କୁମାରସମ୍ଭବ ଇତ୍ୟାଦିର ଅନେକ ସ୍ଥାନ ଅତୀତର ସ୍ମୃତି ଜାଗରୂକ କରିଦିଏ । ମନେ କରନ୍ତୁ, "In secret we met, in silence I grieve, Strongest minds are often those of whom the noisy world hears least.'

Smiling they leave and call life pleasure,
To me that cup has been dealt in another, measure,
ଅଦ୍ୟପ୍ରଭୃତ୍ୟବନତାଙ୍ଗ ତବାସ୍ମିଦାସଃ'

ଏ ଶ୍ଳୋକଗୁଡ଼ିକ ଦେଖିଲେ ମନକୁ କେତେ କଥା ଆସି ଘାଣ୍ଟିପକାଏ ।

ରାମହରି ମିଶ୍ର କହିଲେ- ଆପଣଙ୍କ Byron, Wordsworth, Shelley, କାଳିଦାସଙ୍କୁ ଛାଡ଼ନ୍ତୁ । Birdseye ଚୁରଟ ବାକ୍ସ ଉପରେ ଯେଉଁ ଛବି ମାରିଥାଏ,

ଥରେ ଗୋଟିଏ ଛବି ଦେଖି ମୋ ମନରେ କେତେ ଅତୀତ ଚିତ୍ର ଅଙ୍କିତ ହୋଇଗଲା । ସେ କାର୍ଡ଼ ଖଣ୍ଡକରେ ଏହା ଲେଖାଥିଲା -

"Sometime sweet heart, when beauty's bloom
Shall fade and sorrow's frost
Shall rest upon the silent tomb
Of joys for ever lost,
Though all the world should seem to shun
Thy glance, and pass thee by,
O then sweet heart, remember one
Whose love will never die."

ମୁଁ କହିଲି- ଓଡ଼ିଆ ଭାଷାର ନ୍ୟାଯ୍ୟ ପ୍ରାପ୍ୟ ତାକୁ ଦିଅନ୍ତୁ । ଭଞ୍ଜ କବିଙ୍କ ବୈଦେହୀଶବିଳାସ ପୁଣି ଛାନ୍ଦମାଳା, ଉପହାର, ପୁଷ୍ପମାଳା, ପଲ୍ଲୀଚିତ୍ର ଓ ନିର୍ଝରିଣୀ ଇତ୍ୟାଦିରେ ଯେତେ ଅତୀତର ସ୍ମୃତି ଉଦ୍‌ଘାଟିତ ହୁଏ, ବୋଧହୁଏ ଅନ୍ୟ ସାହିତ୍ୟଲିପିମାନ ଆମ୍ଭମାନଙ୍କ ମନକୁ ଏତେ ସ୍ମୃତି ଆଣିପାରିବ ନାହିଁ । ପ୍ରକୃତ କଥା କହିବାକୁ ଗଲେ ଅଧିକାଂଶ ଛାନ୍ଦମାଳାର ଭାଷା ଘରୋଇ ଭାଷା ହୋଇ ଯାଉଅଛି । କହିବାକୁ ଲଜ୍ଜା ହେଉଅଛି, ଜଣେ କୃତବିଦ୍ୟ ଯୁବକ (ଗୋଟିଏ ମାଇନର ସ୍କୁଲର ହେଡ୍‌ପଣ୍ଡିତ) 'ମେଘ ବଲଛଇ ତପଲ ତପଲ କେଣ୍ଟୁଲ ମାଇଲା ଗଜା' ଏହାକୁ ହସରେ ଉଡ଼ାଇ ଦେଲେ । କହିଲେ, 'ଛି ! ଏଗୁଡ଼ାକ ସାହିତ୍ୟର ଆବର୍ଜନା । ଅତୀତର ଓ ବିଶେଷତଃ ବାଲ୍ୟକାଳର ସ୍ମୃତି କି ଆନନ୍ଦମୟ, ଏ କଥା ଦିନେ ସେ ସ୍ୱପ୍ନରେ ସୁଦ୍ଧା ଦେଖି ନାହାନ୍ତି । ମୁଁ ଦିନେ କବିତାବଳୀ ପ୍ରଥମ ଭାଗ ଦେଖୁଥିଲି । ସେ କହିଲେ, ତୁମେ ବଡ଼ ହେଲଣି, ଆଉ କବିତାବଳୀର 'ଶରତ ପ୍ରଭାତ' କଣ ପଢୁଛ ? ଅତୀତ ସ୍ମୃତି ଓ ବାଲ୍ୟସ୍ମୃତି ବୃଦ୍ଧାବସ୍ଥାର ଗୋଟିଏ ପ୍ରାର୍ଥନୀୟ ଓ ଅପରିହାର୍ଯ୍ୟ ସମ୍ବଳ । ଯାହାର ଏହା ନାହିଁ, ସେ 'ଚରତ୍ୟସୌ କିନ୍ତୁ ତୃଣାନ୍ନ ଭୁଂକ୍ତେ' । ବଳଙ୍କର ନିର୍ଝରିଣୀ ଓ ପଲ୍ଲୀଚିତ୍ର, ସେନାପତିଙ୍କର ଉପହାର ଓ ପୁଷ୍ପମାଳା, ରାଓଙ୍କର ଛାନ୍ଦମାଳା ଓ କବିତାବଳୀର କେତେ ଅଂଶ ଛତ୍ରେ ଛତ୍ରେ ବାଲ୍ୟସ୍ମୃତି ଗ୍ରାମ୍ୟସ୍ମୃତି ଢାଳି ଦେଉଅଛି ।

ରାମହରି ମିଶ୍ରେ- ଅତୀତର ସ୍ମୃତି ଅବଶ୍ୟ ମୂଲ୍ୟବାନ୍, କିନ୍ତୁ ବ୍ୟକ୍ତିବିଶେଷର ଅନୁଭବର ପାର୍ଥକ୍ୟ ହେତୁ ତାହା ବିଭିନ୍ନ । ଯାହା ଆପଣଙ୍କୁ ଭଲ ଲାଗିବ, ମତେ ତାହା ଭଲ ନ ଲାଗିପାରେ । ଆପଣଙ୍କର ମୋର ଅନୁଭବ ସମାନ ହୋଇ ନ ଥିଲେ ଯେଉଁ ପୁସ୍ତକ ପଢ଼ି ଆପଣ ଅତୀତର ସ୍ମୃତିରେ ବୁଡ଼ିଯିବେ, ମୁଁ ତାକୁ ନୀରସ ମଣିବି । ଉଦାହରଣସ୍ୱରୂପଃ- ମୁଁ ରାୟ କବିଙ୍କର ଉତ୍କଳର ପ୍ରାକୃତିକ ଦୃଶ୍ୟଗୁଡ଼ିକ ପ୍ରଥମ ସ୍ଥାନ ଦେଇଅଛି । ଏ ସବୁ ବ୍ୟକ୍ତିବିଶେଷଙ୍କ ରୁଚିଭେଦର ଫଳ ।

ପଣ୍ଡିତ-ମହାଶୟ- ଅହୋ ! ଆମ୍ଭର ବାଲ୍ୟ ସହଚର, ବାଲ୍ୟ କ୍ରୀଡ଼ା ଇତ୍ୟାଦି ମନେ ପଡ଼ିଲେ କିଂଭୂତ ଆନନ୍ଦୋପଲବ୍ଧି ହୁଏ, ତାହା ରସନାତୀତ । ବାଲ୍ୟକାଳୀନ ସ୍ଥାନ ଓ ବସ୍ତୁମାନ ନୟନଗୋଚରୀଭୂତ ହେଲେ ଆମ୍ଭେ ପ୍ରେମ ପାରାବାରରେ ଆନାସିକ ମଗ୍ନ ହେଉଁ । ବାଲ୍ୟକାଳର ନିରୀହ ଓ ନିଷ୍କପଟ ଅବସ୍ଥା ସହ ସମୟର କପଟାଚାର କିଂଭୂତ ପୈଶାଚିକ ରୂପେ ତୁଳନୀୟ ହୁଏ । ସେ ଦିବସମାନ କେଉଁଆଡ଼େ ଚାହୁଁ ଚାହୁଁ ଚାଲିଗଲା । ମନୁଷ୍ୟ ସହଜରେ ବୃଦ୍ଧାବସ୍ଥା ଆକ୍ରମଣର ବଶ୍ୟତା ସ୍ୱୀକାର କରିବାକୁ ନିତାନ୍ତ ଅନିଚ୍ଛୁକ । ନିତାନ୍ତ ଅପ୍ରସ୍ତୁତ ନ ହେଲେ 'ବୃଦ୍ଧୋଽହଂ' ଏବଂଭୂତ ବାକ୍ୟୋଚ୍ଚାରଣ କରିବାକୁ ପ୍ରାୟ ଅଧିକାଂଶ ନାରାଜ ।

ଏହି ସମୟରେ ଗ୍ରାମର ଜମିଦାରଙ୍କ ସରଦାର ରାମ ବେହେରା ଆସି ଟୁଙ୍ଗିରେ ଉପସ୍ଥିତ ହେଲା । ଜମିଦାରଙ୍କ ନିକଟରେ କିଛି କାର୍ଯ୍ୟ ଥିଲେ ସରଦାରଙ୍କର ଅନୁଗ୍ରହ ନ ହେଲେ ସବୁ ବ୍ୟର୍ଥ । ସରଦାରଙ୍କ କୋପଦୃଷ୍ଟି ହେଲେ ଗ୍ରାମରେ ଦଣ୍ଡେ ଚଳିବା ଅସମ୍ଭବ । ବିଶେଷତଃ ଆମ୍ଭେମାନେ ମଫସଲର ଗ୍ରାମବାସୀ, ଅଚ୍ଚ ବହୁତ ସମସ୍ତେ ଜମିଦାରଙ୍କ ଅନୁଗ୍ରହ ଉପରେ ନିର୍ଭର କରୁଁ ଓ ଅନେକ ବିଷୟର ଅଭାବ ଜମିଦାରଙ୍କ ଅନୁଗ୍ରହରୁ ଦୂରୀଭୂତ ହୁଏ । (ଯେଉଁମାନେ ସହରରେ ଥାଇ ରାମ ସାହୁ ମୁଦି ଦୋକାନରୁ ଡାଲି, ଚାଉଳ, ତେଲ, ଲୁଣ, କାଠ ଖରିଦ କରି ଚଳନ୍ତି, ସେମାନେ ଉପରିଲିଖିତ ପ୍ରତିଜ୍ଞା ସହଜରେ ବୁଝି ପାରିବେ ନାହିଁ ।) ରାମ ବେହେରା ବାର୍ଷିକ ୧୨ ଟଙ୍କା ଦରମା ପାଏ । ତା ମଧ୍ୟ ଚାରି ପାଞ୍ଚ ବର୍ଷ ହେଲା ବାକି, କିନ୍ତୁ ସେ ପ୍ରାୟ ଦୁଇହଜାର ଟଙ୍କାର ବିଷୟ କରିଛି । ସେଥିପାଇଁ କହନ୍ତି, 'ସନ୍ତଃ ସଦାଭିଗନ୍ତବ୍ୟା ଯଦ୍ୟପ୍ୟୁଦିଶନ୍ତି ନ । ଯାହି ସ୍ୱୈରକଥ ସ୍ତେଷାମୁପଦେଶା ଭବନ୍ତି ନଃ ।' ଦରମା ପଛକେ ନ ମିଳୁ କିନ୍ତୁ ତେବେ ସୁଦ୍ଧା ଲାଭ । ରାମ ବେହେରା ଜମିଦାରଙ୍କ ଅନୁମତି ପାଇ ଆପଣା ପୁଅଟିକି ସ୍କୁଲରେ ପଢ଼ାଇବାର ଆଶା ବାନ୍ଧିଛି । ପୁଅ ମୁକ୍ତ୍ୟାରୀ ଖଣ୍ଡେ ପାସ୍ କଲେ ଅନ୍ତତଃ ଜମିଦାରଙ୍କ କାର୍ଯ୍ୟତକ ତ ସୁଚାରୁରୂପେ ଚଳାଇବ ! ଆଜି ଏତକ କାର୍ଯ୍ୟ ଅଛି ବୋଲି ରାମ ବେହେରା ଟୁଙ୍ଗିରେ ଉପସ୍ଥିତ ।

ରାମ ବେହେରା ମାଷ୍ଟର-ମହାଶୟଙ୍କୁ କହିଲା- ମାଷ୍ଟରେ ! ତୁମେ ବାବୁଙ୍କ ପାଖରେ କାଠ ଗଛ ପାଇଁ ଅନୁସରଣ କରିଥିଲ । ମୁଁ ତହସିଲଦାରଙ୍କଠାରୁ ଖଣ୍ଡେ ହୁକୁମନାମା କରେଇଦେବି । ମୋ ପିଲାଟିକି ଏଠେଇଁ ଆଣି ତୁମ ପାଖରେ ପକେଇବି । ପିଲାଟି କିମିତି ଦି'ଅକ୍ଷର ଶିଖନ୍ତା !

ମାଷ୍ଟର-ମହାଶୟ- (ଭବିଷ୍ୟତରେ କେତେ ଚିତ୍ର ମାଷ୍ଟରଙ୍କ ମନରେ ଅଙ୍କିତ ହୋଇଗଲା । ତା ହେଲେ ରାମ ବେହେରା ମାଷ୍ଟରଙ୍କର ନିଜସ୍ୱ ହେବ ଓ ମାଷ୍ଟର-ମହାଶୟଙ୍କ ଭାଗ୍ୟରେ ଅନେକ ସିଧା ସାମଗ୍ରୀ, କାଠଗଛ ଓ ଦେଢ଼ି ଧାନ ଜୁଟିବ) ବେଶ୍

କଥା ମୁଁ ତ ତୁମକୁ ସେ thing (ଓଃ ରାମ୍) ବିଷୟ କହିବାକୁ ବସିଥିଲି । ତୁମକୁ God (ଓ।) ଈଶ୍ୱର କଣ ନ କରିଛନ୍ତି । ତୁମ boy (ପିଲା) ନ ପଢ଼ିବ, ଆଉ କିଏ ପଢ଼ିବ ?

ରାମ ବେହେରା- ମୁଁ ନାହାକକୁ ଡାକି ଦିନ ଠିକ୍ କରିଛି, ସୁନିଆଁ ବାସି ଦିନ ମୋ ପୁଅ ଘରୁ ଅନୁକୂଳ କରି ଆସିବ- ଏହା କହି ଟୁଙ୍ଗିରୁ ପ୍ରସ୍ଥାନ କଲା । (ରାମ ବେହେରାର ସମୟ ବଡ଼ ମୂଲ୍ୟବାନ୍ । ସେ କହେ ଯେ ତାକୁ ମରିବାକୁ ସୁଦ୍ଧା ଫୁରୁସତ୍ ନାହିଁ । ବଡ଼ ବଡ଼ ବାରିଷ୍ଟର ବା ଓକିଲମାନଙ୍କର ସମୟର ମୂଲ୍ୟ ନିରୂପିତ ହୋଇଅଛି । କିନ୍ତୁ ରାମ ବେହେରାର ସମୟ ଅମୂଲ୍ୟ ବା ନିର୍ମୂଲ୍ୟ ।)

ମାଷ୍ଟର-ମହାଶୟ ଅତି ଦ୍ରୁତବେଗରେ ବସାରୁ ନୂତନ ପଞ୍ଜିକା ଖଣ୍ଡକ ଆଣିବାକୁ ଗଲେ । ସୁନିଆଁ କେଉଁଦିନ ପଡ଼ିବ, ଏ କଥା ସ୍ଥିର ନ କରିବା ପର୍ଯ୍ୟନ୍ତ ମାଷ୍ଟର-ମହାଶୟ ଅସ୍ଥିର ।

ମାଷ୍ଟରଙ୍କ ଅନୁପସ୍ଥିତିରେ ମର୍ଦ୍ଦରାଜ କହିଲେ, ଆଜି Brewer's Dictionary ଦେଖୁଁ ଦେଖୁଁ 'ଜଗନ୍ନାଥ' ଶବ୍ଦର ଅର୍ଥ ଦେଖି ହାସ୍ୟ ସମ୍ବରଣ କରିପାରିଲି ନାହିଁ ।

ପଣ୍ଡିତ-ମହାଶୟ ଚିତ୍କାର କଲେ, 'ବିଦେଶୀୟ ଭାଷାନଭିଜ୍ଞ ମାଦୃଶମାନଙ୍କ ସମ୍ମୁଖରେ କତିପୟ ବିଜାତୀୟ ଭାଷାସମ୍ବନ୍ଧୀୟ ବାକ୍ୟ ଓ ବିଷୟମାନ ବ୍ୟବହାର ନ କରି ଆମ୍ଭର ଅନୁପସ୍ଥିତି ଏକାନ୍ତ ପ୍ରାର୍ଥନୀୟ ବୋଲି ଆମ୍ଭଙ୍କୁ ସ୍ପଷ୍ଟତଃ କହିଲେ ଆମ୍ଭେ ଏଠାରୁ ସ୍ଥାନାନ୍ତରିତ ହେବୁଁ । ଆମ୍ଭର ଅବୋଧଗମ୍ୟ ବିଷୟମାନ ଆମ୍ଭ ନିକଟରେ ଚର୍ଚ୍ଚାକରି ଆମ୍ଭଙ୍କୁ ଅପମାନୀକୃତ କଲେ ତୁମ୍ଭେମାନେ ନିନ୍ଦିତବ୍ୟ ।

ମର୍ଦ୍ଦରାଜେ- ପଣ୍ଡିତ-ମହାଶୟ ! ଆପଣ କ୍ଷମା କରନ୍ତୁ, ମୋର ଯାହା କହିବାର ତାହା ଓଡ଼ିଆରେ ବୁଝାଇ ଦେଉଛି, ଶୁଣନ୍ତୁ :- ବ୍ରୁଅର ସାହେବ ଇଂରାଜୀରେ ଖଣ୍ଡିଏ ଅଭିଧାନ କରିଅଛନ୍ତି । ସେ ଅଭିଧାନରେ 'ଜଗନ୍ନାଥ' ଶବ୍ଦର ଜ୍ଞାତବ୍ୟ ବିଷୟ ଏହିପରି ଭାବରେ ବ୍ୟାଖ୍ୟା କରିଅଛନ୍ତି । (ଖଣ୍ଡେ କାଗଜ ବାହାର କରି ମର୍ଦ୍ଦରାଜେ ଓଡ଼ିଆ ତର୍ଜ୍ଜମା କରି କହିଲେ) ଜଗନ୍ନାଟ୍ ବା ଜାଗର୍ନାଟ୍- ଏକ ହିନ୍ଦୁ ଦେବତା; ଏ ଶବ୍ଦଟି ଜଗନ୍ନାଥ (ଜଗତର କର୍ତ୍ତା)ର ଅପଭ୍ରଂଶ । ଏ ଦେବତାଙ୍କର ଦେଉଳ ଓଡ଼ିଶାରେ ଜଗନ୍ନାଥ ନାମକ ଏକ ନଗରରେ ଅବସ୍ଥିତ । ଗୋଟିଏ ଦେବାଳୟ ନିମନ୍ତେ ସ୍ଥାନ ସ୍ଥିର କରିବାପାଇଁ 'ଆଇନ୍ ଆକବରୀ' ନାମକ ରାଜା ଜଣେ ବିଦ୍ୱାନ୍ ବ୍ରାହ୍ମଣଙ୍କୁ ପଠାଇଲେ । ବ୍ରାହ୍ମଣ ଅନେକ ଦିନ ପର୍ଯ୍ୟନ୍ତ ଚାରିଆଡ଼େ ବୁଲିଲେ ଏବଂ ଦେଖିଲେ ଯେ ଗୋଟିଏ କାକ ଜଳରେ ସ୍ନାନ କରିସାରି ଜଳକୁ ନମସ୍କାର କଲା ଓ ସେହି ସ୍ଥାନଟି ଦେବାଳୟର ଉପଯୁକ୍ତ ସ୍ଥାନ ନିର୍ଣ୍ଣୀତ ହେଲା । ଦେବାଳୟ ନିର୍ମିତ ହେବା ସମୟରେ ରାଜା ସ୍ୱପ୍ନ ଦେଖିଲେ ଯେ, ପରଦିନ ପ୍ରାତଃକାଳରେ ବିଷ୍ଣୁଙ୍କର ମୂର୍ତ୍ତି ରାଜାଙ୍କର ନୟନ ଗୋଚର ହେବ । ପ୍ରାତଃକାଳରେ ରାଜା ଦେବାଳୟ ଦେଖିବାକୁ ଯାଇ ଜଳରେ କାଷ୍ଠଖଣ୍ଡ ଦେଖିଲେ ଏବଂ ଏହାକୁ ବିଷ୍ଣୁଙ୍କ ମୂର୍ତ୍ତି

ମଣି ଜଗନ୍ନାଥ ନାମରେ ଦେବାଳୟରେ ପ୍ରତିଷ୍ଠିତ କରାଇଲେ । ବ୍ରୁଟନ ସାହେବ ଚର୍ଚ୍ଚିଲ ସାହେବଙ୍କ ସଂଗ୍ରହରୁ ଲେଖିଅଛନ୍ତି ଯେ, ଜଗନ୍ନାଥ ସପ୍ତଫେଣୀ ସର୍ପର ଆକୃତି ଏବଂ ପ୍ରତ୍ୟେକ ଗଣ୍ଡଦେଶରେ ପକ୍ଷଯୁକ୍ତ । ଯେତେବେଳେ ଜଗନ୍ନାଥ ରଥରେ ଯାଆନ୍ତି, ଏ ପକ୍ଷମାନ ବନ୍ଦ ହୋଇଥାଏ ଓ ଖୋଲି ଯାଉଥାଏ । ଜଗନ୍ନାଥଙ୍କ ରଥ- ସର୍ବ ପ୍ରକାର ପ୍ରତିମୂର୍ତ୍ତିରେ ଅଳଂକୃତ ଷୋଡ଼ଶଚକ୍ରଯୁକ୍ତ ଏକ ବୃହତ୍ କାଷ୍ଠଯନ୍ତ୍ର । ପ୍ରତିବର୍ଷ ୫୦ ଜଣ ଲୋକ ଏହାକୁ ଦେଉଳ ନିକଟକୁ ଟାଣି ନିଅନ୍ତି ଏବଂ ଏଥିରେ ଠାକୁରଙ୍କ ନିମନ୍ତେ ଗୋଟିଏ କନ୍ୟାପାତ୍ରୀ ଥିବାର କଥିତ ହୁଏ, ପୂର୍ବେ ଅନେକ ଏ ରଥଦ୍ୱାରା ଦଳି ହୋଇ ମୃତ ହେଉଥିଲେ । (କେତେକ ଲୋକ ଜନତାର ଭିଡ଼ରେ ରଥ ଆଡ଼କୁ ଠେଲି ହୋଇ ଯାଉଥିଲେ ଓ କେତେକ ଲୋକ ଇଂଲଣ୍ଡରେ ଲୋକମାନେ ରେଳଗାଡ଼ି ତଳେ ପଡ଼ିଲା ପରି ନିଜେ ନିଜେ ରଥର ଚକ ତଳେ ଯାଇ ପଡୁଥିଲେ, କେତେକ ଲୋକ ଭକ୍ତି ଭାବରେ ପଡୁଥିଲେ ।) ଇଂରେଜ ଗଭର୍ଣ୍ଣମେଣ୍ଟଙ୍କ ପୁଲିସ ବନ୍ଦୋବସ୍ତ ହେତୁ ଏପରି ମରଣ ପ୍ରଥା କାର୍ଯ୍ୟତଃ ବନ୍ଦ ହୋଇଅଛି ।''

ପଣ୍ଡିତ-ମହାଶୟଙ୍କୁ ଉଚ୍ଚହାସ୍ୟରୁ ବିରତ ହେବାକୁ ଘଡ଼ିଏ ଲାଗିଲା । (ମଫସଲରେ ଯାହାକୁ ଆମ୍ଭେମାନେ ଘଡ଼ିଏ କହୁଁ, ତାହା ସହରରେ ତିନିକ୍ୱାର୍ଟର ।)

ପଣ୍ଡିତ-ମହାଶୟ କହିଲେ- 'ଜଗର୍ନ୍ନାଟ' ନୁହେଁ, ଜଗନ୍ନଟ ପ୍ରକୃତ କଥା- ଜଗତର ନାଥ ଜଗନ୍ନାଥ ଜଗତର ନଟ ଜଗନ୍ନଟ, ଜଗନ୍ନାଥ ପ୍ରକୃତରେ ଜଗତର ନଟ ଅଟନ୍ତି । 'ଅଘଟନଘଟନାନାଟକସ୍ୟାଭିନେତା ।' ଆମ୍ଭେ ଏଥିପାଇଁ କହୁଁ ଆଧୁନିକମାନଙ୍କର ନବନବୋନ୍ମେଷଶାଳିନୀ ପ୍ରତିଭା ବିସ୍ମୟୋତ୍ପାଦିକା କିମ୍ୱା ଜଗତ ଥିଲା ନାଟ ଜଗନ୍ନାଟ । ଯେପରି ଅସ୍ମଦ୍ ଦେଶର ନାଟ ସାହେବ ଜଗନ୍ନାଟ ସେହିପରି ବ୍ରହ୍ମାଣ୍ଡର ନାଟ, କରିଥିଲେ ଉତ୍ତମ କରା ହୋଇଥାନ୍ତା ।

ମୁଁ କହିଲି- ପଣ୍ଡିତ-ମହାଶୟ ! ଏ ଅଭିଧାନ ଲେଖକ ଆଧୁନିକ ନୁହନ୍ତି । ଏ ଆପଣଙ୍କର ପିତାମହ ପଦବାଚ୍ୟ । (ମର୍ଦ୍ଦରାଜଙ୍କୁ ସମ୍ବୋଧନ କରି) ଅନେକ ବିଷୟ ସଂଗ୍ରହ କରିବାକୁ ହେଲେ ଭ୍ରମ ଅବଶ୍ୟମ୍ଭାବୀ । Brewer ସାହେବ ଯେଉଁ Dictio-nary ସଂକଳନ କରିଅଛନ୍ତି, ସେପରି ପୁସ୍ତକ ସଂକଳନ କରିବାକୁ ହେଲେ ଅନ୍ୟ ଲୋକଙ୍କ ଲେଖା ଉପରେ ବିଶେଷ ନିର୍ଭର କରିବାକୁ ହୁଏ । ଏପରି ସ୍ଥଳରେ ଏ ଦୋଷ ମାର୍ଜ୍ଜନୀୟ । କଣ କରାଯିବ ? ଏହା ଜ୍ଞାନକୃତ ଦୋଷ ନୁହେଁ ।

ମର୍ଦ୍ଦରାଜେ- ମୁଁ Brewer ସାହେବଙ୍କ ଦୋଷ ଧରୁ ନାହିଁ । କିନ୍ତୁ ଏହା ପଢ଼ି ଜଣେ ବିଦେଶୀୟଙ୍କ ମନରେ କି ଚିତ୍ର ଅଙ୍କିତ ହେବ, ତାହା କହୁଥିଲି ।

ରାମହରି ମିଶ୍ରେ କହିଲେ Brewer ସାହେବ ତ ବିଦେଶୀୟ । ସେ ଏ ସ୍ଥାନର କୌଣସି ବିଷୟ ଜାଣନ୍ତି ନାହିଁ । କାହିଁକି, ଆମ୍ଭମାନଙ୍କ ସ୍ୱଦେଶୀୟଙ୍କ କଥା ଧରନ୍ତୁ ।

'ଉଡ଼ିଶ୍ୟା ବେହେରା ଓ ମାଳୀର ଦେଶ' - ଏହା ମୁଁ କଲିକତାରେ ବିଶେଷ ମାନ୍ୟଗଣ୍ୟ ଲୋକଙ୍କ ମୁହଁରୁ ଶୁଣି ଆସିଅଛି । ଓଡ଼ିଶାରେ ଶିକ୍ଷିତ ଲୋକ ବା ଭଦ୍ରଲୋକ ଅଛନ୍ତି, ଏ କଥା କଲିକତାର କେତେକ ଲୋକଙ୍କୁ 'ଆକାଶ କୁସୁମ' ପରି ବୋଧ ହେବ । 'ଓଡ଼ିଆ ମେଣ୍ଢା'ର ଅର୍ଥ କଣ ? (ମେଷଙ୍କ ଲୋମ କାଟି ଅନ୍ୟ ଲୋକମାନେ ନିଜ ନିଜ ଦେହ ଆବୃତ କରନ୍ତି ବା ଜୀବିକା ନିର୍ବାହ କରନ୍ତି ଓ କେହି କେହି ମେଷ ମାଂସ ଖା'ନ୍ତି । ଓଡ଼ିଆଙ୍କ ପ୍ରତି ଏହା କିପରି ଘଟିଲା, ଏହା ସ୍ଥିର କରିବା ନିମନ୍ତେ ଐତିହାସିକ, ସାହିତ୍ୟିକ, ଗାଣିତିକ, ସାମାଜିକମାନଙ୍କର ପ୍ରଗାଢ଼ ଅଧ୍ୟବସାୟ ଆବଶ୍ୟକ ।)

ମର୍ଦ୍ଦରାଜ- ମିଶ୍ରେ ! ଓଡ଼ିଶା ବେହେରା ଓ ମାଳୀର ଦେଶ ବୋଲି ବଙ୍ଗଳା ଅଞ୍ଚଳରେ ଯେଉଁ ବିଶ୍ୱାସ ଅଛି, ତାହା ଅମୂଳକ ନୁହେଁ । କଲିକତାରେ ପନ୍ଦରପଣ ଉଣେଇଶ ଗଣ୍ଡା ଓଡ଼ିଆମାନେ ସେଠାରେ ଯେଉଁ ଯେଉଁ କାର୍ଯ୍ୟ କରନ୍ତି, ତାହା ପ୍ରକାଶ କରିବାକୁ ଲଜ୍ଜା ବୋଧ ହେଉଅଛି । ଗୋଟିଏ ବଙ୍ଗଳା ଡିକ୍‌ସନାରିରେ ଲେଖାଅଛି- ଉତ୍କଳ ଭାରବାହକମାନଙ୍କ ଦେଶ । ଓଡ଼ିଆ ବେହେରାମାନଙ୍କର 'ବାଟରେ ହଗି' ବେଶ୍ ଗୋଟାଏ ନାମ ରହି ଯାଇଅଛି । ଯେତେ ନୀଚ କାର୍ଯ୍ୟ ଦେଖ, କେବଳ ଖୋର୍ଦ୍ଧା ଓ ଓଡ଼ିଆ । କଲିକତାର ଲୋକେ ତ ସର୍ବଜ୍ଞ ନୁହନ୍ତି, ଯାହା ଦେଖିଲେ ତାହା କହିଲେ । ଥରେ ବହୁବଜାର ଓ ଓଡ଼ିଆପଡ଼ାକୁ ଗଲେ ବୁଝିପାରିବେ ।

ମୁଁ- ଆପଣମାନେ ଯାହା କହନ୍ତୁ, କିନ୍ତୁ ମୁଁ ସେହି ଓଡ଼ିଆମାନଙ୍କ ପକ୍ଷ ନେବାକୁ ଅଣ୍ଟା ବାନ୍ଧିଛି । କେତେ ବଙ୍ଗାଳୀ ଆସି ଓଡ଼ିଶାରୁ ଯେଉଁ ଅର୍ଥ ନେଉଅଛନ୍ତି, ଆମର ଏହି ଓଡ଼ିଆଭାଇମାନେ ଅନ୍ୟ କିଛି ଉପାୟରେ ନ ହେଉ ପଛକେ ମାଳୀଗିରି, କୁଲିଗିରି, ବେହେରାଗିରି, ଧୋବାଗିରି କରି ହେଲେ ସେ ପଇସାରୁ କିଛି ଦେଶକୁ ଫେରାଇ ଆଣୁଛନ୍ତି । ଶିକ୍ଷିତ ଉଚ୍ଚପଦସ୍ଥ ଭାଇମାନଙ୍କଦ୍ୱାରା ତାହା ସୁଦ୍ଧା ହୋଇପାରୁ ନାହିଁ । କେତେକ ଶିକ୍ଷିତମାନେ ବିଦେଶକୁ ଗଲେ ଶୂଳିଆପଦାକୁ ଗଲାପରି ବୋଧ କରନ୍ତି । ଅବଶ୍ୟ ଦୁଇ ଚାରୋଟି ପ୍ରାତଃସ୍ମରଣୀୟ ଓଡ଼ିଆ ପୁଏ ଏ ସଂସ୍କାରକୁ ଏଡ଼ିଅଛନ୍ତି, କିନ୍ତୁ ତାଙ୍କୁ ଅନୁସରଣ କରୁଛି କିଏ ?

ପଣ୍ଡିତ-ମହାଶୟ- ଜନୈକ ଦୋପଟୀଙ୍କର ବଙ୍ଗଳା ଜିଲାକୁ ବଦଳି ହେବାର ଅଷ୍ଟକୌଶିଲ ବୋରଟରୁ ଆଜ୍ଞା ଆସିବାରୁ ତାଙ୍କ ଗୃହ କ୍ରନ୍ଦନଧ୍ୱନିପୂର୍ଣ୍ଣ ହେଲା । ପରନ୍ତୁ ଆମ୍ଭେ କଟକଚଣ୍ଡୀଙ୍କ ନିକଟରେ ବରିତ ଓ ହିବଷ୍ୟାଶ ହୋଇ ବଗଳା ପାଠ କଲାରୁ ଦୋପଟୀ ରକ୍ଷିତ ହେଲେ ।

ଏହି ସମୟରେ ମାଷ୍ଟର-ମହାଶୟ ନୂତନ ପଞ୍ଜିକା ହସ୍ତରେ ନେଇ ବସାରୁ ଫେରି ଆସିଲେ ଓ କହିଲେ ଏ ପାଞ୍ଜିରେ Many mistake (ଅନେକ ଭୁଲ) ଅଛି । ଏଇ ଦେଖନ୍ତୁ ଆଜି Date (ତାରିଖ) ୧୪ ତାରିଖ, ଶୁକ୍ରବାର । କିନ୍ତୁ ଆଜି Saturday (ଶନିବାର) ବୋଲି ପାଞ୍ଜିରେ ଲେଖାଅଛି ।

ମର୍ଦ୍ଦରାଜ କହିଲେ- ଏ ୧୯୦୦ ସାଲର ପଞ୍ଜିକାରେ ବାରର ଭୁଲ୍ ନାହିଁ, କିନ୍ତୁ ତାରିଖ ଭୁଲ ଅଛି- ଆପଣ ୧୪ ତାରିଖ ଦିନ ନ ଦେଖି ଶନିବାରର ଦିନ ଦେଖନ୍ତୁ । ଶନିବାର ଦିନ ୧୫ ତାରିଖ ବୋଲି ଲେଖାଅଛି । ତାହା କିନ୍ତୁ ୧୪ ତାରିଖ ହେବ । ପ୍ରତ୍ୟେକ ପାଞ୍ଜିରେ ଖଣ୍ଡିଏ ଶୁଦ୍ଧିପତ୍ର ବାହାରୁଥିଲା । ଏ ପାଞ୍ଜିରେ ଭୁଲ ହୋଇ ସେ ଶୁଦ୍ଧିପତ୍ର ଦିଆ ହୋଇ ନାହିଁ । ସାଧାରଣତଃ ପ୍ରତ୍ୟେକ ଚତୁର୍ଥ ବର୍ଷ (ଅର୍ଥାତ୍ ଯେଉଁ ବର୍ଷକୁ ଚାରିରେ ହରିଲେ କିଛି ଅଂଶ ରହିବ ନାହିଁ) Leap year (ଲିପ୍ ଇଅର) ନାମରେ ଖ୍ୟାତ । ସେ ବର୍ଷର ବିଶେଷତ୍ୱ ଏହି ଯେ ଅନ୍ୟ ବର୍ଷମାନଙ୍କରେ ଫେବ୍ରୁଆରୀ ମାସ ଅଠେଇଶ ହୁଏ, କିନ୍ତୁ ଲିପ୍ ଇଅରମାନଙ୍କରେ ଫେବ୍ରୁଆରୀ ଅଣତିରିଶା ହୁଏ । ଏ ବର୍ଷର ନୂତନ ପଞ୍ଜିକାକାର ଏହି ନିୟମ ଅନୁସାରେ ଏ ବର୍ଷ ୧୯୦୦ ସାଲ ଥିବାରୁ ଏ ବର୍ଷ ଫେବ୍ରୁଆରୀ ମାସକୁ ଅଣତିରିଶା କରିଛନ୍ତି । କିନ୍ତୁ ତାହାଙ୍କୁ ଏହି ସାଧାରଣ ନିୟମର ବିଶେଷ ନିୟମ ଜଣା ନ ଥିଲା । ତାହା ଏହି - ପ୍ରତ୍ୟେକ ଚତୁର୍ଥ ଶତାବ୍ଦୀମାନଙ୍କ ଛଡ଼ା ଅନ୍ୟ ଶତାବ୍ଦୀମାନଙ୍କ ଶେଷ ବର୍ଷ ଲିପ୍ ଇଅର ହେବ ନାହିଁ । ଅର୍ଥାତ୍ ଯେଉଁ ଶତାବ୍ଦୀମାନଙ୍କ ମୂଳ ଅଙ୍କକୁ ଚାରିରେ ହରିଲେ ଛିଣ୍ଡିଯିବ, (ଯଥା ୨୦୦୦, ୨୪୦୦, ୧୬୦୦) ସେ ବର୍ଷମାନ ଲିପ୍ ଇଅର ହେବ, କିନ୍ତୁ ଯେଉଁ ଶତାବ୍ଦୀର ମୂଳ ଅଙ୍କମାନ ଚାରିରେ ହରିଲେ ଛିଣ୍ଡିଯିବ ନାହିଁ, (ଯଥା ୧୫୦୦, ୧୭୦୦, ୧୯୦୦, ୨୫୦୦) ସେ ବର୍ଷମାନ ଲିପ୍ ଇଅର ହେବ ନାହିଁ ।

ପଣ୍ଡିତ-ମହାଶୟ କହିଲେ- ଏହା ତ ଅତୀବ ବିଷମ ସମସ୍ୟା । ଏହା ଆମ୍ଭର ଅବୋଧଗମ୍ୟ ।

ମର୍ଦ୍ଦରାଜ- ଏହା ଆପଣଙ୍କ ବୋଧଗମ୍ୟ କରିବାକୁ ହେଲେ ଅନେକ ବିଦେଶୀୟ ଐତିହାସିକ ବିଷୟ କହିବାକୁ ହେବ । ଏପରି ସ୍ଥଳରେ ଆପଣଙ୍କର ବୁଝିବାକୁ କଷ୍ଟ ହେବ । ତେବେ ଏତିକି ମାତ୍ର ଜାଣନ୍ତୁ ଯେ ପ୍ରାଚୀନ ରୋମ୍‌ରେ ଚାନ୍ଦ୍ରମାନ ସୌରମାନ ମାସ ମଧ୍ୟରେ ସାମ୍ୟ ଘଟାଇବାକୁ ଯାଇ ଏ ଗଣ୍ଡଗୋଳର ପ୍ରାରମ୍ଭ । ରୋମକମାନଙ୍କ ସମୟରେ ଜୁଲିଆସ ସିଜର (Julius Caesar) ପଞ୍ଜିକାରେ ସୌରମାନ ବର୍ଷ ଗଣନା ସମ୍ପୂର୍ଣ୍ଣରୂପେ ପ୍ରତିଷ୍ଠିତ କଲେ । ଏକ ସୌରମାନ ବର୍ଷ ୩୬୫.୨୪୨୨୧୮ ଦିନ ଅର୍ଥାତ୍ ପ୍ରାୟ ୩୬୫ ଦିନ ୫ ଘଣ୍ଟା ୪୮ ମିନିଟ ୪୮ ସେକେଣ୍ଡ । ପଞ୍ଜିକାରେ ବର୍ଷକ ୩୬୫ ଦିନ କଲେ, ପ୍ରତ୍ୟେକ ବର୍ଷରେ ପ୍ରାୟ ୬ ଘଣ୍ଟା କରି ବଳିପଡ଼େ । ସେଥିନିମନ୍ତେ ଚାରିବର୍ଷରେ ଏହା ୧ ଦିନ ବା ୨୪ ଘଣ୍ଟା ବଳିପଡ଼ିବାରୁ ପ୍ରତ୍ୟେକ ୪ର୍ଥ ବର୍ଷ ଲିପ୍ ଇଅର ଅର୍ଥାତ୍ ୩୬୬ ଦିନ କରିବାକୁ ହୁଏ । କିନ୍ତୁ ତାହା କରି ସୁଦ୍ଧା ବର୍ଷକରେ ୧୧ ମିନିଟ ଲେଖାଏଁ ବେଶି ରହିଯାଏ ଓ ତାହା ୧୦୦ ବର୍ଷରେ ପ୍ରାୟ ୧୨୦୦ ମିନିଟ - ପ୍ରାୟ ୧ ଦିନ ବେଶି ରହିଯାଏ । ସେଥିନିମନ୍ତେ ପ୍ରତ୍ୟେକ ଶତାବ୍ଦୀର ଶେଷ ବର୍ଷ ଲିପ୍ ଇଅର ହୁଏ ନାହିଁ । କିନ୍ତୁ ୧ ଦିନ - ୧୪୪୦ ମିନିଟ । ୧୨୦୦ ମିନିଟକୁ ୧ ଦିନ ଗଣନା କଲେ ଏକ

ଶତାବ୍ଦୀରେ ୨୪୦ ମିନିଟ ଲେଖାଏଁ ଚାରି ଶତାବ୍ଦୀରେ ୧୦୦୦ ମିନିଟ ବା ଏକ ଦିନରୁ କିଛି କମ୍ ବଳିପଡ଼େ । ଅତଏବ ସେ ଦିନଟା ପୂରଣ କରିବା ନିମନ୍ତେ ପ୍ରତ୍ୟେକ ୪ର୍ଥ ଶତାବ୍ଦୀର ଶେଷ ବର୍ଷ ଲିପ୍ ଇଅର ହୁଏ । ଇଂଲଣ୍ଡର ରାଜା George-II ଏହା ସ୍ଥିର କଲେ ।

ପଣ୍ଡିତ-ମହାଶୟ କହିଲେ- ''ତଦ୍ଧି ଜାନନ୍ତି ତଦ୍‌ବିଧାଃ' ଏ କିଂଭୂତ ଘଟନା, ତାହା ଆମ୍ଭର ବୁଦ୍ଧିର ଅଜ୍ଞେୟ ।

ମର୍ଦ୍ଦରାଜ- ପଣ୍ଡିତ-ମହାଶୟ ! ଆପଣ ଦଶମିକ ବା ଭଗ୍ନାଂଶ ଜାଣିଥିଲେ ସହଜରେ ବୁଝିପାରନ୍ତେ । (ପଣ୍ଡିତ-ମହାଶୟ ଚିତ୍ରାର୍ପିତାରମ୍ଭଇବାବତସ୍ଥେ । ମର୍ଦ୍ଦରାଜେ ମାଷ୍ଟର-ମହାଶୟଙ୍କ ଆଡ଼କୁ ଲକ୍ଷ୍ୟ କରି କହିଲେ ଓ ଖଡ଼ିଗୋଟାଳିରେ ଭୂମିରେ ଅଙ୍କ ଲେଖିଲେ)

$$\text{ଏକ ସୌରମାନ ବର୍ଷ} = \text{୩୬୫. ୨୪୨୨୧୮ ଦିନ ୩୬୫} + \frac{\text{୨}}{\text{୪}} - \frac{\text{୩}}{\text{୪୦୦}} \text{ ଦିନ}$$

ପ୍ରାୟ;

ଏ ଭଗ୍ନାଂଶରୁ ଦେଖାଯିବ ଯେ ପ୍ରତ୍ୟେକ ୪ର୍ଥ ବର୍ଷରେ ୩୬୫ ଦିନରେ ୧ ଦିନ ଯୋଗ କଲେ ଯାହା ହେବ, ତହିଁରୁ ପ୍ରତି ୪୦୦ ବର୍ଷରେ ୩ ଦିନ କାଟିଦେଲେ ସୌରମାନ ହାରାହାରି ବର୍ଷ ଠିକ୍ ହେବ । ଏହା ହେଲେ ସୁଦ୍ଧା ୪୦୦୦ ବର୍ଷରେ ୧ ଦିନ ବେଶି ପଡ଼ିଯିବ । କିନ୍ତୁ ୪୦୦୦ ବର୍ଷ ତୁଳନାରେ ୧ ଦିନ ଅତି ସାମାନ୍ୟ ଥିବାରୁ ତାହା କେହି ଧରନ୍ତି ନାହିଁ ।

ପଣ୍ଡିତ-ମହାଶୟ- ଏବଂଭୂତ ସାନ୍ନିପାତିକ ପ୍ରଳାପ ସ୍ଥଗିତ ନ ହେଲେ ଆମ୍ଭେ ଗମନୋନ୍ମୁଖ । ବିଦେଶୀୟ କାଳଗଣନା ପ୍ରଣାଳୀ ତ୍ୟାଗ କରି ଅସ୍ମଦ୍ଦେଶ ପ୍ରଚଳିତ କାଳଗଣନାପଦ୍ଧତ୍ୟନୁସରଣ କରିବାକୁ ପ୍ରୟାସୀ ହେଲେ ଆମ୍ଭ ଦ୍ୱାରା ଆଦୃତ ହୁଅନ୍ତା ।

ମର୍ଦ୍ଦରାଜେ- ପଣ୍ଡିତ-ମହାଶୟ, ସେ ବିଷୟରେ ମୋର ସମ୍ୟକ୍ ପ୍ରବେଶ ନାହିଁ । ରାମହରି ମିଶ୍ରେ କେତେ ଦିନ ଜ୍ୟୋତିଷ ଗ୍ରନ୍ଥ ଇତ୍ୟାଦି ଆଲୋଚନା କରିଥିଲେ । ତାଙ୍କଠାରୁ ଏ ବିଷୟରେ କିଛି ଆଶା କରାଯାଇପାରେ । ଆମ୍ଭେମାନେ କେବଳ ଏତିକି ଜାଣୁ ଯେ, ସ୍ଥାନ ବିଶେଷରେ ପ୍ରଚଳିତ ଆଇନର ବ୍ୟବସ୍ଥା ଅନୁସାରେ ଫସଲୀ, ଅମଲୀ ଓ ବିଲାୟତୀ ବର୍ଷ ଗଣନା କରିବାକୁ ହୁଏ ।

ରାମହରି ମିଶ୍ର- ପଞ୍ଜିକା ଇତ୍ୟାଦିରେ ଶାଳିବାହନ ଶକାବ୍ଦ ପ୍ରଚଳିତ ଓ ଜମିଦାରୀ ସିରସ୍ତାରେ ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟୀ କର୍ଣ୍ଣାଟୋତ୍କଳ ବୀରାଧିବୀରବର ପ୍ରତାପଶ୍ରୀ-ଦେବ ମହାରାଜାଙ୍କ ଅଙ୍କ ଓ ଦିଲ୍ଲୀଶ୍ୱରାବ୍ଦ ପ୍ରଚଳିତ । ପଞ୍ଜିକାରେ ସୌରମାନ ଶକାବ୍ଦ ଜମିଦାରି ସିରସ୍ତାରେ ସୌରମାନ ଅଙ୍କ ଓ ସାଲ ସଂକ୍ରାନ୍ତି ଅନୁସାରେ ସୌରମାନ

ମାସର ଗଣନା ଆରମ୍ଭ । ମହାବିଷୁବ ସଂକ୍ରାନ୍ତିଠାରୁ ଶକାବ୍ଦ ଓ ବଙ୍ଗାବ୍ଦର ଆରମ୍ଭ ବିକ୍ରମାଦିତ୍ୟଙ୍କ ସଂବତ୍ ଚାନ୍ଦ୍ରମାନ - ଚାନ୍ଦ୍ରମାନ ଅନୁସାରେ କୃଷ୍ଣ ପ୍ରତିପଦରେ ମାସାରମ୍ଭ ଓ ପୂର୍ଣ୍ଣିମାରେ ମାସ ଶେଷ ହୁଏ । ଜମିଦାରୀ ସିରସ୍ତା ପ୍ରଚଳିତ ଅଙ୍କ ଯଦିଚ ସୌରମାନ, ତାହା ଭାଦ୍ର ଶୁକ୍ଳ ଦ୍ୱାଦଶୀରେ (ଚାନ୍ଦ୍ରମାନ ଅନୁସାରେ) ଆରମ୍ଭ ହୁଏ । ଓଡ଼ିଶାରେ ସଂକ୍ରାନ୍ତି ସଞ୍ଚାରର ପୂର୍ବ ଦିନ ମାସ ଶେଷ ହୁଏ, କିନ୍ତୁ ବଙ୍ଗଦେଶରେ ସଂକ୍ରାନ୍ତି ଦିନ ମାସ ଶେଷ ହୁଏ । ବିକ୍ରମାଦିତ୍ୟଙ୍କ ସଂବତ୍ ଚୈତ୍ର ଶୁକ୍ଳ ପ୍ରତିପଦରେ ଆରମ୍ଭ ହୁଏ ।

ଗଣନା ତିନି ପ୍ରକାର- ସୌରମାନ, ଚାନ୍ଦ୍ରମାନ ଓ ନକ୍ଷତ୍ରମାନ । ନକ୍ଷତ୍ରମାନ ଗଣନାକ୍ରମେ ପରମାୟୁଃ ଗଣନା ଓ ଦଶା ଗଣନା ହୁଏ । ସାବନମାନ (ସୂର୍ଯ୍ୟୋଦୟ ସଙ୍ଗେ ଯହିଁରେ ଦିନର ଆରମ୍ଭ ହୁଏ) ଗଣନାକ୍ରମେ ସୁଧ, ବେତନ, ଅଶୌଚ ଗଣନା ହୁଏ ।

ସୌରମାନ ଗଣନାକ୍ରମେ ପ୍ରାୟଶ୍ଚିତ୍ତ, ଗର୍ଭାଧାନ, ଯାତ୍ରା, ବିବାହ ହୁଏ । ଚାନ୍ଦ୍ରମାନ ଗଣନା ଦୁଇ ପ୍ରକାର- ମୁଖ୍ୟ ଓ ଗୌଣ ।

ମୁଖ୍ୟ ଚାନ୍ଦ୍ରମାନରେ ପ୍ରଥମ ଚନ୍ଦ୍ରଦର୍ଶନଠାରୁ ମାସାରମ୍ଭ ହୁଏ । ମୁସଲମାନମାନେ ମୁଖ୍ୟ ଚାନ୍ଦ୍ରମାନ ଅନୁସାରେ ହିଜରି ସାଲର ମାସ ଗଣନା କରନ୍ତି ।

ଗୌଣ ଚାନ୍ଦ୍ରମାନ (ଯାହାକି ପ୍ରତିପଦରେ ଆରମ୍ଭ ହୋଇ ପୂର୍ଣ୍ଣିମା କିମ୍ବା ଅମାବାସ୍ୟାରେ ଶେଷ ହୁଏ) ଗଣନାକ୍ରମେ ବ୍ରତ ଉପବାସାଦି ଓ ଶ୍ରାଦ୍ଧ କରିବାକୁ ହୁଏ !

ପଣ୍ଡିତ-ମହାଶୟ କହିଲେ- ସୌରମାନ ବର୍ଷକ ୩୬୫ ଦିନ ୧୫ ଦଣ୍ଡ ୩୦ ପଳ ୨୨ ବିପଳ ଓ ଚାନ୍ଦ୍ରମାନ ବର୍ଷକ ୩୬୪ ଦିନ ୨୦ ଦଣ୍ଡ ୧ ପଳ । ସୌରମାନ ଓ ଚାନ୍ଦ୍ରମାନ ବର୍ଷ ମଧ୍ୟରେ ୧୦ ଦିନ ୫୩ ଦଣ୍ଡ ୨୯ ପଳ ୨୨ ବିପଳ ପ୍ରଭେଦ ।

ମର୍ଦ୍ଦରାଜେ- ପଣ୍ଡିତ-ମହାଶୟ- ପଳ ବିପଳ ଆମ୍ଭେମାନେ ବୁଝିପାରୁ ନାହୁଁ ।

ପଣ୍ଡିତ-ମହାଶୟ- 'ଶଠେ ଶାଠ୍ୟଂ ସମାଚରେତ୍ ।' ତୁମ୍ଭେ ପରା ଆମ୍ଭଙ୍କୁ ଦଶମ ଭଗ୍ନାଂଶେତ୍ୟାଦି ଦ୍ୱାରା ପରାସ୍ତ କରୁଥିଲ, ଆମ୍ଭ ବେଳକୁ ଆମ୍ଭେ ଛାଡ଼ିବୁ କିଆଁ ? ତୁମ୍ଭେ ବଧିର ସମକ୍ଷରେ ମୂଳକ ଚର୍ବଣ କରୁଥିଲ, ଆମ୍ଭେ ଅନ୍ଧ ସମକ୍ଷରେ ପ୍ରଦୀପ ସ୍ଥାପନ କଲୁଁ, ତତ୍ରକା ପରିବେଦନା । ସୌରମାନ ଓ ଚାନ୍ଦ୍ରମାନ ବର୍ଷ ମଧ୍ୟରେ ଯେ ୧୦ ଦିନ ୫୩ ଦଣ୍ଡ ୨୯ ପଦ ୨୨ ବିପଳ ପ୍ରଭେଦ ହୁଏ, ତାହାର ଏକୀକରଣାର୍ଥେ ଚାନ୍ଦ୍ରମାନ ୨ ବର୍ଷ ୮ ମାସ ୧୫ ଦିନରେ ଗୋଟିଏ ମଳ ମାସର ଗଣନା ସୃଷ୍ଟି କରିବାକୁ ହୋଇଅଛି । ଏ ଛଡ଼ା, ଏ ସ୍ଥଳରେ ଆମ୍ଭର ବକ୍ତବ୍ୟ ଏହି ଯେ, ପୁରୁଷୋତ୍ତମ ରଜାଙ୍କ ଅଙ୍କଗଣନାର ୧ମ, ୨ୟ, ୬ଷ୍ଠ, ୧୬ଶ, ୩୨ଶ, ୩୬ଶ ଇତ୍ୟାଦି ଅଙ୍କମାନ ଗଣନା କରିବା ଅପ୍ରଚଳିତ, ଅତଏବ ପରିହାର୍ଯ୍ୟ- କିନ୍ତୁ ଦଶମ ଅଙ୍କଟା ଗଣିତ ହୁଏ ।

ଏହି ସମୟରେ ମନ୍ତ୍ରରାମ ଆସି ପହଞ୍ଚିଲା ।

ମାଷ୍ଟର-ମହାଶୟ- ମୁସଲମାନମାନଙ୍କ year (ବର୍ଷ) ଓ month (ମାସ) କିପରି count (ଗଣନା) ହୁଏ, ତାହା ମୁଁ understand (ବୁଝି) ପାରିଲି ନାହିଁ ।

ରାମହରି ମିଶ୍ର- ମୁସଲମାନମାନଙ୍କ ମାସ ପ୍ରଥମ ଚନ୍ଦ୍ରଦର୍ଶନ ଦିନ ସନ୍ଧ୍ୟାରୁ ଆରମ୍ଭ ହୁଏ ।

ମସ୍ତରାମ କହିଲା- ଆରେ ସେ କଥା କଅଣ କହୁଛ ? ପଠାଣଙ୍କର ତ ସବୁ ଓଲଟା । ଆମର ସକାଳୁ ମାସ ଗଣତି ହୁଏ, ତାଙ୍କର ସନ୍ଧ୍ୟାରୁ ମାସ ଗଣତି । ଆମର କଦଳୀପତ୍ର ପେଟରେ ଭାତ ଖାଉଁ, ପଠାଣ ପତ୍ରର ପିଠି ବାଗରେ ଭାତ ଖା'ନ୍ତି । ଆମେ ବୋଦା ପକେଇଲା ବେଳେ ବେକ ଉପରେ ହାଣୁ, ପଠାଣ ତଣ୍ଟିରେ ହଲାଲ କରନ୍ତି । ଆମେ ଚାରି କାନି ଖୋଷି ଲୁଗା ପିନ୍ଧୁ, ପଠାଣଙ୍କର ଚାରିକାନି ଫିଟା । ଆମେ ଦାଢ଼ି ଖିଅର ହଉ, ପଠାଣ ଦାଢ଼ି ରଖନ୍ତି । ଆମେ ବସି କରି ପୂଜା କରୁଁ, ପଠାଣ ଠିଆହୋଇ ଫାତିଆ କରନ୍ତି । ଆମେ ପୂର୍ବକୁ ମୁହଁ କରି ପୂଜା କରୁଁ, ପଠାଣ ପଶ୍ଚିମକୁ ମୁହଁ କରି ନମାଜ ପଢ଼ନ୍ତି । ଆମେ ପରିସ୍ରା କରି ପାଣି ଘିନୁ, ପଠାଣ ଟେକା ଘିନନ୍ତି । ଆମର ଦି'ହାତିଆ ନମସ୍କାର, ତାଙ୍କର ଏକହାତିଆ ସଲାମ । ଆମେ ବାଁ ଆଡୁ ଡାହାଣକୁ ଲେଖୁଁ, ତାଙ୍କର ଡାହାଣରୁ ବାଁକୁ ହରପ ଲେଖନ୍ତି । ଆମ ମୁଣ୍ଡ ପଛଆଡ଼େ ଗୋଛାଏ ବାଳ, ତାଙ୍କର ମୁହଁ ସାମନାରେ ଗୋଛାଏ ନୁରା ।

ଆଜି ଟୁଙ୍ଗିରେ ବର୍ଷ ଗଣନା ଘେନି ଆମ୍ଭମାନଙ୍କ ମନରେ ଘୂର୍ଣ୍ଣିବାୟୁ ଜାତ ହୋଇଥିବାରୁ ଓ ମସ୍ତିଷ୍କ ଭୀଷଣ ଭାବରେ ମନ୍ଥିତ ହୋଇଥିବାରୁ ମସ୍ତରାମର ତୁଳନା ଚିତ୍ରଟି ଆମ୍ଭମାନଙ୍କ ହୃଦୟ-ଦର୍ପଣରେ ସମ୍ୟକ୍ ପ୍ରତିଫଳିତ ହେଲା ନାହିଁ ଓ ଅନେକ ରାତ୍ର ହେବାରୁ ଆମ୍ଭେମାନେ ବିଦାୟ ନେଲୁଁ ।

ଗଲାବେଳେ ମୁଁ ସମସ୍ତଙ୍କୁ କହିଲି, ଟୁଙ୍ଗିରେ ବସି କ୍ରମଶଃ ଢିଙ୍କିଶାଳରେ ଢେଙ୍କାନାଳର ଚିନ୍ତା ବଢ଼ିବାକୁ ଲାଗିଲାଣି । ଏପରି ଅସାଧ ଓ ଅବୋଧଗମ୍ୟ ବିଷୟମାନଙ୍କ ଚର୍ଚ୍ଚା ବଢ଼ିଲେ ଦୁର୍ମୁଖ ଶର୍ମା ଟୁଙ୍ଗିର ସମ୍ପାଦକତ୍ୱରୁ ଇସ୍ତଫା ଦେବ । ଏଣିକି ଟୁଙ୍ଗିକୁ କେହି ଆସିବାକୁ ରାଜି ହେବେ ନାହିଁ ।

ମର୍ଦ୍ଦରାଜେ - ଯେଉଁଦିନ ଯେପରି ଧରଣର ଲୋକ ଥିବେ, ସେଦିନ ସେହିପରି ଧରଣର ବିଷୟମାନ ଚର୍ଚ୍ଚା କଲେ କ୍ଷତି ହେବ ନାହିଁ । ଜମାଦାରେ ବା ମୁକ୍ତ୍ୟାରେ ଥିଲେ ତ ଏତେ କଥା ପଡ଼ି ନ ଥାନ୍ତା । (ମସ୍ତରାମକୁ କହିଲେ) ଆମର ଓଲଟା କି ମୁସଲମାନମାନଙ୍କର ଓଲଟା ଏ କଥା କିପରି ଜାଣିଲୁ ? ଡଙ୍ଗାରେ କି ରେଳରେ ଗଲାବେଳେ ପାଖର ଗଛ, ଘର ଦୁଆର ସବୁ ଦଉଡ଼ିଲା ପରି ଜଣାଯାଏ । ଆପଣା ମୁଣ୍ଡ ବୁଲେଇଲେ ଘରଦ୍ୱାର ସବୁ ଘାଉଁରି ଖାଇଲା ପରି ଜଣାଯାଏ କାହିଁକି ?

ଉତ୍କଳ ସାହିତ୍ୟ/୫ମ ବର୍ଷ/୬ଷ୍ଠ ସଂଖ୍ୟା/୧୩୦୮ ସାଲ ।

## ନବମ ସନ୍ଧ୍ୟା

ପଣ୍ଡିତ-ମହାଶୟ ଆଜି ସହାସ୍ୟବଦନରେ ଟୁଙ୍ଗିରେ ଉପସ୍ଥିତ । ପଣ୍ଡିତ-ମହାଶୟ- 'ଯୁଷ୍ମାକୀନ ଅନୁରୋଧପରବଶ ହୋଇ ଆମ୍ଭେ କୌମାରୀପୂର୍ଣ୍ଣିମାଦୃଶା ପଦ୍ୟରଚନା ସ୍ଥଗିତ ରଖି ଋତୁସଂହାରାନୁବାଦ-ବାସନାବାନ୍ ହୋଇଅଛୁ । ନବ୍ୟମାନଙ୍କୁ ତାହା ଉତ୍କୃଷ୍ଟ ବୋଧ ନ ହେଲେହେଁ ପରନ୍ତୁ ଏବଂଭୂତ ବାସନା ଉପେକ୍ଷଣୀୟ ନୁହେଁ ।'

ଆମ୍ଭେମାନେ ଦେଖିଲୁଁ, ପଣ୍ଡିତ-ମହାଶୟଙ୍କ କଥାପଦ୍ଧତି ପରିବର୍ତ୍ତନ ହେବା ଦୁରାଶା । କିନ୍ତୁ ପଣ୍ଡିତ-ମହାଶୟଙ୍କ ଅନୁବାଦଟି କିପରି ହୋଇଅଛି, ଶୁଣିବା ଉତ୍କଣ୍ଠାରେ ପଣ୍ଡିତ-ମହାଶୟଙ୍କ ଆଡ଼କୁ ଚାହିଁ ରହିଲୁଁ ଓ ପଣ୍ଡିତ-ମହାଶୟ ଖଣ୍ଡେ ତାଳପତ୍ର କାଢ଼ି ଆରମ୍ଭ କଲେ-

॥ ୧ ॥

ଚଣ୍ଡ ରବି ଇନ୍ଦୁକରେ ବାସନା ସତତ
ପରିଶୁଷ୍କ ଜଳାଶୟ ତାପୁ ଅବିରତ,
ଦିବା ଅବସାନେ ସୁଖ କାମ ଉପଶାନ୍ତ-
ନିଦାଘ ସମୟ, ପ୍ରିୟେ ! ହେଲାଣି ଆଗତ ।

॥ ୨ ॥

ନିଶା (ଯହିଁ ଚନ୍ଦ୍ରକରେ ତମ ପରାହତ),
କେଉଁ ସ୍ଥାନେ ରମ୍ୟ ଜଳ ସଦନ ନିର୍ମିତ
ନାନାବିଧ ମଣି, ଅଙ୍ଗେ ଚନ୍ଦନ ଲେପିତ
ଗ୍ରୀଷମେ ସେବି ଏମାନ ମନ ଆନନ୍ଦିତ ।

॥ ୩ ॥

ସୁବାସିତ ହର୍ମ୍ୟତଳ ଅତି କମନୀୟ,
ପ୍ରିୟାମୁଖ-ମରୁତରେ କମ୍ପିତ ପାନୀୟ,
ବୀଣାସ୍ୱନ (ବିଳାସୀର ସୁରସ ଅମିୟ),-
ଏହିମାନଙ୍କର କାମୀ ରଖିଥାଏ ଲୟ ।

॥ ୪ ॥

ସୁବସନ-ମେଖଳାରେ ନିତମ୍ବ ଜଡ଼ିତ,-
ହାରଶୋଭୀ ପୟୋଧର ଚନ୍ଦନେ ଚର୍ଚ୍ଚିତ,-
ନାନାଜାତି ବାସେ କେଶଯୂଥ ସୁବାସିତ,-
କରି ନାରୀ ରସିକକୁ କରଇ ମୁଦିତ ।

॥ ୫ ॥

ଗାଢ଼ ଅଲକ୍ତକ ରସ-ରାଗରେ ଲୋହିତ
ନୂପୁର-ଯୁତ ପୟରେ ଭିତମ୍ବିନୀ-ଯୂଥ
ପଦକ୍ଷେପ କାଳେ କରି କଳ ହଂସ-ରୁତ
କରନ୍ତି ଜନମାନସ ସତତ ମୋହିତ ।

॥ ୬ ॥

ଚନ୍ଦନ ପଙ୍କେ ଶୀତଳ ପୀନ ପୟୋଧର
(ତୁଷାର-ବିମଳ ପୁଣି ଲମ୍ବେ ଯହିଁ ହାର)
କନକମେଖଳାବାହୀ ନିତମ୍ବର ଧାର,
କାହା ମନେ ନ କରଇ ଉତ୍କଣ୍ଠା ଅପାର ?

ପଣ୍ଡିତ-ମହାଶୟଙ୍କ ଏହି ଛଅଟି ଶ୍ଳୋକରେ ତାଳପତ୍ର ଖଣ୍ଡି ଶେଷ ହେଲା ।

ଶ୍ୟାମସୁନ୍ଦରବାବୁ - 'ପଣ୍ଡିତ-ମହାଶୟ ! ଅନୁବାଦଟିରେ ସଂସ୍କୃତ ଛଟାର ମାତ୍ରାଟା ଟିକିଏ ବେଶି ହୋଇଅଛି ।'

ପଣ୍ଡିତ-ମହାଶୟ- 'ଋତୁସଂହାର ମୂଳ ସହ ଏ ଅନୁବାଦକୁ ତୁଳନା କଲେ ଅସ୍ମଦ୍ଦୀୟ କୃତିତ୍ୱ ଜ୍ଞାତସାରରେ ଆସିବ । ପ୍ରତ୍ୟେକ ରେଖାରୂଢ଼ ଭାବ ପ୍ରତ୍ୟେକ ରେଖାରେ ସନ୍ନିବେଶିତ କରିବା ପକ୍ଷେ ଆମ୍ଭେ ଯତ୍ପରୋନାସ୍ତି ଯତ୍ନୀ ହୋଇଅଛୁଁ ।'

ଆମ୍ଭେମାନେ ବିଚାରିଲୁଁ ଯେ, ବୋଧହୁଏ ପଣ୍ଡିତ-ମହାଶୟ ଏଥି ମଧ୍ୟରେ ଟିକିଏ ଶିକ୍ଷାଲାଭ କରିଅଛନ୍ତି । 'କୌମାରୀପୂର୍ଣ୍ଣିମା' ପରି ରଚନାଚାତୁରୀ ପରିତ୍ୟାଗ କରି ଆପାତତଃ ଋତୁସଂହାରାନୁବାଦରେ ବ୍ରତୀ ହେବା ପଣ୍ଡିତ-ମହାଶୟଙ୍କର ବୃଦ୍ଧ ବୟସ ପକ୍ଷରେ ଯଥେଷ୍ଟ ପ୍ରଶଂସାପତ୍ର । ତେବେ ପଣ୍ଡିତ-ମହାଶୟଙ୍କ କଲ ଉପଯୁକ୍ତ ପଥରେ ଚଳିଲେ ବେଶ୍ ଚାଲନ୍ତା; କିନ୍ତୁ 'ପ୍ରାୟେଣ ସାମଗ୍ର୍ୟବିଧୌ ଗୁଣନାଂ ପରାଙ୍ମୁଖୀ ବିଶ୍ୱସୃଜଃ ପ୍ରବୃତ୍ତିଃ ।' ଦେଖିଲୁଁ ଯେ କବିଯଶଃପ୍ରାର୍ଥୀ ଅନେକ ବ୍ୟକ୍ତିଙ୍କ ଅନୁବାଦ ଅପେକ୍ଷା ପଣ୍ଡିତ-ମହାଶୟଙ୍କ ଅନୁବାଦ ନ୍ୟୂନକଳ୍ପ ନୁହେଁ ।

ମର୍ଦ୍ଦରାଜେ- ପଣ୍ଡିତ-ମହାଶୟ, ଏ ଅନୁବାଦରେ ଆପଣଙ୍କୁ 'ଅପ୍ରିୟ ସତ୍ୟ' ଶୁଣିବାକୁ ହେବ ନାହିଁ । ଚେଷ୍ଟା କରି ଏ ଅନୁବାଦଟି ସମ୍ପୂର୍ଣ୍ଣ କରନ୍ତୁ । ଅତ୍ୟୁକ୍ତିପୂର୍ଣ୍ଣ ପ୍ରଶଂସାରେ ଆମ୍ଭେମାନେ ସିଦ୍ଧହସ୍ତ ନୋହୁଁ । କିନ୍ତୁ ଆପଣ ଏତିକି ଜାଣନ୍ତୁ ଯେ, ଆପଣଙ୍କ ପ୍ରଥମ ଚେଷ୍ଟା କେତେକ ପରିମାଣରେ ସଫଳ ହେଲାପରି ବୋଧହୁଏ ।

ମହାଜନ ସାହୁ - ପାଠ ପଢ଼ି ରୋଜଗାର ନ କଲେ କଣ ହେଲା ? ଯେଉଁ ବହି ବେଶି କଟିଲେ ଦି' ପଇସା ମିଳିବ, ସେ କଥା କର । ଏଥିରୁ ଗୁଡ଼ାଏ କଲେ କି ଲାଭ ?

ମାଷ୍ଟର-ମହାଶୟ - ପଣ୍ଡିତ-ମହାଶୟଙ୍କ ପଦ୍ୟଟି ଉଚ୍ଛିଷ୍ଟ - (ପଣ୍ଡିତ-ମହାଶୟ ବର୍ତ୍ତମାନ ଗନ୍ଧକ, ମାଷ୍ଟରଙ୍କଦ୍ୱାରା 'ଉଚ୍ଛିଷ୍ଟ' ଶବ୍ଦ ବ୍ୟବହାର ସୋରା, ଏପରି ସ୍ଥଳରେ ଆମ୍ଭେମାନେ ଦେଖିଲୁ ଯେ ମାଷ୍ଟ୍ରଙ୍କଠାରୁ ଆଉ ପଦେ ଅଧେ କଡ଼ା କଥା; ଜ୍ୱଳନ୍ତ ଅଙ୍ଗାରଚୂର୍ଣ୍ଣ ଏଥିରେ ମିଶିଲେ ସର୍ବନାଶ । ପଣ୍ଡିତଙ୍କ ଭାବଭଙ୍ଗୀ ଦେଖି କୁମାରସମ୍ଭବର କାମଦେବଙ୍କ ଚିତ୍ରଟି ମନେପଡ଼ିଗଲା । ମାଷ୍ଟର-ମହାଶୟ ମଧ୍ୟ ପଣ୍ଡିତଙ୍କ ଭାବଭଙ୍ଗୀ ବେଶ୍ ବୁଝିପାରିଲେ । ଅସାବଧାନତା ପ୍ରଯୁକ୍ତ ବ୍ୟବହୃତ ଶବ୍ଦଟି ହଠାତ୍ ବଦଳାଇ ଦେଲେ ରକ୍ଷା । ନଇଲେ ଆମ୍ଭମାନଙ୍କର ସବୁ ସରସ ଭାବ ବିରସ ହୋଇ ଯାଇଥାନ୍ତା)- ଓଃ ରାମ- ଉତ୍କୃଷ୍ଟ ହୋଇଅଛି ସନ୍ଦେହ ନାହିଁ । ପଣ୍ଡିତଙ୍କ ଚକ୍ଷୁର ରକ୍ତିମା ପ୍ରାୟ ୩ ସେକେଣ୍ଡ ( ୭ ବିପଳ) ମଧ୍ୟରେ ପରିବର୍ତ୍ତିତ ହୋଇଗଲା । ଗୋଟାଏ ଅକ୍ଷର ପରିବର୍ତ୍ତନର ଏତେ ମାହାତ୍ମ୍ୟ ! ପଣ୍ଡିତ-ମହାଶୟ 'ନିର୍ବାତ ନିଷ୍କମ୍ପଇବ ପ୍ରଦୀପ' ଚାହିଁ ରହିଲେ ଓ ମାଷ୍ଟର-ମହାଶୟ କହିବାକୁ ଲାଗିଲେ - ଏ ବର୍ଷ ପୂଜା ଉପଲକ୍ଷରେ ଗୋଟିଏ Novodrama (ନାଟକୋପନ୍ୟାସ) compose (ରଚନା) କରିଥିଲି । (ଏତେ ଦିନକେ ମାଷ୍ଟର-ମହାଶୟ ଇଂରାଜୀ ଭାଷାରେ ଗୋଟିଏ ଆବଶ୍ୟକ ଶବ୍ଦ ଭର୍ତ୍ତି କଲେ !) ଏ work (ପୁସ୍ତକ)କୁ compose ପ୍ରକୃତ ଶବ୍ଦ compose ରଚନା ମାଷ୍ଟର 'S' କୁ ସାଧାରଣତଃ 'ଜ' ବୋଲି ଉଚ୍ଚାରଣ କରନ୍ତି, ଏହା ଧର୍ତ୍ତବ୍ୟ ନୁହେଁ, କରିବାକୁ ମତେ ଖୁବ୍ labour (ପରିଶ୍ରମ) ଲାଗିଛି । ମୋର English poem (ଇଂରାଜୀ ପଦ୍ୟକୁ) blame (ନିନ୍ଦା) କରୁଥିଲ । ବର୍ତ୍ତମାନ O ! brak ! smell ! touch and taste ! (ଚାହଁ, ଶୁଣ, ଶୁଁଘ, ଛୁଅଁ ଏବଂ ଚାଖ) ଏହା କହି ବିଡ଼ାଏ ପରୀକ୍ଷାକାଗଜ ବାହାର କଲେ । (ପରୀକ୍ଷା କାଗଜର ଅଲେଖା ପାଖରେ ଲେଖି ମାଷ୍ଟର-ମହାଶୟ ବ୍ୟୟଲାଘବର ପରାକାଷ୍ଠା ଦେଖାଇଥାନ୍ତି । ମାଷ୍ଟର-ମହାଶୟ ତାଙ୍କ Novodrama ଆରମ୍ଭ କଲେ -

ଦେବୀଙ୍କର ସ୍ୱର୍ଗ-ପ୍ରତ୍ୟାଗମନ ବା 'ଯେଝା ଘଡ଼ିକ ଯେ ।' Jejha Ghadika jay

## ପ୍ରଥମ ଅଙ୍କ-ପ୍ରଥମ ଦୃଶ୍ୟ

ଆଶ୍ୱିନ ଶୁକ୍ଳ ଚତୁର୍ଦ୍ଦଶୀ, ବେଳ ଦୁଇ ଘଡ଼ି ଅଛି, ତପୋବନର Cock Kelvy ଘଡ଼ି ଟଂ ଟଂ ୫ଟା ବାଜିଲା । ସ୍ଥାନ- କୈଳାସଶୃଙ୍ଗ, ଭୋଳାନାଥଙ୍କ ତପୋବନ-ଟୁଙ୍ଗି ଟୁଙ୍ଗିଦ୍ୱାରରେ ସଙ୍ଗିନ ହସ୍ତରେ ଭୃକୁଟୀ ଦଣ୍ଡାୟମାନ । ଟୁଙ୍ଗି ମଧ୍ୟରେ ଭୋଳାନାଥ ଖଣ୍ଡିଏ canvas chair (ପାଲଚଉକି)ରେ ଆସୀନ । ହାତରେ ଗୋଟିଏ ପାଲିସକରା ହାତୀଦାନ୍ତର ସ୍ୱର୍ଣ୍ଣାକ୍ଷରଖଚିତ ଜପାମାଳା । ନିକଟରେ ନନ୍ଦି ଆଣ୍ଠୁମାଡ଼ି pipe (ନଳୀ)ରେ ଗଞ୍ଜା ଭର୍ତ୍ତି କରିଅଛି । ଏହି ସମୟରେ ସଲାମ୍ କରି ଭୃକୁଟୀ ମହାଦେବଙ୍କ ହସ୍ତରେ ଖଣ୍ଡେ visiting card (ଦର୍ଶନୀ ପତ୍ରିକା) ପ୍ରଦାନ କଲା । ଭୋଳାନାଥ- visiting

card (ପଢ଼ି ଟିକିଏ ଇତସ୍ତତଃ ହୋଇ) ମେମ୍ ସାହେବ୍‌କୋ ହାମ୍‌ରା ସଲାମ ବୋଲୋ । ହାମ୍ ଯାତେହେଁ । ବାହାରମେ ବଇଠନେ ଚଉକି ଦୋ, ଦୋ ତିନି ମିନିଟ୍‌ମେ ହାମ୍ ମୁଲାକାତ୍ କରେଙ୍ଗେ (ଭ୍ରୂକୁଟୀ ଏକ ସଲାମ କରି ପ୍ରସ୍ଥାନ) ନନ୍ଦି ! ଫୂର୍ତ୍ତି କରୋ । ମେମ୍ ସାହେବ୍ ଅଭି ଆଏଙ୍ଗେ । ଗଞ୍ଜା ଦେଖିକେ ବଡ଼ା ଗରମ୍ ହୋଏଙ୍ଗେ ।

Foot-note- ପାଠକେ ! ମହାଦେବ ଆଗର ମହାଦେବ ନୁହନ୍ତି । ଯହୁଁ ଯହୁଁ ବୁଢ଼ା, ତହୁଁ ତହୁଁ ଫିଟ୍ । ଆପଣମାନେ କୁମାରସମ୍ଭବ, ମହାଭାରତ, ଶିବପୁରାଣ ଇତ୍ୟାଦିରେ ମହାଦେବଙ୍କର ଯେଉଁ ବର୍ଣ୍ଣନା ଶୁଣିଛନ୍ତି, ସେଗୁଡ଼ିକ ମସ୍ତିଷ୍କର ଗୋଟିଏ କାମରାରେ ଚାବି ପକାଇ ଏ Novodrama (ନାଟକୋପନ୍ୟାସ)ଟି ଶେଷ କରିବାଯାକେ ରଖି ଦିଅନ୍ତୁ, ନଚେତ୍ ମତେ mad (ବାତୁଳ) ବୋଲି ବିଚାରିବେ । ମହାଦେବଙ୍କର ଜଟା, ବିଭୂତି, ବ୍ୟାଘ୍ରଚର୍ମ, କାଷ୍ଠାସନ, ସର୍ପ ଇତ୍ୟାଦି ପରିବର୍ତ୍ତେ ଯଥାକ୍ରମେ ଚଇତନ-ଚୁରକି ଓ ଟେରି ପାଉଡର (powder) ସାଏମ ଚର୍ମ (chamois leather) କାନବିସ୍ ଚଉକି (canvas chair) ଗଳା ବନ୍ଧ (neck tie) ପ୍ରଭୃତି ହେଲାଣି । କୈଳାସରେ ମହାଦେବଙ୍କ କୋଠିରୁ ତପଃକୁଟୀର ୧୦୦ ଗଜ ତଫାତ୍ । ତପଃକୁଟୀରଟି ଭୋଳାନାଥଙ୍କ ଖାସ କାମରା । ବାହାରେ ସୁନେଲି କାଳିରେ ପୁରାତନ ସଂସ୍କୃତ ଅକ୍ଷରରେ No admission (ପ୍ରବେଶ ନିଷେଧ) ବିଜ୍ଞାପନ ମରା ଅଛି । ପାର୍ବତୀଙ୍କ ସଙ୍ଗେ ଏକାକୀ ଥିଲେ ଓଡ଼ିଆରେ କଥାବାର୍ତ୍ତା, କିନ୍ତୁ ଅନ୍ୟ ସମୟରେ ଆଧୁନିକ ରୀତି ଅନୁସାରେ ହିନ୍ଦୀ ଓ ଇଂରାଜୀ କଥାବାର୍ତ୍ତା ଓ Correspondence (ପତ୍ରଲେଖା) । ସେଠାରେ ସବୁ ଆଧୁନିକ କାଇଦା ଚଳିଲାଣି, କିନ୍ତୁ ଗଞ୍ଜା ପରିବର୍ତ୍ତେ Birds-eye ଚୁରଟ୍ ଚଳିବା କଥା ଦୁରୂହ ।

ନନ୍ଦି- (ମହାଦେବଙ୍କ ମୁଖରେ ଗଞ୍ଜା pipe ପ୍ରଦାନ ଓ pipeରେ ମୁଖାଗ୍ନି ଦାନ)- ହଜୁର୍ ! ହାମ ଶୁନ୍‌ତେ ହେଁ ମେମ୍‌ସାହେବ୍ ହୁଜୁରକା ଉପର୍ ବଡ଼ା ଖପ୍‌ପା ହୁଏଁ ହେଁ । ଆଜ୍ ଫଜ୍‌ରୀ ଦୁନିଆସୁଁ ତାର ଖବର ଭେଜେଥେ, ଯୋ ହାମ୍‌କୁ ବହୁତ୍ ଶରଦୀ ହୁଆ- ହାମ୍‌ରା ବାସ୍ତେ ଏକ୍ କପ୍ କାଫି ତୟାର୍ କର୍‌କେ ରଖୋ । ହାମ୍ ଅଭି ହାଁସ୍‌ପାତାଲମେ ପଡ଼ାହୁଁ । ଘଣ୍ଟା ସାଢ଼େ ଚାର୍ ବାଦ୍ ଷ୍ଟେସନପର୍ ଯୋଡ଼ି ଭେଜେ । ହାମ ଡାକ ଗାଡ଼ିମେ ପହୁଞ୍ଚେଙ୍ଗେ ।

(Foot note- ପାଠକେ ! ସତ କି ମିଛ ବୁଝିଲେ ତ ? ମହାଦେବଙ୍କ ମହଲରେ Train (ରେଳ) ଅଛି ଯୋଡ଼ି ଗାଡ଼ି ଅଛି କାଫି ଅଛି । ନନ୍ଦିର କଥା ଶୁଣି ମହାଦେବଙ୍କର ନିଶା ଛାଡ଼ିଗଲା । କଣ କରାଯାଏ ? ଆଠ ଦିନ ବିଚ୍ଛେଦ ପରେ ମିଳନ । ତା' ଉପରେ ଏ ଦଣ୍ଡ । ମହାଦେବ ବ୍ୟସ୍ତ ବିବ୍ରତ ହୋଇ ହିନ୍ଦୀ ଭାଷା ଭୁଲିଗଲେ ।)

ମହାଦେବ- ଆରେ ବାବା ନନ୍ଦି । ଆମ କଥା ସରିଲା । ମୁଁ ପରା ଜାଣେ । ସେ ଗଲା ଦିନ ଆଗରୁ ମୋ ଜଙ୍ଘରେ ଗୋଟାଏ ଝିଟିପିଟି ପଡ଼ିଥିଲା । ଯା ବାବା ! ତାଙ୍କୁ

କଅଁଳେଇ ସଅଁଳେଇ ଡାକି ଆଣ; ସେ ତ ଏହିକ୍ଷଣି ସଂସାର ରଖିବେ ନାହିଁ ! ସଂସାରରେ ଏଥର ଭାରି କଷ୍ଟ ପାଇଛନ୍ତି । ଗତ ୨୪ ତାରିଖ secon:l deliveryରେ ଆମେ ଦେବୀଙ୍କ କଷ୍ଟର ଆଭାସ ପାଇଥିଲୁଁ ।

(ନନ୍ଦିର ପ୍ରସ୍ଥାନ, ମହାଦେବ ଡେକସ ଦରାଜରେ pipe ଇତ୍ୟାଦି ଶୀଘ୍ର ଲୁଚାଇ ଦେଇ ନିକଟକୁ ଖଣ୍ଡେ bent wood chair (ଏକଜାତୀୟ ସୁନ୍ଦର ଚଉକି) ଆନୟନ ନନ୍ଦିର ପାର୍ବତୀଙ୍କ ସହ ପ୍ରବେଶ । ପାର୍ବତୀଙ୍କୁ ଖାସ କାମରାରେ ଛାଡ଼ି ଦେଇ ନନ୍ଦିର ବହିର୍ଗମନ ଓ ପାର୍ବତୀଙ୍କ ସହ କରମର୍ଦ୍ଦନ ଅଭିପ୍ରାୟରେ ମହାଦେବଙ୍କର ହସ୍ତ ପ୍ରସାରଣ ।)

ପାର୍ବତୀ- (କ୍ରନ୍ଦନ କରି ଦୂରରେ ଦଣ୍ଡାୟମାନ)- ଏଣିକି ପୂଜାକୁ ମତେ ପଠାଇବାର ଆବଶ୍ୟକ ନାହିଁ । ତୁମର ସଂସାର ତୁମେ ଜାଣ । ମୁଁ ଏଥରକ ଯାହା ଅନୁଭବ କରିଛି, ତହିଁରେ ପ୍ରତିଜ୍ଞା କରିଛି ଯେ ଏ ସଂସାର ସବୁ ପଛକେ, ମୁଁ ଏତେ ଅପମାନ ସହିପାରିବି ନାହିଁ । କିଛିଦିନ ଗଲାରୁ ମୋର ଦେବତ୍ୱ ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବ । ସଂସାରର ଅନୁଭବ ମନେପଡ଼ିଲେ କ୍ରୋଧରେ ମୁଁ ଅସ୍ଥିର ହେଉଅଛି ।

ମହାଦେବ- ଯାହା ତ ହେଲାଣି ହେଲାଣି । ଆସ (ମହାଦେବ ଆପଣା Waist coat (ଫତେଇ) ପକେଟରୁ ରେସମି Essence (ସୁଗନ୍ଧ) ଦିଆ ରୁମାଲ ବାହାର କରି ପାର୍ବତୀଙ୍କ ଅଶ୍ରୁ ପୋଛିବା ।) ଏତେ ଅବସ୍ଥା ହେବ କିପରି ? ମୁଁ ସେଥିପାଇଁ କହେ, ଦି'ଗୋଡ଼ିଆଙ୍କୁ ବିଶ୍ୱାସ ନାହିଁ । ତୁମେ କିନ୍ତୁ ସବୁବେଳେ ତାଙ୍କ ପକ୍ଷ ଧରି ଓକାଲତି କରୁଥାଅ । ତାଙ୍କୁ ସମୂଳେ ନାଶ କରିବାକୁ ମୁଁ ଉଦ୍ୟତ । ଏଥିପାଇଁ ଭଗବାନ୍ ବ୍ରହ୍ମାଙ୍କର ମୋ ସଙ୍ଗେ ବିବାଦ । ଭଗବାନ୍‌ଙ୍କର ଗୋଟାଏ Casting vote (ଅଧିକା ଭୋଟ) ଥିବାରୁ ସେ କାହାକୁ ମାନୁ ନାହାନ୍ତି । ଆଜି ଦେବୀଙ୍କର ଅବସ୍ଥା ଦେଖି ମନ ଯାହା ହେଉଅଛି, ତାହା ମୁଁ ଜାଣେ । ଏଥର election (ନିର୍ବାଚନ) ବେଳକୁ ଭଗବାନ୍‌ଙ୍କୁ ନ ତଡ଼ିଲେ ଆଉ ଉପାୟ ନାହିଁ । ଭଡ଼ାଗାଡ଼ି ୪ ଖଣ୍ଡ, ଲୋମୋନେଡ଼ ଅଧ ଡଜନେ ହେଲେ କାମ ଫତେ । (ପାର୍ବତୀଙ୍କୁ ସମ୍ବୋଧନ କରି କ୍ରୋଡ଼କୁ ଆନୟନ ଓ ସସ୍ନେହ ଆଲିଙ୍ଗନ) ଆଚ୍ଛା ପ୍ରିୟେ ! ଦେହ ପୀଡ଼ିତ ହେଲା କିପରି ? ଆଠ ଦିନ ମୋ ପାଖରୁ ଗଲ, ଏହା ମଧ୍ୟରେ ଏତେ ପରିବର୍ତ୍ତନ ! ସେଥିପାଇଁ ତୁମ୍ଭଙ୍କୁ ଏକାକୀ କେଉଁଆଡ଼େ ଛାଡ଼ିଦେବାକୁ ମୋ ମନ ହୁଏ ନାହିଁ । ଆହା ! ଏ ସୁକୁମାର ଦେହ କେତେ ଦୁଃଖ ପାଇଲା !

(Foot note- ପାଠକ ମହୋଦୟ ! ଦେଖିଲେ ତ ! Waist coat (ଫତେଇ) essence (ସୁଗନ୍ଧ ଅର୍କ), casting vote (ଅଧିକା ଭୋଟ୍), ଓକିଲାତି ସବୁ ଦେବତାଙ୍କଠାରେ ଚଳିଲାଣି । ଆଧୁନିକ ସଭ୍ୟତା କାହାକୁ ସ୍ପର୍ଶ ନ କରି ନାହିଁ ? ଭୋଳାନାଥ ପୁରୁଣା conservative (ରକ୍ଷଣଶୀଳ) ତାଙ୍କର ତ ଏ ପରିବର୍ତ୍ତନ ! ଅନ୍ୟାନ୍ୟଙ୍କ କଥା କ'ଣ ?)

ପାର୍ବତୀ - ଦିନକୁ ଦିନ ତାମସିକ ଭକ୍ତିର ମାତ୍ରା ବଢ଼ୁଛି । ମୋର ପର୍ବ, ତହିଁରେ ତୁମକୁ ନେଇ ଠିଆ କରାଉଛନ୍ତି କାହିଁକି ? ମୋ ପର୍ବରେ ତୁମର ପୂଜା ହେଲେ ମୋର ବିଶେଷ କିଛି ଆପତ୍ତି ନାହିଁ । କିନ୍ତୁ 'ରାଧାରାଣୀ'ଙ୍କର ମଧ୍ୟ ପୂଜା ! ପୂଜା ବା କାହିଁ ? କେବଳ ସୁଆଙ୍ଗ ! ଏ ସବୁ କେଉଁ ଶାସ୍ତ୍ରରେ ଅଛି, ମୁଁ ବୁଝିପାରୁ ନାହିଁ ? ମତେ 'ମା, ମା' ବୋଲି ସମ୍ବୋଧନ ନ କଲେ ଦଣ୍ଡେ ପାଣି ପିଇବେ ନାହିଁ । ମୋର ଦ୍ୱାହି ଦେଇ କେତେ ବୀଭତ୍ସ ଅଭିନୟ ନ ହେଲା ! ଚାହୁଁ ଚାହୁଁ ବାହ୍ୟ ଓ ତାମସିକ ଭକ୍ତି ଆସି ସଂସାରକୁ ଘୋଟିଗଲାଣି । ପ୍ରଭୋ ! ଶୀଘ୍ର ଉପାୟ କର, ନଚେତ୍ ତ୍ରାହି ନାହିଁ । ମୋ ପ୍ରତି କାହାର ଭକ୍ତି ନ ଥାଉ ପଛକେ, କାରୁକାର୍ଯ୍ୟ ଦେଖି ଲୋକେ ପସନ୍ଦ କଲେ ନାହିଁ ! ଛି ଛି, ଟିକିଏ ବିବେକ ଶକ୍ତି ତୁମେ ସେମାନଙ୍କୁ ଦେଇ ନାହଁ । ନଈକୂଳକୁ ନେଇ ବିଧବାଙ୍କଠାରୁ ଅଳଙ୍କାର କାଢ଼ିଲାପରି ମୋଠାରୁ ଲୁଗାପଟା ଅଳଙ୍କାରପତ୍ର ଛଡ଼େଇ ନେଇ ମୁହଁମଡ଼େଇ ପାଣିରେ ମାଡ଼ିଦେଲେ, ହାତ ଗୋଡ଼ ଛିଣ୍ଡିଯାଇଛି, ଗୋଡ଼ର ବଳାଗଣ୍ଠିଟା ଦରଜରେ ଛୁଇଁ ହେଉ ନାହିଁ । (କ୍ରନ୍ଦନ)

(Foot note- ଅଳଙ୍କାର ଓ ବସ୍ତ୍ର କଥା କହୁଁ କହୁଁ ଦେବୀ ଭୋ ଭୋ ରଡ଼ି ପକାଇଲେ । ପଣ୍ଡିତ-ମହାଶୟ କହନ୍ତି, 'ସଂସର୍ଗ ବା ଦୋଷ ଗୁଣା ଭବନ୍ତି ।' ଦେବୀ ମର୍ତ୍ତ୍ୟକୁ ଆସି ଲୋଭ ଶିଖିଲେ ! Cowper କହିଅଛନ୍ତି "No cat is averse to fish' ଆମ ସାଇମାଇପେ କହନ୍ତି ସ୍ୱର୍ଗକୁ ଗଲେ କି ଢିଙ୍କି ଧାନକୁଟା ଛାଡ଼ିବ ? ଦେବୀ ହେଲେ କ'ଣ ହେବ ? ଯେତେ ହେଲେ ତ ମାଇପି ଜାତି ।)

ମହାଦେବ- (କୋପବିସ୍ଫାରିତ ନୟନରେ) ଆଚ୍ଛା ! ହାମ୍ ଠିକ୍ କର୍‌ଦେଙ୍ଗେ । ଓସ୍ତାଦ୍‌କା ସାଦ୍ ଗିଲଦ୍ । (Foot note) 'ଯଥା ଦେବେ ତଥା ଦେହେ' ଯେପରି ଆମ୍ଭେମାନେ ରାଗିଗଲେ ବେଳେ ବେଳେ ପଦେ ଅଧେ ହିନ୍ଦୁସ୍ଥାନୀ ମୁହଁରୁ ବାହାରିଯାଏ, ମହାଦେବ ସେହିପରି ଏ ଦି'ପଦ କଥା ହିନ୍ଦୀରେ କହି ପକାଇଲେ । ପାଠକେ ! ଗୋଟାଏ ଖୁବ୍ ଭଲ simile (ଉପମା) ମନେ ପଡ଼ିଗଲା । ମହାଦେବଙ୍କ କୋପବିସ୍ଫାରିତ ତ୍ରିଚକ୍ଷୁ କାହା ସଙ୍ଗରେ ଚଳନୀୟ ? ଟିକିଏ ଭାବନ୍ତୁ । ରାତିରେ ଥରେ ଷ୍ଟେସନରୁ ରେଳଗାଡ଼ି ଛାଡ଼ିଦେଲା ବେଳେ ଟିକିଏ ରେଳଗାଡ଼ି ପଛଆଡ଼କୁ ଚାହିଁଲେ ହଠାତ୍ ମୋ ଉପମାଟାକୁ ଗିରଫ କରିନେବେ । ରେଳଗାଡ଼ିର ଶେଷ ଗାଡ଼ି ଯେଉଁଥିରେ guard (ଗାର୍ଡ଼) ଥାନ୍ତି ସେ ଗାଡ଼ିର ମସ୍ତକର ମଧ୍ୟଭାଗରେ ଗୋଟିଏ ନେଳି ଆଲୁଅ ଓ ଦୁଇ ପାର୍ଶ୍ୱରେ ଯୋଡ଼ିଏ ନାଲି ଆଲୁଅ । ମହାଦେବଙ୍କ ମୁହଁଟି ସେହିପରି ତ୍ରିଚକ୍ଷୁଯୁକ୍ତ ହୋଇ ଦିଶୁଥାଏ । ଆଚ୍ଛା, ପ୍ରିୟେ ! ତା'ପରେ ତୁମେ ଆସିଲ କିପରି ? ବାଟରେ କିଛି ଅସୁବିଧା ହୋଇ ନାହିଁ ତ ?

ପାର୍ବତୀ- ସେ ସରମ କଥା କଣ କହିବି ? ବାଟରେ ଆସୁ ଆସୁ ମୋର ବୀଭତ୍ସ ରୂପ ଦେଖି ପହରାବାଲା ମତେ ବାୟାଣୀ ବୋଲି ନେଇ ପାଗଳାଖାନା (Lunatic

assylum)ରେ ପୂରେଇଲେ । ବଡ଼ ସାହେବ ଆସି ତଦାରଖ କରି ମତେ ସାର୍ଟିଫିକେଟ (certificate) ଖଣ୍ଡେ ଦେଲାରୁ ମତେ ପାଗଳାଖାନାବାଲା ଖଣ୍ଡେ ଥାନଫଡ଼ା ଲୁଗା ଓ ତିନିଅଣା ପଇସା ଦେଇ ବିଦାୟ କରିଦେଲେ । ତୁମେ ଥାଉଁ ଥାଉଁ ମୁଁ ଥାନଫଡ଼ା ଲୁଗା ପିନ୍ଧୁଛି କିମିତି ? ପଛକୁ କଣ କରିବି, ପିନ୍ଧି କରି ଅଇଲି । ରେଳ ଇଷ୍ଟେସନ (station)ରେ ପହଞ୍ଚିଲି । ଗଲା ଦରଜ, ତା ଉପରେ ଅଜୀର୍ଣ୍ଣ ଝାଡ଼ା (diarrhoea); ଡାକ୍ତର ମାଇନାରେ ମୁଁ ଅଟକି ରହିଲି । ଆସି ହାସ୍‌ପାତାଳ (Hospital)ରେ ପଡ଼ିଲି । ପଛକୁ ଡାକ୍ତରଙ୍କଠାରେ ଆତ୍ମ ପରିଚୟ ଦେବାରୁ ଡାକ୍ତର ବିଚାରା ବହୁତ ପରିଶ୍ରମ କଲା (ମହାଦେବ ପାର୍ବତୀଙ୍କଠାରୁ ସେ ଡାକ୍ତରଙ୍କ ନାମ, ଧାମ ଓ ଠିକଣା ଆପଣା memorandum (ୟାଦଦାସ୍ତ ବହି)ରେ copying pencil (ବାଇଗଣି ପେନ୍‌ସିଲ)ରେ ଟିପି ନେଲେ । କେତେ tincture, କେତେ mixture, କେତେ powder, କେତେ liniment ଦେବାରୁ ବଞ୍ଚିଗଲି । ଜ୍ୱର ୧୦୬.୮୦ ଡିଗ୍ରୀ ହୋଇ ଯାଇଥିଲା, collapse (ସନ୍ନିପାତ) ମଧ୍ୟ ହୋଇଥିଲା । ଚାରି ଦିନ sagoo ଆଉ milk (ସାଗୁଦାନା ଓ ଦୁଧ) ଖାଇଛି । ଟିକିଏ ଉଠିବସି ପାରିଲାରୁ ଡାକ୍ତରବାବୁ ଦୟା କରି discharge (ଖଲାସ) କରିଦେଲେ ଏବଂ ନିଜେ ଷ୍ଟେସନକୁ ଆସି ଟିକଟ କିଣି ଦେଇ ଗାଡ଼ିରେ ବସାଇଦେଇ ଗଲେ । Hospital (ଡାକ୍ତରଖାନା)ରୁ ନନ୍ଦିକୁ telegram (ତାର ଖବର) କରିଥିଲି । ସଂସାରରେ ରହି ମୁଁ ପୂର୍ଣ୍ଣ ସଂସାରୀ ହୋଇଗଲି ।

ମହାଦେବ- ଆଚ୍ଛା, ପ୍ରିୟେ ! ଥୟ ଧର, ମୁଁ ସମସ୍ତଙ୍କୁ ଉଚିତ ଶିକ୍ଷା ଦେଉଛି । ଡାକ୍ତରବାବୁଙ୍କୁ ଅମର ବର ଓ ଅଚଳାଚଳ ସମ୍ପତ୍ତି, ଧନ, ଜନ, ଗୋପ, ଲକ୍ଷ୍ମୀ, ଆୟ, ଆରୋଗ୍ୟ, ଐଶ୍ୱର୍ଯ୍ୟ, ଧାନ୍ୟ ଧାରା, ସବୁ ଦିଆଯିବ । (ସ୍ୱଗତ- ଡାକ୍ତର ବିଚାରା ନ ଥିଲେ ମୋତେ ବୁଢ଼ାଦିନେ 'ଚୁଲେର କଲ୍‌ପ' ବ୍ୟବହାର କରିବାକୁ ହୋଇଥାନ୍ତା । ଏ ବୁଢ଼ା ବୟସରେ ଲୋକେ କନ୍ୟା ଦେବାକୁ ମଙ୍ଗନ୍ତେ ନାହିଁ । ଯେବେ ଅବା କେହି ମଙ୍ଗନ୍ତେ, ତେବେ ଦୋଘାଇ ବର ବୋଲି ବହୁତ ଦାମ ହାଙ୍କନ୍ତେ । ମୁଁ ଟଙ୍କା ପା'ନ୍ତି କାହୁଁ ?)

(Foot-note- ଦେବତା ମହଲରେ ମଧ୍ୟ ଦେଖିଲେ ତ ! ଦୋଘାଇ (ମୃତଦାର) ବରଙ୍କୁ ବେଶି ଜରସମନ ଦେବାକୁ ପଡ଼େ !) ଆଚ୍ଛା ! ପଇଁଚାଳିଶି ମିନିଟରେ ସବୁ ଭସ୍ମ କରିଦେବି । ଚପରାସି ! (ଏହା କହି ଖଣ୍ଡେ କାଗଜରେ ଖଣ୍ଡିଏ ଚିଠି ଡ୍ରାଫ୍‌ଟ (draft) କଲେ । ବାହାରୁ 'ହଜୁର୍' ବୋଲି ଉତ୍ତର ଦେଇ ଏକ ସଲାମ୍ କରି ନନ୍ଦୀର ପ୍ରବେଶ) କେରାନିବାବୁକୁ ସଲାମ୍ ବୋଲୋ । (ନନ୍ଦିର ପ୍ରସ୍ଥାନ ଓ ଦେଢ଼ ମିନିଟରେ କେରାନିବାବୁଙ୍କ ସହ ପୁନଃ ପ୍ରବେଶ) Well ! Baboo ! ଦେଖୋ, ଏ ଚିଠିକା ଏକ fair-copy (ସାଫ ନକଲ) କର୍‌କେ ଯମ୍ ଦେବକା ପାସ୍ ଆଜ୍ ଡାକ୍‌ମେ ଭେଜୋ । ନେହିଁ ତ ମୁଲାକାତ୍ କର୍‌କେ ହାମ୍‌ରା ସଲାମ୍ ବୋଲୋ । (କେରାନିବାବୁ ପତ୍ର ଖଣ୍ଡିକ ହାତରେ ଧରି ସଲାମ୍ କରି ପ୍ରସ୍ଥାନ)

[Foot-note- କେରାନିବାବୁ ଆମ ଦେଶୀ କେରାନିବାବୁଙ୍କ ଭଳି । ପାଦରେ ଅବଶ୍ୟ ଜୋତା ନାହିଁ ।

ପତ୍ର ଖଣ୍ଡିକ ଇଂରାଜୀରେ ଲେଖା, ଏହି -

Urgent (Demi officia)

My dear jam, My Lady has been brutally assaulted by the unfeeling mob below, They must be dealt with under Council's Code No. 45, Dt. 1-1-00. Depute Plague, Smallpox, Cholera and Malaria with armed force to disperse the mob, Here in fail not.

Sd.B.M.

P.S. I have sent an order to H.H. Indra send his thunderbolt. Please return the accompanying warrant to this court with and endorsement certifying that the order has been executed.

Sd.B.

ଅନୁବାଦ - ପ୍ରିୟ ଯମ ଦେବ ! ମେମ୍ ସାହେବ ପୃଥିବୀର ଇତର ଲୋକଙ୍କଠାରୁ ପାଶବ ଅତ୍ୟାଚାର ଭୋଗ କରିଅଛନ୍ତି - ସଭାର ସୁଷ୍ୟଦ ପ୍ରାରମ୍ଭର ୪୫ ବ୍ୟବସ୍ଥା ଅନୁସାରେ ସେମାନେ ଦଣ୍ଡ୍ୟ । ଅତଏବ ସେମାନଙ୍କୁ ଦଣ୍ଡ ଦେବା ନିମନ୍ତେ ମହାମାରୀ, ବସନ୍ତ, ବିସୂଚିକାଙ୍କୁ ପଠାଅ । ସେମାନେ ସସୈନ୍ୟରେ ଇତର ଲୋକଙ୍କ ମେଳି ଭାଙ୍ଗି ଦିଅନ୍ତୁ ॥

(ସ୍ୱାକ୍ଷର-ମହାଦେବ)

ପୁନଶ୍ଚ- ଇନ୍ଦ୍ରରାଜଙ୍କ ନିକଟକୁ ହୁକୁମନାମା ଯାଇଅଛି ଯେ, ସେ ଚଡ଼କକୁ ପଠାଇଦେବେ । ଏଥି ସଙ୍ଗେ ଥିବା ଉଆରେଣ୍ଟରେ ହୁକୁମ ତାଲିମ କରିଥିବା ନିଦର୍ଶନ ଲିପି ସ୍ୱାକ୍ଷର ସହ ଆମ୍ଭର ଇଜଲାସକୁ ଫେରାଇ ଦେବ ।

(Foot-note- ଦଣ୍ଡବିଧି ବ୍ୟବସ୍ଥା ମଧ୍ୟ ସ୍ୱର୍ଗରେ ଚଳେ । ଦେବତାମାନେ ଏଣିକି ଖୁବ୍ Liberal 'ପରିବର୍ତ୍ତନଶୀଳ' ହେଲେଣି ।)

ଭ୍ରୁକୁଟୀର ପ୍ରବେଶ ଓ ମହାଦେବଙ୍କ ହସ୍ତରେ ଖଣ୍ଡେ Visiting card (ଦର୍ଶନ କାର୍ଡ଼) ପ୍ରଦାନ ।)

ଭ୍ରୁକୁଟୀ- ବଡ଼ା ସାହେବ ସଲାମ୍ ଦେତେହେଁ ।

ମହାଦେବ- କାଲ୍ ଫଜରୀ ଆନେକୁ ବୋଲୋ । ହାମ୍ରା ମେଜାଜ୍ ଠଣ୍ଡା ନେହିଁ । ମେମ୍ ସାହେବକା ତବିୟତ୍ ବି ତାଜା ନେହିଁ । ବଡ଼ା ସାହେବକୁ ଏ ଖବରକାଗଜ ଦୋ,

ହାମ୍‌ରା ବହୁତ୍ ବହୁତ୍ ସଲାମ୍ ବୋଲୋ । (ଏହା କହି ଭ୍ରୂକୁଟୀ ହସ୍ତରେ 'ରାଧାଚଡ଼କ' ଖବରକାଗଜ ପ୍ରଦାନ)

(Foot-note- ସ୍ୱର୍ଗରେ 'ରାଧାଚଡ଼କ ନାମକ' ସମ୍ବାଦପତ୍ର ଚଳେ । ସ୍ୱର୍ଗରେ ଗୋଟିଏ ଛାପାଖାନା ନାହିଁ, ଶୀଘ୍ର ଫିଟିବା ସମ୍ଭବ । କିନ୍ତୁ Type Writer ନାମକ ଯନ୍ତ୍ରରେ ବର୍ତ୍ତମାନ 'ରାଧାଚଡ଼କ' ନାମକ ଖବରକାଗଜ ଲେଖା ହୋଇ ବାହାରେ । ସେ ସମ୍ବାଦପତ୍ର କଥା ଦ୍ୱିତୀୟ ଅଙ୍କରେ ଶୁଣିବେ ।)

ଭ୍ରୂକୁଟୀ ଓ ନନ୍ଦିର ପ୍ରସ୍ଥାନ ।

## ପଟକ୍ଷେପଣ

(ଭିତରୁ concert ବାଦ୍ୟ ଓ ଅସ୍ଫୁଟ ଅବ୍ୟକ୍ତ ମଧୁର ହ୍ରେଷା ।

ମାଷ୍ଟର-ମହାଶୟ Novodramaଟିର ପ୍ରଥମ ଦୃଶ୍ୟ ଶେଷ କଲେ । ସେ କହିଲେ ଯେ ଏଥିରେ ପଣ୍ଡିତ-ମହାଶୟ ଓ ରାମହରି ମିଶ୍ର ବି.ଏ. ତାଙ୍କୁ ବିଶେଷ ସାହାଯ୍ୟ କରିଛନ୍ତି ।

ମୁଁ କହିଲି- ମାଷ୍ଟର-ମହାଶୟ, ବେଶ୍ । ଇଂରେଜୀ Poem (ପଦ୍ୟ) ଆପଣ ରଚନା କରି ସମୟ ନଷ୍ଟ କରୁଥିଲେ । ଆପଣ ତ ଆଜି ମନ୍ଦ କରି ନାହାନ୍ତି ।

ମାଷ୍ଟର- ରାମହରି ମିଶ୍ରଙ୍କ 'ଅପ୍ରିୟ ସତ୍ୟ' ଉପଦେଶ ଓ ସଂଶୋଧନ ନ ପାଇଥିଲେ ମୋର Poem (ପଦ୍ୟ) compose (ରଚନା) ଅଭ୍ୟାସଟି Leave (ଛାଡ଼ି) କରି ନ ଥାନ୍ତି ।

ମର୍ଦ୍ଦରାଜ- ମାଷ୍ଟର-ମହାଶୟ ! 'ଦେବଗଣେର ମର୍ତ୍ତ୍ୟେ ଆଗମନ' ଶୀର୍ଷକ ଖଣ୍ଡିଏ ବଙ୍ଗଭାଷାର ଉତ୍କୃଷ୍ଟ ପୁସ୍ତକର ଛଟା ସଙ୍ଗେ ଆପଣଙ୍କ ଲେଖା କେତେକ ଅଂଶରେ ତୁଳନୀୟ । ଆପଣ ଏହାକୁ ନାଟକୋପନ୍ୟାସ ଭାବରେ ନ ଲେଖି ଉପନ୍ୟାସ ରୀତିରେ ଲେଖିଥିଲେ ବେଶ୍ ହୋଇଥାନ୍ତା । କିନ୍ତୁ ଯାହାହେଉ, ଆପଣ ବେଶ୍ କରିଅଛନ୍ତି । ସ୍ଥାନେ ସ୍ଥାନେ ବ୍ୟଙ୍ଗବିଦ୍ରୂପର ମାତ୍ରାଟା ଟିକିଏ ଅଳ୍ପ ହୋଇଥିଲେ ଆହୁରି ମଧୁର ହୋଇଥାନ୍ତା । ଯାହାହେଉ, ଏ ଖଣ୍ଡିକ ଶେଷ କରି ଆମ୍ଭମାନଙ୍କୁ ଦେଖାଇବେ । ଅବଶ୍ୟ ଜଣକୁ ତିନି ଜଣ ଦେଖିଲେ ଅନେକ ଭ୍ରମ ପ୍ରମାଦ ଦୂର ହୋଇପାରେ । ଆପଣାର ତ୍ରୁଟି ଅନ୍ୟ ଲୋକ ଚକ୍ଷୁରେ ପଡ଼ିଲେ ଶୋଧିତ ହେବାର ସୁବିଧା ଢେର ମିଳେ; ସେଥିରେ ଲଜ୍ଜିତ ହେବାର କଥା କିଛି ନାହିଁ ।

ମସ୍ତରାମ- ସ୍ୱର୍ଗରେ ସୁଦ୍ଧା କୀଟ ଲାଗିଲେଣି ? ଦୁର୍ଗାପୂଜାଟି ବନ୍ଦ ହେଲେ ଆମ ଭୋଜନରେ ଧୂଳି ପଡ଼ିବ । ପୂଜାଟି ବନ୍ଦ ହେଲେ ଇସକୁଲ, କଚେରି ତ ଆଉ ବନ୍ଦ ହବ ନାହିଁ । ମୋର ସିନା ଭୋଜନ ବନ୍ଦ ହବ, ଗରିବ ଦୁଃଖୀଙ୍କ କଷ୍ଟ ମେଣ୍ଟିବ । କଚେରି ବନ୍ଦ ବେଳେ ଦୁଃଖୀ ଭିକାରିଙ୍କୁ ଦଶା ପଡ଼େ । ବାବୁମାନେ ଯେଝା ଖଞ୍ଜାରେ ଯେ ସହରରୁ

ମଫସଲକୁ ଯାଆନ୍ତି । ଭିକମଗାଙ୍କ ଭିକ ବନ୍ଦ ହୁଏ । ବାଣ ମଜଲିସରେ ଟଙ୍କା ଉଡୁଥାଉ, ଦୁଃଖୀ ଭିକାରି ମରନ୍ତୁ ! କାହାର ପୁଷମାସ, କାହାର ଉପବାସ । ଆଉ ଗୋଟିଏ କଥା - ଦଶହରାରେ ଦେବୀଙ୍କ ଆଗରେ ବାଈନାଚ ହୁଏ । ମତେ ଭାରି ଖୁସି ଲାଗେ । ଆଚ୍ଛା, ଦେବୀଙ୍କୁ ବାଈନାଚ କିମିତି ଲାଗେ, ସେ କଥା ତ ମାଷ୍ଟର କିଛି ଲେଖିଲେ ନାହିଁ ! ଆମ ବାବୁ ଏ ବରଷ ଯୋଉଁ ବାଈ ପଞ୍ଝାକୁ ଆଣିଥିଲେ, ସେ ବାଈ ଭାରି ସରସ । ରାମବାବୁ ସେ ବାଈଙ୍କ ଆଡ଼କୁ ନ ଚାହିଁଲେ ବୋଲି ସେ ବାଈଙ୍କ ଭିତରୁ ଜଣେ କହିଲା, ଶିଳ ଶିଳୁପତା ଗଗନେ ଉଡୁଛି, ଶିମିଳି ତୁଳା କହୁଛି ମତେ ରଖ ।' ଗଣ୍ଡା ଗଣ୍ଡା ବଢ଼ିଆବାବୁ ଆମ ଗୋଡ଼ତଳେ ବନ୍ଧା । ରାମବାବୁ ଗୋଟାଏ ବାବୁରେ ସୁମାରି ? ବାଈ ଏଠେଇଁ ଚାରି ଦିନ ରହିଲେ ଯେ ଏ ଗାଁରେ ବାବୁଙ୍କ ଘରେ ଦିନ ରାତି ଦେଖଣାହାରୀ । ବାଈଙ୍କ ଅଳଙ୍କାରପତ୍ର, ବନାରସୀ ଶାଢ଼ି ଦେଖି ମୁଁ ବିଚାରେ ଯେ ଆମ ମାଇପଙ୍କ କପାଳରେ ଏ ରାଜଭୋଗ ନାହିଁ । ମଣିଷଙ୍କ ତପସ୍ୟା ରଜା ଜନ୍ମରେ ଶେଷ; ମାଇପଙ୍କ ତପସ୍ୟା ବାଈ ଜନ୍ମରେ ଶେଷ । (ଏହା ମସ୍ତରାମର ଗୋଟିଏ ଖାମଖେୟାଲି । ଆପଣ ଥରେ ଜ୍ୟୋତିଷ ଶାସ୍ତ୍ରର ଜାତକରେ ଏକା ଘରେ ଚାରି ଗ୍ରହ ଥିବା ଫଳଟା କଅଣ ପାଠ ଡାକୁଛି ମିଳାଇ ନେଲେ ବୁଝିବେ)- ଯେଡ଼େ ଗୋଟାଏ କାରଖାନା ହେଲେ କଅଣ ହବ, ବାଈନାଚ ନ ହେଲେ ସବୁ ଅକାରଣ ! ହେଲେ କଅଣ ହବ, ମୁଁ ଭୋଜନର ମାଲିକ । ପେଟଫଟା ଭୋଜନ ମିଳୁଥିଲେ ବାବୁମାନଙ୍କ ଭଳି ମତେ ନାଚ ଫାଚ ଭଲ ଲାଗେ ନାହିଁ ।

ମସ୍ତରାମ ଆଜି ଟୁଙ୍ଗିରେ ନୀରବ ହୋଇ ବସିଥିଲା । ଶେଷକୁ ତା ପାଟି ଫିଟିଲା । ଆଉ ସମ୍ଭାଳେ କିଏ ?

ଫେର କହିଲା, ସ୍ୱର୍ଗରେ ଅପଛରାଏ ନାଚନ୍ତି । ତାଙ୍କୁ ତ ଆମ ବାଈଙ୍କ ଭଳି ଖେମଟା ନାଚ ଆସୁ ନ ଥିବ । ମତେ ଜଣାଯାଏ, ନୂଆ ନାଚ ଦେଖି ଦେବୀ ଭାରି ଖୁସି ହଉଥିବେ ପରା । ସେ ସିନା ମହାଦେବଙ୍କ ଅଣ୍ଡିରାନାଚ ଦେଖିଛନ୍ତି, ବାଈନାଚ କାହୁଁ ଦେଖିବେ । ଏ ବାଈନାଚ ଲୋଭ ଛାଡ଼ି ଦେବୀ ଯେତେ ଦହଗଞ୍ଜ ପାଇଲେ ସୁଦ୍ଧା ଦଶହରା ଚାରି ଦିନ ସ୍ୱର୍ଗରେ ରହିପାରିବେ, ମତେ ଯା ତ ପସନ୍ଦ ଲାଗୁ ନାହିଁ । ଆମ ପାଠରେ ସବୁ ସବୁ ଅଛି - ଉପରେ ବାଈ, ତଳେ ବାଈ, ଭିତରେ ବାଈ !

ଶେଷ କଥା ଆମ୍ଭେମାନେ ବୁଝିପାରିଲୁ ନାହିଁ ଓ ମସ୍ତରାମ ପ୍ରେମରେ ଟୁଙ୍ଗିରୁ ଉଠିଗଲା । ଏକେ ତ ମସ୍ତରାମ ପାଗଳ । ତା ଉପରେ କାହୁଁ କାହୁଁ କଥା ମାନ ଆଣେ । ଆଜି ଯାହା କହିଗଲା, ତହିଁରେ ଆମ୍ଭେମାନେ ବାଧା ଦେଲୁ ନାହିଁ । ବାଧା ଦେବାର ବିଶେଷ ଆବଶ୍ୟକ ବୋଲି ମନେକଲୁଁ ନାହିଁ ! ପାଠକ ମନେ କରନ୍ତି କି ?

ଉତ୍କଳ ସାହିତ୍ୟ/୫ମ ବର୍ଷ/୮ମ ସଂଖ୍ୟା/୧୩୦୯ ସାଲ ।

## ଦଶମ ସନ୍ଧ୍ୟା

ମସ୍ତରାମ ଆଜି ସମସ୍ତଙ୍କ ଆସିବାପୂର୍ବରୁ ଟୁଙ୍ଗିରେ ଉପସ୍ଥିତ । କିଛିକ୍ଷଣ ପରେ ମୁଁ, ମର୍ଦ୍ଦରାଜେ, ଶ୍ୟାମସୁନ୍ଦରବାବୁ, ପଣ୍ଡିତ-ମହାଶୟ ଆସି ପହଞ୍ଚିଲୁ, ସମସ୍ତେ ବସିଲୁ । ଆଜି ଦେଖିଲୁ ଯେ ମସ୍ତରାମ ଅପେକ୍ଷାକୃତ ପ୍ରକୃତିସ୍ଥ ଓ ଦୁଃଖ ଭାରାକ୍ରାନ୍ତ । ମସ୍ତରାମକୁ ଆମ୍ଭେମାନେ ଜାଣୁ ପ୍ରେମର ଅବତାର- ଆତ୍ମାରାମ୍ । ସବୁବେଳେ ଆନନ୍ଦମୟ, ସେ ଆଜି ବିମର୍ଷ, ଏ ବଡ଼ ଆଶ୍ଚର୍ଯ୍ୟ ! ଆମ୍ଭେମାନେ ସମସ୍ତେ ମସ୍ତରାମକୁ କାରଣ ପଚାରିଲୁ । ମସ୍ତରାମ ଆଖିରୁ ଟୋପାଏ ଲୁହ ଗଡ଼ିପଡ଼ିଲା ଓ ମସ୍ତରାମ କହିଲା 'ମୁଁ ଭାବୁଥିଲି' ଏ ସଂସାର କେଡ଼େ ନିମକ୍‌ହାରାମ୍ । ଏହି କଥା ଭାବୁ ଭାବୁ ପନ୍ଦରବର୍ଷ ତଳର କଥା ମନେପଡ଼ିଗଲା ।' ଏହା କହି ପୁନର୍ବାର ଲୋତକଧାରା ! ଆମ୍ଭେମାନେ କିଛି ବୁଝିପାରିଲୁ ନାହିଁ । ତାକୁ ମନା କଲେ ସେ କି ମାନିବା ଲୋକ ? ଅବିଶ୍ରାନ୍ତ ଚାଲିଲା :-

''ମତେ ଆଜି ୫୮ ବର୍ଷ ପୂରିଲା; ଆଉ ବେଶି ଦିନ ରହିବାର ଇଚ୍ଛା ନାହିଁ । ମୋର ପାଗଳ ହେବାର କାହାଣୀ ଶୁଣି ଥାଅ, ପୂର୍ବେ ମତେ କେତେ ଲୋକ ପଚାରିଥିଲେ, ମୁଁ କିଛି କହି ନାହିଁ । ଏ ଘଟନା ଅନେକ ଦିନ ତଳର । ମତେ ସେତେବେଳେ ବୟସ ୨୬ ବର୍ଷ, ଆଗରୁ ୭ ବର୍ଷ ତଳେ ମୁଁ ବିଭା ହେଇଥିଲି । ମୁଁ ଯେତେବେଳର କଥା କହୁଛି ସେ ସମୟକୁ ମୁଁ ମୋ ସ୍ତ୍ରୀ ସଙ୍ଗରେ ଭାରି ସୁଖରେ, ଅତି ଆନନ୍ଦରେ ୬ ବର୍ଷ କଟାଇଥିଲି । ଆମ୍ଭମାନଙ୍କ ମଧ୍ୟରେ ଦିନେ ସୁଦ୍ଧା ଖଳବଳ ଲାଗି ନ ଥିଲା । ଈଶ୍ୱର ମୁଠାଏ ଖାଇବା ପାଇଁ ଉପାୟ ଦେଇଥାନ୍ତି । ଆପଣା ବିଲବାଡ଼ି ଧନ୍ଦା ବୁଝି ମୋ ଦୁଃଖରେ ମୁଁ ଥାଏ । ମୋ ସ୍ତ୍ରୀ ମତେ ଦଣ୍ଡେ ନ ଦେଖିଲେ ପାଣି ପିଉ ନ ଥିଲା । ମୁଁ ଏଣେତେଣେ ବୁଲି ଘରକୁ ଆସେ, ଘର ମତେ ସ୍ୱର୍ଗପରି ଲାଗୁଥିଲା । ମୁଁ ଜାଣୁଥିଲି ମୋ ଘର ସ୍ୱର୍ଗ, ମୋ ସ୍ତ୍ରୀର ପ୍ରାଣ ମୁଁ- ମୋ ପ୍ରାଣ ମୋ ସ୍ତ୍ରୀ, ଜଣକ ପ୍ରାଣରେ ଚୋଟ ଲାଗୁଥିଲେ ଆଉ ଜଣକୁ କାଟୁଥିଲା- ଆଖିରୁ ଲୁହ ବୋହୁଥିଲା । ଏହିପରି ୬ ବର୍ଷ ଗଲା । ମୁଁ ପିଲାଦିନେ କିଛି ପାଠ ପଢ଼ିଥିଲି । ମୋର ଗୋଟିଏ ଦୋଷ ଥିଲା - ମୁଁ ବେଳେ ବେଳେ ଟିକିଏ ନିଶା ଖାଉଥିଲି । ଈଶ୍ୱରଙ୍କ କୃପାରୁ ସେ ନିଶା ମୁଁ ୩୦ ବର୍ଷ ହେଲା ଛାଡ଼ିଲିଣି । ସେ ନିଶା ଖାଇ ମୁଁ ବାତୁଳ ପରି ହୋଇଯାଏ, କଣ କରି ପକାଏଁ ବେଳେବେଳେ ଠିକଣା ନ ଥାଏ । ସେ ନିଶା ଜୋରରେ ବେଳେ ବେଳେ ମୁଁ ଗୋଟିଏ ଗୋଟିଏ କାମ କରି ପକାଏଁ, ପଛେ ମୁଣ୍ଡକୋଡ଼ି ହୁଏଁ । ମୋର ଚାରା ନ ଥାଏ, ପଛକୁ ଭାବିହୁଏ । କଲା କାମ ଆଉ କି ଫେରିଆସେ ? କ୍ରମଶଃ ମସ୍ତରାମର ସ୍ୱର ଗମ୍ଭୀରତର ହେଲା । ଆମ୍ଭେମାନେ ସମସ୍ତେ ଏକାଗ୍ର ଚିତ୍ତରେ ମସ୍ତରାମର ମୁହଁକୁ ଚାହିଁଥାଉଁ । ପଣ୍ଡିତ-ମହାଶୟ କହିଲେ, ଆହା ! ଏବଂଭୂତ ଅନେକ ଲୋକ ପାନାସକ୍ତ ହୋଇ ସଂସାରବିରାଗୀ ହୋଇ ଯାଉଛନ୍ତି ।

ଦିନକର ଅସାବଧାନତାରେ କଣ ହେଲା, ଶୁଣ :- ମୁଁ ପରେ ଜାଣିଲି । ଦିନାକେତେ ଗଲାରୁ ମୋ ସ୍ତ୍ରୀଠାରେ ଟିକିଏ ପରିବର୍ତ୍ତନ ଦେଖିଲି । ମୁଁ ପ୍ରଥମେ ମନେକଲି, ମୋ ସ୍ତ୍ରୀର ଶରୀର ଅସୁସ୍ଥ ଅଛି । କିନ୍ତୁ କିଛି ଦିନ ପରେ ଦେଖିଲି-ସେ ସବୁବେଳେ ଚିନ୍ତା କଲା ପରି ବୋଧହେଲା । ଆଜି ଘର ସଜାଉଛି, କାଲି କେତେ ପଦାର୍ଥ ସଂଗ୍ରହ କରୁଛି । ମୋ ଆଡ଼କୁ ତାର ପୂର୍ବେ ଯେଉଁପରି ଦୃଷ୍ଟି ଥିଲା, ତାହା କ୍ରମେ କ୍ରମେ ବଦଳିଲା ପରି ମତେ ଜଣାଗଲା । ଏହିପରି ପ୍ରାୟ ୮/୧୦ ମାସ ଗଲା । ଏବେ ମତେ କୌଣସି ବିଷୟ ମନ ଖୋଲି କହେ ନାହିଁ । ମୁଁ ମଧ ତା ଯୋଗୁଁ ଚିନ୍ତିତ ହେଲି । ଦିନେ ଅତି ଜିଗର କରି ପଚାରିଲି । ସେ କହିଲା ତୁମେ ଯେଉଁ ଅଭ୍ୟାଗତଙ୍କୁ ଆସିବାକୁ କହିଛ, ତାଙ୍କର କିମିତି ଚରଚା ହବ ମୁଁ ଏ ୮/୧୦ ମାସ ହେଲା ସେହି କଥା ବିଚାରୁଛି । ଆଉ ତାଙ୍କ ଚର୍ଚ୍ଚା ନିମନ୍ତେ ସଜ ହଉଛି ।' କେବେ ଆସିବେ ? ସେ କିଏ ? ମୁଁ ତ କାହାକୁ ମୋ ଘରକୁ ଆସିବାକୁ ଅନୁମତି ଦେଇ ନାହିଁ । ଏପରି ନାନା କଥା ମୋ ମନରେ ଉଦୟ ହେଲା । କିନ୍ତୁ ସ୍ତ୍ରୀଠାରୁ କିଛି ଉତ୍ତର ପାଇଲି ନାହିଁ । ବୋଧହୁଏ ସେ ଲଜ୍ଜା କଲା । ମୁଁ ମଧ ବିଚାରିଲି ଯେ, ନିଶାଭୋଳରେ କେତେବେଳେ କଣ କହି ପକାଇଥିବି, ମୋ ସ୍ତ୍ରୀ ସେହି କଥାକୁ ସତ ମଣି ଏପରି ବ୍ୟସ୍ତ । ମତେ ମହାଅଡୁଆ ବୋଧ ହେଲା । ମୁଁ ପ୍ରଥମେ ତା କଥାକୁ ଥଟ୍ଟା ବୁଝିଲି- ଏହିପରି ଆଉ କେତେ ଦିନ ଗଲା । ଦିନେ ମୋ ସ୍ତ୍ରୀ ଅତ୍ୟନ୍ତ ପୀଡ଼ିତା ହେଲାପରି ବୋଧହେଲା, ଅନେକ ଲୋକ ତାକୁ ଦେଖିବାକୁ ଆସିଲେ । ପ୍ରାୟ ଓଳିଏ ଦିନ ପର୍ଯ୍ୟନ୍ତ କିଏ କେତେବେଳେ କି ସମ୍ବାଦ ଆଣି ଦେଲେ, ତହିଁରୁ ମୁଁ କିଛି ତଥ୍ୟ ପାଇଲି ନାହିଁ । କିଏ ଆସି ଏହିକ୍ଷଣରେ କହିଲା, ମୋ ସ୍ତ୍ରୀର ଜୀବନର ଆଶା ନାହିଁ । ଆଉ ଜଣେ ଆସି କହିଲା, ସମସ୍ତ ମଙ୍ଗଳ । ଏହିପରି ପ୍ରାୟ ୫/୬ ଘଣ୍ଟା ବିତିଗଲା । ପରେ ଜଣେ ବୃଦ୍ଧା (ସମ୍ପର୍କରେ ମୋର ପିତାଙ୍କର ଜ୍ୟେଷ୍ଠପିତୃବ୍ୟପତ୍ନୀ ଅଟନ୍ତି) ଆସି କହିଲେ ଯେ, ଜଣେ ଅତି ବୃଦ୍ଧ ଅତିଥି ଆସି ଅନ୍ତଃପୁରରେ ସହସା ଉପସ୍ଥିତ । ମୋ ସ୍ତ୍ରୀର ଏପରି ମୁମୂର୍ଷୁ ଅବସ୍ଥା, ତହିଁରେ ପୁଣି ବହିର୍ଦ୍ୱାରରେ ନ ରହି ହଠାତ୍ ଅନ୍ତଃପୁରର ଅତିଥି ଉପସ୍ଥିତ ! ମତେ ଏହା ପ୍ରଥମେ ଅଡୁଆ ବୋଧ ହେଲା । କିନ୍ତୁ କ'ଣ କରିବି 'ସର୍ବତ୍ୟାଗତୋଗୁରୁଃ' ! ଇତସ୍ତତଃ ହୋଇ ନବାଗତ ଅତିଥିଙ୍କର ଉପଯୁକ୍ତ ରୂପେ ଚର୍ଚ୍ଚା କରିବାକୁ ସେ ବୃଦ୍ଧାଙ୍କୁ ଅନୁରୋଧ କଲି । ଅତିଥିଙ୍କୁ ପ୍ରଥମେ ଦେଖି ମୁଁ ଚମକି ପଡ଼ିଲି । ଅତିଶୟ ବୃଦ୍ଧ ଓ ଖର୍ବାଙ୍ଗ । ତାଙ୍କ ପରି ଏତେ ଊର୍ଦ୍ଧ୍ୱବୟସ୍କ କ୍ଷୀଣାଙ୍ଗ ବୃଦ୍ଧ ମୁଁ ଆଜିଯାକେ ଦେଖି ନାହିଁ । ପାଟିର ଦାନ୍ତଯାକ ସମସ୍ତ ପଡ଼ି ଯାଇଅଛି, ମସ୍ତକରୁ ସମସ୍ତ କେଶ ଉପୁଡ଼ି ଯାଇଅଛି, ନିତାନ୍ତ ନିରାଶ୍ରୟ ଅବସ୍ଥା, ଉଠି ବସିବାର ଶକ୍ତି ନାହିଁ, ତାଙ୍କର ଭାଷା ଆମ୍ଭେମାନେ ବୁଝିପାରିଲୁଁ ନାହିଁ । କିନ୍ତୁ ବେଳେ ବେଳେ ତାଙ୍କର ଆର୍ତ୍ତ ସ୍ୱରରୁ ଜଣାଗଲା ଯେ, ସେ ବହୁ ଦୂରରୁ ଆଗତ, କ୍ଷୁଧା ତୃଷ୍ଣାରେ ମୁଖ ଶୁଖି ଯାଇଅଛି, ଚକ୍ଷୁ ଦିଓଟି ଭିତରକୁ ପଶି ଯାଇଅଛି । ପଛକୁ ମୀମାଂସା କଲି, ସେ ବୃଦ୍ଧ ବହୁ ଦୂରରୁ ଆଗତ, ଅତିଶୟ କ୍ଳାନ୍ତ ଓ ଅନାବୃତ ଶରୀର; ନିଜ ଭୋଜନ ଦ୍ରବ୍ୟ

ଉଦରସ୍ଥ କରିବାର କ୍ଷମତା ମଧ୍ୟ ଲୁପ୍ତ ହୋଇ ଯାଇଅଛି । ଅତିଥିଙ୍କୁ କିଛି ଖୁଆଇଂ ସେ ଘରେ ଅଗ୍ନି ଜାଳି ତୈଳ ମର୍ଦ୍ଦନ କରି ତାଙ୍କୁ ସୁସ୍ଥ କରାଇବାକୁ ମୋ ଦାସୀକୁ କହି ଆସିଲି ଓ ଅତିଥି ଟିକିଏ ସବଳ ହେଲେ ତାଙ୍କର ପରିଚୟ ମିଳିପାରେ, ଏହି ଆଶାରେ ରହିଲି । କିନ୍ତୁ ମତେ ଏହା ଅଡୁଆ ବୋଧ ହେଲା । ପରେ ଶୁଣିଲି ଯେ ମୋ ସ୍ତ୍ରୀ ଆରୋଗ୍ୟ ଲାଭ କରିଅଛି । କିନ୍ତୁ ଆରୋଗ୍ୟ ଲାଭ କରି ମୋ ସଙ୍ଗରେ ଦେଖା ହେବା କଥା ଦୂରେ ଥାଉ, ସେ ପ୍ରାଣପଣେ ଅତିଥିଙ୍କ ସେବାରେ ଲାଗିଅଛି । ମୁଁ ଏହା ଶୁଣି ଆନନ୍ଦିତ ହେଲି ଓ ମନେ ମନେ ସ୍ତ୍ରୀକୁ କେତେ ଆଶୀର୍ବାଦ କଲି । ଈଶ୍ୱର ତାକୁ ଚିରଦିନ ଅତିଥି ସେବାରେ ନିଯୁକ୍ତ କରନ୍ତୁ ଓ ମୈତ୍ରୀବ୍ରତ ଶିକ୍ଷା ଦିଅନ୍ତୁ । ସ୍ତ୍ରୀର ଏପରି ଅତିଥିଚର୍ଯ୍ୟା ଦେଖି ମୋ ମନରେ ଅତିଥିଚର୍ଯ୍ୟାର ଉଦ୍ରେକ ହେଲା । ମୁଁ ଯଥାସାଧ୍ୟ ଅତିଥିଙ୍କର ଅଭାବ ଦୂର କରିବାରେ ଯତ୍ନଶୀଳ ହେଲି । ଅତିଥି ଟିକିଏ ସବଳ ଓ ସୁସ୍ଥ ହେଲାରୁ ମୋ ସ୍ତ୍ରୀ ମୋ ନିକଟକୁ (ପ୍ରାୟ ଏକମାସ ପରେ) ପ୍ରଥମ ଦେଖା କରିବାକୁ ଆସିଲା, କିନ୍ତୁ କି ଅଦ୍ଭୁତ ପରିବର୍ତ୍ତନ ! ସେ ପ୍ରେମ ନାହିଁ, ସେ ମମତା ନାହିଁ, ସେ କଟାକ୍ଷଭଙ୍ଗୀ ନାହିଁ । ମୋ ନିକଟରେ ଦଣ୍ଡେ ବସିଛି, ସେ ଅତିଥିଙ୍କ କଥା ମନେପଡ଼ିବାରୁ ହଠାତ୍ ମୋଠାରୁ ବିଦାୟ ନ ନେଇ ଉଠିଗଲା । ମତେ ଟିକିଏ ଅଡୁଆ ବୋଧ ହେଲା । ମୁଁ ଦିନେ ଅତିଥିଙ୍କୁ ନିକଟକୁ ଆଣି ତାଙ୍କର ସବିଶେଷ ବୃତ୍ତାନ୍ତ ପଚାରିବାରୁ ସେ ଯାହା ଉତ୍ତର କଲେ, ମୁଁ ତହିଁରୁ କିଛି ବୁଝିପାରିଲି ନାହିଁ । ତାଙ୍କ ଭାଷା ଆମ ଦେଶର ଭାଷା ନୁହେଁ । ଗୃହର ସମସ୍ତେ ତାଙ୍କରି ଭାଷା ଶିକ୍ଷା କରିବାକୁ ଚେଷ୍ଟିତ ହେଲୁଁ ଓ ପ୍ରାୟ ୧ ବର୍ଷରେ ତାଙ୍କ ଭାଷାରେ କଥାଭାଷା କରିପାରିଲୁଁ । ଏଣେ ଅତିଥି ୩ ବର୍ଷ ମଧ୍ୟରେ ଆମ୍ଭମାନଙ୍କ ଭାଷା ବେଶ୍ ଶିଖିଥିଲେ । ଅତିଥି କ୍ରମଶଃ ବଳିଷ୍ଠ ଓ ଆରୋଗ୍ୟ ହୋଇ ଚାଲିପାରିଲେ । ଅତିଥି ମୋ ଗୃହରୁ ଯିବାର ଇଚ୍ଛା ପ୍ରକାଶ କଲେ ନାହିଁ । ମୋର ସୁଖର ଦିନ ବୁଡ଼ିଲା । ସନ୍ଦେହ ଆସି ମନକୁ ଛୁଇଁଲା । ଅତିଥିଙ୍କ ସଙ୍ଗେ ମୋ ସ୍ତ୍ରୀର ଘନିଷ୍ଠତା ବଢ଼ିଲା । ମତେ ଟିକିଏ ଅଡୁଆ ବୋଧ ହେଲା । ଆଜିକାଲି ମୋ ନିମନ୍ତେ ସ୍ତ୍ରୀର ଚିନ୍ତା ନାହିଁ, ଯତ୍ନ ନାହିଁ, ସବୁ ଯତ୍ନ, ସବୁ ଚିନ୍ତା ଅତିଥିଙ୍କଠାରେ; ଅତିଥିଙ୍କ ହେତୁ ସମୟ ସମୟରେ ବିବାଦ ମଧ୍ୟ ଆରମ୍ଭ ହେଲା । ଜାଣିଲି ଯେ ଅତିଥିଙ୍କଠାରେ ମୋ ସ୍ତ୍ରୀ ମନଃପ୍ରାଣ ଢାଳି ଦେଇ ସାରିଲାଣି । କିନ୍ତୁ ତାଙ୍କର ତ କିଛି ଦୋଷ ନାହିଁ । ଦୋଷ ମୋ ସ୍ତ୍ରୀର । ମୋ ସ୍ତ୍ରୀର ବା କିପରି ଦୋଷ ? ମୁଁ ଅନୁମତି ଦେଇ ନ ଥିଲେ ଅତିଥି ବା କାହୁଁ ମୋ ଘରେ ସ୍ଥାନ ପାଇଥାନ୍ତେ । ମୁଁ ବା କଣ କରିବି ? ନିଶା ଭୋଳରେ କେତେବେଳେ ଅନୁମତି ଦେଇପକାଇଛି । ଜାଣିଥିଲି କି ଅତିଥି ମୋର ଭଗାରି ହେବ ? ଆଚ୍ଛା, ଦେଖାଯାଉ । ଦିନେ ମୁଁ ଦର୍ପଣରେ ମୁହଁ ଦେଖୁଛି, ମୋର ମୁଣ୍ଡରେ ଦୁଇ ଚାରୋଟି ପକ୍ୱ କେଶ ଦେଖାଗଲା । ଏ ସମୟରେ ଅତିଥି ଆମ ଗୃହକୁ ଆସିବାର ପ୍ରାୟ ୩/୪ ବର୍ଷ ହେଲା । ପକ୍ୱକେଶ ଦେଖି ବୃଦ୍ଧ ହୋଇଗଲି ବୋଲି ମନରେ କ୍ଷୋଭ ହେଲା । ପଦାକୁ ଚାହିଁ ଦେଖେଁ- କି ଅଦ୍ଭୁତ, ଅଚିନ୍ତିତପୂର୍ବ ଦୃଶ୍ୟ !!! ଅତିଥି ଓ ମୋ ସ୍ତ୍ରୀ ପରସ୍ପରକୁ ଆଲିଙ୍ଗନ କରି ଚୁମ୍ବନ ଦେଉଅଛନ୍ତି ।

କି ଧୃଷ୍ଟତା ! କି ଅଯଥା ଅଧିକାର ! ସ୍ୱାଧୀନତାର କି ଅପବ୍ୟବହାର ! ଧନ୍ୟରେ କାଳ ! ଧନ୍ୟ ଈଶ୍ୱର ! (ମସ୍ତରାମ ଏହା କହୁଁ କହୁଁ ପ୍ରେମରେ ଗଡ଼ିଯାଉଥାଏ ଓ ଆମ୍ଭେମାନେ ଅବାକ୍ ହୋଇ ତା ମୁହଁକୁ ଚାହିଁଥାଉଁ) ଏତିକି ନୁହେଁ- ମୋ ଉପସ୍ଥିତିରେ ଏପରି ଅଭିନୟ ! ମୁଁ ଚାହିଁଦେଲାରୁ ଦୁହେଁଯାକ ମତେ ଚାହିଁ ଚିତ୍କାର କରି ହସିଉଠିଲେ ଓ ମୋ ସ୍ତ୍ରୀ ଟିକିଏ ଲଜ୍ଜିତା ହେଲାପରି ବୋଧ ହେଲା । ପ୍ରଥମେ ପ୍ରଥମେ କୌଣସି ଅନଭ୍ୟସ୍ତ କାର୍ଯ୍ୟ କଲେ ସମୟ ସମୟରେ ଏହିପରି ଲଜ୍ଜା ଆସେ । କିନ୍ତୁ କ୍ରମଶଃ ସେ ଲଜ୍ଜା କେଉଁଆଡ଼େ ଗଲା । ମତେ ଡାକି ସେମାନେ ମୋ ସମ୍ମୁଖରେ ଏହିପରି ଅଯଥା ସ୍ୱାଧୀନ ବ୍ୟବହାର କରିବାକୁ ଲାଗିଲେ ! ମୁଁ କ୍ରୋଧରେ, ଲଜ୍ଜାରେ, ଆନନ୍ଦରେ ଅସ୍ଥିର ! ସେତେବେଳକୁ ମୋ ବୁଦ୍ଧି ହଜିଲା ଓ ମୋ ମତି କ୍ରମଶଃ ଅସ୍ଥିର ହେଲାଣି । ଅତିଥି ସଙ୍ଗେ ଏହିପରି ବ୍ୟବହାର କଲାବେଳେ ମୁଁ ଦେଖିଲି ଯେ ୧୦ ବର୍ଷ ତଳେ ମୋ ସ୍ତ୍ରୀର ଯେଉଁ ଲାବଣ୍ୟ ଥିଲା, ତାହା ପୁନର୍ବାର ଫୁଟିଅଛି, ତାହାର ରସିକତା ଉଛୁଳୁଅଛି, ସେ ନବଯୁବତୀ ହୋଇଅଛି ଓ ମୁଁ ଏକା ବୃଦ୍ଧ, ଅରସିକ ଓ ବେରୂପ ହୋଇଅଛି । ମୋର ବୟସ, ରସିକତା ଓ ସ୍ୱରୂପକୁ ଏ ଅତିଥି ଚୋରି କରିଅଛନ୍ତି । ମୁଁ ଯହୁଁ ଯହୁଁ ବୃଦ୍ଧ ହେଉଅଛି, ଅତିଥି ତହୁଁ ତହୁଁ ଯୁବା ହେଲାପରି ଦେଖା ଯାଉଅଛନ୍ତି । ମୋ ମସ୍ତକରେ ଶୁକ୍ଳକେଶର ଆବିର୍ଭାବ ସଙ୍ଗେ ସଙ୍ଗେ ଅତିଥିଙ୍କର ମସ୍ତକ ଘନକୃଷ୍ଣ କେଶରେ ପରିପୂର୍ଣ୍ଣ । ମୋ ଯୌବନ ଚୋରି କରି ତା ଉପରେ ମୋ ସ୍ତ୍ରୀ ସଙ୍ଗେ ଏପରି ଅଯଥା ସ୍ୱାଧୀନ ବ୍ୟବହାର ! ମୋ ଦେହ କଣ୍ଟକମୟ, ପ୍ରେମମୟ ହୋଇଗଲା । କଣ କରିବି, ମୁହୂର୍ତ୍ତକ ନିଶା ଭୋଳରେ ଏହି ବିପରିଣାମ ! ଗୃହ ଛିଦ୍ର ବା ପଦାରେ କାହାକୁ କହିବି ? ଯେ ଶୁଣିବ ସେ ହସିବ, ଯେ ଶୁଣିଲା ସେ ହସିଲା । ଏତିକିରେ ସନ୍ତୁଷ୍ଟ ନ ହୋଇ ସେ ଅତିଥି ମୋ ଉପରେ ଅତ୍ୟାଚାର ଆରମ୍ଭ କରିବାକୁ ବସିଲେ । ମୋର ଯେଉଁ ଯେଉଁ ବସ୍ତୁରେ ବିଶେଷ ସ୍ନେହ, ଅତିଥି ସେସବୁ ବସ୍ତୁ ମୋ ବିନା ଅନୁମତିରେ ନାରଖାର କଲେ । ମୋ ଫୁଲବଗିଚାରେ ପଶି ମୋ ଅଜ୍ଞାତରେ ଫୁଲ ଛିଣ୍ଡାଇବାକୁ ଲାଗିଲେ । ମୋ ଲୁଗାପଟା ବିଛଣା ଇତ୍ୟାଦି ଅପରିଷ୍କାର କଲେ । ମନୁଷ୍ୟର ଧୈର୍ଯ୍ୟର ତ ସୀମା ଅଛି । ମୁଁ ଦିନେ ଅତିଥିଙ୍କ ଉପରେ ଅସନ୍ତୋଷ ପ୍ରକାଶ କରିବାରୁ ମୋ ସ୍ତ୍ରୀ ଅତିଥିଙ୍କ ପକ୍ଷ ସମର୍ଥନ କରି ମୋର ମସ୍ତିଷ୍କ ବିକୃତ ହୋଇଅଛି ବୋଲି ବିଦ୍ରୂପ କଲା । ଏହା ଦେଖି ମୁଁ ଅବାକ୍ ! ଅତିଥି ମଧ୍ୟ ଲଜ୍ଜିତ ନ ହୋଇ ଚିତ୍କାର କରି ହସିଉଠିଲେ । ହାତ ପଶୁ ପଶୁ ବାହା ପଶିଲା । ହାତଗୁଡ଼ କହୁଣିକି ଆସିଲା ।

(ପାଠକ ! ବର୍ତ୍ତମାନ ମସ୍ତରାମର ଭାଷା ପୂର୍ବ ମସ୍ତରାମର ଭାଷା ନୁହେ, ଦେଖୁଛନ୍ତି ତ ? ଆମ୍ଭେମାନେ ସମସ୍ତେ କ୍ରୋଧରେ ଅସ୍ଥିର । ପଣ୍ଡିତ-ମହାଶୟ କହିଲେ, 'ଅଜ୍ଞାତକୁଳଶୀଳସ୍ୟ ବାସୋ ଦେୟୋ ନ କସ୍ୟଚିତ୍ ।' ଧିକ୍ ସେ ଅତିଥିର କୃତଘ୍ନତା ! ଏପରି ଅତିଥି ଆଦୌ ଦୟାର ପାତ୍ର ନୁହେଁ । ଆଜିକାଲି ସ୍ତ୍ରୀମାନଙ୍କର କାଳ ହେଲା । ସ୍ୱାମୀ ଥାଉଁ ଥାଉଁ ଏପରି ଅବୈଧ ଆଚରଣ ! ଭାର୍ଯ୍ୟା ଭର୍ତ୍ତୃବିରୋଧିନୀ ପରରତା !)

ଚାହୁଁ ଚାହୁଁ ଅତିଥି ଆସି ଆମ ଗୃହରେ ରହିବାର ୧୦ ବର୍ଷ ହେଲା, ପୁଣି ଅତିଥିଙ୍କ ନିମନ୍ତେ ଗୋଟିଏ ସ୍ତ୍ରୀ ଅତିଥି ଆଣିବାକୁ ହେଲା । ଅତିଥି କ୍ରମଶଃ ପଢ଼ାଶୁଣାରେ ବେଶ୍ ବ୍ୟୁତ୍ପନ୍ନ ହେଲେ । ଦିନେ ମୁଁ ବିଲରେ କୋଡ଼ି ହାଣୁଛି, ଦିନ ଦୁଇପ୍ରହର ଆସି ହେଲାଣି । ଏହି ସମୟରେ ହଠାତ୍ ଅତିଥି ଆସି ବିଲରେ ଉପସ୍ଥିତ ହେଲେ ଓ ମୋ ଠାରୁ କୋଡ଼ି ଖଣ୍ଡିକ ଛଡ଼ାଇ ନେଇ କହିଲେ, "ମୁଁ କାର୍ଯ୍ୟ କରିବି, ଆପଣଙ୍କର ଆଉ ବ୍ୟସ୍ତ ହେବାର ଆବଶ୍ୟକ ନାହିଁ, ଆପଣ ଯାଆନ୍ତୁ ।" ମୁଁ କହିଲି, "ହଁ । ମୋ ଜୀବନର ତ ସବୁ ନେଇ ସାରିଲଣି । ମୋ ବୟସ, ଯୌବନ, ପ୍ରେମ, ସ୍ତ୍ରୀ ସବୁ ନେଲ; ବାକି ମୋର ଏତିକି ଅବଲମ୍ବନ ଥିଲା, ଯାକୁ ମଧ ନିଅ, ମୁଁ ଯାଉଛି ।" ସେ ବିଲ ମୋ ବାଡ଼ି ପଛଆଡ଼େ । ମୋ ସ୍ତ୍ରୀ ବାଡ଼ିଦୁଆରେ ଚାହିଁଥିଲା, ଏହି ସମୟରେ ଡାକିଦେଲା, "ତୁମେ ଆସ, ଭାରି ଉଛୁର ହେଲାଣି, ପୁଅ ଖାଇପିଇ ସାରି ବିଲକୁ ଯାଇଛି, ସେ କାମ କରୁଥାଉ, ତୁମେ ଘରକୁ ଆସ । ଆଉ କେତେ ବିଲବାଡ଼ି ଧନ୍ଦା ବୁଝୁଥିବ ?" ମୁଁ ଚାହିଁଲି, ସ୍ତ୍ରୀର ମୁଖ ହର୍ଷଯୁକ୍ତ, 'ପୁଅ'ର ମୁଖ ହର୍ଷଯୁକ୍ତ, ଅତଏବ ବାଧ ହୋଇ ମୁଁ ଟିକିଏ ହସିଦେଇ ଘରକୁ ଆସିଲି । ତହିଁ ଆରଦିନ ସକାଳୁ 'ପୁଅ' ଜିମା ସବୁ କାମ ଓ ଧନ୍ଦା ଲଗାଇ ଦେଇ ଘରୁ ବାହାରିଲି । ସଂସାର ଲୀଳା ଦେଖିବି । ପୁରୁଣା ଯାଉଛନ୍ତି, ନୂଆ ଆସୁଛନ୍ତି । ସେହି ଦିନଠାରୁ ୧୨ ବର୍ଷ ଏପରି ସଂସାର ଦେଖି ଦେଖି ବୁଲିଲିଣି । ଆଜି ୧୨ ବର୍ଷ ତପସ୍ୟା ପୂର୍ଣ୍ଣ ହେଲା । ମୋର ସଂସାର ଦେଖା ଶେଷ ହେଲା । ଅନେକ ଦେଖିଲି, ଅନେକ ଶିଖିଲି, ଅନେକ ଶିଖାଇଲି, ମୁଁ ଯାଉଛି । ଏହା କହି ହଠାତ୍ ମସ୍ତରାମ ହସି ହସି ଟୁଙ୍ଗିରୁ ପ୍ରସ୍ଥାନ କଲା ।

ଆମ୍ଭେମାନେ ବିଚାରିଲୁଁ ଯେ, Holmes ଯାହା କହିଅଛନ୍ତି, "Insanity is often the logic of an accurate mind overtasked." ଅଧିକାଂଶ ବାତୁଳମାନେ କବିଙ୍କ ଉପାଦାନରେ ଗଠିତ । ଧନ୍ୟ ମସ୍ତରାମ, ତୋ ଜୀବନ ସାର୍ଥକ ! ତୁ ଧନ୍ୟ ! ତୁ ପ୍ରେମବାୟା ।

ଆମ୍ଭେମାନେ ଭାବିଲୁଁ ଯେ ଦୃଢ଼ ଭାବରେ ସଂସାରର କୌଣସି ବିଷୟ ରାତ୍ରଦିନ ଭାବିଲେ ଲୋକ ବାତୁଳ ନ ହୋଇ ଆଉ କଣ ହେବ ? ଲୋକେ ଯେ ପାଗଳ ନ ହୁଅନ୍ତି, ଏହାହିଁ ଆଶ୍ଚର୍ଯ୍ୟର ବିଷୟ । ପୃଥିବୀର ପନ୍ଦର ପଣ ଉଣେଇଶ ଗଣ୍ଡା ତିନି କଡ଼ା ଲୋକଙ୍କର ଦୃଢ଼ ଚିନ୍ତା ନାହିଁ । ଥିଲେ ସଂସାର ବାତୁଳାଶ୍ରମରେ ପରିଣତ ହୋଇଥାନ୍ତା ଓ ସଂସାର ସ୍ୱର୍ଗ ହୋଇଥାନ୍ତା । ପ୍ରକୃତିସ୍ଥ ମନୁଷ୍ୟ ଅନେକ ସମୟରେ ବାତୁଳଠାରୁ ହେୟ, ଘୃଣ୍ୟ, ଅପଦାର୍ଥ । ପାଠକ ! ଥରେ ଭାବି ଦେଖନ୍ତୁ, ମସ୍ତରାମ ଯେଉଁ ଚିତ୍ରଟି ଦେଖାଇଲା, ତାହା କେମନ୍ତ ସ୍ୱାଭାବିକ ଓ ନିତ୍ୟପ୍ରତ୍ୟକ୍ଷ ।

ମସ୍ତରାମ ଯିବା ପରେ ଆମ୍ଭେମାନେ କ୍ଷଣକାଳ ନିର୍ଜୀବ ପ୍ରତିମା ପରି ବସି ରହିଲୁଁ । ପରେ ପଣ୍ଡିତ-ମହାଶୟ ପ୍ରଥମେ ଶାନ୍ତିଭଙ୍ଗ କଲେ- ଓଃ ହୋ ! ଏଇଟା ଆମକୁ କି ଘୋର ଭ୍ରାନ୍ତି- ସାଗରରେ ଆନାସିକ ମଗ୍ନ କରିଦେଲା । ଏଥି ନିମନ୍ତେ ଶ୍ଳୋକ ରଚନା କରି ଦେଲେ କେଡ଼େ ଉତ୍କୃଷ୍ଟ ହୁଅନ୍ତା । ସମୟାନୁସାରେ ଏତଦ୍ ବିଷୟରେ ଗୋଟିଏ

ଶ୍ଲୋକ ରଚନା କରିବାରେ ପ୍ରୟାସୀ ହେବୁଁ । ଏପରି ବହ୍ୱାରମ୍ଭ ଲଘୁ କ୍ରିୟା କରିଦେବ ବୋଲି କିଏ ଜାଣିଥିଲା ?

ମର୍ଦ୍ଦରାଜ- ମୁଁ ତ ଅନେକ ଦିନରୁ କିହିଛି, ମସ୍ତରାମର ଯଥେଷ୍ଟ ଚିନ୍ତାଶୀଳତା, ଯଥେଷ୍ଟ ଅନୁଭବ ଅଛି, ତା ପରି ଜଣେ ଲୋକ ଟୁଙ୍ଗିରେ ପାଇବା ଆମ୍ଭମାନଙ୍କ ଭାଗ୍ୟ । ତାର ଚିନ୍ତା-ସ୍ରୋତ ଟିକିଏ ସ୍ଥିରତର ଭାବରେ ବହୁଥିଲେ, ସେ ଜଣେ ଉତ୍କୃଷ୍ଟ କବି ହୋଇଥାନ୍ତା ।

ମୁଁ ବିଚାରିଲି, ଈଶ୍ୱର ମୋ ଘରେ ତ ଆଣି ଅଳ୍ପଦିନ ତଳେ ଗୋଟିଏ ଅତିଥି ପହଞ୍ଚାଇଅଛନ୍ତି, କେଜାଣି ମୋର ଭବିଷ୍ୟତରେ କଣ ଲେଖା ଅଛି । କୋଡ଼ି ହାତରୁ ଛଡ଼ାଇବା ପର୍ଯ୍ୟନ୍ତ ନ ଗଲେ ରକ୍ଷା ।

ବିଶେଷ କିଛି କାର୍ଯ୍ୟ ଥିବାରୁ ପଣ୍ଡିତ-ମହାଶୟ ଟୁଙ୍ଗିରୁ ପ୍ରସ୍ଥାନ କରିବାକୁ ବସିଲେ । ଏହି ସମୟରେ ମାଷ୍ଟର-ମହାଶୟ ହାତରେ ଖଣ୍ଡେ ପୁସ୍ତିକା ଧରି ଉପସ୍ଥିତ ହେଲେ । ଶ୍ୟାମସୁନ୍ଦରବାବୁ ସେ ବହିକୁ ଦେଖିବାକୁ ଆଗ୍ରହ ପ୍ରକାଶ କରିବାରୁ ମାଷ୍ଟର-ମହାଶୟ କହିଲେ, ଏ ପୁସ୍ତକର ନାମ 'କଂଗ୍ରେସ ବା ଜାତୀୟ ମହାସମିତି ।' ଏ pamphlet (ପୁସ୍ତିକା) ଅଳ୍ପଦିନ ହେଲା ଓଡ଼ିଆ type ଅକ୍ଷରରେ Print ଛପାହୋଇଅଛି ଓ ତାହା କଟକ ଉତ୍କଳ ସାହିତ୍ୟ ଯନ୍ତ୍ରାଳୟରେ ମିଳେ । ତାହା ଟୁଙ୍ଗିରେ ପଢ଼ାହେବ ବୋଲି ମୁଁ ୧୦/୧୫ ଜଣଙ୍କୁ ଡାକି ଆଣିଛି ।' ଏହା କହି ସେ ପୁସ୍ତକଟିକୁ ଶ୍ୟାମସୁନ୍ଦରବାବୁଙ୍କ ହାତକୁ ଦେଇ ତାହା ଆଦ୍ୟପ୍ରାନ୍ତ ପଢ଼ିଯିବାକୁ ଅନୁରୋଧ କଲେ । ଶ୍ୟାମସୁନ୍ଦରବାବୁ ଜଳଦଗମ୍ଭୀର ସ୍ୱରରେ ତାହା ପଢ଼ିବାକୁ ଆରମ୍ଭ କଲେ ଓ ଅର୍ଦ୍ଧ ଘଣ୍ଟା ମଧ୍ୟରେ ଶେଷ କଲେ । ଟୁଙ୍ଗିରେ ଉପସ୍ଥିତ ଉଚ୍ଚଠାରୁ ନୀଚ ପର୍ଯ୍ୟନ୍ତ ସମସ୍ତେ ଚିତ୍କାର କରିଉଠିଲେ, 'ଜୟ ମହା ରାଜାଧିରାଜଙ୍କ ଜୟ', 'ଜୟ କଂଗ୍ରେସର ଜୟ ।'

ମର୍ଦ୍ଦରାଜେ- ଭାଇମାନେ ! ଆଜି ଆମ୍ଭମାନଙ୍କର କି ସୁଦିନ ! ଓଡ଼ିଶାରେ ମଫସଲର ପଲ୍ଲୀ ଗ୍ରାମରେ କଂଗ୍ରେସ ବିଷୟ ପଢ଼ିଲା, ଏହା ସାମାନ୍ୟ ସୌଭାଗ୍ୟର ବିଷୟ ନୁହେଁ । ଇଂରେଜ ରାଜାଙ୍କ ରାଜତ୍ୱରେ ଆମ୍ଭେମାନେ ପୂର୍ବ ଅପେକ୍ଷା ଅନେକ ସୁଖରେ ଅଛୁଁ । ଆମ୍ଭମାନଙ୍କୁ ସୁଖରେ ପାଳିବା ଆମ୍ଭମାନଙ୍କ ରାଜାଙ୍କର ଏକାନ୍ତ ଇଚ୍ଛା । କିନ୍ତୁ ଅନେକ ସ୍ଥଳରେ କର୍ମଚାରୀମାନଙ୍କର ଓ ପ୍ରଜାମାନଙ୍କର ଦୋଷରୁ ରାଜାଙ୍କର ଇଚ୍ଛା ପାଳିତ ହେଉ ନାହିଁ । ଆମ୍ଭମାନଙ୍କର ଅନେକ ଗୁହାରି ଅଛି । ଆମ୍ଭମାନଙ୍କର ଅଭାବ ଓ ଅତ୍ୟାଚାର ରାଜାଙ୍କ କାନରେ ପଡ଼ିଲେ ରାଜା ଅବଶ୍ୟ ତାଙ୍କ ପୁତ୍ରମାନଙ୍କ ଗୁହାରି ଶୁଣିବେ । ଶୁଭକ୍ଷଣରେ ଆମ୍ଭେମାନେ ଇଂରେଜ ରାଜାଙ୍କୁ ପାଇଅଛୁ । ଇଂରାଜରାଜ ଆମ୍ଭମାନଙ୍କୁ ସଭ୍ୟତା ଦେଇଅଛନ୍ତି, ଶିକ୍ଷା ଦେଇଅଛନ୍ତି, ବଳ ଦେଇଅଛନ୍ତି, ଅଭାବ ବୁଝିବାର କ୍ଷମତା ଦେଇଅଛନ୍ତି । ତେବେ କେତେ ଲୋକ କହନ୍ତି ଯେ, ଏପରି ଯେତେ ପାଟି କର, କିଛି ହେବ ନାହିଁ । କିନ୍ତୁ ଆମ୍ଭେମାନେ କହୁଁ ଯେ ରାଜା ପ୍ରଜାଙ୍କର ପିତା; ପୁଅର କାନ୍ଦ ଶୁଣି

କି ବାପ ଥୟ ହୋଇପାରେ ? ଆମ୍ଭେମାନେ ହୃଦୟର ସହିତ କାନ୍ଦିପାରୁ ନାହୁଁ ବୋଲି ଆମ୍ଭମାନଙ୍କ ରାଜାଙ୍କ ହୃଦୟ ତରଳାଇ ପାରୁ ନାହୁଁ । ଇଂରାଜରାଜ ଆମ୍ଭମାନଙ୍କ ନମସ୍ୟ-ପୂଜ୍ୟ । ଯାହା ଆମ୍ଭମାନଙ୍କର ଗୁହାରି ଅଛି, ସମସ୍ତେ ହୃଦୟର ସହିତ ମିଳି ରାଜାଙ୍କଠାରେ ଜଣାଇଲେ ରାଜା ଅବଶ୍ୟ ଶୁଣିବେ । ଆମ୍ଭମାନଙ୍କ ଶାସ୍ତ୍ରରେ ଅଛି, 'ଅଷ୍ଟାନାଂ ଲୋକପାଳାନାଂ ବପୁର୍ଧ ରୟତେ ନୃପଃ' ଆମ୍ଭମାନଙ୍କୁ ଆମ୍ଭମାନଙ୍କ ରାଜାଙ୍କଠାରୁ ଦୂରରେ ରଖାଇଲେ ଯେଉଁମାନଙ୍କର ଲାଭ ଅଛି, ସେମାନେ ଆମ୍ଭମାନଙ୍କ ଭକ୍ତିପୂର୍ଣ୍ଣ କ୍ରନ୍ଦନ ଧ୍ୱନିକୁ ରାଜାଙ୍କଠାରୁ ଲୁଚାଇ ରଖିଅଛନ୍ତି ଓ କ୍ରନ୍ଦନ ଧ୍ୱନିକୁ ବିଦ୍ରୋହୀମାନଙ୍କ ହାସ୍ୟତରଙ୍ଗ ବୋଲି ପ୍ରଚାର କରୁଅଛନ୍ତି । ଆମ୍ଭମାନଙ୍କର ସ୍ୱର୍ଗୀୟ ମହାରାଣୀ ଯେଉଁ ଘୋଷଣା କରି ଦେଇଥିଲେ, ତାହା ଆମ୍ଭମାନଙ୍କ ଆଶ୍ରୟ ଓ ସେହି ଆଶ୍ୱାସନା-ବାକ୍ୟ ଉପରେ ନିର୍ଭର କରି ରାଜାଙ୍କ ନିକଟରେ ପଡ଼ିଛୁଁ, ପଡୁଛୁଁ ଓ ପଡ଼ିବୁଁ । ତାଙ୍କ ପୁତ୍ର ଆମ୍ଭମାନଙ୍କର ବର୍ତ୍ତମାନ ରାଜା । ଆମ୍ଭମାନଙ୍କର ସବୁ ଗୁହାରି ଶୁଣିବେ ବୋଲି କୃତନିଶ୍ଚୟ ହୋଇଅଛନ୍ତି । ଆମ୍ଭେମାନେ ଅଳି କରିବାକୁ ଶିଖି ନ ଥିଲୁଁ । ରାଜା ଆମ୍ଭମାନଙ୍କୁ ସଭ୍ୟତା ଦେଇ ଆମ୍ଭମାନଙ୍କ ଅଭାବ ଆମ୍ଭେମାନେ କିପରି ବୁଝିପାରିବୁଁ, ତାହା କରିଅଛନ୍ତି ଓ କରୁଅଛନ୍ତି । ଆମ୍ଭମାନଙ୍କର ସମସ୍ତ ଗୁହାରିର ପ୍ରତିକାର ରାଜା କରୁ ନାହାନ୍ତି ବୋଲି ଅନେକ ଲୋକ ବ୍ୟସ୍ତ । କିନ୍ତୁ ଥରକେ ଗୋଟିଏ ଗୁହାରି ନ କରି (ଭୋକିଲା ମନୁଷ୍ୟ ଦୁଇ ହାତରେ ଭାତ ଖାଇଲା ପରି) ଆମ୍ଭେମାନେ ଏକା ଥରକେ ରାଜାଙ୍କ ନିକଟରେ ହଜାରେ ଗୁହାରି ନେଇ ପହଞ୍ଚୁଁ । ଏଥିରେ ସମ୍ୟକ୍ ଫଳ ବା ହେବ କିପରି ? ଭକ୍ତିର ସହିତ, ହୃଦୟର ସହିତ ଯଦି ପୁତ୍ର ପିତାଙ୍କ ଆଗରେ ମନୋବେଦନା ଜଣାଇ ସ୍ଥିର ଭାବରେ ଅଳି କରିବ, ନିଶ୍ଚୟ ଦିନେ ପିତାଙ୍କ ମନ ତରଳିବ । କଂଗ୍ରେସ ଅବଶ୍ୟ ଦିନେ ରାଜାଙ୍କ ହୃଦୟରେ ଦୟା ସଞ୍ଚାର କରାଇବ । ସବୁ ବିଷୟରେ ଧୈର୍ଯ୍ୟ ଆବଶ୍ୟକ । ଯାହା ଆଜି ନ ହେଲା, ତାହା କାଲି ହେବ । ମୁଁ ନ କରିପାରିବି, ତାହା ମୋର ସଙ୍ଗୀମାନେ କରିବେ । କେବଳ ଯେ ରାଜାଙ୍କୁ ଦୁଃଖ ଜଣାଇଲେ କିଛି ହେବ, ଏପରି ମନେକରିବା ଭୁଲ୍ । ଆମ୍ଭମାନଙ୍କ ନିଜ ନିଜ ମଧ୍ୟରେ, ନିଜ ନିଜ ଘରେ ଅନେକ ଦୁର୍ଗୁଣ, ଅଭାବ ଓ ଦୋଷ ରହିଛି, ତାହା ଆଗେ ସଂଶୋଧନ କରିବା । 'ଆପଣା ସୁନା ଭେଣ୍ଡି' ଥିବାଯାଏ ଫଳ କଦାପି ଆଶାନୁରୂପ ହେବ ନାହିଁ । ରାଜାଙ୍କୁ ଦେଖାଇବା ଯେ, ଆମ୍ଭେମାନେ ତାଙ୍କର ଦୟାର ଯୋଗ୍ୟ । ଆମ୍ଭେମାନେ କେବେହେଁ ରାଜାଙ୍କ ବିପକ୍ଷ ନୋହୁଁ । 'ଶ୍ରୀମତୀ ମହାରାଣୀଙ୍କ ଜୟ, ଶ୍ରୀ ମହାରାଜାଙ୍କ ଜୟ' ବୋଲି ତୁମେ ମଫସଲର ବାଉରି କଣ୍ଡରା ପିଲାଙ୍କ ମୁହଁରୁ ଶୁଣିବ । ଯେବେ ପୁଅ ଭକ୍ତି ଓ ସମ୍ମାନର ସହିତ କାନ୍ଦି ବାପା ପାଖରେ ଆପଣା ଦୁଃଖର ଗୁହାରି କରେ, ତେବେ କେଉଁ ହୀନ ମୂର୍ଖ କହିବ ଯେ, ଏପରି ପୁଅ ପିତୃଦ୍ରୋହୀ । ବାପ ପୁଅଙ୍କୁ ଭିନ୍ନ ଭିନ୍ନ କଲେ ଯାହାଙ୍କ ପେଟ ପୋଷା ହେବ, ତାଙ୍କ ଛଡ଼ା ଏପରି କଥା କେହି କହିବେ ନାହିଁ, କହି ନାହିଁ, କି କହୁ ନାହିଁ । ଅବଶ୍ୟ ଦିନେ ହେଲେ ବାପ ପୁଅର ହୃଦୟ ଚିହ୍ନି ପାରିବେ । ଈଶ୍ୱର ଆମ୍ଭମାନଙ୍କ ରାଜରାଜେଶ୍ୱରୀଙ୍କୁ ଆମ୍ଭମାନଙ୍କ ଗୁହାରି ଶୁଣିବାକୁ ସୁବୁଦ୍ଧି

ଓ ବଳ ଦିଅନ୍ତୁ ଏବଂ ଆମ୍ଭମାନଙ୍କ ଗୁହାରି ଗୋଟି ଗୋଟି କରି ରାଜାଙ୍କ କାନରେ ପକାଇବାକୁ ଆମ୍ଭମାନଙ୍କୁ ଧୈର୍ଯ୍ୟ ଓ ସାହସ ଦିଅନ୍ତୁ । ଯାହା ମାଗିଲେ ସହଜରେ ପାଇ ପାରିବୁଁ, ସେଥିପାଇଁ ତ ଜୋର ଜିଗର କରିବାର ନୁହେଁ, କରିବୁଁ ନାହିଁ । ଦେଶଯାକ ଆମ୍ଭମାନଙ୍କ କଷ୍ଟର ବିଷୟ ଆଲୋଚନା କରିବୁଁ, ଇଂଲଣ୍ଡରେ ଆନ୍ଦୋଳନ କରିବୁଁ, ରଜାଙ୍କ ପାଖରେ କର ଯୋଡ଼ି ଜଣାଇବୁଁ । ଅବଶ୍ୟ ରାଜାଙ୍କ ହୃଦୟ ଦିନେ ତରଳିବ । ଆମ୍ଭେମାନେ ସମ୍ମାନର ଯୋଗ୍ୟ ହେଲେ ଅବଶ୍ୟ ରାଜା ଆମ୍ଭମାନଙ୍କ କଷ୍ଟ ଫେଡ଼ିବେ । ଆଉ ଗୋଟିଏ କଥା - ବାହ୍ୟାଡ଼ମ୍ବରର ମାତ୍ରା କମ୍ କରି ପ୍ରକୃତ କାର୍ଯ୍ୟର ମାତ୍ରା ବଢ଼ାଇବା ଆବଶ୍ୟକ । ଈଶ୍ୱର କରନ୍ତୁ, ଆମ୍ଭେମାନେ ଆମ୍ଭମାନଙ୍କ ଅଭାବ ବୁଝିପାରୁଁ ଓ ରାଜରାଜେଶ୍ୱର ଆମ୍ଭମାନଙ୍କ ଦୁଃଖ ଜାଣନ୍ତୁ । ଇତିହାସ ଦେଖ, ଇଂରାଜୀ ଜାତି କେବେହେଁ ଅତ୍ୟାଚାରରେ ପକ୍ଷ ନୁହନ୍ତି, ଇଂରାଜ ଜାତି ସ୍ୱାଧୀନତାପ୍ରିୟ, ଇଂରେଜ ଜାତି ଅନେକ ପଶୁଙ୍କୁ ମନୁଷ୍ୟ କରିଅଛନ୍ତି, ଅନ୍ଧକୁ ଚକ୍ଷୁ ଦେଇଅଛନ୍ତି । ସମସ୍ତ ଜଗତ୍ ଯେ ଏକ ମହାନ୍ ଲକ୍ଷ୍ୟ ଆଡ଼କୁ ଅଗ୍ରସର ହେଉଅଛି, ଦିନକୁ ଦିନ ଉନ୍ନତ ହେଉଅଛି, ଏଥିରେ କିଛି ସନ୍ଦେହ ନାହିଁ ।

ମର୍ଦ୍ଦରାଜଙ୍କ ବାଗ୍ମିତା ପରିପୂରିତ ବାକ୍ୟଚୟ ଶୁଣି ଆମ୍ଭମାନଙ୍କ ମନରେ ନବଜୀବନର ସଞ୍ଚାର ହେଲା ଓ ଆମ୍ଭେମାନେ ସମସ୍ତେ ଘନଘନ କରତାଳି ଦେଲୁଁ । ଆମ୍ଭେମାନେ ମଫସଲିଆ, ଆମ୍ଭମାନଙ୍କ ମନରେ ଧାରଣା ଥିଲା ଯେ ଆମ୍ଭମାନଙ୍କ ଗୁହାରି ଶୁଣିବାକୁ କେହି ନାହିଁ । ମାଡ଼ ଖାଇ ଘରେ ଲୁଚୁ, ଗୋଇଠା ଖାଉଁ, ଆପଣା ପିଠିକି ନ ଆଉଁଶି ଗୋଇଠା ମାରିବା ଗୋଡ଼କୁ ଆଉଁଶି ପକାଉଁ ! ଆଜି ଏ କଥା ଶୁଣି ମନରେ କେତେ ଆଶା ସଞ୍ଚାର ହୋଇଗଲା । ମର୍ଦ୍ଦରାଜଙ୍କଠାରୁ ଶୁଣିଲୁଁ ଯେ, ଏ ବିଷୟରେ କଂଗ୍ରେସ ପକ୍ଷରୁ ଜଣେ Agent (ଦୂତ) ନିଯୁକ୍ତ ହୋଇ ଓଡ଼ିଶାରେ ଗ୍ରାମ ଗ୍ରାମ ବୁଲି କଂଗ୍ରେସର କର୍ମ ମଫସଲର ଲୋକଙ୍କୁ ବୁଝାଇବେ । ମନେ ମନେ ବିଚାରିଲୁଁ, ଓଡ଼ିଶାରେ ଉପଯୁକ୍ତ ଲୋକ ନ ମିଳିବାରୁ ଜଣେ ଉତ୍କଳଭାଷାନଭିଜ୍ଞ ଲୋକଙ୍କୁ ବାଧ ହୋଇ ନିଯୁକ୍ତ କରାଗଲା' ଏ କଥା ସମ୍ବାଦପତ୍ରରେ ନ ବାହାରିଲେ ରକ୍ଷା । ହାୟ ! କେତେ ମୁନିଙ୍କର କେତେ ମତ ! ମୁହଁରେ ଦେଶହିତୈଷୀ ବୋଲି ପରିଚୟ ଦେବା ଓ କାର୍ଯ୍ୟରେ କରିବା ବହୁତ ପ୍ରଭେଦ । ଜଣେ ଲୋକ ଦୁଃଖ ପ୍ରକାଶ କରୁଥିଲେ, ଓଡ଼ିଶାରେ ଏତେ ଉଚ୍ଚଶିକ୍ଷିତ ଯୁବକ ଅଛନ୍ତି, ସୁବିଧା ଥିଲେହେଁ ଜଣେ ସୁଦ୍ଧା ସ୍ୱାଧୀନ ବ୍ୟବସାୟ କରିବାକୁ ମିଳିଲେ ନାହିଁ । ଏ କଥା ବିଲାତ ପର୍ଯ୍ୟନ୍ତ ଖବର ହୋଇଗଲା; କିନ୍ତୁ ଅସଲ ଭିତରର ଅପ୍ରିୟ ସତ୍ୟତକ କେଉଁ ଆଡ଼ରେ ଲୁଚିଗଲା । ବଣର କୁରାଢ଼ି ଓ କାଠ ମଧ୍ୟରେ ଯେଉଁ ସାରଗର୍ଭ ଗଳ୍ପ ଅଛି, ତାହା ମନେପଡ଼ିଲା । ଭଗବାନ୍ Congress (ଜାତୀୟ ମହାସମିତି)ରେ କେବଳ ଆଡ଼ମ୍ବରପ୍ରିୟ ଯଶୋଲିପ୍ସୁ ଲୋକ ନ ରଖି ପ୍ରକୃତ ଆଡ଼ମ୍ବରଶୂନ୍ୟ, କାର୍ଯ୍ୟକାରୀ, ଗୁଣଗ୍ରାହୀ, ପରିଶ୍ରମୀ ଲୋକଙ୍କ ହସ୍ତରେ କାର୍ଯ୍ୟଭାର ନ୍ୟସ୍ତ କରନ୍ତୁ, ଏହାହିଁ ପ୍ରାର୍ଥନା !

ପଣ୍ଡିତ-ମହାଶୟ ମଧ୍ୟ ଆଜି ଅନେକ ବାଟ ଆସିବାର ଦେଖି ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହେଲୁ । ଇଂରାଜରାଜାଙ୍କ ବିଷୟ ପଡ଼ିଲେ ଯେ ନୀରବ ହୋଇ ବସି ରହନ୍ତି, ସେ ମଧ୍ୟ

ଆଜି 'ଜୟ ରାଜରାଜେଶ୍ୱରଙ୍କର ଜୟ' 'ଜୟ ଜାତୀୟ ମହାସମିତିର ଜୟ' ବୋଲି ଚିତ୍କାର କରିଉଠିଲେ ।

ମର୍ଦ୍ଦରାଜ 'ବହିର୍ଦ୍ଦେଶାର୍ଥେ' ବାହାରକୁ ଗଲେ । ଏହି ସମୟରେ ମାହେନ୍ଦ୍ର ଯୋଗ ପଡ଼ିଲା ପରି ଜମାଦାରବାବୁ ଆରକ୍ତ ନୟନରେ 'ଦରେସ' ପିନ୍ଧି ଟୁଙ୍ଗିରେ ଉପସ୍ଥିତ । ଆମ୍ଭେମାନେ ଦେଖି ଅବାକ୍ ! ଟୁଙ୍ଗିରେ ପଦକ୍ଷେପ କରିବା ମାତ୍ରକେ ଜମାଦାର ପୂର୍ବପରିଚିତ ଲୋକମାନଙ୍କୁ ଭୁଲିଗଲେ ଓ କହିଲେ, "ଦେଖୋ ! କୋଇ ବାହାର ମତ୍ ଯାଓ, ହାମ୍ ସବ୍‌କୁ ଗିରଫ କର୍‌କେ ଥାନାମେ ଲେଙ୍ଗେ । (ଜମାଦାର ଜାଣି ନ ଥିଲେ ଯେ ମର୍ଦ୍ଦରାଜେ ଟୁଙ୍ଗିରେ ଉପସ୍ଥିତ । ଗ୍ରାମରେ ମର୍ଦ୍ଦରାଜଙ୍କ ଛଡ଼ା ଜମାଦାର ଆଉ ବିଶେଷ କାହାକୁ ଖାତିର କରନ୍ତି ନାହିଁ । ମର୍ଦ୍ଦରାଜେ କଲିକତା ଯାଇଅଛନ୍ତି, ତାଙ୍କ ନିମନ୍ତେ ଖବରକାଗଜ ଅଛି, କଲମ, କାଳି, କାଗଜ ଅଛି, ଡାକ ମଧ ଅଛି) ବିରାଡ଼ି ଆଖିବୁଜି ଦୁଧ ପିଇଲେ କେହି ଦେଖିପାରିବ ନାହିଁ ବୋଲି ବିଚାରିଥିଲା । ଆଜିକାଲି ଆଇନ୍ କେସା କଡ଼ା, ଏ ବାତ୍ ତୁମ୍ଭେମାନଙ୍କୁ ଓଆକବ ନ ଥିଲା ପରା ! ଅବ୍‌ଭି ଦେଖୋ, କେସା ମଉଜ୍ ହୋଯାଏଗା ।"

ଏହା କହିବା ମାତ୍ରକେ ୪/୫ ଜଣ constable (ମଫସଲରେ ଆମ୍ଭେମାନେ କହୁଁ 'କନିଷ୍ଠବଳ' ଜମାଦାରଙ୍କୁ ଆମ୍ଭେମାନେ ଜାଣୁଁ 'ଜ୍ୟେଷ୍ଠବଳ' ଓ ତାଙ୍କର ନିମ୍ନସ୍ଥ କର୍ମଚାରୀମାନଙ୍କୁ ଜାଣୁଁ କନିଷ୍ଠବଳ) ଆସି ଦ୍ୱାରରେ ଦଣ୍ଡାୟମାନ ।

ରଘୁ ଭୋଇ, ଶାମ ପଧାନ, ଦାମା ପରିଡ଼ା, ଲଖି ସାହୁ, ଜମାଦାରଙ୍କ ଗୋଡ଼ ତଳେ ଲମ୍ବ ଲମ୍ବ ପଡ଼ି ଚିତ୍କାର କଲେ, 'ହଜୁର ଆମର ମା ବାପ, ଜଜ୍ କମିସନ, ଆମକୁ ମାଷ୍ଟରେ ଏଠେଇଁକି ଡାକି ଆଣିଛନ୍ତି । ଆମେ ଆସୁ ନ ଥିଲୁ । ହଜୁର ରଖିଲେ ରଖିବେ, ମାଇଲେ ମାରିବେ ।'

ଜମାଦାର ଏମାନଙ୍କ ସଙ୍ଗେ କେତେଗୁଡ଼ିଏ ମୌଖିକ ଅବୈବାହିକ ସମ୍ବନ୍ଧ ସ୍ଥାପନ କରି ହିନ୍ଦୀ ଭାଷାର ଜ୍ଞାନ ଦେଖାଉଅଛନ୍ତି, ଏହି ସମୟରେ ମର୍ଦ୍ଦରାଜେ 'ବହିର୍ଦ୍ଦେଶ'ରୁ ଫେରି ଆସିଲେ । (କୌଣସି ସମ୍ବାଦପତ୍ରରେ କେତେଦିନ ତଳେ ଜମାଦାରଙ୍କର କିଛି ଦୁର୍ନାମ ବାହାରିଥିବାରୁ ଉପଯୁକ୍ତ ବିଭାଗୀୟ ତଦନ୍ତ ପରେ ଜମାଦାରଙ୍କର ୨ ମାସ ହେଲା ୧୦ ଟଙ୍କା ଅର୍ଥଦଣ୍ଡ ହୋଇଅଛି । ଜମାଦାରେ ଆଜି ସୁଯୋଗ ବୁଝି ସେ ଅର୍ଥଦଣ୍ଡଟା ପୁରସ୍କାର ଦ୍ୱାରା ଭରିଣା କରି ନେବେ ବୋଲି ଟୁଙ୍ଗିକୁ ଆସିଥିଲେ । କିନ୍ତୁ ଭଗାରି ନ ଥିଲେ ଯାତ୍ରାକାଳୀ ଭଗାରି-ମର୍ଦ୍ଦରାଜେ ଆସି ପହଞ୍ଚିଲେ ଓ ଜମାଦାରେ 'ଭୋଗିବ ମନ୍ତ୍ରୌଷଧିରୁଦ୍ଧବୀର୍ଯ୍ୟଃ ହୋଇଗଲେ !) ମର୍ଦ୍ଦରାଜଙ୍କର ଓ ଜମାଦାରଙ୍କର କ୍ଷଣିକ ବିଶ୍ରମ୍ଭାଳାପ ପରେ ଜମାଦାରେ ବାକ୍‌ବ୍ୟୟ ନ କରି ସଦଳବଳରେ ପ୍ରସ୍ଥାନ କଲେ ଓ ଆମ୍ଭେମାନେ ମର୍ଦ୍ଦରାଜଙ୍କୁ କେତେ ଆଶୀର୍ବାଦ କରି ଟୁଙ୍ଗିରୁ ପ୍ରସ୍ଥାନ କଲୁଁ ।

ଉତ୍କଳ ସାହିତ୍ୟ/୫ମ ବର୍ଷ/୧୦ମ ସଂଖ୍ୟା/୧୩୦୮ ସାଲ ।

# ବାଇ ମାହାନ୍ତି ପାଞ୍ଜି

## ୧୯୧୩

ବାଇ ମାହାନ୍ତି ପାଞ୍ଜି ଓଡ଼ିଆ ସାହିତ୍ୟରେ ପାଞ୍ଜି ଶୀର୍ଷକରେ ମାଦଳା ପାଞ୍ଜି ପରେ ଏକ ବହୁଚର୍ଚ୍ଚିତ ରଚନା । ଏହା ଧାରାବାହିକ ଭାବରେ ଉତ୍କଳ ସାହିତ୍ୟ ପତ୍ରିକାର ପଞ୍ଚମ ଭାଗ, ଏକାଦଶ ସଂଖ୍ୟା (୧୩୦୯ ସାଲ)ରୁ ଆରମ୍ଭ ହୋଇ ପନ୍ଦରଗୋଟି ବିଡ଼ାରେ, ୭ମ ଭାଗ ଦଶମ ସଂଖ୍ୟା (୧୩୧୧ ସାଲ)ରେ ଶେଷ ହୋଇଥିଲା । ପ୍ରହରାଜ ଶ୍ରୀ ଦୁର୍ମୁଖ ଶର୍ମା ଛଦ୍ମ ନାମରେ ଏହା ଲେଖିଥିଲେ । ପାଞ୍ଜି, ପୁସ୍ତକ ଆକାରରେ ୧୯୧୩ ମସିହାରେ ପ୍ରଥମେ ପ୍ରକାଶ ପାଇଥିଲା । ପୁସ୍ତକର ବ୍ୟୟଭାର ବହନ କରିଥିଲେ ସୋନପୁରର ମହାରାଜା ଶ୍ରୀ ବୀରମିତ୍ର ସିଂହଦେଓ । ପ୍ରହରାଜଙ୍କ ଜୀବିତାବସ୍ଥାରେ ଏହାର ଦ୍ୱିତୀୟ ମୁଦ୍ରଣ ମହାନନ୍ଦ କରଙ୍କ ଦ୍ୱାରା ୧୯୩୭ ମସିହାରେ ହୋଇଥିଲା ।

ପାଞ୍ଜିର ନାୟକ ବାଇ ମାହାନ୍ତି, ପରମ୍ପରାର ଭୂମି ଉପରେ ଠିଆ ହୋଇ ଆତ୍ମ-ସମୀକ୍ଷଣରେ ନିମଗ୍ନ ଜଣେ ସମକାଳୀନ ମଣିଷ । ମାତ୍ର ବିଚାରରେ ସେ ପରମ୍ପରାସର୍ବସ୍ୱ କି ସାମସମୟିକ ନୁହନ୍ତି, ଆଧୁନିକ । ସେ ମର୍ଦ୍ଦଳ କି ମାଦଳ ନୁହନ୍ତି, ଚଳମାନ । ଭାଗବତ ତୁଙ୍ଗି ବର୍ଣ୍ଣିତ ମସ୍ତରାମ ଚରିତ୍ରର ସଚେତନ ସଂସ୍କରଣ, ଅନ୍ୟ ପରିଭାଷାରେ କହିଲେ, ପ୍ରହରାଜାୟନ ।

ସଂପାଦକ

## ନିବେଦନ

ବାଇ ମାହାନ୍ତି ପାଞ୍ଜି, ପ୍ରଥମେ ଧାରାବାହିକ ଭାବରେ ଉତ୍କଳ ସାହିତ୍ୟ ପତ୍ରିକାରେ ଏକାଧିକବର୍ଷକାଳ ପ୍ରକାଶିତ ହୋଇଥିଲା । ତତ୍‌ପରେ ସ୍ୱର୍ଗୀୟ ସୋନପୁର ମହାରାଜାଙ୍କ ଅର୍ଥ ସାହାଯ୍ୟରେ ଏହା ସନ ୧୯୧୩ ମସିହାରେ ବାଇ ମାହାନ୍ତି ଓରଫ୍ ଦୁର୍ମୁଖ ଶର୍ମା ଉପନାମରେ ପ୍ରକାଶିତ ହୋଇଥିଲା । ସେଥିରେ ଯେଉଁ 'ନିବେଦନ' ଓ 'ସମ୍ବାଦ' ଦିଆଯାଇଥିଲା, ତାହା ୨୪ ବର୍ଷ ତଳର କଥା । ତାହା ବର୍ତ୍ତମାନ ସମୟ ସହିତ ଖାପ ଖାଇବ ନାହିଁ ବୋଲି ଏ ସଂସ୍କରଣରେ ପରିତ୍ୟକ୍ତ ହେଲା । ପ୍ରଥମ ସଂସ୍କରଣର ନିବେଦନରେ ଲେଖା ହୋଇଥିଲା ଯେ ୧୦ ବର୍ଷ ତଳେ ଲେଖାଥିବାରୁ ପୁରୁଣାକଥା ଓ ବିଶ୍ୱାସଗୁଡ଼ିକର ଯୋଗ କରିବା ପାଇଁ ନୂଆ କଥା କିଛି ନାହିଁ । ଆଜି ୨୪ ବର୍ଷ ପରେ ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା ଓ ଏଥିର ପ୍ରୁଫ୍ ଦେଖିବା ସୁବିଧା ଲେଖକଙ୍କୁ ମିଳିଲା । ଏହି ସୁଯୋଗରେ ଲେଖକ ୩୪ ବର୍ଷ ତଳର ପୁରୁଣା କଥାରେ ଓ ବିଶ୍ୱାସରେ ଯୋଗ କରିବା ପାଇଁ ନୂଆ କଥା କିଛି ପାଇ ପାରି ନାହିଁ । କଟକ ପ୍ରିଣ୍ଟିଙ୍ଗ୍ କୋମ୍ପାନି, ପୁରୁଣା ଅଦାଲତ, ପାଗଳଖାନା, ତାଡ଼ିଖାନା ଆଦି ପୂର୍ବ ସ୍ଥାନରୁ ଉଠିଯାଇଥିବାରୁ ଏ ପୁସ୍ତକର ପଞ୍ଚମ ବିଡ଼ାର ଉପସଂହାରରେ ଥିବା ନୋଟ୍ ତଳେ ଗୋଟିଏ ଟୀକା ଯୋଗ କରାଯାଉଅଛି ମାତ୍ର । ଏହି ୨୪ ବର୍ଷ ମଧ୍ୟରେ କେତେକ ଓଡ଼ିଆ ଶବ୍ଦର ଉଚ୍ଚାରଣକୁ ରକ୍ଷା କରି ତହିଁର ଲିଖିତ ଆକାର ମୁଁ ମୋ ଲେଖାରେ ପରିବର୍ତ୍ତିତ କରିଥିବାରୁ ଏ ସଂସ୍କରଣରେ ସେଗୁଡ଼ିକ ପରିବର୍ତ୍ତିତ ହୋଇଅଛି, ଯଥା - 'କଣ' ସ୍ଥଳରେ 'କଅଣ', ନଞର୍ଥକ ନାଁ' ସ୍ଥଳରେ 'ନା', ପ୍ରିଣ୍ଟିଂ ସ୍ଥଳରେ 'ପ୍ରିଣ୍ଟିଙ୍ଗ୍' । ସୁଖର କଥା ଯେ, 'ବାଇ ମାହାନ୍ତି ପାଞ୍ଜି' ବଙ୍ଗ, ପାଟଣା, ମାନ୍ଦ୍ରାଜ ଓ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କ ଦ୍ୱାରା କେତେକ ଉଚ୍ଚ ଶ୍ରେଣୀରେ ପାଠ୍ୟପୁସ୍ତକରୂପେ ମନୋନୀତ ହୋଇଅଛି । ୩୦ ବର୍ଷ ପୂର୍ବେ ଲେଖା ହୋଇଥିବା ବିଷୟ ଆଜି ମଧ୍ୟ ଦେଶବାସୀଙ୍କଠାରେ ଆଦୃତ ହେଉଅଛି, ଏହା ବୃଦ୍ଧାବସ୍ଥାରେ ଲେଖକ ପକ୍ଷରେ ସାନ୍ତ୍ୱନାର ବିଷୟ । ଇତି ।

କଟକ
ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ଆଶ୍ରମ
ସେପ୍‌ଟେମ୍ବର ୧୯୩୭

ଗୋପାଳ ଚନ୍ଦ୍ର ପ୍ରହରାଜ

[ଦ୍ରଷ୍ଟବ୍ୟ ଏହା ଯେତେବେଳେ ଲେଖା ହୋଇଥିଲା ସେତେବେଳେ କଟକ ଜେଲଖାନା ପାଖେ ପ୍ରିଣ୍ଟିଙ୍ଗ୍ କମ୍ପାନୀ, ଅଦାଲତ, ଓକିଲଖାନା, ପାଗଳଖାନା, ବର୍ତ୍ତମାନ ଗୌରୀଶଙ୍କର ପାର୍କର ପୂର୍ବ ପାଖେ ବେଶ୍ୟା ପଡ଼ା ଓ ତାଡ଼ିଖାନା ଥିଲା । ଏସବୁ ବର୍ତ୍ତମାନ ନାହିଁ ।]

# ଭୂମିକା

ଗଞ୍ଜାମ ଅନ୍ତର୍ଗତ ପାରଳାଖେମିଣ୍ଡିର ସେକେଣ୍ଡ ପ୍ରିନ୍ସ ଶ୍ରୀ ପଦ୍ମନାଭ ନାରାୟଣ ଦେବ ଓ ମୟୂରଭଞ୍ଜାଧୀଶ୍ୱର ମହାରାଜ ଶ୍ରୀ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ ବାହାଦୁର ସାହିତ୍ୟକ୍ଷେତ୍ରରେ ନୂତନ Patron ନୁହନ୍ତି । ତେବେ ଏ ସୌଭାଗ୍ୟ ଶର୍ମାଙ୍କ ଭାଗ୍ୟରେ ଘଟିଛି, ଏହା ନବୀନ ସାହିତ୍ୟସେବକଙ୍କ ପ୍ରତି ଅବଶ୍ୟ ସୁସମାଚାର । ଏ ଦୁଇଜଣ ଗ୍ରାହକଙ୍କୁ ନ ପାଇଥିଲେ ଓ ସୁଯୋଗରୁ ହେଉ ବା ଦୁର୍ଯୋଗରୁ ହେଉ ଏମାନଙ୍କର ଆଂଶିକ ଆନୁକୂଲ୍ୟ ଲାଭ କରି ନ ଥିଲେ ଏ ପୁସ୍ତକ ଖଣ୍ଡି ଏତେ ଶୀଘ୍ର ପ୍ରକାଶିତ ହୋଇଥାନ୍ତା କି ନାହିଁ ସନ୍ଦେହ । 'ଏତେ ଶୀଘ୍ର' ନିମନ୍ତେ ଶର୍ମାଙ୍କ ଗୁରୁଗୋସାଇଁ ଖୋଦ୍ ଦାୟୀ । ତାଙ୍କରି ମନ୍ତ୍ରଣାରେ 'ସନ୍ଧ୍ୟା'ର ଜନ୍ମ ଓ ଆଜି ଉପନୟନ ହେଲା ଖିରିପିଠା ପରେ । କେବେ ଯେ 'ବ୍ରହ୍ମଚର୍ଯ୍ୟ' ଶେଷ ହେବ, ତାହା ଭଗବାନ୍ ଜାଣନ୍ତି । ତେବେ ଗୃହସ୍ଥାଶ୍ରମର ପଥ ବହୁଦୂର, ଏ କଥା ଏକପ୍ରକାର ନିଶ୍ଚିତ । କୃତଜ୍ଞତାର କାରଣ ଢେର ଅଛି । କିନ୍ତୁ ଦୁଃଖର ବିଷୟ କି ସୁଖର ବିଷୟ, ସମୟ ଓ ସୁବିଧାର ଅଭାବ । ଅଭାବ ନ ଥିଲେ ସୁଦ୍ଧା ପ୍ରକୃତିକୁ ଏଡ଼ିବା କାଠିକର ପାଠ । ସନ୍ଧ୍ୟାର ପ୍ରଥମ ଜନ୍ମ ସମୟରେ ଷଠୀପଞ୍ଝୁଆତି ବେଳେ ଅନେକ ମହାନୁଭବ ଅତିଥି ଅଯାଚିତୋପସ୍ଥିତ ହୋଇଥିଲେ । ବ୍ରତବେଳେ ସେମାନଙ୍କୁ ନ ଲୋଡ଼ିବାଟା ଅଡୁଆ ଲାଗିବ । ଧୂଳିରେ ଗୁରୁଣ୍ଡିଲା ବେଳେ ଯେଉଁମାନେ ଧୂଳି ଝାଡ଼ିଦେଇ କାଖେଇ ପକାଇଛନ୍ତି, ସେମାନେ ଯୌବନ ସମୟରେ ଯେ ଆଦର ନ କରିବେ, ଏହା କିଏ କହିବ ? ସେତେବେଳେ ଯେଉଁ ସୁହାଗ ଯଥେଷ୍ଟ ହୋଇଥିଲା, ଏତେବେଳେ ତାହା 'ଅଯଥା' ହୋଇପାରେ ।

ଆଧୁନିକ କାଇଦା 'ଉତ୍ସର୍ଗ' କରିବାକୁ ଶର୍ମାଙ୍କର ଉପାୟ ନାହିଁ । ଥିଲେ ସେ ସୁଯୋଗଟା ଶର୍ମା କି ଛାଡ଼ିବା ଜନ୍ତୁ ? 'ଆପଣା ହସ୍ତେ ଜିହ୍ୱା ଛେଦି, କେ ତାର ଅଛି ପ୍ରତିବାଦୀ' । ହାତରୁ ଛୁଟିଲେ ଅଣ ବାହୁଡ଼ ।

ଶର୍ମା ପାଠ୍ୟାବସ୍ଥାରେ ମହାମତି ଆମେରିକା ଲେଖକ Oliver Wendal Holmesଙ୍କୁ ଦିନାକେତେ ଗୁରୁ ପାଇଥିଲେ । ସନ୍ଧ୍ୟାର ଛଟା ସେହି ଓସ୍ତାଦି ଘତର ବିକୃତ ଓ ବିଭଙ୍ଗ ଅନୁସରଣ ମାତ୍ର । ଧୂଆଁକଳ 'ସାଗରକେଶରୀ' ଯେଉଁ ବାଟେ ଯାଏ, ସେ ବାଟେ ରାମ ମହାରଣା କାଠପଟାଳି ମଧ ଓଟାରୁଛି । ଯାହାଠାରେ ଯେଉଁପ୍ରକାର ଉପାଦାନ ମହଜୁଦ୍, ସେ ତହିଁକି ଚାହିଁ ଦଣ୍ଡେ ଘଡ଼ିଏ କସରଦ୍ କଲେ ଖଲାସ । ଛୋଟା ଛୋଟେଇ ଚାଲିବା ସ୍ୱାଭାବିକ୍ ।

ଶର୍ମାଙ୍କର ଜଣେ M.A.B.L. ଓ ଜଣେ B.A. ବନ୍ଧୁ ସନ୍ଧ୍ୟାକୁ ଆଦ୍ୟୋପ୍ରାନ୍ତ ପଢ଼ି କେତେ ସ୍ଥଳ ସଂଶୋଧନ କରି ଦେଇଛନ୍ତି । ସେମାନଙ୍କୁ ମୌଖିକ କୃତଜ୍ଞତା ଛୁଇଁ ପାରିବ ନାହିଁ ବୋଲି ଶର୍ମା ଏ ଯାତ୍ରାରୁ ରକ୍ଷା ପାଇଲେ । ପୋଷାକ ସିନା ବହିର୍ଜଗତ ପାଇଁ, ଘରେ ପୋଷାକ ପିନ୍ଧିଲେ ଘିମିରି ମାତ୍ର ସାର ହେବ ।

ଏ ସନ୍ଧ୍ୟାରେ ଯେତେ ବିଷୟ ଅଛି, ସେଗୁଡ଼ିକ ଶର୍ମାଙ୍କର ନିଜସ୍ୱ ନୁହେଁ । ଟୁଙ୍ଗିର ଅନ୍ୟାନ୍ୟ ସଭ୍ୟମାନଙ୍କୁ ଉଚିତ ପ୍ରାପ୍ୟ ନ ଦେଇ ସମସ୍ତଙ୍କ ପ୍ରଦତ୍ତ ଚାନ୍ଦାରୁ ଆପେ 'ଅୟସ' କରିନେବାର କ୍ଷମତା ଶର୍ମାଙ୍କର ନାହିଁ । ଥିଲେ ଶର୍ମା ଛାଡ଼ି ଦିଅନ୍ତେ ବୋଲି ପାଠକ ମନେ କରିଅଛନ୍ତି କି ?

## ପ୍ରଥମ ବିଡ଼ା

### ବିଜ୍ଞାପନ

ଆଜିକାଲି ଶିକ୍ଷିତମାନଙ୍କ ମଧ୍ୟରେ ପ୍ରତ୍ନତତ୍ତ୍ୱ ଗବେଷଣାର ବିଶେଷ ଚହଳ ପଡ଼ିଅଛି । ଶିକ୍ଷିତମାନେ କେଉଁ କାର୍ଯ୍ୟଭାର ବହନ କରି ଯୋଗ୍ୟତା ଦେଖାଉଛନ୍ତି, ତହିଁରେ ଆମ୍ଭମାନଙ୍କର ଅଯଥା ହସ୍ତକ୍ଷେପ କରିବା ଅନ୍ୟାୟ । ଆମ୍ଭେମାନେ ସେ ଶ୍ରେଣୀର ନୋହୁଁ କିମ୍ବା ତହିଁରେ ଗଣ୍ୟ ହେବାର ଆକାଙ୍‌କ୍ଷା ବା ଆଶା ବା ଦୁରାଶା ଆମ୍ଭମାନଙ୍କର ନାହିଁ । ଅଧୁନାତନ ତତ୍ତ୍ୱଗବେଷଣା ନିମନ୍ତେ ଜଣେ ଉପଯୁକ୍ତ ଶିକ୍ଷିତ ଲୋକ ନ ମିଳିବାରୁ ସେଥି ନିମନ୍ତେ ଶ୍ରୀ ବାଇଧର ମାହାନ୍ତି (ଡାକ ନାମ ବାଇ ମାହାନ୍ତି)ଙ୍କୁ ମନୋନୀତ କରିଅଛୁଁ । ତାଙ୍କର ପୁରୁଣାକାଳିଆ ମାଟିବଂଶ ଅବଧାନିଆ ପାଠପଢ଼ା । ସେ ତାଳପତ୍ର ଛଡ଼ା କାଗଜ କଲମର କଡ଼ାଏ ଧାରନ୍ତି ନାହିଁ । ବାଇ ମାହାନ୍ତି ଅବଶ୍ୟ ବାଳକ ବା ଯୁବକ ନୁହନ୍ତି, ତାଙ୍କ କହିବାର ପ୍ରକାଶ - 'ନ'ଅଙ୍କ'କୁ ତାଙ୍କ ବୟସ ୩୩ ବର୍ଷ ହୋଇଥିଲା ବୋଲି ଆମ୍ଭେମାନେ ହିସାବ କରି ଦେଖିଅଛୁଁ । ଆପଣମାନେ ମଧ୍ୟ ଗଣନା କରିବେ । ବାଇ ମାହାନ୍ତି କୌଣସି ଚାକିରି ଚେଷ୍ଟାରେ ଅନେକ ସ୍ଥାନ ବୁଲି, ଅନେକ ଜମିଦାରଙ୍କୁ ଅନୁସରଣ କରି, ଅନେକ ହାକିମଙ୍କୁ ଶାଗ ମାଛ ଭେଟି ଦେଇ ଶେଷରେ ନିରସ୍ତ ହୋଇ ଦୈବଯୋଗେ ଆସି ଆମ୍ଭମାନଙ୍କ ଗ୍ରାମରେ ଉପସ୍ଥିତ । ଉଦ୍ଦେଶ୍ୟ ଥିଲା ଖଣ୍ଡିଏ ଚାଟଶାଳୀ କରିବାର; କିନ୍ତୁ ସୁପାରିସ ଯୋଗାଡ଼ କରି ନ ପାରିବାରୁ ଓ ତଦବିର ଅଭାବରେ ଏଠାର ପାଠଶାଳାରେ ଆଉ ଜଣେ ମୁକରିର ହୋଇଗଲେ । ଆମ୍ଭେମାନେ ବାଇ ମାହାନ୍ତିଙ୍କ ଦୁରବସ୍ଥା ଦେଖି ଚାନ୍ଦା କରି ତାଙ୍କୁ ଅଧୁନାତନ ତତ୍ତ୍ୱ-ସ୍ଥାନେ ସ୍ଥାନେ ବୁଲି ଯାହା ଦେଖିବେ, ତାହା ପାଞ୍ଜିରେ ଲେଖି ମାସକୁ ମାସ ଆମ୍ଭମାନଙ୍କ ନିକଟରେ କାଗଜ ଦାଖଲ କରିବେ ଓ ମାସକୁ ମାସ ତାଙ୍କ ଦରମାଗଣ୍ଡାକ ବୁଝିନେବେ । ଏଥିରେ 'ତ୍ରୁଟି' କଲେ ଉଚିତ ଦଣ୍ଡ ପାଇବେ । କ୍ରମଶଃ ଦେଖୁଅଛୁଁ ଯେ, ବାଇ ମାହାନ୍ତିଙ୍କ ଲେଖନ ଯେପରି ଗତିରେ ଚାଲୁଅଛି, ସେପରି ଆଉ ବର୍ଷେ ଖଣ୍ଡେ ଚାଲିଲେ ଆମ୍ଭମାନଙ୍କୁ ଅନୁତାପ କରିବାକୁ ହେବ । ଅର୍ଥାତ୍ ବର୍ଷକୁ ବର୍ଷ ପାଞ୍ଜିତକ ନ ପୋଡ଼ିଲେ ଆଉ ରଖିବାକୁ ସ୍ଥାନ ହେବ ନାହିଁ । କିନ୍ତୁ ତାହାହେଲେ ଆମ୍ଭମାନଙ୍କ ପ୍ରଦତ୍ତ ଦରମାତକ ଅକାରଣ ଯିବ । ଏ ବିଷୟରେ ଆମ୍ଭେମାନେ କର୍ତ୍ତବ୍ୟ ସ୍ଥିର କରି ନ ପାରି ବଡ଼ ଭାବିତ ଥିଲୁ । ଦିନେ କାର୍ଯ୍ୟ ଉପଲକ୍ଷରେ ସହରକୁ ଆସିଥିଲୁଁ, ସେଠାରେ ଉତ୍କଳସାହିତ୍ୟ ପତ୍ରିକାର ସମ୍ପାଦକଙ୍କ ସଙ୍ଗେ ସାକ୍ଷାତ୍ ହେବାରୁ ସେ ଆମ୍ଭମାନଙ୍କର ବିଡ଼ାଏ ପାଞ୍ଜି ତନ୍ନ ତନ୍ନ କରି ଦେଖି ଆମ୍ଭମାନଙ୍କୁ ଉପଦେଶ ଦେଲେ ଯେ, ବାଇ ମାହାନ୍ତିଙ୍କର ପୁରୁଣା ଧରଣର ଲେଖାକୁ ଓ ଭାଷାକୁ ଆଧୁନିକ ଲେଖାରେ ଓ

ଭାଷାରେ ଲେଖିଦେଲେ ସେ ତାଙ୍କ ପତ୍ରିକାରେ ସମୟ ସମୟରେ ପୃଷ୍ଠାଏ ଦୁଇ ପୃଷ୍ଠା ସ୍ଥାନ ଦେଇପାରନ୍ତି । ଏହି ଉପଦେଶ ନିମନ୍ତେ ଆମ୍ଭେମାନେ ସମ୍ପାଦକଙ୍କ ନିକଟରେ ଋଣୀ ।

ପାଠକମାନଙ୍କ କୌତୂହଳ ଚରିତାର୍ଥ କରିବା ନିମିତ୍ତ ବାଇ ମାହାନ୍ତିଙ୍କ ଲେଖାର କିଞ୍ଚିଦ୍ ନମୁନା ଏଠାରେ ଦିଆଗଲା -

ଯାଦଦାସ୍ତ ଫିରସ୍ତ କାଗଜାତ୍ । ବା, । ସନ ୧୩୦୮ ସାଲେ

ମାସକବାର -

| | | |
|---|---|---|
| ସଦର ସିରସ୍ତା | ବୀ ୧ | ପ ୫୦ |
| ଜମା ଖର୍ଚ୍ଚ | ପ ୧୩ | |
| ପିଠିକା ମଏ ଫିରସ୍ତ | ପ ୩୭ | |

ଏ ତ ଗଲା ପାଞ୍ଜି ଉପରେ ହେଡ଼ିଙ୍ଗ, ବର୍ତ୍ତମାନ ପ୍ରଥମ ପତ୍ରଟିର ଆରମ୍ଭ ଦେଖନ୍ତୁ -

— ।। ପ୍ର । କୋଦିଣ୍ଡା ଦଣ୍ଡପାଟ ୧

ଅ ୨୪ ଙ୍କ ସ୍ନ ୧୩୦୮ ସାଲେ କୁ

ଯାଦଦାସ୍ତ ଜମିଦାରଙ୍କ ଚାକରାନ ମାସକବାର କୁ

— ।। କି । ତା । ହରିପୁର । ମୌ । ନୂଆପଡ଼ା ଶ୍ରୀ ଶ୍ରୀ ଶ୍ରୀ । ଜ ।। ଚ । ରାମଚନ୍ଦ୍ର ସାନ୍ତରା ମହାପାତରଙ୍କ ଓଗ୍ର । ଦ୍ୱହ । ବାଇ ମାହାନ୍ତି ।

ବାଇ ମାହାନ୍ତିଙ୍କ ପାଞ୍ଜିର ଅବିକଳ ଅନୁବାଦ ଦେଲେ ଆପଣମାନେ ଆମ୍ଭମାନଙ୍କ ଉପରେ ବିରକ୍ତ ହେବେ । ଏହି ସଦର୍ ସିରସ୍ତାର ପ୍ରଥମ ପତ୍ରର ୨ ସ୍ତମ୍ଭର ମର୍ମ ଏହି -

ବାଇ ମାହାନ୍ତି ଦିନେ ଗସ୍ତରେ ପ୍ରଗନ୍ନେ କୋଦିଣ୍ଡା, କିସମତ ତାଲୁକେ ହରିପୁର, ମୌଜେ ନୂଆପଡ଼ାକୁ ଯାଇଥିଲେ । ସେଠାରେ ଶ୍ରୀ ଶ୍ରୀ ଶ୍ରୀ ଜମିଦାର ଚଉଧୁରୀ ରାମଚନ୍ଦ୍ର ସାମନ୍ତରାୟଙ୍କ ଗୃହର ଚାକରମାନଙ୍କ ବିବରଣ ଏହି ପତ୍ରରେ ଟିପି ଆଣିଛନ୍ତି । ବାଇ ମାହାନ୍ତିଙ୍କ ପାଞ୍ଜିରୁ ସମସ୍ତ ବିଷୟ ଅବିକଳ ଉଦ୍ଧାର କରି ଲେଖିଲେ ସେଥିପାଇଁ ସାହିତ୍ୟରେ ସ୍ଥାନ ନାହିଁ, ସ୍ଥାନ ଥିଲେ ମଧ ତାହା ପାଇବାର ଆଶା ଅତି ଅଳ୍ପ । ଅତଏବ ବାଛି ବାଛି ତହିଁର କେତେକ ପତ୍ରର ଭାବ ସର୍ବସାଧାରଣରେ ପ୍ରକାଶ କରିବୁଁ ।

## ଦେଶୀୟ ଆଭରଣର ଉପକାରିତା

ଜଣେ କଥା ପ୍ରସଙ୍ଗରେ କହିଲେ ଯେ, ଆମ୍ଭମାନଙ୍କ ସ୍ତ୍ରୀମାନେ ଓ ବାଳକ ବାଳିକାମାନେ ଯେଉଁ ଅଳଙ୍କାର ବ୍ୟବହାର କରନ୍ତି, ତହିଁରେ ସ୍ୱାସ୍ଥ୍ୟର ସମ୍ପର୍କ ଅଛି ଓ ଅନ୍ୟାନ୍ୟ କେତେକ ଉପକାର ଅଛି । ଯଥା -

କାନ ଫୋଡ଼ାରେ - ଅନ୍ତକୋଷ ରୋଗର ପ୍ରତିକାର ।

ନାକ ଫୋଡ଼ାରେ - ସ୍ୱରର ଅନୁନାସିକ ମାଧୁରୀ ବୃଦ୍ଧି ।
ଅନନ୍ତବ୍ରତ ଧାରଣରେ - ପ୍ଲୀହାବୃଦ୍ଧିର ପ୍ରତିରୋଧ ।
ଅଣ୍ଟାସୂତାରେ - ବାତରୋଗ ଦୂରୀକରଣ ।
ଗୋଡ଼ରେ ୧ ବିଶା ଖଡୁଦ୍ୱାରା ନିୟମିତ ପଦଚାଳନା ।
(ପ୍ରଶ୍ନ - ଗଉଡୁଣୀ, କୁମ୍ଭାରୁଣୀ ଇତ୍ୟାଦିଙ୍କର ୫ ସେରିଆ ପିତ୍ତଳ ଖଡୁଦ୍ୱାରା ? ଉତ୍ତର - ଦୁଷ୍ଟସ୍ୱାମୀ ଦମନ ।)

ଉପରି ଲାଭ

ଅବଧାନଙ୍କର - ଚାଟଙ୍କ ବାପ-ମାଆଙ୍କଠାରୁ ଗାଳି ମନ୍ଦ ।
ସମ୍ପାଦକଙ୍କର - ଅପବାଦ ଦଫାରେ ମକଦ୍ଦମା ।
ଅଳ୍ପବୟସ୍କ ସ୍କୁଲ ଛାତ୍ରଙ୍କର - ଚୁରଟ
ଯୁବକ ଛାତ୍ରଙ୍କର - ଅଜୀର୍ଣ୍ଣ ଓ ଚଷମା ।
ବାପଙ୍କର - ପିଲା ବଡ଼ ହେଲେ ବାପାଙ୍କଠାରୁ ପୃଥକ ନ ହେବା ।
ଘରୋଇ ଚାକରଙ୍କର - କେତେବେଳେ କାନମୋଡ଼ା, କେତେବେଳେ ଚାପୁଡ଼ା ଓ ଦିନ ଦୁଇପହରେ ଗଳାଧକ୍କା ।
ଫଉଜଦାରିରେ ଫରିଆଦିର - ୨୧୧ ଦଫା
ସାକ୍ଷୀର - ଉଆରଣ୍ଟ ।
ଜମିଦାରଙ୍କର - ସରକାରୀ ହାକିମଙ୍କଠାରୁ ଧକ୍କା ଓ ଧମକ ।
ପୂଜାହାରୀଙ୍କର - ବାବୁ ଓ ଠାକୁରାଣୀଙ୍କ ଭୋଜନାନ୍ତେ ଦିନେ ଦିନେ ତରକାରି ଅଭାବରେ ଉପବାସ ।
ମୁଦ୍ରାଯନ୍ତ୍ରାଧ୍ୟକ୍ଷଙ୍କର - ଅଶ୍ଳୀଳ ପୁସ୍ତକ ପ୍ରକାଶାର୍ଥ ମକଦ୍ଦମା ।
କୋଇଲାଖଣିର କୁଲିଙ୍କର - ଶ୍ୱାସରୋଗ ଓ ଖଣିରେ ଅପମୃତ୍ୟୁ ।
ବାତଜ୍ୱର ରୋଗୀର - ଅଫିମ ଅଭ୍ୟାସ ।
ଜମିଦାରଙ୍କ ଘରବେଠିଆଙ୍କର - ଧକ୍କା ଓ ଅବୈବାହିକ ହିନ୍ଦୀ ସମ୍ବନ୍ଧ ।

**ମାନ୍ୟଗଣ୍ୟ ହେବାର ଉପାୟ**

୧ - ବିବେକକୁ ବିଲାତି ତାସ ପରି ଚାଳନ କରିବ ।
୨ - ଟଙ୍କାକୁ ହୃଦୟର ଈଶ୍ୱର ବୋଲି ମାନିବ ।
୩ - ଭିତରେ ଏକ କଥା ବାହାରେ ଏକ କଥା ଦେଖାଇବ ।
୪ - ପ୍ରତିଶ୍ରୁତ ହେବାକୁ କ୍ଷଣେ ବିଳମ୍ବ ନ କରିବ, କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଇଚ୍ଛାନୁଯାୟୀ କାର୍ଯ୍ୟ କରିବ ।
୫ - ବାହାରେ 'ସୁଖ୍ୟାତି ଓ ଖୋସାମତ'କୁ ଘୃଣା କରିବ, ଅସଲ ଭିତରର କଥା କେହି ନ ଜାଣନ୍ତୁ ।

୬ - ବାହାରେ ଦେବତା ଅବତାର ବୋଲି ଦେଖାଇବ, କିନ୍ତୁ ହୃଦୟରେ ନରକ ପ୍ରତିଷ୍ଠା କରିଥାଅ; କ୍ଷତି ନାହିଁ ।

୭ - ଯେଉଁ କାର୍ଯ୍ୟ କଲେ ନାମ ହେବ ଓ ଗେଜେଟରେ ନାଆଁ ଉଠିବ, ତହିଁରେ ସର୍ବ ପ୍ରଥମ ଯୋଗ ଦେବ ।

୮ - ଦିବାରାତ୍ର ଉଚ୍ଚପଦସ୍ଥଙ୍କ ଚରଣ ଓ ଅନ୍ୟାନ୍ୟ ଅଙ୍ଗମାନ ଖଞ୍ଜାଖାଞ୍ଜା ଉଣ୍ଡି ମର୍ଦ୍ଦନ କରିବ ।

୯ - ନୀଚପଦସ୍ଥଙ୍କୁ ତ୍ରୁଟି ଧରି ସର୍ବଦା ପଦାଘାତ କରିବ ।

ଉ.ସା. / ପଞ୍ଚମ ଭାଗ / ୧୧ଶ ସଂଖ୍ୟା / ଫାଲ୍‌ଗୁନ - ୧୩୦୯ ସାଲ

## ଦ୍ୱିତୀୟ ବିଡ଼ା

ଆମ୍ଭମାନଙ୍କ ଦେଶର (ବାଇ ମାହାନ୍ତି ଏଠାରେ ଆମ୍ଭମାନଙ୍କ ଦେଶ ଅର୍ଥରେ ଓଡ଼ିଶାକୁ କି ଭାରତବର୍ଷକୁ ଲକ୍ଷ୍ୟ କରିଅଛନ୍ତି, କିଛି ଲେଖା ନାହିଁ) ସ୍ତ୍ରୀମାନଙ୍କୁ ଶିକ୍ଷା ଓ ସ୍ୱାଧୀନତା ଦେବାରେ ତଳଲିଖିତ କାରଣମାନ ଅନ୍ତରାୟ ଜନ୍ମାଉଅଛି ।

୧. ବ୍ୟୟବୃଦ୍ଧି ପ୍ରଧାନ କାରଣ - ବର୍ତ୍ତମାନ ମେଥି, ହଳଦୀ, ତେଲ, ଦକ୍ଷିଣୀ ବାହିକାଚ ଓ ମୋଟା ଶାଢ଼ିରେ ବେଶ୍ ଏକରକମ କାର୍ଯ୍ୟ ଚାଲୁଛି । କିନ୍ତୁ ଶିକ୍ଷା ଓ ସ୍ୱାଧୀନତା ହେଲେ ଯଥାକ୍ରମେ କୁନ୍ତଳୀନ, ପମେଟମ୍ ଡାୟମଣ୍ଡକଟା ସୁନାଚୁଡ଼ି, ଜାକେଟ୍ ଓ ବିଦ୍ୟୁଦ୍‌ପ୍ରଭା ଶାଢ଼ି ନ ହେଲେ ଚଳିବ ନାହିଁ । ଏହା ଛଡ଼ା ପିଲାମାନଙ୍କ ନିମନ୍ତେ ଧାଈ ଓ ରନ୍ଧନକାର୍ଯ୍ୟ ନିମନ୍ତେ ପାଚକ ନିଯୁକ୍ତ କରିବାକୁ ହେବ । ଆପଣା ଘରର ଓ ଦେଶର ଅନେକ ପଇସା ବାହାରକୁ ବାହାରିଯିବ । (ବାଇ ମାହାନ୍ତିଙ୍କ ପାଞ୍ଜିରେ 'ଓଗ୍ରେର' ବୋଲି ଲେଖା ଅଛି, ସୁବିଜ୍ଞ ପାଠକମାନେ ସାମନ୍ତରିକ ସରଳରେଖାକୁ ଯେତେଦୂର ଇଚ୍ଛା ବଢ଼ାଇ ଦିଅନ୍ତୁ, ଭାବନା ନାହିଁ ।)

୨. ପୁରୁଷମାନଙ୍କର ସମ୍ମାନରେ ତ୍ରୁଟି ମନୁ କହୁଅଛନ୍ତି - 'ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟମର୍ହତି', ଶୁକ୍ରାଚାର୍ଯ୍ୟ କହୁଅଛନ୍ତି - 'ଅବଳା ଯତ୍ର ପ୍ରବଳା' ବିଲାତର ପ୍ରଧାନ କବି ମଧ୍ୟ ଗୋଟାଏ କଅଣ କହିଅଛନ୍ତି । ଗୋଟିଏ ଗ୍ରାମ୍ୟ ଢଗ ଅଛି, 'ଆଉଁଶିଲା କୁକୁର ମୁହଁରେ ବୋକ' । ଯେଉଁମାନେ ଦିନରାତି ଆମ୍ଭମାନଙ୍କ ଛତିଶା ନିଯୋଗରେ ମନଃପ୍ରାଣ ଢାଳୁଛନ୍ତି, ସେମାନେ ନିର୍ଲଜ୍ଜ ଭାବରେ ଚଉକିରେ ଅଣ୍ଡିରାଙ୍କ ପରି ଗୋଡ଼ଟାମାନଙ୍କୁ ଲମ୍ବାଇଦେଇ ବସି 'ଚପରାସୀ' ବୋଲି ଡାକିବେ ଓ ନାଟକ ଉପନ୍ୟାସ ପଢ଼ି ପ୍ରଚକ୍ଷୁ ଲଗାଇବେ, ଏହା ଆମ୍ଭମାନଙ୍କ ପକ୍ଷରେ ନିତାନ୍ତ ଲଜ୍ଜାର ବିଷୟ ହେବ । (ଏଥିରେ ମଧ୍ୟ ଓଗେର ଲେଖା ଅଛି - ଯାହାଙ୍କର ଘରେ ଖଣ୍ଡିଏ ଲେଖାଏଁ ଚଉକି, ସେମାନଙ୍କ ଅବସ୍ଥା ତ କହିଲେ ସରିବ ନାହିଁ ।)

୩. ସୁଖ ହ୍ରାସ - ପୁରୁଷମାନଙ୍କର ଯଥେଚ୍ଛାଚାରିତାରେ ବାଧା ପଡ଼ିବ । ସ୍ତ୍ରୀମାନେ ଶିକ୍ଷା ଓ ସ୍ୱାଧୀନତା ପାଇଲେ ବାରପଣ ଲୋକଙ୍କର ହାତସୁଖ ଓ ମୁହଁସୁଖ ରହିବ ନାହିଁ । ସଂସାରର ସବୁ ସୁଖ ଯାଉ, କିନ୍ତୁ 'ଏକାଧିପତ୍ୟଂ ଜଗତଃ ପ୍ରଭୁତ୍ୱଂ' ବଜାୟ ରହୁ । ତାହା ନ ରହିଲେ ମନୁଷ୍ୟର ଜୀବନ୍ମୃତ୍ୟୁ । 'ନରକରେ ରାଜା ହେବା ଭଲ, କିନ୍ତୁ ସ୍ୱର୍ଗରେ ଚାକର ହେବା କସ୍ମିନ୍ କାଳେ ଭଲ ନୁହେ' ବୋଲି ଜଣେ କିଏ କହିଥିଲେ ପରା ?

୪. ସନ୍ଧ୍ୟା ନ ହେଉଣୁ ସ୍ତ୍ରୀମାନେ ଆଉ ସିନ୍ଦୂରପେଡ଼ି, କଜଳପାତି, ହଳଦୀକାଠୁଆ ଓ ଦର୍ପଣ, ପାନିଆ ନେଇ ବସିବେ ନାହିଁ । ବେଶି ଶିକ୍ଷିତ ହେଲେ, ଉଚ୍ଚ ଭାବମାନଙ୍କ ପ୍ରତି ମନ ଗଲେ, ବେଶଭୂଷା ଓ ଆପଣା ପିଲାପିଲି ଓ ସ୍ୱାମୀଙ୍କର ଆଦୌ ଯତ୍ନ ନେବେ ନାହିଁ । ସ୍ତ୍ରୀ ଶିକ୍ଷା ଓ ସ୍ତ୍ରୀ ସ୍ୱାଧୀନତାର ପକ୍ଷପାତୀ ହେଲେ 'ଆ ବଳଦ ମତେ ବିନ୍ଧ୍' ହେବ । ସ୍ତ୍ରୀମାନଙ୍କର ସୌନ୍ଦର୍ଯ୍ୟବାସନା ବେଶବିନ୍ୟାସ ଗଲେ ବାକି ଆଉ ରହିଲା କଅଣ ?

୫. ଆମ୍ଭମାନଙ୍କ ଦେଶର ଯେତେଗୁଡ଼ିଏ ଗାଳି ଚଳି ଆସୁଅଛି, ସେମାନେ କେବଳ ସ୍ତ୍ରୀମାନଙ୍କ ମହଲରେ ମୁହେଁ ମୁହେଁ ଚଳୁଅଛି । ମାଆମାନଙ୍କଠାରୁ ବୋହୂ ଓ ଝିଅମାନେ ଆଜିପର୍ଯ୍ୟନ୍ତ ଶିଖି ଆସୁଅଛନ୍ତି । ଆମ୍ଭମାନଙ୍କ ଦେଶରେ ଏତେ କୃତବିଦ୍ୟ ଯୁବକ ହେଲେଣି, କିନ୍ତୁ ତତ୍‌ପ୍ରତି କାହାରି ଭ୍ରୂକ୍ଷେପ ନାହିଁ । ସେଗୁଡ଼ିକ ଲିପିବଦ୍ଧ ହୋଇ ନ ରହିଲେ ଓ ସ୍ତ୍ରୀମାନେ ଶିକ୍ଷିତା ହେଲେ ସେମାନ ଲୋପ ପାଇଯିବ । ଅତଏବ ଆପାତତଃ ସେମାନ କୌଣସି କୃତବିଦ୍ୟଙ୍କ ଦ୍ୱାରା ଲିପିବଦ୍ଧ ନ ହେବାଯାଏ ସ୍ତ୍ରୀଶିକ୍ଷା ସ୍ଥଗିତ ରଖିବା ଏକାନ୍ତ ଆବଶ୍ୟକ ।

୬. ସ୍ତ୍ରୀଶିକ୍ଷା ପ୍ରବଳ ହେଲେ ଚମ୍ପୂ, ଲାବଣ୍ୟବତୀ, ରସିକହାରାବଳୀ, ସୁବର୍ଣ୍ଣଲେଖା, ଚଉପଦୀଚନ୍ଦ୍ର ଏମାନଙ୍କର ଆଦର ଚାଲିଯିବ ଓ ସଙ୍ଗୀତପିଲାଙ୍କ ମୁହଁରେ ରସିକତାର ସଙ୍ଗୀତ ଓ ପାରିଜା ଆଉ ଭଲ ଲାଗିବ ନାହିଁ । ଖଣ୍ଡିତା, ବିପ୍ରଲବ୍ଧା, ବାସକସଜ୍ଜା, ଅଭିସାରିକା, କଳହାନ୍ତରିତା, ଉତ୍କଣ୍ଠିତା, ସ୍ୱାଧୀନଭର୍ତ୍ତୃକା, ପ୍ରୋଷିତଭର୍ତ୍ତୃକା, ଏ ସବୁ କେବଳ ପୋଥିପାଠ ହୋଇ ରହିବ । ଆମ ଦେଶରୁ ବିଦେଶକୁ ସବୁ ବାଟେ ପଇସା ବୋହି ଯାଉଅଛି, ଆଖଡ଼ା ପିଲାମାନେ ହେଲେ କିଛି କିଛି ଟାଣି ରଖୁଅଛନ୍ତି । ସେମାନଙ୍କ ପ୍ରତି ଆଦର କମିଗଲେ ଦେଶ ଉଚ୍ଛନ୍ନ ଯିବ ।

୭. ଅନ୍ଦରମହଲରେ ସ୍ତ୍ରୀମାନଙ୍କ ମଧ୍ୟରେ ବାଗ୍‌ଯୁଦ୍ଧ କେଡ଼େ ଶ୍ରୁତିମଧୁର ଓ ପରର ଗୋଇ ସାଇ ସାଇ ବୁଲି କହିବାର ପରିଣାମ କି ଚନ୍ଦନ-ଶୀତଳ ତାହା ଅନୁଭବୀ ବିନା ଆଉ କିଏ ଜାଣିବ ? କେଉଁ ପଶୁ ପ୍ରସ୍ତାବ କରିବ ଯେ, ଏଗୁଡ଼ିକ ଲୋପ ପାଉ ? ପ୍ରସ୍ତାବକମାନେ ସବୁ ଗ୍ରାମର ଅନ୍ତଃପୁରରେ ସ୍ଥାନୀୟ ସଂବାଦପତ୍ର ଚଳାନ୍ତୁ, ପଛେ ଏ ପ୍ରସ୍ତାବ କରିବେ । ଶିକ୍ଷିତ ଲୋକମାନେ ବାହାରୁ ବୁଲିଚାଲି, ପଢ଼ିସାରି, ସଙ୍ଗୀମାନଙ୍କ ସଙ୍ଗେ କଥାବାର୍ତ୍ତା ହୋଇ, ଉତ୍ତମ ପୁସ୍ତକ ପାଠ କରିସାରି ଯେତେବେଳେ ଅଙ୍କଲକ୍ଷ୍ମୀମାନଙ୍କୁ ସାଦର ଅଭ୍ୟର୍ଥନା ଓ ତାଙ୍କ ମାନଭଞ୍ଜନ କରିବା ପାଇଁ ସବୁ ଶିକ୍ଷା ଭୁଲି ଯାଇ ଯେଉଁ

ନୂତନ ବେଶ ଓ ଭାଷାରେ ଆଶ୍ରୟ କରନ୍ତି, ତାହା ତ ଆଉ ରହିବ ନାହିଁ। ସ୍ତ୍ରୀମାନେ ଶିକ୍ଷିତା ହେଲେ ବାହାରେ ଯାହା ଶୁଣିବ ଓ ଦେଖିବ ଓ ଯେଉଁ ଭାଷା ବ୍ୟବହାର କରିବ, ଘରେ ତ ତାହା ଦେଖିବ ଓ ଭାବିବ - ଆଉ ବିଶେଷତ୍ୱ ରହିବ ନାହିଁ।

୮. ଏକ କଥାରେ କହିବାକୁ ଗଲେ 'ସ୍ତ୍ରୀ' – ଏ ଶବ୍ଦର ମଧୁରତା ଏକାବେଳକେ ଉଠିଯିବ। ରାତିରେ ଯାହାଙ୍କୁ କେବଳ ଘଣ୍ଟାଏ ଦୁଇଘଣ୍ଟା ପାଇ ଦରିଦ୍ର ରତନ ପାଇଲା ପରି ହେବାକୁ ହୁଏ, ତାହାଙ୍କୁ ଯେବେ ଦିନ ରାତି ଦେଖି ଦେଖି 'ଘୋଷାରା' କରି ଦେବ, ତେବେ ତ ସବୁ ଚାଲି ଗଲା। ସ୍ତ୍ରୀମାନଙ୍କ ଠାରେ ଅନୁରାଗ ରହିବ ନାହିଁ। ଅତଏବ କୁଳ କ୍ଷୟ ଓ ଦେଶ ନାଶ।

୯. କୌଣସି ଗୋଟିଏ ଜୀବକୁ ବାହାରେ ଦେଖିଲେ ଯେତେ ସୁଖ ହୁଏ, ତାକୁ ଆଣି ପିଞ୍ଜରାବଦ୍ଧ କରି ନିଜସ୍ୱ କଲେ ତହିଁରୁ ଢେର୍ ବେଶି ସୁଖ ହୁଏ। ଏମନ୍ତ କି ବାଘ ପରା ଦୁଷ୍ଟଜନ୍ତୁଙ୍କୁ ଆଣି ପିଞ୍ଜରାରେ ରଖିଲେ ଲୋକେ ବାହାଦୁରି ମନେ କରନ୍ତି। ଅତଏବ ସ୍ତ୍ରୀମାନଙ୍କୁ ପିଞ୍ଜରାବଦ୍ଧ କରି ରଖି ଯାହା ସୁଖ ହେଉଅଛି, ସେମାନଙ୍କୁ ସ୍ୱାଧୀନତା ଦେଲେ ସେସବୁ ପୋଡ଼ିଯିବ।

୧୦. ସେମାନେ ଶିକ୍ଷିତା ହେଲେ ଖବରକାଗଜ ପଢ଼ି, ଉପନ୍ୟାସ ପଢ଼ି ପୁରୁଷମାନଙ୍କ ନିର୍ବୋଧତା ଓ ଦୁଷ୍କର୍ମମାନ ଜାଣିପାରିଲେ ସର୍ବନାଶ।

୧୧. ଗାଡ଼ି, ଘୋଡ଼ା, ରେଲଭଡ଼ା ଇତ୍ୟାଦି ନିମନ୍ତେ ବେଶି ଅର୍ଥ ଆବଶ୍ୟକ ହେବ। ସ୍ତ୍ରୀମାନେ ଶିକ୍ଷିତା ହେଲେ ଗାଡ଼ି ଚଢ଼ିବେ, ରେଲ ଚଢ଼ିବେ ଓ ଘୋଡ଼ା ଚଢ଼ିବେ ଏବଂ ଅର୍ଥନୀତିର ନିୟମ ଅନୁସାରେ ଘୋଡ଼ାବାଲା ଓ ଗାଡ଼ିବାଲାମାନେ ବେଶି ଦାମ୍ ହାଙ୍କିବେ।

୧୨. କୁମ୍ଭକର୍ଣ୍ଣୀ, ମାଣିଆବନ୍ଧ, ଚାଲନଗର ତନ୍ତୀମାନେ ଉଚ୍ଛନ୍ନ ହୋଇଯିବେ। ଓଡ଼ିଆ ମଫସଲର ଘରେ ଘରେ ଦକ୍ଷିଣିଆ ଧୁମ୍‌ସା କାଚରାମାନେ ବୁଲିବେ ନାହିଁ। କୁଆଁରପୁରିଆ ଓ ଦେଶୀ ହଳଦୀ ଫସଲ କରିବା ଗୁଡ଼ିଆମାନେ ଦେବାଳିଆ ହେବେ। ଚୀନ ଦେଶର ଗୋଟିଏ ରପ୍ତାନୀ କମିଯିବ (ସିନ୍ଦୂର), ଗଡ଼ଜାତରେ ରାଜାମାନଙ୍କର ଗୋଟିଏ ଆୟରେ ବାଧା ପଡ଼ିବ (ମହଣ)। କଟକ ଚୌଧୁରୀବଜାରର ଚୌଧୁରୀଙ୍କ କୋଠା ଗୋଟିଏ ସୁଗନ୍ଧରୁ ବଞ୍ଚିତ ହେବ (ଚୁଆ)। ହାଣ୍ଡିଫୁଟା ମସଲାର ଦର ଶସ୍ତା ହେଲେ ବେପାରୀମାନଙ୍କର କ୍ଷତି (ମେଥି ବ୍ୟବହୃତ ନ ହେଲେ)। ଦେଶୀ ବଣିଆ, ଖଡ଼ରା, ପାଟରା ଇତ୍ୟାଦିଙ୍କର ତ କଥା ଛାଡ଼। ଅନେକ ସୁମଧୁର ଥଟ୍ଟାତାମସାର ଓ ଦିଅରଭାଉଜ, ନଣନ୍ଦେଇଶଳାଭାଉଜ, ଆଇନାତି ରହସ୍ୟ, ଭିଣୋଇଶାଳୀ କୌତୁକ, ବାସରଗୃହର ରଙ୍ଗରସ ଦେଶରୁ ଏକାବେଳକେ ଚିରଦିନପାଇଁ ବିଦାୟ ହେବ। ବିଶେଷତଃ କେଲୁଣୀମାନେ ଅନାହାରରେ ମରିବେ (ଚିଟାକୁଟା ନ ହେଲେ)। (ଏ ହେଡ଼ିଙ୍ଗରେ ମଧ୍ୟ 'ଓଗେର୍' ଲେଖା ଅଛି।)

୧୩. ଅଧିକାଂଶ ଘରକରଣା ଲୋକଙ୍କ ଘରର 'ବାଦୀ ପାଲାର ଓ ଚଅଁରଡିହ'ର ଆଉ ଅଭିନୟ ହେବ ନାହିଁ । କ୍ରମଶଃ ଅନଭ୍ୟାସବଶତଃ ସ୍ତ୍ରୀମାନେ ମୂକ ହୋଇଯିବେ ।

୧୪. ଗଜଗମନା ବିଶେଷଣଟି ଆଉ ଆର୍ଯ୍ୟମାନଙ୍କ ସ୍ତ୍ରୀମାନଙ୍କ ପ୍ରତି ପ୍ରଯୁଜ୍ୟ ହେବ ନାହିଁ । 'ଛମାଣ ଆଠଗୁଣ୍ଠ'ର ଲେଖକ 'ଚମ୍ପା' ପ୍ରତି ଯେତେଗୁଡ଼ିଏ ଉପମା ବ୍ୟବହାର କରିଅଛନ୍ତି ଓ 'ଓଡ଼ିଆ ଲଳନା'ର 'ବଡ଼ ଦାଣ୍ଡେ ଚାଲେ ଯେହ୍ନେ ଜଗନ୍ନାଥ ରଥ' ଏ ଉପମାଗୁଡ଼ିକ ହଳଦୀ ଗରଗର ୧୫ ହାତୀ ଶାଢ଼ି ଓ ୫ ବିଶା ଅଳଙ୍କାର ବିନା କେବେ ହେଁ ପ୍ରଯୁଜ୍ୟ ହୋଇ ନ ପାରେ । ଅତଏବ ଯାହା ଯୋଗୁଁ ଏପରି ମନୋମୁଗ୍ଧକର ହୃତ୍‌କମ୍ପା ଗତି, ଶିକ୍ଷିତା ରମଣୀମାନେ ତାହା ଘୃଣାଚକ୍ଷୁରେ ଚାହିଁବେ ଓ ଅନେକ ପୁରାତନ ଭାଷାକାବ୍ୟର ବର୍ଣ୍ଣନା କେବଳ ଯାଦୁଘର ଛଡ଼ା ଅନ୍ୟଠାରେ ଦେଖାଯିବ ନାହିଁ । ଆପାତତଃ ଭବିଷ୍ୟତ୍‌ର ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ନିମନ୍ତେ ଚିଡ଼ିଆଖାନାରେ ଆଧୁନିକ ଅଶିକ୍ଷିତା ଓ ପିଞ୍ଜରାବଦ୍ଧା ସବୁ ଶ୍ରେଣୀର ଗୋଟିଏ ଲେଖାଏଁ ଅଙ୍କଲକ୍ଷ୍ମୀଙ୍କ ମୂର୍ତ୍ତି ସାଇତା ନ ହେବାଯାକେ ସ୍ତ୍ରୀଶିକ୍ଷା ଓ ସ୍ୱାଧୀନତା ପ୍ରଚଳନ କରିବାର ପ୍ରସ୍ତାବ ସ୍ଥଗିତ ରଖାଯିବା ଉଚିତ ।

୧୫. ପଲ୍ଲୀଗ୍ରାମର ଚିତ୍ରବିଲକ୍ଷଣ ବଦଳିଯିବ - ଦାଣ୍ଡ ପିଣ୍ଡାରେ 'ଝୋଟି' ଚିତା ଓ କବାଟମାନଙ୍କରେ ଚିତା, ମୁରୁଜଦିଆ ବେଭାର ହାଣ୍ଡିର ଚିତ୍ର, ସମ୍ଭାରର ଦୃଶ୍ୟ, ଏ ସମସ୍ତ ସମୂଳେ ଲୋପ ପାଇବ ।

୧୬. 'ସ୍ତ୍ରୀମାନେ ରାନ୍ଧିବେ ଓ ପ୍ରସବ କରିବେ ଓ ଅବଶିଷ୍ଟ ସମୟରେ କଣ୍ଠସ୍ୱର ପରିଷ୍କାର କରିବେ' ଏ ଉକ୍ତିଟି ଅସାର ପ୍ରଳାପରେ ପରିଣତ ହେବ ।

୧୭. 'ଚୁଁ' ଓ 'ଠାର' ଏ ମଧୁର ଭାବବ୍ୟଞ୍ଜକ କର୍ଣ୍ଣସୁଖକର ଶବ୍ଦ ଓ ସଙ୍କେତଗୁଡ଼ିକ ଆଉ କର୍ଣ୍ଣ ଓ ନେତ୍ରପଥରେ ପଡ଼ିବ ନାହିଁ । ବିଶେଷତଃ ବାଇ ମାହାନ୍ତିଙ୍କ ତତ୍ତ୍ୱ ଗବେଷଣାର ଗୋଟିଏ ପ୍ରଧାନ ସ୍ଥାନ (ସକାଳେ ପଲ୍ଲୀଗ୍ରାମର ଗାଧୁଆ ତୋଠ ଓ ବାଡ଼ି ପଡ଼ିଆ) ଶ୍ମଶାନରେ ପରିଣତ ହେବ ।

୧୮. ଏତକ ଅଧିକାର ପାଇଲାରୁ ସେମାନେ କ୍ରମଶଃ ଆମ୍ଭମାନଙ୍କୁ ଅନ୍ତଃପୁରବଦ୍ଧ ପାଚକ କରିବେ ଓ କିଏ ଜାଣେ ? ଦିନେ ପୁରୁଷ ଜାତିଙ୍କୁ ପ୍ରସବ କାର୍ଯ୍ୟରେ ନିଯୁକ୍ତ ହେବାକୁ ନ ପଡ଼ିବ ? ଏଥିରୁ ବଳି ଅନୁତାପର ବିଷୟ ଆଉ କଅଣ ହୋଇପାରେ ? ଈଶ୍ୱର ସବୁ ଦୁଃଖ ଦିଅ, କିନ୍ତୁ ସବୁ ବେଦନା କଥା ସ୍ମରଣ କଲେ ହୃତ୍କମ୍ପ ହେଉଅଛି । ଆଜିକାଲି ବିଜ୍ଞାନର ଉନ୍ନତି ସଙ୍ଗେ ସଙ୍ଗେ କେତେ କେତେ ନୂଆ ଆବିଷ୍କାର ଯେ ହେଉଅଛି, ତହିଁର ଇୟତ୍ତା ନାହିଁ । ଭ୍ରୂଣାଶୟ ଯନ୍ତ୍ରଟିକୁ ଅପରେସନ୍ ଦ୍ୱାରା ସ୍ତ୍ରୀ ଗର୍ଭରୁ ବାହାର କରିବା ପର୍ଯ୍ୟନ୍ତ ବିଜ୍ଞାନ ଅଗ୍ରସର ହେଲାଣି - ସ୍ତ୍ରୀମାନେ ଶିକ୍ଷିତା ଓ ବିଜ୍ଞାନନିପୁଣା ହେଲେ ସେ ଯନ୍ତ୍ରଟିକୁ ଯେବେ ଅପରେସନ୍ ଦ୍ୱାରା ଆମଠାରେ ଲଦନ୍ତି, ତେବେ ଆମର ପୁରୁଷଜଗତ୍‌ର ସର୍ବନାଶ ଓ ଦାରୁଣ ଦୁଃଖର ପରିସୀମା ରହିବ ନାହିଁ ।

୧୯. ଆଉ ଗୋଟିଏ ଜଟିଳ ସମସ୍ୟା ଅଛି; ଯେଉଁ ଦେଢ଼ଶୁର- ଭାଇବୋହୂ, ଦେଢ଼ଶାଶୁ- ଭଉଣୀଜୋଇଁ, ମଉଳାଶୁର- ଭଣଜାବୋହୂ ଆଜିପର୍ଯ୍ୟନ୍ତ ପରସ୍ପରର ମୁଖାବଲୋକନ କରି ନାହାନ୍ତି, ସେମାନେ ପ୍ରଥମେ ଚକ୍ଷୁଲଜ୍ଜା ଏଡ଼ି କିପରି ପରସ୍ପରକୁ ଚାହିଁବେ ଓ ସମ୍ଭାଷଣ କରିବେ ଏବଂ ସମୟ ସମୟରେ ହାତ ଧରାଧରି ହୋଇ ବୁଲି ବାହାରିବେ ଓ ଗାଡ଼ିରେ ଚଢ଼ିବେ ?

୨୦. ବର୍ଷା ସମୟ ରାତ୍ରିର ଭେକ ଡାହୁକ ରାବ, ଘଡ଼ଘଡ଼ି, ବସନ୍ତର କୋକିଳ ରାବ ଇତ୍ୟାଦି ଅକାରଣ ଯିବ ଓ କିଙ୍କିଣୀର ସୁମଧୁର କିଣିକିଣି ଜଗଜ୍‌ଝମ୍ପାନାଦ ଆଉ ମନଃପ୍ରାଣ ଶୀତଳ କରିବ ନାହିଁ ।

୨୧. ଆଠ ବରଷ ଦିନୁ ନିର୍ଜଳ ଏକାଦଶୀ ବ୍ରତ ଭୂମଣ୍ଡଳରୁ ଚିର ବିଦାୟ ନେବ । ଶିକ୍ଷା ପାଇ ସିଆଣା ହେଲେ ଯୁକ୍ତି ଦେଖାଇବେ, କହିବେ, 'ମୃତଦାରଙ୍କ ପ୍ରତି ଯେଉଁ ନିୟମ, ବିଧବାଙ୍କ ପ୍ରତି ସେହି ନିୟମ ଚଳୁ ।' ସ୍ତ୍ରୀ ଜାତି ଆମରି ଠାରୁ ଅଧିକାରତକ ପାଇ ସେହି ଅଧିକାରର ଦ୍ୱାହି ଦେଇ ଆମରି ଉପରେ ଦାଉ ସାଧିବେ । ବିଧବାର ପୁଂଲିଙ୍ଗବାଚକ ଶବ୍ଦଟିଏ ବାହାର କରି ଆମ ଜାତିଙ୍କ ପାଇଁ ନିର୍ଜଳା ଏକାଦଶୀ ବ୍ୟବସ୍ଥା କରି ବସିବେ ।

୨୨. ଆମ୍ଭମାନଙ୍କ ଦେଶରେ ସ୍ତ୍ରୀ ଶିକ୍ଷା ଓ ସ୍ତ୍ରୀ ସ୍ୱାଧୀନତା ପ୍ରଚଳିତ ହେଲେ ରାଜାଙ୍କର କ୍ଷତି, ବ୍ୟବସାୟ ବାଣିଜ୍ୟର କ୍ଷତି, ହାକିମର କ୍ଷତି, ପୁରୁଷ ଜାତିର କ୍ଷତି, ସଂସାରର କ୍ଷତି, ଏକ ସମ୍ପ୍ରଦାୟକୁ ଉନ୍ନତ କରିବାକୁ ଯାଇ ଦେଶର କ୍ଷତି ! ସାମ୍ରାଜ୍ୟର କ୍ଷତି ! ସମାଜର କ୍ଷତି !

ହେ ଚକ୍ଷୁଷ୍ମାନ୍ ସମାଜ ! ଚକ୍ଷୁ ଖୋଲି ଏ ବର୍ଣ୍ଣନାକୁ ଶୁଣ, ଭାବ, କାର୍ଯ୍ୟ କର । ସ୍ତ୍ରୀ ଶିକ୍ଷା ପ୍ରଚଳିତ ହେଲେ ତୁମ୍ଭର ମାନ ଯିବ, ତୁମ୍ଭରି ସର୍ବନାଶ ! ବିଜ୍ଞାନରେ ଯୁକ୍ତ ବିଯୁକ୍ତ ବିଦ୍ୟୁତ୍ ସଙ୍ଗମ ହେଲେ ସ୍ରୋତର ଗତି ହୁଏ । ସମାଜରେ ମଧ ସେହିପରି । ପୂର୍ଣ୍ଣ ଶିକ୍ଷିତ ଯୁବକଙ୍କ ସଙ୍ଗେ ଅଶିକ୍ଷିତା ଅପୂର୍ବା ଲକ୍ଷ୍ମୀ ନ ମିଳିଲେ ସ୍ରୋତ ଉତ୍ପନ୍ନ ହେବ ନାହିଁ, ସମାଜ ବୁଡ଼ିଯିବ, ଦେଶ ଉଚ୍ଛନ୍ନ ଯିବ । ମୁହଁରେ 'ଶିକ୍ଷିତ' ବୋଲି ଅଭିମାନ କରି କାର୍ଯ୍ୟରେ ଘୋର ଅନ୍ଧ, ଅଳସ ପ୍ରକୃତିକ ହେବା ମନୁଷ୍ୟତ୍ୱ - ନା ପଶୁତ୍ୱ ! କି ନାମରେ ସମ୍ବୋଧନ କରିବି ? ଦୁରନ୍ତ, ଦୁରାଚାର ! ତୁ ଚକ୍ଷୁ ଥାଇ ଅନ୍ଧ, କର୍ଣ୍ଣ ଥାଇ ବଧିର, ଜିହ୍ୱା ଥାଇ ମୂକ, ଜ୍ଞାନ ଥାଇ ଅଜ୍ଞାନ । ତୋ ସମକ୍ଷରେ କେତେ ନିର୍ଦୋଷ ଜୀବଙ୍କୁ ବଳି ଦେଇ ତୋର ସନ୍ତୋଷ । ଧନ୍ୟ ଆସୁରିକ ସନ୍ତୋଷ ! ଧନ୍ୟ ରାକ୍ଷସୀ ଲୀଳା ! ଧିକ୍ ପୈଶାଚିକ ସୁଖ ! ଧିକ୍ ପାଶବ ନିଷ୍ଠୁରତା ! ପରଶ୍ରୀକାତରତା ତୋର ଏକ ମହାଲକ୍ଷ୍ୟ, ପରକ୍ରନ୍ଦନରେ ଆନନ୍ଦ ତୋର ଚିରବ୍ରତ;  ତୁ ଧିକ୍ ! ଦୁର୍ବଳ ଉପରେ ଅଯଥା କଟାକ୍ଷପାତ ତୋର ଅଭ୍ୟାସ ! ମା ଭୈଃ ! ଚାଲୁଥା, କିଛି ଶୁଣୁ ନା !

(ତାଳପତ୍ର ଲେଖା, ବିଶେଷତଃ ବାଇ ମାହାନ୍ତିଙ୍କର କରଣି ଅକ୍ଷର, ପଢ଼ିବା କଷ୍ଟସାଧ ସମ୍ପାଦକ ମହାଶୟ ! କ୍ଷମା କରିବେ । ଯେତେଦୂର ସାମର୍ଥ୍ୟ ଓ ଶକ୍ତି ଥିଲା, ତାହା ବ୍ୟୟ କରିବାରେ ଆମ୍ଭେମାନେ କୁଣ୍ଠିତ ହୋଇ ନାହୁଁ, କିନ୍ତୁ ତେବେ ସୁଦ୍ଧା ବାଧ ହୋଇ ପ୍ରାୟ ଅର୍ଦ୍ଧେକ ତାଳପତ୍ର ଛାଡ଼ିଦେବାକୁ ହେଲା । ସମୟକ୍ରମେ ଆପଣ ଦେଖିବେ ଓ ଚେଷ୍ଟା କରି କିଛି ଉଦ୍ଧାର କରିପାରିଲେ ଉତ୍ତମ)

ଉ. ସା. / ପଞ୍ଚମ ଭାଗ / ୧୨ଶ ସଂଖ୍ୟା / ୧୩୦୯ ସାଲ ।

## ତୃତୀୟ ବିଡ଼ା

କୌଣସି ବ୍ୟକ୍ତିର ବା ବିଷୟର ପକ୍ଷ ସମର୍ଥନ କରି କହିବା ପୂର୍ବରୁ (ଅର୍ଥାତ୍ ଓକାଲତ୍‌ନାମାରେ ଦସ୍ତଖତ କରି ଫିସ୍ ଟଙ୍କାଟି ଉଠାଇବା ପୂର୍ବରୁ) ସେ ବ୍ୟକ୍ତିର କିମ୍ବା ବିଷୟର ଉପକାର ଓ ଅପକାର (ଗୁଣ ଏବଂ ଦୁର୍ଗୁଣର) ଏକ ଫେରସ୍ତର (ତାଲିକା) ପ୍ରସ୍ତୁତ କରି ସମ୍ୟକ୍ ବିବେଚନା କରିବା ଏକାନ୍ତ ଆବଶ୍ୟକ । ତା ନ ହେଲେ ସାକ୍ଷୀ ଅମେଳ ବା ଗରହାଜିରିରେ ମାମଲା ଖାରଜ ହେଲେ ସର୍ବନାଶ । ଜଣେ ଜଣେ ଓକିଲ ମୁକ୍ତାରଙ୍କର ଏପରି ହାତଯଶ ଅଛି ଯେ, ତାଙ୍କୁ ଓକାଲତୀ ମୁକ୍ତାରୀ ଦେଲେ ମକଦ୍ଦମା ଡିସ୍‌ମିସ୍ କିମ୍ବା ଖାରଜ ହେବ ବୋଲି ଲୋକଙ୍କ ମନରେ ଧ୍ରୁବ ସଂସ୍କାର ଜନ୍ମିଥାଏ । ବାଇ ମାହାନ୍ତି ସବୁ ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ, କିନ୍ତୁ କୌଣସିକ୍ରମେ ବଦନାମ୍ ହେବାର ବିଭୀଷିକା ତାଙ୍କୁ ବିଶେଷ କଷ୍ଟ ଦିଏ । ବିଧବାବିବାହ ଦେଶରେ ପ୍ରଚଳିତ ହେବା ଉଚିତ କି ନା ? ଏ ବିଷୟ ତାଙ୍କୁ ଜଣେ ମର୍ଯ୍ୟାଦାବନ୍ତ ବ୍ୟକ୍ତି ପ୍ରଶ୍ନ କରିଥିଲେ । ସେ ଚକ୍ଷୁଲଜ୍ଜା ଏଡ଼ି ନ ପାରି ଉକ୍ତ ପଦସ୍ଥ ବ୍ୟକ୍ତିଙ୍କ ମତରେ 'ଏଜନ' ମାରିଦେଲେ । କିନ୍ତୁ ବସାକୁ ଆସି ପାଞ୍ଜିରେ ଯାହା ଟିପିଥିଲେ, ତହିଁର ସାରାଂଶ ନିମ୍ନରେ ପ୍ରଦତ୍ତ ହେଲା । ପାଠକମାନେ ଟିକିଏ ସତର୍କ ହେବେ - ଉଭୟପକ୍ଷର ଏକହଜାର, ସାକ୍ଷୀ-ଜବାନବନ୍ଦି, ଜେରା ଜବାନବନ୍ଦି, ଚିହ୍ନୋଟ, ଜବାବ ସୁଆଲ ଓ ସରଜମିନ୍ ତଦାରଖ ଶେଷ ନ ହେବାଯାକେ ରାୟ ଲେଖି ବସିବେ ନାହିଁ । ରାୟ ଲେଖି ବସିଲେ ଅପିଲରେ ସଦରରୁ ନଥି ତଲବ ଆସିଲେ ଚାହୁଁ ଚାହୁଁ ସସପେଣ୍ଡ ନଚେଦ୍ ମାହୁଲ ।

ଉଚ୍ଚ ହିନ୍ଦୁ ସମାଜରେ ବିଧବା ବିବାହ ପ୍ରଚଳିତ ହେଲେ ଦେଶର କି କି ଅମଙ୍ଗଳ ସାଧିତ ହେବାର ସମ୍ଭାବନା -

୧. ବର୍ତ୍ତମାନ ଯେତେ ସଧବା ସ୍ତ୍ରୀ ଅଛନ୍ତି, ସେମାନଙ୍କର ଅଳଙ୍କାର ନିନାଦରେ କର୍ଣ୍ଣ ବଧିର ହେଉଅଛି । ବିଧବାମାନେ ସଧବା ହେଲେ ଅର୍ଥାତ୍ ସଧବା ସଂଖ୍ୟା ବେଶି ହେଲେ ସମସ୍ତେ ଅଳଙ୍କାର ପିନ୍ଧିବେ ଓ ଅଳଙ୍କାରର 'ଜଣଝଣି'ରେ ପୃଥିବୀ ଫାଟିଯିବ ।

୨. ସୁନା, ରୁପା, କାଚ ଓ ଶାଢ଼ିର ଦାମ ବଢ଼ିଯିବ । ଅର୍ଥନୀତିର ନିୟମ ଅନ୍ଧାଧିକ ନବ୍ୟ ଶିକ୍ଷିତମାନଙ୍କୁ ଜଣା ।

୩. ଠାକୁରସେବା ନିମନ୍ତେ ବଡ଼ ବଡ଼ ତୀର୍ଥ, ଗୋଟିଏ ସୁଦ୍ଧା ସେବାଦାସୀ ବା 'ମାତାଜୀ' ମିଳିବେ ନାହିଁ । ତାହାହେଲେ ଧର୍ମହାନି, ବିଶେଷତଃ ପୁରୁଷୋତ୍ତମ ନବଦ୍ୱୀପ ଓ ବୃନ୍ଦାବନ ପରି କ୍ଷେତ୍ରମାନ ମାଟି ହୋଇଯିବ ।

୪. ବାଳ ବିଧବା ଓରଫ ବିବରାର ବିବାହ ଶାସ୍ତ୍ରାନୁମୋଦିତ ବୋଲି କେତେ ଲୋକ କହନ୍ତି, କିନ୍ତୁ ଦେଶାଚାରର ନଜିରଟା ସେମାନଙ୍କୁ ଜଣା ନାହିଁ । 'ଯଦ୍ୟପି ସିଦ୍ଧଂ ଲୋକବିରୁଦ୍ଧଂ ନାଦରଣୀୟଂ ନାକରଣୀୟଂ ।'

୫. ରୁଷିଆରେ ସାଧାରଣତନ୍ତ୍ର ଶାସନ ପ୍ରଣାଳୀ ଚଳାଇବାର ପ୍ରୟାସ କି ବିଷମୟ, ତାହା ସମସ୍ତେ ଅନୁମାନ କରୁଥିବେ । ଆମ ଦେଶରେ ବିଧବା ବିବାହ ପ୍ରଚଳିତ କଲେ ଫଳ ତଦ୍ରୂପ ବିଷମୟ ହେବ, ଏହା କାହାକୁ ବୁଝାଇ ଦେବାକୁ ହେବ ନାହିଁ ।

୬. ସମସ୍ତେ ତ ସଧବା ହେବେ, ବ୍ରତ ଉପବାସ କରିବ କିଏ ? ଧର୍ମ ନଷ୍ଟ ହୋଇଯିବ । ଗୀତାରେ ଡାକୁଛି -

ଧର୍ମେ ନଷ୍ଟେ କୁଳଂ କୃସ୍ନମଧର୍ମୋଭିଭବତ୍ୟୁତ
ଅଧର୍ମାଭିଭବାଦ୍ କୃଷ୍ଣ ! ପ୍ରଦୁଷ୍ୟନ୍ତି କୁଳସ୍ତ୍ରିୟଃ
ସ୍ତ୍ରୀଷୁ ଦୁଷ୍ଟାଷୁ ବାର୍ଷ୍ଣେୟ ! ଜାୟତେ ବର୍ଣ୍ଣସଙ୍କରଃ
ସଙ୍କରୋ ନାରକାୟୈବ କୁଳଘ୍ନାନାଂ କୁଳସ୍ୟ ଚ
ପତନ୍ତି ପିତରୋ ହ୍ୟେଷାଂ ଲୁପ୍ତପିଣ୍ଡୋଦକକ୍ରିୟାଃ

୭. ସ୍ତ୍ରୀମାନେ କଳହ କରିବାକୁ ଡରିବେ ନାହିଁ । 'ତୁ ରାଣ୍ଡ ହୋ' ଏହା ଗୋଟିଏ ଗାଳି ନ ହୋଇ ଆଶୀର୍ବାଦରେ ପରିଣତ ହେବ ।

୮. ବିଧବା ହେଲେ ଭଣ୍ଡାରୁଣୀ ଖଡୁ ଦି'ପଟ ନିଏ । ବିଧବା ବିବାହ ପ୍ରଚଳିତ ହେଲେ ଭଣ୍ଡାରୁଣୀର ଆୟରେ ଧୂଳି ପଡ଼ିବ ।

୯. ସ୍ତ୍ରୀମାନେ ଯେବେ ଜାଣିପାରିବେ ଯେ, ଉପସ୍ଥିତ ସ୍ୱାମୀଙ୍କ ଅନ୍ତେ ସେମାନଙ୍କୁ ଆଉ 'ଅରକ୍ଷିତା' ହୋଇ ବୁଲିବାକୁ ହେବ ନାହିଁ, ତାହାହେଲେ ସେମାନଙ୍କର ସ୍ୱାମୀ ଭକ୍ତି ଆଦୌ ରହିବ ନାହିଁ ଓ କ୍ରମଶଃ ସ୍ତ୍ରୀମାନେ ସ୍ୱାମୀଙ୍କୁ ପଦାଘାତ କରିବାକୁ କୁଣ୍ଠିତ ହେବେ ନାହିଁ ।

୧୦. ଦେଶୀୟ ରାଜାମାନଙ୍କ ଅନ୍ତଃପୁରରେ ପାକ କରିବ କିଏ ? ଆଜିକାଲି ଇଂରେଜ ଅମଳ ବୋଲି ସିନା ଏତେ ଭୟ । ବିଧବାଙ୍କ ପରିବର୍ତ୍ତେ କୃତ୍ରିମ ନପୁଂସକମାନଙ୍କ ଦ୍ୱାରା କାର୍ଯ୍ୟ ଚଳନ୍ତା, କିନ୍ତୁ ସେଥିପାଇଁ 'ପିଙ୍ଗଳକୋଡ'ର ୩୨୨ ଦଫା ଧାରା ବାଧା ।

୧୧. ଯେଉଁ ବିଧବାମାନେ ଆଜିଯାକେ ଆମିଷ ଛାଡ଼ିଅଛନ୍ତି, କପାଳରେ ସିନ୍ଦୂର ଲଗାଉ ନାହାନ୍ତି ଓ ଅଳଙ୍କାର ବା ଶାଢ଼ି ପିନ୍ଧୁ ନାହାନ୍ତି, ସେମାନେ ଏ ସବୁକୁ ପୁନର୍ଗ୍ରହଣ କରି ପ୍ରଥମେ କିପରି ସାଇପଡ଼ିଶାଙ୍କ ଆଗରେ ମୁହଁ ଦେଖାଇବେ ?

୧୨. ଏ ପ୍ରଥା ପ୍ରଚଳନ କରିବାଦ୍ୱାରା ଆମ୍ଭମାନଙ୍କ ପୂର୍ବପୁରୁଷମାନଙ୍କୁ ମୂର୍ଖ ଓ ଭ୍ରାନ୍ତ ବୋଲି ପ୍ରତିପନ୍ନ କରାଯିବ । ଯଦି ଏହା ଗୋଟିଏ ସୁବ୍ୟବସ୍ଥା ହୋଇଥାଆନ୍ତା, ତେବେ କଅଣ ଆମ ବାପା ଅଜା ଓଲୁ ଥିଲେ ?

୧୩. କଲିକତାର ମା' କାଳୀଙ୍କ ସେବାପୂଜା ବନ୍ଦ ହେବ - ଅତଏବ ଧର୍ମନାଶ !

୧୪. ବର୍ତ୍ତମାନ ବିଧବାର 'ବି' ଉପସର୍ଗର ଅନେକାର୍ଥବୋଧକତା ଲୋପ ପାଇଲେ ବ୍ୟାକରଣ ଉପରେ କୁଠାରାଘାତ ।

୧୫. ଦେଶ ପ୍ରଚଳିତ ମିତାକ୍ଷରା, ଦାୟଭାଗ, ବ୍ୟବସ୍ଥାସଂଗ୍ରହ, ବ୍ୟବହାରମୟୂଖ, ବିବାଦଚିନ୍ତାମଣି ଇତ୍ୟାଦିର ଅନେକ ଅଂଶ ବର୍ଜିତ ହେଲେ ଧର୍ମଶାସ୍ତ୍ର ଅନାଦୃତ ହେବ ।

୧୬. ଏହା ପ୍ରଚଳନ କଲେ ବୃଦ୍ଧାମାନଙ୍କର ଅଭିଶାପଭାଗୀ ହେବାକୁ ହେବ ।

୧୭. ଲୋକେ ଠିକିଲେ ଶିଖନ୍ତି ବୋଲି ଗୋଟିଏ ପ୍ରବାଦ ଅଛି । ବଙ୍ଗଦେଶରେ ଏ ପ୍ରଥାର ପୁନଃପ୍ରଚଳନର ପ୍ରସ୍ତାବ କରି ସ୍ୱର୍ଗତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର କିପରି ହଟହଟା ହୋଇଅଛନ୍ତି, ତାହା ଦେଖିଶୁଣି ଆମ୍ଭମାନଙ୍କ ଦେଶର ସଂସ୍କାରପ୍ରାର୍ଥୀମାନଙ୍କର ଚୈତନ୍ୟ ଉଦୟ ନ ହେବା ବଡ଼ ପରିତାପର ବିଷୟ ।

୧୮. ଅନେକ ଗୁପ୍ତ ଔଷଧ ବ୍ୟବସାୟୀଙ୍କ ଆୟରେ ବାଧା ପଡ଼ିବ ।

୧୯. ଦଣ୍ଡବିଧିର ଗୋଟିଏ ଦଫାର ମକଦ୍ଦମା ସଂଖ୍ୟା କମ୍ ହେଲେ ସରକାରଙ୍କ କ୍ଷତି ଓ ହାକିମମାନେ ଅଳସୁଆ ହୋଇଯିବେ ।

୨୦. ଆମ୍ଭମାନଙ୍କ ଦେଶରେ ଉଚ୍ଚ ଓ ନୀଚକୁଳ ମଧ୍ୟରେ ପ୍ରଭେଦ ଏହି ଯେ, ବିଧବା ବିବାହ ନୀଚ ଜାତି ମଧ୍ୟରେ ପ୍ରଚଳିତ, କିନ୍ତୁ ଉଚ୍ଚ ଜାତି ମଧ୍ୟରେ ତାହା ଘୃଣ୍ୟ । ସବୁ ଶ୍ରେଣୀରେ ଏହା ଚଳିଲେ 'ଧୁଆ ମୂଳା ଅଧୁଆ ମୂଳା'ର ପ୍ରଭେଦ ରହିବ ନାହିଁ, 'କପା କର୍ପୂର ଏକମୂଲ' ହେବ ।

୨୧. ଯେଉଁମାନଙ୍କ କୁଳରେ ବାଲ୍ୟବିବାହ ପ୍ରଚଳିତ ସେମାନଙ୍କର ଅନେକ କନ୍ୟା 'ଅଭିଆଡ଼ୀ' ହୋଇ ରହିବେ । ଅଧିକାଂଶ ବିଧବା ଅବଶ୍ୟ ପ୍ରାପ୍ତବୟସ୍କା, ଏହା ସ୍ୱୀକାର୍ଯ୍ୟ । ଲୋକେ ସର୍ବାନୁଭବବିଶିଷ୍ଟା ପ୍ରାପ୍ତବୟସ୍କାଙ୍କୁ ବିବାହ ହେବାର ସୁଯୋଗ ପାଇଲେ ଅନାଡ଼ି ଅପ୍ରାପ୍ତବୟସ୍କାଙ୍କୁ ବିବାହ କରିବେ କାହିଁକି ? ପ୍ରାପ୍ତବୟସ୍କାଙ୍କ ବନ୍ଧନକୁ ଏଡ଼ିଲେ ତ 'ଗୌରୀ'ମାନଙ୍କୁ ଲୋକେ ଲୋଡ଼େଇବେ । ଅତଏବ ପିତାମାନେ କନ୍ୟା ଦାନ କରି ସ୍ୱର୍ଗଲାଭ କରିପାରିବେ ନାହିଁ ।

୨୨. ଆଜିକାଲି ସାଧାରଣ ଅନୁଭବରୁ ବେଶ୍ ଗୋଟାଏ ମୋଟାମୋଟି ଜଣା ପଡ଼ିଛି ଯେ, ବରପାତ୍ର ବା କନ୍ୟାପାତ୍ରୀଙ୍କର ଅଭାବ ନାହିଁ । ଦୁହେଁ ସମାନ । କିନ୍ତୁ ବିଧବାମାନେ ବିବାହଯୋଗ୍ୟା ହେଲେ ବିବାହପ୍ରାର୍ଥିନୀଙ୍କ ସଂଖ୍ୟା ଅପେକ୍ଷା ଢେର୍ ବେଶି ହେବ । ତାହାହେଲେ ସମାଜରେ ଗୋଟିଏ ବିପ୍ଳବ ଉପସ୍ଥିତ ହେବ ଓ କ୍ରମଶଃ ବରପାତ୍ରଙ୍କ ଜରସମନ ବେଶି ଟାଣ ହେବ ।

୨୩. ସ୍ତ୍ରୀମାନେ ଅସତୀ ହେବାର ସୁବିଧା ପାଇବେ । ଲୁଚାଇ ଚୋରାଇ ହଜାରେ କୁକର୍ମ କଲେ ସୁଦ୍ଧା ସେଥିପାଇଁ ସମାଜ ଦାୟୀ ହୋଇ ନ ପାରେ । କିନ୍ତୁ ପ୍ରକାଶ୍ୟରେ ଏକ ସ୍ୱାମୀ ଅନ୍ତେ ଅନ୍ୟ ପତି ବରଣ ଗୋଟିଏ ସାମାଜିକ ନିୟମରେ ପରିଣତ ହେଲେ ସମସ୍ତେ ସମାଜକୁ ନିନ୍ଦା କରିବେ । ଜଣେ ମାଷ୍ଟରଙ୍କ ଅଭ୍ୟାସ ମନେପଡ଼ିଲା । ସେ ସବୁଦିନେ ପ୍ରଶ୍ନଗୁଡ଼ିକ ଅତି ଜଟିଳ କରିଥାଆନ୍ତି । ଏପରିକି ଛାତ୍ରମାନେ ପୁସ୍ତକ ସାହାଯ୍ୟ ବ୍ୟତିରେକେ ତାହାର ଉତ୍ତର କରିବା ଏକାନ୍ତ ଅସମ୍ଭବ । ଛାତ୍ରମାନେ ପ୍ରଶ୍ନଗୁଡ଼ିକର ଉତ୍ତର ଲେଖି ବସିଲେ ଶିକ୍ଷକ ମହାଶୟ ପିଲାମାନଙ୍କ ଆତ୍ମସମ୍ମାନ ଉପରେ ସବୁ ନିର୍ଭର ପକାଇ ଦେଇ ବିଶ୍ରାମ ନିମନ୍ତେ ଚାଲିଆସନ୍ତି । ଉତ୍ତର-କାଗଜରେ ଅବଶ୍ୟ ବାଳକମାନେ ସନ୍ତୋଷଜନକ ଉତ୍ତର ଲେଖିଥାଆନ୍ତି । ପ୍ରଶ୍ନ ସହଜ କଲେ କାଳେ ଶିକ୍ଷକ ଅଜ୍ଞ ବୋଲି ବିବେଚିତ ହେବେ ! ବାଳକମାନେ ଅସଦୁପାୟଦ୍ୱାରା ପ୍ରଶ୍ନର ଉତ୍ତର କରନ୍ତୁ କ୍ଷତି ନାହିଁ, କିନ୍ତୁ ଶିକ୍ଷକ ମୂର୍ଖ ବୋଲି ବିବେଚିତ ହେଲେ ଯେ ସର୍ବନାଶ । ବାହାରର ଲୋକେ କଅଣ କହିବେ ? ବାହାରର ଲୋକେ ମଧ କଅଣ କହନ୍ତି, ତାହା ପାଠକମାନେ ଅନୁମାନ କରୁଥିବେ ।

୨୪. ବିଧବା ବିବାହ ପ୍ରଚଳନ କଲେ ବିଧାତାଙ୍କ ନିକଟରେ ଦ୍ରୋହୀ ହେବାକୁ ପଡ଼ିବ । ବିଧବା ହେବା ମନୁଷ୍ୟ ହାତର କଥା ନୁହେଁ । ଏହା ବିଧାତାଙ୍କର ବିଚାର । ବିଧାତା ଯାହାକୁ ବିଧବା ବୋଲି ସ୍ଥିର କରି ସ୍ୱାମୀକୁ କାଢ଼ିନିଅନ୍ତି, ତାକୁ ପୁନର୍ବାର ବିବାହ କରାଇଲେ ବିଧାତାଙ୍କ ପ୍ରତି 'ନିମକହାରାମି' ନୁହେଁ ତ ଆଉ କଣ ? କପାଳରେ ଯାହା ଥରେ ଲେଖା ହୋଇ ଯାଇଅଛି, ତାହା ବଦଳାଇବାକୁ ଯିବା ମନୁଷ୍ୟ ପକ୍ଷରେ ଘୋର ବାତୁଳତା ନୁହେଁ କି ? ସେଥିପାଇଁ ପାଠ କହିଛି - ''ଧନ୍ୟ ସେ ପ୍ରଜାପତି, ବରକୁ କନ୍ୟା ଘଟାଘଟି ।''

୨୫. ଇତିହାସ ତଦାରଖ କଲେ ଦେଖାଯିବ ଯେ, ସଭ୍ୟତାଭିମାନୀ ଜାତିମାନେ ପରର ଦୁଃଖ ଦେଖିଲେ ଭାରି ସୁଖ ଅନୁଭବ କରନ୍ତି । (ଉଦାହରଣ - ପ୍ରାଚୀନ ରୋମରେ ବନ୍ୟ ଜନ୍ତୁ ସଙ୍ଗେ କ୍ରୀତଦାସମାନଙ୍କର ମାରାତ୍ମକ ଯୁଦ୍ଧ, ଦାସତ୍ୱପ୍ରଥା, ପ୍ରବଳ ପରାକ୍ରାନ୍ତ ବୀରମାନଙ୍କ ଦ୍ୱାରା ବହୁ ଜାତିର ଓ ରାଜ୍ୟର ଧ୍ୱଂସ, ଆଧୁନିକ ସଭ୍ୟ ଜାତିଙ୍କ ମଧ୍ୟରେ ଭୀଷଣ ହତ୍ୟାକାଣ୍ଡ) ଏହା ସ୍ୱାଭାବିକ । ବାଳବିଧବାର ନିର୍ଜଳ ଉପବାସ ବ୍ରତାଦି ଦେଖିଲେ

ସମାଜ ନେତାମାନଙ୍କର ଯେଉଁ ଅଭୂତପୂର୍ବ ଆନନ୍ଦ ଉପଲବ୍ଧ ହୁଏ, ତାହା କେଉଁ ପ୍ରକୃତିସ୍ଥ ଲୋକ ଲୋପ କରିବ ? 'ଈଶ୍ୱରାନ୍ ଭର କୌନ୍ତେୟ ନିଃସ୍ୱେ ପ୍ରଯଚ୍ଛ ମା ଧନଂ' ଏହାହିଁ ଇତିହାସାନୁମୋଦିତ । ନିର୍ବଳର ଗୁହାରି ସର୍ବସାଧାରଣରେ ଜଣାଇବା ଓ ପ୍ରାକୃତିକ ନିୟମକୁ ବିପର୍ଯ୍ୟସ୍ତ କରିବା ଏକା କଥା ।

୨୬. ସ୍ତ୍ରୀଜାତି ପୁରୁଷଜାତିର ସର୍ବଦା ବିରୋଧୀ ଏବଂ ଶତ୍ରୁ, ଏ କଥା ଆମ୍ଭମାନଙ୍କ ପାଠ ଡାକୁଛି । ସ୍ତ୍ରୀମାନେ ସବୁ ଅନର୍ଥର ମୂଳ ବୋଲି ଆମ୍ଭମାନଙ୍କ ଶାସ୍ତ୍ରର ଛତ୍ରେ ଛତ୍ରେ ଲୌହଲେଖନୀରେ ଖୋଦିତ । ତେବେ ସୁଦ୍ଧା ଜାଣିଶୁଣି କେତେକ ପୁରୁଷ ସ୍ତ୍ରୀମାନଙ୍କ ପକ୍ଷରେ ଓକାଲତ୍‌ନାମା ନେବେ, ଏହା ଅତି ଆଶ୍ଚର୍ଯ୍ୟର ବିଷୟ । ସେଥିପାଇଁ ପରା କହନ୍ତି ''ଆପଣା ସୁନା ତ ଭେଣ୍ଡି, ପର ସଙ୍ଗେ କିଆଁ ବାଳ ଧରାଧରି ?'' ଯେଉଁ ପୁରୁଷମାନେ ଏହି ପ୍ରସ୍ତାବ କରିବେ, ଜାଣିବାକୁ ହେବ ଯେ, ପରାଙ୍କଲିପ୍‌ସୁ ସ୍ତ୍ରୀମାନଙ୍କ ଶିକ୍ଷା ଓ ପ୍ରରୋଚନାର କୁହୁକରେ ପଡ଼ି ସେମାନେ କର୍ତ୍ତବ୍ୟ ଭୁଲିଯାଇ ଏପରି ଅମଙ୍ଗଳକର ପ୍ରସ୍ତାବ କରୁଅଛନ୍ତି । ଏକଥା 'ଘରନିଆଁକୁ ଅଞ୍ଚିରେ ପୂରାଇବା' ପରି ହେବ ।

୨୭. ଯେତେବେଳେ ସ୍ତ୍ରୀମାନେ ଜାଣିପାରିବେ ଯେ, ଉପସ୍ଥିତ ପତିଙ୍କ ଅନ୍ତେ ତାଙ୍କୁ ଆଉ ଜଣେ ଯୋଗ୍ୟତର ପତିର ଅଭାବ ହେବ ନାହିଁ, କିଏ ଜାଣେ ଯେ, ଦିନେ ସେମାନେ ସୁବିଧା ପାଇଲେ ବିଭିନ୍ନ ପ୍ରାକୃତିକ ସ୍ୱାମୀମାନଙ୍କୁ ବଧ କରିବାକୁ କୁଣ୍ଠିତ ହେବେ ନାହିଁ ? ଏହିପରି ଟିକିଏ ଆଖି ବୁଜି ପାଠକମାନେ ବସନ୍ତୁ, ଦେଖିବେ ଯେ, ସଂସାରରୁ ଅପତ୍ୟ ସ୍ନେହ ମଧ ଢେର୍ କମିଯିବ । ସଂସାରରେ ତେବେ ବାକି ରହିଲା କଅଣ ? 'ଏକସ୍ୟ ହେତୋର୍ବହୂ ହାତୁମିଚ୍ଛନ୍ ବିଚାରମୂଢ଼ଃ ପ୍ରତିଭାସି ମେ ତ୍ୱଂ ।'

୨୮. ଆୟୁର୍ବେଦ ଡ୍ରାକୁଛି, ଏ ପ୍ରଥା ପ୍ରଚଳିତ ହେଲେ ବିକଟ ରୋଗମାନ ସଂସାରକୁ ଘୋଟିଯିବ ।

୨୯. ୨୮ ପଦକୁ ଫଳ ଏତିକି ହେବ ଯେ, ବିଧବା ବିବାହ ପ୍ରଚଳିତ ହେଲେ ସ୍ତ୍ରୀମାନେ ଯଥେଚ୍ଛାଚାରିଣୀ, ଯଥେଚ୍ଛାବିହାରିଣୀ, ଯଥେଚ୍ଛାଭାଷିଣୀ, ଯଥେଚ୍ଛାସଙ୍ଗିନୀ, ଯଥେଚ୍ଛାଘାତିନୀ ହେବେ । ଦେଶରୁ ବିଶୁଦ୍ଧ ପ୍ରେମ ଲୋପ ପାଇବ । ଧନୀ, ଦରିଦ୍ର, ରାଜା, ପ୍ରଜା, ଜମିଦାର, ମହାଜନ, ସାହୁ, ଖାତକ, ଗୁରୁ, ଶିଷ୍ୟ ସମସ୍ତଙ୍କର କ୍ଷତି । ଲାଭ କେବଳ ଅଳ୍ପସଂଖ୍ୟକ ବିଧବାଙ୍କର । ଗୁଡ଼ିଏ ବୟଃପ୍ରାପ୍ତା ବିଧବା ଥିଲେ ଦେଶର ଅନେକପ୍ରକାର ଉପକାର । ପାଠକ ! ବୋଧହୁଏ ଆପଣ ବିନ୍ତି ଖେଳ ଜାଣନ୍ତି, ନ ଜାଣିଲେ ଶିଖନ୍ତୁ । ଦୁଆଠାରୁ ଛକା ପର୍ଯ୍ୟନ୍ତ ତାସ୍‌ତକ ଅକର୍ମଣ୍ୟ ହୋଇ ପଡ଼ିଥାଏ, କିନ୍ତୁ କାଗଜ ବସିଲାବେଳେ ଦରକାରରେ ଆସେ । ଯେବେ ୫୨ ପଟଯାକ ତାସ୍‌ରେ ଖେଳ ହୁଅନ୍ତା, ତେବେ କାଗଜ ବସନ୍ତା କାହିଁରେ ? ଏ ଉପମାଟାକୁ ଜରୁର୍ ପଗଡ଼ି ନ ଦେଲେ ଖସିଯିବ, ବାଇ ମାହାନ୍ତି ଦାୟୀ ନୁହନ୍ତି ।

ବିଧବା ବିବାହ ପ୍ରଚଳିତ ହେଲେ କି କି ଅମଙ୍ଗଳ ହେବ, ତାହା ତ ଦେଖିଲେ ବର୍ତ୍ତମାନ କି କି ମଙ୍ଗଳ ହେବ ଭାବନ୍ତୁ, ଶିଖନ୍ତୁ, ଶିଖାନ୍ତୁ । ସ୍ୱାଧୀନତା ଚିନ୍ତା ଥିଲେ କି ଜାତିର ଏତେଦୂର ଅଧଃପତନ ହୋଇଥାଆନ୍ତା ? ସବୁ କଥାରେ ପରର 'ଦ୍ୱାହି' ଦେଇ ଏତେ ଦୁର୍ଦ୍ଦଶା ତେବେ ସୁଦ୍ଧା ସେହି ସୁଖନିଦ୍ରାରେ ସୁପ୍ତ । କେହି ଉଠାଇ ଦେଲେ ମହା ଅପରାଧ । ମଦ ଖାଅ ଦୋଷ ନାହିଁ, କିନ୍ତୁ ମଦ ବୋଲି ହୁଅ ନା ଯାହାର ନୀତି ଏବମ୍ଭୂତ, ସେ ଜାତି ଉନ୍ନତି କଲେ ବର୍ବରତା ଆଉ କେଉଁଠାରେ ସ୍ଥାନ ପାଇବ ? ଈଶ୍ୱର ସ୍ୱାଧୀନ ଚିନ୍ତା ଦେଇଅଛନ୍ତି, ଥରେ ଆଖି ମଳି ଚାହିଁ ଦେଖ, ଦେଶ କାଳ ପାତ୍ର ବିଚାର କର । ଗୋଟିଏ ନିୟମ ଉପର୍ଯ୍ୟୁପରି ଅପବ୍ୟବହାର ଓ ଗୁପ୍ତଭାବରେ ଅପାଳନ ସେହି ନିୟମର ଦେଶ କାଳ ପାତ୍ରରେ ଅପ୍ରୟୋଜନୀୟତା ପ୍ରତିପନ୍ନ କରୁଅଛି । ତେବେ ସୁଦ୍ଧା ଭ୍ରାତୃଗଣ ଢୁଳାଉଅଛନ୍ତି । ଗୋଟିଏ ଢଗ ଅଛି, "ଚାହିଁ ଶୋଇବ ଯିଏ, ତାକୁ ଉଠେଇବ କିଏ ?" ଠିକି ନ ଶିଖିଲେ ମନୁଷ୍ୟ ପଶୁ । ଥରେ ଟିକିଏ ଆପଣା ଆପଣାର ସଂକୀର୍ଣ୍ଣ ସୀମା ଭେଦ କରି ଚାହଁ । କଅଣ ଦେଖୁଛ ? କିଛି ନାହିଁ ! ଆଉ ଥରେ ପ୍ରତିଚକ୍ଷୁ ଲଗାଇ ଅନାଅ । କଅଣ ଦେଖିଲ ? ଜାଲଜାଲୁଆ କିମାକାର ପଦାର୍ଥ ! ଆଉ ଥରେ ଅଣୁବୀକ୍ଷଣ ସାହାଯ୍ୟରେ ନିରେଖ । କିଛି ଦିଶୁଛି ? ହଁ ! ଏଥରକ ତନ୍ନ ତନ୍ନ କରି ଦରାଣ୍ଡି ପକାଅ । ଏଥିରେ ସୁଦ୍ଧା ଚେତନାର ଉଦୟ ନ ହେଲେ ଯାଅ, ବିଦାୟ ଈଶ୍ୱର ମଙ୍ଗଳ କରନ୍ତୁ । ଆଉ ଏ ସୁଖନିଦ୍ରା ଭାଙ୍ଗିବ ନାହିଁ । 'ଗାଳି ଦେବ ନାହିଁ ।' ଶିକ୍ଷା ଓ ସଭ୍ୟତା ପ୍ରାପ୍ତ ହୋଇ ଟିକିଏ ସତ୍ ସାହସର ପରିଚୟ ଦିଅ, ସମ୍ମିଳିତ ଉଦ୍ୟମର ସାଧୁଫଳ ଅନ୍ଧକୁ ଦେଖାଅ, ବଧିରକୁ ଶୁଣାଅ, ସ୍ୱାଧୀନ ଚିନ୍ତା ଦ୍ୱାରା ଦେଶର କି ଉନ୍ନତି ହୁଏ ତାହା ଇତିହାସକୁ ଦେଖ, ବିଜ୍ଞାନରୁ ଶିଖ ଓ ମୂର୍ଖକୁ ଶିଖାଅ । ନଚେତ୍

"କଥା କହୁଥାଅ ସରମକୁ,
ଭିତରେ ଭିତରେ ଯାହା ହେଉଥାଏ
ସାକ୍ଷୀ ଦଉଥାଅ ଧରମକୁ ।"

ବୁଢ଼ିଆଣୀ ଜାଲ ଭାଙ୍ଗ ନା, ଯେ ଭାଙ୍ଗିବ ତାକୁ ହସି ହସି କନ୍ଦାଅ, ଆନନ୍ଦ ହେବ, ସୁଖ ହେବ, ସୁନିଦ୍ରା ହେବ, ମହାନିଦ୍ରା ହେବ ! ଦୟାପର ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟ ତୁମ୍ଭମାନଙ୍କ ଚକ୍ଷୁ ଖୋଲିବାକୁ ସୁବିଧା ଦେଇଛନ୍ତି (୧୮୫୬ ସାଲର ୧୫ ଆଇନ) । ତେବେ ସୁଦ୍ଧା ଆଖି ବୁଜିଥାଅ । ଆଖି ମେଲା କଲେ ଆଖି ଝଲସିଯିବ, ଆଖି ଫୁଟିଯିବ । ଜଣେ କାନ୍ଦି କାନ୍ଦି କହି ପକାଇଛନ୍ତି -

"ବୃଦ୍ଧକୁ ବିବାହ ବିଧି, ବାଳିକାକୁ ନାହିଁ !
କେଉଁ ନ୍ୟାୟ ନୀତି ଏହା ? ସାମାଜିକ ଭାଇ !
ଏସନ ବୈଷମ୍ୟପୂର୍ଣ୍ଣ ଯେବଣ ସମାଜ,
ସଂସ୍କାର ନ କରି, ଜୟ ଗାଅ, ନାହିଁ ଲାଜ !"

ଉ. ସା. / ୬ଷ୍ଠ ଭାଗ / ୨ୟ ସଂଖ୍ୟା / ଜ୍ୟେଷ୍ଠ ୧୩୦୯ ସାଲ ।

## ଚତୁର୍ଥ ବିଡ଼ା

ବାଇ ମାହାନ୍ତି ଆମ୍ବକୁ ଭାରି ଶରଧା କରନ୍ତି । ଆମ୍ଭେମାନେ ଅନୁମାନ କରିଅଛୁଁ, ବାଇ ମାହାନ୍ତି ଓ ଉଲ୍ଲିଖିତ ଫଳ ମଧ୍ୟରେ ଏକ ପ୍ରକାର ମାଧ୍ୟାକର୍ଷଣ ଶକ୍ତି ବିଦ୍ୟମାନ । ଆମ୍ବ ସମୟରେ ବାଇ ମାହାନ୍ତି ଆମ୍ବ ତୋଟାରେ ପଡ଼ିଥାନ୍ତି । ଲୋକେ କହନ୍ତି, ବାଇ ମାହାନ୍ତିଙ୍କର ଆମ୍ବ ଖାଇବାରେ ଭାରି ଟକ । କିନ୍ତୁ ଆମ୍ଭମାନଙ୍କର ଏ ରାୟରେ ସନ୍ଦେହ ଅଛି । ଅମୁକ ଜାଗାରେ ଖୁବ୍ ପସନ୍ଦ ଆମ୍ବ ଥିବାର ଶୁଣିଲେ ବାଇ ମାହାନ୍ତି କେବଳ ଦର୍ଶନେନ୍ଦ୍ରିୟ ତୃପ୍ତିସାଧନ ଉଦ୍ଦେଶ୍ୟରେ ଦିନେ ଦିନେ ପାଞ୍ଚ ସାତ କ୍ରୋଶ ପଥ ଯାଇଥିବାର ଆମ୍ଭେମାନେ ଜାଣୁ । ଅନେକ ସ୍ଥାନ ଅନେକ ପ୍ରକାର ଆମ୍ବ ଦେଖି ମାହାନ୍ତିଏ ପାଞ୍ଜିରେ ଯେଉଁ ଟିପ୍‌ପଣୀ କରିଅଛନ୍ତି, ତହିଁର ସାରାଂଶ ନିମ୍ନରେ ପ୍ରଦତ୍ତ ହେଲା । ପାଠକମାନେ ବୁଝିପାରିବେ ଯେ, ବାଇ ମାହାନ୍ତି କି ପ୍ରକାର 'ବାଇ' - ଏ ବାଇ ? କି ସେ ବାଇ ?

ଆମ୍ବ ଅନେକ ପ୍ରକାର, ତନ୍ମଧ୍ୟରୁ ଏହି କେତେ ପ୍ରକାର ପ୍ରଧାନ -

୧ - ସ୍ୱାଦଭେଦରେ ଯଥା -

କଞ୍ଚାସୁଆଦି, ପାଚିଲାସୁଆଦି, କଞ୍ଚାରେ ଖଟା ପାଚିଲେ ଖଟା, କଞ୍ଚାରେ ଖଟା ପାଚିଲେ ପାଣିଚିଆ, ରସୁଣିଆ, ବେଲପତ୍ରିଆ, ସପୁରିସ୍ୱାଦଯୁକ୍ତ, ପଣସସ୍ୱାଦଯୁକ୍ତ ।

୨ - ଆକାରଭେଦରେ ଯଥା -

ଗୋଲ, ନାକୁଆ, କଦଳିଆ, ଗେଡ଼ା, ଫଜଲି, ଗୁରୁଡ଼ି, ଶିଳପୁଆ, କଖାରୁଆ, ଗେରଡ଼ି ।

୩ - ବର୍ଣ୍ଣଭେଦରେ ଯଥା -

କଞ୍ଚାରେ କୃଷ୍ଣାଭ ଓ ପାଚିଲେ ହଳଦିଆ, ପାଚିଲେ ଲାଲ, ସୁନ୍ଦରୀ (କଞ୍ଚାରେ ଓ ପାଚିଲେ ଲାଲ), ପାଚିଲେ ସାଦା ରଙ୍ଗ ।

୪ - ଜନ୍ମସ୍ଥାନ ଭେଦରେ ଯଥା -

ଦେଶୀ, ଦକ୍ଷିଣୀ, ମାଲଦହୀ ।

୫ - ଉତ୍ପତ୍ତି ଭେଦରେ ଯଥା -

ସାଧାରଣ ରୋପିତ ବୃକ୍ଷୋତ୍ପନ୍ନ, ବଡ଼ ବଡ଼ ଆମ୍ବତୋଟାରେ ମନକୁ ପଡ଼ି ଯେଉଁ ଗଛ ଉଠେ, ତହିଁରୁ ଉତ୍ପନ୍ନ, କଲମି ଆମ୍ବ ।

ଏହା ଛଡ଼ା ଲୋକବିଶେଷର ରୁଚିଭେଦରେ କେତେ ପ୍ରକାର ନାମକରଣ ହୁଏ । ଯଥା -

ମରିଚପାଣି, ଅମୃତପାଣି, କୃଷ୍ଣଭୋଗ, କାଞ୍ଜିପାଣି, ହନୁମନ୍ତିଆ ଇତ୍ୟାଦି, ଇତ୍ୟାଦି । ନାମକରଣ ବିଷୟରେ ବାଇ ମାହାନ୍ତିଙ୍କ ଅପେକ୍ଷା ଶଙ୍କରପୁର ମାଲିକଙ୍କର ବିଶେଷ ଅଭିଜ୍ଞତା ଅଛି ।

(ମାହାନ୍ତିଙ୍କ ପାଞ୍ଜି ତନ୍ନ ତନ୍ନ କରି ଖୋଜିଲେ ଆହୁରି କେତେକ ପ୍ରକାର ଆମ୍ବର ନାମୋଲ୍ଲେଖ ମିଳିବ । କିନ୍ତୁ ସେଥିନିମନ୍ତେ ଆମ୍ଭମାନଙ୍କର ଅବସର ବା ଇଚ୍ଛା ନାହିଁ । ସୁବିଜ୍ଞ ପାଠକମାନେ ପ୍ରୟୋଜନ ଓ ସୁବିଧାମତେ ଏ ତାଲିକାକୁ ପରିବର୍ତ୍ତିତ, ପରିବର୍ଦ୍ଧିତ, କର୍ତ୍ତିତ, ସଂଶୋଧିତ ଓ ପୁନଃ ସଂସ୍କୃତ କରିପାରନ୍ତି । ଏହି ଉଦ୍ଦେଶ୍ୟରେ ମଧ ଦକ୍ଷିଣ ପାର୍ଶ୍ଵରେ କିଛି ସ୍ଥାନ ଛାଡ଼ିବାକୁ ସମ୍ପାଦକଙ୍କୁ ଅନୁରୋଧ କରିଅଛୁଁ । ଯଦିଚ ସମ୍ପାଦକ ଏଥିରେ ନାରାଜ ହୁଅନ୍ତି, ତେବେ ସମୟକ୍ରମେ ଖଣ୍ଡେ କାଗଜରେ ଟିପି ଅଠାରେ ଦକ୍ଷିଣପାର୍ଶ୍ୱରେ ମାରିଦେଲେ କୃପଣ ବ୍ୟବହାରୋପଜୀବୀମାନଙ୍କ ଆଇନ୍ ବହି ପରି କାର୍ଯ୍ୟ ବେଶ୍ ଚଳିବ । ତେବେ ଏତିକି ଦୋଷ - ପାଞ୍ଜି ଓ ବହି ମଧରେ କିଛି ପ୍ରଭେଦ ରହିବ ନାହିଁ ।)

ବାଇ ମାହାନ୍ତି କଞ୍ଚାରେ ଆମ୍ବିଳା, ପାଚିଲେ ସୁଆଦିଆ ଆମ୍ବକୁ ଆଦର କରନ୍ତି । କାରଣ ଆମ୍ବିଳା ନ ହେଲେ ଆମ୍ବର 'ଅମ୍ବତ୍ୱ' ଆଉ ରହିଲା କେଉଁଠି ? ମିଠା ଆମ୍ବ ବଡ଼ଲୋକମାନଙ୍କ ନିମନ୍ତେ । ଗରିବମାନେ ତାହା ପାଇବେ କାହୁଁ ? କଞ୍ଚାସୁଆଦି ଆମ୍ବ ତୋଟାରେ ବିରଳ ଏବଂ ତାହା ପାଚିବାଯାକେ ଲୋକେ ରଖି ଦିଅନ୍ତି ନାହିଁ । ଏ ଆମ୍ବକୁ କଞ୍ଚା ଖାଇବା ଯୁକ୍ତିଯୁକ୍ତ । ପାଚିଲେ ବେଶି ସ୍ୱାଦୁ ହେବ, ଏପରି ଆଶା କଲେ କିଏ ଜାଣେ, ପାଚିବା ସମୟକୁ କଞ୍ଚା ଅପେକ୍ଷା ନିକୃଷ୍ଟ ସ୍ୱାଦ ହୋଇପାରେ । ବେଲପତ୍ରିଆ ଆମ୍ବ ଥରେ ଖାଇଲେ ମନବୋଧ । ବେଲପତ୍ରିଆ ଆମ୍ବକୁ ନ ପାଚୁଣୁ ଆଚାର କିମ୍ବା ଆମ୍ବୁଲ କଲେ ରକ୍ଷା । ପାଚିଲେ ସୁଦ୍ଧା ଯେଉଁ ଆମ୍ବ ନିତାନ୍ତ ଖଟା, ତାହାର ସଦ୍ ବ୍ୟବହାର ଆମ୍ବଶଢ଼ା ଓ ଆଚାର ବ୍ୟତୀତ ଅନ୍ୟ କୌଣସି ଉପାୟରେ ହୋଇ ନ ପାରେ । ଅନେକ ଅର୍ଥ ବ୍ୟୟ କଲେ ଓ ଅନେକ ସ୍ଥାନ ବୁଲିଲେ ସପୁରି ଓ ପଣସର ବାସନାଯୁକ୍ତ ଆମ୍ବ ମିଳେ । ବାଇ ମାହାନ୍ତିଙ୍କ ଭାଗ୍ୟରେ ଏହି ଦୁଇ ପ୍ରକାର ଆମ୍ବ ଜୀବନରେ ଥରେ ଲେଖାଏଁ ମାତ୍ର ଦେଖା ମିଳିଥିଲା, ଚାଖିବା କଥା ଛାଡ଼ । ରସୁଣିଆ ଆମ୍ବକୁ କଞ୍ଚା ସମୟରେ ଖାଇଲେ ପାଟି ପୋଡ଼େ, ପାଚିବା ସମୟରେ ସୁଦ୍ଧା ପ୍ରଥମ ରସତକ ବାହାର ନ କରି ଦେଲେ ସମାନ ଦଶା । ପରିଶ୍ରମ କରି ଆଚାର ବା ଆମ୍ବୁଲ କଲେ ଏ ଆମ୍ବ ଉପାଦେୟ ଭୋଜ୍ୟରେ ପରିଣତ ହୁଏ । ଅଳ୍ପ ବହୁତ ଆମ୍ବ ଆଚାର ଓ ଆମ୍ବୁଲ ସମସ୍ତେ କରିବାକୁ ଚେଷ୍ଟା କରନ୍ତି । କିନ୍ତୁ କୃତକାର୍ଯ୍ୟ ହୁଅନ୍ତି କେତେଜଣ ? କାହାର ଲୁଣ ବେଶି, କାହାର ମସଲା ବେଶି, କାହାର ରାଗ ବେଶି ହେବାରୁ ଆଚାର ମୁଖରୋଚକ ହୁଏ ନାହିଁ । ଯେଉଁମାନଙ୍କର ଆଚାର କରିବାର ପେସା, ସେମାନେ ଏଥିରେ କୃତକାର୍ଯ୍ୟ ହୁଅନ୍ତି ବୋଲି ଧାରଣା କରିବା ଉଚିତ ନୁହେଁ । କିନ୍ତୁ ଜଣଜଣକର ହାତଯଶ ଅଛି । ସେମାନେ ଆମ୍ବରୁ ଯେକୌଣସି ପଦାର୍ଥ ପ୍ରସ୍ତୁତ କରନ୍ତୁ, ତାହା ଅତି ଆଦରଣୀୟ ଓ ରୁଚିକର ହୁଏ । ସେମାନଙ୍କୁ ଆମ୍ଭେମାନେ କହୁଁ ଈଶ୍ୱରାନୁଗ୍ରହୀ । ପ୍ରାକୃତିକ ଅବସ୍ଥାରେ ଆମ୍ବ କେବେ ହେଁ ଦଶ ପନ୍ଦର ଦିନରୁ ବେଶି ରହି ପାରେ ନାହିଁ । କିନ୍ତୁ ଆଚାର ଇତ୍ୟାଦି ଦଶ ପାଞ୍ଚ ବରଷ ରହିଲେ କ୍ରମଶଃ ଅଧିକ

ରୁଚିକର ହୁଏ । ଆଚାର ରୋଗୀର କିପରି ଆଦରର ବସ୍ତୁ, ତାହା ଅଜ୍ଞାଧିକ ସମସ୍ତେ ଜାଣନ୍ତି । ତୈଳ ଓ ଲବଣ, ଆଚାର କରିବାର ପ୍ରଧାନ ସାମଗ୍ରୀ । ରୁଚି ଓ ଧନ ଅନୁସାରେ ମସଲାମସଲିର ଇତରବିଶେଷ ହୋଇପାରେ । ଏହା ଛଡ଼ା 'ଓସ୍ତାତି ହାତ' ଅନୁସାରେ ଆମ୍ବ ଚଟଣି, ଜେଲି, ମିଷ୍ଟ ଚଟଣି, ଇଂଲିସ୍ ଚଟଣି, କଞ୍ଚା ଆମ୍ବ ସହିତ ଦୁଧର ଚଟଣି, ଗୋଟା ଆମ୍ବର ଫ୍ରେଞ୍ଚ ଆଚାର, ପାଚିଲା ଆମ୍ବର ବରଫି, ଗୁଡ଼ଆମ୍ବ ବା ମଧୁରୁଚି ଇତ୍ୟାଦି ଇତ୍ୟାଦି ଅନେକ ପ୍ରକାର ସୁଖାଦ୍ୟ (ଓ ହାତ ଗୁଣରେ ଅଖାଦ୍ୟ) ପ୍ରସ୍ତୁତ ହୁଏ ।

୧ମ- ସବୁ ଆମ୍ବରେ ଟାକୁଆ ଅଛି । ଟାକୁଆ ଛୋଟ ବଡ଼ ଅନୁସାରେ ଓ ସ୍ୱାଦଭେଦରେ ଆମ୍ବର ଉତ୍କର୍ଷ ଅପକର୍ଷ ନିରୂପିତ ହୋଇଥାଏ । ଟାକୁଆର ଇଂରାଜୀ ଭାଷାରେ ନାମାନ୍ତର ପଥର । କିନ୍ତୁ ସେହି ପଥର ମଧ୍ୟରେ ଭାବୀ ବୃକ୍ଷର କୋମଳ ବୀଜ ନିହିତ । ସମୟ ଓ ସୁବିଧା ପାଇଲେ ଉକ୍ତ କୋମଳ ପଦାର୍ଥ କଠିନ ଟାକୁଆର ଆବରଣକୁ ଅନାୟାସରେ ଭେଦ କରିପାରେ । ଏପରି ଅବସ୍ଥାରେ ପିଲାମାନଙ୍କ ହାବୁଡ଼ରେ ନ ପଡ଼ିଲେ ରକ୍ଷା । ନଚେତ୍ ସେମାନେ 'କୋଇଲି' କୁ ଘଷି "ସାପ ନେ ! ବେଙ୍ଗ ନେ ! ମୋ ପେଏଁକାଳି ବଜେଇ ଦେ; ସାପ ଥିଲେ ବାହାରି ଯା  ବେଙ୍ଗ ଥିଲେ କଟର କଟର ହେଉ ଥା" କରି ଗ୍ରାମଟିକୁ ପେଏଁକାଳି ଶବ୍ଦରେ ପୂର୍ଣ୍ଣ କରିଦେବେ । ବାଳକମାନଙ୍କର କ୍ଷଣିକ ତୂରୀ ବାଦନ ଲିପ୍ସା ପୂର୍ଣ୍ଣ ହୁଏ ସତ୍ୟ; କିନ୍ତୁ କେତେ ଭାବୀ ବୃକ୍ଷ ମୂଳରେ ସେମାନେ ନ ଜାଣି କୁଠାରାଘାତ କରନ୍ତି ! ଏ କଥା ବୁଝାଇବ କିଏ ? ବୁଝାଇଲେ କି ପିଲାମାନେ ବୁଝିବା ଜନ୍ତୁ ? ବୁଝାଇପାରିଲେ ମଧ୍ୟ ପିଲାମାନେ କି ନ ବୁଝନ୍ତେ ? ସବୁଥିରେ 'ହାତଯଶ' ଅଛି । ଆମ୍ବ ବଉଳଠାରୁ ଆରମ୍ଭ କରି ଆମ୍ବ ଟାକୁଆରୁ ଗଛ ଉଠିବା ପର୍ଯ୍ୟନ୍ତ  ଆହା ! କେତେ ବାଧାବିଘ୍ନ, କେତେ ଶତ୍ରୁ ! ଏତିକିରେ ମଧ୍ୟ ନିସ୍ତାର ନାହିଁ, ଆମ୍ବ ଗଛକୁ କୋମଳ ଅବସ୍ଥାରେ ଗୋରୁ ଖାଇଯାଆନ୍ତି, ସେଥି ନିମନ୍ତେ ଗଛ ନ ଉଠୁରିବାଯାକେ ଗଛ ଚାରିପାଖରେ ବାଡ଼ ବୁଜିବାକୁ ହୁଏ । ନଚେତ୍ ବାଘ୍ର ବର୍ଷ ତପସ୍ୟା ଶୁଖୁଆପୋଡ଼ାରେ ଶେଷ ! ଏତିକିରେ ମଧ୍ୟ ନିସ୍ତାର ନାହିଁ । ପାଠକମାନେ ଏଣିକି ଚିତ୍ର ଆଙ୍କି ଯାଉନ୍ତୁ । ସାମାନ୍ୟ କଥନଟି ଲେଖି ଚିତ୍ର ଆଙ୍କିଦେଲେ ବୁଦ୍ଧିମାନ୍ ପିଲାମାନେ ତେଣିକି କର୍ତ୍ତବ୍ୟ ଓ ବକ୍ତବ୍ୟ ସ୍ଥିର କରି ନିଅନ୍ତି ।

୨ୟ - ଆକାରଭେଦରେ ଆମ୍ବର ବିଭିନ୍ନତା ସଙ୍ଗେ ସ୍ୱାଦର ଏପରି କିଛି ବିଶେଷ ସମ୍ପର୍କ ଥିବା ବୋଧ ହୁଏ ନାହିଁ । ତେବେ କେତେ ଲୋକ 'ଯାତ୍ରାକୃତିସ୍ତତ୍ର ଗୁଣା ବସନ୍ତି' ଏପରି ଗୋଟାଏ ସ୍ଥିର କରିପକାଇ ମୂଳ କରି ବସନ୍ତି । ଉଦାହରଣସ୍ୱରୂପ ବାଇ ମାହାନ୍ତି ଥରେ ଗୋଟିଏ 'ଫଜିଲି' (ଫାଜିଲ୍ ?) ଆମ୍ବ ଓଜନର ପାଞ୍ଚ ପା ହେବା ଦେଖି ମୂଲ୍ୟ ଦେଇ କିଣିଲେ । ଦେଖିଲେ ଯେ ଆମ୍ବଟା ପାଣିଚିଆ ଓ କୀଟପୂର୍ଣ୍ଣ । ସେହି ଦିନରୁ ଗୋଟିଏ ଶିକ୍ଷା ପାଇ ଅଛନ୍ତି । ବୃହଦାକୃତି ଆମ୍ବ ଦେଖିଲେ ଖଣ୍ଡେ କାଟି ଭିତର ନ ଦେଖିବାଯାକେ କର୍ତ୍ତବ୍ୟ ସ୍ଥିର କରିବେ ନାହିଁ ବୋଲି ସ୍ଥିର କରିଅଛନ୍ତି । ସାଧାରଣତଃ ଗୁରୁଡ଼ି ଆମ୍ବର ରସ

କମ୍, ଟାକୁଆ ବଡ଼ ବଡ଼ । 'ମାଳ' (ତୋଟା)ରେ ଜନ୍ମେ । ସେ ଗଛକୁ କେହି ଲଗାଇ ନ ଥାଏ । ତୋଟାର ବଡ଼ ଗଛରୁ ପାଚିଲା ଆମ୍ବ ଝଡ଼ି ପଡ଼ି ଯେଉଁ ଗଛ ବିନା ପରିଶ୍ରମରେ ଉଠିଥାଏ, ଏହା ସେହି ଗଛର ଫଳ । ତେବେ ଗୁରୁଡ଼ି ଆମ୍ବର ଆମ୍ବଶଢ଼ା ପରିଷ୍କୃତ ପରିଚ୍ଛନ୍ନ ଭାବରେ ପ୍ରସ୍ତୁତ ହୋଇ ତୈଳରେ ରହିଲେ ଅତି ଉପାଦେୟ ହୁଏ ।

୩ୟ - ବର୍ଣ୍ଣଭେଦରେ ସ୍ୱାଦଭେଦ ଥିବାରୁ ଆମ୍ଭମାନଙ୍କର ସନ୍ଦେହ । ଯେଉଁ ଆମ୍ବ କଞ୍ଚାରେ ଅମ୍ଳ ଓ ଈଷଦ୍ କୃଷ୍ଣାଭ ଓ ପାଚିଲେ ଈଷଦ୍ ରକ୍ତବର୍ଣ୍ଣ, ସେହି ଆମ୍ବ ବାଇ ମାହାନ୍ତିଙ୍କ ଆଦରର ସାମଗ୍ରୀ । ସାଧାରଣତଃ ସୁନ୍ଦରୀ ଆମ୍ବ ଦେଖି ସ୍ୱତଃ ଯେଉଁ ଭାବ ମନକୁ ଆସେ, ତାହା ସତ ନୁହେଁ ବୋଲି ବାଇ ମାହାନ୍ତି ସ୍ଥିର କରିଅଛନ୍ତି । ତାହା ବୋଲି ଯେ ସବୁ ସୁନ୍ଦରୀ ଆମ୍ବ ଅପଦାର୍ଥ, ଏହା ବାଇ ମାହାନ୍ତି ଲେଖି ନାହାନ୍ତି । କେହି ଏପରି ଅର୍ଥ କଲେ ସେଥି ନିମନ୍ତେ ବାଇ ମାହାନ୍ତି ଦାୟୀ ନୁହନ୍ତି ।

୪ର୍ଥ - ଏ ଦେଶୀ ଆମ୍ବ ପାଚିଲେ ଅଳ୍ପ ଦିନରେ ଲତପତ ହୋଇ ଶଢ଼ିଯାଏ । କିନ୍ତୁ ଏଠାକୁ ଯେଉଁ ଆମ୍ବ ଦକ୍ଷିଣରୁ ଓ ମାଲଦହରୁ ଆସେ ବୋଲି କଥିତ ହୁଏ, ସେ ଆମ୍ବ ଏ ଦେଶୀ ଆମ୍ବ ଅପେକ୍ଷା ଅଧିକ ଦିନ ସ୍ଥାୟୀ ହୁଏ ବୋଲି ବାଇ ମାହାନ୍ତିଙ୍କର ବିଶ୍ୱାସ । ଯେଉଁ ବର୍ଷ ଏ ଦେଶରେ (ଓଡ଼ିଶାରେ) ଆମ୍ବ ଅପର୍ଯ୍ୟାପ୍ତ ପରିମାଣରେ ମିଳେ, ସେ ବର୍ଷ ମଧ୍ୟ ଦକ୍ଷିଣରୁ ଓ ବଙ୍ଗଳାରୁ (ଅଳ୍ପ ହେଉ ପଛକେ) ଏଠାକୁ ବିକ୍ରୟ ନିମନ୍ତେ ଆସେ । କିନ୍ତୁ ଏ ଦେଶରୁ ଯେଉଁମାନେ କଲିକତା କିମ୍ବା ଦକ୍ଷିଣ ଯାଇଛନ୍ତି, ସେମାନଙ୍କୁ ଜେରା କରି ବାଇ ମାହାନ୍ତି ସ୍ଥିର କରିଅଛନ୍ତି ଯେ କଲିକତାରେ ବା ଦକ୍ଷିଣରେ ଏ ଦେଶରୁ ଆମ୍ବ ଯାଇ ବିକ୍ରୟ ହେବା ସେମାନେ ଦେଖି ନାହାନ୍ତି । ଏ ଦେଶର ଆମ୍ବ ଦେଶ ଛାଡ଼ି ବିଦେଶକୁ ଯିବା ପାଇଁ ନିତାନ୍ତ ନାରାଜ । ଫଳ ମଧ୍ୟ ତଦୁପଯୁକ୍ତ । ଏ ଦେଶ (ଓଡ଼ିଶା)ରେ ଉତ୍କୃଷ୍ଟ ଆମ୍ବ ନାହିଁ ବୋଲି ବିଦେଶରେ ଲୋକଙ୍କର ଧାରଣା । ଏଣିକି ତେବେ ରେଲର ସୁବିଧା ହେଲାଣି, ଭବିଷ୍ୟତ୍‌ରେ କଅଣ ହେବ କିଏ କହିପାରେ ? କିନ୍ତୁ ସେ ଭବିଷ୍ୟଦ୍ ଆଜି ବା କାଲି ନୁହେଁ, ଏ କଥା ନିଶ୍ଚିତ ।

୫ମ - ଉତ୍ପତ୍ତି ଭେଦରେ ଆମ୍ବର ତାରତମ୍ୟ ଅଛି, ଏ କଥାରେ ମତଦ୍ୱୈଧ ହୋଇ ନ ପାରେ । ତା ନ ହେଲେ ବି 'କଲମି' ଆମ୍ବ ପ୍ରତି ଲୋକଙ୍କର ଏତେ ଆଦର ହୁଅନ୍ତା ? କଲମି ଆମ୍ବରେ ମଧ୍ୟ ପରିଶ୍ରମ କେତେ । ପୂର୍ବେ ବିଦେଶରୁ କଲମି ଆମ୍ବଗଛ ଆଣି ଲୋକେ ଏ ଦେଶରେ ବଡ଼ ବଡ଼ ବଗିଚା ପୂର୍ଣ୍ଣ କରିଅଛନ୍ତି । ଏଣିକି ଆଶା ଅଛି, ଏ ଦେଶରେ ମଧ୍ୟ ଆମ୍ବ କଲମି କରି ଗଛ ଉତାରି ହେବ । ବାଇ ମାହାନ୍ତିଙ୍କ ଗ୍ରାମର (ଓଡ଼ିଶାର ଅବଶ୍ୟ ଗୋଟିଏ ପଲ୍ଲୀଗ୍ରାମ) ଚୌଧୁରୀଙ୍କ ବଗିଚାର ଜଣେ କଲିକତା ପ୍ରତ୍ୟାଗତ ମାଳୀ ଅନେକ ଚେଷ୍ଟା କରି ତିନି ଚାରୋଟି କଲମି ଆମ୍ବଗଛ ଉତାରି ଅଛି । ଗୋଟିଏ ଗଛରେ ଏ ବର୍ଷ ଚାରୋଟି କଲମି ଆମ୍ବ ଫଳିବାର ବାଇ ମାହାନ୍ତି ସ୍ୱଚକ୍ଷୁରେ ଦେଖିଅଛନ୍ତି । ବଡ଼ ବଡ଼ ତୋଟାରେ ମନକୁ ଉଠିଥିବା ଗଛରୁ ଉତ୍ପନ୍ନ ଆମ୍ବ ବିଷୟ ପୂର୍ବରେ ସୂଚିତ ହୋଇଅଛି ।

ଏ ପ୍ରକାର ଆମ୍ବ ମୂଳ ଆମ୍ବ ଅପେକ୍ଷା ଅନେକ ପରିମାଣରେ ନିକୃଷ୍ଟ ହୁଏ, ଏଥିରେ ସନ୍ଦେହ ନାହିଁ । ଏଥିର ପ୍ରମାଣ ପ୍ରାୟ ସମସ୍ତ ଗଡ଼ଜାତ ଜଙ୍ଗଲର ଆମ୍ବତୋଟାମାନଙ୍କରେ ଓ ମୋଗଲବନ୍ଦିର କେତେକ ବଡ଼ 'ମାଳ'ରେ ମିଳିବ । ଗୁରୁଡ଼ି ଆମ୍ବର ଅନ୍ୟ ନାମ ଜଙ୍ଗଲୀ ଆମ୍ବ । ରୋପିତ ଓ ପରିଶ୍ରମୋତ୍ପନ୍ନ ଆମ୍ବକୁ ସାଧାରଣତଃ ସମସ୍ତେ ସୁଖ ପାଆନ୍ତି ।

୬ଷ୍ଠ - ଆମ୍ବର ନାମକରଣ ଲୋକବିଶେଷର ରୁଚି ଓ ଇଚ୍ଛା ଉପରେ ନିର୍ଭର କରେ ବୋଲି କହିଅଛୁ । ଅତଏବ ବାଇ ମାହାନ୍ତି ନିଜର ରୁଚି ଅନୁସାରେ କେତେକ ପ୍ରକାର ନାମକରଣ କରୁଅଛନ୍ତି । (ଏ ହେଡିଙ୍ଗରେ ବାଇ ମାହାନ୍ତିଙ୍କ ପ୍ରଦତ୍ତ ନାମ ପ୍ରାୟ ଏକ ଶତରୁ ନ୍ୟୂନ ନୁହେଁ । ସଂଗ୍ରାହକ ବାଛି ବାଛି କେବଳ କେତେଗୋଟି ନାମ ଏଠାରେ ଦେଲେ)

| | | |
|---|---|---|
| ଭଡ଼କା (ବଡ଼ଲୋକ) | - | ଦେଖିବାକୁ ବଡ଼, କିନ୍ତୁ ଭିତରେ ଅନେକ ଜୀବଜନ୍ତୁଙ୍କ ଆଶ୍ରୟସ୍ଥଳ ଓ ପାଣିଚିଆ । |
| ନିରାଣ (ଗରିବ) | - | ଏହାକୁ କାଟି ଖାଅ, ଚିପୁଡ଼ି ଖାଅ କିମ୍ବା ପାଟି ଲଗାଇ ଖାଅ । |
| ଲସମା (କୋମଳ) | - | ଏହାକୁ ଥରେ ଚିପୁଡ଼ି ଦେଲେ ଟାକୁଆରୁ ରସ ନିଗିଡ଼ିଯାଏ । |
| ନିଆଁବାଣ (ରାଗି) | - | ଯେଉଁ ଆମ୍ବକୁ ଖାଇଲେ ଖଟାରେ ଦାନ୍ତ ପାଟି ଦରଜ ହୋଇଯାଏ । |
| ଥୋବରା (ଅଲାଜୁକ) | - | ଚେରୁଆ ଆମ୍ବ, ଘଣ୍ଟାଏ ପରିଶ୍ରମ କରି ଦାନ୍ତରେ ନ ରକଟିଲେ ସମ୍ପୂର୍ଣ୍ଣ ରସ ବାହାରେ ନାହିଁ । ତେବେ ସୁଦ୍ଧା ଦାନ୍ତମୂଳଯାକ ଚେର ଲାଗିଯାଏ । |
| ଗରଜୀ (ପରୋପକାରୀ) | - | ସୁଖସେବ୍ୟ, ରୋଗୀର ପଥ୍ୟ ଓ ରୁଚିକର ଆଚାର । |
| ଆମଦାନୀ (ଶିକ୍ଷିତ) | - | କଲମି ଆମ୍ବ । (ଏହା ଭିତରେ ଯେ ତାରତମ୍ୟ ନାହିଁ, ତାହା ନୁହେଁ ।) |
| ସାଉଁଳା (ଖୋସାମଦିଆ) | - | ସୁନ୍ଦରୀ ଆମ୍ବ । |
| ମଖନା (ଦୟାଳୁ) | - | ଏ ଆମ୍ବ ସାଧାରଣ ଆମ୍ବ ଅପେକ୍ଷା ବଡ଼ ଓ ସୁସ୍ୱାଦୁ । ଗୋଟିଏ ଖାଇଲେ ପରିଶ୍ରମ ସଫଳ ହୁଏ ଓ ଉଦର ପୂର୍ଣ୍ଣ ହୁଏ । |
| ଦେଓଭୋଗ (ଦେବଯୋଗ୍ୟ) | - | ସପୁରି, ପଣସ ଇତ୍ୟାଦିର ବାସନାଯୁକ୍ତ ଅତି ବିରଳ । |

| | | |
|---|---|---|
| ନିଉଁଛୁଣା (ବଦରସିକ) | - | ରସୁଣିଆ ଆମ୍ବ । |
| ପଥୁରିଆ (ନିର୍ଦ୍ଦୟ) | - | ଯେଉଁ ଆମ୍ବରେ ଟାକୁଆ ମାତ୍ର ସାର, କଞ୍ଚାରେ ଯାହା ପାଚିଲେ ମଧ୍ୟ ତାହା । |
| ଭରମୀ (ନାମଜାଦା) | - | ଅମୁକ ବଡ଼ଲୋକ ଏ ଆମ୍ବକୁ ପସନ୍ଦ କରନ୍ତି ଅତଏବ ସେ ଆମ୍ବରେ ଗୁଣ ଥାଉ ବା ନ ଥାଉ ତାକୁ କେତେ ଲୋକ ପସନ୍ଦ କରନ୍ତି । |
| ସିଆଣା (ପ୍ରବୀଣର ଅନୁଭବ) | - | ବଡ଼ ବଡ଼ ଲାଲ ସୁସ୍ୱାଦୁ ପାଚିଲା ଆମ୍ବ ଇତ୍ୟାଦି, ଇତ୍ୟାଦି, ଇତ୍ୟାଦି । |

(ନୋଟ୍ - ଏ ନାମକରଣ ଓ ତତ୍‌ପାର୍ଶ୍ୱବର୍ତ୍ତୀ ବ୍ୟାଖ୍ୟାରୁ ଆମ୍ଭେମାନେ କିଛି ସ୍ଥିର ମୀମାଂସା କରିପାରିଲୁଁ ନାହିଁ । ଏ କଅଣ ମନୁଷ୍ୟମାନଙ୍କର ଶ୍ରେଣୀବିଭାଗ ? ବାଇ ମାହାନ୍ତି କି 'ଖିଆଲ'ରେ ଏପରି ଶ୍ରେଣୀବିଭାଗ କରିଅଛନ୍ତି, ତାହା ତାଙ୍କୁ ଏକା ଜଣା । କେହି ଚତୁର ପାଠକ ଏଥିର ଭାବ ବୁଝି ଆମ୍ଭମାନଙ୍କ ଚକ୍ଷୁ ଫିଟାଇ ଦେଲେ ଆମ୍ଭେମାନେ ଉପକୃତ ହେବୁଁ ।)

ଉ. ସା. ୬ଷ ଭାଗ / ୪ର୍ଥ ସଂଖ୍ୟା / ଶ୍ରାବଣ / ୧୩୦୯ ସାଲ ।

## ପଞ୍ଚମ ବିଡ଼ା

'ଧୋବଧାଉଳିଆ ଚୋରି କରନ୍ତି, ରଙ୍କୁଣୀ ଦେଖିଲେ ମାରି ଗୋଡ଼ାନ୍ତି,' 'ଗରିବର ମାଇପ ସମସ୍ତଙ୍କ ଟାପରା' ଏ ପ୍ରବାଦଗୁଡ଼ିକ ଅକ୍ଷରେ ଅକ୍ଷରେ ସତ୍ୟ । ଶାରୀରିକ ଲାସ୍ ମାଇନା (ଶବ ବ୍ୟବଚ୍ଛେଦ) ନିମନ୍ତେ ଯେପରି ଡାକ୍ତରଖାନା ଅଛି, ମାନସିକ ପ୍ରବୃତ୍ତିଗୁଡ଼ିକ ମାଇନା କରିବା ନିମନ୍ତେ ସରକାରଙ୍କର ଗୋଟିଏ ଡାକ୍ତରଖାନା ବସାଇବାର କ୍ଷମତା ଥିଲେ ଆଉ ଭାବନା ଥିଲା କଅଣ ? ସେଦିନ ଆମ ଗ୍ରାମର ରାଧୁ ମଳିକ ପେଟ ବିକଳରେ ଅନ୍ଧାର ରାତିରେ ନଡ଼ିଆଟାଏ ତୋଳି ଖାଇଥିଲା ବୋଲି ତିନିମାସ ମାମୁ ଘରେ ଘଣା ପେଲିଲା ଓ କତା ବାଡ଼େଇଲା, କିନ୍ତୁ ଗଦା ଗଦା ଟଙ୍କା ସୁନା କିଏ କେଉଁଆଡ଼େ ଦିନ ଦୁଇପ୍ରହରରେ ବୋହି ନେଇଯାଉଛି, କେହି ସୁଦ୍ଧା ପଚାରିବାକୁ ନାହିଁ । ତେବେ ପ୍ରଭେଦ ନାହିଁ କଅଣ ? ମଳିକ ବିଚାରାର ପରିଧାନ ଖଣ୍ଡେ ଚିରା କୌପୀନ, ବାବୁମାନଙ୍କର ପରିଧାନ ଇସ୍ତିରିକରା ଫୁଲଦାର କମିଜ ଓ ଗିଲକୁଞ୍ଚା ଶିମିଳିଆ ଚଦର; ମଳିକପୁଅର ପେଟ ଜଳିଲା ବୋଲି ଚୋରି କଲା, ବଡ଼ଲୋକମାନେ ଲୋଭ ଓ ସଉକୀରେ ଚୋରି କରନ୍ତି । ତା ନ ହେଲେ କି 'ପୀତାମ୍ବରଂ ବୀକ୍ଷ୍ୟ ଦଦୌ ତନୁଜାଂ, ବୀତାମ୍ବରଂ ଯତ୍ ଗରଳଂ ପୟୋଧିଃ ।' ମହାବୀର ଆଲେକ୍‌ଜାଣ୍ଡାରଙ୍କ ମସ୍ତକରେ ରତ୍ନଖଚିତ ରାଜମୁକୁଟ, ଚୋର ଗୋଡ଼ରେ ଲୁହାବେଡ଼ି, ପ୍ରଭେଦ ମଧ୍ୟରେ ଏତିକି । ଏହା ପ୍ରଭେଦ କି ଅଭେଦ,

ତାର ନିଷ୍ପତ୍ତି ଆପଣମାନଙ୍କ ତକ୍। ତେବେ ଗୋଟିଏ କଥା - କିଏ କଅଣ ସୁଖରେ ଗରିବ ହୁଏ ? ଧର୍ମରାଜଙ୍କୁ ଭଗବାନ୍ ପ୍ରଶ୍ନ କରିଥିଲେ ଧର୍ମରାଜ ଉତ୍ତର କରିଥିଲେ କି 'ମନରେ ଏକା କଥା, କାର୍ଯ୍ୟରେ ତେବେ ଯାହା ପ୍ରଭେଦ।' ଏ ତ ଭାରି ଗୋଳମାଳିଆ। ତେବେ କଅଣ ନା ରାଜା ଚାଉଳ ଚୋବେଇଲେ ବାତ ପିତ୍ତନାଶନଂ, ଗରିବ ଚାଉଳ ଚୋବାଇଲେ 'ବିକଳାଟାଏ'। ପାଠକ ଅବଧାନ ! ଇସାରାରେ ବୁଝି ଯାଉଥିବେ, ସବୁବେଳେ ସାପ ମାରି ପର ଗଳାରେ ପକାଇଦେଲେ ଚଳିବ କିପରି ? ଜଣେ ଜମିଦାର ଫେରାଦି ବୁଝୁଥିଲେ - ରାମ କଣ୍ଡରା ଜମିଦାରଙ୍କ ଉଆସ ପଛଆଡ଼େ ବିଲରେ ଚାଷ କରୁ କରୁ ପଦେ 'ଦାଏକା' ଗାଇ ଦେଇଥିଲା ବୋଲି ତାକୁ ପାଞ୍ଚଟଙ୍କା ଜୋରିମାନା କଲେ, କିନ୍ତୁ ରାମ କଣ୍ଡରାର ସାଆନ୍ତବାପା ଗୁରୁ ଗୋସେଇଁ, ଓସ୍ତାଦ୍‌ର ଓସ୍ତାଦ୍ ସାଆନ୍ତଙ୍କ ନଅର ଭିତରେ ନିତ୍ୟ ରାହାସ ଲଗାଇ ଅଛନ୍ତି, ଏପରିକି, ସାଆନ୍ତଙ୍କ ଶ୍ରୀଅଙ୍ଗରେ ଘାଉଡ଼ ଲାଗିବା ମଧ ଆଶ୍ଚର୍ଯ୍ୟ ନୁହେ। ବୁଝୁଛି କିଏ ବା ବୁଝାଉଛି କିଏ ? ରାମା ବିଚାରା ଗରିବ, ତା ଘରେ ଧନ ନାହିଁ; ତା ପାଇଁ ଓକିଲ ମୁକ୍ତାର ନାହାନ୍ତି, ତା ପାଇଁ ଆଇନ ଦଫା ନାହିଁ; ସୁପାରିସ ନାହିଁ, ଅଛି କେବଳ ଧର୍ମ; କିନ୍ତୁ ସେ ଏକପ୍ରକାର ନିର୍ଜୀବ, ଇହକାଳରେ ନୁହେ, କେବେ ହେବ ବା ହୋଇପାରେ। ଧନ୍ୟ ସଂସାର ! ବିବେକ ଅଛି କାହାର ? ବିବେକକୁ ଜଳାଞ୍ଜଳି ନ ଦିଏ କିଏ ? ସରକାରଙ୍କର ପ୍ରତିକାରରେ ତ୍ରୁଟି ନାହିଁ, ଡେଙ୍ଗା ନଡ଼ିଆଗଛକୁ ଲାଗି ନ ପାଇଲେ ଲଗିର ତ ଦୋଷ ନାହିଁ। ଆପଣ ମୁରୁକି ମୁରୁକି ହସି ମନେ ମନେ କହୁଛନ୍ତି, 'ତେବେ କଅଣ ଡେଙ୍ଗା ନଡ଼ିଆଗଛର ଦୋଷ ?' ଫଳକଥା - ଧନୀ, ଦରିଦ୍ର, ଶିକ୍ଷିତ, ଅଶିକ୍ଷିତ, ସଭ୍ୟ, ଅସଭ୍ୟ, ବୃଦ୍ଧ, ବାଳକଙ୍କ ମଧରେ ପ୍ରଭେଦ ଖୁବ୍ କମ୍। ଶିକ୍ଷିତ ବହିରିନ୍ଦ୍ରିୟକୁ ସଂଯତ କରିବାକୁ ଚେଷ୍ଟା କରନ୍ତି, ଭିତରର ମହାକାଳ ଫଳକୁ ରଙ୍ଗ ଟହ ଟହ ଚୋପାରେ ଘୋଡ଼ାଇ ପକାନ୍ତି, ଅଶିକ୍ଷିତ ମୂର୍ଖ ଯାହା ମନକୁ ଆସେ ତାକୁ ଲୁଚାଇ ରଖିପାରେ ନାହିଁ। ପ୍ରଭେଦଟା କଅଣ ଖୁବ୍ ବେଶି ? ଆପଣ ସଭ୍ୟ, ଆପଣ ବଡ଼ଲୋକ, ଆପଣ ରଙ୍ଗଢଙ୍ଗିଆ ସାଟିନ୍‌କୋଟ, ଘଡ଼ି ଚେନ୍ ପିନ୍ଧି ବାସନା ତୃପ୍ତ କଲେ, କିନ୍ତୁ ଅସଭ୍ୟର ସେହି ବାସନା 'ଚିତାକୁଟା ଓ ଅଠିଲ ମାଳି'ରେ ତୃପ୍ତ ହେଲା। ସେ ହେଲା ବେଳକୁ ହେଲା ହାସ୍ୟାସ୍ପଦ; ଆପଣ ହେଲେ ପୂଜ୍ୟ ! ସେ ଜଟ ବାନ୍ଧିଲା, ଆପଣ ଆଲବର୍ଟ୍ ଫିରେଇ କାଟିଲେ - ପ୍ରଭେଦ ଏତିକି। ଏ ପ୍ରଭେଦକୁ ବଡ଼ କହନ୍ତୁ କି ଛୋଟ କହନ୍ତୁ, ଆପଣ ଜାଣନ୍ତି। ବାହାରର ଆଦବକାଏଦା ଟିକିଏ ଛାଡ଼ିଦିଅନ୍ତୁ, କଥାଟା ଧୀରେ ଧୀରେ ସମଝି ପାରିବେ। ଫାଙ୍କି ଦେଲେ ଅବଶ୍ୟ ଆମ୍ଭେମାନେ ନାଚାର। ଏଥିରେ ସାକ୍ଷୀ, ଜବାନବନ୍ଦି, ଜେରା, ଜବାବ ସୁଆଲ, କିଛି ଚଳିବ ନାହିଁ। ଚଳୁଥିଲେ କି ଆପଣଙ୍କ ମୁହଁରେ ଏଡ଼େ ତାରିଫ ହସ ଦେଖା ଦିଅନ୍ତା ? ହାତକଡ଼ି ପକାଇ ଚୋରକୁ ପହରାବାଲାମାନେ ଜେଲଖାନାକୁ ନେଲାବେଳେ କି ଦେଖଣାହାରିଏ ଠୋ ଠୋ ହସି ଟହୁଳି କରନ୍ତେ ? କହନ୍ତେ, 'ଶଳା ପା !' ଜଣେ ପ୍ରଧାନ କବି କହିଥିଲେ - ଖୁବ୍ କମ୍‌ରେ

ଥରେ ଲେଖାଏଁ କିଏ ଜେଲଖାନା ନ ଯାଇଛି, ଏପରି ଲୋକ ଦୁନିଆରେ ଅତି ଅଳ୍ପ । ଏ ଜେଲଖାନାରେ ତ ଦିନେ ଓଳିଏ ବନ୍ଦୀ, ଅସଲ ଜେଲଖାନାରେ ଘଣାପେଲା, ଜଟାବାଡ଼ିଆ, ଢିଙ୍କିକୁଟା ଚିରଜୀବନ ଲାଗିଛି ଓ ଲାଗିଥିବ । ଏ କଥା ବୁଝେ କିଏ ? ମନୁଷ୍ୟ ପ୍ରକୃତିର ନିର୍ବଳତ୍ୱ ଥରେ ଦିବ୍ୟଚକ୍ଷୁରେ ବୁଝିଲେ ଥଟ୍ଟାତାମସା, ହସକୌତୁକ, ଟାହୁଲି ଟାପରା ରହନ୍ତା କାହିଁ ? ଆଇନ ବଳବାନ୍‌ର ବଳ, ନିର୍ବଳର ଶତ୍ରୁ "ପରାପରାଧେନ ପରାପମାନଂ" ଏ କିଛି ନୂଆ କଥା ନୁହେଁ 'ଯୁଗକୁ ଯୁଗ ଏହିମତେ, ପରମାନନ୍ଦ ଏ ଜଗତେ ।' କୁଆ ପୋଖରୀ ପାଣି ଜରି ଚମଟ, ହଂସ ବିଚାରା ମଲା ! ନିଜ ନିଜ ଅନୁଭବରୁ ଗୋଟିଏ ଗୋଟିଏ ଘଟନା ଭଲ ମିଳାଇ ବିବେକ ଦ୍ୱାରା ବୁଝି ନିଅନ୍ତୁ, କଥାଟା ଯେ ନିହାତି ମିଛ ନୁହେଁ । 'ପ୍ରମାଣ' ମାନେ କଅଣ ? ଯେ ଚୋରି କରିବ, ସେ କଇଦୀ ହେବ । ଏଥିରେ ଅର୍ଥ କଅଣ । ଏହାର ଅର୍ଥ - ଯେ ଚୋରି କରିବା କଥା ଅଦାଲତରେ ପ୍ରମାଣିତ ହେବ, ସେ (ଚୋରି ନ କରୁ ପଛକେ) ଦଣ୍ଡ ପାଇବ । ସାକ୍ଷୀ ମେଳ ହେଲେ ଅସଲ କଥାକୁ ପଚାରେ କିଏ, ସେଥିପାଇଁ କହନ୍ତି, 'କହି ଜାଣିଲେ ବାର ହାତ କାକୁଡ଼ିରେ ତେରହାତ ମଞ୍ଜି ।' 'ତିନି ମୁହଁରେ ଛେଳି କୁକୁର' ନ ହୋଇ ଯିବ କୁଆଡ଼େ ?

ଆପଣଙ୍କ ଗ୍ରାମରେ ବା ପଡ଼ାରେ ସିନା ରାଧୁ ମଳିକ, କି ରାମ ମଳିକ ନାହିଁ, ତେବେ ଭୀମ ଛାଟୋଇ, ମଧୁ ଭୋଇ ତ ଥିବେ । ନ ଥିବେ କେବଳ ଆପଣଙ୍କ ଦୃଷ୍ଟିଶକ୍ତି ଦୋଷରୁ । ଆପଣଙ୍କର ଚକ୍ଷୁ ନାହିଁ ବୋଲି ଆମ୍ଭମାନଙ୍କ କଥାଟା ଯେ ବାଏଁ ବାଏଁ ଉଡ଼ିଯିବ, ଏ କଥା କେଉଁ ହିସାବରେ କହିବେ ? ଆମ୍ଭେମାନେ ଘରୁ ଖାଇ ବଣିଜ ଶିଖୁବୁଁ କଅଣ ମିଛରେ ? ଯେଉଁ ଲୋକ ବହୁତ ବୁଲେ, ବହୁତ ଦେଖେ, ବହୁତ ଶୁଣେ, ସେ ଅପେକ୍ଷାକୃତ କ୍ଷମାଶୀଳ ହୁଏ । କାହିଁକି ? ତହିଁର କାରଣ ମାନବ ପ୍ରକୃତିର ଦୁର୍ବଳତା-ଉପଲବ୍ଧି । ନଚେତ୍ 'ଯଥା ଖରଶ୍ଚନ୍ଦନଭାରବାହୀ' ବୁଲୁଥାଅ, ଶୁଣୁଥାଅ । କିଏ ସିନା ତୁମ ଆଗରେ ଭାତ ଥାଳିଏ ଥୋଇଦେବ, ତୁମେ ନ ଖାଇଲେ କେହି ତ ଗିଳେଇ ଦେବ ନାହିଁ । ଗିଳେଇ ଦେଲେ ଯେ ଦଫା ଧରା ବନ୍ଧା ! ଆତ୍ମରକ୍ଷା ଯେ ପ୍ରଥମ ନୀତି । ସଭ୍ୟ କିଏ, ଅସଭ୍ୟ କିଏ, କାର୍ଯ୍ୟ ତ କିଛି ନାହିଁ । ତୁମେ ଆମେ ମିଳିମିଶି ଯାହା ମୁଣ୍ଡରେ ଶିରିପା ଦେବା, ସେହି ସିନା ଅସଭ୍ୟ, ଯାହାକୁ ଛାଞ୍ଚୁଣୀ ବାଡ଼ିରେ ଗୋଗୋଛବାଡ଼ିଆ କରିବା, ସେହି ସିନା ସଭ୍ୟ ! ଥରେ ଭଲା ଈଶ୍ୱରଙ୍କୁ ସାକ୍ଷୀ ରଖି ତନ୍ନ ତନ୍ନ କରି ଦୁନିଆର ରାଜନୀତି ଦେଖ । ଯେବେ ମନୁଷ୍ୟ ହୋଇଥିବ, ତେବେ ଛୋଟ ଲୋକ, ଅସଭ୍ୟ ଓ ଅଶିକ୍ଷିତଙ୍କଠାରୁ ଅନେକ କଥା ଭିକ୍ଷା କରି ଆପଣା ଘରେ ସାଇତିବ । 'ସ୍ତ୍ରୀରତ୍ନଂ ଦୁଷ୍କୁଳାଦପି' ଲେଖିଲା ବେଳେ କଅଣ ଚାଣକ୍ୟଙ୍କର ବୃଦ୍ଧତ୍ୱ ହେତୁ ମତିଭ୍ରମ ହୋଇଥିଲା ? ନ ବୁଝିପାରିଲେ ନାଚାର ! ତୁମ ପାଇଁ ସବୁବେଳେ ଦ୍ୱାର ଖୋଲା ନ ଥିବ । 'ବସିଲେ ବସ, ନଚେତ୍ ବେଳହୁଁ ଖସ ।' ଲୋକେ କହନ୍ତି ପରା 'ଦୃଢ଼େ ତରନ୍ତି, ମୂଢ଼େ ତରନ୍ତି, ମଝିମଝିକିଆ ବୁଡ଼ି ମରନ୍ତି ।' ମୂଢ଼ଙ୍କୁ ତ ଭାରି ଜଲ୍‌ଦି ଚିହ୍ନି ପକାଉଛ । କିନ୍ତୁ ଦୃଢ଼ ଯାହାଙ୍କୁ ମନେ

କରୁଛ, ସେମାନେ ଅଧିକାଂଶ ମଝିମଝିକିଆ । ଯାହାର ଯେଉଁ ଘଣ୍ଟାକ ପାଳି, ସେ ଘଣ୍ଟାକ ସେ ରଜା । ଯୋଗୀ (ନାଥ) ମାନେ ଘର ଘର ବୁଲି - 'ଧନ, ଜନ, ଗୋପ, ଲକ୍ଷ୍ମୀ ବର୍ଦ୍ଧିତ ରହେ; ବାବାକା କଲମ ଜାରୀ ରହେଁ, ହେଉଥାଆନ୍ତି, କିନ୍ତୁ କପିଳାସ କନ୍ଦରରେ ଚନ୍ଦ୍ରଶେଖରଙ୍କ ଠାରେ ଶିବରାତ୍ରି ଦିନ ସେମାନଙ୍କର ପହରେ ଜଗିବା ପାଳି ପଡ଼ିଯାଏ । କାଲି ସିନା ନାଥପୁଅକୁ ମୁଠାଏ ଭିକ ଦେବାକୁ କେତେ ବାଲିଙ୍ଗି ବାହାର କରୁଥିଲେ, ଆଜି ତାକୁ ଆଉ ଜୁହାର ନ ହୋଇ ଯିବ କେଉଁଆଡ଼େ ? ଦିନ ଯିବ - ରାତି ଆସିବ, ସୁଖ ଯିବ - ଦୁଃଖ ଆସିବ, ବାଘ ଘରେ ମିରିଗର ନାଟ' ଏ ପ୍ରକୃତିର ନିୟମ । ତୁମେ କିଛି ଅମର ଲଡୁ ଖାଇ ନାହଁ । ମୁଁ କିଛି କୋଳି ଖାଇ କୋଳିମଞ୍ଜି ପୋତି ନାହିଁ । 'କପାସିଆ ଛମାସିଆ', 'ଚାକିରି ତାଳଗଛ ଛାଇ', 'ଓଇବି ଗୁଜର ଯାଏଗା' ଏଗୁଡ଼ିକର ମର୍ମ ଭୁଲିଗଲେ ଆପେ ହଟହଟା । ଦାଣ୍ଡଲୋକ ଆଜି ତାକୁ ଚାହିଁ ହସୁଛନ୍ତି, କାଲି ତୁମ୍ଭଙ୍କୁ ଚାହିଁ ହସିବେ । ବଡ଼ ଲୋକ ନ କରନ୍ତି କଅଣ ? 'ପରୋପଦେଶେ ପାଣ୍ଡିତ୍ୟଂ' ନାହିଁ କାହାର ? ପାଠକ ଅବଧାନ୍ ! ପୋଷାକ ତଳଟା ଟିକିଏ ଓଲଟାଇ ପୋଲଟାଇ ଦେଖି ନେଉଥିବେ, ଉପର ଖୋଳଟି ପରିଶ୍ରମ କରି ନ ଛଡ଼ାଇଲେ ଭିତରର ଶସଟି ପାଇବା କଷ୍ଟ । ଖୋଳଟି ଛଡ଼ାଇବା ଏକା ମନୁଷ୍ୟତ୍ୱ । ତରବର ହୋଇ ଗୋଟାଏ ରାୟ ଲେଖିବା ମହାଦୋଷ । ତୁମ ରାୟରେ ଆଜି କଥାଟା ଖତମ୍ ହୋଇଗଲା ବୋଲି ଯାହା ମନରେ ରେଣ୍ଡ କରି ବସିଛ, ସେ କିଛି ନୁହେଁ । କହନ୍ତି ପରା 'ମଝିବରଡ଼ା ଥାଇ ବୋଇଲା ତୋ ଦିନ କାଳ ଆସୁଛି ।' ଉପରକୁ ଉପର ପାହାଚ ଲାଗିଛି । ଗୋଡ଼ ଜଖମ ଥିଲେ ଅବଶ୍ୟ ଗୋଟାଏ ହେଲେ ପାହାଚରେ ଖସିଯିବ । ଗୋଡ଼ ମଜବୁତ ଥିଲେ ଭଙ୍ଗା ପାହାଚ ଟପିକରି ମଧ୍ୟ ମନୁଷ୍ୟ ଡେଇଁ ଚାଲିଯିବ । ପାହାଚ କେବଳ ଅବଲମ୍ବନ ମାତ୍ର । ପରୀକ୍ଷାର ସ୍ଥାନ ଅଲଗା । ଖାଲି ରାୟ ଲେଖିବାର କ୍ଷମତା ଥିଲେ ଚଳିବ ନାହିଁ । ଡିଗ୍ରୀ ଜାରି କରି, କୋରଖି ଓ ନିଲାମ କରି, ନିଲାମ ଖତମ କରି ଦଖଲ ଦେଇଦେବାର କ୍ଷମତା ଥିଲେ ହୁଏ । ତା ନ ହେଲେ ସବୁ ପୋଥିଗତ ବିଦ୍ୟା, ପରହସ୍ତ ଧନ । ସେଥିରେ ଆସେ କେତେ, ଯାଏ କେତେ, ଯେ ଯହିଁକି ଉପଯୁକ୍ତ, ତା ପାଇଁ ଟିକଟ୍‌ମରା ଜାଗା ଆଗରୁ ଧରାବନ୍ଧା । ତୁମ ଆମର ବିଚାର କେତେ ? ବିଧାତା ଏ ସବୁ କଥା ତୁମ ଆମ ଉପରେ ଛାଡ଼ିଦେଇ ନିଶ୍ଚିନ୍ତ ହୋଇ ବସିଥିଲେ କି ରକ୍ଷା ଥାଆନ୍ତା ? ତୁମ ପାଇଁ ରେଳ ଅଛି, ମୋ ପାଇଁ ଅଛି ନଈବଡ଼ି । ତୁମପାଇଁ ଅଛି ମାର୍କାମରା ଚବ (Chubbs) ତାଲା, ମୋର ଅଛି ଧଡ଼ାଲଗା ଟାଟି । ତୁମ ପାଇଁ ଅଛି ଝାଲର ଲଗା ପଙ୍ଖା, ମୋର ଅଛି ନଈକୂଳିଆ ସୁଲୁସୁଲିଆ ପବନ । ତୁମ୍ଭପାଇଁ ଅଛି ନାଲିପାଣି (Vinum galici), ମୋର ଅଛି ସଫା ପାଣି (Aqua pura), ତୁମ ପାଇଁ ଅଛି ଭସ୍ମ, ବଟିକା, ପ୍ରାଶ, ଘୃତ, ତୈଳ, ଚୂର୍ଣ୍ଣ, ରସାୟନ - ମୋ ପାଇଁ ମୂଳିମୂଳିକା ଖଞ୍ଜା । ତୁମପାଇଁ ହଜାର ହଜାର ହାକିମ ଗଡ଼ଗଡ଼ାଉଛନ୍ତି, ମୋର ଅଛି ମନର ଶାନ୍ତି, ଚିତ୍ତପ୍ରସାଦ, ହୃଦୟର ସନ୍ତୋଷ, ଈଶ୍ୱରବିଶ୍ୱାସ । ନାହିଁ କେବଳ

ଚକ୍‌ଚକିଆ ବିଲୋରି ଝାଡ଼ - ହୁଣ୍ଡା ବିଚାରରେ ଜୟଲାଭ । ସେ ଜୟଲାଭକୁ ଯେ ବଡ଼ କରି ଗଣେ, ସେ ଗଣୁଥାଉ, ତା ଆଖିରୁ ପ୍ରଚକ୍ଷୁ କାଢ଼ିଦିଅ ନାହିଁ । ମୁଣ୍ଡରେ ଖରା ପଡୁ ପଛକେ, ଆଖିରେ ନେଳି ଚଷମା ଥାଉ, ଆଖିକି ଅନ୍ଧାରୁଆ ଦିଶୁଥାଉ ।

ଯାହା ମନ ଯେତେ, ତାହା ପ୍ରଭୁ ତେତେ । 'ହରି ବୋଲ ଭାଇ ଗୋବିନ୍ଦ ବୋଲ, ଭାସିଲା ପଥର ବୁଡ଼ିଲା ସୋଲ ।' ସବୁ କଥାରେ ଶିଲଟ ପେନ୍‌ସିଲ ଧରି ଅଙ୍କ କଷି ବସିଲେ ଚଳିବ କାହୁଁ ? ପଣିକିଆ, କଡ଼ାଗଣ୍ଡା, ଶୋଧି, ଓଡ଼ାଙ୍କ, ଫେଡ଼ାଙ୍କ, ଏଗୁଡ଼ିକ ଶିଖ, କେତେ ପରିଶ୍ରମରୁ ଖଲାସ ପାଇବ । ଉପଯୁକ୍ତ ହୁଅ, କ୍ଷମତା ପାଇବ । ଚକ୍ଷୁ ଥାଇ ପାଗଳ ପଛକେ ହେବି ଅନ୍ଧ ହେବାକୁ ଭଲ ଲାଗୁ ନାହିଁ । ତେଲୀଏ ପରା ଗୋଟିଏ ମାତ୍ର ଗବପାଇଁ ଧରାଧରି ହୋଇ ବୁଡ଼ି ମରିଥିଲେ । ଇମିତି କେତେ ଚଉକିବସା, ପଲଙ୍କଶୁଆ, ଘୋଡ଼ାଚଢ଼ା ତେଲୀ ଅଛନ୍ତି । ଟିକିଏ ଠିକଣା ଲଗେଇଲେ ଧରା ନ ପଡ଼ି ଯିବେ କାହିଁ ? ଏହାକୁ କହନ୍ତି ବାତୁଳପ୍ରତିଭା ! କିଏ କଅଣ ଇଚ୍ଛାକରି ବାୟା ହୁଏ ? ଭଗବାନ୍ ଗୀତାରେ କହିଅଛନ୍ତି ''ଚତୁର୍ବିଧାଃ ଭଜନ୍ତେ ମାଂ ଜନାଂ ସୁକୃତିନୋର୍ଜୁନ । ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ ।'' ଜ୍ଞାନୀ କିଏ ? ଉତ୍ତର ଶାସନର ବାଲାଦସ୍ତି ପାଗଳ କହେ, 'ଜ୍ଞାନୀ ମୁଁ' । ଜଣେ ପଶ୍ଚିମା ପଣ୍ଡିତ କହିଥିଲେ, 'ଯେ ଜାଣେ, ମୁଁ କିଛି ଜାଣେ ନାହିଁ - ସେହି ଏକା ଜ୍ଞାନୀ ।' ଆଉ ସମସ୍ତେ କୁହୁଡ଼ିପହଁରା । ଚୋରି କରିବାକୁ ମନ ନ ହୁଏ କାହାର ? ମନ ନ ହୁଏ କେବଳ ମୁହଁଭୁରୁଡ଼ାଙ୍କର । ଆତ୍ମମ୍ଭରିତା ନାହିଁ କାହାର, ନାହିଁ କେବଳ ଦାମ୍ଭିକର । 'ଭୁରୁଡୁ' ଏ ତିନି ଅକ୍ଷରରେ ତ୍ରିଲୋକ ଜୟ । ତାରିଫ କରି ଗୁଡ଼ାଏ ଏଣୁ ତେଣୁ କହି ପାଟି ଜୋର୍‌ରେ ସିନା ପରର ପାଟି ବନ୍ଦ କରି ହେବ, କିନ୍ତୁ ଘରକଥା ବେଳେ କେଉଁଆଡ଼େ ଯିବ ? 'ଆପଣା ସୁନା ତ ଭେଣ୍ଡି, ପରସାଙ୍ଗେ କିଆଁ ବାଳ ଧରାଧରି' । 'ଗୋଦରୀ ଲୋ ! ଆପଣା ଗୋଡ଼କୁ ଚାହାଁ' । ଭୁରୁଡୁରେ ଜୟ ହେଉଥିଲେ ଚିନ୍ତା ନ ଥାନ୍ତା । ମହାପୁରୁଷମାନେ କଅଣ ବେକୁଫ୍ ? ସବୁ କଥା ଏଡ଼େ ସହଜରେ ଖତମ ହୋଇ ଯାଉଥିଲେ ଜନ୍ମବ୍ୟାପୀ ସାଧନା, କଠୋର ତପସ୍ୟା, ହାଡ଼ଭଙ୍ଗା ପରିଶ୍ରମ ଓ ଈଶ୍ୱରବିଶ୍ୱାସର ମାହାତ୍ମ୍ୟ ଥାଆନ୍ତା କାହିଁ ? ଦାଣ୍ଡଚୋରକୁ ସିନା ବାଡ଼ ବୁଜିବ, ଘର ଚୋରକୁ କି ଉପାୟ ? ଧୋବଧାଉଳିଆ ହେଲେ ସିନା ଲୋକେ ବାବୁ ବୋଲି ଡାକିବେ, ଆପଣା ମନକୁ ଆପେ ଯେପରି ବାବୁ ବୋଲି ଡାକିବ, ସେ ଉପାୟ କର । ଏ କଥା କିଛି ମୁହଁରେ ନାହିଁ । ଶିକାର ବେଳେ କୁକୁର ହଗିବସିଲେ ଚଳିବଟି କି ? ପରୀକ୍ଷାରେ କଅଣ ସମସ୍ତେ ପାସ୍ କରିଯାଆନ୍ତି ? ଫେଲ ହୁଅନ୍ତି ଅନେକ । ଫେଲରେ ଫେଲ ଅଛି । ଯେ ୧ ନମ୍ବର ପାଇଁ ଫେଲ ସେ ଫେଲ୍, ଯେ ଶୂନ୍ୟ ପାଇଥାଏ ସେ ମଧ ଫେଲ । ପାସ୍‌ରେ ମଧ ପାସ୍ ଅଛି । ଆପେ କେତେ କଷ୍ଟରେ ନଈ ପାରି ହେଲି, ସେ କଥା ଭୁଲିଗଲଣି । ଏଣିକି ଯେ ପାସ୍ କରି ନ ପାରିଲେ, ତାର ଅଭାବ ଅସୁବିଧାକୁ ଟିକିଏ ନଜର କଲ ନାହିଁ ସେ ହେଲା ନାଲାଏକ୍, ଗଧା, ଓଲୁ ! ତୁମେ ହେଲେ ସରସ ! ସେଥିପାଇଁ କହନ୍ତି, ''ଆଗ

ମାଧିଆ କି ? ମାଧିଆ ହାତରେ ଟଙ୍କାଟୋକର (ମାଧିଆ) ମଣିଷ ଚିହ୍ନଇ କି ।'' ଆଖିରେ କିଛି ଶୁଖୁଆକଣ୍ଟା ମରି ନାହିଁ; ଚାହିଁ ଚାହିଁ କରି ଦେଖ । ପରୀକ୍ଷା ଦିନ ଖୁବ୍ ଭଲ ପିଲାର ଶରୀର ଅସୁସ୍ଥ ହେଲେ ସେ ମଧ ଫେଲ୍ । ଏଥିରୁ କଅଣ ବୁଝିଲ ? ଅଦୃଷ୍ଟ ମାନେ କଅଣ ? ଯାହା ଦେଖା ନାହିଁ, ତାହା ଅଦୃଷ୍ଟ । ତୁମର ଯାହା ଅଦୃଷ୍ଟ, ତାହା ମୋର ଦୃଷ୍ଟ ମୋର ଅଦୃଷ୍ଟ, ତୁମର ଦୃଷ୍ଟ । ସେଥିପାଇଁ କହନ୍ତି, ଯେଝା ଅଦୃଷ୍ଟ ଯାହାର । ଅଦୃଷ୍ଟରେ ମଧ କାହାରି ହାତ ନାହିଁ । ହାତ ନ ଥିଲେ ତ ସାନ୍ତ୍ୱନା ଅଛି; ଅଦୃଷ୍ଟରେ ଅନ୍ୟ ନାମ ବିଧିବିଧାନ । ଅଦୃଷ୍ଟବାଦୀ ନୁହେଁ କିଏ ? ମୁହଁରେ ନ ହେଉ; ଫଳତଃ ସମସ୍ତେ । ମାନନ୍ତି ସମସ୍ତେ ଟିକିଏ ହୃଦୟର ଦମ୍ଭ ଚାହଁ, ଦୃଢ଼ ବିଶ୍ୱାସ ଚାହଁ, ଜୀବନ୍ତ ପ୍ରେମ ଚାହଁ । ପ୍ରେମ ନ ଥିଲେ ସଂସାର ଶୃଙ୍ଖଳା । ଆପଣାକୁ ଆପେ ଆଗେ ଚିହ୍ନ । ପର ତୁମକୁ ନ ଚିହ୍ନିଲେ କିଛି ଚିନ୍ତା ନାହିଁ । ପୋଥି ବାଇଗଣ ବାଡ଼ି ବାଇଗଣ ଏକ କଲେ ଯାଇ ସମତା ରକ୍ଷା ହେବ । ନଚେତ୍ 'ଦଦରା ଡଙ୍ଗା ! ମଝିନଈରେ ଦେବ ଦଗା ।' ଏ ସବୁ କଥା ବୁଝିବା କଥା, ବୁଝାଇବା କଥା ନୁହେଁ; ହାଉଡ଼ା ହାତଗୋଡ଼ ହଲାଇ ନୃତ୍ୟର ଭାବ ପ୍ରକାଶ କରିବା ପରି ।

ସମସ୍ତେ ନାଟୁଆ । ନାଟୁଆ ତ ସହଜେ ନାଚୁଛନ୍ତି, ଦେଖଣାହାରି ମଧ ନାଟୁଆ । କଥାଟା କଅଣ ନା, ଯାହାକୁ ଆମ୍ଭେମାନେ ଅସଭ୍ୟ କହୁଁ ସେମାନଙ୍କ ପରିଧାନ ପତ୍ର, ବଲ୍‌କଳ । ସଭ୍ୟଙ୍କର ପରିଧାନ ଚୁଡ଼ିଦାର, କଲିକଟା କାମିଜ । ଟିକିଏ ଥୟକରି ଦେଖିଲେ ଦି' ମୁଣ୍ଡ ଏକା ସମାନ; ପିଲାଙ୍କର ଦାନ୍ତ ନାହିଁ, ବୁଢ଼ାଙ୍କର ଦାନ୍ତ ନାହିଁ, ବର୍ବରଙ୍କର ବିଧି ନିଷେଧ ନାହିଁ, 'ନିସ୍ତ୍ରୈଗୁଣ୍ୟେ ପଥି ବିଚରତଃ କୋ ବିଧିଃ କୋ ନିଷେଧଃ ?' ବଣୁଆଙ୍କ ପରିଧାନ ବଲ୍‌କଳ; ଋଷିଙ୍କର ମଧ ତାହା; ଜଗନ୍ନାଥ ଦେଉଳରେ ପ୍ରସ୍ତୁତ ଖାଦ୍ୟ ବିକ୍ରି, ହୋଟେଲରେ ଦେଖ ତାହା, ଡାବଳପୁଆ ଯାହା କ୍ରିକେଟ୍ ତାହା, ପାତୁଆ ଶଅରଙ୍କ ନାଚ ଯାହା, ବଲ୍‌ନାଚ ମଧ ସେହିତା । ଅଶିକ୍ଷିତ ଅସଭ୍ୟଙ୍କର ସ୍ତ୍ରୀ ସ୍ୱାଧୀନତା, ଖୁବ୍ ସଭ୍ୟ ସମାଜରେ ଦେଖ ସେହି କଥା । ଯେଉଁଠାରେ ମଶାଲ, ଠିକ୍ ତଳେ ମଧ ସେହି ଅନ୍ଧାର ଆସିଲାବେଳେ ଯେଉଁ ଏକା, ଗଲାବେଳେ ମଧ ଏକା; ଅସଭ୍ୟ ଜାତିର ଜୁଆଖେଳ ଓ ସଭ୍ୟ ଜାତିର ଜୀବନବୀମା, ଜାହାଜବୀମା, ନିଆଁବୀମା, ଘୋଡ଼ାଦଉଡ଼ ମଧରେ ପ୍ରଭେଦଟା କଅଣ ବେଶି ? ସବୁ କଥାରେ ଭିତରର ପ୍ରଭେଦ ଖୁବ୍ କମ୍ । ଯାହା ପ୍ରଭେଦ ବାହାରେ, ତୁମ ଆମ ଏକତରଫା ବିଚାରରେ । ସମସ୍ତେ କହନ୍ତି, ଆକାଶ ପାତାଳ ପ୍ରଭେଦ; କିନ୍ତୁ ଆକାଶରୁ ପାତାଳକୁ ଖସିବାକୁ ମୁହୂର୍ତ୍ତେ ସୁଦ୍ଧା ଲାଗେ ନାହିଁ । ଏ ମୁହୂର୍ତ୍ତରେ ଦେବତା । ମଶାଲ ନାହିଁ, ସେଠାରେ ଯେଉଁ ଅନ୍ଧାର - ଅନ୍ୟ ମୁହୂର୍ତ୍ତରେ ରାକ୍ଷସ । 'ଯତ୍ତଦଗ୍ରେ ବିଷମିବ ପରିଣମେମୃତୋପମଂ, ସେହି ସୁଖପଦବାଚ୍ୟ ଓ ସେବ୍ୟ । ଅନ୍ୟ ସବୁ କେବଳ ମଶାଲ ପାଖ ଅନ୍ଧାର ପରି । ମସ୍ତରାମ ପାଗଳ * କହୁଥିଲା -

* 'ଭାଗବତ ଟୁଙ୍ଗିରେ ସନ୍ଧ୍ୟା'ର ପ୍ରଧାନ ଚରିତ୍ର, ଯାହା ଭିତରେ ପ୍ରତ୍ୟେକ ମଣିଷ ନିଜକୁ ଅନୁଭବ କରିପାରେ ।

'ଈଶ୍ୱରଙ୍କଠାରେ ସବୁ ଖୋଲା । ତାଙ୍କଠାରୁ ମନୁଷ୍ୟର କଅଣ ବୁଦ୍ଧି ବେଶି ? ତୁମକୁ ଅଣାଏ ପଇସା ମିଳିଲା, ଦିଲ୍‌ଦାର୍ ମିଆଁ ଦୋକାନରୁ ଖଣ୍ଡେ କୋଲପ କିଣି ନେଇ ତାକୁ ଠୁକି ଦେଇ ନିଶ୍ଚିନ୍ତ ହୋଇ ବସିଲ । ତାଙ୍କୁ କଅଣ ଅଣାଏ ପଇସା ମିଳନ୍ତା ନାହିଁ ? ତୁମେ ପର ମୁହଁକୁ ଚାହିଁଥାଅ, ଚାବିଟି ହଜିଲେ ଉପରକୁ ଚାହିଁ ଆଁ କରି ବସିଥିବ । କିନ୍ତୁ ମୋ ଚାବି ହଜିବା ଚାବି ନୁହେଁ । ତୁମ ଚାବି ଅଣ୍ଟାରେ, ମୋ ଚାବି ମୋ ଭିତରେ ।'

**ଶେଷ କଥା** - ତୁମେ ମନେ ମନେ କଥାଟା ଯେତେ ସହଜ ଓ ସାଧାରଣ ବୋଲି ବିଚାରୁଛ, ଅସଲ କଥା ତାହା ନୁହେଁ । ତୁମେ 'ଘଡ଼ି' ଝୁଲେଇ 'ଚଇନ ଫିଟ୍' ହୋଇ ବୁଲୁଛ । ମନେ ମନେ ବିଚାରୁଛ ଟଙ୍କା ପାଞ୍ଚଟା ମନିଅର୍ଡ଼ର କରିଦେଲେ ଆର ଶନିବାର ଡାକରେ ଦୁଆର ମୁହଁରେ ଡାକି ଡାକବାଲା ଏକ ପୁଳିନ୍ଦା ଦେଇଯିବ । ଟିକିଏ ଥୟ ଧରି ହିସାବ କର । ବହୁବର୍ଷବ୍ୟାପୀ କଠୋର ପରିଦର୍ଶନ, ପରୀକ୍ଷା, ପରିଶ୍ରମ, କେତେ ସ୍ୱାର୍ଥ ତ୍ୟାଗ, କେତେ ଜୀବନନାଶ, କେତେ ସାଧନା ପରେ ଏ ୱାଚ ଘଡ଼ିଟି ବର୍ତ୍ତମାନ ଅବସ୍ଥା ଧାରଣ କରିଅଛି ଓ ଏତେ ଅଳ୍ପ ବ୍ୟୟରେ ଓ ସମୟରେ ତୁମ୍ଭ ନିକଟରେ ଆସି ପହଞ୍ଚୁ ଯାଉଛି । ଏତେ ଲୋକଙ୍କୁ ବାଧା ନ ହେଉଥିଲେ ତୁମେ ଆଜି ବାବୁ ହୋଇ ବୁଲୁ ନ ଥାନ୍ତ । ଜଣେ ଲେଖକ କହିଅଛନ୍ତି, 'ଗୋଟିଏ ବଡ଼ଲୋକର ଘର କେତେ ଭଙ୍ଗା ଘରର ସମଷ୍ଟି ।' କିନ୍ତୁ ଆମ୍ଭେମାନେ କହୁଁ, ଗୋଟିଏ 'ସଭ୍ୟ ବାବୁ' ସହସ୍ର ସହସ୍ର 'ଅସଭ୍ୟ' ମୂଲିଆଙ୍କ ଅର୍କ (Essence) । 'ମାରେ ସିପାହି, ନାମ୍ ସର୍‌ଦାର୍‌କା ।'

ନୋଟ୍ - ବାଇ ମାହାନ୍ତିଙ୍କ ଟିପାରୁ ଯଥା ଦୃଷ୍ଟଂ ତଥା ଲିଖିତଂ । 'ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବ, ଲେଖନକାର ଦୋଷ ନ ଧରିବ ।' ମତାମତ ନିମନ୍ତେ ଆମ୍ଭେମାନେ ଦାୟୀ ନୋହୁ । (ମୁହେଁ ମୁହେଁ ଦାୟିତ୍ୱଟା ଏଡ଼େ ସହଜରେ ଉଡ଼ି ଯାଉଥିଲେ ଅବଶ୍ୟ କଥା ନ ଥିଲା ।) ପାଠକ ଅବଧାନ ! କ୍ଷମା କରିବେ । ଆମ୍ଭେମାନେ ବାଇ ମାହାନ୍ତିଙ୍କ ସାମାନ୍ୟ ପ୍ରତିଜ୍ଞାଗୁଡ଼ିକ ନଜିର୍‌ଦ୍ୱାରା ବୁଝାଇବା ପାଇଁ ଚେଷ୍ଟା କରିଥାଆନ୍ତୁ । କିନ୍ତୁ ବୁଝିଲେ କି ନା ! ଆମ୍ଭେମାନେ ହେଲୁଁ ଲେଖନକାର, ସୁତରାଂ ଆମ୍ଭମାନଙ୍କ ଦାୟିତ୍ୱଟା ବଡ଼ ଜବର । ସବୁ କଥା ବୁଝାଇ ଉଦାହରଣ ଦେଇ ଲେଖିଲେ ଦଣ୍ଡବିଧିର ଦଫାମାନ ସରିଯିବ । ଏଥି ନିମନ୍ତେ ବାଇ ମାହାନ୍ତିଙ୍କ କଥାଗୁଡ଼ିକ ହେଡ଼ିଙ୍ଗ ମାରି ଦେଇ ବସିଲୁଁ । ଟୀକାକାରମାନଙ୍କ ଦାନାରେ ଧୂଳି ଦେବା ଆମ୍ଭମାନଙ୍କ କର୍ତ୍ତବ୍ୟ ନୁହେଁ । ଆପଣ ଥରେ କଟକ ପ୍ରିଣ୍ଟିଙ୍ଗ୍ କୋମ୍ପାନୀ କୋଠା*ର ସାମନାକୁ ଗଲେ ଆମ୍ଭମାନଙ୍କର ଉପସ୍ଥିତ ଅବସ୍ଥା ଉତ୍ତମରୂପେ ହୃଦୟଙ୍ଗମ କରିପାରିବେ । ସାମନାରେ ଜେଲଖାନା, ଡାହାଣ ତରଫକୁ ପାଗଲାଖାନା, ବାଆଁ ତରଫରେ ଅଦାଲତ, ଖଣ୍ଡେଦୂର ଗଲେ ଭୂତଖାନା; ମଝିରେ ଡାକ୍ତରଖାନା,

* ଗୌରୀଶଙ୍କର ରାୟଙ୍କ ସମ୍ପାଦିତ ଉତ୍କଳ ଦୀପିକା ଏହିଠାରୁ ପ୍ରକାଶ ପାଏ । ଏହା ଏକ ଯୌଥ କମ୍ପାନୀ ।

ନିକଟରେ ଅଦାଲତ ପୋଖରୀ, ନାଚଖାନା, ଗାଡ଼ିଖାନା, ତାଡ଼ିଖାନା ଇତ୍ୟାଦି ଇତ୍ୟାଦି । ଏତେ ଆଡ଼କୁ ନଜର ରଖି କାମକରିବା କଥା କଅଣ ମୁହଁରେ ପଡ଼ିଛି ? 'ବଟେଇ ଦିଏ ପରକୁ, ବୁଦ୍ଧି ନ ଆସେ ଘରକୁ ।' ଟିକିଏ ଗୋଡ଼ ଖସିଗଲେ କିଏ କେଉଁଆଡ଼େ ଶାଗୁଣା ପରି ଟାଣିନେବେ, ଠିକଣା ନାହିଁ । କିଏ କହିବ, ହାତରେ ମାର, କିଏ କହିବ ଭାତରେ ମାର, କିଏ କହିବ ମୂଳୁଁ ମାର, କିଏ ଲଡୁ ଖୁଆଇ ମାରିବେ କିଏ ବିଷ ଖୁଆଇ ମାରିବେ । ଆପଣମାନେ ହସୁଥିବେ, ବିଚାରୁଥିବେ, 'ମୁଖରସ୍ତତ୍ର ହନ୍ୟତେ ।' ଆଚ୍ଛା ହେଲା ! ପା ।' ଯୁଦ୍ଧରେ ଶତ୍ରୁପକ୍ଷ ବାଜାଦାରଙ୍କୁ ପହିଲେ ହାଣ । ଅତି ତାରିଫ ହେଲା ବେଳକୁ ଯେ ଆମ କଥା ଷୋଳବିଶ୍ୱା । ଏଥିରେ କରୁ କଅଣ ? ତେବେ ଆମ୍ଭେମାନେ ବି କମ୍ ଜନ୍ତୁ ନୋହୁ । ବାଜୁ ନ ବାଜୁ ଆମ୍ଭେମାନେ କି ଖାଲି ଖାଲି ଛାଡ଼ି ଦିଅନ୍ତୁ ? ପଠତୋ ନାସ୍ତି ମୂର୍ଖତ୍ୱଂ ଜପତୋ ନାସ୍ତି ଦୁର୍ଗତିଃ । 'ମାନିଲେ ଦେବତା, ନ ମାନିଲେ ପଥର ।' (ଇତି ଲେଖନକାରସ୍ୟ କୈଫିୟତ୍ ।)

ଉ. ସା. / ୬ଷ୍ଠ ଭାଗ / ୫ମ ସଂଖ୍ୟା / ଭାଦ୍ର / ୧୩୦୯ ସାଲ

## ଷଷ୍ଠ ବିଦ୍ୱା

ଆଜିକାଲି ନବ୍ୟ ସଭ୍ୟତା ଯେପରି ମାଘମାସ କୁହୁଡ଼ି ଭଳି ଭାରି ଚଞ୍ଚଳ ମାଡ଼ିଆସୁଛି, ଏଥିରେ ଭୟ ହେଉଛି ଯେ, ମରହଟ୍ଟୀ ଅମଳର କଥା ସବୁ ଏ ଅମଳରେ ବୁଡ଼ିବ । ଆଜିକାଲି ଶିକ୍ଷିତ ପିଲାମାନଙ୍କର ମରହଟ୍ଟିଆ ବୁଢ଼ାଙ୍କ ପ୍ରତି ଗୋଟିଏ ଭାରି ଘୃଣା । ବାଇ ମାହାନ୍ତିଙ୍କର ଗୋଟାଏ ବଡ଼ ଆଶା ଦୁରାଶାରେ ପରିଣତ ହେଉଥିଲା । ଦୈବଯୋଗକୁ ଗୋଟାଏ ସୁବିଧା ହାବୁଡ଼ରେ ପଡ଼ିଗଲା । ଜଣେ ଢଗଢମାଳି ଗୁଡ଼ାଏ ଗୋଟାଇ ଖଣ୍ଡେ ବହି ଛପେଇ ନାଆଁ କରି ନେଲେ । ଆଉ ଜଣେ ମାଇପଙ୍କଠାରୁ କାହାଣୀଗୁଡ଼ାଏ ଆଣି ବହି କରି ଭାରି ଗୋଟାଏ ବାହାଦୁରି ପାଇଗଲେ । ଏହି ନଜିରର ଦ୍ୱାହି ଦେଇ ମରହଟ୍ଟିଆ ଚାଲିଚଳଣ କେତେଗୁଡ଼ିଏ ଏକାଠେଇଁ କରି ଖଣ୍ଡେ ବହି ବାହାର କରି ସାହିତ୍ୟ-ଜଗତରେ ବିଖ୍ୟାତ ହେବାର ଆଶା ମାହାନ୍ତିଙ୍କୁ ଗତ କେତେ ଦିନ ହେଲା ଗ୍ରାସିଅଛି । ଏକେ ବୃଦ୍ଧ, ତା ଉପରେ ଫେର୍ ମରହଟ୍ଟୀ, ଏଥିରେ କିଛି ରୋଗ ଧରିଲେ ଶୀଘ୍ର ଛାଡ଼ିବା କଷ୍ଟ । ସେହି ଆଶାର ବଶବର୍ତ୍ତୀ ହୋଇ ସେ ପାଞ୍ଜିରେ ଓ ଏ ହେଡ଼ିଙ୍ଗ୍‌ରେ କେତେଗୁଡ଼ିଏ ବିଷୟ ଓ ତହିଁର ସମର୍ଥକ ଯୁକ୍ତି ଲିପିବଦ୍ଧ କରିଅଛନ୍ତି । ସେ ପୁସ୍ତକ କୌଣସି ମହାପୁରୁଷଙ୍କ ନାମରେ ଉତ୍ସର୍ଗ କରିବା ତାଙ୍କର ଆକାଙ୍କ୍ଷା । ସେ ଖୁବ୍ ବିଶ୍ୱାସଯୋଗ୍ୟ ବ୍ୟକ୍ତିଙ୍କଠାରୁ ଶୁଣିଅଛନ୍ତି ଯେ, ଆଜିକାଲି ପାଠ୍ୟପୁସ୍ତକ ଛଡ଼ା ଅନ୍ୟ ବହି ଛପାଇବା ହାତରୁ ଖାଇ ବଣିଜ ଶିଖିବା ପରି । ପଦେ ଦି' ପଦ 'ପଦ୍ମତୋଳା' ମନ୍ତ୍ର ବୋଲି, ଫୁଙ୍କି ଆଖିରେ ଧୂଳି ପକାଇପାରିଲେ ନିଶ୍ଚିନ୍ତ । ଯେ ଖର୍ଚ୍ଚଟା ଦେବେ ତାଙ୍କର ଗବଗଛିଆ ପ୍ରଶଂସାରେ ସନ୍ତୋଷ,

ତୁମ୍ଭର ତ ସହଜେ ପୁସ୍ତକ ପ୍ରକାଶ କାର୍ଯ୍ୟ ସିଦ୍ଧି । କିନ୍ତୁ ବାଇ ମାହାନ୍ତିଙ୍କର ପଦ୍ମତୋଳା ବୋଲିବାର କ୍ଷମତାଟି ନାହିଁ ବୋଲି ସେ ହତୋଦ୍ୟମ ହୋଇ ବସିଛନ୍ତି । ଏ ବିଷୟରେ କାହାରି ପରାମର୍ଶ ନେବାକୁ ମଧ୍ୟ ତାଙ୍କର ବିଶେଷ ଆପତ୍ତି । ଭୟ, କାଳେ କିଏ ତାଙ୍କଠାରୁ ଏ ସୂତ୍ରଟି ଶୁଣିଯାଇ ଦିନରାତି ଲାଗିପଡ଼ି ଯେବେ ମରହଟ୍ଟିଆ କଥାଗୁଡ଼ାକ ଦି' ହାତରେ ଗୋଟେଇ ତାଙ୍କ ବହି ଛପା ହେବା ଆଗରୁ ଛପାଇ ଦିଏ, ତାହାହେଲେ ସର୍ବନାଶ - ଆୟେ କ୍ଷତି, ପ୍ରାଣେ ପୀଡ଼ା । ଆମ୍ଭେମାନେ ବହୁତ କଷ୍ଟରେ ତାଙ୍କୁ କେତେ ବୁଝାଇ ସୁଝାଇ କହିଲୁଁ ଯେ, ପାଞ୍ଜି ବିଡ଼ାକରେ କଅଣ ଅଛି ନ ଦେଖିଲେ କିଏ କାହିଁକି ପଇସାଟିଏ କାଢ଼ିବ ? ଅତି କଷ୍ଟରେ ପାଞ୍ଜିରୁ ଯୋଡ଼ିଏ ପତ୍ର ସେ କାଢ଼ି ଦେଇଅଛନ୍ତି । ତାହାର ସାର ସଙ୍କଳନରୁ ପାଠକେ ବାଇ ମାହାନ୍ତିଙ୍କ, ତିଭାର ଜାଜ୍ୱଲ୍ୟମାନ ପ୍ରମାଣ ପାଇବେ । ଆମ୍ଭମାନଙ୍କର ଏକାନ୍ତ ଆଶା ଯେ, ଏହି ଆଦର୍ଶକୁ ସାଗ୍ରହ ପଢ଼ି ଅନ୍ତତଃ ଦଶ ବାର ଜଣ ଉକ୍ତ ପୁସ୍ତକ ମୁଦ୍ରଣର ବ୍ୟୟ ବହନ କରିବା ଅନୁଗ୍ରହ ପ୍ରାର୍ଥନା କରି ତାଙ୍କୁ ଆବେଦନ କରିବେ । ବାଇ ମାହାନ୍ତି ପୂର୍ବରୁ କହି ରଖିଅଛନ୍ତି ଯେ, ନିଲାମରେ ଯାହାଙ୍କ ଡାକ ବେଶି ହେବ (ବାଇ ମାହାନ୍ତିଙ୍କର ତାଙ୍କ ଉପରେ ପୂର୍ବରୁ କିଛି ଅହନ୍ତା ନ ଥିଲା କିମ୍ବା ସେ ନାବାଳକ, ବାତୁଳ ବା ଦେବାଳିଆ ହୋଇ ନ ଥିଲେ) ତାହାଙ୍କୁ ଉକ୍ତ ଅଧିକାରର ସନନ୍ଦ ଦିଆଯିବ । ବାଇ ମାହାନ୍ତିଙ୍କର ଆଉ ଗୋଟିଏ ଉଚ୍ଚ ଉଦ୍ଦେଶ୍ୟ ମଧ୍ୟ ଅଛି । କେବଳ ସ୍ୱାର୍ଥ ଲାଳସାରେ ବାଇ ମାହାନ୍ତି ଉତ୍ତେଜିତ ନୁହନ୍ତି । ଏ ଅଞ୍ଚଳରେ ଯେଉଁ ଯେଉଁ ମରହଟ୍ଟୀ ପୁଂ ଓ ସ୍ତ୍ରୀ ନିକମାମାନେ ମାର୍ଜିତ ଓ ଶିକ୍ଷାପ୍ରାପ୍ତ ସଭ୍ୟପୁତ୍ରମାନଙ୍କ ଚକ୍ଷୁଃଶୂଳ ଓ ସଂସାରଶୂଳ ହୋଇଛନ୍ତି, ସେହି ବୃଦ୍ଧ ବୃଦ୍ଧାମାନଙ୍କ ନିମନ୍ତେ ଶ୍ରୀକ୍ଷେତ୍ର ସ୍ୱର୍ଗଦ୍ୱାର ନିକଟରେ କିମ୍ବା ଗଙ୍ଗାକୂଳ ନିମତଲା ଘାଟ ନିକଟରେ ଗୋଟିଏ ଆଶ୍ରମ ନିର୍ମିତ ହେବ । (ସବୁ ବିଷୟରେ ହାତ ଦେବା ପୂର୍ବରୁ ଭବିଷ୍ୟଦ୍ ପ୍ରତି ଦୃଷ୍ଟି ରଖି ବରାଦ କରିବା ସିନା ମନୁଷ୍ୟତ୍ୱ ।) ଏ ପୁସ୍ତକର ଲାଭ ସେହି ଆଶ୍ରମ ନିର୍ମାଣ ଓ ତଦ୍‌ପରିଚାଳନରେ ବ୍ୟୟିତ ହେବ । ଏହା ଏକପ୍ରକାର ନିଶ୍ଚିତ । ଅତଏବ ଶୁଣନ୍ତୁ -

## ମରହଟ୍ଟୀଙ୍କ ଯାଦଦସ୍ତ

୧. ବାଳକମାନେ ଅଭିଭାବକମାନଙ୍କ ସମ୍ମୁଖରେ ସିଧା ହୋଇ ଠିଆ ହେବେ ନାହିଁ, ଜୋତା, ଖଡ଼ମ, ଛତା ଇତ୍ୟାଦି ବ୍ୟବହାର କରିବେ ନାହିଁ, ଉଚ୍ଚ ସ୍ୱରରେ ବାକ୍ୟ ଉଚ୍ଚାରଣ କରିବେ ନାହିଁ । ଏହା କଲେ ଅଭିଭାବକମାନଙ୍କ ସମକକ୍ଷ ବୋଲି ସ୍ପର୍ଦ୍ଧା ଦେଖାଯିବ ।

୨. ଯୁବକମାନେ ଗୁରୁଜନମାନଙ୍କ ଉପସ୍ଥିତିରେ ଆପଣା ଅପତ୍ୟମାନଙ୍କୁ ଛୁଇଁବେ ନାହିଁ; କାରଣ, ଅପତ୍ୟମାନେ ହେଲେ ପାଶବବୃତ୍ତିଚର୍ଯ୍ୟାର ଫଳ । ମୁରବିମାନଙ୍କ ଆଗରେ

ଆପଣା ପିଲାକୁ ଧରିବା ଓ ସେମାନଙ୍କୁ ମୁହେଁ ମୁହେଁ କହିଦେବା ଯେ, ଆମ୍ଭେମାନେ ପାଶବ ବୃତ୍ତି ଚରିତାର୍ଥ କରିଅଛୁଁ, ଏକା କଥା । ଏହା ଅଭଦ୍ରତା ଓ ନିର୍ଲଜତା ।

୩. ପୁରୁଷମାନେ ଓ ବିଶେଷତଃ ଯୁବକମାନେ, ଗୃହର ଅଳ୍ପବୟସ୍କ ବାଳକବାଳିକାମାନଙ୍କ ସମ୍ମୁଖରେ ସୁଦ୍ଧା ଆପଣା ସ୍ତ୍ରୀ ସଙ୍ଗେ ଦେଖା କିମ୍ବା କଥାବାର୍ତ୍ତା କରିବେ ନାହିଁ । ତାହାହେଲେ ଶିଶୁମାନେ ବାଲ୍ୟାବସ୍ଥାରୁ ବିକୃତ ହୋଇଯିବେ । ଅର୍ଥାତ୍ ନିଜ ସ୍ତ୍ରୀ ସଙ୍ଗେ ମନୁଷ୍ୟର ସମ୍ପର୍କ କେବଳ ଗୋଟାଏ ଜଘନ୍ୟ କାର୍ଯ୍ୟ ହେତୁ ସିନା । ସବୁବେଳେ ସେମାନଂ ସଙ୍ଗେ ପିଲାମାନଙ୍କ ଆଗରେ କଥାବାର୍ତ୍ତା ବା ଦେଖା କଲେ ପିଲାମାନେ କଅଣ ବିଚାରିବେ ? ତା ପରେ ସ୍ତ୍ରୀମାନେ ସବୁ ଅନର୍ଥର ମୂଳ । ତାଙ୍କୁ ଯେତିକି ଦୂରରେ ରଖିବ ତେତିକି ମଙ୍ଗଳ ।

୪. ସ୍ତ୍ରୀମାନଙ୍କୁ ଶିକ୍ଷା ଓ ସ୍ୱାଧୀନତା ଦେବା ସର୍ବତୋଭାବରେ ନିଷିଦ୍ଧ ଓ ଅନିଷ୍ଟକର । (ଏହାର କାରଣ ପାଞ୍ଜିର ପୂର୍ବ ପତ୍ରମାନଙ୍କରେ ମିଳିବ ।)

୫. ସ୍ତ୍ରୀମାନଙ୍କୁ ଭାରି ଓଜନର ଅଳଙ୍କାର ପିନ୍ଧାଇବ । ଅଳଙ୍କାରର ଉପକାରିତା ବିଷୟ ପାଞ୍ଜିରେ ପୂର୍ବ ପତ୍ରମାନଙ୍କରେ ଲେଖା ଅଛି । ତା ଛଡ଼ା ସ୍ତ୍ରୀମାନେ ସ୍ୱଭାବତଃ ଚପଳା ଓ ଦୁଷ୍ଟା । ଦୁଷ୍ଟ ମଇଁଷି, ବଳଦ, ଭାଲୁ, ମାଙ୍କଡ଼ ଇତ୍ୟାଦିଙ୍କୁ ଜବତ କରିବାକୁ ଯେପରି ନାକ, କାନ ଫୋଡ଼ିବା ଓ ବେକରେ ଘଣ୍ଟି ବାନ୍ଧିବା ଦରକାର, ସ୍ତ୍ରୀମାନଙ୍କ ପ୍ରତି ମଧ ତାହା ଦରକାର । ଇଂରେଜୀରେ ଗୋଟିଏ ଗପ ଅଛି - ମାଷ୍ଟର କହୁଥିଲେ - ମୂଷାଯାକ ଦିନେ ବିଚାରିଲେ ଯେ ବିରାଡ଼ି ବେକରେ ଘଣ୍ଟି ବାନ୍ଧିଲେ ବିରାଡ଼ି ଆସିବା ପୂର୍ବରୁ ଆମେ ଜାଣିପାରି ହୁସିଆର ହେବା । ସେହିପରି ସ୍ତ୍ରୀମାନଙ୍କଠାରେ ଘଣ୍ଟି ଦେଲେ ସେମାନେ ଆସିବା ଆଗରୁ ଘଣ୍ଟି ଶବ୍ଦରୁ ସେମାନଙ୍କ ଆଗମନ ଆଗରୁ ଜାଣିପାରି ଆପଣା ହୁସିଆରରେ ରହିପାରିବା । ବଳଦଙ୍କ ଦେହରେ ବାଛୁରୀ ବେଳୁ ଦାଆ ତତେଇ ବାଣୀ କାଟି ଲୁହା ଦେବାକୁ ହୁଏ, ସ୍ତ୍ରୀମାନଙ୍କଠାରେ ସେହିପରି ଚିତା କୁଟାଇବା ଦରକାର ।

୬. କୌଣସି ବିଷୟରେ ସ୍ତ୍ରୀମାନଙ୍କର ମତ ପଚାରିବ ନାହିଁ କି ସେମାନଙ୍କ ପରାମର୍ଶରେ କାର୍ଯ୍ୟ କରିବ ନାହିଁ । ନ ଜାଣି ତ୍ରିକାଳଜ୍ଞ ଋଷି କହିଯାଇଛନ୍ତି, 'ସ୍ତ୍ରୀ ବୁଦ୍ଧିଃ ପ୍ରଳୟଙ୍କରୀ ?' ଗୃହର କୌଣସି କାର୍ଯ୍ୟରେ ସେମାନଙ୍କୁ କର୍ତ୍ତୃତ୍ୱ ଦେବ ନାହିଁ । 'ସ୍ତ୍ରୀନାୟକା ବିନଶ୍ୟନ୍ତି' ଶ୍ଳୋକଟା ଅବଶ୍ୟ ଘୋଷା ପାଠ ।

୭. ଘର କଳାରୁ ଘରଟି କନ୍ଧ କୁଡ଼ିଆ ନୁହେଁ, କଳଙ୍କ କୁଡ଼ିଆ । ଅତଏବ କେତେ କଥାରେ ଆଖି ନ ବୁଜି ଦେଲେ ଚଳିବ ନାହିଁ । ଗୋଳିଆ ମିଶା ହେଉଅଛି ପୃଥିବୀର ନିୟମ । ଯେତେ ତରକାରି, ଘାଣ୍ଟିଆ ତରକାରି ବା ମହୁର ତଳର ସମସ୍ତେ । ସବୁ କଥା ଚଳେଇ ନେଲେ ସିନା ଚଳିବ । ତୁମେ ତୁନି ହୋଇ ରହିଲେ ବଳେ ସମସ୍ତେ ତୁନିତାନି ହୋଇଯିବେ । 'ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି ।'

୮. ଯାହା ଇଚ୍ଛା ତାହା ହେଉ, ସର୍ବଦା ଘର ଭିତରେ ଅନର୍ଥ, ବାଦୀପାଲା, ଚଅଁରଡିହ, ଠାକୁରାଣୀ ବୋଦାହଣା ସବୁ ହେଉଥାଉ, ଭିନ୍ନେ ହେବାର ନାମ ଧରିଲେ ମହାପାପ ! ଘର ଭିତରେ ପଛେ ନିତି ଯାହା ହେଉ, ଭିନ୍ନେ ହେଲେ ଆପଣା ବଂଶର ଗୁମରତକ ପଦାକୁ ବାହାରି ପଡ଼ିବ । ଲୋକେ କହିବେ, ଆରେ ଅମୁକ ଲୋକ ଆଜିଯାଏ ଗୋଟାଏ ଘର କରୁଥିଲା, ଏବେ ସେ ପୁରୁଣା ଘରଟି ଭାଙ୍ଗିଗଲା । ମୁହଁ ମାଡ଼ି ପଡ଼ି ରହିଲେ ତ ଦୁର୍ଭିକ୍ଷ ସୁଦ୍ଧା ଛାଡ଼ି ପଳେଇବ । ଘର ଭିତରେ ନିତି ବିବାଦ ଲାଗିଲେ ସିନା ଘରଲୋକ କାହାର କିମିତି ଘଡ଼ିଏ ଖଣ୍ଡେ ମନ ବ୍ୟସ୍ତ ହେବ, ତା ପଛକେ ସୁହାଇ ଯିବ । କିନ୍ତୁ ଭିନ୍ନେ ହେଲାରୁ ପଦାଲୋକ ହସିବେ । ଆମେ କାଲି ଯାହାଙ୍କୁ ଚାହିଁ ହସୁଥିଲୁଁ, ଆଜି ସେ ଆମକୁ ଚାହିଁ ତାଳି ମାରିବେ । ଆମେ ଭଲଲୋକ ଡକରାରେ କେତେ ଲୋକଙ୍କ ଘରଦ୍ୱାର ବାଣ୍ଟି ଦେଇ ଆସିଛୁ, ଆଜି ପରଲୋକ ଆସି ଆମ ଘର ବାଣ୍ଟିବେ, ଏହା ତ ଏ ପ୍ରାଣରେ ସହି ହେବ ନାହିଁ । ତୁମେ ଆଖି ବୁଜିଲାରୁ ଯେ ଯାହା କରୁ, ତୁମେ ଥାଉ ଥାଉ ଯେପରି ଘରଟା ଦୋଫାଙ୍କିଆ ହୋଇ ନ ଯାଏ ।

୯. ଆଜିକାଲି କଳିକାଳ ପିଲା ଭାରି ଉଦବାର୍ଯ୍ୟ ହେଲେ, ଆମ୍ଭମାନଙ୍କ ପିଲାଦିନେ ଆମ୍ଭେମାନେ ଭାରି ଶାନ୍ତଶିଷ୍ଟ ଥିଲୁ । ଗୁରୁଜନଙ୍କୁ ଏପରି ମାନ୍ୟ କରୁଥିଲୁଁ ଯେ ସେମାନେ ଦାଣ୍ଡପିଣ୍ଡାରେ ବସିଥିଲାବେଳେ କେହି ଯୁବକ ବା ବାଳକ ଦାଣ୍ଡବାଟେ ନ ଯାଇ ବାଡ଼ିପଟେ ଯିବାଆସିବା କରୁଥିଲୁଁ । ତାଙ୍କ ପାଟି ଶୁଣିଲେ ହାଣ୍ଡିଶାଳ କଣରେ ଯାଇ ଲୁଚୁଥିଲୁଁ । ଏବ କଥା ତ ଆଗରେ ଦେଖା ହେଉଛି ।

୧୦. ଆଜିକାଲି ପିଲାଏ ସବୁ କଲେ, ଲଣ୍ଡା ହେଲେ, ଅଖାଦ୍ୟ ଖାଇଲେ, ନାନାଦି ଅକାର୍ଯ୍ୟମାନ କଲେ, ଦିଅଁ ଦେବତାଙ୍କ ଠାରେ ଭକ୍ତି ରଖିଲେ ନାହିଁ । ଆମ ବଡ଼ବଡ଼କେ କହିଅଛନ୍ତି, 'ମଣିଷ ଯାକରେ ଲଣ୍ଡା ବିଟୋଳ' ସେମାନେ କଅଣ ଓଲମା ଥିଲେ ?

୧୧. ଘରର ପିଲା ଓ ସ୍ତ୍ରୀମାନଙ୍କ ଆଗରେ ସେମାନଙ୍କୁ କେଭେ ପ୍ରଶଂସା କରିବ ନାହିଁ । ତାଙ୍କୁ ସବୁବେଳେ ଆଖି ଦେଖାଇବ, ତା ନ ହେଲେ ସେମାନଙ୍କ ମୁହଁ ବଢ଼ିଯିବ, ମନ ମୋଟ ହୋଇଯିବ । ଯେତେବେଳେ ସେମାନଙ୍କୁ ଦେଖିବ, ସେତେବେଳେ ନିଙ୍ଘେଁ ହେଲେ ଆକଟ କରି ପଦେ ଅଧେ ମୁରବିପଣିଆ କରି କହିବ । ତା ନ ହେଲେ ଦିନାକେତେ ଗଲାରୁ ସେମାନେ ତୁମକୁ ଆଦୌ ମାନିବେ ନାହିଁ । ଚାଣକ୍ୟ କହି ଯାଇ ଅଛନ୍ତି, 'ଲାଳନେ ବହବୋ ଦୋଷାସ୍ତାଡ଼ନେ ବହବୋ ଗୁଣା' ଆମ ପିଲାଦିନେ ବାପା ଓ ଅବଧାନମାନେ ଏହି କଥାଟି ପାଳୁଥିଲେ ବୋଲି ଆମେ ଦିନରାତି ମାଡ଼ ଖାଇ ଗୟାଁ ହେଇଥିଲୁ । ଆମ ପିଲାଦିନରେ ମାଟିବଂଶ ଅବଧାନିଆ ମଡୁଆଶାଙ୍କୁଳି, ନାକବାଳଧରା, ମୁଣ୍ଡୁଳା, ଉଠବସ, ଙ୍କାଉଁଳିବେତ, ପଛବୁହାବନ୍ଧା, ଏକଗୋଡ଼ିଆ, ହରିକାଠ, ନାକଘସା, ଖରାରେ ଠିଆ, କାନ୍ଥଚଉକି, ପୁଚିଆ, ଶୂନ ଏସବୁ କେଉଁଆଡ଼େ ଗଲା ! ସେହିଯୋଗୁଁ ସିନା ଆଜିକାଲି ପିଲାମାନେ ସୁନାଫୁଟି ଅଗାଡ଼ି ପାଲଟି ଯାଉଅଛନ୍ତି ।

୧୨. ଅଧୀନସ୍ଥ ବାଳକମାନଙ୍କୁ ଜାବତା କଲାବେଳେ ସାବଧାନ ଥିବ - ଯେପରିକି ସେମାନେ କିଛି ଯୁକ୍ତି ନ ଦେଖାନ୍ତି କିମ୍ବା ପାଟି ନ ଫିଟାନ୍ତି । ଆଜହୁଁ ପାଟି ଫିଟିଲେ ବୁଢ଼ାଦିନେ ତୁମ୍ଭଙ୍କୁ ଘରୁ ବାଡ଼େଇ ବାହାର କରିଦେବ । ତୁମେ ଯାହା କହିଯିବ, ସେମାନେ ଜଣେ ଲେଖାଏଁ ମଣିଷ ହେଲେଣି ଯେ, ସେଥିରେ ଜବାବସୁଆଲ କରିବେ । ଯେବେ ସେମାନେ କାରଣ ଦେଖାନ୍ତି, ତାହାହେଲେ ତୁମ୍ଭର ମୁରବିପଣିଆ ରହିଲା କଅଣ ? ମୁରବି ହେଲେ ଅବଶ୍ୟ ପଦେ ଅଧେ ଜାବତା କରିବାକୁ ହୁଏ; ଏହା ସନାତନ ସତ୍ୟ ।

୧୩. ଯେଉଁ କଥା ବୁଝିଲେ ବା ନିଷ୍ପତ୍ତି କରି ଦେଲେ ନିଜର କ୍ଷତି ହେବ ବା ନିର୍ବୁଦ୍ଧିତା ଜଣାପଡ଼ିବ ବା ଦୋଷ ଧରା ପଡ଼ିବ, ସେ କଥା 'ହଁ ବୁଝିବା' ବୋଲି ବରାବର ଟାଳ ମଟାଳ କରୁଥିବ । 'ଆଜି ଦେବା ମାସକେ, କାଲି ଦେବା ସମ୍ବତ୍ସରେ, ଦେବା ଦେବା କହୁଥିବା ଯାବଚ୍ଚନ୍ଦ୍ରଦିବାକର ।' ଗୃହଚାଳନରେ ଏ ନିୟମଟି ସର୍ବଦା ସ୍ମରଣ ରଖି କାର୍ଯ୍ୟ କଲେ ଅନେକ ଲାଭ ।

୧୪. ଯେତେ ଅପାରଗ ହେଲେ, ଯେତେ ନ ଚଳାଇ ପାରିଲେ ସୁଦ୍ଧା ଆପଣା ଘରର ଅଧିକାର କେବେହେଁ ଗୃହ ମଧ୍ୟରେ ଅଧୀନ ଅନ୍ୟ ବ୍ୟକ୍ତି ଉପରେ ହେବ ନାହିଁ । ଆପଣା ଅଧିକାର ପରକୁ ଦେଲେ ଆପେ ହଟହଟା, ପିଲାଏ ପଛକୁ ନିକମା ବୋଲି ଆଉ ତୁମ ଖବର ବୁଝିବେ ନାହିଁ । ଯଦି ଈଶ୍ୱରଙ୍କ କୃପାରୁ ତୁମ୍ଭର ମାଲଖାନା ହୁଏ, ତେବେ ଅନ୍ତତଃ ବାଲିଶଯ୍ୟା ପୂର୍ବରୁ ତହିଁର ଚାବି ଯେପରି ପିଲାମାନଙ୍କ ହସ୍ତଗତ ନ ହୁଏ । ସେତକ ଗଲେ ପ୍ରାଣ ଯିବାଠାରୁ ବଳି ପଡ଼ିବ ।

୧୫. ସାବଧାନ ଥିବ, ଯେପରି ତୁମ୍ଭର ପିଲାମାନେ ବନ୍ଧୁମାନଙ୍କ ପ୍ରତି ବିଶେଷ ଆସକ୍ତ ନ ହୁଅନ୍ତି । ତାହାହେଲେ ସେମାନେ ସ୍ତ୍ରୀମାନଙ୍କ କଥାରେ ପଡ଼ି ବୁଢ଼ାଦିନେ ତୁମ୍ଭଙ୍କୁ ହଇରାଣ କରିବେ । ବେଳ ଥାଉଁ ଥାଉଁ ପିଲାମାନଙ୍କର ସେ ଅଭ୍ୟାସଟା ଯେପରି ଭାଙ୍ଗି ଯାଇଥାଏ, ସେଥିପ୍ରତି ସର୍ବଦା ଚେଷ୍ଟା କରିବ । 'ଯତ୍ର ସ୍ତ୍ରୀ କିତବୋ ବାପି ବାଲୋ ବା ସ୍ୟାଦ୍ ପ୍ରଶାସିତ', 'ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟମହତି, ଘୃତକୁମ୍ଭସମା ନାରୀ' ଇତ୍ୟାଦି ଶ୍ଳୋକଗୁଡ଼ିକ ପିଲାଦିନୁ ସେମାନଙ୍କ ହୃଦୟଙ୍ଗମ ଓ କଣ୍ଠଗମ କରାଇଥିବ ।

୧୬. ଘରେ ଯେ ଯାହା କରୁ ଭାବନା ନାହିଁ, କିନ୍ତୁ ଘର କଥାଗୁଡ଼ାକ ଯେପରି ପଦାକୁ ନ ଫିଟେ । କର୍ପୂର ଯାଉ, ହେଲେ କନା ଖଣ୍ଡିକ ଥାଉ । 'ନବ ଗୋପ୍ୟାନି କାରୟେତ୍ ।' କଥାଗୁଡ଼ାକ ଫିଟିଗଲେ ଭଗାରି ହସିବେ । ଆଉ ମଧ୍ୟ ଆମ ନିଜ ଘରକଥା ଫିଟିଗଲେ ଆମର ଦାଣ୍ଡପିଣ୍ଡାରେ ଓ ନିଶାପରେ ବସି ପରୋପଦେଶେ ପାଣ୍ଡିତ୍ୟ ଚଳିବ ନାହିଁ । ତାହାହେଲେ ଜୀବନରେ ଆଉ ରସ ରହିବ କଣ ?

୧୭. ବେଶି ଦିନ ରହିଲେ ବେଶି କଥା ଦେଖନ୍ତି । ଆଗେ ଆମେ ପରଙ୍କୁ ଯେଉଁ ସବୁ କଥାରେ ଉଲ୍ଲାଖ ଦେଉଥିଲୁଁ, ଏବେ ଆମରି ଘରେ ସେହିତା ହେଲା । ଆଗେ

ପରପିଲାଏ ଇସ୍କୁଲରେ ଅଙ୍ଗରେଜୀ ପଢ଼ିଲେ, ଚଢ଼ଉ ଜୋତା ମାଡ଼ିଲେ, ଲଣ୍ଡା ହେଲେ, ଖିରସ୍ତାନ ହେଲେ ବୋଲି ତାଙ୍କୁ ଏକଘରକିଆ କରୁଥିଲୁ । ଏବେ ସବୁ ଆପଣା ଘର ଭିତରେ ଦେଖି ଆଖି କାନ ଖୋଷି ଘରକଣରେ ମୁହଁମାଡ଼ି ଶୋଇବାକୁ ମନ ହେଉଛି । 'କୁଳକ୍ଷୟ ବେଳକୁ ଘୋଡ଼ାମୁହାଁ ପୁଅ ଜାତ ।'

୧୮. ଏବେ ଗୋଟାଏ କି ବାୟୁ ଉଠିଛି, ଯେଝା ହାତରେ ଯେ ଚଉଦ ପା । ଏ କହୁଛି ମୁଁ ବଡ଼, ସେ କହୁଛି ମୁଁ ବଡ଼ । ଆମ ବାପା ବଡ଼ବାପା ତ ଅଙ୍ଗରେଜୀ ପଢ଼ି ନ ଥିଲେ; ଏଣିକି ଆମ ପିଲାଏ ପଢ଼ିଲେ । ଏଥିରୁ ଅବା ଆଜିକାଲି ପିଲାଏ ବଡ଼ ହୋଇ ଯାଉଥିବେ । ଦି' ଅକ୍ଷର ଅଙ୍ଗରେଜୀ ପଢ଼ିଲେ ବୋଲି ତାଙ୍କ ଲେଖାରେ ଇନ୍ଦ୍ର ଚନ୍ଦ୍ର ନାହାନ୍ତି । ମୁରବିଙ୍କ ଆଗରେ ଅଙ୍ଗରେଜୀ କଥାଭାଷା ହେବେ । ଆମେ କଅଣ ପଢ଼େଇଥିଲୁ ଆମ ଆଗରେ ଏଣ୍ଡିମେଣ୍ଡି କରି ଗାଳି ଦେବାକୁ ?

୧୯. 'ସର୍ବେ ହୋଇବେ ଏକାକାର, ନ ଥିବ ବେଦର ବିଚାର', ମାଳିକାରେ ଯାହା ଡାକୁଥିଲା, ସେ କଣ ମିଛ ? ଏଣିକି ଏଣିକି ଘୋର ଅନ୍ୟାୟ ଘୋଟିଲା । ଦିନାକେତେ ଗଲେ ବସୁଧା ଆଉ ପାପ ଭାରା ସହିପାରିବ ନାହିଁ, ଟୁବକିନା ବୁଡ଼ିଯିବ । ପାଠ ପରା କହିଛି, 'କଲୌ ଦଶ ସହସ୍ରାଣି ବିଷ୍ଣୁସ୍ତ୍ୟଜତି ମେଦିନୀଂ, ତଦର୍ଦ୍ଧଂ ଜାହ୍ନବୀ ଗଙ୍ଗା ତଦର୍ଦ୍ଧଂ ଗ୍ରାମ ଦେବତା ।' ବନମାଳୀ ନାହାକ ମାଳିକାରେ ମଧ ପଢ଼ିଲା, 'ତରକି ଥିବୁ ଢେଁଏରକୁ, ଚଉଦ ପନ୍ଦର କେହି ନ ରହିବେ ସତ ଉପୁଜିବ ସତରକୁ ।'

୨୦. ଆଗେ ଆମ ଅମଳରେ ଦିନେ ଦିନେ ଦେହ ବ୍ୟସ୍ତ ହେଲେ ଆମେ ଘରେ ପଶି ରହୁଥିଲୁଁ । ଏବେ ପିଲାଙ୍କର କି ରୋଗ ଧରିଛି, କିଛି ନାହିଁ ବାବୁଙ୍କର ମନଟା ଖରାପ ହୋଇ ଯାଉଛି । ବାବୁ ଘରେ କବାଟ ମେଲାକରି ବସୁଛନ୍ତି, କାହାକୁ ଚାହୁଁ ନାହାନ୍ତି, ଗାଲରେ ହାତ ଦେଇ ବସୁଛନ୍ତି । କିରେ ! ଖାଉଚ, ପିଉଚ, ଖରଚ କରୁଚ, ମୁଣ୍ଡରେ ସୁନ୍ଥା କାଟୁଚ, ସବୁ କରୁଚ, ଆଉ ମନ ଖରାପ ହେଲା କେମିତି ? ଏଣେ ଘରେ ଆପଣା ବାପ ମଲାବେଳକୁ ଟୋପାଏ ଲୁହ ବୋହିବାକୁ ନାହିଁ । ଦାଣ୍ଡରେ କେଳାଙ୍କର ଗଧଟାଏ ମରିଗଲେ ବାବୁଙ୍କ ମନଦୁଃଖର ଓ ଚତୁର୍ଦ୍ଦଶପଦୀ କବିତାର ସୀମା ନାହିଁ । ବାପାଙ୍କ କ୍ରିୟା ବନ୍ଦ, ଏଣେ ଗଧ କଥା ନେଇ କବିତା କରି ବହି ଛାପୁଛନ୍ତି । ସେତେବେଳେ ଟଙ୍କା ମିଳୁଛି । ହଁ, ତାଙ୍କର କି ଚାରା । ଯୁଗର ଗତି ଏ ! ଇସ୍କୁଲିଆ ପାଠ ପଢ଼ିବାକୁ ଆମେ କଅଣ ମିଛରେ ମିଛରେ ନାହିଁ କରୁଥିଲୁଁ । ସେହି ପାଠରୁ ତ ସବୁ ବାହାରୁଛି, ମଦ ଖାଅ, ମାଉଁସ ଖାଅ, ଦେବତା ବ୍ରାହ୍ମଣ ମାନନା, ବାପାଙ୍କୁ ଗୋଇଠା ମାର, ଜାତି ବୁଡ଼ାଅ, ନିଶ ଦାଢ଼ି ରଖ, ମାଇପେ ଉପରେ ବସନ୍ତୁ ! ଘରେ ନିଜ ଜନ୍ମକଲା ମାଆଙ୍କୁ ଗୋଇଠା ମାରୁଥାଅ, ଏଣେ ସଭାସମିତିରେ 'ଦେଶମାତା'ଙ୍କ ପୂଜାପାଇଁ ପ୍ରସ୍ତାବ ପାସ୍ କରୁଥାଅ ।

୨୧. ଚାହୁଁ ଚାହୁଁ ବ୍ରାହ୍ମଣଙ୍କ ମର୍ଯ୍ୟାଦା ବୁଡ଼ିଲା । ବ୍ରାହ୍ମଣେ ଏବେ ଶୂଦ୍ରକୁ ହାତ ଟେକିଲେଣି । ଏଣିକି ଜାତି ଫାତି ସବୁ ଯିବ । ପୂର୍ବର ଧର୍ମ ଫର୍ମ ସବୁ କୁଆଡ଼େ ଚୁଲିକି ଗଲାଣି । ପାଣ ପଠାଣଙ୍କ ପଛରେ ଶହ ଶହ ଟଙ୍କା ଉଡ଼ୁଛି, ବ୍ରାହ୍ମଣ ବୈଷ୍ଣବଙ୍କ ପାଇଁ କଡ଼ାଏ ନାହିଁ । ଦେବତାଙ୍କୁ ନ ମାନିଲେ ଚାହୁଁ ଚାହୁଁ ସଂସାରଟା ଯାକ ନାସ୍ତିକ ହୋଇଗଲେ । ଏବେ 'ଦାରୀକି ଡାଲି ଚାଉଳ, ବ୍ରାହ୍ମଣକୁ ଢାବଡ଼ା ।'

୨୨. ଏବେ ପାପ ବେଶି ହେଲାରୁ ଆଗଭଳିଆ ପଞ୍ଝହତା ମରଦ ଆଉ ଦେଖା ନାହାନ୍ତି । ଲୋକେ ବେଶି ମାଇଚିଆ ହେଉଛନ୍ତି । ପୃଥିବୀରୁ ଶସ୍ୟହାନି ହେଉଛି । ଲୋକଙ୍କ ପରମାୟୁ ହାନି ହେଉଛି । ଢଗ ଅଛି - 'କୁଳ ବୁଡ଼ିବାର ଏମନ୍ତ ରୀତି, ଅଜା ଥାଉଁ ଥାଉଁ ମରୁଛି ନାତି ।'

୨୩. ଆଗେ ମାଇପେ ତ ଏତେ ସୁକୁମାର ନ ଥିଲେ । ଆଗେ ଦିନରାତି ରାନ୍ଧିବାଢ଼ି, ସଙ୍ଖୁଡ଼ି ପୋଛି, ପାଣି ବୋହି ବୋହି, ଗାଳି, ମାଡ଼ ସହି ସହି ବୁଢ଼ୀ ହେଉଥିଲେ । ଏବେ ଖଟ ପଲଙ୍କ ଘଡ଼ିଏ ଛାଡ଼ ହେବା ନାହିଁ । ସେଥିରେ ପୁଣି ଦେହ ବ୍ୟସ୍ତ ଓ ମିଜାସ ଖରାପ ।

୨୪. ଆମ ବେଳେ ଥିଲା ମୁଠାଏ ଭଲ କରି ଖାଇ, ପଦାରେ ଛଅଣିଆ ପକାଳକରା ଖଦି, ବାରଅଣିଆ ମାଠ ଖଣ୍ଡେ ହୋଇଗଲେ ଗଲା । ଅତି ବଡ଼ ହେଲେ ଟଙ୍କାକିଆ ଜାମା, ଜଥା ଯୋଡ଼େ ହେଲେ ଭାରି ବଡ଼ଲୋକିଆ ପୋଷାକ ହେଲା । କିନ୍ତୁ ଏବେ ଘରେ ଗଡ଼ି ମରୁଥାଅ ପଛକେ ପଦାରେ ଫଟକବିସିନି ନ ହେଲେ ନ ଚଳେ । ଘରେ କୁଲା ଦେଇ ଓଷା, ଏଣେ ଦାଣ୍ଡ ପିଣ୍ଡାରେ ବସି ନିଶରେ ଘିଅହାତ ମାରୁଛି । ଆଜିକାଲି ଛଇଟା ବେଶି ବଢ଼ିଛି ।

୨୫. ଆଜିକାଲି ଶିକ୍ଷିତ ବାବୁମାନଙ୍କ ମୁହଁରେ ସ୍ତ୍ରୀମାନଙ୍କୁ ପୁରୁଷମାନଙ୍କ ସମାନ ଅଧିକାର ଦିଆଯାଉ ବୋଲି ଚହଳ ପଡ଼ିଛି । ସେଥିରେ ସାହେବ ଜାତିଙ୍କ ଦ୍ୱାହି ଦେଉଅଛନ୍ତି । ଆରେ ବାବୁ ! ଥରେ ସାହେବଙ୍କ ଘର ଦେଖି ଆସିଲ ଭଲା, ସେଠେଇଁ ତ ସ୍ତ୍ରୀ ପୁରୁଷ ମଧ୍ୟରେ ବରାବର ପ୍ରଭେଦ ଅଛି । ସ୍ତ୍ରୀମାନେ ଭଲ ପାଇଜାମା କୋଟ ପିନ୍ଧୁ ନାହାନ୍ତି କାହିଁକି ? ତୁମେ ଯେତେ ବକିବାର ବକୁଥାଅ, ସ୍ତ୍ରୀମାନେ ଜନ୍ମ ହୋଇଅଛନ୍ତି ପୁରୁଷଙ୍କ ସେବାଦାସୀ । ତୁମେ ତାକୁ ବଦଳାଇବ କିପରି ? ଯେଡ଼େ ଉଚ୍ଚତମ ଜାତି ହେଲେ ମାଇପଙ୍କ ବାଳ ରହିବ, ପୋଷାକଟା ଭିନ୍ନ ରହିବ, କାନଟା ଫୋଡ଼ା ହେବ, ସେ ଜାତିଟା ପିଲା ଜନ୍ମ କରିବେ, ସେଥିରେ ଆଉ ସନ୍ଦେହ କ'ଣ ?

(ଏ ହେଡ଼ିଙ୍ଗରେ ଆଉରି କେତୋଟି ପତ୍ର ପାଞ୍ଜିରେ ଅଛି, ନମୁନା ଦେଖି ପାଠକେ ଅନୁମାନ କରିନେବେ ।)

ଉ. ସା. / ୬ଷ୍ଠ ଭାଗ / ୬ଷ୍ଠ ସଂଖ୍ୟା / କାର୍ତ୍ତିକ / ୧୩୦୯ ସାଲ

## ସପ୍ତମ ବିଡ଼ା

ବାଇ ମାହାନ୍ତିଙ୍କର ଗତ ସଂଖ୍ୟାରେ ସୂଚିତ ପୁସ୍ତକଖଣ୍ଡି କାହା ନାମରେ ଉତ୍ସୃଷ୍ଟ ହେବ, ଆଜିପର୍ଯ୍ୟନ୍ତ ସ୍ଥିର ନ ହେବାରୁ ସେ ଟିକିଏ ବ୍ୟସ୍ତ ଅଛନ୍ତି । ଉପାୟାନ୍ତର ନ ଦେଖି ଆମ୍ଭେମାନେ ତାଙ୍କୁ କିଛି ପାଥେୟର ବନ୍ଦୋବସ୍ତ କରି ଦେଇ ବିଦେଶ ଭ୍ରମଣର ବ୍ୟବସ୍ଥା କରି ବସିଲୁଁ । ଅଗତ୍ୟା ମାହାନ୍ତିଏ ମୋହବତରେ ପଡ଼ି ବାହାରିଲେ । ଆପଣମାନଙ୍କୁ ପୂର୍ବରୁ କହି ରଖିଅଛୁଁ, ବାଇ ମାହାନ୍ତି ଟିକିଏ ଚିଡ଼ିଚିଡ଼ିଆ । ଏପରି ପ୍ରକୃତି ନେଇ ଆଜିକାଲି ରେଳ ଜାହାଜ ଦିନରେ ବିଦେଶକୁ ଯାଇ ମନ କରିବା ସବୁବେଳ ଅବଶ୍ୟ ସୁବିଧାଜନକ ନୁହେଁ । ତେବେ ନ ଗଲେ କାମ ନ ଚଳେ । ଆମ୍ଭେମାନେ ଗଲେ କଲିକତା ଯାତ୍ରୀ ବନ୍ଧୁଙ୍କୁ ମାହାନ୍ତିଙ୍କ ସହଯାତ୍ରୀ କରିଦେଇ ଷ୍ଟେସନରୁ ଫେରିଆସିଲୁଁ । ବନ୍ଧୁଟି ଆମ୍ଭମାନଙ୍କୁ କହି ରଖିଲେ ଯେ, ମାହାନ୍ତିଙ୍କୁ କଲିକତାରେ ଛାଡ଼ିଦେଇ ସେ ତାଙ୍କ ଗନ୍ତବ୍ୟ ରାହା ଧରିବେ । ବାଇ ମାହାନ୍ତି ମଧ୍ୟ ଉକ୍ତ ପ୍ରସ୍ତାବରେ ସମ୍ମତ ଦେଲେ । ବିଦେଶରୁ ମଧ୍ୟରେ ମଧ୍ୟରେ ଆମ୍ଭମାନଙ୍କ ନିକଟକୁ ପତ୍ର ଲେଖିବାକୁ ବାଇ ମାହାନ୍ତିଙ୍କୁ ଯିବା ପୂର୍ବରୁ ବିଶେଷ ରୂପେ ଅନୁରୋଧ କରିଥିଲୁଁ; କିନ୍ତୁ ଏଥିମଧ୍ୟରେ କିଛି ସମ୍ବାଦ ନ ପାଇ ଆମ୍ଭେମାନେ ଏକପ୍ରକାର ବାଇ ମାହାନ୍ତିଙ୍କ ଆଶା ଛାଡ଼ିଥିଲୁଁ ! ଗୋଟାଏ 'ଆ ବଳଦ ମତେ ବିନ୍ଧ୍' ବୋଝରୁ ଖଲାସ ପାଇଲୁଁ ବୋଲି ଟିକିଏ ସୁସ୍ଥ ଥିଲୁ; କିନ୍ତୁ ମାହାନ୍ତିଏ ଆସି ମାସକଓ୍ୱାର୍ ଦାଖଲ ହେବା ନିରୂପିତ ସମୟକୁ ବିଡ଼ାଏ ପାଞ୍ଜି ଘେନି ଆମମାନଙ୍କ ନିକଟରେ ଉପସ୍ଥିତ ! ଆମ୍ଭମାନଙ୍କ ଉପରେ ଭାରି ଅଭିମାନ କଲାପରି ମୁଖଭଙ୍ଗୀରୁ ପ୍ରକାଶ ପାଉଅଛି । ପାଞ୍ଜି ବିଡ଼ାକ ଲଥ୍ କରି ଥୋଇଦେଇ ମୁଣ୍ଡରେ ହାତ ଦେଇ ଘଡ଼ିଏ ଖଣ୍ଡେ ବସିଗଲେ । ଆମ୍ଭେମାନେ ତାଙ୍କ ଆଡ଼େ ଦୃଷ୍ଟି ନ ଦେବା ପରି ହୋଇ ପାଞ୍ଜିତକ ଫିଟାଇ ଦେଖିଲୁଁ । କଲିକତାରେ ଥାଇ ତାଙ୍କର ମସ୍ତିଷ୍କ ବିକୃତ ହେଲା ପରି ପାଞ୍ଜିରୁ ଜଣାଗଲା । ଅନେକ କଥା ଅସଂଯତ ଭାବରେ ଲେଖା ଅଛି, ଅନେକ ଶିକ୍ଷିତ ଲୋକଙ୍କୁ ନାମ ଧରି ଅପମାନ କରା ହୋଇଅଛି, ଅନେକ ଦୃଶ୍ୟ ବିକଟ ଭାବରେ ବର୍ଣ୍ଣିତ ହୋଇଅଛି । ସେଗୁଡ଼ିକ ପାଠକମାନେ ଦେଖିଲେ ବାଇ ମାହାନ୍ତି ତ ବାଇ ମାହାନ୍ତି, ନିଜେ ଆମ୍ଭେମାନେ ଯେ ଥୟ ଟଳିବୁଁ, ଏପରି ବୋଧ ହେଉ ନାହିଁ । ଆଜିକାଲି ଭାରି ତାକ୍ ତରକ କାଳ । ଅସଲ କଥାଟା ଠିକଣା ହେଉ ହେଉ କେତେ ଯେ ଘୋଷରାଘୋଷରି ହୋଇଯିବ, ତାହାର ଠିକଣା ନାହିଁ । ଶେଷରେ ପ୍ରମାଣିତ ହେବ, ବେକସୁର ଖଲାସ, କିନ୍ତୁ ଏତିକି ହେବାକୁ ଖରଚ କେତେ ? ଜାଣନ୍ତି ତ ? ଜାଣିଥିଲେ କହିବେ 'ଲୋକଟା ସିଆଣା' । ନ ଜାଣିଥିଲେ ଆମ୍ଭମାନଙ୍କ କଥାରେ ମୁହଁ ଲେଫଡ଼ି ଦେବେ । କହିବେ ଯେ ''ସତ୍ୟର ଜୟ ହେଲା ବେଳକୁ କୋଟଫିସ୍, ସଲାମି, ମିଠେଇଖିଆ, ଅଣ୍ଡାଗୁଞ୍ଜା, ନକଲଖରଚା, ରୋସମ୍, ବକସିସ୍, ଗାଡ଼ିଭଡ଼ା, ପିଆଦା ମିଆଦି, ଓକିଲ ଫିସ୍ ଓ ତଦ୍‌ବିର ଇତ୍ୟାଦିରେ କେତେ ଟଙ୍କା ଯେ ଉଡ଼ିଯିବ, ସେ କଥା

ଆପଣଙ୍କ ଅବଧାନକୁ ଆସି ନାହିଁ।'' ସେ କଥା ବର୍ତ୍ତମାନ ଥାଉ, ଏକା ମାଘକେ କିଛି ଶୀତ ଯାଉ ନାହିଁ। ସମସ୍ତଙ୍କର ତ ରକ୍ତମାଂସର ଶରୀର ?

ପାଞ୍ଜିର କେତେକ ଅଂଶ ମନୋନୀତ କରି ବ୍ୟକ୍ତିଗତ କଥାଗୁଡ଼ିକ କାଟି ଦେଇ ଭାଷାକୁ ମାର୍ଜିତ ରୁଚିବିଶିଷ୍ଟ କରିଦେଲୁଁ; ତହିଁରେ ଦେଖିବାର, ଶିଖିବାର ଓ ଭାବିବାର ଅନେକ କଥା ଅଛି। -

୧. ଦେଶ ଯେତିକି ବେଶି ସଭ୍ୟ ହୁଏ, ମଦଦୋକାନ ସେତିକି ବେଶି ହୁଏ। କଲିକତାର ଗଳି ଗଳି ମଦଦୋକାନ ଓ ଘର ଘର ମଦ୍ୟଭକ୍ତ। ଜଣେ ଲେଖକ କହିଅଛନ୍ତି, ଜାତୀୟ ସାହିତ୍ୟ, ଜାତୀୟ ସଭ୍ୟତାର ପରିମାପକ। କିନ୍ତୁ ବାଇ ମାହାନ୍ତି ଅନୁଭବରୁ ସ୍ଥିର କରିଅଛନ୍ତି ଯେ, ମଦଦୋକାନର ଉତ୍ତରୋତ୍ତର ଶ୍ରୀବୃଦ୍ଧି ଜାତୀୟ ସଭ୍ୟତାର ପରିମାପକ। କଥାଟା ଆମ୍ଭେମାନେ ଆହୁରି ଟିକିଏ ଖୋଲି ଲେଖିଦେଲେ ଆପଣ ଝଟ୍ ଝାମ୍ପି ନେବେ। ବିଚାର କରି ଦେଖନ୍ତୁ ଯେ, ବଡ଼ଲୋକମାନଙ୍କ ଘର କେତେ ଘରଭଙ୍ଗାର ସମଷ୍ଟି। ପଇସାଗୁଡ଼ାକ ଏକଜାଗାରେ ଜମାହୋଇ ରହିଲେ ଦେଶ ଉଚ୍ଛନ୍ନ ଯିବ ବୋଲି ପାଠ ଡାକୁଛି। ବଡ଼ଲୋକ ଘରର ପଇସାଗୁଡ଼ାକ ଖେଳାଇବାର ସହଜ ଉପାୟ ହେଉଛି ମଦଦୋକାନ। ମଦଦୋକାନୀମାନଙ୍କୁ ସ୍ୱାର୍ଥ ଖେଳାଳି ବୋଲି ହଠାତ୍ ଠିକଣା କରି ନେବେ ନାହିଁ। ସେମାନେ ପଇସାଗୁଡ଼ିକ ଛାଣିଛୁଣି ନେଉଛନ୍ତି କେବଳ ଗରିବମାନଙ୍କୁ ପୋଷିବା ଅର୍ଥରେ। ମଦଭାଟି, ମଦକାରଖାନା, ମଦ ଆମଦାନୀ ରପ୍ତାନୀ, ଅବକାରୀ ବିଭାଗର ଚାକିରି ଓ ଅଣ୍ଡାଗୁଣ୍ଡାରେ କେତେ ସହସ୍ର ଲୋକ ପରବସ୍ତ ହେଉଛନ୍ତି। ମଦ୍ୟ ବିକ୍ରିରେ ଯେଉଁ ଅର୍ଥଗୁଡ଼ିକ ସଂଗୃହୀତ ହୁଏ, ତାହା ଏହି ଗରିବମାନଙ୍କ ପେଟରେ ପଡ଼େ। ଫେର୍ ଆଉ ଗୋଟିଏ କଥା - ଏ ଗରିବଗୁଡ଼ିକ ଯେ କେବଳ ଆମ ଦେଶର - ଏପରି ନୁହେଁ। କାହିଁ ବିଲାତ୍, କାହିଁ ଫ୍ରାନ୍ସ, କାହିଁ ସ୍ପେନ୍, କାହିଁ ମାର୍କିନ୍, ଏପରି କେତେ ଦେଶର ଗରିବ ମୂଲିଆ ଓ ଚାକିରିଆମାନଙ୍କୁ ମଦ୍ୟପାନ ଦ୍ୱାରା ସାହାଯ୍ୟ କରାଯାଏ। ଏହାଠାରୁ ବଳି ସାର୍ବଜନୀନ ହିତସାଧନାର୍ଥ ସ୍ୱାର୍ଥତ୍ୟାଗର ଉଦାହରଣ କଅଣ ଅଛି ? ଏହାଦ୍ୱାରା ମଧ୍ୟ ରାଜଭକ୍ତି ସହଜରେ ପ୍ରମାଣିତ ହୁଏ। ଯାହାଙ୍କ ଛାଇତଳେ ଆମ୍ଭେମାନେ ପ୍ରଜା, ତାଙ୍କୁ ଯେବେ କୌଣସି ବାଟେ ଦୁଇ ପଇସା କରେଇ ଦେବା, ଏହାଠାରୁ ବଳି ପୁରୁଷକାର କଅଣ ହୋଇପାରେ ? ପାଠକେ ! କହିପାରନ୍ତି ଯେ, ବାଇ ମାହାନ୍ତିଙ୍କ ସାମାନ୍ୟ କଥନଟା ଭୁଲ୍। କିନ୍ତୁ ଥରେ ବିଲାତର ସରକାରୀ ରିପୋର୍ଟମାନ ଦେଖ। ବିଲାତ ସବୁ ଦେଶଠାରୁ ବେଶି ସଭ୍ୟ। ଦେଖ, ସେଠାରେ ମଦ୍ୟପାୟୀ ସଂଖ୍ୟା ସର୍ବାପେକ୍ଷା ବେଶି। ଏଥିରୁ କଅଣ ପ୍ରମାଣିତ ହେଲା ? ତା ପରେ ଟିକିଏ ଲେଖାଏଁ ମଦ୍ୟପାନ କଲେ କେତେଗୁଡ଼ିଏ ରୋଗ ରାଜ୍ୟ ଛାଡ଼ି ପଳାନ୍ତି। ଏହା ଗୋଟିଏ ପ୍ରସିଦ୍ଧ ବାଜୀକରଣ। ଏ କିଛି ମନଗଢ଼ା ପାଠ ନୁହେଁ। ଭୈଷଜରତ୍ନାବଳୀଟା ମୁଖସ୍ଥ ନ ଥିଲେ ଟିକିଏ ପରିଶ୍ରମ କଲେ କଥାଟା ଧରା ପଡ଼ିବ। ସେ ପ୍ରମାଣ ନ ଖଟିଲେ ମନୁସ୍ମୃତିଟା ଫିଟାଇ ଦିଅ, ସବୁ ଅଡୁଆ ଛିଡ଼ିଯିବ।

ଔଷଧାର୍ଥେ ସୁରାଂ ପିବେତ୍ । ସୁରା ଅର୍ଥାତ୍ ସୋଡ଼ା ଲେମନେଡ୍ ନୁହେଁ । କଥାଟା ଶାସ୍ତ୍ରସିଦ୍ଧ, ଆଧୁନିକ ରୁଚିସମ୍ମତ ଓ ସଭ୍ୟତାନୁମୋଦିତ । ଖାନାର ଯୋଗାଡ଼ଟା ଯେତିକି ବେଶି ଆଧୁନିକ ଓ ସଭ୍ୟ ହୁଏ, ମଦର ବିଲ୍‌ଟା ସେତିକି ବେଶି ଟାଣ ନ ହେଲେ ସବୁ ବିଗିଡ଼ିଲା । ପରେ ଟିକିଏ ମଦ୍ୟପାନ କଲେ ନୃତ୍ୟ, ଗୀତ ଇତ୍ୟାଦିରେ ମନ ଯେତେ ଆସକ୍ତ ହୁଏ, ଏପରି କେଉଁଥିରେ ହୁଏ ନାହିଁ । ଆଚ୍ଛା ! ଭଲା ଆପଣମାନେ ବିଚାର କରନ୍ତୁ, ସଙ୍ଗୀତଟା କେଡ଼େ ଉଚ୍ଚ । ନ୍ୟାୟ ଦର୍ଶନର ଯୁକ୍ତି ଅବଲମ୍ବନ କଲେ ଧରା ପଡ଼ିବ ଯେ, ମଦ୍ୟପାନରେ ଜଘନ୍ୟତା କିଛି ନାହିଁ । ଆଉ ମଧ ଟିକିଏ ସେଥିରୁ ପଡ଼ିଲାକ୍ଷଣି କେତେ କବିତା ଉଚ୍ଚଭାବ ନଈବଢ଼ି ଭଳି ମାଡ଼ିଆସେ । ଏତେ ସୁଖରୁ ବଞ୍ଚିତ ହେବା ମନୁଷ୍ୟତା - ନା ପଶୁତ୍ୱ ? ନରତ୍ୱ - ନା ବାନରତ୍ୱ ? ଆପଣମାନେ ମନରେ ବିଚାରି ଥିଲେ ଯେ, ଭୁରୁଡ଼ା ଭୁରୁଡ଼ି କରି ଝିଟାପଟ ମାରି ନେବେ, କିନ୍ତୁ ଦେଖିଲେ ତ ଆମ ଯୁକ୍ତିର ଟାଣ କେତେ; ବାଇ ମାହାନ୍ତି କିଛି କୁଣ୍ଡା ଦେଇ ପାଠ ପଢ଼ି ନ ଥିଲେ ।

୨. ଦେଶ ବେଶି ସଭ୍ୟ ହେଲେ ମୂଲିଆଙ୍କୁ କାଳ ଘୋଟେ । ଦେଶର ଗରିବ ଲୋକେ ପେଟରେ ଓଦାକନା ପକାଇ ଶୁଅନ୍ତି । କଥାଟା ବୁଝିବା ଭାରି ସହଜ । ନିତାନ୍ତ ଯେବେ ନ ବୁଝିପାରନ୍ତି, ଉଦାହରଣ ଗୋଟାଏ ଦେଖାଇ ଦେଲେ ଆପଣ ଟାଉ ଟାଉ ମାଡ଼ି ଯିବେ । ଯେତେବେଳେ ରେଳଗାଡ଼ିର ପ୍ରଥମ ଆରମ୍ଭ ହୁଏ, ଦେଶହିତୈଷୀମାନେ ପାଟି କରି ଉଠିଲେ, ଆହା ! ରେଳ କମ୍ପାନୀଙ୍କ ହେତୁ ଦେଶରେ ଦୁର୍ଭିକ୍ଷର ମାଡ଼ ଜଣା ପଡ଼ିଲାନି ଲୋକେ ରେଳକାମରେ ମୂଲ ଲାଗି ଦି'ପଇସା ରୋଜଗାର କରି ପେଟ ପୋଷି ଚଳିଗଲେ । କିନ୍ତୁ ରେଳ କାମ ସରିବା ପରେ ଲାଭଯାକ ମୂଳଧନ ସ୍ୱାମୀଙ୍କଠାକୁ ବିଦେଶକୁ ବାଟେ ବାଟେ ଚାଲିଗଲା; ଶଗଡ଼ିଆଯାକ ଶଗଡ଼ ଖଣ୍ଡମାନ ବିକି ଘରେ ବସିଲେ; ମୁଣ୍ଡବୋଝିଆଯାକ ମୁଲକ ଛାଡ଼ି ପଳାଇଲେ । ରେଳ ଇତ୍ୟାଦି ହେବାରୁ ଲୋକେ ପୂର୍ବ ଅପେକ୍ଷା ଢେର ସୁସ୍ଥ ହେଲେ । ତହିଁର ଉଦାହରଣ - ବହୁବର୍ଷବ୍ୟାପୀ ଦେଶମୟ ଦୁର୍ଭିକ୍ଷ ଓ ପେଟପୋଷା ପାଇଁ ଅପରାଧର ସଂଖ୍ୟା ବୃଦ୍ଧି ।

୩. ବାଇ ମାହାନ୍ତି କଲିକତାରେ ଗୋଟିଏ ଧର୍ମ ସଂକ୍ରାନ୍ତ ସଭାରେ ବକ୍ତୃତା ଶୁଣିବାକୁ ଯାଇଥିଲେ । ତହିଁରେ ଶ୍ରୋତାଙ୍କ ସଂଖ୍ୟା ୪୦ରୁ ବେଶି ନ ଥିଲା । ଥିଏଟର୍ ନାଚ ଦେଖିବାକୁ ଲୋକ ହଜାର ହଜାର । ତେବେ ପ୍ରଭେଦ ଅଛି । ଥିଏଟରରେ ଦର୍ଶନୀ ଦେଇ ସରସ କଥା ଓ ବସ୍ତୁ ଦେଖିବାକୁ ମିଳେ, କିନ୍ତୁ ଧର୍ମସଭାରେ ପ୍ରବେଶ ନିମନ୍ତେ ଦର୍ଶନୀ ନାହିଁ, କେବଳ ଶୁଷ୍କ ଘଷରା କଥାଗୁଡ଼ାକ ସଭ୍ୟତା ବୃଦ୍ଧି ସଙ୍ଗେ ସଙ୍ଗେ ଘଷରା ଘୋଷା କଥାଗୁଡ଼ାକ ଯେତେ ଶୀଘ୍ର ଲୋପ ପାଏ, ତେତିକି ସମାଜର ମଙ୍ଗଳ ।

୪. 'ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରି ତେଣିକି ଯାଇ' ପ୍ରବାଦଟା କଲିକତା ଲୋକେ ଭୁଲିଗଲେଣି ପରା ! ଘରେ ଘରେ ଗ୍ୟାସ୍ ଆଲୁଅ, ଘରେ ଘରେ କଳପାଣି ମିଳୁଛି । ସମସ୍ତେ ମନେ ମନେ ମିଠେଇ ଖାଇ ବସିଛନ୍ତି । ଦିନେ ଭଲା ଭାବି

ଦେଖନ୍ତେ, ଘଣ୍ଟାକ ନିମନ୍ତେ ଗ୍ୟାସ୍ ଆଲୁଅ, ପାଣିକଳ ବନ୍ଦ ହୋଇଗଲେ କଲିକତାବାସୀଙ୍କ ଅବସ୍ଥା କଅଣ ହୋଇଉଠିବ ! ଆଠପଣ ଲୋକେ ଏକା ମୁହୂର୍ତ୍ତକେ ରୋକ୍‌ସୋଦ୍ ହୋଇଯିବେ ! ମନୁଷ୍ୟ ଯେତେ ପରାକ୍ରମଶାଳୀ ହେଲେ ସୁଦ୍ଧା ଦୈବୀ ଘଟନା ପ୍ରତି ସବୁବେଳେ ନଜର ରଖିବା ଉଚିତ ।

୫. କଲିକତା ନ ଦେଖିବା ପୂର୍ବରୁ ବାଇ ମାହାନ୍ତି କଲିକତାର ଯେଉଁ ଚିତ୍ରଟି ମନେ ମନେ ଆଙ୍କିଥିଲେ, ସ୍ୱଚକ୍ଷୁରେ ଦେଖିଲା ବେଳକୁ ସେ ଚିତ୍ରଟି କେଉଁଆଡ଼େ ଉଭେଇଗଲା ! କଲିକତାର ସହର ରାସ୍ତା ସବୁ କର୍ଦ୍ଦମମୟ ଓ କଦର୍ଯ୍ୟ, ପଡ଼ୋଶୀ ପଡ଼ୋଶୀ ଆଳାପ ପରିଚୟ ସୁଦ୍ଧା ନାହିଁ । ପ୍ରବଞ୍ଚନା ଷୋଳକଳାରେ ପୂର୍ଣ୍ଣ । (ପ୍ରକାଶ ଥାଉ କି ପାଞ୍ଜିକାର କଲିକତାରେ ନିଲାମ ଡାକରେ 'ଅସଲି ଉନ୍ଦା ମାଲ' ରାବ ଶୁଣି ଖଣ୍ଡେ ସୂତାର ରଙ୍ଗିନ୍ ରେପର୍ ଆଣି ବର୍ତ୍ତମାନ ଡକା ଛାଡୁଅଛନ୍ତି ।)

୬. 'ନାମ ବଡ଼ା ଦର୍ଶନ ଥୋଡ଼ା' ପ୍ରବାଦଟାର ସତ୍ୟତା ବାଇ ମାହାନ୍ତି କଲିକତାଠାରେ ଉପଲବ୍ଧି କରି ଆସିଅଛନ୍ତି । କେତେ ବଡ଼ ଲୋକଙ୍କର ଓ ବଡ଼ ସ୍ଥାନର ଡାକ ଖୁବ୍ ଆଗରୁ ଶୁଣିଥିଲେ, କିନ୍ତୁ ସେଠାରେ ଦେଖିଲା ବେଳକୁ କର୍ଣ୍ଣର ଓ ଚକ୍ଷୁର ବିବାଦ ତୁଟି ଯିବ କଅଣ, ଆରମ୍ଭ ହେଲା !

୭. କଲିକତାର ଘରେ ଘରେ ଔଷଧାଳୟ - ଏଲୋପାଥି, ହୋମିଓପାଥି, ହାଇଡୋପାଥି, ଦେଶୀପାଥି, ବିଦେଶୀପାଥି ! କିନ୍ତୁ ସେଠାରେ ଏତେ ରୋଗୀ କିଆଁ ? ଉପାୟ ବଢ଼ିଲେ ଅଭାବ ବଢ଼େ । ଯେତିକି ବେଶି ସଭ୍ୟ, ସେତିକି ବେଶି ଅଭାବ । ଯେତିକି ବେଶି ଔଷଧାଳୟ, ତେତିକି ବେଶି ମଳୁ ।

୮. ପୂର୍ବରେ ବାଇ ମାହାନ୍ତିଙ୍କର 'ଦି ମୁଣ୍ଡ ସମାନ' ବୋଲି ଯେଉଁ ବିଶ୍ୱାସ ଜନ୍ମିଥିଲା, ତାହା କ୍ରମଶଃ ଦୃଢ଼ୀଭୂତ ହେଉଅଛି । ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ପରୀକ୍ଷା ଯେଉଁ ସମୟରେ ହୁଏ, ସର୍ବପ୍ରାଥମିକ ପରୀକ୍ଷା ମଧ୍ୟ ସେହି ସମୟରେ ହୁଏ । ମଝିମଝିକିଆ ପରୀକ୍ଷାଗୁଡ଼ାକର ସମୟ ଭିନ୍ନ । 'ପରିଖା' ଶବ୍ଦ ବୋଧହୁଏ ପ୍ରମାଦବଶତଃ ପରୀକ୍ଷାରୂପ ଧାରଣ କରିଅଛି । ପରିଖା ନ ଟପିପାରିଲେ ଦୁର୍ଗ ହସ୍ତଗତ ହେବା ଅସମ୍ଭବ । ପାରି ହେଉ ହେଉ ଯେବେ ମଝିରେ ରହିଗଲ, ତେବେ ବୁଡ଼ି ମର, ନଚେତ୍ ଜଳଜନ୍ତୁଙ୍କ ଜଳଯୋଗ ସାମଗ୍ରୀ ହୁଅ । ତା ପରେ ପରୀକ୍ଷା ବିଷୟରେ ବାଇ ମାହାନ୍ତିଙ୍କର କିମ୍ଭୂତକିମାକର ମତ ଆପଣମାନେ ଶୁଣି ହସିବେ । କିନ୍ତୁ ଆମେମାନେ ହେଲୁ ଲିପିକାର । ସତ୍ୟର ଅନୁରୋଧରେ ପାଞ୍ଜିର କଥାଗୁଡ଼ିକ 'ଯଥା ଦୃଷ୍ଟଂ ତଥା ଲିଖିତଂ' ନ କଲେ ଦୋନାବୁଡ଼ିଆ ରୀତି । ବିଶ୍ୱବିଦ୍ୟାଳୟର ପରିଖା ନୀତିଟି ପ୍ରାଣମରା ପ୍ରଥାଟିଏ । ଉପରେ ଏତେ ଏତେ ସୂକ୍ଷ୍ମବୁଦ୍ଧି ବିଚାରକ ବସିଛ । ଘଣ୍ଟାକ ମଧ୍ୟରେ ପିଲାମାନଙ୍କ କପାଳରେ ଗାର ଟାଣି ଦେଉଛ, କିନ୍ତୁ ଟିକିଏ ଅବଧାନକୁ ଆସୁ ନାହିଁ ଯେ, ଗୋଟାଏ ପ୍ରାଣୀ ବରଷେ କି ଦି' ବରଷ ପରିଶ୍ରମ କଲା, ଏଥି ମଧ୍ୟରେ

ଏତେ ଦିନ ଚାଲିଗଲା, ଆପଣମାନଙ୍କ ସୂକ୍ଷ୍ମ ବୁଦ୍ଧିରେ ଥୟ କରିପାରିଲ ନାହିଁ ଯେ, ପିଲାଟା ଅଯୋଗ୍ୟ । କିନ୍ତୁ ସର୍ବଶେଷ ଦିନ ଘଣ୍ଟାକ ଭିତରେ ସୂକ୍ଷ୍ମ ବୁଦ୍ଧି ଫିଟିଗଲା, ଦାନାଯାକ ବାଛି ନେଲେ, ଅଗାଡ଼ିଗୁଡ଼ାକ ଅତଳ ସମୁଦ୍ରକୁ ଫିଙ୍ଗି ଦେଲେ ! ଯାହାର ନ ହେବ ତାକୁ ଦିନେ ଓଳିଏ ପରଖ କରି ଠିକ କରିନିଅ ଯେ, ଏ ପିଲା ବରଷେ ପଢ଼ିଲେ ଯୋଗ୍ୟ ହେବ । ଦିନେ ଓଳିକେ ନ ହେଲା, ମାସକେ ଠିକଣା କର । ସେଥିରେ ବୁଦ୍ଧି ନ ଗଳିଲେ ଚାରି ମାସ ନିଅ । ତା ପରେ ଉପଯୁକ୍ତ ରୀତି ଅନୁସାରେ ପଢ଼ାଅ, ନିୟମିତ ସମୟଟି ଟପିଲାରୁ ଯୋଗ୍ୟତାର ନିଦର୍ଶନ ପତ୍ର ଦିଅ । ତା ମଧ୍ୟରେ ଅଉଲ୍ ଦୋୟମ୍ କରିଦିଅ, ଅଡୁଆ ଛିଡ଼ି ଯିବ । ମଝିରେ ମଝିରେ ଯେ ନ ପଢ଼ିଲା ତାକୁ ଖସେଇ ଦିଅ । ତାକୁ ଆଶା ଦେଇ ଦେଇ ଫିସ୍ ଟଙ୍କାଟି ପିଠି ଆଉଁଶି ଅସୁଲ କରିସାରି ଦେଲ କଚଡ଼ା ଯେ, ସେ ତିନିପାଞ୍ଜିରୁ ଗଲା ! ତା ଅଣ୍ଟାରେ ଯେଉଁ ପାହାରକ ବସିଲା, ଆଉ ଜନ୍ମ ଥିବାଯାକେ ସେ ସଳଖ ହୋଇ ଠିଆ ନ ହୁଏ ରେ ବାବା, ଏ ହେଲା ନିରପେକ୍ଷ ବିଚାର । ଦୁଇ ବରଷ, ପାଞ୍ଚ ବରଷ, ତିନି ବରଷର ପରିଶ୍ରମ ଓ ଅଧ୍ୟବସାୟକୁ ଏକଘଣ୍ଟାକ ଭିତରେ ଠିକଣା କରିପକାଉଛ । ପରୀକ୍ଷା ଅନ୍ଧାର ଘରକୁ ଟେକା ମାରିବା ତୁଲ୍ୟ ନୁହେଁ ଆଉ କଅଣ ? ଏଡ଼େ ସୂକ୍ଷ୍ମ ବୁଦ୍ଧିରେ କାମ ଚଳି ଯାଉଥିଲେ ଚିନ୍ତା ନ ଥାନ୍ତା ଯେ ତୁମ 'ପରଖା ନ ଟପିଲା, ତାର ଆଉ ସବୁଆଡ଼କୁ ମଧ୍ୟ ବାଟ ବନ୍ଦ । ପାଞ୍ଜିରେ ଏ ବିଷୟଟା ଆହୁରି ଟିକିଏ ଖୋଲାସା କରିବାକୁ ଗୋଟିଏ ଚିତ୍ରରେ ବୁଝାଇ ଦିଆଯାଇଅଛି । ସେ ଚିତ୍ରଟି ଏଠାରେ ବୁଝାଇବା ଆବଶ୍ୟକ ନାହିଁ । ସେ ଯାହାହେଉ, ଯେଉଁମାନେ କର୍ମବଳରେ ପରିଖା ଟପିଗଲେ, ସେମାନେ ମଧ୍ୟ ଜୀବନର ଶେଷ ଅଂଶ ଆଳସ୍ୟରେ କଟାଇବେ । ଯାହା ଯେତକ ଉପାଦାନ ଓ ବଳ ଥିଲା, ତାହା ସବୁ ପରୀକ୍ଷାକୁ ପ୍ରସ୍ତୁତ ହେବାରେ ଖରଚ ସରିଅଛି । ଆଉ ବାକି ଅଛି ଗଦିଲଗା ତକିଆ ଓ ଅଲବଲ୍ଲା ହୁକ୍କା ଆଉ ବାଆଁହାତିଆ ହରପ୍ ଲେଖା । (ବାଇ ମାହାନ୍ତି ମରହଟ୍ଟିଆ ମଫସଲିଆ ବୁଢ଼ା, କିନ୍ତୁ ଆମ୍ଭେମାନେ ଏକାଧିକ ଖ୍ୟାତନାମା ବ୍ୟକ୍ତିଙ୍କୁ ମାହାନ୍ତିଙ୍କ ଗର୍ଜନାଲୋଚନା ଦେଖାଇବାରୁ, ସେମାନେ କେଜାଣି କାହିଁକି ଉତ୍ତର ଦେଲେ ନାହିଁ । ବୋଧହୁଏ କଥାଟା ଗୁରୁତର ନୁହେଁ ବୋଲି ଉତ୍ତର ଦେବାକୁ ରାଜି ହେଲେ ନାହିଁ । ସେ ଯାହାହେଉ, ଏହା ଆମ୍ଭମାନଙ୍କର ବ୍ୟକ୍ତିଗତ ମତ ନୁହେଁ । ଆମ୍ଭେମାନେ ପରୀକ୍ଷା ପ୍ରଣାଳୀର ପୂର୍ଣ୍ଣ ଭକ୍ତ ଓ ୧ ମାସ ହେଲା ବାଆଁ ହାତରେ ହରପ୍ ଲେଖି ଶିଖୁଛୁଁ । ଆମ ବଡ଼ବାପା ମଧ୍ୟ ବାଆଁ ହାତରେ ଗାର ଟାଣୁଛନ୍ତି ।)

୯. କଲିକତାର ନାମ ଆଗରେ ଅନେକ ଇଂରାଜୀ ଅକ୍ଷର ଲଗା ବଙ୍ଗାଳୀ ଓ ଓଡ଼ିଆ ଶିକ୍ଷିତ ଯୁବକଙ୍କ ସଙ୍ଗେ ସାକ୍ଷାତ୍ ହୋଇଥିଲା । ବାଇ ମାହାନ୍ତି ଅନୁଭବରୁ ସିଦ୍ଧାନ୍ତ କରିଅଛନ୍ତି ଯେ, ଆଧୁନିକ ଶିକ୍ଷାର ଅଧିକାଂଶ ସ୍ଥଳରେ ଅମୃତମୟ ଫଳ ବିତଣ୍ଡା ଓ ସ୍ୱମତ ଅଭ୍ରାନ୍ତ ବୋଲି ମନରେ ଦୃଢ଼ ଧାରଣା । ପୂର୍ଣ୍ଣ ଶିକ୍ଷିତ ବାବୁମାନେ ଜାଣନ୍ତି ଯେ, ସେମାନେ ଯାହା ଜାଣିଛନ୍ତି ଓ ଯାହା ସମର୍ଥନ କରୁଛନ୍ତି, ତହିଁରେ ଅନ୍ୟ କାହାରି ପାଟି

ଫିଟାଇବାର ଜୋର ନାହିଁ । ବାଇ ମାହାନ୍ତି ଶତକରା ହିସାବ ଜାଣନ୍ତି ନାହିଁ । ସେ ହିସାବ କରି ଦେଖିଅଛନ୍ତି ଯେ, ତାଙ୍କ ସଙ୍ଗେ ଯେତେ ଉଚ୍ଚ ଶିକ୍ଷିତଙ୍କର ସାକ୍ଷାତ୍ ହୋଇଅଛି, ତହିଁରୁ ବାରପଣ ଉଣେଇଶ ଗଣ୍ଡା ତିନି କଡ଼ା ଦିକ୍ରାନ୍ତି ଉକ୍ତ ଶ୍ରେଣୀର । (ପାଠକ ମହୋଦୟ ! ଏ ଗଣନାରେ ବିଶେଷ କିଛି ଆସେ ଯାଏ ନାହିଁ । ବାଇ ମାହାନ୍ତିଙ୍କ ପରି ଜଣେ ଇତରଲୋକ, ତାଙ୍କ ସଙ୍ଗେ ଅବଶ୍ୟ ଏପରି କିଛି ବଢ଼ିଆ ଲୋକଙ୍କର ଆଳାପ ପରିଚୟ ହୋଇ ନ ଥିବ । ତାଙ୍କ ସଙ୍ଗେ ସଙ୍ଗେ କେବଳ ଆବର୍ଜନାଙ୍କ ପରିଚୟ । ତହିଁରୁ ସେ ଏପରି ଗୋଟିଏ ହିସାବ କାଢ଼ିଅଛନ୍ତି । ବିଶେଷତଃ ଏ ପ୍ରତିଜ୍ଞା ଦ୍ୱାରା ବାଇ ମାହାନ୍ତି ଆମ୍ଭମାନଙ୍କର କେତେକ ପୂର୍ବ ପରିଚିତ ଉଚ୍ଚ ଉପାଧିଧାରୀ ଆତ୍ମୀୟଙ୍କୁ ଅପମାନିତ କରିଅଛନ୍ତି । ଆପଣ ପଚାରିବେ କିପରି ? ଆମ୍ଭମାନଙ୍କ ଉତ୍ତର ଶୁଣନ୍ତୁ । ଆମ୍ଭେମାନେ କିଛିଦିନ ଇସ୍କୁଲିଆ ପାଠ ପଢ଼ିଥିଲୁଁ । ଆମ୍ଭମାନଙ୍କୁ ମଧ୍ୟ ତୈରାଶିକ ଜଣା । ବାଇ ମାହାନ୍ତିଙ୍କ ହିସାବଟା ମଧ୍ୟ ଟିକିଏ ଶୁଣନ୍ତୁ । ଯେବେ ସବୁ ଶିକ୍ଷିତଙ୍କ ମଧ୍ୟରେ ୧୩/୧୬ ଅଂଶ ବିତଣ୍ଡା, ସ୍ୱମତପ୍ରଖ୍ୟାପକ, ଆତ୍ମମ୍ମନ୍ୟ, ତେବେ ପ୍ରତ୍ୟେକ ଉଚ୍ଚଶିକ୍ଷିତଙ୍କର ୧୩/୧୬ ଅଂଶ ବିତଣ୍ଡା, ସ୍ୱମତପ୍ରଖ୍ୟାପକ ଓ ଅହଂଭାବରେ ପୂର୍ଣ୍ଣ । ଅତଏବ ଏହାଦ୍ୱାରା ପ୍ରତ୍ୟେକ ବ୍ୟକ୍ତିଙ୍କ ବ୍ୟକ୍ତିଗତ ଆକ୍ରମଣ ହେଲା ନାହିଁତ ଆଉ କଅଣ ? ପନ୍ଦର କୋଡ଼ିଏ ବର୍ଷ ପଢ଼ି ପଢ଼ି ମନୁଷ୍ୟର ଆଦିମ ବନ୍ୟ ସ୍ୱଭାବ ୧/୨ ସୁଦ୍ଧା ବଦଳିଲା ନାହିଁ ।)

୧୦. ପାଞ୍ଜିରେ ଲେଖା ଅଛି ଯେ, କଲିକତାଠାରେ ମାହାନ୍ତିଏ ଦିନେ ହଠାତ୍ ୫।୬ ଜଣ ଶିକ୍ଷିତ ଓଡ଼ିଆ ପୁଅଙ୍କ ନୈଶ ସମାବେଶ ଦେଖିଥିଲେ । ତା ପରେ ନୋଟ୍ ଲେଖା ଅଛି, ଦୁଇ ମୁଣ୍ଡ ଏକା ସମାନ । କେତେ ପ୍ରକାର ଥଟ୍ଟା, ତାମସା, ଗୀତ, ଛନ୍ଦ, ବାଦ୍ୟ, ନାଟ ଇତ୍ୟାଦି ହେଲା, କେତେ ସାମାଜିକ ସାହିତ୍ୟଗତ, ବ୍ୟକ୍ତିଗତ, ଧର୍ମଗତ ବିଷୟମାନଙ୍କ ଚର୍ଚ୍ଚା ହେଲା । ବିଦେଶରେ ଏତେଗୁଡ଼ିଏ ଶିକ୍ଷିତ ଓଡ଼ିଆ ଏକତ୍ର ହେଲେ ବୋଲି ସମସ୍ତେ ପ୍ରେମରେ ଭୋଳ । (ବାଇ ମାହାନ୍ତି ଏତକ ଲେଖିଦେଇ ସବୁ ଶିକ୍ଷିତ ଓଡ଼ିଆଙ୍କ ମୁଣ୍ଡରେ କାଳି ବୋଳି ଦେବେ ବୋଲି ବସିଥିଲେ, କିନ୍ତୁ ଆମ୍ଭେମାନେ ମଧ୍ୟ ଏଥିରେ ଓର ରଖିଅଛୁଁ । ଯେଉଁ ୫।୬ଟିଙ୍କ ବିଷୟ ଲେଖା ଅଛି, ସମସ୍ତେ ସ୍ୱଦେଶଭକ୍ତ ଓ ସମସ୍ତଙ୍କର ପଠଦ୍ଦଶା । ଆଉ ଯେଉଁ ଆମୋଦ ଆହ୍ଲାଦକୁ ଲକ୍ଷ୍ୟକରି ପାଞ୍ଜିରେ ଏପରି ଲେଖା ଅଛି, ସେଗୁଡ଼ିକ ନିର୍ଦ୍ଦୋଷ ଆମୋଦ ଆହ୍ଲାଦ । ବିଦେଶରେ ବହୁଦିନବ୍ୟାପୀ ବିରହ ପରେ ଯେବେ କେତେଗୁଡ଼ିଏ ଭାଇଙ୍କର ସୁଖମିଳନ ହୁଏ, ତେବେ ହୃଦୟର ଦ୍ୱାର ଖୋଲିଯାଏ, ଏ କଥା ପାଞ୍ଜିକାରଙ୍କ ଉଚ୍ଚଭାବକୁ ଓ ଅନୁଭବକୁ ଆସି ନ ଥିବାରୁ ଏପରି କଟାକ୍ଷପାତ ।

୧୧. ମହାପୁରୁଷ ପୂଜା ବାକ୍ୟତଃ ଯେତେ, ଫଳତଃ ତହିଁରୁ କାଣିଚାଏ ନାହିଁ । ଖଣ୍ଡପଡ଼ାର ଜ୍ୟୋତିଷିଶେଖର ଚନ୍ଦ୍ରଶେଖରଙ୍କ*ର ଓ ବଙ୍ଗଳାର କବିଚନ୍ଦ୍ର

* ସାମନ୍ତ ଚନ୍ଦ୍ରଶେଖର, ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥର ରଚୟିତା ।

ମାଇକେଲଙ୍କ*ର ଜୀବନ ଏଥିରେ ଜ୍ୱଳନ୍ତ ଉଦାହରଣ । ସାବଧାନ ! ମହାପୁରୁଷମାନେ ଜୀଇଁ ଥାଉଁ ଥାଉଁ ଯେପରି କିଛି ନ ହୁଏ ତାହାହେଲେ ସେମାନଙ୍କ ମନୁଟାମାନ ମୋଟ ହୋଇଯିବ ଓ ଜୀବନଚରିତ ଲେଖକମାନଙ୍କୁ ଉପଯୁକ୍ତ ଉପାଦାନ ଅଭାବରୁ ହାତ କାମୁଡ଼ି ବସିବାକୁ ହେବ । ମାହାନ୍ତିଙ୍କ ଭାଗ୍ୟରେ (କି ଅଭାଗ୍ୟରେ ତାହା ଭଗବାନ୍ ଜାଣନ୍ତି) ଏ ଥର ଜଣେ 'କର୍ମବୀର'** ପ୍ରଦେଶ ପ୍ରସିଦ୍ଧ ଉଚ୍ଚୋପାଧିଭୂଷିତ ମହାପୁରୁଷଙ୍କ ଦର୍ଶନ ମିଳିଥିଲା । ଏ ମହାତ୍ମା ସବୁ ଖବରଯାକ ଜିଭ ଆଗରେ ରଖିଛନ୍ତି ବୋଲି ମନେ ମନେ ଗର୍ବ କରନ୍ତି । କୌଣସି କୀର୍ତ୍ତି ଅନୁଷ୍ଠାନ ହେଲାକ୍ଷଣି କର୍ତ୍ତାଙ୍କ ନାମରେ ଖଡ଼ିଟା ପହିଲୁଁ ପଡ଼େ । ସେଦିନ ଚନ୍ଦ୍ରଶେଖରଙ୍କ କଥା ପଡ଼ିବାରୁ ସେ କହିଲେ, 'ହଁ, ଆମ୍ଭେ ଚନ୍ଦ୍ରଶେଖରଙ୍କୁ ଜାଣୁଁ, ସେ ରାଜବଂଶୀୟ, ତାଙ୍କର ଅଭାବ କଅଣ ? ତାଙ୍କର ଢେର ଆୟ । ନ ବୁଝି ନ ଶୁଝି ତାଙ୍କପାଇଁ ମୁଣ୍ଡ୍ୟାରି କେନେ କରୁଛ ?'' ଓଡ଼ିଶାର ସମ୍ବାଦପତ୍ରମାନଙ୍କରେ ଚନ୍ଦ୍ରଶେଖରଙ୍କ ଦୁରବସ୍ଥା କଥାର ଚହଳ ପଡ଼ିଛି, କିନ୍ତୁ ସେ କଥାଗୁଡ଼ାକ ଛୋଟ କଥା । କର୍ତ୍ତାଙ୍କ ବୈଠକଖାନାରେ ଦରୋଜା ଟପିପାରୁ ନାହିଁ । ଅନେକ ଉଚ୍ଚମନା ବ୍ୟକ୍ତି ଚନ୍ଦ୍ରଶେଖରଙ୍କ ଦଶା ସ୍ମରଣ କରି ଲଜ୍ଜାବନତ ହୋଇଅଛନ୍ତି, କିନ୍ତୁ ଚନ୍ଦ୍ରଶେଖରଙ୍କ କଥା ପଡ଼ିଲାରୁ କର୍ତ୍ତାଙ୍କର ବାସି ହାକୁଟି ଉଠୁଛି ! ଭାବି ଦେଖିଲ ଭଲା, ଦେଶଟା ସ୍ୱଦେହରେ ସ୍ୱର୍ଗକୁ ଉଠିଯିବାକୁ ମଝିରେ କେତେଟା ଦିନ ବାକି ଅଛି ? (କଲିକତା ପ୍ରସଙ୍ଗ ପଡୁ ପଡୁ ଚନ୍ଦ୍ରଶେଖରଙ୍କ କଥାଟା କିପରି ଆସିଲା ଆମ୍ଭେମାନେ ବୁଝିପାରିଲୁଁ ନାହିଁ । ଏ ବାଇ ମାହାନ୍ତିଙ୍କର 'କଣ୍ଟାବାଡ଼ରେ ଲୁଗା ପକାଇ କଳି କରିବା କଥା ସିନା ।)

ନୋଟ୍ - ଏଥରକ ପାଞ୍ଜି ଦେଖି ଆମ୍ଭମାନଙ୍କ ମନ ଭାରି ଖଟା ହୋଇ ଯାଇଅଛି । ଅତଏବ ବାଇ ମାହାନ୍ତିଙ୍କୁ ଶୀଘ୍ର ବିଦାୟ ଦେବା ଆମ୍ଭମାନଙ୍କର ଇଚ୍ଛା । ହାତ ପଶୁ ପଶୁ ବାହା ପଶେ । ଯାଙ୍କ ହାତରେ କୁଟାଖଣ୍ଡି ଦି'ଖଣ୍ଡ ହେବ ନାହିଁ, ତାଙ୍କ ଖାସ କାମ ପରର ଛିଦ୍ର ଦେଖିବା, ପାଠ ଡାକୁଛି 'ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍' । ହେଲା, ତୁମ କଥାଗୁଡ଼ିକ ଠିକ୍ । ଏତେ ଲୋକଙ୍କୁ ଚିହ୍ନା ପକାଇ ତୁମ୍ଭର ଭଲା କି ଲାଭ ? ଏଣିକି ବାଇ ମାହାନ୍ତିଙ୍କି ପ୍ରଶ୍ରୟ ଦେଲେ ବ୍ୟକ୍ତିଗତ ଆକ୍ରମଣର ମାତ୍ରାଟା ବଢ଼ିବ ଓ ଦିନେ ଆମ୍ଭଙ୍କୁ ପିଙ୍ଗଲ କୋଡ୍‌ର ୫୦୦ ଦଫା ଅଙ୍ଗେ ଗୁଜାରିବାକୁ ହେବ । ସମ୍ପାଦକ ମହାଶୟ ! ଆପଣ ମଧ ମୁହଁ ଅଧୁଆ ହୋଇ ଫେରିଯିବେ ନାହିଁ । ଆପଣମାନଙ୍କ ପାଇଁ ୫୦୧।୫୦୨ର ବ୍ୟବସ୍ଥା । ୫୦୧।୫୦୨ ତ ଆପଣଙ୍କର ଭାତ ଡାଲି ।

ଉ. ସା. / ୬ଷ୍ଠ ଭାଗ / ନବମ ସଂଖ୍ୟା / ପୌଷ / ୧୩୦୯ ସାଲ

---

* ବିଖ୍ୟାତ ବଂଗୀୟ କବି, ବହୁଚର୍ଚ୍ଚିତ କାବ୍ୟ ବୀରାଙ୍ଗନା ଓ ମେଘନାଥ ବଧ ।
** ଏଠାରେ କର୍ମଯୋଗୀ ଗୌରୀଶଙ୍କରଙ୍କୁ ଲକ୍ଷ୍ୟ କରି କୁହାଯାଇଛି ।

## ଅଷ୍ଟମ ବିଡ଼ା

କାର୍ଯ୍ୟୋପଲକ୍ଷରେ ବାଇ ମାହାନ୍ତି ଥରେ କଟକ ଯାଇଥିଲେ । ସେ ତ ନିପଟ ମଫସଲୀ, କଟକର ଢଙ୍ଗ ସଙ୍ଗେ ମଫସଲୀ ରୀତିର ପ୍ରଭେଦ କେତେ, ଅନୁଭବୀ ପାଠକ ଅବଶ୍ୟ ବୁଝି ପାରୁଥିବେ । ଆମ୍ଭ ଗ୍ରାମରେ ଭାଇ ସାହୁ ଦୋକାନର ଗୁଆ, ଗୁଣ୍ଡି, ତେଲ, ଲୁଣ, ହାଣ୍ଡି, କାଠ, ଡାଲି, ଚାଉଳ, ବାଇଗଣ, କଦଳୀ, ଖଡ଼ି, ତିଳକ, ଗୁଡ଼, କିରୋସିନି, ଡିବି, ଲଣ୍ଠନ ସବୁ ଜିନିଷରେ ଏକାଧାରରେ ସଜ୍ଜିତ ହୋଇ ସେ କଟକ ଯାଇଥିଲେ ! ଏ ବହୁତ ଦିନର ପୁରୁଣା କଥା । ସେ ସମୟକୁ ପାଞ୍ଜି ଲେଖା ତ ଦୂରର କଥା, ସ୍ୱପ୍ନରେ ସୁଦ୍ଧା ଦେଖାଯାଇ ନ ଥିଲା । ମାହାନ୍ତିଏ ସନ୍ଧ୍ୟାବେଳେ ବଜାର ସଉଦା କରିବା ନିମନ୍ତେ ବାହାରିଲେ । ହାତରେ ଗୋଟିଏ କିରୋସିନି ଡିବି ଓ ତେଲଘଡ଼ି, କାନ୍ଧରେ ତୈଳକୃଷ୍ଣୀକୃତ ଗାମୁଛା; ଏକ ଅର୍ଥରେ ସେ ମଧ୍ୟ ଉତ୍ତରୀୟ; ଅଣ୍ଟାରେ ଛଅଟା କି ଦିଅଣା ପଇସା । ପ୍ରଥମ ଦୋକାନ ପଡ଼ିଲା - ଏକ ମନୋହରୀ ଦୋକାନ । ବାଇ ମାହାନ୍ତିଙ୍କର ତ ଭାଇଗି ସାହୁ ଦୋକାନର ଧାରଣା ପୂର୍ବରୁ ଅଛି । ଉକ୍ତ ମନୋହରୀ ଦୋକାନର ପାଲ ବିଛା ହୋଇଥିବ ପିଣ୍ଡାରେ ଡିବି, ତେଲଘଡ଼ି ଓ ଗାମୁଛାଟା ଥୋଇଦେଇ ଅଣ୍ଟାରୁ ଅଣାଏ କି ଛଅଟି ପଇସା କାଢ଼ି ଦୋକାନୀ ଆଡ଼କୁ ପକେଇ ଦେଇ ସମ୍ବୋଧନ କରି ତାଲିକା ଦେଇଗଲେ, 'ମହାଜନ ପୁଅ ! ଚାଉଳ ପାଏ, ଡାଲି ଅଧଲାକର, ବାଇଗଣ ପାହୁଲାକର, ତେଲ ଲୁଣ ଅଧଲାକର, ହଳଦୀ ହାଣ୍ଡିଫୁଟା ଅଧଲାକର, କାଠ ତିନି ଛଦାମ, ଗୁଆ ବାଲେଶରୀ ପାହୁଲାକର, ଘିଅ ଅଧଲାକର, ତିନ୍ତୁଳି ବୋଡ଼ିକର ଦେ, ବାକି ପଇସା ଫେରେଇ ଦେ ।' ଏ ବାଇ ମାହାନ୍ତିଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟ । ତାଙ୍କ ଜୀବନଟା ବିଦେଶରେ ବିଦେଶରେ ଚାକିରି କରି ଆସି କଟିଲା । ପ୍ରାୟ ଅଧିକାଂଶ ସ୍ଥାନରେ ସେ ବସା କରି ରହନ୍ତି । ଗ୍ରାମରେ ବସା କରି ରହିଲେ ପ୍ରତିଦିନ ସନ୍ଧ୍ୟାବେଳେ ମୁଦି ଦୋକାନରୁ ଏତକ ସଉଦା ବନ୍ଧା । ଆପଣ ପ୍ରଥମେ ଆମ ମାହାନ୍ତିଙ୍କୁ ନିପଟ ଓଲୁ ବୋଲି ଠିକଣା କରି ନେବେ, କିନ୍ତୁ ପାଠକ ମହୋଦୟ ! ଆପଣ ସୁଶିକ୍ଷିତ ଓ ବିଜ୍ଞାନବେତ୍ତା । ଆଜିକାଲି ଶିକ୍ଷାପ୍ରଭାବରୁ ପ୍ରାୟ ସମସ୍ତ ଶିକ୍ଷିତ ପାଠକ ବିଜ୍ଞାନବେତ୍ତା ବା ସେହି ଶ୍ରେଣୀର - ଟିକିଏ ଇତର ବିଶେଷ ଅବଶ୍ୟ ଧର୍ତ୍ତବ୍ୟ ନୁହେଁ, ବେତ୍ତା, ଟୋକେଇ, ଚାଉଳଧୁଆ, ଆଇଁଷଧୁଆ, କୁଲା, ଚାଲୁଣି, ଭୋଗେଇ, ପାଚିଆ, ଚାଙ୍ଗୁଡ଼ି, ଡାଟ ଡାଲା, ଗୁହାଳପୋଛା, ଏଗୁଡ଼ିକର ଆୟତନରେ ଅଳ୍ପ ବେଶି ପ୍ରଭେଦ ଥିଲେ ମଧ୍ୟ ଏକଶ୍ରେଣୀର । ଆପଣମାନେ କହିପାରନ୍ତି, ଏ ଉପମାଟା ହେଲା ଇତର । କିନ୍ତୁ ଆମ୍ଭେମାନେ ଭାରି ତାକ୍ ତରକରେ ଚଳିବା ଲୋକ, ଟିକିଏ ବେହିସାବ ହେବାର ଜୁ' ନାହିଁ । ମନେ କରନ୍ତୁ, ଯେ ବିଜ୍ଞାନରେ ଏମ୍.ଏ. ପାସ୍ କଲେ ତାଙ୍କୁ କଅଣ କହିବେ ? - ବିଜ୍ଞାନବେତ୍ତା - ଯେ ଛାତ୍ରବୃତ୍ତି ପାସ୍ କଲେ ତାଙ୍କୁ କଅଣ ଫାଙ୍କି ଦେବେ ? ତାଙ୍କର ବିଜ୍ଞାନ କୋର୍ସ ଆପଣଙ୍କୁ ଜଣା ନାହିଁ ପରା ? ଆଚ୍ଛା, ଯେ ଅପର ପ୍ରାଇମେରୀ 'ବିଜ୍ଞାନ ପାଠ' ଖଣ୍ଡ ପଢ଼ି ପାସ୍ କରିବେ, ତାଙ୍କୁତ କିଛି ଉପାଧି

ବ୍ୟବସ୍ଥା କରିବେ ? ଦେଖିବା ଆପଣଙ୍କ ବୁଦ୍ଧିଟା କେଡ଼େ ସରସ ଭଲା ! ଯେଉଁମାନେ ନିମ୍ନ ପ୍ରାଇମେରୀ ବୈଜ୍ଞାନିକପାଠକୁ ମୁଖସ୍ଥ, କଣ୍ଠସ୍ଥ, ଉଦରସ୍ଥ ବା ମସ୍ତିଷ୍କସ୍ଥ କରିପାରିବେ, ଏହା ମଧ୍ୟ ଦିଶୁ ନାହିଁ । ଦେଖିଲେ ତ ! ଆଜିକାଲି ଶିକ୍ଷା ରୀତିର ପିଛା ଧରି ଆମ୍ଭେମାନେ ଆଡ଼ି କରିବାରେ କିପରି ନିପୁଣ, ଆମ୍ଭମାନଙ୍କୁ ବନ୍ଧା ଗତର ଆଶ୍ରୟ ନ ନେଇ ଫାଙ୍କ ତାଳରେ ଯାହା ଉଡ଼ାଇଦେବେ ବୋଲି ବସିଥିଲେ, ସେ କଥା ଅସାର କଳ୍ପନା; ଅତଏବ-ଜୟ ବିଜ୍ଞାନର ! ସେ ଯାହାହେଉ, ଆମ୍ଭେମାନେ କହିଥିଲୁଁ ଆପଣମାନେ ସମସ୍ତେ ଉଣା ଅଧିକ ବିଜ୍ଞାନବିଦ୍ । ମନୋବିଜ୍ଞାନ (Psychology) ଡାକୁଛନ୍ତି - ମସ୍ତିଷ୍କ କେନ୍ଦ୍ର ଆମ୍ଭମାନଙ୍କର ହେଡ୍ ଅଫିସ୍ (ସଦର କଚେରି) ହେଡ୍ ଅଫିସରେ ଏତଲା ନ ଦେଲେ ବା ହେଡ୍ ଅଫିସ୍‌ରୁ ବହିର୍ଜଗତର ସଦର କଚେରିକୁ ତାରଡାକ ବସିଛି । ଗୋଟିଏ ଦୈନିକ ଘଟନାରୁ ଉଦାହରଣ ଦେଲେ ଆପଣଙ୍କୁ ସହଜ, ଆମକୁ ସହଜ । ଆମେ ମଫସଲିଆ । ମଫସଲିଆ ଉଦାହରଣ ଛଡ଼ା ଆମ ଭାବ ବ୍ୟକ୍ତ କରିବା କାଠିକର ପାଠ । ଆମ ଗ୍ରାମରେ ରକ୍ଷକ ଚୌକିଦାର ଶ୍ରୀ କେଶବ ମଳିକ, ଉପରକ୍ଷକ ଦଫାଦାର ଶ୍ରୀ ଶ୍ରୀ ସାଧୁବାବୁ, ପଞ୍ଚାଏତ ପରିରକ୍ଷକ ଶ୍ରୀ ଶ୍ରୀ ଲେଖିବାବୁ, ତାଙ୍କ ଉପରକୁ ଉପର ପାୟା ଲାଗିଛି - କନିଷ୍ଟ, ହେଡ଼ କନିଷ୍ଟ, ମୁନସି, ଦାରୋଗା ଏମାନେ ସମସ୍ତେ ଶ୍ରୀମନ୍ତ । ସେ ଯାହାହେଉ, ଦାରୋଗାବାବୁ ଧର୍ମାବତାର/କୁର୍ତ୍ତା ପାଇଜାମା ଗଳେଇ ଖୁରୁଚିମେଜ ଲଗେଇ ଥାନାରେ, ଗରମ ମସଲାମିଶା ହାକୁଡ଼ି ମାରୁଛନ୍ତି । ସେ ରହିଲେ ବିଚ୍ ସହର ମଧ୍ୟରେ, କିନ୍ତୁ ମଫସଲରେ ଜିରାଟିଏ ଫୁଟିଲେ ତାଙ୍କୁ ଗୋଚର । ତାଙ୍କର ବାର୍ତ୍ତାବହ ଓ ଆଜ୍ଞାକାରୀ ସ୍ନାୟୁ (Sensory and Motor nerves) କିଏ ? ବୁଝିଲେ ତ ? ମନେ କରନ୍ତୁ ଆମ ଗ୍ରାମରେ ଏକ ଜନାକାରୀ ମାମଲା ଉପସ୍ଥିତ; ଏ ଖବର ମଳିକ ମଜକୁରଙ୍କୁ ପହିଲୁଁ ମାଲୁମ ପଡ଼ିଗଲା । ସେ ଖବର କଲେ ଦଫାଦାରଙ୍କ ଛାମୁକୁ । ଦଫାଦାର ତାର ଚଳେଇଲେ ପଞ୍ଚାଏତଙ୍କ ହଜୁରକୁ, ପଞ୍ଚାଏତଙ୍କଠାରୁ ଏତଲା ହେଲା ମୁନସିଙ୍କ ଶ୍ରୀ ହଜୁରକୁ, ମୁନସି ରିପୋର୍ଟ ଗୁଞ୍ଜିଲେ ଧର୍ମାବତାର ଦାରୋଗାଙ୍କ ଦପ୍ତରକୁ; ଦାରୋଗାଙ୍କ ନିଦ ଭାଙ୍ଗିଗଲା, ଚମକି ପଡ଼ି ହୁକୁମ ଦେଲେ, 'ପକଡ଼ୋ' । ଏ ତାରଖବର ଷ୍ଟେସନକୁ ଷ୍ଟେସନ ଟପି ଯାଇ ପହଞ୍ଚିଲା ହେଡ଼ କନିଷ୍ଟଙ୍କ ଜରିଆରେ କନିଷ୍ଟବଳଙ୍କଠାରେ; କନିଷ୍ଟବଳ ଯାଇ ସରଜମିନରେ ନାଲି ପଗଡ଼ି ବାନ୍ଧି ଖରାକୁ ପିଠି ଦେଖାଇ ବସି ଅସଲ ସଦର ହୁକୁମଟା ଶୁଣାଇଦେଲେ, ଦେଖାଇଦେଲେ - 'ପକଡ଼ୋ' । ଏ ହେଲା ସାଧାରଣ ନିୟମ । (ଆପଣଙ୍କର ବ୍ୟାକରଣରେ ପ୍ରବେଶ ଥିଲେ ଅଳ୍ପ ମୁରୁକିହସା ହସି କହିବେ - ହଳିଷା, ଲାଙ୍ଗଳୀଷା; ଆମେ ମଧ୍ୟ ଏଡ଼େ ଗମାର୍ ନୋହୁ, ଆମେ ବି ଅସଲ କଥାଟା ପକଡ଼ି ନେଲୁଣି; ସମ୍ଭାଳନ୍ତୁ, ଆମ ମୁରୁକିହସା ମଧ୍ୟ ବାହାରିବ । ଏ ଉପମାଟା ଟିକିଏ ଶେଷ କରି ଦଫାରଫା କରିବାକୁ ଆମକୁ ଟିକିଏ ଫୁରୁସତ ଦିଅନ୍ତୁ ।) ଥାନା ଉଦାହରଣରୁ ମନୋବିଜ୍ଞାନ ଉଦାହରଣ ଆଡ଼କୁ ଦଉଡ଼ ଲଗାନ୍ତୁ - ଆମ ରାଜ୍ୟରେ ଗୋଟିଏ ଜନାକାରୀ ହେଲା - ବୈଶାଖ ମାସ,

ଅନ୍ଧାର ରାତି ଗୋବି ଦ୍ୱାଦଶୀ ଓ ମହୋଦଧି ବୁଡ଼ ଯୋଗ ଏକାଦିନକେ ପଡ଼ିଛି; ସେଥିରେ ପୁଣି ଶ୍ରୀକ୍ଷେତ୍ରରେ ପଣ୍ଡାଏ ଯଜମାନଙ୍କୁ ବେଢ଼ିଲାଭଳି ମଶାଏ ତାଙ୍କ ଦକ୍ଷିଣା ପାଇଁ ଗୁଣୁଗୁଣୁ ହୋଇ କାଉଳି କରୁଛନ୍ତି । ଏତିକି ବେଳକୁ ଯୋଗତଃ କୋଡ଼ପୋଛା ପିଲାଟି ଘିମିରିରେ ବ୍ୟସ୍ତ ହୋଇ ଡକା ଛାଡ଼ିଛି, ମନ ହେଉଛି 'ବସୁଧା ! ଫାଟି ଯା, ସବୁ ନଟ ଏକାବେଳେ ଛିଣିଯାଉ ।' (ଏ ଚିତ୍ରଟି ଆଗରୁ ଅଭିଆଡ଼ା ଯୁବକଙ୍କୁ ଧରା ପଡୁଥିଲେ ବାରପଣ ଯୁବକଙ୍କ ଅଭିଭାବକମାନେ ଆମକୁ ଆଚ୍ଛା ଉତ୍ତମ ମଧ୍ୟମ ବ୍ୟବସ୍ଥା କରି ଆଖି ରଙ୍ଗେଇ ମୁଣ୍ଡରେ ହାତ ଦେଇ ବସି ସାରନ୍ତେଣି । ସେ ଯାହାହେଉ, ଅସଲ ଫଟୋଗ୍ରାଫ୍ ନିଆ ହେଲା ବେଳେ ମୁହଁ ଲେପଡ଼ି ଦେଲେ, ଲେଫେଡ଼ା ମୁହଁଟାର ଛାପା ଉଠିଯାଏ । ସେଥିରେ ଫଟୋଗ୍ରାଫର୍‌ର ଦୋଷ କଅଣ ? ଯେ ଦୋଷ ଦେବେ, ସେ ଯାଆନ୍ତୁ Art School କୁ ନାଲି, ଗୋଲାପି, ବାଇଗଣି ରଙ୍ଗ ଦେଇ ମୁହଁର କାଠବରଣଗୁଡ଼ାକୁ, ଟେରା ଆଖିକୁ, ଦିହର ଆବୁକୁ ଲୁଚେଇ ରଖନ୍ତୁ । ପାଠକେ ! ଦେଖୁଛନ୍ତି ତ ଆଜି ଲେଖନୀ ମୁନଟା କଲିକତା 'ହାଉଆଗାଡ଼ି' (Electric tram) ର ଚାଳକ ଦଣ୍ଡା (Conducting rod) ପରି କିପରି ବିଦ୍ୟୁତ୍ କଣା ସିଞ୍ଚାଡ଼ି ଧପାଧପ୍ ଗମାଗମ୍ ଚାଲିଛି । ଯେବେ ଫାଷ୍ଟ କ୍ଲାସ ଟିକଟ କରିଛ, ତେବେ ଦୋଳି ଚଉକିରେ ଆଉଜି ବାଡ଼୍ ସାଇ ଚୁରୁଟ ଟାଣି Statesman (ଅଂରେଜୀ ସମ୍ବାଦପତ୍ର) ପଢୁଥାଅ ଆଉ ଯେବେ ଘରଣୀଙ୍କ ଦାଉକୁ ଡରି ତିନିଟା ପଇସା ମୁରୁଛି ନ ପାରିଲ, ତେବେ ସେକେଣ୍ଡ କ୍ଲାସରେ ପିଠି ପିଚା ମଉଜ କରୁଥାନ୍ତୁ ତୁମେ ମଧ ସହଯାତ୍ରୀଙ୍କ ସଙ୍ଗେ ମେଣ୍ଢା ଲଢ଼େଇରେ ମାତିଥାଅ । କେତେ କେତେ ବଡ଼ଲୋକ, ଓକିଲ, ଦଶହଜାରୀ ତ ଏ କୀର୍ତ୍ତନରେ ଆଖିବୁଜି ଏ ମଉଜ ଭୋଗ କରୁଛନ୍ତି, ତୁମେ ଆମେ ତ ସହଜେ ମୂଲିଆମୁଣ୍ଡ । ହେଲେ କଅଣ ହେବ, ମୂଲିଆ ମଉଜ କାହାର ନାହିଁ । ସେଥିପାଇଁ ପାଠ କହୁଛି, 'ରଙ୍କ ତିନି ଜନମ କଥା ଜାଣେ ।' ଘରଣୀଙ୍କ ମୁହଁଟା ଦଦରା ହାଣ୍ଡି ଭଳିଆ ହେବା ଭୟରେ କୋଡ଼ପୋଛା ପିଲାଟିକି ଗୋଡ଼ରେ ପକାଇ କାନ୍ଥକୁ ଆଉଜି ଚେତନା ଚେତନ ଅବସ୍ଥାରେ 'ଧୋ ରେ ବାୟା ଧୋ' ପଦ୍ୟବୃତ୍ତି ହେଉଅଛି । ଏଣେ ମନେ ମନେ ସମାଜକୁ, ଅଭିଭାବକଙ୍କୁ ନିଜର ଗାର୍ହସ୍ଥ୍ୟ ବନ୍ଦୋବସ୍ତଙ୍କୁ, ବୈଦ୍ୟ ଚୌଧୁରୀଙ୍କୁ ଛାମୁକରଣ ବିଦେଇ ଜେନାକୁ ଓ ଆପଣା ଭାଗ୍ୟକୁ କେତେ ପ୍ରଶଂସାପତ୍ର (Certificates) ବଣ୍ଟା ହୋଇ ଯାଉଛି । ଏଥିରେ ଫେର୍ ନିଦ୍ରାଦେବୀ, ସ୍ୱପ୍ନଦେବୀ ଓ ଜାଗରଣଦେବଙ୍କ ମଧ୍ୟରେ କନ୍ଦଳ ଲାଗିଛି । ଏଭଳି ସମୟରେ ସୁବିଧା ଓ ସୁଯୋଗ ଖୋଜି ଖୋଜି ମାନ୍ଧାତାଙ୍କ ଅମଳର ଏକ ବୁଢ଼ା ମଶା ବେଏଁ ଲମ୍ବର ଏକ ନାହୁଡ଼ ଗଳେଇ ବେକଶିରା ହାଡ଼ ଉପରେ ରଟ୍‌କିନା କାମୁଡ଼ି ଦେଲା । ଜନାକାରୀ ମକଦ୍ଦମା । ସେଠେଇ ମଧ ଚୌକିଦାର (ସ୍ପର୍ଶେନ୍ଦ୍ରିୟ), ଦଫାଦାର ଓ ପଞ୍ଚାୟତ (ସମ୍ବାଦବାହକ ସ୍ନାୟୁଗଣ) ଖଡ଼ା ପହରା, ଏ କଥା ସିଧା ସିଧା ତାର ଖବରରେ ଦାରୋଗା (ମସ୍ତିଷ୍କମଣ୍ଡଳ)ଙ୍କ ଦପ୍ତରରେ ପହଞ୍ଚିଗଲା । ଦାରୋଗାଙ୍କ ସୁଖନିଦ୍ରା ଭାଙ୍ଗିଗଲା, ଚକ୍ଷୁ ରଙ୍ଗାଇ ବିଳିବିଳେଇ ଉଠିଲେ 'ପକଡ଼ୋ' ।

ସେଥିରେ ମୁନ୍‌ସି, ଜମାଦାର, ବରକନ୍ଦାଜ, (ଆଜ୍ଞାବହ ସ୍ନାୟୁଗଣ) ସରଗରମ୍ ହୋଇଉଠିଲେ, - 'ପକଡ଼ୋ' । କନିଷ୍ଟବଳ (ଅନୁଭବୀଙ୍କ ଦକ୍ଷିଣହସ୍ତ) ଯାଇ ସରଜମିନ୍‌ରେ ପହଞ୍ଚି ମଶା ବିଚାରାକୁ 'ପକଡ଼ୋ' କଲେ । ମଶା ବିଚାରାର ବଳ ବୟସ ଓ ଧର୍ମବଳ ଥିଲେ କଡ଼ାକ୍ରାନ୍ତି ବଣ୍ଟୁଆରା କରି ଦେଇ ଖଲାସ, ନଚେତ୍ ଏକା ଚାପୁଡ଼ାକେ ରୋକସୋଦ୍ ବା ଲୋକାନ୍ତର ! (ଦେଖିଲେ ତ ! କିପରି ଗଛିଗାଛି ଆଣି ଆମ ପ୍ରତିଜ୍ଞାଟାକୁ ଠିକଣା ମୁଣ୍ଡରେ ପହଞ୍ଚାଇ ଦେଲୁଁ । ଖାଲି କଥା ପଦେ କହିଦେଲେ ସାବାସ କିଏ ଦେବ କି ? କଥାକୁ କାମ ଘଟେଇ ଦେଲେ ସିନା କୁହାଳି ।) ଏ ଉଦାହରଣରୁ କଅଣ ସମୁଝିଲେ ? ମନୁଷ୍ୟର ଜ୍ଞାନକୃତ ଘଟନା ସବୁ ମସ୍ତିଷ୍କକେନ୍ଦ୍ରର ଆଜ୍ଞାର ଫଳସ୍ୱରୂପ । ବହିର୍ଜଗତର ସମ୍ବାଦ ଇନ୍ଦ୍ରିୟମାନ ଗ୍ରହଣ କରି ଯଥାକ୍ରମେ ସଂଲଗ୍ନ ସମ୍ବାଦବାହକ ସ୍ନାୟୁମାନଙ୍କ ଦ୍ୱାରା ମସ୍ତିଷ୍କକେନ୍ଦ୍ରକୁ ପ୍ରେରଣ କରନ୍ତି, ମସ୍ତିଷ୍କକେନ୍ଦ୍ରରେ ସଂବାଦ (ବହିର୍ଜଗତର ଜ୍ଞାନ) ପହଞ୍ଚିଲେ ସେଠାରେ ଇତିକର୍ତ୍ତବ୍ୟତା ସ୍ଥିରୀକୃତ ହୋଇ ଅତଃପର କଅଣ କର୍ତ୍ତବ୍ୟ, ତାହା ଆଜ୍ଞାକାରୀ ସ୍ନାୟୁମାନଙ୍କଦ୍ୱାରା ବାହିତ ହୋଇ ଯଥାଯୋଗ୍ୟ ଇନ୍ଦ୍ରିୟ ବା ପ୍ରତ୍ୟଙ୍ଗଙ୍କ ନିକଟରେ ସଂବାଦ ପହଞ୍ଚେ ଓ ସେହି କାର୍ଯ୍ୟକାରୀ ଇନ୍ଦ୍ରିୟ ବା ଅଙ୍ଗ କେନ୍ଦ୍ରର ଆଦେଶ ଅନୁସାରେ ବହିର୍ଜଗତର ବସ୍ତୁମାନଙ୍କ ସଂଘର୍ଷଣରେ ଆସି କେନ୍ଦ୍ରର ଈପ୍‌ସିତ ସାଧନ କରନ୍ତି । ଥାନା କଥାଟା ନିତ୍ୟ ପ୍ରତ୍ୟକ୍ଷ, ଦୁର୍ନିବାର, ଅଲଙ୍ଘନୀୟ ବୋଲି ଉପମାଟା ସମସ୍ତେ ବୁଝିନେବେ; ଏହେତୁ ଦାରୋଗାଙ୍କୁ 'ମା ବାପ' କରି ଗଛିଦେଲୁଁ । ସୁଚତୁର ପାଠକମାନେ ଜଳକର, ବାରିକମିସ୍ତ୍ରି,* କିଲଟରୀ ଜମିଦାରୀ, ରେଳବାଇ, ସବୁ ବିଭାଗରେ ଛାଙ୍କଚ୍ଛୁଙ୍କି ଏ ଉଦାହରଣଟି ଲଗାଇ ନେବେ । (ଏ ସବୁ ଉଦାହରଣ, ଶବ୍ଦାଡ଼ମ୍ବର, ବିଜ୍ଞାନାନୁଶୀଳନ, ପୁଲିସ୍ ଭକ୍ତି ଦେଖି ପାଠକ ମନେ କରି ସାରିବେଣି, ''ଏଉଟା ବାତୁଳ; ବାଇ ମାହାନ୍ତିଙ୍କର ଉପସ୍ଥିତ ବଜାର ସଉଦା ସମସ୍ୟା ସଙ୍ଗେ ଏ ଉଦାହରଣର କିପରି ମେଳ ହେଲା, କିଛି ତ ବୁଝାଯାଉ ନାହିଁ'' । ଏତେ ଅସମ୍ଭାଳ ହେଲେ ଚଳିବ କିପରି ? ବର୍ଷକେ ଟଙ୍କା ଯୋଡ଼ାଏ ସିନା ! ସେଥିପାଇଁ ଏତେ ରାଗ କିଆଁ ? ସମ୍ପାଦକଙ୍କର ତ ଦିନେ ଦିନେ ଏକାଦଶୀ, ଲେଖକଙ୍କୁ ପୋଷିବା ତ ଦୂର କଥା ! ଟଙ୍କା ଦେବ ଯୋଡ଼ିଏ, ସେଥିରୁ ଫେର ଆଠପଣ ବକୟା ଚାରିପଣ ଲୁମିଲା, ଦୁଇପଣ ମୁହଁସୁହାଗିଆ, ମହରଗିଆ ମାଲ ଖୋଜିବ 'ଅସଲି ଉନ୍ଦା', ନ ଦେଲେ ଫେରେ ଅଭିମାନ । ଇମିତି ହେଲେ ଆଉ ତୁମର ଆମର ବିଧି ବନୁଛି କିପରି ? ସେର ବାରଅଣା ଦିଅ, ଲଡୁ ଭାଙ୍ଗିଦେଲେ କିସ୍‌ମିସ୍, ପେସ୍ତା, ଗୁଜରାତି ଲବଙ୍ଗ, ଗୋଲାପ ପାଣିର ସୁବାସ ସବୁ ପାଇବ । ଏଣେ ଅଣ୍ଟାରୁ ସାତଅଣାରୁ କୋଡ଼ିଏ କଉଡ଼ି ବେଶି କାଢ଼ିଲା ବେଳକୁ ଦିହରୁ ରକତ ଶୁଖିଯାଉଛି; ସେ ଫେର୍ କାଳି** ସଉଦା । ଗୋସାଇଁବାପାଙ୍କ ଅମଳର ତମସୁକର ସୁଧ ଭରିଣାରେ ମଜୁରା ହେବ, କିନ୍ତୁ ଲଡୁ

* ଇଂରାଜୀରେ ଏହା PWD ବା Public Works Department ** ବାକି

ଭିତରେ ଗୋଟାଏ ଖଣ୍ଡେ ଗୋଡ଼ି, କାଠି, ପୋକ, ଲକ୍ଷଦ୍ ଜାନ୍ତବ ଗନ୍ଧ ବାହାରିଲା ବୋଲି ଗୁଡ଼ିଆ ଉପରେ ପୁଞ୍ଜାଏ ପାଣ ପିଆଦା ! ଏଥିରେ ଫେର୍ ଆପଣ ବୋଲାନ୍ତି କଅଣ ? ନା, ନ୍ୟାୟବନ୍ତ ପୁରୁଷ, ଗୋଟିକଯାକ ତୁଳସୀ ! ଏଥିପାଇଁ ପରା ଆମ ନନା ଥରେ ଆପଣଙ୍କୁ ଦି'ପଦ ହକ କଥା ଶୁଣେଇ ଦେଇଥିଲେ - 'ଘରୁ ଖାଇ ପର କାମ କିଏ କରେ ବାପା !' ତେବେ ଟିକିଏ ଆଶ୍ୱସ୍ତ ହୁଅନ୍ତୁ । ମୁହେଁ ମୁହେଁ ସିନା ଏତେ କଥା କହିଗଲୁଁ କଥାରେ ବାଟୁଳି ବାଜିଲା ନାହିଁ, କିନ୍ତୁ ଆମ ପେଟ ଭିତରେ ଏତେ ମଇଳା ନାହିଁ । ଏ କଥା ଯେ ଦିନରାତି କରୁଛି, ସେ ଜାଣେ । ପାଠ କଅଣ ମିଛରେ ଡାକୁଛି - "ଚୋରି କରିବ, ମହତ ଲୋକଙ୍କ ହାବୁଡ଼ରେ ପଡ଼ିବ ।" ସମସ୍ତେ ଯେବେ 'ଯେଝା ଘଡ଼ିକ ଯେ' ନୀତି ଅନୁସରଣ କରି ବାଟ ଚାଲନ୍ତେ, ତେବେ ଏ ସଂସାର ଦିନେ ଟୁବ୍ କରି ବୁଡ଼ିଯାଆନ୍ତା । ଆପଣ ବି ନ ଥାନ୍ତେ, ଆମେ ବି ନ ଥାନ୍ତୁ । ଆଚ୍ଛା । ଆପଣ ସେର ସାତଅଣା ଭାଉରେ ପଛକେ କାଲି ନିଅନ୍ତୁ, ତେବେ ଖାଇ ସନ୍ତୋଷ ହେଲେ ଆମର ଲକ୍ଷେ ଟଙ୍କା, ଆମକୁ ଦେଲାବାଲା ଗୋପରେ ବଢୁଛନ୍ତି । ଦିନକ ବକ୍‌ସିସ୍, ପ୍ରଦର୍ଶନୀରେ ଗୋଟିଏ ମିଠେଇପାଇଁ ପୁରସ୍କାରକୁ ବର୍ଷଯାକର ନଗଦ ବିକ୍ରିର ଲାଭ ସରି ନୁହେ ।

ଆମପାଇଁ ପ୍ରଦର୍ଶନୀ ଅଛି, ଦାନଶୀଳ କ୍ରୋଡ଼ପତି* ଅଛନ୍ତି, ସେ କ୍ରୋଡ଼ପତି ଗେଜେଟ ଛାପା ମାର୍କାମରା ବଡ଼ ଲୋକ ନୁହନ୍ତି, ତାଙ୍କ କାର୍ଯ୍ୟ 'ନାରିକେଳଫଳାମ୍ବୁବଦ୍' । ଏଗୁଡ଼ାକ ଅଦଉତି ବୋଲି ସ୍ୱତଃସିଦ୍ଧ ବା ସ୍ୱୀକାର୍ଯ୍ୟ କରି ନେବେ ନାହିଁ; କଲେ ସୁଦ୍ଧା ଛାଡୁଛି କିଏ ? ଥୟ ଟିକିଏ ଧରନ୍ତୁ, ବାଇ ମାହାନ୍ତିଙ୍କ ପ୍ରତ୍ୟକ୍ଷ ଘଟନାଟି ଠଉରେଇ ନେବେ । ଧୀର ଧୀର ଚାଲିକି, ସରି ନୁହେ ଘୋଡ଼ା ପାଲିଙ୍କି । ଏ ହେଲା ସାଧାରଣ ନିୟମ, ବେଳେ ବେଳେ ଏଥିର ନିପାତନ ମଧ୍ୟ ଦେଖାଯାଏ । ଆମ୍ଭମାନଙ୍କର ସାମାନ୍ୟକଥନ ହେଲା - ମସ୍ତିଷ୍କକେନ୍ଦ୍ରର ଆଦେଶ ଓ ଏ ନିୟମର ବ୍ୟତିକ୍ରମ ଥାନା ନିୟମର ବ୍ୟତିକ୍ରମରୁ ସହଜରେ ହୃଦୟଙ୍ଗମ କରିପାରିବେ । ଦାରୋଗା ମନେ ମନେ ରେଣ୍ଟିକରି ବସିଛନ୍ତି ଯେ, ମଫସଲରେ ସୋରିଷଟିଏ ଫୁଟିଲେ ଆମର ଯୋଗ୍ୟ ଭେଣ୍ଡାଏ ଆଣି ବିଲ୍ ଫଏଲ୍ ଆମ ହଜୁରରେ ରିପୋର୍ଟ ପହଞ୍ଚାଇ ଦେବେ, କିନ୍ତୁ ସମସ୍ତଙ୍କର ତ ପେଟ ପାଟଣା ଅଛି । ପିମ୍ପୁଡ଼ି ଜନ୍ଦା, ମହୁମାଛି ସୁଦ୍ଧା ବର୍ତ୍ତମାନ ଉପସ୍ଥିତ ଜୀବନଜ୍ୱାଳା ଶାନ୍ତ କରି ଭବିଷ୍ୟଦ୍ ବର୍ଷା ଓ ଶୀତ କଥା ଭାବି ପକାନ୍ତି । ତା ପରେ 'ଚାକିରି ତାଳଗଛ ଛାଇ', ହଜାରେ ଚଉକିଦାରୀ ଟିକସରୁ ଦରମାଗଣ୍ଡାକ ମିଳୁଥିଲେ ଭଲା ଶାଗଟାଏ, ମାଛଟାଏ, କଦଳୀ କାନ୍ଦିଏ, ବିଧାଟାଏ, ଚାପୁଡ଼ାଟାଏ କି ବନ୍ଦ ହେବା ଜିନିଷ ? କୁକୁର ଲାଙ୍ଗୁଡ଼ ବାର ବରଷରେ ନ ସଳଖେ ରେ ବାବା ! କେତେକ ସ୍ଥାନରେ 'ସ୍ୱଭାବ' ଓ କେତେକ ସ୍ଥାନରେ 'ଅଭ୍ୟାସ'ରୁ ନିୟମଗୁଡ଼ାକ ପ୍ରତିଦିନ ଚୁଲିକି ଯାଉଛି । ଦାରୋଗା

* କୋଟିପତି

ସଦର ଥାନାରେ କୁରୁଚିରେ ବସି (Essence Cajuput) (ଅଳେଇଚ ଅର୍କ), ବେଦାନା ସରବତ୍ ଖାଉ ଖାଉ ସିଆଡ଼େ ଗାଆଁଗଣ୍ଡାରେ କେତେ ଢନାକାରୀ, କେତେ ଖୁସି, କେତେ କଥା ଦଫାରଫାରେ ଖତମ । ଦାରୋଗା ବଡ଼ ସାହେବଙ୍କୁ ପାଛୋଟି ଆଣିବାରେ ବ୍ୟସ୍ତ, ଏଣେ ରାଧୁ ମଳିକ ରାତି ଅଧରେ ନଡ଼ିଆ ପୁଞ୍ଜାଏ ତୋଳିବାରେ ବ୍ୟସ୍ତ । ଦାରୋଗାଙ୍କୁ ମାଲୁମ ହେବାକୁ ନାହିଁ, ଏଣେ ଡିମ୍ବ କାଞ୍ଜିଆ ହୋଇଗଲାଣି । (ଏଥିରେ ଦାୟୀ କିଏ ? ଦାରୋଗା ? ନା, ଦାୟିତ୍ୱ ଓ ନିଷ୍କୃତି ବୁଝିବା ମାଲିକ ଆମ୍ଭେମାନେ ନୋହୁ କି କେହି ମର୍ତ୍ତ୍ୟରେ ନାହିଁ । ଆମର କଣ୍ଟାବାଡ଼ରେ ଲୁଗା ପକେଇ ଏତେ କଜିଆ କରିବାରେ ଦରକାର କଅଣ ? ଏତେ ଓଟାରିଲା ବେଳକୁ ଦଉଡ଼ି ଖଣ୍ଡି ଛିଣ୍ଡିଗଲେ ତୁମେ ସେ ମୁଣ୍ଡରେ କଚଡ଼ାଏ, ଆମେ ଏ ମୁଣ୍ଡରେ ଦାନ୍ତ ନିକୁଟି ମାମୁଘର କଥା ମନେ ପକାଉଥିବୁଁ । ଚାଲ, ଆମର ବାଟେ ବାଟେ ଯିବା, ଟିକିଏ ବଣା ହେଲେ ବଣରେ ବାଘ, ଭାଲୁ, ସାପ ମାଳ ମାଳ । ରକ୍ଷା ଯେ, ସରକାର ବାହାଦୁର ଦୁର୍ଭେଦ୍ୟ ବଣ ଜଙ୍ଗଲ କାଟି ପର୍ବତ ଶୃଙ୍ଗରେ ସୁଦ୍ଧା ସଫାସୁତୁରା କରି ରେବଲ୍ ଓ ନାଲି ମାଟିରେ ସଡ଼କ ଓ ଲୁହାରେ ରେଳବନ୍ଧ ବାନ୍ଧି ଦେଇଅଛନ୍ତି । ବାଘ ଭାଲୁ ସଣସଣ ହେଉଥିବେ, ତୁମକୁ ଛୁଇଁବାର ପରାକ୍ରମ ନାହିଁ ।) ମନୋରାଜ୍ୟରେ ମଧ୍ୟ ସେହିପରି କଥା 'ପ୍ରକୃତି ମଲେ ଯାଏ' ଓ 'ଅଭ୍ୟାସ ଦ୍ୱିତୀୟ ପ୍ରକୃତି' ବୋଲି ପଣ୍ଡିତମାନେ କହି ଯାଇଅଛନ୍ତି । ଯାହା ତୁମର ପ୍ରକୃତିଗତ ବା ଅଭ୍ୟସ୍ତ ତାହା ଆପେ ମସ୍ତିଷ୍କ-କେନ୍ଦ୍ରର ଅଜ୍ଞାତରେ ହୋଇଯାଏ; ଏହାକୁ ବୈଜ୍ଞାନିକମାନେ 'ସ୍ୱତଃସିଦ୍ଧ' କାର୍ଯ୍ୟ ବୋଲି କହନ୍ତି । ଏଥର କର୍ତ୍ତା ପ୍ରକୃତି ବା ଅଭ୍ୟାସ । ଊଣାଅଧିକ ଆପଣମାନଙ୍କର ପିଲାଦିନର ଗୋଟିଏ ଖେଳ ମନେ ଥିବ । ପିଲାଙ୍କୁ ପାଖକୁ ଡାକି ଆଗରେ ବସାଇ ବର୍ଷୀୟାନ୍‌ମାନେ ପଚାରନ୍ତି, 'ତୋଟାକୁ ଯିବୁ ? ଉତ୍ତର 'ହଁ'; ଆମ୍ବ ଖାଇବୁ ? ଉତ୍ତର 'ହଁ'; 'ଡରିବୁତ ନାହିଁ ?' ଉତ୍ତର 'ନାହିଁ' । ଏ ପ୍ରଶ୍ନୋତ୍ତର ଶେଷ ହେଲାରୁ ବର୍ଷୀୟାନ୍‌ମାନେ ପିଲାଙ୍କ ଆଖିକୁ ଫୁଙ୍କି ଦିଅନ୍ତି । ପିଲାମାନେ ପୂର୍ବରୁ ଦୃଢ଼ ସଂକଳ୍ପ ହୋଇଥାଆନ୍ତି ଆଖି ବୁଜିବେ ନାହିଁ ବୋଲି କାରଣ ଆଖି ବୁଜିଲେ ତୋଟାରେ ଡରିବାର ଚିହ୍ନ ପ୍ରକାଶିତ ହେବ । କିନ୍ତୁ କଅଣ କରିବେ ? ଚକ୍ଷୁର ରକ୍ଷଣଶୀଳ କୃତି ମସ୍ତିଷ୍କ-କେନ୍ଦ୍ରର ପ୍ରତିଜ୍ଞାବଦ୍ଧ ସଂକଳ୍ପକୁ ନ ମାନି ପିଲାଙ୍କ ଆଖିକୁ ବୁଜେଇ ଦିଏ । କେତେକ ସ୍ତନ୍ୟପାୟୀ ଶିଶୁ ଏକାକୀ ଶୋଇଥାଆନ୍ତି । ଏଣେ ମୁହଁରେ ମାତୃସ୍ତନ୍ୟ ଶୋଷଣର ପ୍ରକ୍ରିୟା ତାଙ୍କ ଓଷ୍ଠରେ ଚାଲିଥାଏ । କେତେକ ଲୋକ ନିଦ୍ରିତାବସ୍ଥାରେ ସମୟ ସମୟରେ ଆଙ୍ଗୁଠି ହଲାଉ ଥିବାର ଦେଖାଯାଏ । ଏ ହେଲା ପ୍ରକୃତିର ଉଦାହରଣ । (ଅଭ୍ୟାସର ଉଦାହରଣଟାଏ ନ ଦେଲେ ଆପଣମାନେ କହିବେ, 'ମାଗିଆଣିଲା ତିଅଣ ସୋଡ଼କାଏ, ଶିଖେଇ ଦେଲା ବୁଦ୍ଧି । ଯେତିକି ଶିଖିଥିଲା, କହି ପକେଇଲା । ଏଥରକ ପୋଥିରେ ନ ପାଇଲାରୁ ହଟିଗଲା ।' ଯା ହେଲେ ଆମ ସିଆଣାପଣିଆଟା ଧରା ପଡ଼ିଯିବ ପରା । ସେଥିପାଇଁ ଲାଖୁ ନ ଲାଖୁ ଆମେ ଢେଲାଟିଏ ବଜେଇବା । ପଡ଼ିଗଲେ ସୁଦ୍ଧା 'ଏଇ ବି ଏକ୍ କସରତ୍ ।'

'ଏଇ ବି ଏକ୍ କସରତ୍'ର ଗୋଟିଏ ଗଳ୍ପ ଅଛି । ଜଣେ ମଲ୍ଲ ଆସି ପରାକ୍ରମ କ୍ରୀଡ଼ା, କସରତ୍ ଦେଖାଉଥିଲେ । କେତେଗୁଡ଼ିଏ ଆୟାସସାଧ 'ଦଣ୍ଡ' ଦେଖାଇସାରି ଆଉ ଗୋଟିଏ ଦଣ୍ଡ ଭାଙ୍ଗିଲା ବେଳକୁ ମଲ୍ଲଙ୍କର ଗୋଡ଼ ଖସିଯିବାରୁ ମଲ୍ଲ ଘାଉଁରି ଖାଇ କଚ୍ଚାଏ ପାଇଲେ । ଏତେ ଲୋକଙ୍କ ଆଗରେ ପଡ଼ିଯିବା ଲଜ୍ଜାର କଥା; ହଠାତ୍ ଭୂମିଶଯ୍ୟାରୁ ଉଠି ଠିଆ ହୋଇ ବାହୁରେ ଓ ଜଙ୍ଘରେ ଚାରି ଚୁଟିକି ମାରିଦେଇ ମଲ୍ଲ କହିଦେଲେ 'ଏଇ ବି ଏକ୍ କସରତ୍' । ମଲ୍ଲ ଅକୃତକାର୍ଯ୍ୟ ହେଲେ ବୋଲି ହସିବେ କଅଣ, ଦର୍ଶକମାନେ ମନେ ମନେ ସ୍ଥିର କରି ନେଲେ 'ଏଇ ବି ଏକ୍ କସରତ୍ ।' ଅଭ୍ୟାସ ଉପମାଟା ନ ଖଟିଲେ ଆମ୍ଭେମାନେ କହିବୁଁ 'ଏଇ ବି ଏକ୍ କସରତ୍ ।' ଆପଣମାନେ ସେହିତା କହିଲେ ତ ହୁଏ ଆଚ୍ଛା । ଦେଖିବା ଦେଖି ।)

ବାଇ ମାହାନ୍ତିଙ୍କର ଗୋଟିଏ ବ୍ୟକ୍ତିଗତ ଅନୁଭବରୁ ଆପଣ କଥାଟାର ସତ୍ୟତା ଅନୁଭବ କରିନେବେ - ମନୁଷ୍ୟ ଖାଇବାକୁ ବସି ଭାତ ଗୁଣ୍ଡାଏ ହାତରେ ଧରି ଟେକିଲା ବେଳକୁ ପାଟି ଆଁ କରିବାକୁ ହୁଏ । ପାଟି ଆଁ କରିବାଟା ସ୍ୱଭାବସିଦ୍ଧ ନୁହେଁ, ଏହା କ୍ରମଶଃ ଅଭ୍ୟାସ ଦ୍ୱାରା ସିଦ୍ଧ ହୁଏ । ଏ ଅଭ୍ୟାସଟା କେତେ ଲୋକଙ୍କର ଏପରି ଦୃଢ଼ୀଭୂତ ହୋଇ ଯାଇଥାଏ ଯେ ପରକୁ ଖୁଆଇ ଦେଲାବେଳେ ସୁଦ୍ଧା ଭାତଗୁଣ୍ଡାକୁ ହାତରେ ଅନ୍ୟର ପାଟିକୁ ଉଠାଇଲା ବେଳକୁ ଆପଣା ପାଟି ଅନିଚ୍ଛାସତ୍ତ୍ୱେ ଆଁ ହୋଇଯାଏ । ମସ୍ତିଷ୍କ କେନ୍ଦ୍ରର ହୁକୁମ ନାହିଁ, କିନ୍ତୁ ପାଟି ଆଁ କରି ସାରିଲାଣି । ଏହା ଅଭ୍ୟାସଜନିତ ନିପାତନ । ଏହି ଅଭ୍ୟାସଗତ ବୈଷମ୍ୟର ଉଦାହରଣ ଭୂରି ଭୂରି । କେତେ କେତେ ପିଲା ମନୋନିବେଶପୂର୍ବକ ପଢ଼ିଲାବେଳେ ଝୁଲୁଥାଆନ୍ତି । କେତେ ଲେଖିଲାବେଳେ ହସ୍ତର ଲେଖନୀ ଯେଉଁ ଆକାରମାନ କାଗଜରେ କିମ୍ବା ତାଳପତ୍ରରେ ଅଙ୍କିତ କରୁଥାଏ, ଏଣେ ସେମାନଙ୍କ ମୁଖ ଶୂନ୍ୟରେ ସେହି ବାୟବୀୟ ଆୟତନ ବିଶିଷ୍ଟ ରେଖାଗୁଡ଼ିକ ଅଙ୍କିତ କରିବାରେ ବ୍ୟସ୍ତ ଥାଏ । ଆମ୍ଭେମାନେ ପୂର୍ବରେ କହିଅଛୁଁ, ଚାହାଳିର ଅବଧାନୀ, ଜମିଦାରଙ୍କ ଅମିନୀ ଓ ମୋହରିରଗିରି ଇତ୍ୟାଦି କରି କରି ବାଇ ମାହାନ୍ତିଙ୍କ ଜୀବନଟା ବିଦେଶରେ ମଫସଲ ଫଡ଼ାଗାଆଁରେ ବିତିଗଲା । ବିଦେଶରେ ଯେଉଁମାନେ ବସା କରି ରହନ୍ତି, ମଫସଲର ମୁଦିଦୋକାନ* ସେମାନଙ୍କର ଦୈନିକ 'ସଉଦା' ଯୋଗାଇଥାଏ । ସଞ୍ଜବତି ଲାଗିବା ପୂର୍ବରୁ ମାହାନ୍ତିଏ ତେଲଘଡ଼ିଟି, କିରୋସିନି ଡିବିଟି ଓ ରଞ୍ଜିତ ଗାମୁଛାଟି ନେଇ ମୁଦି ଦୋକାନରେ ପହଞ୍ଚନ୍ତି । ଆପଣମାନେ ବୋଧହୁଏ ଇଂରାଜୀରେ ଗୋଟିଏ ପ୍ରବାଦ ଶୁଣିଥିବେ - "A man is known from the company he keeps." ଜଣକର ସଙ୍ଗୀମାନଙ୍କୁ ଦେଖିଲେ ସେ ମନୁଷ୍ୟକୁ ସହଜରେ ଠଉରେଇ ହୁଏ । ଗାମୁଛାକୁ ଦେଖି ଆପଣ ମନେକରିବେ ନାହିଁ ଯେ ବାଇ ମାହାନ୍ତିଙ୍କ ଦେହଯାକ ଫୁଲଛଉରେ ପୂର୍ଣ୍ଣ ।

* ତେଜରାତି ଦୋକାନ ବା ଗ୍ରୋସରି ଦୋକାନ ।

ବାଇ ମାହାନ୍ତି ବୃଦ୍ଧ; ବୃଦ୍ଧାବସ୍ଥାରେ ବୟସ ଛଉଟା ସ୍ୱାଭାବିକ ନୁହେଁ, ଅତଏବ ଆପଣଙ୍କ ଅନୁମାନଟା ଭୁଲ । ତେବେ ଗୋଟାଏ କଥା ନିଶ୍ଚିତ ଯେ, ବାଇ ମାହାନ୍ତି ପ୍ରତିଦିନ ଏରଣ୍ଡ ମଥାଦହି ପାଞ୍ଚ ସାତ ପଳାର ସଦ୍‌ବ୍ୟବହାର କରିବାକୁ କୁଣ୍ଠିତ ନୁହନ୍ତି; ବାଇ ମାହାନ୍ତିଙ୍କର ଟିକିଏ ନସ୍ୟ ସେବନ କରିବା ଅଭ୍ୟାସ ଅଛି । ବାଇ ମାହାନ୍ତି ଦୁର୍ବଳ, ଅରସିକ ନୁହନ୍ତି, ଗାମୁଛା ପାଲଟି ବହିର୍ଦ୍ଦେଶ ଯାଆନ୍ତି । ପ୍ରାଣୀତତ୍ତ୍ୱବିତ୍ ପଣ୍ଡିତମାନେ କହିବେ ଯେ, ବାଇ ମାହାନ୍ତିଙ୍କ ଅନ୍ତେ ତାଙ୍କର ଖଣ୍ଡିଏ ଛୋଟ ଅସ୍ଥି ପାଇଲେ ସେମାନେ ବାଇ ମାହାନ୍ତିଙ୍କ ଜୀବନବୃତ୍ତାନ୍ତ ସବୁ କହିଯିବେ; କିନ୍ତୁ ଅସ୍ଥି କଥା ଦୂରେ ଥାଉ, ଆମେ ଖଣ୍ଡେ ଗାମୁଛା ପାଇ କେତେଗୁଡ଼ିଏ ତତ୍ତ୍ୱ ଆବିଷ୍କାର କରିଦେଲୁଁ । ତୈଳର ସଦ୍‌ବ୍ୟବହାର କରିବା କଥା ଗାତ୍ରମାର୍ଜ୍ଜନୀର ଦ୍ୱୀପୀକୃତ କୃଷ୍ଣଶୁକ୍ଳ ଚିହ୍ନରୁ ପ୍ରକାଶ  ନସ୍ୟ ଅଭ୍ୟାସ ଗାମୁଛାର ସ୍ଥାନେ ସ୍ଥାନେ ବହଳ ଓ କୁଞ୍ଚିତ ମୁଦ୍ରାକୃତି ଈଷଦ୍ଧରିତ୍ ଚିହ୍ନରୁ ପ୍ରକାଶ । ଆମ ଅଜା ପୁରୁଣା ନାସୁଆ ଥିଲେ, ସେ ଅନେକ ସମୟରେ କହୁଥିଲେ - ଯେଉଁ ଦିନୁ ହେଲା ସୁବାସ ନାସ, ସେହି ଦିନୁ ହେଲା 'ସୁବାସ ନାଶ, ସୁବାସ ନାଶ, ସୁବାସ ନାଶ ।' ମାହାନ୍ତିଙ୍କ ଶରୀର ଦୁର୍ବଳ ନ ହୋଇଥିଲେ ଗାମୁଛାଟି ପ୍ରତିଦିନ ସ୍ନାନ ସମୟରେ କାଚିକୁଚି ସଫା କରୁଥାଆନ୍ତେ । ରସିକ ହୋଇଥିଲେ ଗାମୁଛାଟି ପାଣି ହୋଇ ପାଚିଥାଆନ୍ତା । ଗାମୁଛାଟି ଲମ୍ବ ସାତ ହାତ ଓ ଓସାର ଦୁଇ ହାତ ନ ହୋଇଥିଲେ ତାହା ପିନ୍ଧି ବହିର୍ଦ୍ଦେଶ* ଯିବା କଥା ଅତି କଷ୍ଟକର ହେଉଥାଆନ୍ତା । ଏହିପରି ଅନ୍ୟ କେତେକ ତତ୍ତ୍ୱ ଅବଶ୍ୟ ଏ ଗାମୁଛାରୁ ମିଳିପାରିବ । ପାଠକେ ! ଟିକିଏ ଆୟାସ ସ୍ୱୀକାର ନ କଲେ ହେବ କିପରି ? (କୋଡ଼ି ଧରି ଟିକିଏ ଦେଖେଇ ଦେଲେ କିଆରିଯାକ ଭୁସ୍‌ଭାସ୍ ପାଣି ମାଡ଼ିଯାଏ ସିନା)

ସେ ପ୍ରତିଦିନ ନଗଦ ପଇସା ପାଞ୍ଚୋଟି କି ଛଅଟି ଦେଇ ମୁଦି ଦୋକାନରୁ ଆବଶ୍ୟକ ପଦାର୍ଥଗୁଡ଼ିକ ଗାମୁଛାରେ ଜାଉଁଳି କରି ବସାକୁ ଫେରନ୍ତି । ଯୁବାକାଳରୁ ଏହା ତାଙ୍କର ଅଭ୍ୟାସ । କଟକ ଯାଇ ସୁଦ୍ଧା ମସ୍ତିଷ୍କ କେନ୍ଦ୍ରର ଅଜ୍ଞାତରେ ସେ ମନୋହରୀ ଦୋକାନ** ରେ ପଇସା ଛଅଟି ଫୋପାଡ଼ି ଦେଇ ବସିଲେ । ଯୋଗକୁ ସେ ଦୋକାନସ୍ୱାମୀ ସେତେବେଳେ ନମାଜରେ ମାତିଥାଆନ୍ତି । ମାହାନ୍ତିଏ ପଇସା ଫୋପାଡ଼ି ଦେଲା ପରେ ଦେଖନ୍ତି ଯେ ଭାଇଗ ସାହୁତ ଚାରି କାନି ମେଲା କରି 'ଆଲ୍ଲା ହୋ ଆକବର୍' କରୁ ନ ଥାନ୍ତା, ସେଥିରୁ ତାଙ୍କର ଚୈତନ୍ୟୋଦୟ ହେଲା । ମିଆଁସାହେବ, ତୋବା ! ତୋବା ! କରି 'ମହାଜନପୁଅର' ପ୍ରତିସମ୍ବୋଧନରେ ବିବିଙ୍କ ଭାଇ ସମ୍ପର୍କ, ବିଷ୍ଣୁଙ୍କ ତୃତୀୟ ଅବତାର***ଙ୍କ ସଙ୍ଗେ ବାଇ ମାହାନ୍ତିଙ୍କର ପୁଅ ଲେଖା କରି ଉର୍ଦ୍ଦୁ ଭାଷାର ଶବ୍ଦବିନ୍ୟାସପଟୁତା ଦେଖାଇ, ମଫସଲୀ ଉଲ୍ଲୁ !' ରେ ଗର୍ଜ୍ଜନରଡ଼ି ରୋଷ କଲେ । ଘଡ଼ଘଡ଼ି ଶବ୍ଦ ତ ବୁକୁଫଟା, ପୁଣି କାଳେ ବଜ୍ରସୂଚୀ ପଡ଼େ, ଏହି ଭୟରେ ମିଆଁସାହେବଙ୍କ

*ଝାଡ଼ାଯିବା । **ସୌଖୀନ ପଦାର୍ଥ ମିଳୁଥିବା ଦୋକାନ । *** ବରାହ

ଦୋକାନପିଣ୍ଡାରେ ବିଡ଼ି, ତେଲଘଡ଼ି ଓ ମିଆଁସାହେବଙ୍କ ଦୋକାନ ଭିତରେ ପଡ଼ିଥିବା ପଇସା ପ୍ରତ୍ୟାଶା ନ ରଖି ମାହାନ୍ତିଏ ବଜାରର ଜନତା ମଧ୍ୟରେ ଉଭେଇ ଗଲେ । ସେ ଦିନ ବସାକୁ ଆସି ଆଉ ରୋଷେଇ ନ କରି ଏ ପଦକ ଘୋଷୁଥାଆନ୍ତି । 'ମଫସଲୀ ଓଲୁ !' ତେବେ କଅଣ କଟକିଆ ଚତୁର ? ରାତି ପାହିଲା, ବାଇ ମାହାନ୍ତି ଗ୍ରାମ ଅଭିମୁଖରେ ବାହାରିଲେ, ଘରେ ଆସି ପହଞ୍ଚି ମୁହଁ ଧୋଇଲେ । ସେହି ଦିନୁ ସେ ଆଉ କଟକ ଯାଇ ନାହାନ୍ତି । ଥରେ କଲିକତା ଯାଇଥିଲେ ସତ୍ୟ, କିନ୍ତୁ ସିଧା ଆମ ଗ୍ରାମରୁ ଚାଉଳିଆଗଞ୍ଜ ଷ୍ଟେସନକୁ ଓ ଫେରିବା ସମୟରେ ସିଧା ଷ୍ଟେସନରୁ ଆମ ଗ୍ରାମକୁ ଆସିଅଛନ୍ତି । କଥାଟା ଏତେ ପୁରୁଣା ହେଲାଣି, କିନ୍ତୁ ବାଇ ମାହାନ୍ତିଙ୍କ ମନରୁ ଦାଗଟା ନିଭିବାକୁ ନାହିଁ । କେଜାଣି ଦାଗଟା ନିଭି ସାରନ୍ତାଣି, କିନ୍ତୁ କଟା ଘାଆରେ ଲୁଚି ଦେଲା ଭଳି ବାଇ ମାହାନ୍ତି କଲିକତାକୁ ଯାଇ କଲିକତାରୁ ସହରର ଏକ ଅଦ୍ଭୁତ ଚିତ୍ର ଘେନି ଫେରି ଆସିବାପର ଓ ସହର ମଫସଲର ତୁଳନା କରି ଏ ହେଡ଼ିଙ୍ଗରେ କେତୋଟି ପତ୍ର ନଷ୍ଟ କରିଅଛନ୍ତି । ବାଇ ମାହାନ୍ତିଙ୍କ ସଙ୍ଗେ ଆପଣ ନିତାନ୍ତ ଅପରିଚିତ ନୁହନ୍ତି । ବାଇ ମାହାନ୍ତି ମରହଟ୍ଟୀ ବୋଲି ତାଙ୍କର କେତେ ପୁରୁଣାକାଳିଆ ଖିଆଲକୁ ଆପଣ ସଦୟ ଦୃଷ୍ଟିରେ ଚାହିଁ ଆସିଅଛନ୍ତି । ତାଙ୍କ କଥା ତ ଜାଣନ୍ତି । ସେ ଟିକିଏ ଏକବାଗିଆ, ଯାହା ଧରନ୍ତି ତାହା ଛାଡ଼ିବାକୁ ଭାରି ନାରାଜ ।

୧. ଅନେକ ଦିନ ପୂର୍ବରେ ଅର୍ଥାତ୍ ପିଲାକାଳରେ ଧାରଣା ଥିଲା ଯେ ସହରରେ ବାସ କରିବା ମଫସଲରେ ବାସ କରିବା ଅପେକ୍ଷା ଅଧିକ ନିରାପଦ । ସହରରେ ଚୋର ଡକାୟତଙ୍କ ଭୟ ଖୁବ୍ କମ, କିନ୍ତୁ ସେ ଦିନ କଟକ ମାନସିଂହପାଟଣାର ଡକାଇତିରୁ ସେ ଧାରଣାଟି ଏକାବେଳେ ଦୂରୀଭୂତ ହୋଇ ଯାଇଅଛି । କଲିକତାରେ ଖଣ୍ଡେ ମସଜିଦ୍ ଲାଗି କେତେ ଖୁଣ୍ କେତେ ଡକାଇତି, କେତେ ଅପରାଧ ଦିନ ଦି'ପହରେ ହୋଇଥିଲା । ସହର ମଫସଲରେ ଏହା ରାହା ।

୨. ମଫସଲରେ ଯାହାଙ୍କ ଘର, ସେ ପାଖ ଆଖ ସବୁ ଗାଁର ଲୋକଙ୍କୁ ଚିହ୍ନନ୍ତି, କିନ୍ତୁ ସହରରେ ପଡ଼ୋଶୀ ପଡ଼ୋଶୀର ଆଳାପ ପରିଚୟ ସୁଦ୍ଧା ନଦାରଦ୍ । ତୁମେ ଯେଉଁ ଘରେ ଅଛ, ଆର ଘର ତୁମ ପ୍ରତିବେଶୀ ପାଣ କି ହାଡ଼ି, ସେ ଖବର ତୁମେ ପାଇବା କଥା କଷ୍ଟ ।

୩. ସହରରେ ଅପରାଧର ସଂଖ୍ୟା ମଫସଲରେ ଅପରାଧ ସଂଖ୍ୟା ଅପେକ୍ଷା ଢେର୍ ବେଶି । ଅନୁପାତ ମଧ୍ୟ ଠିକଣା ପଡ଼ିଚି କି ନାହିଁ ସନ୍ଦେହ । ଖଣ୍ଡେ ଗାଆଁରେ ଜଣେ ଦି'ଜଣ ଦାଗୀ ମିଳିଲେ ବହୁତ, କିନ୍ତୁ ସହରର ଫି ଗଳିରେ ପୁଞ୍ଜା ଦୁଇ କି ତିନି 'ସ' କିଲାସ ଦାଗୀ ।

୪. ଗାଆଁ ଖଣ୍ଡିକେ ଗୋଟିଏ ଚୌକିଦାର ଦିନରାତି ହାଜର । ସହରର ଗଳିରେ ଶୁଭ ନକ୍ଷତ୍ର ଦେଖି ରାତି ଗୋଟାଏ କି ଯୋଡ଼ାଏ ବେଳେ - ''ହୋ ଡିବାଲେ ! ଜବାବ

ଦେ 'ଡ଼' ବାକ୍ୟଟି ଥରେ ଶୁଣେ, ଫେର୍ ଚବିଶ ଘଣ୍ଟା ସେ ଶବ୍ଦ ଆଉ କର୍ଣ୍ଣ କୁହରକୁ ଚୁମେ ନାହିଁ।''

୫. ସହରରେ କଥା କଥାକେ ଥାନା ଓ କଚେରି ଡରାଣ। ଗାଆଁରେ ଜମିଦାର, ଜଜ୍ କଲଟର। ଏଥିପାଇଁ ମଫସଲୀ ଓଲ୍ଲୁ, ସହରୀ ଚତୁର।

୬. ସହରରେ ଜିନିଷଗୁଡ଼ାକ ମହରଗ, ଗାଆଁରେ ଜିନିଷଗୁଡ଼ାକ ଶସ୍ତା। ଗାଆଁ ଲୋକେ ଜିନିଷଗୁଡ଼ାକ ମହରଗରେ ବିକୁଥିଲେ ଧନୀ ହୁଅନ୍ତେଣି, କୋଠାବାଡ଼ି କରି ସାରନ୍ତେଣି। ଏଥିପାଇଁ ମଫସଲୀ ଓଲ୍ଲୁ।

୭. ସହରରେ ଅଧିକାଂଶ କିଣିଖିଆ। ଦୁର୍ଭିକ୍ଷ ପଡ଼ିଲେ ଆଗେ ସହର, ପଛେ ମଫସଲିଆ ମରିବେ। କଳିକାଳରେ ଧନ୍ୟା ମୃତା ଯେ ନରାଃ। ଅତଏବ ମଫସଲୀ ଓଲ୍ଲୁ।

୮. ମଫସଲର ଗାଉଁଲି ଲୋକଙ୍କ ଅଭାବ ଅଳ୍ପ। ତାଙ୍କର ବିଲୋରି, ଗିଲାସ, ଲଣ୍ଠନ, ଚଢ଼ଉ ଜୋତା, କୁରୁତା, ମଦଦ୍, ସରାପ, ଧୋବଧାଉଳିଆ ଲୁଗାପଟା ନ ହେଲେ ଚଳେ। କିନ୍ତୁ ସହରରେ ଏଗୁଡ଼ିକ ନିତ୍ୟ ଆବଶ୍ୟକ ନ ହେଲେ କେତେ ଲୋକଙ୍କୁ ଭାତ ରୁଚିବ ନାହିଁ।

୯. ଗାଆଁରେ ରାମଲୀଳା, ଭାରତଲୀଳା, କୃଷ୍ଣଲୀଳା, ବାରେଣୀ ଯୋଗ ପଡ଼ିଲେ ଅଦିନେ ଦିନେ ଗୋଟିପୁଅ ନାଚ। କିନ୍ତୁ ସହରରେ ନିତି ନାଚତାମସା - ବାଈନାଚ ସବୁଠାରୁ ସରସ। ସହରରେ ବାଈମାନେ ଦୋମହଲା କୋଠା ବାଡ଼େଇ ବସିଛନ୍ତି। ମଫସଲକୁ ଗଲେ ସେମାନେ ଗଡ଼ି ମରନ୍ତେ। ଗାଆଁ ତମାମର ଆଧି ବିକିଲେ ତାଙ୍କର ପଞ୍ଚୋପଚାରରୁ ଗୋଟିଏ ଉପଚାରର ଆୟୋଜନ ହୁଅନ୍ତା କି ନାହିଁ, ସନ୍ଦେହ।

୧୦. ସହରର ପାଞ୍ଚ ଆଇନ ଏକା ମଫସଲରେ ନାହିଁ। ଝାଡ଼ା ଫେରିବାକୁ, ପରିସ୍ରା କରିବାକୁ ସୁଦ୍ଧା ସାଙ୍ଗେ ସାଙ୍ଗେ ଜଗୁଆଳି। 'ଅଭିଆଣରେ ଭିଆଣ ଦେଖ, ପେଯପିଆଠେଇ ବାଜୁଛି ଶଙ୍ଖ।' ଏଥିରେ ସରକାରଙ୍କର ସହଜରେ ଯାହା ଲାଭ, ମଫସଲରୁ ତହିଁରୁ କାଣିଚାଏ ନାହିଁ।

୧୧. ଗାଆଁରେ ଏକାଘରକେ ଖୋଜିବ ଧାନ, ମୁଗ, ବିରି, ସୋରିଷ, ବରଗୁଡ଼ି, ଚଣା, ମାଣ୍ଡିଆ, କୋଳଥ, ଝୋଟ, ନଡ଼ା, କୁଟା ବାଡ଼ିରେ ପନିପରିବା, କଦଳୀ, ବାଇଗଣ, ଆଳୁ, ସାରୁ, କପା, ନଡ଼ିଆ, ଧନିଆ, ଘରେ ଗାଈ ଗୋରୁ, ବଳଦ, ଦୁଧ, ଘିଅ, ବାଡ଼ିଆଡ଼େ ଖତଗଦା, ବାଡ଼ିରେ ଜାଳେଣିକାଠ, ନଡ଼ାବିଡ଼ା, ନଡ଼ିଆପତର ବାଡ଼ି ପିଣ୍ଡାରେ ମୁନ୍ଦୁରା ବୁଣା ହେବାକୁ ବେରୁଆ, ଲୁଣ, କାଣ୍ଡସର, ଖରି, ବାଡ଼ିରେ ଗବ, ପୁନାଙ୍ଗ ପିଢ଼ାରେ କଖାରୁ, ଲାଉ, ଘର ଲିପିବାକୁ ଗୋବର, ଦିହଦୁଃଖକୁ ବାଡ଼ିରେ ଅଦା, ପୋଦନାପତ୍ର, ରୁକୁଣା, ହାତପୋଛା ପତ୍ର, ମୂଳ ମହୋଷଧ, ବାଡ଼ି ଗାଡ଼ିଆରେ

ମାଛ ସବୁ ମିଳିବ । ସହରରେ ଗୋଟିଏ ଜାଗାରେ ଗୋଟିଏ ଜିନିଷ, ଏହାର ସାଧୁଭାଷା ପରିଶ୍ରମ-ବିଭାଗ । ଦେଶ ଯେତିକି ସଭ୍ୟ ହୁଏ, ସେତିକି ବେଶି ପରମୁହଁକୁ ଚାହିଁ ରହିବାକୁ ହୁଏ ।

୧୨. ସହରରେ ମନୁ ଯେତିକି, ବଇଦ ସେତିକି, ରୋଗ ତହୁଁ ଦି'ଗୁଣ । ଗାଆଁରେ କିନ୍ତୁ ପାଞ୍ଚ ସାତଖଣ୍ଡ ଗାଆଁରେ ଜଣେ ବଇଦ । ରୋଗ ମଧ୍ୟ ତହିଁକି ଚାହି । ସହରର ମରଣ ସଂଖ୍ୟା ଅନୁପାତ ଅନୁସାରେ ମଫସଲ ଅପେକ୍ଷା ଏପରି କିଛି କମ୍ ନୁହେଁ ।

୧୩. ମଫସଲରେ ଜୀବହତ୍ୟାଟା କମ୍ ଥିବାରୁ ମାଂସଟା ଟିକିଏ ଦୁଷ୍ପ୍ରାପ୍ୟ । ଯେତିକି ମାଂସାହାରୀ କମ୍, ସେତିକି ବେଶି ଓଲୁ ।

୧୪. ମଫସଲରେ ଅଛି - ଆଜି ଘର କରୁଛ, କାଲିକି ତୁମେ ଅବା ତୁମ ପିଲାଏ ଦୁଃଖ ପାଇଯିବେ, କିନ୍ତୁ ସାଇପଡ଼ୋଶୀଙ୍କ ଅନୁଗ୍ରହରେ କୌଣସି ବାଟେ ନିର୍ବାହ ହୋଇଯିବେ । କିନ୍ତୁ ସହରରେ ଅଛ, ଆଜି ଆଚ୍ଛା ଚଳୁଛ, କାଲିକି ତୁମେ ଅବା ତୁମ ପିଲାଏ ଦୁଃଖ ପାଇଗଲେ, ଭିକ ମୁଠାଏ ସୁଦ୍ଧା ମିଳିବା ଦୁଘଟ । ଯେଉଁମାନେ ମଫସଲରୁ ଘର ଭାଙ୍ଗି ସହରରେ ଆସି ଘର କରନ୍ତି, ସେମାନେ ଆସିବାବେଳେ ଏ କଥା ଥରେ ଭାବନ୍ତି କି ?

୧୫. ସଂକ୍ରାମକ ରୋଗର ଚଞ୍ଚଳତା ସହରରେ ଯେତେ, ମଫସଲରେ ତହିଁରୁ ମାତ୍ରାଏ ନାହିଁ । ବେଶି ଜନତା ହେଲେ ଥରେ ସଂକ୍ରାମକ ରୋଗର ଉଦୟ ହେବା କାଠିକର ପାଠ ।

ପାଞ୍ଜିରେ ଏହିପରି ଅନେକ ବାଜେ କଥା ଲେଖା ଅଛି । ପାଠକମାନେ ସମୟ ନଷ୍ଟ ହେବାରୁ ବିରକ୍ତ ହେବେ, ଏହି ଭୟରେ ବାକି ଦୁଇ ତିନୋଟି ପତ୍ର ବାଦ ଦେଲୁଁ । ଆପଣମାନେ 'ବହ୍ୱାରମ୍ଭେ ଲଘୁକ୍ରିୟା' ବୋଲି ଗାଳି ଦେବେ ନାହିଁ । ବିଦାୟ ।

ଉ. ସା. / ୬ଷ ଭାଗ / ୧୧ଶ ସଂଖ୍ୟା / ଫାଲ୍‌ଗୁନ / ୧୩୦୯ ସାଲ ।

## ନବମ ବିଡ଼ା

ବାଇ ମାହାନ୍ତିଙ୍କ ଉପରେ ଆମ୍ଭମାନଙ୍କର ବିରକ୍ତି ଜାତ ହୋଇଥିବା ଆପଣମାନଙ୍କୁ ପୂର୍ବରୁ ଜଣାଇଅଛୁଁ । ସେ ସବୁଠାରେ ଦୋଷ ଗ୍ରହଣ କରିବାରେ ପଟୁ । ଢିଙ୍କି ସ୍ୱର୍ଗକୁ ଗଲେ ସେଇ ଧାନକୁଟା । ଆଖିରେ ନେଳି ଚଷମାଟାଏ ଦେଲେ ଦୁନିଆଯାକ ନେଳି ଦିଶେ । କିନ୍ତୁ କଅଣ କରିବୁଁ ? ବିଷବୃକ୍ଷୋଽପି ସଂବର୍ଦ୍ଧ୍ୟ ସ୍ୱୟଂ ଛେତ୍ତୁ ସମାମ୍ପ୍ରତଂ । କେତେଦିନ ହେଲା କିଛି ଗୋଟାଏ ଓର ଖୋଜି ବୁଲୁଛୁଁ, ମିଳିଲେ ତାଙ୍କ ଦାନାପାଣି ସେହି ଦିନ ଉଠିବ ନିଶ୍ଚିତ । ଆପାତତଃ ସେ ପର୍ଯ୍ୟନ୍ତ ସବୁ ସହିବାକୁ ହେଉଛି । ତାଙ୍କ ଲେଖା ଯେପରି କଦର୍ଯ୍ୟ, ପାଠକମାନେ ତହିଁର ଉଦାହରଣ ଏକାଧିକ ଥର ପାଇଅଛନ୍ତି । ଏଣିକି

ତାଙ୍କ ସହ ବାସ ମଧ ଆମ୍ଭମାନଙ୍କୁ କଦର୍ଯ୍ୟତର ବୋଧ ହେଲାଣି । ଏବେ ସମୟ ସମୟରେ ଆମ୍ଭମାନଙ୍କ ରୀତିନୀତି ଉପରେ ଅନ୍ଧାରୁଆ କଟାକ୍ଷପାତ କରିବାକୁ ମଧ ସେ ଛାଡ଼ୁ ନାହାନ୍ତି । ଏଥି ମଧରେ ଥରେ ତାଙ୍କୁ ଜଗନ୍ନାଥ ଦର୍ଶନକୁ ପଠାଇଲୁଁ । ସେ ଅଳି କରି କହିଲେ ଯେ ପୁରୀର ମଫସଲ (ରାହାଙ୍ଗ) ରେ ତାଙ୍କର ଜଣେ ମହାପ୍ରସାଦ ବନ୍ଧୁ ଅଛନ୍ତି; ପୁରୀରୁ ଫେରିଲା ବେଳେ ରାହାଙ୍ଗର ସେ ଗ୍ରାମଟି (ଗ୍ରାମର ନାମ ବର୍ତ୍ତମାନ ଆମ୍ଭେମାନେ ଗୋପନ ରଖିଲୁଁ) ବାଟେ ଆସିବେ ବୋଲି ଆମ୍ଭମାନଙ୍କ ଅନୁମତି ନେଇ ଗଲେ । ବିଦାୟ ହେବାବେଳେ ଆମ୍ଭେମାନେ କହିଲୁଁ ଯେ, ଯଦି ଆଗାମୀ ଥର ପାଞ୍ଜିରେ ଲେଶ ମାତ୍ର ବ୍ୟକ୍ତିଗତ ଆକ୍ରମଣ ବା ପରନିନ୍ଦା ଥିବ, ତେବେ ସେ ପାଞ୍ଜି ଆଦୌ ଗୃହୀତ ହେବ ନାହିଁ । ବାଇ ମାହାନ୍ତି ମୁରକି ହସା ଦେଇ 'ହଗିଲା ଲୋକଙ୍କୁ ଲାଜ ନାହିଁ, ଦେଖିଲା ଲୋକଙ୍କୁ ଲାଜ' ଢଗଟି ଆବୃତ୍ତି କରୁ କରୁ ଆମ୍ଭମାନଙ୍କ ନିକଟରୁ ଉଭେଇ ଗଲେ । ଆମ୍ଭେମାନେ ଦିନାକେତେ ତାଙ୍କ ଜାଲାରୁ ରକ୍ଷା ପାଇଲୁଁ ବୋଲି ଟିକିଏ ନିଶ୍ଚିନ୍ତ ହେଲୁଁ । ବାଇ ମାହାନ୍ତି ଫେରୁ ଫେରୁ ପ୍ରାୟ ଦେଢ଼ମାସ ଲାଗିଲା । ସଙ୍ଗରେ ଯାହା ଯାହା ସାଉଁଟି ଆଣିଥିଲେ, ଆମ୍ଭେମାନେ ବିଚାରିଲୁଁ- ଆବର୍ଜନା । କିନ୍ତୁ ଆମ୍ଭେମାନେ ଯେ ଅଭ୍ରାନ୍ତ, ଏହା କିଏ କହିବ ? ଆବର୍ଜନା ବୋଲି ଖାଲି କହିଦେଲେ ତ ଚଳିବ ନାହିଁ । ଆପଣମାନେ ଦେଖନ୍ତୁ, ଯେବେ କିଛି ଜିନିଷ ଥାଏ ରଖିବା, ନଚେତ୍ ବାଇ ମାହାନ୍ତିଙ୍କୁ ସସ୍‌ପେଣ୍ଡ୍ କରିବା । ଆମ୍ଭମାନଙ୍କୁ ମଧ ଗୋଟାଏ ଓର ମିଳିଯିବ ।

୧. ସେହି ଗ୍ରାମର ଦାଣ୍ଡରେ ଜୋତା ମାଡ଼ି ଚାଲିବା ନିଷିଦ୍ଧ, ଏହି ବିଧିଟି ବାଇ ମାହାନ୍ତିଙ୍କୁ ଜଣା ନ ଥିଲା । ଗ୍ରାମ ଦାଣ୍ଡରେ ସେ ଜୋତା ମାଡ଼ି ଯାଉ ଯାଉ ଜଣେ ପରିଚିତ ବ୍ରାହ୍ମଣ ତାଙ୍କୁ ତିରସ୍କାର କଲାରୁ ବାଇ ମାହାନ୍ତି ଉତ୍ତର କଲେ, ଅବଧାନ ! ଜୋତା ନ ମାଡ଼ି ହାତରେ ଧରି ଆପଣଙ୍କୁ ଓଳିକି ହେବାକୁ ହେବ, ଏ ରୀତି ମୁଁ ଜାଣି ନ ଥିଲି ।' ଏହା କହି ଜୋତା ଯୋଡ଼ିକ ଗୋଡ଼ରୁ କାଢ଼ି ହାତରେ ଧରି ଗୋସାଇଁ ମହାପ୍ରଭୁଙ୍କ ପ୍ରଣିପତ୍ୟ ଦଣ୍ଡବତ କଲେ ଓ ଗୋସାଇଁ ମହାପ୍ରଭୁ ଜୋତାଲଗା ପ୍ରମାଣରେ ସନ୍ତୁଷ୍ଟ ହୋଇଥିବା କଥା ପାଞ୍ଜିରୁ ପ୍ରକାଶ । (ବାଇ ମାହାନ୍ତି ଥରେ ମାନ୍ଦ୍ରାଜ ଅଞ୍ଚଳକୁ ଯାଇଥିଲେ, ତାଙ୍କର କୂପମଣ୍ଡୂକତ୍ୱ ଟିକିଏ କମିଥାଆନ୍ତା । କୋଟ୍ ପେଣ୍ଟଲୁନ୍ ଛଡ଼ା ଅନ୍ୟ ପୋଷାକ ପିନ୍ଧି ମାନ୍ଦ୍ରାଜ ଅଞ୍ଚଳରେ ବିଦ୍ୟାଳୟ ଓ କଚେରିକୁ ଜୋତା ମାଡ଼ି ଯିବାକୁ ମନା । ସେତେବେଳକୁ ପାଟି ଫିଟନ୍ତା କି ?)

୨. ଗ୍ରାମର ଦେବତା ଶ୍ରୀ ଲକ୍ଷ୍ମୀନାରାୟଣଜୀଉଙ୍କ ଗାଦି ତଳେ ଖଡ଼ମ ୨୧୪ ଯୋଡ଼ା ରଖା ହୋଇଅଛି । ଖୋଦ୍ ଠାକୁର କଠଉ ବ୍ୟବହାର କରନ୍ତି ବୋଲି ସେ ଗ୍ରାମରେ କାହାରି କଠଉ ବ୍ୟବହାର କରିବା ନିଷିଦ୍ଧ । ଠାକୁର ଅନ୍ନ ବ୍ୟଞ୍ଜନ ଭୋଗ ପାଆନ୍ତି, ଅତଏବ ଗ୍ରାମର କେହି ଲୋକ ଅନ୍ନ ବ୍ୟଞ୍ଜନ ଭୋଜନ କରିବେ ନାହିଁ ବୋଲି କେତେକ ଯୁବକଙ୍କ ମଧରେ ବର୍ତ୍ତମାନ ଆନ୍ଦୋଳନ ଲାଗିଅଛି, କେତେକ ଦିନ ପରେ ଗ୍ରାମରେ

କେହି ସନ୍ଧ୍ୟା ପରେ ଆଲୁଅ ଜାଳିପାରିବେ ନାହିଁ, ବେକରେ ଫୁଲମାଳ ପକାଇବେ ନାହିଁ ଓ ଲୁଗା ପିନ୍ଧିବେ ନାହିଁ ବୋଲି ଆଶା କରାଯାଏ । ଏ ସବୁ କଲେ ଗ୍ରାମଦେବତାଙ୍କୁ ଅବମାନନା କରାଯାଉଅଛି । ଗ୍ରାମଦେବତାଙ୍କ ପାଚିଲା ଗାମୁଛା ଜଣେ ଗୃହସ୍ଥ ଘରୁ ବାହାରିବାରୁ ସେ ଲୋକଟି ଭାରି ଏକ ଅପବାଦରୁ ରକ୍ଷା ପାଇବାର ପ୍ରବାଦ ଅଛି ।

୩. କିଏ କହେ ବ୍ରାହ୍ମଣମାନେ ଆଜିକାଲି ନ୍ୟାୟ, ଦର୍ଶନ, ବେଦ, ବେଦାନ୍ତ ଛାଡ଼ି ସାରିଲେଣି ? ଚାର୍ବାକଙ୍କ ଦର୍ଶନର 'ଋଣଂ କୃତ୍ୱା ଘୃତଂ ପିବେତ୍' ଉକ୍ତିଟିର ସାରବତ୍ତା ଯଦି ଓଡ଼ିଶାରେ କେହି ଗ୍ରହଣ କରିଥାଏ, ତେବେ ଉକ୍ତ ଶାସନର ଗୋସେଇଁମାନେ । ଆପଣ ବୋଧହୁଏ କଥାଟା ଆହୁରି ଖୋଲାସା କରି ବୁଝାଇ ଦେବାକୁ ଜିଗର କରିବେ । ତେବେ ଶୁଣନ୍ତୁ - ବେଦାନ୍ତ ଡାକୁଛି, ସମ୍ପତ୍ତି ଚିରସ୍ଥାୟୀ ନୁହେଁ, ସମ୍ପତ୍ତି ସବୁ ଅନର୍ଥର ମୂଳ । ଅତଏବ 'କୌପୀନବନ୍ତଃ ଖଳୁ ଭାଗ୍ୟବନ୍ତଃ ।' ଯେଉଁ ରାଜାମାନେ ଶାସନର ବ୍ରାହ୍ମଣମାନଙ୍କ ପିଛା ବାଟି ବାଟି ଲାଖରାଜ (ନିଷ୍କର ଓ ଟଙ୍କି) ବୃତ୍ତି ଖଞ୍ଜି ଯାଇଥିଲେ, ସେମାନଙ୍କ ସ୍ଥୂଳ ବୁଦ୍ଧିକୁ ଏ ବେଦାନ୍ତ ବାକ୍ୟର ମର୍ମ ପ୍ରବେଶ କରି ପାରି ନ ଥିଲା । ଯାହା ତ ହେବାର ହେଲାଣି, ବ୍ରାହ୍ମଣମାନେ ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନା କରିବେ, ସେମାନଙ୍କର ସମ୍ପତ୍ତି ଥିଲେ ବ୍ରାହ୍ମକ୍ରିୟାରେ ବ୍ୟାଘାତ ପଡ଼ିବ । ଅତଏବ ପାଞ୍ଚ ପାଞ୍ଚ ନନାଏ ସେ ସମ୍ପତ୍ତିତକ ହସ୍ତାନ୍ତର କରିବା ଉପାୟ ସ୍ଥିର କଲେ । ସେଥିରେ ସହଜ ଉପାୟ - ମରିଚପାଣି (ଡାକନାମ ପାଚକପାଣି), ଚୁଡ଼ାଘସା, କଦଳୀଚକଟା, ଛାଗାଘର ଓ ଗଞ୍ଜପା । ଏଗୁଡ଼ିକର ମାହାତ୍ମ୍ୟ ଅପ୍ରକାଶ୍ୟ । 'ଗୁରୁର୍ଭକ୍ତାୟ ଦାତବ୍ୟଂ ଚ ଦେୟଂ ଯସ୍ୟ କସ୍ୟଚିତ୍ ।' ମରିଚପାଣିଟି ଅଭିଧାନରେ ଖୋଜିଲେ ପାଇବେ ନାହିଁ । ପ୍ରକୃତ ଶବ୍ଦଟି ହେଲା ମରିଚ୍ୟାଦି ପାଣି । ବୈଦ୍ୟଶାସ୍ତ୍ରରେ ପ୍ରବେଶ ଥିଲେ ଶବ୍ଦଟା ବେଶି ଅଖଞ୍ଜିଆ ହେବ ନାହିଁ । ଏଣ୍ଡୋଦି ତୈଳ ଏରଣ୍ଡ ତୈଳ ଢେର ଉପକରଣ, ସେହିପରି ମରିଚପାଣି ମରିଚ ପତି ନାଗକେଶର ଲବଙ୍ଗ ଜାଇଫଳ - ଅବସ୍ଥା ଅନୁସାରେ ଇତ୍ୟାଦି ଇତ୍ୟାଦି । ଚୁଡ଼ାଘସା, କଦଳୀଚକଟା ଇତ୍ୟାଦି ମଧ୍ୟ ଭୈଷଜ୍ୟରତ୍ନାବଳୀର ନିୟମାନୁଗତ । ଯଦିଚ ଆମ୍ଭମାନଙ୍କର ଏ କଥାରେ ଅବିଶ୍ୱାସ ହୁଏ, ତେବେ ଥରେ ଶ୍ରୀ ମୁକ୍ତିମଣ୍ଡପକୁ ବିରାଜମାନ କଲେ ଚକ୍ଷୁ କର୍ଣ୍ଣର ବିବାଦ ଏକା ନଟକେ ଛିଡ଼ିଯିବ । ଗୋଟିଏ ଶ୍ଳୋକ ଅଛି - 'ଗଙ୍ଗାୟଂ ଚ ଜଳେ ମୁକ୍ତିର୍ବାରାଣସ୍ୟାଂ ଜଳେ ସ୍ଥଳେ, ଜଳେ ସ୍ଥଳେ ଚାନ୍ତରୀକ୍ଷେ ମୁକ୍ତିଃ ଶ୍ରୀପୁରୁଷୋତ୍ତମେ ।' ଜଳ ସ୍ଥଳର ଅର୍ଥ ପାଣି ଓ ଶୃଙ୍ଖଳା, କିନ୍ତୁ ଅନ୍ତରୀକ୍ଷ ଅର୍ଥ ଶୂନ୍ୟ, - ପୃଥିବୀରେ ନୁହେଁ କି ଶୂନ୍ୟରେ ନୁହେଁ । କଥାଟା କଅଣ ନା ମୁକ୍ତିମଣ୍ଡପର ବେଢ଼ା କାନୁସଟା ଶୂନ୍ୟରେ ଅର୍ଥାତ୍ ଭୂପୃଷ୍ଠରୁ କେତେକ ଉଚ୍ଚରେ । ମୁକ୍ତିମଣ୍ଡପର ବେଢ଼ାରେ ମୁଣ୍ଡିଆଟାଏ ମାଇଲେ ସମସ୍ତେ ସ୍ୱଦେହରେ ମୁକ୍ତ । ଗୋଟିଏ ପ୍ରବାଦ ଅଛି, 'କପୂର ଗଲାଣି କନା ଅଛି ।' ଆପଣ କହିବେ, ଆପଣଙ୍କର ମୁକ୍ତିରେ ଦରକାର ନାହିଁ, କିନ୍ତୁ ତା କହିଲେ ଛାଡୁଛି କିଏ ? ଗୋସାଇଁ ମହାପ୍ରଭୁମାନେ ନିଃସ୍ୱାର୍ଥବ୍ରତୀ, ତୁମ୍ଭର ଇଚ୍ଛା ଥାଉ କି

ନ ଥାଉ ଧରାଧରି କରି ହେଲେ ମୁକ୍ତିମଣ୍ଡପରେ ତୁମ ମୁଣ୍ଡଟା ଛୁଆଇଁ ଦେବେ, ତା ପରେ ତୁମେ ଜିନିଷଟା ପାଇଲେ ଯଥାଯୋଗ୍ୟ ମୂଲ୍ୟଟା ଦେବା ନିମନ୍ତେ ଆଇନ ଅନୁସାରେ ବାଧ୍ୟ ହେବ । (ମରିଚପାଣି ଚୁଡ଼ାଘଷା ସଙ୍ଗେ ମୁକ୍ତିମଣ୍ଡପ ବେଢ଼ାର ସମ୍ପର୍କ କିପରି ରହିଲା, ଆମ୍ଭେମାନେ ବୁଝିପାରିଲୁ ନାହିଁ । ଏଗୁଡ଼ିକ ପ୍ରଳାପ ଓ ବିଜାତିଗତ ଆକ୍ରୋଶ ଛଡ଼ା ଆଉ କଅଣ ହୋଇପାରେ ?)

୪. ଗ୍ରାମରେ ଗୋଟିଏ ସୁପ୍ରଥାରେ ଆମ ବାଇ ମାହାନ୍ତିଙ୍କ ମନଟା ଭାରି ମାନିଛି । ଜ୍ୟେଷ୍ଠ ମାସରେ ଶୀତଳ ଷଷ୍ଠୀ ପର୍ବ । ସେଦିନ ଶାସନବ୍ୟାପୀ ଆନନ୍ଦ ଓ ମଉଜ । ମଉଜ ଅର୍ଥ ପୂର୍ବ ହେଡ଼ିଙ୍ଗରୁ ସୁଚତୁର ପାଠକେ ବୁଝି ପାରିଥିବେ । ଯେ ନ ବୁଝି ପାରିଅଛନ୍ତି, ସେମାନେ ଗମାର ବୋଲି, ଦୁନିଆ ଲୋକେ କିଛି ଗମାର ନୁହନ୍ତି । ସମୟ ଅପବ୍ୟୟ କରିବାର ବାଇ ମାହାନ୍ତି ସମ୍ପୂର୍ଣ୍ଣ ବିରୋଧୀ । ଶାସନରେ ଶୀତଳ ଷଷ୍ଠୀରେ ବାଣମରାର ଧୁମ୍ ଲାଗିଯାଏ । ଅନେକ ପ୍ରକାର ଉତ୍କୃଷ୍ଟ ବାଣ (ତୁମ୍ବ, ହାବିଳି, ଚକ୍ର ଇତ୍ୟାଦି) ପ୍ରଦର୍ଶିତ ହୁଏ । ଦୁଇ ଚାରି ଦିନ ପୂର୍ବରୁ ଯାହା ଘରେ ନିତାନ୍ତ ମୁଠାଏ ହେଲେ ଖାଇବାକୁ ଅଛି, ତାହାର ସୁଦ୍ଧା ଦାଣ୍ଡରେ ତୁମ୍ବ ବାଡ଼ିଆ ଲାଗେ । ଆଜିକାଲି କେତେକ ସ୍ଥାନରେ ବାଣ ପଡ଼ି ଦୁର୍ଘଟଣା ହୋଇଥିବାରୁ ସରକାର ବାହାଦୁରଙ୍କର ଏଣିକି ଭାରି କାଇଦା ହେଲାଣି । ଗ୍ରାମରେ ବାଣ ପ୍ରସ୍ତୁତ କରି ମାରିବାରେ ବିଷମ ପ୍ରତିଯୋଗିତା ଉପସ୍ଥିତ ହୁଏ । ଯାହାର ହାବିଳି ଉତ୍କୃଷ୍ଟ ହେଲା, ସେ ଜୀବନ ଯାକ (ଆପାତତଃ ବର୍ଷକ ପାଇଁ) କୃତକୃତ୍ୟ ହୁଏ ଏବଂ ଯାହାର ତୁମ୍ବ ଫାଟିଯାଏ କିମ୍ବା ହାବିଳି ବେଶ୍ ଦୂରକୁ ନ ଉଠେ, ସେ ଗ୍ରାମରେ ମୁଖ ଦେଖାଇବାଠାରୁ ମରଣ ପର୍ଯ୍ୟନ୍ତ ଶ୍ରେୟସ୍କର ମଣେ । ଥରେ ମହାପାତ୍ରଙ୍କ ପୂର୍ବପୁରୁଷର କୌଣସି ବ୍ୟକ୍ତିଙ୍କର ତୁମ୍ବଟା ଫାଟିଯିବାରୁ ସେ ଘରେ ଆସି ଅଫିମ ଟେଳାଏ ପକାଇ ଦେଇ ଇହଲୀଳା ସାଙ୍ଗ କରିଥିଲେ । ''ଅବାଚ୍ୟବାଦାଂଶ୍ଚ ବହୂନ୍ ବଦିଷ୍ୟନ୍ତି ତବାହିତାଃ । ନିନ୍ଦନ୍ତସ୍ତବ ସାମର୍ଥ୍ୟଂ ତତୋ ଦୁଃଖତରଂ ନୁ କିଂ ।'' ଶ୍ଳୋକଟା କେଉଁଠାରେ ଦେଖିଲା ପରି ସ୍ମରଣ ହେଉଅଛି । ସେ ଯାହାହେଉ ସ୍ଥୂଳତଃ ବାଣଗୁଡ଼ିକ ମନ୍ଦ ହୁଏ ନାହିଁ । କିନ୍ତୁ ଆମ୍ଭେମାନେ ବାଣ ବାଡ଼ିଆ କଥା ପକାଇଥିଲୁଁ । ସେତେବେଳେ ସାଆନ୍ତ (ଖାମିନ୍ଦ)ଙ୍କ ଘରର ବାଉରୀ ପର୍ଯ୍ୟନ୍ତ ସାଆନ୍ତଙ୍କ ଆମୋଦରେ ମନ ପ୍ରାଣ ଢାଳି ଦେଇଥାଆନ୍ତି । ବାଣ ବାଡ଼ିଆ ନିମନ୍ତେ ଶାସନତଳ ବାଉରୀଙ୍କୁ ଈଶ୍ୱର ଜନ୍ମ ଦେଇଅଛନ୍ତି । ପଇସାକର ମାମୁଘର ପାଣି ହେଲେ ଭୋଇପୁଅ ଦିନଯାକ ଏଞ୍ଜିନ ହତା ଭଳି ଦୁମ୍‌ଦାମ୍ ଚାଲିଥିବ । କିନ୍ତୁ ଏହା ହେଲେ ତ ଭୋଇର ମନୁଷ୍ୟ ଶରୀର, ସେ ୩୫୯ ଦିନ ସାଆନ୍ତମାନଙ୍କୁ ଡରିହରି ଆପଣା ହିସାବରେ ଚଳୁଥାଏ, ବର୍ଷକେ ଦିନୁଟାଏ ତାକୁ ସ୍ୱାଧୀନତା ମିଳିଯାଏ । ତା ଆଗରେ ସେଦିନ ଇନ୍ଦ୍ର ଚନ୍ଦ୍ର ଠିକଣା ପଡ଼ନ୍ତି ନାହିଁ । ସାଆନ୍ତ (ଖାମିନ୍ଦ) ମଧ୍ୟ ଭାରି ଚତୁର । ଦେଖନ୍ତି ଯେ, ଭୋଇପୁଅର ସାହାଯ୍ୟ ବିନା ତୁମ୍ବ ବାଡ଼ିଆ ଅସମ୍ଭବ । ତାକୁ ଟିକିଏ ସ୍ୱାଧୀନତା ନ ଦେଲେ- ସେ ବାଡ଼େଇବାକୁ ଆସିବ କିଆଁ ? ଏଥିପାଇଁ

ମହାପ୍ରଭୁମାନେ ଦିନେ ଦି’ ଦିନ ପାଇଁ ଆଖି ବୁଜି ଦିଅନ୍ତି । ବାଉରୀମାନେ ଦିନେ ଦି’ଦିନ ପାଟିସୁଖ ମେଣ୍ଟାଇ ନିଅନ୍ତି, ସଙ୍ଗେ ସଙ୍ଗେ ସାଆନ୍ତଙ୍କ ତୁମ୍ଭ ଓ ହାବିଳି ଭିଡ଼ା ଶେଷ ହୋଇଯାଏ । ବାଉରୀମାନେ ମଧ୍ୟ ସୁବିଧା ଦେଖି ସାଆନ୍ତଙ୍କ ସଙ୍ଗେ ମୌଖିକ କୁଟୁମ୍ବ ସମ୍ବନ୍ଧ ବସାଇ ଦିଅନ୍ତି । ଦାସେ ଲକ୍ଷ ଲକ୍ଷ ଟଙ୍କା ଖରଚ କରି ଯେଉଁ ଅଧିକାର ଆଜି ପର୍ଯ୍ୟନ୍ତ ସମ୍ପୂର୍ଣ୍ଣରୂପେ ପାଇ ନାହାନ୍ତି, ମୂଲିଆ ବାପୁଡ଼ା ସୂତ୍ରେ ସୂତ୍ରେ ସାଆନ୍ତଙ୍କ ଅନୁମତିକ୍ରମେ ଡେଙ୍ଗୁରା ଦେଇ ଦିନ ଦି’ପହରରେ ସେ ଅଧିକାର ଭୋଗ କରି (ସାଆନ୍ତଙ୍କ ସଙ୍ଗେ ମୌଖିକ ସ୍ୱାଧୀନ ସମ୍ବନ୍ଧ ସ୍ଥାପନ କରି ଦେଇ) ମୁହଁସୁଖ କରି ନିଏ । (କଥାଟା ଆମ୍ଭେମାନେ ବି ଉତ୍ତମ ରୂପେ ସମଝି ପାରିଲୁ ନାହିଁ । ପାଞ୍ଜିରେ ଏହାର ଅର୍ଥର କିନ୍ତୁ ସୂଚନା ନାହିଁ । ଆମ୍ଭମାନଙ୍କର ଜଣେ ରାହଙ୍ଗ ନିବାସୀ ସଙ୍ଗୀ ଯୁବକ କଥାଟାକୁ ସାଫ ସୁତୁରା କରି ଆବହମାନକାଳ ପ୍ରଚଳିତ ରୀତି ଓ ସୁପ୍ରଥାର ଦ୍ୱାହି ଦେଇ ବୁଝାଇ ଦେଇଥିଲେ । ଏଥିରେ ସୁଚତୁର ପାଠକେ ଦେବତା ଭକ୍ତି, ଆଶ୍ରିତବାତ୍ସଲ୍ୟ ଓ ପାରମ୍ପରିକ ପ୍ରଥା-ଭକ୍ତିର ପରାକାଷ୍ଠା ଦେଖିପାରିବେ ।) ଏ ରୀତି କେତେକ ପୂର୍ବପୁରୁଷଙ୍କୁ ଶ୍ରୁତିକଟୁ ହେବାରୁ ଉକ୍ତ ଗ୍ରାମର କେଶରପୁରିଆ ବସୁଙ୍କ ବଡ଼ବାପେ ବାଉରୀଙ୍କ ସ୍ୱାଧୀନ ମୁଖରେ ବାଧା ଦେବାକୁ ବସିଲାରୁ ଚାଳରୁ ନାଗସାପ ବାହାରି ବଡ଼ବାପଙ୍କୁ ଦଂଶନ କରିବାକୁ ଆସୁଥିଲା । ସେହିଦିନଠାରୁ ଗ୍ରାମର ସୋମନାଥ ଦେବଙ୍କ ବଳରେ ବାଉରୀମାନଙ୍କୁ ଦିନେ ଦୁଇ ଦିନ ଛାଡ଼ ।

୫. କେତେକ ବ୍ରାହ୍ମଣ ଶାସନରେ ବ୍ରାହ୍ମଣ ସମାଜର ଶୀର୍ଷସ୍ଥାନୀୟ, ଅତଏବ ଜଗଦ୍ ବନ୍ଦ୍ୟ ସାମନ୍ତ ଶ୍ରେଣୀର ଏକ ଉପସଂପ୍ରଦାୟ ଥିବା କଥା ପାଞ୍ଜିରେ ଲେଖା ଅଛି । ସେମାନେ ଅନ୍ୟ ସଂପ୍ରଦାୟଙ୍କ ଠାରୁ ଢେର ଉଚ୍ଚାସନରେ ଅବସ୍ଥିତ । ସେମାନେ ଅନ୍ୟ ସଂପ୍ରଦାୟର ବ୍ରାହ୍ମଣମାନଙ୍କୁ ନମସ୍କାର କରିବେ ନାହିଁ । ଅନ୍ୟ ସଂପ୍ରଦାୟର କେହି ବ୍ରାହ୍ମଣ ତାଙ୍କ ଘରେ ଉପସ୍ଥିତ ହେଲେ ସାଆନ୍ତଙ୍କ ଘରେ ତାଙ୍କ ଗୋଡ଼ ଅଧୁଆ ରହିବ, ସାମନ୍ତଙ୍କ ଘର ବାରିକ ମଧ୍ୟ ସାଆନ୍ତଙ୍କ ପାଖେ ଥାଇ ସାଆନ୍ତ ! ଗୋଡ଼ ଧୋଇବାକୁ ପାଣି ଦେଲେ କିମ୍ବା ନମସ୍କାର କଲେ ଅଥବା ବସିବାକୁ ଆସନ ଦେଲେ ସାଆନ୍ତ ଯେ ଉଚ୍ଚ ପିଣ୍ଡାରୁ ଖସି ପଡ଼ିବେ ! ସାଆନ୍ତଙ୍କ ଘରକୁ ବିଶେଷ ‘ନିମିତ୍ତ୍ୟ’ ଉପଲକ୍ଷରେ ଉଦରକ୍ରିୟା ସମ୍ପନ୍ନ କରିବାକୁ ଗଲେ ଅନ୍ୟ ବ୍ରାହ୍ମଣଙ୍କର ଗଡୁ ପିଢ଼ା ଘେନିଯିବାର ବିଧି ଅଛି । ପୂର୍ବର ବିଧି ଚଳି ଆସୁଥାଉ, ଆପତ୍ତି ନାହିଁ, କିନ୍ତୁ ଆମ୍ଭେମାନେ ପଚାରୁ, ସେ ମନୁଷ୍ୟ କାହାନ୍ତି ? ବାଇ ମାହାନ୍ତିଙ୍କର ଏ ହେଡ଼ିଙ୍ଗରେ ଯାହା ଲେଖାଅଛି, ତାହା ଗ୍ରହଣ କରିବାକୁ ଆମ୍ଭେମାନେ ଏକାନ୍ତ ନାରାଜ । ସାମନ୍ତବଂଶୋଦ୍ଭବ ଆମ୍ଭମାନଙ୍କର ୭/୮ ଜଣ ଶିକ୍ଷିତ ବନ୍ଧୁ ଅଛନ୍ତି, ସେମାନଙ୍କ ବ୍ୟବହାରରୁ ଆମ୍ଭେମାନେ ଭିନ୍ନ ପ୍ରକାର ଅନୁଭବ କରୁଅଛୁଁ । (ସେ କେତେ ଜଣ ନମୁନା କି ନିପାତନ, ତାହା ଅବଶ୍ୟ ଆମ୍ଭମାନଙ୍କର କହିବାର ଅଧିକାର ନାହିଁ ।) ରାହଙ୍ଗରେ ଚାରି ସାଆନ୍ତ ପ୍ରଧାନ । ୧ - ଉଷୁନାବରପଦା ନନ୍ଦ ସାଆନ୍ତେ, ୨ - ବୀରନରସିଂହପୁର

ବଛସ ମହାପାତ୍ରେ, ୩ - ହରେକୃଷ୍ଣପୁର ଗୁଆତିଆ ରଥେ, ୪ - ବିଶ୍ୱନାଥପୁର ବାଜପେୟୀ । ସାଆନ୍ତେ ହେଲେ ଶିଡ଼ିର ସବା ଉପରେ । ତାଙ୍କ ତଳ ପାହାଚ ଭଟ୍ଟମିଶ୍ରେ, ତାଙ୍କ ତଳେ ଦକ୍ଷିଣସାହିଆ ରଥେ, ପାର୍ବତୀପୁରିଆ ରଥେ, କେଶରପୁରିଆ ବସୁ, ଇତ୍ୟାଦି ଇତ୍ୟାଦି । ସାଆନ୍ତଙ୍କ ଖରଡ଼ରେ (ଆସନରେ) ଅନ୍ୟ ବ୍ରାହ୍ମଣଙ୍କର ବସିବାର ଅଧିକାର ନାହିଁ । ଫୁଲସଭାରେ ସାଆନ୍ତଙ୍କ ଘରର ପିଲାଟିଏ ସୁଦ୍ଧା ଫୁଲଚନ୍ଦନ ନ ପାଇଲେ ଉପସ୍ଥିତ ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କୁ ଫୁଲଚନ୍ଦନ ଦିଆଯିବ ନାହିଁ । ସାଆନ୍ତଙ୍କୁ ଆଉ କେତେ ବିଷୟ ମଧ ଛାଡ଼ । ସାଆନ୍ତଙ୍କ ବିବାହ ବେଳେ ଅନନ୍ୟ ସୁଲଭ 'ମହତ୍ୱ'ରେ ଅଧିକାର ଅଛି । ପାଲିଙ୍କି ଉପରେ ପାଟଛତା, ଚଅଁର ତ୍ରାସ ଆଡ଼େଣି, ଘୋଡ଼ା, ହାତୀ ସାମନ୍ତଙ୍କ ଛଡ଼ା ଆଉ କେହି ବିବାହଯାତ୍ରାରେ ଗ୍ରାମଦାଣ୍ଡରେ ବ୍ୟବହାର କରିପାରିବେ ନାହିଁ । ଗ୍ରାମର 'ହକରା' ବଣ୍ଟା ହେଲାବେଳେ ସାଆନ୍ତଙ୍କ ନାମ ସର୍ବପ୍ରଥମ ଧାଡ଼ିରେ ଥାଏ । ସାମନ୍ତ ଅନ୍ୟ ବ୍ରାହ୍ମଣଙ୍କ ପାକରେ ଭୋଜନ କରିବେ ନାହିଁ, କିନ୍ତୁ ସାମନ୍ତଙ୍କ ଘରେ ସବୁ ବ୍ରାହ୍ମଣେ ବିନା ଆମନ୍ତ୍ରଣରେ ଭୋଜନ କଲେ ଦୋଷ ନାହିଁ । (ବଙ୍ଗଦେଶ ପ୍ରଚଳିତ କୌଳିକ ପ୍ରଥା ବାଇ ମାହାନ୍ତିଙ୍କୁ ଜଣା ନାହିଁ ପରା ? ଜଣା ଥିଲେ ଏ ହେଡ଼ିଙ୍ଗ୍‌ର ଭାଷା ଛଟାଟା କେତେକ ପରିମାଣରେ ସଂଯତ ଭାବ ଧାରଣ କରିଥାଆନ୍ତା; ବାଇ ମାହାନ୍ତି ନିଜେ ତାଙ୍କ କରଣ ସାଆନ୍ତମାନଙ୍କ 'ମର୍ଯ୍ୟାଦା' ଭୁଲି ଯାଇଛନ୍ତି ପରା ? ଗୋସାଇଁ ମହାପ୍ରଭୁମାନେ ଆଜିକାଲି ଦେଶ କାଳ ପାତ୍ରକୁ ଚାହିଁ ଗୋଟିଏ ଅତି ସୁନ୍ଦର ବିଧି ଚଳାଇ ଆସୁଅଛନ୍ତି । ଏପରି କୌଣସି କଥା ନାହଁ, ଯାହା ନିମନ୍ତେ କିଛି ଜୋରିମାନା ଦିଅଁଙ୍କ ଘରକୁ ଦେଲେ ଚଳି ନ ଯିବ । ଅର୍ଥାତ୍ ସମାଜରେ କେହି କୌଣସି ଗର୍ହିତ ଆଚରଣ କଲେ ସେ ସମାଜରୁ ବିତାଡ଼ିତ ହେବ, କିନ୍ତୁ ପାଞ୍ଚ ମହାଜନେ ବସି ପଞ୍ଚମୁଖରେ ଗୋଟାଏ ଗାର ଟାଣି ଦେଲେ, ସେ ଗାରଟିକୁ ଚାହିଁ ବେଳକାଳ ଉଣ୍ଡି ଆସି ମହାଜନଙ୍କ ପାଖରେ କିଛି ଧାତୁମୟ ପଦାର୍ଥ ସହିତ ଶରଣ ପଶିଗଲେ ଅର୍ଥାତ୍ ହାଜର ହୋଇଗଲେ ସବୁ କଥା ନିଭିଯିବ । ସମାଜରେ କାହିଁକି, ସବୁ ସମାଜରେ ଅଛ ବହୁତ ଅଛି । ଅନ୍ୟ ସମାଜ ପ୍ରତି ବିଦ୍ରୂପକାରୀ ଉତ୍ତମ ମଧମ ପ୍ରତିଶୋଧଟାଏ ପାଇଯିବେ । ବ୍ରାହ୍ମଣଙ୍କର କେହି ଓାହା ନାହିଁ ବୋଲି ମାହାନ୍ତିଏ ଆମର ଶିର ଦେଖି ଚଢ଼ୁଟାଏ ବସାଇ ଦେଲେ ପରା !)

୬. ଗ୍ରାମର ଦାଣ୍ଡ ଦେଖି ବାଇ ମାହାନ୍ତି ଭାରି ଖୁସି ହୋଇ ଅଛନ୍ତି । ଦାଣ୍ଡ ଖୁବ୍ ପ୍ରଶସ୍ତ ଓ ପାର୍ଶ୍ୱରେ ଠାବେ ଠାବେ ନାରିକେଳ ବୃକ୍ଷର ବହୁଳତା ଯୋଗୁଁ ଛାୟାମୟ । ଘରଗୁଡ଼ିକ ଦାଣ୍ଡର ଉଭୟ ପାର୍ଶ୍ୱରେ ଧାଡ଼ି ଲାଗି ରହିଅଛି । ଗ୍ରାମର ଦୁଇ ମୁଣ୍ଡରେ ପୁଷ୍କରିଣୀ ଓ ଦେବାଳୟ । ଦି' ଧାଡ଼ି ଘରର ବାଡ଼ିଆଡ଼େ ଲମ୍ବ ଲମ୍ବ 'ଯୋଡ଼ି' ଗ୍ରାମର ଏକ ମୁଣ୍ଡରୁ ଅନ୍ୟ ମୁଣ୍ଡ ପର୍ଯ୍ୟନ୍ତ ଲାଗିଅଛି । ବାଡ଼ିଆଡ଼ ସ୍ତ୍ରୀମାନଙ୍କର କାରାଗାର । ଗ୍ରାମମୁଣ୍ଡ ପୁଷ୍କରିଣୀରେ ପୁରୁଷମାନେ ସ୍ନାନାଦି କରନ୍ତି । ଗ୍ରାମଟି ରାଜପ୍ରତିଷ୍ଠିତ । ସ୍ଥାପୟିତା ଗ୍ରାମର ନାମଦାତା ପୁରୀର ଜନୈକ ରାଜା, ଗ୍ରାମର ସମସ୍ତ ସୁବିଧା କରି ଦେଇ

ଯାଇଅଛନ୍ତି । ଗ୍ରାମର ମାଳୀ, ପଣ୍ଡା, ଭଣ୍ଡାରି, ଧୋବା, ବାଜାଦାର ପର୍ଯ୍ୟନ୍ତ ଗ୍ରାମସେବା ନିମନ୍ତେ ରାଜପ୍ରଦତ୍ତ 'ହେତା' ଖାଉଅଛନ୍ତି । ବ୍ରାହ୍ମଣମାନେ ନିଶ୍ଚିନ୍ତ ହୋଇ କେବଳ ଶାସ୍ତ୍ରଚର୍ଚ୍ଚାରେ ଦିନ କାଟିବେ, କୌଣସି ବିଷୟରେ କାହାକୁ ପାଟି ସୁଦ୍ଧା ଫିଟାଇବେ ନାହିଁ, ରାଜା ଏହି ଉଦ୍ଦେଶ୍ୟରେ ଶତ ଶତ ବାଟି ଲାଖରାଜ ବ୍ରହ୍ମୋତ୍ତର ଟଙ୍କ ବୃତ୍ତି ପ୍ରତି ଗ୍ରାମରେ ଖଞ୍ଜି ଯାଇଥିଲେ । ଦାତା ରାଜାମାନେ ଜାଣି ନ ଥିଲେ ଯେ, ନନାଏ ଏତେ ଶୀଘ୍ର ଚାର୍ବାକଙ୍କ ଦର୍ଶନକୁ ପାଣି କରି ପକାଇବେ । ବାଇ ମାହାନ୍ତି ଅନେକ ସ୍ଥାନ ବୁଲିଅଛନ୍ତି, କିନ୍ତୁ ଗ୍ରାମର ଏପରି ସୁଚାରୁ ଗଠନ ଓ ପରିଚାଳନ କେଉଁଠାରେ ଦେଖି ନାହାନ୍ତି । ଗ୍ରାମ ନିକଟରେ ଯଥାସ୍ଥାନରେ ଧୋବା, ଭଣ୍ଡାରି, କେଉଟ, ମୂଳିଆ, ପଣ୍ଡା, ମାଳୀ ଆଦି ପ୍ରୟୋଜନୀୟ ଜାତି 'ହେତା' * ଖାଇ ଅଛନ୍ତି । ଥରେ ଘଣ୍ଟାରେ ଚାବି ଦିଆ ହେଲା, କେହି କାହାକୁ ପାଟି ଫିଟାଇବାକୁ ନାହାନ୍ତି, କିନ୍ତୁ ନିରୂପିତ ସମୟରେ ସେବାକାରୀମାନେ ତାଙ୍କର କର୍ତ୍ତବ୍ୟ ସେବାକାର୍ଯ୍ୟ କରି ଚାଲି ଯାଉଅଛନ୍ତି । ଯେଉଁ ରାଜା ମନରେ କେତେ ଉଚ୍ଚ ଭବିଷ୍ୟଦ୍ ଚିତ୍ରମାନ ଅଙ୍କନ କରି ଏ ଗ୍ରାମ ପ୍ରତିଷ୍ଠା କରି ଯାଇଥିଲେ, ସେ ଥରେ ଭଲା ବର୍ତ୍ତମାନ ମର୍ତ୍ତ୍ୟକୁ ଓହ୍ଲାଇ ଅବସ୍ଥାଟା ଦେଖିଯାଆନ୍ତେ କି ! ଭାରି ଚିତ୍ତପ୍ରସାଦ ଲାଭ କରି ମହାନନ୍ଦରେ ସ୍ୱସ୍ଥାନକୁ ଫେରିଯାଆନ୍ତେ । ବ୍ରାହ୍ମଣଭୋଗ୍ୟ ଅନେକ ଲାଖରାଜ ଚାହୁଁ ଚାହୁଁ ମରିଚପାଣି, ଅମାଲ୍, କଦମ୍ବା, କଦଳୀଚକଟା, ଘଷା ଚୁଡ଼ାରେ ପରିଣତ ହୋଇଗଲା ! ପଞ୍ଚଭୂତର ପଦାର୍ଥ ପାଞ୍ଚ ଭୂତଙ୍କ ହାବୁଡ଼ରେ ପଡ଼ିଗଲା । (ଦାନ୍ତୁରୀ ହସିଲେ କାନ୍ଦିଲେ ଏକା କଥା - ଆମ ବାଇ ମାହାନ୍ତିଙ୍କର ଅନୁକୂଳ ପ୍ରତିକୂଳ ମତ ଉଭୟେ ସମାନ । ହସରେ କାନ୍ଦ ଓ କାନ୍ଦରେ ହସ ଅଛି) ।

୭. ଆପଣ କହୁଛନ୍ତି, ବ୍ରାହ୍ମଣମାନେ ନିର୍ଧନ, କିନ୍ତୁ ଆମ୍ଭେମାନେ ଜାଣୁ, ଏମାନଙ୍କର ପ୍ରକୃତ ଧନ ଜାତି । ଜାତି ମଧ ଏକ ସମ୍ପତ୍ତି । ଆପଣଙ୍କର ମାମଲା ମକଦ୍ଦମରେ ଜ୍ଞାନ ଥିଲେ କହିବ, ସମ୍ପତ୍ତି ଦୁଇ ଭାଗରେ ବିଭକ୍ତ - ସ୍ଥାବର ଓ ଅସ୍ଥାବର । ଏ କେଉଁ ଶ୍ରେଣୀର ? ବାଇ ମାହାନ୍ତିଙ୍କ ମତରେ ଏହା ମଧମ ଶ୍ରେଣୀର । ଅର୍ଥାତ୍ ଜାତି ଏକ ପ୍ରକାର ସ୍ଥାବରାସ୍ଥାବର ସମ୍ପତ୍ତି । ଯେଉଁ ସ୍ଥାବର ସମ୍ପତ୍ତି ଅସ୍ଥାବର ସମ୍ପତ୍ତିରେ ପରିଣତ ହୋଇପାରେ, ତାହା ସ୍ଥାବରାସ୍ଥାବର ସମ୍ପତ୍ତି । ଯେଉଁ ଜାତୀୟତାର କ୍ରମନିମ୍ନତା ବା କ୍ରମୋଚ୍ଚତା ଅନୁସାରେ ମୂଲ୍ୟ ନିର୍ଦ୍ଧାରିତ ହୋଇଥାଏ ତାହା ପିତୃପିତାମହାଗତ ସମ୍ପତ୍ତି ନୁହେଁ ତ, ଆଉ କଅଣ ? ଦକ୍ଷିଣସାହିଆ ରଥେ କେଶରପୁରିଆ ବସୁଙ୍କ ଘରେ ବସିଲେ (ଅର୍ଥାତ୍ କୌଣସି ବୈବାହିକ ସମ୍ବନ୍ଧ ସ୍ଥାପନ କଲେ) ଜରସମନ ନଗଦ ଟ ୩୫୦ ଓ ଅଳଙ୍କାର ୫ ଥାନ କୌଶିକ । ଦାଶେ ବଚ୍ଛସ ମହାପାତ୍ର କିମ୍ବା ବାଜପେୟୀଙ୍କ ଘରେ ପଟେ ବନ୍ଧୁ ବାନ୍ଧିଲେ କିମତ ଟ ୧୬୭୦ ଧାନ ୬ ଭରଣ ଓ ଲାଖରାଜ ବାହେଲ ଦୋଫସଲୀ ଜମି ୩ ମାଣ ୫ ଗୁଣ୍ଠ ।

* ହଳୁଆ ଅଥବା ଗ୍ରାମର ସେବକକୁ ଦିଆଯାଉଥିବା ଜାଗିରି ।

କଥାଟା ବୁଝିବାକୁ କଷ୍ଟ ନୁହେଁ । ତେବେ ଚଣ୍ଡବୁଦ୍ଧିଆଙ୍କ ଉପକାର ପାଇଁ ଗୋଟାଏ ଅଙ୍କନ ଦିଆଗଲା । ମନେକରନ୍ତୁ, ଆମେ ଆପଣଙ୍କ ଠାରୁ ତଳ ପାହାଚରେ ଅବସ୍ଥିତ ଉପର ପାହାଚକୁ ଉଠିବାକୁ ଆମକୁ ଟ ୧୭୬ ପଡ଼ିଲା । ଏ ଟ ୧୭୬ କିଛି ମନଗଢ଼ା କିମତ ନୁହେଁ, ପାଞ୍ଚ ଶାସନର ପାଞ୍ଚ ଜଣ ପୁରୁଖା ଲୋକ ବସି ହିସାବ କଷି, ମାନମହତ୍ତ୍ୱ ଓଜନ କରି ଏ କିମତଟା ଛିଣ୍ଡାଇ ଦେଲେ । ୧୭୬ ଟଙ୍କା ଦେଇ ଆମେ ପାହାଚେ ଉଠିଗଲୁଁ । ଟଙ୍କା ଦେଇ ଜାତି ଖରିଦ କରିନେଲୁଁ, ସେହି ଦିନଠାରୁ ଉପର ପାହାଚଟା ଆମର ସ୍ଥାବର - ତଳ ପାହାଚକୁ ଖସିଯିବାକୁ ହେଲା, କିଛି କ୍ଷତି ନାହିଁ, ପୂର୍ବର ସେଭିଙ୍ଗସ ବ୍ୟାଙ୍କରେ ଜମା ଟଙ୍କାତକ ରୋକଠୋକ ମିଳିଗଲା । ଟଙ୍କା ପ୍ରଥମେ ଜାତିରେ ପରିଣତ ହେଲା, ପୁନର୍ବାର ଜାତି ଟଙ୍କାରେ ପରିଣତ ହେଲା । ବିଜ୍ଞାନ ଜଣା ଥିଲେ ଏ ସତ୍ୟଟି ଆପଣଙ୍କୁ ଅଡୁଆ ଲାଗିବ ନାହିଁ; ଜଳକୁ ଉତ୍ତପ୍ତ କଲେ ତାହା ବାଷ୍ପରେ ପରିଣତ ହୁଏ, ପୁନର୍ବାର ଉକ୍ତ ବାଷ୍ପକୁ ସଂଗ୍ରହ କରି ଶୀତଳ କଲେ ଜଳ ହୋଇଯାଏ । ଯାହା ଥିଲା 'ପୁନର୍ମୂଷିକୋ ଭବ' । ଲାଭ ମଧ୍ୟରେ ଉତ୍ତପ୍ତ କରି ଶୀତଳ ଜଳ କରିସାରି ପରିଶ୍ରମ ଓ ମୂଲିଆପୁଅର ମୂଲ । ବାଇ ମାହାନ୍ତି କେତେକ ସ୍ଥାନ ବୁଲି ଉପକରଣ ସଂଗ୍ରହ କରି ଗୋଟିଏ ଜାତି-ସୋପାନ-ମୂଲ୍ୟର ସଟୀକ ତାଲିକା ପ୍ରସ୍ତୁତ କରୁଅଛନ୍ତି । ଏ ସମୟରେ ତାହା ଆମ୍ଭମାନଙ୍କ ହସ୍ତଗତ ହେବାର ଆଶା ।

୮. ଯେ ଯାହା କହନ୍ତୁ ବାଇ ମାହାନ୍ତିଙ୍କର ଧ୍ରୁବ ବିଶ୍ୱାସ ଯେ ଯେତେଦିନଯାକେ ହିନ୍ଦୁଧର୍ମ ପ୍ରତିଷ୍ଠିତ ଅଛି, ଯେତେଦିନଯାକେ ଜଗନ୍ନାଥ ଦେଉଳ ଅଛି, ଯେତେଦିନଯାକେ ମୁକ୍ତିମଣ୍ଡପ ବିଦ୍ୟମାନ ଅଛି, ସେତେଦିନଯାକେ ପୁରୀର ଶାସନ ବ୍ରାହ୍ମଣେ ନିର୍ଗନ୍ନତା ଓ ନିର୍ଧନତା ହେତୁ କଷ୍ଟ ଭୋଗ କରିବେ ନାହିଁ । ବାଇ ମାହାନ୍ତିଏ ଦିନେ ଜଣେ ନିର୍ଧନ ବ୍ରାହ୍ମଣଙ୍କୁ ପ୍ରଶ୍ନ କରିଥିଲେ, 'ଗୋସେଇଁ ମହାପ୍ରଭୁ ! ଆପଣଙ୍କର ତ ବାଡ଼ି ଗୋବରେ ଗୋବେ ନାହିଁ, ଆପଣ ଚଳନ୍ତି କିପରି ?' ଗୋସେଇଁ ମହାପ୍ରଭୁ ଚିତା ପଇତା ପିନ୍ଧା ଦୋସଡ଼ା ହୋଇ ହାକୁଟି ମାରି ସକାଳୁ ଘରୁ ବାହାରିଥିଲେ - ଉତ୍ତର କଲେ 'ଆମକୁ ଚଳେଇବାକୁ ଜଗନ୍ନାଥଙ୍କ ବଡ଼ ଦେଉଳ ।' ସତକୁ ସତ ମହାପ୍ରଭୁ ସନ୍ଧ୍ୟାବେଳେ ଘରକୁ ଫେରିଲାବେଳକୁ ଅଣ୍ଟାରେ ପଇସା ଦୁଇ ସୁଉକା ଓ ଅନ୍ନ ମହାପ୍ରସାଦ ଖାଣ୍ଡିଏ । ବାଇ ମାହାନ୍ତି ମନେ ମନେ ବିଚାରିଲେ, 'ଈଶ୍ୱର ବ୍ରାହ୍ମଣ କୁଳେ ଜନ୍ମ ଦେଇଥିଲେ ମନୁଷ୍ୟର ଆଉ ଚିନ୍ତା ଥା'ନ୍ତା କଅଣ ?' ଆମ୍ଭମାନଙ୍କ ମତରେ ଏହା ଈଶ୍ୱର ନିର୍ଭରତାର ଜ୍ୱଳନ୍ତ ଉଦାହରଣ । କାଲିର ବ୍ୟବସ୍ଥା ଆଜିଠାରୁ ଠିକ୍ କରି ରଖିଲେ କାର୍ଯ୍ୟତଃ ସୃଷ୍ଟିକର୍ତ୍ତାଙ୍କୁ ଅପମାନ କରାଯାଏ । ସବୁକଥା ଯେବେ ଆମେ ଚଳାଇବୁ, ତେବେ ଜଗନ୍ନାଥେ ଥାଇ କଅଣ କରିବେ ?

୯. ଏହି କେତେକ ଦିନ ମଧ୍ୟରେ ବାଇ ମାହାନ୍ତି କେତେଗୁଡ଼ିଏ ନୀତିଶିକ୍ଷା ଲାଭ କରିଅଛନ୍ତି । ସେଗୁଡ଼ିକ ଠାରରେ ଲେଖା; ଆମ୍ଭେମାନେ କଷ୍ଟ ସ୍ୱୀକାର କରି ତହିଁରୁ କେତେଗୁଡ଼ିଏ ଯଥାଶକ୍ତି ଉଦ୍ଧାର କଲୁ ।

(କ) ପରଛିଦ୍ରାନ୍ୱେଷିତା ଅପେକ୍ଷା ମହାବ୍ରତ ପୃଥିବୀରେ ନାହିଁ । ତାହା ଦ୍ୱାରା ପରୋପକାର ବ୍ରତ ସାଧିତ ହୁଏ, ଏଣେ ଆତ୍ମପ୍ରସାଦ ଲାଭ ହୁଏ ।

(ଖ) ଅଲାବୁ ଶ୍ୱେତବାର୍ତ୍ତକୀ ଚକ୍ରଚିହ୍ନଂ କଲମ୍ବକଂ - ଶ୍ୱେତବାର୍ତ୍ତକୀ ଅର୍ଥ ପୋଥି ବାଇଗଣ । ସେ ଶବ୍ଦ ବାଡ଼ି ବାଇଗଣ ପକ୍ଷରେ ପ୍ରଯୁଜ୍ୟ ନୁହେଁ ।

(ଗ) ରାଜନ୍ ! ସର୍ଷପମାତ୍ରାଣି ପରଛିଦ୍ରାଣି ପଶ୍ୟସି । ଆତ୍ମନୋ ବିଲ୍ୱରୂପାଣି ପଶ୍ୟନ୍ନପି ନ ପଶ୍ୟସି ।

(ଘ) ସବୁ କରିବ, ଆଣ୍ଟ କେଭେ ଛାଡ଼ିବ ନାହିଁ । ଜାଣୁ ଜାଣୁ ମୁହଁରେ ଯେବେ କାଇଲ୍ ମାନିଲ, ମଣିଷପଣିଆ ଆଉ ରହିଲା କଅଣ, ଯଥା ଦୁଷ୍ଟ ଲୋକ ବୃଦ୍ଧ ହେଲେ କହେ 'ବାଳକେ ତିଆରି ବାଣୀ' - ଏ ବହୁତ ପୁରୁଣା ଓ ସୁସିଦ୍ଧ କଥା ।

(ଙ) ଗୋଦରୀ ତଳକୁ ଚାହାନ୍ତି ନାହିଁ କିମ୍ବା ଦାନ୍ତୁରୀ କେବେହେଁ ଦର୍ପଣ ଧରନ୍ତି ନାହିଁ । ବାଇ ମାହାନ୍ତି ଏ ଦିଓଟି କଥା ଅନୁଭବରେ ଦେଖିଆସିଲେ । ସାଧାରଣତଃ ଏ ଦୁଇ ଜଣ ପର ଗୋଡ଼କୁ ଓ ପର ମୁହଁକୁ ନିରେଖି ଚାହିଁବାରେ ଭାରି ପଟୁ । ବାଇ ମାହାନ୍ତି ମଧ ଏହି ଅନୁଭବଲବ୍ଧ ଉପଦେଶକୁ ଜୀବନର ମହାବ୍ରତ କରିବେ ବୋଲି ସ୍ଥିର କରିଅଛନ୍ତି ।

୧୦. ଆଧୁନିକ ସଭ୍ୟତା ଭାରି ଅନିଷ୍ଟକର । ତାହାର ଭୂରି ଭୂରି ଉଦାହରଣ ପ୍ରତିଦିନ ମିଳୁଅଛି । ଏପରି ସ୍ଥଳରେ ଆଧୁନିକ ଶିକ୍ଷା ଓ ସଭ୍ୟତାକୁ ଯେତେଦୂର ଏଡ଼ି ପାରିବ, ତେତିକି ଦେଶର ଓ ସମାଜର ମଙ୍ଗଳ । ନନାଏ ଏ ବିଷୟରେ ଭାରି ତାକତରକରେ ଅଛନ୍ତି । ଏହା ନ ହେଲେ କି ଚତୁରତା ! ଦିନା ଚାରି ପାଞ୍ଚ ହେଲା ନନାଙ୍କର ନିଦ ଭାଙ୍ଗିଛି, ନନାଏ ଉଠିଲାବେଳକୁ 'ଘର ବୁଡ଼ି ପାଣି ଆଣ୍ଠୁଏ ହେଲାଣି !' ଯାହାହେଉ, ମନ ଓରମାନଟା ମେଣ୍ଟି ଯାଉ ହେଲେ । ସଂସ୍କୃତ ତ ପୁରୁଣା ପାଠଗୁଡ଼ାକ, ସେଗୁଡ଼ାକ ବେଳକୁ 'ଅର୍ଥକରୀ ଚ ବିଦ୍ୟା'ର ଦ୍ୱାହି । ଆଧୁନିକ ଶିକ୍ଷା ବେଳକୁ 'ଅଧ୍ୟାପକୋଽପି ଯବନୋ ଦ୍ୱିଜବାଳକାନାଂ'ର ଦ୍ୱାହି । ଅତଏବ ମଝିରେ ମଝିରେ ସିଧା ବାଟ 'ତୁଳସୀ ଚଉରା' ଆଡ଼କୁ ପଡ଼ିଛି । ଯେ ତରିବାର, ସେ ସେହି ବାଟ ଧରି ଚାଲ । ଧର୍ମବାନା ଧରି ଆପେ ଉଧୁରିଯିବା ସଙ୍ଗେ ସଙ୍ଗେ କେତେ ସାହୁ ଶେଠଙ୍କୁ ରାଜା ମହାରାଜାଙ୍କୁ ସ୍ୱର୍ଗକୁ ଉଠାଇ ଦେବା ।

୧୧. ବାଇ ମାହାନ୍ତି ସେ ଗ୍ରାମରେ ୮।୧୦ ଦିନ ରହିଲେ, କିନ୍ତୁ ଗ୍ରାମରେ ଏତେଦୂର ପର୍ଯ୍ୟନ୍ତ କାଇଦା ଯେ, ସେ ଏତେ ଦିନ ମଧରେ ଜଣେ ବୃଦ୍ଧାଙ୍କୁ ସୁଦ୍ଧା ଗ୍ରାମ ଦାଣ୍ଡକୁ ବାହାରିବାର ଦେଖି ନାହାନ୍ତି । ଏ ସମ୍ବନ୍ଧରେ କଟକ ବ୍ରାହ୍ମଣ ସମାଜ ପୁରୀ-ସମାଜ ନିକଟରେ ପରାଭୂତ ଓ ଲଜ୍ଜିତ । ସ୍ତ୍ରୀମାନେ ସ୍ୱାଧୀନତା ନ ପାଉନ୍ତୁ, କିନ୍ତୁ ଆଧୁନିକ ପ୍ରଚଳିତ ଅର୍ଦ୍ଧ-ସ୍ୱାଧୀନତା ମଧସ୍ଥ କୀଟ ସେମାନଙ୍କୁ ସ୍ପର୍ଶ କରି ନାହିଁ । ବାଘ ନେଲେ

ତେତେ ବାଧେ ନାହିଁ, କିନ୍ତୁ ଘୋଷରାଟା ହଂସାଉଡ଼ା ! ସାଧାରଣତଃ ଦାରିଦ୍ର୍ୟ ହେତୁରୁ ବା ଭକ୍ତି ହେତୁରୁ ହେଉ, 'ଓଡ଼ିଆ ଲଳନା'ର ଛବି ରାହାଙ୍ଗ ବ୍ରାହ୍ମଣ ଶାସନରୁ କବି ପାଇ ନାହାନ୍ତି । ରାହାଙ୍ଗର ବ୍ରାହ୍ମଣ ସ୍ତ୍ରୀମାନେ ତାଙ୍କର ମୋଗଲବନ୍ଦିର ଅନ୍ୟାନ୍ୟ ଭଗିନୀମାନଙ୍କ ଅପେକ୍ଷା ତ ଢେର ପରିଚ୍ଛନ୍ନା, ସୁରୁଚିଶିଷ୍ଟା ଓ ଲଜ୍ଜାଶୀଳା ଏବଂ (କହିଲେ ମଧ ଚଳେ) ଶୁଭ୍ରା । ବାଇ ମାହାନ୍ତିଙ୍କୁ ଜେରା କରି ତାଙ୍କ କଥା ଯେ ବିଶ୍ୱାସଯୋଗ୍ୟ, ଏହା ପ୍ରତିପନ୍ନ କରିବାକୁ ଆମ୍ଭେମାନେ ଚେଷ୍ଟା କରିଥିଲୁ, କିନ୍ତୁ ସେ ଆଶା ଦୁରାଶାରେ ପରିଣତ ହେଲା । ଆମ୍ଭେମାନେ ପଚାରିଲୁଁ, ତୁମେ ତ ଲେଖିଛ ଯେ ରାହାଙ୍ଗରେ ଅବସ୍ଥାନକାଳ ମଧ୍ୟରେ ତୁମେ ଜଣେ ସୁଦ୍ଧା ବୃଦ୍ଧାଙ୍କୁ ଗ୍ରାମ ଦାଣ୍ଡରେ ଦେଖି ନାହଁ, ତେବେ ସେ ଆଡ଼ର ସ୍ତ୍ରୀମାନେ ସୁରୁଚିବିଶିଷ୍ଟା, ପରିଚ୍ଛନ୍ନା ଓ ଶୁଭ୍ରା ବୋଲି କହୁଛ କିପରି ? ଏକଥା ଅମେଳ ହେବାରୁ ମିଥ୍ୟା ବୋଲି ସମ୍ଭବ । 'ମିଥ୍ୟା' ଶବ୍ଦଟା ଶୁଣିଲେ ବାଇ ମାହାନ୍ତି ସ୍ୱଭାବତଃ ଅଗ୍ନିଶର୍ମା ହୋଇଉଠନ୍ତି । ଆମ୍ଭମାନଙ୍କ ଆଡ଼କୁ କଟାକ୍ଷ ଭଙ୍ଗୀରେ ଦୃଷ୍ଟି କରି ଉତ୍ତର କଲେ, 'କହିବି ନାହିଁ, କହିଲେ ଏ ଘରେ ରହିବି ନାହିଁ ।' ମୁଁ ସିନା ଜଣେ ବୃଦ୍ଧାଙ୍କୁ ଗ୍ରାମ ଦାଣ୍ଡରେ ଦେଖି ନାହିଁ, କିନ୍ତୁ ଶତ ଶତ ଅବୃଦ୍ଧା ଗୌରୀଙ୍କୁ 'ବଡ଼ଦାଣ୍ଡ'ରେ ଓ 'ବଡ଼ ଚକଡ଼ା'ରେ ତ ଦର୍ଶନ କରିଅଛି । ତାହା ତ ସ୍ୱାଧୀନତା ମଧ୍ୟରେ ଗଣ୍ୟ ନୁହେଁ । ଦେବତା ଦର୍ଶନ ନିମନ୍ତେ ସବୁ କାଇଦା କଟକଣା ଶିଥିଳ ହୁଏ ଓ ହେବା ନ୍ୟାୟସଙ୍ଗତ । ଦେବତାଙ୍କ ସ୍ଥଳୀରେ ଅଶ୍ଳୀଳ ମୂର୍ତ୍ତିଗୁଡ଼ାକ ଦେଖି ଯେତେବେଳେ ମନରେ ସ୍ୱର୍ଗୀୟ ଓ ଆଧ୍ୟାତ୍ମିକ ଭାବ ଜାଗରିତ ହେବା ନିମନ୍ତେ ଆଇନ ଅନୁସାରେ ବାଧ୍ୟ, ସେତେବେଳେ ଦେବତା ଦର୍ଶନ ଉଦ୍ଦେଶ୍ୟକୁ ସ୍ୱାଧୀନତା କେବେହେଁ 'ଅଯଥା' ବା 'ବିପରିଣାମଯୁକ୍ତା' ହେବାର ସମ୍ଭବ ନୁହେଁ । ନନାଙ୍କ ଭକ୍ତିର ପ୍ରଗାଢ଼ତା ଓ ବିଶ୍ୱାସ ଏତେଦୂର ଅଗ୍ରସର ହୋଇଅଛି ଯେ, ପଲକେ ଗୋଟିଏ ଜଗୁଆଳି ସୁଦ୍ଧା ଅଧିକାଂଶ ସମୟରେ ଆବଶ୍ୟକ ହୁଏ ନାହିଁ । ଅତଏବ ଦି'ମୁଣ୍ଡ ଏକା ସମାନ । ସେହି ସହଯାତ୍ରିକ । ଭଗିନୀମାନଙ୍କ ଆଚାର, ବ୍ୟବହାର ବିଶ୍ରମ୍ଭାଳାପ ଓ ପରିଚ୍ଛନ୍ନତା ଦେଖି ପାଞ୍ଜିରେ ଏତକ ଟିପି ଆଣିଥିଲି । କବିବର ରାଧାନାଥ 'ମଦନଶତଘ୍ନୀ'ଙ୍କ କଥା କଅଣ ପରା ଲେଖିଛନ୍ତି ? ଆମ୍ଭେମାନେ ଉତ୍ତର କଲୁ, ହାଟ ବାଟରେ ଯେଉଁମାନଙ୍କୁ ଦେଖିବ, ସେମାନଙ୍କୁ ନମୁନା ବୋଲି କିପରି ହଠାତ୍ ସ୍ଥିର କରି ନେବ ? ଏହା କେଉଁ ଯୁକ୍ତି ? ମାହାନ୍ତିଏ ଉତ୍ତର କଲେ, ଅତିଥି ପରା ! ବିଧବା ବୃଦ୍ଧାଙ୍କଠାରୁ ଆରମ୍ଭ କରି କକ୍ଷାସନୋପବିଷ୍ଟ ୬ ମାସ ବୟସ୍କ ସ୍ତନ୍ୟପାୟୀ ଶିଶୁ ପର୍ଯ୍ୟନ୍ତ ଦେଖିଲେ ବାଦ୍ ବାକି ଆଉ କିଏ ରହିଲେ ? ତତ୍ପରେ ଗ୍ରାମର ଛୋଟ ଲୋକଠାରୁ ବଡ଼ଲୋକ ପର୍ଯ୍ୟନ୍ତ ସମସ୍ତଙ୍କଠାରେ ଭକ୍ତି ଅଛି । କେବଳ ଛୋଟ ଲୋକେ ଯେ ଠାକୁର ଦର୍ଶନକୁ ଯାଆନ୍ତି ଓ ଉଚ୍ଚ ଶ୍ରେଣୀୟ ଲୋକମାନେ ଯାଆନ୍ତି ନାହିଁ, ଏହା ବା କିପରି କହିବା ? ଏ ସବୁ ଆଳାପ କି ବିଳାପ କିମ୍ବା ପ୍ରଳାପ ବା ଅପଳାପ ଆମ୍ଭେମାନେ ବୁଝିବାକୁ ଏକାନ୍ତ ଅକ୍ଷମ । ଏଠାରେ ଲିଖିତ ଭାଷା ପାଞ୍ଜିକାରଙ୍କ କଥିତ ଭାଷାରୁ ବହୁତ ଭିନ୍ନ । ଆପେ ବହୁ ଚେଷ୍ଟା କରି ସୁଦ୍ଧା

କେତେକ ସ୍ଥଳରେ ସୁଖବୋଧ କରିପାରିଲୁ ନାହିଁ । ତାଙ୍କ ମୁଖନିଃସୃତ କଥା ଓ ନବଜଗୁଡ଼ାକ ଦେଖିଥିଲେ ପାଠକମାନେ କୃତଜ୍ଞ ଭର୍ତ୍ସନାଗୁଡ଼ାଏ ଆମ୍ଭମାନଙ୍କୁ ଉପହାର ଦେଇଥାଆନ୍ତେ । ବାଇ ମାହାନ୍ତି କଅଣ ପ୍ରକୃତରେ ବାଇ ? ପାଠକମାନେ ସମାଧାନ କରନ୍ତୁ । ଅଳିଆ ଘାଣ୍ଟିଲେ ଲାଭ କିଛି ନାହିଁ, ବରଞ୍ଚ ଆପେ ମଳିଆ ହେବାକୁ ପଡ଼େ । ପୂର୍ବରେ ସୂଚନା କରିଅଛୁ, ବାଇ ମାହାନ୍ତି ଯାହା ଯାହା ଲେଖିଛନ୍ତି ସେଗୁଡ଼ିକ କେବେହେଁ ମିଥ୍ୟା ନୁହେଁ । କାରଣ ସେ କୌଣସି କଥା ଆଖିରେ ନିଜେ ତ ଦେଖିଲେ କେବେ ହେଁ ପ୍ରକାଶ କରନ୍ତି ନାହିଁ । କିନ୍ତୁ ଏ ଚିତ୍ରଗୁଡ଼ିକ ନମୁନା କି ନିପାତନ, ଏ ବିଷୟରେ ଆମ୍ଭମାନଙ୍କ ମନରେ ଗଭୀର ସନ୍ଦେହ । ରାହାଙ୍ଗ ଅନେକ ସୁପଣ୍ଡିତ, ନମସ୍ୟ ଓ ବିନୟୀ ବ୍ରାହ୍ମଣଙ୍କୁ ଜନ୍ମ ଦେଇଅଛି । ରାହାଙ୍ଗବାସୀ କେତେଗୁଡ଼ିଏ ପଣ୍ଡିତଙ୍କର ଓଡ଼ିଶାରେ ପ୍ରଥମ ସ୍ଥାନ । ଐତିହାସିକ ଓଡ଼ିଶାମଣ୍ଡଳରେ ରାହାଙ୍ଗବାସୀ ପଣ୍ଡିତ ଓ ସାମନ୍ତମାନେ ରାଜସଭାରେ ପୂଜା ପାଉଥିଲେ । ପୂର୍ବେ ରାହାଙ୍ଗ ଓଡ଼ିଶାମଣ୍ଡଳର ଆଦର୍ଶ ଥିଲା । ବିଦ୍ୟା, ମାନ, ମର୍ଯ୍ୟାଦା ବିଷୟରେ ରାହାଙ୍ଗର ପଣ୍ଡିତମାନେ ଐତିହାସିକ ଓଡ଼ିଶାର ରାଜାମାନଙ୍କୁ କିଙ୍କର କରି ପାରିଥିଲେ । ଶର୍ମା ମଧ୍ୟ ରାହାଙ୍ଗ ଥରେ ଅଧେ ଦେଖିଅଛନ୍ତି । ତାଙ୍କର ମଧ୍ୟ ପାଞ୍ଜିର ପ୍ରତିବାଦ କରିବାକୁ ଅନେକ କଥା ଅଛି । କିନ୍ତୁ ସେସବୁର ସମୟ ଓ ସ୍ଥାନ ଅଛି । କେତେକ ବ୍ରାହ୍ମଣ ପଣ୍ଡିତଙ୍କଠାରେ ଆମ୍ଭମାନଙ୍କର ଅଚଳା ଭକ୍ତି । ସେମାନେ ରାହାଙ୍ଗର ଆଦର୍ଶ ନୁହନ୍ତି, ଏହା ବାଇ ମାହାନ୍ତି କେଉଁ ଯୁକ୍ତିବଳରେ ଦେଖାଇ ପାରିବେ ? ଦୋଷ ସବୁଠାରେ, କିନ୍ତୁ ଗୁଣର ମାତ୍ରା ଦୋଷଠାରୁ ବେଶି ହେଲେ 'ନମଜ୍ଜତୀନ୍ଦୋଃ କିରଣେଷ୍ୱି ବାଙ୍କଃ ।' ତା ପରେ ବାଇ ମାହାନ୍ତି ଅନେକ କଥା ପ୍ରତି କଟାକ୍ଷପାତ କରିଅଛନ୍ତି, ସେଥିରୁ ଅଧିକାଂଶ ମନୁଷ୍ୟପ୍ରକୃତି ସଙ୍ଗେ ଦୃଢ଼ ସମ୍ବନ୍ଧ । ମାନବ-ପ୍ରକୃତିତତ୍ତ୍ୱ ଆଲୋଚନା ନ କରି ପରକୁ ଚାହିଁ ଦାନ୍ତ ଲେଫଡ଼ିଦେବା, 'ପରୋପଦେଶେ ପାଣ୍ଡିତ୍ୟ' କରିବା ସହଜ କଥା ।

## ଦଶମ ବିଡ଼ା

ଯେପରି ବସନ୍ତ ବହିଲେ ଆମ୍ବଡାଳ କଅଁଳେ ଓ ବଉଳେ, କୋକିଳର କଣ୍ଠ ଫିଟେ, ରସିକମାନଙ୍କ ରସିକତା ଉଛୁଳି ପଡ଼େ, କାମିନୀମାନେ ମଦାଳସା ହୁଅନ୍ତି, ମାନିନୀମାନେ ନଖରେ ଭୂଇଁ ଉପରେ ଗାର କାଟି ବସିଯାଆନ୍ତି, ବିରହୀମାନେ ତିନ୍ତୁଳି ଖାଇଲା ଭଳି ମୁହଁ କରନ୍ତି, କବିଗୁଡ଼ାକ କବିତା ରାମ୍ପି ପକାନ୍ତି, ଇତ୍ୟାଦି ଇତ୍ୟାଦି (ଏଗୁଡ଼ିକର ସଟୀକ ସଂବାଦ ନିମନ୍ତେ କାଳିଦାସଙ୍କ ଋତୁସଂହାର ମହାଫିସଖାନାର ତଳ ବସ୍ତାନିତକ ଘାଣ୍ଟି ତଲାସି ଫିସ୍ ଓ ଅତିରିକ୍ତ ଫିସ୍ ଦାଖଲ କରି ବସନ୍ତ ବର୍ଣ୍ଣନା ଦଲିଲତକ ହାସଲ କରିବାକୁ ହେବ । ବାଇ ମାହାନ୍ତିଙ୍କ ମତରେ ଏଗୁଡ଼ିକ ମକଦ୍ଦମାର ଖରଚ ମଧ୍ୟରେ ଗଣ୍ୟ ହେବ ନାହିଁ ।), ସେହିପରି ପ୍ରତ୍ୟେକ ମନୁଷ୍ୟର ଉଛୁଳିବା କାଳ ଅଛି । ସମୟ ନ ପହଞ୍ଚିବା ପର୍ଯ୍ୟନ୍ତ ତୁମେ ବାଡ଼େଇ ହୁଅ, କଚାଡ଼ି ହୁଅ, ଅଫିମ ଟେଳା ଟେଳା ପକାଅ, ଖଟପଲଙ୍କରେ

ଗଡ଼, ଗ୍ଲାସକୁ ଗ୍ଲାସ ସୋଡ଼ାମିଶା ଏକମା ଖତମ କର, ଷୋଡ଼ଶୀ ରୂପସୀଙ୍କୁ ଚବିଶ ଘଣ୍ଟା ସଜ ଜରି ବୁଟାଦାର ବନାରସୀ ଶାଢ଼ି ପିନ୍ଧାଇ ଆଗରେ ଠିଆ କରାଅ, କାହିଁରେ କିଛି ହେବ ନାହିଁ । ଏଗୁଡ଼ିକ ବୃଥା ଉଦ୍ୟମରେ ପରିଣତ ହେବ ! କିନ୍ତୁ ବେଳ ଆସିଯାଉ, ତୁମର ଚେଷ୍ଟା କରିବାର ଦରକାର ହେବ ନାହିଁ । ଆରାମ ଚଉକିରେ ପଡ଼ିଥାଅ ଅବା ହେଁସ କାନିରେ ଗଡୁଥାଅ, ଝିଲିମିଲି ଫାଙ୍କରେ ହାଉଆ ଖାଉଥାଅ ଅବା ଟାଟିବାଟେ ସୁଲୁସୁଲିଆ ବାଆ ପାଉଥାଅ, ଆସିବ ଭାବର ଢେଉ ଭାବ, ଉପରେ ଭାବ, ତା ଉପରେ ଭାବ, ତା ପଛକୁ ଭାବ, ତା ସନ୍ଧିକୁ ଭାବ ! ସମ୍ଭାଳିବା କଥା ମୁସ୍କୁଲି ହେବ । ବେଳକାଳ ଉଣ୍ଡି ଧର କାଗଜ କଲମ, ନଚେତ୍ ଲେଖନପତ୍ର କବି ହୁଅ, ଲେଖକ ହୁଅ, ଦେଶହିତୈଷୀ ହୁଅ, ବେନାମୀ ପତ୍ରଲେଖକ ହୁଅ, ସମାଜସଂସ୍କାରକ ହୁଅ, ଯାହା ବିଚାରିବ, ତାହା ହେବ । ଏ କଥାଗୁଡ଼ିକ ହସରେ ଉଡ଼ାଇ ଦେବାର ଜୁ ନାହିଁ । ଚାହୁଁ ଚାହୁଁ ବାଉଁଶ କଣି ଖଣ୍ଡ ଗଜଦନ୍ତ ହୋଇଯିବ, ଚନ୍ଦ୍ରକାଣୀ ରାଣୀରୂପେ ତୁମ ଆଗରେ ଠିଆ ହୋଇଯିବ । ସବୁ ଅନୁଭବ କଥା । କାଲି ଯେଉଁ ମନୁଷ୍ୟ, ଯେଉଁ ବିଦ୍ୟାବୁଦ୍ଧି, ଯେଉଁ ମନ, ଯେଉଁ ରକ୍ତ, ଯେଉଁ ଅନୁଭବ, ଯେଉଁ ଅଙ୍ଗପ୍ରତ୍ୟଙ୍ଗ ଥିଲା, ସେ ସବୁ ତ ଆଜି ଅଛି । କାଲି କାନ କାଟିଲେ ବଚନ ବାହାରୁ ନ ଥିଲା କିଆଁ ? ଆଜି ଚାଲିଲା ଶଗଡ଼ରେ ହାତ ପୂରାଇବାକୁ ମନ ହେଲା କିଆଁ ? ନା କାଲି ମନପବନ ବସନ୍ତ ବହି ନ ଥିଲା, ଆଜି ବହିଲା ? ସେଥିପାଇଁ କହୁ, ମନୁଷ୍ୟର ଉଛୁଳିବାର କାଳ ଅଛି ।

ଦିନକର ଘଟନା ଶୁଣନ୍ତୁ । ବାଇ ମାହାନ୍ତିଙ୍କ ଘରଣୀ ଦିନେ ସଜ ହୋଇଛନ୍ତି ବାପଘରକୁ ଯିବାକୁ । ଅଳଙ୍କାରତକ ବଣିଆଘରୁ ଝଳା ହୋଇ ଆସିଛି । ବାପଘରକୁ ପେଡ଼ି ସଜଡ଼ା ଲାଗିଛି, ଏ ଫରମାସ, ସେ ଫରମାସ ଚାଲିଛି । ବାଇ ମାହାନ୍ତି ଦଣ୍ଡକେ ସ୍ୱର୍ଗକୁ ଉଠି ଯାଉଛନ୍ତି, ଦଣ୍ଡକେ ରସାତଳରେ କଂସ-କଚଡ଼ାମାନ ଖାଉଛନ୍ତି । 'ଅବ୍ୟବସ୍ଥିତ ଚିତ୍ତସ୍ୟ ପ୍ରସାଦପି ଭୟଙ୍କରଃ ।' କଅଣ କରିବେ ? ନାଚାର । ଗୋରୁ ମାଇଲେ ମଲି, ଗୋରୁକୁ ମାଇଲେ ମଲି । ଦୈବଯୋଗ ତ । ଏହି ସମୟରେ ବସନ୍ତ ବହିଲା, ବାଇ ମାହାନ୍ତିଙ୍କ ମନ ନିକୁଞ୍ଜରେ କଳକଣ୍ଠ ବୋବାଇ ଉଠିଲେ, ଆଉ ଉପାୟ ନାହିଁ । ଏଣେ ନଈବଢ଼ି ଅସ୍ରା ଭଳି ହପା ଉପରେ ହପା ଅଭିମାନ ଉଠୁଛି । ବାଇ ମାହାନ୍ତି ଦାଣ୍ଡ ପିଣ୍ଡାରେ ଲେଖନପତ୍ର ଧରି ବସିଗଲେ । ମା ଶାରଳା କଣ୍ଠରେ ବସି ଲଗାଇଲେ ଖେଳା । ଚାହୁଁ ଚାହୁଁ ନାନାବାୟା, ଚଷାଭାଇ, କାଚ ପିତୁଳା, ପ୍ରେମସଙ୍ଗୀତ, ମିତ୍ରାକ୍ଷର ସବୁ ଏକାତାନକେ ଅଜାଡ଼ି ହୋଇ ପଡ଼ିଲା । ଝଟ୍‌ପଟ୍ ତାଳପତ୍ର ୫୧୭ ଖଣ୍ଡ ରାମ୍ପି ହୋଇଗଲା । ଆଜି ସେହିଗୁଡ଼ିକ ଆମ ପାଖରେ ଉପସ୍ଥିତ । ଆମେ ପ୍ରଥମେ ଖୁବ୍ ପାଟି ସୁଖ କରି ନେଲୁଁ । ଫେର୍ ବିଚାରିଲୁ, ଅପିଲ ଅଦାଲତ ଯେବେ କୈଫିୟତ ତଲବ କରନ୍ତି, ତେବେ ସର୍ବନାଶ । ଈଶ୍ୱର ଏ ସୁବୁଦ୍ଧି ଦେଲାରୁ ନଥିତକ ରେକର୍ଡ଼ରେ ଫାଇଲ୍ କରି ରଖିଲୁ ଓ ବର୍ତ୍ତମାନ ସେଗୁଡ଼ିକ ଅଦାଲତ ସମ୍ମୁଖରେ ପେସ୍ କରିବାକୁ ଆଣି ହାଜର । ରାୟ ବାହାଲ ହେଲେ ସମ୍ମାନଟା ବଜାୟ ରହିବ, ନଚେତ୍ ବଦଳି ପରୁଆନା ସଙ୍ଗେ ସଙ୍ଗେ ଥୁଆ ।

### ୧ ନମ୍ବର - କାଚକଣ୍ଢେଇ

ବାପା ଦେଇଥିଲେ ମତେ ପୀରତି-ପିତୁଳା,
ଦିଶୁଥିଲା ଭାରି ତୋରା, ଦିନାକେତେ ଗଲା ।
ପୂଜା କରୁଥିଲି ନିତି ସ୍ନେହ-ନଇବିଦ୍ୟେ,
ଆଦର-ପ୍ରଦୀପେ, ପୁଣି ଅନୁରାଗ-ଗନ୍ଧେ ।
ବିନୟର ଧୂପ ଦେଇ ପ୍ରଣୟ-କୁସୁମେ
ପୂଜୁଥିଲେ ନିତି, ଦିନେ ପଡ଼ିଲେ ଭ୍ରମେ ।
ପ୍ରେମର ଶିକୁଳି ବାନ୍ଧି ନିତି ଖଟୁଲିରେ
ରଖୁଥିଲି ଲୁଚାଇଣ ହୃଦୟ ମନ୍ଦିରେ ।
ଦିନେ ମେଲା ଥିଲା ଘର, କଳହ-ବିରାଡ଼ି
ପଶିଲା ମନ୍ଦିରେ, ମୂଷା ଗୁମାନେ ଘଉଡ଼ି ।
ବିରାଡ଼ି ମୂଷା ଏ ଦୁହେଁ ପିତୁଳା ଉପରେ
ପଡ଼ିଗଲେ, ପିତୁଳାଟି ପଡ଼ିଗଲା ତଳେ ।
ଯେତେ ବସି ଯୋଡ଼ିଲି ମୁଁ ଚାଟୁ-ଅଠା ଦେଇ,
ଭାଙ୍ଗିଲେ କାଚକଣ୍ଢେଇ ଯୋଡ଼ି କି ହୁଅଇ ?

### ୨ ନମ୍ବର - ଚଷାଭାଇ

ଆରେ ଚଷାଭାଇ ମୋ ବୋଲ ଶୁଣ
ବେଳ ଥାଉ ଥାଉ ବୁଣିବୁ ଧାନ ।
ଗାଆଁର ଧୋଓରା ପୋଖରୀତଳ,
ଯାକୁ ଦଉଥିବୁ ଆଗତ କର ।
ମୂଳିଆ ହୁଡ଼ିଲେ ହୁଡ଼େ ଦିବସେ,
ଚଷା ହୁଡ଼ିଗଲେ ହୁଡ଼େ ବରଷେ ।
ବଣିଜ ଭାଙ୍ଗିଲେ ମିଳଇ ମୂଳ,
ଚାଷ ଭାଙ୍ଗିଗଲେ ଯାଏ ଦି'କୂଳ ।
ମଣିଷ ଫୁଲଇ ଖାଇଲେ ଭାତ,
କ୍ଷେତ ଫୁଲୁଥାଏ ପଡ଼ିଲେ ଖତ ।
କେବେ ନ କରିବୁ ଟିକରା ଚାଷେ
କର ଦେବୁ, ନାହିଁ ଲାଭରେ ଆଶ ।
ଛାଇ ତଳ ଦେଖି କଲେ ବେଉଷା,
ହେବୁଟିରେ ଭାଇ ଫସରଫସା ।

ଆଉ ଗୋଟିଏ ପଦ୍ୟ ଲେଖିବାକୁ ବସିଥିଲେ, ଏହି ସମୟରେ କୌଣସି କାରଣରୁ ହାତରୁ ଲେଖନ ପତ୍ର ଖସି ପଡ଼ିଲା । ବାଇ ମାହାନ୍ତି ଦାଣ୍ଡ ପିଣ୍ଡାରୁ ହଠାତ୍ ଉଠି ଗାଆଁ ମୁଣ୍ଡକୁ ବାହାରି ଆସିଲେ । ସେ ପଦ୍ୟଟିର ଉପକରଣମାନ ଟିପା ଥିଲା । ପଛେ ଆଉ ଯେତେ କସରତ କଲେ, କିଛି ହେଲା ନାହିଁ । ତେବେ ସେ ଉପକରଣଗୁଡ଼ିକ ଦେଖିଲେ ଅବା ପାଠକମାନଙ୍କ ମଧ୍ୟରେ କେହି 'ଗ୍ରାହକ' ଥିବେ, ଦଣ୍ଡେ ଘଡ଼ିଏ ଲାଗିଯିବେ । ସେ ପଦଟିର ନାମ 'ତିନୋଟି ଚିତ୍ରପଟ' ।

ପ୍ରଥମ ଚିତ୍ର - ରାତି ଘଡ଼ିଏ, ଅନ୍ଧାରୁଆ ଘର । ଘର କଣରେ ଅନ୍ତୁଡ଼ି ଜଳୁଛି, ଘର ମଝିରେ ଗୋଟିଏ ଖୁଣ୍ଟ ପୋତା ହୋଇଛି । କଅଁଳା ପିଲାଟିଏ ସେହିକ୍ଷଣରେ ଜନ୍ମ ହୋଇ କୁଆଁ କୁଆଁ କାନ୍ଦୁଛି । ମାତା ଅଚେତା । ପଛଆଡ଼ ମୁଦୁସୁଲୀ ବସି ଅଣ୍ଟାରେ ଆଣ୍ଠୁ ଲଗାଇଛି, ଘରେ ୧୦।୧୫ଟି ରମଣୀ ହର୍ଷମୁଖରେ ଠିଆ ।

ଦ୍ୱିତୀୟ ଚିତ୍ର - ରାତି ବିପଦରେ ନଅ ଶେଣିଆ ଧୂଳିଆ ଘର । ଘର କଣରେ ଏକ ପଥର ଦୀପରେ ଯୋଡ଼ି ବତି ପଡ଼ି ଖୁବ ତେଜରେ ଜଳୁଛି । ଘର ମଝିରେ ଗୋଟିଏ ବଡ଼ ପଲଙ୍କ । ଝିଅଟିଏ ପୁଅଟିଏ ଖଟର ଏକ ପାଖରେ ଶୋଇଛନ୍ତି । ଖଟ ବାଡ଼ରେ ଦିମାଳ ମଲ୍ଲୀ ଓ ବଉଳଫୁଲ ଝୁଲୁଛି, କଅଁଳା ପୁଅଟି ନିଦ ବାଉଳାରେ ମାତୃସ୍ତନ୍ୟ ପାନ କରୁଛି । ଯୁବକ ପିତା ଖଟ ବାଡ଼କୁ ଆଉଜି 'କଳା ମାଣିକରେ' ଛାନ୍ଦ ଆବୃତ୍ତି କରୁଛନ୍ତି । ଦମ୍ପତିଙ୍କ ମୁଖ ପ୍ରଫୁଲ୍ଲ ।

ତୃତୀୟ ଚିତ୍ର - ରାତି ଘଡ଼ିଏ ଅଛି, ନାଆଚାଳିଆ ଘର, ହାତୀଅନ୍ଧ ବାଟେ ପୂର୍ବ ଦିଗରେ ନାଳି ଆଲୁଅ ସଫା ହୋଇ·ପଡ଼ିଛି, ଘର ମଝିରେ ଗୋଟିଏ ବଡ଼ ହେଂସ ପଡ଼ିଛି, ବୃଦ୍ଧଟିଏ ଶଯ୍ୟାରେ ଶୋଇ ହର୍ଷମୁଖରେ ଉପରକୁ ଚାହିଁଛି । ବିଛଣା ପାଖରେ ବୈଦ୍ୟରାଜ ବଟୁଆ ରଖି ନାଡ଼ି ଦେଖୁଛନ୍ତି । ଯୁବକ ଯୁବତୀଗୁଡ଼ିଏ ଆପାଦମସ୍ତକ ଆଉଁଶିବାରେ ଲାଗିଛନ୍ତି । ବୃଦ୍ଧାଙ୍କ ଛଡ଼ା ସମସ୍ତଙ୍କ ମୁଖ ମ୍ଲାନ । ବୃଦ୍ଧାଙ୍କ କ୍ରୋଡ଼ରେ ବୃଦ୍ଧଙ୍କ ମସ୍ତକ ରହିଅଛି, ବୃଦ୍ଧଙ୍କ ହସ୍ତରେ ଗୋଟିଏ ମାଳି । ଏତିକିବେଳେ ନାରାୟଣ ଓ କୋଳାହଳ !

ପଦ୍ୟ ମଧ୍ୟରେ ଗାଏ ଏହି ୨ଟି, ଅର୍ଥାତ୍ ଦିଓଟି ପୂରା ଓ ଖଣ୍ଡେ ଦରଗଢ଼ା । ଏହା ଛଡ଼ା ଆହୁରି କେତେଗୁଡ଼ିଏ କାର୍ଯ୍ୟ ମଧ ହୋଇଅଛି । ଖଣ୍ଡିଏ ଆଦର୍ଶ ଉତ୍ସର୍ଗପତ୍ର ବାଇ ମାହାନ୍ତି ତାଙ୍କ ପାଞ୍ଜି ଆଦ୍ୟରେ ଦେବେ ବୋଲି ଚିଠା କରି ରଖିଛନ୍ତି । କିନ୍ତୁ ଦୁର୍ଭାଗ୍ୟକୁ ମହାପୁରୁଷଙ୍କର ନାମଟି ଲେଖା ନାହିଁ । ଆମ୍ଭେମାନେ ନିଜେ କେତେଗୋଟି ଉତ୍ସର୍ଗପତ୍ର ଲେଖିଅଛୁଁ ଓ ଦେଖିଅଛୁଁ । କେତେ ଲୋକଙ୍କୁ ଶିଖାଇଅଛୁଁ ଓ କେତେ ଲୋକଙ୍କଠାରୁ ଶିଖିଅଛୁଁ । କିନ୍ତୁ ଏପରି ଗୋଟିଏ ସାର୍ବଭୌମିକ, ସାର୍ବଜନୀନ, ସାର୍ବକାଳୀନ ପତ୍ର ଦେଖି ନାହୁଁ । ଏ ଶ୍ରେଣୀର ଉତ୍ସର୍ଗ ପତ୍ରର ଅର୍ଥ ଓ ଉଦ୍ଦେଶ୍ୟ ଏକ ପ୍ରକାର । ଟୋପାଏ ମଦ ପିଇଲେ ମଦୁଆ, ଘଡ଼ାଏ ପିଇଲେ ମଧ ସେହିତା । ଯେବେ ଖୋସାମଦ କରିବାକୁ

ହେଲା ତେବେ ଅଧାଂଧି କାହିଁକି ? ଜାତି ତ ଗଲାଣି, ଆଉ ପେଟ ପୂରା କରି ନ ଖାଇବ କିଆଁ ? ଯେ ଆଉଁଶା ଘଷାକୁ ଭଲ ପାଆନ୍ତି, ତାଙ୍କୁ ତ ଟିକିଏ ଆଚ୍ଛା କରି ଆଉଁଶି ମାଜି ଦେଲେ ପାଠ ଛିଣ୍ଡିଯିବ । ପଦାରେ ପୁଅ ବେଇ ଡାହାଣୀଙ୍କୁ ଡରିବା - ବାଇ ମାହାନ୍ତିଙ୍କ ନୀତିବିରୁଦ୍ଧ ବୋଲି ସେ ଏପରି ଗୋଟିଏ ଚିଠା ପାଞ୍ଜି ସଂଲଗ୍ନ କରିବାକୁ ମନସ୍ଥ କରିଅଛନ୍ତି, ଫଳ ପରେ ଜଣାଇବୁ ।

### ୩ ନମ୍ବର. ଆଦର୍ଶ ଉତ୍ସର୍ଗ ପତ୍ର

(ଜରସମନ ଟ ୪୫, କମିଶନ୍ ବାଦ୍ । ଏ ସମ୍ବାଦ ଗୁପ୍ତ ଅଟେ ।)

ଶ୍ରୀଳ ଶ୍ରୀଯୁକ୍ତ ଶ୍ରୀ ଶ୍ରୀ ପ୍ରବଳପ୍ରତାପ, ଦାନେ କର୍ଣ୍ଣ, ମାନେ ଦୁର୍ଯ୍ୟୋଧନ, କ୍ରୋଧେ ଯମ, ପ୍ରତାପେ ଇନ୍ଦ୍ର, ତେଜେ ତପନ, ଧନେ କୁବେର, ଧର୍ମେ ଯୁଧିଷ୍ଠିର, ସହନେ ପୃଥିବୀ ଇତ୍ୟାଦି -

ଏବଂ ଚ ପରିଶ୍ରମେ ଗର୍ଦ୍ଦଭ, ଶୟନେ ଶ୍ୱାନ, ପ୍ରାତରୁତ୍‌ଥାନେ କୁକ୍‌କୁଟ, ବିଚାରେ ବିଲୁଆ, ଅଧ୍ୟବସାୟେ କୋକୀ, ରାତ୍ରି ଜାଗରଣେ ପେଚକ, ଅଭେଦଜ୍ଞାନେ କାକ, ଗାୟନେ ଭାଟ, ପଦମଞ୍ଚାଳନେ ଭଣ୍ଡାରି, ଭୋଜନେ ବ୍ରାହ୍ମଣ ଇତ୍ୟାଦି -

ଏବଂ ପୂର୍ବୋକ୍ତ ବିଶେଷ୍ୟ ବିଶେଷଣ ଗୁଣବିଶିଷ୍ଟ, ମହତୋମହୀୟାନ୍ ସମଦର୍ଶୀ, ଦେବଦ୍ୱିଜଗୋଭକ୍ତ ଧର୍ମାବତାର, ମିଷ୍ଟଭାଷୀ, ସଦାଳାପୀ, ଗୃହସ୍ପର୍ଷି, ଶୁଦ୍ଧାଚାରୀ, ସର୍ବପ୍ରିୟ, ଆଦର୍ଶଚରିତ୍ର, ବିଚାରବାନ୍, ଶାସ୍ତ୍ରଦର୍ଶୀ, ପ୍ରଶାନ୍ତ, ସାହିତ୍ୟୋଦ୍ୟାନ ବିହାରରସିକ, ଦେଶବତ୍ସଳ, ମାତାର ଯୋଗ୍ୟ ସନ୍ତାନ, ଆଦର୍ଶ ପିତା, ଭ୍ରାତା, ସ୍ୱାମୀ, ପୁତ୍ର, ପୌତ୍ର, ପିତାମହ ସତ୍ତ୍ୱଗୁଣବିଶିଷ୍ଟ, ମହାମହିମ ମାନ୍ୟବର ଶ୍ରୀଳ ଶ୍ରୀଯୁକ୍ତ ଶ୍ରୀମନ୍ମହାରାଜୋପମ, ରାଜୋପାଧିକ, ଭୂସ୍ୱାମ୍ୟବସ୍ଥ, ରଣଜାଲପରିହିତ ଏମ୍ ଏସ୍ ଏଫ୍ ଶ୍ରୀ ଶ୍ରୀ ଛାମୁଙ୍କ ଶ୍ରୀ କରକମଳରେ -

ଶ୍ରଦ୍ଧା, ଭକ୍ତି, ସ୍ନେହ, ସହାନୁଭୂତିର ଗୂଢ଼ତମ ଆନ୍ତରିକ ନିଦର୍ଶନ ସ୍ୱରୂପ ଏହି କ୍ଷୁଦ୍ର ପୁସ୍ତିକା ଖଣ୍ଡି ଅର୍ପିତ ହେଲା । ଶ୍ରୀଛାମୁ ଅନୁକମ୍ପା ପ୍ରଦର୍ଶନ କରତଃ ଗ୍ରହଣ କଲେ ଆପ୍ୟାୟିତ, ଉପକୃତ, ଚିରବାଧିତ, କୃତକୃତ୍ୟ, ଧନ୍ୟଧନ୍ୟ, ପୁରସ୍କୃତ, ପରିବର୍ଦ୍ଧିତ, ସଂସ୍କୃତ ହେବି ଓ ଆପଣାର କ୍ଷୁଦ୍ର ଜୀବନକୁ ସାର୍ଥକ ମଣିବି ... ।

ଯେଉଁ ବଂଶରେ ମହାରାଜ ରାମଚନ୍ଦ୍ର, ଯେଉଁ କୁଳରେ ମହାରାଜ ଭରତ, ଯେଉଁ ପରିବାରରେ ମହାରାଜ ଚାର୍ଲସ୍, ଗୋତ୍ରରେ ମହାରାଜ ଲିହୋଂଚା, ଯେଉଁ ପ୍ରବରରେ ଉଁଇଲ୍ ହେଲ ମହାରାଜା, ଯେଉଁ ଦେଶରେ ଶାମା ଶବର, ଯେଉଁ କୁଳରେ ଜରତା ବେଶ୍ୟା, ଯେଉଁ ଜାତିରେ ରାମା ତନ୍ତୀ, ଯେଉଁ ପୁରୁଷରେ ରାଣ୍ଡୀପୁଅ ଅନନ୍ତା, ଯେଉଁ ବ୍ରହ୍ମାଣ୍ଡରେ ସିପିଓ, ସିଜର, ଗାରିବାଲ୍‌ଡ଼ି, ଦାଉଦ୍, ଆଦମ୍, ସେକ୍‌ସପିଅର, କାଳିଦାସ, ରୁଣ୍ଡୟା, ନାଇଡୁ, ପରମହଂସ ପରିବ୍ରାଜକାଚାର୍ଯ୍ୟ ଶିବାନନ୍ଦ, ଉପେନ୍ଦ୍ରଭଞ୍ଜ, ଗେଟେ,

ଲଙ୍ଗଫେଲୋ, ବାଇରନ୍, ହୋମର, ଦାନ୍ତେ, ତାସୋ, ବାଲ୍ମୀକି, ବଳରାମ ଇତ୍ୟାଦି ମହାପୁରୁଷମାନେ ଜନ୍ମଗ୍ରହଣ କରି ଜଗତକୁ ଧନ୍ୟ କରିଅଛନ୍ତି, ସେହି ବିଶ୍ୱବ୍ରହ୍ମାଣ୍ଡର ସେହି ଜୀବବଂଶରେ ସେହି ମନୁଷ୍ୟ ଜାତିରେ ଆପଣ ଜନ୍ମଗ୍ରହଣ କରି ଏହି ଧରିତ୍ରୀକୁ ପବିତ୍ରୀକୃତ କରିଅଛନ୍ତି । ମୋର ସହାନୁଭୂତିର ନିଦର୍ଶନସ୍ୱରୂପ ଶ୍ରୀଛାମୁଙ୍କ ଶ୍ରଦ୍ଧାମୟ ନାମରେ ଏ ପୁସ୍ତକ ଖଣ୍ଡି ସାର୍ଥକ ରୂପେ ଉତ୍ସୃଷ୍ଟ ହେଲା । ଶ୍ରୀକରରେ ଗୃହୀତ, ଶ୍ରୀନେତ୍ରରେ ଦୃଷ୍ଟ, ଶ୍ରୀଅଧରରେ ଉଚ୍ଚାରିତ, ଶ୍ରୀଗଳାରେ କଣ୍ଠସ୍ଥ, ଶ୍ରୀଉଦରରେ ଜୀର୍ଣ୍ଣ ଓ ଶ୍ରୀ ଅଧମାଙ୍ଗ ବାଟେ ଉତ୍ସୃଷ୍ଟ ହେଲେ ମୋର ଘର୍ମଯୁକ୍ତ ନୈଶ, ଦୈନ ଓ ସାନ୍ଧ୍ୟ ପରିଶ୍ରମ ଓ ଗାଳିମନ୍ଦଯୁକ୍ତ ଦିପହରିଆ ପରିଶ୍ରମ ସଫଳ, ସପୁଷ୍ଟ, ସକଳିକ, ସଜୀବ ହେବ ।

## ୪ ନମ୍ବର -

ବାଇ ମାହାନ୍ତିଙ୍କର ଜଣେ ବନ୍ଧୁ ଜଣେ ଖ୍ୟାତନାମା ଓକିଲଙ୍କୁ ଦେଖି ତାଙ୍କୁ କହିଥିଲେ, 'ସେ ଏକ ହାତୀରାମ୍ ।' ଆଜି ସେ କଥା ମନେପଡ଼ିବାରୁ ବାଇ ମାହାନ୍ତି ତହିଁର ବ୍ୟାଖ୍ୟା କରି ବସିଲେ -

(କ) ହାତୀଙ୍କର ପେଟଟି ବଡ଼, ଏ ମହାଶୟଙ୍କ ପେଟଟି ମଧ ଦଶମାସିକ ।

(ଖ) ହାତୀପେଟରୁ ଗଜଭୁକ୍ତ କପିତ୍‌ଥବତ୍ ଏ ମହାଶୟଙ୍କ ଘରୁ ମକ୍‌କେଲ୍ (ଯଜମାନ) ମାନେ ବାହାରନ୍ତି ।

(ଗ) ହାତୀ ଗଣେଶଙ୍କ ବାହନ ବୋଲି ହାତୀପେଟ କହିଲେ ଏହାଙ୍କର ଭାରି ବିଦ୍ୟା ବୁଦ୍ଧି ଅର୍ଥ ହୋଇପାରେ ।

(ଘ) ହାତୀଙ୍କ ଉପରକୁ ମାହୁନ୍ତ ଯେପରି, ଓକିଲଙ୍କ ଉପରକୁ ହାକିମ ସେପରି ।

(ଙ) ହାତୀଯାକ ବଣରେ ପଲ ବାନ୍ଧି ଚରନ୍ତି, ଓକିଲମାନେ ଅଦାଲତଙ୍କ ସମ୍ମୁଖରୁ ଆସି ଓକିଲଖାନାରେ ପଲ ବାନ୍ଧି ବସନ୍ତି ।

(ଚ) ନୂଆଧରା ହାତୀଙ୍କୁ ପୁରୁଣା ହାତୀ ମଣ କଲା ଭଳି ଏ ପେସାରେ ନୂଆଙ୍କୁ ପୁରୁଣାମାନେ ମଣ କରନ୍ତି ପରା ।

(ଛ) ହାତୀଙ୍କ ମଧ୍ୟରେ ଏକଦନ୍ତା ବଣର ରାଜା, ଏମାନଙ୍କ ମଧ୍ୟରେ ସେପରି କିଏ ?

**ନୋଟ୍** - ତେବେ ଗୋଟିଏ କଥା ହାତୀମାନ ଜଙ୍ଗଲରୁ ଧରାଯାଆନ୍ତି, କିନ୍ତୁ ଓକିଲମାନେ ଜଙ୍ଗଲରୁ ଧରାଯିବାର ତ ଆମ୍ଭେମାନେ କୌଣସି ସମ୍ବାଦପତ୍ରରେ ଦେଖି ନାହୁଁ । ତା ପରେ ବାଇ ମାହାନ୍ତି ଯେ ଗଜଭୁକ୍ତ କପିତ୍‌ଥର ଉପମା ଦେଇଅଛନ୍ତି, ସେଥିରୁ ତାଙ୍କ ଅନୁଭବ କେବଳ ପୁସ୍ତକଗତ ବିଦ୍ୟାରେ ଆବଦ୍ଧ ଥିବା କଥା ସ୍ପଷ୍ଟ ପ୍ରମାଣିତ ହେଉଛି । କାରଣ ଆମ୍ଭେମାନେ ନିଜେ ଏହା ବିଡ଼ିବାକୁ କେତେ ହାତୀଙ୍କୁ କପିତ୍‌ଥ ଖାଇବାକୁ

ଦେଇଅଛୁ ଓ ପରୀକ୍ଷା କରି ବୁଝିଅଛୁ ଯେ, ଏ ପ୍ରବାଦଟି ମିଥ୍ୟା । ତତ୍ପରେ ସବୁ ଓକିଲ ଯେ ହାତୀମରା, ଏହା ଆମ୍ଭେମାନେ କହି ନ ପାରୁ । ଅନେକଙ୍କ ଆକାର 'ଦଳଖିଆ' ଅପେକ୍ଷା ଶୀର୍ଣ୍ଣତର ଥିବା ଆମ୍ଭେମାନେ ସାହସ କରି କହିପାରୁ । ଅତଏବ ଏଗୁଡ଼ାକ ମାହାନ୍ତିଙ୍କର ବ୍ୟକ୍ତିବିଶେଷଙ୍କ ଉପରେ ଅଦଉତି ସାଧିବା ପାଇଁ ଲେଖା ହେଲା ପରି ବୋଧ ହେଉଅଛି । କେତେକ ଓକିଲ ହାକିମଙ୍କ ଉପରେ ମାହନ୍ତ । ବରଞ୍ଚ ଏ ସମ୍ବନ୍ଧରେ ମାହାନ୍ତିଙ୍କ ଉପମାଟା ବିପରୀତାର୍ଥବୋଧକ ହେଲାପରି ଜଣାଯାଏ । ଓକିଲମାନଙ୍କ ବ୍ୟବସାୟ 'ଆଇନ'ର ଅନର୍ଥରୁ ଓ ଅବିଚାରରୁ ନିର୍ଦୋଷ ବ୍ୟକ୍ତିମାନଙ୍କୁ ରକ୍ଷା କରିବା ପାଇଁ । ବାଇ ମାହାନ୍ତି 'ଟରଣି'ମାନଙ୍କ ସଙ୍ଗେ ଓକିଲଙ୍କର କି ସମ୍ପର୍କ ତାହା ଉଲ୍ଲେଖ କରି ନାହାନ୍ତି ।

**୫ ନମ୍ବର -**

ଏତକ ଲେଖିସାରି ପୁନର୍ବାର ପଦ୍ୟ ପ୍ରତି ଦୃଷ୍ଟି ପଡ଼ିଗଲା -

**ସୂଚନା** - ଆଜି ବାଇ ମାହାନ୍ତିଙ୍କ ଚୁଙ୍ଗଚୁଙ୍ଗିଆ ବୟସ କଥା ମନେ ପଡ଼ିଗଲା । ସେ କାଳର କଥାକୁ ଏ ସମୟର ଜମିନ୍ ଆସମାନ ଫରକ୍ । ପିଲାଦିନେ ସେ ଜଣଙ୍କ ସଙ୍ଗେ କୁମାରପୂର୍ଣ୍ଣିମା ଦିନ 'ଚାନ୍ଦ' ବସିଥିଲେ । ଦୁହେଁଯାକ ଯୁବା ହେଲେ ଓ ବିଭା ହେଲେ । ସେ ଚାନ୍ଦ ଆଜି ମଧ ଜୀବିତ । ଦୁହେଁ ବୁଢ଼ାହେବା ପର୍ଯ୍ୟନ୍ତ 'ଢଡ଼ାତେଲ ମେଣ୍ଢାବାଳ' ହୋଇ କଟାଇ ଆସିଲେ । ଏ ପଦ୍ୟଟି ସେହି ଚାନ୍ଦଙ୍କ ସ୍ତ୍ରୀଙ୍କୁ ଲକ୍ଷ୍ୟ କରି ଲିଖିତ । (ଚାନ୍ଦଙ୍କ ସ୍ତ୍ରୀଙ୍କୁ ସଙ୍ଗାତଙ୍କ ସ୍ତ୍ରୀ ଭଳି ଚାନ୍ଦୁଣୀ ଡକା ନ ଯାଇ ପୁଂଲିଙ୍ଗସୂଚକ 'ଚାନ୍ଦ' ଶବ୍ଦରେ ସମ୍ବୋଧନ କରାଯାଏ ପରା ?

କଳ୍ପନା ପ୍ରତିମା - ଚାନ୍ଦ !

ରୁଣୁ ଝୁଣୁ ଝୁଣୁ ନାଦେ ଅନ୍ତରାଳେ ଥାଇ
ମୋହୁଥିଲେ ଜଗତକୁ ପ୍ରେମରେ ମତାଇ ।
କେତେ ଥର ପାପନେତ୍ର ଚାହିଁଛି ନିରେଖି,
ଥରେ ସେହି ଦିବ୍ୟ ରୂପେ ପଡ଼ିବାକୁ ଆଖି ।
କିନ୍ତୁ ଧନି ! କେତେ ଚେଷ୍ଟା ଆଶା କରି ମୁହିଁ
ନିରାଶେ ଫେରିଛି ତୋର ଦର୍ଶନ ନ ପାଇ ।
ମଣିଥିଲି ଅଦର୍ଶନେ ନିଜକୁ ଅଧମ,
କିନ୍ତୁ ଚାନ୍ଦ ! ତୁଟିଗଲା ଏବେ ସେ ଭରମ ।
ଆଉ ଦିନେ ନ ମାଗିବି ତୋର ଦରଶନ,
ଗଢ଼ି ରଖି ସାରିଲିଣି ରୂପ ଅନୁପମ ।

ସେହି ଗଢ଼ା ପିତୁଳାକୁ ହୃଦୟ ମନ୍ଦିରେ
ରଖି ନିତି ପୂଜୁଅଛି ଅତି ଯତନରେ ।
ଏବେ ମାଗୁଅଛି ମୁହିଁ ଭିକ୍ଷା ତୋ ଚରଣେ,
ଦୂରେ ଥାଅ ନ ଆସ ମୋ ପାଶକୁ ଗୋ କ୍ଷଣେ ।
ଯେବେ ଦିନେ ଦୁର୍ଯୋଗରୁ ପଡ଼ିବୁ ସମ୍ମୁଖେ,
ନ ଚାହିଁବି ତୋ ବଦନ, ବସ୍ତ୍ର ଦେବି ମୁଖେ ।
ଜାଣିଥିଲି ଏବେ ମୋର ଦୃଢ଼ ଅନୁଭବେ,
ପଡ଼ିଯିବ ନେତ୍ର ତୋର ଛାୟାପଥେ ଯେବେ ।
ଭାଙ୍ଗି ଚୂନା ହୋଇଯିବ ପୀରତି-ପିତୁଳା,
ଝୁରି ସେହି ପ୍ରତିମାକୁ ହେବି ମୁଁ ବାତୁଳା ।
ପରାଣପ୍ରତିମା ମୋର ହୋଇଗଲେ ଚୂନା,
ପୂଜି ମୁଁ କାହାକୁ ଆଉ ବଞ୍ଚିବି ତା ବିନା ?
ଦଣ୍ଡକେ ସେ ଚୂନା ହେଲେ ସେ ଠାବ ପୂରଣ
କରିବାକୁ ନାହିଁ ତୋର ପ୍ରକୃତ ସୁଗୁଣ ।
ମନେ ମନେ ପୂଜୁଅଛି ଯାହାକୁ ମୁଁ ନିତି,
ଲକ୍ଷେ ଭାଗୁ ଭାଗେ ତାର ନାହିଁ ତୋର କତି ।
ଏଥିପାଇଁ ମାଗୁଅଛି ଚାନ୍ଦପଦେ ଭିକ୍ଷା,
ଲୁଚିଥାଅ ମୋ ଆଗରୁ, କର ମୋତେ ରକ୍ଷା ।
ଅଦୃଷ୍ଟ ଚାନ୍ଦରେ ମୋର ଅଛି ଯେବେ ଲୋଡ଼ା,
କି କରିବି ଦେଖି ତୋର ରୂପ ମାଟିଗଢ଼ା ?
ଜଗତରେ ଯେତେ ରୂପ ଗୁଣ ଅଛି ଯହିଁ,
ତାହା ସବୁ ଠୁଳକରି ଗଢ଼ି ଅଛି ମୁହିଁ ।
ଥରେ ଚାହିଁ ଦେଲେ ତୋତେ କଳ୍ପନାର ଛାୟା
ନିଭିଯିବ କ୍ଷଣେ, ହୋଇଯିବି ମୁହିଁ ବାୟା ।
ଏଥିପାଇଁ ମାଗୁଅଛି ତୋଠାରୁ ମେଲାଣି,
ଦୂରେ ଥାଇ ନ ଆସଗୋ ମୋ ପାଶେ ମିତଣୀ ।

**ନୋଟ୍** - ଯେଉଁ ବନ୍ଧୁଙ୍କ ସ୍ତ୍ରୀଙ୍କୁ ଏ ପଦ୍ୟଟି ଉଦ୍ଦିଷ୍ଟ ସେ ବନ୍ଧୁ ଏହା ପଢ଼ି ବାଇ ମାହାନ୍ତିଙ୍କୁ କ୍ଷମା ଦେଲା ପରି ଆମ୍ଭମାନଙ୍କୁ ବୋଧ ହେଉ ନାହିଁ । ବାଇ ମାହାନ୍ତିଙ୍କର ବୃଦ୍ଧାବସ୍ଥାରେ ଏତେ ରସିକତା ଉଛୁଳି ପଡୁଛି କେଉଁ ଗୁଣକୁ ? ପାଠକମାନେ ମଧ ମାହାନ୍ତିଙ୍କ ଗଦ୍ୟମୟ ବାସନ୍ତୀ ଚାନ୍ଦିନୀ ରାତିର ଛାଲଛାଲୁଆ ଆଭାସ ପାଇବେ -

## ୬ ନମ୍ବର - ନୟନ ପିତୁଳା

ଦିନେ ପଡ଼ିଥିଲା ଯୋଗ, ଦେଖି ଯେବେ ଚାହିଁ,
ଦିଶିଗଲା ତୋ ବଦନ, ଆଲୋ ଚାନ୍ଦମୁହିଁ ।
ଦେଖାଦେଇ ଦଣ୍ଡେ ଗଲୁ ଉଭାଇ ରେ ବାଳା
ଝଟକ ବିଜୁଳି ଠାରୁ ହୋଇଣ ଚଞ୍ଚଳା ।
ନିମିଷକେ ଚାରି ଆଖି ହୋଇଗଲା ଯହୁଁ,
ଲାଜେ ବୁଲାଇଲୁ ମୁଖ, ନିରେଖି ନ ଚାହୁଁ ।
ସଂସାରର ଗହଳରେ କେଣେ ଗଲ ଲୁଚି,
ଜୀବନର ଆଶାଦୀପ, ରହିଲି ମୂରୁଛି ।
ଜୀବନେ ଘଟିଛି ଦିନେ ପ୍ରେମର ସ୍ୱପନ,
ସେହି ଦିନ ଲାଗି ଏକା ମୋ ଜୀବନ ଧନ୍ୟ ।
ଲୁଚିଲା ତୋ ରୂପ, ଲୁଚିଗଲା ତୋ ମାଧୁରୀ,
ସେହି ଦିନଠାରୁ ହେଲି ଏତେ ହତଶିରୀ ।
ଯେଉଁ ପ୍ରେମଦୀକ୍ଷା ମତେ ଦେଇଛୁ ନୟନେ,
ସେହି ମନ୍ତ୍ର ଜପୁଅଛି ଜାଗ୍ରତ ସ୍ୱପନେ ।
କି ଆଦେଶ ଘେନି ଆସିଥିଲୁ ମୋର କତି,
ତାହା ତୁହି ଜାଣୁ ଏକା, ଜାଣେ ବିଶ୍ୱପତି ।
ତା ହେଉଣୁ ମୋର ପାପ ନୟନ ତୃପତ,
ଉଭାଇ ଗଲୁ ଅନ୍ଧାରେ କରି ସନ୍ତପତ ।
ତୋହ ଲାଗି ହେଲି ଯୋଗୀ, ବୁଲି ବୁଲି ଘର,
ନଦୀ, ବନ, ପରବତ, ନିର୍ଜନ ପ୍ରାନ୍ତର ।
କୃଷକର କନ୍ଥାଠାରୁ ରାଜାଙ୍କ ମୁକୁଟ
ଖୋଜି ଖୋଜି ଗଲି ଥକି ନ ପାଇଲି ଭେଟ ।
ବଜାଇ କେନ୍ଦରା କାଖେ ଘେନି ଭିକ୍ଷାଥାଳ
ତୋହ ନାମେ ଗୀତ ବୋଲି କଲି ମୁଁ କଟାଳ ।
ସାଇ ସାଇ ବୁଲି ଶେଷେ ଆସିଲି ନଗରେ
'ନୟନ-ପିତୁଳା ମୋର ଅଛି କାହା ଘରେ ?'
ଏହି ପ୍ରେମ-ଗୀତ ବୋଲି ବୁଲେ ଭିକ୍ଷା କରି,
ନୟନ-ପିତୁଳା ମୋର ନେଲା କିଏ ହରି ?
ମୁଠି ଭିକ୍ଷା ଦେଲେ ଥୋକେ, ନ ନିଏ ମୁଁ ତାହା,
'କିଏ ପାଇ ଦେବ ମୋର ହଜିଅଛି ଯାହା ।'
ପଚାରେ ଯାହାକୁ ଯେତେ ନ ପାଏଁ ଉତ୍ତର,
'ନୟନ-ତାରା'କୁ କିଏ ଦେଖିଛ କି ମୋର ?

ଏହିପରି ବୁଲୁ ବୁଲୁ ପାଚିଲାଣି କେଶ,
ତଥାପି ତ ଭ୍ରମୁଅଛି ଖୋଜି ଦେଶ ଦେଶ ।
ପୃଥିବୀରେ ଯାହା ଯାହା ଦିଶନ୍ତି ସୁନ୍ଦର,
ସବୁ ଗଢ଼ା ହୋଇଛନ୍ତି ଉପାଦାନେ ତାର ।
ନୟନ ପିତୁଳି ! ମତେ କରୁଛୁ ପରୀକ୍ଷା,
ଏ ଜୀବନେ ବିଡ଼ି ମତେ ଦେବୁ ଦିନେ ଦେଖା ।
ତତେ ନ ଦେଖିବାଯାଏ ନ ଫେରିବି କେଣେ,
ଏ ଜନମେ ହେଉ ଅବା ଅପର ଜନମେ ।
ଯେ ଦେଖଇ ମତେ କହେ ବାତୁଳ ପାମର !
ସରଗର ଚାନ୍ଦ, ଖୋଜି ବୁଲୁ ଘର ଘର !
ମୁହିଁ ଜାଣେ, ଜାଣୁ ତୁହି ନୁହେଁ ମୁଁ ବାତୁଳା,
ଖୋଜି ଖୋଜି ବୁଲୁଛି ମୋ ନୟନ-ପିତୁଳା ।

ନୋଟ୍ - ପାଠକ ମହୋଦୟ ! ଆଜିକାଲି ଫେସନର ଫଟ - ବାବୁ ଇସ୍କୁଲିଆ ଟୋକାଙ୍କ ଆଖିରେ ଚଷମା ଦେଖି ମନରେ ଯେଉଁପରି ଭାବର ଉଦୟ ହୁଏ, ବାଇ ମାହାନ୍ତିଙ୍କ ପ୍ରେମ ସଙ୍ଗୀତମାନ ଦେଖି ମନରେ ତହିଁର ବିପରୀତ ଭାବର ଉଦୟ ହେଉ ନାହିଁ କି ? ବୁଢ଼ା ଦିନେ ଏ ସବୁ ସାଜୁଛି କି ? ଏସବୁ Love-song (ପ୍ରେମ ସଙ୍ଗୀତ) ସିନା ତୁମ ଆମ ଭଳି ଟୋକାଙ୍କୁ ମାନନ୍ତା । ବୁଢ଼ାଙ୍କ ପାଟିରୁ ଏହା ଶୁଣିବାକୁ ମଧ କିମିତି କିମିତି ମାଡ଼ିପଡ଼େ । ବୁଢ଼ାଦିନେ ପାଞ୍ଚଫୁଲିଆ ମାଣିଆବନ୍ଧି ବାଣପୁରୀ ଯୋଡ଼ ପରି ଏ ପ୍ରେମ-ଗୀତ ମାନୁଛି । ଯେ ହେଉ, ଏତେ ଲୁଚାଚୋରା, ଉପମା ଉପମେୟ, ଏତେ ସୋହବତ ମୋହବତ କାହିଁକି ? ଏ ସଂଖ୍ୟା ପାଞ୍ଜିତକ ପଢ଼ିସାରି ଆମ୍ଭେମାନେ ବାଇ ମାହାନ୍ତିଙ୍କୁ ସଫା ସଫା ମୁହେଁ ମୁହେଁ ଏଣିକି ଆଉ ଗ୍ରହଣ କରିବୁଁ ନାହିଁ । ବାଇ ମାହାନ୍ତି କହିଲେ, ମୋର ୬୦ ବର୍ଷ ମଧରେ ସେହି ଦିନକ କେବଳ ପଦ୍ୟ ଲେଖିବା ଟୋଡ଼ ଉଠିଥିଲା, ଆଉ ଲେଖିବାର ଆଶା ନାହିଁ କି ଭୟ ନାହିଁ । ସେ ମଧ ଆମ୍ଭମାନଙ୍କୁ ଟିକେ ଭୟ ଦେଖାଇ କହିଲେ, ''ତୁମେ ଏ ପଦ୍ୟତକ ଗ୍ରହଣ ନ କଲେ ମୁଁ ଜଣେ 'ଗ୍ରାହକ' ଦେଖି ଉତ୍ସର୍ଗ କରିଦେଲେ ତ ପାଠ ଛିଣ୍ଡିଯିବ । ଆଉ ଡରାଇବ କଅଣ ? ପଦ୍ୟ ଉତ୍ସର୍ଗ ହେବାର ସୁରାକ୍ ପାଇଲେ କେତେ ଲୋକ ନିଲାମ ଡାକି ବସିବେ ଯେ ।'' ଅତଏବ ଆମ୍ଭେମାନେ ବାଧ ହୋଇ ନିରୁତ୍ତର ହେଲୁ । ପାଠକମାନେ ପଦ୍ୟର ମଛା*ତ ଦେଖିଲେ, ଉତ୍ସର୍ଗ ପାଇଁ ଆପଣମାନଙ୍କ ମଧରେ କେହି ଗ୍ରାହକ ଅଛନ୍ତି କି ? ଏତେ ଦିନଯାଏ ବାଇ ମାହାନ୍ତି ଆପଣା ସ୍ୱରୂପ ଲୁଚାଇଥିଲେ, ଆଜି ଧରା ପଡ଼ିଅଛନ୍ତି । ବାଇ ମାହାନ୍ତି କେଉଁ ଶ୍ରେଣୀର 'ବାଇ', ଏହା ବିଚକ୍ଷଣ ପାଠକପାଠିକାଙ୍କ ଆଡ଼ ନୟନକୁ ଆଉ ଛପା ରହିବ ନାହିଁ ।

---

* ସୌନ୍ଦର୍ଯ୍ୟ, ବିଶେଷତ୍ୱ, ବିଭବ

## ଏକାଦଶ ବିଡ଼ା

ବାଇ ମାହାନ୍ତି, ଦାସେ ଏଥରକ ଓଲଟି ଗଧ ଚଢ଼ିଛନ୍ତି । ଆମ୍ଭେମାନେ ଆଜିଯାକେ ପାଠକମାନଙ୍କୁ ଡାକିହାକି ଡେଙ୍ଗୁରା ଦେଇ କହି ଆସୁଅଛୁଁ ଯେ, ବାଇ ମାହାନ୍ତିଙ୍କ ଉପରେ ଆମ୍ଭେମାନେ ଭାରି ବିରକ୍ତ ହୋଇ ସାରିଲୁଣି । କିନ୍ତୁ ବାଇ ମାହାନ୍ତି ଏଥରକ ପାଞ୍ଜିବିଡ଼ାଟା ଆମ ଆଗରେ ପକାଇଦେଇ କହିଲେ, ''ଆଜ୍ଞା ! ବଇଠି ଲଗାଇ ଦେଖ ପିଠ, ମୁଁ ଲାଉଚୋରା ଭାବ ପାଇଲିଣି ! ଏଥର ମତେ ରୋକ୍‌ସୋଦ୍ ଦିଅ, ମୁଁ ମୋ କାମରେ ଇସ୍ତଫା ଦଉଛି ।'' ଆମ୍ଭେମାନେ ପ୍ରଥମେ ଏ କଥା ଶୁଣି ଟିକିଏ ଗୁମ୍ ଖାଇଗଲୁଁ । ମନେ ମନେ ବିଚାରିଲୁଁ, କେଡ଼େ ସୁଖଟାଏ ମାଟି ହୋଇଗଲା । ବରଖାସ୍ତି ପରୁଆନାଟା ଦସ୍ତଖତ୍ କଲାବେଳେ ଯେଡ଼େ ହାତସୁଖ ହୁଏ, ଇସ୍ତଫା ଦରଖାସ୍ତ ଉପରେ ମଞ୍ଜୁରି ଦସ୍ତଖତ୍ କରିବାରେ ସେଡ଼େ ଆନନ୍ଦ ହୁଏ ନାହିଁ ! ଆମ୍ଭେମାନେ ଏବେ ଆଚ୍ଛା ଦୋଘାଇରେ ପଡ଼ିଲୁଁ । 'ଗୋରୁ ମାଇଲେ ମଲି, ଗୋରୁକୁ ମାଇଲେ ମଲି ।' ଯେବେ ଇସ୍ତଫାଟା ମଞ୍ଜୁର କରିଦେଉଛୁଁ, ତେବେ ବାଇ ମାହାନ୍ତି ତ ରାଜ୍ୟଯାକ ଆମ ଗୁଣ କୀର୍ତ୍ତନ କରି ବୁଲିବେ । କହିବେ - ସେମାନେ ମୋ ଦୋଷରୁ ମତେ ତଡ଼ି ଦେଇ ନାହାନ୍ତି, ମୁଁ ବରଞ୍ଚ ଏମାନଙ୍କ ଆଣ୍ଟୁ ଆଡୁଆ ବୁଝାମଣା ସହି ନ ପାରି ଇସ୍ତଫା ଦେଇ ଆସିଲି । ତାହାହେଲେ ଆମ୍ଭମାନଙ୍କ ଖାମିଦପଣିଆଟାର ମର୍ଯ୍ୟାଦା ଚାରିଆଡ଼େ ଖେଳିଯିବ, ଆଉ ଗୋଟିଏ ଚାକର ପାଇବା କଥା ଦୁର୍ଘଟ ହେବ । ପାଠକମାନେ ଗୋଟାଏ ଉପଦେଶ ଶୁଣି ରଖିଥାଆନ୍ତୁ - 'ଚାକରଟି ଯେଉଁ ମୁହୂର୍ତ୍ତରେ ତୁମର ଅପ୍ରୀତିଭାଜନ ହେବ, ପର ମୁହୂର୍ତ୍ତରେ ତାକୁ ବରଖାସ୍ତ କରିଦେବ । ଯେବେ ତୁମ କଟାକ୍ଷଭଙ୍ଗୀରୁ ବା କୌଣସି ଗୁପ୍ତଚରଙ୍କ ଅନୁଗ୍ରହରୁ ତା ପ୍ରତି ତୁମ୍ଭର ପ୍ରତିକୂଳ ମତ ଜାଣିପାରେ, ତାହା ହେଲେ ଦାସେ ଓଲଟି ଘୋଡ଼ା ଚଢ଼ିବେ', ଅର୍ଥାତ୍ ଉକ୍ତ ଚାକରଟି ଆମ ବାଇ ମାହାନ୍ତିଙ୍କ ପ୍ରଣାଳୀ ଅବଲମ୍ବନ କରି ବସିବେ । ଏ ତ ଗଲା ସାଧାରଣ ନିୟମ; ତା ପରେ ଯେବେ ଆମ୍ଭେମାନେ ଇସ୍ତଫା ଗ୍ରହଣ ନ କରି କଅଁଳେଇ ଯଅଁଳେଇ ବାଇଧରଙ୍କୁ ଫେର୍ ଦିନାକେତେ ରଖିବୁଁ, ତାହାହେଲେ ଏଣିକି ସେ ଆମ ନିମକ ଖାଉଥିବାଯାକେ କଥା କଥାକେ ଇସ୍ତଫାର ଦ୍ୱାହି ଦେଇ ବସିବେ । କିଛି କଥା କହିଲେ ସେ କହିବେ, 'ମୁଁ ତ ସେଦିନ ଇସ୍ତଫା ଦେଇଥିଲି, ମତେ ରଖିଲ କିଆଁ ? ହଟହଟା କରିବାକୁ ?' ସେଥିପାଇଁ କହିଥିଲୁଁ, ଆମ୍ଭେମାନେ ଭାରି ଏକ ଦୋଘାଇରେ ପଡ଼ିଛୁଁ । ପାଠକମାନେ ମଧ୍ୟ ଗୋଟାଏ ଭଲ ଶିକ୍ଷା ଏଥିରୁ ପାଇଥାଆନ୍ତୁ - ଇସ୍ତଫା ଦାଖଲ ବାସି ଦିନ ନିମକସଚା ଗୁଣବନ୍ତ ଭୃତ୍ୟମାନଙ୍କୁ ଆଶୀର୍ବାଦ କରି ବିଦାୟ ଦେବ, ତାଙ୍କର ଆଉ ଦଣ୍ଡେ ମୁହଁ ଚାହିଁ କରି ନାହିଁ ! ସେପରି ଯୋଗ୍ୟ ବିଶ୍ୱାସୀ ନଉକରଙ୍କ ପ୍ରତି ଛାଡ଼୍ ତୁମେ ଖାମିନ୍ଦପଣକୁ ଭାଜନ ନୁହଁ ! ଆମ୍ଭେମାନେ ଏ ନିୟମଟି ଅନୁସରଣ କରିଥାଆନ୍ତୁ । କିନ୍ତୁ ନୈପାତନିକ ଅବସ୍ଥାକୁ

ତ ଦୃଷ୍ଟି କରିବା ଆବଶ୍ୟକ । ମନକଥା ମନରେ ଥାଏ, ଆମ୍ଭେମାନେ ମୁଖଭଙ୍ଗୀ ଦ୍ୱାରା ଭିତରର ମହାକାଳକୁ ଘୋଡ଼ାଇ ପକାଇ ମୁରକି ହସଟାଏ ହସି ମାହାନ୍ତିଙ୍କୁ ପଚାରିଲୁଁ, "ବୁଢ଼ାଟିଏ ଆସି ହେଲଣି, ହଠାତ୍ ଏଡ଼େଘାଏଁ ନିଆଁ ହୋଇଯାଉଛ କିଆଁ ? କଥାଟା କ'ଣ ? ଖପ୍‌ପାର କାରଣଟା କଅଣ ? ଆମେ ଶୁଣିଲେ କିଛି ପ୍ରାୟଶ୍ଚିତ୍ତ ଲାଗିବ ନାହିଁ ଯେ ।" ଧୀରେ ଧୀରେ ଗୁମରଟା ଫିଟିଗଲା । କପାଳ ଫାଟିଲା ବେଳକୁ ଘର ଢିଙ୍କି କିମ୍ଭୀର ହୁଏ । ଆମ ପିଲାଏ ତ ଭାରି ଖୁଙ୍ଗବୁଦ୍ଧିଆ ତାଙ୍କରି ଦୋଷରୁ ଆମ୍ଭମାନଙ୍କୁ ଏତେ ହଟହଟାରେ ପଡ଼ିବାକୁ ହେଲା । ଆମ୍ଭେମାନେ ବନ୍ଧୁଯାକ ଦିନେ ଚଉପାଢ଼ିରେ ବସି ପାଞ୍ଜି ପଢ଼ି ହସି ହସି ଲୋତରା କୋତରା ହେଉଥିଲୁଁ । ପାଞ୍ଜି ପଢ଼ିଲାବେଳେ ଦୁଇ ତିନିଥର ମାହାନ୍ତି ମଜକୁରଙ୍କ ନାମ ଉଲ୍ଲେଖ କରିଥିଲୁଁ । ସେତେବେଳେ ଟୁଙ୍ଗିରେ ଉପସ୍ଥିତ ଥିଲେ ଲାବଣ୍ୟବତୀ ଓ ଗଜେନ୍ଦ୍ର କୁମାର । ନାମର ଆଡ଼ମ୍ବରରେ ପାଠକ କଅଣ ବୋଲି କଅଣ ଗୋଟାଏ ଭାବି ବସିବେ ନାହିଁ । ଏପରି ଯୋଡ଼ିଜମକ ନାମକୁ ବହୁତ ଲୋକ ଝୁରନ୍ତି, ଅଳ୍ପ ଲୋକ ପାଆନ୍ତି । ନିଜର ବ୍ୟକ୍ତିଗତ ଉଦାହରଣରୁ କଥାଟା କହୁଅଛୁଁ ।

ପିଲାଦିନେ ଚୁଙ୍ଗ୍‌ଚୁଙ୍ଗିଆ ବୟସ, ସ୍କୁଲରେ ପାଠ ପଢୁଥାଉ । ବୟସ ସେତେବେଳେ ହବ ଚଉଦ କି ପନ୍ଦର 'ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ,' ପିଲାଦିନର କାଶୀ ଅବଧାନିଆ ଖେଦାଧରା 'ମନ ଦେଇ ଶୁଣ କୋବିଦେ ନୃପସୁତା ସୁକେଶୀ' ଛାନ୍ଦ ମୁଖସ୍ଥ ଥିଲା । ସେଦିନ ସାଙ୍ଗସୁଖ କଥାଭାଷା ହେଉଁ ହେଉଁ କେଜାଣି କାହିଁକି ଛାନ୍ଦଟା ମନେ ପଡ଼ିଗଲା । ସେତେବେଳେ ଲାଗିଥାଏ ଇନ୍ଦ୍ରଧନୁ ଖେଳ, ବିଜୁଳି ଚମକ ଦଶଦିଗ ଝଲକୁଥାଏ । ସଂକୀର୍ତ୍ତନରେ ହାଉଡ଼ାଟା ମଧ୍ୟ ଆଁ କରିବା କଥା । ଧୂର୍ଜଟୀ ତ ପୁରୁଣା କରି ଦେଇଛନ୍ତି । କେତେ ଲୋକଙ୍କ ପାଟି ଏ ଆନ୍ଦୋଳନବେଳେ ଆଁ ହୋଇଗଲା । ଯାହାଙ୍କର ଓଡ଼ିଆ Classics (ପୁରାତନ ସାହିତ୍ୟ) ରେ ଦଖଲ, ସେ ତ ସହଜେ । ଯେ 'ଏଥର ମଲେ ସାହେବ ହେବେ,' ସେ ମଧ୍ୟ ଏଣ୍ଟ୍ ମେଣ୍ଟ୍ ସେଣ୍ଟ୍ କରି ବସିଲେ ! ମୁଁ ମଧ୍ୟ ବିଚାରିଲି, ଏ ସୁଯୋଗ ଛାଡ଼ିବାର ନୁହେଁ । ସେତେବେଳକୁ କବି ସେକ୍‌ସପିଅର ତ କାହିଁ ବୋଲି କାହିଁ ! ସେ ଥିଲେ ଅବଶ୍ୟ Romeo and Juliet ନାଟକ 'Moderation on either side !' (ଉଭୟ ପକ୍ଷ ଟିକିଏ ମଗଜ ଥଣ୍ଡା ରଖ) କଥାଟି ହାଙ୍କି ଦେଇଥାଆନ୍ତେ । ଭଲା ସେ ତ ସାହେବ ମଣିଷ, ତାଙ୍କ ଅମଳରେ ତ ଉତ୍ତମାଶା ଅଧମାଶା ଥିଲା । ଆମ ଗୋସେଇଁବାପା ଦାସେ ବଞ୍ଚିଗଲେ ତ 'କ୍ରୋଧଂ ବିଭୋ ! ସଂହର ସଂହରେତି' । କଥାରେ ଭଲା ଟିକିଏ ସାଆନ୍ତ ମଣିମାଙ୍କ ସ୍ୱର ମିଠା କରିବାକୁ ଚେଷ୍ଟା କରିଥାଆନ୍ତେ । ନଇଲେ ଯେବେ ଖୋଦ୍ ଭଞ୍ଜ ମଣିମା ଥା'ନ୍ତେ, କହିଥାନ୍ତେ, 'ଆରେ । ସେ କାଳ ଏ କାଳ ବହୁତ ତଫାତ୍ । ଆମେ

ତ ମରହଟ୍ଟୀ, ଜାଣି ଶୁଣି ଓଲ୍ଲୁ, ତୁମେ ପିଲାଏ ସିଆଣା ହେଲ, ଏଣିକି ସାହିତ୍ୟକୁଞ୍ଜରୁ ମଲ୍ଲୀ, କୁସୁମ, ସେବତୀ, ଜାଇ ଯୂଇ ଗଛସବୁ ଓପାଡ଼ି ନିର୍ମୂଳ କର । ଗୋଲାପ, ଭାୟୋଲେଟ୍, କାଉସ୍ଲିପ, ହସ୍ନୁହାନା ଆଣି ଲଗାଅ । ଆମେ ସିନା ଚାଳରେ ଓ ରଞ୍ଜାରେ ଲାଉ କଖାରୁଡଙ୍କ ମଡ଼ାଉଥିଲୁଁ, ଆମେ ନିର୍ବୁଦ୍ଧିଆ; ତୁମେ ବୁଦ୍ଧିଆଯାକ ଜାଲିବାଡ଼ିରେ ଲତା ମଡ଼ାଇ କୁଞ୍ଜ ତିଆରି କର, ଆମର କିଛି ଆପତ୍ତି ନାହିଁ । ରଜାଙ୍କର ବରକୋଳି ଖାଇବା କଥାଟା ଅବଶ୍ୟ ସରମ କଥା, ତା ବୋଲି ସେ ଗୋଟାକ ଦୋଷ ପାଇଁ ସେ ରଜାଙ୍କ କୃତିଟାଯାକ ତ ମାଟି ହୋଇଯିବ ନାହିଁ । ମନୁଷ୍ୟପ୍ରକୃତି ପର୍ଯ୍ୟାଲୋଚନା କର, ଇତିହାସକୁ ତନ୍ନ ତନ୍ନ କରି ନିରୀକ୍ଷଣ କର, ଅନ୍ୟ କେତେକ ଉଚ୍ଚ ସାହିତ୍ୟକୁ ଆମ ଓଡ଼ିଶୀ ପୋଥି ସବୁ ତୁଳନା କର, ତାହାହେଲେ ମତେ ଆଉ ଏ ବୁଢ଼ା ବୟସରେ ଟାହୁଲି କରିପାରିବ ନାହିଁ । ଆମ ପଞ୍ଝାକ ଭିତରେ ଯାହା ଅଛି, ତାକୁ ଟପିବାକୁ ତୁମର ଯାଏ ପୁରୁଷ କେତେ । କହିବାଠାରୁ କରିବା କାଠିକର ପାଠ । ଆମ ପାଠ 'ଏକୋହି ଦୋଷୋଗୁଣସନ୍ନିପାତେ', ତୁମ ପାଠ 'ଅମୃତ ହାଣ୍ଡିକେ ବିଷ କଣିକାଏ ।' ଯେଉଁ ସାହିତ୍ୟର ଦ୍ୱାହି ଦେଉଛ ସେ ସାହିତ୍ୟର ଉପର ମଲାଟ ଥରେ ଭଲା ଆଛା କରି ଦେଖ । ଇତିହାସର ଭଙ୍ଗୀ ଉପରେ ଆମେ ରଜା ନ ଥିଲୁଁ ବା ତୁମେ ବିଚାରିଛ ଯାହା ତୁମେ ରଜା ବୋଲି, ତାହା ନୁହେଁ । ଆମେ ଅସମ୍ପୂର୍ଣ୍ଣ ଅଟୁଁ, ଆମ ପୂର୍ବପୁରୁଷ ଅସମ୍ପୂର୍ଣ୍ଣ ଥିଲେ, ତୁମେ ଓ ତୁମ ବିରାଦର ସମସ୍ତେ ଅସମ୍ପୂର୍ଣ୍ଣ ଅଟ ଓ ତୁମ ଓ୍ୱାଲିଓ୍ୱାରସ ଉତ୍ତରାଧିକାରୀମାନେ ବି ଅସମ୍ପୂର୍ଣ୍ଣ ହେବେ । ଆମ ଅମଳର ରୁଚି ଆମେ ଧଇଲୁଁ ତୁମ ଅମଳର ରୁଚି ତୁମେ ଧର, ଏତେ ଗାଳିଗୁଲଜ ଦେଇ ପାଟି କିଆଁ ଖରାପ କରୁଛ ? ସ୍ୱର୍ଗକୁ ଧୂଳି ପକାଇଲେ ଆପେ ଧୂଳିଧୂସର ହେବ ସିନା । ଆମ ମାମୁ ଅଜାଙ୍କ ପୁଅ ଢେଠା ପରା କହିଛନ୍ତି, "There are more things in heaven and earth Horatio ! than is dreamt of in your philosophy" (ତୁମ ପାଠ ଯାହା ସପନାଉଛି, ତା ଛଡ଼ା ଏ ଦୁନିଆରେ ଢେର୍ ବେଶି ଚିଜ ଅଛି) ଏ ଦୁନିଆଟା ତହୁଁ ବଡ଼ା ତହୁଁ ବଡ଼ାଙ୍କର କ୍ରୀଡ଼ାଭୂମି । ଅରଖତକ ବାହାର କରି ନେଇ ସିଠାତକ ଫୋପାଡ଼ି ଦେଲେ ତ ନଟ ଯିବ । ବରଂଚ ସିଠାତକ ଫୋପାଡ଼ିବ କିଆଁ ? ରଖିଦେଇଥାଅ; ଜରପାଚନର ସିଠାତକ ଶୂଳ ବେମାରି ଉପରକୁ ହେଲେ କାଳେ କାମ ଆସିବ । ଅଳିଆଗଦାରୁ ବେଳେ ବେଳେ ମୁକ୍ତା, ମଣିମାଣିକ ମିଳେ । (ନୋଟ୍ - ଶେଷଲିଖିତ ଉକ୍ତିଟିର ସତ୍ୟତା ବିଷୟରେ ଖୋଦ୍ ପ୍ରକାଶକ ହଲପାନ୍ ଇଜାହାର୍ ଦେବାକୁ ମୁସ୍ତେଜ୍ ଗଡ଼ଜାତ ଜଙ୍ଗଲରେ ବୁଲୁବୁଲୁ ପ୍ରକାଶକ ବୃଦ୍ଧ ବୟସରେ ଗୋଟିକେତେ ମାଣିକ୍ୟ ସଂଗ୍ରହ କରିଅଛନ୍ତି ଓ ଅଭାବଗ୍ରସ୍ତ ହେଲେ ସେଗୁଡ଼ିକର ସଦ୍‌ବ୍ୟବହାର କରିବେ ବୋଲି ଆଶା ରଖି ପ୍ରତିଦିନ ତାହା ପାଟକନାରେ ପୋଛି ପୂଜା କରୁଅଛନ୍ତି ।)

ଯାହାହେଉ, ଉଞ୍ଚୀୟ ଆନ୍ଦୋଳନବେଳ କଥା ପଡ଼ିଥିଲା, ସେହି ସମୟରେ ପିଲାଦିନର 'କବି ବିଚାରିଲା, ବିଚିତ୍ର ହେଲା, ତୁମ୍ଭି ବୁଡ଼ିଲା, ନ ବୁଡ଼ି ଶଇଳ ସଲିଳ ଉପରେ ଯା ରହିଲା ।' କଥାଗୁଡ଼ାକ ଠିକେ ଠିକେ ମାଡ଼ି ଯାଇ ଦି'ଖଣ୍ଡ ଖଣ୍ଡେ ଅମାର୍ଜିତ Classics (ପୁରାତନ ସାହିତ୍ୟ) ପଢ଼ିନେଲୁଁ ଯେତେବେଳେ ଚୁଙ୍ଗୁଚୁଙ୍ଗିଆ ଉମର, କଳ୍ପନା-ଜଗତରେ ସବୁବେଳେ ବୁଲାଚଲା, କେବଳ ଭୋଜନ ଓ ଉକ୍ତ ବସ୍ତୁର ବର୍ଜନ କରିବା ପାଇଁ ଦିନ ଭିତରେ ବଡ଼ ଜୋର୍ ଘଣ୍ଟା ଦେଢ଼ ପାଇଁ ବାସ୍ତବ ଜଗତକୁ ଆସୁଥାଉଁ । ବାସ୍ତବ ଜଗତରେ ତିଳଟିଏ ଦେଖିଲେ କଳ୍ପନା-ଜଗତକୁ ତାର ଖବର ଚାଲିଯାଏ, ସେଠେଇଁ ପହଞ୍ଚିଲା ବେଳକୁ ତାଳଟାଏ ! ଆମ୍ଭମାନଙ୍କର ଜଣେ ପ୍ରବୀଣ ବନ୍ଧୁ 'ଲାବଣ୍ୟବତୀର ଲାବଣ୍ୟ' ଶୀର୍ଷକ ଦୁଇ ଚାରୋଟି ପ୍ରବନ୍ଧ ଲେଖିଥିଲେ, ସେ ମଧ୍ୟ ଆମ ହାବୁଡ଼େ ପଡ଼ିଗଲା । ଏ ତ ସେ କାଳର କଥା, ଅନେକ ଦୋଷ ପାଠକମାନେ ମାର୍ଜନା କରିବେ । ଗୋଟିଏ ସପିଣ୍ଡା ଗୌରୀଙ୍କି ଦେଖି 'ଅସପିଣ୍ଡା ତୁ ଯା ମାତୁଃ ଅସଗୋତ୍ରା ଚ ଯା ପିତୁଃ' ଶାସ୍ତ୍ରୀୟ ବଚନର ଓ ସମାଜର ଦ୍ୱାହି ପାସୋରି ପକାଇଲି । ଯାଇ ପହଞ୍ଚିଲି କଳ୍ପନା-ଜଗତର ବଙ୍ଗଳାରେ, ସେ ଗୌରୀଙ୍କ ସମଭିବ୍ୟାହାରରେ । 'ପଲକ୍ ପର୍ ଦରିଆ' କାହାଣୀର ସତ୍ୟତା ଉପଲବ୍ଧି କରୁ କରୁ କେତେ ଚିତ୍ର ମାନସନେତ୍ରକୁ ଦିଶିଗଲା, କେତେ ପରଦା ଫିଟିଗଲା । ଚାହୁଁ ଚାହୁଁ ଛାପଚିକ୍‌କଣ ଚମ୍ପା ଫୁଲ ପରି ପିଲାଗୁଡ଼ିଏ, ଶୁଆ ସାରୀ ପିଞ୍ଜରା, ଧାନ ଅମାର, ଗୋଲାପ, ଜାସ୍‌ମିନ୍, ଲିଲିଥର୍ନ୍, ଫୁଲ ବଗିଚା ମଝିରେ ଜଳର ଉସ୍ର ଖେଳୁଛି, ଅସଂଖ୍ୟ ଦାସ ଦାସୀ, ଏକ ଚକଚକିଆ ଫିଟିନ୍ ଗାଡ଼ି, ସେଥିରେ ମୁଁ ଓ ନବବିଧାନାନୁମୋଦିତ ପରିଚ୍ଛଦଧାରିଣୀ, ସନ୍ନମିତାଙ୍ଗୀ, କୋକିଳକଣ୍ଠୀ, ଜମ୍ବୁନଦଗୌରୀ, ଦେବୀ ହାସ୍ୟମୁଖରେ ସାୟଂସମୀରଣ ସେବନ କରିବାକୁ ବାହାରିଛୁଁ, ବର୍ମାପଯଗ୍ଗୁ ଟଙ୍କୁ ଯୋଡ଼ିକ ଈଷଦ୍‌ବରିର୍ଣ୍ଣଦ୍‌ବର ଗଛି ଗାଛି, କଟୁଆନ୍ ଶାଲପଗଡ଼ିଧାରୀ, ନିକଟସ୍ଥ ମଇଦାନରେ ଚାରିଚକିଆ ବଚକାନି ଗାଡ଼ିରେ ଚିତ୍ରିତପକ୍ଷମୁକୁଟଧାରୀ ପୁତ୍ରକନ୍ୟାଙ୍କୁ ଏକ ଆୟା ଠେଲି ଠେଲି ବୁଲୁଛି । ମନେ ଅଛି, ସେହି ସମୟରେ ପିଲାଙ୍କୁ ଉଦ୍ଦେଶ୍ୟ କରି ଡାକିଦେଲି - ଲାବଣ୍ୟବତୀ ଓ ଗଜେନ୍ଦ୍ର ! ଏହି ସମୟରେ ବାସ୍ତବ ଜଗଦ୍ ମୋତେ ଝିଙ୍କାଟାଏ ମାରିଦେଲା, ସୁଖସ୍ୱପ୍ନ ଭାଙ୍ଗିଗଲା । ଚାହିଁଦେଲି, ବାଲ୍ୟସହଚରୀ ସେହି ଅକୃତ୍ରିମମାଧୁରୀଯୁକ୍ତା ଗୌରୀ କାଖରେ ପାଣିମାଠିଆଟି ଧରି ତାଙ୍କ ବାଟେ ବାଟେ ଚାଲିଗଲେଣି । 'ଆହା' ! ବୋଲି ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ ସେଇ ସେ ସ୍ଥାନରୁ ଉଠିଲି । ଏ ଅନୁଭବ ଦିନକର ।

ଚାହୁଁ ଚାହୁଁ ସ୍କୁଲରେ ପାଠ୍ୟାବସ୍ଥା ଶେଷ ହେଲା । କ୍ରମଶଃ ପିତାମାତା ଧରାଧରି କରି ବାସ୍ତବ ରାଜ୍ୟର ବିଦ୍ୟାଳୟର ମଡୁଆ ଶାଙ୍କୋଳି ମୋ ବେକରେ ଲଗାଇ ଦେଲେ । ବାସ୍ତବ ରାଜ୍ୟରେ ପଡ଼ି ଜଡ଼ି ସଡ଼ି ବୁଡ଼ିଗଲି । ଦେଖୁ ଦେଖୁ ବାସ୍ତବ ରାଜ୍ୟର ମେମ୍ ସାହେବ ପିଲାଦିନର ବଚକାନି ଗାଡ଼ିଠେଲା ଆୟାଙ୍କଠାରୁ ମଧ୍ୟ ରୂପ ଗୁଣ ବର୍ଣ୍ଣ ବୟସ

ଦେହ ମୁଣ୍ଡରେ ହୀନ ହେଲେ । ଥରେ ଉପରକୁ ଚାହିଁଲି, ଥରେ ତଳକୁ ମୁହଁ ପୋତିଲି, ଥରେ ଦର୍ପଣରେ କପାଳକୁ ନିରେଖି ଚାହିଁଦେଲି, ମୋ ଦୁଃଖରେ ଓ ଲାଜହୋମରେ ଲାଗିଲି । ଏ ଆଜିକି ଦଶ ବର୍ଷ ତଳର କଥା । ତେବେ ସୁଦ୍ଧା ବ୍ରାହ୍ମଣ କୁଳ ବୋଲି ଆହୁରି ଦୁଇ ତିନି ବର୍ଷ କଳ୍ପନା ରାଜ୍ୟରୁ ପେନ୍‌ସନ୍ ନେବାକୁ ହେଲା ନାହିଁ । ଚାହୁଁ ଚାହୁଁ ବାସ୍ତବର ସୁଖଦୁଃଖମୟ ଅମାନିଶାରେ ଯୋଡ଼ିଏ ନକ୍ଷତ୍ର ଉଇଁ ଉଠିଲେ; ଗୋଟିକର ନାମ ହେଲା ସେହି କଳ୍ପନାଜଗତର ଲାବଣ୍ୟବତୀ, ଆଉ ଗୋଟିକର ନାମ ଗଜେନ୍ଦ୍ର କୁମାର । ସେଥିପାଇଁ କହିରଖିଲି, ଏ ଦିଓଟି କଳ୍ପନା-ଯୁଗର ଅକାଳଝଡ଼ା ଫଳ । ଗୋଟିଏ ମୋର କନ୍ୟା, ଅନ୍ୟଟି ଭ୍ରାତୃଷ୍ପୁତ୍ର । ଭ୍ରାତୃଷ୍ପୁତ୍ରର ନାମକରଣ କରିବା ସୁଖଟା କେତେ ଲୋକଙ୍କ ଭାଗ୍ୟରେ ଫଳେ ? ଛାଡ଼ ସେ କଥା । ଏ ପିଲା ଦିଓଟି ବେଳେବେଳେ ଯାଇ ଭାଗବତ ଟୁଙ୍ଗିରେ ଅଯାଚିତୋପସ୍ଥିତ ହୁଅନ୍ତି । ଆମ୍ଭେମାନେ ହସିଲେ ସେମାନେ ହସନ୍ତି, ଆମ୍ଭେମାନେ କାନ୍ଦିଲେ ସେମାନେ କାନ୍ଦନ୍ତି, ଆମ୍ଭେମାନେ ନୀରବ ହେଲେ ସେମାନେ ଆମ ଉଦାହରଣକୁ ଅନୁକରଣ ନ କରି ବାଳସ୍ୱଭାବସୁଲଭ କୋଳାହଳ ଓ କଳହରେ ଲାଗିଯାଆନ୍ତି । ପାଠ ଡାକୁଛି, 'ଅର୍ଥମନର୍ଥଂ ଭାବୟ ନିତ୍ୟଂ ।' ଯେଉଁଠାରେ ସ୍ୱାର୍ଥ ବିଜଡ଼ିତ, ସେହିଠାରେ କଳି । ଏମାନେ ନିତାନ୍ତ ପିଲା, ସ୍ୱାର୍ଥର ଅର୍ଥ ଆଜିପର୍ଯ୍ୟନ୍ତ ଏମାନଙ୍କ ବୁଦ୍ଧିକୁ ଛୁଇଁ ଯାଇ ନାହିଁ, ତେବେ ଏମାନଙ୍କ ମଧ୍ୟରେ କଳିକଜିଆ କାହିଁକି ? ପାଟି ଖୁଜବୁଜରୁ ହାତଗୋଡ଼ଙ୍କର କଥା କହିବା ପର୍ଯ୍ୟନ୍ତ ମାମଲତ ଯାଏ । ପିତା କନ୍ୟାର ସମ୍ପୂର୍ଣ୍ଣ ନିଜସ୍ୱ କି ଭ୍ରାତୃଷ୍ପୁତ୍ରର ଷୋଳପଣ ସମ୍ପତ୍ତି ? ଏହି କଥାର ମୀମାଂସା ହେବାକୁ ଏତେ ଯୁଦ୍ଧ ! ସେ କୋଳାହଳ ଅମୃତମୟ, ସେ କଳହ ଅମୃତମୟ, ସେ କଳହରେ ମଧ୍ୟସ୍ଥତା କରିବା ମଧ୍ୟ ଅମୃତମୟ । ସେ କଳିରେ ଗଣିତ ଶାସ୍ତ୍ରର ଅଧିକାର ନାହିଁ । ଗୋଟିଏ ବସ୍ତୁ ଦୁଇ ଭାଗରେ ବିଭକ୍ତ ହେଲେ ଭଗ୍ନାଂଶ ଦ୍ୱୟର ସମଷ୍ଟି ବସ୍ତୁର ପରିମାଣ ସଙ୍ଗେ ମେଳ ହେବା ଆବଶ୍ୟକ, କିନ୍ତୁ ଏ କ୍ଷେତ୍ରରେ ତାହା ହେଲେ କଳହର ବୃଦ୍ଧି ଓ କୋଳାହଳର ଓଡ଼ାଙ୍କ ହୁଏ । ଏଥିପାଇଁ ବାଧ୍ୟ ହୋଇ କ   କ   କ ଅଥବା କ/୨ - କ କରି ପାଠ ଛିଣ୍ଡାଇ ଦେବାକୁ ହୁଏ । ଅର୍ଥାତ୍ ନନା (ପିତା) ଲାବଣ୍ୟବତୀର ଷୋଳପଣ ସମ୍ପତ୍ତି ଓ ଦଦେଇ (ଜ୍ୟେଷ୍ଠ ପିତୃବ୍ୟ) । ଗଜେନ୍ଦ୍ରର ଷୋଳପଣ ସମ୍ପତ୍ତି । ଏ ଗଣିତ ସମସ୍ୟାଟା ମଧ୍ୟ ମଧୁମୟ । ସେ ଯାହାହେଉ, ଆମ୍ଭେମାନେ ଟୁଙ୍ଗିରେ ପାଞ୍ଜି ବିଡ଼ାଏ ପଢ଼ି ହସିଥିବା କଥା ଓ ବାଇ ମାହାନ୍ତିଙ୍କ ନାମ ଉଲ୍ଲେଖ କରିଥିବା କଥା ଏ ପିଲା ଦୁହେଁ ଶୁଣିଥିଲେ ଓ ବାଇ ମାହାନ୍ତି ସହରରୁ ଫେରି ଆସି ଘରେ ଯେପରି ଗୋଡ଼ ଦେଇଛନ୍ତି, ସେହିପରି ଘରର ସବୁ ପିଲା ତାଙ୍କ ନିକଟରେ ହାଜର । ପାଠକ ଅବଧାନ ! ଦେଖିବେ, ଯୋଡ଼ିଏ କୋରାର କେତେ କରାମତ । ସେ ଲୋଭ ରକ୍ତ ସମ୍ପର୍କର ମମତାକୁ କେଉଁଆଡ଼େ ବୁଡ଼େଇ ଦେଲା । ପିଲାଏ ବାଇ ମାହାନ୍ତିଙ୍କଠାରୁ କୋରାଟିଏ ଲେଖାଏଁ ପାଇବା ଲୋଭରେ ଆମ୍ଭମାନଙ୍କର ସେଦିନ ହସିବା କଥାଟା ବାଇ ମାହାନ୍ତିଙ୍କୁ କହିଦେଲେ । ଏକେ ପଥଶ୍ରମ, ତା ଉପରେ ଅପବାଦ । ବାଇ

ମାହାନ୍ତି ତ ନିଆଁ ଖପରା ହୋଇଗଲେ । 'ଏଠେଇଁ ଆଉ ଜଳଗ୍ରହଣ କରିବାର ଲେଖି ନାହିଁ ।' ଆଉ ଗୋଡ଼ ଧୋଇ ଝାଳ ମାରିବେ କଅଣ ? ସେହିକ୍ଷଣି ଆସି ଆମ ପାଖରେ ପାଞ୍ଜି ବିଡ଼ାକ ଥୋଇ ଦେଇ ଇସ୍ତଫାଖଣ୍ଡିକ ତେନ୍ତୁଳିଖିଆ ମୁଖଭଙ୍ଗୀରେ ଆମ ହାତକୁ ବଢ଼େଇ ଦେଲେ । ବୁଝ, ବୁଝ, ନଡ଼ିଆ ଭିତରେ ଆମ୍ଭେମାନେ ପ୍ରଥମେ ଏ କଥାର ଆଦି ଅନ୍ତ କିଛି ବୁଝିପାରିଲୁଁ ନାହିଁ, ତୁନି ହୋଇ ମୁଣ୍ଡ ପାତି ମାହାନ୍ତିଙ୍କ ତୋଡ଼ଟା ସମ୍ଭାଳି ନେଲୁଁ । ଟୁଙ୍ଗିର ଜଣେ ସଦସ୍ୟଙ୍କର ଭାରି ଉପସ୍ଥିତ ବୁଦ୍ଧି; ବିନା ଅନୁମତିରେ ତାଙ୍କ ନାମ ପଦାରେ ପ୍ରକାଶ କରିବାକୁ ତାଙ୍କର ଭାରି ଆକଟ । ସେ ବାଇ ମାହାନ୍ତିଙ୍କୁ କହିଲେ, ତୁମେ ସେ କଥାରୁ କଣ ପାଇବ ? ତୁମେ ତ ଆମ ମୁହଁରୁ କିଛି ଶୁଣି ନାହଁ, ଇମିତି ତେଉଁଛ କିଆଁ ? ମାହାନ୍ତି ତ ଅନର୍ଗଳ କହି ଚାଲିଛନ୍ତି - ''ମାଙ୍କଡ଼ ହାତରେ ଶାଳଗ୍ରାମ, ହଲେଇ ହଲେଇ ନେଲା ପ୍ରାଣ ! ଆମେ ଦେଖିବୁଁ ଏକପ୍ରକାର, ତୁମେ ବୁଝିବ ଏକପ୍ରକାର । ମୁଁ ଦିନରାତି ବୁଲି ବୁଲି ଠେଙ୍ଗ ଦିଶିଲିଣି, ଖରା ନାହିଁ ତରା ନାହିଁ, ଝଡ଼ି ନାହିଁ ବଢ଼ି ନାହିଁ, ନିମକ୍ ଖାଉଛି, କାମ କରିଚି ବୋଲି ଯାହା ଦେଖିଲି, ତାହା ଟିପି ଆଣି ଦେଲି; ତୁମେ ମୋ କଥାଯାକ ଓଲଟା ଅର୍ଥ କରି ହସୁଛ, ତୁମ ରୀତିରୁ ଜଣାପଡୁଛି, ଦିନେ ମତେ ମାମୁଘର ଦେଖିବାକୁ ହେବ । ମତେ ବଟଗୋସେଇଁଙ୍କ ରାଣ, ମୁଁ ତୁମ କାମ ଏଣିକି ଅଞ୍ଜାମ କରିପାରିବି ନାହିଁ'' ।

ଆମ୍ଭମାନଙ୍କର ପୂର୍ବକଥିତ ବନ୍ଧୁ କହିଲେ, 'ଦେଖ ! ମୁହଁ ସମ୍ଭାଳି କଥା କୁହ, ତୁମର ଢେର୍ ଢେର୍ କଥା ଆମେ ପଦାରେ ଫିଟାଇ ନାହୁଁ, ତୁମେ ଯେତେ ଲୋକଙ୍କୁ ଆକ୍ରମଣ କରିଛ, ସମସ୍ତେ ମିଶିଲେ ତୁମେ ଆଉ ମାମୁଘରୁ* ନ ଲେଉଟରେ ବାବା ! ଯେବେ ଚାକିରି ଛାଡ଼ିବାର ଇଚ୍ଛା ଅଛି, ତେବେ ଯାଅ, କିନ୍ତୁ 'ତତଃ କିଂ ତତଃ କିଂ ତତଃ କିଂ ।' ବାଇ ମାହାନ୍ତି ମାମୁଘର କଥାଟା ଶୁଣିଲେ ଟିକିଏ ଡରିଯାଆନ୍ତି । କିଛି ବ୍ୟକ୍ତିଗତ ଅନୁଭବର ଏ ଫଳ ବା ଶୁଣା କଥାରୁ ଏ ଡର, ତାହା ଭଗବାନ୍ ଜାଣନ୍ତି । ବାଇ ମାହାନ୍ତିଙ୍କ ସ୍ୱର ହଠାତ୍ ନିଖାଦ ତାରରୁ ଝିଲ୍ ତାରକୁ ଖସି ଆସିଲା । ଆମ୍ଭେମାନେ ବେଳକାଳ ଉଣ୍ଡି ଶିରରେ ଚଡୁଟିଏ ବ୍ୟବସ୍ଥା କରି ବସିଲୁଁ । ''ସାବଧାନ ! ତୁମେ ପୁନର୍ବାର ଯେବେ ଅନ୍ୟ କାହା ଆଗରେ ଆମ୍ଭମାନଙ୍କ ପ୍ରତି ଅସନ୍ତୋଷଭାବ ପ୍ରକାଶ କରିବ, ତେବେ ତୁମକୁ ଥରେ ବତିଶ ବଖରା ଦେଖାଇଦେବା । କିଛି କଥା ନ ବୁଝି ହଠାତ୍ ଆସି ଏଡ଼େ ଜୁଲମ !''

ବାଇ ମାହାନ୍ତି ଉତ୍ତର କଲେ, ମୋ ଇସ୍ତଫା ଖଣ୍ଡ ଫେରେଇ ଦିଅ, ମୁଁ ରହିବି । ମାହେନ୍ଦ୍ର ଯୋଗ ଦେଖି ଆମେ ଇସ୍ତଫା ଖଣ୍ଡ ରଖିନେଲୁଁ ଓ ସଙ୍ଗେ ସଙ୍ଗେ ଖଣ୍ଡେ ଶ୍ରୀରାମପୁରୀ କାଗଜରେ ବରଖାସ୍ତି ପରୁଆନା ଲେଖି ତାଙ୍କ ହାତକୁ ବଢ଼ାଇଦେଲୁଁ । ସେ ଖଣ୍ଡିକ ହାତରେ ଧରି ମାହାନ୍ତି ବସାକୁ ବାହାରିଲେ ଓ ଆମ୍ଭେମାନେ ଗୋଟାଏ ଭାରି

* ପୋଲିସ୍ ଷ୍ଟେସନ ବା ଜେଲଖାନା

ବିପଦରୁ ବନ୍ଧୁଙ୍କ ବୁଦ୍ଧିରୁ ଖଲାସ ପାଇଲୁଁ, ଏ କଥା ସ୍ୱାଧୀନ ଭାବରେ ଶେଷ କରିବାକୁ ସୁଯୋଗ ମିଳିଲା ବୋଲି ନିଜକୁ କୃତକୃତ୍ୟ ମଣିଲୁଁ । ଗୋଟିଏ ଚାକର ରଖିଲେ ତାକୁ କେତେ ବିଷୟ ଶିଖାଇବାକୁ ହୁଏ, କିନ୍ତୁ ଭୃତ୍ୟ- ସ୍ୱାମୀ ଅନେକ କଥା ଅନୁଭବରୁ ଶିଖନ୍ତି । ଯେବେ ଆଖି ଥାଏ, ଏଥରକ ପାଞ୍ଜିଟା କେତେ ଭଙ୍ଗୀରେ ଲେଖା, ସେଥିରେ ଚଟଣି ଅଛି, ବ୍ୟଙ୍ଗବିଦ୍ରୂପ ଅଛି, ବାତୁଳର ଅଟ୍ଟହାସ୍ୟ ଅଛି, ପ୍ରେୟସୀ ନବୀନାଙ୍କ ଅର୍ଦ୍ଧସ୍ଫୁଟ ହାସ୍ୟ ଅଛି, ଭଦ୍ରବ୍ୟକ୍ତିଙ୍କର ମନ୍ଦସ୍ମିତ ଅଛି । ଉପଦେଶ, ଆଦେଶ, ଅନୁଦେଶ, ସ୍ୱଦେଶ, ବିଦେଶ ସବୁ ଅଛି । କାରଣ ଜଣେ ବୁଢ଼ା ଚିଡ଼ଲ ପାଦ୍ରୀ କହିଲେ - "If you want to throw a stone; every lane will furnish one." (ତୁମର ଢେଲା ଫିଙ୍ଗିବାକୁ ମନ ହେଲେ ତୁମକୁ ସବୁଠାରେ ଢେଲା ଅପୂରୁବ ହେବ ନାହିଁ)' ନାଲି ପ୍ରଚକ୍ଷୁ ଆଖିରେ ଦେଲେ ସବୁ ବସ୍ତୁ ନାଲି ଦିଶେ । ଦୋଷଗ୍ରାହୀ ଚାଲୁଣୀରେ ଖଦ ଖଦଡ଼ିଆ ଛଡ଼ା ଅନ୍ୟ କିଛି ରହିଯିବ ବୋଲି ଆଶା କରିବା ବୃଥା । ଇତି ଲେଖନକାରସ୍ୟ ଟିପ୍‌ପଣୀ ।

**୧. ଘରଣୀ କେତେ ପ୍ରକାର ?** – ଏ ହେଡିଙ୍ଗ୍‌ରେ କେତେ ଉପମା, କେତେ ତୁଳନା, କେତେ ଛଳନା, କେତେ କଳ୍ପନା ଅଛି; ସବୁ ଲେଖିଲେ ଗୋଟାଏ 'ବାରସ୍କନ୍ଧ' ହେବାର ଭୟ ତେବେ ଠିକେ ଠିକେ କେତେଟା କଥାରେ କଲମ ବନ୍ଦ କଲୁଁ । ଆପଣମାନେ ଭାତ ହାଣ୍ଡିରୁ ଗୋଟିଏ ଚିପି ରୁଚିର ଛଟା ଠଉରାଇ ନେବେ ।

(କ) ୧ମ ଶ୍ରେଣୀର - ଦିନମାନ ପାଟିର ବିରାମ ନାହିଁ, ହାତଗୋଡ଼ର ବିଶ୍ରାମ ନାହିଁ, ଶ୍ରୀମତୀ ଲାଗିଛନ୍ତି ଗୃହଚର୍ଯ୍ୟାରେ । ନିଜର ଦେହକୁ ଦୃଷ୍ଟି ନାହିଁ, କିପରି ସ୍ୱାମୀ, ପୁତ୍ର, କନ୍ୟା, ଭୃତ୍ୟଭୃତ୍ୟାଦି ଭୋଜନ କରିବେ ଓ ସୁସ୍ଥ ରହିବେ, ଏହି ଚିନ୍ତାରେ ସର୍ବଦା ବ୍ୟସ୍ତ । ଏମାନଙ୍କୁ ପାଠ ଡାକୁଛି 'ଘରଣୀ ଚେତାଳ,' ଏମାନେ ପୃଥିବୀକୁ ଦୁଇଭାଗରେ ବିଭକ୍ତ କରିଥାଆନ୍ତି, ଏକ - ଆପଣା ଗୃହର ସୀମା, ଯାହାକୁ କି ଆମ୍ଭେମାନେ ଅନ୍ତର୍ଜଗତ୍ ବୋଲି ନାମକରଣ କରିବୁଁ । ଦୁଇ - ଗୃହର ସୀମାର ବାହାରେ - ବହିର୍ଜଗତ୍ । ଏମାନେ ଅନ୍ତର୍ଜଗତ୍‌କୁ ବହିର୍ଜଗତ୍‌ର ଆକ୍ରମଣରୁ ରକ୍ଷା କରିବାରେ ସର୍ବଦା ବ୍ୟସ୍ତ । ଏମାନେ ଗୃହର ଚଣ୍ଡୀ । କେଉଁ କାର୍ଯ୍ୟ ଅସମ୍ପୂର୍ଣ୍ଣ ରହିଲା, କେଉଁ ଅଭାବ ଅପୂର୍ଣ୍ଣ ରହିଲା, କେଉଁ ଗୃହ ଅପରିଷ୍କୃତ ରହିଲା, କେଉଁ ପେଯପାଣି ହାଣ୍ଡି ଅପୂର୍ଣ୍ଣ ରହିଲା, କେଉଁ ନଳା ଅସଫା ରହିଲା, ଏହି ଭାବନା ସେମାନଙ୍କ ଜାଗରଣ ଓ ସ୍ୱପ୍ନରେ ଲାଗିଥାଏ । ବହିର୍ଜଗତ୍‌ର ରକ୍ଷା କରିବାକୁ ହେଲେ ପ୍ରଥମେ ଅନ୍ତର୍ଜଗତ୍ ସୁଶାସିତ ହେବା ଆବଶ୍ୟକ । ଅନ୍ତର୍ଜଗତ୍ ସୁଶାସିତ ହେଲେ ସମସ୍ତେ ଏକ ପ୍ରଭୁଙ୍କ ଅଧୀନ ହୋଇ ରହିବା ଏକାନ୍ତ ଆବଶ୍ୟକ । ଏଠାରେ ଯଥେଚ୍ଛାଚାର ରାଜତ୍ୱ ଅମୋଘ । ଉଦାହରଣସ୍ୱରୂପ - ଗୃହିଣୀଙ୍କ ହସ୍ତର ମୁଷ୍ଟି, ଯଷ୍ଟି, ଚପେଟ ଓ ବନ୍ଧନୀ ସଙ୍ଗେ ଗୃହର ପୁତ୍ରକନ୍ୟାମାନଙ୍କର ଗୋଟାଏ ଅନବଚ୍ଛିନ୍ନ ସମ୍ପର୍କ ଦିନ ମଧ୍ୟରୁ ଏକୋଇଶ ଘଣ୍ଟା ଲାଗିଛି । ତେବେ ବହିର୍ଜଗତ୍‌ର କୁଟା ଟିକିଏ ପବନରେ ଦୋହଲି ସେ ପିଲାଙ୍କ ସୁକୁମାର ଅବୟବରେ ଲାଗିଗଲେ କୁଟା ତ ସହଜେ ନିର୍ଜୀବ, କିନ୍ତୁ

ଜୀବଜଗତ୍‌ର ପ୍ରଧାନତମ ମନୁଷ୍ୟ ସୁଦ୍ଧା କୁଳୁକୁଞ୍ଚାରେ ତର୍ପିତ ହୋଇଯିବେ । ପୂର୍ବରେ ଲେଖା ଅଛି, ସ୍ୱାମୀ ଭୃତ୍ୟ ଓ ସନ୍ତାନସନ୍ତତି କିପରି ଭୋଜନ କରିବେ ଓ ସୁସ୍ଥ ରହିବେ, ଏ ଶ୍ରେଣୀମାନେ ସର୍ବଦା ସେହି ଚିନ୍ତାରେ ବିବ୍ରତ, କିନ୍ତୁ ଦୈବଦୁର୍ବିପାକ ଉପରେ ମନୁଷ୍ୟର ଚାରା ନାହିଁ । ଉକ୍ତ ଗୃହର ସ୍ୱାମୀ ଓ ଭୃତ୍ୟ ଅଧିକାଂଶ ସମୟ ଉପବାସ ଓ ଅସୁସ୍ଥତାରେ କଟାନ୍ତି । ଗୃହର ସମସ୍ତେ ଏ ଅଧିଷ୍ଠାତ୍ରୀ ଦେବୀଙ୍କ କିଙ୍କର । ଏମାନେ ନଛୋଡ଼ବନ୍ଧା ପ୍ରକୃତିର ବିକୃତି କୈଫିୟତ୍ ବା ବହିର୍ଜଗତର କୌଣସି ବିଘ୍ନ ପ୍ରତି ଏମାନେ ବଧିର । ଉଦାହରଣ ଦେଖିବେ, - ସ୍ୱାମୀ ଭଲ ଖାଇବେ ବୋଲି ଘରେ ପର୍ବପର୍ବାଣିରେ ପିଠାପଣା ହେବା ଦରକାର; ମନେକରନ୍ତୁ, ସ୍ୱାମୀଙ୍କ ଗ୍ରହନୈପୁଣ୍ୟରୁ ସ୍ୱାମୀ ନିର୍ଦ୍ଦିଷ୍ଟ ପର୍ବଦିନ ବରାଦୀ ଉପକରଣମାନ ଆଣି ହାଜର କରାଇ ନ ପାରିଲେ ଓ ସଙ୍ଗେ ସଙ୍ଗେ ଖୋଷଣିଫିଟା ପିଷ୍ଟକାଶନର ଆଶାରେ ଜଳାଞ୍ଜଳି ଦେଇ ଘରକୁ ଫେରିଲେ । ତୁମେ ଆଣିଲେ ଖାଆନ୍ତ, ନ ଆଣିଲେ ନ ଖାଇବ, ଏ ହେଲା ସାଧାରଣ ନିୟମ । କିନ୍ତୁ ଏ କଥା କହିଲେ ଛାଡୁଛି କିଏ ? ତୁମେ କାହିଁକି ନ ଖାଇବ ? ନାହିଁ, ତୁମକୁ ଅଲବତ୍ ଖାଇବାକୁ ହେବ, ଅତଏବ ନିଶ୍ଚୟ ପଦାର୍ଥଗୁଡ଼ିକ ଆଣିବାକୁ ହେବ । ତୁମେ ଖାଆନ୍ତ, ଆମେ ଦେଖି ଖୁସିଟାଏ ହୁଅନ୍ତେଇଁ, ଲାଭ ମଧ୍ୟରେ ଆମର ଏତିକି ନିଃସ୍ୱାର୍ଥ ଲାଭ, ତା ସୁଦ୍ଧା ତୁମ ଆଖିରେ ଯାଉ ନାହିଁ ? ତୁମ ହାତରେ ଧାନଚାଉଳ, ଟଙ୍କାଟୋକର ଓ ବହିର୍ଜଗତର ସମସ୍ତ ଅଧିକାର ରହିଲା ବୋଲି ତୁମେ ସିନା ତୁମ ମନଖୁସି କାର୍ଯ୍ୟ କଲ; ଆମ ହାତରେ ମଧ୍ୟ ଦଦରା ହାଣ୍ଡି, ଖଣ୍ଡିଆ ଛାଞ୍ଚୁଣୀ ଓ ସା ରି ଗା ମା ପା ଧା ନୀ ସ୍ୱର ଅଛି । ଆମ ପାଟିରେ ଓ ହାତରେ ଯାହା ହେବାର, ତାହା ବି ଘଡ଼ିଏ ପରଖି ନିଅ । ତୁମର କ୍ଷତି ହେଲେ ତୁମେ ସହିଯିବ, ଯାଅ, କିନ୍ତୁ ସେ କଥା ଆମ ଦିହରେ ଯିବ ନାହିଁ ।

୨. ପଦ୍ମାବତୀ - ରୂପ ଲାବଣ୍ୟରେ ଜଗତ୍ ଏମାନଙ୍କ ପଦତଳେ ବିକା । ରୂପ ସଙ୍ଗେ ଗୁଣ, ସ୍ୱର, ବିନୟ, ଛଟକ, ଠାଣି, ସମସ୍ତ ଏମାନଙ୍କ ନିକଟରେ ଏକାଧାରରେ ଦେଖିଲେ ନିପଟ ଅରସିକ ମଧ୍ୟ ଦଣ୍ଡେ ପ୍ରଶଂସା ନ କରି ରହିପାରିବ ନାହିଁ । ଏମାନଙ୍କ ପ୍ରସାଦରୁ ମୂକ ବାଚାଳ ହୁଏ, ପଙ୍ଗୁ ଗିରି ଉଲ୍ଲଙ୍ଘନ କରେ, ସାଧାରଣ ମନୁଷ୍ୟ ପାଚିରି ଡିଏଁ, ଦରପାଠୁଆ ପ୍ରଣୟଚିଟାଉ ଲେଖେ କୋବି (ଦ) କବି ବନେ । ଏମାନେ ନିଜର ରୂପ ପସରାକୁ ଛାଡ଼ି, ସିନ୍ଦୂର ଫରୁଆ କଜ୍ଜଳପାତି ଛାଡ଼ି ସଂସାର କାର୍ଯ୍ୟରେ ମନ ଦେବାକୁ ସମୟ ପାଆନ୍ତି ନାହିଁ । 'ପାଲିଙ୍କି ଉପରେ ପାଟ ଛତା' ପ୍ରବଚନର ସାରବତ୍ତା ଏହିମାନଙ୍କ ନିକଟରେ । ଏମାନଙ୍କଠାରେ ଈଶ୍ୱର ପ୍ରସନ୍ନ, ସମାଜ ପ୍ରସନ୍ନ, ସ୍ୱାମୀ ପ୍ରସନ୍ନ, ବୃଦ୍ଧ ପ୍ରସନ୍ନ, ଯୁବକ ପ୍ରସନ୍ନ । ଏମାନେ ଦୂରରୁ ଭାରି ଛାପଚିକ୍‌କଣ ଦେଖାଯା'ନ୍ତି, ସ୍ୱାମୀ ଏମାନଙ୍କ ପଦତଳେ କିଙ୍କର । ଏମାନଙ୍କୁ ପାଇବା ବହୁ ଭାଗ୍ୟ । ଘର ଚଳିଲେ ନ ଚଳିଲେ ଏମାନଙ୍କର ବିଶେଷ କ୍ଷତି ବୃଦ୍ଧି ନ ଥାଏ । ଈଶ୍ୱର ଏହିଠାରେ ମଧ୍ୟ ରସିକତା ପୂର୍ଣ୍ଣ ମାତ୍ରାରେ ଛାଡ଼ି ଦେଇଥାନ୍ତି । ଜଗତ୍ ଏମାନଙ୍କ ଗୁଣକୁ କେବଳ ଦେଖୁଥାଏ, ଦୋଷ ଦେଖିବାକୁ ସମୟ

ପାଏ ନାହିଁ । ଏମାନଙ୍କୁ 'ସୁନାଖଡ଼ିକା' କହିଲେ ଚଳେ । ଏମାନେ ସଂସାରର କଠୋର ବ୍ୟବହାର ନିମନ୍ତେ ଅଭିପ୍ରେତ ନୁହନ୍ତି । ଏମାନେ କବିମାନଙ୍କ ପାଇଁ ସୃଷ୍ଟ, ସୌନ୍ଦର୍ଯ୍ୟଲିପ୍ସୁମାନଙ୍କ ପାଇଁ ସୃଷ୍ଟ, ରସିକଙ୍କ ପାଇଁ ସୃଷ୍ଟ, ବାଡ଼ି ଦୁଆର ଫିଟାଳିମାନଙ୍କ ପାଇଁ ସୃଷ୍ଟ । ଏମାନେ ନ ଥିଲେ କବିଜଗତ୍‌ରେ ଘୋର ଭୂକମ୍ପ ଉପସ୍ଥିତ ହୁଅନ୍ତା । ଯେ ଏମାନଙ୍କର ଦୋଷ ଦେଖିବାକୁ ଆସେ, ସେ ମଧ୍ୟ ରୂପ ଦେଖି ଘଡ଼ିଏ ମୁଣ୍ଡରେ ହାତ ଦେଇ ବସିଯାଏ । ଏମାନେ ମିଷ୍ଟିମୁଖରେ ଦିନ କାଳ କାଟନ୍ତି । ସବୁଠାରେ ଶତ୍ରୁ ଅଛନ୍ତି । ଏମାନଙ୍କ ଶତ୍ରୁ ନିଷ୍ଠୁର କାଳ । ଏମାନେ ସମାଜର ସମ୍ପତ୍ତି । ସର୍ବଦା ଆପଣା ବେଶଭୂଷା, ଭଙ୍ଗୀ ଇତ୍ୟାଦିକୁ ସୁପରିସ୍ଫୁଟ କରିବାରେ ଏମାନେ ବ୍ୟସ୍ତ । ଏପରି ସ୍ତ୍ରୀ ଭାଗ୍ୟକୁ ମିଳେ । କବି କହିଅଛନ୍ତି, 'ଯସ୍ୟାସି ତସ୍ମୈଃ ନମଃ ।'

**୩.** ବାଇ ମାହାନ୍ତିଙ୍କ ଗ୍ରାମର ଏକାଦଶିଆ ଭଣ୍ଡାରି କହୁଥିଲା, 'ମୋ ସ୍ତ୍ରୀ ଏକା ସତୀ' । କଥାଟା କିନ୍ତୁ ସମସ୍ତଙ୍କ ମନକୁ ମାନିଥିଲା । କାରଣ, ଗାଆଁର ପିଲାଟିଏ ପର୍ଯ୍ୟନ୍ତ ତାର ସଗର୍ବ ଉକ୍ତିର ପ୍ରତ୍ୟୁକ୍ତି କରୁ ନ ଥିଲେ । ତାହାର ସ୍ତ୍ରୀ ଭାରି କୁରୂପା । ସତକୁସତ ଏକାଦଶୀ ବାରିକ ସେ ସ୍ତ୍ରୀକୁ ପାଇ ଜୀବନଟା ସୁଖରେ କଟାଇଦେଲା । ତା ରୂପର କେହି ପ୍ରଶଂସା କରିବାକୁ ନାହିଁ, ତାକୁ କେହି ଆଡ଼ ଆଖିରେ ଚାହିଁ ସୁଦ୍ଧା ସମୟ ନଷ୍ଟ କରିବାକୁ ଇଚ୍ଛା କରିବ ନାହିଁ । ସେ ବିଚାରୀର ସଂସାର ଶତ୍ରୁ । ବାହାରେ କେଉଁଠାରେ ପ୍ରଶଂସା ପାଇବେ ନାହିଁ ବୋଲି ଘରେ କାର୍ଯ୍ୟରେ ଦିନରାତି ଲାଗିଥାଏ । ଯାହାର 'ବେପାର ସଉଦା' କିଛି ନାହିଁ, ସେ ପସରା ନେଇ ବାହାରକୁ ବାହାରିବ କାହିଁକି ? ସ୍ୱାମୀ ପ୍ରଥମେ ପ୍ରଥମେ ଆପଣାକୁ ଅଭାଗା ବୋଲି ମନେକରି ଆପଣା କର୍ମକୁ ଆଦରି ରହେ, କିନ୍ତୁ ଏ ଆକ୍ଷେପ ଅଳ୍ପକାଳ ସ୍ଥାୟୀ । ସେ ସ୍ୱାମୀର ନିଜସ୍ୱ, ଅନ୍ୟର ତାହାଠାରେ ଅଧିକାର ନାହିଁ କି ଲାଭ ନାହିଁ । ଏ ଜାତୀୟା ସ୍ତ୍ରୀଙ୍କଠାରେ ସଦ୍‌ଗୁଣର ମାତ୍ରା ଢେର୍ ବେଶି । ଯାହାକୁ ସାଧାରଣ ପ୍ରଶଂସା କରିବେ ନାହିଁ, ଏକଥା ନିଶ୍ଚିତ, ଦିନାକେତେ ପରେ ସେ ମଧ୍ୟ ସାଧାରଣଙ୍କ ପ୍ରଶଂସାକୁ ଚାହିଁବ କିଆଁ ? ସେ ଜାଣେ ଯେ, ଦିନରାତି ପରିଶ୍ରମର ପ୍ରମାଣ, ସଦ୍‌ଗୁଣର ପରିଚୟ ତ ଯୋଗ୍ୟତାର ନିଦର୍ଶନ ନ ଦେଲେ ଚଳିବ ନାହିଁ । ପୃଥିବୀରେ ମତେ ପାଇ ଯେ ଆପଣାକୁ ଅଭାଗା ବୋଲି ମନେ କରିଛି, ତାକୁ ଯେବେ ମୁଁ ଭାଗ୍ୟବାନ୍ ବୋଲି ମନେ କରାଇପାରିବି, ତେବେ ମୋ ବ୍ରତ ସମ୍ପୂର୍ଣ୍ଣ, ମୋ ଜୀବନ ସାର୍ଥକ । ଫଳତଃ ମଧ୍ୟ ସେହିତା ହୁଏ । ରୂପର 'ହାଟପାଳି' ଟପିଗଲେ ଏ ଶ୍ରେଣୀର ସ୍ତ୍ରୀଙ୍କ ସ୍ୱାମୀମାନେ ବାସ୍ତବିକ ସର୍ବାପେକ୍ଷା ସୁଖୀ ବୋଲି ଆପଣାକୁ ମନେ କରନ୍ତି ଓ ହାଟବାହୁଡ଼ା ଦଦରା ପଦ୍ମାବତୀମାନଙ୍କୁ ଦେଖି ମୁରୁକିହସା ମାରନ୍ତି ।

**୪.** ପୂର୍ବରୁ ଯେ ଶାସ୍ତ୍ରକାରମାନେ ନାରୀ ଜାତିଙ୍କୁ ହସ୍ତିନୀ, ପଦ୍ମିନୀ, ଚିତ୍ରିଣୀ, ଶଙ୍ଖିନୀ ବୋଲି ବିଭକ୍ତ କରି ଯାଇଅଛନ୍ତି, ଏ ସଂସ୍କାରସୁଲଭ ଯୁଗରେ ସେ ଜାତିବିଭାଗ ମଧ୍ୟ

ସଂସ୍କୃତ ହେବା ଆବଶ୍ୟକ । ବାଇ ମାହାନ୍ତିଙ୍କ ବିଭାଗ, ୧ । ଇଚ୍ଛାଗତପ୍ରାଣା, ୨ । ସୌନ୍ଦର୍ଯ୍ୟଗତପ୍ରାଣା, ୩ । କର୍ତ୍ତବ୍ୟଗତପ୍ରାଣା, ୪ । ପତିଗତପ୍ରାଣା, ୫ । ପରଗତପ୍ରାଣା, ୬ । କଳହଗତପ୍ରାଣା, ୭ । ପିତୃଗତପ୍ରାଣା, ୮ । ଅପତ୍ୟଗତପ୍ରାଣା, ୯ । ସ୍ନେହଗତପ୍ରାଣା, ୧୦ । ସ୍ୱାର୍ଥଗତପ୍ରାଣା, ୧୧ । ଜାମାତୃଗତପ୍ରାଣା, ୧୨ । ଧର୍ମପୁତ୍ରଗତପ୍ରାଣା । (ଏ ସବୁର ଅର୍ଥ ଆମ୍ଭେମାନେ ବୁଝିବାକୁ ଏକାନ୍ତ ଅକ୍ଷମ, ବାଇ ମାହାନ୍ତିଙ୍କୁ ବରଖାସ୍ତ କରିସାରିଲୁଣି, ଅତଏବ ଏଗୁଡ଼ିକର ଅର୍ଥ ଓ ଉଦାହରଣ ଭବିଷ୍ୟତ୍‌ରେ ପ୍ରତ୍ନତତ୍ତ୍ୱବିଦ୍‌ମାନେ ସ୍ଥିର କରିବେ ବୋଲି ଛାଡ଼ିଗଲୁଁ ।)

**୫. ମନୁଆ** - ଆଉ ଏକ ଜାତୀୟ ଘରଣୀ ଅଛନ୍ତି, ସେମାନଙ୍କୁ ପ୍ରଶଂସା କଲେ ସେମାନେ ବିରକ୍ତ ହୁଅନ୍ତି, ନିନ୍ଦା କଲେ ମଧ୍ୟ ବିରକ୍ତ ହୁଅନ୍ତି । ଯେଉଁଦିନ ତିଅଣ ଅଲଣା ହୋଇଥିବ, ସେ ଦିନ ଯେବେ 'ତିଅଣ ଅଲଣା ହୋଇଛି' କହିଦେବ, ତହିଁ ଆରଦିନ ତିଅଣ ନିଶ୍ଚେ ଉଞ୍ଚୁଲୁଣିଆ ହେବ । ଉଞ୍ଚୁଲୁଣିଆ ବୋଲି କହିଦେଲେ ପରଦିନ ନିଶ୍ଚେଁ ଅଲଣା ହେବ । ଅତଏବ ଏପରି ଘରଣୀଙ୍କୁ କିଛି ନ କହିଲେ ସେମାନେ ଆପେ ଆପେ ସୁଧୁରିଯାଆନ୍ତି । ଯେ ପ୍ରଶଂସା ବା ନିନ୍ଦା ଶୁଣିବାକୁ ଅନିଚ୍ଛୁକ, ତାଙ୍କ ଇଚ୍ଛାବିରୁଦ୍ଧ କାର୍ଯ୍ୟ କଲେ ସେ ବିରକ୍ତ ହେବେ, ଏଥିରେ ସନ୍ଦେହ ନାହିଁ । ତାଙ୍କ କାର୍ଯ୍ୟରେ ଯାହା ଦିନେ ଓଲିଏ ବିଗିଡ଼ିଯାଏ, ସେ ମନକୁ ସୁଧୁରିଯାଏ । ଜାଣିଶୁଣି ସୁଧାରିବାକୁ ବସିଲେ ନିଶ୍ଚେ ବିଗିଡ଼ିଯିବ, ଏଥିରେ ସନ୍ଦେହ ନାହିଁ । ଏମାନଙ୍କୁ ଆନନ୍ଦିତ କରିବାକୁ ବସିଲେ ଏମାନେ ବିରକ୍ତ ହୁଅନ୍ତି, ବିରକ୍ତ କରିବାକୁ ବସିଲେ ଏମାନେ ଆନନ୍ଦିତ ହୁଅନ୍ତି । ସଉତୁଣୀ ଦେହରେ ମଇଳା ପଡ଼ିବା ଉଦ୍ଦେଶ୍ୟରେ ଏମାନେ ଅସ୍ପୃଶ୍ୟ ବସ୍ତୁ କୁଳୁକୁଞ୍ଚା କରିବାକୁ ଛାଡ଼ନ୍ତି ନାହିଁ ।

**୬. କଳିହୁଡ଼ୀ** - ଏମାନେ ଚାଲିଗଲା ଶଗଡ଼ରେ ହାତ ପୂରେଇଲାବାଲୀ । ଖୋଦ୍ ଈଶ୍ୱର ସୁଦ୍ଧା ଏମାନଙ୍କ ନିକଟରେ 'ଜବାବଦେହୀ' ନ ହୋଇ ଯିବେ କୁଆଡ଼େ ? ସଂସାରରେ ଜୀବଜଗତ୍ ଏମାନଙ୍କ ପଦତଳେ ଆନତ । ବାଘ ପରା ଜୀବ ଏମାନଙ୍କୁ ବାଟ ଛାଡ଼ି ଦେଇ ପାଖେଇଯିବ । ଭାଙ୍ଗିଯିବ ଯାଉ, କିନ୍ତୁ ନଇଁବା ଏମାନଙ୍କ ଜାତକରେ ନାହିଁ । ରୂପ ନାହିଁ, ଗୁଣ ନାହିଁ, ଅଥଚ ଜଗତ ତ୍ରସ୍ତ । ଅଛି ସେହି କଳହଂସ କୂଜନ - ଅଛି ସେହି ଭେକ ଗର୍ଜନ । ଏମାନେ ଚାଣକ୍ୟ ବା ସେକ୍‌ସପିଅରଙ୍କୁ ମାନିବା ଲୋକ ନୁହନ୍ତି । ପୃଥକ୍ ଶଯ୍ୟା ହେଲେ ଏମାନଙ୍କର ସୁଖ, ଉପବାସ କଲେ ଏମାନଙ୍କର ମନଃପ୍ରସାଦ ।

**୭. ରସିକା** - ଏମାନଙ୍କର ସବୁଠାରେ ପ୍ରଶଂସା, କେବଳ ଏକସ୍ଥାନରେ ଏମାନଙ୍କ ପ୍ରଶଂସା ଶୁଣାଯାଏ ନାହିଁ । ଯେଉଁମାନେ ଦୂରରୁ ଦେଖନ୍ତି, ସେମାନେ ପ୍ରଶଂସା ନ କରି ରହିପାରନ୍ତି ନାହିଁ । ଯେ ଥରେ ଦେଖିଛନ୍ତି ବା ଥରେ ସେହି ଅମୃତ ବଚନ ଶୁଣିଛନ୍ତି, ସେମାନେ ଆଜୀବନ ସବୁଠାରେ ପ୍ରଶଂସା କରୁଅଛନ୍ତି । କିନ୍ତୁ ଯେ ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ଦେଖୁଛି, ତାକୁ ସେ ରୂପ, ସେ ବଚନ, ସେ ରସିକତା ସବୁ ପିତା ଲାଗୁଛି । ସେ ସ୍ୱାମୀ

ଯେଉଁଠାରେ ସ୍ତ୍ରୀ ବିଷୟରେ ତୀବ୍ର ମନ୍ତବ୍ୟ ପ୍ରକାଶ କରନ୍ତି, ସେହିଠାରେ ତାର ତୀବ୍ରତର ପ୍ରତିବାଦ ହୁଏ । ଏପରି ସ୍ୱାମୀମାନେ ଟିକିଏ ଚଲାଖ ହେବା ଆବଶ୍ୟକ । ନଚେତ୍ ଭାବୀ ଫଳ ଆତ୍ମହତ୍ୟାରେ ପରିଣତ ହୁଏ । ଏମାନଙ୍କ ସ୍ୱାମୀମାନେ ସାଧାରଣତଃ ବିକୃତ ମସ୍ତିଷ୍କ ହୁଅନ୍ତି । ହେବା ମଧ୍ୟ ଅନିବାର୍ଯ୍ୟ । ହେଲେ ମଧ୍ୟ ଚଳେ ।

୮. **କୁହୁକିନୀ** - ସମସ୍ତଙ୍କୁ ମୋହଧୂଳିରେ ବଶୀଭୂତ କରିପାରନ୍ତି । ''ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହଂ ।'' ଯେ କହିବେ ସତୀ, ସେ ଫଳତଃ ତାହା ଦେଖିବେ । ଯେ ବିଚାରିବେ ଚତୁରା, ସେ ଫଳତଃ ମଧ୍ୟ ସେହିତା ଦେଖିବେ । ଏମାନଙ୍କଠାରେ ବାଳିକାସୁଲଭ କୋମଳତା, ଯୁବତୀସୁଲଭ ରସିକତା, ପ୍ରୌଢ଼ାସୁଲଭ କର୍ତ୍ତୃତ୍ୱ ଓ ବୃଦ୍ଧାସୁଲଭ ସଦ୍‌ଜ୍ଞାନ ସବୁ ରହିଛି । ଦେଖି ଜାଣିଲେ ହେଲା ।

୯. **ସ୍ନେହମୟୀ** - ଏ ଶ୍ରେଣୀର ସ୍ତ୍ରୀମାନେ ଆତ୍ମହତ୍ୟା ନିମନ୍ତେ ଜନ୍ମଗ୍ରହଣ କରିଥାଆନ୍ତି । ବାଲ୍ୟକାଳରେ ସଙ୍ଗୀ ସଙ୍ଗିନୀଙ୍କଠାରେ ପ୍ରାଣ ଢାଳିଦିଅନ୍ତି । ବିବାହ ହେବା ପୂର୍ବରୁ ପିତୃମାତୃ ସେବାରେ ମନଃପ୍ରାଣ ଢାଳି ଦିଅନ୍ତି । ବିବାହିତ ହେଲାରୁ ସ୍ୱାମୀଚରଣରେ ଜୀବନ ଉତ୍ସର୍ଗ କରି ଦିଅନ୍ତି । ଅପତ୍ୟାଦି ହେଲାରୁ ସନ୍ତାନଙ୍କ ଲାଳନ ପାଳନ ଏମାନଙ୍କର ପ୍ରଥମ କର୍ତ୍ତବ୍ୟ ଓ ବୃଦ୍ଧ ସମୟରେ ପରୋପକାର ଓ ପରର ଦୁଃଖ ମୋଚନ ଏମାନଙ୍କର ମହାବ୍ରତ । ଆପଣାର ସହସ୍ର ଅଭାବ ଥାଉ, ପରର ଅଭାବ ମୋଚନ କରିପାରିଲେ ଜୀବନକୁ ଧନ୍ୟ ମନେ କରନ୍ତି । ହୃଦୟରେ ବିଷଜ୍ୱାଳା ଜଳୁଥାଉ, କିନ୍ତୁ ମୋ ଆଳସ୍ୟରୁ ଅନ୍ୟ କେହି ଯେପରି କଷ୍ଟ ନ ପାଉ । ଜଣେ ଯେବେ ମତେ ଗାଳି ଦେଇ ସୁଖୀ ହେଲା ହେଉ, ତାହା ସୁଖରେ ମୁଁ ବାଧା ଦେବି ନାହିଁ ।

୧୦. **ଚତୁରା** - ଏମାନେ ନିଜେ ଆପଣାକୁ ଚତୁରା ବୋଲି ଜାଣନ୍ତି, ଦେଖନ୍ତି ଓ କହି ବୁଲନ୍ତି । ଆଜି ଏପରି ବୁଦ୍ଧି ଖରଚ କଲି, ସେଦିନ ସ୍ୱାମୀଙ୍କୁ ଏପରି ପରାସ୍ତ କଲି, ଏହାହିଁ ଏମାନଙ୍କ ଜୀବନର ପ୍ରଧାନ ଅବଲମ୍ବନ । ଶ୍ରୋତା 'ହଁ' କରିଦିଏ ସତ, ମହାରାଣୀଙ୍କ ସୁଖନିଦ୍ରା ଭାଙ୍ଗେ ନାହିଁ ସତ, କେହି ମଧ୍ୟ ଭଙ୍ଗାଇବାକୁ ଚେଷ୍ଟା କରେ ନାହିଁ । ଚେଷ୍ଟା କଲେ, ପହଡ଼ ଭଙ୍ଗାଇ ଦେଲେ ତୁମେ ଶତ୍ରୁ ମଧ୍ୟରେ ଗଣ୍ୟ ହେବ ଓ ତୁମ ନାମରେ ସମାଜରେ ମଧ୍ୟ କଳଙ୍କ ରଟିବାକୁ ବେଶି ଦିନ ଲାଗିବ ନାହିଁ । ଯେଉଁଦିନ ମହାରାଣୀଙ୍କ ସୁଖନିଦ୍ରା ମନକୁ ଭାଙ୍ଗିଯାଏ, ସେ ଦିନ 'ଘରବୁଡ଼ି ପାଣି ଆଣ୍ଠୁଏ ହୁଏ ।'

**୧୧.** ଏ ଶ୍ରେଣୀର ସ୍ତ୍ରୀମାନେ ସୌଭାଗ୍ୟବତୀ ଓ ସ୍ୱାମୀମାନେ ଏମାନଙ୍କର କିଙ୍କର ବୋଲି ଜଗତ ଜାଣନ୍ତି, ଏମାନେ ନିଜେ ମଧ୍ୟ ଜାଣନ୍ତି । କିନ୍ତୁ ସ୍ୱାମୀ କେଉଁ ଗୁଣରେ ମୁଗ୍ଧ ହୋଇଅଛନ୍ତି ତାହା ଅନ୍ୟମାନେ ଯେତେ ଚେଷ୍ଟା କଲେ ସୁଦ୍ଧା ବୁଝିବାକୁ ଏକାନ୍ତ ଅକ୍ଷମ । କିନ୍ତୁ ଏତିକି ବୁଝା ଯାଇଅଛି ଯେ ଏମାନଙ୍କର ତିନିଗୋଟି ଫଟୋଗ୍ରାଫ୍ ଅଛି ।

ଗୋଟିଏ ଏମାନେ ଦେଖନ୍ତି, ଗୋଟିଏ ସ୍ୱାମୀମାନେ ଦେଖନ୍ତି ଓ ଅନ୍ୟଟି ସର୍ବସାଧାରଣଙ୍କ ଦୃଷ୍ଟିଗୋଚର ହୁଏ । ବାହାରର ସମସ୍ତେ ନିନ୍ଦା କରୁଥାଆନ୍ତି, କିନ୍ତୁ ସ୍ୱାମୀଙ୍କଠାରେ ଏମାନେ ଦେବପୂଜା ପାଉଥାଆନ୍ତି । ସୂର୍ଯ୍ୟ ପଶ୍ଚିମରେ ଉଦୟ ହୋଇପାରନ୍ତି, କିନ୍ତୁ ଏ ସ୍ତ୍ରୀ ଯେ ଗୋଟିଯାକ ତୁଳସୀ, ଏଥିରେ ସ୍ୱାମୀଙ୍କର ସନ୍ଦେହ ଜନ୍ମି ନାହିଁ କିମ୍ବା ଜନ୍ମିବ ନାହିଁ । ଏ ସ୍ୱାମୀଙ୍କ ଚକ୍ଷୁରେ ଦୁନିଆଯାକ ଅନ୍ଧ ଓ ନିନ୍ଦୁକ । ଏପରି ସ୍ତ୍ରୀଙ୍କର ସ୍ୱାମୀଙ୍କ ସଙ୍ଗେ ଦିନେ ସୁଦ୍ଧା ମତାନ୍ତର ଘଟେ ନାହିଁ । ଏ ଶ୍ରେଣୀର ସ୍ତ୍ରୀମାନେ ଅଧିକାଂଶ ସ୍ଥଳରେ ଦ୍ୱିତୀୟପକ୍ଷୀୟା । ଏଥିରେ ମଧ୍ୟ ଗୋଟିଏ ନ୍ୟାୟସିଦ୍ଧ କାରଣ ଅଛି - କୌଣସି ବସ୍ତୁ ନ ହଜିବା ପର୍ଯ୍ୟନ୍ତ ମନୁଷ୍ୟ ତହିଁର ମୂଲ୍ୟ ଜାଣି ପାରି ନ ଥାଏ । ଯେତେବେଳେ ହଠାତ୍ ହଜିଯାଏ, ସେତେବେଳେ ନିଦ୍ରା ଭାଙ୍ଗିଯାଏ । ପୂର୍ବେ ଯେ ଚିରାକନା ଥିଲା, ତାହା ଅନୁପସ୍ଥିତରେ ମାଠରେ ପରିଣତ ହୁଏ । 'ଥିଲାବେଳେ ଚିରାକନା ! ହଜିଗଲେ ମାଠ ।' ଝୁରି ଝୁରି ପୁନର୍ବାର ଯେତେବେଳେ ମିଳେ ସେତେବେଳେ ସାଧାରଣଙ୍କ ଚକ୍ଷୁରେ ତାହା ଚିରାକନା ଦିଶିଲେ ମଧ୍ୟ ସ୍ୱାମୀଙ୍କ ଚକ୍ଷୁରେ ମାଠ ବୋଲି ପ୍ରତୀୟମାନ ହୁଏ ଓ ହେବା ନ୍ୟାୟସଙ୍ଗତ ।

**୧୨. ଓଲମୀ** - ପ୍ରକୃତ କଥା ବୁଝିବାର ଚତୁରତା ଏମାନଙ୍କର ନାହିଁ । ଏମାନେ ସବୁଠାରେ ନିର୍ଯାତନା ଭୋଗ କରନ୍ତି । ଦୁରାତ୍ମାମାନଙ୍କ ଅତ୍ୟାଚାର ଏହିମାନଙ୍କ ଉପରେ । ଘରେ ବାହାରେ ଯେ ପାଏ, ସେ ଠେଙ୍ଗୁରେ ଚୋଟେ ହାଣିଦିଏ । ଚାଟୂକ୍ତିକୁ ଏମାନେ ସତ୍ୟ ମଣନ୍ତି । ଆପଣାର ଦୁଃଖ ପର ନିକଟରେ ପ୍ରକାଶ କରିବାର କ୍ଷମତା ମଧ୍ୟ ଏମାନେ ପାଇ ନାହାନ୍ତି । ଏମାନେ ବାଲ୍ୟସଙ୍ଗୀ ସଙ୍ଗିନୀଙ୍କଠାରୁ ଆରମ୍ଭ କରି ବୃଦ୍ଧା ହେବା ପର୍ଯ୍ୟନ୍ତ ଏହିପରି କାଳ କାଟି ନିଅନ୍ତି । ନିଜେ ଦୁଃଖ ପାଉଛନ୍ତି, ଏକଥା ଏମାନେ ବୁଝି ପାରନ୍ତି ନାହିଁ । ସ୍ୱାମୀକୁ ଦିବାନିଶି ଆଦର ସୁହାଗ କରିବା ଏମାନଙ୍କ ଭାଗ୍ୟରେ ଘଟେ ନାହିଁ । ବିଶେଷ ପ୍ରକାର ଆଦର ପାଇବା ମଧ୍ୟ ଏମାନଙ୍କ ଭାଗ୍ୟରେ ଲେଖା ନାହିଁ । ବାଇ ମାହାନ୍ତିଙ୍କ ମତରେ ଏହିମାନେ ପ୍ରକୃତ ସୁଖୀ । ଦୁଃଖ ଯାହାକୁ କଷ୍ଟମୟ ନୁହେଁ, ତାହାର ଦୁଃଖ ଦୁଃଖ ନୁହେଁ । ମଥାରେ ସିନ୍ଦୂର ଟୋପାଏ ଓ ହାତରେ ଶଙ୍ଖା ପଟେ ହେଲେ ଏମାନେ ଆଉ ଅଧିକ କିଛି ଆଶା କରନ୍ତି ନାହିଁ ଓ ଅଧିକ କିଛି ପାଆନ୍ତି ବି ନାହିଁ ।

**୧୩. ତେଜସ୍ୱିନୀ** - ପଦପଦକେ ନିଆଁ ଖପରା, ପଦପଦକେ ଡରାଣ, ମୁଁ ଫାଶୀ ଲଗେଇ ଦେବି, ପାଣିକି ଡେଇଁ ପଡ଼ିବି ! କିନ୍ତୁ ଏ ଶ୍ରେଣୀର ଘରଣୀମାନେ କେତେଥର ଏ କାର୍ଯ୍ୟ କରନ୍ତି, ତାହା ଈଶ୍ୱରଙ୍କୁ ଜଣା । ବାଇ ମାହାନ୍ତି କହନ୍ତି, 'କହେ ଯେ କରେ ନାହିଁ, କରେ ଯେ କହେ ନାହିଁ ।'

ଏମାନଙ୍କ ସମ୍ବନ୍ଧରେ ଯୋଡ଼ିଏ ଗଳ୍ପ ଅଛି - ବୁଡ଼ି ମରିବାକୁ ଯାଉଛି, ଆଲୁଅ ଦେଖା, କାଳେ କଣ୍ଟା ମାଡ଼ିବି । କୂଅରେ ବୁଡ଼ି ମରିବାକୁ ନିତି ଡରାଏ, ଦିନେ ସ୍ୱାମୀ କୂଅ ମୁହଁକୁ

ନେଇ ମାଡ଼ିଧରି କହିଲା, ମର୍ । ସେହିଠାରେ ଘରଣୀ କବୁଲ କଲେ, ଆଉ ଦିନେ ସେପରି କହିବେ ନାହିଁ ।

**୧୪.** ଅତି ଲେମ୍ବୁ ସ୍ନେହ କଲା ବେଳେ ସ୍ନେହର ପରାକାଷ୍ଠା, ଅଭିମାନବେଳେ ଅଭିମାନର ପରାକାଷ୍ଠା, ଥଟ୍ଟା, କଳହ, ଗର୍ଜନ, ପ୍ରଣୟ ଇତ୍ୟାଦି ସବୁଥିରେ ସୀମା ଶେଷ ପର୍ଯ୍ୟନ୍ତ ଚାଲିଯାଆନ୍ତି । ପଛରେ ପସ୍ତାନ୍ତି, ଦୋଷ ସ୍ୱୀକାର କରନ୍ତି ଓ ସୀମା ଲଙ୍ଘନ କରିଥିବାର ମଧ୍ୟ ସ୍ୱୀକାର କରନ୍ତି । ବିବେକଶୂନ୍ୟ ପାପିଷ୍ଠଙ୍କ ହାତରେ ପଡ଼ିଲେ ଏମାନଙ୍କ ଜୀବନ ମରଣରେ ପରିଣତ ହୁଏ । ଏମାନେ ଯାହା ଇଚ୍ଛା ତାହା ହାତକୁ ବାଡ଼ିଦୁଆର ଗଳିବାଟର ଚାବି ବଢ଼େଇ ଦିଅନ୍ତି । ଏଣେ ଚେତିଲା ବେଳକୁ ଦାଣ୍ଡଦୁଆରରେ ପହରାବାଲା ରଖି ସୁଦ୍ଧା ବିପନ୍ନା ହୁଅନ୍ତି ।

**୧୫.** ଆଉ ଏକ ଶ୍ରେଣୀର ଘରଣୀ ଅଛନ୍ତି, ସେମାନେ 'କୁସୁମ ପରଶେ ପଟ ନିସ୍ତରେ' ପ୍ରବାଦର ସାର୍ଥକତା କରନ୍ତି । ନିଜର କିଛି ରୂପ ଗୁଣ ନାହିଁ, କିନ୍ତୁ ଅମୁକଙ୍କ ଝିଅ ବା ବୋହୂ ଅବା ସ୍ତ୍ରୀ ବୋଲି ଜୀବନଯାକ ପୂଜା ପାଇ ଚାଲିଥାଆନ୍ତି । ରାଜା ହାତରେ ପିତଳ ମୁଦିଟାଏ ଭରିଲେ ସମସ୍ତେ କହନ୍ତି ସୁନା - କାରଣ ରାଜାଙ୍କ ହାତରେ ଅଛି ପରା !

**୧୬.** ଉପରେ ଯେଉଁ ଶ୍ରେଣୀର ଘରଣୀମାନଙ୍କ ବିଷୟ ବୋଲାଗଲା, ଏମାନେ ସେ ଶ୍ରେଣୀର ବିପରୀତ । ଏମାନେ ବାଉରି ସାଇରେ ମାଣିକ । ବାଉରି ସାଇରେ ମାଣିକର ଯେଉଁ ଦଶା ହୁଏ, ଏମାନଙ୍କର ମଧ୍ୟ ସେହି ଦଶା ହୁଏ । କାରଣ ଏମାନେ ପରା ଗରିବ ମାଇପ ! ଇତର ସମାଜରେ ଅନେକ ସ୍ଥାନରେ ଏପରି ସୁଲକ୍ଷଣା ଘରଣୀ ମିଳନ୍ତି । କିନ୍ତୁ ଜଗଦ୍ ତାଙ୍କୁ ଗୋବୁହାଡ଼ ଘେନି ମାରି ଗୋଡ଼ାନ୍ତି । କିନ୍ତୁ ଯାହା ହେବାର ହେଉ, 'ଯଥୈବାସ୍ତେ ତଥୈବାସ୍ତାଂ କାଚଃ କାଚଃ ମଣିର୍ମଣିଃ ।'

ପାଠକ ମହୋଦୟ ! ଦେଖିଲେ ତ, ବୁଦ୍ଧିର ଦଉଡ଼ଟା କେତେ ? ନିରୀହ ପ୍ରାଣୀଙ୍କ ଉପରେ କଟାକ୍ଷ କରି ଆମ ବାଇ ମାହାନ୍ତି କୁଜି ଅସରପା ଉପରେ କାଣୀ ବିରାଡ଼ି ବନିଅଛନ୍ତି ।

ସମ୍ବାଦ - ଏଥି ମଧ୍ୟରେ ବାଇ ମାହାନ୍ତି ପୁନର୍ବାର ଆସି ଆମ୍ଭମାନଙ୍କ ନିକଟରେ ଉପସ୍ଥିତ । ଜଣେ ବନ୍ଧୁଙ୍କଠାରୁ ଖଣ୍ଡିଏ ସୁପାରିସ ପତ୍ର ଘେନି ଆମ୍ଭମାନଙ୍କ ନିକଟରେ ପୁନର୍ବାର ଚାକିରି କରିବେ ବୋଲି ଆସିଛନ୍ତି । ସେ ବନ୍ଧୁଟି ସୁପାରିସରେ ଲେଖିଅଛନ୍ତି ଯେ, ମାହାନ୍ତିଏ ଢେର୍ ବଦଳି ଅଛନ୍ତି । ଅତଏବ ବନ୍ଧୁଙ୍କ କଥା ଭାଙ୍ଗି ନ ପାରି ପରୀକ୍ଷାସ୍ୱରୂପ ତାଙ୍କୁ ଆଉ କିଛି ଦିନ ରଖିଲୁଁ ଓ ଆଶା କରିଅଛୁଁ ଯେ ତାଙ୍କର ଆମର ବର୍ତ୍ତମାନ କେତେ ଦିନ ଅପଡ଼ ହେବ ନାହିଁ ।

## ଦ୍ୱାଦଶ ବିଡ଼ା

ବାଇ ମାହାନ୍ତିଙ୍କୁ ବୃଦ୍ଧାବସ୍ଥାରେ ଜଣେ ଗୁରୁ ମିଳିଅଛନ୍ତି । ଏଥିରେ ହସିବା କଥା କିଛି ନାହିଁ । ମନୁଷ୍ୟ ଜନ୍ମ ହେବାଠାରୁ ମରିବା ପର୍ଯ୍ୟନ୍ତ ଶିକ୍ଷାଭୂମିରେ ବିଚରଣ କରେ । ମୃତ୍ୟୁଶଯ୍ୟାରେ ମନୁଷ୍ୟ ଯାହା ଶିକ୍ଷା ପାଏ, ତାହା ମାସକ ପୂର୍ବରୁ ସୁଦ୍ଧା ଶିକ୍ଷା ପାଇଥିଲେ ଆଉ ଚିନ୍ତା ଥାଆନ୍ତା କଅଣ ? ଅତଏବ ବୃଦ୍ଧ ବୟସରେ ଶିଷ୍ୟତ୍ୱ ଗ୍ରହଣ କରିବା ଆପଣା ପକ୍ଷରେ ଏକପ୍ରକାର ସୁପାରିସ । ତେବେ ଭୟ ଏତିକି ଯେ, 'କାଖବାଳୁଆ ଚାଟକୁ କାଠଫାଳିଆ ପାହାର' ନ ହେଲେ ରକ୍ଷା । ଏ ଗୁରୁ ଶିଷ୍ୟଙ୍କ ମଧ୍ୟରେ ଗୋଟିଏ ଚୁକ୍ତି ହୋଇଅଛି । ଯେତେ ଦିନ ଶିକ୍ଷା ଦେବେ, ସେତେ ଦିନ ରାଜି; ଯେତେ ଦିନ ଶିକ୍ଷା କରିବେ, ସେତେ ଦିନ ରାଜି । କାହା ଉପରେ କାହାରି କିଛି ଦାବି ନାହିଁ । ଦିନକର କଥାବାର୍ତ୍ତାରୁ ପାଠକେ ତରଳି ଯିବେ -

### ଗୁରୁଶିଶ୍ୟ-ସଂବାଦ (ପ୍ରଥମାର୍ଦ୍ଧ)

ଗୁରୁ - ଅମୁକ କଥାଟା ବୁଝିବାକୁ କହିଥିଲି, ବୁଝିଲ ?

ଶିଷ୍ୟ - ଆଜ୍ଞା !

ଗୁରୁ - ଯେବେ ଯାଇଥିଲ, ତେବେ ଅନ୍ୟ କଥାଟା ବୁଝି ଆସିଲ ନାହିଁ କାହିଁକି ?

ଶିଷ୍ୟ - (ତ୍ରସ୍ତବ୍ୟସ୍ତ ଭାବରେ) ଆଜ୍ଞା ! ମତେ ତ ଅନ୍ୟ କଥା ବୁଝି ଆସିବାକୁ ଆଦେଶ ହୋଇ ନ ଥିଲା ।

ଗୁରୁ - ଦେଖୁଛି, ତୁମେ ତ ନିତାନ୍ତ ନିର୍ବୁଦ୍ଧିଆ ।

ଶିଷ୍ୟ - ଆଜ୍ଞା ! ତା ନ ହୋଇଥିଲେ କି ବୁଢ଼ାଦିନେ ଖଡ଼ି ଧରିବାକୁ ପଡ଼ନ୍ତା ?

ଗୁରୁ - ମୁଁ ଏପରି ଗମାର ଚାଟ ଚାହେ ନାହିଁ ।

ଶିଷ୍ୟ - (କ୍ଷଣକାଳ ନିସ୍ତବ୍ଧ ହୋଇ) ମତେ ନ କହିଲେ ମୁଁ ଜାଣିବି କାହୁଁ ? ବତେଇ ଦିଅନ୍ତୁ, ନ କଲେ କାନ ମୋଡ଼ନ୍ତୁ, ଚଟକଣା ମାରନ୍ତୁ, ବୃଥାରେ ରାଗିଲେ ମୁଁ ନାଚାର୍ ।

ଗୁରୁ - ମୋର ଚଟକଣା ମାରିବାର ଦରକାର ନାହିଁ କି ଏପରି ଗେହ୍ଲାପୁଅ ଦରକାର ନାହିଁ ।

ଶିଷ୍ୟ - (ଟିକିଏ ରୋଷକଷାୟିତ ଭାବରେ) ଆଜ୍ଞା ! ମୁଁ କଅଣ କହିପାରିବି ନାହିଁ ଯେ, ମୋର ଏପରି ଗେଲବସର ବାପର ଦରକାର ନାହିଁ !

ଗୁରୁ - ହଠାତ୍ ଏପରି ଚିଡ଼ିଯାଉଛ କିଆଁ ?

ଶିଷ୍ୟ - (ଶାନ୍ତ ଭାବରେ) ଆପଣ ରାଗିଲେ ବୋଲି ।

ଗୁରୁ - ମୁଁ ରାଗିବି ନାହିଁ !

ଶିଷ୍ୟ - ମୁଁ ନମ୍ରତା ଶିକ୍ଷା କରିବି, ତେବେ ବର୍ତ୍ତମାନ ଆସୁଛି ।

ଗୁରୁ ଶିଷ୍ୟଙ୍କ ସମ୍ବାଦରୁ ସମ୍ପର୍କର ଘନିଷ୍ଠତା ଅବଶ୍ୟ ପାଠକମାନେ ବୁଝି ପାରୁଥିବେ । ପୁରାଣ ଇତ୍ୟାଦିରେ ଦଖଲ ଥିଲେ "ଗଙ୍ଗା ବୋଇଲେ ଥିବି, ଗାଙ୍ଗୀ ବୋଇଲେ ଯିବି" ପ୍ରବାଦଟା ମନେ ପଡ଼ିଯିବ । ଏପରି ସ୍ଥଳରେ ଯେତେଦିନ ହେଲା, ତେତିକି ଦିନ ସହି । ସମ୍ପର୍କ କେଉଁଦିନ ଠକ୍‌କିନି ଛିଣ୍ଡିଯିବ, ତାହାର ମଧ୍ୟ ଠିକଣା ନାହିଁ, ଅତଏବ ଗୁରୁ ଶିଷ୍ୟ ଉଭୟଙ୍କ ମନରେ "Let us make the best use of it while we have it." ଉଭୟେ ଉଭୟଙ୍କ ଉପସ୍ଥିତିର ଯେତେ ଦୂର ସଦ୍‌ବ୍ୟବହାର କରିପାରନ୍ତି, ତେତିକି ଭଲ । ବାଇ ମାହାନ୍ତି ଗୁରୁଙ୍କ ଉପଦେଶଗୁଡ଼ିକ କ୍ରମଶଃ ପାଞ୍ଜିରେ ଟିପି ରଖୁଅଛନ୍ତି । ପାଞ୍ଜିରେ ଟିପି ରଖିଲେ ଗୁରୁଙ୍କର କିଛି ଆପତ୍ତି ନାହିଁ ବୋଲି ବାଇ ମାହାନ୍ତି ଜାଣି ପାରିଅଛନ୍ତି; କିନ୍ତୁ ସେଗୁଡ଼ିକ ଜନସାଧାରଣରେ ପ୍ରକାଶ କରିବାକୁ ଭାରି କୁଣ୍ଠିତ । ଉପର୍ଯ୍ୟୁପରି ଅନୁରୋଧ ହୋଇ ନମୁନାସ୍ୱରୂପ ୪।୫ ଖଣ୍ଡି ତାଳପତ୍ର ସେ ଆମ୍ଭମାନଙ୍କୁ ଦେଇଥିଲେ; ଆମ୍ଭେମାନେ ମଧ୍ୟ ମନେ ମନେ ବିଚାରିଲୁଁ, "Let us make the best use of it while we have it." ଆମ୍ଭମାନଙ୍କର ଏ ସିଦ୍ଧାନ୍ତ ଭୁଲ କି ଠିକ୍, ପାଠକମାନେ ଅସଲି ମାଲରୁ ସ୍ଥିର କରନ୍ତୁ -

୧. ଲୋକେ କହନ୍ତି, ଅମୁକ ଅମୁକକୁ ସମ୍ମାନ କରେ, ଅମୁକ ଅମୁକକୁ ସ୍ନେହ କରେ, ପୂଜା କରେ, ଇତ୍ୟାଦି । କିନ୍ତୁ ଗୁରୁଙ୍କ ମତରେ ଦୁନିଆଯାକ ସ୍ୱାର୍ଥଖେଳା । କଥାଟା ଶୁଣିଲା ବେଳକୁ ସିନା ପିଳେହି ଚମକି ଯିବାର କଥା, କିନ୍ତୁ ଟିକିଏ ଥୟ କରି ଭାବିଲେ ସବୁ ଏକା, ସମାନ । ସଂସାରରେ ସବୁ ସ୍ନେହ, ସବୁ ଭକ୍ତି, ସବୁ ପ୍ରେମ, ସବୁ ସମ୍ମାନ ସକାମ । ଉଦ୍ଦେଶ୍ୟ ନ ଥାଇ ସଂସାରର କାର୍ଯ୍ୟ ନାହିଁ । 'ଯହିଁ ପାଇଁ, ତହିଁ ଥାଇ', ଏ ସଂସାରର ନିୟମ, ମନୁଷ୍ୟ ପ୍ରକୃତିର ନିୟମ; ଏହାକୁ ଏଡ଼ିବାର ତାକତ୍ ସଂସାରରେ ଖୁବ୍ କମ୍ । ଏତକ ତାକତ୍ ଥିଲେ ଆଜି ଆମ ଗାଆଁକୁ କୈଳାସ କନ୍ଦର ଯାଏ ବାଟ ହୋଇଥାନ୍ତା, ଆମ ଗାଁ କହ୍ନାମା ଆଜି ମହାଲକ୍ଷ୍ମୀଙ୍କ ଢିଙ୍କି ଶାଳେ ଧାନ କୁଟୁଥାଆନ୍ତା । ସ୍ୱାର୍ଥ ସବୁଠାରେ ପୂର୍ଣ୍ଣମାତ୍ରାରେ ରହିଅଛି । ନିଃସ୍ୱାର୍ଥ ନିଃସ୍ୱାର୍ଥ ବୋଲି ଯେଉଁଠାରେ ହୁଲର୍ ପଡ଼ିଛି, ଟିକିଏ ତାକୁ ଉଖୁରେଇ ଦେଖିଲା ବେଳକୁ ସ୍ୱାର୍ଥ ଧରା ପଡ଼ିଯିବ । ମନେକର, ସ୍ୱାର୍ଥକୁ ଆଜି ସଂସାରରୁ କାଢ଼ିନିଅ, ବାକି ରହିବ କେବଳ ଗହୀର ବିଲର ଟେକା, ବଣର କଣ୍ଟା, ପାହାଡ଼ର ଟାଙ୍ଗର ଓ ଅସ୍ଥିକଙ୍କାଳମାଳା । ସବୁ ସ୍ୱାର୍ଥଯାକ କାଟିଦେଲେ ସୁଦ୍ଧା ଆତ୍ମ-ସନ୍ତୋଷତକ ତ ହେଲେ ବାକି ରହିଯିବ । ତାହାହେଲେ ସମସ୍ତେ ବାଡ଼ି ଘେନି ମାରି ଗୋଡ଼ାଇବେ । କିନ୍ତୁ ସବୁଥିରେ ଉଚ୍ଚ ନୀଚ ଅଛି । ସ୍ୱାର୍ଥରେ ସ୍ୱାର୍ଥ ଅଛି । ଆଇନ୍ ଲେଖିଲା - ଚୋରି କଲେ ତିନି ବରଷ ଶ୍ରୀଘରବାସ । ଯେ କଦଳୀପତ୍ର ଖଣ୍ଡେ କାଟିଲା, ସେ ଚୋର, ଯେ ସୁନାମୋହର ପୁଳାଏ ହଜମ କଲା, ସେ ବି ଚୋର; ସେଥିପାଇଁ ହାକିମଙ୍କର ସୃଷ୍ଟି । ସବୁ ଚୋରକୁ ତ ଦଣ୍ଡ ସମାନ ନୁହେଁ । ଦଣ୍ଡ କି ପୁରସ୍କାର, ତାହା ମଧ୍ୟ ସ୍ଥିର କରିବାପାଇଁ ଓସ୍ତାଦୀ ବୁଦ୍ଧି ଆବଶ୍ୟକ । ସେହି ଓସ୍ତାଦୀ ବୁଦ୍ଧିକୁ ବୋଲାଯାଏ ମନୁଷ୍ୟ । ଯାହାହେଉ, ସବୁ କାର୍ଯ୍ୟ ଆଲୋଚନା କରିବାକୁ ଗଲେ ସେଥିରେ ସ୍ୱାର୍ଥ କେତେ,

ପରାର୍ଥ କେତେ ସାଧିତ ହୁଏ, ଏହାହିଁ ବିଚାର କରିବା ଉଚିତ । କର୍ତ୍ତବ୍ୟ ପାଳନ କରିବାକୁ ଗଲେ ସେଥିରେ ମଧ ସ୍ୱାର୍ଥ ଅଛି, କିନ୍ତୁ ପରାର୍ଥ ପରିମାଣଟା ବେଶି । ସଂସାରଟା ନିକିତିରେ ଓଜନ କରି ଦରଦାମ କରିବା ଜାଗା, କଷଟିରେ କଷିବାର ସ୍ଥାନ, ତୁଳନାର ଭୂମି । ନିକିତି ଧର, ଯେଉଁ ପାଖଟା ତଳକୁ ଝୁଙ୍କି ପଡ଼ିଲା, ସେହି ପାଖଟା ଭାରୀ । ଆପେକ୍ଷିକ ଗୁରୁତ୍ୱ ସଂସାରରେ ଗୁରୁତ୍ୱ ନାମରେ ଅଭିହିତ । ଯେଉଁ ମାତ୍ରାଟା ବେଶି ସେହି ମାତ୍ରାର ଜୟ । ଗୁଣର ଆଦର ସ୍ୱାର୍ଥଖେଳା ନୁହେଁ ଆଉ କଅଣ ?, ଯେ ଯହିଁକି ଉପଯୁକ୍ତ  ସେ ତାହା ପାଇଲା । ଯେଉଁ ଫୁଲରେ ମଧୁ ନାହିଁ, ସେଠାକୁ ଯିବାକୁ ଭ୍ରମରକୁ ମନା । ଫୁଲର ଆଦର ସୌରଭ ଯୋଗୁଁ ସିନା । ସେ ଆଦର, ସେ ପ୍ରେମ, ସେ ଭକ୍ତି, ସବୁ ସକାମ - ନିଷ୍କାମ ପ୍ରେମ ଏକ ସ୍ଥାନରେ ସମ୍ଭବେ, କିନ୍ତୁ ସେ ସ୍ଥାନଟି ସଂସାରର ହତାରୁ ବାହାରେ । 'ଈଶ୍ୱର ଯାହା କରନ୍ତି, ତାହା ମୋ ମଙ୍ଗଳପାଇଁ କରନ୍ତି, ଏପରି କହିବା ଦ୍ୱାରା ପରର ଭୂମିରେ ବାଡ଼ ବୁଜିବା କଥା । କାରଣଟିଏ ସ୍ଥିର କଲେ ସକାମ ରାଜ୍ୟରେ ଆସି ପହଞ୍ଚିଲା ! ସେଠାକୁ ଆମ ବାଡ଼ିଆଡ଼ ଅଳ୍ପ ଦୂର । ଜିନିଷଟିଏ ସୁନ୍ଦର ଦିଶୁଛି ବୋଲି ତୁମେ ଚାହିଁ ଆଖିସୁଖ କରିନେଲ । ନିଃସ୍ୱାର୍ଥ, ନିଷ୍କାମ ଆଉ ରହିଲା ନାହିଁ ? ଅସୁନ୍ଦରକୁ ଆଣି ଯେବେ ପାଖରେ ବସାଇବ, ଯେ ଚଟକଣାଟାଏ ମାରିଦେବ, ତାକୁ ଯେବେ ଆଉଁଶି ଦେବ, ତେବେ ସିନା ବାହାଦୁରି । କିନ୍ତୁ ଟିକିଏ ଥୟ କରି ଚାହିଁଲେ ସେଥିରେ ମଧ ସ୍ୱାର୍ଥ ଅଛି । ମନ ଓରମାନ ମେଣ୍ଟାଇବା ମଧ ଗୋଟିଏ ସ୍ୱାର୍ଥ ।

ସେଥିପାଇଁ ଓଡ଼ିଶାରେ ଗୋଟିଏ ପ୍ରବାଦ ଅଛି, ''ଘର ପୋଡ଼ି ଯାଉ ପଛେ ମଶା ମରନ୍ତୁ ।'' ସବୁଆଡ଼େ ଚାହିଁ ଦେଖ, କେବଳ ସ୍ୱାର୍ଥଖେଳା, ତେବେ ସ୍ଥାନ ବିଶେଷରେ ସ୍ୱାର୍ଥର ଅର୍ଥ ବିଭିନ୍ନ । ତହବିଲ ତୋସରଫ ବେଳେ ସ୍ୱାର୍ଥର ମାନେ ଅଣ୍ଟାଗୁଞ୍ଜା, ଦେଶହିତୈଷିତା ବେଳକୁ ସ୍ୱାର୍ଥର ଅର୍ଥ ମନର ସନ୍ତୋଷ, ବେନାମି ଚିଠି ବେଳକୁ ସ୍ୱାର୍ଥର ଅର୍ଥ ମନର ଓରମାନ ମେଣ୍ଟା, ଭୋଟ୍ ଦେବାବେଳକୁ ସ୍ୱାର୍ଥର ଅର୍ଥ ଦେଶୀ ବିଦେଶୀ ଯୁଦ୍ଧରେ କଳକଦର ଦେଖି ଜୟଲାଭ । ଏ ସବୁ ତୁମ ଆମ ମନମୁଖି ଫଏସଲା ନୁହେଁ, ଏହା ନୀତିବିଜ୍ଞାନର ପ୍ରଧାନ ନିୟମ । ସେ ଯାହାହେଉ, ଲୋକେ ପୂଜା କରନ୍ତି କାହାକୁ ? ସ୍ନେହ କରନ୍ତି କାହାକୁ ? ଆମ ଗୁରୁ ଗୋସାଇଁ ଦିନେ ଗୋଟିଏ ଗପ କହିଥିଲେ - ଦିନେ ତାଙ୍କର ଜଣେ ପରିଚିତ ବଡ଼ଲୋକ ବନ୍ଧୁ ତାଙ୍କୁ ଡକାଇ ପଠାଇଥିଲେ । (ବାଇ ମାହାନ୍ତିଙ୍କ ଓସ୍ତାଦ୍ ଭାବେ ଆପଣ କଣ ବୋଲି କଅଣ ଗୋଟାଏ ମନେ କରିବେ ନାହିଁ । ବାଇ ମାହାନ୍ତି ନିପଟ ମଫସଲିଆ ବୋଲି ଯେ ତାଙ୍କ ଗୁରୁ ମଧ ସେହି ଶ୍ରେଣୀର, ଏହା ଦର୍ଶନବିରୁଦ୍ଧ ମତ । ଗୁରୁ ମହାଶୟ ଅନେକଙ୍କର ଶିକ୍ଷାଗୁରୁ, ଅନେକଙ୍କର ଦୀକ୍ଷାଗୁରୁ, ଅନେକଙ୍କର ରକ୍ଷାଗୁରୁ । ସେ ଅବଶ୍ୟ ନଗଣ୍ୟ ଲୋକ ନୁହନ୍ତି  ତାଙ୍କୁ ହାକିମହୁକୁମା ବାକ୍ୟତଃ ଓ କାର୍ଯ୍ୟତଃ ଉତ୍ତମରୂପେ ଜାଣନ୍ତି, ଲକ୍ଷ୍ମୀ ସରସ୍ୱତୀ ଦୁହିଁଙ୍କର ସେ ଧର୍ମପୁଅ, ଦେଶର ଅନେକ କାର୍ଯ୍ୟ ମଧ କରନ୍ତି ।) ସେଦିନ ତାଙ୍କ କତୁଆନ ବାହନ ଉଭୟେ

ପୀଡ଼ିତ ଥିବାରୁ ତାଙ୍କୁ ଅଗତ୍ୟା ଖଣ୍ଡିଏ ଥାର୍ଡକ୍ଲାସ୍ ଘୋଡ଼ାଗାଡ଼ିର ଆଶ୍ରୟ କରିବାକୁ ହେଲା । ଗୁରୁଙ୍କୁ ଆଜି ଧତରା ବଗିରେ ଆସିବା ଦେଖି ବଡ଼ଲୋକ ଟିକିଏ ବିରକ୍ତିଭାବରେ ପଚାରିଲେ, ଆପଣ ଏପରି ଜୀର୍ଣ୍ଣ ଶୀର୍ଣ୍ଣ ଯାନରେ ଆସିଲେ କିଆଁ ? ଗୁରୁ ମହାଶୟ ଆଉ ସେଦିନ କିଛି ପ୍ରସଙ୍ଗ ନ ପକାଇ ଅନ୍ୟ ଛଳନାରେ ବାହାରି ଆସିଲେ ଓ ବିଦାୟ ହେଲାବେଳେ ବନ୍ଧୁଙ୍କୁ କହିଆସିଲେ, କାଲି ଆପଣଙ୍କର ବିରକ୍ତ ହେବାର କାରଣ ନ ଥିବ । ସତକୁ ସତ ତହିଁ ଆରଦିନ ବନ୍ଧୁଙ୍କ ଦ୍ୱାରରେ ବିଲାତୀ ଚୁଙ୍ଗୁଚୁଙ୍ଗିଆ ଯୋଡ଼ିଘୋଡ଼ାଲଗା, ନୂଆ ରଙ୍ଗଦିଆ ବଗି ଆସି ଉପସ୍ଥିତ, ଶାଳପଗଡ଼ିବାଲା ଓ ମଖମଲ ପୋଷାକଧାରୀ କଚୁଆନ ଓ ଚପରାସୀ ବଗିର ଆଗ ବାକ୍ସ ଉପରେ ଆସୀନ, ବଗି ପଛରେ ଦୁଇ ଜଣ ଶାଲ କମରପଟୀଧାରୀ ସଇସ ଦଣ୍ଡାୟମାନ । ଜଣେ ସଇସ ଗାଡ଼ି ମଧ୍ୟରୁ ଖଣ୍ଡିଏ ଦର୍ଶନୀ କାଡ଼୍ ନେଇ ବନ୍ଧୁଙ୍କ ହସ୍ତରେ ଦେଲା, ବନ୍ଧୁ ଅଭ୍ୟାଗତଙ୍କୁ ଆସିବାକୁ ଅନୁମତି ଦେଲାରୁ ସଇସ କହିଲା, ସେ ଗାଡ଼ି ଛାଡ଼ି ଆସିବାକୁ ଏକାନ୍ତ ଅକ୍ଷମ, ଆପଣଙ୍କର ଇଚ୍ଛା ହେଲେ ଆପଣ ଗାଡ଼ିରେ ଦେଖି ଆସିପାରିବେ । ବନ୍ଧୁ ଗାଡ଼ି ନିକଟକୁ ଯାଇ ଗୁରୁଙ୍କୁ ନ ଦେଖି ଟିକିଏ ଇତସ୍ତତଃ ହେଲାରୁ ଚପରାସୀ ଖଣ୍ଡେ ପତ୍ର ତାଙ୍କ ହସ୍ତକୁ ବଢ଼ାଇ ଦେଲା । ସେ ପତ୍ର ଖଣ୍ଡକର ମର୍ମ ଏହି - ''ଆପଣ ଯେଉଁ ବନ୍ଧୁଙ୍କୁ ଦେଖିବାକୁ ଇଚ୍ଛା କରୁଥିଲେ, ସେ ସଯାନବାହନ ହୋଇଗଲେ, ସାକ୍ଷାତ୍ ହେବା ପରେ ଶୀଘ୍ର ବିଦାୟ ଦେବେ ।'' ବନ୍ଧୁ କାଲିର କଥୋପକଥନକୁ ସ୍ମରଣ କରି ଆପଣାର ନିର୍ବୋଧତାର ପରିଚୟ ପାଇ ଗୋଟିଏ ଶିକ୍ଷା ଲାଭ କଲେ । ସେଥିପାଇଁ ଆମ ଗୁରୁଗୋସେଇଁ କହନ୍ତି, ଲୋକେ ସମ୍ମାନ କରନ୍ତି କାହାକୁ ? ମନୁଷ୍ୟକୁ ନା ବହିରାବରଣକୁ ? ଏ କଥାଟା ବି ନିତାନ୍ତ ନୂଆ ନୁହେଁ, ପାଞ୍ଜିର ପାଠକମାନେ ଅବଶ୍ୟ ବୁଝିପାରୁଥିବେ । 'ବାସଃ ପ୍ରଧାନଂ ଖଳୁ ଯୋଗ୍ୟତାୟାଃ ପୀତାମ୍ବରଂ ବୀକ୍ଷ୍ୟ ଦଦୌ ତନୁଜାଂ ପୀତାମ୍ବରଂ ଯଦ ଗରଳଂ ପୟୋଧିଃ ।' ଭିତର ମାଲ ଯାହା ଥାଉ, ବହିରାବରଣଟି ଭଲ ନ ହେଲେ ଗ୍ରାହକ ଜୁଟିବା କଥା ମୁସ୍କିଲ । ବାଡ଼୍ସାଇ ଚୁରଟ୍ ବାକ୍ସରେ ଗୋଟିଏ ଲେଖାଏଁ କୋଟିବ୍ରହ୍ମାଣ୍ଡସୁନ୍ଦରୀଙ୍କ ମନମୋହନ ଚିତ୍ର ଥାଏ କାହିଁକି ? ବଡ଼ ବଡ଼ ବହିର ମଲାଟମାନ ଏତେ ଛାପଚିକ୍କଣ ହୁଏ କେଉଁ କାରଣରୁ ? ବୁଝିଲେ କି ନା ! ମନୁଷ୍ୟପ୍ରକୃତି ଏଡ଼ିବାର ବସ୍ତୁ ନୁହେଁ । ଚିରାକନା ବନାରସୀ ବୁଟାଦାରର ପ୍ରଭେଦ କାଲି ଥିଲା, ଆଜି ଅଛି, କାଲି ଥିବ, ଏଥିରେ ଦ୍ୱିଧା ନାହିଁ, ନ ଥିଲା, ନ ହେବ ।

୨. ରେଳଦ୍ୱାରା ଦେଶର କି ଲାଭ ହୋଇଅଛି ? ଏ ପ୍ରଶ୍ନଟି ଦିନେ ଗୁରୁ ଶିଷ୍ୟଙ୍କ ମଧ୍ୟରେ ଉତ୍‌ଥାପିତ ହୋଇଥିଲା, ସେ ବିଷୟରେ ଆମ୍ଭେମାନେ ନିଜର ମତ ବ୍ୟକ୍ତ ନ କରି ଗୁରୁଶିଷ୍ୟ ସମ୍ବାଦରୁ କାଣ୍ଡିଏ ଅଧେ ପାଠକମାନଙ୍କୁ ଜଣାଇବୁଁ ।

ପ୍ରଥମ ଲାଭ - ଓଡ଼ିଶାରେ କେନାଲର କର ଏକର ପ୍ରତି ଟ ୧ ଥିଲା, ବର୍ତ୍ତମାନ ରେଳ ପ୍ରସାଦରୁ କେନାଲରେ ବୋଟ ଯିବାଆସିବା କମିବା ଦ୍ୱାରା କେନାଲର ଗୋଟିଏ ଆୟ କମିଯିବାରୁ ସେ କ୍ଷତିତକ ରାମ ପ୍ରଧାନ, ଶାମ ବିଶ୍ୱାଳଙ୍କ ମୁଣ୍ଡରେ ଲଦା ହେଲା ।

ଆଗେ ଏକ ମାଣର ଜଳକର ଟ ୧ ଥିଲା, ଦେଶ ବେଶି ଉନ୍ନତ ହେବାରୁ ରାମଙ୍କ ଖୋଷଣିରୁ ଆଉ ସୁଉକିଟିଏ ବାହାରିଲା । ଦେଶ ଯେତିକି ବେଶି ସଭ୍ୟ, ରାମା ଉପରେ ତେତିକି ବେଶି ତୋଡ଼ମାଡ଼ । ଦିନେ ପ୍ରଥମେ ରେଳ ଓଡ଼ିଶାକୁ ଆସିବା ବେଳେ ଜଣେ ସାହେବ ହସି ହସି ଆଶାନ୍ୱିତ ଭାବରେ ଆମ ଗୁରୁଗୋସେଇଁଙ୍କୁ କହିଲେ, ''ତୁମର ଆଉ କିଛି ଚିନ୍ତା ନାହିଁ । ଏବେ ଦିନକର ବାଟ ଘଣ୍ଟାକେ ଟପିଯିବ ।'' ଆମ ଆପଣେ ସଲାମ୍‌ଟିଏ ବଜାଇ ଉତ୍ତର କଲେ, 'ହଜୁର ! ଯାହା କହୁଚନ୍ତି ।' ସାହେବ ମହୋଦୟ ବୁଦ୍ଧିମାନ୍: ଏ ଉତ୍ତରରୁ ନିର୍ଯ୍ୟାସଟା ବୁଝିନେଲେ ଓ ନିଜ ମତ ସ୍ୱାଧୀନଭାବରେ ବ୍ୟକ୍ତ କରିବା ନିମନ୍ତେ ଗୁରୁଙ୍କୁ ବାରମ୍ବାର ଅନୁରୋଧ କଲେ । ଇଂରେଜୀରେ ଏଞ୍ଜିନ୍ ଚାଲିଲା, କିନ୍ତୁ ପାଠକମାନଙ୍କ ସୁବିଧା ନିମନ୍ତେ ଆମ୍ଭେମାନେ ଓଡ଼ିଆ କାରିଗରିରେ ତାହା ପ୍ରକାଶ କଲୁଁ ।

''ସାହେବ ! ଦେଶର ଢେର୍ ଢେର୍ ଉପକାର ହେଲା । ରାମାର ଜାତି ଆଜିପର୍ଯ୍ୟନ୍ତ ସମୟର ମୂଲ୍ୟ ବୁଝି ନାହିଁ । ରେଳ ହେବା ପୂର୍ବରୁ ରାମା କଟକରୁ ପୁରୀକୁ ଦୁଇ ଦିନରେ ଆସୁଥିଲା, ଖରଚ ମଧ୍ୟରେ ତିନିଅଣା, କିନ୍ତୁ ରେଳ ହେବାରୁ ରାମା ଅଣ୍ଟାରୁ ବାରଅଣା କାଢ଼ିଲା । ଯାହାର ଘଣ୍ଟାକର ମୂଲ୍ୟ ଶହେ ଟଙ୍କା, ସେ ଦୁଇ ଦିନ ନିକମା ହେଉଥିଲେ ତାର କେତେ କ୍ଷତି ହେଉଥାଆନ୍ତା, ଆଜି ରେଳ ପ୍ରସାଦରୁ ତାହା ଲାଭ ହେଲା; କିନ୍ତୁ ରାମାର ଜାତି ସମୟର ବିଶେଷ ମୂଲ୍ୟ ବର୍ତ୍ତମାନ ଜାଣି ନାହିଁ । ସେ ପୁରୀରେ ଦୁଇ ଦିନେ ପହଞ୍ଚିଲେ ତାର ତିନିଅଣା ଖରଚ ପଡ଼ିଥାଆନ୍ତା - ରେଳ ହେବାରୁ ନଅଅଣା କ୍ଷତି ହେଲା । ଯେଉଁ ଜାତି ସମୟର ମୂଲ୍ୟ ଜାଣି ପାରି ନାହାନ୍ତି, ସେମାନଙ୍କର ରେଳ ଦ୍ୱାରା କ୍ଷତି ଛଡ଼ା ଲାଭ ନାହିଁ । ସାହେବ୍ ! ରେଳ ହୋଇଅଛି ତୁମ ଜାତି ପାଇଁ, ଆମ ଜାତି ପାଇଁ ନୁହେଁ । ଏ ତ ଏକ ଆଡୁ ଦେଖିଲେ, ରାମାର ଓ ଦେଶର କେତେ ଲାଭ ହେଲା । ଆଉ ଏକ ଆଡୁ ଦେଖନ୍ତୁ - ବିଲାତରେ କୋଟିପତି ପଣକୁ ପଣ, ଟଙ୍କା ଗଦା କରିବାକୁ ଥାନ ନାହିଁ, ପଞ୍ଚାଏ ମିଶିଗଲେ, ସଭା କଲେ, ସ୍ଥିର କଲେ ଯେ, ଭାରତରେ ରେଳର ବିସ୍ତାର ହେଲେ ଦେଶର ଉପକାର ହେବ, ଦୁର୍ଭିକ୍ଷ ପଡ଼ିବ ନାହିଁ । ବାଣିଜ୍ୟର ଶ୍ରୀବୃଦ୍ଧି ହେବ, ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ସୈନ୍ୟମାନଙ୍କର ଯିବାକୁ ସୁବିଧା ହେବ ଇତ୍ୟାଦି, ଇତ୍ୟାଦି । ଏ ସଭାର ଧର୍ମବାପ, ହର୍ତ୍ତାକର୍ତ୍ତା ବିହିବିଧାତା ଷ୍ଟେଟ୍ ସେକ୍ରେଟେରୀଙ୍କଠାକୁ ଚାଲିଆସିଲା । ଷ୍ଟେଟ୍ ସେକ୍ରେଟେରୀ କହିଲେ, ''ଆରେ ! ସତ ତ ! ରେଳ ହେଲେ ଭାରତଟା ମାସେ ଦି'ମାସରେ ସ୍ୱର୍ଗରେ ପରିଣତ ହୋଇଯାଆନ୍ତା ।'' କିନ୍ତୁ ସରକାରୀ ତହବିଲରେ ତ ଟଙ୍କା ନଦାରଦ୍, ଏଥିରେ ଢେର୍ ଖରଚ ହେବ । ମୂଳଧନାଧକ୍ଷମାନେ କହିଲେ, 'ରେଳ ନ କଲେ ଜାଣୁ ଜାଣୁ, ଚାହୁଁ ଚାହୁଁ ଦେଶଟା ଉଚ୍ଛନ୍ନ ହୋଇଯିବ । ଏହା ହେଲେ ଇଂଲଣ୍ଡ ମହାପାପରେ ଅପରାଧୀ ହେବେ ।' ଷ୍ଟେଟ୍ ସେକ୍ରେଟେରୀ କହିଲେ, ''ଆରେ ! ସତ ତ ! ଟଙ୍କା ତ ଅସଲ, ଟଙ୍କା ଆଣିବା କାହୁଁ ? କରଜ କରି ରେଳ ବସାଇବାକୁ ତ ଭାରତୀୟ ତହବିଲର ବଳ ନାହିଁ ।' ମହାଜନମାନେ କହିଲେ କିଛି

ଭାବନା ନାହିଁ, ଟଙ୍କା କରଜ କରିବାକୁ ପଡ଼ିବ ନାହିଁ, ଆମ୍ଭେମାନେ ମୂଳଧନ ବ୍ୟୟ କରି ରେଳ ବସାଇବୁଁ, ଭାରତବର୍ଷକୁ ବର୍ଷ କେତେଟାରେ ନନ୍ଦନକାନନ ବନାଇ ଦେବୁଁ । ଭାରତର ମାଆ ବାପ କହିଲେ, 'ଆରେ ! ସତ ତ ! ତୁମ୍ଭେମାନେ ଥାଉଁ ଥାଉଁ କି ଭାରତଟା ଅଜ୍ଞାନାନ୍ଧକାରରେ ପଡ଼ିଥିବ, ଭାରତବର୍ଷ ତୁମ୍ଭମାନଙ୍କର ନିଃସ୍ୱାର୍ଥ ପ୍ରେମ ଓ ଉପକାର ଭୁଲିପାରିବ ନାହିଁ ।' ମହାଜନ ସାହେବ କହିଲେ, 'କାହିଁ ସାତ ସମୁଦ୍ର ଲଙ୍କା ପାରି, କୁଆଡ଼େ ବୋଲି କୁଆଡ଼େ, ସେଠେଇଁ ଟଙ୍କାଗୁଡ଼ାକ ବୁଣିଦେବୁଁ ଯେ, କାଲି ସକାଳେ ଟୁବ୍‌କିନି ବୁଡ଼ିଯିବ, ସେତେବେଳେ ଆମର ଉପାୟ କଅଣ ? ଘରୁ ଖାଇ ତ ବଣିଜ କରିବୁଁ ନାହିଁ, ଯେବେ ଲାଭ ହେଲା, ଆମ କପାଳ; ଯେବେ କ୍ଷତି ହେବ, ତେବେ ଜବାବ ଦେବ କିଏ ? ଷ୍ଟେଟ୍ ସେକ୍ରେଟେରୀ କହିଲେ, ''ଆରେ ! ସତ ତ ! ମୁଁ ସେ କଥା ଆଦୌ ଭାବି ନ ଥିଲି, ତୁମ୍ଭେମାନେ ଭାରତର ନିଃସ୍ୱାର୍ଥ ଉପକାର କରିବାକୁ ଯାଉଛ, ତୁମ୍ଭମାନଙ୍କୁ ଉତ୍ସାହ ନ ଦେଲେ ହେବ କିପରି ? ଲୋକେ ଏଣିକି ଆଉ ନିଃସ୍ୱାର୍ଥ ପରୋପକାର କରିବାକୁ ବାହାରିବେ କାହିଁକି ? ଯାହାହେଉ, ନଗଦ ଟଙ୍କା ଦେବାକୁ ପଡୁଥିଲା ବୋଲି ସିନା ଆମେ ଖଜଣାଖାନାକୁ ନଜର କରି କଥା କହୁଥିଲୁଁ ।

ଆଜି ସିନା ଟଙ୍କା ନାହିଁ, କାଲିକି ଖଜଣାଖାନାର ଅବସ୍ଥା ସଚଳ ହୋଇଯିବ ଯେ । ଆଚ୍ଛା, ତୁମ୍ଭମାନଙ୍କୁ ନିର୍ଭର ଜବାବ 'ଗାରେଣ୍ଟି' ଦେଉଅଛୁ ଯେ, ଯେବେ ଏଥିରେ କ୍ଷତି ହେବ, ତାହାହେଲେ ତୁମ୍ଭେ ଖରଚ କରିଥିବା ଟଙ୍କା ଉପରେ ଭାରତ ଗଭର୍ଣ୍ଣମେଣ୍ଟ ତୁମ୍ଭଙ୍କୁ ଶତକଡ଼ା ଏତେ ଟଙ୍କା ସୁଧ ଦେବେ । ତାହାହେଲେ ତୁମ୍ଭମାନଙ୍କର ଭୟ କଅଣ ? ମହାଜନମାନେ କହିଲେ, 'ଆଚ୍ଛା ହେଉ, ଆମ୍ଭେମାନେ କାର୍ଯ୍ୟ ଆରମ୍ଭ କରୁଅଛୁଁ, କିନ୍ତୁ ସାବଧାନ୍ ! କ୍ଷତି ହେଲେ ଦ୍ୱାହି ଭାରତ ଗଭର୍ଣ୍ଣମେଣ୍ଟ ତହବିଲର ।' ଏହା କହି ମହାଜନମାନେ ତାଙ୍କ ଟ୍ରେଜେରିର ଚାବି ଖୋଲି ଦେଲେ । ବିଲାତରୁ ଇଞ୍ଜିନିଅର, ଏକଚେଟୀ ଇଞ୍ଜିନିଅର * ସୁପ୍ରଦଣ୍ଡ** କଳ, ଲୁହା ସରଞ୍ଜାମ ଓଗେର ଓ ନଗଦ ରୋକଡ଼ ଜାହାଜରେ ରମାନା କଲେ । ଲାଗିଲା କାର୍ଯ୍ୟ, ମୂଲିଆଙ୍କୁ କାମ ମିଳିଗଲା, ଦେଶର ଦୁର୍ଭିକ୍ଷପୀଡ଼ିତ ଲୋକ କାମ ପାଇଲେ, ଦେଶତମାମ ଧନ୍ୟ ଧନ୍ୟ ହୁରି ପଡ଼ିଗଲା, ଲାଗିଲା ଖରଚ, ଚିନ୍ତା ନାହିଁ, କ୍ଷତି ହେଲେ ଦ୍ୱାହି ଭାରତ ତହବିଲର । ରେଳ ତିଆରି ହେଲା; ଯେବେ କ୍ଷତି ହେବ, ତେବେ ଭାରତର ଭାଗ୍ୟ ବିଧାତାଙ୍କ ତନୁଖା ଖଣ୍ଡିକ ଶେଠଙ୍କ ପାଖରେ ମହଜୁଦ୍ । ଭାରତର ତହବିଲର ଅର୍ଥଟା କଅଣ ବୁଝୁଛନ୍ତି ତ ? ରାମ ପରିଡ଼ାର ମାଇପହାତ ଖଡ୍ଡୁ, କଂସା, ଲୋଟା ବନ୍ଧାଦିଆ କୋରେଖି ପଇସା । ରେଳରୁ ଲାଭ ହେଲେ ଲାଭଯାକ ସିଧାଏ ସିଧାଏ ଶେଠଙ୍କ ମୁଣି ଭିତରକୁ ଚାଲିଗଲା, କ୍ଷତି ହେଲେ ରାମାର ଝାଳବୁହା କଉଡ଼ି ଶେଠଙ୍କୁ ଗଣାଯିବ । ଯେବେ ରେଳରେ ରାମା

* ଏକ୍‌ଜିକ୍ୟୁଟିଭ୍‌, ** ସୁପରିଣ୍ଟେଣ୍ଡେଣ୍ଟ ।

ଓ ରାମାର ବିରାଦର ନ ଚଢ଼ିବେ, ତେବେ ରେଳ କମ୍ପାନୀର କ୍ଷତି ହେବ; ରେଳ କମ୍ପାନୀର କ୍ଷତି ହେଲେ ରାମା ସୁନାପୁଅ ହୋଇ ଟଙ୍କାତକ ଗଣି ଦେବ । ରାମା ନ ଚଢ଼ିଲେ ଦେବ, ଚଢ଼ିଲେ ଦବ । ଅତଏବ ରାମା ନ ଚଢ଼ି ଯିବ କୁଆଡ଼େ ? ନ ଚଢ଼ିଲେ ଛାଡୁଛି କିଏ ? ଏ ତ ଗଲା ଏକପ୍ରକାର ଲାଭ, ଆଉ ଏକପ୍ରକାର ଲାଭ ଶୁଣନ୍ତୁ - ହାଡ଼ି ଖାଇବ କଉଡ଼ି, ଢୋଲ ଖାଇବ ମାଡ଼ - ପଇସା ଗଣିବେ ରାମାର ବିରାଦର, କିନ୍ତୁ ରେଳରେ ଟ ୨୦ ବା ଟ ୩୦ ଚାକିରିରେ ସୁଦ୍ଧା ରାମା ଦେଶର ଲୋକଙ୍କ ପ୍ରବେଶ କାଠିକର ପାଠ । ରାମାର ଭାଇଆତକ ରେଳରେ ଚାକିରି କଲେ ସାହେବ ଓ ସାହେବଙ୍କ ବିରାଦର ଓ ଅନୁଗୃହୀତମାନେ କରିବେ କଅଣ ? ସାହେବଙ୍କର ଭଲା ନିଜର ଦେଶ ଅଛି, ରାମାର ମଧ୍ୟ ନିଜର ଯାହାହେଉ ଗୋଟାଏ ଅଛି, କିନ୍ତୁ ସେ ସାହେବଙ୍କ ବହୁପୁରୁଷ ସଞ୍ଚିତ ସୁକୃତ ଓ ସୁକୃତର ଫଳସ୍ୱରୂପ ଅନ୍ତର ଭାଇତକଙ୍କର ଯେ ଏ କୂଳ ସେ କୂଳ ବିକୂଳ ନାହିଁ । ଯେଉଁ ଦେଶର ଲୋକମାନେ ଭାରତରେ ଏତେ ବଡ଼ ଗୋଟାଏ କୀର୍ତ୍ତିସ୍ତମ୍ଭ ତୋଳିଛନ୍ତି, ସେ ଦେଶର ଶେଠମାନେ ତାଙ୍କୁ ନ ପୋଷିଲେ ସେମାନେ ଚଳିବେ କାହୁଁ ? ଅତଏବ ରାମାର ଦେଶରେ ରେଳ ହେବା ଦ୍ୱାରା ରାମାର ସବୁ ଆଡୁ ଲାଭ, ଦେଶର ମଧ୍ୟ ସବୁ ଆଡୁ ଲାଭ । ସାହେବ ମହୋଦୟ ଏ ଉତ୍ତରତକ ଶୁଣି ଆଉ କିଛି ପ୍ରଶ୍ନ କରିବାକୁ ଇଚ୍ଛା କଲେ ନାହିଁ ।

ବାଇ ମାହାନ୍ତି କିନ୍ତୁ ଆଗରୁ କହି ଆସୁଛନ୍ତି - ଯହୁଁ ଯହୁଁ ମଫସଲୀ, ତହୁଁ ତହୁଁ ଓଲୁ । ଅର୍ଥବିଜ୍ଞାନର ନିୟମ ଅନୁସାରେ ଓଲୁଙ୍କ ଉପରେ ବେଶି ମାଡ଼ ହେବା ଦରକାର ।

୩. 'ଗାଆଁ କନ୍ୟା ସିଂଘାଣିନାକୀ' କଥାଟାକୁ ମାର୍ଜିତ ପାଶ୍ଚାତ୍ୟ ପୋଷାକଟାଏ ପିନ୍ଧାଇ ଦେଲେ 'A prophet is not honoured in his own country' ହୁଏ । ଉଦାହରଣସ୍ୱରୂପ ଇତିହାସରୁ ପୁଞ୍ଜା ପୁଞ୍ଜା ଘଟନା ମିଳିବ । ଯେଉଁମାନେ ସଂସ୍କାର କରିବାକୁ ବସନ୍ତି, ଯେଉଁମାନେ ନୂତନ ସତ୍ୟ ଆବିଷ୍କାର କରନ୍ତି ଏପରି ଅଧିକାଂଶ ମହାପୁରୁଷଙ୍କ ଭାଗ୍ୟରେ ଜୀବିତ ଥିଲାବେଳେ କେବଳ ଅପମାନ ଓ ଅପବାଦ ବୃଷ୍ଟି ହୁଏ । ଏଥିର ଉଦାହରଣ ଗାଲିଲିଓ, ସକ୍ରେଟିସ୍, ଯିଶୁ, ଲୁଥର୍ ଇତ୍ୟାଦି । ବର୍ତ୍ତମାନ ସରଜମିନରେ ସାମନ୍ତ ଚନ୍ଦ୍ରଶେଖର । ଏଥିର କାରଣ ଦିନେ ଗୁରୁଶିଷ୍ୟ ସମ୍ବାଦରେ ପଡ଼ିଥିଲା । ଆପଣେ କହିଥିଲେ, ଯେଉଁମାନେ ସଂସାରକୁ ଉନ୍ନତ କରିବାକୁ ଯାଆନ୍ତି, ସେମାନେ ସାଧାରଣଙ୍କ ଅପେକ୍ଷା ଢେର୍ ଉଚ୍ଚ ସ୍ଥାନରେ ଦଣ୍ଡାୟମାନ । ସେମାନଙ୍କୁ ଭବିଷ୍ୟତ୍‌ର ଦିଗ୍‌ବଳୟରେ ସତ୍ୟରୂପ ସୂର୍ଯ୍ୟଙ୍କର ଉଦୟ ଦୃଷ୍ଟିଗୋଚର ହୁଏ । ସେତେବେଳେ ନିମ୍ନଭୂମିସ୍ଥ ଲୋକମାନେ ଆଦୌ ଆଲୋକର ଉପସ୍ଥିତି ଅନୁଭବ କରି ନ ଥାନ୍ତି । ମନେକର, ଶତାଧିକ ଲୋକ ସୂର୍ଯ୍ୟୋଦୟ ପୂର୍ବରୁ ଏକ ବିସ୍ତୃତ ପଡ଼ିଆରେ ଠିଆ ହୋଇଅଛନ୍ତି । ପଡ଼ିଆରେ ଠିଆ ହୋଇଥିବା ଲୋକଙ୍କୁ ଯେତେବେଳେ ଅନ୍ଧାରୁଆ,

ସେତେବେଳେ ଦେଉଳ ଉପରେ ଥିବା ଲୋକଙ୍କୁ ସୂର୍ଯ୍ୟୋଦୟ ଦେଖାଗଲାଣି । ଦେଉଳ ଉପରର ଲୋକ ଚିତ୍କାର କରି ଉଠିଲେ, 'ଆରେ ! ସୂର୍ଯ୍ୟ ଉଇଁଲେଣି, ଦିନ ହେଲାଣି' ତଳେ ଥିବା ଲୋକଯାକ ଚିତ୍କାର କଲେ 'ନା ନା । ସବୁଆଡ଼େ ଅନ୍ଧାର ।' ଉପରର ମନୁଷ୍ୟ ପୁନର୍ବାର ଚିତ୍କାର କରନ୍ତି, 'ତୁମ୍ଭେମାନେ ଦେଖିପାରୁ ନାହଁ ସିନା, କିନ୍ତୁ ସୂର୍ଯ୍ୟ ଉଦୟ ହେଲେଣି ।' ତିନି ତୁଣ୍ଡରେ ଛେଳି କୁକୁର । ତଳର ଲୋକମାନେ ଚିତ୍କାର କଲେ, 'ଆରେ ! ଏଇଟା ବାତୁଳ, ଅନ୍ଧାରକୁ ଆଲୁଅ ବୋଲି କହୁଛି ।' ଉଚ୍ଚ ଶୃଙ୍ଗାରୂଢ଼ ମହାପୁରୁଷଙ୍କ ଚିତ୍କାରର ବିରାମ ନାହିଁ, କିନ୍ତୁ ଶୁଣୁଛି କିଏ ? ଶେଷକୁ ସେ ବିଚାରା ପାଗଳଙ୍କ ମଧ୍ୟରେ ଗଣ୍ୟ ହୁଅନ୍ତି ଓ ସୁବିଧା ଥିଲେ ତଳ ଲୋକଙ୍କଠାରୁ ଢେଲା ଗୋଟିକେତେ ପାଆନ୍ତି; ଢେଲାମାଡ଼ ଖାଇ କେବଳ କାନମୁଣ୍ଡା ଆଉଁଶୁଥାଆନ୍ତି ଓ ମନେ ମନେ ଗୁଣୁଥାଆନ୍ତି - ଈଶ୍ୱର ! ଏମାନଙ୍କୁ ସୁବୁଦ୍ଧି ଦିଅ, ଏମାନେ ଭ୍ରମରେ କଅଣ କରୁଛନ୍ତି, ଜାଣିପାରୁ ନାହାନ୍ତି, ଫେର୍ ପଛେ ଜାଣିବେ ଯେ, Lord ! forgive them, for they know not what they are doing. ସତକୁ ସତ, ଘଡ଼ିକ ବାଦ୍ ସମସ୍ତେ ଦେଖିପାରନ୍ତି ଯେ, ସୂର୍ଯ୍ୟ ଉଦୟ ହେଲେଣି । ସେତେବେଳେ ସମସ୍ତଙ୍କର ଚେତା ପଶେ । 'ଆରେ ! ସତ ତ ! ଆମେ ଭ୍ରମରେ ପଡ଼ିଥିଲୁଁ । ସେ ଯାହା କହୁଥିଲେ ସତ ! ଆହା ! ବିଚାରା କେତେ ମାଡ଼ ଖାଇଲା, କେଉଁ ଆଡ଼େ ଗଲା ! କିନ୍ତୁ ତାଙ୍କୁ ଖୋଜିଲା ବେଳକୁ ସେ ଆଉ ଇହସଂସାରରେ ନ ଥାନ୍ତି । ଢେଲାମାଡ଼ରେ ଭୂମିଶାୟୀ ଓ ମହାନିଦ୍ରାରେ ନିଦ୍ରିତ । ସମସ୍ତେ ବସି ବାହୁନନ୍ତି, ସଭା କରନ୍ତି, ଚାନ୍ଦା ଉଠାନ୍ତି, ଶୋକପତ୍ର ପଢ଼ନ୍ତି, ସ୍ମୃତିଚିହ୍ନ ରଖନ୍ତି; କିନ୍ତୁ ଯାହାଙ୍କ ପାଇଁ ଏତେ କଥା, ସେ ଖତମ୍ ! ଯାହାହେଉ, ମାଡ଼ ଖାଆନ୍ତୁ ପଛକେ, ସେହିମାନଙ୍କ ହେତୁ ସଂସାର ଉନ୍ନତି କରୁଛି । ସେହିମାନଙ୍କ ରକ୍ତରେ ପୃଥିବୀର ଜଳ ପ୍ଲାବିତ ଓ ପୂତ । ସେହିମାନଙ୍କ ଅସ୍ଥି ଉପରେ ସମାଜର ଭିତ୍ତି । ସେମାନେ ସାମସମୟିକ ସମାଜଠାରୁ ଢେର୍ ଅଗ୍ରଗାମୀ ଓ ଅଗ୍ରଦର୍ଶୀ । ସମାଜର ଅଭାବ ସେମାନେ ଏକା ହୃଦୟଙ୍ଗମ କରନ୍ତି ବୋଲି ଚିତ୍କାର କରନ୍ତି, ଚିତ୍କାର କରୁ କରୁ କେହି କେହି କ୍ୱଚିଦ୍ ଚିଡ଼ି ଯାଆନ୍ତି ଓ ପାଟି ସମ୍ଭାଳି ପାରନ୍ତି ନାହିଁ । ତାଙ୍କ ଚିତ୍କାର ବୃଥା ଯାଏ ନାହିଁ, ଦିନେ ହେଲେ କାର୍ଯ୍ୟରେ ଆସେ । ସେ ଚିତ୍କାରର ମାହାତ୍ମ୍ୟ ଯୁଗାନ୍ତବ୍ୟାପୀ ।

ବାଇ ମାହାନ୍ତିଙ୍କୁ ମଧ୍ୟ ଏ କଥାଟା ନୂଆ ନୁହେଁ । କାରଣ ତାଙ୍କର ବ୍ୟକ୍ତିଗତ ମତ ଏହି ଯେ, ଜୀଇଁ ଥାଉ ଥାଉ ମହାପୁରୁଷଙ୍କୁ ପୂଜା କଲେ ସେମାନଙ୍କ ମନ ମୋଟ ହୋଇଯିବ ଓ ତାଙ୍କ ପାଉଣାଯାକ ଆଜହୁଁ ବିବାକ ନିକାଶ କରି ଦେଲେ ପର-ପୁରୁଷଙ୍କ ପାଇଁ କି ସମ୍ବଳ ରହିବ ? ଏଥିଯୋଗୁଁ ସେମାନଙ୍କର ଜୀବିତାବସ୍ଥାରେ ପୂଜା ଅଟକ ।

୪. ଏକ ସମୟରେ ସହରରେ ଗୋଟିଏ ଭାରି ଆନ୍ଦୋଳନ ଲାଗିଥିଲା । ସେ ଆନ୍ଦୋଳନରେ 'ଆପଣେ' * ଯୋଗ ଦେଇଥିଲେ । ଆନ୍ଦୋଳନର ଫଳ କଅଣ ହେଲା,

* ଗୋପବନ୍ଧୁ ଦାସ

ତାହା ପାଞ୍ଜିରେ ଲେଖା ନାହିଁ । ଆନ୍ଦୋଳନଟି କାର୍ଯ୍ୟରେ ପରିଣତ ହେଲେ ଅନେକ ଲୋକଙ୍କ ଦାନାରେ ଧୂଳି ପଡ଼ିବାର ସମ୍ଭାବନା । ସେଥିପାଇଁ ଥୋକେ ସ୍ୱାର୍ଥରକ୍ଷା କରିବାକୁ ଚେଇଁ ଉଠିଲେ । ଲାଗିଲା ତୀବ୍ର ପ୍ରତିବାଦ, ଅନୁବାଦ, ହେତୁବାଦ, ସଂବାଦ, ତୀବ୍ରତର ବିବାଦ ଓ ତୀବ୍ରତମ ବିସମ୍ବାଦ ! ଢିଙ୍କିଶାଳରେ ମଧ ଢେଙ୍କାନାଳର କଥା ପଡ଼ିଗଲା । ଗୁରୁଗୋସେଇଁ କିନ୍ତୁ ମୁରୁକେଇ ହସୁଥାଆନ୍ତି । ବାଇ ମାହାନ୍ତି ମଧ ଗୁରୁଙ୍କ ସଙ୍ଗେ ଏ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେ ବିଚାରିଥିଲେ ଯେ ଧୀରେ ସୁସ୍ଥେ ସବୁ କାର୍ଯ୍ୟ ହାସଲ ହୋଇଯିବ, ଆନ୍ଦୋଳନ ଲାଗିବା ମାତ୍ରକେ ବିନା ବାଧାବିଘ୍ନରେ ଉଦ୍ଦେଶ୍ୟ ସଫଳ ହୋଇଯିବ । ସେ ଏ ପ୍ରତିବାଦ ଓ ବିବାଦ ଦେଖି ଥକ୍କାମରା ହୋଇଗଲେ; ତ୍ରସ୍ତ ବ୍ୟସ୍ତ ହୋଇ ଦିନେ ଗୁରୁଗୋସେଇଁଙ୍କ ନିକଟରେ ଯାଇ ପହଞ୍ଚିଲେ ଓ ବିଭୀଷିକାମୟ ଚିତ୍ରଯାକ ଅଣ୍ଟାରୁ ଗୋଟାଳି କାଢ଼ି ଗୁରୁଙ୍କ ସମ୍ମୁଖରେ ଆଙ୍କିଦେଲେ । ଗୁରୁ ମହାଶୟ ମୁରୁକିହସାଟାଏ ହସି ସ୍ଥିର ଭାବରେ ବସିଥାଆନ୍ତି । ବାଇ ମାହାନ୍ତିଙ୍କ କାତରୋକ୍ତି ଶୁଣିସାରି ଧୀରଭାବରେ କହିଲେ, 'ଟିକିଏ ଥୟ ଧର । ଏତେ ବ୍ୟସ୍ତ ହେଲେ ଚଳିବ କାହୁଁ ? ଯେଉଁ ଆନ୍ଦୋଳନର ଯେତିକି ବେଶି ପ୍ରତିବାଦ ହେବ, ସେଠାରେ ଫଳ ସେତିକି ବେଶି ଆଶା କରାଯାଇପାରେ । ମୁଁ ଟେକାଟିଏ ମାଇଲେ ଜଣେ ଯେବେ ଚିତ୍କାର କଲା, ତେବେ ସିନା ମୁଁ ଜାଣିବି ଯେ, ମୋ ଟେକାଟି ଠିକଣା ଜାଗାରେ ବାଜିଲା ବୋଲି । ଯେତେ ବେଶି ଚିତ୍କାର ଶୁଣିବ, ଜାଣିବ ଯେ, ସେତିକି ବେଶି ଲକ୍ଷ୍ୟଭେଦ ହୋଇଅଛି; ପାଟି ନ ହେଲେ ଜାଣିବ ଯେ ଟେକାଟି ଲକ୍ଷ୍ୟଭ୍ରଷ୍ଟ ହେଲା । ଏଥିରେ ଦୁଃଖିତ ହେବାର କଥା ନାହିଁ, ବରଂଚ ଆନନ୍ଦିତ ହେବାର କଥା । ଟେକାଟିଏ ମାଇଲେଇଁ ବାଜିବ ବୋଲି ଯାହା ଦେହରେ ବାଜିଲା, ସେ 'ଓହୋ' ହୋଇ ପିଠି ଆଉଁଶିଲା ବେଳକୁ ଆମେ ବ୍ୟସ୍ତ ହେବା କିଆଁ ? ଗୁରୁଗୋସେଇଁ ଆଉ ଗୋଟିଏ ଉଦାହରଣ ଦେଲେ - ଯାହାର ପରାକ୍ରମ ଥାଏ, ସେ ପାଟି କରେ ନାହିଁ । ବାଘ କୁକୁରକୁ ଧରିବା ନ୍ୟାୟ । ବାଘର ପରାକ୍ରମ ଅଛି, ଦାନ୍ତ ଅଛି, ସେ ପାଟି କରିବ କିଆଁ ? ସେ ଖଞ୍ଜରେ ଖଞ୍ଜରେ ଛପି ଛପିକା ଗଲା, କୁକୁରକୁ ମାଡ଼ି ବସିଲା; ତଣ୍ଟିରେ ନଖ ବସେଇ ଦେଲା; କୁକୁର ବିଚାରାର ବଳ ନାହିଁ, ଉପାୟ ନାହିଁ, ଆଉ କଅଣ କରିବ, ଚାରିଥର କି ପାଞ୍ଚଥର କେଁ କେଁ ହେଲା । ବାଘ ତ ଧରିଛି । ବାଘ ନିଶ୍ଚିନ୍ତ । କୁକୁର ଯେତିକି କେଁ କେଁ ହେଉଥାଏ, ବାଘ ମନରେ ସେତିକି ଆନନ୍ଦ; ବାଘ ସେତିକି ବେଶି ଗାଲଫୁଲୁକି ମାରି ତଳେ ଲାଙ୍ଗୁଡ଼ ପିଟୁଥାଏ । ବାଇ ମାହାନ୍ତି ଏ ଉଦାହରଣ ଦିଓଟି ହୃଦୟଙ୍ଗମ କରି ସୁସ୍ଥ ମନରେ ଘରକୁ ଫେରିଆଇଲେ ।

ପାଠକ ମହୋଦୟ ! ଉପରତକ ଚାରି ପାଞ୍ଚୋଟି ତାଳପତ୍ରରେ ଲେଖା - ଆମ୍ଭେମାନେ ସୂତ୍ର ଲଗାଇଛୁଁ, ଗୁରୁଶିଷ୍ୟ ସଂବାଦ ବିଡ଼ାରୁ ଆଉ ଥୋଡ଼ାଏ ହାତ କରିବୁଁ ବୋଲି । ଆଉ କିଛି ପାଇଲେ ପରେ ଆପଣମାନଙ୍କୁ ଦେଖାଇବୁଁ ।

## ତ୍ରୟୋଦଶ ବିଡ଼ା

ଦେଶର ଢଗ ଢମାଳିଗୁଡ଼ିକୁ ଯେଉଁମାନେ ଘୃଣାଚକ୍ଷୁରେ ଦେଖନ୍ତି, ସେମାନଙ୍କୁ ଭଲା ପଚାରିଲ, ଇତର ଲୋକମୁହଁରୁ ଶୁଣିଲେ ବୋଲି କଅଣ ଚାଣକ୍ୟଙ୍କୁ ବରାବର ପାସୋରି ପକାଇଲେ । ଢଗ ଢମାଳି ବହୁ ଶତ ବର୍ଷର, ବହୁ ପୁରୁଷାନୁକ୍ରମେ ସଞ୍ଚିତ ମାନବ ପ୍ରକୃତି ଉପରେ ଟୀକା । ଗୋଟିଏ ଗୋଟିଏ ଢଗ ଭିତରେ ଖଣ୍ଡିଏ ଖଣ୍ଡିଏ ପୁସ୍ତକ ଲୁଚି ରହିଥାଏ, କେତେ ଗଭୀର ଉପଦେଶ ଗମ୍ଭୀରୀ ମଧ୍ୟରେ ଛପିଥାଏ; ସେଗୁଡ଼ିକ ନ ଦେଖି ଢଗଗୁଡ଼ିକ ହାଡୁ ମଳିକର ବୁଢ଼ୀମାଆ ଠାରୁ ଶୁଣାଗଲା ବୋଲି ହସରେ ଉଡ଼େଇ ଦେବା କେଡ଼େ ଅନ୍ୟାୟ ! ପାଠକମାନଙ୍କୁ ଏ ଗମ୍ଭୀର ଉପଦେଶ ଦେବାକୁ ପଡ଼ିଲା, କେବଳ କାର୍ଯ୍ୟାନୁରୋଧରେ - ଦୟାରେ ପଡ଼ି ।

ମାଇପେ କହନ୍ତି, 'ପୋଡ଼ିଗଲା ତିଅଣରେ ଆଉ କି ସୁଆଦ ?' ଏହି ଢଗଟି ଆମ୍ଭେମାନେ ପିଲାଦିନୁ ଶୁଣିଆସୁଥିଲୁ, କିନ୍ତୁ ତହିଁର ଗୂଢ଼ ଅର୍ଥ ଆଜିଯାକେ ବୁଝି ପାରି ନ ଥିଲୁ; ଆଜି କିନ୍ତୁ ଅନୁଭବ ଆମ୍ଭମାନଙ୍କୁ ଏହାର ତାତ୍ପର୍ଯ୍ୟ ହୃଦୟଙ୍ଗମ କରାଇଦେଲା । ତୁଳସୀ ଦାସଙ୍କର ଗୋଟିଏ ହିନ୍ଦୀ ଢ଼ୁଆ ପିଲାଦିନେ କାଶୀ ଅବଧାନ କଣ୍ଠସ୍ଥ କରାଇଥିଲେ - ''ସୁନକ ପୀରତି ହେମ ବରାବର, ଦାହେ ତ ଜ୍ୟୋତି ବଢ଼ାଇ; କୁଜନ ପୀରତି କାଚ ବରାବର, ତୁଟେ ନ ଯୋଡ଼ ନ ଯାଇ ।'' ଏ ଦୁନିଆରେ ସୁଜନ ସଂଖ୍ୟା ଭଗ୍ନାଂଶ ନ କଷିଲେ ଧରା ପଡ଼ିବ ନାହିଁ । ସୁଜନ ଗୋଟିଏ ବାଛିବାକୁ ହେଲେ ବରଷକପାଇଁ ଚୁଡ଼ା ଚାଉଳ କାନିରେ ବାନ୍ଧି ବାହାରିବାକୁ ହେବ, କିନ୍ତୁ 'କୁଜନ' ଦରକାର ହେଲେ ଘର ଏରୁଣ୍ଡି ବନ୍ଧ ଡେଇଁ ଯିବାକୁ ହେବ ନାହିଁ । ଏହି ହିସାବରେ ଆମ୍ଭେମାନେ ସାଧାରଣତଃ ଦ୍ୱିତୀୟ ଶ୍ରେଣୀର । ଏହି ଶ୍ରେଣୀର ଲୋକଙ୍କ ମଧ୍ୟରେ ଢଗ ଢମାଳିର ପ୍ରଚଳନ । ଆମ୍ଭେମାନେ ଉଚ୍ଚ ସୋପାନ ଆଡ଼କୁ ନ ଯାଇ ଏହି ଶ୍ରେଣୀକୁ ଲକ୍ଷ୍ୟ କରି କହୁଅଛୁଁ । ଦୁଇ ଜଣଙ୍କ ମନ ମଧ୍ୟରେ ଥରେ ଅମେଳ ହେଲେ ଯାହା, ବିଲୋରି ବାସନ ହାତରୁ ଖସିପଡ଼ିଲେ ତାହା ଆଉ ଯୋଡ଼ି ହେବା କଥା କାଠିକରଁ ପାଠ । ଫେର ଥରେ ପୁନର୍ଜନ୍ମ ନ ହେବା ପର୍ଯ୍ୟନ୍ତ ଭଙ୍ଗା ହୋଇ ପଡ଼ିଥିବ । ଆମ୍ଭମାନଙ୍କର ପ୍ରଭୁଭୃତ୍ୟ ସଂବାଦରୁ କଥାଟା ଧରାପଡ଼ିବ । ବାଇ ମାହାନ୍ତିଙ୍କ ସଙ୍ଗେ ଆମ୍ଭମାନଙ୍କର ଅପଡ଼ ଥିବା କଥା ଆମ୍ଭମାନଙ୍କୁ ବା ଆପଣଙ୍କୁ ନୂଆ କଥା ନୁହେଁ । ଯେପରି କ୍ଷେତ୍ରତତ୍ତ୍ୱରେ କେତେଗୁଡ଼ିଏ ସ୍ୱୀକାର୍ଯ୍ୟ ଓ ସ୍ୱତଃସିଦ୍ଧ ଅଛି, ସେହିପରି ବ୍ୟାକରଣ, ସାହିତ୍ୟ, ଇତିହାସ, ବିଜ୍ଞାନ, ସବୁଥିରେ ଗୁଡ଼ିଏ ସ୍ୱୀକାର୍ଯ୍ୟ ଓ ସ୍ୱତଃସିଦ୍ଧ ଅଛି । ସେଗୁଡ଼ିକ ମୂଳଦୁଆ, ସେଗୁଡ଼ିକ ଉପରେ ଠିଆ ନ ହେଲେ ଉପାୟ ନାହିଁ ।

ସାହିତ୍ୟର ଗୋଟିଏ ସ୍ୱତଃସିଦ୍ଧ କଥା ଆଜି କହୁଅଛି - ''ଯେତେ ପାଠକ ଆମ୍ଭମାନଙ୍କ ଲେଖାର କୌଣସି ଅଂଶ ପଢ଼ିଅଛନ୍ତି ବା ପଢ଼ିବେ, ସେମାନେ ଆମ୍ଭମାନଙ୍କ

ଲେଖନୀପ୍ରସୂତ ସମସ୍ତ ଧାଡ଼ି କଣ୍ଠସ୍ଥ କରି ରଖିଅଛନ୍ତି ଏପରି ଗୋଟିଏ ସ୍ୱତଃସିଦ୍ଧ ସାହିତ୍ୟ କ୍ଷେତ୍ରରେ ନ ଥିଲେ ଗ୍ରନ୍ଥକାରମାନେ 'ପୂର୍ବରେ ବୋଲାଯାଇଅଛି' 'ପୂର୍ବ ପତ୍ରମାନଙ୍କରେ ଆମ୍ଭେମାନେ ଦେଖାଇଅଛୁଁ' ଇତ୍ୟାଦି ବାକ୍ୟମାନ କାହିଁକି ବ୍ୟବହାର କରନ୍ତେ ? ଏହା ନ କଲେ ପୁନରୁକ୍ତି ଦୋଷ ଅନିବାର୍ଯ୍ୟ ହୁଅନ୍ତା ଓ ଢେର ପରିଶ୍ରମ କରିବାକୁ ପଡ଼ନ୍ତା । ଏହି ପରିଶ୍ରମ ଲାଘବ କରିବା ମାନସରେ ପାଠକମାନଙ୍କୁ ଗ୍ରନ୍ଥକାରମାନେ 'ସୁବିଜ୍ଞ, ସୁଚତୁର, ସୁକୁମାରମତି, ପ୍ରିୟ' ଇତ୍ୟାଦି ସମ୍ବୋଧନଦ୍ୱାରା ସାକୁଲାସାକୁଲି କରନ୍ତି । ଏତକ ଆଉଁଶା ନ ପାଉଥିଲେ ପାଠକମାନେ ବୃଥାରେ ଏତେ ଦହଗଞ୍ଜ ହୁଅନ୍ତେ କିଆଁ ? ଗୋଟିଏ ପୃଷ୍ଠାର ଅର୍ଥ ହୃଦୟଙ୍ଗମ କରିବାକୁ ଯାଇ ଭାଗବତ ଗାଦିଟିଯାକ ଘାଣ୍ଟନ୍ତେ କିଆଁ ? ଗ୍ରନ୍ଥକାର ଲେଖିଲେ ତାଙ୍କ ସ୍ୱାର୍ଥ ଲାଗି, ପାଠକେ କାହିଁକି ଏତେ ପରିଶ୍ରମ କରିବାକୁ ଯିବେ ? ପାଠକ ପରିଶ୍ରମ କେବଳ ଗ୍ରନ୍ଥକାରମାନଙ୍କୁ ଚିରବାଧିତ କରିବା ଲାଗି ସିନା । ଏଥିର ବିନିମୟରେ ଯେବେ ପାଠକଙ୍କୁ ପୋଲା ସମ୍ବୋଧନଟାରେ ବୋଧ କରି ଦେଇ କୃତଜ୍ଞତାର ନିଦର୍ଶନ ଦେଖାଇଦେଲେ ତାହାହେଲେ ଏଥୁଁ ବଳି ଆନନ୍ଦର ବିଷୟ କଅଣ ହୋଇପାରେ ? ସେହି ସ୍ୱତଃସିଦ୍ଧର ଅନୁସରଣ କରି ଆମ୍ଭେମାନେ ସ୍ଥିର କରି ନେଲୁଁ ଯେ, ଆମ୍ଭମାନଙ୍କର ପ୍ରତ୍ୟେକ ପାଠକ ସୁବିଜ୍ଞ, ସୁଚତୁର, ସୁବୋଧ ଓ ପ୍ରିୟ । ଅତଏବ ଯେ ଆଜିର ପାଞ୍ଜିବିଡ଼ାକ ପଢ଼ିବେ, ସେମାନେ ପୂର୍ବରୁ ପାଞ୍ଜିର ପୂର୍ବ ବିଡ଼ାଯାକ ନିବିଷ୍ଟ ଚିତ୍ତରେ ପଢ଼ି ହୃଦୟଙ୍ଗମ କରିଅଛନ୍ତି । ସତେ କି ପାଠକମାନେ ଆମ ସୁଖଦୁଃଖର ସାଥୀ ! କେହି କେହି କହିବେ ପାଠକମାନେ ଆମୂଳ ପଢ଼ନ୍ତି ନାହିଁ । କ୍ଷେତ୍ରତତ୍ତ୍ୱର ପଦ୍ଧତି ଅନୁସାରେ, ଆମ୍ଭେମାନେ ପ୍ରମାଣିତ କରିବୁଁ ଯେ, ଯେବେ ସେମାନେ ନ ପଢୁଥାନ୍ତେ, ତାହାହେଲେ ଗ୍ରନ୍ଥକାରମାନେ ତାଙ୍କୁ 'ସୁବିଜ୍ଞ, ସୁଚତୁର' ଇତ୍ୟାଦି ସମ୍ବୋଧନ କରନ୍ତେ କିଆଁ ? ଗ୍ରନ୍ଥକାରମାନେ ଏପରି ସମ୍ବୋଧନ କରନ୍ତି, ଅତଏବ ପାଠକମାନେ ପ୍ରତ୍ୟେକ ପୃଷ୍ଠାକୁ ମନ ଦେଇ ପଢ଼ନ୍ତି ଓ ମନେ ରଖନ୍ତି । ଯାହାହେଉ, ପାଞ୍ଜିର ତ 'ପ୍ରିୟ' ପାଠକମାନେ ପୂର୍ବରୁ ଜାଣିଅଛନ୍ତି ଯେ, ବାଇ ମାହାନ୍ତି ଓ ତାଙ୍କ ଖାମିଦମାନଙ୍କ ମଧ୍ୟରେ ଘନିଷ୍ଠତାର ଅବସ୍ଥା ବିଶେଷ ଆଶାପ୍ରଦ ନୁହେଁ । ଏଥିମଧ୍ୟରେ ମାହାନ୍ତିଏ ଜଣେ ନୂଆ ଗୁରୁଙ୍କଠାରେ ହାବୁଡ଼ିଥିବା ସମ୍ବାଦ ପୂର୍ବ ସଂଖ୍ୟାରେ ଲେଖା ଅଛି । ପରସ୍ପରରେ ଶୁଣିଲୁ ଯେ, କଥାପ୍ରସଙ୍ଗରେ ବାଇ ମାହାନ୍ତି ତାଙ୍କ ଗୁରୁଙ୍କ ନିକଟରେ ଆମ୍ଭମାନଙ୍କର ମହାନ୍ତିଙ୍କ ପ୍ରତି ଅନିଚ୍ଛା ଥିବାର ପ୍ରକାଶ କରିଅଛନ୍ତି ଓ ଗୁରୁଙ୍କ ସୁପାରିସ ବଳରେ ସହରର ଜଣେ ଓକିଲଙ୍କ ନିକଟରେ 'ମୋହରିର' ହୋଇ ରହିବାର ଉଦ୍ୟମ ଭିତରେ ଭିତରେ ଲଗାଇଅଛନ୍ତି । ସହର ପ୍ରତି ଯାହାଙ୍କର ପୂର୍ବରୁ ଘୃଣା, ଓକିଲମାନଙ୍କ ସମ୍ବନ୍ଧରେ ଯାହାଙ୍କ ମତ ଅତି ଉଚ୍ଚ ନୁହେଁ, ସେ ଯେ କେବଳ ଆମ୍ଭମାନଙ୍କ ଉପରେ ଦାଉ ସାଧିବାକୁ ସହରରେ ରହି ଓକିଲଙ୍କ ଅଧୀନତା ସ୍ୱୀକାର କରିବେ, ଏ କଥା ପ୍ରଥମେ ଆମ୍ଭମାନଙ୍କୁ କିମିତି କିମିତି ଅଡୁଆ ଲାଗିଲା । ଆମ୍ଭମାନଙ୍କ ଦଳରୁ ଜଣେ ବନ୍ଧୁଙ୍କୁ ସହରକୁ

ପଠାଇ ସହରର ହାଲଚାଲ ବୁଝିଲୁଁ, ଆଉ ସନ୍ଦେହ କରିବାର କିଛି କାରଣ ରହିଲା ନାହିଁ । ଆମ୍ଭମାନଙ୍କ ଦଳର ବନ୍ଧୁ ଦିନାକେତେ ସହରରେ ରହି ସବୁ ଓର ଉଣ୍ଡି ଆସିଅଛନ୍ତି ଓ ଦିନା ଚାରି ପାଞ୍ଚ ବିଚାରାଳୟମାନଙ୍କରେ ବୁଲି ବାଇ ମାହାନ୍ତିଙ୍କ ଭବିଷ୍ୟଦ୍ ପ୍ରଭୁଙ୍କ ଗୁଣଗ୍ରାମ ଓ କଚେରିର ହାଲଚାଲ ସବୁ ବୁଝି ଆସିଛନ୍ତି । ପାଠକମାନେ ମଧ୍ୟ ସେ ହାଲଚାଲରୁ କିଛି କିଛି ଉଆକବ୍ ହେବେ ।

ବାଇ ମାହାନ୍ତି ଯେଉଁ ଅର୍ଥରେ ମୋହରିର ହେବାକୁ ବସିଅଛନ୍ତି, ସେ ଅର୍ଥ ଆମ୍ଭେମାନେ ବୁଝି ପାରି ନ ଥିବାରୁ ମନେ ମନେ ତାଙ୍କ ପ୍ରତି ଅନୁକମ୍ପା ପ୍ରଦର୍ଶନ କରି କହୁଥିଲୁଁ ଯେ, ''ବୁଢ଼ା ଦିନେ ବିଚରାକୁ କାଗଜ କଲମ ଧରି ରାମ୍ପିବାକୁ ପଡ଼ିଲା; ବିଚରା କେତେ କଷ୍ଟ ପାଇବଟି ।'' କିନ୍ତୁ କଥାଟା ବନ୍ଧୁଙ୍କ ପ୍ରସାଦରୁ ଖୋଲାସା ହୋଇଗଲା ଓ ଆମ୍ଭେମାନେ ବାଇ ମାହାନ୍ତିଙ୍କ ବୁଦ୍ଧିକୁ ପ୍ରଶଂସା ନ କରି ରହିପାରିଲୁ ନାହିଁ । ବୁଝିଲୁ ଯେ, ମାହାନ୍ତିଙ୍କୁ କାଗଜ କଲମରେ କିଛି ଲେଖାପଢ଼ି କରିବାକୁ ପଡ଼ିବ ନାହିଁ, କେବଳ ଖାମିଦଙ୍କ ନିକଟରେ ଆଣି ମାମଲା ମକଦ୍ଦମା ଜୁଟାଇବେ ଓ ତାଙ୍କ ପଣି (ଏ ପଣି କେତେ ଅଂଶର, ତାହା ବର୍ତ୍ତମାନ ଆମ୍ଭେମାନେ ସ୍ଥିର କରିବାକୁ ଏକାନ୍ତ ଅକ୍ଷମ ଓ ଅନିଚ୍ଛୁକ) ରୋକ୍ ଠୋକ୍ କଡ଼ା ଗଣ୍ଡା କରି ସନ୍ଧ୍ୟା ସୁଦ୍ଧା ଗଣିନେବେ । ପାଠ ମଧ୍ୟ ଡାକୁଛି, 'ପାଣି ଖାଇବ ଛାଣି, କଉଡ଼ି ନେବ ଗଣି ।' ବାଇ ମାହାନ୍ତି ଏ କଥା ଠିକ୍‌ଠାକ୍ କରି ସହରରୁ ଫେରିଆସି ଆମ ଗ୍ରାମରେ ପହଞ୍ଚିଲେ । କିନ୍ତୁ ଏ ସମ୍ବନ୍ଧରେ ଆମ୍ଭମାନଙ୍କୁ ରାମ କି ବିଷ୍ଣୁ କିଛି ପାଟି ଫିଟାଇଲେ ନାହିଁ । ଆମ୍ଭମାନଙ୍କୁ ପାଞ୍ଜି ବିଡ଼ାଏ ଦେଇ ସାରିଲାରୁ ଦିନେ ଓଳିକେ ଆମ୍ଭେମାନେ ତାଙ୍କୁ ପାଖକୁ ଡାକି ସାକୁଲେଇ କରି ପିଠି ଆଉଁଶି ଦେଲୁଁ ଓ କହିଲୁଁ, 'ଯେ ହେଉ ଆମକୁ ଲୁଚାଉଛ କିଆଁ ? ତୁମ୍ଭେ ବର୍ତ୍ତମାନ ଯେଉଁ ଚାକିରି କରିବାକୁ ଯାଉଛ, ତୁମେ ସେପରି ଚାକିରିରେ ରହିଲେ ଭଲ ହେବ ବୋଲି ଆମ୍ଭେମାନେ ପୂର୍ବରୁ କଥାବାର୍ତ୍ତା ହୋଇଥିଲୁଁ । କାରଣ, ତୁମଭଳି ଆମ ତରଫରେ ଜଣେ ଲୋକ ସହରରେ ରହିଲେ ଅସମୟରେ ଆମ୍ଭମାନଙ୍କର ବହୁତ ଉପକାର ହେବ । କିନ୍ତୁ ଏ କଥା ଭରସା କରି ତୁମକୁ କେହି କହି ପାରୁ ନ ଥିଲୁଁ; କାଳେ ତୁମେ ବିଚାରିବ ଯେ, ଏମାନେ ମତେ ତଡ଼ିବାକୁ ବସିଅଛନ୍ତି । କିନ୍ତୁ ଯେତେବେଳେ ତୁମେ ନିଜେ ଯୋଗାଡ଼ କରି ଓକିଲ ମୋହରିର ହେବାକୁ ଠିକଣା କରିଛ, ତୁମର ସାଧୁ ଚେଷ୍ଟାରେ ଆମର ପୂର୍ଣ୍ଣ ସହାନୁଭୂତି ଅଛି; କିନ୍ତୁ ଆମର ଏତିକି କଥା ଯେ, ଆମକୁ ପାସୋରି ଦେବ ନାହିଁ ।'' ବିରାଡ଼ିକୁ 'ଆସ୍ ପୁଷ୍' ବୋଲି ଡାକି ପିଠି ଆଉଁଶି ଦେଲେ ବିରାଡ଼ିର ନ୍‌ଖଯାକ ଯେପରି ଅନ୍ତର୍ଦ୍ଧାନ ହୋଇଯାଏ ଓ ନଖରେ ତମକୁ ରାମ୍ପୁଡ଼ିବାର ଭୟ ନ ଥାଏ, ସେହିପରି ବାଇ ମାହାନ୍ତି ଏତକ ଆଉଁଶା ପାଇଲାରୁ ପାଣି ହୋଇଗଲେ ଓ ଉତ୍ତର କଲେ - ''ଆଜ୍ଞା ! ଦିନେ ହେଲେ ତ ଏ ପେଟରେ ଆପଣମାନଙ୍କ ଦାନା ପଡ଼ିଛି, ନିନ୍ଦା କଲେ ପ୍ରଭୁଦ୍ରୋହୀ ହେବି, ମତେ ତିନି କାଳରେ ପାର ଯିବ ନାହିଁ । ମୁଁ କଚେରିରେ ଥିବାଯାକେ ଆପଣମାନଙ୍କର ଅଗଗୋଡ଼ରେ

କଣ୍ଟା ବାଜିବ ନାହିଁ, ମାମଲା ମକଦ୍ଦମାରେ କଉଡ଼ି ଗଣିବାକୁ ପଡ଼ିବ ନାହିଁ ।'' ଆମ୍ଭେମାନେ ହସି ହସି କହିଲୁଁ, ''ମାମଲା ମକଦ୍ଦମା ହେଲାବେଳେ ଭଲା ଯାହା ଉପକାର କରିବ କରିବ, କିନ୍ତୁ ଆମର ଏତିକି ମାଗୁଣି ରହିଲା ଯେ, ଆମେ ମଫସଲୀ, ସହରର ଓ କଚେରିର ହାଲଚାଲ ଆମକୁ ବିଶେଷ କିଛି ଜଣା ନାହିଁ, ତୁମେ ଏଣିକି ବିବ୍ ସହରରେ ରହିଲ, ଫୁରୁସତ୍‌ବେଳେ ଆମ୍ଭମାନଙ୍କୁ କଚେରିରେ ସମ୍ବାଦତକ ଦେଉଥିବ ।'' ମାହାନ୍ତି ସସ୍ନେହଭାବରେ ଉତ୍ତର କଲେ, ''ମୁଁ ସିନା ଅଦାଲତରେ ରହିବି, ମୋ ଲେଖନପତ୍ର ମୋ ସାଙ୍ଗ ଛାଡ଼ିବ ନାହିଁ । ଯେତେବେଳେ ଯାହା ଟିପିବି, ଆଣି ଦେବି ଯେ ।'' ଆମ୍ଭେମାନେ ଏଣିକି ଅଙ୍ଗୀକାର ପାଇ ଆପଣଙ୍କୁ କୃତାର୍ଥ ମନେ କଲୁ ଓ ନିବିଷ୍ଟ ଚିତ୍ତରେ ଏ ସଂଖ୍ୟା ପାଞ୍ଜିତକ ପାଠ କଲୁଁ ।

## ଗୁରୁଶିଷ୍ୟ-ସଂବାଦ । (ଦ୍ୱିତୀୟାର୍ଦ୍ଧ)

୧. ସମ୍ମିଳିତ ଚେଷ୍ଟା ଓ ସଭାସମିତିର ଉପକାରିତା ତଳଲିଖିତ ଉଦାହରଣରୁ ବୁଝାଯିବ । ଜ୍ୟୋତ୍ସ୍ନାଯୁକ୍ତ ରାତ୍ରିରେ ସମୁଦ୍ର ବକ୍ଷ ସ୍ଥିର ଥିଲାବେଳେ ସେଥିରେ ଗୋଟିଏ ଚନ୍ଦ୍ରର ପ୍ରତିବିମ୍ବ ପଡ଼ିଥାଏ, କିନ୍ତୁ ସମୁଦ୍ରର ଲହରୀ ଆରମ୍ଭ ହେଲେ ଦେଖିବ ଯେ, ସମୁଦ୍ରର ବକ୍ଷ ସହସ୍ର ସହସ୍ର ଚନ୍ଦ୍ରବିମ୍ବରେ ପୂର୍ଣ୍ଣ ହୋଇଯାଏ, ପ୍ରତ୍ୟେକ ଲହରୀରେ ଗୋଟିଏ ଗୋଟିଏ ଚନ୍ଦ୍ର ବିକଶିତ ହୁଏ । ଉଦାହରଣ ଦ୍ୱାରା ଏତିକି ବୁଝାଯାଉଅଛି ଯେ ଅନେକ ଲୋକଙ୍କର ପରସ୍ପର ସମ୍ମେଳନ ହେଲେ ଭାବର ଆଦାନ ପ୍ରଦାନ ଓ ବିକାଶ ନିମନ୍ତେ ସୁବିଧା ହୁଏ  ଯାହା ପୂର୍ବେ ଏକ ଚନ୍ଦ୍ରରୂପ ଧାରଣ କରିଥିଲା, ତାହା ବର୍ତ୍ତମାନ ସହସ୍ର ଚନ୍ଦ୍ର ଆକାରରେ ଜଗତକୁ ମତାଇଦିଏ । ଏ ସମ୍ବନ୍ଧରେ ଗୁରୁଙ୍କଠାରୁ ଆଉ ଗୋଟିଏ ଉଦାହରଣ ମିଳିଅଛି - ପର୍ବତର ଭିନ୍ନ ସ୍ଥାନରେ ପ୍ରସ୍ତରଖଣ୍ଡମାନ ପଡ଼ି ରହିଅଛି, ଅସରାଏ ଭାରି ବର୍ଷା ହେଲା, ପର୍ବତରୁ ପାଣି ଗଡ଼ି ଗୋହିରି ନାଳରେ ସୁଅ ଚାଲିଲା, କେତେ ପ୍ରସ୍ତରଖଣ୍ଡ ସେ ସ୍ରୋତରେ ପଡ଼ି ତଡ଼ି ହୋଇ ଗଡ଼ି ଆସିଲା । କ୍ରମେ କ୍ରମେ ସ୍ରୋତଗୁଡ଼ିକ ନଦୀରେ ପରିଣତ ହେଲା । ନଦୀ ସ୍ରୋତର ସଙ୍ଗେ ସଙ୍ଗେ ପଥରଗୁଡ଼ିକ ମଧ୍ୟ ଗଡ଼ି ଗଡ଼ି ଛିଡ଼ିଗଲା । ପ୍ରଥମେ ଯେଉଁ ପ୍ରସ୍ତରଖଣ୍ଡମାନ ବହୁକୋଣବିଶିଷ୍ଟ ହୋଇ ପର୍ବତ ଉପରେ ଥିଲା, ଆଜି କେତେ ଦିନ ପରେ ସେହି ପ୍ରସ୍ତରଖଣ୍ଡମାନ ନଦୀବାଲି ମଧ୍ୟରେ ଦେଖିଲା ବେଳକୁ ତାହାର କୋଣ ଓ ବନ୍ଧୁରତା ଲୋପ ପାଇ ପ୍ରସ୍ତରଖଣ୍ଡମାନ ଗୋଲ ଓ ମସୃଣ 'ବାଲିଗରଡ଼ା'ରେ ପରିଣତ ହୋଇଅଛି । ଏକା ଘୋଷରାକେ ବଡ଼ ସାନ ସମସ୍ତଙ୍କର 'ଦିମାକ୍' ଭାଙ୍ଗିଗଲା ଓ ସମସ୍ତେ ଏକା ଗୋଟାଳିଆ ଆକାର ଧାରଣ କଲେ । ସମ୍ମେଳନ ଦ୍ୱାରା ବଡ଼ ସାନ ସମସ୍ତଙ୍କର ଅନ୍ତାଧିକ ବନ୍ଧୁରତା ନଷ୍ଟ ହୋଇ ମସୃଣତା ହୁଏ; ଯେଉଁ ପଥର ପୂର୍ବରେ ଦେହର କୌଣସି ସ୍ଥାନରେ ବାଜିଗଲେ ପୋଷେ ରକ୍ତ ବହୁଥିଲା, ଆଜି

ତାହା ବାଲିଗରଡ଼ା ଆକାର ଧାରଣ କରି ନୟନସୁଖ ଓ ସ୍ପର୍ଶସୁଖ ଉତ୍ପାଦନ କରୁଅଛି । ସେଥିରେ ସୁନା ମଜା ହୋଇ ଚିକ୍‌କଣ ହେଉଅଛି ।

୨. ମନୁଷ୍ୟ ସମାଜର ବା ଜାତିର ଇତିହାସ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ, ଏମାନଙ୍କ ଜୀବନର ଗତି ଘଣ୍ଟାର ପେଣ୍ଡୁଲମ୍‌ର ଗତି ସଙ୍ଗେ ସମାନ । ଥରେ ଏକ ପ୍ରାନ୍ତକୁ ଯାଇ ସୀମାରେ ପହଞ୍ଚିଲେ ପୁନର୍ବାର ସେଠାରୁ ଅନ୍ୟଆଡ଼େ ଗତି କରି ବିପରୀତ ଦିଗର ସୀମା ପର୍ଯ୍ୟନ୍ତ ଆସେ । ପ୍ରତ୍ୟେକ ଆଘାତର ପ୍ରତିଘାତ ଅଛି । ପ୍ରତ୍ୟେକ ରକ୍ଷଣଶୀଳ ଆନ୍ଦୋଳନର ପରିବର୍ତ୍ତନଶୀଳ ପ୍ରତିଆନ୍ଦୋଳନ ଅବଶ୍ୟମ୍ଭାବୀ । ହସି ହସି ମନୁଷ୍ୟ ଲୋତରା କୋତରା ହୋଇଗଲେ ପଛକୁ କାନ୍ଦି ପକାଏ । ଗୋଟିଏ ବସ୍ତୁର ଏକ ଦିଗରେ ଗତି ହେଉଥିବା ଦେଖିଲେ ସ୍ଥିର କରିବ ଯେ, ଯଦି ଏହି ଗତି ନିରୂପିତ କାଳ ପର୍ଯ୍ୟନ୍ତ ଲାଗିରହେ ତାହାହେଲେ, ସୀମାରେ ପହଞ୍ଚିଲେ ପୁନର୍ବାର ଏଥିର ପ୍ରତିଗତି ହେବ । ଧର୍ମର ଇତିହାସରେ ଦେଖ- ମହାପାପୀମାନେ ପରମ ଧାର୍ମିକ ପାଲଟିଛନ୍ତି । ରତ୍ନାକର ଦସ୍ୟୁ ସୀମା ପର୍ଯ୍ୟନ୍ତ ଯାଇ ସେଠାରୁ ଫେରି ବାଲ୍ମୀକି ମହାମୁନି ହେଲେ । ଶେଷସୀମାକୁ ନ ଯାଇ ଯେ ଅଧବାଟରୁ ଫେରନ୍ତି ତାଙ୍କ ପରିବର୍ତ୍ତନରେ ଅଧିକ ଆସ୍ଥା ହୁଏ ନାହିଁ । ମନ ବୋଧ ନ ହେବା ପୂର୍ବରୁ ଯେଉଁ ପରିବର୍ତ୍ତନ ହୁଏ, ତହିଁର ଫଳ ସନ୍ତୋଷଜନକ ନୁହେଁ । କୌଣସି କାର୍ଯ୍ୟର ସୀମାରେ ନ ପହଞ୍ଚିଲେ ସେଥିର ଉପକାର ସମ୍ୟକ୍ ରୂପେ ହୃଦୟଙ୍ଗମ ହୋଇ ନ ପାରେ । ସମ୍ୟକ୍ ହୃଦୟଙ୍ଗମ ନ ହେଲେ ଦୃଢ଼ତମ ବିଶ୍ୱାସ ମନରେ ବଦ୍ଧମୂଳ ହୋଇ ନ ପାରେ ।

୩. ଅଧିକାଂଶ ଲୋକେ ଲୋକମତକୁ ଭାରି ଡରନ୍ତି, କାଳେ ଲୋକେ କଅଣ କହିବେ ପରା ! କିନ୍ତୁ 'ଲୋକମତ' ଜିନିଷଟା କିମାକାର ବସ୍ତୁ, ଭଲା କେତେ ଲୋକ ତଦାରଖ କରନ୍ତି ? ଏହି ଜାନୁଆର୍‌କୁ କିଏ କେତେ ଭାବରେ ଚିତ୍ରି ଯାଇଅଛନ୍ତି । ରାମଚନ୍ଦ୍ର ସୀତାଙ୍କୁ ନିର୍ବାସନ ଦଣ୍ଡ ବିଧାନ କରିଥିଲେ, କେବଳ ଏହି ଜନ୍ତୁକୁ ଭୟ କରି । ଲୋକାପବାଦ ଓ ଲୋକମତର ପରାକ୍ରମ ଢେର୍ ବେଶି, କିନ୍ତୁ ଟିକିଏ ଥୟ କରି ଦେଖିଲେ ଜାଣିପାରିବ ଯେ, ଏ ଗୋଟିଏ 'ହୋ' । ଗୋଟିଏ ତାରକୁ ଦୁଇଆଡ଼େ ଟାଣି ବାନ୍ଧିଦିଅ, ଗୋଟିଏ ଅଂଶର ଟିକିଏ ଟଂ କରି ଆଘାତ କରିଦିଅ ଦେଖିବ ଯେ, ଶବ୍ଦଟି ତାରତମାମ ବ୍ୟାପିଯିବ ଓ ତାରଟିଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଶବ୍ଦମୟ ହୋଇଯିବ । ପୂର୍ବରୁ ଏଥିର ଗୋଟିଏ ଉଦାହରଣ ଅଛି, ତାହା ଅବଶ୍ୟ ଅଧିକାଂଶ ପାଠକ ଜାଣନ୍ତି ।

ଯେଉଁମାନେ ଜାଣନ୍ତି ନାହିଁ, ସେମାନଙ୍କ ଉପକାର ନିମନ୍ତେ ପୁନରୁକ୍ତି ଦୋଷ ମାର୍ଜନୀୟ । ଏକ ରାଜାଙ୍କ ଉଆସର ଜଣେ ଧୋବା ଥିଲା । ସେ ଧୋବାର ଲୁଗାବୁହା ଗଧଟିର ନାମ ବୁଧିଆ । ଦିନେ ସେ ଗଧଟି ମରିଗଲା, ଧୋବାର କାର୍ଯ୍ୟ ଅଚଳ ହେଲା, ସେ ଗଧକୁ ବାହୁନି କରି ଧୋବା କାନ୍ଦୁଥାଏ । ରାଜାଙ୍କର ଜଣେ ପାଖଲୋକ ଧୋବାକୁ

କାନ୍ଦିବାର କାରଣ ପଚାରିବାରୁ ଧୋବା କାନ୍ଦି କାନ୍ଦି ଉତ୍ତର କଲା, 'ବୁଧିଆଟି ମରିଗଲା' । ଭୃତ୍ୟ ଏହା ଶୁଣି କାନ୍ଦି କାନ୍ଦି ନଅରକୁ ଆସି ସମସ୍ତ ଭୃତ୍ୟଙ୍କୁ କହିଲା, 'ବୁଧିଆଟି ମରିଗଲା,' ଭୃତ୍ୟଯାକ ସମସ୍ତେ ବୁଧିଆକୁ ବାହୁନେଇ କାନ୍ଦିଲେ; ରାଣୀମହଲରେ ଏ ଖବର ପହଞ୍ଚିଲାରୁ ରାଣୀଯାକ ମଧ୍ୟ ବୁଧିଆ ନାଁ ଧରି କାନ୍ଦିଲେ । ରାଜା ଶୁଣିଲେ, ସେ ମଧ୍ୟ ବୁଧିଆ ଯୋଗୁଁ କେତେ କାନ୍ଦିଲେ, ନଅରବ୍ୟାପୀ କୋଳାହଳ ବୁଧିଆ ଯୋଗୁଁ ପଡ଼ିଗଲା । ଯେଉଁଠାରେ ଶୁଣ, ବୁଧିଆର ବିୟୋଗ ହେତୁ ଶୋକ । ଏହି ଶୋକସମ୍ବାଦ ମନ୍ତ୍ରୀଙ୍କ କାନରେ ପଡ଼ିବାରୁ ମନ୍ତ୍ରୀ ନଅରକୁ ଆସି ଦେଖିଲେ, ଏପରି ସମାଚାର ! ରାଜାଙ୍କୁ ପଚାରିଲେ, ଯେଉଁ ବୁଧିଆପାଇଁ କାନ୍ଦୁଅଛନ୍ତି, ସେ ବୁଧିଆ କିଏ ? ରାଜା ଇତସ୍ତତଃ ହୋଇ ରାଣୀମାନଙ୍କଠାକୁ ଖବର ଦେଲେ, ବୁଧିଆ କିଏ ? ରାଣୀମାନେ ଭୃତ୍ୟ ମହଲକୁ ସମ୍ବାଦ ଦେଲେ, ଭୃତ୍ୟମାନେ ପ୍ରଥମ ଭୃତ୍ୟକୁ ପଚାରିଲେ; ପ୍ରଥମ ଭୃତ୍ୟ ଉପାୟନ୍ତର ନ ଦେଖି ଧୋବା ନିକଟକୁ ଯାଇ ଶେଷରେ ସ୍ଥିର କରି ଆସିଲା ଯେ ଧୋବାର ମୃତ ଗଧଟିର ନାମ ବୁଧିଆ ! ସେ ସମ୍ବାଦ ରାଜାଙ୍କୁ ଏତଲା ହେବାରୁ ଅବଶେଷରେ ଶୋକର ରୋଳ କମିଗଲା । ଅଧିକାଂଶ ଲୋକାପବାଦ, ଜନମତ ଏହିପରି ଉପାଦାନରେ ଗଠିତ । ଆମର ଏ କଥାକୁ ବିଶ୍ୱାସ ନ କରି ସୁଦ୍ଧା ସାଧାରଣତଃ ପରୀକ୍ଷା କରିଦେଲେ ସନ୍ଦେହ ତୁଟିଯିବ । ତୁମ୍ଭେ ଦାଣ୍ଡରେ ପାଟିକରି ଦଉଡ଼ ''ଆରେ ! ଚୋର ଗଲାରେ ! ଆରେ ଚୋର ରେ'' ଦେଖିବ, ଦଣ୍ଡକ ମଧ୍ୟରେ ଶତାଧିକ ଲୋକ ତୁମର ଅନୁଯାତ୍ରୀ ହେବେ ଓ ଚିତ୍କାର କରିବେ । କିନ୍ତୁ ଶତକଡ଼ା ଜଣେ ସୁଦ୍ଧା ତୁମ ପଛରେ ଦଉଡ଼ିବା ପୂର୍ବରୁ ତୁମ୍ଭଙ୍କୁ ପ୍ରଥମେ ଚୋରର ବୃତ୍ତାନ୍ତ ବା ତଥ୍ୟ ପଚାରିବାକୁ ଯିବ ନାହିଁ । ଅଧିକାଂଶ ଲୋକାପବାଦ, ଜନରବ, ଢେଙ୍କେଢାର, ଜନମତ କେବଳ ଅନ୍ଧବିଶ୍ୱାସ, ଚିନ୍ତାଶୂନ୍ୟ, ଅନୁମାନ, ବିଚାରହୀନ ଅନୁସରଣର ଫଳ ।

୪. ସଂସାରରେ ଯାହା ଉଲ୍ଲେଖଯୋଗ୍ୟ ହୋଇଅଛି ବା ହେବ, ତାହା 'ଚାରିଦଉଡ଼ିକଟା'ଙ୍କ ଦ୍ୱାରା । 'ଚାରିଦଉଡ଼ିକଟା' ନ ହେଲେ ପଦେପଦେକେ ସ୍ୱାର୍ଥନାଶର ଭୟ ଥାଏ । ଯେଉଁ ସ୍ଥାନରେ ସ୍ୱାର୍ଥନାଶର ଭୟ ଅଛି, ସେଠାରେ ନିଃସ୍ୱାର୍ଥ ଓ ନିର୍ଭୀକ କାର୍ଯ୍ୟର ମାତ୍ରା ଢେର୍ ବଢ଼େ । ଯେଉଁ ଲୋକ ଦୁଃଖରେ ପଡ଼ି ନାହିଁ, ସେ ଦୁଃଖର ମାତ୍ରା ଓ କାର୍ଯ୍ୟ କଳ୍ପନା ସାହାଯ୍ୟରେ ଅନୁଭବ କରିପାରିବ ନାହିଁ । ପୃଥିବୀର ଅଧିକାଂଶ ମହାପୁରୁଷ ଦୁଃଖୀରଙ୍କୀ ଘରର ପିଲା ସେଥିରେ ଗୋଟିଏ ତାଲିକା ପ୍ରସ୍ତୁତ କଲେ ୧୦।୨୦ ପୃଷ୍ଠା ହେବ । ଦାରିଦ୍ର୍ୟ ଭୋଗରୁ ଅନେକ ଉଚ୍ଚ ଶିକ୍ଷା ଲାଭ କରାଯାଏ । ବେଶି ବଡ଼ ଲୋକେ ଦାରିଦ୍ର୍ୟ ଉପାଦାନରେ ଗଢ଼ା । ଅନୁଭବରେ ଦେଖିବ, ଯାହାର ସ୍ୱାର୍ଥହାନି ହେବାର ଭୟ ଅଛି, ସେ ନିଶ୍ଚେ କାମରେ ଖଇଚା କରିବ । ଚାରିଦଉଡ଼ିକଟାଙ୍କର ସ୍ୱାର୍ଥନାଶର ଭୟ ନାହିଁ । ଅତଏବ ସବୁ କାର୍ଯ୍ୟରେ ସେମାନେ ନିର୍ଭୟ । ଯେ ମରିବାକୁ

ପ୍ରସ୍ତୁତ, ତାକୁ ଦୁର୍ଭିକ୍ଷ କଅଣ ଡରାଇବ ? ସୁନାର ଯେ ଜ୍ୟୋତି ଦେଖୁଛ, ତାହା ତୁହାକୁତୁହା ପୋଡ଼ିହେବାର ଫଳ ସିନା ।

୫. ଅଧିକାଂଶ ନବ୍ୟଶିକ୍ଷିତ ଯୁବକଙ୍କୁ ଦେଖିଲେ 'ଶଫରୀ ଫରଫରାୟତେ' ଶ୍ଳୋକାଂଶଟି ମନେପଡ଼େ । ଆଧୁନିକ ଶିକ୍ଷାର ଗୋଟିଏ ପ୍ରଧାନ ଦୋଷ, ଗଭୀରତାର ଅଭାବ । ଏ ଶିକ୍ଷାରେ ଆମ୍ଭେମାନେ ଯେତେ ଜ୍ଞାନ ଉପାର୍ଜ୍ଜନ କରୁ, ତାହା ଅଧିକାଂଶ ସ୍ଥଳରେ ଆଦୌ ଗଭୀର ନୁହେଁ । ଆଧୁନିକ ଶିକ୍ଷାରେ 'ପୋଥି ବାଇଗଣ' 'ବାଡ଼ି ବାଇଗଣ'ର ପ୍ରଭେଦଟି ବରାବର ଥାଏ । ଶିକ୍ଷା ସଙ୍ଗେ ସଙ୍ଗେ ହୃଦୟର ବିଶ୍ୱାସ ଦୃଢ଼ୀଭୂତ ନ ହେଲେ ସେ ଶିକ୍ଷାରେ କୁଫଳ ଛଡ଼ା ସୁଫଳ ଫଳେ ନାହିଁ । ଶିକ୍ଷାଦୋଷରୁ ଆମ୍ଭେମାନେ ଯାହା ଶିକ୍ଷା କରୁଁ, ତାହା ଜୀବନରେ କାର୍ଯ୍ୟରେ ପରିଣତ କରିପାରୁ ନାହିଁ ଓ ଜୀବନଟା କେବଳ ଲକ୍ଷ୍ୟବିହୀନ ଭାବରେ କଟାଉଁ । ମନରେ ଦୃଢ଼ ବିଶ୍ୱାସ ନ ଥାଇ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ଫଳ ବିଭୀଷିକାମୟ ହୋଇଉଠେ । ଶିକ୍ଷକମାନେ ମଧ୍ୟ ଯାହା ଶିକ୍ଷା ଦିଅନ୍ତି, ତହିଁରେ ସେମାନଙ୍କର ନିଜର ପୂର୍ଣ୍ଣ ବିଶ୍ୱାସ ନ ଥାଏ । ଶିକ୍ଷା ଦେଲାବେଳେ କାର୍ଯ୍ୟକ୍ଷେତ୍ରରେ ଶିକ୍ଷକ ଓ ଛାତ୍ରମାନେ ଭିନ୍ନ ଭିନ୍ନ ପୋଷାକ ପିନ୍ଧନ୍ତି । ଶିକ୍ଷା ଗ୍ରହଣ ସଙ୍ଗେ ସଙ୍ଗେ ଶିକ୍ଷିତତତ୍ତ୍ୱ ହୃଦୟରେ ବଦ୍ଧମୂଳ ହେବା ଆବଶ୍ୟକ । ଶିକ୍ଷା ଛଳରେ ଆମ୍ଭେମାନେ ଯେତେ ଉପଦେଶ ପାଉଁ, ତାହା କେତେ ଜଣ ପୂର୍ଣ୍ଣ ହୃଦୟରେ କାର୍ଯ୍ୟରେ ପରିଣତ କରିବାକୁ ବସନ୍ତି ? ଆଧୁନିକ ଶିକ୍ଷିତମାନଙ୍କ ଜୀବନର ଉଚ୍ଛୃଙ୍ଖଳତାର ପ୍ରଧାନ କାରଣ ଏହି । ଉଚ୍ଚଶିକ୍ଷା ପାଇଲେ ସତ, କିନ୍ତୁ ଦୃଢ଼ ବିଶ୍ୱାସ ନ ହେବାରୁ କାର୍ଯ୍ୟକ୍ଷେତ୍ରରେ ଅଶିକ୍ଷିତମାନଙ୍କ ଅପେକ୍ଷା ବେଶି ଦୋନାବୁଡ଼ିଆ ହେଲେ । ବିଶେଷତଃ ସଂସାରରେ ପ୍ରବେଶ କରିବାର କାଳ ଅତ୍ୟନ୍ତ ଗୋଳମାଳିଆ ଓ ଅତି ସାବଧାନ ହେବାର ସମୟ । ସେ ସମୟକୁ ଆଧୁନିକ ଶିକ୍ଷାଗୁଣରୁ ଅଧିକାଂଶ ଯୁବକଙ୍କର ମନକୁ ଗଭୀରତା ଆଦୌ ଛୁଇଁ ନ ଥାଏ । କାମ କରିବାକୁ ବସି ହାତ ହତିଆର ପ୍ରସ୍ତୁତ କରି ନ ରଖିଥିଲେ ବନାମ୍ ଶିକ୍ଷକ ପଢ଼ାଇବାକୁ ବସିଲେଣି, କିନ୍ତୁ 'ରୁଟିନ୍' ପ୍ରସ୍ତୁତ ହୋଇ ନାହିଁ ।

୬. କେତେକ ଲୋକ କହନ୍ତି, ଅମୁକଙ୍କର ଅମୁକ ହାକିମଙ୍କ ସଙ୍ଗେ ବିଶେଷ ଘନିଷ୍ଠତା ଅଛି, ସେ ଆମ ନିମନ୍ତେ ଉକ୍ତ ହାକିମଙ୍କ ପାଖରେ ପଦେ ନିରୋଳାରେ ସୁପାରିସ କରିଦେଲେ ଆମ କାମଟା ହାସଲ ହୋଇଯିବ । ସତେ କି ଯେପରି ସାଧାରଣ ନିୟମର ନିପାତନ; କିନ୍ତୁ ଟିକେ ଥୟ କରି ଭାବିଲେ ଜଣାଯିବ ଯେ, ତାହାଦ୍ୱାରା ଉକ୍ତ ପରିଚିତ ହାକିମଙ୍କୁ ଗୋଟିଏ ଲମ୍ବା ଚଉଡ଼ା ସାର୍ଟିଫିକେଟ୍ ଦିଆଯାଏ । ମନେକରନ୍ତୁ, ହାକିମ ଜଣେ ବିଚାରପତି, ବିଚାରାସନରେ ବସି କେତେ ଲୋକଙ୍କ କପାଳରେ ଗାରଟାମାନ କଲମ ଓ କାଳିରେ ଟାଣି ଦେଉଅଛନ୍ତି, ସେ ହାକିମଙ୍କ ନିକଟରେ ମୋର ଗୋଟିଏ ମକଦ୍ଦମା ଅଛି । ମୋର ମଧ୍ୟ ତାଙ୍କ ସଙ୍ଗେ ବିଶେଷ ଘନିଷ୍ଠତା ଅଛି । ମୁଁ ଯେବେ ସେହି ଘନିଷ୍ଠତାର ଅପବ୍ୟବହାର କରି ହାକିମଙ୍କ ଘରଠାରେ ବା ଖାସ କାମରାରେ କିମ୍ବା ସନ୍ଧ୍ୟା ଭୋଜି ବା

ବଗିଚାଭୋଜି (Garden party) କରି ହାକିମଙ୍କୁ ମୋ ପକ୍ଷରେ ପଦେ ଅଧେ ସୁପାରିସ କରେଁ, ସେ ହାକିମଙ୍କର ଯେବେ ଟିକିଏ ବୁଦ୍ଧି ବିବେକ ଥାଏ ଓ ଯେବେ ସେ ପ୍ରକୃତ ବିଚାରପତି ପଦର ଯୋଗ୍ୟ ହୋଇଥାଆନ୍ତି, ତାହାହେଲେ ମିସଲରେ ମକଦ୍ଦମାର ବିଚାର ନ କରୁଣୁ ସ୍ଥିର କରିନେବେ ଯେ, ମକଦ୍ଦମାରେ ମୋର ନିଶ୍ଚୟ ହାରପଟ । ହାରପଟ ନ ହୋଇଥିଲେ, ମୋର ଜିତାପଟ ହୋଇଥିଲେ ମୁଁ ହାକିମଙ୍କ ଘରେ ଓ ବାଡ଼ି ଦୁଆରେ ତାଙ୍କ କାନ ଫୁଙ୍କନ୍ତି କିଆଁ ? ଆମ ଗୁରୁଗୋସେଇଁ କହିଅଛନ୍ତି, ଯେଉଁଠାରେ ଦେଖିବ, ଜଣେ ତୁମ ଆଗରେ ଅପରପକ୍ଷର ଅନୁପସ୍ଥିତିରେ କାନ ଫୁଙ୍କିବାକୁ ଆସିଲା, ଜାଣିବ ଯେ, ତାହାର ମକଦ୍ଦମା ଡିସ୍‌ମିସ୍ ହେବାର ଯୋଗ୍ୟ ଯାହାର ଜିତାପଟ ସେ କେଉଁ କାନରେ ଫୁଙ୍କିବାକୁ ଯିବ ନାହିଁ କିମ୍ବା ଏକତରଫା କରି ମକଦ୍ଦମା ଡିଗ୍ରୀ ନେବାକୁ ବସିବ ନାହିଁ । ଯେଉଁମାନଙ୍କର ନିର୍ବଳ ପକ୍ଷ, ସେହିମାନେ ଏକା ଅନ୍ୟାୟ ଉପାୟରେ ମାମଲା ଜାଣିବାକୁ ବସନ୍ତି, ଯାହାର ସବଳ ପକ୍ଷ, ସେ ଅନ୍ଧାରୁଆ ଢେଲା ମାରିବାକୁ ବସେ ନାହିଁ, ସେ ଚାହେଁ ଖୋଲା ଅଦାଲତରେ, ଆଲୋକରେ, ସାଧାରଣଙ୍କ ସମକ୍ଷରେ ନ୍ୟାୟ ବିଚାର । ଚୋରମାନେ ଅନ୍ଧାର ରାତି ଖୋଜି ବୁଲନ୍ତି, ମୂଲିଆମାନେ ଫରଚା ଦିନ ଆଲୁଅ ଖୋଜନ୍ତି । ଇତ୍ୟାଦି ।

## ଚତୁର୍ଦ୍ଦଶ ବିଡ଼ା

ଏଥି ମଧ୍ୟରେ ବାଇ ମାହାନ୍ତି ଆମ୍ଭମାନଙ୍କ ନିକଟରୁ ଯାଇ ସହରର ସ୍ୱନାମଖ୍ୟାତ ରାମ୍‌ଲାଲବାବୁ ଓକିଲଙ୍କ ନିକଟରେ ମୋହରିର ମୁକରି ହୋଇ ରହିସାରିଲେଣି । କିନ୍ତୁ ଆମ୍ଭମାନଙ୍କର କେଡ଼େ ଉଚ୍ଚ ଆଶାଟା ସେ ଚୂନା କରିଦେଲେ । ଓକିଲ ସିରସ୍ତାର ସମସ୍ତ ହାଲଚାଲ ଆମ୍ଭମାନଙ୍କୁ ଯୋଗାଇବେ ବୋଲି ସେ ପ୍ରତିଶ୍ରୁତ ହୋଇଥିଲେ, କିନ୍ତୁ ସିରସ୍ତାରେ ରହିବାର କେତେଦିନ ମଧ୍ୟରେ ଜମିନ୍ ଆସ୍‌ମାନ ବଦ୍ଳିଗଲେ । କାର୍ଯ୍ୟବଶତଃ ଆମ୍ଭମାନଙ୍କ ମଧ୍ୟରୁ ଜଣେ ବନ୍ଧୁ ସହରକୁ ଯାଇଥିଲେ ବାଇ ମାହାନ୍ତିଙ୍କୁ ଦେଖି ତାଙ୍କ ପ୍ରତିଶ୍ରୁତ ସମ୍ବାଦ ମାଗିବାରୁ ମାହାନ୍ତିଏ ତାଙ୍କ ହାତକୁ ସମନ୍ ଫାରମ, ନିଲାମ ଇସ୍ତାହାର କୋରଖି ଉଆରଣ୍ଟ ଇତ୍ୟାଦି ଗୋଛାଏ ବଢ଼ାଇ ଦେଲେ । ଆମ୍ଭମାନଙ୍କ ବନ୍ଧୁ ଏଗୁଡ଼ିକ ଦେଖି ଅବାକ୍ ! ବନ୍ଧୁ କହିଲେ, 'ଆମେ ଏଗୁଡ଼ିକ ପୂର୍ବରୁ ଦେଖିଥିଲୁ, ଏଠାରେ ଓକିଲ ସିରସ୍ତାର ସବିଶେଷ ସମ୍ବାଦ ଯୋଗାଇବା ପାଇଁ ପରା ତୁମ୍ଭଙ୍କୁ କହିଥିଲୁ ? ବାଇ ମାହାନ୍ତି ବନ୍ଧୁଙ୍କ ହାତ ଧରି ଓକିଲଙ୍କ ସିରସ୍ତାକୁ ନେଇଯାଇ ବସ୍ତାନିରୁ କେତେଗୁଡ଼ିଏ ସହିମୋହରି ଫଏସଲା ନକଲ କାଢ଼ି ପଢ଼ି ଶୁଣାଇ ଦେଲେ । ବନ୍ଧୁ ଟିକିଏ ବିରକ୍ତ ହୋଇ ସେଠାରୁ ଉଠି ଆସିଲେ । ବାଇ ମାହାନ୍ତି ମର୍ମ ବୁଝି ପାରି ସଙ୍ଗେ ସଙ୍ଗେ ଖଣ୍ଡେଦୂର ବାଟ ବଳାଇ ଦେବାକୁ ଆସିଲେ ଓ କହିଲେ, 'ସବୁ ବ୍ୟବସାୟରେ ଗୁଡ଼ିଏ ଗୁପ୍ତ ରହସ୍ୟ ଥାଏ । ସେଗୁଡ଼ିକ ଆଖଡ଼ାବାଲାଙ୍କ

ଛଡ଼ା ଅନ୍ୟମାନଙ୍କର ପାଇବାର ଅଧିକାର ନାହିଁ । ବାହାରେ ପ୍ରଘଟ ହେଲେ ବ୍ୟବସାୟଟି କ୍ରମେ କ୍ରମେ ମାଟି ହୋଇଯିବ । ଏ ଏକ କଥା, ଆଉ ଗୋଟିଏ କାରଣ ମଧ୍ୟ ଅଛି, କଚେରିର ହାଲଚାଲ ସବୁ ଟିପି ମୁଁ 'ଓକିଲବାବୁଙ୍କ ବସ୍ତାନି' ବୋଲି ଖଣ୍ଡିଏ ବହି ଛପାଇବାର ଉଦ୍‌ଯୋଗରେ ଅଛି । ସେଗୁଡ଼ିକ ତୁମ୍ଭମାନଙ୍କୁ ଦେଲେ ମୋର ଦିʼପଇସା ରୋଜଗାରରେ ବାଧା ପଡ଼ିବ ।' ଏକଥା ଶୁଣି ପୂର୍ବର ମଫସଲିଆ ବାଇ ମାହାନ୍ତିଙ୍କୁ ବର୍ତ୍ତମାନର ସଦର ମାମଲତକାର ବାଇ ମାହାନ୍ତିଙ୍କ ସଙ୍ଗେ ବନ୍ଧୁ ମନେ ମନେ ତୁଳନା କରୁଥାଆନ୍ତି । ଏହି ସମୟରେ ଜଣେ ମଫସଲୀ ଲୋକ କାଖରେ ଜକା ହୋଇଥିବା ଗାମୁଛା ମଧ୍ୟରୁ ଖଣ୍ଡିଏ ସମନ୍ କାଗଜ ବାହାର କରି କଚେରି ହତା ମଧ୍ୟସ୍ଥ ବରଗଛମୂଳେ ବାଇ ମାହାନ୍ତି ବନ୍ଧୁଙ୍କଠାରୁ ଖସିଯାଇ ଉକ୍ତ ଲୋକ ନିକଟରେ ପହଞ୍ଚିଲେ । ପହଞ୍ଚିବା ସଙ୍ଗେ ସଙ୍ଗେ ସେ ଲୋକଟି ଭକ୍ତି ସହକାରେ ମାହାନ୍ତିଙ୍କୁ ପ୍ରଣାମ କଲା ଓ ସେ ଦୁହିଁଙ୍କର କଥାବାର୍ତ୍ତାରୁ ବୋଧ ହେଲା, ଯେପରିକି ସେ ଦୁହେଁ ଅନେକ ଦିନର ପରିଚିତ । ବନ୍ଧୁ ଆମ୍ଭମାନଙ୍କ ବନ୍ଧୁ ବାଇ ମାହାନ୍ତିଙ୍କ ପଛରେ ଗୋଡ଼ାଇଥାଆନ୍ତି । ପ୍ରଥମେ ବାଇ ମାହାନ୍ତି ଉକ୍ତ 'ମକ୍‌କେଲ'କୁ କେତେଗୁଡ଼ିଏ ନୀତିପୂର୍ଣ୍ଣ ଉପଦେଶ ଦେଇ ସଂସାରର ଅସାରତା, ନିଃସ୍ୱାର୍ଥ ପରୋପକାରର ମୂଲ୍ୟ, କଳିକାଳର ପ୍ରବଞ୍ଚନା; ସାଧାରଣ ଓକିଲମାନଙ୍କର ଅପାରଗତା, ଟରଣିମାନଙ୍କ କୁହୁକ ଇତ୍ୟାଦି ନିପଟ ଓଡ଼ିଆ ଭାଷାରେ ବ୍ୟାଖ୍ୟା କରି ପରିଶେଷରେ ନିଜର ଖାମିଦ ରାମଲାଲବାବୁଙ୍କର ସତ୍ୟନିଷ୍ଠା, ନିଃସ୍ୱାର୍ଥ ପରୋପକାର, କାର୍ଯ୍ୟକୁଶଳତା ଓ ହାକିମମାନଙ୍କ ସଙ୍ଗେ ଘନିଷ୍ଠତା, ପୂର୍ବର ସମସ୍ତ ମକଦ୍ଦମାରେ ବାବୁଙ୍କର ଜୟଲାଭ ଇତ୍ୟାଦି ସମ୍ବନ୍ଧରେ ବକ୍ତୃତା କଲେ ।

ପାଠକ ଅବଧାନ ! କ୍ଷମା କରିବେ, ଏଗୁଡ଼ିକ ପଢ଼ି ଯେବେ ଆପଣ କଚେରି ହତାରେ ଏପରି ଜଣେ ଲୋକକୁ ଦେଖିବା ମାତ୍ରକେ ବକ୍ତୃତା କରି ବସନ୍ତି, ତାହାହେଲେ ସର୍ବନାଶ ! ଆପଣ ଅବଶ୍ୟ ବନଶୀରେ ମାଛ ଧରିବା କେବେ ଦେଖିଥିବେ । ଯେବେ ପୂର୍ବରୁ ନ ଦେଖିଥିବେ, ତେବେ ବର୍ତ୍ତମାନ ପାଞ୍ଜିପଢ଼ା ବନ୍ଦ କରି ଥରେ ଦେଖି ଆସିଲେ ଏ ଉପମାଟି ବୁଝିବାକୁ ବିଶେଷ କଷ୍ଟ ହେବ ନାହିଁ । ସବୁ ମାଛ ସବୁ ଥୋପ ଗିଳନ୍ତି ନାହିଁ, କେତେ ମାଛଙ୍କ ନିମନ୍ତେ ପୋକ, କେତେ ମାଛଙ୍କ ନିମନ୍ତେ ଚିଆ, କେତେକଙ୍କ ନିମନ୍ତେ ଅଟାର ଗୁଳା । କେତେକଙ୍କ ନିମନ୍ତେ ବେଙ୍ଗ, କେରାଣ୍ଡି, ଏପରି ବନଶୀରେ ଗୁନ୍ଥିବାକୁ ହୁଏ । ପ୍ରଥମରେ ଚରା ଠକ୍ ନ କରି ବନଶୀରେ ମାଛ ମାରିବାକୁ ଆଶା କରିବା ବିଡ଼ମ୍ବନା । ତାପରେ କେତେକ ମାଛ 'ସାତଚକଟା, ପୋଲୁହ ଘଣ୍ଟା, ବିଭୂତିଭୂଷଣ, ଗାଲିସିକଟା' ଅଛନ୍ତି, ସେ କୌଣସି ପ୍ରକାର ବନଶୀର ପାଖ ମାଡ଼ିବେ ନାହିଁ, ଅଥଚ ଅନ୍ୟ ମାଛଗୁଡ଼ିକୁ ହୁରୁଡ଼ା କରିବେ । ଏତକ ସ୍ଥିର କରିବା ସହଜ ନୁହେଁ । ଏତକ ସ୍ଥିର କଲେ ସୁଦ୍ଧା ବନଶୀ ସଂଲଗ୍ନ ଯେଉଁ ମୟୂରପକ୍ଷୀର କାଠି (ତେରେଣ୍ଡା) ଜଳ ଉପରେ ଠିଆ ହୋଇ ଭାସୁଥାଏ, ତାହା ପ୍ରତି ସୁନିପୁଣ ଦୃଷ୍ଟି ରଖିବା ଆବଶ୍ୟକ । ମାଛ ଥୋପ ଢୋକିବା ସମୟ ସେହି

କାଠରୁ ସ୍ଥିର କରିବାକୁ ହେବ । ସେହି ସମୟଟି ଉଣ୍ଡି ଝିଙ୍କାଟାଏ ନ ଦେଲେ ମାଛ ଚାରାତକ ଗର୍ଭସାତ୍ କରି ଚମ୍ପଟ୍ !

ମକ୍‌କେଲ୍‌ମାନେ ହେଲେ ଓକିଲମାନଙ୍କର ପରମ ଉପାଦେୟ ସାମଗ୍ରୀ । ସେଗୁଡ଼ିକ ସଂଗ୍ରହ କରିବା ନିମନ୍ତେ ଟରଣି ବା ଚଳିତ କଥାରେ 'ମୋହରିର' ଆବଶ୍ୟକ । ଯେପରି ସବୁ ମୃଗଙ୍କ ଠାରେ କସ୍ତୁରୀ ନ ଥାଏ, ସେପରି ସବୁ ମୋହରିମାନେ ଯେ 'ଟରଣି' ହୋଇ ପାରିବେ, ଏହା ଅସମ୍ଭବ । ମାଛଟିଏ ପାଣିରେ ଦେଖିବା ମାତ୍ରକେ ପ୍ରଥମେ ସେ କି ଜାତୀୟ, ତତ୍‌ପରେ ଉପାଦେୟ କି ନା, ତତ୍‌ପରେ ବନଶୀରେ ଧରା ପଡ଼ିବାର ସମ୍ଭବ କି ନା, ତାପରେ ଚରା ଢୋକିଲାଣି କି ନାହିଁ, ବନଶୀ ଝିଙ୍କିବାର ସମୟ ହେଲାଣି କି ନାହିଁ, ବଡ଼ ମାଛ ହୋଇଥିଲେ ହଠାତ୍ ବନଶୀ ଖଡ଼ାକୁ ନ ଝିଙ୍କି ତାକୁ କେତେ ସମୟ ଖେଳାଇଲେ ସେ ଆୟତ୍ତାଧୀନ ହେବ, ଇତ୍ୟାଦି ଇତ୍ୟାଦି ଅନେକ ବିଷୟରେ ବହୁଦର୍ଶିତା ଲାଭ କରିବାକୁ ହେବ । ସେହିପରି ଟରଣିମାନଙ୍କୁ ଯେଉଁମାନେ ଘୃଣ୍ୟଚକ୍ଷୁରେ ଚାହାନ୍ତି, ସେମାନଙ୍କ ସମ୍ବନ୍ଧରେ ଆମ୍ଭମାନଙ୍କର ଉଚ୍ଚମତ ନୁହେଁ । ମକ୍‌କେଲମାନେ ମତ୍ସ୍ୟଜାତୀୟ, ସେମାନଙ୍କୁ କଦରକୁ ଆଣିବାକୁ ଓସ୍ତାଦି ହାତ ଥିବା ଆବଶ୍ୟକ । ଏ ସବୁ ପର୍ଯ୍ୟାଲୋଚନା ନ କରି କଚେରି ବରଗଛ ମୂଳେ ଯାହା କାଖତଳେ କାଗଜ ବିଡ଼ାଏ ଦେଖିବେ; ତାକୁ ଯେବେ ଝିଙ୍କିବେ, ତାହାହେଲେ ଅପ୍ରସ୍ତୁତ ହେବେ । ସରକାର ବାହାଦୁର ଆଇନ କରିଅଛନ୍ତି ଯେ, ଯେଉଁମାନେ ଓକିଲମାନଙ୍କ ନିକଟରେ ମାମଲା ହାଜର କରାଇ ଜୀବିକା ନିର୍ବାହ କରନ୍ତି, ସେମାନେ ଦଣ୍ଡନୀୟ ହେବେ । ଏ ହିସାବରେ ଧରିବାକୁ ଗଲେ, ନିଜର ଅନ୍ୟ କୌଣସି ସମ୍ପର୍କ ନ ଥାଇ ଯେ ଅନ୍ୟର ମାମଲା ମକଦ୍ଦମା ଓକିଲଙ୍କଠାରେ ପହଞ୍ଚାଇ ପୁରସ୍କାର ନିଅନ୍ତି, ସେହିମାନେ ଟରଣି । ଟରଣିମାନଙ୍କୁ କଚେରି ହତା ମାଡ଼ିବାକୁ ମନା; କିନ୍ତୁ ଆଇନର ସେ ବିଧିଟି ଏଡ଼ିବାର ତିନୋଟି ବାଟ ଅଛି । ୧ମ - ଦରଖାସ୍ତ ଲେଖାଳି ନବସିନ୍ଧା ହୁଅ, ଭିତରେ ଭିତରେ ଟରଣିପଣିଆ କରୁଥାଅ । ୨ୟ - ଓକିଲଙ୍କ ମୋହରିର ଲିଷ୍ଟରେ ନାମ ଲେଖାଅ, କାଗଜ କଲମ ନ ଧର ପଛକେ ଆଉ ଭାବନା ନାହିଁ । ୩ୟ - ଯୋଗାଡ଼ କରି ଆପଣା ନାମରେ ଖଣ୍ଡିଏ ଦୁଇଖଣ୍ଡ କ୍ଷମତାପତ୍ର ହାସଲ କର, କିଛି କଥା ହେଲେ ଅମୁକଙ୍କ ଆମ୍ ମୁକ୍ତାର ବୋଲି ତ୍ରାହି ପାଇବା । ଏ ତିନି କଥାରୁ କୌଣସି କଥା କଲେ ଦିନ ଦିପହରେ ହାକିମଙ୍କ ଆଖିରେ, ଆଇନ୍ ଆଖିରେ, ସରକାରଙ୍କ ଆଖିରେ ଧୂଳି ପକାଇ, ଧେଣ୍ଡୁରା ଦେଇ ଚୋରି କରୁଥାଅ, ଭାବନା ନାହିଁ । ସେଥିପାଇଁ କହିଲୁଁ, ପୂର୍ବରୁ ଏ କଥାଗୁଡ଼ିକ ଯୋଗାଡ଼ ନ କରି, ମକ୍‌କେଲ ପ୍ରଭୃତି ପର୍ଯ୍ୟାଲୋଚନା ନ କରି ହଠାତ୍ କଚେରିରେ ବକ୍ତୃତା କରି ବସିଲେ ସର୍ବନାଶ । କେହି ପାଠକ ପଚାରି ପାରନ୍ତି, ଏତେଗୁଡ଼ିଏ ଦାୟିତ୍ୱ ମୁଣ୍ଡରେ ନେଇ କି ଲାଭ ? ଲାଭଟା ଅବଶ୍ୟ ବୁଝିପାରିଲେ କେହି କେହି ଚତୁର ପାଠକ ବାଇ ମାହାନ୍ତିଙ୍କ ପନ୍ଥା ଅନୁସରଣ କରିବେ, ଏହି ଆଶାରେ ଲାଭର ମାତ୍ରାଟି ଟିକିଏ ଖୋଲାସା କରି ଲେଖିବାକୁ ହେଲା । ମନେକରନ୍ତୁ, ଆପଣଙ୍କ

ସଙ୍ଗେ ଜଣେ ମକ୍‌କେଲର ସାକ୍ଷାତ୍ ହେଲା । ସେ ବିଚରା ନିପଟ ମଫସଲିଆ, ଦିନେ କଚେରି ମାଡ଼ି ନାହିଁ । ଆପଣ ବେଳ କାଳ ଉଣ୍ଡି ତାହାର ହିତାକାଂକ୍ଷୀ ବା ମହାପ୍ରସାଦ ବନ୍ଧୁ ହୋଇ ବସିଲେ, ତାକୁ ଅନେକ ଉପଦେଶ ଦେଲେ; ମାମଲା କରିବାର ପ୍ରଣାଳୀ ଓ ଜୟଲାଭ କରିବାର ବାଟ ଦେଖାଇ ଦେଲେ ଓ ଶେଷରେ ନେଇ ରାମଲାଲବାବୁଙ୍କ ନିକଟରେ ହାଜର କରାଇଲେ । ଓକିଲବାବୁ ଦସ୍ତଖତ୍‌ଟାଏ ମାରି ଦେଇ ଟଙ୍କାଟିଏ ପାଇଲେ । କିନ୍ତୁ ଥରେ ଭଲା ଅଙ୍କ କଷି ଦେଖନ୍ତୁ, ଦସ୍ତଖତ୍ ପାଇଁ ମିହନ୍ତର ଅନୁପାତ ଧରିବାକୁ ହେଲେ ଓକିଲବାବୁଙ୍କର ଉକ୍ତ ଟଙ୍କାଟିରେ କେତେ ପଡ଼ିଲା ? ତୁମେ ମକ୍‌କେଲକୁ କୁହୁକ ଲଡ୍ଡୁ ଖୁଆଇ ହାତ କଲ, ସେଥିପାଇଁ ଯାହା ପଦ୍ମତୋଳା, ଯାହା ଗଦଗିଳା, ଯାହା ମୁହଁକଲଡୁ ଖରଚ, ତାହା ତୁମ ମନ ଜାଣେ । ମକ୍‌କେଲକୁ ହାତ କରିସାରି ସୁଦ୍ଧା ଅନ୍ୟ ଓକିଲଙ୍କ ନିକଟକୁ ନେଇଥିଲେ ରାମଲାଲବାବୁ ଆକାଶକୁ ଚାହିଁ ବସିଥାଆନ୍ତେ । ଅତଏବ ତୁମ ଅନୁଗ୍ରହରୁ ସେ ଆଜି ଟଙ୍କାଟିଏ ପାଇଲେ । ଏକ ଅର୍ଥରେ ତୁମେ ରାମଲାଲବାବୁଙ୍କର ଅନ୍ନଦାତା ହେଲ । ପାଠ ଡାକୁଛି, 'ଅନ୍ନଦାତା, ଜନ୍ମଦାତା, କନ୍ୟାଦାତା ଇତ୍ୟାଦି ଗୁରୁ ।' ସେହି ପାଠ ମଧ୍ୟ ଡାକୁଛି, 'ଯାହା ପାଇବ ତା ଦ୍ୱି ଭାଗ କର, ଯତନେ ଦେବ ଗୁରୁଙ୍କ ଛାମୁର ।' ସେ ହିସାବ ଧରିବାକୁ ଗଲେ ଆଜି ତୁମ ପ୍ରସାଦରୁ ରାମଲାଲବାବୁ ଯେଉଁ ଟଙ୍କାଟି ପାଇଲେ, ସେ ଟଙ୍କାରେ ତୁମର ଆଠଅଣା ନ୍ୟାଯ୍ୟ ପ୍ରାପ୍ୟ । ଏ ପ୍ରାପ୍ୟରେ କାହାର ହାତ ଦେବାର ଅଧିକାର ନାହିଁ । ଏ ପ୍ରାପ୍ୟ ହେଲା ସାଧାରଣ ପ୍ରାପ୍ୟ । ଟଙ୍କାରେ ଅଧୁଲିଏ ରାମଲାଲବାବୁ ଦେଲେ, ଅନ୍ୟ ଓକିଲଙ୍କଠାକୁତ ଯାଇଥିଲେ ସେ ମଧ୍ୟ ଦିଅନ୍ତେ । କିନ୍ତୁ ଅନ୍ୟ ଓକିଲଙ୍କ ନିକଟକୁ ନ ଯାଇ ରାମଲାଲବାବୁଙ୍କ ନିକଟକୁ ଆସିଲ, ଏଥିପାଇଁ ଅନ୍ତତଃ ଦୋଅଣିଟିଏ ଦରକାର । ଏପରି ଗାଏ ଦଶପଣି, ଛଅପଣି । କେତେ ବର୍ଷ ହାଡ଼ଭଙ୍ଗା ପରିଶ୍ରମ କରି, ଜୀବନଟା ମାଟିକରି, ମୁଣ୍ଡଝୋଳ ଭୂଇଁରେ ମାରି, ଗଦା ଗଦା ଟଙ୍କା ଖରଚ କରି, କେତେ ପରୀକ୍ଷା ଟପି ଶେଷରେ ଓକିଲାତିଖଣ୍ଡ ପାସ୍ କରି ତୁମର ଛଅପଣ; କିନ୍ତୁ ଏଣେ ପରିଶ୍ରମ ନ କରି ଚାଟଶାଳୀ ପାଠ ପଢ଼ି ନିଶ ନ କଅଁଳୁ କଅଁଳୁ କାନରେ କଲମଟିଏ ଖୋଷି 'ପଦ୍ମତୋଳା ବୋଲି' ଶିଖି ଆସି କଚେରିରେ ଠିଆ ହୋଇଯାଅ, ତୁମର ଦଶପଣ । ସୁଯୋଗ ଛାଡ଼ିବାର ନୁହେଁ । ଏ ଦଶପଣ କାଳି ବାସି ସଉଦା ନୁହେଁ, ରୋକଠୋକ୍ ଦସ୍ତବଦସ୍ତ ସନ୍ଧ୍ୟା ନ ବୁଡୁଣୁ ପ୍ରାପ୍ତି । ଏତିକିରେ ମଧ୍ୟ ଶେଷ ନୁହେଁ । ଏହାଛଡ଼ା ଦୋଳ ଦଶହରାକୁ ଯୋଡ଼, ବକ୍‌ସିସ, ମିଠେଇହାଣ୍ଡି, ବିଭା ନିମିତ୍ୟକୁ ନଗଦ ଟଙ୍କା ମକ୍‌କେଲମାନଙ୍କଠାରୁ କେତେ ଛଳନାରେ ରୋସମ, ଆମଲେଗାନ୍ ଇତ୍ୟାଦି ଅଛି । ସେଗୁଡ଼ିକ ସମସ୍ତ ଖଡ଼ି ଧରି କଷିଲେ ତୁମେ ରାମଲାଲବାବୁଙ୍କ ଗୋସେଇଁ-ବାପାଙ୍କ ସ୍ଥାନ ଅଧିକାର କରିବ । ଏହିସବୁ କାରଣ ଅନୁସନ୍ଧାନ କରି ଆମ୍ଭେମାନେ ସ୍ଥିର କରିଅଛୁଁ ଯେ, ଟରଣି ବ୍ୟବସାୟ ଓକିଲ ପେସା ଅପେକ୍ଷା ଢେର ସ୍ୱାଧୀନ ଓ ଅର୍ଥକର । ଅଳ୍ପ ବିଦ୍ୟା ବୁଦ୍ଧି ଥାଇ ଯେବେ ପୁଞ୍ଜା ପୁଞ୍ଜା ବିଦ୍ୱାନ ଓ ବୁଦ୍ଧିମାନ୍ ପାଠୁଆଙ୍କୁ ଗୋଡ଼ତଳେ

ରଖିଲ, ଏହାଠାରୁ ବଳି ସୁଖର ବିଷୟ କଅଣ ହୋଇପାରେ ? ଯେଉଁ ବ୍ୟବସାୟରେ ଏତେ ଲାଭ, ଏତେ ଅଧିକାର ଓ ଏତେ ସୁଖ, ସେ ବ୍ୟବସାୟଜୀବୀଙ୍କୁ ପ୍ରାତଃ ପ୍ରଣାମ - ବାଇ ମାହାନ୍ତି ଏ ସମ୍ବନ୍ଧରେ ଖଣ୍ଡିଏ ପୁସ୍ତକ ଛାପିବାକୁ ଇଚ୍ଛୁକ ଥିବା ସ୍ଥଳରେ ଆମ୍ଭେମାନେ ସେଗୁଡ଼ିକ ପ୍ରକାଶ କରି ଏ ପ୍ରସଙ୍ଗରେ ମାହାତ୍ମ୍ୟ ନଷ୍ଟ କରିବା ଯୁକ୍ତିଯୁକ୍ତ ମନେ କରୁ ନାହୁଁ ।

ଯାହାହେଉ ସେ ମଫସଲୀ ଲୋକକୁ ଆଶ୍ୱାସନା ବାକ୍ୟ କହି ମକଦ୍ଦମାରେ ବେଶି କିଛି ପଇସା ଖରଚ ନ ହେବା ଓ ନିଶ୍ଚୟ ଜୟଲାଭ ହେବାର ସ୍ଥିର ଜବାବ ଦେଇ ବାଇ ମାହାନ୍ତି ଉକ୍ତ ଲୋକଙ୍କଠାରୁ ସମାନ କାଗଜଖଣ୍ଡିକ ହାତ କରି ସିଧାଏ ସିଧାଏ ଖାମିଦଙ୍କ ସିରସ୍ତାକୁ ଚାଲିଲେ । ସିରସ୍ତାରେ ପହଞ୍ଚି ସଙ୍ଗେ ସଙ୍ଗେ ଆଠଅଣିଆ କୋଟଫିସ ମାରି ଖଣ୍ଡିଏ ଓକାଲତ୍‌ନାମା ଲେଖାଗଲା । ରାମଲାଲବାବୁଙ୍କ ଟଙ୍କାଟିଏ ସଲାମି ଦେଇ ଓକାଲତ୍‌ନାମାରେ ଦସ୍ତଖତ୍ କରାଇ ଆଣିଲେ । ସେଥିରୁ ମକ୍‌କେଲକୁ ଆବଶ୍ୟକ ଖରଚର ତାଲିକା ଦେଇ ବସିଲେ - ଅମଲା ରୋସମ ଟଙ୍କା, ଲେଖେଇ ଟଙ୍କା ଚୋରା ନକଲ ଟଙ୍କା, ଚିହ୍ନୋଟ ଟଙ୍କା, ମହଲତ ଦରଖାସ୍ତ ଟଙ୍କା, ମୁଲତବି ଖରଚ ଟ ୧ । ସେ ବିଚାରା ତାଲିକା ଶୁଣି ଆବାକାବା ହେଲା । ସେ ବିଚାରା ତ ଥୋପ ଗିଳି ସାରିଲାଣି, ଆଉ ଉପାୟ ନାହିଁ - ତାଲିକା ମୁତାବକ ଖରଚ ଦାଖଲ ନ କଲେ ଓକାଲତ୍ କୋଟ୍‌ଫିସ୍ ଓ ଓକିଲଙ୍କ ସଲାମି ଏତକ ପାଣିରେ ପଡ଼ିବ । ଏହି ଭୟରେ ସେ ପ୍ରଥମେ ଅଧୁଲିଟିଏ, ଚାରିଅଣା, ତାପରେ ଦୁଇଅଣା, ଏହିପରି କାଢୁଥାଏ, ପ୍ରତିଥର ଗାଣ୍ଠିଆରୁ କିଛି ବାହାର କରିବା ପୂର୍ବରୁ ବାଇ ମାହାନ୍ତିଙ୍କ ଠାରୁ ଅଳ୍ପ ବହୁତ ତର୍ଜନ ଶୁଣିବାକୁ ହେଉଥାଏ । ଶେଷରେ ଝାଡ଼ିଝୁଡ଼ି ଦେଢ଼ ଟଙ୍କା ବାହାର କଲା ଓ ବାଇ ମାହାନ୍ତି ସେ ଓକାଲତ୍‌ନାମା ଖଣ୍ଡ ହାକିମଙ୍କ ମିସଲରେ ଦାଖଲ କରି ବହୁ କଷ୍ଟରେ ୧୫ ଦିନର ମହଲତ ଆଣିଲେ । ସେଠାରୁ ଯେ ଯାହା କାର୍ଯ୍ୟରେ ଗଲେ । ସେ ଲୋକଟି ୧୫ ଦିନ ପରେ ଆସିବ ବୋଲି ବାଇ ମାହାନ୍ତିଙ୍କୁ ଦଣ୍ଡବତ ହୋଇ ଘରକୁ ଗଲା । ବାଇ ମାହାନ୍ତିଙ୍କ ଆମନ୍ତ୍ରଣକ୍ରମେ ଆମ୍ଭମାନଙ୍କ ବନ୍ଧୁ ସହରରେ ବାଇ ମାହାନ୍ତିଙ୍କ ବସାରେ ରହିଲେ । ରୋଷେଇବାସ ହେଲା, ଖାଇପିଇ ଶୋଇବା ସମୟରେ ଦୁହିଁଙ୍କ ମଧ୍ୟରେ ଯେଉଁ 'ଦୁଃଖ ସୁଖ' ହୋଇଥିଲା, ବନ୍ଧୁ ସେଗୁଡ଼ିକ ସକାଳୁ ଟିପି ରଖିଲେ ଓ ଆମ୍ଭମାନଙ୍କ ନିକଟରେ ପହଞ୍ଚି ସବିଶେଷ ହାଲ କହି ସେ ଟିପ୍‌ପଣୀତକ ଦେଲେ । ବନ୍ଧୁଙ୍କ ନିକଟରୁ ଯାହା ଶୁଣିଲୁଁ ଓ ଟିପ୍‌ପଣୀରୁ ଯାହା ଦେଖିଲୁଁ, ସେଥିରୁ ବାଇ ମାହାନ୍ତି ଅଳ୍ପ ଦିନେ ଢେର ବଦଳି ଯାଇଅଛନ୍ତି ଓ ଭାରି ଅଭିଜ୍ଞତା ଲାଭ କରି ଅଛନ୍ତି ବୋଲି ଆମ୍ଭମାନଙ୍କର ପ୍ରତୀତ ହେଲା ।

୧. ଆଜିକାଲି ଓକିଲସଂଖ୍ୟା ଢେର ବଢ଼ିଯାଇଅଛି । ମାମଲା ମକଦ୍ଦମା ସଂଖ୍ୟା ଅବଶ୍ୟ ବଢ଼ିଅଛି, ସେ ଅନୁପାତରେ ଓକିଲଙ୍କ ସଂଖ୍ୟା ଆହୁରି ବଢ଼ିଅଛି । ସଂଖ୍ୟାବୃଦ୍ଧି ସଙ୍ଗେ ଆୟ କମିଅଛି । ଏପରିକି ଅନେକ ବଡ଼ ବଡ଼ ଓକିଲ ମୁଣ୍ଡରେ ହାତ ଦେଇ

ବସିଛନ୍ତି । ପୁରୁଣା ଓକିଲମାନଙ୍କର ଏ ଅବସ୍ଥା; ଅତଏବ ନୂତନ ଓକିଲମାନଙ୍କର ଅସୁବିଧା ଏଥିରୁ ଅନୁମିତ ହେବ । ଅନେକ ନୂଆ ଓକିଲଙ୍କ ବସା ଖରଚ ଚଳିବା କଥା କାଠିକର ପାଠ ହୋଇଛି - ଅବଶ୍ୟ ଏମାନଙ୍କ ମଧ୍ୟରେ ବୁଦ୍ଧିମାନ୍ ଲୋକ ଅଛନ୍ତି । ବୁଦ୍ଧି ଖରଚ କରିପାରିଲେ ପୁରୁଣାଙ୍କୁ ଚିତା କାଟି ଦେବ । ଚିତା କାଟିବାର ପ୍ରଥମ ଉପାୟ ଟରଣି-ନିୟୋଗ । ଉପଯୁକ୍ତ ଟରଣି ଚିହ୍ନି ଉପଯୁକ୍ତ 'ପଣି' ଦେଇପାରିଲେ ବସା ଖରଚର ଭାବନା ପଡ଼ିବ ନାହିଁ । ମନେକର, ଜଣେ ପୁରୁଣା ଓକିଲ ଟରଣିଙ୍କୁ ଟଙ୍କା ମୁଣ୍ଡେ ଛ ଅଣା ଦେବାକୁ ଜବାବ କରି ମକଦ୍ଦମା ମାମଲା ପାଉଅଛନ୍ତି । ନୂଆ ଓକିଲ ଜରସମନକୁ ଆଉ ଦୁଇ ଅଣା ବଢ଼ାଇ ଦେଲେ ଅର୍ଥଶାସ୍ତ୍ରର ସ୍ୱୀକାର୍ଯ୍ୟ ଅନୁସାରେ ଟରଣି ପୁରୁଣା ପ୍ରଭୁଙ୍କୁ ଛାଡ଼ି ନୂଆଙ୍କୁ ଧରିବେ । ଏତିକି କରି ନିଶ୍ଚିନ୍ତ ହୋଇ ବସିଲେ ଚଳିବ ନାହିଁ । ଏ ଦକ୍ଷିଣା ଉପରେ ଦୋଳ ଦଶହରା ପର୍ବପୁଣ୍ୟରେ ମିଠେଇ ହାଣ୍ଡି, ଚନ୍ଦ୍ରକଣା ବା ଦକ୍ଷିଣୀ ଯୋଡ଼ ଏବଂ 'ମୋହରିର'ଙ୍କର ନିଜର ଓ ତାଙ୍କ 'ଘରଆଡ଼'ଙ୍କ ପାଇଁ ନଗଦ ଯାତ୍ରା ଖର୍ଚ୍ଚ କିଛି । ଯେତିକି ବେଶି ଦେଇପାରିବ, ତୁମର କପାଳ ସେତିକି ବେଶି ଦାଉ ଦାଉ ହୋଇ ଜଳିବ । କିନ୍ତୁ ଏହା କରି ସୁଦ୍ଧା ଭବିଷ୍ୟଦ୍ ଚିନ୍ତା କରିବାକୁ ହେବ, ତୁମେ ଏତେ ସ୍ୱାର୍ଥ ତ୍ୟାଗ କରି ଟରଣି ରଖିଲ; କିନ୍ତୁ କାଲି ସକାଳେ ଆଉ ଜଣେ ବେଶି ପ୍ରଲୋଭନ ଦେଖାଇ ତୁମ ଟରଣିଙ୍କୁ କାଢ଼ି ନେଲେ, ତୁମର ଉପାୟ କଅଣ ? ସମୟ ଉଣ୍ଡି ଟରଣିଙ୍କୁ କିଛି ଟଙ୍କା କରଜ ଦେଇ ତାଙ୍କଠାରୁ ଖଣ୍ଡିଏ ତମସୁକ ରେଜେଷ୍ଟରୀ କରାଇ ନେବ, କିନ୍ତୁ ମୌଖିକ ଏ ଜବାବ ରହିବ ଯେ, ତୁମ ନିକଟରେ ମକଦ୍ଦମା ମାମଲା ହାଜର କରୁଥିବାଯାକେ ଟରଣି ତାଙ୍କର ଉଚିତ ପାଉଣା ପାଉଥିବେ ଓ ଏ ଋଣ ଟଙ୍କା ଶୁଝିବାକୁ ପଡ଼ିବ ନାହିଁ । ଯେବେ ତୁମଠାରେ ନିମକହାରାମି କରନ୍ତି, ତେବେ ଏ ଋଣ ନିମନ୍ତେ ନାଲିସ କରି ତୁମ ଟଙ୍କା ତୁମେ ଅସୁଲ କରିବ । ଏତେ କଳକଦରରୁ ଯେଉଁ ଟରଣି ଟପିବେ, ତାଙ୍କ ନିମନ୍ତେ ଆଉ କିଛି ଉପାୟ ବାଇ ମାହାନ୍ତିଙ୍କୁ ମାଲୁମ ନାହିଁ ।

୨. ଟରଣି ବ୍ୟବସାୟ ଆଇନରେ ମନା । ଏଥିଯୋଗୁଁ ସାବଧାନ ହେବାକୁ ହେବ । ବୁଡ଼ି କରି ପାଣି ପିଇଲେ ବ୍ରହ୍ମାଙ୍କ ବାପା ମଧ୍ୟ ଜାଣିପାରିବେ ନାହିଁ । ଟରଣି ନାମଟା ରଖିଲେ ସିନା ଆଇନର ଫାନ୍ଦରେ ପଡ଼ିବାକୁ ହେବ, କିନ୍ତୁ ପରିବର୍ତ୍ତରେ 'ଓକିଲ ସିରସ୍ତା ମୋହରିର' ହେଲେ ବେକସୁର ଖଲାସ । ଯେଉଁ ଓକିଲଙ୍କୁ ଆଣି ମକଦ୍ଦମା ଜୁଟାଇବ, ତାଙ୍କରି ସିରସ୍ତାରେ ନାମ ଲେଖାଇଲେ ସବୁ ଅଡୁଆ ଛିଣ୍ଡିଯିବ । ମଝିରେ ମଝିରେ ପେଟ ନ ପୂରିଲେ ପ୍ରଭୁଙ୍କ ଆଖିରେ ଧୂଳି ପକାଇ ଦଶପଣି ନେଇ ଅନ୍ୟ ଓକିଲଙ୍କ ନିକଟରେ ଗୋଟିଏ ଖଣ୍ଡେ ମାମଲା ହାବୁଡ଼ାଇ ଜାଣିଲେ ହେଲା । ଟରଣିମାନଙ୍କର ଆଧିପତ୍ୟ ଭାଙ୍ଗିବାକୁ ଯାଇ କେଡ଼େ ହାକିମ ଅପ୍ରସ୍ତୁତ ହୋଇଅଛନ୍ତି ଓ ଟରଣି ବ୍ୟବସାୟ ବନ୍ଦ କରିବାରେ କୃତକାର୍ଯ୍ୟ ହୋଇପାରି ନାହାନ୍ତି । ଏମନ୍ତ କି, ବଡ଼ ବଡ଼ ଜଜ ସାହେବମାନେ ଏଥିରେ ପ୍ରତିବାଦ କରିବାକୁ ଯାଇ ପଛଆଡୁଆ କଚଡ଼ାଏ ଲେଖାଏଁ ପାଇଅଛନ୍ତି । କେତେକ

ଓକିଲଙ୍କର ମଧ୍ୟ ଟରଣିମାନଙ୍କ ଉପରେ ଭାରି ଅହନ୍ତା । କିନ୍ତୁ 'ମୂଲିଆ ଚେଡ଼ିପୋ ମାନକଲା, ଆପଣା ସେରକ ହାନି କଲା ।' ସେମାନେ ପ୍ରତିଦିନ ଶୃଙ୍ଖଳା ମୁହଁରେ ବସାକୁ ଫେରୁଛନ୍ତି । ଆଇନ ଲେଖୁଛି, ଚୋରି କଲେ ଦଣ୍ଡ ପାଇବ; କିନ୍ତୁ ଚୋରି କରିବାର ସାକ୍ଷୀ ମିଳିଲେ ତ ହେବ । ଯେ ସାକ୍ଷ ଦେବେ, ସେ ହେଲେ ନିଜେ ଚୋର, ଆଉ ଚୋରି ପ୍ରମାଣ ହେବ କାହୁଁ ? ଆଇନର ମର୍ଯ୍ୟାଦା ରକ୍ଷା କରିବାକୁ ଯେଉଁମାନଙ୍କର ସୃଷ୍ଟି, ସେହିମାନଙ୍କ ଦ୍ୱାରା ଆଇନର ଅପବ୍ୟବହାର ହେଲେ ସିନା ବାହାଦୁରି । ନିତାନ୍ତ ଯଦି କେହି ସହି ନ ପାରି ଟରଣିଙ୍କ ନାମରେ ମକଦ୍ଦମା ଦାଏର କଲା, ସେ ବ୍ୟକ୍ତି ନିମନ୍ତେ ଓକିଲ ସାକ୍ଷ ଦେବେ ଯେ, ସେ ମୋ ସିରସ୍ତାର ମୋହରିର । ତାହେଲେ ଟରଣି ଓ ଓକିଲଙ୍କର ପୂର୍ବର ମହାପ୍ରସାଦ ସମ୍ବନ୍ଧଟି ଲାଗି ରହିଲା ।

୩. ନୂଆ ଓକିଲମାନଙ୍କର ଆଉ କେତେଗୋଟି ଉପାୟ ଅଛି । ସେଗୁଡ଼ିକ କେତେ ଲୋକ ବ୍ୟବହାର କରନ୍ତି, ତହିଁର ତାଲିକା ମାହାନ୍ତି ଦେବାକୁ ନିତାନ୍ତ ନାରାଜ । ମକ୍‌କେଲମାନେ ଯେଉଁ ପ୍ରମାଣ ଠୁଳ କରନ୍ତି, ସେ ପ୍ରମାଣରେ ମକଦ୍ଦମା ପ୍ରମାଣିତ ନ ହେଲେ ବା ଯଥେଷ୍ଟ ନ ହେଲେ ମକଦ୍ଦମା ଡିଗ୍ରୀ କରିବାର ଗୋଟିଏ ସହଜ ଉପାୟ ଅଛି । ଓକିଲମାନେ ହେଲେ ସ୍ୱାଧୀନ ବ୍ୟବସାୟୀ, ଉଚ୍ଚଶିକ୍ଷିତ । ସେମାନଙ୍କ ସାକ୍ଷକୁ ଅବିଶ୍ୱାସ କରିବାର ବିଶେଷ କାରଣ ନାହିଁ । ଜଣେ ଓକିଲଙ୍କ ସାକ୍ଷ ୧୦ ଜଣ ଇତର ଲୋକଙ୍କ ସାକ୍ଷ ଅପେକ୍ଷା ଅଧିକ ମୂଲ୍ୟବାନ୍ । ଗୋଟିଏ ଉଦାହରଣ ଶୁଣନ୍ତୁ - ରାମ ଓଝା ଏକ ନାଲିସ ଦାଏର କଲା ଯେ, ଶାମ ପ୍ରଧାନ ତାହାଠାରୁ ନଗଦ ଦଶ ଟଙ୍କା ବ୍ୟୟ କରି ଶୁଝୁ ନାହିଁ । ରାମ ଏ ବିଷୟରେ ତିନି ଜଣ ସାକ୍ଷୀ ଦେଲା ଓ ତୁମ୍ଭଙ୍କୁ ଓକିଲ ନିଯୁକ୍ତ କଲା । ସମସ୍ତ ପ୍ରମାଣ ଶେଷ ହେଲାରୁ ରାମର ଡିଗ୍ରୀ ହୁଅନ୍ତା । କିନ୍ତୁ ଶାମ ବୁଦ୍ଧିମାନ୍ ହେଲେ ରାମକୁ ଚିତା କାଟି ଦେବ । ଶାମ ଯାଇ ରାମଙ୍କ ଓକିଲଙ୍କ ନିକଟରେ ଗୁପ୍ତ ପରାମର୍ଶ କରି ଓ ଜରସମନ ଛିଣ୍ଡାଇ କାଲି ସକାଳୁ ରାମଙ୍କ ଓକିଲଙ୍କ ସାକ୍ଷୀ ମାନିଲା । ଓକିଲଙ୍କ ଉପରେ ତ ଆଗରୁ ବେଲପତ୍ରୀ ଚଢ଼ିଛି । ସେ ହାକିମଙ୍କ ଆଗରେ ସତ୍ୟ ପ୍ରମାଣେ କହିଗଲେ, କାଲି ସନ୍ଧ୍ୟାବେଳେ ରାମ ନିଜେ ତାଙ୍କ ଆଗରେ ସ୍ୱୀକାର କରିଛି ଯେ, ଶାମ କଡ଼ାଏ କଉଡ଼ି କରଜ ନେଇ ନାହିଁ ଓ ନାଲିସ ତମସୁକ ଜାଲ ଅଟେ । ତାହାହେଲେ ରାମର ଡିସ୍‌ମିସ ଓ ଶାମ ସତକୁ ସତ ଟଙ୍କା ନେଇ ସୁଦ୍ଧା ହେଣ୍ଡିଟିଏ ମାରି ଚାଲିଯିବ । ନଚେତ୍, ଯେବେ ରାମ ତରକାପଣିଆ କରି ତୁମଠାରେ ବେଲପତ୍ରୀ ଚଢ଼ାଏ, ତାହାହେଲେ ଓକିଲବାବୁ ଶପଥ କରି ହାକିମଙ୍କ ହଜୁରରେ ସାକ୍ଷୀ ଦେବେ ଯେ, ଶାମ କାଲି ସନ୍ଧ୍ୟାବେଳେ ଓକିଲଙ୍କଠାକୁ ରଫା କରିବାକୁ ଯାଇଥିଲା ଓ ରାମର ପାଉଣା ହକ୍ ଥିବା କଥା ଶାମ ଖୋଦ ତାଙ୍କ ଆଗେ ମୁହଁରେ ମାନି ଆସିଅଛି । ହାକିମ ଏହା ଓକିଲଙ୍କ ମୁହଁରୁ ଶୁଣିବା ମାତ୍ରେ; ରାମକୁ ବିଲ୍ ଫଏଲ ଡିଗ୍ରୀ ଦେଲେ ଓ ରାମ ଟଙ୍କାଟିଏ ନ ଦେଇଥିଲେ ସୁଦ୍ଧା ଡିଗ୍ରୀ ହାସଲ କରି ବସିଲେ । ଓକିଲ ତ ଯାହା ଭିତରେ ଭିତରେ ପାଇଲେ, ସେ

କଥା ଛାଡ଼ । ସାକ୍ଷ ଦେବା ସଙ୍ଗେ ସଙ୍ଗେ ଠଣଠାଣ୍ ଷୋଳ ଟଙ୍କା ହାକିମଙ୍କ ଆଗରେ ଗଣିନେଲେ । ଏ ଷୋଳ ଟଙ୍କା ହାକିମଙ୍କ ଆଗରେ ଆଇନର ହୁକୁମ ଅନୁସାରେ ଓକିଲଙ୍କ ସାକ୍ଷୀସ୍ୱରୂପ ବିଚ ବଜାରରେ ଖର୍ଚ୍ଚ ଦିଆଯାଏ । ଏ ମାହେନ୍ଦ୍ର ଯୋଗ ଯେଉଁ ଓକିଲ ଛାଡ଼ନ୍ତି, ସେ ବେକୁବ ।

୪. ମକଦ୍ଦମା ଡିଗ୍ରୀ ନେବାର ଆଉ ଗୋଟିଏ ବାଟ ଅଛି । ରାମ ମକ୍‌କେଲ ଆସି ଅରଜି ଦାଖଲ କଲେ ଯେ ଶାମ ତାଙ୍କ ଜମିରୁ ଧାନ କାଟି ନେଇଅଛନ୍ତି, ଅତଏବ ଧର୍ମାବତାର ! ଉକ୍ତ ବିଷୟ ଦରିଆଫତ କିଆ ଯାଇ ରାମଙ୍କୁ ଖେସରା ଏତେ ଟଙ୍କା ଡିଗ୍ରୀ ଦିଆଯାଉ । ଅରଜି ପେଶ ହୋଇ ସମନ ଜାରୀର ହୁକୁମ ହେଲା ଓ ତାରିଖ ଧାର୍ଯ୍ୟ ହେଲା । ମକ୍‌କେଲ ଓ ଓକିଲ ଟିକିଏ ବୁଦ୍ଧିମାନ୍ ହେଲେ କଚେରି ହତା ବରଗଛମୂଳେ ସମନ ଜାରି ରସିଦ ସଙ୍ଗେ ସଙ୍ଗେ ଠିକ୍ ଠାକ୍ ହୋଇଯିବ ଓ ଧର୍ମସୁକୃତ ଏଫିଡେଭିଟ ଲେଖା ହୋଇ କାମ ସାରା ହୋଇଯିବ ଓକିଲଙ୍କ ପେଟ ପୂରିବ, ଗରିବଗୁରୁବା ମଧ ପେଟ ପୋଷି ହେବେ । ତାରିଖ ଦିନକୁ ମକଦ୍ଦମା ନଥି ପେସ୍ ହେଲା, ଡାକରା ହେଲା - 'ଶାମ ପ୍ରଧାନ ହାଜର ହେ' 'ଶାମ ପ୍ରଧାନ ମୁଦାଲା ହାଜର ହେ ।' ପିଆଦା ଯାଇ ହାକିମଙ୍କୁ ଏତଲା ଦେଲା, 'ଶାମ ପ୍ରଧାନ ହାଜର ନେହିଁ ହେ' । ସେଥିରୁ ତ ସମନ ଜାରୀ ଓ ଚିହ୍ନୋଟର ପ୍ରମାଣ ଦେଇ ସଙ୍ଗେ ସଙ୍ଗେ ରାମ ଏକତରଫା ଡିଗ୍ରୀ ହାସଲ କରିବସିଲେ । ଶାମଙ୍କ କଥା ଦୂରେ ଥାଉ, ଶାମଙ୍କ ପିତୃଲୋକଙ୍କୁ ସୁଦ୍ଧା ଏ ଖବର ବେମାଲୁମ । ଡିଗ୍ରୀ ଜାରୀ ହୋଇ ଘର କୋରଖ ହେଲାବେଳକୁ କାମ ଶେଷ ।

୫. ସବୁଠାରୁ ସୁବିଧା ମୃଦଙ୍ଗ ଦିଇ ପିଠିରେ ହାତ ମାରିବା । ପାଠକମାନେ କୀର୍ତ୍ତନସ୍ଥ ମୃଦଙ୍ଗ ଦେଖିଥିବେ । ଗୋଟାଏ ପିଠିରେ ହାତ ମାଇଲେ ସ୍ୱର ମଧୁର ହୁଏ ନାହିଁ, ତାଳ ପଡ଼େ ନାହିଁ । ମୃଦଙ୍ଗ ଦୁଇ ପିଠିରେ ଓସ୍ତାଦି ହାତ ବାଜିଯାଉ, ତାନ ମାନରେ ଦର୍ଶକ, ଭାବୁକ ସମସ୍ତେ ମୋହିତ ହୋଇଯିବେ । ରାମ ଆସି ତୁମ୍ଭଙ୍କୁ ଶାମଙ୍କ ବିପକ୍ଷରେ ଓକାଲତ୍‌ନାମା ଦେଇ ନିଶ୍ଚିନ୍ତ ହୋଇ ଘରେ ବସିଲେ, ସେ ତ ଯାହା ଦେବେ, କିନ୍ତୁ ସୂତ୍ର କରିପାରିଲେ ଶାମଙ୍କଠାରୁ ବି କିଛି ହାତ ମାରି ହେବ । ଶାମଙ୍କ ନିକଟକୁ ଲୋକ ପଠାଇବା ମାତ୍ରକେ ସେ ଆସି ହାଜର ହେବେ ଓ ତୁମ୍ଭଙ୍କୁ ପ୍ରସନ୍ନ କରିପାରିଲେ ତୁମ୍ଭେ ମକଦ୍ଦମା ତାରିଖ ଦିନ ରାମଙ୍କ ପକ୍ଷ ଉତ୍ତମ ରୂପେ ସମର୍ଥନ ନ କଲେ ରାମ ପରାଜିତ ହେବେ ଓ ଶାମ ଖୁସିଟାଏ ହୋଇ ଘରକୁ ଯିବେ ।

୬. ଆଉ ଗୋଟିଏ ଉପାୟ ଅଛି । ରାମଶଙ୍କର ଜମିରେ ଅନଧିକାର ପ୍ରବେଶ କଲେ, ମାଡ଼ପିଟା ହେଲା; ଶାମ ଆସିଲେ କଚେରିକୁ । କଚେରିରେ ଦରଖାସ୍ତ ଦେଲେ, ଓକିଲ ନିଯୁକ୍ତି କଲେ । ରାମ ମଧ ଆସିଲେ । ବାଦୀ ତରଫରୁ ଯେପରି ଓକିଲଙ୍କୁ ନିଯୁକ୍ତି କରାଗଲା, ପ୍ରତିବାଦୀ ତରଫରୁ ମଧ ସେହିପରି ଓକିଲ ନିଯୁକ୍ତି ହେଲେ । ବର୍ତ୍ତମାନ ମକଦ୍ଦମାର ପ୍ରମାଣ ସମୟ ଉପସ୍ଥିତ ହେଲା । ମନେକର, ଯଦି ସମସ୍ତ ପ୍ରମାଣ ସତ୍ୟ

ଭାବରେ ଦିଆଯାଏ, ତାହାହେଲେ ଶାମଙ୍କର ଡିଗ୍ରୀ ହେବ । କିନ୍ତୁ ଶାମଙ୍କର ଡିଗ୍ରୀ ହେଲେ ରାମଙ୍କର ଓକିଲଙ୍କୁ ଟଙ୍କା ଗଣିବା କଥା ବୃଥା ହେଲା । ଆଇନ ଲେଖିଲା, ଯେ ପର ଜମିରେ ଅନଧିକାର ପ୍ରବେଶ କରିବ, ସେ ଦୁଇ ବର୍ଷ ଜେଲ୍‌ଖାନା ଯିବ । ରାମ ଶାମଙ୍କ ଘରେ ପଶିଲେ, ଅତଏବ ରାମ ଦୁଇ ବର୍ଷ ଘଣା ପେଲିବ ବା କତା ବାଡ଼େଇବ । ରାମଙ୍କର ଘଣା ପେଲିବା କଥା ନିଶ୍ଚୟ ହେଲେ ଓକିଲଙ୍କୁ ଟଙ୍କା ଦେବା ବୃଥା ହେବ; କିନ୍ତୁ ରାମ ଅନଧିକାର ପ୍ରବେଶ କରି ବେକସୁର ଖଲାସ ପାଇଲେ ସିନା ଓକିଲଙ୍କର ବାହାଦୁରି । ୧ + ୨ = ୩ ଏ କଥା ତୁମେ ମୁଁ କହିବା, ରାମ ଭୋଇ ମଧ କହିପାରିବ, କିନ୍ତୁ ଯେଉଁ ଓକିଲ ୧ + ୨ = ୪ କରିପାରିବେ ତାଙ୍କର ସିନା ବାହାଦୁରି । ଅଦାଲତରେ ଏ ବାହାଦୁରି ପାଇବାକୁ ହେଲେ କି କି ପ୍ରମାଣ ଦେଲେ ରାମ ଖଲାସ ପାଇବେ, ଅପର ପକ୍ଷରେ କେଉଁ ସାକ୍ଷୀଙ୍କୁ କିପରି ଭାବରେ ଅକ୍ତିଆର କରାଯିବ, ସେ ଭେଦଗୁଡ଼ିକ ରାମଙ୍କୁ ବତାଇବାକୁ ହେବ ଓ ରାମଙ୍କୁ ସାକ୍ଷୀଙ୍କୁ (Rehearsal) ପରୀକ୍ଷା କରି ତାଲିମ କରିବାକୁ ହେବ । ଯେ ସେ ଓକିଲ ଯେ ସାକ୍ଷୀଙ୍କୁ ତାଲିମ କରିପାରିବେ, ଏହା ଅସମ୍ଭବ । ଏପରି କ୍ଷଣଜନ୍ମାଙ୍କ ସଂଖ୍ୟା ଖୁବ୍ କମ୍ । ସେ କ୍ଷଣଜନ୍ମା ଧବଳେଶ୍ୱରମାନଙ୍କ ଛଡ଼ା ଧଳା ବଳଦକୁ କଳା କରିବା ଫିକର ସବୁ ଓକିଲଙ୍କ ଭାଗ୍ୟରେ ଘଟେ ନାହିଁ ।

୭. ଭଲ ରୋଜଗାର କରିବାକୁ ଇଚ୍ଛା କଲେ ଯେଉଁମାନଙ୍କଠାରେ କାମ ଥିବ, ସେହିମାନଙ୍କ ସଙ୍ଗେ ବିଶେଷ ଘନିଷ୍ଠତା କରିବାର ଆବଶ୍ୟକ । ସୁବିଧା ହେଲେ ପ୍ରତିଦିନ ଓ ଅସୁବିଧା ହେଲେ ରବିବାର ଦିନ ଥରେ ଲେଖାଏଁ ଘରେ ସେମାନଙ୍କୁ ସଲାମ ଦେଇ ଆସିବାକୁ ହେବ । ଯେ ଭାଗ୍ୟବାନ୍, ସେ ହାକିମଙ୍କ ସଙ୍ଗେ କୌଣସି ସମ୍ବନ୍ଧ ଲଗାଇବାକୁ ଚେଷ୍ଟା କରିବ । ସେ ସୁବିଧା ଭାଗ୍ୟରେ ଘଟିଲେ ତ ହାତୀଦାନ୍ତ ଉପରେ ସୁନା ଛୁଆଣି ହେଲା । ତାହା ଯେଉଁଠାରେ ଅସମ୍ଭବ, ସେଠାରେ ମହାପ୍ରସାଦ ବନ୍ଧୁ ବା ଧର୍ମପୁଅ ବା ଘରଆଡ଼ର ଧର୍ମଭାଇ ସମ୍ବନ୍ଧ ବସାଇବାକୁ ହେବ । ସେମାନେ ତ ସ୍ୱର୍ଗରୁ ଗଳି ପଡ଼ି ନାହାନ୍ତି, ସେମାନଙ୍କର ମନୁଷ୍ୟ ପ୍ରକୃତି ଅଛି, ମୋହବତ ଅଛି, ମୁଖଲଜ୍ଜା ଅଛି, ସବୁ ଅଛି । ଆଉ ମଧ ଗୋଟିଏ କଥା ଅଛି - କେଉଁ ପ୍ରଭୁଙ୍କର କେଉଁ ବସ୍ତୁ ପ୍ରିୟ, ତାହା ସୁରାକଲଗାଇ ବୁଝିବାକୁ ହେବ ଓ ବେଳ କାଳ ଉଣ୍ଡି କାହା ନିକଟରେ ତତଲା କାହା ନିକଟରେ ଥଣ୍ଡା, କାହା ନିକଟରେ ଦିବ୍ୟ ଗୁଆଘିଅ, କାହା ନିକଟରେ ଗହଣା, କାହା ନିକଟରେ ଘୋଡ଼ାଦାନା, କାହା ନିକଟରେ ଖାସି, କାହା ନିକଟରେ ଚମଡ଼ା - ଏହିପରି ହାଜର କରାଇ ପାରିଲେ ହେଲା । ସେଗୁଡ଼ିକ ଦେଇ ପଦ୍ମତୋଳା ବୋଲି ଜାଣିଲେ ନାଗ ସାପଭଳି ଫଣା ଟେକି ଠିଆ ହୋଇ ରହିବେ, କିନ୍ତୁ ଉଁ ଚୁଁ ହେବାର ତାକତ ରହିବ ନାହିଁ । ମନେକର, ଜଣେ ପ୍ରଭୁ ଭାରି ସତ୍ୟନିଷ୍ଠ, ସେ ବିଚାରାସନରେ ବସିଲା ବେଳେ କୌଣସି ପ୍ରକାରେ ତୁମ ମୋହବତ ରଖିବେ ନାହିଁ । ତା ହେଲେ ମଧ ତୁମ୍ଭେ ଯଥାସାଧ ଚେଷ୍ଟା କରି ତାଙ୍କ ଘରଠାକୁ ପ୍ରତିଦିନ ଥରେ ଲେଖାଏଁ ଯିବାଆସିବା କରିପାରିଲେ ମକ୍‌କେଲ

ମହଲରେ ଉତ୍ସୁକ ହେବେ । ଏଥିର ମଧ ଗୋଟିଏ ପ୍ରାକୃତିକ କାରଣ ଅଛି । ବଡ଼ ବଡ଼ ନାମଜାଦା ଠାକୁରମାନଙ୍କ ନିକଟରେ ଫଳ ପାଇବା ସକାଶେ ଭକ୍ତମାନେ ଅନୁସରଣ କରନ୍ତି ଓ ଧାରଣା ପଡ଼ନ୍ତି । ପ୍ରତି ଠାକୁରଙ୍କ ପାଖରେ ଦେଖାଯାଏ ଯେ, ଜଣେ ଜଣେ କାଳିଶି ବା ସେବକଙ୍କ ଉପରେ ଠାକୁରଙ୍କର ଭାରି ଅନୁଗ୍ରହ । ଅତଏବ ଯେଉଁ ଭଗତ କାମ ହାସଲ କରିବା ସକାଶେ ପ୍ରଭୁଙ୍କଠାକୁ ଆସିବ, ସେ ସେହି କାଳିଶି ବା ସେବକଙ୍କୁ ଧଇଲେ ତାହାର କାମ ଜଲ୍ଦି ହାସଲ ହେବ । ରାଜାମହାରାଜାଙ୍କ ଠାରେ ମଧ ସେହିତା । ସେଠାରେ ଗାଦିରେ କଡ଼ ପଟରେ ଜଣେ ଜଣେ ଅନୁଗୃହୀତ 'ପାଖଲୋକ' ଅର୍ଥାତ୍ ଛାମୁଙ୍କ ଅଙ୍ଗଲଗା ଚାକର ଥାଆନ୍ତି - ଛାମୁଙ୍କର କେଉଁ ଅଙ୍ଗ ତାଙ୍କଠାରେ ପ୍ରସନ୍ନ ତାହା ଭଗବାନ୍ ଜାଣନ୍ତି । କିନ୍ତୁ ସେହି ଲୋକଟିମାନଙ୍କୁ ବେଳକାଳ ଉଣ୍ଡି ଧରିପାରିଲେ ତୁମ କାମ ହାସଲ । ସାଂସାରିକ ମତରେ ମଧ ଏଥିର ଗୋଟିଏ ଗୂଢ଼ ତତ୍ତ୍ୱ ଅଛି - ଲୋକେ ମହାଦେବ ଦର୍ଶନକୁ ଗଲେ ମହାଦେବଙ୍କ ଚକଡ଼ାରେ ଥିବା କଣା ବା ବୁଢ଼ା ବୃଷଭକୁ କେରାଏ ଘାସ ଦିଅନ୍ତି କିଆଁ ? ଆଉ ମହାଦେବଙ୍କ ଦେଉଳରେ ଥିବା ପଥର ବୃଷଭର ପଛଆଡ଼ ଆଉଁଶନ୍ତି କିଆଁ ?

ଅତଏବ ଆପଣମାନେ ଦେଖିପାରିବେ ଯେ, ଓକିଲ ମୁକ୍ତାରମାନେ ହେଲେ ହାକିମମାନଙ୍କ କଣା ବୃଷଭ । ଆଗେ ସେମାନଙ୍କୁ ସନ୍ତର୍ପିତ କରିବା ଦରକାର ।

୮. ରୋଜଗାର କରିବାକୁ ଯାଇ ଆଇନର ବାନା ଧରିବାକୁ ହେଲେ ଆଉ ଗୋଟିଏ ସୂକ୍ଷ୍ମ ଉପାୟ ଅଛି । ସେଥି ନିମନ୍ତେ ବିଶେଷ ବୁଦ୍ଧି ଚାଳନାର ପ୍ରୟୋଜନ ନାହିଁ । କୌଣସି ପେସ୍କାର ବୈବାହିକ ବନ୍ଧୁ ବା ପ୍ରୀତିବନ୍ଧୁ ହୋଇଥିଲେ ଉତ୍ତମ । ତାହା ନ ହେଲେ ପେସ୍କାରଙ୍କୁ ଫଳେ ପୁଷ୍ପେ, ଶାଗେ ମାଛେ, ବସ୍ତ୍ରେ ଅଳଙ୍କାରେ ପ୍ରସନ୍ନ କରାଇପାରିଲେ ଭାବନା ନାହିଁ । କୌଣସି ମକଦ୍ଦମାରେ ସରଜମିନ ତଦାରଖ ବା ଦଖଲି ତଦାରଖ ଅଥବା ହିସାବ କିତାବ ନିକାଶି କିମ୍ବା ବଣ୍ଟୁଆରା କମିସନ୍ ଦରକାର ହେଲେ ପେସ୍କାର ସଙ୍ଗେ ସଙ୍ଗେ ତୁମ ନାମରେ 'ସିଭିଲ କୋର୍ଟ୍ କମିସନ୍‌ର' ବା ଅମିନ ପରୁଆନା ବାହାର କରିଦେବେ । ଉକ୍ତ କାର୍ଯ୍ୟ ଶେଷ ହେବା ପର୍ଯ୍ୟନ୍ତ ଦୈନିକ ସରକାରୀ ଫିସ୍ ୩ ଟଙ୍କା ମିଳିବ । ତା' ପରେ ତୁମର ବୁଦ୍ଧି ଥିଲେ ସରଜମିନରେ ଧଳା ବଳଦକୁ କଳା କରି ଏ ତିନି ଟଙ୍କା ସାଙ୍ଗକୁ ଲୁଣ ମାଲପା ବା ଡାଲି ପରିବା ଆୟୋଜନ କରିପାରିବ ।

୯. ଆଜିକା ମକ୍‌କେଲମାନେ କ୍ରମଶଃ ଯେପରି କୃପଣ ହେଲେଣି, ସେଥିରେ ତାଙ୍କଠାରୁ ପଇସାଟିଏ କାଢ଼ିବା କାଠିକର ପାଠ ହେଲାଣି; ଏଥିନିମନ୍ତେ କୌଣସି ନୂତନ ଉପାୟ ଆବିଷ୍କାର କରିବାକୁ ହେବ ।

(କ) ଖୁବ୍ ଗୋଟିଏ ଢଙ୍ଗଢାଙ୍ଗ କୋଠା ଦେଖି ବାସ କରିବାକୁ ହେବ - ଗାଡ଼ି ଘୋଡ଼ା ବା ମଟରଗାଡ଼ି କରିପାରିଲେ ଆହୁରି ଉତ୍ତମ ଓ ବସାରେ ଅନ୍ତତଃ ୪।୫ ଜଣ ମୋସାହେବ ରଖିବାକୁ ହେବ । ଉକ୍ତ ମୋସାହେବ୍‌ମାନଙ୍କୁ ପୂର୍ବରୁ ତାଲିମ କରିବାକୁ

ହେବ । ତୁମ ନିକଟରେ ଏ ଚାରି ପାଞ୍ଚ ଜଣ ଶିକ୍ଷିତ ମୋସାହେବ୍ ଦାଣ୍ଡ ବାଟେ ବୁଲି ଆସି କାଗଜ ତାଡ଼ାଏ ଓ ସଲାମି ମୁଦ୍ରା ତୁମ୍ଭ ସମ୍ମୁଖରେ ଥୋଇ ଦେବା ଓ କଳ୍ପନା ସାହାଯ୍ୟରେ କେତେକ ମକଦ୍ଦମାର ହାଲ ତୁମ୍ଭଙ୍କୁ ଜଣାଇବେ । ତାହାହେଲେ ଆଗନ୍ତୁକ ମକ୍‌କେଲ ତୁମ୍ଭର ପ୍ରସାର ଦେଖି ଭାରି ଖୁସି ହେବେ । ତେଲିଆ ମୁଣ୍ଡରେ ତେଲ ଦେବା ସାଧାରଣ ନିୟମ । ଯେଉଁ ଓକିଲ କାର୍ଯ୍ୟରେ ସବୁବେଳେ ବ୍ୟସ୍ତ, ତାଙ୍କରି ନିକଟକୁ ବେଶି ମକ୍‌କେଲ ଆଗ୍ରହ ସହିତ ଆସନ୍ତି । ଯେଉଁ ଓକିଲ ମୁହଁରେ କହନ୍ତି, ''ଆମେ ପଇସାକୁ ଚାହୁ ନାହିଁ'' ସେହିମାନଙ୍କୁ ପଇସା ବେଶି ଚାହେ ।

(ଖ) ଗାଧୁଆ ତୋଠରେ, ବଜାରରେ, ଛକ ଜାଗାରେ, ରେଲ ଷ୍ଟେସନରେ, ଲରୀସର୍ଭିସ୍ ଷ୍ଟେସନରେ, ପ୍ରଧାନ ପ୍ରଧାନ ଗ୍ରାମ ଓ ମଫସଲର ସ୍ଥାନେ ସ୍ଥାନେ ବୁଲି ତୁମର ଗୁଣଗାନ କରି ମକ୍‌କେଲ ବୃଦ୍ଧି କରିବା ନିମନ୍ତେ କେତେଗୁଡ଼ିଏ ଏଜେଣ୍ଟ୍ ନିଯୁକ୍ତ କରିବାକୁ ହେବ । ସେ ଏଜେଣ୍ଟମାନେ କାଳ୍ପନିକ ମକଦ୍ଦମାରେ ତୁମ୍ଭର ଅବାରିତ ଜୟଲାଭ, ତୁମ୍ଭର କାର୍ଯ୍ୟରେ ଅନବସର, ତୁମ୍ଭଠାରେ ହାକିମହୁକୁମାଙ୍କର ଖାତିର୍, ତୁମ୍ଭର କାଳ୍ପନିକ ଆୟ, ତୁମ୍ଭର ବାକ୍‌ଚାତୁରୀ ଇତ୍ୟାଦି ବିଶଦଭାବରେ ବ୍ୟାଖ୍ୟା କରି ଅଜ୍ଞନାନ୍ଧ ଲୋକମାନଙ୍କ ନିକଟରେ ତାହା ବିଶ୍ୱାସ ଭାଜନ କରିବେ ।

(ଗ) ଆଜିକାଲି ମକ୍‌କେଲ ଓକିଲଙ୍କୁ ମିସଲକୁ ନ ନେବା ପର୍ଯ୍ୟନ୍ତ ଫିସ ଟଙ୍କା ଖୋଷଣିରୁ କାଢ଼ିବେ ନାହିଁ । ମଫସଲୀ ଓଲ୍ଲୁମାନେ ଶିକ୍ଷିତ ଚତୁର ଓକିଲମାନଙ୍କୁ ଚିତା କାଟିବେ, ଏହା ଅନ୍ତତଃ ଲଜ୍ଜାର କଥା । ପୂର୍ବରୁ ପେସ୍କାରଙ୍କୁ ପ୍ରସନ୍ନ କରାଇଥିବ । ତୁମେ ଯେଉଁ ଯେଉଁ ମକଦ୍ଦମା ନେଇଥିବ, ସେ ମକଦ୍ଦମା ହାକିମଙ୍କ ନିକଟରେ ନ ପଡୁ ପଛକେ ମଝିରେ ମଝିରେ ପେସ୍କାର ମଉସୁଫ ପିଆଦା ଦ୍ୱାରା ପକ୍ଷମାନଙ୍କ ଡାକରା କରାଇବେ । ଡାକରା ହେଲା ମାତ୍ରକେ ମକ୍‌କେଲ ଜାଣିବେ ଯେ ମକଦ୍ଦମା ବର୍ତ୍ତମାନ ପଡ଼ିବ । ଡାକରା ଶୁଣିଲା ମାତ୍ରକେ ଶାମ ବିଶ୍ୱାଳ ବଳେ ଯାଇ ତୁମ ନିକଟରେ ପହଞ୍ଚିବେ ଓ ତୁମ୍ଭଙ୍କୁ ମିସଲକୁ ଆଣିବେ । ମିସଲକୁ ଆସିଲା ମାତ୍ରକେ ତୁମ୍ଭ ଫିସ୍‌ଟି ମିଳିଯିବ ଓ ପେସ୍କାରବାବୁଙ୍କ ସନ୍ତୁଷ୍ଟ ନୟନ ଓ ଓକିଲଙ୍କର ଦରହସିତ ମୁଖ ଏକ ହୋଇଯିବେ । ବୁଝ୍ ବୁଝ୍, ଯେଉଁ ମକଦ୍ଦମା ପଡ଼ିବା ଲାଗି ଓକିଲଙ୍କୁ ଫିସ୍ ଦିଆ ସାରିଲାଣି, ସେ ମକଦ୍ଦମା ଅନ୍ୟ ତାରିଖକୁ ଘୁଞ୍ଚିଗଲା ଓ ଶାମ ବିଶ୍ୱାଳ କାନମୁଣ୍ଡା ଆଉଁଶି ଘରକୁ ଗଲା । ଶଗଡ଼ ପଛକେ କିଆ ଗୋହିରିରେ ପଡୁ, ମୂଲ ତ ମାରାଯିବ ନାହିଁ ।

(ଘ) ମକ୍‌କେଲମାନେ ତୁମ୍ଭ ନିକଟକୁ ମକଦ୍ଦମା ସମ୍ବନ୍ଧରେ ଆସିଲାବେଳେ ତୁମ୍ଭେ ଅନ୍ୟ କାର୍ଯ୍ୟରେ ବିଶେଷ ବ୍ୟସ୍ତ ଅଛ ବୋଲି ଛଳନା କରିବ । ବିଶେଷତଃ ଘରେ ସର୍ବଦା ଦେଖାଇବାକୁ ହେବ ଯେ ସଭା ସମିତି, ଦେଶର କାମ, ବିଦେଶର କାମ, ହାକିମହୁକୁମାଙ୍କ ପାଖକୁ ଚିଠି ଲେଖାରେ ତୁମେ ଦିନରାତି ବ୍ୟସ୍ତ ଓ ମକଦ୍ଦମା କଥା ନ ପଡୁଣୁ ଆଗେ

ମକ୍‌କେଲକୁ ଦେଶର କଥା ନିଃସ୍ୱାର୍ଥ ଓ ନିଷ୍କାମ ଭାବରେ ଦୁଇ ପଦ ଶୁଣାଇ ଦେବ । କଚେରିକୁ ଗଲେ ନିଷ୍କର୍ମା ହୋଇ ବସିଥିଲା ବେଳେ ଦେଖାଇବ ଯେ, ମକଦ୍ଦମାର କାଗଜ ତାଡ଼ା ଓ ବଡ଼ ବଡ଼ ନଜିରବହି ନେଇ ତୁମେ ଅତି ବ୍ୟସ୍ତ । ଏ ଉପାୟମାନ କଚେରିରେ ଏବଂ ଘରେ ପ୍ରୟୋଗ କରିବାକୁ ହେବ ଓ ହାକିମଙ୍କ ହଜୁରରେ ସାକ୍ଷୀ ଜବାନବନ୍ଦି ବା ଜବାବସୁଆଲ କଲାବେଳେ ତୁମ୍ଭର ଶିକ୍ଷିତ ମୋହରିର ଆସି ସମ୍ବାଦ ଦେଉଥିବେ ଯେ, ତୁମ୍ଭଙ୍କୁ ଅନ୍ୟ ମାମଲାରେ ଡକରା ପଡ଼ିଛି । ଏହା ଶୁଣିବା ମାତ୍ରେ ତୁମ୍ଭେ ଉପସ୍ଥିତ ମକଦ୍ଦମାଟି ଛାଡ଼ି ଦେଇ ବାହାରିଯିବାର ଇଚ୍ଛା ପ୍ରକାଶ କଲାମାତ୍ରକେ ମକ୍‌କେଲଙ୍କ ଖୋଷଣିରୁ ଆଉ କିଛି ଖସିବ ।

(ଙ) ଘରେ ଗଣ୍ଡାକେତେ କାଚ ଆଲମାରି ରଖି ଗୁଡ଼ିଏ ମଲାଟଦିଆ ମାର୍କାମରା ବହି ସଂଗ୍ରହ କରି ରଖିବ । ଆପଣା ଘରର ଟେବୁଲ ଉପରେ ଗୁଡ଼ାଏ ବଡ଼ ବଡ଼ ବହି ସବୁବେଳେ ଗଦେଇ କରି ରଖିବାକୁ ହେବ ଓ ରାମ ସାମଲ ମକଦ୍ଦମାଟିଏ ଆଣି ପହଞ୍ଚିଗଲା ବେଳକୁ ତାର ଉପସ୍ଥିତ ମକଦ୍ଦମାରେ ଦରକାର ହେଉ କି ନ ହେଉ, ତୁମେ ଖଣ୍ଡେ ଦୁଇଖଣ୍ଡ ଆଇନ ବହି ମକ୍‌କେଲ ଆଗରେ ଅତି ବ୍ୟସ୍ତ ଓ ନିବିଷ୍ଟ ଭାବରେ ଆଉଡ଼ାଇବ । ତାହାହେଲେ ମକ୍‌କେଲଟି ପ୍ରସନ୍ନ ହୋଇ ଚାଲିଯିବ ଓ ମକଦ୍ଦମାଟି ଡିସମିସ ହେଲେ ମଧ୍ୟ ମକ୍‌କେଲର ତୁମ୍ଭଙ୍କୁ 'ଚୁ' ବୋଲି ପାଟି ଫିଟାଇବାର ଜୁ ରହିବ ନାହିଁ ।

(ଚ) ହାକିମହୁକୁମାଙ୍କ ପାଖରେ ବାହୁ ପ୍ରବେଶ ଲାଗି ଏ ତ ଅଙ୍ଗୁଳି ପ୍ରବେଶାଧିକାର ଥିଲେ ଅନେକ ରକମର ଫାଲ୍‌ତୁ କାମ ମଧ୍ୟ ତୁମ ହାବୁଡ଼ରେ ପଡ଼ିବ । ଯଥା - ନାଉଆରସି ଓ ବେମୁରବ୍ୟା ସମ୍ପତ୍ତିର ରିସିଭର୍ ଏକଜିକ୍ୟୁଟିଭ, ଆଡ୍‌ମିନିଷ୍ଟ୍ରେଟ୍‌ର, ଏଣ୍ଡଉମେଣ୍ଟ କମିଟିର ମେମ୍ବର, ଡିଷ୍ଟ୍ରିକ୍ଟ ମୁନିସିପାଲଟି ଓଗେରର ମେମ୍ବର, ଏ ଅନାହାରୀ ପଦଗୁଡ଼ିକରେ ମାଗଣା କାମ କରିବା ଭାରି ସୁଖ... ଓ ଏଥିରେ ପେସା ଓ ପ୍ରସାର ପ୍ରତି ସୁବିଧା ହୋଇଉଠେ ।

ଏହିପରି ନାନାଦି ଉପାୟ ଅଛି । 'ହାତ ଅଳସେ ନିଶ ବଙ୍କା' ହେଲେ ପରକୁ ବା କପାଳକୁ ଦୋଷ ଦେବାର ନୁହେଁ । ପଢ଼ିଶୁଣି ଶିକ୍ଷିତ ହେଲ, ଓକିଲ ବୁଦ୍ଧି ଖରଚ କରି ଜୀବିକା ନିର୍ବାହ କରିବ । ବୁଦ୍ଧି ଖରଚ ନ କରିବ, ଉପବାସ ରହିବ କିଏ କ'ଣ କରିବ ?

ଆମ୍ଭମାନଙ୍କର ପୂର୍ବକଥିତ ବନ୍ଧୁ ବାଇ ମାହାନ୍ତିଙ୍କଠାରୁ କେତେ କଥା ଶୁଣି ଟିପି ଆଣିଥିଲେ, ସେଗୁଡ଼ିକରୁ ଢେର୍ ଉପଦେଶ ମିଳିଲା । କିନ୍ତୁ ଦୁର୍ଭାଗ୍ୟର ବିଷୟ ଆମ୍ଭମାନଙ୍କ ଆଖଡ଼ାରେ ଏପରି ଓକିଲ ହେବା ଯୋଗ୍ୟ ବ୍ୟକ୍ତି କେହି ନ ଥିବାରୁ ଆମ୍ଭମାନଙ୍କୁ ବାଧ୍ୟ ହୋଇ ନିରାଶ ହେବାକୁ ପଡ଼ିଲା । ଆମ୍ଭେମାନେ ଆଶା କରିଥିଲୁ ଯେ, ବାଇ ମାହାନ୍ତି ଆମ୍ଭମାନଙ୍କୁ ଉପଦେଶ ନ ଶୁଣାଇ ସହରର ଉପସ୍ଥିତ ଅବସ୍ଥା ଓ ହାଲଚାଲ ଶୁଣାଇବେ କିନ୍ତୁ ସେ ଆଶାରେ ଆମ୍ଭେମାନେ ନିରାଶ ହେଲୁ । ତେବେ ଏତିକି ମନରେ ସାନ୍ତ୍ୱନା

ହେଲା ଯେ, ବାଇ ମାହାନ୍ତିଙ୍କର ବୁଦ୍ଧି ଯେଡ଼େ ପ୍ରଖର, ତହିଁର ବିବେଚନାରେ ତାଙ୍କୁ ଉପଯୁକ୍ତ କର୍ମକ୍ଷେତ୍ର ମିଳି ନ ଥିଲା, ଏଥିକି ବୁଦ୍ଧି ଚଳାଇବାର ବିଶେଷ ଅବସର ମିଳିଲା ଓ ଆଶା କରୁଁ ଯେ ଅଳ୍ପଦିନେ ବାଇ ମାହାନ୍ତିଙ୍କର ଓକିଲମହଲରେ ବିଶେଷ ଆଦର ଓ ଲାଭ ହେବ । ଶେଷରେ ଏତିକିମାତ୍ର କହୁଅଛୁଁ ଯେ, ଜୀବନଧାରଣ କରିବାକୁ ହେଲେ ଜୀବିକାନିର୍ବାହ କରିବାକୁ ହେବ । ଜୀବିକାନିର୍ବାହ ନିମନ୍ତେ ଫନ୍ଦା ଫିକର ଆବଶ୍ୟକ । ପରୋପକାର ଓ ଦେଶୋପକାର ମହାବ୍ରତ ଧାରଣ ଓ ଗାନ କରି ଯେବେ ପେଟ ପୋଷିପାରିଲ, ଏହାଠାରୁ ବଳି ସୁଖର ବିଷୟ ଆଉ କଅଣ ହୋଇପାରେ ? କଚେରିକୁ ଯେତେ ପକ୍ଷ ଆସନ୍ତି, ସେମାନଙ୍କ ମଧ୍ୟରୁ ଏକପକ୍ଷ ସବଳ, ଅନ୍ୟପକ୍ଷ ଦୁର୍ବଳ, ଏହା ନିଶ୍ଚିତ । ସବଳ ପକ୍ଷର ଓକିଲ ତ ସହଜରେ ଆପଣା ମକ୍‌କେଲର ପକ୍ଷ ସମର୍ଥନ କରିବେ । ନିର୍ବଳ ପକ୍ଷରେ ଓକିଲ ଯେବେ ନିର୍ବଳକୁ ସବଳ ବୋଲି ନ କହିବେ, ତାହାହେଲେ ନିମକହାରାମ ହେବେ । ଅତଏବ ଜାଣିଶୁଣି ସୁଦ୍ଧା ନିର୍ବଳର ପକ୍ଷ ସମର୍ଥନ କରିବାକୁ ହେବ । ନିର୍ବଳର ପକ୍ଷ ସମର୍ଥନ କଲେ ପରୋପକାର ହେଲା । ସଙ୍ଗେ ସଙ୍ଗେ ଧର୍ମ ଅର୍ଥ ଦୁଇ ଲାଭ ହେଲା । ନିର୍ବଳକୁ ସବଳ ବୋଲି କହିଲେ ଯେଉଁ ମିଛ, ମିଥ୍ୟା ସାକ୍ଷୀ ଦେଲେ ସେହି ମିଛ । ଟୋପାଏ ମଦ ପିଇଲେ ଜାତି ଯିବ, ଓରାଏ ମଦ ପିଇଲେ ମଧ୍ୟ ତାହା । ଓଡ଼ିଆରେ ଢଗ ଅଛି, 'ପେଟ ପୋଷ, ନାହିଁ ଦୋଷ ।' ଅନ୍ୟାନ୍ୟ ଭାଷାରେ ଏପରି ଢଗ ଅଛି କି ନାହିଁ, ସେ କଥା ଆମ୍ଭମାନଙ୍କୁ ଜଣା ନ ଥିବାରୁ ଟିକିଏ ଗୋଳମାଳ ପଡୁଛି ।

ଆମ୍ଭମାନଙ୍କର କଥିତ ବନ୍ଧୁ ପୂର୍ବରୁ ଶୁଣିଥିଲେ ଯେ ଓକିଲ ବ୍ୟବସାୟ ସ୍ୱାଧୀନ ବ୍ୟବସାୟ । ସେଥିରେ କାହାରି ଚାକିରି କରିବାକୁ ହୁଏ ନାହିଁ । ଅତଏବ କାହାରି ନିକଟରେ ବନ୍ଧା ରହିବାକୁ ହୁଏ ନାହିଁ, କିନ୍ତୁ ବାଇ ମାହାନ୍ତିଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ଆସି ଆମ୍ଭମାନଙ୍କ ବନ୍ଧୁ କହିଲେ ଯେ, ଚାକିରି କଲେ ଜଣକୁ ଅନୁସରଣ କରି ଜଣକର ମନ ରକ୍ଷା କରିବାକୁ ହୁଏ, କିନ୍ତୁ ଓକିଲାତି ବ୍ୟବସାୟରେ ହାକିମଙ୍କ ମନ ଜଗିବାକୁ ହୁଏ । ପେସ୍କାରଙ୍କୁ ବୋଧ ଶୋଧ କରିବାକୁ ହେବ, ସିରସ୍ତାଦାରଙ୍କୁ ସନ୍ତୁଷ୍ଟ କରିବାକୁ ହେବ, ପିଆଦାଙ୍କ ସଙ୍ଗେ ଘନିଷ୍ଠତା ରଖିବାକୁ ହେବ, ଟରଣିଙ୍କୁ ଅନୁସରଣ କରିବାକୁ ହେବ ଓ ମକ୍‌କେଲ ଶାମ ବିଶ୍ୱାଳକୁ ମୋହିତ କରିବାକୁ ହେବ । ଚାକିରି କଲେ ଏକ ସ୍ୱାମୀ, ଏଥିରେ ଅସଂଖ୍ୟ ସ୍ୱାମୀ । ଆମ୍ଭେମାନେ ବନ୍ଧୁଙ୍କର ଏ ମନ୍ତବ୍ୟ ଶୁଣି ତହିଁରେ ଏକମତ ହୋଇ ନ ପାରି କହିଲୁଁ ଯେ ବାଇ ମାହାନ୍ତି ଯାହା ଉପଦେଶ ଦେଲେ, ସେପରି କାଳ୍ପନିକ ଭିତ୍ତି ଉପରେ ଠିଆ ହୋଇ ଏପରି ସିଦ୍ଧାନ୍ତରେ ଉପନୀତ ହେବା ଅନ୍ୟାୟ । ଏ ଶ୍ରେଣୀର ଓକିଲ ଆଦୌ ଅଛନ୍ତି କି ନାହିଁ, ଆମ୍ଭମାନଙ୍କର ଏ ବିଷୟରେ ଗଭୀର ସନ୍ଦେହ । ଓକିଲ ବ୍ୟବସାୟ ଯେବେ ପ୍ରକୃତରେ ଆଜିକାଲି ଏ ଅବସ୍ଥାରେ ପହଞ୍ଚିଥାଏ, ତେବେ ମାନିବାକୁ ହେବ ଯେ, ଚାକିରି ଜୀବନ ଅପେକ୍ଷା ଏ ଜୀବନ ଉଚ୍ଚତର ନୁହେଁ । କିନ୍ତୁ ଏଥିର ସନ୍ତୋଷଜନକ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ଯେ ଓକିଲ ବ୍ୟବସାୟକୁ ନିନ୍ଦା କରିବ;

ତାହା ପ୍ରତି ଆମ୍ଭେମାନେ ଖଡ଼୍ଗହସ୍ତ । ଆମ୍ଭେମାନେ ଅବଶ୍ୟ ବ୍ୟକ୍ତିଗତ ଭାବରେ କେତେକ ଓକିଲଙ୍କୁ ଜାଣୁ । ସେମାନଙ୍କ ମଧ୍ୟରୁ ଜଣେ କେହି ବାଇ ମାହାନ୍ତିଙ୍କ ତାଲିକାଭୁକ୍ତ ହେବା ଆଜିପର୍ଯ୍ୟନ୍ତ ଆଇନ ଅନୁସାରେ (ଅର୍ଥାତ୍ ପ୍ରମାଣ ଆଇନର ଧାରା ଅନୁସାରେ ଓ ଉପଯୁକ୍ତ ଅଦାଲତଙ୍କ ସମୀପରେ) ପ୍ରମାଣିତ ହୋଇଥିବା କଥା ଆମ୍ଭମାନଙ୍କୁ ଜଣା ନାହିଁ । ବାଇ ମାହାନ୍ତିଙ୍କର କାଞ୍ଚନିକ ଉପଦେଶକୁ ଆମ୍ଭେମାନେ ନିତ୍ୟପ୍ରତ୍ୟହ ସତ୍ୟ ବୋଲି ମାନିବାକୁ ବାଧ୍ୟ ନୋହୁଁ । ଆଇନ୍ ଡାକୁଛି - ''ଚୋରି କଲେ ଚୋର ନାହିଁ, କିନ୍ତୁ ଉପଯୁକ୍ତ ଅଦାଲତରେ ଆବଶ୍ୟକ ସାକ୍ଷୀ ପ୍ରମାଣ ଇତ୍ୟାଦି ନିଆଯାଇ ଚୋରି କରିବା କଥା ପ୍ରମାଣ ଆଇନର ଦଫା ଅନୁସାରେ ପ୍ରମାଣିତ ହେଲେ ଚୋର ହେବ । ନଚେତ୍ ଯେ ଚୋର ବୋଲି କହିବ, ତାହା ନିମନ୍ତେ ଅପବାଦ ଦଫା ଓ ମାନହାନି ବା ଇଜ୍ଜତ ଦାବି ଦଫା ଧରାବନ୍ଧା ।'' ଏଥିପ୍ରତି ଦୃଷ୍ଟି ରଖି କଥାବାର୍ତ୍ତା କରିବା ଆବଶ୍ୟକ ।

## ପଞ୍ଚଦଶ ବିଡ଼ା

ପାଞ୍ଜିର ଜଣେ ପାଠକ ଦୁର୍ମୁଖ ଶର୍ମାଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖିଥିଲେ । ସେ ପତ୍ରଟିରେ ଲେଖାଥିଲା ଯେ, ବାଇ ମାହାନ୍ତି ପରର ଦୋଷ ଦେଖିବାରେ ଏବଂ ଦେଖାଇବାରେ ପଟୁ, କିନ୍ତୁ ତାଙ୍କ ନିଜ ସମାଜର ଦୋଷ ଗୁଣ ଆଲୋଚନା କରିବାକୁ ମାହାନ୍ତିଏ ପଶ୍ଚାତ୍ପଦ କାହିଁକି ? ବାଇ ମାହାନ୍ତିଙ୍କୁ କଥାପ୍ରସଙ୍ଗରେ ଆମ୍ଭେମାନେ ପତ୍ରଖଣ୍ଡି ଦେଖାଇଥିଲୁଁ, ତହିଁର ଉତ୍ତରରେ ସେ କହିଲେ, ''ରାଜନ୍ ! ସର୍ଷପମାତ୍ରାଣି ପରଛିଦ୍ରାଣି ପଶ୍ୟସି'' କଥାଟା ଗୋସେଇଁବାପାଙ୍କ ଅମଳର ପାଠ, ଅତଏବ ଏଥିରେ ଆମର ଗୋଟାଏ କିଛି ଗୁରୁତର ଅପରାଧ ହୋଇ ନାହିଁ । କିନ୍ତୁ ଗତ ସଂଖ୍ୟା ପାଞ୍ଜି ପଢ଼ି ଆମ୍ଭେମାନେ ବାଇ ମାହାନ୍ତିଙ୍କ ନିୟମବିରୁଦ୍ଧ କାର୍ଯ୍ୟ ଯୋଗୁଁ ତାଙ୍କୁ କୈଫିୟତ୍ ତଲବ କରିଥିଲୁଁ । ସେ ଉତ୍ତର ଦେଲେ ଯେ, ଆଜି ବିଚାରିଲେ ମୋହରିରପଣିଆ ଛାଡ଼ିପାରିବି, ଅତଏବ ଟରଣିପଣିଆର ଦୋଷ ଗୁଣ ଆଲୋଚନା କଲେ ''ଆୟୁର୍ବିତ୍ତଂ ଗୃହଛିଦ୍ରଂ'' ଦୋଷରେ ଦୋଷୀ ହୋଇପାରିବି ନାହିଁ, କିନ୍ତୁ ଯେଉଁ ସମାଜରେ ମୁଁ ବଢ଼ିଅଛି, ଯେଉଁ ସମାଜରେ ମୁଁ ବୁଢ଼ା ହେଲି, ସେ ସମାଜର ଦୋଷ ଗୁଣ ଆଲୋଚନା କଲେ ମୋତେ ନିମକହାରାମ ହେବାକୁ ପଡ଼ିବ ! ଏହା ଶୁଣି ଆମ୍ଭେମାନେ ନିଶ୍ଚୟ କରିନେଲୁଁ ଯେ, ବାଇ ମାହାନ୍ତି ଓକିଲଖାନାରେ ମଧ୍ୟ ବେଶି ଦିନ ରହିବେ ନାହିଁ । ଏ ମୀମାଂସା ପରେ ବାଇ ମାହାନ୍ତିଙ୍କ ଭବିଷ୍ୟଦ୍ ଜୀବନ ବିଷୟରେ ଆମ୍ଭମାନଙ୍କ ମଧ୍ୟରେ ଢେର ତର୍କ ଲାଗିଲା । ଏକମତ ହୋଇ ନ ପାରି ଖୋଦ୍ ମାହାନ୍ତିଙ୍କୁ ମଧ୍ୟସ୍ଥ ମାନିଲୁଁ ଓ ଇସାରାରୁ ବୁଝିପାରିଲୁ ଯେ, କୌଣସି ରାଜାଙ୍କ ନିକଟରେ ଅନୁସରଣ କରିବାକୁ ତାଙ୍କର ଭାରି ଇଚ୍ଛା । କାରଣ ଏଥର କଥାପ୍ରସଙ୍ଗରେ ସେ କହି ପକାଇଲେ ଯେ, ଦିନ ରାତି ମିଛ କହି, କେତେ ଲୋକଙ୍କ ଘର ବୁଡ଼ାଇ, କେତେ ପ୍ରକାର ଝଲକ ଲଡ୍ଡୁ ଖୁଆଇ ଟରଣି ବ୍ୟବସାୟରେ ନିତି ପେଟକୁ ଦାନା ଯୁଟିବା କଥା କାଠିକର

ପାଠ, କିନ୍ତୁ ରାଜାଙ୍କ ନିକଟରେ ଅନୁସରଣ କରିପାରିଲେ, ଘଡ଼ିଏ ଖଣ୍ଡେ 'ଛାମୁ ! ମଣିମା ! ମହାରଜା !' ସମ୍ବୋଧନ ଏବଂ କେତେଗୁଡ଼ିଏ 'ବୋଲି' ଆୟତ୍ତ କରିପାରିଲେ ବାଟ ଖରଚ, ପାଟଜଥା, ବାର୍ଷିକ ଓ ଜାଗିରି ଇତ୍ୟାଦିର କିଛି ଅଭାବ ହେବ ନାହିଁ ।

ବାଇ ମାହାନ୍ତିଙ୍କର ଏ ଚିତ୍ରଟି 'ବ୍ରୋମ ଇଡ୍ ଏନ୍‌ଲାର୍ଜମେଣ୍ଟ' ବା 'ଅଏଲ୍ ପେଣ୍ଟିଙ୍ଗ' ଆମ୍ଭେମାନେ କିଛି ନିଶ୍ଚୟ କରିପାରିଲୁଁ ନାହିଁ । ଭାବିଲୁଁ ଯେ, ବାଇ ମାହାନ୍ତିଙ୍କ ବାଞ୍ଛିତ ଖାମିନ୍ଦ 'ରଜା' ଯେଉଁ ଶ୍ରେଣୀର ? ରାଜାମାନେ ସାଧାରଣତଃ କେତେ ଭାଗରେ ବିଭକ୍ତ । (୧) ମିତ୍ର ରାଜା, ଯଥା : ନେପାଳ, କାବୁଲ, (୨) କରଦରାଜା, ଯଥା : ଓଡ଼ିଶା, ଗଡ଼ଜାତ, (୩) ଜମିଦାର ରାଜା, ଯଥା : ଦର୍ପଣ, ସୁକିନ୍ଦା ଇତ୍ୟାଦି ଜିଲ୍ଲାର, (୪) ଉପାଧିଭୂଷିତ ରାଜା, ଯଥା : ରାଜା ବାହାଦୁର ଇତ୍ୟାଦି । ଏଥିରେ ଫେର୍ ଶ୍ରେଣୀ ବିଭାଗ ଅନୁସାରେ ଶିକ୍ଷିତ, ଅଶିକ୍ଷିତ, ନବ୍ୟ, ମରହଟ୍ଟୀ ଏହିପରି କେତେ ଶାଖା ଅଛନ୍ତି । ତହିଁରେ ପୁଣି କେତେକ ଛଙ୍କା ରଜା ଅଛନ୍ତି । ସେମାନଙ୍କ ନିକଟରେ ଶିକ୍ଷା, ଅଶିକ୍ଷା, ବିଦ୍ୟା, ଅବିଦ୍ୟା, ପ୍ରାଚ୍ୟ, ପାଶ୍ଚାତ୍ୟ ସବୁ ଉପକରଣର ସୁମଧୁର ସମାବେଶ ହୋଇଥାଏ । ବାଇ ମାହାନ୍ତିଙ୍କ ଉକ୍ତି କେଉଁ ଭାଗ୍ୟବାନ୍ ପୁରୁଷଙ୍କଠାରେ ଫଳିଛି, ତାହା କିଏ କହିପାରେ ? କିନ୍ତୁ ସେଠାକୁ ବାଇ ମାହାନ୍ତି ପାଞ୍ଜି ବିଡ଼ାକ ଓ ଲେଖନ ଖଣ୍ଡିକ କାଖରେ ନ ଜାକି ଯିବେ, ଏହା ଆମ୍ଭମାନଙ୍କର ବିଶ୍ୱାସ ହେଉ ନାହିଁ । ଅତଏବ ଏପରି ଲୋକକୁ ପ୍ରଶ୍ରୟ ଦେଲେ ଭବିଷ୍ୟତ୍‌ରେ ଆଶ୍ରୟଦାତାଙ୍କର ଅନିଷ୍ଟ ଛଡ଼ା ଇଷ୍ଟ ନାହିଁ । ଆମ୍ଭେମାନେ ପୂର୍ବରୁ କହିରଖୁଛୁ ଯେ, ରାଜାମାନେ ଅନୁଗ୍ରହ କରି ସାବଧାନ ହେବେ, ଯେପରି ବାଇ ମାହାନ୍ତି ଛାମୁରେ ପ୍ରବେଶାଧିକାର ନ ପାଆନ୍ତି । ଥରେ ପାଞ୍ଜି ବିଡ଼ାକ ପ୍ରାସାଦରେ ପଶିଲେ ଲେଖନପତ୍ରରେ ଦାଗ ନ ଲାଗି ରହିବ ନାହିଁ । ମନେକରନ୍ତୁ, ଉତ୍କଳର ରାଜା ମହାରାଜାମାନେ ହେଲେ ହୀରାବସା ସୁନା ମୁଦି ବାଇ ମାହାନ୍ତିଙ୍କର ପ୍ରଚକ୍ଷୁ ଲଗା ଆଖିକୁ ସବୁ ପଦାର୍ଥ ଜାଲଜାଲୁଆ ଦିଶେ, ଏକଥା ପାଠକମାନଙ୍କୁ ବୁଝାଇ ଦେବାକୁ ହେବ ନାହିଁ । ଏପରି ସ୍ଥଳରେ ଯେବେ ଏ ସୁନାମୁଦି ମଧ୍ୟରୁ ଗୋଟିକେତେ ଗିଲିଟି ବୋଲି ବାଇ ମାହାନ୍ତିଙ୍କ ପ୍ରଚକ୍ଷୁ ଲଗା ଚକ୍ଷୁରେ ପ୍ରମାଣିତ ହୁଅନ୍ତି, ତେବେ ଦେଶର ସର୍ବନାଶ । ସଚ୍ଚା ବୁଟାଦାର ବନାରସୀ ମାଲ ବୋଲି ଆମ୍ଭେମାନେ ଯାହାକୁ ପେଡ଼ିଲୁଗା କରି ସାଇତି ରଖିଛୁଁ ଓ ପୁଣ୍ୟପର୍ବ ଯାନିଯାତ୍ରାରେ ପିନ୍ଧି ପଦାକୁ ବାହାରୁଛୁଁ, ସେଗୁଡ଼ିକ ଝୁଟା ଜରିଦାର୍ ଓ ପୋକଖିଆ ବୋଲି ପ୍ରତିପନ୍ନ ହେଲେ ସାଇପଡ଼ିଶା ହସିବେ ସିନା ? ଓଢ଼ଣାଟି ପଡ଼ିଥିବାରୁ ସୁନ୍ଦର ଅସୁନ୍ଦର ସବୁ ମୁହଁଯାକରେ ଗୋଟାଏ ମାଧୁରୀ ବୁଡ଼ି ରହିଥାଏ ଓ ଓଢ଼ଣାଟି ରାତି ଦିପହରେ ଢୁକ୍ ଢୁକ୍ ଅସ୍ପଷ୍ଟ ଆଲୁଅରେ ଫିଟାଇଲାବେଳେ ହଳଦୀ, ପମେଟମ୍, ପାଉଡର୍ ବା ମହଣ ପ୍ରସାଦରୁ ଛବିଟା ଚନ୍ଦ୍ରାନାସହି ଦେଖାଯାଏ; କିନ୍ତୁ ଓଢ଼ଣାଟି ଦିନ ଦି'ପହରେ ବିବ୍ ବଜାରରେ ଫିଟାଇଦେଲେ କେତେ କଳ୍ପନା ସୁନ୍ଦର ଛବି ମାଟି ହୋଇଯାଏ ଓ କେହି କଡ଼ାଏ କଉଡ଼ିକୁ ପଚାରନ୍ତି ନାହିଁ । ଏଥିପାଇଁ ଆମ୍ଭେମାନେ କହୁଁ ଯେ, ଓଢ଼ଣା ଟେକିବାର ଦରକାର ନାହିଁ ।

କିନ୍ତୁ ବିପକ୍ଷପକ୍ଷୀୟ ଲୋକମାନେ କହିବେ ଯେ, ଏହା ହେଲେ ସୁଦ୍ଧା ଓଢ଼ଣା ଟେକିବା ଦରକାର; କାରଣ ଅପଦାର୍ଥଗୁଡ଼ିକ ଯେତେ ଶୀଘ୍ର ଚିହ୍ନା ପଡ଼ନ୍ତି ସେତିକି ଦେଶର ମଙ୍ଗଳ, କାରଣ ରଡ଼ନିଆଁରେ ସୁନା ଖଣ୍ଡେ ପକାଇଦେଲେ ସୁନାର ରଙ୍ଗ ମଳିନ ହେବ ନାହିଁ। ଆମ୍ଭେମାନେ ପଚାରୁଛୁ - ଅପଦାର୍ଥଗୁଡ଼ିକ ଚିହ୍ନା ପଡ଼ିଲେ 'ମଣିମା ! ଛାମୁ ! ବାଟଖରଚ, ପାଟଢଥା' ଏ ସମୀକରଣଟି ବ୍ୟାବହାରିକ ବୀଜଗଣିତରୁ ଉଠାଇଦେବାକୁ ହେବ, ଭଲ ଭଲ ଆଶାପ୍ରଦ ଉତ୍ସର୍ଗପତ୍ର, ସାମୟିକ ଅର୍ଥକରୀ କବିତା ଓ ପ୍ରବନ୍ଧମାନଙ୍କୁ ସାହିତ୍ୟ ରାଜ୍ୟରୁ ତଡ଼ି ଦେବାକୁ ହେବ, ଇତ୍ୟାଦି ଇତ୍ୟାଦି ।

ରାଜକୋଷରୁ କଳେ ବଳେ କୌଶଳେ କେତେ ଘନ ପଦାର୍ଥ ତରଳ ରୂପରେ ପରିଣତ ହୋଇ ନଦୀ, ମହାନଦୀ ନାମ ସୃଷ୍ଟି କରି ପ୍ରଳୟବେଗରେ ପ୍ରବାହିତ ହୋଇ ଦରିଆରେ ପଡୁଅଛି । ଶେଷରେ କିଛି କାଢ଼ିବାର ଗୋଟାଏ ଉପାୟ ଭଲା ଦେଶବାସୀଙ୍କ ହାତରେ ଥାଉ । ଯେ ବଳ ପ୍ରୟୋଗ କରି ସର୍ପକୁ ଆୟତ୍ତ କରିପାରିଲେ, କରନ୍ତୁ, ଆମର ଆପତ୍ତି ନାହିଁ; କିନ୍ତୁ ଯେ 'ପଦ୍ମତୋଳା' ବୋଲି ଆୟତ୍ତ କରିପାରିଲା, ତାର ଦୋଷ କଅଣ ? ଆଉ ଏକ କଥା - ସଭ୍ୟ ଦେଶରେ ସମାଜର ଉଚ୍ଚ ସ୍ଥାନରେ ଆସୀନ ବ୍ୟକ୍ତିମାନଙ୍କୁ ସମ୍ବୋଧନ କଲାବେଳେ "Your Lordship" "Your Honour" "Your Ladyship" "My Lord" ବୋଲି ସମ୍ବୋଧନ କରିବାର ନିୟମ ଅଛି । ସେଠାରେ "You" (ଆପଣା) ସମ୍ବୋଧନ କଲେ ବହିର୍ଗତ ବୋଲି ବିବେଚିତ ହୁଏ । ଏପରି ସ୍ଥଳରେ ଆମ ଦେଶର ରାଜା ମହାରାଜାମାନଙ୍କୁ ମଣିମା, ଛାମୁ, ମହାରାଜା ବୋଲି ସମ୍ବୋଧନ କଲେ ଯେ ଏପରି କି ବିବେକ ବିରୁଦ୍ଧ କାର୍ଯ୍ୟ କରାଗଲା, ତାହା ଆମ୍ଭମାନଙ୍କ କ୍ଷୁଦ୍ର ବୁଦ୍ଧିର ଅଗୋଚର । ବିଶେଷତଃ 'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହଂ' ସୂତ୍ରଟି ଗୀତାରେ ଗୋଟିଏ ମହାକାବ୍ୟ । ଯେ ଅନ୍ଧାରରେ ରହିବାକୁ ଇଚ୍ଛୁକ ତାକୁ ଅନ୍ଧାର ଘରେ ରଖିଲେ ତ ପାଇଟି ଛିଡ଼ିଗଲା । ସଙ୍ଗେ ସଙ୍ଗେ ଦେଶର ଉପକାର ହେଲା, ଆତ୍ମୋପକାର, ପରୋପକାର, ସବୁ ହେଲା ।

କଥାପ୍ରସଙ୍ଗରେ ଗୋଟିଏ ଇତର ଉଦାହରଣ ମନେପଡ଼ିଲା, ପାଠକମାନେ କ୍ଷମା ଦେବେ । ଦିନେ ବାଉରୀ ସାହିର ଗୃହସ୍ଥ ଗୃହିଣୀଙ୍କ ମଧ୍ୟରେ ଦୁଃଖସୁଖ ପଡୁ ପଡୁ ବାଉରୀ ବାଉରାଣୀକି ପ୍ରଶ୍ନ କଲା, 'ରଜାମାନେ କଅଣ ଖାଆନ୍ତି ?' ବାଉରାଣୀ ଉତ୍ତର କଲା, 'ସରୁ ଅରୁଆ ଚାଉର ଓ ନବାତ ।' ବାଉରାଣୀର ଅନୁମାନ କେତେଦୂର ବାସ୍ତବ, ତାହା ଆମ୍ଭେମାନେ ବର୍ତ୍ତମାନ ହିସାବ କରିବାକୁ ଯାଉ ନାହୁଁ, କିନ୍ତୁ ଏ ଅନୁମାନଟି ବାଉରାଣୀ ପକ୍ଷରେ ସ୍ୱାଭାବିକ । କାରଣ ତାହା ଭାଗ୍ୟରେ ବଗଡ଼ା ଚାଉଳ ମୁଠାଏ ଯୁଟିବା କଷ୍ଟ ଓ ଭାଗ୍ୟରେ ଥିଲେ ବିଶେଷ ପୁଣ୍ୟପର୍ବ ଉପଲକ୍ଷରେ ତାକୁ ଟିକିଏ ଗୁଡ଼ ମିଳେ । ଏକ ହିସାବରେ ଧରିବାକୁ ଗଲେ ବାଉରାଣୀର ଉପାଦେୟ ଖାଦ୍ୟଦ୍ରବ୍ୟର କଳ୍ପନା ଦିବ୍ୟ ଅରୁଆ ଚାଉଳ ଓ ନବାତରେ ଶେଷ ! ଏ ଗଳ୍ପଟିକୁ ସାରହୀନ ବୋଲି ମନେ କରିବେ

ନାହିଁ । ଏଥିରେ ଗୋଟିଏ ସତ୍ୟ ନିହିତ ଅଛି; ଯେତେ ଉଚ୍ଚକୁ ବା ଯେତେ ନିମ୍ନକୁ ଯାଅ, ସେଠାରେ କେତେକ ଅଂଶରେ ଆନୁପାତିକ ସମଭାବ ଅଛି । ରାଜାଙ୍କୁ ଚାହିଁ ରାଜାଙ୍କର, ବାଉରାଣୀକୁ ଚାହିଁ ବାଉରାଣୀର । ଅଳ୍ପ ବହୁତ ଖୋସାମତକୁ ସମସ୍ତେ ସୁଖ ପାଆନ୍ତି । ଯୋଗ୍ୟ ଓ ପରିଶ୍ରମୀ ଲୋକ ଆପଣାର ଯୋଗ୍ୟତା ଓ ପରିଶ୍ରମ ମୂଲ୍ୟସ୍ୱରୂପ ଦୁଇ ପଦ ପିଠିଆଉଁଶା କଥା ଶୁଣିଲେ ଆନନ୍ଦରେ ନାଚିଉଠେ । ଅଯୋଗ୍ୟ ଲୋକ ମଧ୍ୟ ଦୁଇ ପଦ ଗୋଡ଼ଆଉଁଶା କଥା ଶୁଣିଲେ ଆନନ୍ଦରେ ନାଚିଉଠେ । କାରଣ ଅବଶ୍ୟ ଭିନ୍ନ ଭିନ୍ନ, କିନ୍ତୁ ଫଳ ତ ଏକ । ଆପଣା ଯୋଗ୍ୟତାର ଉପଯୁକ୍ତ ପୁରସ୍କାର ମିଳିଲା ବୋଲି ଯୋଗ୍ୟ ଲୋକ ଆପଣାକୁ ଧନ୍ୟ ମନେ କରେ । ଆପଣାର ଅଯୋଗ୍ୟତା ଲୁଚି ରହିଲା ବୋଲି ଅଯୋଗ୍ୟ ଲୋକ ଆପଣାକୁ ଧନ୍ୟ ମନେ କରେ । ସେ ଯାହାହେଉ, ଆଉଁଶା ଘଷା କାହା ଦେହକୁ ନ ସହେ, ଏହା ଆମ୍ଭେମାନେ ଆଜିପର୍ଯ୍ୟନ୍ତ ବୁଝିପାରି ନାହୁଁ ! ଯେ କହନ୍ତି, ଆମକୁ ଆଉଁଶା ଘଷା ବିରକ୍ତିକର ହୁଏ, ଆମ୍ଭେମାନେ ପରୀକ୍ଷା କରି ଜାଣିଅଛୁଁ ଯେ, ଆଉଁଶା ଘଷା ପାଇଲାବେଳେ ସେ ମଧ୍ୟ ଦଣ୍ଡେ ଖଣ୍ଡେ ଆଖି ବୁଜି ଦିଅନ୍ତି । ଏହି ସତ୍ୟକୁ ଆମ୍ଭେମାନେ ଅନ୍ୟ ବାଟେ ମଧ୍ୟ ପ୍ରମାଣିତ କରିବାକୁ ପ୍ରସ୍ତୁତ । ଇତିହାସ ଦେଖ, ଜାଣିପାରିବ ଯେ, ନିନ୍ଦା କରି ଯଥାର୍ଥବାଦୀ ମଧ୍ୟ ଅନେକ ସମୟରେ ଅନେକ ନିଗ୍ରହ ଭୋଗ କରିଅଛନ୍ତି; କିନ୍ତୁ କେହି ଭଲା ଅଯଥା ପ୍ରଶଂସା କରି ଦଣ୍ଡ ପାଇବା କଥା କେହି ପଢ଼ିଅଛ ? ଅତଏବ ଆପଣମାନେ ଉତ୍ତମ ରୂପେ ବୁଝିପାରୁଥିବେ ଯେ, ପ୍ରଶଂସା ଓ 'ପଦ୍ମତୋଳା' ଶୁଣିବାର ଏବଂ କୁହୁକ ଦେଖିବାର ଆକାଙ୍କ୍ଷା ମନୁଷ୍ୟ ପକ୍ଷରେ ସ୍ୱାଭାବିକ । ରାଜା ମହାରାଜାମାନେ ଏ ସାଧାରଣ ନିୟମର ନିପାତନ ହେବେ, ଏହା ଆଶା କରିବା ଦୁରାଶା ମାତ୍ର । ଶେଷରେ ଆମ୍ଭେମାନେ ସ୍ଥିର କଲୁଁ ଯେ, ରାଜାମାନଙ୍କୁ 'ପଦ୍ମତୋଳା' ଶୁଣାଇ ପ୍ରସନ୍ନ କରାଇବା ନୀତିବିରୁଦ୍ଧ ନୁହେଁ । ବାଇ ମାହାନ୍ତି ଯେ ଏ ପନ୍ଥା ଅବଲମ୍ବନ କରିଅଛନ୍ତି, ଏଥିନିମନ୍ତେ ଆମ୍ଭେମାନେ ତାହାଙ୍କୁ ଶତବାର ଆଶୀର୍ବାଦ କରୁଅଛୁଁ । କିନ୍ତୁ ଦୁଃଖର ବିଷୟ ଯେ, ବାଇ ମାହାନ୍ତି ରଜା ରାଜୋଡ଼ାରେ ରହିଲେ ଆମ୍ଭମାନଙ୍କ ସଙ୍ଗେ ତାଙ୍କର ଘନିଷ୍ଠତା ରହିବ ନାହିଁ । କାରଣ ନିତି ମୁହଁ ଚାହାଁଚାହିଁ ହେବାର ସୁବିଧା ମିଳିବ ନାହିଁ । ଏଥି ଯୋଗୁଁ ଆମ୍ଭେମାନେ ଭାରି ଚିନ୍ତିତ ଓ ବିଷଣ୍ଣ । ଏତେ ଦିନ ବାଇ ମାହାନ୍ତିଙ୍କ ସହବସ୍ତରେ ଆମ୍ଭମାନଙ୍କ ମଧ୍ୟରେ ଗୋଟିଏ ମାୟାଡୋର ଲାଗି ଯାଇଅଛି । ମଫସଲରୁ ଆସି ସହରରେ ଥିଲେ ମଧ୍ୟେ ମଧ୍ୟେ ଭେଟର ଓ ସହବାସର ସୁଖ ମିଳୁଥିଲା; କିନ୍ତୁ ଏବେ ଆମ୍ଭମାନଙ୍କୁ ଛାଡ଼ି ସେ ଗଡ଼ଜାତରେ ରହିବେ ଓ ସାକ୍ଷାତ୍ ହେବାର ସମ୍ଭାବନା ମଧ୍ୟ ଲୋପ ପାଇବ, ଏହା ଭାବି ଆମ୍ଭେମାନେ ବିଷଣ୍ଣ । କେତେ ପାଠକ ବିଚାରିବେ ଯେ, ଏ କେବଳ ମୁହଁର କଥା, ହୃଦୟର କଥା ନୁହେଁ । କିନ୍ତୁ ସେମାନଙ୍କର ଜାଣିରଖିବା ଉଚିତ ଯେ, ସେମାନେ ବାଇ ମାହାନ୍ତି ପାଞ୍ଜିକୁ ଆମୂଳଚୂଳ ପଢ଼ି ନାହାନ୍ତି । ପଢ଼ିଥିଲେ ଏ ସିଦ୍ଧାନ୍ତରେ ଉପନୀତ ହୋଇ ନ ଥାନ୍ତେ । ପୂର୍ବରୁ ଅନେକ ଥର ବାଇ ମାହାନ୍ତିଙ୍କୁ ବିଦାୟ

ଦେଇଥିଲୁଁ । ଅନେକଥର ତାଙ୍କ ସଙ୍ଗେ ଆମ୍ଭମାନଙ୍କର ଅପଡ଼ ହୋଇଥିଲା ସତ୍ୟ, କିନ୍ତୁ ତାଙ୍କ ସଙ୍ଗେ ସମ୍ପର୍କ ବରାବର ଛିଣ୍ଡିଯିବ ବୋଲି ଆମ୍ଭମାନଙ୍କର ଭୟ ନ ଥିଲା । ବର୍ତ୍ତମାନ ଆମ୍ଭେମାନେ ବୁଝିପାରିଅଛୁଁ ଯେ, ବାଇ ମାହାନ୍ତି ରାଜପ୍ରାସାଦରୁ ଫେରି ଆସିବାର ସମ୍ଭାବନା ଅତି ଅଳ୍ପ । ତହୁଁ ଉପରେ ଯେବେ ରାଜପ୍ରାସାଦ ଲାଭ ହୁଏ, ତେବେ ଫେରି ଆସିବାର ସମ୍ଭାବନା ଆଦୌ ନାହିଁ କହିଲେ ଚଳେ । ଶୁଆ, ବିରାଡ଼ି, କୁକୁର ଏମାନଙ୍କୁ ତିନି ଦିନ ତିନି ରାତି ପାଳିଥିଲେ ସେମାନଙ୍କ ପ୍ରତି ମଧ୍ୟ ଗୋଟାଏ ମାୟା ଲାଗି ଯାଇଥାଏ । ବାଇ ମାହାନ୍ତି ଶୁଆ, ବିରାଡ଼ି ଓ କୁକୁର ଅପେକ୍ଷା ଉଚ୍ଚକୋଟୀର, ଏ କଥା ପାଠକମାନେ ଅବଶ୍ୟ ବୁଝି ପାରିଅଛନ୍ତି । ଏପରି ସ୍ଥଳରେ ବିଚ୍ଛେଦର ଚିନ୍ତା ଯେ ଆମ୍ଭମାନଙ୍କୁ ଅସ୍ଥିର କରିବ, ଏଥିରେ ଉପହାସ କରିବାର କଥା କିଛି ନାହିଁ ।

ଆଉ ଗୋଟିଏ କଥା, ଆମ୍ଭମାନଙ୍କର ବିଶେଷ ଇଚ୍ଛା ଥିଲା ଯେ, ବାଇ ମାହାନ୍ତିଙ୍କୁ ଦିନାକେତେ ରଖି ଦେଶର ଅନେକ ସ୍ଥାନକୁ ପଠାଇ ପାଞ୍ଜିଟି ପାଇଆଣି ପାଠକମାନଙ୍କୁ ଉପହାର ଦେଇଥାଆନ୍ତୁ । କିନ୍ତୁ ଦେଖିପାରୁଅଛୁଁ ଭାଗ୍ୟରେ ତାହା ଘଟିବ ନାହିଁ । ଆଜି ପର୍ଯ୍ୟନ୍ତ ମାହାନ୍ତିଏ ଯେତେ ଆଡ଼େ ଯାଉଥିଲେ, ଆମ୍ଭେମାନେ ଉତ୍ତର ରୂପେ ଜାଣୁଥିଲୁଁ ଯେ, ମାଧ୍ୟାକର୍ଷଣ ତାଙ୍କୁ ପୁନର୍ବାର ଆମ ଆଡ଼କୁ ଟାଣି ଆଣିବ । କିନ୍ତୁ ରାଜାଙ୍କ ନଅରରେ ଥରେ ପଶିଲେ ସେ ଯେ ଆଉ ସେଠାରୁ ବାହାରିବେ, ଏହା ଆଶା କରାଯାଇପାରୁ ନାହିଁ । ଆମ ପାଖରୁ ବଡ଼ ଜୋର୍, ମିଳୁ ଥିଲା କିଛି ପଇସା, କିନ୍ତୁ ତାଙ୍କୁ ଥରେ ଧନ, ରତ୍ନ, ମଣି, ମାଣିକ୍ୟ ବାୟା କଲେ ସେ କଅଣ ସେ ଲୋଭକୁ ସମ୍ଭାଳି ଆମ ପାଖକୁ ଫେରିଆସିବେ ? ହେଉ ! ମନୁଷ୍ୟ ବେଳେ ବେଳେ ଯାହା ବିଚାରିଥାଏ ବା ଭୟ କରିଥାଏ, କାଳକ୍ରମେ ତହିଁର ବିପରୀତ ମଧ୍ୟ ଫଳେ । କେଜାଣି ଅବା ବାଇ ମାହାନ୍ତି ଦିନାକେତେ ପରେ ନଅରରୁ ପାଞ୍ଜି ବିଡ଼ାଏ କାଖରେ ଜାକି ଓ ମଣିମାଣିକ୍ୟରୁ ବୁଜୁଳିଟିଏ କାନ୍ଧରେ ପକାଇ ବାହାରି ପାରନ୍ତି । ମଣିମାଣିକ୍ୟ ଯାହା ପାଇବେ, ତାକୁ ଯେବେ ସମ୍ଭାଳିପାରିବେ, ତେବେ ବାଇ ମାହାନ୍ତି ତାକୁ ନିଜସ୍ୱ କରନ୍ତୁ, ଆମର ସେଥିରେ କାତର ହେବା କିମ୍ବା ରାଗିବାର କୌଣସି କାରଣ ନାହିଁ । କିନ୍ତୁ ପାଞ୍ଜିବିଡ଼ାକରେ ଆମର କିସମତ୍ ରହିବା ଦରକାର । ପାଞ୍ଜିବିଡ଼ାଏ ଧରି ବାହାରିବା ମଧ୍ୟ ବର୍ତ୍ତମାନ ଅବସ୍ଥାରେ ନିତାନ୍ତ ଆବଶ୍ୟକ ।

ଯାହାହେଉ, ତେବେ ଏ କଥା ନିଶ୍ଚିତ ଯେ, କେତେ ଦିନ ପାଇଁ ଆମ୍ଭମାନଙ୍କ ଡୋରି କାଟି ବାଇ ମାହାନ୍ତି ବାହାରିଲେ ଆମ୍ଭେମାନେ ସହର୍ଷ କି ବିମର୍ଷ ହେଲୁଁ ତାହା ମଧ୍ୟ ବୁଝି ପାରୁ ନାହିଁ । ଅତଏବ ଆମ୍ଭମାନଙ୍କୁ ଆଉ ଜଣେ ଅନୁଚର ଖୋଜିବାକୁ ପଡ଼ିଲାଣି କିମ୍ବା ଆମ୍ଭମାନଙ୍କ ଭ୍ରମରୁ ଆମ୍ଭେମାନେ ମାହାନ୍ତିଙ୍କ ଉପରେ ଏତେ ମୂଲ୍ୟ ଧାର୍ଯ୍ୟ କରିଅଛୁଁ । ଢଗ ମଧ୍ୟ ଅଛି, "ଥିଲା ବେଳେ ଚିରାକନା, ହଜିଗଲେ ମାଠ ।" ପାଠକମାନେ ଆମ୍ଭମାନଙ୍କ ସଙ୍ଗେ ଏକମତ ହେବେ କି ନାହିଁ, ଜାଣିବାକୁ ବାକି ରହିଲା । ଏଣିକି ଦୁନିଆର ହାଲଚାଲ ଚିହ୍ନା ପଡ଼ି ବିଦ୍ ବଜାରରେ ଆମକୁ ସଂଗ୍ରହ କରିବାକୁ ପଡ଼ିବ, ପଡ଼ୁ । ଇତି ।

ଉ. ସା. ୭ମ ଭାଗ / ୧୦ମ ସଂଖ୍ୟା / ୧୩୧୦ ସାଲ ।

# ମିଆଁ ସାହେବଙ୍କ ରୋଜନାମଚା

## ୧୯୦୪-୧୯୦୫

ରୋଜନାମଚାର ଅର୍ଥ ଦିନଲିପି ବା ଡାଇରି । ପ୍ରହରାଜ ଏହି ଆଲୋଚନା ମୁସଲମାନ ସଂପ୍ରଦାୟର ବାବାହ, ପାରିବାରିକ ଓ ସାମାଜିକ ସମ୍ପର୍କ, ସମ୍ପତ୍ତିର ଭାଗବଣ୍ଟା ସମ୍ବନ୍ଧରେ ଶାସ୍ତ୍ର ଓ ଆଇନାନୁମୋଦିତ ବିଧିର ଉଲ୍ଲେଖ କରିଛନ୍ତି । ପ୍ରସଙ୍ଗ କ୍ରମେ ହିନ୍ଦୁ ଓ ମୁସଲମାନ - ଉଭୟ ସମ୍ପ୍ରଦାୟର ଆଇନ କାନୁନରେ ତୁଳନାତ୍ମକ ବ୍ୟାଖ୍ୟା କରିଛନ୍ତି । ମାତ୍ର ଆଲୋଚନା ଅସମ୍ପୂର୍ଣ୍ଣ । ଶୀର୍ଷକ ଆଲୋଚନା ଉତ୍କଳ ସାହିତ୍ୟର ସପ୍ତମ ଭାଗ ଦ୍ୱାଦଶ ସଂଖ୍ୟା (୧୩୧୧ ସାଲ)ରୁ ଆରମ୍ଭ ହୋଇ ଅଷ୍ଟମ ଭାଗ ଅଷ୍ଟମ ସଂଖ୍ୟା (୧୩୧୨ ସାଲ : ମାର୍ଗଶିର) ମଧ୍ୟରେ ସାତଗୋଟି ଅଧ୍ୟାୟରେ ପ୍ରକାଶିତ । ଏଥିରେ ଲେଖକଙ୍କର ଛଦ୍ମନାମ - ଶ୍ରୀ ଦୁର୍ମୁଖ ଶର୍ମା । ଏହା ପୁସ୍ତକ ଆକାରରେ ପ୍ରକାଶ ପାଇ ନାହିଁ ।

ସମ୍ପାଦକ

॥ ଏକ ॥

ପ୍ରଥମେ ଶିରୋନାମଟି ଦେଖି ହଠାତ୍ ଅଭିମାନ କରି ହସିଯିବେ ନାହିଁ । କଟକରେ ପାଚିଲା ଆମ୍ବ ସମୟରେ ଥରେ ଉପସ୍ଥିତ ଥିଲେ କଥାଟା ସହଜରେ ସମୁଝି ଯିବେ । ମାଳୀମାନେ ଆମ୍ବ ବିକିବାକୁ ବାହାରନ୍ତି । ସେ ଯେଉଁ ସ୍ୱ୍ନତିମଧୁର ସଙ୍ଗୀତ, ତାକୁ ଯେ ଶୁଣିଛି ସେ ପସ୍ତାଇଛି, ଯେ ନ ଶୁଣିଛି ସେ ବି ପସ୍ତାଉଛି । ତୁମେ ସେ ଡାକ ଶୁଣି ଖୁସି ହୁଅ କି ବେଖୁସି ହୁଅ, ବସାର କବାଟଟା ଫିଟାଇ ଦେବ । ଏଣେ ତୁମେ କବାଟ ଫିଟାଇବା ସଙ୍ଗେ ସଙ୍ଗେ ଦେଖିବ ଯେ ମାନମଜକୁର ତୁମ ବସା ଦ୍ୱାର ନିକଟରେ ଆମ୍ବ ଟୋକେଇଟି ମୁଣ୍ଡରୁ ଓହ୍ଲାଇ ଗୋଟିଏ ମହାକାଳ ଫଳିଆ ଆମ୍ବ ଏକ ହାତରେ ଓ ଅନ୍ୟ ହାତରେ ଏକ ବାତାପି ଛୁରି ଧରି 'ସ୍ୱାଦେନ ପରିଚୟତେ।' ଉକ୍ତିର ସାର୍ଥକତା ସମ୍ପାଦନ କରିବାକୁ ବ୍ୟଗ୍ର । ତୁମେ କିଣ ନ କିଣ, ସେଥିରେ କିଛି ହାନି ଲାଭ ନାହିଁ, ଥରେ ହେଲେ ସେ 'ଲେଙ୍ଗଡ଼ା' ଆମ୍ବର ସ୍ୱାଦଟା ବାରିନେଇ ଥାଅ । ଦେଖିଲେ ତ କିପରି ନିଃସ୍ୱାର୍ଥ ବ୍ରତ । ଆମର ମଧ୍ୟ ସେହି ବ୍ରତ । ଆପଣ କହିବେ ରୋଜନାମଚାର 'ବ୍ରତ' କ'ଣ ? 'ରୋଜା'

ଲେଖ; କିନ୍ତୁ କଥାଟା କଣନା, ରୋଜନାମଚାର ଏଇଟା ମୁଖବନ୍ଧ । ମୁଖବନ୍ଧ କଣ ବୁଝିଲେ ତ ? ଆମ ଗ୍ରାମ ନିକଟ ଦରଡ଼ା କିମ୍ବା ଅଥଙ୍ଗା ନ ଗଲେ ଏ ଶବ୍ଦଟି ଆପଣଙ୍କୁ କଠିନ ହେବ ପରା ? ଆପଣଙ୍କ ଘର ନିକଟରେ ଅବଶ୍ୟ ଆଖୁ ଚାଷ ଥିବ; କିନ୍ତୁ ଅଥଙ୍ଗା ଓ ଦରଡ଼ା ଛଡ଼ା 'ମୁଖବନ୍ଧ' ଶବ୍ଦଟା ଯେ ଅନ୍ୟ ଗ୍ରାମବାସୀମାନେ ଭଲ କରି ହୃଦୟଙ୍ଗମ କରି ଅଛନ୍ତି, ଏହା ଆମ୍ଭେମାନେ ବିଶ୍ୱାସ କରିବାକୁ ନିତାନ୍ତ ନାରାଜ ।

ଥରେ ସମ୍ବର ଦଶମୀ ପଡ଼ିଲା । ଆମେ ତ ମୂଲିଆ ମୁଣ୍ଡ, ନଗଦ ପଇସା ମିଳିବ କାହୁଁ ? ଆପଣମାନେ ହେଲେ ଧନୀ । ଦିନେ ବାକ୍ସ ଫିଟାଇଲେ, ବରଷ ଯାକର ଦରକାରୀ ଜିନିଷ କାରପରଦାଜ ଜରିଆରେ ନେଇ ଆସିଲେ, ଗୋଦାମରେ ସାଇତି ଦେଲେ । କୌଣସି ପୁଣ୍ୟ ପର୍ବ ପଡ଼ିଲା, ଗୋଦାମରୁ ଜିନିଷ ବରାଦ ମୁତାବକ କଢ଼ାଗଲା । ପିଠାପଣା ହେଲା, ଖାଇଲା ବେଳକୁ ଆପଣଙ୍କୁ ଡାକରା ଆସିଲା, ଆପଣ ଚେକାଟାଏ ପକାଇ ସବୁ ପଦାର୍ଥ ଚାଖିନେଲେ । ଏ ଭାଗ୍ୟ ଆମର କାହିଁ ? କାଲି କଥା ଆଜହୁଁ ଠିକଣା କରିବା କଥା ଆମକୁ କାଠିକର ପାଠ; ଆଜି ସମ୍ବର ଦଶମୀ । ସକାଳୁ ଉଠି ନିତ୍ୟକର୍ମ ସାରି ସିନ୍ଦୂର ଫରୁଆ, କଜଳପାତି ଧରି ଚେତାଳ ଘରଣୀ ଘଡ଼ିଏ ଅତି ବ୍ୟସ୍ତ ଭାବରେ ବସିଗଲେ । ଜଗଜନମୋହନ ଟିକିଲି, ଚାନ୍ଦକଳା, ଚୂନଟୋପି, ମନୋରଞ୍ଜନ ମେଥିଚୂନା ଯଥାସମ୍ଭବ ସଦ୍‌ବ୍ୟବହାର କରିସାରି ଗୋଟିଏ ଲମ୍ବା ଫର୍ଦ୍ଦ ଦାଖଲ କରି ଦେଇ ଅଭିମାନରେ ବସିଗଲେ - ନଡ଼ିଆ ୫ ପୁଞ୍ଜା, ଗୁଡ଼ ୧୦ ବିଶା, ଛେନା ୧୦ ପଳ, ଅରୁଆଚାଉଳ ଗଉଣ ଦେଢ଼, ଦୁଧ ୩ ସେର । ଆମର ଇଆଡ଼େ ଅକଲ ଗୁଡ୍ଡୁମ୍ । ମନେ ମନେ କବି ସର୍ବେଶ୍ୱରଙ୍କ ଗୀତଟି ଆଉଡ଼ାଇ ନେଲୁଁ । ବିପଦରେ ରସିକ ସିନା ପକ୍‌କା ରସିକ । ଗୋଟିଏ ବିହନ ଓଳିଆ ଭାଙ୍ଗି ଅରୁଆ ଚାଉଳର ବରାଦ କରିଦେଲୁଁ, ସଙ୍ଗେ ସଙ୍ଗେ କତାରଣି ଧରି ବାଡ଼ିତଳ ନଡ଼ିଆ ଗଛକୁ ସମ୍ଭାଷଣ କରବାକୁ ବାହାରିଲୁଁ । ମଫସଲରେ ବାଡ଼ି ଆଡ଼କୁ ମ୍ୟୁନିସିପାଲିଟି ବିଲ୍‌କର୍ତ୍ତାଙ୍କ ଆଖି ଯିବା ଦୁର୍ଘଟ । ସେ ଯାହାହେଉ ଏଣେ ବରାଦରୁ କଡ଼ାଏ କମ୍‌ତି ହେଲେ ତ୍ରୁଟି ପିଠି ରହିବ କି ନାହିଁ ସନ୍ଦେହ । ଗୋଟମା, ପଇଡ଼, ଅଧୁଆରୀ, ଭୂତଖିଆ ଗାଏ କରି ଦେଇ ଉପସ୍ଥିତ ବିପଦରୁ ଖଲାସ ପାଇଗଲୁଁ । ଆଉ ବାକି ରହିଲା ଗଉଡ଼ ଘର ଓ ଅଥଙ୍ଗା ମଦନ କର । ଗଉଡ଼ ଘରେ ସୁଉକାଏ ବହିନା ପକାଇ ଦେଇ ଲାଗିଲା କୁକୁର ଧାଉଡ଼ି । ଆପଣ ଗୁଡ଼ ଭାଉ ଜାଣିଥିଲେ ଜିଭଟା କାମୁଡ଼ି ପକେଇବେ - ଯାର ତ ଭାରି ଆସ୍ପର୍ଦ୍ଧା, ଅଣ୍ଟାରେ ପଇସା ବୋଲି ଚାରିଅଣା, ଏଥିରେ ଫେର ଦଶ ବିଶା ଗୁଡ଼ ଆଣିବାକୁ ଅଣ୍ଟାଭିଡ଼ା । ମଦନ କର ଆମ ଗ୍ରାମ କତିରେ ଜଣେ ମହାଜନଙ୍କ ଭଳି ତାଙ୍କର ହେଣ୍ଡଲୋଟ ନାହିଁ, ଷ୍ଟିଟାମ କାଗଜ ନାହିଁ, ଖାତା ମୋହରିର ନାହାନ୍ତି, ମିଠେଇ ଖିଆ, ଟିକସ ବଟା ଏ ସବୁ କିଛି ନାହିଁ । ଅଛି କେବଳ ଅଣ୍ଟାରେ ଖଡ଼ି ଓ ମାଟି କାନ୍ଥ । ମଦନାନନା ଆମର ପୁରୁଣା ମହାଜନ । ଦେଖିଲାକ୍ଷଣି ଚୁଆଚର୍ଚ୍ଚିତ ବୁଢ଼ା ବଟୁଆ କାଢ଼ି 'ଚୂନପତ୍ର' ଟିକିଏ ଦେଇ ଆମକୁ ସମ୍ବର୍ଦ୍ଧନା

କଲେ । ଆମେ ମଧ ସେତିକିରେ ସଦାଖୁସି । ବାଛି ବାଛି ବାରବିଶା ପାଞ୍ଚପଳ ସମିଧ, ଦଶବିଶାର ବଣାଟିଏ ଅମାର ଘରୁ କାଢ଼ି ଦେଲେ ଓ ଆମ ନାମଟି କାନ୍ଥରେ ଲେଖି ପାଖରେ ଦଶୋଟି ଗାର ପକେଇ ଦେଲେ । ବଣା ଖଣ୍ଡିକ ଗୁଡ଼ ପୂର୍ଣ୍ଣ । କରେ ଆପଣେ ମୁହଁରେ ଗୁଡ଼ ଟିପଟାଏ ମାରିଦେଲେ, କହିଲେ ଏ ଖଣ୍ଡକ ମୁଁ ଘର ଖରଚକୁ ରଖେଇ ଥିଲି, ତୁମେ ତ ଆସି ମୁହଁ ହରେଇଲଣି, ଏ ଗୁଡ଼ ନୁହେଁ ଯେ ପଥର ଖଣ୍ଡେ ! ଆମେ ମଧ ମୁହଁ ଗୁଡ଼ରେ ଟିପଟା ବସେଇ ଦେଲୁଁ, ଗୁଡ଼ ଚକ୍ଖିବାକୁ ନାହିଁ, କାଲି ସଉଦା, ସେଥିରେ ଫେର ସରସ ମାଲ । ଭାଗ୍ୟଟା ଖୁବ୍ ଟାଣୁଆ ନ ଥିଲେ ଏ ନ ହୁଏରେ ବାବା । ଆପଣଙ୍କୁ ଭାରି ସାବାସ ଦେଇ ବାହାରିଲୁଁ । ଆଗେ ଆଗେ କରଙ୍କର ହଳିଆ ବୁଢ଼ା ମୁଣ୍ଡରେ ଗୁଡ଼ ଖଣ୍ଡିକ, ପଛେ ପଛେ ସ୍ୱୟଂ ଆମେ । ଦାଣ୍ଡ ପିଣ୍ଡାରେ ମୂଲିଆ ବାପୁଡ଼ା ଗୁଡ଼ ଖଣ୍ଡିକ ଥୋଇଦେଇ ବାଟେ ବାଟେ ଫେରିଲା । ଆମେ ଗୁଡ଼ ଖଣ୍ଡିକ ନେଇ ଭାଗ୍ୟବତୀଙ୍କ ଆଗରେ ଥୋଇ ଦେଲା ବେଳକୁ ଗଉଡୁଣୀ ଆଗରୁ ଦୁଧ ଓ ଛେନାତକ ପହଞ୍ଚେଇ ଦେଇ ଯାଇଛି । ସକାଳୁ ଏତେବେଳଯାକେ ପହରେ କି ଛ'ଘଡ଼ି ବିତି ଗଲାଣି, ବେଳ ଆସି କଅଁଳ ଗାଧୁଆରୁ ବଳିଲାଣି । ତାଲିକା ମୁତାବକ ସବୁ ସରଞ୍ଜାମଯାକ ପାଇ ଘରଣୀଙ୍କ ଗୋଡ଼ ଆଜି ତଳେ ଲାଗିବାକୁ ନାହିଁ । ଆମେ ଆଜି ଏତେ ମିହନ୍ତ କରି ଅଇଲୁଣି, ଗୋଡ଼ ଧୋଇବାକୁ ଢାଳେ ପାଣି ତର ତର ହେଇ ରଖିଦେଲେ । କଂସୁଲିରେ ଟିକିଏ ମଥା ଦହି ଥୋଇ ଦେଲେ । ମନେ ମନେ ବିଚାରିଲୁଁ ଆଜି ଧାନକଟା ବେଳ ବୋଲି ସିନା ଏତେ ଆଦର ମିଳିଗଲା । ନଚେତ୍ ଘରେ ଲକ୍ଷ୍ମୀ ସାଆନ୍ତାଣୀ ବିଜେ କଲେଣି ଆସି ଯୁଗେ ହେଲା । ଏ ସୁହାଗ ଘଟୁଛି ଭାଗ୍ୟରେ ବଡ଼ ଜୋର୍ - ଥରେ ପୁଅର ଏକୋଇଶା ବେଳକୁ, ଥରେ ଝିଅ କାନଫୋଡ଼ା ବେଳକୁ । ଘଟୁ ପଛକେ, ଆମର ଆଉ ବେଶି ଦରକାର ନାହିଁ । ତେଲଟିକ ପାଞ୍ଚଆଙ୍ଗୁଳିଆ କରି ଦେଇ ଗାମୁଛା ଖଣ୍ଡ ଧରି ବାହାରିଲୁଁ । ବିଚାରିଲୁଁ ଆଜି ଦିନକ ପାଇଁ ମଣିଷ ଖଲାସ ପାଇଲା । ଗାଧୋଇ ଆସି ଦିଅଁ ଦି'ଟା ଗାଧୋଇ ଦେଇ ଚନ୍ଦନ ଟିକେ ଘୋରି ଚିତାଟାଏ କାଟିଲୁଁ । ମଝି ବଖରାରେ ଘରଣୀ କୋରଣାଟାଏ ମାଡ଼ି ବସି ନଡ଼ିଆ ଫଳ ଫାଳ କରି ରାମ୍ପି ପକାଉ ଅଛନ୍ତି । ନଡ଼ିଆ କି ଛାର । ଆମେ ତ ବେଳେବେଳେ କୋରିକାରି ହୋଇ ଠିକଣା 'କୋରାନ୍' ଅନାଦି ଓ ଅନନ୍ତ । ସ୍ୱର୍ଗଦୂତ 'ଜେବ୍ରିଏଲ' ଏହାକୁ ସ୍ୱର୍ଗରୁ ଆଣି ମହମ୍ମଦଙ୍କୁ କ୍ରମଶଃ କହିଥିଲେ । ଏହା ଇସଲାମ୍ ଧର୍ମର 'ଶ୍ରୁତି' । ମହମ୍ମଦ ଏହା ଶିଷ୍ୟମାନଙ୍କୁ କହିବାରୁ ଶିଷ୍ୟମାନେ ଶୁଣି ତାଳପତ୍ରରେ କୋରାନ୍ ଖଣ୍ଡଶଃ ଲେଖି ରଖିଥିଲେ ଓ ମହମ୍ମଦ ସ୍ୱର୍ଗାରୋହଣର ୨ ବର୍ଷ ପରେ ତାଙ୍କର ବନ୍ଧୁ ଆବୁବେକରଙ୍କ ଦ୍ୱାରା କୋରାନ୍ ପ୍ରଥମେ ପ୍ରକାଶିତ ହେଲା । ଦୂତ 'ଜେବ୍ରିଏଲ୍' ସଙ୍ଗେ ମହମ୍ମଦ ଅନେକ ଥର ସ୍ୱଦେହରେ ସପ୍ତମ ସ୍ୱର୍ଗକୁ ଯାଇଥିଲେ ।

ମକ୍କା ମହମ୍ମଦଙ୍କ ଜନ୍ମସ୍ଥାନ ଏବଂ ମୁସଲମାନମାନଙ୍କର ପ୍ରଧାନତମ ତୀର୍ଥ । ଏଠାରେ ବହୁସଂଖ୍ୟକ ମୁସଲମାନ ଯାତ୍ରୀ ଏକତ୍ରିତ ହୁଅନ୍ତି । ତୀର୍ଥ ଦର୍ଶନ କରିବା ନିମନ୍ତେ କେଉଁ

କେଉଁ ଦିନ ପ୍ରଶସ୍ତ ତାହା ଧର୍ମ ପୁରୋହିତମାନେ ସ୍ଥିର କରନ୍ତି । ସେଦିନ ମୁସଲମାନମାନଙ୍କର 'ମେଳା' ବା 'ବାରିଣୀ' ଦିବସ ବୋଲି କହିଲେ ଚଳେ । ଯେଉଁ ଯାତ୍ରୀମାନେ ଜଳପଥରେ ମକ୍କା ଦର୍ଶନ କରିବାକୁ ଆସନ୍ତି ସେମାନେ 'ଜେଡ୍‌ଡ଼ା' ବନ୍ଦରଠାରେ ଜାହାଜରୁ ଓହ୍ଲାନ୍ତି । ସେଠାରୁ ମକ୍କା ୨୫ କ୍ରୋଶ ହେବ । ରେଳ ହେବା ଆଗେ ଯେପରି ପୁରୀ ଯାତ୍ରୀମାନେ ପଥରେ ଚୌରାଦି ଭୟରୁ ଜଗନ୍ନାଥ ସଡ଼କରେ ଦଳ ବାନ୍ଧି ଶତ ଶତ ଏକତ୍ରିତ ହୋଇ ଆସୁଥିଲେ, ଆଜିକାଲି ମକ୍କାକୁ ଯେଉଁମାନେ ପଶ୍ଚିମରୁ ସ୍ଥଳପଥରେ ଆସନ୍ତି, ଆରବର ନିର୍ଜନ ଓ ନିର୍ଜଳ ମରୁଭୂମିରେ ବଣା ହୋଇ ବାଟ ଭୁଲିଯିବା ଭୟରେ ସେମାନେ ଏପରି କରନ୍ତି । ଚୌର ଭୟ ମଧ୍ୟ ଏଥିରେ ଅନ୍ୟତମ କାରଣ । ଏ ମରୁଭୂମିରେ ବଡ଼ ବଡ଼ ଘୋଡ଼ସବାର ଦସ୍ୟୁଦଳ ଯାତ୍ରୀଦଳଙ୍କୁ ଆକ୍ରମଣ କରି ସେମାନଙ୍କ ଦ୍ରବ୍ୟାଦି ଲୁଣ୍ଠନ କରି ସମୟ ସମୟରେ ହତ କରନ୍ତି । କେତେ ଲୋକ ପଥକ୍ଳାନ୍ତ ହୋଇ ଇହଲୀଳା ସାଙ୍ଗ କରନ୍ତି । ରେଳ ହେବା ପୂର୍ବରୁ ଜଗନ୍ନାଥ ସଡ଼କରେ କ୍ଳାନ୍ତ, ମୁମୂର୍ଷୁ, ପଦଯାକ କ୍ଷତ-ବିକ୍ଷତ ଓ ବସ୍ତ୍ରଖଣ୍ଡ ବେଷ୍ଟିତ ହିନ୍ଦୁଯାତ୍ରୀମାନଙ୍କର ଅନେକ ସମୟରେ ଏହି ଦଶା ହେଉଥିଲା । ମକ୍କା ଯାତ୍ରୀ ପକ୍ଷରେ ବାଟରେ ମୃତ୍ୟୁଦ୍ୱାରା ସ୍ୱର୍ଗଲାଭ ହୁଏ ବୋଲି ବିଶ୍ୱାସ । ମକ୍କାକୁ ମୁସଲମାନମାନଙ୍କ ବ୍ୟତୀତ ଅନ୍ୟ ଜାତି (କାଫେର)ର ପ୍ରବେଶ ନିଷିଦ୍ଧ । ପ୍ରତିବର୍ଷ ଜଳପଥରେ ପ୍ରାୟ ୪୦ ହଜାର ଯାତ୍ରୀ ମକ୍କାକୁ ଆସନ୍ତି । ବର୍ଷେ ବର୍ଷେ ୮୦/୯୦ ହଜାର ଯାତ୍ରୀ ଆସିଥାନ୍ତି । ପଶ୍ଚିମରୁ ଯେଉଁମାନେ ସ୍ଥଳ ପଥରେ ଆସନ୍ତି, ସେମାନେ ଡାମସ୍କସ୍ ନାମକ ସ୍ଥାନରେ ମିଳିତ ହୋଇ ସେଠାରୁ ସମସ୍ତେ ଏକତ୍ର ମକ୍କାକୁ ଯାତ୍ରା କରନ୍ତି । ଦକ୍ଷିଣର (ଆଫ୍ରିକା) ଯାତ୍ରୀମାନେ କେରୋ ନଗରଠାରେ ଆସି ସମ୍ମିଳିତ ହୋଇ ମକ୍କା ଆଡ଼କୁ ଏକତ୍ର ଯାତ୍ରା କରନ୍ତି । ମିଶରର ପ୍ରତ୍ୟେକ ରାଜା (ଖେଦିବ) ସିଂହାସନାରୋହଣ କଲାବେଳେ କାବାକୁ ଖଣ୍ଡିଏ ଲେଖାଏଁ ବହୁମୂଲ୍ୟ ପଟ୍ଟବସ୍ତ୍ର ଉପହାର ଦେଇଥାନ୍ତି । ଏ ପଟ୍ଟବସ୍ତ୍ର ଖଣ୍ଡିକ ଅତି ସମାରୋହ ସହକାରେ ଉଚ୍ଚ ପଦାଭିଷିକ୍ତ ରାଜକର୍ମଚାରୀମାନଙ୍କଦ୍ୱାରା ମକ୍‌କାର ମସ୍‌ଜିଦକୁ ନୀତ ହୁଏ । ପ୍ରତିବର୍ଷ ଉତ୍ସବ ଶେଷର ପୂର୍ବ ବର୍ଷ ପ୍ରଦତ୍ତ ଶ୍ରୀକାପଡ଼ା ଖଣ୍ଡି ବହୁ ଖଣ୍ଡରେ ବିଭକ୍ତ ହୋଇ 'ପୀର' ବା ସାଧୁମାନଙ୍କ କବର ଆଚ୍ଛାଦନ ନିମନ୍ତେ ନାନା ସ୍ଥାନକୁ ପ୍ରେରିତ ହୁଏ ଓ ଜଗନ୍ନାଥଙ୍କ 'ଶ୍ରୀକାପଡ଼ା' ଭଳି ଯାତ୍ରୀମାନଙ୍କ ମଧ୍ୟରେ ବିତରିତ ହୁଏ । ଆଫ୍ରିକାରୁ ଆଗତ ଯାତ୍ରୀମାନେ କେରୋ ନଗରଠାରୁ ଆସିବାବେଳେ ମିଶରର ରାଜା, ଅମାତ୍ୟ ଓ ଅଧିବାସୀମାନଙ୍କ ସହ ବାଦ୍ୟ ଧ୍ୱନି କରି ମହାସମାରୋହରେ ଯାତ୍ରୀମାନଙ୍କୁ କିଛି ଦୂରସ୍ଥ ଖଣ୍ଡେ ଗ୍ରାମରେ ଆଗ ବଳେଇ ଦେଇଯା'ନ୍ତି । ସେଠାରୁ ଯାତ୍ରୀମାନେ ରେଳରେ ସୁଏଜ ନଗରକୁ ରମାନା ହୁଅନ୍ତି । ଯାତ୍ରୀବାହୀ ରେଳ, ଶକଟ ପୁଷ୍ପ ପତ୍ରଦ୍ୱାରା ସୁସଜ୍ଜିତ ହୋଇ 'ଦୂରରୁ ହରଇ ନୟନ ମନ' । ସୁଏଜଠାରେ ଯାତ୍ରୀମାନେ ବିଶିଷ୍ଟ ସାଦର ଅଭ୍ୟର୍ଥନା ପ୍ରାପ୍ତ ହୁଅନ୍ତି । ସୁଏଜଠାରୁ ଯାତ୍ରୀମାନେ ଧୂଆଁକଳ ଜାହାଜରେ ଜେଡ୍‌ଡ଼ାଠାକୁ ଯା'ନ୍ତି । ଏଥିରେ ଭଡ଼ା ଦେବାକୁ

ପଡ଼େ ନାହିଁ । ସୁଏଜଠାରୁ ଜେଡ୍‌ଡ଼ା ପହଞ୍ଚାଇବାର ବ୍ୟୟ ମିଶର ରାଜ୍ୟ ସରକାର ନିଜେ ବହନ କରନ୍ତି । ଯାହେଉ ଜେଡ୍‌ଡ଼ା ମହାଯାତ୍ରୀମାନଙ୍କ 'ତୁଳସୀ ଚଉରା' । ଅନ୍ୟ ଧର୍ମାବଲମ୍ବୀମାନେ ଜେଡ୍‌ଡ଼ା ବନ୍ଦର ପର୍ଯ୍ୟନ୍ତ ଯାଇପାରିବେ, କିନ୍ତୁ ମକ୍କା ସହର ନିକଟକୁ ସୁଦ୍ଧା ପାଦ ପକାଇ ପାରିବେ ନାହିଁ । ଜେଦ୍‌ଡ଼ାଠାରୁ ମକ୍କା ଯିବାର ୨୫ କ୍ରୋଶ ପଥର ଉଭୟ ଦିଗରେ ପର୍ବତ ଓ ମରୁଭୂମି । ଜଳାଭାବ ଓ ତପନ ପ୍ରତାପରୁ ଏ ପଥରେ ଯାତ୍ରୀମାନଙ୍କର ବିଶେଷ କଷ୍ଟ ହୁଏ; କିନ୍ତୁ ପୁରୀ ଯାତ୍ରୀମାନେ 'ଜୟ ଜଗନ୍ନାଥ କି ଜୟ' ଉଚ୍ଚାରଣ କରି କ୍ଳାନ୍ତ ଶରୀରରେ ହର୍ଷମୁଖ ହୋଇଯିବା ପରି ମକ୍କା ଯାତ୍ରୀମାନଙ୍କ ଶ୍ରମ 'ଆଲ୍ଲା ହୋ ଆକବର' ଆନନ୍ଦ ଧ୍ୱନି ହରଣ କରୁଥାଏ । ଜେଡ୍‌ଡ଼ାଠାରୁ ମକ୍କାକୁ ନିର୍ଦ୍ଧନ ଯାତ୍ରୀମାନେ ପଦବ୍ରଜରେ ଯାଆନ୍ତି, କିନ୍ତୁ ସଙ୍ଗତିସମ୍ପନ୍ନ ବ୍ୟକ୍ତିମାନେ ଉଷ୍ଟ୍ର ବା ଗର୍ଦ୍ଦଭ ପୃଷ୍ଠରେ ସେ ପଥତକ ଅତିକ୍ରମ କରନ୍ତି । ମକ୍କା ସହର ପର୍ବତବେଷ୍ଟିତ ଗୋଟିଏ ଉପତ୍ୟକା । ଏଠା ମୃତ୍ତିକା କଙ୍କରମୟ ଓ କୃଷିର ଏକାନ୍ତ ଅନୁପଯୁକ୍ତ । ସହର ନିକଟରେ ଗୋଚାରଣ ଭୂମି ନାହିଁ । ଏଠାକୁ କିସ୍‌ମିସ୍, ଅଙ୍ଗୁର ଇତ୍ୟାଦି ଫଳ ୩୦ କ୍ରୋଶ ଦୂରକୁ ବିକ୍ରୟ ନିମନ୍ତେ ଆନୀତ ହୁଏ । ଏଠାର ପ୍ରଧାନ ଅସୁବିଧା ଜଳାଭାବ । ଯେଉଁଦିନ ତୀର୍ଥଯୋଗ ପଡ଼େ ସମୟ ସମୟରେ ସେଦିନ ୨ ଲକ୍ଷ ବା ତତୋଽଧିକ ଲୋକ ସେଠାରେ ରୁଣ୍ଡ ହୁଅନ୍ତି । ପୂର୍ବରେ ବିଶୁଦ୍ଧ ଜଳାଭାବରୁ ଏଠାରେ ମହାମାରୀଭୟ ହେବାର କାହାଣୀ ଗୁଣ୍ଡିଚା ସମୟରେ ପୁରୀର ଅବସ୍ଥାକୁ ସ୍ମରଣ କରାଇ ଦେଉଅଛି । ବର୍ତ୍ତମାନ ତୁରସ୍କର ସୁଲ୍‌ତାନା (ରାଜା) ଯାତ୍ରୀମାନଙ୍କୁ ବିଶୁଦ୍ଧ ପାନୀୟ ଜଳ ଯୋଗାଇବାର ଉପାୟ କରି ସେ ଶୋଚନୀୟ ଅଭାବ କେତେକ ପରିମାଣରେ ଦୂର କରି ଅଛନ୍ତି । ଧନ୍ୟ ମୁସଲମାନ ରାଜାଙ୍କର ଧର୍ମପରାୟଣତା । 'ରାଜାନୁଗତୋ ଧର୍ମଃ' କଥାଟାର ସାରବତ୍ତା ମକ୍କା ଯାତ୍ରୀ ଯେତେ ଅନୁଭବ କରନ୍ତି ଅନ୍ୟ କୌଣସି ଯାତ୍ରୀ ତେତେ ଅନୁଭବ କରିବା ସମ୍ଭବ ନୁହେଁ । ମକ୍କାର ପ୍ରଧାନ ମସ୍‌ଜିଦ୍‌ର ଆକ୍ଷରିକ ଅର୍ଥ 'ଈଶ୍ୱରଙ୍କ ଗୃହ' । ଏଥିରେ ଯାତ୍ରୀଙ୍କର ପ୍ରଧାନ ଦ୍ରଷ୍ଟବ୍ୟ ପ୍ରସ୍ତରାଗାର 'କାବା' ସୁରକ୍ଷିତ ହୋଇଅଛି । ଏ ମସ୍‌ଜିଦ୍ ୨୪ ହାତ ଲମ୍ବ, ୨୩ ହାତ ଚଉଡ଼ା ଓ ୨୭ ହାତ ଉଚ୍ଚ । ଏଥିରେ ଗୋଟିଏ ଦ୍ୱାର ଓ ଗୋଟିଏ ଗବାକ୍ଷ । ଏହାର ଛାତ ତିନୋଟି କାଷ୍ଠ ସ୍ତମ୍ଭଦ୍ୱାରା ଉତ୍ତୋଳିତ । ଗୋଟିଏ ସ୍ୱର୍ଣ୍ଣମୟ ନଳା ବାଟେ ବର୍ଷା ଜଳ ଛାତରୁ ତଳକୁ ପଡ଼େ । ଜଗନ୍ନାଥ ପଣ୍ଡାଙ୍କ ପରି ମକ୍କାରେ ମଧ ଏ ଜାତୀୟ ଲୋକେ ଛାଡ଼ି ନାହାନ୍ତି । ଢେଙ୍କି ସ୍ୱର୍ଗରେ ରହିଲେ ସୁଦ୍ଧା ଧାନକୁଟାଟି ବନ୍ଦ ନାହିଁ । ଅନେକ ଲୋକ ଯହିଁ ମିଳି, ଅବଶ୍ୟ ଉପୁଜଇ କଳି । ପୁରୀ ପଣ୍ଡାଙ୍କ ଖାତାପତ୍ର ଭଳି ଦାଢ଼ିଆ ପଣ୍ଡାଏ ମଧ ଖାତାପତ୍ର ମେଲି ଯଜମାନଙ୍କୁ ବେଢ଼ି ବସିଯା'ନ୍ତି । ଖଇଚ ଚୂଳ ପରିବର୍ତ୍ତନରେ ଅବଶ୍ୟ ଶୀରନୀ କଥାଟା ହିନ୍ଦୁଭାଇମାନେ ମନେ ରଖି ପାରନ୍ତି । ଦାଢ଼ିଆ ପଣ୍ଡାଙ୍କୁ 'ମେଓ୍ୱାଫ୍' କୁହାଯାଏ । ସ୍ୱ ସ୍ୱ ମେଓ୍ୱାଫ୍‌ଙ୍କ ସମଭିବ୍ୟାହାରରେ କାବା ଦର୍ଶନ ପ୍ରଶସ୍ତ ବୋଲି ବିବେଚିତ ହୁଏ । ମସ୍‌ଜିଦ୍ ସୁବିସ୍ତୃତ ଅଗଣାରେ କାବା ରକ୍ଷିତ । ଏ ପ୍ରାଙ୍ଗଣରେ ତିନି ଚାରିଲକ୍ଷ

ଲୋକ ଏକତ୍ରିତ ହେଲେ ସ୍ଥାନ ନିଅଣ୍ଟ ହେବ ନାହିଁ । ଯାତ୍ରୀମାନଙ୍କ ପଣ୍ଡା ସାହେବ ଏ କାବାକୁ ୭ ଥର ପ୍ରଦକ୍ଷିଣ କରାନ୍ତି । ସାତ ଥରଟା ପୁରୀ ଓ ମକ୍କାରେ ଏକା ମେଳ । ଏ ପ୍ରସ୍ତରାଗାରଟି କୃଷ୍ଣବର୍ଣ୍ଣ ପଟ୍ଟବସ୍ତ୍ର ଦ୍ୱାରା ଆଚ୍ଛାଦିତ । ବାହାରେ ୭ ଥର ବେଢ଼ା ଚାଲି ସାରିଲେ ଭିତରକୁ ପ୍ରବେଶ କରିବାର ବିଧି । ମଧ୍ୟରେ ଖଣ୍ଡିଏ କୃଷ୍ଣ ପ୍ରସ୍ତର ଖଣ୍ଡ ବା 'କାବା' । ଏହି ଖଣ୍ଡିକ ଏ ମହାତୀର୍ଥର ପ୍ରଧାନ ଦ୍ରଷ୍ଟବ୍ୟ ବସ୍ତୁ । ବସ୍ତୁ କହ, ଦେବତା କହ, ଯାଦୁଘରେ ଦର୍ଶନୀୟ ପଦାର୍ଥ କହ, ଏକା କଥା । ଜଡ଼ ବସ୍ତୁଟିଏ ପୂଜିବା କଥା ଦେଖେଇ ହେଉ, ଲୁଚେଇ ହେଉ କେହି ଛାଡ଼ିପାରି ନାହାନ୍ତି । ମନୁଷ୍ୟ ସୀମାବଦ୍ଧ ଜୀବ । ଯେତେ ଅସୀମ ଅନନ୍ତ ଆଡ଼କୁ ଦୌଡ଼ିଲେ ସୁଦ୍ଧା ଚାହୁଁ ଚାହୁଁ ଅଜାଣତରେ ଝୁଣ୍ଟିପଡ଼େ । ବାରିଣୀ ଯୋଗର ମୂଳମନ୍ତ୍ର ଯାହା ସାମ୍ୱତ୍ସରିକ ଉତ୍ସବର ମୂଳବୀଜ ସେହି, 'ବଡ଼ଦିନ'ର ମୂଳଭିତ୍ତି ତାହା । ମଝିରେ ଯାହା ଟଣାଓଟରା, ମୁହଁ ଭୁରୁଡ଼, ଏତିକି ପ୍ରଭେଦ । ଏ ପ୍ରସ୍ତର ଖଣ୍ଡି ଚୁମ୍ବନ କଲେ ଇହ ପର ଉଭୟତ୍ର ପରମ ମୋକ୍ଷ ଲାଭ । ଏ ପ୍ରସ୍ତର ଚୁମ୍ବନ ପରେ ପ୍ରାଙ୍ଗଣସ୍ଥିତ ତୀର୍ଥରେ (ଜେମ୍‌ଜେମ୍‌ରେ) ସ୍ନାନ । ପୁରୀର ମାର୍କଣ୍ଡେଶ୍ୱର ପୋଖରୀର ଜଳ ଓ ମକ୍କାର ଜେମ୍‌ଜେମ୍‌ର ଜଳ ଉଭୟ ଭାଇ । ଉଭୟ ପାପୀକୁ ସ୍ନାନ ମାତ୍ରେ ଉଦ୍ଧାର କରନ୍ତି ଓ ଉଭୟତ୍ର ଜଳ ଐହିକ ପାଣିରୂପେ ବ୍ୟବହୃତ ହେବାର ଏକାନ୍ତ ଅଯୋଗ୍ୟ । ସନ୍ଧ୍ୟାବେଳେ ଜଗନ୍ନାଥଙ୍କଠାରେ କୀର୍ତ୍ତନ ଓ 'ବେଇତୁଲ୍ଲା'ରେ (ମକ୍କାର ମସ୍‌ଜିଦ୍) କୋରାନ୍ ଗୀତ ଧ୍ୱନି ଭକ୍ତ ମନରେ ଏକାଭାବ ଜାଗ୍ରତ କରାଏ, ଭକ୍ତକୁ ନେଇ ସେହି ଅନନ୍ତ ପାଦପଦ୍ମରେ ଲୀନ କରାଇ ଦିଏ । ଭକ୍ତ ଏକ ସ୍ୱର୍ଗୀୟ ପଦାର୍ଥ । ସ୍ଥାନ ଭେଦ, କାଳ ଭେଦ, ପାତ୍ର ଭେଦରେ ବହିରାବରଣଟା ଭିନ୍ନ ଭିନ୍ନ, ନଚେତ୍ ଠିକଣାଟା ଏକା । ସଂକୀର୍ତ୍ତନ ଶ୍ରବଣ ପରେ ସନ୍ଧ୍ୟା ଗାୟତ୍ରୀ ପରିବର୍ତ୍ତନରେ ନମାଜ । ଏ ଯେଉଁ କାନ ନାକ ଛୁଆଁ, ସେଥିରେ ବି ସେହି କାନ ନାକ ଛୁଆଁ । ସକ୍‌କର ନିକଟରେ ଈଶ୍ୱର ସୃଷ୍ଟ ପ୍ରଥମ ଦମ୍ପତିଙ୍କ ବାସସ୍ଥାନ ଗୋଟିଏ ସ୍ତମ୍ଭଦ୍ୱାରା ଘୋଷିତ ହେଉଅଛି । ଏହା ସର୍ବପାପ ହାରକ ତୀର୍ଥ । ଏ ତ ଗଲା ତୀର୍ଥ ଦର୍ଶନ । ବଳିଦାନ କଥାଟା ମଧ୍ୟ ନୂଆ ନୁହେଁ । 'ମୁନା' ନାମକ ସ୍ଥାନରେ ଜଣେ ଭକ୍ତ ସ୍ୱୀୟ ପୁତ୍ରକୁ ଈଶ୍ୱରଙ୍କଠାରେ ବଳି ଦେଇଥିବାରୁ ଯାତ୍ରୀମାନେ ଏଠାରେ ସାଧ୍ୟାନୁସାରେ ଛାଗ ବା ମେଷ ବଳି ପ୍ରଦାନ କରନ୍ତି । 'ପଞ୍ଚତୀର୍ଥ' କଥାଟା ମିଳିଲାଟି କି ? ବଳିଦାନ ପରେ ସଇତାନ ବା ପାପ ପୁରୁଷର ମୂର୍ତ୍ତି ପ୍ରସ୍ତୁତି କରି ଯାତ୍ରୀମାନେ ଏ ମୂର୍ତ୍ତିକୁ ୭ ଖଣ୍ଡ ଟେକାମାରି ପାପ ପୁରୁଷକୁ ଶାସନ କରନ୍ତି ।

ପୁରୀ ଫେରନ୍ତି ଭୁବନେଶ୍ୱର ଦର୍ଶନ କଲେ ତେଣିକି ପାଲିଙ୍କି ଉପରେ ପାଟଛତା । ମକ୍କା ଫେରନ୍ତି ମଦିନା । ପ୍ରତିମା ପୂଜକ ଶତ୍ରୁମାନଙ୍କ କବଳରୁ ରକ୍ଷା ପାଇବା ନିମନ୍ତେ ମହମ୍ମଦ ମକ୍କାରୁ ପଳାତକ ହୋଇ ମଦିନାଠାରେ ଆଶ୍ରୟ ପାଇଥିଲେ ଓ ଇହଜୀବନର ଶେଷ ଭାଗ ଧର୍ମ ଯୁଦ୍ଧରେ ଅତିବାହିତ କରି ମକ୍କା ଜୟ କରିଥିଲେ । ମକ୍କାଠାରୁ ମଦିନା ପଦବ୍ରଜରେ ୧୦ ଦିନର ବାଟ । ମହମ୍ମଦ ମକ୍କାରୁ ମଦିନାକୁ ପଳାୟନ ଦିବସଠାରୁ

ମୁସଲମାନମାନଙ୍କର ହିଜରୀ ବର୍ଷ ଗଣନା ହେଉଅଛି । ଏଠାରେ ମହମ୍ମଦଙ୍କର ଶରୀର ତ୍ୟାଗ ଓ ସମାଧି । ସମାଧି ଚାରିଦିଗରେ ବହୁମୂଲ୍ୟ ପରଦା ବିଲମ୍ବିତ । ତୁରସ୍କର ପ୍ରତ୍ୟେକ ସୁଲ୍‌ତାନ ଗଦିନସିନ ହେଲା ବେଳେ ଖଣ୍ଡିଏ ଲେଖାଏଁ ପରଦା ଏ ସମାଧିକୁ ଉପହାର ଦିଅନ୍ତି । ମଦିନାରୁ ଯାତ୍ରୀମାନେ ସମାଧି ଦର୍ଶନ ଓ ନିମାଜ ପାଠ ପରେ ମକ୍କାକୁ ଲେଉଟନ୍ତି । ଗୃହ ପ୍ରତ୍ୟାଗମନେଚ୍ଛୁମାନେ ଫେରିଲାବେଳେ ଜେଡ୍‌ଡ଼ା ନଗରଠାରେ ଏକତ୍ରିତ ହୋଇ ଯେଝା ବାଟ ଧରନ୍ତି । ମୁମୂର୍ଷୁମାନେ ଘରକୁ ନ ଫେରି ତୀର୍ଥବାସରେ ଜୀବନର ଅବଶିଷ୍ଟାଂଶ ସାର୍ଥକ କରନ୍ତି । ପାଠକ ମହୋଦୟ ଓ ଇସଲାମ ଧର୍ମାବଲମ୍ବୀ ଭ୍ରାତାମାନେ କସୁର୍ ମାଫ୍ କରିବେ । ଅସଲ କଥାଟା 'ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ । ମହାଜନୋ ଯେନ ଗତଃ ସ ପନ୍ଥା' । ସମସ୍ତେ ଅନ୍ଧାର ଘରକୁ ଟେକା ଫୋପାଡ଼ିବା କଥା । ବାଜୁଛି କି ନ ବାଜୁଛି ସେ କଥା ବିଚାର କରିବା ମାଲିକ ଅନେକ ଦୂରରେ । ଚିତ୍ତ ପ୍ରସାଦ ଲାଭ କଲେ, କ୍ଷୀଣ ବିଶ୍ୱାସରେ ଆତ୍ମସମର୍ପଣ କରିପାରିଲେ, ଫଳ ଭାବନା ମହାମହୀୟାନ୍‌ଙ୍କ ପାଦରେ ସମର୍ପଣ କରି ଆଖି ବୁଜି ଡେଇଁ ପଡ଼ିଲେ ଜୀବନର ବ୍ରତ ସାର୍ଥକ । ଆମେ ମହାଭକ୍ତ, ତୁମେ ହାତୀ । ମକ୍କା, ଜେରୁଜାଲମ, ପୁରୁଷୋତ୍ତମ, ଏସବୁ ବହିରାବରଣ । କାହାର ମୁସଜରୀ ପାଟ, କାହାରି ଚିରାକନା, କାହାର ହ୍ୟାଟ୍ କୋଟ, ନଇଲେ ଭିତରେ ଏକା ରାସାୟନିକ ମୌଳିକ-ଉପାଦାନ ସଂଗଠିତ ରକ୍ତମାଂସର ଶରୀର । ଚମଡ଼ା ଗୋରା, କଳା, ତାମ୍ର ବର୍ଣ୍ଣ । ସେ ସବୁ ବି ପଦାକଥା ।

ଏ ସବୁ ଦିନକରେ ଆମ୍ଭେମାନେ ହାଜୀ ସାହେବଙ୍କଠାରୁ ଶୁଣିଅଛୁ । ଏଠାରେ କହିରଖିବାର ଉଚିତ ଯେ, ଆମ ମିଆଁ ସାହେବ ମକ୍କାରେ ଧର୍ମକ୍ରିୟା ସମାପନ କରି ଆସିଅଛନ୍ତି ଓ ସାଧାରଣତଃ ତାଙ୍କୁ ସମସ୍ତେ ହାଜୀ ସାହେବ ବୋଲି ଡାକନ୍ତି ।

ଉ.ସା/ ୭ମ ଭାଗ/ ୧୨ଶ ସଂଖ୍ୟା ।

## ॥ ଦୁଇ ॥

ମୁସଲମାନ ସମ୍ପ୍ରଦାୟ ପ୍ରଧାନ ଦୁଇ ଭାଗରେ ବିଭକ୍ତ :- ସିହା ଓ ସୁନ୍ନୀ । ଏହି ସମ୍ପ୍ରଦାୟମାନଙ୍କ ମଧ୍ୟରେ ଅନେକ ଉପସମ୍ପ୍ରଦାୟ ଅଛି । ଉଭୟ ସମ୍ପ୍ରଦାୟର ମୂଳ ଧର୍ମଶାସ୍ତ୍ର 'କୋରାନ୍' ଅଟେ । କିନ୍ତୁ ଅନ୍ୟାନ୍ୟ କେତେକ ବିଷୟରେ ସେମାନଙ୍କର ମତଭେଦ ଥିବାରୁ ସେମାନେ ଅନେକ ସମ୍ପ୍ରଦାୟରେ ବିଭକ୍ତ ହୋଇଅଛନ୍ତି ।

ସିହାମାନେ (୧) କୋରାନ୍, (୨) ମହମ୍ମଦଙ୍କ ପ୍ରଦତ୍ତ ମୌଖିକ ଉପଦେଶଚୟକୁ ଆପଣାର ପଥପ୍ରଦର୍ଶକ ବୋଲି ମାନନ୍ତି । କିନ୍ତୁ ସୁନ୍ନୀମାନେ (୧) କୋରାନ୍, (୨) ମହମ୍ମଦଙ୍କ ପ୍ରଦତ୍ତ ମୌଖିକ ଆଦେଶ, (୩) ପଣ୍ଡିତମାନଙ୍କ ମତ ଓ ଟୀକା, (୪) ଯୁକ୍ତିଯୁକ୍ତ ସିଦ୍ଧାନ୍ତ ଏ ଚାରି ଅନୁସାରେ ଚଳନ୍ତି । କୋରାନ୍‌ରେ ଯେଉଁ ବିଷୟ ସ୍ପଷ୍ଟ ଲେଖାଅଛି

ସେଥିରେ କାହାରି ମତଭେଦ ହେବାର ସମ୍ଭାବନା ନାହିଁ, କିନ୍ତୁ କୋରାନ ବହିର୍ଭୂତ କଥା ପଡ଼ିଲେ ବିଭିନ୍ନ ସମ୍ପ୍ରଦାୟଙ୍କର ପଥପ୍ରଦର୍ଶକ ଭିନ୍ନ ହୋଇ ଆସୁଅଛି । ପ୍ରଥମେ କୋରାନ ଲିପିବଦ୍ଧ ହୋଇଥିଲା, କିନ୍ତୁ ମହମ୍ମଦଙ୍କ ଉପଦେଶଗୁଡ଼ିକ ପଣ୍ଡିତମାନଙ୍କ ମୁଖରେ ପୁରୁଷାନୁକ୍ରମେ ଚଳି ଆସୁଥିଲା । କ୍ରମଶଃ ତହିଁରେ କେତେଗୁଡ଼ିଏ ବାଜେ କଥା ମିଶିଗଲା ଓ ଅବଶେଷରେ ସେଗୁଡ଼ିକ ଲିପିବଦ୍ଧ ହେଲା । ସେଗୁଡ଼ିକ ଲିପିବଦ୍ଧ ହୋଇ ମୁସଲମାନମାନଙ୍କର ନଜିର ସ୍ୱରୂପ ହୋଇଅଛି । ତହିଁ ମଧ୍ୟରେ 'ହେଦାୟା' 'ଦରଲମୁକ୍ତାର' ସର୍ବପ୍ରଧାନ । ସମ୍ପତ୍ତି ବିଭାଗ ବିଷୟରେ 'ସିରାଜୀୟା' ପ୍ରଧାନ ଧର୍ମପୁସ୍ତକ ଅଟେ । ମୁସଲମାନମାନଙ୍କ ବ୍ୟବହାର (ଆଇନ) ସମ୍ବନ୍ଧରେ ଖଣ୍ଡିଏ ପ୍ରଧାନ ନଜିର ପୁସ୍ତକ ଅଛି । ତାହାର ନାମ 'ଫତ୍ୱା ଆଲମଗିରି' । ସେଥିରେ ଆଇନ ସମ୍ବନ୍ଧରେ କେତେକ ପ୍ରଧାନ କାଜି ଓ ମୌଲବୀଙ୍କର ଉପଦେଶ ଏବଂ ନିଷ୍ପତ୍ତି ହୋଇଥିବା ଅନେକ ମକଦ୍ଦମାର ବିଚାର ଲିପିବଦ୍ଧ ହୋଇଅଛି । ମୋଗଲସମ୍ରାଟ୍ ଆଉରଙ୍ଗଜେବ କେତେକ ସୁପଣ୍ଡିତ ମୌଲବୀମାନଙ୍କ ଦ୍ୱାରା ଏ ପୁସ୍ତକ ସଂକଳନ କରାଇଥିଲେ । ଭାରତୀୟ ମୁସଲମାନ ସମ୍ପ୍ରଦାୟର ଏହି ପୁସ୍ତକ 'Authorised Edition of Law Report' କହିଲେ ଚଳେ ।

ସୁନ୍ନିମାନେ ୪ ଉପସମ୍ପ୍ରଦାୟରେ ବିଭକ୍ତ । ଭାରତୀୟ ମୁସଲମାନମାନେ ଅଧିକାଂଶ ସ୍ଥଳରେ ହନାଫି ଉପସମ୍ପ୍ରଦାୟଭୁକ୍ତ । ସିହାମାନଙ୍କର ଅନେକ ଉପସମ୍ପ୍ରଦାୟ ଅଛି । ମୁସଲମାନମାନଙ୍କ ଉପସମ୍ପ୍ରଦାୟର ସଂଖ୍ୟା ୭୩ ପର୍ଯ୍ୟନ୍ତ ଥିବାର ମିଆଁ ସାହେବଙ୍କ ବାପା କହୁଥିଲେ ।

ପ୍ରତ୍ୟେକ ସମ୍ପ୍ରଦାୟ ଓ ଉପସମ୍ପ୍ରଦାୟର ବିଧାନ (ଆଇନ) ସ୍ୱତନ୍ତ୍ର । ଏକ ସମ୍ପ୍ରଦାୟଭୁକ୍ତ ମୁସଲମାନମାନଙ୍କ ଅନ୍ୟ ସମ୍ପ୍ରଦାୟରେ ଦୀକ୍ଷିତ ହେଲେ ନୂତନ ଅବଲମ୍ବିତ ସମ୍ପ୍ରଦାୟର ବିଧାନ ଅନୁଯାୟୀ ସେ ଚଳିବାକୁ ବାଧ୍ୟ ହୁଅନ୍ତି । ତାଙ୍କର ସମ୍ପତ୍ତି ବିଭାଗ ନୂତନ ସମ୍ପ୍ରଦାୟର ନିୟମର ବଶବର୍ତ୍ତୀ ହୁଏ ।

ମୁସଲମାନମାନଙ୍କ ସମ୍ପତ୍ତିବିଭାଗ ନିୟମ ମିଆଁ ସାହେବ ପରେ ଆମ୍ଭମାନଙ୍କୁ କହିବେ ବୋଲି ପ୍ରତିଶ୍ରୁତି ଦେଇଅଛନ୍ତି । ନୂଆ ନୂଆ ସେ ନିୟମଗୁଡ଼ିକ ବୁଝିବାକୁ ଅଡୁଆ ଲାଗିବ ବୋଲି ଆମ୍ଭମାନଙ୍କୁ ପୂର୍ବରୁ ଭୟ ଦେଖାଇଅଛନ୍ତି ।

## ବିବାହ

ହିନ୍ଦୁମାନଙ୍କ ମଧ୍ୟରେ ବିବାହ ଧର୍ମବନ୍ଧନ ଅଟେ । ହିନ୍ଦୁ ସ୍ତ୍ରୀ ଓ ସ୍ୱାମୀ ମଧ୍ୟରେ ସମ୍ପର୍କର ମୂଳଭିତ୍ତି ଧର୍ମ, କିନ୍ତୁ ମୁସଲମାନମାନଙ୍କ ବିବାହ ଗୋଟିଏ ସାମାଜିକ ବନ୍ଧନ ବା ଚୁକ୍ତି ମାତ୍ର । ଏହି ବନ୍ଧନ ଅକ୍ଲେଶରେ ଛିନ୍ନ କରାଯାଇପାରେ । ବିବାହ ସମୟରେ ସାଧାରଣତଃ କୋରାଣର କେତେକ ଶ୍ଲୋକ ଆବୃତ୍ତି ହୁଏ, କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ଅଂଶ ବୋଲାଯିବାର ବିଧାନ ନାହିଁ । ବିବାହରେ ତଳଲିଖିତ କେତେକ ସର୍ତ୍ତ ଅବଶ୍ୟ ପାଳନୀୟ:-

ଏକ ପକ୍ଷର ପ୍ରସ୍ତାବ, ଅନ୍ୟ ପକ୍ଷର ଉକ୍ତ ପ୍ରସ୍ତାବ ସମର୍ଥନ ଏବଂ ପ୍ରସ୍ତାବ ସମର୍ଥନ ସମୟରେ କେତେ ଜଣ ସାକ୍ଷୀଙ୍କ ଉପସ୍ଥିତି । ପକ୍ଷମାନେ ସାବାଳକ ହୋଇଥିଲେ ପ୍ରସ୍ତାବ ଓ ସମର୍ଥନ ସେମାନେ ନିଜେ ନିଜେ କରିବେ, କିନ୍ତୁ ଯେଉଁଠାରେ ପକ୍ଷମାନେ ନାବାଳକ, ସେଠାରେ ସେମାନଙ୍କର ଉପଯୁକ୍ତ ଅଭିଭାବକମାନେ ନାବାଳକଙ୍କ ପକ୍ଷରୁ ପ୍ରସ୍ତାବ ଓ ସମର୍ଥନ କରିପାରନ୍ତି । ବିବାହ ସମ୍ବନ୍ଧରେ କେତେଗୋଟି ନିଷେଧାତ୍ମକ ନିୟମ ଅଛି । ୧. ନିଜର ରକ୍ଷିତା ଦାସୀକୁ ପୁରୁଷ ବିବାହ କରିପାରିବ ନାହିଁ । ୨. ଗୋଟିଏ ସ୍ୱାଧୀନା ସ୍ତ୍ରୀକୁ ବିବାହ କରି ତାହା ସଙ୍ଗେ ବିବାହ ବନ୍ଧନ ବିଦ୍ୟମାନ ଥାଉଁ ଥାଉଁ ପତି ଅନ୍ୟ ଜଣକର ରକ୍ଷିତା ଦାସୀକୁ ବିବାହ କରିପାରିବ ନାହିଁ । ୩. ନିଷିଦ୍ଧ ରକ୍ତ ସମ୍ପର୍କୀୟା ସ୍ତ୍ରୀକୁ ପୁରୁଷ ବିବାହ କରିପାରିବେ ନାହିଁ । ୪. ପରସ୍ପର ମଧ୍ୟରେ ନିଷିଦ୍ଧ ଚୁକ୍ତି ସମ୍ପର୍କୀୟା ଦୁଇଟି ସ୍ତ୍ରୀକୁ ଏକକାଳୀନ ଜଣେ ପୁରୁଷ ବିବାହ କରିପାରିବେ ନାହିଁ । ୫. ଯେଉଁ ପୁରୁଷଙ୍କ ୪ ଟି ସ୍ତ୍ରୀ ବିଦ୍ୟମାନ, ସେ ୫ମ ସ୍ତ୍ରୀ ଗ୍ରହଣ କରିପାରିବେ ନାହିଁ ।

ସ୍ତ୍ରୀ ବୟଃପ୍ରାପ୍ତା ହେଲେ ଅଭିଭାବକଙ୍କ ବିନା ଅନୁମତିରେ ସ୍ୱେଚ୍ଛାକ୍ରମେ ପତି ବରଣ କରିପାରନ୍ତି । ଯେଉଁଠାରେ ଅଭିଭାବକ ବୟଃପ୍ରାପ୍ତା କନ୍ୟା ପ୍ରଦାନ କରନ୍ତି, ସେଠାରେ କନ୍ୟାର ଅଙ୍ଗୀକାର ଏକାନ୍ତ ଆବଶ୍ୟକ । ଯେବେ କନ୍ୟା ବା ବର ବୟଃପ୍ରାପ୍ତ ନ ହେଉଣୁ ପିତା ବା ପିତାମହଙ୍କ ଛଡ଼ା ଅନ୍ୟ ଅଭିଭାବକ ଉକ୍ତ ବର ବା କନ୍ୟାକୁ ପ୍ରଦାନ କରିଥା'ନ୍ତି, ବୟଃପ୍ରାପ୍ତ ହେଲାରୁ ଉକ୍ତ ବର ବା କନ୍ୟା ଉକ୍ତ ବିବାହକୁ ଅଗ୍ରାହ୍ୟ କରିପାରନ୍ତି । ବିବାହ ସମୟରେ ବର କହିବେ 'ମୁଁ ତାହାଙ୍କୁ ବିବାହ କଲି' । ଏକ ସମୟରେ ଏବଂ ଏକ ସ୍ଥାନରେ ଏ ପ୍ରସ୍ତାବ ଏବଂ ସମର୍ଥନ ହେବାର ଆବଶ୍ୟକ । ଏହା ନ ହେଲେ ବିବାହ ଅସିଦ୍ଧ ହେବ ।

ମୁସଲମାନ ପୁରୁଷ ଏକେଶ୍ୱରବାଦୀ ସମ୍ପ୍ରଦାୟଭୁକ୍ତା ସ୍ତ୍ରୀକୁ (ଯଥା ଇହୁଦୀ, ଖ୍ରୀଷ୍ଟିୟାନ,) ବିବାହ କରିପାରିବେ, କିନ୍ତୁ ଅନେକେଶ୍ୱରବାଦୀ ପ୍ରତିମାପୂଜକ ଅଗ୍ନିପୂଜକ ସମ୍ପ୍ରଦାୟର ସ୍ତ୍ରୀ ଆଦୌ ନିଷିଦ୍ଧ । ଉକ୍ତ ଧର୍ମମଣ୍ଡଳୀଭୁକ୍ତା ସ୍ତ୍ରୀ ଯେବେ ମୁସଲମାନ ଧର୍ମ ଗ୍ରହଣ କରନ୍ତି ତାହା ହେଲେ ବିବାହରେ କୌଣସି ଆପତ୍ତି ନାହିଁ ।

ବିବାହ ସମୟରେ ଅନ୍ତତଃ ୨ ଜଣ ପୁରୁଷ ସାକ୍ଷୀ ଏକାନ୍ତ ଆବଶ୍ୟକ । ବିବାହ ନିମନ୍ତେ ନିଷିଦ୍ଧ ସମ୍ପର୍କୀୟା ସ୍ତ୍ରୀ ରକ୍ତ ସମ୍ପର୍କ ଅନୁସାରେ ଆପଣାର କିମ୍ବା ଆପଣା ସ୍ତ୍ରୀର ମାତା, ପିତାମହୀ, ଭଉଣୀ, ଆପଣାର କିମ୍ବା ପିତାମାତାଙ୍କର ଖୁଡ଼ୀ, ମାଈଁ, ପିଉସୀ, ମାଉସୀ, ଭାଇର ବା ଭଉଣୀର ଝିଅ, ଶାଶୂ, ସ୍ତ୍ରୀ, ଝିଅ ବା ନାତୁଣୀ, ପୁଅ କିମ୍ବା ନାତିର ସ୍ତ୍ରୀ ଅଟନ୍ତି । ପାଳନସମ୍ପର୍କ ଅନୁସାରେ ଉପରୋକ୍ତସ୍ଥାନୀୟା ସ୍ତ୍ରୀମାନଙ୍କୁ ବିବାହ କରିବା ନିଷିଦ୍ଧ । ଅର୍ଥାତ୍ ସେ ଆପଣାକୁ ସ୍ତନ୍ୟ ପାନ କରାଇଅଛନ୍ତି, ପାଳନ ସମ୍ବନ୍ଧରେ ତାଙ୍କୁ ମାତା ବୋଲି ଗଣିଲେ ଏବଂ ତାଙ୍କ ସ୍ୱାମୀଙ୍କୁ ପିତା ଗଣିଲେ ସେମାନଙ୍କ ସହିତ ଯେଉଁ

ସ୍ତ୍ରୀମାନଙ୍କର ଉପରୋକ୍ତମତେ ସମ୍ବନ୍ଧ ଅଛି ସେ ସ୍ତ୍ରୀମାନଙ୍କୁ କୌଣସି ପୁରୁଷ ବିବାହ କରିପାରିବେ ନାହିଁ ।

ବିବାହ ପରେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ତଳଲିଖିତ ବାଧ୍ୟବାଧକତା ସମ୍ବନ୍ଧ ଜନ୍ମେ:-

୧ । ଅନ୍ୟ ସ୍ଥାନକୁ ଯିବା କିମ୍ବା ବାହାରକୁ ବାହାରିବାରେ ସ୍ତ୍ରୀଙ୍କୁ ସ୍ୱାମୀଙ୍କ ଆଜ୍ଞା ଅନୁସାରେ ଚଳିବାକୁ ହେବ ।

୨ । ସ୍ୱାମୀ ସ୍ତ୍ରୀଙ୍କୁ ଯୌତୁକ ଦେବେ ଏବଂ ଭୋଜନ ଓ ବସ୍ତ୍ରାଦି ଦେବେ ।

୩ । ଉଭୟଙ୍କର ନିଷିଦ୍ଧ ସମ୍ପର୍କୀୟ ଆତ୍ମୀୟ ଅନ୍ୟାନ୍ୟଙ୍କର ନିଷିଦ୍ଧ ସମ୍ପର୍କୀୟ ହେବେ । ସ୍ୱାମୀଙ୍କ ନିଷିଦ୍ଧ ସମ୍ପର୍କୀୟ ଆତ୍ମୀୟଙ୍କୁ ସ୍ତ୍ରୀ କିମ୍ବା ସ୍ତ୍ରୀଙ୍କ ନିଷିଦ୍ଧ ସମ୍ପର୍କୀୟା ଆତ୍ମୀୟାଙ୍କୁ ସ୍ୱାମୀ ବିବାହ କରିପାରିବେ ନାହିଁ ।

୪ । ବିଧି ଅନୁସାରେ ପରସ୍ପର ପରସ୍ପରଙ୍କ ସମ୍ପତ୍ତିରେ ଉତ୍ତରାଧିକାରୀ ହେବେ ।

୫ । ସ୍ତ୍ରୀ ସ୍ୱାମୀଙ୍କ ସହିତ ଏକ ଶଯ୍ୟାରେ ଶୟନ କରିବେ ।

୬ । ସ୍ତ୍ରୀ ଦୁଷ୍ଟା ବା ଅବିନୀତା ହେଲେ ସ୍ୱାମୀ ତାହାଙ୍କୁ ଶାସନ କରିବେ । ଅପ୍ରାପ୍ତବୟସ୍କା ସ୍ତ୍ରୀଙ୍କୁ ଭରଣପୋଷଣ କରିବା ନିମନ୍ତେ ସ୍ୱାମୀ ବାଧ୍ୟ ନୁହନ୍ତି ।

ନିଜେ ବିବାହ ବେଳେ ଉପସ୍ଥିତ ହୋଇ ନ ପାରିଲେ, ପ୍ରତିନିଧି ବା ଓକିଲଙ୍କ ଦ୍ୱାରା ବିବାହ କାର୍ଯ୍ୟ ଯଥାନିୟମରେ ସମ୍ପନ୍ନ ହୋଇପାରେ ।

ସାମୟିକ ବିବାହ- କେତେକ ସିହାଙ୍କ ମଧ୍ୟରେ କିଛିଦିନ ପାଇଁ ବିବାହ-ବନ୍ଧନ ସ୍ଥାପିତ ହୋଇପାରେ । ଉକ୍ତପ୍ରକାର ବନ୍ଧନ ମିଆଦି ସମୟ ଗତ ହେଲେ କିମ୍ବା ଉଭୟ ପକ୍ଷର ରାଜିରେ ଯେତେବେଳେ ଇଚ୍ଛା ସେତେବେଳେ ଛେଦନ କରାଯାଇପାରେ । ଉକ୍ତ ବିବାହୋତ୍ପନ୍ନ ସନ୍ତାନମାନେ ପିତୃ ସମ୍ପତ୍ତିରେ ଅଧିକାରୀ ହୋଇପାରିବେ ।

ଯୌତୁକକୁ 'ଦେନ୍ ମେହେର' ବୋଲାଯାଏ । ଯୌତୁକ ବିନା ବିବାହ ହୋଇ ନ ପାରେ । ପ୍ରତ୍ୟେକ ବିବାହରେ ସ୍ୱାମୀ ସ୍ତ୍ରୀଙ୍କୁ ଅବଶ୍ୟ କିଛି ଯୌତୁକ ଦେବେ । ବିବାହ ସମୟରେ ଯୌତୁକର ଚୁକ୍ତି ହୋଇ ନ ଥିଲେ ମଧ୍ୟ ସ୍ତ୍ରୀ ସ୍ୱାମୀଙ୍କଠାରୁ ନିର୍ଦ୍ଦିଷ୍ଟ ମେହେର ପାଇବାର ଅଧିକାରିଣୀ ଅଟନ୍ତି । ମଦ୍ୟ ଓ ଶୂକର ଛଡ଼ା ଅନ୍ୟ ସମସ୍ତ ସମ୍ପତ୍ତି ଯୌତୁକ ରୂପେ ପ୍ରଦତ୍ତ ହୋଇପାରେ । ଯୌତୁକର ନ୍ୟୂନ ସୀମା ଏକଟଙ୍କା, ଉଚ୍ଚ ସୀମା ନିର୍ଣ୍ଣୀତ ନାହିଁ । ମେହେର ଦୁଇ ପ୍ରକାର :- ୧- ନଗଦ, ୨- କାଳ । ନଗଦ ଯୌତୁକ ବିବାହ ସମୟରେ ଦେୟ । କାଳ ଯୌତୁକ ସ୍ୱାମୀଙ୍କ ଅନ୍ତେ କିମ୍ବା ବିବାହ ବନ୍ଧନ ଛିନ୍ନ ହେବା ସମୟରେ ଦେବାକୁ ହୁଏ । ସାଧାରଣତଃ ଯୌତୁକର ଏକ ଅଂଶ ନଗଦ ଓ ଏକ ଅଂଶ ପରେ ଦେୟ ବୋଲି ବିବାହ ସମୟରେ ନିର୍ଦ୍ଦିଷ୍ଟ ହୁଏ । ବିବାହ ପରେ ସ୍ୱାମୀ ସ୍ତ୍ରୀଙ୍କର ସହବାସ ହେଲେ ଏବଂ ସ୍ୱାମୀଙ୍କ ମୃତ୍ୟୁ ପରେ ତାହାଙ୍କ ଦେୟ ଯୌତୁକ ତାଙ୍କର ଋଣରୂପେ

ପରିଗଣିତ ହୁଏ । ସ୍ତ୍ରୀର ଉକ୍ତ ପ୍ରାପ୍ୟ ନିମନ୍ତେ ସ୍ୱାମୀଙ୍କ ସମ୍ପତ୍ତି ଦାୟୀ ରହେ । ଯୌତୁକର ନଗଦ ଅଂଶ ସ୍ୱାମୀ ନ ଦେବା ପର୍ଯ୍ୟନ୍ତ ସ୍ତ୍ରୀ ସ୍ୱାମୀଙ୍କ ସଙ୍ଗେ ସହବାସ କରିବାକୁ ବାଧ ନୁହନ୍ତି; କିମ୍ବା ସ୍ୱାମୀଙ୍କ ନାମରେ ନାଲିସ କରିପାରନ୍ତି । କିନ୍ତୁ ଯୌତୁକର ପଶ୍ଚାଦେୟ ଅଂଶରେ ସ୍ୱାମୀଙ୍କ ମୃତ୍ୟୁ କିମ୍ବା ବିବାହ ବନ୍ଧନ ଛେଦନ ପୂର୍ବରୁ ସ୍ତ୍ରୀଙ୍କର ଅଧିକାର ନାହିଁ ।

ମୁସଲମାନ ସ୍ୱାମୀ ଅନ୍ୟ ଧର୍ମ ଗ୍ରହଣ କଲେ ପ୍ରାକ୍-ସମ୍ବନ୍ଧ ଛିନ୍ନ ହୁଏ । ସ୍ୱାମୀ ଓ ସ୍ତ୍ରୀ ଉଭୟେ ଧର୍ମାନ୍ତର ଗ୍ରହଣ କଲେ ପୂର୍ବ ବିବାହବନ୍ଧନ ଅଛିନ୍ନ ରହେ । ଅନ୍ୟ ଧର୍ମଭୁକ୍ତ ସ୍ୱାମୀ ମୁସଲମାନ ଧର୍ମ ଗ୍ରହଣ କଲେ ପୂର୍ବର ବିବାହ ବନ୍ଧନ ରହେ- ଅନ୍ୟ ଧର୍ମଭୁକ୍ତା ସ୍ତ୍ରୀ ମୁସଲମାନ ଗ୍ରହଣ କଲେ, ଯଦି ସ୍ୱାମୀ ମୁସଲମାନ ଧର୍ମ ଗ୍ରହଣ ନ କରନ୍ତି ତାହାହେଲେ ବିବାହ-ବନ୍ଧନ ଛିନ୍ନ ହୁଏ ।

ବିବାହ-ବନ୍ଧନ ଛେଦ ବା ଛାଡ଼ପତ୍ର ପ୍ରଥା ଉଭୟ ପକ୍ଷଙ୍କର ବିବାହ-ବନ୍ଧନ ଛେଦ କରିବାର ଅଧିକାର ଅଛି । ସ୍ୱାମୀ କିମ୍ବା ସ୍ତ୍ରୀ କିମ୍ବା ଉଭୟେ କାଜିଙ୍କ ନିକଟରେ ଉପଯୁକ୍ତ କାରଣ (ଯଥା କ୍ଳୀବତ୍ୱ, ଅପାରଗତା, ନିଷ୍ଠୁରତା, ସଙ୍ଗତ୍ୟାଗ ଇତ୍ୟାଦି) ଦର୍ଶାଇ ବିବାହ-ବନ୍ଧନ ଛେଦନ ନିମନ୍ତେ ଆବେଦନ କରିପାରନ୍ତି । ସ୍ୱାମୀ ସ୍ତ୍ରୀଙ୍କୁ ତ୍ୟାଗ କରିବା ପ୍ରଥାକୁ 'ତଲାକ୍' ବୋଲାଯାଏ । ତଲାକ୍ ଅତି ଘୃଣିତ କାର୍ଯ୍ୟ ବୋଲି ମହମ୍ମଦ କହି ଯାଇଅଛନ୍ତି ।

ସ୍ୱାମୀ ସ୍ତ୍ରୀଙ୍କ ସମ୍ମୁଖରେ 'ତଲାକ' ବାକ୍ୟ ଉଚ୍ଚାରଣ କରି ୩ ମାସ ପର୍ଯ୍ୟନ୍ତ ସ୍ତ୍ରୀଙ୍କୁ ସହବାସ କରିବେ ନାହିଁ ଓ ୩ ମାସ ଅତୀତ ହେଲାରୁ ବିବାହ-ବନ୍ଧନ ଛିନ୍ନ ହେବ । ଏହି ୩ ମାସ ନ ପୂରୁଣୁ ସ୍ୱାମୀ ସ୍ତ୍ରୀଙ୍କୁ ପୁନର୍ବାର ଗ୍ରହଣ କରିପାରନ୍ତି । କିନ୍ତୁ ୩ ମାସ ପୂର୍ଣ୍ଣ ହେଲାରୁ ସ୍ୱାମୀ ଯଦି ତଲାକଦିଆ ସ୍ତ୍ରୀଙ୍କୁ ପୁନର୍ବାର ଗ୍ରହଣ କରିବାକୁ ଇଚ୍ଛା କରନ୍ତି, ତାହାହେଲେ ଉକ୍ତ ସ୍ତ୍ରୀ ପ୍ରଥମେ ଅନ୍ୟ ଜଣକୁ ବିବାହ କରିବେ ଏବଂ ୨ୟ ସ୍ୱାମୀ ତାଙ୍କୁ ଛାଡ଼ପତ୍ର ଦେବେ । ତତ୍ପରେ ପୁନର୍ବାର ପ୍ରଥମ ସ୍ୱାମୀଙ୍କୁ ବିବାହ କଲେ ପୁନର୍ମିଳନ ହେବ ।

ଉତ୍କଳ ସାହିତ୍ୟ/୮ମ ଭାଗ/୧ମ ସଂଖ୍ୟା/ ୧୩୧୧ ସାଲ ।

## ॥ ତିନି ॥

### ସନ୍ତାନ

ମୁସଲମାନମାନଙ୍କ ମଧ୍ୟରେ ଗର୍ଭଧାରଣର ନିମ୍ନତମ ସମୟ ଛ' ମାସ ଏବଂ ଉର୍ଦ୍ଧ୍ୱତମ ସମୟ ଦୁଇ ବର୍ଷ । କ୍ଷେତ୍ରଜ ସନ୍ତାନ ସାଧାରଣତଃ ସ୍ୱାମୀଙ୍କର ବୋଲି ନିଷ୍ପନ୍ନ ହୁଏ । କିନ୍ତୁ ଉପଯୁକ୍ତ କାରଣ ଓ ପ୍ରମାଣ ଦେଖାଇ ସ୍ୱାମୀ କ୍ଷେତ୍ରଜ ସନ୍ତାନକୁ ଅସ୍ୱୀକାର କରିପାରନ୍ତି । ପ୍ରଥମେ ଔରସ ବୋଲି ସ୍ୱୀକାର କରି ପରେ ଅସ୍ୱୀକାର କରିବାର କ୍ଷମତା ପିତାଙ୍କର ନାହିଁ । ଇଂରେଜମାନଙ୍କ ମଧ୍ୟରେ ଗୋଟିଏ ନିୟମ ପ୍ରଚଳିତ ଅଛି ଯେ, କୌଣସି

ପୁରୁଷ ସହବାସରେ କୌଣସି ସ୍ତ୍ରୀଙ୍କର ଗର୍ଭୋଦୟ ହେଲାପରେ ଯେବେ ଦୁହେଁ ବିବାହସୂତ୍ରରେ ଆବଦ୍ଧ ହୁଅନ୍ତି ତେବେ ବିବାହ-ପୂର୍ବୋ ଗର୍ଭର ସନ୍ତାନ ବିବାହକାରୀଙ୍କର ବୋଲି ବିବେଚିତ ହୁଏ । କିନ୍ତୁ ମୁସଲମାନମାନଙ୍କ ବିଧାନ ଅନୁସାରେ ବିବାହ ପୂର୍ବରୁ ବିବାହକାରୀ ସ୍ୱାମୀଙ୍କ ସହବାସରେ ଗର୍ଭୋଦୟ ହୋଇଥିଲେ ଉକ୍ତ ଗର୍ଭଜାତ ଶିଶୁ ଉପରୋକ୍ତ ପିତାଙ୍କର ସନ୍ତାନ ସ୍ୱରୂପ ଗଣ୍ୟ ହୋଇ ନ ପାରେ । ଉକ୍ତ ସନ୍ତାନ କ୍ଷେତ୍ରଜ । କ୍ଷେତ୍ରଜ ସନ୍ତାନ ମାତୃ ସମ୍ପତ୍ତିରେ ଅଧିକାରୀ, କିନ୍ତୁ ପିତୃ-ସମ୍ପତ୍ତିରୁ ବଞ୍ଚିତ ହୁଏ । ନିଷିଦ୍ଧ ବିବାହୋତ୍ପନ୍ନ ସନ୍ତାନର ପିତୃ ସମ୍ପତ୍ତିରେ ଅଧିକାର ନାହିଁ ।

ମୁସଲମାନମାନଙ୍କ ମଧରେ ପୋଷ୍ୟପୁତ୍ର ଗ୍ରହଣ କରିବା ରୀତି ପ୍ରଚଳିତ ନାହିଁ । ଜ୍ଞାତ-ପିତୃକ ପୁତ୍ର ଅନ୍ୟ ପିତାଙ୍କର ପୋଷ୍ୟସ୍ୱରୂପ ଗୃହୀତ ହୋଇପାରିବେ ନାହିଁ । ସୁନ୍ନୀ ବିଧାନ ଅନୁସାରେ ଅଜ୍ଞାତ-ପିତୃକ ଲୋକଙ୍କୁ ଅନ୍ୟ ପୁରୁଷ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିପାରନ୍ତି । ପୋଷ୍ୟପୁତ୍ରଙ୍କ ଜନ୍ମକର୍ତ୍ତ୍ରୀ ଗ୍ରାହକ ପିତାଙ୍କ ସ୍ତ୍ରୀ ବୋଲି ବିବେଚିତ ହୁଅନ୍ତି ଏବଂ ସ୍ତ୍ରୀଙ୍କର ସମ୍ପୂର୍ଣ୍ଣ ଅଧିକାରରେ ଅକାବାରିଣୀ ହୁଅନ୍ତି ।

**ସନ୍ତାନ ପାଳନ** - ଶିଶୁ ସନ୍ତାନମାନଙ୍କୁ ପାଳନ କରିବାର ଅଧିକାର ସର୍ବାଦୌ ମାତାଙ୍କର । ଶିଶୁ ବଢ଼ିଗଲେ ପିତା ତାହାକୁ ପାଳନ କରିବାର ଅଧିକାର ପ୍ରାପ୍ତ ହୁଅନ୍ତି ଏବଂ ତାହାର ଅଭିଭାବକ ହୁଅନ୍ତି । କନ୍ୟା ବିବାହିତା କିମ୍ୱା ବୟଃପ୍ରାପ୍ତା ହେବା ପର୍ଯ୍ୟନ୍ତ ମାତା କନ୍ୟାର ଅଭିଭାବିକା- ବିବାହ-ନିଷିଦ୍ଧ ସମ୍ପର୍କରେ ସଂବନ୍ଧ ପୁରୁଷ କୌଣସି କନ୍ୟାର ଅଭିଭାବକ ହେବାର ଯୋଗ୍ୟ ନୁହନ୍ତି । ମାତା କ୍ଷେତ୍ରଜ ସନ୍ତାନର ଅଭିଭାବିକା । ଅଭିଭାବକ ନାବାଳକର ନିଷିଦ୍ଧ ସମ୍ପର୍କୀୟ ଲୋକ ସଙ୍ଗେ ବିବାହ କଲେ କିମ୍ୱା ଦୁରାଚାର ଅଥବା ସୁଦୂରପ୍ରବାସୀ କିମ୍ୱା ଜାତିଚ୍ୟୁତ ହେଲେ ତାଙ୍କର ଅଧିକାର ଲୁପ୍ତ ହୁଏ ।

**ବୟଃପ୍ରାପ୍ତି** - କେଉଁ କେଉଁ ସମ୍ପ୍ରଦାୟ ମତରେ ବାଳକ ୧୫ ବର୍ଷ କିମ୍ୱା ୧୮ ବର୍ଷ ବୟସ ଅତିକ୍ରମ କଲେ ବୟଃପ୍ରାପ୍ତ ହେବାର ବିବେଚିତ ହୁଏ । ଅଭିଭାବକ ହେବାର ଅଧିକାର ସର୍ବାଦୌ ପିତାଙ୍କର, ତଦଭାବେ ପିତୃନିଯୁକ୍ତ ବ୍ୟକ୍ତି ତଦଭାବେ ପିତାମହ, ତଦଭାବେ କାଜିଙ୍କ ଦ୍ୱାରା ମନୋନୀତ ଅଟନ୍ତି । ଅଭିଭାବକ ୨ ଶ୍ରେଣୀରେ ବିଭକ୍ତ:- ୧- ଦେହରକ୍ଷା ନିମନ୍ତେ । ୨- ସମ୍ପତ୍ତି ରକ୍ଷା ନିମନ୍ତେ । ମାତା ନାବାଳକର ଦେହରକ୍ଷୀ ହୋଇପାରନ୍ତି, କିନ୍ତୁ କାଜିଙ୍କର ବିନା ଅନୁମତିରେ ନାବାଳକର ସମ୍ପତ୍ତି ରକ୍ଷା କରିବାର ଅଧିକାର ମାତାଙ୍କର ନାହିଁ । ନାବାଳକ ସନ୍ତାନମାନଙ୍କ ଭରଣପୋଷଣ କରିବାକୁ ବାଧ୍ୟ । ପିତା ନିଃସ୍ୱ ହୋଇଥିଲେ ଓ ପିତାମହ ଧନୀ ହୋଇଥିଲେ ପିତାମହ ବାଧ୍ୟ । ଦୁର୍ବଳ କିମ୍ୱା ଅକ୍ଷମ ବୟଃପ୍ରାପ୍ତ ସନ୍ତାନମାନଙ୍କୁ ଭରଣପୋଷଣ କରିବା ପିତାଙ୍କର କର୍ତ୍ତବ୍ୟ — କନ୍ୟା ବିବାହିତା ଅର୍ଥ ବୟଃପ୍ରାପ୍ତା ନ ହେବା ପର୍ଯ୍ୟନ୍ତ ତାଙ୍କ ଭରଣପୋଷଣ କରିବାର ଭାର ପିତାଙ୍କ ଉପରେ ନ୍ୟସ୍ତ ।

**ଦାନ** - ଦାନକୁ 'ହିବା' ବୋଲାଯାଏ । ଏହା ସାଧାରଣତଃ ୩ ପ୍ରକାର ।

୧. ଦାତା ଗ୍ରହୀତାଙ୍କୁ ବିନାମୂଲ୍ୟରେ ଅନୁଗ୍ରହ ସ୍ୱରୂପ ଦାନ କରନ୍ତି ।

୨. ଦାତା ଗ୍ରହୀତାଙ୍କଠାରୁ କିଛି ପଇସା ନେଇ ଗହୀତାଙ୍କୁ କୌଣସି ବସ୍ତୁ ଦାନ କରନ୍ତି ।

୩. ଗ୍ରହୀତା ଦାତାଙ୍କୁ ଭବିଷ୍ୟତରେ କିଛି ପ୍ରତିଦାନ କରିବେ, ଏହି ସର୍ତ୍ତରେ ଦାନ କରାଯାଏ ।

ଦାନପତ୍ର କିମ୍ୱା ମୌଖିକ ଆଦେଶ ଦ୍ୱାରା ଦାନ ସିଦ୍ଧ ହୁଏ । ମାରାତ୍ମକ ପୀଡ଼ାଗ୍ରସ୍ତ ବ୍ୟକ୍ତି ଯେବେ କିଛି ଦାନ କରନ୍ତି, ତାହା ହେଲେ ଉକ୍ତ ଦାନ ତଳଲିଖିତ ନିୟମ ଅନୁସାରେ ପ୍ରବଳ ହୁଏ ।

୧. ସମସ୍ତ ଉତ୍ତରାଧିକାରୀଙ୍କ ଅନୁମତି ବ୍ୟତିରେକେ ଜଣେ ଉତ୍ତରାଧିକାରୀଙ୍କୁ କୌଣସି ଦାନ ଦିଆ ହୋଇ ନ ଥିଲେ ତାହା ଅସିଦ୍ଧ ।

୨. ଉତ୍ତରାଧିକାରୀଙ୍କ ଅନୁମତି ସହ କୌଣସି ଉତ୍ତରାଧିକାରୀକୁ ବା ଅପର ଲୋକଙ୍କୁ ଯାହା ଦାନ ହୋଇଥାଏ ତାହା ସିଦ୍ଧ ।

୩. ଉତ୍ତରାଧିକାରୀଙ୍କ ଅନୁମତି ବ୍ୟତିରେକେ ଅପର ଲୋକଙ୍କୁ ଯାହା ଦାନ ହୋଇଥାଏ ତହିଁର $\frac{୧}{୩}$ ସିଦ୍ଧ ଓ ଅପର $\frac{୨}{୩}$ ଗ୍ରହୀତା ପାଇ ନ ପାରନ୍ତି ।

ସାଧାରଣତଃ ଦାନ ସିଦ୍ଧ ହେବା ନିମନ୍ତେ ନିମ୍ନଲିଖିତ କେତେଗୋଟି ବିଧି ପାଳନ ଏକାନ୍ତ ଆବଶ୍ୟକ ।

୧. ଦାତା ଦାନ ଦେବାର ଇଚ୍ଛା ପ୍ରକାଶ କରିବେ ।

୨. ଗ୍ରହୀତା ଉକ୍ତ ଦାନ ଗ୍ରହଣ କରିବାକୁ ସ୍ୱୀକୃତ ହେବେ ।

୩. ଗ୍ରହୀତା ଦତ୍ତ ସମ୍ପତ୍ତିକୁ ଦାନ ପରେ ସ୍ୱାଧିକାରଭୁକ୍ତ କରିବେ ।

୪. ଦତ୍ତ ସମ୍ପତ୍ତିରେ ଦାତାଙ୍କର ସମ୍ପୂର୍ଣ୍ଣ ଅଧିକାର ଥିବ ।

୫. ଦାତା ବୟଃପ୍ରାପ୍ତ, ପ୍ରକୃତିସ୍ଥ ଓ ସ୍ୱାଧୀନ ହୋଇଥିବେ ।

କେତେକ ସ୍ଥଳରେ ଦାନ ପ୍ରତ୍ୟାଖ୍ୟାତ ହୋଇପାରେ, କିନ୍ତୁ ଗ୍ରହୀତା ଦତ୍ତ ସମ୍ପତ୍ତିକୁ ହସ୍ତାନ୍ତର କରିଥିଲେ, ଅଥବା ଦତ୍ତ ସମ୍ପତ୍ତି ନଷ୍ଟ ହୋଇଥିଲେ କିମ୍ୱା ଦାତା ଓ ଗ୍ରହୀତାଙ୍କ ମଧ୍ୟରେ ବିବାହ ସମ୍ପର୍କ ଥିଲେ, ଦାନ ପ୍ରତ୍ୟାଖ୍ୟାତ ହୋଇ ନ ପାରେ ।

**ଖଏରାତ** - ସଦାବର୍ତ୍ତ ନିମନ୍ତେ ଖଏରାତକୁ ଉଆକଫ୍ ବୋଲାଯାଏ । କୌଣସି ଧର୍ମାର୍ଥ ଦାନକୁ 'ଉଆକଫ୍' ବୋଲାଯାଏ । ମୁସଲମାନମାନଙ୍କ ମତରେ ଆପଣାର ସନ୍ତାନ-ସନ୍ତତି ବା କୁଟୁମ୍ବମାନଙ୍କ ପୋଷଣ ନିମନ୍ତେ ଦାନ ଧର୍ମକାର୍ଯ୍ୟ ମଧ୍ୟରେ ପରିଗଣିତ । ଧର୍ମାର୍ଥ ଦାନ ପ୍ରତ୍ୟାଖ୍ୟାତ ହୋଇ ନ ପାରେ । ଧର୍ମାର୍ଥ ଦାନର ପ୍ରଧାନ ସରେଦ୍ ଏହି କି, ଉକ୍ତ ଦାନ ଚିରଦିନ ନିମନ୍ତେ ଉତ୍ସୃଷ୍ଟ ହେବାର ଆବଶ୍ୟକ । ଅଜାତ ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ 'ଉଆକଫ୍' କରାଯାଇପାରେ, କିନ୍ତୁ ସେମାନଙ୍କ ଉଦ୍ଦେଶ୍ୟରେ ଦାନ 'ହିବା'

ଅସିଦ୍ଧ । ସମସ୍ତ 'ଉଆକଫ୍'ର ଶେଷ ଗ୍ରହୀତା ନିର୍ଧନମାନେ । ଅର୍ଥାତ୍ ଉଆକଫ୍‌ରେ ଦାତାଙ୍କର ନିକଟସ୍ଥ ଉଦ୍ଦେଶ୍ୟ ସିଦ୍ଧ ହେବା ବିଷୟରେ ଯେବେ କିଛି ବାଧା ପଡ଼େ, ତାହାହେଲେ ଉକ୍ତ ଉତ୍ସୃଷ୍ଟ ସମ୍ପତ୍ତି ଦରିଦ୍ର ସେବାରେ ନିୟୋଜିତ ହେବ । ମୁସଲମାନ ବିଧାନ ଅନୁସାରେ କୌଣସି 'ଉଆକଫ୍' ବ୍ୟର୍ଥ ହୋଇ ନ ପାରେ । କାରଣ ସମସ୍ତ 'ଉଆକଫ୍'ର ଶେଷ ଗ୍ରହୀତା ଏବଂ ଭୋକ୍ତା ଦରିଦ୍ରମାନେ ଅଟନ୍ତି । 'ଉଆକଫ୍'ର ମାର୍ଫତଦାର ବା ସେବାଏତଙ୍କୁ 'ମତ୍ୱାଲି' ବୋଲାଯାଏ । ଉଆକଫ୍ କର୍ତ୍ତା ସ୍ୱୟଂ ମତ୍ୱାଲି ହୋଇପାରନ୍ତି କିମ୍ବା ଅନ୍ୟକୁ ନିଯୁକ୍ତ କରିପାରନ୍ତି । ଉଆକଫ୍ ବାର୍ତ୍ତା କାହାକୁ ମତ୍ୱାଲି ନିଯୁକ୍ତ କରି ନ ଥିଲେ କିମ୍ବା ନିଯୁକ୍ତ ମତ୍ୱାଲି କର୍ତ୍ତବ୍ୟରେ ତ୍ରୁଟି କଲେ କାଜି ଜଣେ ଉପଯୁକ୍ତ 'ମତ୍ୱାଲି' ନିଯୁକ୍ତ କରିପାରନ୍ତି । 'ଉଆକଫ୍' ଦାତାଙ୍କ କାର୍ଯ୍ୟକ୍ଷମ ବଂଶଧର ଜୀବିତ ଥିବା ପର୍ଯ୍ୟନ୍ତ ଅପର ବ୍ୟକ୍ତି ମତ୍ୱାଲି ହୋଇପାରିବେ ନାହିଁ । ହିନ୍ଦୁମାନଙ୍କ ଦେବୋତ୍ତର ସମ୍ପତ୍ତି ସମ୍ବନ୍ଧରେ ସେବାଏତମାନଙ୍କର ଯେଉଁ ଅଧିକାର, ଉଆକଫ୍ ସମ୍ପତ୍ତି ସମ୍ବନ୍ଧରେ ମତ୍ୱାଲିଙ୍କର ସେହି ଅଧିକାର ।

ଉତ୍କଳ ସାହିତ୍ୟ/୮ମ ଭାଗ/୨ୟ ସଂଖ୍ୟା/୧୩୧୧ ସାଲ।

## ॥ ଚାରି ॥

ଉଇଲ ବା ଚରମ ପତ୍ର-

କୌଣସି ବ୍ୟକ୍ତିଙ୍କ ମୃତ୍ୟୁ ପରେ ତାଙ୍କ ସମ୍ପତ୍ତିରେ କିଏ ଅଧିକାରୀ ହେବ ଏ କଥା ଯେବେ ମୃତ୍ୟୁ ପୂର୍ବରୁ ଅଧିକାରୀ ନିର୍ଦ୍ଦେଶ କରିଯାନ୍ତି, ସେହି ଇଚ୍ଛାପ୍ରକାଶକୁ ଉଇଲ ବା 'ଉଆସିଅତ' ବୋଲାଯାଏ । ଚରମ ଇଚ୍ଛା ବାକ୍ୟଦ୍ୱାରା ବା ଲିଖିତ ପତ୍ରଦ୍ୱାରା ସମ୍ପାଦିତ ହୋଇପାରେ । ଚରମପତ୍ର ଲିଖିତ ହେବାର ବିଧି କୋରାନରେ ନାହିଁ ।

ଉଇଲଗ୍ରହୀତା ନିର୍ଦ୍ଦିଷ୍ଟ ସମ୍ପତ୍ତି ଗ୍ରହଣ ନ କରିବା ପର୍ଯ୍ୟନ୍ତ ତାଙ୍କର ତହିଁରେ କୌଣସି ଅଧିକାର ପ୍ରବର୍ତ୍ତି ନ ପାରେ ।

ମୁସଲମାନମାନଙ୍କ ଉଇଲ୍‌ରେ ନିମ୍ନଲିଖିତ କେତେଗୋଟି ସରତ୍ ପାଳିତ ହେବାର ଆବଶ୍ୟକ -

୧. ଉଇଲକର୍ତ୍ତାଙ୍କର ଉତ୍ସର୍ଗୀକୃତ ସମ୍ପତ୍ତିରେ ପୂର୍ଣ୍ଣ ଅଧିକାର ଓ ସ୍ୱତ୍ୱ ଥିବ ।

୨. ଉଇଲକର୍ତ୍ତା ବୟଃପ୍ରାପ୍ତ, ପ୍ରକୃତିସ୍ଥ ଏବଂ ସ୍ୱାଧୀନ ହୋଇଥିବେ । ଯେବେ ନାବାଳକ କୌଣସି ଉଇଲ ସମ୍ପାଦନ କରି ବୟଃପ୍ରାପ୍ତ ହେଲେ ତାହା ମଞ୍ଜୁର କରେ, ତାହା ହେଲେ ଉଇଲରେ କିଛି ବାଧା ପଡ଼ିବ ନାହିଁ ।

୩. ସ୍ତ୍ରୀମାନଙ୍କର ମଧ୍ୟ ଉଇଲ କରିବାର ଅଧିକାର ଅଛି ।

୪. ଉଇଲଗ୍ରହୀତା ନିର୍ଦ୍ଦିଷ୍ଟ ସମ୍ପତ୍ତି ଗ୍ରହଣ କରିବାର ଉପଯୁକ୍ତ ହୋଇଥିବେ । ଗର୍ଭସ୍ଥ ସନ୍ତାନ ଉଦ୍ଦେଶ୍ୟରେ ମଧ୍ୟ ଉଇଲ କରାଯାଇପାରେ । ଦାତାଙ୍କ ମୃତ୍ୟୁ ପରେ ଗ୍ରହୀତା ଉକ୍ତ ସମ୍ପତ୍ତି ଗ୍ରହଣ କରିବା ଆବଶ୍ୟକ ।

୫. ଯେବେ ଗ୍ରହୀତା ଦାତାଙ୍କୁ ହତ୍ୟା କରନ୍ତି ତାହା ହେଲେ ଉଇଲ - ନିର୍ଦ୍ଦିଷ୍ଟ ସମ୍ପତ୍ତି ପାଇପାରିବେ ନାହିଁ ।

୬. ଯେବେ ଦାତା ଜଣେ ଉତ୍ତରାଧିକାରୀଙ୍କ ଉଦ୍ଦେଶ୍ୟରେ ଉଇଲ କରନ୍ତି ଏବଂ ସେଥିରେ ଅନ୍ୟ ଉତ୍ତରାଧିକାରୀମାନେ ସମ୍ମତି ପ୍ରକାଶ ନ କରନ୍ତି ତାହା ହେଲେ ଉକ୍ତ ଦାନ ସମ୍ପୂର୍ଣ୍ଣରୂପେ ନିଷ୍ଫଳ ହେବ ।

୭. ଉତ୍ତରାଧିକାରୀଙ୍କ ଛଡ଼ା ଅନ୍ୟ ଲୋକ ଉଦ୍ଦେଶ୍ୟରେ ଯେବେ ଉଇଲ କରାଯାଏ, ସେଥିରେ ସମସ୍ତ ଉତ୍ତରାଧିକାରୀ ଅନୁମତି ବା ସମ୍ମତି ପ୍ରଦାନ ନ କଲେ ଗ୍ରହୀତା ଦାତାଙ୍କ ସମ୍ପତ୍ତିର ତୃତୀୟାଂଶରୁ ଅଧିକ ପାଇପାରିବେ ନାହିଁ ।

୮. ଦାତାଙ୍କ ମୃତ୍ୟୁ ପୂର୍ବରୁ ଯେବେ ଗ୍ରହୀତା ପରଲୋକ ଗମନ କରନ୍ତି, ତାହାହେଲେ ଦାତାଙ୍କ ମୃତ୍ୟୁ ପରେ ଗ୍ରହୀତାଙ୍କ ଉତ୍ତରାଧିକାରୀମାନେ ନିର୍ଦ୍ଦିଷ୍ଟ ସମ୍ପତ୍ତିର ଅଧିକାରୀ ହେବେ ।

୯. ଯେଉଁ ଲୋକଙ୍କର କେହି ଉତ୍ତରାଧିକାରୀ ନାହାନ୍ତି ସେ ଆପଣାର ଋଣ ପରିଶୋଧ ଓ ଅନ୍ତ୍ୟେଷ୍ଟିକ୍ରିୟାର ବ୍ୟୟ ସଂସ୍ଥାନ କରି ସମ୍ପତ୍ତିର ଅବଶିଷ୍ଟ ଉଇଲ କରିପାରନ୍ତି ।

୧୦. ଯଦି ଦୁଇଜଣ ବ୍ୟକ୍ତିଙ୍କ ନାମରେ ଉଇଲ କରା ଯାଇଥାଏ ଏବଂ ସେମାନଙ୍କ ମଧ୍ୟରୁ ଜଣେ ଉଇଲ ସମ୍ପାଦନ ସମୟରେ ମୃତ ହୋଇଥାଏ ଅନ୍ୟଜଣକ ଦତ୍ତ ସମ୍ପତ୍ତିର ଅର୍ଦ୍ଧେକ ପାଇବେ ।

୧୧. ଦାତାଙ୍କ ମୃତ୍ୟୁ ପରେ ତାଙ୍କ ସମ୍ପାଦିତ ଉଇଲରେ ଉତ୍ତରାଧିକାରୀମାନେ ସମ୍ମତି ପ୍ରଦାନ କରିବା ଆବଶ୍ୟକ ।

୧୨. ଦାତା ଉଇଲଦ୍ୱାରା ଧର୍ମାର୍ଥେ ଦାନ (ଉଆକଫ୍) ମଧ୍ୟ କରିପାରନ୍ତି ।

ଦାତା ସ୍ୱୀକୃତ ଉଇଲକୁ ରଦ୍ଦ କରିପାରନ୍ତି । ଯଦି ପୂର୍ବକୃତ ଉଇଲକୁ ପ୍ରକାଶ୍ୟ ଭାବରେ ରଦ୍ଦ ନ କରି ଦାତା ପୂର୍ବଦତ୍ତ ସମ୍ପତ୍ତିକୁ ଅନ୍ୟ ଗ୍ରହୀତାଙ୍କ ନାମରେ ଉତ୍ସର୍ଗ କରନ୍ତି, ତାହା ହେଲେ ଉଭୟ ଗ୍ରହୀତା ଦତ୍ତ ସମ୍ପତ୍ତିର ଅର୍ଦ୍ଧେକ ଲେଖାଏଁ ପାଇବେ । କିନ୍ତୁ ଯେବେ ଦାତା ପ୍ରକାଶ୍ୟ ଭାବରେ ପୂର୍ବ ଉଇଲକୁ ରଦ୍ଦ କରନ୍ତି ତାହାହେଲେ ଦ୍ୱିତୀୟ ଗ୍ରହୀତା ସମସ୍ତ ସମ୍ପତ୍ତି ପାଇବେ ।

ଏକ୍‌ଜିକ୍ୟୁଟର ବା ମୃତବ୍ୟକ୍ତିଙ୍କ ସମ୍ପତ୍ତିର ତତ୍ତ୍ୱାବଧାରକ-

ମୃତବ୍ୟକ୍ତିଙ୍କ ଅନ୍ତେ ବ୍ୟକ୍ତି ସମ୍ପତ୍ତି ଓ ପରିବାର ରକ୍ଷଣାବେକ୍ଷଣର ଭାର ମୃତ ବ୍ୟକ୍ତି ଯାହାଙ୍କ ଉପରେ ଅର୍ପଣ କରି ଯାଇଥାନ୍ତି, ତାହାଙ୍କୁ 'ଉଆସି' ବୋଲାଯାଏ ।

ମନ୍ଦାଚରଣ ନିମନ୍ତେ 'ଉଆସି'ଙ୍କୁ ପଦଚ୍ୟୁତି କରିବାର କ୍ଷମତା 'ଜଜ' ବା 'କାଜି'ଙ୍କର ଅଛି । କୌଣସି ଦାସ, ବିଧର୍ମୀ, ନାବାଳକ, ବାତୁଳ, ବିଦେଶୀ ବା ଧର୍ମତ୍ୟାଗୀ ବ୍ୟକ୍ତି ମୃତ ମୁସଲମାନମାନଙ୍କ ସମ୍ପତ୍ତି ରକ୍ଷଣାବେକ୍ଷଣର ଉପଯୁକ୍ତ ନୁହନ୍ତି । କିନ୍ତୁ ଅଦାଲତ କେତେକ ସ୍ଥଳରେ ହିନ୍ଦୁମାନେ ମୁସଲମାନମାନଙ୍କ ତ୍ୟକ୍ତ ସମ୍ପତ୍ତିର ତତ୍ତ୍ୱାବଧାରକ ହେବା ବିଷୟ ମଞ୍ଜୁର କରିଅଛନ୍ତି । ମୃତବ୍ୟକ୍ତିଙ୍କ ଦ୍ୱାରା ନିଯୁକ୍ତ ବ୍ୟକ୍ତି ନ୍ୟସ୍ତ ଭାରକୁ ଗ୍ରହଣ କରିବା ନିମନ୍ତେ ବାଧ ନୁହନ୍ତି; କିନ୍ତୁ ଥରେ ଗ୍ରହଣ କଲେ ଜଜଙ୍କ ବିନା ଅନୁମତିରେ ତାହା ଛାଡ଼ିପାରିବେ ନାହିଁ ।

'ଉଆସି' ବା ତତ୍ତ୍ୱାବଧାରକ ତାଙ୍କର ମୃତ୍ୟୁ ପୂର୍ବରୁ ତାଙ୍କ ନିମନ୍ତେ ପ୍ରତିନିଧି ନିଯୁକ୍ତ କରିପାରନ୍ତି ଓ ସମ୍ପତ୍ତି ରକ୍ଷଣାବେକ୍ଷଣ ବିଷୟରେ ଉକ୍ତ ପ୍ରତିନିଧିଙ୍କର ସମ୍ପୂର୍ଣ୍ଣ କ୍ଷମତା ରହିବ ।

ମୃତବ୍ୟକ୍ତି କୌଣସି ତତ୍ତ୍ୱାବଧାରକ ନିଯୁକ୍ତ ନ କରି ପରଲୋକ ଗମନ କରିଥିଲେ 'ଜଜ' ଜଣେ ତତ୍ତ୍ୱାବଧାରକ ନିଯୁକ୍ତ କରିପାରିବେ । ମୃତବ୍ୟକ୍ତିଙ୍କ ତ୍ୟକ୍ତ ସମ୍ପତ୍ତିରେ ତତ୍ତ୍ୱାବଧାରକଙ୍କ କ୍ଷମତା-

୧. ଯଦି ମୃତବ୍ୟକ୍ତିଙ୍କର ଉତ୍ତରାଧିକାରୀ ଓ ଉଇଲଗ୍ରହୀତା ଥା'ନ୍ତି ଓ ଉତ୍ତରାଧିକାରୀମାନେ ନାବାଳକ କିମ୍ବା ଅନୁପସ୍ଥିତ ଥା'ନ୍ତି ତାହାହେଲେ ତତ୍ତ୍ୱାବଧାରକ ନାବାଳକଙ୍କ ତରଫରୁ ତ୍ୟକ୍ତ ସମ୍ପତ୍ତି ବିଭାଗ କରି ନେଇପାରିବେ, କିନ୍ତୁ ଯେବେ ଉତ୍ତରାଧିକାରୀମାନେ ବୟଃପ୍ରାପ୍ତ ଓ ଉପସ୍ଥିତ ଥାନ୍ତି ତାହାହେଲେ 'ଉଆସି' ସେମାନଙ୍କ ତରଫରୁ ସମ୍ପତ୍ତି ବିଭାଗ କରିପାରିବେ ନାହିଁ କିମ୍ବା ସମ୍ପତ୍ତି ହସ୍ତାନ୍ତର କରିପାରିବେ ନାହିଁ ।

୨. ମୃତବ୍ୟକ୍ତିଙ୍କ ଋଣ ପରିଶୋଧ ଓ ଅନ୍ତ୍ୟେଷ୍ଟି କ୍ରିୟାର ବ୍ୟୟ ନିମନ୍ତେ ନାବାଳକମାନଙ୍କ ଭରଣପୋଷଣାଦି ଉପକାର ନିମନ୍ତେ ସମ୍ପତ୍ତିକୁ ଦ୍ୱିଗୁଣ ମୂଲ୍ୟରେ ବିକ୍ରୟ କରିବା ନିମନ୍ତେ ତତ୍ତ୍ୱାବଧାରକଙ୍କର ସମ୍ପତ୍ତି ହସ୍ତାନ୍ତରିତ କରିବାର ଅଧିକାର ଅଛି ।

୩. ତତ୍ତ୍ୱାବଧାରକ ନିଜେ କିମ୍ବା ତାଙ୍କର ସମ୍ପର୍କୀୟ ଲୋକ ନିମନ୍ତେ ତାଙ୍କ ଅଧୀନସ୍ଥ ସମ୍ପତ୍ତିକୁ କଦାପି କ୍ରୟ କରି ନ ପାରନ୍ତି ।

ମୃତବ୍ୟକ୍ତି ଉଇଲ ବା ଚରମପତ୍ର ସମ୍ପାଦନ କରି ନ ଥିଲେ ମୃତବ୍ୟକ୍ତିଙ୍କର ପିତା କିମ୍ବା ପିତାଙ୍କଦ୍ୱାରା ନିଯୁକ୍ତ ତତ୍ତ୍ୱାବଧାରକ, ନଚେତ୍ ପିତାମହଙ୍କ ଦ୍ୱାରା ନିଯୁକ୍ତ ତତ୍ତ୍ୱାବଧାରକ ମୃତବ୍ୟକ୍ତିଙ୍କ ସମ୍ପତ୍ତି ତତ୍ତ୍ୱାବଧାନ କରିପାରନ୍ତି । ଏପରି କେହି ନ ଥିଲେ ମାତାଙ୍କ ନିଯୁକ୍ତ ତତ୍ତ୍ୱାବଧାରକ ମୃତବ୍ୟକ୍ତିଙ୍କ ଅସ୍ଥାବର ସମ୍ପତ୍ତିକୁ ବିକ୍ରୟ କରିପାରିବେ ।

ସୁନ୍ନି ଓ ସିହାମାନଙ୍କ ମଧ୍ୟରେ ଉଇଲ ସମ୍ବନ୍ଧରେ ପ୍ରଭେଦ ଏହି ଯେ - ସୁନ୍ନି ବିଧାନ ଅନୁସାରେ ମୃତବ୍ୟକ୍ତି ଯେବେ ଉତ୍ତରାଧିକାରୀମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତିଙ୍କୁ ସମ୍ପତ୍ତି ଦାନ କରିଥା'ନ୍ତି ତାହାହେଲେ ଉକ୍ତ ଦାନ ନିଷ୍ଫଳ ହେବ । କିନ୍ତୁ ସିହା ବିଧାନ ଅନୁସାରେ ଉକ୍ତ ପ୍ରକାର ଦାନ (ଅନ୍ୟ ଉତ୍ତରାଧିକାରୀମାନଙ୍କ ଅସମ୍ମତିରେ ସୁଦ୍ଧା) ପ୍ରବଳ ରହେ ।

ମୁସଲମାନମାନଙ୍କ 'ଉଇଲ' ସମ୍ବନ୍ଧୀୟ ବିଚାର ୧୮୮୧ ମସିହା ୫ ଆଇନର କେତେକ ଗୋଟି ଧାରା (ପ୍ରେବେଟ ଆଇନ) ଅନୁସାରେ ହେବାର ବିଧାନ ହୋଇଅଛି ।

ଉତ୍କଳ ସାହିତ୍ୟ/୮ମ ଭାଗ/୪ର୍ଥ ସଂଖ୍ୟା/୧୩୧୧ ସାଲ ।

## ॥ ପାଞ୍ଚ ॥

ମୁସଲମାନମାନଙ୍କ ମଧ୍ୟରେ ପ୍ରଚଳିତ ସମ୍ପତ୍ତି ବିଭାଗ ବ୍ୟବସ୍ଥା ବିଶେଷ ଗୋଳମାଳିଆ, ଅଧିକାଂଶ ସ୍ଥଳରେ ଗଣ୍ଡା କଡ଼ା କ୍ରାନ୍ତି ପର୍ଯ୍ୟନ୍ତ ହିସାବ କରିବାକୁ ହୁଏ; ସେ ମଧ୍ୟ ସ୍ଥିର ନୁହେଁ । ତାହାସବୁ ପରେ ଦେଖିବେ । କିନ୍ତୁ ସମ୍ପତ୍ତି ଗ୍ରହଣ ଓ ବିଭାଗ ସମ୍ବନ୍ଧରେ କେତେଗୁଡ଼ିଏ ସାଧାରଣ ନିମୟ ଅଛି -

ସ୍ୱୋପାର୍ଜିତ ଓ ପୈତୃକ ସମ୍ପତ୍ତିର ପ୍ରଭେଦ ମୁସଲମାନ ଆଇନରେ ନାହିଁ । ବର୍ତ୍ତମାନ ଅଧିକାରୀଙ୍କର ଅଧିକୃତ ସମ୍ପତ୍ତିରେ ଷୋଳପଣ କ୍ଷମତା ଥାଏ । ସେ ଜୀବଦ୍ଦଶାରେ ଅଧିକୃତ ସମ୍ପତ୍ତିର ଯଥେଚ୍ଛା ବ୍ୟବହାର କରିପାରନ୍ତି । କେବଳ ଉଇଲ ବା ଚରମପତ୍ର ସମୟରେ କେତେକ ସ୍ଥାନରେ ଉତ୍ତରାଧିକାରୀମାନଙ୍କର ଅନୁମତି ବିନା ଉଇଲ ପୂର୍ଣ୍ଣରୂପେ ପ୍ରବଳ ହୋଇ ନ ପାରେ । ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିର ଅଧିକାରୀ ହେବା ନିମନ୍ତେ ଏକ ଶ୍ରେଣୀର ସ୍ତ୍ରୀ ଓ ପୁରୁଷ ଉଭୟ ଜାତୀୟ ଉତ୍ତରାଧିକାରୀ ବିଦ୍ୟମାନ ଥିଲେ ଜଣେ ପୁରୁଷର ପ୍ରାପ୍ୟ ଅଂଶ ଜଣେ ସ୍ତ୍ରୀର ପ୍ରାପ୍ୟ ଅଂଶର ଦ୍ୱିଗୁଣ ହୁଏ । ଅଧିକୃତ ବା ପ୍ରାପ୍ତ ସମ୍ପତ୍ତିକୁ ଯଥେଚ୍ଛା ବ୍ୟବହାର ଓ ହସ୍ତାନ୍ତର କରିବା ସମ୍ବନ୍ଧରେ ସ୍ତ୍ରୀ ଓ ପୁରୁଷମାନଙ୍କର ସମାନ ଅଧିକାର । (ଏସବୁ ନିୟମଗୁଡ଼ିକ ହିନ୍ଦୁଶାସ୍ତ୍ରାନୁମୋଦିତ ନିୟମମାନଙ୍କର ବିପରୀତ । ମୁସଲମାନ ଓ ହିନ୍ଦୁ ଆଇନର କି କି ପ୍ରଭେଦ ଅଛି, ତାହା 'ବିଦ୍ୟାନିଧି ପୋଥି'ରୁ ପରେ ପାଇବେ । ଆମ୍ଭେମାନେ ହିନ୍ଦୁଆଇନ ସମ୍ବନ୍ଧରେ 'ବିଦ୍ୟାନିଧିଙ୍କ ପୋଥି'ରୁ କେତେକ ବିଷୟ ସଂଗ୍ରହ କରି ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବାକୁ ମନସ୍ଥ କରିଅଛୁଁ କିନ୍ତୁ ବିଦ୍ୟାନିଧି ମହାଶୟ ଆମ୍ଭମାନଙ୍କ ଆଶା କେତେଦୂର ସଫଳ କରିବେ, ତାହା ଭଗବାନ୍‌ଙ୍କୁ ଜଣା । ଏହିଠାରେ ଗୋଟିଏ କଥା ପାଠକମାନଙ୍କୁ ଜଣାଇ ରଖିବାର ଆବଶ୍ୟକ । 'ମିଆଁ ସାହେବଙ୍କ ରୋଜନାମଚା' ପଢ଼ି କେତେକ ବନ୍ଧୁ ଶର୍ମାଙ୍କ ଉପରେ ବିରକ୍ତ ହୋଇ ଅଛନ୍ତି । କାରଣ ଏଥିରେ ସରସ କଥା କିଛି ନାହିଁ । ଏପରି ବିରକ୍ତିରେ ଶର୍ମା ନାଚାର । କେହି କେହି କହନ୍ତି ଯେ ନିରସ କଥାଗୁଡ଼ିକୁ ସରସ କରି ପ୍ରକାଶ କରିବା

ସିନା ବାହାଦୁରି । ମନେ କରନ୍ତୁ, ଜଣେ ମୃତ ମୁସଲମାନମାନଙ୍କର ପିତା, ମାତା, ବିଧବା ସ୍ତ୍ରୀ ଓ ଦିଓଟି ପୁତ୍ର ଏବଂ ଗୋଟିଏ କନ୍ୟା ବିଦ୍ୟମାନ । ସେମାନଙ୍କର ବ୍ୟବସ୍ଥା ଅନୁସାରେ ତ୍ୟକ୍ତ ସମ୍ପତ୍ତିରେ ପିତାଙ୍କର ଅଂଶ ଏକ-ଷଷ୍ଠାଂଶ, ମାତାଙ୍କର ଏକ-ଷଷ୍ଠାଂଶ, ବିଧବାର ଏକ-ଅଷ୍ଟମାଂଶ, ପ୍ରତ୍ୟେକ ପୁତ୍ରର ୬୦ ଭାଗରୁ ୧୩ ଭାଗ ଓ କନ୍ୟାର ଏକଶ କୋଡ଼ିଏ ଭାଗରୁ ଏକ ଭାଗ ପଡ଼ିବ । ଏହାକୁ ସରସ କରିବାକୁ ଗଲେ ପିତାଙ୍କ କିସମତ ୨ ପଣ ୧୩ ଗଣ୍ଡା ୧ କଡ଼ା ୧ କ୍ରାନ୍ତି, ମାତାଙ୍କର ଏଜନ, ବିଧବାଙ୍କର ୨ ପଣ, ପ୍ରତ୍ୟେକ ପୁତ୍ରର ୩ ପଣ ୯ ଗଣ୍ଡା ୧ କଡ଼ା ୧ କ୍ରାନ୍ତି, କନ୍ୟାର ୧ ପଣ ୧୪ ଗଣ୍ଡା ୨ କଡ଼ା ୨ କ୍ରାନ୍ତି । ଏଥିରେ ସରସ କାହାକୁ ବୋଲାଯିବ, ନିରସ କାହାକୁ ବୋଲାଯିବ ? ପାଠକ ମହୋଦୟ ବିରକ୍ତ ନ ହୋଇ ଏଥିର ଗୋଟାଏ ମୀମାଂସା କରି ଦେବେ କି ? ଏଥିପାଇଁ କହିଲୁଁ, ବନ୍ଧୁମାନେ ବିରକ୍ତ ହେଲେ ଆମ୍ଭେମାନେ ନାଚାର । ଫଟୋଗ୍ରାଫ୍ ତୋଳିବାକୁ ଗଲେ ଲେଫଡ଼ା ମୁହଁଟାଏ ସେଥିରେ ଉଠିଲେ ଫଟୋଗ୍ରାଫରର କଉଡ଼ି ମାରା ଯିବ କିଆଁ ? ସେ ଯାହାହେଉ, ଅସଲ କଥା ଧରନ୍ତି । ସେ ବିରକ୍ତ ହେବେ, ତାଙ୍କ ସମୟ ନଷ୍ଟ କରିବାର ଆମ୍ଭମାନଙ୍କର ଉଦ୍ଦେଶ୍ୟ ବା ଇଚ୍ଛା ନୁହେଁ । ଇତି କୈଫିୟତ ।) ନିକଟତମ ସମ୍ପର୍କୀୟ ଉତ୍ତରାଧିକାରୀ ବିଦ୍ୟମାନ ଥିଲେ ଦୂରତର ସମ୍ପର୍କୀୟ ଉତ୍ତରାଧିକାରୀମାନେ ତ୍ୟକ୍ତ ସମ୍ପତ୍ତିରୁ ବଞ୍ଚିତ ହୁଅନ୍ତି । ମୃତବ୍ୟକ୍ତି ଯେଉଁ ସମ୍ପ୍ରଦାୟଭୁକ୍ତ, ତାଙ୍କର ତ୍ୟକ୍ତ ସମ୍ପତ୍ତି ସେହି ସମ୍ପ୍ରଦାୟର ବିଧାନ ଅନୁସାରେ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବିଭକ୍ତ ହୁଏ ।

ତ୍ୟକ୍ତ ସମ୍ପତ୍ତିରୁ ପ୍ରଥମେ ଅନ୍ତ୍ୟେଷ୍ଟି କ୍ରିୟାର ବ୍ୟୟ, ତତ୍‌ପରେ ମୃତବ୍ୟକ୍ତିଙ୍କ ଋଣ ପରିଶୋଧ, ତଦନ୍ତେ ତାଙ୍କର ଅଙ୍ଗୀକୃତ ଦାନ ପରିଶୋଧ ହୁଏ । ଅବଶିଷ୍ଟ ସମ୍ପତ୍ତି ବିଧାନ ଅନୁଯାୟୀ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବିଭକ୍ତ ହୁଏ । କୌଣସି ଉତ୍ତରାଧିକାରୀ ଆପଣାର ପ୍ରାପ୍ୟ ଅଂଶ ଗ୍ରହଣ କରିବାକୁ ଅନିଚ୍ଛୁକ ହେଲେ କିମ୍ବା ପ୍ରାପ୍ୟ ଅଂଶ ତ୍ୟାଗ କଲେ ତାହାଙ୍କର ପରବର୍ତ୍ତୀ ଉତ୍ତରାଧିକାରୀମାନେ ତଦନ୍ତେ ଉକ୍ତ ଅଂଶ ଦାବି କରିପାରନ୍ତି ।

ଉପସ୍ଥିତ ଅଧିକାରୀଙ୍କଠାରେ ସମ୍ପତ୍ତି ନ୍ୟସ୍ତ ଥିବା ପର୍ଯ୍ୟନ୍ତ ତାଙ୍କର ପୁତ୍ରପୌତ୍ରାଦିମାନଙ୍କର ଉକ୍ତ ସମ୍ପତ୍ତିରେ କୌଣସି ଅଧିକାର ନାହିଁ ।

ସୁନ୍ନିମାନଙ୍କ ମଧ୍ୟରେ ଉତ୍ତରାଧିକାର-ସୂତ୍ରରେ ସମ୍ପତ୍ତି ବିଭାଗ ବଡ଼ ଗୋଳମାଳିଆ ଏବଂ ତାହା ବୁଝାଇବା ପୂର୍ବରୁ ସିହାମାନଙ୍କ ସମ୍ପତ୍ତି ବିଭାଗ ବିଷୟ ବୋଲାଯିବ । ଏହା ଅପେକ୍ଷାକୃତ ସରଳ ।

ସିହାମାନଙ୍କ ଉତ୍ତରାଧିକାରୀମାନେ ପ୍ରଥମେ ଦୁଇ ଶ୍ରେଣୀରେ ବିଭକ୍ତ - (୧) ରକ୍ତ ସମ୍ପର୍କୀୟ, (୨) ବିଶେଷ ସମ୍ପର୍କୀୟ ।

ରକ୍ତ ସମ୍ପର୍କୀୟମାନେ ୩ ଉପଶ୍ରେଣୀରେ ବିଭକ୍ତ । ପ୍ରତ୍ୟେକ ଉପଶ୍ରେଣୀ ମଧ୍ୟରେ ଦୁଇ ବିଭାଗ ଅଛି ।

୧ମ ବିଭାଗ- ମୃତବ୍ୟକ୍ତିର ବାପ ମା ।

୧ମ ଉପଶ୍ରେଣୀ ୨ୟ ବିଭାଗ- ପୁଅ, ଝିଅ, ନାତି, ନାତୁଣୀ, ଅଣନାତି, ପଣନାତି ଓ ସେମାନଙ୍କ ଉଆରସମାନେ ।

୧ମ ବିଭାଗ- ଗୋସାଇଁବାପା, ଅଜା, ଆଈ, ପଣଗୋସାଇଁବାପା ।

୨ୟ ଉପଶ୍ରେଣୀ ୨ୟ ବିଭାଗ- ଭାଇ, ଭଉଣୀ, ଭଣଜା, ପୁତୁରା ଓ ସେମାନଙ୍କ ଉଆରସ ।

୧ମ ବିଭାଗ- କକେଇ, ଦଦେଇ, ପିଉସୀ, ମାଉସୀ, ମାମୁ (ଯେତେ ପୁରୁଷଛଡ଼ା ହୁଅନ୍ତୁ ।)

୩ୟ ଉପଶ୍ରେଣୀ ୨ୟ ବିଭାଗ- କକେଇପୁଅ, ପିଉସୀପୁଅ ଓ ସେମାନଙ୍କ ଉଆରସମାନେ (ଯେତେ ପୁରୁଷଛଡ଼ା ହୁଅନ୍ତୁ ।)

ରକ୍ତ ସମ୍ପର୍କୀୟ ଉତ୍ତରାଧିକାରୀମାନଙ୍କ ମଧ୍ୟରୁ ୧ମ ଉପଶ୍ରେଣୀର ଉତ୍ତରାଧିକାରୀ ବିଦ୍ୟମାନ ଥିଲେ ୨ୟ ବା ୩ୟ ଉପଶ୍ରେଣୀର ଉତ୍ତରାଧିକାରୀମାନେ ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତି ପାଇପାରିବେ ନାହିଁ । ୨ୟ ଉପଶ୍ରେଣୀର ଉତ୍ତରାଧିକାରୀ ବିଦ୍ୟମାନ ଥିଲେ ୩ୟ ଉପଶ୍ରେଣୀର ଉତ୍ତରାଧିକାରୀମାନେ ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହୋଇ ନ ପାରନ୍ତି ।

୧ମ ଉପଶ୍ରେଣୀର ୧ମ ବିଭାଗଭୁକ୍ତ ନିକଟତମ ଉତ୍ତରାଧିକାରୀମାନେ (ମୃତବ୍ୟକ୍ତିର ପିତାମାତା) ୨ୟ ବିଭାଗଭୁକ୍ତ ନିକଟତମ ଉତ୍ତରାଧିକାରୀମାନଙ୍କ (ପୁତ୍ର ପୌତ୍ରାଦି) ସହିତ ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହେବେ - ପ୍ରକାଶ ଥାଉ କି ପୁତ୍ର ବିଦ୍ୟମାନ ଥିଲେ ପୌତ୍ର ସମ୍ପତ୍ତି ପାଇପାରିବେ ନାହିଁ । କନ୍ୟା ବିଦ୍ୟମାନ ଥିଲେ ନାତି ପାଇପାରିବେ ନାହିଁ ।

୨ୟ ଉପଶ୍ରେଣୀର ୧ମ ବିଭାଗର ନିକଟତମ ଉତ୍ତରାଧିକାରୀ, ୨ୟ ବିଭାଗସ୍ଥ ନିକଟତମ ଉତ୍ତରାଧିକାରୀମାନଙ୍କ ସହିତ ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହେବେ ।

୩ୟ ଉପଶ୍ରେଣୀର ୧ମ ବିଭାଗର ନିକଟତମ ଅଧିକାରୀମାନେ ବିଦ୍ୟମାନ ଥିଲେ ୨ୟ ବିଭାଗସ୍ଥ ବ୍ୟକ୍ତିମାନେ ଅଧିକାରୀ ହୋଇପାରିବେ ନାହିଁ ।

ଏ ଗଲା ରକ୍ତ ସମ୍ପର୍କୀୟ ଉତ୍ତରାଧିକାରୀମାନଙ୍କ ବିବରଣ । ତତ୍ପରେ ବିଶେଷ ସମ୍ପର୍କୀୟ ଉତ୍ତରାଧିକାରୀମାନେ ୨ ଉପଶ୍ରେଣୀରେ ବିଭକ୍ତ-

୧ମ ଉପଶ୍ରେଣୀ- ବିବାହସମ୍ପର୍କୀୟ, ଯଥା- ମୃତବ୍ୟକ୍ତିର ସ୍ୱାମୀ ବା ସ୍ତ୍ରୀ ।

୨ୟ ଉପଶ୍ରେଣୀ- ଯେଉଁ ବ୍ୟକ୍ତି କ୍ରୀତଦାସକୁ ସ୍ୱାଧୀନତା ପ୍ରଦାନ କରିଥାଏ, ସେ କ୍ରୀତଦାସର ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହୁଏ । ମୃତବ୍ୟକ୍ତିର ଅପରାଧ ବା ଦୋଷର କ୍ଷତିପୂରଣ କରିବା ନିମନ୍ତେ ଯେଉଁ ବ୍ୟକ୍ତି ସ୍ୱୀକୃତ ହୋଇଥାଏ, ସେ ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ

ଭାଗୀ ହେବ । ଯଦି ଉପରୋକ୍ତ ବ୍ୟକ୍ତି କେହି ନ ଥାନ୍ତି ତେବେ ମୃତବ୍ୟକ୍ତିର ସମ୍ପତ୍ତି 'ଇମାମ' ବା କୁଳଗୁରୁ ପାଇବେ ।

ମୃତବ୍ୟକ୍ତିର ସ୍ୱାମୀ କିମ୍ବା ସ୍ତ୍ରୀ ରକ୍ତସମ୍ପର୍କୀୟ ଉତ୍ତରାଧିକାରୀମାନଙ୍କ ଉପସ୍ଥିତିରେ ମଧ୍ୟ ତ୍ୟକ୍ତ ସମ୍ପତ୍ତିର ଶାସ୍ତ୍ରସିଦ୍ଧ ଅଂଶ ପାଇବେ । କିନ୍ତୁ ସାମୟିକ ବା 'ମୃତା' ଦ୍ୱାରା ବିବାହିତ ଦମ୍ପତିଙ୍କ ପ୍ରତି ଏହି ନିୟମ ଖଟିବ ନାହିଁ । ଉପରୋକ୍ତ ବିବାହ ସମୟରେ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଉତ୍ତରାଧିକାରିତ୍ୱ ବିଷୟ ଚୁକ୍ତି ହୋଇ ନ ଥିଲେ ସ୍ୱାମୀ କିମ୍ବା ସ୍ତ୍ରୀ ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହୋଇପାରିବେ ନାହିଁ ।

କୋରାନ୍ ଅନୁସାରେ ରକ୍ତସମ୍ପର୍କୀୟ ଓ ବିବାହ ସମ୍ପର୍କୀୟ ଉତ୍ତରାଧିକାରୀମାନଙ୍କର ଅଂଶ ନିର୍ଦ୍ଦିଷ୍ଟ ଅଛି, କେହି ନିର୍ଦ୍ଦିଷ୍ଟ ଅଂଶ ପାଆନ୍ତି ଓ ନିର୍ଦ୍ଦିଷ୍ଟ ଅଂଶ ବାଦ ଯାହା ଅବଶିଷ୍ଟ ରହେ ତାହାକୁ କେହି ପାଆନ୍ତି ।

**(କ) ପିତାଙ୍କ ଅଂଶ-** ମୃତବ୍ୟକ୍ତିର ପୁତ୍ର, ପୌତ୍ର ଇତ୍ୟାଦି ବିଦ୍ୟମାନ ଥିଲେ ମୃତବ୍ୟକ୍ତିର ପିତା ତ୍ୟକ୍ତ ସମ୍ପତ୍ତିର ଏକଷଷ୍ଠାଂଶ ବା ଦୁଇଅଣା ୮ ପଇସା ପାଇବେ । ମୃତବ୍ୟକ୍ତିର କନ୍ୟା କିମ୍ବା ଦୌହିତ୍ରାଦି ବିଦ୍ୟମାନ ଥିଲେ ପିତା ପ୍ରଥମେ ଦୁଇଅଣା ଆଠପଇସା ପାଇବେ ଓ କନ୍ୟା କିମ୍ବା ଦୌହିତ୍ର ସଙ୍ଗେ 'ଅବଶିଷ୍ଟ' ସମ୍ପତ୍ତିର ଅଧିକାରୀ ହେବେ । ପୁତ୍ର କନ୍ୟା ଇତ୍ୟାଦି ନ ଥିଲେ ଅଂଶଭାଗୀମାନଙ୍କ ଅଂଶ ବାଦ 'ଅବଶିଷ୍ଟ' ସମ୍ପତ୍ତିରେ ପିତା ଅଧିକାରୀ ହେବେ ।

ନୋଟ୍- ମୁସଲମାନ ବିଧାନୁସାରେ 'ଅବଶିଷ୍ଟ' ସମ୍ପତ୍ତି ଏକପ୍ରକାର ବିଶେଷ ଅର୍ଥରେ ବ୍ୟବହୃତ ହୁଏ । ଶାସ୍ତ୍ର ଅନୁସାରେ ଅଂଶଭାଗୀମାନଙ୍କ ଅଂଶ କାଢ଼ି ନେଲେ ବାକି ଯାହା ରହେ ତାହାକୁ 'ଅବଶିଷ୍ଟ' ବୋଲାଯାଏ ।

**(ଖ) ମାତାଙ୍କ ଅଂଶ -** ମୃତବ୍ୟକ୍ତିର ଔରସ ବିଦ୍ୟମାନ ଥିଲେ ମାତା ଏକ-ଷଷ୍ଠାଂଶ ବା ଦୁଇଅଣା ୮ ଅଂଶ ପାଇବେ । ମୃତବ୍ୟକ୍ତିର ଔରସ କିମ୍ବା ୨ ବା ତତୋଽଧିକ ଭାଇ ବିଦ୍ୟମାନ ନ ଥିଲେ ମାତା ଏକ-ତୃତୀୟାଂଶ ବା ପାଞ୍ଚଅଣା ୪ ପଇସା ପାଇବେ । ପୁତ୍ର କିମ୍ବା ପୌତ୍ର ନ ଥିଲେ ଓ କନ୍ୟା ଥିଲେ କନ୍ୟା ସଙ୍ଗେ ମାତା ଅବଶିଷ୍ଟାଂଶର ଭାଗୀ ହୁଅନ୍ତି ।

**(ଗ) କନ୍ୟାର ଅଂଶ -** ଏକମାତ୍ର କନ୍ୟା ଅର୍ଦ୍ଧେକ ବା ଆଠଅଣା ଦୁଇ କିମ୍ବା ତତୋଽଧିକ କନ୍ୟା ଥିଲେ ସେମାନେ ଏକତ୍ର ଦୁଇ-ତୃତୀୟାଂଶ ବା ଦଶଅଣା ୮ପଇସା ପାଇବେ । ପୁତ୍ର ଥିଲେ ପ୍ରତ୍ୟେକ ପୁତ୍ର ୨ ଭାଗ ଓ ପ୍ରତ୍ୟେକ କନ୍ୟା ୧ ଭାଗ ବାଣ୍ଟି ନେବେ ।

**(ଘ)** ମୃତବ୍ୟକ୍ତିର ଏକ ପିତୃକ ଏବଂ ଏକ ମାତୃକ ଭଗିନୀ ଅର୍ଦ୍ଧେକ ବାକି ଆଠଅଣା ପାଏ । ଏପରି ନିଜର ୨ ବା ତତୋଽଧିକ ଭଗିନୀ ଥିଲେ ସମସ୍ତେ ଏକତ୍ର ଦୁଇ-ତୃତୀୟାଂଶ

ବା କା ଦଶଅଣା ୮ପଇସା ପାଆନ୍ତି । (ମୁସଲମାନମାନଙ୍କ ମଧ୍ୟରେ ବିଧବା ବିବାହ ପ୍ରଚଳିତ ଥିବାରୁ ପୂର୍ଣ୍ଣ ଭାଇ-ଭଗିନୀ, ଅର୍ଦ୍ଧ ଭାଇ-ଭଗିନୀ ଶବ୍ଦ ପ୍ରୟୋଗ ଅଛି । ଏକ ମାତା ପିତାଙ୍କଠାରୁ ଯେଉଁ ଦୁଇ ଜଣ ଜନ୍ମ ହୋଇଥାନ୍ତି ସେମାନଙ୍କ ମଧ୍ୟରେ 'ପୂର୍ଣ୍ଣ' ସମ୍ବନ୍ଧ । ଯେବେ ମାତାଙ୍କର ପୂର୍ବ ବିବାହୋତ୍ପନ୍ନ ସନ୍ତାନ ଥାଏ ଓ ପର ବିବାହରେ ଦ୍ୱିତୀୟ ସ୍ୱାମୀଙ୍କ ଦ୍ୱାରା ଆଉ ଗୋଟିଏ ସନ୍ତାନ ଉତ୍ପନ୍ନ ହୁଏ, ତେବେ ଏ ଦୁଇ ସନ୍ତାନଙ୍କ ମଧ୍ୟରେ ମାତୃପକ୍ଷରୁ 'ଅର୍ଦ୍ଧ' ସମ୍ବନ୍ଧ । ଏକ ପିତାଙ୍କର ଦୁଇ ବିବାହୋତ୍ପନ୍ନ ଦୁଇଗୋଟି ସନ୍ତାନଙ୍କ ମଧ୍ୟରେ ପିତୃପକ୍ଷରୁ 'ଅର୍ଦ୍ଧ' ସମ୍ପର୍କ ।) ମୃତ ବ୍ୟକ୍ତିର ପୂର୍ଣ୍ଣ ଭାଇ ଓ ପୂର୍ଣ୍ଣ ଭଗିନୀ ଥିଲେ ପ୍ରତ୍ୟେକ ଭାଇର ୨ ଅଂଶ ଓ ପ୍ରତ୍ୟେକ ଭଗିନୀର ୧ ଅଂଶ । ପୂର୍ଣ୍ଣ ଭାଇ ଓ ପୂର୍ଣ୍ଣ ଭଗିନୀ ନ ଥିଲେ ପିତୃ ପକ୍ଷରୁ ଅର୍ଦ୍ଧ ଭଗିନୀ ଓ ଭାଇ ଉପରୋକ୍ତ ହିଂସାରେ ମୃତବ୍ୟକ୍ତିର ସମ୍ପତ୍ତି ପାଇବେ ।

ଯେବେ ମାତୃପକ୍ଷରୁ ଜଣେ ଅର୍ଦ୍ଧ ଭଗିନୀ ବା ଭାଇ ଥାଏ ତେବେ ସେ ଏକ-ଷଷ୍ଠାଂଶ ବା ଦୁଇଅଣା ୮ ପଇସା ପାଏ । ଦୁଇ ବା ତତୋଽଧିକ ଥିଲେ ଏକତ୍ର ଏକ-ତୃତୀୟାଂଶ ବା ପାଞ୍ଚଅଣା ୪ ପଇସା ପାଆନ୍ତି । ଭାଇର ଅଂଶ ଭଗିନୀର ଅଂଶ ଏ ସ୍ଥଳରେ ସମାନ ଅଟେ ।

**(ଡ) ସ୍ୱାମୀର ଅଂଶ** - ମୃତା ସ୍ତ୍ରୀର ଗର୍ଭଜାତ କେହି ନ ଥିଲେ ତ୍ୟକ୍ତ ସମ୍ପତ୍ତିରୁ ଅର୍ଦ୍ଧେକ ବା କା ଆଠଅଣା ପାଇବେ । ଯେବେ କେହି ଗର୍ଭଜାତ ସନ୍ତାନ ଥାଏ ତେବେ ସ୍ୱାମୀ ଏକ-ଅଷ୍ଟମାଂଶ ବା କା ଦୁଇଅଣା ପାଇବେ । ଯେତେ ତିନି ଉପଶ୍ରେଣୀର କେହି ନ ଥାଏ ତେବେ 'ଇମାମ' ପରିବର୍ତ୍ତରେ ସ୍ୱାମୀ ସମୁଦାୟ ତ୍ୟକ୍ତ ସମ୍ପତ୍ତି ପାଇବେ ।

**(ଚ) ବିଧବାର ଅଂଶ** - ସ୍ୱାମୀଙ୍କର ସନ୍ତାନ-ସନ୍ତତି ନ ଥିଲେ ବିବାହିତା ସ୍ତ୍ରୀ କିମ୍ବା ସ୍ତ୍ରୀମାନେ ସ୍ୱାମୀଙ୍କ ତ୍ୟକ୍ତ ସମ୍ପତ୍ତିର ଏକ-ଚତୁର୍ଥାଂଶ ବା କା ଚାରିଅଣା ପାଇବେ । ଯେବେ ସ୍ୱାମୀଙ୍କର ପୁଅ, ଝିଅ, ନାତି, ନାତୁଣୀ ଇତ୍ୟାଦି କେହି ଉଆରସ ଥାଏ ତେବେ ସ୍ତ୍ରୀମାନେ ତ୍ୟକ୍ତ ସମ୍ପତ୍ତିର ଏକ-ଅଷ୍ଟମାଂଶ ବା କା ଦୁଇଅଣା ପାଇବେ । ସ୍ୱାମୀଙ୍କର ତ୍ୟକ୍ତ ଅସ୍ଥାବର ସମ୍ପତ୍ତିରେ ବିଧବାଙ୍କର କୌଣସି ଅଂଶ ନାହିଁ । ଅନ୍ୟ କେହି ଉଆରସ ନ ଥିଲେ ବିଧବାଙ୍କର ପ୍ରାପ୍ୟ କିସମତ ଚାରିପଣ ଯାଇ ବାକି ଅଂଶ ବାରପଣ ଇମାମ୍ ପାଇବେ । 'ମୂଢ଼ା' ପ୍ରଥାନୁସାରେ ବିବାହିତା ସ୍ତ୍ରୀଙ୍କ ସଙ୍ଗେ ବିବାହ ଚୁକ୍ତିରେ 'ସରତ୍' ନ ଥିଲେ ସେ ସ୍ୱାମୀଙ୍କ ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହୋଇପାରିବେ ନାହିଁ ।

ସିହା ବିଧାନ ଅନୁସାରେ ଉପରୋକ୍ତ ବ୍ୟକ୍ତିମାନେ ତ୍ୟକ୍ତ ସମ୍ପତ୍ତିର ଅଂଶଭାଗୀ ଅଟନ୍ତି । ଏହିମାନଙ୍କ ମଧ୍ୟରୁ ବିଧବାଙ୍କ ଛଡ଼ା ଅନ୍ୟ ଉତ୍ତରାଧିକାରୀମାନେ ନିରୂପିତ ଅଂଶ ପାଆନ୍ତି ଓ ସମ୍ପତ୍ତିର 'ଅବଶିଷ୍ଟାଂଶ'ରେ ମଧ୍ୟ ସମୟ ସମୟରେ ଭାଗୀ ହୁଅନ୍ତି । ଏମାନଙ୍କ ଛଡ଼ା ଅନ୍ୟ ଉତ୍ତରାଧିକାରୀମାନଙ୍କର ଶାସ୍ତ୍ରୋକ୍ତ ଅଂଶ ନାହିଁ । ଏମାନେ କେବଳ 'ଅବଶିଷ୍ଟାଂଶ'ରେ ଭାଗୀ ହୁଅନ୍ତି ।

ସିହା ବିଧାନ ଅନୁସାରେ ରକ୍ତ ସମ୍ପର୍କୀୟ ଉତ୍ତରାଧିକାରୀମାନଙ୍କ ମଧ୍ୟରୁ 'ଅଂଶୀଦାର' ମାନଙ୍କ ବିଷୟ ବୋଲାଗଲା ।

(ପାଠକ ମହୋଦୟ, ଏଗୁଡ଼ିକ ଧୀରେ ଧୀରେ ଗଳାଧଃକରଣ କରିବାକୁ ହେବ, ସେଥିପାଇଁ ଗୁଣ୍ଡାଗୁଡ଼ିକ ଛୋଟ କରି ବଳିବାକୁ ପଡୁଅଛି । 'ହୀନଦୃଷ୍ଟିଆ' ବୋଲି ସ୍ଥିର କରି ବସିବେ ନାହିଁ ।)

ଉତ୍କଳ ସାହିତ୍ୟ/୮ମ ଭାଗ/୫ମ ସଂଖ୍ୟା/୧୩୧୧ ସାଲ।

**।। ଛଅ ।।**

ପୂର୍ବ ସଂଖ୍ୟାରେ ସିହାମାନଙ୍କ ମଧ୍ୟରେ 'ଅଂଶଭାଗୀ'ମାନଙ୍କ ବିଷୟ ବୋଲାଯାଇଅଛି । ବର୍ତ୍ତମାନ 'ଅବଶିଷ୍ଟାଂଶଭାଗୀମାନଙ୍କ ବିଷୟ ବୋଲାଯିବ । ପୂର୍ବସଂଖ୍ୟା ବର୍ଣ୍ଣିତ ଶ୍ରେଣୀବିଭାଗ ଅନୁସାରେ ଏମାନେ ୨ୟ ଉପଶ୍ରେଣୀର ଅନ୍ତର୍ଗତ ।

ଗୋସାଇଁବାପା, ଅଜା, ଆଈ, ଗୋସାଇଁମା ଇତ୍ୟାଦିଙ୍କର ଅଂଶ- ମୃତବ୍ୟକ୍ତିର ଭାଇ, ଭଉଣୀ କିମ୍ବା ସେମାନଙ୍କର ଔରସମାନଙ୍କ ସହିତ ଏହି ଶ୍ରେଣୀର ଉତ୍ତରାଧିକାରୀମାନେ ତ୍ୟକ୍ତ ସମ୍ପତ୍ତିକୁ ବିଭାଗ କରି ନିଅନ୍ତି । ଏମାନଙ୍କ ସମ୍ବନ୍ଧରେ ଏହି ନିୟମ ଯେ ନିକଟତର ଅଧିକାରୀ ବିଦ୍ୟମାନ ଥିଲେ ଦୂରତର ସମ୍ପର୍କୀୟ ବ୍ୟକ୍ତି ଆଦୌ ତ୍ୟକ୍ତ ସମ୍ପତ୍ତି ପାଇପାରିବେ ନାହିଁ । ବାପର ବାପ ଥିଲେ ବାପର ଗୋସାଇଁବାପ ତ୍ୟକ୍ତ ସମ୍ପତ୍ତିକୁ ଦାବି କରିପାରିବେ ନାହିଁ । ପିତୃକୁଳ ଓ ମାତୃକୁଳରେ ସମାନ ସମ୍ପର୍କୀୟ ଦୁଇ ଜଣ ଅଜା ଥିଲେ ଉଭୟଙ୍କର ତ୍ୟକ୍ତ ସମ୍ପତ୍ତିରେ ସମାନ ଅଧିକାର । ଅର୍ଥାତ୍ ପୂର୍ବ ଶ୍ରେଣୀଲିଖିତ ରକ୍ତସମ୍ପର୍କୀୟ ଉତ୍ତରାଧିକାରୀ କେହି ନ ଥିଲେ ମୃତ ବ୍ୟକ୍ତିର ନିକଟତମ ଅଜା ତ୍ୟକ୍ତ ସମ୍ପତ୍ତିର ଅଂଶ ପାଇବେ ।

ଏହି 'ଅଜା' ଶ୍ରେଣୀର ବ୍ୟକ୍ତିମାନଙ୍କର ଧର୍ମଶାସ୍ତ୍ରରେ କୌଣସି ଅଂଶ ନିର୍ଦ୍ଦିଷ୍ଟ ନାହିଁ- 'ଅଂଶୀଦାର'ମାନେ ସମ୍ପତ୍ତି ପାଇବା ପରେ ବାକି ଯାହା ବଳିବ ସେହି 'ଅବଶିଷ୍ଟାଂଶ'ରେ ଏମାନେ ଅଧିକାରୀ ।

ସମାନ ଦୂରସ୍ଥ ଅଜାମାନଙ୍କ ମଧ୍ୟରେ ବିଭାଗରେ ତଳଲିଖିତ ନିୟମମାନ ପ୍ରବର୍ତ୍ତିତ ।

୧. ମୃତବ୍ୟକ୍ତିର ମାତା ଓ ପିତା ଉଭୟର ପୂର୍ବପୁରୁଷ ବିଦ୍ୟମାନ ଥିଲେ ମାତାଙ୍କ ପୂର୍ବପୁରୁଷ ପିତାଙ୍କ ପୂର୍ବପୁରୁଷଙ୍କର ଅର୍ଦ୍ଧେକ ପାଇବେ ।

୨. ପିତାଙ୍କ ଅଜା ଓ ଆଈ ବିଦ୍ୟମାନ ଥିଲେ ଅଜାଙ୍କ କିସମତ ଆଈଙ୍କ କିସମତର ଦୁଇଗୁଣ ହେବ ।

୩. ମାତାଙ୍କ ଅଜା ଓ ଆଈଙ୍କର ସମାନ ଅଂଶ ।

୪. ପିତାଙ୍କ ଅଜା ଓ ପିତାଙ୍କ ଔରସ ପୁତ୍ର (ମୃତ ବ୍ୟକ୍ତିର ଭାଇ) ବିଦ୍ୟମାନ ଥିଲେ ଭାଇର ଅଂଶ ଓ ଅଜାଙ୍କ ଅଂଶ ସମାନ ପଡ଼ିବ ।

୫. ମୃତବ୍ୟକ୍ତିର ଭାଇ ନ ଥାଇ ଭ୍ରାତୁଷ୍ପୁତ୍ର ଥିଲେ ମଧ୍ୟ ସେ ମୃତବ୍ୟକ୍ତିର ଅଜାଙ୍କ ସଙ୍ଗେ ସମାନ ଭାଗ ପାଇବେ ।

ମୃତବ୍ୟକ୍ତିର ଭ୍ରାତା କିମ୍ବା ଭ୍ରାତୁଷ୍ପୁତ୍ର ନ ଥିଲେ ଅଜାଶ୍ରେଣୀୟ ବ୍ୟକ୍ତି ତ୍ୟକ୍ତ ସମ୍ପତ୍ତିରେ ଅଧିକାରୀ ହୁଅନ୍ତି । ଅଜାଙ୍କ ଛଡ଼ା ମୃତ ବ୍ୟକ୍ତିର ରକ୍ତସମ୍ପର୍କୀୟ ଅନ୍ୟ କୁଟୁମ୍ବ ନ ଥିଲେ ଓ ସ୍ତ୍ରୀ କିମ୍ବା ସ୍ୱାମୀ ବିଦ୍ୟମାନ ଥିଲେ ତ୍ୟକ୍ତ ସମ୍ପତ୍ତିରୁ ସ୍ୱାମୀ କିମ୍ବା ସ୍ତ୍ରୀଙ୍କର ପ୍ରାପ୍ୟ ଅଂଶ ବାଦ ଯାଇ ଅବଶିଷ୍ଟ ଅଂଶ ଅଜା ପାଇବେ ।

**ଭାଇ-ଭଉଣୀଙ୍କ ଅଂଶ** - ମୁସଲମାନମାନଙ୍କ ମଧ୍ୟରେ ବହୁପତ୍ନୀ ଗ୍ରହଣ କରିବାର ପ୍ରଥା ଥିବାରୁ ଭାଇମାନେ ତିନି ଶ୍ରେଣୀରେ ବିଭକ୍ତ । ୧- ମାତା ପିତା ଉଭୟଙ୍କ ଔରସ ସନ୍ତାନ, ୨- ସହୋଦର ବା ଏକମାତୃକ, ୩- ସରକ୍ତ ବା ଏକପିତୃକ ଭ୍ରାତା ।

ଔରସ ଭ୍ରାତା ଭଗିନୀ ବିଦ୍ୟମାନ ଥିଲେ ସରକ୍ତ ବା ଏକପିତୃକ ଭ୍ରାତା ତ୍ୟକ୍ତ ସମ୍ପତ୍ତିରେ ଅଧିକାରୀ ନୁହନ୍ତି । ଔରସ କିମ୍ବା ଏକପିତୃକ ଭାଇଭଉଣୀ ବିଦ୍ୟମାନ ଥିଲେ ସୁଦ୍ଧା ଏକମାତୃକ ଭାଇଭଉଣୀ ତ୍ୟକ୍ତ ସମ୍ପତ୍ତିର ଅଂଶ ପାଇବେ । ଭାଇର ଅଂଶ ଭଉଣୀର ଅଂଶର ଦୁଇଗୁଣ । ଭାଇ ବିଦ୍ୟମାନ ଥିଲେ ପୁତୁରାମାନେ ଆଦୌ ସମ୍ପତ୍ତି ପାଇପାରିବେ ନାହିଁ ।

୩ୟ ଉପଶ୍ରେଣୀର ଅଧିକାରୀ- ଜେଠା, କକା ଓ ମାମୁଙ୍କ ଅଂଶ- ନିକଟ ସମ୍ପର୍କୀୟ ପିତୃବ୍ୟ ବା ମାତୁଳ ତ୍ୟକ୍ତ ସମ୍ପତ୍ତି ପାଇବେ । ପିତାଙ୍କ ଭାଇଙ୍କ ଅଂଶ ମାତାଙ୍କ ଭାଇଙ୍କ ପ୍ରାପ୍ୟ ଅଂଶର ଦୁଇଗୁଣ । ମୃତ ବ୍ୟକ୍ତିର ଜଣେ ମାତ୍ର ପିତୃବ୍ୟ ବା ମାତୁଳ ଥିଲେ ଓ ମୃତ ବ୍ୟକ୍ତିର ସ୍ୱାମୀ କିମ୍ବା ସ୍ତ୍ରୀ ବିଦ୍ୟମାନ ଥିଲେ ସ୍ୱାମୀ ବା ସ୍ତ୍ରୀଙ୍କ ପ୍ରାପ୍ୟ ଅଂଶ ବାଦ ଯାଇ ଅବଶିଷ୍ଟ ସମ୍ପତ୍ତି ଉକ୍ତ ପିତୃବ୍ୟ ବା ମାତୁଳ ଏକାକୀ ପାଇବେ । ଏମାନେ କେହି ନ ଥିଲେ ମୃତବ୍ୟକ୍ତିର ପିଉସୀପୁଅ ଭାଇ, ମଉଳାପୁଅ ଭାଇ, ମାଉସୀପୁଅ ଭାଇ, କକେଇପୁଅ ଭାଇ ତ୍ୟକ୍ତ ସମ୍ପତ୍ତିରେ ଅଧିକାରୀ ହେବେ ।

**ଅଉଲ** - କୋରାନର ବ୍ୟବସ୍ଥାନୁସାରେ ଅଂଶୀମାନେ ତ୍ୟକ୍ତ ସମ୍ପତ୍ତିର ଅଂଶ ପାଆନ୍ତି । କିନ୍ତୁ ଏଥିରେ ସମୟ ସମୟରେ ଗୋଳମାଳ ଘଟେ । ସବୁ ଅଂଶଯାକ କୋରାନ ଅନୁସାରେ ବାଣ୍ଟିଲା ବେଳକୁ ଅଂଶଯାକ ମିଶି ୧୬ ପଣରୁ ବେଶି ହୋଇଯାଏ । ଏପରି ସ୍ଥଳରେ ସମସ୍ତ ଉତ୍ତରାଧିକାରୀଙ୍କ ଅଂଶରୁ କିଛି କିଛି କାଟି ଦେବାକୁ ହୁଏ । ଏହି ପ୍ରଣାଳୀକୁ 'ଅଉଲ' ବୋଲାଯାଏ । ଏହା ସୁନ୍ନୀମାନଙ୍କ ମଧ୍ୟରେ ପ୍ରଚଳିତ । କିନ୍ତୁ ସିହାମାନଙ୍କ ମଧ୍ୟରେ ଚଳେ ନାହିଁ । ସିହା ନିୟମ ଅନୁସାରେ ଶାସ୍ତ୍ରସିଦ୍ଧ ଅଂଶ ଏକତ୍ର ହୋଇ ଯେବେ ୧୬

ପଣରୁ ବେଶି ହୋଇଯାଏ, ତାହାହେଲେ ଉକ୍ତପ୍ରକାର ବେଶି ହୋଇଥିବା ଅଂଶ ମୃତବ୍ୟକ୍ତିର କନ୍ୟା କିମ୍ବା ଭଉଣୀଙ୍କ ପ୍ରାପ୍ୟ ଅଂଶରୁ କଟାଯାଏ । ଉଦାହରଣସ୍ୱରୂପ- ମୃତବ୍ୟକ୍ତିର ସ୍ୱାମୀଙ୍କର ଚାରିପଣ, ପିତାମାତାଙ୍କର ପାଞ୍ଚଅଣା ଚାରିପାହୁଲା, କନ୍ୟାର ଆଠପଣ । କିନ୍ତୁ ଏ ଅଂଶଗୁଡ଼ିକ ମିଶାଣ ହେଲେ ଷୋଳପଣରୁ ବେଶି ହେବ । ଏହି ବେଶି ଅଂଶତକ କନ୍ୟାର ଅଂଶରୁ କଟାଯିବ । ତାହା ହେଲେ ସ୍ୱାମୀ କା ଚାରିଅଣା, ପିତାମାତା ପାଞ୍ଚଅଣା ୪ ପଇସା ଓ କନ୍ୟା ଛଅଣା ୮ ପଇସା ପାଇବେ ।

**ଫେରସ୍ତ** - ସମୟ ସମୟରେ ଏପରି ମଧ୍ୟ ଦେଖାଯାଏ ଯେ ନିର୍ଦ୍ଦିଷ୍ଟ ଅଂଶ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବାଣ୍ଟିଦେବା ପରେ କେତେକ ଅବଶିଷ୍ଟ ରହିଯାଏ ଏବଂ ସେହି ଅଂଶ ନେବା ନିମନ୍ତେ କେହି ଅବଶିଷ୍ଟାଂଶ ଭାଗୀ ନ ଥାନ୍ତି । ସେହିତକ ଉତ୍ତରାଧିକାରୀମାନେ କିସମତ ଅନୁସାରେ ବାଣ୍ଟିନିଅନ୍ତି । କିନ୍ତୁ ମୃତବ୍ୟକ୍ତିର ସ୍ତ୍ରୀ ଏହି ଫେରସ୍ତ ବଣ୍ଟରାରେ ଅଧିକାରିଣୀ ନୁହନ୍ତି । ଉଦାହରଣସ୍ୱରୂପ- ମୃତବ୍ୟକ୍ତିର ସ୍ତ୍ରୀ, ମାତା ଓ କନ୍ୟା ବିଦ୍ୟମାନ ଅଛନ୍ତି । ସ୍ତ୍ରୀଙ୍କର ଦୁଇପଣ ମାତାଙ୍କର ଏକ-ଷଷ୍ଠାଂଶ ବା କା ଦୁଇଅଣା ୮ ପଇସା ଓ କନ୍ୟାର ଆଠପଣ । ସମୁଦାୟ ମିଶିଲେ ୧୬ ପଣରୁ ତିନିଅଣା ୪ ପଇସା କମ୍ ହେଉଅଛି- ଏହି ତିନିଅଣା ୪ ପାହୁଲା ମଧ୍ୟରୁ ସ୍ତ୍ରୀ କିଛି ପାଇବେ ନାହିଁ ଓ ଏହି ଅଂଶକୁ ମାତା ଓ କନ୍ୟା ଅନୁପାତ ଅନୁସାରେ ବାଣ୍ଟି ନେବେ ।

ଏ ଗଲା ସିହାମାନଙ୍କ ସମ୍ପତ୍ତି ବିଭାଗ । ଆଗାମୀ ଥର ସୁନ୍ନୀମାନଙ୍କ ସମ୍ପତ୍ତି ବିଭାଗ ବିଷୟ ଲେଖାଯିବ ।

ଉତ୍କଳ ସାହିତ୍ୟ/୮ମ ଭାଗ/୬ଷ୍ଠ ସଂଖ୍ୟା/୧୩୧୨ ସାଲ ।

## ।। ସାତ ।।

ସୁନ୍ନୀମାନଙ୍କ ମଧ୍ୟରେ ସମ୍ପତ୍ତି ବିଭାଗ ।

ମୃତ ବ୍ୟକ୍ତିଙ୍କ ସମ୍ପତ୍ତିରୁ ପ୍ରଥମେ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦିତ ହେବାର ବିଧି । ତତ୍‌ପରେ ତାଙ୍କ ଋଣପରିଶୋଧ, ତତ୍‌ପରେ ସେ ଚରମପତ୍ର (ଉଇଲ୍) ଦ୍ୱାରା ଯେବେ କିଛି ସମ୍ପତ୍ତି ଦାନ କରି ପାଇଥିବେ ତାହା ଦିଆଯିବ । କିନ୍ତୁ ଋଣ ପରିଶୋଧ ହେବା ପରେ ପରେ ଯାହା ଅବଶିଷ୍ଟ ରହେ, ମୃତ ବ୍ୟକ୍ତିଙ୍କର କେହି ଉଆରସ ନ ଥିଲେ ସମୁଦାୟ ଅବଶିଷ୍ଟ ସମ୍ପତ୍ତିକୁ ମୃତ ବ୍ୟକ୍ତି ଚରମ ଦାନ କରି ଯାଇଥିଲେ, ସେହି ଚରମ ଦାନ କାର୍ଯ୍ୟରେ ପରିଣତ ହେବ । କିନ୍ତୁ ମୃତ ବ୍ୟକ୍ତିଙ୍କର ଉଆରସ ବା ଉତ୍ତରାଧିକାରୀ ବିଦ୍ୟମାନ ଥିଲେ ସେ ଯଦି ସମୁଦାୟ ଅବଶିଷ୍ଟ ସମ୍ପତ୍ତିକୁ ଚରମ ଦାନ କରି ଯାଇଥାନ୍ତି ତାହା ହେଲେ ସୁଦ୍ଧା ଅବଶିଷ୍ଟ ସମ୍ପତ୍ତିର ଏକ-ତୃତୀୟାଂଶରୁ ଅଧିକ ଚରମ ଦାନ-ଗ୍ରହୀତାମାନେ

ଉପରୋକ୍ତ ଭାବରେ ପାଇବାପରେ ତ୍ୟକ୍ତ ସମ୍ପତ୍ତିରୁ ଯାହା ଅବଶିଷ୍ଟ ରହିବ ତାହା ଉଆରସମାନଙ୍କ ମଧ୍ୟରେ ବିଭକ୍ତ ହେବ । ଉଆରସମାନେ ନ ଥିଲେ ମୃତବ୍ୟକ୍ତି ଚୁକ୍ତି ଦ୍ୱାରା ଯାହାଙ୍କୁ ନିଯୁକ୍ତ କରି ଯାଇଥିବେ ସେମାନେ ତ୍ୟକ୍ତ ସମ୍ପତ୍ତି ପାଇବେ । ଏପରି କେହି ଚୁକ୍ତି-ଉଆରସ ନ ଥିଲେ ମୃତ ବ୍ୟକ୍ତି ଯାହାଙ୍କୁ ଆପଣାର କୁଟୁମ୍ବ ବୋଲି ସ୍ୱୀକାର କରି ଯାଇଥିବେ, ସେ ତ୍ୟକ୍ତ ସମ୍ପତ୍ତିରେ ମାଲିକ ହେବେ । ଏମାନେ କେହି ନ ଥିଲେ ତ୍ୟକ୍ତ ସମ୍ପତ୍ତି ସରକାରୀ ମାଲଖାନାକୁ ଯିବ ।

ଉଆରସମାନେ ତିନି ଶ୍ରେଣୀରେ ବିଭକ୍ତ । ୧ମ- ଅଂଶଭାଗୀ, ୨ୟ- ଅବଶିଷ୍ଟାଂଶଭାଗୀ, ୩ୟ- ଦୂର କୁଟୁମ୍ବ । ପ୍ରଥମେ ତ୍ୟକ୍ତ ସମ୍ପତ୍ତିରୁ ଅଂଶଭାଗୀ ଉଆରସମାନେ ସେମାନଙ୍କର ଶାସ୍ତ୍ରସିଦ୍ଧ ଅଂଶ ପାଇବେ । ସେମାନେ ଅଂଶ ପାଇବା ପରେ ଯାହା ଅବଶିଷ୍ଟ ରହିବ ତାହା ୨ୟ ଶ୍ରେଣୀର ଉଆରସ ଅର୍ଥାତ୍ ଅବଶିଷ୍ଟାଂଶଭାଗୀମାନେ ପାଇବେ । ଯେବେ ୧ମ ଶ୍ରେଣୀର କେହି ନ ଥାନ୍ତି ତେବେ ୨ୟ ଶ୍ରେଣୀର ଉଆରସମାନେ ପାଇବେ । ୧ମ ଓ ୨ୟ ଶ୍ରେଣୀର କେହି ଉଆରସ ନ ଥିଲେ ୩ୟ ଶ୍ରେଣୀର ଉଆରସମାନେ ପାଇବେ । ୧ମ ଶ୍ରେଣୀର ଉଆରସମାନଙ୍କ ମଧ୍ୟରୁ ମୃତବ୍ୟକ୍ତିଙ୍କର ସ୍ୱାମୀ ବା ସ୍ତ୍ରୀ ବିଦ୍ୟମାନ ଥିଲେ ସୁଦ୍ଧା ୨ୟ ଶ୍ରେଣୀର କେହି ନ ଥିଲେ ସ୍ୱାମୀ ବା ସ୍ତ୍ରୀ ଅଂଶ ବାଦ ବାକି ଯାହା ରହିବ ତାହା ୩ୟ ଶ୍ରେଣୀର ଉଆରସ ଅର୍ଥାତ୍ ଦୂର କୁଟୁମ୍ବମାନେ ପାଇବେ । ନିକଟତମ ଉଆରସ ବିଦ୍ୟମାନ ଥିଲେ ଦୂରତର ବ୍ୟକ୍ତିମାନେ ସମ୍ପତ୍ତି ପାଇପାରିବେ ନାହିଁ । ଉଦାହରଣସ୍ୱରୂପ, ମୃତ ବ୍ୟକ୍ତିର ଭାଇ ଏବଂ ପୁତୁରା ବିଦ୍ୟମାନ ଅଛନ୍ତି । ଭାଇ ଥାଉଁ ଥାଉଁ ପୁତୁରା ସମ୍ପତ୍ତିରେ ମାଲିକ ହୋଇପାରିବେ ନାହିଁ । ମୃତବ୍ୟକ୍ତିର ୩ ଭାଇ ମଧ୍ୟରୁ ଦୁଇଜଣ ଭାଇ ଜୀବିତ ଅଛନ୍ତି ଓ ଏକଜଣ ଭାଇ ମରିଯାଇଅଛି ଓ ତାହାର ଦିଓଟି ପୁଅ ଅଛନ୍ତି । ଏପରିସ୍ଥଳରେ ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ ତାହାର ଦୁଇଭାଇ ମାଲିକ ହେବେ, କିନ୍ତୁ ପୁତୁରାମାନେ ଆଦୌ କିଛି ପାଇବେ ନାହିଁ । ମାତ୍ର ହିନ୍ଦୁମାନଙ୍କ ମଧ୍ୟରେ ଏପରି ଘଟନା ହେଲେ ମୃତବ୍ୟକ୍ତିର ସମ୍ପତ୍ତି ୩ ଭାଗରେ ବିଭକ୍ତ ହୋଇ ଜୀବିତ ୨ ଭାଇ ଅଂଶ ପାଇଥାନ୍ତେ ଓ ମୃତଭାଇର ପୁଅମାନେ ଏକ ଅଂଶ ପାଇଥାନ୍ତେ । ପୁଅ ଥାଉଁ ଥାଉଁ ସୁନ୍ନୀମାନଙ୍କ ଆଇନ ଅନୁସାରେ ନାତି ସମ୍ପତ୍ତିରେ ଭାଗୀ ହୋଇପାରିବ ନାହିଁ । କିନ୍ତୁ ହିନ୍ଦୁମାନଙ୍କ ମିତ୍ରାକ୍ଷର ଶାସ୍ତ୍ର ଅନୁସାରେ ବାପ ଥାଉଁ ଥାଉଁ ପୁଅର ସମ୍ପତ୍ତିରେ ଅଧିକାର ହୁଏ । ଯେଉଁ ଉଆରସ ସଙ୍ଗେ ମୃତବ୍ୟକ୍ତିର ଦୁଇ ସମ୍ପର୍କ ଥାଏ ଓ ଯେଉଁ ଉଆରସ ସଙ୍ଗେ ମୃତବ୍ୟକ୍ତିର ଏକ ସମ୍ପର୍କ ଥାଏ ଏପରି ଉଆରସମାନଙ୍କ ମଧ୍ୟରେ ଦୁଇ ସମ୍ପର୍କଯୁକ୍ତ ଉଆରସଙ୍କ ତ୍ୟକ୍ତ ସମ୍ପତ୍ତିରେ ଅଧିକାର ହୁଏ । ଉଦାହରଣସ୍ୱରୂପ, ମୃତବ୍ୟକ୍ତିଙ୍କ ପିତା ଯୋଡ଼ିଏ ବିବାହ କରିଅଛନ୍ତି । ପ୍ରଥମ ବିବାହିତା ସ୍ତ୍ରୀଙ୍କ ଗର୍ଭରୁ ମୃତବ୍ୟକ୍ତି ଓ ଆଉ ଏକଭାଇ ଜନ୍ମ ହୋଇଥିଲେ । ୨ୟ ସ୍ତ୍ରୀଙ୍କ ଗର୍ଭରୁ ଏକପୁତ୍ର ଜନ୍ମ ହୋଇଥିଲେ ।

ଏପରି ସ୍ଥଳରେ ମୃତବ୍ୟକ୍ତି ମରିବା ସମୟରେ ଏକ ନିଜର ଭାଇ ଓ ଏକ ସାବତଭାଇ ଛାଡ଼ି ମରିଅଛନ୍ତି । ନିଜ ଭାଇ ସଙ୍ଗେ ମୃତବ୍ୟକ୍ତିଙ୍କର ଦୁଇ ସମ୍ପର୍କ ଅଛି । ଅର୍ଥାତ୍ ଏକପିତୃକ ସମ୍ପର୍କ ଓ ଏକମାତୃକ ସମ୍ପର୍କ । ସାବତଭାଇଙ୍କ ସଙ୍ଗେ ମୃତ ବ୍ୟକ୍ତିଙ୍କର ଏକ ସମ୍ପର୍କ ଅଛି । ଅର୍ଥାତ୍ କେବଳ ଏକପିତୃକ ସମ୍ପର୍କ । ଏପରି ସ୍ଥଳରେ ମୃତ ବ୍ୟକ୍ତିଙ୍କ ତ୍ୟକ୍ତ ସମ୍ପତ୍ତିରେ ନିଜ ଭାଇଙ୍କର ଅଧିକାର ରହିବ । ସାବତଭାଇର ଅଧିକାର ରହିବ ନାହିଁ । ସମାନ ଦୂରବର୍ତ୍ତୀ ଉଆରସମାନଙ୍କ ମଧ୍ୟରେ ସ୍ତ୍ରୀ ପୁରୁଷ ଉଭୟ ବିଦ୍ୟମାନ ଥିଲେ ପୁରୁଷ ଉଆରସର ଅଂଶ ସ୍ତ୍ରୀ ଉଆରସର ପ୍ରାପ୍ୟ ଅଂଶର ଦୁଇ ଗୁଣ ହେବ । ଉଦାହରଣସ୍ୱରୂପ, ମୃତବ୍ୟକ୍ତିର ପୁତ୍ର ଓ କନ୍ୟା ବିଦ୍ୟମାନ ଥିଲେ ଜଣେ ପୁତ୍ରର ଅଂଶ ଜଣେ କନ୍ୟାର ପ୍ରାପ୍ୟ ଅଂଶର ଦୁଇ ଗୁଣ ହେବ । ସୁନ୍ନୀମାନଙ୍କ ମଧ୍ୟରେ ଜ୍ୟେଷ୍ଠାଂଶ ପ୍ରଥା ପ୍ରଚଳିତ ନାହିଁ । ପୂର୍ବେ ବୋଲାଯାଇଅଛି ଯେ ମୁସଲମାନମାନଙ୍କ ମଧ୍ୟରେ ସ୍ଥାବର ଅସ୍ଥାବର ସମ୍ପତ୍ତିର ପ୍ରଭେଦ ନାହିଁ । ସ୍ଥାବର ସମ୍ପତ୍ତି ପ୍ରତି ଯେଉଁ ନିୟମ, ଅସ୍ଥାବର ସମ୍ପତ୍ତି ପ୍ରତି ସେହି ନିୟମ । ପୁନଶ୍ଚ ପୈତୃକ ଓ ସ୍ୱୋପାର୍ଜିତ ସମ୍ପତ୍ତି ମଧ୍ୟରେ ପ୍ରଭେଦ ନାହିଁ ।

ପୂର୍ବରେ ବୋଲାଯାଇଅଛି ସୁନ୍ନିମାନଙ୍କ ମଧ୍ୟରେ ଉଆରସମାନେ ୩ ଶ୍ରେଣୀରେ ବିଭକ୍ତ ୧. ଅଂଶଭାଗୀ, ୨. ଅବଶିଷ୍ଟାଂଶଭାଗୀ, ୩. ଦୂର କୁଟୁମ୍ବ ।

୧ମ- ଅଂଶଭାଗୀ ଉଆରସଙ୍କ ସଂଖ୍ୟା ବାର, ଯଥା- ୧. ମୃତବ୍ୟକ୍ତିଙ୍କ ପିତା, ୨. ସତ୍ୟ ଅଜା, ୩. ଏକମାତୃକଭାଇ, ୪. ସ୍ୱାମୀ, ୫. ସ୍ତ୍ରୀ, ୬. କନ୍ୟା, ୭. ପୁଅର ଝିଅ ନାତୁଣୀ, ୮. ଏକପିତୃକ ଓ ଏକମାତୃକ ଭଉଣୀ, ୯. ଏକପିତୃକ ଭଉଣୀ, ୧୦. ଏକମାତୃକ ଭଉଣୀ, ୧୧. ମା, ୧୨. ସତ୍ୟ ଆଈ । ମୁସଲମାନମାନଙ୍କ ମଧ୍ୟରେ ସତ୍ୟ ଅଜା ଓ ମିଥ୍ୟା ଅଜା ଏପରି ଦୁଇ ଶ୍ରେଣୀରେ ଆଈ ଅଛନ୍ତି । ଯେଉଁ ଅଜାଙ୍କ ସଙ୍ଗେ ମୃତବ୍ୟକ୍ତିଙ୍କର ଏପରି ସମ୍ପର୍କ ଅଛି ଯେ ସେ ଦୁହିଁଙ୍କ ମଧ୍ୟରେ କୌଣସି ସ୍ତ୍ରୀ ବ୍ୟବଧାନ ନାହିଁ ଏପରି ଅଜାଙ୍କୁ ସତ୍ୟ ଅଜା ବୋଲାଯାଏ । ଅର୍ଥାତ୍ ପିତାମହ, ପ୍ରପିତାମହ, ବୃଦ୍ଧପ୍ରପିତାମହ ଏମାନେ ସତ୍ୟ ଅଜା । କିନ୍ତୁ ଯେଉଁ ଅଜା ମଧ୍ୟରେ ସ୍ତ୍ରୀ ବ୍ୟବଧାନ ଅଛନ୍ତି ସେ ମିଥ୍ୟା ଅଜା । ଯଥା, ମାତାମହ, ପିତାଙ୍କ ମାତାମହ, ମାତାଙ୍କ ପିତାମହ ଇତ୍ୟାଦି । ସେହିପରି ଯେଉଁ ଆଈଙ୍କ ମଧ୍ୟରେ କୌଣସି ସ୍ତ୍ରୀ ବ୍ୟବଧାନ ନାହିଁ ସେ ସତ୍ୟ ଆଈ ଓ ଯେଉଁଠାରେ ସ୍ତ୍ରୀ କିମ୍ବା ମିଥ୍ୟା ଅଜା ବ୍ୟବଧାନ ଅଛନ୍ତି ସେ ମିଥ୍ୟା ଆଈ । ଯଥା- ପିତାମହୀ, ପ୍ରପିତାମହୀ ଏମାନେ ସତ୍ୟ ଆଈ । ମାତାମହୀ, ପିତାଙ୍କ ମାତାମହୀ, ମାତାଙ୍କ ପିତାମହୀ ଏମାନେ ମିଥ୍ୟା ଆଈ । ନାତୁଣୀ ସମ୍ବନ୍ଧରେ ଏହିପରି ଗୋଟିଏ ନିୟମ ଅଛି । ପୁଅର ଝିଅ, ପୁଅର ପୁଅର ଝିଅ, ପୁଅର ପୁଅର ପୁଅର ଝିଅ ଏହି ନାତୁଣୀମାନେ ଉଆରସ, କିନ୍ତୁ ମଝିରେ କନ୍ୟା ବ୍ୟବଧାନ ଥିଲେ ସେ ନାତୁଣୀମାନେ ଉଆରସ ହୋଇପାରିବେ ନାହିଁ । ଯଥା- ଝିଅର ଝିଅ, ପୁଅର ଝିଅର ଝିଅ ଏମାନେ ଉଆରସ ନୁହନ୍ତି ।

ଅଂଶଭାଗୀମାନଙ୍କ ପ୍ରାପ୍ୟ ଅଂଶ ।

**ପିତା-** ମୃତ ବ୍ୟକ୍ତିଙ୍କ ପୁଅ କିମ୍ବା ନିମ୍ନତର ଉଆରସ ବିଦ୍ୟମାନ ଥିଲେ ମୃତବ୍ୟକ୍ତିର ପିତା ତ୍ୟକ୍ତ ସମ୍ପତ୍ତିର ଏକ-ଷଷ୍ଠାଂଶ ଅର୍ଥାତ୍ ଦୁଇ ଅଣା ଆଠ ପାହୁଲା ପାଇପାରିବେ । ମୃତବ୍ୟକ୍ତିଙ୍କର କନ୍ୟା କିମ୍ବା ପୁତ୍ରର କନ୍ୟା ବିଦ୍ୟମାନ ଥିଲେ ପିତା ତ୍ୟକ୍ତ ସମ୍ପତ୍ତିର ଏକ-ଷଷ୍ଠାଂଶ ପାଇବେ ଓ ଅନ୍ୟ ଉଆରସମାନେ ସେମାନଙ୍କ ନିରୂପିତ ଅଂଶ ପାଇବା ପରେ ଅବଶିଷ୍ଟ ଯାହା ବଳିବ ତାହା ମଧ୍ୟ ମୃତବ୍ୟକ୍ତି ପିତା ହିଁ ପାରିବେ । କିନ୍ତୁ ଯଦି ମୃତବ୍ୟକ୍ତିଙ୍କର କେହି ଔରସ ନ ଥାନ୍ତି ତାହା ହେଲେ ପିତା ଅଂଶଭାଗୀସ୍ୱରୂପ ଏକ-ଷଷ୍ଠାଂଶ ପାଇବେ ନାହିଁ, କିନ୍ତୁ ଅନ୍ୟ ଅଂଶଭାଗୀମାନଙ୍କର ଅଂଶ ଦିଆ ହେଲେ ଯାହା ଅବଶିଷ୍ଟ ରହିବ ତାହା ପିତା ପାଇବେ ।

**ମାତା-** ମୃତ ବ୍ୟକ୍ତିର କେହି ଏକ ବଂଶଜ ଔରସ ଥିଲେ କିମ୍ବା ମୃତବ୍ୟକ୍ତିର ଦୁଇ ବା ତତୋଽଧିକ ଭାଇ ଭଉଣୀ ଥିଲେ ବ୍ୟକ୍ତି ସମ୍ପତ୍ତିରେ ମାତାଙ୍କର ଏକ-ଷଷ୍ଠାଂଶ ବା ଦୁଇ ଅଣା ଆଠ ପାହୁଲା । ମୃତବ୍ୟକ୍ତିର କେହି ଏକବଂଶ ଔରସ ନ ଥିଲେ କିମ୍ବା ଭାଇଭଉଣୀଙ୍କ ସଂଖ୍ୟା ଏକରୁ ଅଧିକ ନ ଥିଲେ ଓ ମୃତବ୍ୟକ୍ତିଙ୍କର ପିତା ଓ ସ୍ୱାମୀ ବା ସ୍ତ୍ରୀ ଏମାନଙ୍କ ମଧ୍ୟରୁ କେହି ନ ଥିଲେ ମାତା ଏକ-ତୃତୀୟାଂଶ ବା ପାଞ୍ଚଅଣା ଚାରି ପାହୁଲା ପାଇବେ । ଉପରୋକ୍ତ ଉଦାହରଣରେ ଯେବେ ମୃତବ୍ୟକ୍ତିର ପିତାମାତା ଓ ସ୍ୱାମୀ ବା ସ୍ତ୍ରୀ ଜୀବିତ ଥାନ୍ତି ତେବେ ସ୍ୱାମୀ ବା ସ୍ତ୍ରୀର ଅଂଶ ବାଦ ଅବଶିଷ୍ଟାଂଶରୁ ମାତା ଏକ-ତୃତୀୟାଂଶ ବା ପାଞ୍ଚ ଅଣା ଚାରି ପାହୁଲା ପାଇବେ । କିନ୍ତୁ ଉପରୋକ୍ତ ଉଦାହରଣରେ ପିତା ନ ଥାଇ ଯେବେ ମିଥ୍ୟା ଅଜା ଥାନ୍ତି, ତାହା ହେଲେ ମାତା ସମୁଦାୟ ସମ୍ପତ୍ତିର ଏକ-ତୃତୀୟାଂଶ ପାଇବେ । ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ ସାବତମାଙ୍କର କୌଣସି ସ୍ୱତ୍ୱ ନାହିଁ ।

**କନ୍ୟା-** ମୃତବ୍ୟକ୍ତିର ପୁତ୍ର ନ ଥିଲେ ଓ ଗୋଟିଏ ମାତ୍ର କନ୍ୟା ଥିଲେ ସେହି କନ୍ୟା ସମ୍ପତ୍ତିର ଅର୍ଦ୍ଧେକ ପାଇବ ଓ ଏକାଧିକ କନ୍ୟା ଥିଲେ ସେମାନେ ସମସ୍ତେ ସମ୍ପତ୍ତିର ଦୁଇ-ତୃତୀୟାଂଶ ବା ଦଶ ଅଣା ଆଠ ପାହୁଲା ପାଇବେ । କିନ୍ତୁ ମୃତବ୍ୟକ୍ତିଙ୍କର ପୁତ୍ର ବିଦ୍ୟମାନ ଥିଲେ କନ୍ୟା 'ଅଂଶଭାଗୀ'ରୂପେ ସମ୍ପତ୍ତିରୁ ଭାଗ ନ ପାଇ ଭାଇ ସଙ୍ଗେ 'ଅବଶିଷ୍ଟାଂଶଭାଗୀ' ହୁଅନ୍ତି ଏବଂ ତ୍ୟକ୍ତ ସମ୍ପତ୍ତିରୁ ଜଣେ ପୁଅର ଯାହା ଅଂଶ, ଜଣେ କନ୍ୟା ତହିଁର ଅଧେ ପାଆନ୍ତି ।

ସାବତଝିଅର ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ ଝିଅପରି ଅଂଶ ନାହିଁ ।

**ସ୍ୱାମୀ ଓ ସ୍ତ୍ରୀ-** ମୃତ ବ୍ୟକ୍ତିର ଔରସ ପୁତ୍ର କିମ୍ବା ଔରସ ପୁତ୍ରର ପୁତ୍ର ନ ଥିଲେ ସ୍ୱାମୀ ତ୍ୟକ୍ତ ସମ୍ପତ୍ତିର ଅର୍ଦ୍ଧେକ ପାଇବ । କିନ୍ତୁ ଔରସ ବିଦ୍ୟମାନ ଥିଲେ ସ୍ୱାମୀ ତ୍ୟକ୍ତ ସମ୍ପତ୍ତିର ଚାରିଭାଗରୁ ଏକଭାଗ ପାଇବେ । ମୃତବ୍ୟକ୍ତିର ଔରସ ନ ଥିଲେ ସ୍ତ୍ରୀ ତ୍ୟକ୍ତ

ସମ୍ପତ୍ତିର ଚାରିଭାଗରୁ ଏକ ଭାଗ ପାଇବେ ଓ କେହି ଔରସ ଥିଲେ ସ୍ତ୍ରୀ ତ୍ୟକ୍ତ ସମ୍ପତ୍ତିର ଆଠଭାଗରୁ ଏକ ଭାଗ ପାଇବେ । ମୃତ ବ୍ୟକ୍ତିଙ୍କ ଏକାଧିକ ସ୍ତ୍ରୀ ବିଦ୍ୟମାନ ଥିଲେ ଉପରୋକ୍ତ ଅଂଶକୁ ସବୁ ସମାନ-ଭାଗରେ ବାଣ୍ଟିନେବେ ।

**ସତ୍ୟ ଅଜା**- ମୃତବ୍ୟକ୍ତିର ବାପ ବଞ୍ଚିଥିଲେ ଅଜା କିଛି ପାଇବେ ନାହିଁ । ବାପ ନ ଥିଲେ ଅଜା ବାପଙ୍କ ପ୍ରାପ୍ୟ ଅଂଶ ପାଇବେ ।

**ଏକମାତୃକ ଭାଇଭଉଣୀ**- ଏ ଶ୍ରେଣୀର ଭାଇଭଉଣୀଙ୍କ ଅଂଶ ସେମାନଙ୍କ ମଧ୍ୟରେ ସମାନ ଭାଗରେ ବଣ୍ଟାଯାଏ । ମୃତବ୍ୟକ୍ତିଙ୍କର ଜଣେ ଭାଇ ବା ଭଉଣୀ ଥିଲେ ସେ ସମ୍ପତ୍ତିର ଛ' ଭାଗରୁ ଏକଭାଗ ପାଇବେ । ଭାଇଭଉଣୀ ଏକାଧିକ ଥିଲେ ସମସ୍ତେ ମିଶି ତ୍ୟକ୍ତ ସମ୍ପତ୍ତିର ତିନିଭାଗରୁ ଏକଭାଗ ପାଇବେ । ମୃତବ୍ୟକ୍ତିର ଔରସ କିମ୍ବା ବାପ କିମ୍ବା ସତ୍ୟ ଅଜା ବିଦ୍ୟମାନ ଥିଲେ ଏ ଶ୍ରେଣୀର ଭାଇଭଉଣୀମାନେ ତ୍ୟକ୍ତ ସମ୍ପତ୍ତିରୁ କିଛିମାତ୍ର ପାଇପାରିବେ ନାହିଁ ।

**ପୁଅର ଝିଅ**- ଜଣେ ଥିଲେ ତ୍ୟକ୍ତ ସମ୍ପତ୍ତିରୁ ଅଧେ ପାଇବେ । ଜଣକରୁ ବେଶି ଥିଲେ ସମସ୍ତେ ମିଶି ତିନି ଭାଗରୁ ଦୁଇ ଭାଗ ପାଇବେ । ମୃତ ବ୍ୟକ୍ତିର ପୁଅ କିମ୍ବା ଏକାଧିକ ଝିଅ କିମ୍ବା ନିକଟତର ସମ୍ପର୍କୀୟ ନାତି ବିଦ୍ୟମାନ ଥିଲେ ନାତୁଣୀମାନେ କିଛି ପାଇବେ ନାହିଁ । ମୃତବ୍ୟକ୍ତିର ଜଣେ ମାତ୍ର ଝିଅ ଥିଲେ, ପୁଅର ଝିଅ ସମ୍ପତ୍ତିର ଛ' ଭାଗରୁ ଏକଭାଗ ପାଇବେ । ମୃତବ୍ୟକ୍ତିର ସମଦୂରବର୍ତ୍ତୀ ନାତି ଓ ନାତୁଣୀ ଉଭୟ ଥିଲେ ନାତିର ଅଂଶ ନାତୁଣୀ ଅଂଶର ଦୁଇଗୁଣ ହେବ ।

**ଏକପିତୃମାତୃକ ଭଉଣୀ** - ମୃତ ବ୍ୟକ୍ତିର ବାପ, ସତ୍ୟ ଅଜା, ପୁଅ କିମ୍ବା ପୁଅର ପୁଅ ନାତି ବିଦ୍ୟମାନ ଥିଲେ ମୃତବ୍ୟକ୍ତିର ଏକପିତୃମାତୃକ ଭଉଣୀ ତ୍ୟକ୍ତ ସମ୍ପତ୍ତିରୁ କିଛି ପାଇବେ ନାହିଁ । ଏ ଶ୍ରେଣୀର ଜଣେ ଭଉଣୀ ଥିଲେ ସେ ତ୍ୟକ୍ତ ସମ୍ପତ୍ତିର ଅର୍ଦ୍ଧେକ ପାଇବେ । ଏକାଧିକ ଥିଲେ ସମସ୍ତେ ମିଶି ତିନି ଭାଗରୁ ଦୁଇ ଭାଗ ପାଇବେ । କିନ୍ତୁ ଏମାନଙ୍କ ସଙ୍ଗେ ଯେବେ ଏହି ଶ୍ରେଣୀର ଜଣେ ଭାଇ ଥାଏ ତାହାହେଲେ ପ୍ରତ୍ୟେକ ଭଉଣୀର ଅଂଶ ପ୍ରତ୍ୟେକ ଭାଇର ଅଂଶର ଅର୍ଦ୍ଧେକ ହେବ । ମୃତବ୍ୟକ୍ତିର ଏହି ଶ୍ରେଣୀର କେହି ଭାଇ ନ ଥାଇ ଯେବେ ଝିଅ ଏବଂ ପୁଅ, ଝିଅ, ନାତୁଣୀ ଥା'ନ୍ତି ତାହାହେଲେ ଝିଅ ଓ ନାତୁଣୀଙ୍କ ପ୍ରାପ୍ୟ ଅଂଶ ବାଦ ବାକି ଅବଶିଷ୍ଟ ଯାହା ରହିବ ତାହା ଏହି ଶ୍ରେଣୀର ଭଉଣୀ ପାଇବେ ।

**ଏକପିତୃକ ଭଉଣୀ** - ବାପ, ସତ୍ୟ ଅଜା କିମ୍ବା ଔରସ କିମ୍ବା ଏକପିତୃମାତୃକ ଭଉଣୀ କେହି ନ ଥିଲେ ଓ ଏକ ବାପଠାରୁ ଜାତ ଜଣେ ଭଉଣୀ ଥିଲେ ସେ ତ୍ୟକ୍ତ ସମ୍ପତ୍ତିର ଅଧେ ପାଇବେ । ଏକରୁ ଅଧିକ ଭଉଣୀ ଥିଲେ ସମସ୍ତେ ମିଶି ତ୍ୟକ୍ତ ସମ୍ପତ୍ତିର ତିନିଭାଗରୁ ଦୁଇ ଭାଗ ପାଇବେ । ଏହି ଶ୍ରେଣୀର ଭାଇ ବିଦ୍ୟମାନ ଥିଲେ ଜଣେ ଭାଇର

ଅଂଶ ଜଣେ ଭଉଣୀର ଅଂଶର ଦୁଇଗୁଣ ହେବ । ବାପ, ସତ୍ୟ ଅଜା, ଔରସ କେହି ନ ଥିଲେ ଓ ଜଣେ ଏକପିତୃମାତୃକ ଭଉଣୀ ଥିଲେ ଏହି ଶ୍ରେଣୀର ଭଉଣୀମାନେ ସମସ୍ତେ ମିଶି ତ୍ୟକ୍ତ ସମ୍ପତ୍ତିର ଛ' ଭାଗରୁ ଏକଭାଗ ପାଇବେ । ବାପ, ସତ୍ୟ ଅଜା ବା ଔରସ କେହି ନ ଥାଇ ଯେବେ ଏକପିତୃମାତୃକ ଭଉଣୀ ଏକରୁ ଅଧିକ ଥା'ନ୍ତି, ତାହାହେଲେ ଏ ଶ୍ରେଣୀର ଭଉଣୀମାନେ କିଛି ପାଇବେ ନାହିଁ । ଏକପିତୃମାତୃକ ଭାଇ ଥିଲେ ଏ ଶ୍ରେଣୀର ଭଉଣୀମାନେ କିଛି ପାଇବେ ନାହିଁ ।

**ସତ୍ୟ ଆଈ-** ଜଣେ କିମ୍ବା ସମଦୂରସ୍ଥ ଏକାଧିକ ଆଈ ଥିଲେ ସେମାନଙ୍କର ଅଂଶ ତ୍ୟକ୍ତ ସମ୍ପତ୍ତିର ଛ' ଭାଗରୁ ଏକ ଭାଗ । ନିକଟ ସମ୍ପର୍କୀୟ ଆଈ ଥିଲେ ଦୂର ସମ୍ପର୍କୀୟ ଆଈ ତ୍ୟକ୍ତ ସମ୍ପତ୍ତିରୁ କିଛି ପାଇବେ ନାହିଁ । ମା ବିଦ୍ୟମାନ ଥିଲେ ଆଈ କିଛି ପାଇବେ ନାହିଁ ।

**ମନ୍ତବ୍ୟ-** ମୁସଲମାନମାନଙ୍କ ଶାସ୍ତ୍ରଲିଖିତ ଉପରୋକ୍ତ ଅଂଶ ଅନୁସାରେ ତ୍ୟକ୍ତ ସମ୍ପତ୍ତିକୁ ବାଣ୍ଟିବାକୁ ଗଲେ ଅନେକ ସ୍ଥଳରେ ଦେଖାଯାଏ ଯେ ଶାସ୍ତ୍ରଲିଖିତ ଅଂଶଗୁଡ଼ିକ ମିଶାଇ ଦେଲେ ଷୋଳପଣରୁ ବଳି ପଡ଼େ । ଏପରି ସ୍ଥଳରେ ଅଂଶୀଦାରମାନଙ୍କ ଅଂଶର ମଥୋଟମତେ କିଛି କିଛି କଟି ଯାଇ ଯେପରି ସମୁଦାୟ ଅଂଶ ମିଶାଇଲେ ଷୋଳ ପଣ ହେବ, ସେହିପରି କରାଯାଏ । ଏହି ମଥୋଟ ହିସାବ ଭଗ୍ନାଂଶ ଅନୁସାରେ କଷିବାକୁ ହୁଏ । ଉଦାହରଣସ୍ୱରୂପ:- ଜଣେ ମୃତ ସ୍ତ୍ରୀର ସ୍ୱାମୀ, ପିତା, ମାତା ଏବଂ ଗୋଟିଏ କନ୍ୟା ଅଛନ୍ତି, ଶାସ୍ତ୍ର ଅନୁସାରେ କନ୍ୟାର ଅଂଶ ଅଧେ (ବାର ଭାଗରୁ ଛ ଭାଗ), ବାପଙ୍କ ଅଂଶ ଛ' ଭାଗରୁ ଏକ ଭାଗ (ବାର ଭାଗରୁ ଦୁଇ ଭାଗ), ମାଙ୍କ ଅଂଶ ଛ' ଭାଗରୁ ଏକ ଭାଗ (ବାର ଭାଗରୁ ଦୁଇ ଭାଗ) ଓ ସ୍ୱାମୀର ଅଂଶ ଚାରି ଭାଗରୁ ଏକ ଭାଗ (ବାର ଭାଗରୁ ତିନି ଭାଗ) । କିନ୍ତୁ ଏସବୁ ଅଂଶଗୁଡ଼ିକ ମିଶାଇ ଦେଲେ ତେର ଭାଗ ହେଉଅଛି । ଏପରିସ୍ଥଳରେ ସମ୍ପତ୍ତିକୁ ବାର ଭାଗ ନ କରି ତେର ଭାଗ କରାଯିବ ଓ ସେଥିରୁ ଝିଅ ଛ' ଭାଗ, ବାପ ଦୁଇ ଭାଗ, ମା ଦୁଇ ଭାଗ ଓ ସ୍ୱାମୀ ତିନି ଭାଗ ପାଇବେ । ଏହି ପ୍ରଣାଳୀକୁ 'ଅଉଲ' ବା ବୃଦ୍ଧି ବୋଲାଯାଏ । ଜଣେ ମୃତବ୍ୟକ୍ତିର ସ୍ତ୍ରୀ, ଦୁଇ କନ୍ୟା ଓ ପିତା ମାତା ଜୀବିତ ଅଛନ୍ତି । କୋରାନ ଅନୁସାରେ ସ୍ତ୍ରୀର ଅଂଶ ଆଠଭାଗରୁ ଏକ ଭାଗ (ଚବିଶ ଭାଗରୁ ତିନି ଭାଗ), ଦୁଇ କନ୍ୟାଙ୍କର ଅଂଶ ତିନି ଭାଗରୁ ଦୁଇ ଭାଗ (ଚବିଶ ଭାଗରୁ ଷୋଳ ଭାଗ) ବାପଙ୍କର ଅଂଶ ଛ' ଭାଗରୁ ଏକ ଭାଗ (ଚବିଶ ଭାଗରୁ ଚାରି ଭାଗ) । ଏ ଭାଗଗୁଡ଼ିକ ମିଶାଇଲେ ୨୭ ଭାଗ ହେଉଅଛି । କିନ୍ତୁ ସମ୍ପତ୍ତି ୨୪ ଭାଗ ହେଲେ ସମସ୍ତେ ଅଂଶ ପାଇବା ନିମନ୍ତେ ତିନି ଭାଗ କମ୍ ହୋଇ ପଡ଼ିବ । ଏପରି ସ୍ଥଳରେ ସମୁଦାୟ ସମ୍ପତ୍ତିକୁ ୨୭ ଭାଗ କରି ସ୍ତ୍ରୀର ୩ ଭାଗ, କନ୍ୟାଙ୍କର ୧୬ ଭାଗ, ବାପର ୪ ଭାଗ ଓ ମା'ର ୪ ଭାଗ କରି ବାଣ୍ଟିବାକୁ ହେବ ।

ପକ୍ଷାନ୍ତରେ ଏପରି ମଧ୍ୟ ଅନେକ ସ୍ଥଳରେ ଘଟେ ଯେ ଅଂଶଭାଗୀମାନେ ଆପଣା ଆପଣା ନିର୍ଦ୍ଦିଷ୍ଟ ଅଂଶ ନେଇସାରିବା ପରେ ସୁଦ୍ଧା ସମ୍ପତ୍ତି ଅବଶିଷ୍ଟ ରହେ, ଅଥଚ ସେହି ଅବଶିଷ୍ଟ ସମ୍ପତ୍ତି ପାଇବା ନିମନ୍ତେ କେହି ଅବଶିଷ୍ଟାଂଶଭାଗୀ ଉତ୍ତରାଧିକାରୀ ନ ଥା'ନ୍ତି । ଏପରି ସ୍ଥଳରେ ସ୍ୱାମୀ ଓ ସ୍ତ୍ରୀଙ୍କ ଛଡ଼ା ଅନ୍ୟ ଅଂଶଭାଗୀ ଉତ୍ତରାଧିକାରୀମାନେ ଆପଣା ଅଂଶର ଅନୁପାତ ଅନୁସାରେ ଅବଶିଷ୍ଟ ସମ୍ପତ୍ତି ପାଇବେ । ଏହି ପ୍ରଣାଳୀକୁ ଆଉଦ ବା ପ୍ରତ୍ୟାବର୍ତ୍ତନ କହନ୍ତି । ଏହା ଅଉଲର ବିପରୀତ । କିନ୍ତୁ ଅଂଶଭାଗୀମାନଙ୍କ ମଧ୍ୟରୁ ସ୍ୱାମୀ ଓ ସ୍ତ୍ରୀ ପ୍ରତ୍ୟାବର୍ତ୍ତିତ ଅଂଶ କିଛି ପାଇବେ ନାହିଁ । ଅବଶିଷ୍ଟ ସମ୍ପତ୍ତିକୁ ଦୂରବର୍ତ୍ତୀ ଉତ୍ତରାଧିକାରୀମାନେ ପାଇବେ । କେହି ଦୂରବର୍ତ୍ତୀ କୁଟୁମ୍ବ ନ ଥିଲେ ଅଗତ୍ୟା ସ୍ୱାମୀ ସ୍ତ୍ରୀ ଅବଶିଷ୍ଟ ସମ୍ପତ୍ତି ପାଇବେ ।

ଅବଶିଷ୍ଟାଂଶଭାଗୀ ଓ ଦୂର କୁଟୁମ୍ବମାନଙ୍କ ବିଷୟ ପରେ ବୋଲାଯିବ ।

ଉତ୍କଳ ସାହିତ୍ୟ/୮ମ ଭାଗ/୫ମ ସଂଖ୍ୟା/୧୩୧୨ ସାଲ ।

# ଦୁନିଆର ହାଲଚାଲ

## ୧୯୦୫-୧୯୧୫

ପ୍ରହରାଜଙ୍କ ରଚନାଗୁଡ଼ିକ ମଧ୍ୟରେ 'ଦୁନିଆର ହାଲଚାଲ' ଦୀର୍ଘତମ । 'ଉତ୍କଳ ସାହିତ୍ୟ' ପତ୍ରିକାର ଅଷ୍ଟମଭାଗ ସପ୍ତମ ସଂଖ୍ୟା (୧୩୧୨ ସାଲ) ଠାରୁ ଆରମ୍ଭ ହୋଇ ଅଠରତମ ଭାଗ ଅଷ୍ଟମ ସଂଖ୍ୟା (୧୩୨୨ସାଲ)ରେ ଶେଷ ହୋଇଛି । ଏହାର ଅଧ୍ୟାୟ ସଂଖ୍ୟା ଛପନ ଏବଂ ପ୍ରକାଶନର ସମୟସୀମା ଦଶବର୍ଷ ଏକମାସ । ଲେଖକଙ୍କ ଜୀବଦ୍ଦଶାରେ ଏହା ପୁସ୍ତକ ଆକାରରେ ପ୍ରକାଶିତ ହୋଇ ନାହିଁ । ଉତ୍କଳ ସାହିତ୍ୟ ବିକାଶ ପ୍ରକାଶନ ସଂସ୍ଥା ପତ୍ରିକାରେ ପ୍ରକାଶିତ ଅଧ୍ୟାୟଗୁଡ଼ିକର ସଂଗ୍ରହ ଓ ପ୍ରକାଶନର ଉଦ୍ୟମ କରିଛନ୍ତି । ଏହା ପୁସ୍ତକାକାରରେ ପ୍ରକାଶିତ ମଧ୍ୟ ହୋଇଛି । ମାତ୍ର ପ୍ରକାଶିତ ଗ୍ରନ୍ଥ ଅସଂପାଦିତ ଏବଂ ପ୍ରମାଦପୂର୍ଣ୍ଣ ।

'ବାଇ ମାହାନ୍ତି ପାଞ୍ଜି' ରଚନା କାଳରେ (୧୯୦୫) ଶ୍ରୀଯୁକ୍ତ ପ୍ରହରାଜ 'ଦୁନିଆର ହାଲଚାଲ' ଲେଖିବା ପାଇଁ ଉଦ୍ୟମ କରିଛନ୍ତି, ଲେଖିଛନ୍ତି । ଏବଂ, ୧୯୧୪ ମସିହାରେ ବାପାଙ୍କ ଦେହାନ୍ତ ପରେ ହାଲଚାଲ ଚର୍ଚ୍ଚା ମାନସିକତା ପରିହାର କରିଛନ୍ତି । ବାପାଙ୍କ ବିଚାର ଓ ଅନୁଭବର କଥା ପୁନଃ ଅକ୍ଷରାୟିତ ହୋଇଛି 'ନନାଙ୍କ ବସ୍ତାନି' ଶୀର୍ଷକ ଆଲୋଚନାରେ ।

ଏହି ସୁଦୀର୍ଘ ଆଲୋଚନା ପ୍ରହରାଜଙ୍କ ବୋହେମିଆନ୍ ଜୀବନର ଇସ୍ତାହାର । ଏଥିରେ ସେ ସମକାଳୀନ ଓଡ଼ିଶା ଓ ଭାରତର ରାଜନୀତିକ, ସାମାଜିକ, ପ୍ରଶାସନିକ ଓ ଆର୍ଥନୀତିକ ବ୍ୟବସ୍ଥାର ଚର୍ଚ୍ଚା କରିଛନ୍ତି; ମାତ୍ର ଏହି ଚର୍ଚ୍ଚା କେବଳ ଅଧ୍ୟୟନ ପ୍ରସୂତ ନୁହେଁ । ଅଧିକନ୍ତୁ ତାଙ୍କ ପ୍ରଜ୍ଞା, ବିଚାର ଓ ଅନୁଭବରେ ପରିସିଦ୍ଧ । ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟର ରାଜନୀତିକ, ସାଂସ୍କୃତିକ ପରଂପରା ଓ ବିଶ୍ୱରେ କ୍ରମପରିବର୍ତ୍ତିତ ମଣିଷର ଜୀବନବୋଧକୁ ଆପଣା ଘରେ ଅତିଥି କରିଛନ୍ତି । ମିତ ବସିଛନ୍ତି । ଏବଂ ନିଜ ଜାତି ଓ ଦେଶ ସମଗ୍ର ବିଶ୍ୱରେ କିପରି ନିଜର ସ୍ୱାତନ୍ତ୍ର୍ୟ ଜାହିର କରିବ, ତତ୍‌ସମ୍ପର୍କିତ ବିଚାରକୁ **ଅତ୍ୟନ୍ତ ସ୍ପଷ୍ଟ** ଓ ନିର୍ଭୀକ ଭାବରେ ଜୀବନ୍ତ କରିଛନ୍ତି । ସମକାଳୀନ

ଭାରତବର୍ଷରେ ତାଙ୍କ ପରି ଜଣେ ଦୂରଦୃଷ୍ଟିସଂପନ୍ନ ଓ ପ୍ରଜ୍ଞାଦୀପ୍ତ ମଣିଷ ଆଉ ଜଣେ କେହି ଥିଲା ପରି ସହଜରେ ବିଶ୍ୱାସ କରି ହୁଏ ନାହିଁ ।

'ହାଲଚାଲ'ର ଅନ୍ୟତମ ବିଶେଷତ୍ୱ- ଏହା ରଚନାକାରଙ୍କ ଆତ୍ମ-ସମୀକ୍ଷା ଏବଂ ଆତ୍ମ-ବ୍ୟଙ୍ଗର କାବ୍ୟାୟନ । ସମୂହ ଆଗରେ ନିଜକୁ ବିବସ୍ତ୍ର କରିବା ଏବଂ ନିଜ ଭିତର ଦେଇ ସମୂହକୁ ଆପଣାର ଉଲ୍ଲଂଗତା ସମ୍ପର୍କରେ ସଚେତନ କରିବା ମାନସିକତା ଯେ ଆଦୌ ବିପଜ୍ଜନକ ନୁହେଁ, ପ୍ରୀତିପ୍ରଦ ଜୀବନ ବଞ୍ଚିବା ଏବଂ ସମୂହକୁ ଗତିଶୀଳ କରିବା ପାଇଁ ମହୌଷଧି 'ହାଲଚାଲ'ର ଲେଖକଙ୍କର ତାହାହିଁ ଆଦର୍ଶ ହୋଇଛି ଏବଂ ଆତ୍ମ ବିଦ୍ରୂପାୟନରେ ସେ ସଂସ୍କୃତିକୁ ହିଁ ଭୂମି ଭାବରେ ଗ୍ରହଣ କରିଛନ୍ତି । ଆତ୍ମପ୍ରକାଶନ କାଳରେ ଜାତିଗତ ସଂକୀର୍ଣ୍ଣତା ଏବଂ ଉପହସିତ ହେବାର ଭୟ ତାଙ୍କ ବିଚାରକୁ କବଳିତ କରିପାରିନି । ସେହି ନ୍ୟାୟରେ 'ଦୁନିଆର ହାଲଚାଲ'କୁ ଆମେ କେବଳ ଜଣେ ଲେଖକର ଜୀବନୀ ନ କହି 'ଜୀବନ ଓ ସମକାଳୀନ ସମୟର ସ୍ୱର ରୂପରେ ଗ୍ରହଣ କରିପାରିବ ।

ସଂପାଦକ

## ॥ ଏକ ॥

ସମ୍ପାଦକୀୟ ମନ୍ତବ୍ୟ - କଥାପ୍ରସଙ୍ଗରେ ଜଣେ ବନ୍ଧୁ ଆମ୍ଭମାନଙ୍କ ନିକଟରେ ପ୍ରକାଶ କରିଥିଲେ କି ମାସିକ ପତ୍ରିକାରେ 'କ୍ରମଶଃ' ପ୍ରବନ୍ଧମାନ ପ୍ରକାଶିତ ହେବାର ସେ ବିରୋଧୀ । ଆମ୍ଭେମାନେ ଉକ୍ତ ବିଷୟ କେତେକ ପ୍ରବନ୍ଧ ଲେଖକଙ୍କୁ ଜଣାଇଥିଲୁଁ । ବର୍ତ୍ତମାନ ଜଣେ ପ୍ରବନ୍ଧ ଲେଖକ ଖଣ୍ଡିଏ ଯୁକ୍ତିପୂର୍ଣ୍ଣ ପତ୍ର ସହିତ ଶୀର୍ଷାଙ୍କିତ ପ୍ରବନ୍ଧ ଆମ୍ଭମାନଙ୍କଠାକୁ ପଠାଇଅଛନ୍ତି । ତହିଁରେ ଲେଖିଅଛନ୍ତି କି ଲେଖକ ନିଜେ ମଧ୍ୟ 'କ୍ରମଶଃ'ର ପ୍ରତିକୂଳ, କିନ୍ତୁ ଦୁନିଆଟା କ୍ରମଶଃ ହେବାରୁ ତହିଁର ହାଲଚାଲ 'କ୍ରମଶଃ' ହେବାର ସ୍ୱାଭାବିକ । ଅତଏବ ସେ ବାଧ ହୋଇ 'ଦୁନିଆର ହାଲଚାଲ' ସମ୍ବନ୍ଧୀୟ କେତେକ ବିଷୟ 'ସାହିତ୍ୟ'ରେ 'କ୍ରମଶଃ' ଆକାରରେ ଲେଖିବାକୁ ସଙ୍କଳ୍ପ କରିଅଛନ୍ତି ।

ଦୁନିଆର ନିୟମ 'ସମ୍ବନ୍ଧମାଭାଷଣପୂର୍ବମାହୁଃ' । ସମ୍ଭାଷଣ ନ ହେଲେ ପ୍ରଣୟ ହେବାର କଷ୍ଟ । ଏ ନିୟମ ବ୍ୟକ୍ତିଗତ, ପ୍ରବନ୍ଧଗତ ଓ ବସ୍ତୁଗତ । ଏହି ଆଭାଷଣ ଅନେକ ପ୍ରକାର । 'ଏଲ. ଏଲ. ଗୋବରା ନନା ଏଲରେ' 'Know all men by these presents.' 'Prologue' 'ପ୍ରସ୍ତାବନା', A B C D ଇତ୍ୟାଦି ଉପାଧି, ବେହେଲା ବାଜିବା ପୂର୍ବରୁ କାନମୋଡ଼ା, ସଙ୍ଗୀତ ହେବା ପୂର୍ବରୁ ତାଧିନ୍‌ଧିନା, 'ଆସନ ମନ୍ତ୍ରସ୍ୟ ମେରୁପୃଷ୍ଠ ଋଷିଃ', 'ବୋଝିଆମାନଙ୍କର ବଜାରରେ ଉଚ୍ଚତାନ ଡାକ', 'ବେଦୀ ଉପରର

କର୍ମ', 'Sign board' ଏଗୁଡ଼ିକ ଭିନ୍ନ ଭିନ୍ନ ରକମର ପ୍ରସ୍ତାବନା । ଏଗୁଡ଼ିକ ନ ହେଲେ ଭିତରର ବସ୍ତୁଟି ହଠାତ୍ କାଢ଼ି ଦେଖିବାଟା ଅଡୁଆ ବୋଧହୁଏ । ଅତଏବ 'ଦୁନିଆର ହାଲଚାଲ'ର ଟିକିଏ 'ନାନ୍ଦ୍ୟନ୍ତେ ସୂତ୍ରଧାରଃ' ହେବାର ଆବଶ୍ୟକ ।

ପ୍ରଥମେ ଦେଖିବାର ଉଚିତ ଯେ ଦୁନିଆର ହାଲଚାଲଟା କି କି ସମୟର ଜିନିଷ - ଏଥିରେ ଆମ୍ଭେମାନେ ଚିରବସନ୍ତ ଲୀଳାୟିତ ରାଜପ୍ରାସାଦରୁ ଆରମ୍ଭ କରି ଚିରଗ୍ରୀଷ୍ମ ଖେଳାୟିତ ପର୍ଣ୍ଣକୁଟୀର ପର୍ଯ୍ୟନ୍ତ, ମାଂସପିଣ୍ଡବନମ୍ର ଗୋବର ଗଣେଶଙ୍କ ଠାରୁ ଜରାଜୀର୍ଣ୍ଣ ଫକୀରଙ୍କ ପର୍ଯ୍ୟନ୍ତ, କୋଶଳା ପଟାଳି ଠାରୁ ଖୁସବଗିଚା ପର୍ଯ୍ୟନ୍ତ, ଉଚ୍ଚତମ ବିଚାରାଳୟ ଠାରୁ ଗ୍ରାମ ଚୌକିଦାର ଘର ପର୍ଯ୍ୟନ୍ତ, ଦୂର ବିଦେଶର ସମ୍ବାଦଠାରୁ ଘରକଣର ଖବର ପର୍ଯ୍ୟନ୍ତ, ପ୍ରିଭିକାଉନ୍‌ସିଲଠାରୁ ଗ୍ରାମର ପଞ୍ଚାୟତ ପର୍ଯ୍ୟନ୍ତ, ରାଜନୀତିଠାରୁ ଅର୍ଥନୀତି ପର୍ଯ୍ୟନ୍ତ, ପ୍ରଧାନମନ୍ତ୍ରୀଙ୍କଠାରୁ ରାମ ସାମଲ ପର୍ଯ୍ୟନ୍ତ, କୁପ୍ରଥାଠାରୁ ସୁପ୍ରଥା ପର୍ଯ୍ୟନ୍ତ, ବଲ୍‌ନାଚଠାରୁ କେଳାନାଚ ପର୍ଯ୍ୟନ୍ତ, ଦର୍ଶନଠାରୁ ରାମଲୀଳା ସୁଆଙ୍ଗ ପୁସ୍ତକ ପର୍ଯ୍ୟନ୍ତ କେତେକ ବିଷୟରେ ଆଲୋଚନା କରିବୁଁ । ଏଥିରେ ଅବଶ୍ୟ କେତେକ ଅପ୍ରୀତିକର କଥା ବାହାରିବାର ସମ୍ଭାବନା । ସେଥିନିମନ୍ତେ ନାମ ଗୋପନ ରଖିବା ଆମ୍ଭେମାନେ ଉଚିତ ବୋଧ କରୁ ନାହୁଁ । କାରଣ ସଂସାର ଶିକ୍ଷାଭୂମି, 'ଦୁନିଆର ହାଲଚାଲ' ବିଷୟରେ ଆମ୍ଭମାନଙ୍କର ଧାରଣା ବା ଆଲୋଚନା ଭ୍ରମମୂଳକ ହୋଇପାରେ । ତାହା କେହି ଦୟାପୂର୍ବକ ସଂଶୋଧନ କରିଦେଲେ ଆମ୍ଭେମାନେ ଭ୍ରମ ସ୍ୱୀକାର କିମ୍ବା ଯୋଡ଼ହସ୍ତରେ କ୍ଷମାଭିକ୍ଷା କରିବାକୁ କୁଣ୍ଠିତ ହେବୁ ନାହିଁ । ଆମ୍ଭେମାନେ ସମାଲୋଚକର ଆସନ ଗ୍ରହଣ ନ କରି ଦେଖଣାହାରିଙ୍କ ସ୍ଥାନରେ ଠିଆହୋଇ ରହିବୁଁ । ଏ ବିଷୟରେ ଆମ୍ଭେମାନେ ଏହି ସୀମା ନିରୂପଣ କରିଅଛୁଁ ।

ଶରତ୍‌କାଳ ! ଚାନ୍ଦିନୀ ରାତି ! ଶନିବାର ! ଆମ୍ଭେମାନେ କଟକପ୍ରବାସୀ କଚେରିଆ ! ସସ୍ତ୍ରୀକ ବିଦେଶବାସ ଆଜି ପର୍ଯ୍ୟନ୍ତ ଭଗବାନ୍ କପାଳରେ ଲେଖି ନାହାନ୍ତି । ଅତଏବ ବାଧ ହୋଇ ଶନିବାର, ରବିବାର ଦେଖି ଘରକୁ ଜୀବନ ବିକଳରେ ପଳାଇଯାଉଁ । ଯାହାହେଉ ରାତି ୧୦ଟା ବେଳ ଯାକେ କଟକରେ ମୂଳ ଲାଗି ରାତି ୧୦ଟା ବେଳେ ଗ୍ରାମକୁ ବାହାରିଲୁଁ । ସିଦ୍ଧେଶ୍ୱରପୁର କଟକଠାରୁ ୧୩ ମାଇଲ ପୂର୍ବରେ । କଟକଠାରୁ ସିଦ୍ଧେଶ୍ୱରପୁରର ବଙ୍ଗଳାଠାକୁ ଗୋଟିଏ ପକ୍କା ରାସ୍ତା ପଡ଼ିଛି । ଗାଡ଼ି, ବଗି, ଘୋଡ଼ା, ଶୂନଗାଡ଼ି, ଷ୍ଟିମର, ଡଙ୍ଗା, ନାଳ ନଈ ଆଠକାଳି ବାରମାସୀ ସବୁପ୍ରକାର ଯାତାୟାତର ସୁବିଧା ଅଛି । ସିଦ୍ଧେଶ୍ୱରପୁର ବଙ୍ଗଳାଠାରୁ ଆମ୍ଭମାନଙ୍କ ଘରକୁ ଯିବାପାଇଁ ୧ କ୍ୱାର୍ଟରରୁ କିଛି ବେଶି ବାଟ । କଟକ ଡିଷ୍ଟ୍ରିକ୍ଟ ବୋର୍ଡ଼ ଗୋଟିଏ ମାଟି ସଡ଼କ ପକାଇ ଦେଇ ଅଛନ୍ତି । ଶୁଖିଲାଦିନେ ପ୍ରାୟ ବର୍ଷକ ମଧରେ ୭/୮ ମାସ ସେବାଟେ ଘୋଡ଼ାଗାଡ଼ି ସ୍ୱଚ୍ଛନ୍ଦରେ ଯାଇପାରେ । ଘୋଡ଼ାଗାଡ଼ି ଯାଇ ଆମ ଦୁଆର ମୂହଁରେ ଲାଗେ । ବର୍ଷାଦିନେ

ସେ ମାଟିସଡ଼କଟି କର୍ଦ୍ଦମମୟ ହୋଇ ବିଶେଷ ଅସୁବିଧାଜନକ ହୋଇପଡ଼େ । ଗ୍ରାମରେ ଗୋଟିଏ ମାଇନର ସ୍କୁଲ, ଗୋଟିଏ ବାଳିକା ବିଦ୍ୟାଳୟ, ଗୋଟିଏ ଅନ୍ତ୍ୟଜ-ପାଠଶାଳା, ଗୋଟିଏ ସଭା ଓ ତତ୍‌ସଂଲଗ୍ନ ଗୋଟିଏ ସାଧାରଣ ପୁସ୍ତକାଗାର ଅଛି । ପକ୍କା ସଡ଼କ ନିକଟରେ କଟକର ଚାଉଳିଆ ମହାଜନମାନଙ୍କର ଚାଉଳ ଧରିବା କୋଠି ଛ' ଗୋଟି ଅଛି । ବର୍ଷକେ ସେ କୋଠିମାନଙ୍କରେ ଊଣାଅଧିକ ଦୁଇଲକ୍ଷ ଟଙ୍କାର ଚାଉଳ ଧରା ହୋଇ ଭିନ୍ନ ଭିନ୍ନ ସ୍ଥାନକୁ ପଠାଯାଏ । କ୍ୱାର୍ଟର ମାଇଲ ମାଟି ସଡ଼କଟିକୁ କଟକର ଡିଷ୍ଟ୍ରିକ୍ ବୋର୍ଡ଼ଙ୍କ ଦ୍ୱାରା ପକ୍କା କରାଇବା ନିମନ୍ତେ କେତେକ ମେମ୍ବରଙ୍କ ନିକଟରେ ଅନୁସରଣ କରିଅଛୁଁ, ଫଳ ଈଶ୍ୱରାଧୀନ । ଯାହାହେଉ ଦିନକର ସାମାନ୍ୟ ଘଟନା ଏଠାରେ ଲେଖିବୁଁ । ରାତି ୧୧ଟା ବେଳେ ଥାର୍ଡ଼କ୍ଲାସ ଘୋଡ଼ାଗାଡ଼ିରେ କଟକଠାରୁ ରମାନା ହୋଇ ସିଦ୍ଧେଶ୍ୱରପୁର ବଙ୍ଗଳାଠାରେ ରାତି ୧ଟା ବେଳେ ଓହ୍ଲାଇଲୁଁ । ମୋହର ସହଯାତ୍ରୀ ଜଣେ ବନ୍ଧୁଙ୍କୁ ସେ ବଙ୍ଗଳାଠାରେ ଛାଡ଼ି ଦେଇ ସଙ୍ଗରେ ଲଣ୍ଠନଧରା ଚାକରଟିକୁ ନେଇ ମୁଁ ମାଟିସଡ଼କ ବାଟେ ଗ୍ରାମ ଅଭିମୁଖରେ ଗଲି । ପ୍ରାୟ ୨୦୦ ହାତ ଯାଇଛି, ଏହି ସମୟରେ ବାମପାର୍ଶ୍ୱରେ କ୍ୱାର୍ଟର ମାଇଲ ଦୂରରେ ୩।୪ ଗୋଟି ଆଲୁଅ ଦେଖାଗଲା । ମନେ ମନେ ପ୍ରଥମେ ବିଚାରିଲି, ଏହା ଦୂରବର୍ତ୍ତୀ ଗୋଶକଟ ସଂଲଗ୍ନ ଆଲୋକ । ମୁଁ ଯେଉଁ ରାସ୍ତାରେ ଯାଉଥିଲି କ୍ୱାର୍ଟର ମାଇଲ ବାମପାର୍ଶ୍ୱରେ ସମାନ୍ତର ଭାବରେ ଗୋଟିଏ ପକ୍କା ସଡ଼କ କନ୍ଦରପୁରଠାରୁ ତାଳଦଣ୍ଡା ଆଡ଼କୁ ଯାଇଅଛି । ବିଚାରିଲି ସେହି ସଡ଼କରେ ପୂର୍ବଦିଗକୁ ଯାଉଥିବା ଗାଡ଼ିର ଆଲୋକ ଦେଖା ଯାଉଅଛି । ସେଠାରେ ଦଣ୍ଡେ ଠିଆ ହୋଇ ସେହି ଆଲୋକଗୁଡ଼ିକ ନିରୀକ୍ଷଣ କଲି । ଦେଖିଲି, ସେ ଆଲୋକଗୁଡ଼ିକ ବେଳେ ବେଳେ ଦ୍ରୁତଗତିରେ ଚାଲୁଅଛି, ବେଳେ ବେଳେ ନିସ୍ତବ୍ଧ ଭାବରେ ରହି ଯାଉଅଛି, ବେଳେ ବେଳେ ନିଭି ଯାଉଅଛି, ବେଳେ ବେଳେ ଉଜ୍ଜ୍ୱଳତର ଭାବରେ ଜଳୁଅଛି । ବେଳେ ବେଳେ ବିପରୀତ ଦିଗରେ ଗତି କରୁଅଛି । ସଙ୍ଗରେ ଯାଉଥିବା ଚାକରଟି ଏକଲୟରେ ତଳକୁ ଚାହିଁ ଲଣ୍ଠନ ଧରି ଆଗେ ଆଗେ ଚାଲିଛି । ତାକୁ ଡାକି ସେ ଆଲୁଅଗୁଡ଼ିକ ଦେଖାଇ ଦେଲି । ଦୁହେଁଯାକ କିଛିକାଳ ଠିଆ ହୋଇ ସେଗୁଡ଼ିକୁ ଚାହିଁଲୁ । ଏହା ଦେଖି ଚାକରଟି ଭୟରେ ଅସ୍ଥିର । ଆଉ ୩୦୦।୪୦୦ ହାତ ଗଲେ ସିଦ୍ଧେଶ୍ୱରପୁର ମାଇନର ସ୍କୁଲ । ମନେ ମନେ ସ୍ଥିର କଲି ଯେ ସ୍କୁଲ ନିକଟକୁ ଯାଇ ସେଠାରେ ଥିବା ହେଡମାଷ୍ଟର ଓ ହେଡପଣ୍ଡିତଙ୍କୁ ଡାକି ଏଗୁଡ଼ିକ ଦେଖାଇ ଦେବି । ଏହା ବିଚାରି ସ୍କୁଲ ନିକଟକୁ ଅଗ୍ରସର ହେଲି । ସେତେବେଳେ ରାତି ପ୍ରାୟ ଦେଢ଼ଟା, କୃଷ୍ଣପକ୍ଷ ସପ୍ତମୀ, ଜହ୍ନ ପଡ଼ିଛି । ସ୍କୁଲ ନିକଟରେ ପହଞ୍ଚି ଦେଖିଲି ଯେ ସ୍କୁଲ ଘର ମଧ୍ୟରେ ଗୋଟିଏ ଆଲୁଅ ଜଳୁଛି । ଝରକାଟି ମେଲା ହୋଇଅଛି, ଝରକା ନିକଟରେ ଦେଖିଲି - ଘର ମଧ୍ୟରେ ଗୋଟି କେତେ ବେଞ୍ଚ ଯୋଡ଼ା ହୋଇ ପଲଙ୍କର କାର୍ଯ୍ୟ କରୁଅଛି । ତହିଁ ଉପରେ ଖଣ୍ଡିଏ

ବିଛଣା ପଡ଼ିଅଛି । ବେଞ୍ଚକୁ ଲାଗି ଖଣ୍ଡିଏ ଟେବୁଲ ରହିଅଛି, ସେ ଟେବୁଲ ଉପରେ ଗୋଟିଏ ଲଣ୍ଠନ ଥୁଆ ହୋଇଅଛି । ଲଣ୍ଠନ ନିକଟରେ ଜଣେ ଲୋକ ବସି ନିବିଷ୍ଟ ଚିତ୍ତରେ କ'ଣ ଲେଖୁଅଛନ୍ତି । ପୂର୍ବର ଆଲୋକଗୁଡ଼ିକ ଦେଖିଲା ବେଳୁ ନିର୍ଜନ ରାତିରେ କଳ୍ପନାଦେବୀ ତ ପୂର୍ବରୁ ଜାଲ ବିସ୍ତାର କରିଥିଲେ । ନିର୍ଜନ ସ୍କୁଲଗୃହ ମଧ୍ୟରେ ଏତେ ରାତିରେ ଏପରି ଦୃଶ୍ୟ ଦେଖି କଳ୍ପନାଦେବୀ ଆହୁରି ଟିକିଏ ସରଗରମ ହୋଇ ଉଠିଲେ । ଅସୀମ ବ୍ୟକ୍ତିଙ୍କର ଆନନ୍ଦ ମୁଖର ଗୋଟିଏ ପାଖ ଦେଖି ହଠାତ୍ ଚିହ୍ନି ପାରିଲି ନାହିଁ । ପଞ୍ଜର ନିକଟରେ ଠିଆ ହୋଇ 'ଆନନ୍ଦ ରହୋ' ଅଭ୍ୟାସସିଦ୍ଧ ଡାକଟିଏ ଦେଲି । ଧ୍ୟାନନିବିଷ୍ଟ ବ୍ୟକ୍ତି ଟିକିଏ ବିରକ୍ତ ହେଲାପରି ବୋଧହେଲା, ଧ୍ୟାନଯୋଗ ଭାଙ୍ଗିଗଲା । ସେ ଝରକା ଆଡ଼କୁ ମୁହଁ ଫେରାଇଲେ । ଚାହିଁଦେଲି ସ୍କୁଲସମୂହର ସବଇନ୍‌ସ୍ପେକ୍ଟର ଶ୍ରୀଯୁକ୍ତ ବାବୁ ନନ୍ଦକିଶୋର ବଳ ବି.ଏ. । ନନ୍ଦକିଶୋରବାବୁ ମୋର ପରମ ବନ୍ଧୁ । ଏପରି କି ମୁଁ ଗ୍ରାମରେ ନ ଥିବା ସମୟରେ ସେ ସିଦ୍ଧେଶ୍ୱରପୁର ସ୍କୁଲ ପରିଦର୍ଶନ କରିବାକୁ ଗଲେ ମୋ ଘରଠାକୁ ଯାଇ ପିଲାପିଲିଙ୍କୁ ସଞ୍ଚୁଳି ଆସନ୍ତି । ସେ ମୋ ପାଟି ବାରିପାରି ଗୋଟିଏ ନମସ୍କାର କରି ସ୍କୁଲରୁ ବାହାରକୁ ଆସିଲେ । ତାହାଙ୍କୁ ସଙ୍ଗରେ ନେଇ ମୁଁ ସ୍କୁଲର ହେଡ଼ମାଷ୍ଟର ଓ ହେଡ଼ପଣ୍ଡିତଙ୍କୁ ଉଠାଇଲି । ଏତେ ରାତି, ସେଥିରେ ପୁଣି ଶରତ୍‌କାଳର ମଧୁର ଶୀତ ! ଏଥିରେ ଗାଢ଼ନିଦ୍ରାଭିଭୂତ । ଏପରି ଅବସ୍ଥାରେ ଡାକ ଶୁଣି ବିଛଣାରୁ ଧଡକିନି ଉଠିବା କଷ୍ଟ । କିନ୍ତୁ ସେକ୍ରେଟେରୀ * ଓ ସ୍କୁଲ ସବ-ଇନ୍‌ସ୍ପେକ୍ଟର** ଙ୍କ ସମନରେ ହାଜର ନ ହେଲେ ଉଆରଣ୍ଟ ବାହାରିବାର ଅବଶ୍ୟମ୍ଭାବୀ, ଏହା ଭାବି ଓ ଅନେକ କାଳର ଚାକିରି ପ୍ରତି ଟିକିଏ ବିଶେଷ ମାୟା ରଖି ସେମାନେ ଅଗତ୍ୟା ସୁଖଶଯ୍ୟାରୁ ଉଠି ବାହାରକୁ ଆସିଲେ । ସମସ୍ତେ ଯାଇ ମାଟିସଡ଼କ ଉପରେ ଠିଆହୋଇ ପୂର୍ବବତ୍ ସେହି ଆଲୁଅଗୁଡ଼ିକ ନିରୀକ୍ଷଣ କରିବାକୁ ଲାଗିଲୁଁ । ସେ ଆଲୁଅଗୁଡ଼ିକ କେତେବେଳେ ଏକତ୍ର, କେତେବେଳେ ଭିନ୍ନ ଭିନ୍ନ, କେତେବେଳେ ବିପରୀତ ଗତିଶୀଳ, କେତେବେଳେ ନିଷ୍ପନ୍ଦ, କେତେବେଳେ ବିଭିନ୍ନ ଜ୍ୟୋତିର୍ବିଶିଷ୍ଟ ହୋଇ ପ୍ରାୟ ଅର୍ଦ୍ଧଘଣ୍ଟା କାଳ ଦେଖାଗଲା । ସେ ସ୍ଥାନକୁ ଯିବା ନିମନ୍ତେ ମଝିରେ ଜଳପୂର୍ଣ୍ଣ ଧାନକ୍ଷେତ୍ର । ଅଗତ୍ୟା ଆମ୍ଭେମାନେ ସେ ଆଲୋକ ଜଳୁଥିବା ଆଡ଼କୁ ଯାଇପାରିଲୁ ନାହିଁ । ତାହା ଗାଡ଼ି କିମ୍ବା ମନୁଷ୍ୟ ସଂଲଗ୍ନ ଆଲୋକ ନୁହେଁ, ଏହା ଆମ୍ଭମାନଙ୍କର ଧାରଣା ହେଲା । ଶେଷକୁ ସେଥିରୁ ଯୋଡ଼ିଏ ଆଲୁଅ ନିଭିଗଲା ଓ ଗୋଟିଏ ଆଲୁଅ ଆମ୍ଭମାନଙ୍କ ଆଡ଼କୁ କିଛିଦୂର ଆସି ଗୋଟିଏ ବାଉଁଶ ଭେଡ଼ା ନିକଟରେ ନିଭି ଗଲା । ଆମ୍ଭେମାନେ ଏହି କଥା ଭାବି ଭାବି ସେ ସ୍ଥାନକୁ ଫେରିଲୁ । ନନ୍ଦକିଶୋରବାବୁ ଓ ମାଷ୍ଟରଦ୍ୱୟଙ୍କୁ ସ୍କୁଲରେ ଛାଡ଼ି ମୁଁ ଘରକୁ ଗଲି ।

---

* ମାଇନର ସ୍କୁଲର ସେକ୍ରେଟେରୀ ଗୋପାଳ ଚନ୍ଦ୍ର ପ୍ରହରାଜ ।

** ସବ୍-ଇନିସ୍‌ପେକ୍ଟର ଅଫ୍ ସ୍କୁଲ୍‌ସ : ନନ୍ଦକିଶୋର ବଳ ।

ନନ୍ଦକିଶୋରବାବୁ ରବିବାର ସକାଳେ କଟକ ଅଭିମୁଖରେ ଯାତ୍ରା କରିବାର ସ୍ଥିର କରିଥିଲେ । କିନ୍ତୁ ଅନୁରୋଧ ଭାଙ୍ଗି ନ ପାରି ରବିବାର ଦିନ ସିଦ୍ଧେଶ୍ୱରପୁରଠାରେ ରହିବାର ସ୍ଥିର କଲେ । ସକାଳଓଳି ସେ ମୋ ଘରେ କୁଳୁହାଁ ହେଲେ ଓ ଦୁହେଁଯାକ ସୁଖେଦୁଃଖେ କ୍ଷୁଧାଦେବୀଙ୍କର ତର୍ପଣ କଲୁଁ ।

ସନ୍ଧ୍ୟା ସମୟରେ ଗ୍ରାମ ନିକଟସ୍ଥ କନ୍ଦରପୁର ଛକଠାକୁ ନନ୍ଦକିଶୋରବାବୁଙ୍କ ସଙ୍ଗରେ ବୁଲିବାକୁ ଗଲୁଁ । ନନ୍ଦକିଶୋରବାବୁଙ୍କ ପରିଧାନ ଲୁଗା, କମିଜ, ଚାଦର, ମୋଜା, ଜୋତା । ନିତାନ୍ତ ଦାୟରେ ନ ପଡ଼ିଲେ ପୋଷାକ ପିନ୍ଧିବାକୁ ମତେ ବିରକ୍ତି ବୋଧହୁଏ । ନନ୍ଦକିଶୋରବାବୁ ସ୍କୁଲ ଇଲାକାର ହାକିମ ଓ ବିଶେଷତଃ କନ୍ଦରପୁର ଛକ ତାଙ୍କର ଅପରିଚିତ ସ୍ଥାନ; ଅତଏବ ସେ ପୋଷାକ ଆଦି ନ ପିନ୍ଧି ପଦାକୁ ବାହାରିବା ଯୁକ୍ତିଯୁକ୍ତ ନୁହେଁ । କିନ୍ତୁ ମୋ ପକ୍ଷରେ ଏ ନିୟମଗୁଡ଼ିକ ନ ଖଟିବାରୁ ମୁଁ ଖଣ୍ଡିଏ ସାଧାରଣ ଈଷଦ୍ ମଳିଆ ଲୁଗା ପିନ୍ଧି ଓ କାନ୍ଧରେ ଖଣ୍ଡିଏ ଗାମୁଛା ପକାଇ ତାଙ୍କ ସଙ୍ଗେ ସଙ୍ଗେ କନ୍ଦରପୁର ଛକଠାକୁ ଗଲି । ସଙ୍ଗରେ ସିଦ୍ଧେଶ୍ୱରପୁର ସ୍କୁଲର ହେଡ଼ପଣ୍ଡିତ, ସେକେଣ୍ଡ ପଣ୍ଡିତ ଥିଲେ । ବାଟରେ ସିଦ୍ଧେଶ୍ୱରପୁର ସର୍କଲର ଇନ୍‌ସ୍ପେକିଙ୍ଗ ପଣ୍ଡିତ ଆମ୍ଭମାନଙ୍କୁ ଭେଟିଲେ । କନ୍ଦରପୁର ୧୫।୧୭ ବର୍ଷ ତଳେ କେବଳ ଖଣ୍ଡିଏମାତ୍ର ମୁଢ଼ି ଉଖୁଡ଼ା ଦୋକାନ ଥିଲା । ବର୍ତ୍ତମାନ ସେଠାରେ ଚାଉଳିଆ ଶେଠମାନଙ୍କର ୫।୬ ଗୋଟି କୋଠି, ୨।୪ଟି ବଡ଼ ଦୋକାନ, ୧୦।୧୨ଟି ଉଠାଦୋକାନ ହୋଇଅଛି । ୧୦।୧୫ ବର୍ଷ ତଳେ ଯାହାର ସେଠାରେ ଖଣ୍ଡିଏ ମୁଢ଼ି-ଉଖୁଡ଼ା ଦୋକାନ ଥିଲା, ଆଜି ସେ ସେଠାରେ ଗୋଟିଏ ମଫସଲ ମିଠାଇ ଦୋକାନ ଖୋଲିଅଛି ।

ସାଉଟି ସାହୁ ଦୋକାନ ନିକଟରେ ପହଞ୍ଚିଲା ମାତ୍ରକେ ସେ ଖଣ୍ଡିଏ ଅଖାପାଲ ଆଣି କେନାଲ ବନ୍ଧ ଉପରେ ବିଛାଇଦେଲା । ଆମ୍ଭେମାନେ ସେହିଠାରେ ବସି ଦୁନିଆର ହାଲଚାଲ କଥାଭାଷା ହେଉଅଛୁଁ, ଏହି ସମୟରେ ଛକ ଉପରେ ଜଣେ ଆସି କହିଲା ଯେ ଜଣେ ଉଚ୍ଚପଦସ୍ଥ ହାକିମ ଏହି ବାଟେ ବଳଦଗାଡ଼ିରେ ହରିହରପୁର ଅଭିମୁଖରେ ଯାଉଅଛନ୍ତି । ଉପରୋକ୍ତ ହାକିମ ବଙ୍ଗୀୟ ନବାଗତ ବ୍ୟକ୍ତି । କିନ୍ତୁ ସଦାଳାପୀ ଓ ଭଦ୍ର । ତାଙ୍କ ସଙ୍ଗେ କେତେକଦିନ ହେଲା ପରିଚୟ ହୋଇଅଛି । ସେ ବଳଦଗାଡ଼ି ମଧ୍ୟରେ ଅନ୍ଧାରରେ ବସିଥିଲେ, ମୁଁ ମଧ୍ୟ ଗାଡ଼ି ପାଖରେ ଅନ୍ଧାରରେ ଠିଆ ହେଲି । ଓଡ଼ିଆ ଭାଷାରେ ତାଙ୍କୁ ସମ୍ବୋଧନ କରି ଆଜି ରାତ୍ରିଟା ସିଦ୍ଧେଶ୍ୱରପୁର ପର୍ଣ୍ଣ-ବଙ୍ଗଳାରେ ଅତିବାହିତ କରିବାକୁ ଅନୁରୋଧ କଲି । ଏକେ ଓଡ଼ିଆ କଥା, ତା ଉପରେ ମୋର ଲୁଗା ଗାମୁଛା ପୋଷାକ, ତହିଁରେ ପୁଣି ଅନ୍ଧାର ରାତି । ହାକିମମହୋଦୟ ହଠାତ୍ ମତେ ଚିହ୍ନି ନ ପାରି ହିନ୍ଦୀରେ ଉତ୍ତର ଦେଲେ 'ତୁମ୍ କୋନ୍ ହେ' । ମୁଁ ମଧ୍ୟ ଟିକିଏ ରଙ୍ଗ କରିବା ପାଇଁ ଉତ୍ତର ଦେଲି 'ଆଜ୍ଞା ଜଣେ ଅନୁସରଣିଆ ବ୍ରାହ୍ମଣ' । ସେ ପ୍ରଥମେ ବିରକ୍ତ ହୋଇ ଗାଡ଼ି ଚଳାଇବା

ନିମନ୍ତେ ଆଦେଶ ଦେଲେ । ମୁଁ ମୋର ଘନିଷ୍ଠ ପରିଚୟ ଉପରେ ନିର୍ଭର କରି ଗାଡ଼ିକୁ ଓଗାଳିଲି ଏବଂ କହିଲି 'ନା ! ଆପଣଙ୍କୁ ଏଠାରେ ରହିବାକୁ ହେବ' । ଏପରି ଧୃଷ୍ଟତାରେ ବାବୁମହୋଦୟ ବିସ୍ମିତ ହୋଇ ଗାଡ଼ିରୁ ବାହାରି ଆସି ମତେ ଚିହ୍ନିଲେ ଓ ଟିକିଏ ଲଜ୍ଜିତ ହେବା ପରି ବୋଧ ହେଲା । ଲଜ୍ଜିତ ହେବାର କିଛି କାରଣ ନାହିଁ ବୋଲି ମୁଁ ଆଶ୍ୱାସନା ଦେବାରୁ ସେ ଟିକିଏ ଶାନ୍ତ ହେଲେ ଓ ସେଦିନ ବିଶେଷ ସରକାରୀ କାର୍ଯ୍ୟବଶତଃ ସେ ମୋ ପିତାଙ୍କ ଆତିଥ୍ୟ ଗ୍ରହଣ କରିପାରିବେ ନାହିଁ ବୋଲି ଦୁଃଖିତ ହୋଇ ମୋଠାରୁ ବିଦାୟ ହେଲେ । ମୁଁ ତାଙ୍କୁ ବିଦାୟ ଦେଇ ସେଠାରୁ ଆସି ନନ୍ଦକିଶୋରବାବୁ ବସିଥିବା ସ୍ଥାନରେ ନାଳ ବନ୍ଧ ଉପରେ ବସି ସାଉଟି ସାହୁ ବୁଢ଼ା ସଙ୍ଗେ ଦୁଃଖ ସୁଖ ହେଲି । ଏହି ସମୟରେ ସିଦ୍ଧେଶ୍ୱରପୁର ସ୍କୁଲର ସେକେଣ୍ଡ ମାଷ୍ଟର ଆସି କହିଲେ ଯେ ବୁଅର ଯୁଦ୍ଧର Sir Redvers Buller ସେନାପତିଙ୍କ ନିକଟରେ ସର୍ଦ୍ଦାର ଥିଲା- ଏପରି ଜଣେ ଲୋକ ଏଠାରେ ଗୁଡ଼ିଆ ଦୋକାନରେ ବସିଅଛି । ଉପସ୍ଥିତ ସମସ୍ତଙ୍କ ମନରେ କୌତୂହଳ ଜାତ ହେବାରୁ ସେ ଲୋକଙ୍କୁ ଆମ୍ଭମାନଙ୍କ ନିକଟକୁ ଡକାଇଲୁଁ । ସେ ଲୋକଟିର ବୟସ ପ୍ରାୟ ୫୦ ବର୍ଷ, ଶରୀର ବଳିଷ୍ଠ, ମସ୍ତକ ଲଣ୍ଡା, ବେକରେ ମାଳି ଅଛି । ପରିଧାନ ଖଣ୍ଡେ ଲୁଗା ଓ କାନ୍ଧରେ ଖଣ୍ଡେ ଗାମୁଛା । ସେ ଲୋକଟି ଆମ୍ଭମାନଙ୍କ ନିକଟରେ ଆସି ପହଞ୍ଚି ପ୍ରଥମେ ଓଡ଼ିଆ-ହିନ୍ଦୁସ୍ଥାନୀମିଶ୍ରିତ କଥାବାର୍ତ୍ତା କଲା । କିଛିକ୍ଷଣ ପରେ ପ୍ରକାଶ କଲା ଯେ ସେ ଇଂରାଜୀ ଲେଖାପଢ଼ା ଜାଣେ ନାହିଁ, କିନ୍ତୁ ଇଂରାଜୀରେ କଥାବାର୍ତ୍ତା କରିପାରେ । ଆମ୍ଭମାନଙ୍କ ସଙ୍ଗେ ଇଂରାଜୀରେ କଥାବାର୍ତ୍ତା କରିବା ନିମନ୍ତେ ତାକୁ ଅନୁରୋଧ କରିବାରୁ ସେ ଇଂରାଜୀରେ କଥାବାର୍ତ୍ତା ଆରମ୍ଭ କଲା । ତାହାର ଇଂରାଜୀ କହିବାର କ୍ଷମତା, ସ୍ୱର, accent, pronunciation, fluency ଦେଖି ଆମ୍ଭେମାନେ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହେଲୁଁ । ଆମ୍ଭେମାନେ ତାହାର କାହାଣୀ ମଧ୍ୟରେ ଗୋଟିଏ ଲେଖାଏଁ ପ୍ରଶ୍ନ କରୁଥାଉଁ । ସେ କହିବାକୁ ଲାଗିଲା -

ମୋ ଘର 'ଜଇଶୋଳ' ନାମକ ଗ୍ରାମରେ । (ଏହି ଗ୍ରାମଟି ସିଦ୍ଧେଶ୍ୱରପୁରଠାରୁ ୩।୪ ମାଇଲ ହେବ ।) ମୁଁ ପ୍ରଥମେ ଏଠାରୁ 'କୁଲି' ହୋଇ କଲିକତାକୁ ଚାଲାଣ ହେଲି । ସେଠାରୁ ୩ ବର୍ଷର ଏଗ୍ରିମେଣ୍ଟରେ ଆଫ୍ରିକାର ବ୍ରିଟିଶ ଗାଏନାକୁ ଗଲି । ୩ ବର୍ଷ ବଗିଚାରେ କୁଲିଗିରିର Agreementର ସମୟ ପୂର୍ଣ୍ଣ ହେବାରୁ କୁଲିଗିରି ଛାଡ଼ି ସାହେବମାନଙ୍କ ସର୍ଦ୍ଦାରି ଚାକିରି କଲି । ଅନେକ ସାହେବଙ୍କ କ୍ୱାର୍ଟରରେ ସର୍ଦ୍ଦାର (butler) ସ୍ୱରୂପ କାର୍ଯ୍ୟ କଲି । ଶେଷରେ ସେନାପତି Sir Redvers Bullerଙ୍କ ସର୍ଦ୍ଦାର ହେଲି । ତାଙ୍କ ନିକଟରେ ୧୮ ବର୍ଷ କାଳ ରହିଲି । ସେଠାରେ ମୋର ମାସିକ ଦରମା ଏଠାକାର ୧୫ ଟଙ୍କା ସଙ୍ଗେ ସମାନ ହେବ । ପ୍ରଥମେ ୧୨ ଟଙ୍କା ଦରମାରେ ଥିଲି, କିନ୍ତୁ ମୋର କାର୍ଯ୍ୟକୁଶଳତାରେ ମହୋଦୟ ସନ୍ତୁଷ୍ଟ ହୋଇ ମୋର ବେତନ ବୃଦ୍ଧି କଲେ । ବୁଅର ଯୁଦ୍ଧ

ସ୍ଥାନରୁ ଆମ୍ଭମାନଙ୍କ ତମ୍ବୁ ଦୁଇ ମାଇଲ ପଛରେ ପଡ଼ିଥାଏ । ସେନାପତିମାନେ ସେଠାକୁ ଆସି ଚା', ଜଳପାନ, ଭୋଜନାଦି କରି ପୁନର୍ବାର ଯୁଦ୍ଧକ୍ଷେତ୍ରକୁ ଯା'ନ୍ତି । ଏକାଦିନକେ ଥରେ ଇଂରେଜମାନଙ୍କ ପକ୍ଷରୁ ୭୦୦୦ ସୈନ୍ୟ ହତ ହୋଇଥିଲେ । ବୁଅର ସାହେବଙ୍କର ଘରେ ଗୋଳା ବାଜିବାରୁ ସେ ଆହତ ହୋଇ ବିଲାତ ଗଲେ ଓ ମତେ ସଙ୍ଗେରେ British Guina ପର୍ଯ୍ୟନ୍ତ ଆଣି ସେଠାରେ ମୋ ନିମନ୍ତେ କଲିକତା ପର୍ଯ୍ୟନ୍ତ ଜାହାଜ ଭଡ଼ା (ଆନୁମାନିକ ୨୫୦ ଟଙ୍କା) ଦେଇ ଟିକଟ କରି ଦେଲେ । ମୁଁ ଜାହାଜରେ ଆସି କଲିକତାଠାରେ ପହଞ୍ଚିଲି । ୧୦ ମାସ ହେଲା (ଗତ ପୁଷ ମାସରେ) ଏଠାକୁ ଆସିଅଛି । ଆଜି ପର୍ଯ୍ୟନ୍ତ Buller ସାହେବଙ୍କ ତରଫ ଲୋକ ମନିଅର୍ଡ଼ର ଦ୍ୱାରା ମୋଠାକୁ ମାସିକ ୩୧ ଟଙ୍କା ଲେଖାଏଁ ପଠାଉ ଅଛନ୍ତି । ମୁଁ ସେଠାରେ ଜଣେ ନିଗ୍ରୋ ଜାତୀୟ ସ୍ତ୍ରୀକୁ ବିବାହ କରିଥିଲି । ମୋର ସେଠାରେ ଯୋଡ଼ିଏ ପୁଅ ହୋଇଥିଲା । ମୁଁ ସେ ସ୍ଥାନ ଛାଡ଼ିଲା ବେଳେ ଗୋଟିକର ବୟସ ୫ବର୍ଷ ଆଉ ଗୋଟିକର ବୟସ ୧୪ ବର୍ଷ ହୋଇଥିଲା । ମୋ ସ୍ତ୍ରୀକୁ ମୋ ସଙ୍ଗରେ ଏଠାକୁ ଆସିବା ନିମନ୍ତେ ମୁଁ ବିଶେଷ ଅନୁରୋଧ କଲି । ସେ କହିଲା ଯେ ତୁମ ଦେଶର ଜଘନ୍ୟ ଜାତିଭେଦ ପ୍ରଥା (nasty custom of caste system of your country) ଯୋଗୁଁ ମତେ ସେଠାରେ ବିଶେଷ କଷ୍ଟ ଭୋଗ କରିବାକୁ ପଡ଼ିବ । ମୋ ପିଲାଙ୍କୁ ମଧ୍ୟ ମୋ ସଙ୍ଗରେ ପଠାଇବାକୁ ସେ ନାରାଜ ହେଲା । ମୁଁ ଏଠାରେ ଆସି ପ୍ରଥମେ ଏକଘରକିଆ ହୋଇ ରହିଲି । ୨।୩ ମାସ ହେବ ପଞ୍ଚଗବ୍ୟ ପ୍ରାୟଶ୍ଚିତ୍ତ (cowdung water) କରାଇ ମତେ ଜାତିରେ ନେଇ ଅଛନ୍ତି । ବୁଅରମାନେ ସେଠାରେ ତାଙ୍କ ସ୍ୱାଧୀନତା ନିମନ୍ତେ ଯୁଦ୍ଧ କରୁଥିଲେ । ଇଂରେଜମାନେ ବୁଅରମାନଙ୍କଠାରୁ କେତେ ଲକ୍ଷ sterling କ୍ଷତିପୂରଣ ଚାହିଁଥିଲେ, କିନ୍ତୁ ବୁଅରମାନେ ସେଥିରେ ନାରାଜ ହେଲେ । ମୁଁ କଟକରେ କେତେକ ଲୋକଙ୍କୁ ଜାଣେ । Mr. . . . ଯେ କି କଟକର ଜଣେ ପ୍ରଧାନ ଦେଶୀୟ ବ୍ୟକ୍ତି ଅଟନ୍ତି, ସେ ମୋର ପରିଚିତ ବନ୍ଧୁ (well known friend of mine) । ବ୍ରିଟିସ ଗାଏନାରେ ଆମ ଦେଶର ଅନେକ ଲୋକ କୁଲିଗିରି କରନ୍ତି (There are lot of my people in British - Guina.)" ।

ମଝିରେ ମଝିରେ Negro ଜାତିସୁଲଭ ଇତର ଭାଷା ମଧ୍ୟ ଉକ୍ତ ଲୋକଟି ବ୍ୟବହାର କରୁଥିଲା । ଉଦାହରଣସ୍ୱରୂପ 'I' ସ୍ଥାନରେ 'Me', 'he' ସ୍ଥାନରେ 'she', 'me going, me coming' ଇତ୍ୟାଦି । କିନ୍ତୁ ତାହାର କଥାବାର୍ତ୍ତାର କାଇଦା ଓ ସ୍ୱରରେ ଆମ୍ଭେମାନେ 'ଚିତ୍ରାର୍ପିତାରମ୍ଭ' ହୋଇ ରହିଥିଲୁଁ । ବେଶି ରାତି ହୋଇ ଯିବାରୁ ସେ ଲୋକଟି ତା ଗୃହକୁ ଯିବାକୁ ଉଦ୍‌ବିଗ୍ନ ହେବାର ଦେଖି ଆମ୍ଭେମାନେ ତାକୁ ବିଦାୟ ଦେଲୁଁ ଓ ପୁନର୍ବାର ଆମ୍ଭମାନଙ୍କ ସଙ୍ଗରେ ଦେଖା କରିବା ନିମନ୍ତେ ଅନୁରୋଧ କଲୁଁ । ତହୁଁ ସେ କହିଲା, 'ଯେବେ ତୁମର card ଥାଏ ମତେ ଦିଅ, ନଚେତ୍ ତୁମର କଟକ ଠିକଣା

ଲେଖିଦିଅ । ମୁଁ ଆଶାକରେ ଯେ ମୁଁ ତୁମ୍ଭ ସଙ୍ଗେ କଟକରେ ଦେଖା କରିବି (I will be glad to meet you at Cuttack) । ଏହା କହି ମୋ ଠିକଣା ଲେଖି କାଗଜଟି ଧରି ସେ ଚାଲିଗଲା । ଲେଖା ଥିବା କାଗଜ ଖଣ୍ଡିକ ଧରି ସେ ଲୋକଟି ତାହାର ଗନ୍ତବ୍ୟ ପଥ ଅନୁସରଣ କଲା । ମୋର ବନ୍ଧୁ ନନ୍ଦକିଶୋରବାବୁ ଉକ୍ତ ଲୋକଟିକୁ ଏଥି ମଧ୍ୟରେ ଥରେ ପଚାରିଥିଲେ- 'ତୁମେ ଗୋଟିଏ ପିଲା ଆଣି ତୁମର ସ୍ତ୍ରୀକୁ ଗୋଟିଏ ପିଲା ଦେଇ ଆସିଲ ନାହିଁ କାହିଁକି ? ସେ ଲୋକଟି ଉତ୍ତର କଲା- 'ମୋର ସ୍ତ୍ରୀ ମତେ ବିଦାୟ ଦେବାକୁ ଆପତ୍ତି କଲା ନାହିଁ, କିନ୍ତୁ ସେ ମୋ ସଙ୍ଗରେ ଆସିବାକୁ ନିତାନ୍ତ ନାରାଜ ହେବାରୁ ମୁଁ ବାଧ୍ୟ ହୋଇ ଆସିଲି । ଆଜିକାଲି ମଝିରେ ମଝିରେ ସେମାନଙ୍କଠାରୁ ମୁଁ ଭାଷା ପାଉଅଛି ।' ଆଉ ଗୋଟିଏ ପ୍ରଶ୍ନର ଉତ୍ତରରେ କହିଲା ଯେ 'ମୁଁ ମୋର ଦେଶର ମାୟା ଛାଡ଼ି ନ ପାରି ବାହାରି ଆସିଲି ।' ସେ ଲୋକଟି ଯିବା ପରେ ଆମ୍ଭେମାନେ ଆଜି ଦିନଟି ବଡ଼ ସୁଖର ଦିନ ବୋଲି ଭାବିଲୁଁ । ସେ ଲୋକଟିକୁ ଦେଖି ଆମ୍ଭମାନଙ୍କ ମଧ୍ୟରେ ତଳଲିଖିତ ବିଷୟଗୁଡ଼ିକ ସିଦ୍ଧାନ୍ତ ହୋଇଥିଲା - ଇଂରାଜଙ୍କ ସହବାସରେ ସେ ଲୋକଟିର ମାନସିକ ସ୍ୱାଧୀନତା ଢେର ବଢ଼ିଅଛି । ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶ ଲୋକେ ଇଂରାଜୀ କଥା କହିବା ବେଳେ ସୁଦ୍ଧା ଆମ୍ଭମାନଙ୍କ ବାକ୍ୟରୁ ଆମ୍ଭମାନଙ୍କ ଜାତିର ମାନସିକ ପରାଧୀନତା ଜଣାପଡ଼େ । କିନ୍ତୁ ଇଂରାଜୀ କଥା କହିଲା ବେଳେ ତାର ସ୍ୱାଧୀନ ଭାବ ଦେଖି ମୁଁ ଓ ନନ୍ଦକିଶୋରବାବୁ ବିସ୍ମିତ ହୋଇ ବସିଥାଉଁ । ଜଣେ ଓଡ଼ିଆ ଗଉଡ଼ ମୁହଁରୁ ଇଂରାଜୀ ଭାଷାରେ "lost of my people', Mr. ** is a friend of mine', nasty custom of caste system of your counrty' ଏଗୁଡ଼ିକ ଶୁଣିବା ପ୍ରଥମେ ସ୍ୱପ୍ନ ପରି ବୋଧ ହେବ ।

ସେ ମନୁଷ୍ୟଟି ଯିବା ପରେ ଆମ୍ଭମାନଙ୍କ ମନରେ କେତେ ଭାବର ଉଦୟ ହେଲା ଓ ଲୋକଟି ସଙ୍ଗରେ ପୁନର୍ବାର ଦେଖା ହେଲେ ଆଫ୍ରିକା ଦେଶବାସୀ ଓଡ଼ିଆଙ୍କ ଆଚାର-ବ୍ୟବହାର ସମ୍ବନ୍ଧରେ ଓ ବୁଅର ଯୁଦ୍ଧ ସମ୍ବନ୍ଧରେ ଉକ୍ତ ଲୋକଟିକୁ ଜଣାଥିବା କେତେକ ବିଷୟ ବୁଝିବୁଁ ବୋଲି ରହିଲୁଁ ।

ତେବେ ମୋର ବନ୍ଧୁ ନନ୍ଦକିଶୋରବାବୁଙ୍କର କବିକଳ୍ପନା ଆଗରୁ କେତେଗୁଡ଼ିଏ ଚିତ୍ର ଆଙ୍କି ଦେଇଥିବାରୁ ସେଗୁଡ଼ିକ ଲେଖି ରଖିବାର ଉଚିତ ବୋଧ କଲୁଁ ।

ଏଠାରୁ ଓଡ଼ିଆମାନେ ଯାଇ ସେଠାରେ ନିଗ୍ରୋମାନଙ୍କ ସଙ୍ଗରେ ବିବାହ କରି ଘର ଦ୍ୱାର କରି ରହନ୍ତି । ବ୍ରିଟିଶ ଗାଏନା କୁଲିମାନଙ୍କ ମଧ୍ୟରେ ହିନ୍ଦୁସ୍ଥାନୀ (ପଶ୍ଚିମା) ଓ ଓଡ଼ିଆ କୁଲି ଅଧିକ । ସେମାନେ ସେଠାରେ ଓଡ଼ିଆମିଶା ହିନ୍ଦୁସ୍ଥାନୀ ଭାଷା ସୃଷ୍ଟି କରିଅଛନ୍ତି । ସେମାନେ ସେଠାକୁ ଯାଇ ଖ୍ରୀଷ୍ଟଧର୍ମ ଗ୍ରହଣ କରନ୍ତି । ଏ ଦେଶରେ ସାହେବମାନଙ୍କ ସଙ୍ଗେ ଦେଶୀୟମାନଙ୍କର ଯେଉଁ ସମ୍ପର୍କ, ସେଠାରେ ସମ୍ପର୍କ ତାହା ଅପେକ୍ଷା ଘନିଷ୍ଠତର ଓ ଉଚ୍ଚତର ।

## ଜାପାନ

ଆଜି ସମସ୍ତ ଜଗତ୍ ଜାପାନର ଶୌର୍ଯ୍ୟ, ବୀର୍ଯ୍ୟ ଓ ପରାକ୍ରମରେ ମୁଗ୍ଧ, ଚକିତ, ବିସ୍ମିତ । ଆମ୍ଭମାନଙ୍କର ଜନ୍ମଭୂମି ଭାରତର ଉତ୍ତରପୂର୍ବ ଦିଗରେ ଏବଂ ଫେନିଳତରଙ୍ଗାୟିତ ପ୍ରଶାନ୍ତ ମହାସାଗର ଏକପ୍ରାନ୍ତରେ ଅବସ୍ଥିତ ଏକ କ୍ଷୁଦ୍ର ଦ୍ୱୀପ; ମହାବିକ୍ରମଶାଳୀ, ବିରାଟ ଆୟତନବିଶିଷ୍ଟ ରୁଷିଆ ସହିତ ଘୋର ସଂଗ୍ରାମରେ ପ୍ରବୃତ୍ତ ହୋଇ ଦୀର୍ଘକାଳ ପର୍ଯ୍ୟନ୍ତ ବିଶିଷ୍ଟ ପ୍ରଶଂସା ସହିତ ଜୟ ଲାଭ କରି ଆସୁଅଛି ଏବଂ ଏପର୍ଯ୍ୟନ୍ତ ପରାଭବ ସ୍ୱୀକାର କରି ନାହିଁ, ଏହାହିଁ ଜାପାନ ପକ୍ଷରେ ଅସାମାନ୍ୟ ଗୌରବର ବିଷୟ । ପକ୍ଷାନ୍ତରେ ରୁଷିଆ କିଂକର୍ତ୍ତବ୍ୟବିମୂଢ଼ ଓ ପୁନଃ ପୁନଃ ପରାଭବ ସ୍ୱୀକାର କରି ଲଜ୍ଜିତ ଓ ମ୍ରିୟମାଣ । କିଛିକାଳ ପୂର୍ବେ କେହି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା ଯେ କ୍ଷୁଦ୍ର ଜାପାନଠାରେ ଏତେ ଶକ୍ତି ଅନ୍ତର୍ନିହିତ ହୋଇ ରହିଅଛି ଏବଂ ରୁଷିଆ ପରି ଏତେବଡ଼ ସାମ୍ରାଜ୍ୟ ଗୋଟାଏ କ୍ଷୁଦ୍ର ଦ୍ୱୀପ ସମ୍ମୁଖରେ ଅକିଞ୍ଚିତ୍କର ବୋଲି ପ୍ରତୀୟମାନ ହେବ । ବର୍ତ୍ତମାନ ସମୟରେ ଜାପାନ ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନା କଲେ ପାଠକମାନେ ଏହାକୁ ନିତାନ୍ତ ନୀରସ ଓ ବିଦ୍ୟାଳୟର ଛାତ୍ରୋପଯୋଗୀ ଭୌଗୋଳିକ ବିଷୟ ବୋଲି ଅନାସ୍ଥା ପ୍ରଦର୍ଶନ କରିବେ ନାହିଁ ।

ପର୍ଯ୍ୟାଲୋଚନା କରି ଦେଖିଲେ ଏହା ସ୍ପଷ୍ଟ ଅନୁଭୂତ ହେବ ଯେ ବିଦ୍ୟା, ଶିଳ୍ପ, ବାଣିଜ୍ୟ, ବିକ୍ରମ, ସମରକୌଶଳ ପ୍ରଭୃତି ସକଳ ବିଷୟରେ ଜାପାନ ସମଗ୍ରଜଗତର ସୁସଭ୍ୟଜାତିର ସମକକ୍ଷ । ଏହାର କ୍ରମିକ ଦ୍ରୁତ ଉନ୍ନତି ବିଷୟ ଚିନ୍ତନୀୟ ଓ ଶିକ୍ଷଣୀୟ ଅଟେ । ସଭ୍ୟଜଗତରେ ଏହା 'ଜାପାନ' ବୋଲି ଅଭିହିତ ଓ ପରିଚିତ । ସ୍ୱୟଂ ଜାପାନୀମାନେ ସେମାନଙ୍କର ଦେଶକୁ 'ନିପନ' [Nippon] ବୋଲି ଡାକନ୍ତି । ଉତ୍କର୍ଷ ସୂଚନାର୍ଥ ମଧ୍ୟ କେହି କେହି ଜନ୍ମଭୂମିକୁ Dai Nippon or Great Nippon ବୋଲି କହିଥାନ୍ତି । ଫରାସୀମାନେ ଏହାକୁ 'ଜାପନ' (Japon) ବୋଲି କହିଥାନ୍ତି । ଯାହାହେଉ ଜାପାନ ଶବ୍ଦଟି ସମ୍ଭବତଃ ଚାଇନିସ୍ କିମ୍ବା କୋରିଆନ୍ 'ଝିପ୍‌ଟେନ' ବା 'ଚିବ୍‌ବେଙ୍ଗୋ' (Jhipten or Chibpengo)" ଶବ୍ଦର ରୂପାନ୍ତର ମାତ୍ର । ଏହାର ଅର୍ଥ ପୂର୍ବଦିଗବର୍ତ୍ତୀ ଦେଶ' (The land to the East) ଅଟେ । ଏହା କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପର ସମଷ୍ଟି ମାତ୍ର । ପ୍ରାକୃତିକ ଅବସ୍ଥାନ ଅତି ମନୋହର । ନାନା କ୍ଷୁଦ୍ର କ୍ଷୁଦ୍ର ପାହାଡ଼, ସୁରମ୍ୟ ଉପତ୍ୟକା, ଆଗ୍ନେୟଗିରି, ଗିରିଗହ୍ୱର, ଉଷ୍ଣପ୍ରସ୍ରବଣ, କ୍ଷୁଦ୍ର ସ୍ରୋତସ୍ୱତୀମାନ ଏହାର ସୌନ୍ଦର୍ଯ୍ୟ ସମ୍ପାଦନ କରୁଅଛନ୍ତି । ମୃତ୍ତିକା ଉର୍ବର, ଶସ୍ୟଶାଳୀ, ନାନାବିଧ ସୁନ୍ଦର ବହୁମୂଲ୍ୟ ପ୍ରସ୍ତର ଓ ଧାତୁମାନଙ୍କର ପ୍ରାଚୁର୍ଯ୍ୟ ଲକ୍ଷିତ ହୁଏ । ଦକ୍ଷିଣ ଭାଗଟି ଉତ୍ତର ଭାଗ ଅପେକ୍ଷା ଅଧିକତର ଶୋଭନୀୟ । ପଶ୍ଚିମ ଭାଗଟିର ଜଳବାୟୁ ଅତ୍ୟନ୍ତ ଶୀତଳ । ଶୀତକାଳରେ ପ୍ରଚୁର ବରଫ ପତିତ ହୁଏ ସ୍ଥାନେ ସ୍ଥାନେ କୋଡ଼ିଏ ଫୁଟ ପର୍ଯ୍ୟନ୍ତ ଜମି ଯାଇଥାଏ । ଦକ୍ଷିଣ ଅଂଶଟି ଅପେକ୍ଷାକୃତ ଉଷ୍ଣ । ଭାରତବାସୀମାନଙ୍କ ପକ୍ଷରେ ଏପ୍ରିଲମାସର ଶେଷ

ଭାଗ ଜାପାନ ପର୍ଯ୍ୟଟନର ଉପଯୁକ୍ତ କାଳ । ମାର୍ଚ୍ଚ ମାସରେ ଏବଂ ଏପ୍ରିଲର ପ୍ରାରମ୍ଭରେ ଭୟଙ୍କର ଶୀତ ଅନୁଭୂତ ହୁଏ । ଉକ୍ତ ସମୟରେ ବୃଷ୍ଟିର ପରିମାଣ ମଧ୍ୟ ଖୁବ୍ କମ୍ ନୁହେଁ । ଭାରତବାସୀ ପକ୍ଷରେ ଜାପାନ ଭ୍ରମଣରେ ବହିର୍ଗତ ହେଲେ ଯଥେଷ୍ଟ ଶୈତ୍ୟନିବାରକ ବସ୍ତ୍ର ସାଙ୍ଗରେ ନେବା ବିଧେୟ । ଫୁଜୁୟାମା (Fuzuyama) ନାମକ ଏକ ସୁନ୍ଦର ଆଗ୍ନେୟଗିରି ବର୍ତ୍ତମାନ ପ୍ରକୃତ ନାମଟି 'ଫିଉଜୀ' ଅଟେ ଏବଂ 'ୟାମା'ର ଅର୍ଥ ପର୍ବତ । ଜାପାନୀମାନେ ଏହାକୁ 'ଫିଉଜୀସାନ' (Fusisan) ଅର୍ଥାତ୍ 'Mr. Mrs. and Miss. Fuji' ବୋଲି ରହସ୍ୟ ଛଳରେ ଡାକିବାକୁ ସୁଖ ମଣନ୍ତି । ଏହାର ଉଚ୍ଚତା ନିତାନ୍ତ କମ୍ ନୁହେଁ, ପ୍ରାୟ ୧୨୦୦୦ ଫୁଟରୁ ଅଧିକ । ଦେଖିବାକୁ ବଡ଼ ସୁନ୍ଦର ଓ ଚିତ୍ତାକର୍ଷକ । ଶୀତକାଳରେ ଏହାର ସମସ୍ତ ଶରୀର ଶିଖରଠାରୁ ପାଦଦେଶ ପର୍ଯ୍ୟନ୍ତ ବରଫାବୃତ ରହିଥାଏ । ଏହାର ତତ୍‌କାଳୀନ ଶୋଭା ଅତ୍ୟନ୍ତ ମନୋମୁଗ୍ଧକର ।

ପ୍ରାଚୀନ ଗ୍ରୀକ ଓ ହିନ୍ଦୁମାନଙ୍କପରି ଏମାନଙ୍କର ପ୍ରାଚୀନ ଇତିହାସ ନାନାବିଧ କଳ୍ପନା-ସମ୍ଭୂତ ଗଳ୍ପ ଓ ଆଖ୍ୟାୟିକାରେ ପରିପୂର୍ଣ୍ଣ । ସର୍ବପ୍ରଧାନ ପ୍ରାଚୀନ ଗ୍ରନ୍ଥ 'କୋଜିକ' ପ୍ରାୟ ୭୧୨ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ଏଥିରେ ପ୍ରାୟ ତେରଶତ ବା ଚୌଦଶତ ବର୍ଷପୂର୍ବର ଘଟନାମାନ ବର୍ଣ୍ଣିତ ।

ଉ.ସା./ ୮ମ ଭାଗ / ୭ମ ସଂଖ୍ୟା/ ୧୩୧୨ ସାଲ ।

## ॥ ଦୁଇ ॥

'ସାହିତ୍ୟ'ର ସମ୍ପାଦକ ମହାଶୟ ମୋତେ ଗୋଟିଏ କୈଫିୟତ ତଲବ କରିଅଛନ୍ତି । ଦୋଷ ଏହି ଯେ ପେଟଚିନ୍ତା ଯୋଗୁଁ କେତେଦିନ ହେଲା ମୁଁ ସାହିତ୍ୟଚିନ୍ତା ଭୁଲି ଯାଇଅଛି । କିନ୍ତୁ ସେ ଅପରାଧରେ ମୋ ବିରୋଧରେ charge (ଅଭିଯୋଗ) ଟେକିବ କି ନାହିଁ, ଏହା ସମ୍ପାଦକଙ୍କୁ ମାଲୁମ ନାହିଁ । ପ୍ରଥମେ ପେଟଚିନ୍ତା ଓ ସାହିତ୍ୟଚିନ୍ତା ମଧ୍ୟରେ ତଫାତ୍‌ଟା ଭଲରୂପେ ହୃଦୟଙ୍ଗମ କରିବା ଉଚିତ । ମୋ କ୍ଷୁଦ୍ର ଅନୁଭବରେ ଏତିକି ବୁଝୁଛି ଯେ ଓକିଲଙ୍କ ପେଟଚିନ୍ତା ଓ ସାହିତ୍ୟଚିନ୍ତା ମଧ୍ୟରେ ଆଟଲାଣ୍ଟିକ ମହାସାଗର ବ୍ୟବଧାନ । ଏହା ବୋଲି ନିପାତନ ଅନିବାର୍ଯ୍ୟ । ସେ ନିପାତନ ମଧ୍ୟରେ ମୁଁ ନ ପଡ଼ିଲି କାହିଁକି ? ଏ ପ୍ରଶ୍ନର ଉତ୍ତର ଦେବାକୁ ମୁଁ ଅସମର୍ଥ । ତହିଁର କେତେରକମ କାରଣ ଥାଇପାରେ, ଯଥା : ଅନିଚ୍ଛା, ଅକ୍ଷମତା, ଅସୁବିଧା, ଅନବକାଶ ଇତ୍ୟାଦି ଇତ୍ୟାଦି । ଫଳ କଥା ଏହି ଯେ, ଯେଉଁ କାରଣରୁ ହେଉ ମୁଁ ପେଟଚିନ୍ତାରେ ପଶି ସାହିତ୍ୟଚିନ୍ତାକୁ ଏକପ୍ରକାର ପାସୋରି ପକାଇଅଛି । ସାହିତ୍ୟଚିନ୍ତା ପୋଥିବାଇଗଣ, ପେଟଚିନ୍ତା ବାଡ଼ିବାଇଗଣ । ସାହିତ୍ୟଚିନ୍ତା କଳ୍ପନାରାଜ୍ୟର ଅନ୍ତର୍ଗତ, ପେଟଚିନ୍ତା ବାସ୍ତବ ରାଜ୍ୟର ସୀମା ମଧ୍ୟରେ । କଥାଟାକୁ ଆହୁରି ଖୋଲାସା କରିଦେବାକୁ ଗଲେ ଆପଣମାନେ ବୁଝିପାରିବେ ଯେ କଳ୍ପନା ରାଜ୍ୟ

ଓ ବାସ୍ତବ ରାଜ୍ୟରେ ପ୍ରଭେଦ ବେଶି । ପେଟ ଚିନ୍ତାରେ ଜଡ଼ିତ ହେବା ପୂର୍ବରୁ ଦଣ୍ଡେ ଘଡ଼ିଏ କଳ୍ପନା ରାଜ୍ୟରେ ବୁଲିବାକୁ ଇଚ୍ଛା, କ୍ଷମତା, ଅସୁବିଧା ଓ ସମୟ ଥିଲା; କାରଣ ଆଖି ବୁଜିବାକୁ ସମୟ ମିଳୁଥିଲା । ବର୍ତ୍ତମାନ ବାସ୍ତବ ରାଜ୍ୟରେ ବିଚରଣ କରି ଆଖି ବୁଜିବାର ଇଚ୍ଛା । କ୍ଷମତା; ସୁବିଧା ଓ ସମୟ ନ ଥିବାରୁ ନିତାନ୍ତ ଦାୟରେ ପଡ଼ି ଆଖିବୁଜା ଅଭ୍ୟାସଟି ଭାଙ୍ଗି ଯାଉଅଛି । ସବୁବେଳେ ଆଖି ମେଲା କରି କରି ଜଳକା ହେବାର ଭୟ ଲାଗୁଅଛି । ବର୍ତ୍ତମାନ ଆଖ ବୁଜିବାର ଇଚ୍ଛା ନାହିଁ । କାରଣ ଆଖି ବୁଜିବାକୁ ଭଲ ଲାଗୁ ନାହିଁ । ଥରେ ଆଖି ମେଲା କରିବାର ଅଭ୍ୟାସ ହେଲେ ବୁଜିବା ଇଚ୍ଛା ପ୍ରବେଶ କରିବା ଅସମ୍ଭବ ବୋଲି ମନେ ହେଉଅଛି । ଦ୍ୱିତୀୟ କଥା, ଇଚ୍ଛା ଥିଲେ ମଧ କ୍ଷମତା ନାହିଁ । ଆଜିଯାକେ ଆଖି ବୁଜି ବୁଜି ଏକପ୍ରକାର ଚଳିଆସୁଥିଲା । ଏଣିକି ଇଚ୍ଛା ଥିଲେ ମଧ ବାସ୍ତବ ରାଜ୍ୟ ଟାଣିଓଟାରି ଧରିବାରୁ ଆଖି ବୁଜି ହେଉ ନାହିଁ । ଆଖି ବୁଜିଦେଲେ ସବୁ କ୍ଷମତା ଲୋପ ପାଇବାର ଭୟ ହେଉଅଛି । ତୃତୀୟ କଥା, ସୁବିଧା ଅସୁବିଧା । ବସିଲାବେଳେ ବା ଶୋଇଲାବେଳେ ଆଖି ବୁଜିଲେ ବିଶେଷ କିଛି ବିପଦରେ ଆଶଙ୍କା ନାହିଁ; କିନ୍ତୁ ଚାଲିଲାବେଳେ ଆଖି ବୁଜିଲେ ମୁଣ୍ଡ ଓ ଗୋଡ଼ରେ ଠୋକର ଲାଗିବାର ଭୟ ଅନିବାର୍ଯ୍ୟ । ଦୁନିଆଟା ସମତଳ ବାଧାଶୂନ୍ୟ ମରୁଭୂମି ହୋଇଥିଲେ, ଆଖି ବୁଜି ଚାଲିଲେ ଭୟର ବିଶେଷ କାରଣ ନ ଥିଲା; କିନ୍ତୁ ଦୁନିଆଟା ଯେ ଗଡ଼ଜାତୀୟ ଜଙ୍ଗଲ - ଉପରେ କଣ୍ଟକାକୀର୍ଣ୍ଣ ବଡ଼ ବଡ଼ ଗଛ, ତଳେ ଅସମ କଙ୍କର ଓ ମୁଣ୍ଡା ପଥର । ଏପରି ସ୍ଥଳରେ ନିତାନ୍ତ ଗମାର କିମ୍ବା ବିକୃତ ମସ୍ତିଷ୍କ ନ ହେଲେ ଆଖି ବୁଜିବାକୁ କେହି ରାଜି ହେବେ ନାହିଁ । ମନେକରନ୍ତୁ ସମ୍ପାଦକ ମହାଶୟଙ୍କ ଖାତିରିରେ ଦଣ୍ଡେ ଆଖି ବୁଜି ଚାଲିଲି । କାଲି ସକାଳୁଁ ଗୋଡ଼ରେ ତାରପିନ୍ ତେଲ ମାଲିସ୍ କରିବାକୁ ହେବ ଓ ମୁଣ୍ଡରେ ପଟି (Bandage) ବାନ୍ଧିବାକୁ ହେବ । ମନେ କରନ୍ତୁ, ଉକ୍ତ ତେଲ ମାଲିସ୍ କରିବାକୁ ଓ ପଟି ବାନ୍ଧିବାକୁ ମୁଁ ସ୍ୱୀକୃତ ହେଲି; କିନ୍ତୁ ସେଥିର ବ୍ୟୟଭାର ବହନ କରିବ କିଏ ? ଏ ପ୍ରଶ୍ନ ମୀମାଂସା ନ କରି ସମ୍ପାଦକଙ୍କ ଭ୍ରୂଭଙ୍ଗୀ ପ୍ରତି ଦୃଷ୍ଟି କରି ଅନ୍ଧାରୁଆ ମାଡ଼ିଯିବା ବୈଷୟିକ ବୁଦ୍ଧି-ବୈକଲ୍ୟର ପରିଚୟ ଛଡ଼ା ଅନ୍ୟ କଣ ହୋଇପାରେ ? ଶେଷ କଥା, ଅବକାଶାଭାବ । ଏ ସମ୍ବନ୍ଧରେ ଜୋର୍ ଜବରଦସ୍ତି ଚଳି ନ ପାରେ । ସଂସାରରେ ଆପଣମାନେ ଦେଖି ପାରୁଥିବେ, 'ସମୟାଭାବ' ପରି ସୁବିଧାଜନକ କୈଫିୟତ ଅନ୍ୟ କିଛି ନାହିଁ । କାରଣ, ସେ ଯୁକ୍ତିକୁ ଖଣ୍ଡନ କରିବା ଏକପ୍ରକାର ଅସମ୍ଭବ । ସେ ଯୁକ୍ତିରେ ଉଦାହରଣ ଚଳିବ ନାହିଁ, ହାଇକୋର୍ଟ ନଜିର ଖଟିବ ନାହିଁ । ଅମୁକଙ୍କର ସମୟ ହେଲା, ମୋର ସମୟ ହେବ ନାହିଁ କାହିଁକି ? ଏପରି ପ୍ରଶ୍ନର ଉତ୍ତର ଦେବାକୁ କେହି ବାଧ ନୁହେଁ । ସମୟ ହେଉ ନାହିଁ, ଏତିକି କହିଲେ ଅକାଟ୍ୟ ଉତ୍ତର ହେବ । ତେବେ, ମିଠା ଖାଇବା ପରେ ଖଟା, କାର୍ଯ୍ୟ ପରେ ଅବସର, ବେହିସାବ ପରେ ହିସାବ, ତୋଫାନ ପରେ ନିସ୍ତବ୍ଧତା ଯେପରି ଦଣ୍ଡକ ପାଇଁ ଭଲ ଲାଗେ, ସେହିପରି ପେଟଚିନ୍ତା ପରେ ପୋଥିଚିନ୍ତା ଦଣ୍ଡକ ପାଇଁ ଭଲ

ଲାଗିପାରେ ଓ ସେହି ଦଣ୍ଡକ ମଧ୍ୟରେ ଯାହା ହୋଇପାରେ, ତାହାଛଡ଼ା ଅଧିକ ଆଶା କରିବାର ଅଧିକାର ସାହିତ୍ୟ ସମ୍ପାଦକଙ୍କର, ଏମନ୍ତ କି ହାଇକୋର୍ଟ ଜଜଙ୍କର ମଧ୍ୟ ନାହିଁ । ସେଥିରେ ବାସନା ତୃପ୍ତି ହେବାର ଆଶା ଦୁରାଶା । ଏତେଗୁଡ଼ିଏ ସ୍ୱୀକାର୍ଯ୍ୟ ନିର୍ଣ୍ଣୟ କଲା ପରେ ଯେବେ କେହି ମୋର ବାହାଦୁରିର ନମୁନା ଦେଖିବାକୁ ଚାହାନ୍ତି ବା ଜିଗର କରନ୍ତି, ତେବେ ଦେଖନ୍ତୁ । ସେଥିରେ ଯାଏ କେତେ, ଆସେ କେତେ ?

ପଠନାବସ୍ଥାରେ ଗୋଟାଏ ବିଷୟ ଭାବି ମନରେ ବଡ଼ ଆନନ୍ଦ ହେଉଥିଲା । ତାହା ଏହି ଯେ, ବର୍ତ୍ତମାନ ଯାହା ପୋଥିରେ ପଢୁଅଛ, ତାହା କାର୍ଯ୍ୟକ୍ଷେତ୍ରରେ ଖଟାଇ ପାରିଲେ ମୋର ଆନନ୍ଦର ସୀମା ରହିବ ନାହିଁ । ଯେତେବେଳେ ବାଲ୍ୟକାଳରେ ସ୍ଲେଟ୍ ପେନ୍ସିଲ୍ ଧରି ୧ + ୨ + ୩ = ୬ ଲେଖୁଥିଲି, ସେତେବେଳେ ବିଚାରୁଥିଲି ଯେ ଟ ୧+ ଟ ୨+ ଟ ୩ = ଟ ୬ କଲାବେଳେ ଆହୁରି ମଉଜ ହେବ; କିନ୍ତୁ ହାତକୁ ଟଙ୍କା ଆସିଲାବେଳେ ହିସାବ କଲାରୁ ହିସାବରେ ଭୁଲ ଧରିଲା । କେତେବେଳେ ୫ ଟଙ୍କା, କେତେବେଳେ ୭ ଟଙ୍କା ହୋଇଗଲା । ସେତେବେଳେ ସବୁ ଫାଙ୍କ ତାଳ ଜଣା ପଡ଼ିଲା । ସେତିକିବେଳେ ପୋଥିବାଇଗଣ ବା ବାଡ଼ିବାଇଗଣ ମଧ୍ୟରେ ପ୍ରଭେଦଟା ସହଜରେ ଧରା ପଡ଼ିଗଲା ଓ ସଙ୍ଗେ ସଙ୍ଗେ ଆଖି ଫିଟିଗଲା । ଏଣିକି ଆଖି ବୁଜିବାକୁ ଭୟ ହେଉଅଛି ଓ କଷ୍ଟ ମଧ୍ୟ ହେଉଅଛି । ଜଣେ ବଡ଼ଲୋକଙ୍କ ପୁସ୍ତକାଗାରକୁ ଯାଇ ଦେଖିଲି ଯେ ଅନେକ ଆଲମାରି ଚକଚକିଆ ବହିରେ ପୂର୍ଣ୍ଣ ହୋଇଅଛି । ମନେ ମନେ କଳ୍ପନା ପ୍ରସାଦରୁ ଭାରି ଉଚ୍ଚକୁ ଉଠିଗଲି । କୌତୂହଳ ଚରିତାର୍ଥ କରିବାକୁ ଯାଇ ଆଲମାରି ଖୋଲି ଦେଖେ କି ଯେ କେତେ ବହି ପୋକଖିଆ, କେତେକ ବହିରେ ଉଇ ଲାଗିଅଛନ୍ତି, କେତେକ ବହିରେ ପୃଷ୍ଠାର ଗୋଳମାଳ, କେତେକ ବହିର ଭିତରେ କିଛି ନାହିଁ । ଦେଖିସାରି ଆଲମାରିରେ ଚାବି ପକାଇ ଚାବିଗୁଡ଼ିକ କର୍ତ୍ତାଙ୍କୁ ପ୍ରତ୍ୟର୍ପଣ କରି ଘରକୁ ଫେରିଲି, କୌତୂହଳ ଚରିତାର୍ଥ ହେଲା । କ୍ରମେ କ୍ରମେ ଚୈତନ୍ୟ ଉଦୟ ହେଲା । ଦେଖିଲି, ଦୁନିଆଟାଯାକ କାଚ ଆଲମାରି ମଧ୍ୟରେ ବନ୍ଦ । ବାହାରରୁ ଭାରି ଚକଚକିଆ, କିନ୍ତୁ ଭିତରେ ସବୁ ଦଦରା ଓ ପୋକଖିଆ । ବଡ଼ଲୋକ, ହାକିମ, ରାଜା, ମହାରାଜା, ଉପାଧିଧାରୀଙ୍କ ନାମ ପଢ଼ି ଶୁଣି ଆଖି ଝଲସିଗଲା । ଦମ୍ଭ ଧରି ପରଦା ଟେକି ଭିତରକୁ ପଶିଗଲି । ଦେଖିଲି - ସବୁ ପୋକଖିଆ, ସବୁ ଦଦରା । ଧର୍ମାଧିକରଣକୁ ଗଲି, 'ଜୟ, ଧର୍ମର ଜୟ' ନାଦରେ କାନ ବଧିର ହୋଇଗଲା । ଚପରାସୀଙ୍କୁ ସମଜାସମଜି କରାଇ ଭିତରକୁ ପଶିଗଲି । ସେଠାରେ ଦେଖିଲି ସବୁ ପୋକଖିଆ ଓ ଦଦରା । ଏଥିରେ କାହାର କିଛି ଦୋଷ ନାହିଁ । ଦୋଷ ମୋର - ଆଖି ବୁଜିଥିବାରୁ ମନରେ ଭ୍ରାନ୍ତ ଧାରଣା ହୋଇଥିଲା, ଆଖି ଫିଟିବାରୁ ସବୁ ଧାରଣା ଚୂରମାର ହୋଇଗଲା । ଏସବୁ ଅନୁଭବ ପରେ ଆଉ ଆଖି ବୁଜିବାକୁ ମନ ହୁଏକି ? ଯେ ଆଖି ନ ବୁଜିବ, ସେ କଣ ବେକୁବ ? ସଂସାରର ଆବର୍ତ୍ତରେ ପଡ଼ି ଯେବେ କେହି କିଛି ଶିକ୍ଷାଲାଭ କରିଥାଏ, ତାହା ଏହି : ଧର୍ମ, ସତ୍ୟ, ନ୍ୟାୟ ସବୁ ପୁସ୍ତକଗତ, ସଂସାରଗତ

ନୁହେଁ । ସଂସାରରେ ବୁଲିଚାଲି ଦେଖ - ସବୁଠାରେ ଧର୍ମର ଦ୍ୱାହିରେ, ସତ୍ୟର ଦ୍ୱାହିରେ, ନ୍ୟାୟର ଦ୍ୱାହିରେ କେତେ କେତେ ଅଧର୍ମ, ଅସତ୍ୟ ଓ ଅନ୍ୟାୟ ଘଟୁଅଛି - ଗରିବର ମା ବାପ କେହି ନାହିଁ । ଜଣେ ଉଚ୍ଚପଦସ୍ଥ ହାକିମ (ଯାହାଙ୍କ କଲମରେ ସହସ୍ର ସହସ୍ର ଲୋକଙ୍କର ସୁଖଦୁଃଖ ନିର୍ଭର କରୁଅଛି ଓ ଯାହାଙ୍କ ହାତରେ ଦୟାଶୀଳ ଗଭର୍ଣ୍ଣମେଣ୍ଟ ଅପରିସୀମ କ୍ଷମତା ଅର୍ପଣ କରିଦେଇ ନିଶ୍ଚିନ୍ତ ହୋଇ ବସିଅଛନ୍ତି) ଦିନେ କଥା ପ୍ରସଙ୍ଗରେ କହିଥିଲେ, ''କେହି ନ ଆସୁଣୁ କଚେରିରେ ହାଜର ହୋଇ ଧର୍ମାସନରେ ବସି ସେମାନଙ୍କୁ ତିନିଗୋଟି ଲେଖାଏଁ ଧର୍ମଡାକ ଦେଇ ପକ୍ଷମାନଙ୍କ ଗରହାଜିରାରେ ମକଦ୍ଦମାଗୁଡ଼ିକ ଖାରଜ କରିଦେଲେ କାର୍ଯ୍ୟ ଲାଘବ ହୁଏ ଓ ଅନେକ ନମ୍ବର ମକଦ୍ଦମା ବିନା କ୍ଳେଶରେ ଫଏସଲା ହୋଇଯାଏ ।'' ପଇସାବାଲା ପକ୍ଷ ହେଲେ ମକଦ୍ଦମା ସାନି ଦାଏର କରିବ; କିନ୍ତୁ ଗରିବ ପକ୍ଷ ହେଲେ ଏହା କଲମଗାରରେ ଖତମ । ଏହାକୁ କହନ୍ତି - ନ୍ୟାୟବିଚାର । ଏହିପରି ନ୍ୟାୟବିଚାରରେ ସଂସାର ଚଳୁଅଛି । ପାଠକମାନେ କହିପାରନ୍ତି, ଏ ବ୍ୟକ୍ତିଗତ ଦୃଷ୍ଟାନ୍ତ ଦ୍ୱାରା ସଂସାରଟାକୁ ଓଜନ କରିନେବା ବାତୁଳତା ମାତ୍ର । ଏହିପରି ଶତ ଶତ ବ୍ୟକ୍ତିଗତ ଘଟନାରେ ନ୍ୟାୟର ନାମ କଳୁଷିତ ହେଉଥିବାର ପ୍ରମାଣ ଅନେକ ଅଛି । ସେ କଥା ଛାଡ଼ନ୍ତୁ । ଦେଖନ୍ତୁ, ସରକାର ବାହାଦୁର ବହୁମୂଲ୍ୟ ଆଇନ୍ କାନୁନ୍ ପ୍ରଣୟନ କରି ନ୍ୟାୟ ପାଇବାର ଯପ୍ରୋନାସ୍ତି ସୁବିଧା ପୁସ୍ତକରେ ସନ୍ନିବେଶିତ କରିଅଛନ୍ତି - କିନ୍ତୁ ସେସବୁ ପୁସ୍ତକଗତ ବିଦ୍ୟାରେ ପରିଣତ ହୋଇଅଛି । ସେଗୁଡ଼ିକ କାର୍ଯ୍ୟରେ ପରିଣତ କରିବାକୁ ଗଲେ ସରକାର ବାନ୍ଧି ଦେଇଥିବା ପନ୍ଥା ଅନୁସାରେ କେତେ କଣ ବ୍ୟୟ କରିବାକୁ ହେବ; କିନ୍ତୁ ସେତକ ଖରଚ କରିଦେଇ ନ୍ୟାୟ ପାଇବା ଭରସାରେ ନିଶ୍ଚିନ୍ତ ହୋଇ ବସିଲେ କଦାପି ଚଳିବ ନାହିଁ । ବ୍ୟବସ୍ଥାନିର୍ଦ୍ଦିଷ୍ଟ ବ୍ୟୟ ସଙ୍ଗେ ସଙ୍ଗେ 'ତଦ୍‌ବିର' କରିବାକୁ ହେବ । 'ତଦ୍‌ବିର' ଯେ ଖାଲି ମୁହେଁ ମୁହେଁ ହେବ, ଏହା କଦାପି ନୁହେଁ । 'ତଦ୍‌ବିର' ନିମନ୍ତେ ଯାହା ବ୍ୟୟ କରିବାକୁ ହେବ, ତାହା ଦୃଷ୍ଟିରେ ସରକାରଙ୍କ ନିର୍ଦ୍ଦିଷ୍ଟ ବ୍ୟୟ କିଛି ନୁହେଁ । ମନେକରନ୍ତୁ, କୌଣସି ମକଦ୍ଦମାରେ କେତେକ ସାକ୍ଷୀଙ୍କୁ ଅଦାଲତରେ ଉପସ୍ଥିତ ହେବା ନିମନ୍ତେ ତଲବ (Summons) କରିବାକୁ ହେବ । ଯେବେ ଉକ୍ତ ସାକ୍ଷୀଙ୍କୁ ତୁମ୍ଭେ ଘରୋଇ ଭାବରେ ସାକ୍ଷ୍ୟ ଦେବାପାଇଁ ଡାକି ଆଣିବ, ତେବେ ବିଚାର ଅଦାଲତର ସ୍ୱୀକାର୍ଯ୍ୟ ଅନୁସାରେ ସ୍ଥିର ହେବ ଯେ ଉକ୍ତ ସାକ୍ଷୀମାନେ ତୁମ୍ଭ ତରଫର ଲୋକ, ଅତଏବ ବିଶ୍ୱାସଯୋଗ୍ୟ ନୁହନ୍ତି । ଅତଏବ ବାଧହୋଇ ଅଦାଲତଙ୍କ ମୋହର (seal) ଜରିଆରେ ତୁମ୍ଭଙ୍କୁ କାର୍ଯ୍ୟ କରିବାକୁ ହେବ । ଆଇନ୍‌ରେ ତହିଁ ନିମନ୍ତେ ବିଧି ଓ ବ୍ୟୟ ବନ୍ଧା ହୋଇଅଛି । ସାକ୍ଷୀଙ୍କ ନିମନ୍ତେ ଖୋରାକି (Diet money) ଓ ମିଆଦି (Prosess fees) ଦାଖଲ କରିଦେଲେ ତୁମ୍ଭେ ଆଇନ ଅନୁସାରେ ଖଲାସ; କିନ୍ତୁ ସେତିକିରେ କାର୍ଯ୍ୟଲାଭ କରିବା ଦୁରାଶା । ଏହି ପୁସ୍ତକଗତ ବ୍ୟୟ ସଙ୍ଗେ ସଙ୍ଗେ 'ତଦ୍‌ବିର' ନ କଲେ ସାକ୍ଷୀମାନଙ୍କ ଉପରେ ଏ ଜନ୍ମରେ କଦାପି ସମନ ଜାରି ହୋଇପାରିବ ନାହିଁ । ଏଇଥିପାଇଁ ପ୍ରଥମ

'ତଦ୍‌ବିର' ଓକିଲଙ୍କ ସିରସ୍ତାରେ । ସେଠାରେ ସମନଗୁଡ଼ିକ ଲେଖାଇବା ନିମନ୍ତେ 'ତଦ୍‌ବିର' କରିବାକୁ ହେବ । ଦ୍ୱିତୀୟ 'ତଦ୍‌ବିର' ପେସ୍କାରଙ୍କ ନିକଟରେ । ସେଠାରେ ସମନଗୁଡ଼ିକ ବିଚାରକଙ୍କ ନିକଟରେ ପେସ୍ କରାଇ ଅଦାଲତର ମୋହର (seal) କରାଇବାକୁ ହେବ । ତୃତୀୟ 'ତଦ୍‌ବିର' ନଜରଖାନାରେ । ସେଠାରେ ସମନଗୁଡ଼ିକ ପିଆଦାକୁ ଦିଆଯିବା ନିମନ୍ତେ 'ତଦ୍‌ବିର' କରିବାକୁ ହେବ । ଚତୁର୍ଥ 'ତଦ୍‌ବିର' ଖୋଦ ପିଆଦାଙ୍କ ନିକଟରେ । ପିଆଦାଙ୍କୁ ବେଳ ଜାଣି ତଲବ-ହୋଇଥିବା-ବ୍ୟକ୍ତିଙ୍କୁ ଚିହ୍ନାଇ ଦେବାକୁ ହେବ । ଯେବେ ପିଆଦାକୁ ନିଶାଣ ନ ଦେବ, ତାହାହେଲେ ପିଆଦା ଆସି ରିପୋର୍ଟ ଦେବ ଯେ ସମନ କରିଥିବା ବ୍ୟକ୍ତି ନିଶାଣ ନ ଦେବାରୁ ସମନ ଜାରି ହୋଇପାରିଲା ନାହିଁ । ମନେକର, ତୁମେ ପିଆଦା ନିକଟରେ 'ତଦ୍‌ବିର' ନ କରି କେବଳ ମୁହେଁ ମୁହେଁ ନିଶାଣ ଦେଲ । ଉପଯୁକ୍ତ ଚର୍ଚ୍ଚା ଓ 'ତଦ୍‌ବିର' ନ ହେବାରୁ ପିଆଦା ରିପୋର୍ଟ ଦେଲା କି, ଦରଖାସ୍ତକାରୀ ନିଶାଣ ଦେଲା ନାହିଁ । ନ୍ୟାୟବିଚାର ପାଇବା ଦୂରେ ଥାଉ, ତୁମ୍ଭ ନିଜ ଦୋଷରୁ, ତୁମ୍ଭର 'ତଦ୍‌ବିର' ଅଭାବରୁ ତୁମ୍ଭ ମକଦ୍ଦମାଟି ଖାରଜ ହେବ । ମକଦ୍ଦମାକୁ ପୁନର୍ବାର ବଞ୍ଚାଇବାକୁ ହେଲେ ତୁମ୍ଭଙ୍କୁ ପିଆଦା ନାମରେ ମକଦ୍ଦମା କରିବାକୁ ହେବ ଓ ତୁମ୍ଭେ ନିଶାଣ ଦେଇଥିବା କଥା ଅଦାଲତଙ୍କ ସମ୍ମୁଖରେ ପ୍ରମାଣ କରିବାକୁ ହେବ । ମହର୍ଗରୁ ଯାଇ କାନ୍ତାରରେ ପଡ଼ିବାକୁ ହେବ । ଥରେ 'ତଦ୍‌ବିର' ନ କରି ଏତେ ହଟହଟା ହେବାକୁ ହୋଇଅଛି । ଏ ଦ୍ୱିତୀୟ ମକଦ୍ଦମା ପ୍ରମାଣ ନିମନ୍ତେ ପୁନର୍ବାର 'ତଦ୍‌ବିର' କରିବାକୁ ହେବ । ସର୍ବପ୍ରଥମେ ପିଆଦା ନିକଟରେ 'ତଦ୍‌ବିର' କରି ପାରିଥିଲେ ଏତେ ହଟହଟା ହେବାକୁ ପଡ଼ି ନ ଥାନ୍ତା । ଏ ସବୁ କଥା ଯେ ଅନୁଭବ କରିଅଛି, ସେ ଆଖି ବୁଜି ରହି ପାରିବ କି ? କେବଳ ଏହି କ୍ଷେତ୍ରରେ ନୁହେଁ, ଅନ୍ୟ ଅଦାଲତରୁ ନଥି ତଲବ କରାଇବାକୁ ହେବ । ଏହିପରି ମକଦ୍ଦମା ସମ୍ପର୍କରେ ଯେତେ ଯେତେ ଯୋଗାଡ଼ କରିବ, ସବୁଥିରେ 'ତଦ୍‌ବିର' କରିବାକୁ ହେବ । ତୁମ୍ଭ ଓକିଲ ତୁମ୍ଭଙ୍କୁ ସମଜାଇ ଦେବେ ଯେ ବିନା 'ତଦ୍‌ବିର' ରେ କିଛି କାର୍ଯ୍ୟ ହୋଇ ନ ପାରେ । ମକଦ୍ଦମାର ଧାର୍ଯ୍ୟ ତାରିଖ ଦିନ ମକଦ୍ଦମା ପଡ଼ିବା ସମୟରେ ଦେଖାଗଲା ଯେ ପକ୍ଷ ଆଇନନିର୍ଦ୍ଦିଷ୍ଟ ବ୍ୟୟ କରିଅଛି, କିନ୍ତୁ କାର୍ଯ୍ୟ ହୋଇ ନାହିଁ ।

ହାକିମ ମଧ୍ୟ ଧର୍ମାସନରେ ବସି ଭ୍ରୁକୁଟି କରି ଧର୍ମଡ଼ାକ ଦେବେ ଯେ, ପକ୍ଷର 'ତଦ୍‌ବିର' ଅଭାବରୁ କାର୍ଯ୍ୟ ହୋଇ ନାହିଁ । ଅତଏବ, ସବୁ ଦୋଷ ପକ୍ଷର । ପକ୍ଷ ବିଚରା ଅନନ୍ୟୋପାୟ ହୋଇ ଧର୍ମାଧିକରଣରେ ଏହି ବହୁମୂଲ୍ୟ ଶିକ୍ଷାଲାଭ କରିବ ଯେ ବିନା 'ତଦବିର'ରେ ଅଦାଲତର କୌଣସି କାର୍ଯ୍ୟ ହୋଇ ପାରିବ ନାହିଁ । ଏଥିପାଇଁ ଆମ୍ଭ ନନା କହନ୍ତି, ବାଡ଼ିବାଇଗଣର ମୂଳ ପୋଥିବାଇଗଣ ମୂଳ ଅପେକ୍ଷା ଡବଲ । ମୁଁ ମଧ୍ୟ ସଂସାରରେ ଏହି ଶିକ୍ଷା କରିଅଛି । ଏ ସବୁ ନ ଦେଖୁଛି କିଏ ? କିନ୍ତୁ ଏଥିପ୍ରତି ହାକିମହୁକୁମାଙ୍କ ଠାରୁ ଲଗାଏତ ଓକିଲ ମୁକ୍ତାର ପର୍ଯ୍ୟନ୍ତ ସମସ୍ତେ ଉଦାସୀନ । ଏସବୁ କଥା ଦେଖି ଯେ ପୋଥି ଅଭ୍ୟାସ ଛାଡ଼ି ବାଡ଼ି ଅଭ୍ୟାସ ଧରେ, ତାଙ୍କୁ ଭଲା ଦୋଷ ଦେଲେ ଚଳିବ କିପରି ?

ସାହିତ୍ୟର ସମ୍ପାଦକ ମହାଶୟ ସମ୍ପାଦକୀୟ ଆସନରେ ବସି କେବଳ ପୁସ୍ତକ ପାଠ କରି କରି ଦିନ କଟାଉଛନ୍ତି, ସେ ଏତେକଥା ଜାଣିବେ କାହୁଁ ? ମୁଁ ମଧ୍ୟ ଯେତେବେଳେ ପ୍ରଥମେ ଯୁଆଳିରେ ବାନ୍ଧିହେଲି, ସେତେବେଳେ ବିଚାରିଲି ଯେ ଏହିପରି ପୋଥି ପାଠକୁ ଆଉଡ଼ାଇ ଆଉଡ଼ାଇ ଦିନକାଳ ଚାଲିଯିବ । କିନ୍ତୁ ସେସବୁ କଳ୍ପନାରେ ଯେଉଁ ସୁଖ ଉପଲବ୍ଧି ହେଉଥିଲା ସଂସାରରେ ତହିଁରୁ ଏକପ୍ରକାର ବିଦାୟ ନେବାକୁ ହେଉଅଛି ।

ଲୋକେ କହନ୍ତି, ଓକିଲାତି ସ୍ୱାଧୀନ ବ୍ୟବସାୟ, ଅମୁକ ପରାଧୀନ ବ୍ୟବସାୟ । ଏସବୁ କହିବା ଢଙ୍ଗ । ପ୍ରକୃତରେ ବୁଝିବାକୁ ଗଲେ ସବୁ ପରାଧୀନ ବ୍ୟବସାୟ । ସବୁଥିରେ ଗୋଲମାଲ ସବୁଥିରେ ପର ଅନୁସରଣ । ଚାକିରିରେ ଉପରିସ୍ଥ କର୍ମଚାରୀଙ୍କ ଅଧୀନତା ସ୍ୱୀକାର । ଏଥିରେ ଉପରିସ୍ଥ କର୍ମଚାରୀ ସମସ୍ତେ । ଅନ୍ୟ ବ୍ୟବସାୟରେ ମିଛ କୁହାଯାଏ ପେଟ ପୋଷିବା ନିମନ୍ତେ, ଏ ବ୍ୟବସାୟରେ ମିଛ କୁହାଯାଏ ଅଜୀର୍ଣ୍ଣ ହେବା ନିମନ୍ତେ । ସଂସାରରେ ପଶିବା ଦିନରୁ, ଏ ବ୍ୟବସାୟର ଭେକ’ ଧରିବା ଦିନଠାରୁ ମୁଁ ଏହିକଥା ଭାବୁଅଛି ଯେ, ଏ ପେସାରେ ସ୍ୱାଧୀନତା ରହିଲା କେଉଁଠାରେ ? କେତେକ ଭେକଧାରୀ ବନ୍ଧୁ ଓ ଗୁରୁଙ୍କ ସରଜମିନରେ ଗିରଫ୍ କରି କଥାଟା ଖୋଲସା କରିବା ନିମନ୍ତେ ପ୍ରଶ୍ନ କରିଅଛି; କିନ୍ତୁ କାହାଠାରୁ ସନ୍ତୋଷଜନକ ଉତ୍ତର ପାଇ ନାହିଁ । ଏହି କଥା ସ୍ଥିର କଲି ଯେ ସବୁ ବ୍ୟବସାୟରେ ‘ଚକ୍ରଂ ଭ୍ରମତି ମସ୍ତକେ’ । ବେଗର ତାରତମ୍ୟ ଅବଶ୍ୟ ଅଛି । ଏତିକି ପ୍ରଭେଦ ଛଡ଼ା ମୁଁ ଆଉ କିଛି ପ୍ରଭେଦ ପାଇଲି ନାହିଁ । ଚାଷୀ, ମୂଲିଆ, ବେପାରୀ, ଓକିଲ, କିରାନି, ଦିପୋଟି, ମେନେଜର, ମେଜେଷ୍ଟର, କମିଶନର, ରାଜା, ମହାରାଜା, ମହାଜନ, କୋଟିପତି ଏମନ୍ତ କି ଗଭର୍ଣ୍ଣମେଣ୍ଟ ପର୍ଯ୍ୟନ୍ତ ସମସ୍ତେ ପେଟ ନିମନ୍ତେ ଆବର୍ତ୍ତରେ ପଡ଼ି ଆପଣାର ଭାରକେନ୍ଦ୍ର ଠିକ୍ କରିବା ପାଇଁ ଦିନରାତି ବ୍ୟସ୍ତ ।

ପାଠ ଡାକୁଛି - ସବୁ ବ୍ୟବସାୟରେ ଧର୍ମ, ସତ୍ୟ ପାଳନ କରି କାର୍ଯ୍ୟ କରାଯାଇପାରେ, କିନ୍ତୁ କାର୍ଯ୍ୟତଃ ଶତକଡ଼ା ୯୯.୯ ସ୍ଥଳରେ ଧର୍ମ ଓ ସତ୍ୟ ମୁଦ୍ରାରୂପ ଧାରଣ କରି ପକେଟ ମଧ୍ୟରେ କିମ୍ବା ଯଥେଚ୍ଛାଚାରିତା ଓ ସ୍ୱାର୍ଥ ରୂପରେ ଜନ ମଧ୍ୟରେ ବିରାଜମାନ । ଯେଉଁଠାରେ ସ୍ୱାର୍ଥର ଓ ସତ୍ୟର କନ୍ଦଳ ଲାଗେ, କିମ୍ବା ମୁଦ୍ରା ଓ ଧର୍ମର ଯୁଦ୍ଧ ଲାଗେ, ସେଠାରେ ଜୟ କେଉଁ ଦିଗରେ, ତାହା ପୋଥି ମଧ୍ୟ ଡାକୁଛି, ଅଳ୍ପାଧିକ ଆମ୍ଭେ ତୁମ୍ଭେ ନିଜ ନିଜର ଅନୁଭବରୁ ଉତ୍ତମରୂପେ ଉପଲବ୍ଧି କରିଅଛୁଁ । ଦିନେ ଦିନେ ମନହୁଏ, କାହାକୁ କିଛି ନ କହି ଦିଗମ୍ବର ପାଣିପାତ୍ର ହୋଇ କୌଣସି ଦିଗକୁ ଲକ୍ଷ୍ୟ ନ କରି, କୌଣସି ବାଧାକୁ ନ ଚାହିଁ ଏକଶ୍ୱାସରେ ଏକ ବେଗରେ ଦଉଡ଼ି ଦଉଡ଼ି ସେହି ମହାନ୍ ଅନନ୍ତରେ ଲୀନ ହୋଇଯା’ନ୍ତି ଓ ମୋ ନାମଟି ଏକା ମୁହୂର୍ତ୍ତରେ ତିନି ପାଞ୍ଜିରୁ କଟିଯା’ନ୍ତା । ଦୁନିଆର ହାଲଚାଲ ଟିକିଏ ମନ ଲଗାଇ ଦେଖିଲେ ଏହାଛଡ଼ା ଅନ୍ୟ କୌଣସି ସିଦ୍ଧାନ୍ତରେ ଉପନୀତ ହେବାକୁ ମନ ହୁଏ ନାହିଁ ।

ଉତ୍କଳ ସାହିତ୍ୟ/୯ମ ଭାଗ/୨ୟ ସଂଖ୍ୟା/୧୩୧୨ ସାଲ ।

## ।। ତିନି ।।

ଦୁନିଆଟା ଯେତେ ବେଶି ସଭ୍ୟ ହେଉଅଛି, ଦିନକୁ ଦିନ ହାକିମଙ୍କ ସଂଖ୍ୟା ସେତେ ବେଶି ବଢୁଅଛି । ଏହା ଶୁଣି କାଗଜ କଲମ ଧରି କେହି Statistics କଷିବାକୁ ବସିଗଲେ ଚଳିବ ନାହିଁ । କିନ୍ତୁ ଏ କଥା ବୋଧହୁଏ ସମସ୍ତେ ସ୍ୱୀକାର କରିବେ ଓ ଆମ୍ଭେମାନେ ଇତିହାସର ନଜିର ଦେଖାଇ ପାରିବୁଁ ଯେ ପ୍ରଥମେ ଦେଶରେ ରାଜା ଏକାଧିପତି ଥିଲେ, ରାଜ୍ୟ ଶାସନ ରାଜାଙ୍କ ଦ୍ୱାରା ଚଳୁଥିଲା । ରାଜା କେତେଗୁଡ଼ିଏ ହାକିମ ନିଯୁକ୍ତି କରୁଥିଲେ ସତ୍ୟ, କିନ୍ତୁ ସମସ୍ତ କାର୍ଯ୍ୟ ସେହି ଏକ ରାଜାଙ୍କ ନାମରେ ଚଳୁଥିଲା । କିନ୍ତୁ ସଭ୍ୟତାର ଇତିହାସ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ ଯଥେଚ୍ଛାଚାର ଶାସନ ପ୍ରଣାଳୀରୁ ଦୁନିଆଟା ପ୍ରଜାତନ୍ତ୍ର ଶାସନ ପ୍ରଣାଳୀ ଆଡ଼କୁ ଧାଉଁଅଛି । ପ୍ରଜାତନ୍ତ୍ର କଥାଟା ସ୍ୱାଧୀନତା ପରିଚାୟକ । କିନ୍ତୁ ଟିକିଏ ଭିତରକୁ ପଶିଲେ ଦେଖାଯିବ ଯେ ଯଥେଚ୍ଛାଚାର ରାଜତନ୍ତ୍ରରେ ହାକିମଙ୍କ ସଂଖ୍ୟା ଏକମେବା ଦ୍ୱିତୀୟମ୍ । ପ୍ରଜାତନ୍ତ୍ରରେ ହାକିମଙ୍କ ସଂଖ୍ୟା ତେତିଶ କୋଟି । ଯାହାହେଉ, ପୂର୍ବରେ ମୁଁ ପାଠକମାନଙ୍କୁ ଜଣାଇଛି ଯେ, ଓକିଲାତି ସ୍ୱାଧୀନ ବ୍ୟବସାୟ । ଏହି ବ୍ୟବସାୟରେ ଦିବାରାତ୍ର ଅନୁସରଣ । ଏ ବ୍ୟବସାୟରେ ହାକିମ ସମସ୍ତେ - ଚୌକିଦାର ଠାରୁ ଡିଷ୍ଟ୍ରିକ୍ଟ୍ ସୁପରିନ୍‌ଟେଣ୍ଡେଣ୍ଟ ପର୍ଯ୍ୟନ୍ତ, କୋଟ ସବ୍‌ଇନିସ୍‌ପେକ୍ଟରଙ୍କ ଠାରୁ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ପର୍ଯ୍ୟନ୍ତ, ଅଦାଲତର ପିଆଦାଠାରୁ ଡିଷ୍ଟ୍ରିକ୍ଟ ଜଜ୍ ପର୍ଯ୍ୟନ୍ତ, ଗ୍ରାମପଞ୍ଚାୟତ ଠାରୁ ହାଇକୋଟ ପର୍ଯ୍ୟନ୍ତ ଓ ମକଦମ ସରବରା ଠାରୁ ରାଜା ମହାରାଜା ପର୍ଯ୍ୟନ୍ତ, ସମସ୍ତେ ହାକିମ । ମକ୍‌କେଲର ଚୁଟି ଯେଉଁ ଘଣ୍ଟାକ ଯାହା ହାତରେ ପଡ଼େ, ତାହାଙ୍କୁ ଓକିଲଙ୍କ ଅଭିଧାନରେ ହାକିମ ବୋଲାଯାଏ । ପଦ୍ମତୋଳା ପ୍ରସାଦରୁ କିମ୍ବା ସ୍ତୁତିପାଠ ଦ୍ୱାରା ମକ୍‌କେଲର ଚୁଟି ଖସାଇ ଦେବା ନାମ ଓକିଲାତି । ଏ ହିସାବରେ ଧରିବାକୁ ଗଲେ ଆମ୍ଭମାନଙ୍କ ହାକିମ ତେତ୍ରିଶ କୋଟି ଦେବଦେବୀ । ଏ ବ୍ୟବସାୟରେ ଅନେକ ସମୟରେ ପୁଂଲିଙ୍ଗ ସ୍ତ୍ରୀଲିଙ୍ଗ ଉଭୟ ତରଫକୁ ନଜର ନ ଦେଲେ କାର୍ଯ୍ୟୋଦ୍ଧାର ହେବା କଷ୍ଟ । ଆପଣ କହିପାରନ୍ତି ଯେ, ଓକିଲମାନେ ଆଇନ ବ୍ୟବସାୟୀ - ଆଇନରେ ହାକିମ ଶବ୍ଦଟା ପୁଂଲିଙ୍ଗ । କିନ୍ତୁ ଏ ତର୍କର ସନ୍ତୋଷଜନକ ଉତ୍ତର ଦେବାକୁ ମୁଁ ପ୍ରସ୍ତୁତ ଅଛି । ଦେଖନ୍ତୁ ସବୁ ବ୍ୟବସାୟରେ 'ଭେଲ' ଅଛି । ଲୁଣ ଏକ ମହଣ କିଣି ସେଥିରେ ପାଞ୍ଚ ସେର ବାଲି ମିଶାଇବାକୁ ହୁଏ, ଘିଅ ଏକ ମହଣ କିଣି ସେଥିରେ ତିନି ସେର ଆଳୁମଣ୍ଡ ଦେବାକୁ ହୁଏ । ସବୁ ବ୍ୟବସାୟରେ ଏପରି 'ଭିତିରି ପେଞ୍ଚ' ନ କଲେ ଲାଭବାନ୍ ହେବାର ସମ୍ଭାବନା ନାହିଁ । ତେବେ ଏ ବ୍ୟବସାୟଟା ଛାଡ଼ ଯିବ କାହିଁକି ? ଯେଉଁ ଓକିଲ କେବଳ ଆଇନ ବହି ଧରି ବସିବେ, ତାଙ୍କ ନିକଟକୁ ଲୋକେ ମୁହିଁବେ କାହିଁକି ? ମନେକରନ୍ତୁ, ପାଠ ଡାକିଲା, ପର ବାଡ଼ିରୁ ରାତି ଅଧରେ ପଣିସଟିଏ ଚୋରି କଲେ ଚାରିମାସ ମାମୁ ଘରେ ବାସ । ରାମ ପ୍ରଧାନ ଶ୍ୟାମ ବାଡ଼ିରୁ ପୂର୍ବୋକ୍ତ ଭାବରେ ପଣସଟିଏ ଚୋରିକଲା । ତେବେ ପାଠ ଅନୁସାରେ

ସେ ନିଃସନ୍ଦେହ ଭାବରେ ଚାରି ମାସ କତା କୁଟିବ । ଏ ତ ଧରାବନ୍ଧା କଥା । ତାହାହେଲେ ଓକିଲାତି ବ୍ୟବସାୟର ମାହାତ୍ମ୍ୟ କାହିଁ ? ଖାଲି ଆଇନ ବହି ଧରି ବସିଲେ ରାମ ଜେଲଖାନାକୁ ଯିବ । ଯେବେ ଜେଲଖାନାକୁ ଯିବାଟା ଅବଶ୍ୟମ୍ଭାବୀ, ତେବେ ଓକିଲଙ୍କୁ ପଇସାଟିଏ ଦେବ କାହିଁକି ? ଏଥିପାଇଁ କହୁଁ, ଏ ବ୍ୟବସାୟରେ ଯେ 'ଭେଲ' ମିଶାଇ ନ ଜାଣେ, ତାର ପ୍ରସାର ହେବା ଆଶା ବିଡ଼ମ୍ବନା ମାତ୍ର । ଭେଲ ମିଶାଇ ଜାଣିଲେ ପ୍ରସାର ବଢ଼ିବାର ଆଶା । ମୋର କେତେକ ବନ୍ଧୁ ମୋତେ ପଚାରନ୍ତି, ''ତୁମେ କେବଳ ସଂସାରରେ ମନ୍ଦ ପାଖଟା ଦେଖୁଛ କାହିଁକି ?'' ମୁଁ ଉତ୍ତର କଲି ''ଭଲ ପାଖଟା ମୋତେ ଦିଶିଲା ନାହିଁ । ଯେଉଁ ପାଖଟା ଦିଶିଲା, ତାକୁ ଚାହିଁଲି ବୋଲି ମୋର ଦୋଷ କଣ ?'' ପାଠକମାନଙ୍କ ମଧ୍ୟରୁ ଅବଶ୍ୟ ଅନେକଙ୍କର ଏ ବ୍ୟବସାୟ ସହିତ ପରିଚୟ ଅଛି । ସେମାନଙ୍କୁ ପଚାରେ, 'ଭଲ ଓକିଲ'ର ଲୌକିକ ସଂଜ୍ଞା କଣ ? ମୋ କ୍ଷୁଦ୍ର ଅନୁଭବରୁ ଏତିକି ମାତ୍ର ବୁଝିଅଛି, ଯେ ବେଶି ସଂଖ୍ୟା ମାମଲା ଜିତନ୍ତି, ଯେ ଅସାଧ ମାମଲାକୁ ସାଧ କରନ୍ତି, ଯେ କଳେ ବଳେ କୌଶଳେ ମକ୍‌କେଲକୁ ଖସାଇ ଦେଇ ପାରନ୍ତି, ଯେ ଦଦରା ଡଙ୍ଗାରେ ଦରିଆ ପାରି ହୁଅନ୍ତି, ଯେ ବାର ହାତ କାକୁଡ଼ିରେ ତେରହାତ ମଞ୍ଜି ରଖି ପାରନ୍ତି, ସେ ବଡ଼ ଓକିଲ ନାମରେ ଅଭିହିତ । ଫଳରେ ମଧ ମୁଁ ଦେଖିପାରିଅଛି ଯେ ମୋ ପକ୍ଷରେ ମାମ୍‌ଲାର ହାଲଗୁଡ଼ାକ ଟାଣୁଆ ଅଛି, ଆଇନ ପଏଣ୍ଟ ଟାଣ ଅଛି, ସତ୍ୟ ଧର୍ମ ମୋ ଆଡ଼େ । କିନ୍ତୁ ଦୋଷ ମଧରେ ଏତିକି ଯେ ରଡ଼ି କରିବାର କ୍ଷମତା ମୋର ନାହିଁ, ପଦ୍ମତୋଳା ବୋଲିବାର ଅଭ୍ୟାସ ମୋର ନାହିଁ, ଭେଲ ମିଶାଇବାର ପରାକ୍ରମ ନାହିଁ, ଭୁରୁଡ଼ି ମୋତେ ଆସିଲା ନାହିଁ । ମୋ ମକ୍‌କେଲ ସପକ୍ଷରେ ଯାହା ଯାହା ଥିଲା, ମୁଁ ସାଧାସିଧା ଭାବରେ ପଦେ ଅଧେ କହି ବସିଗଲି । ବିପକ୍ଷ ପକ୍ଷର ନାମଜାଦା ଓକିଲ ବ୍ୟବସାୟରେ ପ୍ରବୀଣ, ସେ ଏଣୁ ତେଣୁ ଗୁଡ଼ିଏ ଅସାର କଥା ବିଳିବିଳେଇଲେ, ଧଳାକୁ କଳା କରିଦେଲେ - ଚାହୁଁ ଚାହୁଁ ମୁଁ ଜଳକା ହୋଇଗଲି । ମୋ ମକ୍‌କେଲଟି ହାତରେ ଆଖି ମଳି ମଳିକା ତାର ଘରକୁ ଗଲା ଓ ମୁଁ ରିକ୍ତ ପକେଟରେ ବସାକୁ ଫେରିଲି ଓ ରିକ୍ତ ପେଟରେ ବସାରେ ପଡ଼ି ରହିଲି । ଯାହାହେଉ, ଆମ୍ଭମାନଙ୍କ କର୍ତ୍ତବ୍ୟ ହାକିମ ଅନୁସରଣ ଓ ହାକିମ ପୂଜା । 'ହାକିମ' ଶବ୍ଦଟା ମୁଁ ଡିପୋଟି, ମେଜିଷ୍ଟ୍ରାର, କିମ୍ବା ଜଜ୍, କମିଶନାର ଅର୍ଥରେ କେବଳ ବ୍ୟବହାର କରୁ ନାହିଁ - ଏ କଥା ପାଠକମାନେ ସ୍ପଷ୍ଟ କରି ମନେ ରଖିବେ । ଏଥିରେ ସରକାରୀ, ବେସରକାରୀ, ଭିତିରି, ବାହାରି, ଦର୍ମାଖିଆ, ଅନାହାରୀ, ଭେକଧାରୀ, ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ସମସ୍ତେ ଗଲେ । ମୋ କଥାଗୁଡ଼ାକ ବ୍ୟକ୍ତିଗତ ଭାବରେ ଯେବେ କେହି ଅର୍ଥ କରି କ୍ଷୁବ୍ଧ ହୁଅନ୍ତି ତେବେ ଅବଶ୍ୟ ମୁଁ ନାଚାର । ମୁଁ କହୁଥିଲି, ଆମ୍ଭମାନଙ୍କର ବ୍ୟବସାୟରେ ହାକିମ ପୂଜା ପ୍ରଧାନ ଅନୁଷ୍ଠାନ । ପୂଜା କରିବାକୁ ହେଲେ ଦେବତା କି ପ୍ରକାର ପୂଜାରେ ସନ୍ତୁଷ୍ଟ ହେବେ ତାହା ଜାଣିବା ଉଚିତ । କେହି ମାଂସାଶୀ, କେହି ଜଳାଶୀ, କେହି ଶାକାଶୀ,

କେହି ବାକ୍ୟାଶୀ, କେହି ମତ୍ସ୍ୟାଶୀ, କେହି ଚର୍ମାଶୀ । ଏ କଥା ଜାଣିବାକୁ ହେଲେ ହାକିମମାନଙ୍କ ପ୍ରକୃତି ପର୍ଯ୍ୟାଲୋଚନା କରିବା ଆବଶ୍ୟକ । ଏହା କରିବା ସହଜ ନୁହେଁ । ତାହାହେଲେ ପ୍ରତ୍ୟେକ ହାକିମଙ୍କୁ ସାମନା କରିବାକୁ ହେବ । ଅତଏବ ଏମାନଙ୍କ ପ୍ରକୃତି ଅନୁସାରେ ଶ୍ରେଣୀ ବିଭାଗ କରି ରଖିଲେ ସର୍ବସାଧାରଣଙ୍କ ପ୍ରତି ସୁବିଧା ଓ ବ୍ୟବସାୟୀମାନଙ୍କ ଉପକାର ।

କେଉଁ ନୀତି ଅବଲମ୍ବନ କରି ଶ୍ରେଣୀ ବିଭାଗ କରିବାକୁ ହେବ ଏହା ଗୋଟିଏ ବିଷମ ସମସ୍ୟା । ଅନେକ ଦିନ ଭାବି ଭାବି ଏକଥାର ଗୋଟିଏ କିଛି କିନାରା କରି ପାରିଲି ନାହିଁ । ତେବେ ଗୋଟାଏ କଥା - ମହାଜନୋ ଯେନ ଗତଃ ସ ପନ୍ଥାଃ । ଆମ୍ଭମାନଙ୍କର ଶାସ୍ତ୍ରକାରମାନେ ମନୁଷ୍ୟ ଜାତିକୁ ଏହି ଭାବରେ ବିଭକ୍ତ କରି ଯାଇଛନ୍ତି । ଯଥା - ଅଶ୍ୱଜାତୀୟ, ମୃଗଜାତୀୟ, ବୃଷ ଜାତୀୟ ଓ ଶଶଜାତୀୟ । ସେହି ଉଦାହରଣକୁ ଅନୁସରଣ କରି ଆମ୍ଭେମାନେ ଜୀବ ପ୍ରତି ଅନୁସାରେ ହାକିମମାନଙ୍କ ଶ୍ରେଣୀ ବିଭାଗ କରିବୁଁ ।

୧ମ - ସିଂହଜାତୀୟ, ଏମାନ ଅତି ଉଚ୍ଚମନା ଅଥଚ କ୍ଷମତାଶାଳୀ । ମନୁଷ୍ୟକୁ ପଛଆଡୁ ମାରିବା କଥା ଏମାନଙ୍କ ଜାତକରେ ନାହିଁ । ଏମାନେ କ୍ଷମତା ଓ ବଳର ଅପବ୍ୟବହାର କରନ୍ତି ନାହିଁ । କୌଣସି କୌଣସି ହାକିମଙ୍କ ମଧ୍ୟରେ ବିବାଦ ଉପସ୍ଥିତ ହେଲେ ଏମାନେ କ୍ଷମତା ବିଧାନ କରନ୍ତି, ଅଥଚ ନିଜେ ଅଳ୍ପରେ ସନ୍ତୁଷ୍ଟ ହୁଅନ୍ତି । ଏମାନଙ୍କର ବାସ୍ତବ ପରାକ୍ରମ ସମ୍ବନ୍ଧରେ ଏମାନେ ନିଶ୍ଚିନ୍ତ, ଅତଏବ କ୍ଷମତା ଛାରଖାର ହୋଇଯିବା ଭୟରେ ଏମାନେ ସର୍ବଦା ନାଚୁ ନ ଥାନ୍ତି । ଭାଗବତର ଉକ୍ତି 'ଦଣ୍ଡିବା ଶକ୍ତି ଯା'ର ଥାଇ, ସେ ପୁଣି କ୍ଷମା ଆଚରଇ,'' ଚାଣକ୍ୟଙ୍କର 'ନମ୍ରନ୍ତି ଫଳିନୋଃ ବୃକ୍ଷାଃ ନମ୍ରନ୍ତି ଗୁଣିନୋ ଜନାଃ' ଏହି ଜାତୀୟ ହାକିମମାନଙ୍କଠାରେ ସାର୍ଥକ ହୁଏ । ମୁଁ ହାକିମ, ଅନ୍ୟମାନେ ମୋ ଗୋଡ଼ତଳରେ ବସିବା ଲୋକ, ମୋର କ୍ଷମତା ଅଛି, ଅତଏବ ସବୁବେଳେ ସେ କ୍ଷମତା ଚାଳନ କରିବି, ଏପରି ଭାବ ସେମାନଙ୍କ ମନକୁ ଛୁଇଁ ନାହିଁ ।

୨ୟ - ବ୍ୟାଘ୍ରଜାତୀୟ, ଏମାନଙ୍କଠାରେ ଉପରୋକ୍ତ ଗୁଣମାନଙ୍କ ମଧ୍ୟରୁ ଅନେକ ଅଛି । ଦୋଷ ମଧ୍ୟରେ 'ଅଖାଡୁଆ ସ୍ୱଭାବ' । ରାଗବେଳେ ଏମାନଙ୍କର ଆଗପଛ ଦୃଷ୍ଟି ନ ଥାଏ । କ୍ଷୁଧା ନାହିଁ, ଅଥଚ ପ୍ରକୃତି ପରବଶ ହୋଇ ତିନି ଗୋଟି ଜୀବଙ୍କ ଗଳା ଚିପିଦେଲେ । ସମୟ ସମୟରେ ଏମାନେ ଅନେକ ଅପ୍ରାସଙ୍ଗିକ କାର୍ଯ୍ୟ କରି ପକାନ୍ତି; କିନ୍ତୁ ଶତ୍ରୁକୁ ଆକ୍ରମଣ କରିବା ପୂର୍ବରୁ ତାକୁ ଆପଣାର ଉପସ୍ଥିତି ଜ୍ଞାପନ କରି ଦିଅନ୍ତି । ଯେଉଁ ଜୀବକୁ ଅନ୍ୟ କେହି ବଧ କରିଥାଏ, ସେ 'ମଡ଼ା'କୁ ଏମାନେ ଛୁଅନ୍ତି ନାହିଁ ।

୩ୟ - ବରାହଜାତୀୟ, ଏମାନେ ପରାକ୍ରମଶାଳୀ ଓ ପ୍ରତିହିଂସାପରାୟଣ। ଦନ୍ତପ୍ରଭାବରେ ଏମାନେ ସର୍ବଦା ଭୂପୃଷ୍ଠକୁ କର୍ଷଣ କରି ପକାନ୍ତି। ଦୟା, ମାୟା, ମମତାର ଧାର ଏମାନେ ଧାରନ୍ତି ନାହିଁ। ସର୍ବଦା ଏକାକୀ ରହିବାକୁ ସୁଖ ପା'ନ୍ତି। ଅପାଣା ଜାତୀୟ ଜୀବ କିମ୍ବା ଅନ୍ୟ ଜାତୀୟ ଜୀବଙ୍କ ସଙ୍ଗେ ମିଶିବାଟା ଏମାନଙ୍କର ପ୍ରକୃତିସିଦ୍ଧ ନୁହେଁ। ଏମାନେ ଶୂକର ଜାତିରୁ ଅପଭ୍ରଂଶ। ପ୍ରବାଦ ଅଛି ଯେ, ଗୋଟିଏ ଗୋଟିଏ ଶୂକର ଦଳଭ୍ରଷ୍ଟ ହୋଇ ଦିନ କେତେ ବନରେ ରହିଗଲେ ବରାହ ରୂପରେ ପରିଣତ ହୁଅନ୍ତି। ଶୂକର ଜାତିର ଅଖାଦ୍ୟ ଓ ଅକରଣୀୟ କିଛି ନାହିଁ। ସାଧାରଣ ଲୋକେ ଯାହାକୁ ଘୃଣା ଚକ୍ଷୁରେ ଦେଖନ୍ତି ତାହା ଏମାନଙ୍କ ଚକ୍ଷୁରେ ଅମୃତ ଓ ଦିବ୍ୟ। ଈଶ୍ୱରଦତ୍ତ ଜୀବ ପ୍ରକୃତି ଅନୁସାରେ ଏମାନେ ବାଧ ହୋଇ ଦଳବଦ୍ଧ ହୋଇଥାନ୍ତି; କିନ୍ତୁ ଟିକିଏ ସୁବିଧା ଓ ସୁଯୋଗ ପାଇଲେ ବାର୍‌ହା ରୂପରେ ସ୍ୱୀୟ ଦନ୍ତ ପ୍ରଭାବରେ ଭୂପୃଷ୍ଠକୁ ଖୋଳି ପକାନ୍ତି। କେହି ଶତ୍ରୁତା କରିବ, ଏକଥା ଯେବେ ଏମାନଙ୍କ କଳ୍ପନାରେ ଉଦୟ ହୁଏ, ତେବେ ଏମାନେ ଅନ୍ଧ ହୋଇଯାନ୍ତି ଓ ଦନ୍ତଦ୍ୱାରା ପ୍ରତିହିଂସା ନେବାକୁ ପ୍ରସ୍ତୁତ ହୁଅନ୍ତି।

୪ର୍ଥ - ମହିଷଜାତୀୟ, ଏମାନଙ୍କ ପ୍ରକୃତି ହିଂସ୍ର; କିନ୍ତୁ ଏମାନେ ମାସାଂଶୀ ନୁହନ୍ତି। 'ଅରଣା ମଇଁଷ' ରୂପରେ ଏମାନଙ୍କ ଭୟରେ ଅରଣ୍ୟ ପଥିକମାନଙ୍କର ଦୁର୍ଗମ ହୋଇ ଉଠେ। ଗୃହପାଳିତ ହୋଇ ସୁଦ୍ଧା ଏମାନଙ୍କ ଦୃଷ୍ଟିର ପ୍ରଖରତା କମେ ନାହିଁ। ଏମାନେ ଦଳବଦ୍ଧ ହୋଇ ରହିବାକୁ ଭଲ ପାଆନ୍ତି। କାରଣ ଦଳବଦ୍ଧ ହୋଇ ରହିଲେ ଶତ୍ରୁର ଆକ୍ରମଣରୁ ରକ୍ଷା ମିଳେ ଓ ଶତ୍ରୁକୁ ଉପଯୁକ୍ତ ରୂପେ ଶିକ୍ଷା ଦିଆ ଯାଇପାରେ, ଏ ନୀତି ଏମାନଙ୍କୁ ଉତ୍ତମରୂପେ ଜଣା। ଏମାନଙ୍କ ପ୍ରକୃତି ସର୍ବଦା ଗରମ। ଏମାନଙ୍କ ଚେହେରା କର୍କଶ ଓ ଭୟାନକ। ଅନ୍ୟ ସମସ୍ତ ଜାତି ଏମାନଙ୍କର ଶତ୍ରୁ। ପରାକ୍ରମଶାଳୀ ସିଂହ ଓ ବ୍ୟାଘ୍ର ପର୍ଯ୍ୟନ୍ତ ଏମାନଙ୍କ ଆଖଡ଼ାରେ ପଶି ପାରନ୍ତି ନାହିଁ।

୫ମ - ଗୋଜାତୀୟ, ଏମାନେ ନ ଥିଲେ ହାକିମ ସଂସାର ଏକାବେଳେ ଅସହ୍ୟ ହୋଇ ଉଠନ୍ତା। ଏ ଜାତି ଜଗତର ଉପକାରୀ, ଆପଣାର ବତ୍ସମାନେ ଉପବାସରେ ରହନ୍ତି; କିନ୍ତୁ ଜଗତ୍ ଏମାନଙ୍କ ନିକଟରେ ଋଣୀ। ଏମାନଙ୍କ ଦୁଧ ଆବ୍ରହ୍ମଚଣ୍ଡାଳ ସମସ୍ତଙ୍କର ଚକ୍ଷୁରେ ଅମୃତ। ଏମାନଙ୍କ ନିକଟରେ ଯାହା ହେୟ, ତାହା ଜଗତ୍ ଚକ୍ଷୁରେ ପରମ ପବିତ୍ର। ଜଗତକୁ ଏମାନେ ଦୟା ଚକ୍ଷୁରେ ଦେଖନ୍ତି। ଅପର ପ୍ରାଣୀକୁ ଏମାନେ ସ୍ନେହ ଚକ୍ଷୁରେ ଚାହାଁନ୍ତି। ଜଗତ ଏମାନଙ୍କୁ ତାଡ଼ନା କରି ସୁଖ ଉପଭୋଗ କରୁଥାଏ ଓ ଏମାନଙ୍କର ଜନ୍ମ ଜଗତର ଉପକାର ନିମନ୍ତେ - ଉପବାସରେ ରହିବେ, ଅଥଚ ଅମୃତ ନିସ୍ୟନ୍ଦନ ଦ୍ୱାରା ଜଗତର ଜୀବକୁ ପ୍ରତିପାଳନ କରୁଥିବେ।

୬ଷ୍ଠ - କୁକୁରଜାତୀୟ, ଏମାନେ ଅନେକ ଜୀବଙ୍କ ଅପେକ୍ଷା କ୍ଷୁଦ୍ର, କିନ୍ତୁ ଏମାନଙ୍କ ପରାକ୍ରମ ଅପେକ୍ଷାକୃତ ଅଧିକ। ଏମାନେ ସବୁ ସମୟରେ ସତେଜ ଥା'ନ୍ତି। ଏମାନଙ୍କ ଜୀବନ କାର୍ଯ୍ୟ ନିମନ୍ତେ ଉତ୍ସର୍ଗୀକୃତ। ଦିବାରାତ୍ରି ବିଶ୍ରାମ ନ ପାଇଲେ ମଧ୍ୟ ଚିନ୍ତା ନାହିଁ।

ନିମକହାରାମି ଏମାନଙ୍କର ଜାତକରେ ନାହିଁ । ଗଛରୁ ପତ୍ରଟାଏ ଝଡ଼ିଲେ ଏମାନେ ଶତ୍ରୁର ଆଗମନ ଆଶଙ୍କା କରି ଉନ୍ନିଦ୍ର ରହନ୍ତି । ଏ ଜାତିର ଗୋଟିଏ ପ୍ରଧାନ ଦୋଷ ଏହି ଯେ, ଏକ ସ୍ଥାନରେ ଏକରୁ ଅଧିକ ସଂଖ୍ୟାରେ ରହି ପାରନ୍ତି ନାହିଁ । ଏକ ସ୍ଥାନରେ ଏକରୁ ଅଧିକ ସଂଖ୍ୟକ ଜମା ହେଲେ ଗର୍ଜ୍ଜନ ରଡ଼ି ଦ୍ୱାରା ଘରଦ୍ୱାର ଭାଙ୍ଗନ୍ତି, ଆପନା ଆପନା ମଧ୍ୟରେ କାମୁଡ଼ା କାମୁଡ଼ି ହୁଅନ୍ତି ଓ ସେଥିରେ ଜଖମ ହୁଅନ୍ତି । ଏକ ସ୍ଥାନରେ ଏ ଶ୍ରେଣୀର ଯୋଡ଼ିଏ ହାକିମ ହେଲେ ସେ ସ୍ଥାନରେ ଶାନ୍ତି ନାହିଁ । ଏ ଶ୍ରେଣୀର ଦୁଇ ହାକିମଙ୍କ ମଧ୍ୟଭାଗରେ କୌଣସି ନିରୀହ ଜୀବ ପଡ଼ିଗଲେ ସେ ବିଚାରାର ନିସ୍ତାର ନାହିଁ । ରାଗାନ୍ୱିତ ହେଲେ ଏମାନେ ଆପଣା ଜୀବନର ଆଶା ରଖନ୍ତି ନାହିଁ ଓ ପ୍ରବଳ ପରାକ୍ରାନ୍ତ ବ୍ୟାଘ୍ର, ସିଂହ ଇତ୍ୟାଦିଙ୍କୁ ସୁଦ୍ଧା ଆକ୍ରମଣ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ ।

୭ମ - ଅଶ୍ୱଜାତୀୟ, ଏମାନେ ଦୁଇ ଶ୍ରେଣୀର । ଏକ ଶ୍ରେଣୀ ବିଲାତୀ Waler ଜାତୀୟ । ଏମାନଙ୍କ ପିଛା ଶହ ଶହ ଟଙ୍କା ଖରଚ । ଅଥଚ ଦିନ ମଧ୍ୟରେ ବଡ଼ ଜୋର୍ ଘଣ୍ଟାଏ ଦୁଇ ଘଣ୍ଟା କାମକରେ । ବାକି ସମୟ ମଖମଲ କନାରେ ପୋଛା ହେଉଥା'ନ୍ତି । ଯେଉଁ ପ୍ରଭୁଙ୍କ ସେବା ନିମନ୍ତେ ଏମାନେ ଅଭିପ୍ରେତ, ସେ ପ୍ରଭୁ ମଧ୍ୟ ଦୁଇଘଣ୍ଟା ଲେଖାଏଁ ଏମାନଙ୍କର ସେବା କରୁ ଥା'ନ୍ତି । ଚେହେରା ଦେଖିବାକୁ ସୁଶ୍ରୀ । ଟିକିଏ ଅସୁସ୍ଥ ହେଲେ ଏମାନଙ୍କ ପ୍ରତି ପେନ୍‌ସନ୍‌ର ବ୍ୟବସ୍ଥା ହୁଏ । ଅନ୍ୟ ଶ୍ରେଣୀ ଦଳଖିଆ, Hactrey ଜାତୀୟ । ଥାର୍ଡ଼କ୍ଲାସ ଭଡ଼ାଗାଡ଼ିରେ ଲାଗନ୍ତି । ଏମାନଙ୍କ ପିଛା ଖରଚ ଅତି କମ୍ । କିନ୍ତୁ ବହୁମୂଲ୍ୟ Waler ମାନଙ୍କ ଅପେକ୍ଷା ଏମାନେ ବେଶି ସହନଶୀଳ । ଏମାନେ ଚାରି ପଇସାର ଖାଆନ୍ତି, ଚାରି ଅଣାର କାମ ଦିଅନ୍ତି । ଏମାନଙ୍କ ଗୁହାରି ଶୁଣିବାକୁ କେହି ନାହିଁ । ବୁଢ଼ା ହେଲେ ଏମାନଙ୍କ ପେନ୍‌ସନ୍ ନାହିଁ - ବୟସଯାକ ହାଡ଼ଭଙ୍ଗା ପରିଶ୍ରମ କରି ବୁଢ଼ାହେଲେ ପୁନର୍ମୂଷିକୋ ଭବଃ । ଚାଲିଯାଅ, ସନ୍ତରା ବଣରେ ଦଳତକ ଉଦରସ୍ଥ କର । ଏପରି ସ୍ଥଳରେ ବାଧହୋଇ ଏମାନେ କେତେଗୁଡ଼ିଏ ଦୁର୍ଗୁଣ ଅଭ୍ୟାସ କରି ପକାନ୍ତି । ଏହି ଶ୍ରେଣୀର ଜୀବମାନଙ୍କ ମଧ୍ୟରେ ନାଡୁଆ, କାମୁଡ଼ା, ଉଡ଼ା, ଗନ୍ଧେଲିମାନଙ୍କ ସଂଖ୍ୟା ଅଧିକ ।

୮ମ - ଗର୍ଦ୍ଦଭ ଜାତୀୟ - ଏ ଜାତି ସମସ୍ତଙ୍କ ଗୋଡ଼ଘଷା ପଥର । ଯେ ପାଇଲା, ସେ ଥୋଡ଼ାଏ କାମ କରାଇ ନିଏ । ଅଥଚ ପାହାରେ, ଦି' ପାହାର କଷିଦିଏ । ଏମାନଙ୍କ ପିଛା ଏକ ପଇସା ଖରଚ ହୁଏ ନାହିଁ । ଧୋବାମାନେ ଦୁନିଆରେ ମଇଳା ଓ ସଫା ଲୁଗା ଏହିମାନଙ୍କ ପିଠିରେ ବୁହାନ୍ତି । ସୃଷ୍ଟିର ନିର୍ଯାତନ ଏହିମାନଙ୍କ ଉପରେ । ଏମାନେ ଅଳସ ଅଥଚ ସହନଶୀଳ । ସମୟ ପଡ଼ିଲେ ମହା ମହା ପ୍ରଭୁ ମଧ୍ୟ ଏମାନଙ୍କ ପାଦ ଧରନ୍ତି ।

୯ମ - ସର୍ପଜାତୀୟ - ଏମାନେ ଅଧିକାଂଶ ବିଷଧର, ଅନିଷ୍ଟପରାୟଣ ଓ ସର୍ବଦା ଧୂଳିରେ ଲୋଟି ହୁଅନ୍ତି । ସବୁ ସମୟରେ ପେଟେଇକରି ବଙ୍କାହୋଇ ଚାଲିବା ଏମାନଙ୍କର ପ୍ରକୃତି । ଜୀବକୁ କାମୁଡ଼ିବା ନିମନ୍ତେ ଏମାନଙ୍କର ଜନ୍ମ । ଏ ଜାତିରେ ଉଚ୍ଚ ନୀଚ ଅଛନ୍ତି । କିନ୍ତୁ ଉଚ୍ଚ ନୀଚ ମଧ୍ୟରେ ପ୍ରଭେଦ ଅତି ସାମାନ୍ୟ । ଏମାନଙ୍କୁ ଆୟତ୍ତ କରିବାର ଏକମାତ୍ର

ଉପାୟ 'ପଦ୍ମତୋଳା' ଓ ଏମାନଙ୍କ ଦଂଶନରୁ ରକ୍ଷା ପାଇବାର ଏକମାତ୍ର ଉପାୟ 'ଗାରିଡ଼ି ବିଦ୍ୟା' । 'ପଦ୍ମତୋଳା' ଓ 'ଗାରିଡ଼ି ବିଦ୍ୟା'ରେ ସାଧାରଣଙ୍କର ପ୍ରବେଶ ବା ଅଧିକାର ନାହିଁ । କେଳାମାନେ ଏ ଜାତିକୁ ବଶ କରିବାର ଉପାୟ ଜାଣନ୍ତି । ସମାଜରେ କେଳାମାନଙ୍କର ସଂଖ୍ୟା ଶତକଡ଼ା କେତେ ଜଣ ? ଦୁଃଖର ବିଷୟ ଯେ କେଳାମାନେ ସମାଜରେ ଅତି ନୀଚ ସ୍ଥାନ ଅଧିକାର କରିଥାନ୍ତି । ସର୍ପଜାତୀୟ ଜୀବଙ୍କୁ ସମସ୍ତେ ଘୃଣା କରନ୍ତି ଅଥଚ ସମସ୍ତେ ଡରନ୍ତି ।

୧୦ମ - ମଶକ ଜାତୀୟ - ଏମାନେ ଅସଂଖ୍ୟ । ମଶାରି ଛଡ଼ା ଏମାନଙ୍କ ଦାଉରୁ ରକ୍ଷା ପାଇବାର ଅନ୍ୟ ଉପାୟ ନାହିଁ । ଏମାନଙ୍କଠାରେ ଅନିଷ୍ଟ କରିବାର କ୍ଷମତା ଯେତେ ନାହିଁ, ବିରକ୍ତ କରିବାର କ୍ଷମତା ଚତୁର୍ଗୁଣ । ଏମାନଙ୍କଠାରେ ବିଷ ଅଛି; କିନ୍ତୁ ସେ ବିଷର ପରିମାଣ ଅତି ଅଳ୍ପ ଓ ଉଗ୍ର ନୁହେଁ । ଏତେ ଗୋଳମାଳ ଓ ବିରକ୍ତ କରନ୍ତି ସତ୍ୟ; କିନ୍ତୁ ବେଳକାଳ ଉଣ୍ଡି ଚାପୁଡ଼ାଟିଏ ବସାଇ ଦେଲେ ଖତମ୍ । କାମୁଡ଼ିବା ପୂର୍ବରୁ ଏମାନେ ଆଗେ କାନ ପାଖରେ ବେଢ଼ି ଗୁଣୁଗୁଣୁ ହୁଅନ୍ତି, ନର୍ଦ୍ଦମାରୁ ଏମାନଙ୍କର ଉତ୍ପତ୍ତି । ଏମାନଙ୍କ ପରମାୟୁ ମଧ୍ୟ ଅଳ୍ପ । ଲୋକେ ଏମାନଙ୍କୁ ତଡ଼ିବା ନିମନ୍ତେ ଧୂଆଁ ଦିଅନ୍ତି; କିନ୍ତୁ ତଦ୍ୱାରା ଏମାନଙ୍କୁ ତଡ଼ିବାର ସମ୍ଭାବନା ଅତି କମ୍ ।

ପାଠକ ମହୋଦୟ, ଜୀବଶ୍ରେଣୀ ଅନୁସାରେ ବିଭାଗ କରିବାକୁ ଗଲେ ଏ ବିଭାଗ ଛଡ଼ା ଯେ ଅନ୍ୟ ବିଭାଗ ହୋଇ ନ ପାରେ, ମୁଁ ଏହା କହୁ ନାହିଁ । ମୋ କ୍ଷୁଦ୍ର ଅନୁଭବରେ ଏହି କେତେଗୁଡ଼ିଏ ଶ୍ରେଣୀର ହାକିମଙ୍କ ସମ୍ପର୍କରେ ମୁଁ ଆସିଛି । ତେବେ ମୁଁ କଳ୍ପନା ଦ୍ୱାରା ଅନୁମାନ କରୁଛି ଯେ, ଶୃଗାଳ, ବାନର, ମୂଷିକ, ମେଷ, କଙ୍ଗାରୁ, ଉଷ୍ଟ୍ର, ଭେକ, ଶୂକର ଜାତି ଦଣ୍ଡଛତ୍ରଧାରୀମାନେ ଅଛନ୍ତି; କିନ୍ତୁ ସେଗୁଡ଼ାକ ସରଜମିନ ତଦନ୍ତ ନ କରି ଅନ୍ଦାଜି ଆପଣମାନଙ୍କୁ ଉପହାର ଦେବା ଯୁକ୍ତିଯୁକ୍ତ ମନେକଲି ନାହିଁ ।

ଉତ୍କଳ ସାହିତ୍ୟ/ ୯ମ ଭାଗ/୪ର୍ଥ ସଂଖ୍ୟା/ ୧୩୧୩ ସାଲ ।

## ।। ଚାରି ।।

'ଯେଡ଼େ ବାଉଁଶ, ତେଡ଼େ ପୋଲ' କଥାଟା ତଦାରଖ କରୁ କରୁ ଆସି 'କଳିପଠା'ର କିସମତ ଆଠପଣିରେ ଧକ୍‌କା ଲାଗିଲାଣି । ତେବେ ସୁଦ୍ଧା ମୁଣ୍ଡି ମାରିବାକୁ ଯାଏ ଦିନାକେତେ । ଜଣେ ବଡ଼ଲୋକ କହିଥିଲେ, ''ଜଣ ଜଣକର ଅନୁଭବ ଯେବେ ସମସ୍ତେ ଲେଖି ବସନ୍ତେ, ତେବେ କେତେ ନଭେଲକୁ ଚିତା କାଟି ଦିଅନ୍ତେ ପରା ।'' କଥାଟା ଏକା ଷୋଳପଣ ସତ; କିନ୍ତୁ ଲେଖୁଛି କିଏ, ଲେଖିଲେ ଦେଖୁଛି କିଏ । ଏଥିପାଇଁ ଆମ ନନା କହନ୍ତି, ପାଚିଲା ଦାଢ଼ିଆଙ୍କୁ ଦେଖିଲେ ଜୁହାର କରିବ । ଜୁହାର କରିବା ମତଲବଟା ଏହି ଯେ, କେଜାଣି ଅନୁଭବରୁ କଣିକାଏ ଶିଷ୍ୟଙ୍କ ଆଡ଼କୁ ଗଳି ପଡ଼ିବ । ଦିନେ ମୁଁ କହିଥିଲି

- ଦୁନିଆଟା ଅନ୍ଧାରୁଆ, ଏଥିପାଇଁ ସମ୍ପାଦକ ମହାଶୟ ମୋ ଉପରେ ଭାରି ଖପ୍‌ପା ହୋଇଥିଲେ । ଏବେ ଗଲା ଛାଡ଼ଖାଇ ଦିନ ତାଙ୍କୁ ଆମନ୍ତ୍ରଣ କରିଥିଲି । ଦେଖା ହେଲା ପରେ ପଚାରିଲି - 'ଦୁନିଆଟା ଅନ୍ଧାରୁଆ ନି ସାଫ୍ ସୁତୁରା ?' ସେ ଭିତରେ ଭିତରେ କଥାଟାକୁ ବୁଝିନେଇ ଟିକିଏ ମୁରୁକି ହସି ଦେଲେ । ମୁଁ ମୋର ପ୍ରଶ୍ନର ଉତ୍ତର ପାଇ ବୋଧହୋଇ ରହିଲି । ବାଲ୍ୟକାଳରୁ ସ୍ୱାଧୀନ ବ୍ୟବସାୟର କାଞ୍ଚନିକ ସୁଖରେ ବିଭୋର ହୋଇ ହାତଗୋଡ଼ ଭାଙ୍ଗି ଦରବୁଢ଼ା ହେବାବେଳକୁ ଓକାଲତି ବା ସ୍ୱାଧୀନ ବ୍ୟବସାୟରେ ପଶିଲି । ପହିଲେ ପହିଲେ ଶାମଲା ପଗଡ଼ି, ଚୋରି ଚପ୍‌କାନ୍ ପିନ୍ଧି ହାକିମମାନଙ୍କୁ ୨୪ ହାତ ଲମ୍ବା ସଲାମ ପକାଇ, ଶାଳଗ୍ରାମଙ୍କ ପର୍ଯ୍ୟନ୍ତ 'ହଜୁର, ହଜୁର' ବୋଲି ସମ୍ବୋଧନ କରି ମନ ଓରମାନଟା ମେଣ୍ଟାଇ ନେଲି । ପୋଷାକ ଇତ୍ୟାଦି ସଲାମ୍ ଓ ହଜୁର-ସମନ୍ୱିତ ଅବସ୍ଥାକୁ ସାହେବଙ୍କ ଚପରାସୀର ଅବସ୍ଥା ସଙ୍ଗରେ ତୁଳନା କରୁ କରୁ ଭାବିଲି, ଓକିଲଯାକ 'ଚପରାସୀ' । 'Writ large' ଇଂରାଜୀ ଶବ୍ଦଯୋଡ଼ିକ ଓଡ଼ିଆରେ ତର୍ଜମା କଲେ 'ହୀନ-ଚପରାସୀ' ଶବ୍ଦଟିର ସୃଷ୍ଟି କରିବାକୁ ହେବ । ଦେଖି ଦେଖି ମନ ସମ୍ଭାଳି ହେଲା ନାହିଁ । ପଦେ ଅଧେ ଅପ୍ରିୟ ସତ୍ୟ ମୁହଁରୁ ଫିଟିଗଲା । ସେଥିପାଇଁ ଜାତିଭାଇଙ୍କ ମଧ୍ୟରେ 'ଏକଘରିଆ' ହେଲି । ତେବେସୁଦ୍ଧା ସେ ଖୋଇ ଛାଡ଼ିଲା ନାହିଁ । ଘରେ ସେହି ଦୋଷରେ ଦୋଷୀ, ଗାଁକୁ ବାହାରିଲି, ସେଠାରେ ସେଇଆ, ପଦାକୁ ଆସିଲି - ସେଠାରେ ମଧ୍ୟ ସେହି । ଏବେ କରେ କ'ଣ ? ଏହା ଭାବୁ ଭାବୁ ଅଜଗବ ପୋଖରୀ ଭିତର ପାଣି ଦୁଇ ଫାଳ ହୋଇଗଲା, ମନେ ମନେ ଭାବିଲି - ବଡ଼ ମାଛଟାଏ । କଳ୍ପନା ଚକ୍ଷୁରେ କେତେ ସୁଖ ଦୃଶ୍ୟ ଦେଖିଗଲି । ପୋଖରୀ ମଧ୍ୟରେ ପଶିଗଲି । ପୋଖରୀଟା ତମାମ ଅଣ୍ଡାଳି ପକାଇଲି । ବ୍ରାହ୍ମଣିଆ ଦହି ଚୁଡ଼ା ଖିଆ କପାଳତ, ଗୋଟାଏ ଗୋମୁହାଁ କୁମ୍ଭୀର ହାବୁଡ଼ରେ ପଡ଼ିଗଲି । ସେତେବେଳେ ଗଜଉଦ୍ଧାରଣ ମୂର୍ତ୍ତିକୁ ସୁମରଣା କଲେ ଛାଡୁଛି କିଏ ? ଚାହୁଁ ଚାହୁଁ ହାତରେ ଦାନ୍ତ ଚିହ୍ନ ବସିଗଲା । ଏହି ସମୟରେ ସମ୍ପାଦକ ମହାଶୟ ପହୁଞ୍ଚିଗଲେ, ପଚାରିଲେ, କିହୋ ! ଏ କଣ ? ଏହି ପ୍ରଶ୍ନର ଉତ୍ତର ଦେବାକୁ ଆଜି ମୁଁ ପ୍ରସ୍ତୁତ । ଏଣେ ହାତଖଣ୍ଡକ କିମ୍ଭୀର ପାଟିରେ ।

ବିଚାରିଥିଲି, ସ୍ୱାଧୀନ ବ୍ୟବସାୟର ଗୌରବକୁ ବଜାଏ ରଖି, ଯେବେ ଖଣ୍ଡେ ବଡ଼ ହାକିମ ବା ଚାକିରି ମିଳିଯାଏ, ତେବେ ହାତୀ ଦାନ୍ତ ଉପରେ ସୁନା ଛାଉଣୀ ହୋଇଯିବ ଓ ଜୀବନଟା ସାର୍ଥକ ହେବ । ହାକିମଙ୍କୁ ସଲାମ କରି କରି ହାତ ବଧିରା ହୋଇଗଲାଣି । ଦିନାକେତେ ହାକିମ ହୋଇଗଲେ, 'ଉଧାର ମାଣକ ପାଞ୍ଚ ପା' ହିସାବରେ ପରିଶୋଧ ହୋଇଯିବ । ସତକୁସତ ଅନେକ ସଲାମ, ଅନେକ 'ହାଜୁର' ମିଳିଲା । ମନ ଯେତେ ଖୋଜୁଥିଲା ତହିଁରୁ ବେଶି ମିଳିଲା । ବିଚାରିଲି, ବ୍ରାହ୍ମଣିଆ କପାଳ ହାତୀ ଚଢ଼ାଠାରୁ ଅଧିକ ହବ । ଜିଣିଲେ ପରଶୁରାମ, ହାରିଲେ ବ୍ରାହ୍ମଣ ଭିକାରି; କିନ୍ତୁ ଯେଡ଼େ ବାଉଁଶ

ତେଡ଼େ ପୋଲ । ସ୍ୱାଧୀନ ବ୍ୟବସାୟରେ ଯେଉଁ ଗୃହ ଛିଦ୍ର, ଏଠାରେ ମଧ ସେଥିଯୋଗୁଁ ମୋ ଆସନ ଟଳମଳ । ହାକିମମାନେ ଯେ ପାଳି ଖଟନ୍ତି, ଏ କଥା ସ୍ୱାଧୀନ ବ୍ୟବସାୟରେ ଥିବା ପର୍ଯ୍ୟନ୍ତ ମୋ ମନରେ ପଶୁ ନ ଥିଲା । ହାକିମଙ୍କ ଦଶା ମୋତେ ଘୋଟିବାରୁ ବୁଝିଲି ଯେ 'ଉପର୍ଯ୍ୟୁପରି ପଶ୍ୟନ୍ତଃ ସର୍ବ ଏବ ଦରିଦ୍ରତା' ଅର୍ଥାତ୍ ଯେଡ଼େ ବାଉଁଶ ତେଡ଼େ ପୋଲ । ସ୍ୱାଧୀନ ବ୍ୟବସାୟରେ ଥିବା ସମୟରେ ଯେଉଁମାନଙ୍କୁ ବିଜେ ପ୍ରତିମା କରି ଖଟୁଲିରେ ମୁଣ୍ଡାଉଥିଲି ହାକିମ ଅବସ୍ଥାରେ ସେମାନଙ୍କ ଆଡ଼କୁ ଆଗେ ନଜର ଗଲା । ଏକ ସଲାମ କରିବାକୁ ବିରକ୍ତ ଲାଗୁଥିଲା, ଏବେ ରାତି ଅଧରୁ ଉଠି ଶହେ ସଲାମ କରିବା ପର୍ଯ୍ୟନ୍ତ ତର ସହିଲା ନାହିଁ । ଜଣେ ବନ୍ଧୁଙ୍କ ନିକଟକୁ ମନର ଆବେଗ ଖୋଲି ପତ୍ର ଖଣ୍ଡିଏ ଲେଖିଲି । ଚାକିରି କରି କି ଦୁଃଖରେ ପଡ଼ିଛି ଏକଥା ବ୍ୟାଖ୍ୟା କରି ଲେଖିଲି । ସେ ଉତ୍ତର ଦେଲେ, ''ଉତ୍କଳ ସାହିତ୍ୟ ପାଇଁ କାଠ ବାଉଁଶ ଯୋଗାଡ଼ ହୋଇଗଲା ।'' ସମ୍ପାଦକଙ୍କୁ ନିଜର ଦୁଃଖ ଜଣାଇଲି । ସେ କହିଲେ, ''ଏହିପରି ଯାଉ ଦିନା କେତେ'' । କାର୍ଯ୍ୟ କ୍ଷେତ୍ରରେ ଜଣେ ବାଲ୍ୟକାଳର ବନ୍ଧୁଙ୍କୁ ସମଭିବ୍ୟାହାରୀ ସ୍ୱରୂପ ପାଇଲି । ସେ କହିଲେ, ''ତଥାସ୍ତୁ'' । ଯାହାଙ୍କ ପାଖକୁ ଗଲି ସେ ତାଙ୍କ ପ୍ରଚକ୍ଷୁ ଖଣ୍ଡମାନ ଆଖିରେ ଦେଇ ମୋ ଆଡ଼କୁ ଚାହିଁଲେ । ମୁଁ ଏବେ କରେ କ'ଣ ?

ବିପଦ ଓ ଦୁଃଖର ମୂଲ୍ୟ ଅଛି । ବିପଦ ଓ ଦୁଃଖରେ ପଡ଼ି ଲୋକେ ଯେଉଁ ଅଭିଜ୍ଞତା ଲାଭ କରନ୍ତି ତାହା ତୁଳନାରେ ବିପଦ ବା ଦୁଃଖ କିଛି ନୁହେଁ । ବର୍ତ୍ତମାନ ଯେଉଁ 'ସ୍ୱଦେଶୀ' ଆନ୍ଦୋଳନରେ ଆଜି ଭାରତବର୍ଷ ପ୍ଳାବିତ, ତାହାର ଜନ୍ମ ବିପଦ ଓ ଦୁଃଖରୁ ସିନା । ଘଣାର ସୃଷ୍ଟି ନ ହୋଇଥିଲେ ପୃଥିବୀର ଆଠପଣ ଲୋକ ନୁଖୁରା ହୋଇଥାନ୍ତେ । ସେଥିପାଇଁ ଘଣାର ମୂଲ୍ୟ ବେଶି; କିନ୍ତୁ ଘଣା ବୁଲାନ୍ତି ଯେ, ତାଙ୍କର ସ୍ଥାନ ସମାଜରେ ନୀଚ । ଯାହାହେଉ, ମୋର ହାକିମି ଚାକିରିର ଯାହା ସୁଖ, ତାହା ଢେର ହୋଇଅଛି; କିନ୍ତୁ ପାଣିରେ ଘର କରି କିମ୍ଭୀରର ନାମ ସଂକୀର୍ତ୍ତନ କରିବା ସର୍ବତୋଭାବରେ ଉଚିତ । ପାଣିରୁ ବାହାରି ଶୁଖିଲାକୁ ଆସିଲେ, ଜାଣିବି ଯେ ମୋ କପାଳ ଖୁବ୍ ତେଜ । ନୂତନ କ୍ଷେତ୍ରରେ ଅନେକ ଗୁଡ଼ିଏ ମହାତ୍ମାଙ୍କର ସୁପରିଚୟ ମିଳିଲା ଓ ଅନେକ ଗୁଡ଼ିଏ ପରଦା ଖୋଲିଗଲା । ସେ ପରଦା ବର୍ତ୍ତମାନ ଆପଣମାନଙ୍କର ନିକଟରେ ଖୋଲିବି ନାହିଁ । ମଇଳା ଯେତେ ପଦାକୁ ନ ବାହାରେ ସଂସାର ତ ସେତିକି ମଙ୍ଗଳ । ଯାହାହେଉ, ସଂସାରଟାକୁ ନିରୀକ୍ଷଣ କରି ଯେତିକି ଦେଖୁଛି ସେତିକି ମୋର ପୂର୍ବର ଧାରଣଗୁଡ଼ିକ ଦୃଢ଼ତର ହେଉଅଛି ଓ କେତେ ଧାରଣା ଚୂନା ହୋଇ ଯାଉଅଛି ଓ ମନୁଷ୍ୟ ପ୍ରକୃତିର ଗୋଟିଏ ଗୋଟିଏ ନୂତନ ଅଧ୍ୟାୟ ମୋର ଦୃଷ୍ଟିଗୋଚର ହେଉଅଛି । ସେଥିପାଇଁ କହନ୍ତି, ଦୁନିଆ ଦୋ ରଙ୍ଗ, ଦୋ ରଙ୍ଗ ନ ହେଲେ ଦୁନିଆ ଚଳିବା କଷ୍ଟ । କିନ୍ତୁ କେଉଁ ଢଙ୍ଗର ପରିମାଣ ଦୁନିଆରେ ବେଶି, ତାହା ସ୍ଥିର କରିବାର ନାମ ମନୁଷ୍ୟତ୍ୱ । ସେ ମନୁଷ୍ୟତ୍ୱ ଥିଲେ ଆଜି ଆପଣମାନଙ୍କ ସମ୍ମୁଖରେ ଏପରି ଭାବରେ ଉପସ୍ଥିତ ହୋଇ ନ ଥାନ୍ତି ।

'ଯାହାର ମନ ଯେଡ଼େ ତାହାର ପ୍ରଭୁ ତେଡ଼େ' ଏଇ ଢଗଟି ଦୁନିଆଟାକୁ ଏକଦମ ବାସ୍ତବ ଜଗତରୁ ଉଡ଼ାଇନେଇ ଅନ୍ତର ଜଗତରେ ରଖିଦେଲା । କାରଣ ବାହ୍ୟଜଗତ ପରିବର୍ତ୍ତନଶୀଳ - ଖରା, ବର୍ଷା, ଝଡ଼, ତୋଫାନ ଓ ଶୀତରେ ବ୍ୟାପ୍ତ । ଭିତରକୁ ପଶିଲେ ଅନ୍ଦରମହଲ ଭିତରେ ଗଦି ଦିଆ କାଉଚ, ଶାଲ, ଦୋଶାଲ, ଝାଲରଲଗା ପଙ୍ଖା ବାହ୍ୟ ଜଗତର ସମସ୍ତ ବିପର୍ଯ୍ୟୟର ପ୍ରତିକାର ପ୍ରସ୍ତୁତ ହୋଇ ରଖା ହୋଇଅଛି । ସେଠାରେ ବାହ୍ୟ ଜଗତର କୌଣସି ଉପଦ୍ରବ ତୁମ୍ଭଙ୍କୁ ଆକ୍ରମଣ କରିପାରିବ ନାହିଁ, ତାଡ଼ିତ ଲୋକଦ୍ୱାରା ବାହ୍ୟଜଗତର ଅନ୍ଧକାର ସେଠାକୁ ସ୍ପର୍ଶ କରି ପାରୁ ନାହିଁ; କିନ୍ତୁ ଶରୀରଧାରୀ ହୋଇ ଅନ୍ତତଃ ମଳ ମୂତ୍ର ତ୍ୟାଗ କରିବା ନିମନ୍ତେ ବାହ୍ୟଜଗତକୁ ଆସିବାକୁ ହେବ । ସେତେବେଳେ ମୁହୂର୍ତ୍ତକ ଶୀତରେ କଲିଜା ଥରିଯିବ, ଉଦୁଉଦିଆ ଖରାରେ ମୁଣ୍ଡ ଫାଟିଯିବ; ତେବେ ସୁଦ୍ଧା ବାହ୍ୟ ଜଗତରେ ଚିର ବସନ୍ତର ଲୀଳାୟିତ ସ୍ଥାନ ଅଛି । ସେ ସ୍ଥାନଗୁଡ଼ିକ ଯୋଗୀମାନଙ୍କର ଆବାସଭୂମି, ଦେବତାମାନଙ୍କର କ୍ରୀଡ଼ାସ୍ଥଳ । ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସାର୍ଟିଫିକେଟ ହାସଲ ନ କରିବା ପର୍ଯ୍ୟନ୍ତ ବେତ୍ରହସ୍ତ ପ୍ରହରୀମାନେ ତୁମ୍ଭଙ୍କୁ ଆମ୍ଭଙ୍କୁ ସେଠାକୁ ଛାଡ଼ିଦେବେ କିଆଁ ? ଛାଡ଼ିଦେଲେ ଯେ ସେମାନଙ୍କର ଚାକିରି ଖଣ୍ଡମାନ ଯିବ । ଏପରି ସ୍ଥଳରେ ରାଜା ହୁଅ, ମହାରାଜା ହୁଅ, ଓକିଲ ହୁଅ, ହାକିମ ହୁଅ, ସ୍ୱାଧୀନ ହୁଅ, ପରାଧୀନ ହୁଅ, ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ନିମନ୍ତେ ପ୍ରାଣପଣେ ଚେଷ୍ଟାକର । ତାହା ନ କରି ଝାଲରଲଗା ପଙ୍ଖା ତଳେ ତାଡ଼ିତ ଲୋକ ସମ୍ମୁଖରେ ଗଦିଲଗା ତକିଆରେ କେତେ କାଳ ବସି ରହିବ । ବାହ୍ୟଜଗତକୁ ମୂତ୍ରୋତ୍ସର୍ଗ ହେଲେ ବାହାରିବ ତ । ସେତେବେଳେ ବୈଠକଖାନାର ଉପକରଣ କୌଣସି କାର୍ଯ୍ୟରେ ଆସିବ ନାହିଁ । ଈଶ୍ୱରସୃଷ୍ଟ ମାଲ ମସଲା ନେଇ କାର୍ଯ୍ୟ କରିବାକୁ ହେବ । ଜିତିଲେ ମନୁଷ୍ୟତ୍ୱ ହାରିଲେ ପଶୁତ୍ୱ ।

ଉତ୍କଳ ସାହିତ୍ୟ/୯ମ ଭାଗ/୭ମ ସଂଖ୍ୟା/୧୩୧୩ ସାଲ ।

## ।। ପାଞ୍ଚ ।।

କଟକର ଓକିଲମାନେ ସେଦିନ ଏକ ସଭା କରି ସିଦ୍ଧାନ୍ତ କଲେ ଯେ ଟରଣିମାନଙ୍କୁ ସାତ ସମୁଦ୍ର ଲଙ୍କା ଆରି କରିଦେବେ । ଏଥିନିମନ୍ତେ ଜଣ କେତେ ଟାଣୁଆ ଟାଣୁଆ ବ୍ୟକ୍ତିଙ୍କୁ ନେଇ ଗୋଟିଏ କମିଟି ଗଠିତ ହୋଇଯାଇଅଛି । ଏହି କମିଟି ଟରଣିମାନଙ୍କ ଉପଦ୍ରବରୁ ଅଦାଲତ ହତାକୁ ବାଡ଼ ବୁଜି ରକ୍ଷା କରିବେ ବୋଲି ବଦ୍ଧପରିକର ହୋଇଅଛନ୍ତି । ଏଥିମଧ୍ୟରେ ଉକ୍ତ କମିଟି ଟରଣିମାନଙ୍କର ଗୋଟିଏ ତାଲିକା ପ୍ରସ୍ତୁତ କରିଅଛନ୍ତି; କିନ୍ତୁ କାର୍ଯ୍ୟର ଗତି ଯେପରି ଦେଖାଯାଉଅଛି, ସେଥିରୁ ମୋ ଭଳି କେତେ ନିଷ୍କର୍ମାଙ୍କର ଭୟ ହେଉଅଛି ଯେ, ଏଣିକି ଟରଣିମାନେ ବୁଡ଼ିକରି ପାଣି ପିଇବେ । ତାହାହେଲେ କମିଟିଙ୍କ କଥା ତ ଛାଡ଼ । କମିଟିଙ୍କ ବାପା ତ ଠିକଣା ଲଗାଇ ପାରିବେ ନାହିଁ । ପିଲାଦିନର

ଗୋଟିଏ ଗପ ମନେ ପଡ଼ିଲା, - ଆଖୁନ୍‌ଜୀ ଚାଟ୍‌ମାନଙ୍କୁ ପ୍ରତିଦିନ କିଛି ଉତ୍ତମ ମଧ୍ୟମ ଦିଅନ୍ତି । ଦିନେ ଆଖୁନ୍‌ଜୀଙ୍କ ଅନୁପସ୍ଥିତିର ସୁଯୋଗ ପାଇ ଜଣେ ଚାଟ ଘୋଷୁଛି "ଆଖୁନ୍ ମରେ, ଆଖୁନ୍ ମରେ" । ଏହା ଶୁଣି ଆଉ ଜଣେ ସରସ ବୁଦ୍ଧିଆ ଚାଟ କହିଲା, "ଆରେ ବୋଲ୍ ବାବା ମରେ । ଆଖୁନ୍ ମର୍‌ନେସେ ବାବା ଦୁସରା ଆଖୁନ୍ ଲାଏଗା । ବାବା ମର୍‌ନେସେ ସବ୍ କଣ୍ଟା ନିକାସ୍ ।" ବର୍ତ୍ତମାନ କଥାଟା ମତେ ସେହିପରି ଲାଗୁଅଛି । ଆପଣା ଘରଟି ଭଲ କରି କାନ୍ଥ ନ ଦେଲେ ସବୁ କଥା ନିଷ୍ଫଳ । ଆମ୍ଭେମାନେ ବୁଦ୍ଧିମାନ୍, ପଢ଼ିଶୁଣି ହିତାହିତଜ୍ଞାନ ଲାଭ କରି ଏଫ୍.ଏ., ବି.ଏ., ଏମ୍.ଏ ପାସ୍ କରି ଆଇନ କାନୁନ ଜାଣିଶୁଣି, ଆମ ପାଟିର ଲଡ଼ବଡ଼ ଖୋଇ ବନ୍ଦ ହେଲା ନାହିଁ, ଟରଣିଟିଏ ଦେଖିଲାକ୍ଷଣି ଆମେ ତାକୁ ଶ୍ରୀ ମହାପ୍ରସାଦ ଜ୍ଞାନରେ ନିଲାମ ଡାକି ବସିଲୁଁ । ଆମେ ପରା ଧୋବଧାଉଳିଆ ! ଆମ ବେଳକୁ ସେ ଦୋଷ ଧରାଗଲା ନାହିଁ; କିନ୍ତୁ ଟରଣି ବିଚାରା ଖଡ଼ି ଧରିଛି କି ନାହିଁ, ମଫସଲରୁ ରୁଣ୍ଡେଇ ରାଣ୍ଡେଇ କଅଁଳେଇ ସଅଁଳେଇ ପାଣି ମାଠିଆରେ ସର ପକାଇ, ବହୁ କଷ୍ଟରେ ପୁଞ୍ଜାଏ ଯାତ୍ରୀ ଏଠାକୁ ଆଣିଲା, ସେଥିପାଇଁ ରେଳଷ୍ଟେସନ, ଷ୍ଟିମାର ଘାଟ, ମଫସଲ ପଡ଼ା ଗାଁ କେତେ ବୁଲିଲା, କେତେ ବାଟଖରଚ କଲା, ଆମ ପାଖରେ ଯାତ୍ରୀଙ୍କୁ ଆଣି ହାବୁଡ଼େଇ ଦେଲା, ଲାଭଯାକ ଆମେ ଆରାମଚଉକିରେ ବସି ଟାକୁକିନି ଗିଳିଦେଲୁଁ । ଟରଣି ବିଚାରା କହିଲା, "ମୁଁ ଏତେ ପରିଶ୍ରମ କରିଛି, ମୋ ମୂଲ ଦିଅ ।" ସେ ପରା ଗରିବ । ସେଥିପାଇଁ ତା ନାମରେ ମାର୍କା ମରିଗଲା, ତାକୁ ଆମେ ସମସ୍ତେ ମିଳି ସାତସମୁଦ୍ର ଲଙ୍କା ପାରି କରିଦେବା । କିନ୍ତୁ ଭାଇ, ଥରେ ଭଲା ଭାବୁ ନାହଁ ଯେ, ଯେବେ ତାକୁ ଶାସ୍ତି ଦେବ, ତେବେ ତା ପୋଷଣାହାରୀଙ୍କୁ ମଧ ଉପଯୁକ୍ତ ଶାସ୍ତି ଦିଅ - ଆଇନରେ ପଢୁଛ, ଯେ ଦୋଷ କରେ ସେ ଦୋଷୀ, ଯେ ପ୍ରଶ୍ରୟ ଦିଏ (abettor) ସେ ମଧ ଦୋଷୀ । ଟରଣିମାନଙ୍କୁ ତ ଛାପା ମାରିଦେଲ, ଯେଉଁ ଅର୍ଥରେ ଟରଣି ପାଷଣ୍ଡ, ସେହି ଅର୍ଥରେ ଟରଣିଙ୍କ ପ୍ରଶ୍ରୟଦାତାମାନେ ପାଷଣ୍ଡ, ବରଞ୍ଚ ମୁଁ କହେଁ, ଧୋବଧାଉଳିଆଯାକ ଦୁର୍ବୃତ୍ତ, ପାଷଣ୍ଡ । ଟରଣି ସୃଷ୍ଟି କାହା ଯୋଗୁଁ, ଏ ପ୍ରଶ୍ନ କାହାରି ମନରେ ଉଦୟ ହେଉ ନାହିଁ । ଏତେ ବଡ଼ଲୋକ ଏକାଠେଇଁ ହେଉଛ, ଦୁନିଆଟାଯାକ ଗାଇ ବୁଲୁଛ ଯେ ଓକିଲାତି ବ୍ୟବସାୟଟା honourable profession ଅର୍ଥାତ୍ 'ଗୋଟିକଯାକ ତୁଳସୀ' । ହାକିମମାନଙ୍କ ଅବିଚାରରେ ତୁମ୍ଭମାନଙ୍କ ରକ୍ତ ଗରମ ହୋଇଯାଉଛି; କିନ୍ତୁ ତୁମ୍ଭମାନଙ୍କ ଭିତରୁ ଯେ ଘୁଷୁରି ବୃତ୍ତି କରୁଛନ୍ତି, ତାଙ୍କୁ ଚାହିଁଲା ବେଳକୁ ତୁମ ଆଖି ଅନ୍ଧ । ସେଥିପାଇଁ କହନ୍ତି, "ରାଜନ୍ ! ସର୍ଷପମାତ୍ରାଣି ପରଛିଦ୍ରାଣି ପଶ୍ୟସି ।" ଆତ୍ମ ଦୋଷ ଦେଖାଯାଉ ନାହିଁ ? ଯେବେ ଟରଣିମାନଙ୍କୁ ବାହାର କରିଦେବାକୁ କୃତସଂକଳ୍ପ ହେଇଅଛ, ଯେବେ ଟରଣି ବ୍ୟବସାୟକୁ ସମୂଳେ ଉତ୍ପାଟିତ କରିବାକୁ ବସିଅଛ, ତେବେ 'ଆଖୁନ୍ ମରେ' ନ କରି 'ବାବା ମରେ' କର - ଯେଉଁ ଓକିଲମାନେ ଗୋପନରେ ହେଉ, ପ୍ରକାଶ୍ୟରୂପେ ହେଉ ଟରଣିମାନଙ୍କୁ ପ୍ରଶ୍ରୟ

ଦେଉଅଛନ୍ତି, ସେମାନଙ୍କଠାରେ ହାଲକା ଛାପା ଦିଅ । ନିଆଁକୁ ଅଣ୍ଟିରେ ପୂରାଇଲେ ଅଣ୍ଟି ପୋଡ଼ିଯିବ । ଏ କଥା ନ ଯେ ସମ୍ଝେ, ସେ ମୂର୍ଖ, ସେ ବାତୁଳ । ଏ କ୍ଷେତ୍ରରେ ମୁହଁଭୁରୁଡ଼ି କଲେ କିଛି ଫଳ ନାହିଁ । ଯେବେ ପ୍ରକୃତରେ ସାହସ ଅଛି, ଯେବେ ସ୍ୱାଧୀନ ଓ ସତ୍ ବ୍ୟବସାୟର ନାମ ବଜାୟ ରଖିବାକୁ ଏଡ଼େ ଉତ୍କଣ୍ଠିତ, ତେବେ ସତ୍‌ସାହସ ଦେଖାଅ, ଅସତ୍‌କୁ ଆପଣା ଘରେ ମଧ ପ୍ରଶ୍ରୟ ଦିଅ ନାହିଁ । ଏହା ନ କରି 'କାଣୀ ବିରାଡ଼ି କୁଜି ଅସରପା ଉପରକୁ' ହେଲା ଭଳି ଟରଣିମାନଙ୍କୁ ବାହାର କରିଦେଲେ କିଛି ହେବ ନାହିଁ; ତୁମ ଭାଇଆମାନେ ବୁଡ଼ିକରି ପାଣି ପିଇବେ । ଟରଣିମାନେ କଚେରି ମାଡ଼ିବେ ନାହିଁ ସତ; କିନ୍ତୁ ଖାମିଦଙ୍କ ଘରକୁ ଯାଇ ସେଠାରେ ଆପଣାର କାର୍ଯ୍ୟ ଅଞ୍ଜାମ କରିବେ । ଏହିପରି ନିଶାପକୁ କହନ୍ତି 'ବିସ୍‌ମିଲ୍ଲାମେ ଗଲତ୍' । ଟରଣିଙ୍କ ନାମରେ ତାଲିକା କରିବାକୁ ଏଡ଼େ ସଜ ପଡ଼ିଲା; କାରଣ ସେମାନେ ପରା ଗରିବ । ତାଙ୍କୁ ମାଇଲେ ତାଙ୍କର ପିଠିରେ ପଡ଼ିବାକୁ କେହି ନାହିଁ; କିନ୍ତୁ ଟରଣିପୋଷା ଖାମିଦଙ୍କ ଲିଷ୍ଟ୍ କରି ପକାଇଲେ ଦେଖନ୍ତି କେଡ଼େ ସତ୍ ସାହସ, ବ୍ୟବସାୟର ଇଜ୍ଜତ୍ ରଖିବାରେ କେଡ଼େ ତତ୍ପରତା । କେତେ ଜଣ ଅବଶ୍ୟ ଲୁଚାଚୋରା ଟରଣିପୋଷା ଅଛନ୍ତି । ସେମାନେ ସିନା ସହଜରେ ଧରା ପଡ଼ିବେ ନାହିଁ; କିନ୍ତୁ ଏପରି କେତେ ଭାଇଆ ଅଛନ୍ତି, ତାଙ୍କ କଥା ତ ସମସ୍ତଙ୍କୁ ଜଣା - ସେମାନଙ୍କୁ ଏକଘରିଆ କରୁ ନାହଁ କାହିଁକି ? ତାହା କଲେ ଜାଣନ୍ତ ଯେ ସତକୁ ସତ ଯେଉଁମାନେ ଏ ଆନ୍ଦୋଳନର ମୂଳ, ସେମାନେ ମନପ୍ରାଣ ଢାଳିଦେଇ ଓକିଲାତି ବ୍ୟବସାୟର ମଇଳାଯାକ ସାଫ୍‌ସୁତରା କରିବାକୁ ପ୍ରସ୍ତୁତ । ନଇଲେ 'ବୁଢ଼ୀ ଦିନେ ହରିମନ୍ଦିର ଚିତା' କେଉଁ ଆଡ଼କୁ ପାଏ ? ବର୍ତ୍ତମାନ ଯେଉଁ ପେସାର ବାନା ଧରି ଆମ୍ଭେମାନେ ସମାଜରେ ଉଚ୍ଚାସନ ପାଇବାକୁ ଲାଳାୟିତ, ଟିକିଏ ଭାବି ଦେଖିଲ ଭଲା, ସେହି ବାନାର ଆବରଣରେ କି କଦର୍ଯ୍ୟ ଓ ଜଘନ୍ୟ କାର୍ଯ୍ୟମାନ ହେଉ ନାହିଁ ? କି କୁତ୍ସିତ ଆଚରଣ କରାଯାଉ ନାହିଁ । ତେବେ ସୁଦ୍ଧା ମୁହଁଭୁରୁଡ଼ି ଛାଡ଼ିବା ନାହିଁ । ଏପରି କରି ଯାହା ଟିକିଏ ଇଜ୍ଜତ ଅଛି, ସେତକ ପଦାରେ ପଡୁଛି । ଓସ୍ତାତ ଟରଣିଯାକ ତୁମ ପାଟି ଶୁଣି ଦାନ୍ତ ଲେଫେଡ଼ି ଦେଉଅଛନ୍ତି, ବିଚାରୁଛନ୍ତି ଯେ ''ତୁମେ ଆମର କିଛି କରିପାରିବ ନାହିଁ, କାରଣ ତୁମ୍ଭର କୁଳନନ୍ଦନ ଓ କୁଳନନ୍ଦନମାନେ ଆମ୍ଭମାନଙ୍କଠାରୁ ବର୍ତ୍ତମାନ ପ୍ରକାଶ୍ୟରେ କୃପାଭିକ୍ଷା କରୁ ଅଛନ୍ତି ଓ ତୁମ୍ଭମାନଙ୍କ ନିର୍ଦ୍ଧାରଣମାନ (Resolutions) ପାସ୍ ହୋଇଗଲେ ଚୁପ୍ ଚୁପ୍ ଆମ୍ଭରିମାନଙ୍କ ନିକଟରେ କୃପାଭିକ୍ଷା କରିବେ । ଆମ୍ଭମାନଙ୍କର ଆସନ ଟଳିବାର ନୁହେଁ ।'' Legal Practitioners Act ଓକିଲଙ୍କ ଆଇନ ଖଟୁଛି ଗରିବ ଟରଣିଙ୍କ ଉପରେ; କିନ୍ତୁ ଓକିଲକୁଳତିଳକମାନେ 'ବେକସୁର ଖଲାସ' । ଏହାକୁ କହନ୍ତି 'ଆଣ୍ଡୁଆଡ଼ ବୁଝାମଣା' । ଏଥିରେ ବିରକ୍ତ ହେବାର କିଛି କଥା ନାହିଁ । ଯେବେ ଯୁଦ୍ଧକୁ ବାହାରିଲ, ତେବେ ଶତ୍ରୁକୁ ମାରିବାକୁ ପ୍ରସ୍ତୁତ ହୁଅ । ଆପେ ମଧ ମରିବାକୁ ପ୍ରସ୍ତୁତ ହୁଅ । ପର ପୁଅ

ବୋଲି ଦି’ ବିଧା ପକାଇବି, ଆପଣା ପୁଅର ପିଠି ଆଉଁଶିବି - ଏପରି ନିଶାପରେ କୌଣସି କାଳେ କୌଣସି ସ୍ଥାନରେ ଜୟ ହୋଇ ନାହିଁ। କଳିକାଳରେ କଟକର ଓକିଲଖାନାରେ ମଧ ଜୟ ହେବ ନାହିଁ। ଏକଥା ବେଦର ଗାର। ମାନିଲେ ଉତ୍ତମ, ନ ମାନିଲେ ଆପଣା ଦେହ ଖଣ୍ଡିଆ ହେବ, ଲୋକେ ହସିବେ। ଏ ସମ୍ବନ୍ଧରେ ପଦେଅଧେ କଥା ବାଇ ମାହାନ୍ତି ତାଙ୍କ ପାଞ୍ଜିରେ ଲେଖିଥିଲେ। ବର୍ତ୍ତମାନ ଓକିଲଭାଇମାନଙ୍କ ଚୈତନ୍ୟ ଉଦୟ ହେଲା, ଏହା ବଡ଼ ଆନନ୍ଦର ବିଷୟ; କିନ୍ତୁ ଏତିକିରେ ସ୍ୱସ୍ତିବାଚନ ନ ଦେଲେ ଆହୁରି ଆନନ୍ଦର ବିଷୟ ହେବ। ଯେବେ ନାଗରାଟା ପିଟିଦେଇ ପୁନର୍ବାର ସମସ୍ତେ କବାଟ କିଳିଦେଇ ଶେଯ ଘୋଡ଼ି ହୋଇ ଆଖି ବୁଜିଦେବ, ତେବେ ମିଛରେ ଏ ଗଡ଼ବଡ଼ିରେ ମାତିଛ କିଆଁ ? ସବୁ କଥା କୋଦିଣ୍ଡା ନିଶାପରେ ପରିଣତ ହେଲେ ପରିଶ୍ରମ ମାତ୍ର ସାର ହେବ। ଆମ ଗାଁରେ ଜଣେ ପାଗଳ ଥିଲା। ସେ କହୁଥିଲା, ‘‘ହକ୍ କହେଗା, ଗୁରୁ ଚିଡ଼େଗା ତ ଚିଡ଼େଗା।’’ ଗୁରୁ ବୋଲି, ବୟୋବୃଦ୍ଧ ବୋଲି, ବେଶି ବୁଦ୍ଧିଆ ବୋଲି ଜୁହାର କରିବି; କିନ୍ତୁ ତିଳକ ଦେଖି ମନରେ ଭକ୍ତିର ଉଦ୍ରେକ ହେବ ନାହିଁ।

ଉତ୍କଳ ସାହିତ୍ୟ/୯ମ ଭାଗ/୧୧ଶ ସଂଖ୍ୟା/୧୩୧୩ ସାଲ।

## ।। ଛଅ ।।

ଚଳିତ ମେ ମାସ ୨ ତାରିଖର କଲିକତା ଗେଜେଟ୍ ପଢୁ ପଢୁ ୧୯୦୧ ମସିହାଠାରୁ ୧୯୦୫ ମସିହା ପର୍ଯ୍ୟନ୍ତ ପାଞ୍ଚ ବର୍ଷର ଓଡ଼ିଶା ଶାସନ ପ୍ରଣାଳୀର ବିବରଣ ପାଠ କରି ମାନ୍ୟବର ବଙ୍ଗଳା ହତାର ମାନ୍ୟବର ଛୋଟଲାଟ ବାହାଦୁର ଯେଉଁ ମନ୍ତବ୍ୟ ପ୍ରକାଶ କରିଅଛନ୍ତି, ତହିଁରେ ‘ଅପରାଧ’ ହେଡ଼ିଙ୍ଗରେ ଯାହା ପ୍ରକାଶିତ ହୋଇଅଛି, ତାହା ‘ହାଲଚାଲ’ର ଅନ୍ତର୍ଗତ ବୋଲି ଭାବି ପାଠକମାନଙ୍କୁ ଜଣାଇବା ଉଚିତ ବୋଧକଲି। ତହିଁର ମର୍ମ ଏହି - ‘‘ଏହି ପାଞ୍ଚ ବର୍ଷ ମଧ୍ୟରେ ଓଡ଼ିଶାରେ ଅପରାଧ କ୍ରମେ କ୍ରମେ କମିଅଛି। ଏଥି ପୂର୍ବ ପାଞ୍ଚ ବର୍ଷରେ ଅପରାଧର ପରିମାଣ ଅତିଶୟ ଅଧିକ ବଢ଼ିଥିଲା। ଏପରି ପୂର୍ବେ କେବେ ହୋଇ ନ ଥିଲା। ଏହି ଆଧିକ୍ୟର କାରଣ - (୧) ଭୂରାଜସ୍ୱ ବନ୍ଦୋବସ୍ତ। (୨) ରେଳର ଆରମ୍ଭ। ବନ୍ଦୋବସ୍ତ ଯୋଗୁଁ ଜମିଦାର ପ୍ରଜାଙ୍କ ମଧ୍ୟରେ ଗୋଳମାଳ ହୋଇଥିଲା, ରେଲ୍ ଯୋଗୁଁ ଅନେକ ବିଦେଶୀ ଲୋକ ଆସିଥିଲେ। xxx ଓଡ଼ିଶାରେ ଗୁରୁତର ଅପରାଧ ବିରଳ। ସାଧାରଣତଃ ଓଡ଼ିଆମାନେ ଶାନ୍ତିପ୍ରିୟ ଓ ଆଇନ-ଅନୁଗତ ଜାତି ଅଟନ୍ତି। ପେସାଦାର ବଦ୍‌ମାସ୍ ଓଡ଼ିଶାରେ ନାହାନ୍ତି ବୋଲି କହିଲେ ଚଳେ।’’

ଏ ଚିତ୍ରଟି ଦେଖି ମନରେ ବଡ଼ ଆନନ୍ଦ ଜାତ ହୁଏ। ସ୍ତ୍ରୀ ଶିକ୍ଷା ସମ୍ବନ୍ଧରେ ଯେଉଁ ମନ୍ତବ୍ୟ ପ୍ରକାଶିତ ହୋଇଅଛି, ତାହା ବିଶେଷ ଆଶାପ୍ରଦ। ତାହା ଏହି - ‘‘ବାଳିକା

ଶିକ୍ଷା କେତେ ବର୍ଷରେ ଓଡ଼ିଶାରେ ବିଶେଷ ଉନ୍ନତି ଲାଭ କରିଅଛି । ସବୁ ସ୍ଥାନ ଅପେକ୍ଷା ବାଲେଶ୍ୱର ଏ ସମ୍ବନ୍ଧରେ ବିଶେଷ ଉନ୍ନତି ଦେଖାଇଅଛି । ଏହି ପାଞ୍ଚ ବର୍ଷ ପୂର୍ବେ ବାଲେଶ୍ୱର ଜିଲ୍ଲାର ପାଠଶାଳାରେ ପଢୁଥିବା ବାଳିକା ସଂଖ୍ୟା ୨୦୦୫ ଥିଲା । ବର୍ତ୍ତମାନ ତାହା ୭୪୬୨ ହୋଇଅଛି ।'' ଓଡ଼ିଶାର ଭବିଷ୍ୟତ୍ ଏ ସମ୍ବନ୍ଧରେ ଉଜ୍ଜ୍ୱଳ ଦେଖା ଯାଉଅଛି । ଗଭର୍ଣ୍ଣମେଣ୍ଟ ସ୍ତ୍ରୀ ଶିକ୍ଷା ପ୍ରଚାର ସମ୍ବନ୍ଧରେ ଚେଷ୍ଟିତ ଥିବା ଆମ୍ଭମାନଙ୍କ ଜାତି ପ୍ରତି ଆନନ୍ଦ ଓ ଆଶାର ବିଷୟ, ସନ୍ଦେହ ନାହିଁ । ଓଡ଼ିଶାରେ କୃଷିର ଉନ୍ନତି ସମ୍ବନ୍ଧରେ ଗଭର୍ଣ୍ଣମେଣ୍ଟ ଚେଷ୍ଟା ଆରମ୍ଭ କରିଅଛନ୍ତି; କିନ୍ତୁ ଶିଳ୍ପୋନ୍ନତି ସମ୍ବନ୍ଧରେ କଠୋର କର୍ତ୍ତବ୍ୟ ବର୍ତ୍ତମାନ ଗଭର୍ଣ୍ଣମେଣ୍ଟଙ୍କ ଆଗରେ ରହିଅଛି । ଦେଶୀୟ ଶିଳ୍ପୀଙ୍କର ଓ ତନ୍ତୁବାୟମାନଙ୍କ ଅବସ୍ଥା ବର୍ତ୍ତମାନ ଅତି ଶୋଚନୀୟ । ସେମାନଙ୍କ ଅବସ୍ଥା ଉନ୍ନତ ହେବା ସର୍ବତୋଭାବରେ ବାଞ୍ଛନୀୟ । ଓଡ଼ିଶାର ବାଣିଜ୍ୟ ବର୍ତ୍ତମାନ ବିଦେଶୀମାନଙ୍କ ହସ୍ତରେ ନ୍ୟସ୍ତ । ଓଡ଼ିଆମାନେ ସମ୍ମିଳିତ ଚେଷ୍ଟା ଦ୍ୱାରା ମୂଳଧନ ଖଟାଇବାକୁ ଶିଖି ନାହାନ୍ତି ।

ଓଡ଼ିଶାର ହାଲଚାଲ ବିଷୟ ଭାବୁ ଭାବୁ ହାଲଚାଲ ସମ୍ବନ୍ଧରେ ଗୋଟିଏ କଥା ମନେ ପଡ଼ିଗଲା । ଏଥରକ କଟକର ସେସନ୍ସ ଜଜଙ୍କ ଅଦାଲତରେ ଅନେକ ସ୍ତ୍ରୀ-ଆସାମୀଙ୍କର ବିଚାର ହୋଇଗଲା । ସେଥିମଧ୍ୟରୁ ଅଧିକାଂଶ ଜାରଜ ସନ୍ତାନ ହତ୍ୟା ବା ସନ୍ତାନ ତ୍ୟାଗ ଅପରାଧରେ ଅଭିଯୁକ୍ତ ହୋଇଥିଲେ । ଗୋଟିଏ ସନ୍ତାନ ହତ୍ୟାକାରିଣୀକୁ ଜଜ୍ ସାହେବ ୩ବର୍ଷ ସଶ୍ରମ କାରାବାସର ବ୍ୟବସ୍ଥା କରିଥିଲେ । ସେ ହାଇକୋର୍ଟରେ ଅପିଲ କରିବାରୁ ହାଇକୋର୍ଟର ବିଚାରପତିମାନେ ତାକୁ ୧ବର୍ଷ କାରାବାସର ଆଦେଶ ଦେଇ ତଳଲିଖିତ ଭାବରେ ମନ୍ତବ୍ୟ ପ୍ରକାଶ କରିଅଛନ୍ତି ।

''ଏହି ଅପରାଧ କଟକରେ ସାଧାରଣ (common) । ଏଥି ନିମନ୍ତେ ଏକ ବର୍ଷ ସଶ୍ରମ କାରାବାସ ଯଥେଷ୍ଟ ହେବ । ଯେଉଁମାନେ ଏହି ସ୍ତ୍ରୀମାନଙ୍କୁ ଏ ଅପରାଧରେ ଲିପ୍ତ କରନ୍ତି, ସେହି ପୁରୁଷମାନଙ୍କୁ ଆମ୍ଭେମାନେ ଦଣ୍ଡ ଦେବାକୁ ଅକ୍ଷମ । ପରନ୍ତୁ ଏହି ସ୍ତ୍ରୀମାନେ ଏ ପ୍ରକାର ସନ୍ତାନମାନଙ୍କୁ ରଖିବାକୁ ଏକାନ୍ତ ଅକ୍ଷମ - କାରଣ, ସମାଜ ତାହାର ବିରୋଧୀ (Society is against keeping these children.)''

ଆଶ୍ଚର୍ଯ୍ୟର ବିଷୟ ଯେ ଏଥର ଦୌରାରେ କଟକର ସବୁ ଅଞ୍ଚଳର (କଟକ, କେନ୍ଦ୍ରାପଡ଼ା, ଯାଜପୁର, ଜଗତ୍‌ସିଂହପୁର) ସମାଜର ପ୍ରତିନିଧି ସ୍ୱରୂପ ସ୍ତ୍ରୀ-ଆସାମୀମାନେ ଆସିଥିଲେ । ଏଥିରୁ ସମାଜର ଯେଉଁ ଜୀବନ୍ତ ଚିତ୍ରଟି ଆମ୍ଭମାନଙ୍କ ସମୀପରେ ଉପସ୍ଥାପିତ ହୋଇଅଛି, ଆମ୍ଭମାନଙ୍କ ମଧ୍ୟରୁ କେତେ ଜଣ ସେହି ଚିତ୍ର ସମ୍ବନ୍ଧରେ ଥରେ ଅଧେ ଦୃଢ଼ଭାବରେ ଭାବିଥାନ୍ତି ?

ଉତ୍କଳ ସାହିତ୍ୟ/୯ମ ବର୍ଷ/୧୨ଶ ସଂଖ୍ୟା/୧୩୧୩ ସାଲ ।

## ।। ସାତ ।।

ସ୍ୱାୟତ୍ତ ଶାସନ "Self-Government' ବୋଲି ଆମ୍ଭେମାନେ ସବୁବେଳେ ବ୍ୟସ୍ତ । ଏପରିକି ଆମ୍ଭମାନଙ୍କ ଅର୍ତ୍ତନାଦରେ ଶ୍ୱେତଦ୍ୱୀପ ପର୍ଯ୍ୟନ୍ତ କମ୍ପିତ । ଆମ୍ଭେମାନେ ହାତେ ହାତେ ଭାରତବର୍ଷଟାକୁ ପାଇଲେ ଭାରତକୁ ସପ୍ତମ ସ୍ୱର୍ଗରେ ପରିଣତ କରନ୍ତୁ, ଏପରି ଉଚ୍ଚ ଆଶା ମଧ୍ୟ ଅନେକ ଚିନ୍ତାଶୀଳ ବିଦ୍ୱାନ୍ ବ୍ୟକ୍ତି ପୋଷଣ କରୁଅଛନ୍ତି । ଏହା କରିବା ମଧ୍ୟ ସ୍ୱାଭାବିକ; କିନ୍ତୁ ମୁଁ ଏ ଆଶାକୁ ମୋ ମନ ମଧ୍ୟରେ ସ୍ଥାନ ଦେବାକୁ ନିତାନ୍ତ ନାରାଜ । ଯେତେବେଳେ ନିଗ୍ରୋମାନଙ୍କୁ ଆମେରିକାରେ ଦାସତ୍ୱ ଶୃଙ୍ଖଳରୁ ମୁକ୍ତି ଦେବାର ଚେଷ୍ଟା କରାଗଲା, କେତେଗୁଡ଼ିଏ ପୁରୁଣା ଦାସ ସେମାନଙ୍କ ପ୍ରଭୁମାନଙ୍କୁ ଛାଡ଼ି ସ୍ୱାଧୀନତା ଲାଭ କରିବାକୁ ନିତାନ୍ତ ନାରାଜ ହେଲେ । ଆହୁରି ମଧ୍ୟ ଦେଖା ଯାଉଅଛି ଯେ ଯେଉଁମାନେ ଅନେକ ଦିନ ଜେଲ୍‌ଖାନାରେ ରହି ଜୀବନ କଟାନ୍ତି, ସେମାନେ ବୃଦ୍ଧାବସ୍ଥାରେ କାରାମୁକ୍ତ ହେବାବେଳେ ପୁନର୍ବାର ସେହି ଅଭ୍ୟସ୍ତ କାରାବାସକୁ ଝୁରି ଝୁରି ମରନ୍ତି । ଏ ହେଲା ଅଭ୍ୟାସ ଦୋଷର ଫଳ ।

ଦ୍ୱିତୀୟ କଥା - ଅନୁଭବ । କୌଣସି କାର୍ଯ୍ୟ ବା ଅନୁଷ୍ଠାନର ତ୍ରୁଟି ଦେଖାଇବା ସହଜ, ମୋ ହାତରେ ପଡ଼ିଥିଲେ ମୁଁ ତାହା ପୂର୍ଣ୍ଣଭାବରେ ସମ୍ପନ୍ନ କରିପାରନ୍ତି, ଏପରି ଆସ୍ଫାଳନ ସହଜ; କିନ୍ତୁ କେତେଜଣ ଲୋକ ବାସ୍ତବ ସଂଗ୍ରାମରେ ଆପଣାର ଆସ୍ଫାଳନକୁ କାର୍ଯ୍ୟରେ ପରିଣତ କରିଥାନ୍ତି ? ବ୍ୟକ୍ତିଗତ ଅନୁଭବକୁ ଖଟାଇ କୌଣସି ସାଧାରଣ ନିୟମରେ ଉପନୀତ ହେବା ସବୁ ସମୟରେ ନିରାପଦ ନୁହେଁ; କିନ୍ତୁ ମନୁଷ୍ୟ ବାଧ୍ୟ ହୋଇ ଅନେକ ସମୟରେ ବ୍ୟକ୍ତିଗତ ଅନୁଭବରୁ ଯେଉଁ ଶିକ୍ଷା ଲାଭ କରିଥାଏ, ସେହି ଶିକ୍ଷାକୁ ଖଟାଇ ଭବିଷ୍ୟତ୍‌ର ଚିତ୍ର ଆଙ୍କିଥାଏ । ଭାରତବାସୀ ଯେ ଦିନେ ସ୍ୱାୟତ୍ତ ଶାସନର ଉପଯୁକ୍ତ ହେବେ ନାହିଁ ଏ କଥା ନୁହେଁ । ମୁଁ ଏତିକିମାତ୍ର କହୁଅଛି ଯେ ବର୍ତ୍ତମାନ ଆମ୍ଭେମାନେ ନିଜ ନିଜକୁ ଶାସନ କରିବାକୁ ଉପଯୁକ୍ତ ହୋଇ ନାହୁଁ । ଭାରତବାସୀ 'ବଂଶମରା ଡାହୁକ' ବୋଲି ଇତିହାସ ପ୍ରସିଦ୍ଧ, ଏହାର ଢେର ପ୍ରମାଣ ଅଛି । ପାଶ୍ଚାତ୍ୟ ସଭ୍ୟତା ଆମ୍ଭମାନଙ୍କ ଚକ୍ଷୁ ଫିଟାଉଅଛି ମାତ୍ର । ଆମ୍ଭମାନଙ୍କ ହାତରେ କ୍ଷମତା ପଡ଼ିଲା ମାତ୍ରକେ ତାହାର ଅପବ୍ୟବହାର ଅନିବାର୍ଯ୍ୟ, ଏହା ମୋହର ବିଶ୍ୱାସ । ଯେଉଁ କ୍ଷମତା ପାଇବା ନିମନ୍ତେ ଆମ୍ଭେମାନେ ଗଗନଭେଦୀ ରଡ଼ି ପକାଉଅଛୁଁ ସେ କ୍ଷମତା ପାଇବା ବାସି ଦିନ ଆମ୍ଭେମାନେ ନିଜ ନିଜ ମଧ୍ୟରେ ଗଳା ଚିପାଚିପି ହେବା, ଏଥିରେ ମୋର ସନ୍ଦେହ ନାହିଁ ।

ପ୍ରଥମରେ ଦେଖିବା ଉଚିତ ଯେ 'ଭାରତୀୟ ଜାତି'ର ଅସ୍ତିତ୍ୱ କାହିଁ ? ପ୍ରତ୍ୟେକ କ୍ଷୁଦ୍ର ଜାତି ନିଜ ନିଜର ସଂକୀର୍ଣ୍ଣ ସ୍ୱାର୍ଥକୁ 'ଭାରତୀୟ ଜାତି' ସମକ୍ଷରେ ବଳିଦେବା ନିମନ୍ତେ ପ୍ରସ୍ତୁତ ହୋଇଛନ୍ତି କି ? ଜାତୀୟ ସମ୍ମାନ, ଦାୟିତ୍ୱ, ଆତ୍ମନିର୍ଭର, କର୍ତ୍ତବ୍ୟ -

ଏଗୁଡ଼ିକର ମର୍ଯ୍ୟାଦା ଆମ୍ଭମାନଙ୍କ ମଧ୍ୟରୁ କେତେଜଣ ଶିକ୍ଷା କରି କାର୍ଯ୍ୟରେ ପରିଣତ କରିଛନ୍ତି ? ନିଃସ୍ୱାର୍ଥ ପ୍ରେମ, ସ୍ୱାର୍ଥତ୍ୟାଗ - ଏ ଦୁଇ ଗୁଣ କେତେ ଜଣଙ୍କଠାରେ ବର୍ତ୍ତମାନ ମିଳିବ ? ଜାତୀୟ ଜୀବନର ଅର୍ଥ କେତେଜଣ ହୃଦୟଙ୍ଗମ କରିଛନ୍ତି ? ସମୟ ସମୟରେ ଆମ୍ଭମାନଙ୍କୁ 'ମହାପ୍ରସାଦ କଣିକା' ତୁଲ୍ୟ ଯେଉଁ କ୍ଷମତାଟିକ ମିଳିଥାଏ, ତାହାର ଯେଉଁ ଅପବ୍ୟବହାର ଦେଖାଯାଏ, ସେଥିରୁ 'ସ୍ୱାୟତ୍ତଶାସନବାଦୀ' ହେବାକୁ ମନେ ମନେ ଲଜ୍ଜା ହୁଏ । ଏ ଲଜ୍ଜାଟା ମଧ୍ୟ ବାହାରେ ପ୍ରକାଶ କରିବାକୁ ଡର ମାଡ଼େ । ତାହାହେଲେ 'ଦେଶଦ୍ରୋହୀ', 'ଜାତିଦ୍ରୋହୀ' ଶ୍ରେଣୀରେ ଅର୍ଥାତ୍ 'C' classରେ ନାମ ଉଠିବାର ଭୟ । ଶତକଡ଼ା ଅନେଶତ ସ୍ଥାନରେ ଦେଖିଅଛି ଯେ, ଯେତେବେଳେ ନୀଚ ସ୍ୱାର୍ଥର ପ୍ରତିଘାତ ପାଇଅଛି, ତତ୍‌କ୍ଷଣାତ୍ 'ସ୍ୱଦେଶୀ ଆନ୍ଦୋଳନ' କାର୍ଯ୍ୟ ଚୂର୍ଣ୍ଣ ହୋଇ ଯାଇଛି । କଥା ନ ଚଳିଲାରୁ ଆମ୍ଭେମାନେ କହୁଥାଇଁ 'ଜାତି' 'ଜାତି' କିନ୍ତୁ 'ଶିରଃ ନାସ୍ତି ଶିରଃ ବ୍ୟଥା' । ମୂଳଦୁଆ ତ ଠିକ୍ ନାହିଁ, ଦୋତାଲା, ତିନିତାଲା ଠିଆ ହେବ କିପରି ? 'ବନ୍ଦେ ମାତରମ୍' ଆନ୍ଦୋଳନଟି ଆମ୍ଭମାନଙ୍କୁ ଢେର ଶିକ୍ଷା ଦେଇଅଛି । ତଦ୍ୱାରା ଗୋଟିଏ ପ୍ରଧାନ ଉପକାର ହୋଇଛି ଯେ, ଆମ୍ଭେମାନେ ବୁଝି ପାରୁଅଛୁଁ - ଆମ୍ଭମାନଙ୍କର ଆସ୍ଫାଳନ କ୍ଷମତା ଖୁବ୍ ଅଧିକ, କାର୍ଯ୍ୟ କରିବା କ୍ଷମତା ଅତି ଅଳ୍ପ । ଯେବେ ବକ୍ତୃତା ଦ୍ୱାରା କୌଣସି ଜାତି ସ୍ୱାୟତ୍ତ ଶାସନର ଉପଯୁକ୍ତ ହୋଇପାରେ, ତେବେ ଆମ୍ଭ ଜାତି କେତେ ଦିନ ହେଲା ଉପଯୁକ୍ତ ହୋଇଯାଇଛି, ସନ୍ଦେହ ନାହିଁ । ବର୍ତ୍ତମାନ ଭାରତବର୍ଷ ନବଯୁଗରେ ପଦାର୍ପଣ କରୁଅଛି ମାତ୍ର; କିନ୍ତୁ ସ୍ୱାୟତ୍ତ ଶାସନ ନିମନ୍ତେ ଉପଯୁକ୍ତ ହୋଇ ନାହିଁ, ହେବା ନିମନ୍ତେ ଆଉ କିଛିଦିନ ବାକି ଅଛି । ଇଂରେଜ ରାଜାଙ୍କର ଶାସନ ପ୍ରଣାଳୀରେ ଅନେକ ତ୍ରୁଟି, ଅବିଚାର ପୂର୍ଣ୍ଣମାତ୍ରାରେ ରହିଅଛି, ନ୍ୟାୟର ଦ୍ୱାହିରେ ଅନେକ ଅତ୍ୟାଚାର ହେଉଅଛି । ଅନେକ ସମୟର ଆମ୍ଭମାନଙ୍କର ପ୍ରିୟତମ ବାସନାକୁ ଶାସନକର୍ତ୍ତାମାନେ ପଦଦଳିତ କରିବାକୁ କୁଣ୍ଠିତ ହେଉ ନାହାନ୍ତି, ଆମ୍ଭମାନଙ୍କ ଶିକ୍ଷା, ବାଣିଜ୍ୟ ପ୍ରଭୃତି ସମସ୍ୟାମାନଙ୍କ ପ୍ରତି ଅନେକ ସମୟରେ ସେମାନେ ଉଦାସୀନ, ଅନେକ ସମୟରେ ଆମ୍ଭମାନଙ୍କ ରକ୍ଷକମାନେ ଆମ୍ଭମାନଙ୍କୁ ଭକ୍ଷ୍ୟ ବସ୍ତୁରେ ପରିଣତ କରୁଅଛନ୍ତି । ନିଜର ରାଜକୀୟ ସ୍ୱାର୍ଥ ଯୋଗୁଁ ଆମ୍ଭମାନଙ୍କ ସ୍ୱାର୍ଥ ପ୍ରତି ଆଦୌ ଭ୍ରୂକ୍ଷେପ କରୁ ନାହାନ୍ତି । ଇଂରେଜଙ୍କର ପ୍ରଧାନତମ ଭକ୍ତମାନେ ବିଗତ ଘଟନାବଳୀ ଦୃଷ୍ଟିରେ ଏ କଥାଗୁଡ଼ିକ ନାସ୍ତି କରିପାରିବେ ନାହିଁ । ମୋର ବକ୍ତବ୍ୟ ଏହି ଯେ, ଆମ୍ଭମାନଙ୍କ ମଧ୍ୟରୁ ଅନେକ ଉଚ୍ଚପଦସ୍ଥ ବ୍ୟକ୍ତି ଜଘନ୍ୟ ସ୍ୱାର୍ଥ ମୋହରେ ପଡ଼ି ସମଗ୍ର ଜାତିକୁ ଲାଞ୍ଛିତ ଓ ଅପମାନିତ କରୁଅଛନ୍ତି, ଜାତି ଜାତି ମଧ୍ୟରେ ଦଳାଦଳି ଲାଗିରହିଛି, 'ହାମ୍‌ବଡ଼ା' ନୀତି ପୂର୍ଣ୍ଣ ମାତ୍ରାରେ ରାଜତ୍ୱ କରୁଅଛି । ପରଶ୍ରୀକାତରତାରେ କ୍ଷୁଦ୍ର ସମ୍ପ୍ରଦାୟ ଓ ଉପଜାତିମାନେ ପୂର୍ଣ୍ଣ । କୌଣସି ଘୃଣିତ କାର୍ଯ୍ୟ କରାଇବାକୁ ହେଲେ ରାଜନୀତି କୁଶଳ ଇଂରେଜ କେତେକ ଦେଶୀୟ 'ମଜୁରିଦାର'ଙ୍କ ହାତରେ ସେ କାର୍ଯ୍ୟ କରାଇ ନେଉଅଛନ୍ତି ଓ ଆମ୍ଭେମାନେ ଆପଣା

ଆପଣା ମଧ୍ୟରେ କାମୁଡ଼ାକାମୁଡ଼ି ହେଉଅଛୁଁ । 'Divide and rule' ନୀତି ଇଂରେଜମାନେ ବୁଝିଅଛନ୍ତି, ଆମ୍ଭେମାନେ ହଣାହଣି ଜାଣୁଁ । ଏପରି ସ୍ଥଳରେ ସ୍ୱାୟତ୍ତ-ଶାସନର ସ୍ୱପ୍ନ ଦେଖିବା ମୋ ମତରେ ବାତୁଳତା ମାତ୍ର । ପାଶ୍ଚାତ୍ୟ ସଭ୍ୟତା ସ୍ୱାୟତ୍ତ-ଶାସନର ଅନୁକୂଳ । ଯେ ପର୍ଯ୍ୟନ୍ତ ଆମ୍ଭେମାନେ ଔଦାସୀନ୍ୟ ଓ ଆଳସ୍ୟ ପରିତ୍ୟାଗ କରି ଦୃଢ଼ସଙ୍କଳ୍ପ ହୋଇ ନ ପାରିବୁ, ସେ ପର୍ଯ୍ୟନ୍ତ ଆମ୍ଭମାନଙ୍କ ଆସ୍ଫାଳନ କେବଳ ବକ୍ତୃତାରେ ପର୍ଯ୍ୟବସିତ ରହିବ । ପାଠ ଡାକୁଛି, 'Where there is a will, there is a way'; କିନ୍ତୁ ଭାରତୀୟ ଜାତିର ସେହି ପାଷାଣଭେଦୀ 'will-power' ସଙ୍କଳ୍ପ କାହିଁ ? ବର୍ତ୍ତମାନ ଭାରତର ଭିନ୍ନ ଭିନ୍ନ ସ୍ଥାନରେ ଯେଉଁ 'ସ୍ୱଦେଶୀ', 'ବନ୍ଦେ ମାତରମ୍', 'ଶିବାଜୀ ଉତ୍ସବ', 'ପ୍ରତାପାଦିତ୍ୟ ଉତ୍ସବ', 'କଂଗ୍ରେସ', 'କନ୍‌ଫରେନ୍‌ସ' ଇତ୍ୟାଦି ଆନ୍ଦୋଳନମାନଙ୍କର ସୂତ୍ରପାତ ହୋଇଅଛି, ତାହା ଆରମ୍ଭ ମାତ୍ର - ତାହା ସବୁ ସାଧନାର ନିମ୍ନତମ ସୋପାନ ମାତ୍ର । ଜାତୀୟ ଉନ୍ନତିର ଇତିହାସରେ ଅବଶ୍ୟ ଏହାର ମୂଲ୍ୟ ଅଛି । ଥରେ ଭାବି ଦେଖନ୍ତୁ, ପ୍ରକୃତ ପ୍ରସ୍ତାବରେ 'ଯୋଗ୍ୟ' ଲୋକ ଭାରତରେ କେତେଜଣ ? ଯେଉଁ କେତେଗୋଟି ଯୋଗ୍ୟ ଅଛନ୍ତି, ସେମାନଙ୍କ ମଧ୍ୟରେ ଜାତିର ନିୟାମକ ପଦଯୋଗ୍ୟ କେତେଜଣ ? ଏହାହିଁ ମୁଁ ଅନେକ ସମୟରେ ଭାବିଥାଏ । ନିଜର ଦୋଷଗୁଡ଼ିକ ଶତ୍ରୁ ଚକ୍ଷୁରୁ ଘୋଡ଼ାଇ ରଖି କେବଳ ଆସ୍ଫାଳନରେ କେବେ କୌଣସି ଜାତି ଉନ୍ନତି ଲାଭ କରି ନାହିଁ । ଘରେ ଘରେ ସଂଯତ, ସ୍ଥିରପ୍ରତିଜ୍ଞ ଓ ସ୍ୱାର୍ଥତ୍ୟାଗୀ ସାଧକଙ୍କର ଆବିର୍ଭାବ ନ ହେବା ପର୍ଯ୍ୟନ୍ତ ଜାତିର ଉନ୍ନତି ସୁଦୂରପରାହତ ।

ମୁଁ ଯାହା ଯାହା କହିଲି, ଓଡ଼ିଆ ଓ ଓଡ଼ିଆଜାତି ସମ୍ବନ୍ଧରେ ସେଗୁଡ଼ିକ ଅକ୍ଷରେ ଅକ୍ଷରେ ସତ୍ୟ, ସନ୍ଦେହ ନାହିଁ । ଭାରତୀୟ ଭିନ୍ନ ଭିନ୍ନ ଜାତି ମଧ୍ୟରେ ଭଲକରି ଖୋଜିଲେ ପୁଞ୍ଜାଏ ଖଣ୍ଡେ ମଙ୍ଗଧରା ମିଳି ପାରିବେ; କିନ୍ତୁ ଓଡ଼ିଶାରେ ଜଣେ ହେଲେ ମଙ୍ଗଧରା କାହିଁ ? ଓଡ଼ିଶାର ବର୍ତ୍ତମାନ ଅବସ୍ଥା ପ୍ରତି ମୁଁ ଯେତିକି ଦୃଷ୍ଟି ପକାଇଅଛି ସେତିକି ମୋ ମନରେ ଦୃଢ଼ ଧାରଣା ହୋଇଅଛି ଯେ, ଯେବେ ଭାରତବାସୀମାନେ ଆଜି ସ୍ୱାୟତ୍ତ-ଶାସନ ପ୍ରାପ୍ତ ହୁଅନ୍ତେ, ତେବେ ଓଡ଼ିଶା ଅନ୍ୟାନ୍ୟ ଉନ୍ନତ ଜାତିଙ୍କର କ୍ରୀଡ଼ାସ୍ଥଳ ହୁଅନ୍ତା ଓ ସେମାନେ ଓଡ଼ିଶାରେ ଅବଲୀଳାକ୍ରମେ ଆପଣାର ପ୍ରଭୁତ୍ୱ ବିସ୍ତାର କରି ଓଡ଼ିଆଙ୍କୁ ପଦଦଳିତ କରନ୍ତେ । ଓଡ଼ିଶାର ଅବସ୍ଥା - From the frying pan into the fire ହୁଅନ୍ତା । ଈଶ୍ୱରଙ୍କ କୃପାରୁ ଯେବେ ଅନ୍ୟ ଜାତିମାନେ ଓଡ଼ିଶା ପ୍ରତି ଲାଳାୟିତ ନ ହୁଅନ୍ତେ, ତେବେ ସୁଦ୍ଧା ଓଡ଼ିଶାରେ ଅନ୍ତର୍ବିବାଦ ପ୍ରଜ୍ୱଳିତ ହୋଇ ଅରାଜକତା ଉପସ୍ଥିତ ହୁଅନ୍ତା । ଓଡ଼ିଆ ଜାତି ଭାରତର ଅନ୍ୟାନ୍ୟ ଜାତିର ସମକକ୍ଷ ହୋଇ ନାହିଁ - ଏହାକୁ ସ୍ୱୀକାର ନ କରିବ କିପରି ? ମତେ ଦେଶଦ୍ରୋହୀ କହ, ଜାତିଦ୍ରୋହୀ କହ, ସମାଜର ଶତ୍ରୁ କହ, କିଛି ଭାବନା ନାହିଁ; କିନ୍ତୁ ବର୍ତ୍ତମାନ ଓଡ଼ିଶାକୁ ଦେଖି ଭବିଷ୍ୟତ୍ ଓଡ଼ିଶାର ଚିତ୍ର ଅଙ୍କନ କରିବା ସ୍ୱାଭାବିକ ଓ ଇତିହାସାନୁମୋଦିତ । ସେଥିପାଇଁ କହୁଥିଲି, ଆମ୍ଭେମାନେ

'ବଂଶମରା ଡାହୁକ' । ଯେଉଁ ଜାତିର କେତେକ ବୀର ନିଜର ଜାତୀୟ ଲୋକଙ୍କୁ ଅପମାନିତ ଓ ଲାଞ୍ଛିତ କରିବାକୁ କୁଣ୍ଠିତ ନୁହେଁ, ନିଜ ଜାତିକୁ ପରପଦତଳେ ବଳି ଦେବାକୁ ପ୍ରସ୍ତୁତ, ସେହି ଜାତି କଦାପି ଆତ୍ମ-ଶାସନର ଉପଯୁକ୍ତ ହୋଇ ନାହିଁ । ଓଡ଼ିଶାର ବର୍ତ୍ତମାନ ସଭ୍ୟତା, ସ୍ୱଦେଶୀ ଆନ୍ଦୋଳନ, ବକ୍ତୃତାର ଢେଉ, ସଭାସମିତି ସମସ୍ତ ଆମଦାନୀ ଓ ବିଦେଶାଗତ । ଯେତେବେଳ ପର୍ଯ୍ୟନ୍ତ ଜାତିର ହୃଦୟତନ୍ତ୍ରୀ ବିକମ୍ପିତ ହୋଇ ନାହିଁ, ଯେତେବେଳ ପର୍ଯ୍ୟନ୍ତ ଜାତିର ଅନ୍ତଃସ୍ଥଳକୁ ହୃଦୟର ଗଭୀରତମ କେନ୍ଦ୍ରରୁ - ଜାତୀୟ ଉନ୍ନତିର ବାସନା ଝଙ୍କାରିତ ହୋଇ ନାହିଁ, ସେ ପର୍ଯ୍ୟନ୍ତ "ପର ଲୁଗା ପିନ୍ଧି ଯାତକୁ ଯାଏ, ଲୋକେ ପଚାରିଲେ ମୁଣ୍ଡ ଟୁଙ୍ଗାରୁଥାଏ ।" ଉନ୍ନତ ଲକ୍ଷ୍ୟ ପ୍ରତି ଦୃଷ୍ଟିରଖି ସମ୍ମିଳିତ ଚେଷ୍ଟା ଦ୍ୱାରା ପରିଚାଳିତ ହେବାକୁ ବର୍ତ୍ତମାନ ଓଡ଼ିଶା ଶିଖି ନାହିଁ । ଓଡ଼ିଆମାନେ ନିଜ ନିଜର ସ୍ୱାର୍ଥକୁ ଜାତୀୟ ସ୍ୱାର୍ଥ ସମ୍ମୁଖରେ ବଳି ଦେବାକୁ ଶିଖି ନାହାନ୍ତି - ନିଜର ଜାତୀୟ ଗୌରବ ରକ୍ଷା କରିବାକୁ ସମର୍ଥ ଓ ଶିକ୍ଷିତ ହୋଇ ନାହାନ୍ତି । ଏପରି ସ୍ଥଳରେ ଇଂରେଜଙ୍କ ଛାୟାତଳେ ଆମ୍ଭମାନଙ୍କର ଆଉ ଦିନାକେତେ ରହିବା ଆବଶ୍ୟକ । ଅନ୍ୟାନ୍ୟ ଉନ୍ନତ ଜାତି ଓଡ଼ିଆ ଜାତିର ଶିକ୍ଷକ ଓ ଜ୍ୟେଷ୍ଠ ଭ୍ରାତା ପଦରେ ବସନ୍ତୁ, ତହିଁରେ ଓଡ଼ିଆଙ୍କର ଲାଭ ଓ ଉପକାର; କିନ୍ତୁ ସେମାନେ ପ୍ରଭୁ ଓ ହର୍ତ୍ତାକର୍ତ୍ତା ବିଧାତା ପଦରେ ବସିଲେ ଇଂରେଜଙ୍କ ଛାୟା ବିନା ଓଡ଼ିଶା କ୍ଷତିଗ୍ରସ୍ତ ହେବ । ମୁଁ ଓଡ଼ିଆ ଜାତିର ବର୍ତ୍ତମାନ ସାନ୍ନିପାତିକ ଅବସ୍ଥା ପ୍ରତି ଦୃଷ୍ଟିକରି ଲୋତକ ସଂବରଣ କରିପାରୁ ନାହିଁ । ଭାରତୀୟ ଜାତି ଅଚିରେ ଗୋଟିଏ ମହାମହୀୟାନ୍ ଜାତିରେ ପରିଣତ ହେଉ, ଏହା ଭାରତ ପ୍ରତି ଓ ଓଡ଼ିଶା ପ୍ରତି ଗୌରବର ବିଷୟ ହେବ, ସନ୍ଦେହ ନାହିଁ । କିନ୍ତୁ ଓଡ଼ିଆ ଜାତି ଭାରତୀୟ ଜାତି ମଧ୍ୟରେ ଗୋଟିଏ ସମ୍ମାନାସ୍ପଦ ଓ ଗଣ୍ୟମାନ୍ୟ ଆସନ ପାଉ, ଏହା ହିଁ ପ୍ରତ୍ୟେକ ଓଡ଼ିଆଙ୍କର ଜୀବନବ୍ୟାପୀ ପ୍ରାର୍ଥନା ଓ ସାଧନା ହେଉ ।

ସ୍ୱାୟତ୍ତ-ଶାସନ ନିମନ୍ତେ ଆପଣାକୁ ପ୍ରସ୍ତୁତ କରିବା ଏବଂ ଏକ ମହାଭାରତୀୟ ଜାତି ଗଠନ କରିବା - ଏହି ଦିଓଟି ଭାରତବାସୀ ପ୍ରତ୍ୟେକ ଜାତିର ଲକ୍ଷ୍ୟ ହେବା ଆବଶ୍ୟକ ।

ପରର ଗୋଡ଼ ଆଉଁଶି କେବେ କୌଣସି ଜାତି ଉନ୍ନତ ହୋଇ ନାହିଁ କି ଇଂରେଜଙ୍କ ଉପାନହ ଲେହନ କରି ଓଡ଼ିଆ ଜାତି କଦାପି ଉନ୍ନତ ହେବ ନାହିଁ । ଇଂରେଜଙ୍କଠାରୁ ମୁଷ୍ଟିଭିକ୍ଷା ଯେତେଶୀଘ୍ର ବନ୍ଦହୁଏ, ସେତେ ମଙ୍ଗଳ । ଇଂରେଜ ଜାତିଙ୍କଠାରୁ କେବଳ Sympathetic and protective patronage ପାଇବାର ଆଶା କରାଯାଇପାରେ । କିନ୍ତୁ ସେମାନଙ୍କ ରାଜନୀତିକ ସ୍ୱାର୍ଥ ପ୍ରତି, ବାଣିଜ୍ୟ ପ୍ରତି ଯେଉଁଠାରେ ଟିକିଏମାତ୍ର ବାଧା ପଡ଼ିବାର ଭୟ ହେବ, ସେହିଠାରେ ସେମାନେ ଆମ୍ଭ ସମସ୍ତଙ୍କୁ ବଳି ଦେବେ । ବର୍ତ୍ତମାନ ଇଂରେଜମାନଙ୍କ ସମ୍ବନ୍ଧରେ ସମଗ୍ର ଭାରତରେ ଯେଉଁ ରବ ପଡ଼ିଅଛି - ଇଂରେଜମାନେ ନିଜ ସ୍ୱାର୍ଥ ଯୋଗୁଁ ଦେଶୀୟ ଲୋକଙ୍କୁ ବଡ଼ ବଡ଼ ଚାକିରି ଦେଉନାହାନ୍ତି, ଦେଶର ବାଣିଜ୍ୟ

ଓ ଶିଳ୍ପର ଉନ୍ନତି କରାଇ ଦେଉନାହାନ୍ତି, ସବୁ ଅର୍ଥଯାକ ବିଲାତକୁ ଟାଣି ନେଉଅଛନ୍ତି, ଦେଶର ରୁଧିରରେ ଭାଇପୁଅ, ବେହେରାଣିଆପୁଅ, ଭାଇ ଶଳା, ପିଉସୀପୁଅ, ଭାଣିଜୀ ଜ୍ୱାଇଁ, ହୀନଶଳା, ଅନ୍ତର ଭାଇମାନଙ୍କୁ ପୋଷୁଅଛନ୍ତି, ଦେଶର ଶାସନକାର୍ଯ୍ୟରେ ଆମ୍ଭମାନଙ୍କୁ ନ୍ୟାଯ୍ୟ ଅଂଶ ଦେଉନାହାନ୍ତି - ଏହି ଯେ ଗୁହାରି ଭାରତରୁ ଉଠୁଅଛି, ସ୍ୱାୟତ୍ତ-ଶାସନ ପ୍ରବର୍ତ୍ତିତ ହେଲାକ୍ଷଣି ଓଡ଼ିଶାର ହୃଦୟକନ୍ଦରରୁ ଉନ୍ନତତର ଶାସକ ଜାତିଙ୍କ ସମ୍ବନ୍ଧରେ ଏହି ଧ୍ୱନି ଉଠିବ ଓଡ଼ିଶାର ରକ୍ତ ଶୋଷିହୋଇ ଶୁଖିଯିବ ।

ଉପସଂହାରରେ ପାଠକମାନଙ୍କ ନିକଟରେ ମୋର ନିବେଦନ ଏହି ଯେ, ମୁଁ ଯାହା ଯାହା କହିଗଲି, ତାହା କାହାପ୍ରତି କଟାକ୍ଷ କରି କହି ନାହିଁ - କଟାକ୍ଷ କରିବାର ସମୟ ବର୍ତ୍ତମାନ ଓଡ଼ିଶାର ନୁହେଁ । ବର୍ତ୍ତମାନ ହସିବାର ସମୟ ନୁହେଁ । ଭାରତରେ ଯେଉଁ ନବଯୁଗ ଆରମ୍ଭ ହୋଇଅଛି, ଆମ୍ଭମାନଙ୍କୁ ସେହି ଯୁଗର ଦୀକ୍ଷା ଓ ଶିକ୍ଷା ନିଶ୍ଚୟ ଗ୍ରହଣ କରିବାକୁ ହେବ । ଉନ୍ନତ ଜାତିମାନେ ଯେଉଁ ପନ୍ଥା ଦେଖାଇଛନ୍ତି, ଆମ୍ଭମାନଙ୍କୁ ସେ ପନ୍ଥାର ପଥିକ ହେବାକୁ ହେବ, ବଡ଼ଭାଇମାନେ ଯେଉଁ ବାନା ଟେକିଅଛନ୍ତି, ଆମ୍ଭମାନଙ୍କୁ ସେହି ବାନା ଧରି ଅଗ୍ରସର ହେବାକୁ ହେବ । ଏହା ନ କରି ଶୋଇ ରହିଲେ ସଭ୍ୟତାର ଭବିଷ୍ୟଦ୍‌ବାଣୀ ପ୍ରତି ଅନାସ୍ଥା ପ୍ରଦର୍ଶନ କଲେ ଜୀବନ ସଂଗ୍ରାମରେ ଆମ୍ଭେମାନେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯିବା, ଏଥିରେ ସନ୍ଦେହର ଅବକାଶ ମାତ୍ର ନାହିଁ ।

ଉତ୍କଳ ସାହିତ୍ୟ/୧୦ମ ଭାଗ/୨ୟ ସଂଖ୍ୟା/୧୩୧୩ ସାଲ ।

## ।। ଆଠ ।।

ଆମ୍ଭମାନଙ୍କ ଦେଶରେ ରାଜାମାନଙ୍କ ସମ୍ବନ୍ଧରେ ଆମ୍ଭମାନଙ୍କର ଅନେକ ସମୟରେ ଉଚ୍ଚ ଧାରଣା ନ ଥାଏ । ତେବେ, ସବୁ ରଜାଯାକ ବଣୁଆ ବା ଅବୁଝାମଣା ନୁହନ୍ତି । ସବୁ ନବ୍ୟ ଶିକ୍ଷିତଯାକ ଅପଦାର୍ଥ ବା ଦିମାକୀ ନୁହନ୍ତି । ସେଦିନ କଥାପ୍ରସଙ୍ଗରେ ଜଣେ ପରଲୋକଗତ ବଣୁଆ ରାଜାଙ୍କ ବିଷୟ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଆମ୍ଭମାନଙ୍କ ନିକଟରେ ପ୍ରକାଶ କରୁଥିଲେ । ସେ ପୁରୁଣା ଧରଣର ମରହଛିଆ ରାଜା । କୌଣସି ହାକିମ ତାଙ୍କ ଜିଲ୍ଲାକୁ ବିରାଜମାନ ହେବା ସମୟରେ ସେ ତାଙ୍କୁ ସାଦର ଅଭ୍ୟର୍ଥନା କରିବା ନିମନ୍ତେ ଆପଣା ସିଂହଦ୍ୱାରର ସୀମା ଅତିକ୍ରମ କରୁ ନ ଥିଲେ । ପୂର୍ବୋକ୍ତ ବନ୍ଧୁ ଏଥିର କାରଣ ପଚାରିବାରେ ରାଜା ତଳଲିଖିତ ଭାବରେ ଉତ୍ତର ଦେଇଥିଲେ - ''ଯାହାଙ୍କୁ ଆମ୍ଭେମାନେ ହାକିମ ବୋଲି ଡାକୁଅଛୁଁ, ସେ ଶ୍ରୀମତୀ ମହାରାଣୀଙ୍କର (ସେତେବେଳେ ଶ୍ରୀମତୀ ମହାରାଣୀ ଭିକ୍‌ଟୋରିଆ ଜୀବିତା ଥିଲେ) ତହସିଲଦାର ବା ଗୁମାସ୍ତା ମାତ୍ର । (ଯେଉଁ ହାକିମାନେ ଏକଥା ବୁଝନ୍ତି, ସେମାନେ ସାଧାରଣତଃ ବିନୟୀ, ଦୟାଳୁ ଓ ଲୋକପ୍ରିୟ ହୁଅନ୍ତି ।) ଚାକିରି ଛାଡ଼ିବା ବାସି ଦିନ ତାଙ୍କୁ ଲୋକେ ଚିହ୍ନିବେ କି ନାହିଁ, ସନ୍ଦେହ । କିନ୍ତୁ

ମୋ ଶରୀର ରାଜରକ୍ତରେ ନିର୍ମିତ, ମୋର ସାତ ପୁରୁଷ ରାଜା ଥିଲେ ଓ ମୋର ସାତ ପୁରୁଷ ରାଜା ହେବେ । ମୋ ଶବକୁ ସୁଦ୍ଧା ରାଜସମ୍ମାନ ପ୍ରଦର୍ଶିତ ହେବ । ଶ୍ରୀମତୀ ମହାରାଣୀ ଆମ୍ଭମାନଙ୍କ ତତ୍ତ୍ୱ ନେବାପାଇଁ ଓ ଆମ୍ଭମାନଙ୍କୁ ସଙ୍ଖୁଳିବା ପାଇଁ ଜଣେ ଗୁମାସ୍ତା ପଠାଇଅଛନ୍ତି, ତାଙ୍କର ଉପଯୁକ୍ତ ଚର୍ଚ୍ଚା କରିବା, ତାଙ୍କସଙ୍ଗେ ବନ୍ଧୁଭାବ ରଖିବା, ତାଙ୍କୁ ଅମର୍ଯ୍ୟାଦା କରିବା ନାହିଁ; କିନ୍ତୁ ତାଙ୍କ ପଛରେ ଗୋଡ଼ାଇବା ନିମନ୍ତେ ବିଧାତା ଆମ୍ଭଙ୍କୁ ସୃଷ୍ଟି କରି ନାହାନ୍ତି ।'' ଏ ଉତ୍ତରଟି ଶୁଣି ବନ୍ଧୁଟି ଆନନ୍ଦିତ ହେଲେ । ଉକ୍ତ ବନ୍ଧୁଙ୍କ ସଙ୍ଗେ ଆଉ ଅନେକ ରାଜାଙ୍କର ପରିଚୟ ଅଛି ।

ଯାହାହେଉ, ମୁଁ କହୁଥିଲି, ଦେଶୀ ରାଜାମାନଙ୍କ ନିକଟକୁ ଯିବାପାଇଁ ଅଧିକାଂଶ ନବ୍ୟ ଶିକ୍ଷିତମାନେ ନାରାଜ । ସେଥିର କାରଣ, ସେମାନେ ରାଜାମାନଙ୍କଠାରୁ ସମୁଚିତ ଆଦର ପା'ନ୍ତି ନାହିଁ । ଏ ସମ୍ବନ୍ଧରେ ଷୋଳପଣ ଦୋଷ ରାଜାମାନଙ୍କ ଉପରେ ପକାଇଦେଲେ ଚଳିବ ନାହିଁ । ରାଜାମାନଙ୍କ ନିକଟରେ କେତେଗୁଡ଼ିଏ ବନ୍ଧାଗତ ଅଛି । ସେମାନଙ୍କ ନିକଟକୁ ଗଲେ ସେହି ବିଧିଗୁଡ଼ିକ ପାଳନ କରିବାକୁ ଆମ୍ଭେମାନେ ନିତାନ୍ତ ଅନିଚ୍ଛୁକ । ଉଦାହରଣସ୍ୱରୂପ - କେତେକ ଦେଶୀୟ ରାଜାଙ୍କ ଦରବାରକୁ ଗଲେ ବାହାରେ ଜୋତା ରଖି ପ୍ରବେଶ କରିବାର ବିଧି ଯେଉଁଠାରେ ଅଛି, ସେଠାରେ ନବ୍ୟଶିକ୍ଷିତ ଉପାଧିଧାରୀ ସେ ବିଧି ପାଳନ କରିବାକୁ ଅତ୍ୟନ୍ତ ଅନିଚ୍ଛୁକ । ରାଜାଙ୍କ ପାଖ ଲୋକମାନଙ୍କ ସୂଚନାକ୍ରମେ ଯେଉଁ ଶିକ୍ଷିତମାନେ ବାଧହୋଇ ବାହାରେ ଜୋତାରଖି ରାଜଦରବାରରେ ପ୍ରବେଶ କରନ୍ତି, ସେମାନେ ଫେରିଆସି ସେହି ରାଜାଙ୍କର ଦୁର୍ନାମ କରନ୍ତି । ଏହାର ଉଦାହରଣ ବିରଳ ନୁହେଁ । ପୁଣି ଯେଉଁ ଶିକ୍ଷିତମାନେ ସେ ବିଧିକୁ ଲଙ୍ଘନ କରି ବାରଣ ନ ମାନି ଜୋତାମାଡ଼ି ଯା'ନ୍ତି, ସେମାନେ ଉକ୍ତ ରାଜାମାନଙ୍କଠାରୁ ସମାଦର ପାଆନ୍ତି ନାହିଁ । ଏଠାରେ ଦେଶୀ ରାଜା ଓ ବିଦେଶୀ ହାକିମଙ୍କର ପ୍ରଭେଦ । ବିଦେଶୀ ହାକିମଙ୍କ ନିକଟକୁ ମୁଲାକାତ୍ କରିବାକୁ ଗଲେ ଧନୁ ଆକାର ଧାରଣ କରି ଡାହାଣ ହାତକୁ ଭୂମିରେ ଲଗାଇ କପାଳ ପର୍ଯ୍ୟନ୍ତ ଅର୍ଦ୍ଧବୃତ୍ତ ଅଙ୍କିତ କରିବାରେ ଯେଉଁମାନେ ଅଭ୍ୟସ୍ତ, ସେମାନଙ୍କ ସଙ୍ଗେ ଦେଶୀୟ ରାଜାମାନେ କରମର୍ଦ୍ଦନ ନ କଲେ ସେ ରାଜାମାନେ ଅପରାଧୀ ।

ଦେଶୀୟ ରାଜାଙ୍କୁ 'ଛାମୁ' ସମ୍ବୋଧନ କରିବାକୁ ଆମ୍ଭେମାନେ ନିତାନ୍ତ ନାରାଜ । କିନ୍ତୁ ବିଦେଶୀ ସବ୍‌ଡ଼େପୁଟିଙ୍କୁ ଦିବାରାତ୍ର 'Your honour' 'ହଜୁର' କହିବାରେ ଆମ୍ଭେମାନେ ଅଭ୍ୟସ୍ତ । ଦେଶୀୟ ରାଜାମାନଙ୍କ ସମ୍ବନ୍ଧରେ ଯେଉଁମାନେ ପୁରାତନ ବିଧି ପାଳନ କରିବାକୁ ନାରାଜ, ସେମାନଙ୍କ ପ୍ରତି ମୋର ସମ୍ମାନ ହୁଏ ନାହିଁ । ଲୋକେ କହନ୍ତି, ଧଳା କଳା ଚମଡ଼ାର ପ୍ରଭେଦ ସାହେବମାନେ କରନ୍ତି । ମୁଁ କହେଁ, ସେ ପ୍ରଭେଦ ଆମ୍ଭମାନଙ୍କ ଦ୍ୱାରା ପରିବର୍ଦ୍ଧିତ ଓ ପରିପୁଷ୍ଟ ହୁଏ । ଆମ୍ଭମାନଙ୍କ ପ୍ରକୃତି ଦାସତ୍ୱ-ଶୃଙ୍ଖଳରେ ଏପରି ଅଭ୍ୟସ୍ତ ହୋଇ ଯାଇଅଛି ଯେ, ଧଳା ଚମଡ଼ା ଦେଖିଲେ ଅଇଁଠା ଚାଟି ବସିଯାଉ । ଏଥିପାଇଁ ପାଠ ଡାକୁଛି 'ଗାଁ କନ୍ୟା ସିଘାଂଣିନାକୀ' । ଧଳା ଲୋକଙ୍କୁ 'Your honour'

'ହଜୁର' କହିଲେ ଜାତି ଯାଉ ନାହିଁ, କିନ୍ତୁ କଳା ଲୋକଙ୍କୁ 'ଛାମୁ' ସମ୍ବୋଧନ କଲେ ଖୋସାମତ ହେବ, ଏ ଯୁକ୍ତି ବୁଝିବାକୁ ମୁଁ ଅକ୍ଷମ ।

ସୁଯୋଗକ୍ରମେ ଦିନେ ଜଣେ ଗଡ଼ଜାତୀ ରାଜାଙ୍କ ନିକଟରେ ବସିଥିଲି । (ଏଠାରେ ମୋର ସାର୍ଟିଫିକେଟ୍ ସ୍ୱରୂପ ପାଠକମାନଙ୍କୁ କହୁଅଛି ଯେ, ରାଜସମାଜରେ ମୋର ଗମନାଗମନ କମ୍ । ମୁଁ 'ଛାମୁ' ବୋଲି ସମ୍ବୋଧନ କରିବାକୁ ଅବଶ୍ୟ ଲଜ୍ଜିତ ବା ଇତସ୍ତତଃ ନୁହେଁ । କିନ୍ତୁ ଅପରପକ୍ଷରୁ ଆଗ୍ରହ ବା ସ୍ନେହର ନିଦର୍ଶନ ନ ପାଇଲେ ମୁଁ ସହବାସ କରିବାକୁ ନିତାନ୍ତ ନାରାଜ) ସେ ରାଜାଙ୍କର ଜଣେ ବନ୍ଧୁ-ରାଜାଙ୍କ ନିକଟରୁ ଦୂତ ଆସି ଉପସ୍ଥିତ ହେଲା । ପ୍ରଥମ ରାଜା ଦ୍ୱିତୀୟ ରାଜାଙ୍କ ନିକଟକୁ ଦୂତ ଦ୍ୱାରା ନିମ୍ନଲିଖିତ ଭାବରେ ସମ୍ବାଦ ପଠାଇଲେ -

''ଛାମୁରେ ଜଣା କରିବ ଯେ, ଛାମୁ ଆମ ନ[illegible]କୁ ବିଜେ କରି ଠା' ବଢ଼ାଇବେ, ଉଆସରେ ଛାମୁଙ୍କ ମଣୋହିର ଯୋଗାଡ଼ ହୋଇଅଛି ।''

ଏତକ ଶୁଣି ମୋର ବାଟଟା ଫିଟିଗଲା । [illegible] ଯେବେ ଆପଣା ଆପଣା ମଧ୍ୟରେ ଏପରି କଥାଭାଷା ହୁଅନ୍ତି, ଆମ୍ଭମାନଙ୍କର ସେହି [illegible] ଛାଡ଼ି ରାଜବାଟୀ ମଧ୍ୟକୁ ନବ୍ୟ ସଭ୍ୟ ଭାଷା ପ୍ରବେଶ କରାଇବାର କି ଅଧିକାର ଅଛି [illegible] ବୁଝି ପାରୁ ନାହିଁ ।

ଉତ୍କଳ ସାହିତ୍ୟ/୧୦ମ ଭାଗ [illegible] ସଂଖ୍ୟା/୧୩୧୩ ସାଲ ।

## ।। ନଅ ।।

ଏଥିମଧ୍ୟରେ ପୁରୀର ମୁକ୍ତାର ଶ୍ରୀ ରାମଚନ୍ଦ୍ର ଦାସ ଇହଧାମ [illegible] କରି ଯାଇଅଛନ୍ତି । ଏହା ଉତ୍କଳ ପକ୍ଷରେ ଗୋଟିଏ ପ୍ରଧାନ ଦୁଃସମ୍ବାଦ । ରାମଚ[illegible] ବାଗ୍ମିତା ନ ଥିଲା, ବିଦ୍ୟା ନ ଥିଲା, ପ୍ରଭୁତ୍ୱ ନ ଥିଲା । ତାଙ୍କର ଥିଲା ଅଦମ୍ୟ ଉତ୍ସାହ, [illegible] ମନ, ନିଜର ସୀମା ମଧ୍ୟରେ କର୍ତ୍ତବ୍ୟସାଧନ । ସେଥି ନିମନ୍ତେ ଆଜି ଉତ୍କଳର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ରାମଚନ୍ଦ୍ରଙ୍କ ବିୟୋଗରେ ଦୀର୍ଘ ନିଃଶ୍ୱାସ ପଡୁଅଛି । ଉତ୍କଳର ଅନେକ ମହାରାଜା, ରାଜା, ଜମିଦାର, ଓକିଲ, ଡେପୁଟି, ମହାଜନ, ଗ୍ରାଜୁଏଟ, ବକ୍ତା ଅଛନ୍ତି କିନ୍ତୁ ରାମଚନ୍ଦ୍ରଙ୍କ ଶ୍ରେଣୀର ଗୋଟିଏ ହେଲେ ଲୋକ ମୋ ଆଖିରେ ପଡୁ ନାହିଁ ।

ରାମଚନ୍ଦ୍ରଙ୍କ ସଙ୍ଗରେ ବ୍ୟକ୍ତିଗତ ଭାବରେ ଗତ ତିନି ଚାରି ବର୍ଷ ହେଲା ମୋର ଆଳାପ ପରିଚୟ ହୋଇଥିଲା; କିନ୍ତୁ ଏଥିପୂର୍ବରୁ ତାଙ୍କର ଦେଶହିତୈଷଣାର ଅନେକ ପ୍ରମାଣ ପାଇଥିଲି । ନିଜର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲେ ସୁଦ୍ଧା ସେ କେତେଗୁଡ଼ିଏ ଲେଖକଙ୍କୁ ସାହାଯ୍ୟ ପ୍ରଦାନ କରି ନିଜ ବ୍ୟୟରେ ସେମାନଙ୍କ ପୁସ୍ତକଗୁଡ଼ିକ ମୁଦ୍ରିତ କରାଇ ଦେଇଥିଲେ । ସର୍ବପ୍ରଥମେ ତାଙ୍କ ସଙ୍ଗେ ମୋର ପୁରୀର ବ୍ରାହ୍ମଣ ସମିତିରେ ସାକ୍ଷାତ୍ ହୋଇଥିଲା । ସମିତିର ସଭ୍ୟମାନଙ୍କ କଥାଭାଷାରୁ ବୁଝିଥିଲି ଯେ, ସେ ସମିତିର

ଜଣେ ପ୍ରଧାନ ଉଦ୍‌ଯୋଗୀ ସଭ୍ୟ । ତତ୍‌ପରେ ୧୯୦୩ ମସିହା ଏପ୍ରିଲ ମାସରେ ମୁଁ କଟକର କେତେକ ବନ୍ଧୁଙ୍କ ସଙ୍ଗେ ଗଞ୍ଜାମର କନ୍‌ଫରେନ୍‌ସରେ ଯୋଗ ଦେଇଥିଲି । ରାମଚନ୍ଦ୍ର ମଧ୍ୟ ସେହି ଉପଲକ୍ଷରେ ବ୍ରହ୍ମପୁରଠାରୁ ଆମନ୍ତ୍ରିତ ହୋଇଥିଲେ । ଆମ୍ଭେମାନେ ଏକ ସ୍ଥାନରେ ବସା କରି ରହିଥିଲୁ । ଉକ୍ତ ଅବସରରେ ତାଙ୍କୁ ହୃଦୟର ଗଭୀରତା ଉପଲବ୍ଧି କରିବାର ସୁଯୋଗ ମତେ ମିଳିଥିଲା । ସେ, ମୁଁ ଓ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥବାବୁ ଏକତ୍ର ହୋଇ ଉତ୍କଳର ଅନେକ ଆଶାର କଥା, ନିରାଶାର କଥା, ସୁଖ ଦୁଃଖର କଥା ପକାଇଥିଲୁଁ । ସେତେବେଳେ ଆମ୍ଭମାନଙ୍କ ନିକଟରେ ଅନ୍ୟ କେହି ନ ଥିଲେ ଓ ପରସ୍ପରଙ୍କ ହୃଦ୍‌ଗତ ଭାବ, ଆଶା ଓ ନିରାଶା କୌଣସି ବିଷୟ ପରସ୍ପରଙ୍କ ନିକଟରେ ସରଳ ଭାବରେ ପ୍ରକାଶ କରିବାରେ ଆମ୍ଭେମାନେ କୁଣ୍ଠିତ ହୋଇ ନ ଥିଲୁଁ । ଉତ୍କଳର ଦୁର୍ଦ୍ଦଶା ଭାବି ସେ ସର୍ବଦା ଦୁଃଖରେ ଅଧୀର ହେଉଥିଲେ ଓ ସର୍ବଦା ତାଙ୍କର ସୌମ୍ୟ ମୂର୍ତ୍ତି ଭିତରେ ମ୍ଳାନ ହୃଦୟର କାଳିମା ପ୍ରକାଶ ପାଉଥିଲା । ଗଞ୍ଜାମ କନ୍‌ଫରେନ୍‌ସ୍ ସମୟରେ ଅନେକ ଲୋକ ଆନନ୍ଦରେ ନାଚି ଉଠିଲେ, ଅମାନିଶା ପାହିଗଲା ବୋଲି ରାବ ଦେଲେ; କିନ୍ତୁ ନିତାନ୍ତ ପକ୍ଷରେ ସେଠାରେ ତିନି ଜଣ ଉପସ୍ଥିତ ଥିଲେ, ଯେଉଁମାନଙ୍କ ମଧ୍ୟରେ ସ୍ଥିର ହୋଇଥିଲା ଯେ, ରାତି ପାହିବାକୁ ଅନେକ ବିଳମ୍ବ ଅଛି ।

ପୁନର୍ବାର କଟକର ପ୍ରଥମ ଓ ଦ୍ୱିତୀୟ କନ୍‌ଫରେନ୍‌ସ୍‌ରେ ଏବଂ ବାଲେଶ୍ୱରର କନ୍‌ଫରେନ୍‌ସ୍‌ରେ ଈଶ୍ୱର ଏହି ତିନି ଜଣଙ୍କୁ ଭେଟାଇଥିଲେ । ତିନି ବର୍ଷର ହୋ ହୋ, ନାଚ, କରତାଳି ଓ ବକ୍ତୃତାନିଚୟ ଏହି ତିନି ଜଣଙ୍କ ହୃଦୟରୁ କାଳିମା ମିଳାଇ ପାରି ନ ଥିଲା । ତାହା ସତ୍ତ୍ୱେ ରାମଚନ୍ଦ୍ରଙ୍କୁ ଉଦାସୀନତା ଛୁଇଁ ନ ଥିଲା । ସେ ନିଜର ସୀମା ମଧ୍ୟରେ, ନିଜର ସାଧ୍ୟ ଅନୁସାରେ ନିଭୃତରେ କର୍ତ୍ତବ୍ୟ କାର୍ଯ୍ୟ ସାଧନ କରି ଆସୁଥିଲେ । ଉତ୍କଳମାତାଙ୍କ ନିମନ୍ତେ ନିଜର ରକ୍ତ ଦେବାକୁ ସେ ସବୁବେଳେ ପ୍ରସ୍ତୁତ ଥିଲେ ।

ତାଙ୍କ ସଙ୍ଗେ ମୋର ସଦ୍‌ଭାବ ହେବା ପୂର୍ବରୁ ମୋର ଧାରଣା ଥିଲା ଯେ, ଇଂରାଜୀ ନ ପଢ଼ିଲେ ଉଚ୍ଚ ଭାବ ଜାଗରୂକ ହେବା ଅସମ୍ଭବ; କିନ୍ତୁ ଇଂରାଜୀ ଭାଷାନଭିଜ୍ଞ ରାମଚନ୍ଦ୍ରଙ୍କ ସଙ୍ଗେ ପରିଚୟ ହେବା ପରେ ମୋ ମନରୁ ସେ ଭାବ ସମ୍ପୂର୍ଣ୍ଣରୂପେ ତିରୋହିତ ହୋଇଥିଲା । ଘନିଷ୍ଠତା ପରେ ରାମଚନ୍ଦ୍ରଙ୍କ ପ୍ରତି ମନରେ ଯୁଗପତ୍ ଭକ୍ତି ଓ ସ୍ନେହ ଜାତ ହେଲା । ପୁରୀର ବ୍ରାହ୍ମଣ ସମିତିର ତଥା ଉତ୍କଳୀୟ ବ୍ରାହ୍ମଣ ସମାଜର ଘୋର ଅନ୍ଧତା ଓ ଜଡ଼ତା କି ରୂପେ ଦୂରୀଭୂତ ହେବ, ଏହି ମନ୍ତ୍ର ରାମଚନ୍ଦ୍ର ଦିବାନିଶି ଜପୁଥିଲେ । ଉତ୍କଳ କନ୍‌ଫରେନ୍‌ସ୍‌ର ସେ ଜଣେ ପ୍ରଧାନ ଭକ୍ତ ଥିଲେ । ପୁରୀର ଗ୍ରାମେ ଗ୍ରାମେ ଉତ୍କଳ କନ୍‌ଫରେନ୍‌ସର ଉଦ୍ଦେଶ୍ୟ କିପରି ପ୍ରକଟିତ ଓ ଉଦ୍‌ଘୋଷିତ ହେବ, ଏହା ତାଙ୍କର ଗୋଟାଏ ପ୍ରଧାନ ଚିନ୍ତାର ବିଷୟ ଥିଲା । ଅନେକ ସ୍ଥାନୀୟ ଦେଶହିତକର ଅନୁଷ୍ଠାନର ମୂଳରେ ରାମଚନ୍ଦ୍ର ପ୍ରଚ୍ଛନ୍ନ ଭାବରେ ବିଦ୍ୟମାନ ଥିବାର ଭୂରି ଭୂରି ପ୍ରମାଣ ମିଳେ । ଯେକୌଣସି ସଦନୁଷ୍ଠାନ ତାଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା, ସେ ତହିଁରେ ନିଜର

ସାଧ୍ୟାନୁସାରେ ସହାନୁଭୂତି ଦେଖାଉଥିଲେ ଓ ମନପ୍ରାଣ ଢାଳି ଯୋଗ ଦେଉଥିଲେ । କେତେଗୁଡ଼ିଏ ଉଚ୍ଚ ଭାବାନୁପ୍ରାଣିତ ଯୁବକ ରାମଚନ୍ଦ୍ରଙ୍କ ପଶ୍ଚାଦ୍ଦେଶରେ ବିଦ୍ୟମାନ ଥିଲେ; କିନ୍ତୁ ରାମଚନ୍ଦ୍ରଙ୍କ ବ୍ୟକ୍ତିଗତ ଉଦାହରଣ ସେମାନଙ୍କୁ ନବ ବଳରେ ବଳୀୟାନ୍ କରିଥିଲା - ଆଜି ରାମଚନ୍ଦ୍ରଙ୍କୁ ହରାଇ ସେମାନେ କର୍ଣ୍ଣଧାର ହରାଇଅଛନ୍ତି ।

ଗତ ଜୁନ୍ ମାସରେ କାର୍ଯ୍ୟୋପଲକ୍ଷ୍ୟରେ ମୁଁ ପୁରୀକୁ ଯାଇଥିଲି । ସେ ସମୟରେ ରାମଚନ୍ଦ୍ର ଶଯ୍ୟାଗତ ଓ ନିତାନ୍ତ ଦୁର୍ବଳ ହୋଇଥିଲେ । ଏପରି ଅବସ୍ଥାରେ ମୁଁ ତାଙ୍କ ସଙ୍ଗେ କଥୋପକଥନ କରି ତାଙ୍କର ଶାନ୍ତି ଭଙ୍ଗ କରିବାକୁ ଇତସ୍ତତଃ ହେବାର ସେ ଜାଣିପାରି ତାଙ୍କ ସଙ୍ଗେ ଉତ୍କଳର ବର୍ତ୍ତମାନ ଓ ଭବିଷ୍ୟତ୍ ସମ୍ବନ୍ଧରେ କଥାଭାଷା କରିବାକୁ ବାରମ୍ବାର ଅନୁରୋଧ କଲେ ଏବଂ ଶଯ୍ୟାଗତ ହୋଇ ସୁଦ୍ଧା ମୋ ସଙ୍ଗରେ ଅବିଶ୍ରାନ୍ତ ଭାବରେ ଦୁଇ ଘଣ୍ଟା କଥୋପକଥନ କରିଥିଲେ । ତାଙ୍କ ମୁଣ୍ଡ ପାଖରେ ତାଡ଼ା ତାଡ଼ା ହୋଇ ଉତ୍କଳର ସମ୍ବାଦପତ୍ରଗୁଡ଼ିକ ସୁରକ୍ଷିତ ହୋଇଥାଏ । ସେଗୁଡ଼ିକ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ମତେ କହିଲେ, ''ଭାଇ ! ଏ ରୋଗଶଯ୍ୟାରେ ଏହି କାଗଜଗୁଡ଼ିକ ପୁନରାବୃତ୍ତି କରୁଥାଏଁ ଓ ମଝିରେ ମଝିରେ ଆଖିରୁ ଟୋପାଏ ଖଣ୍ଡେ ଲୁହ ବୋହିପଡ଼େ । ମନେ ମନେ ବିଚାରେଁ, ଯେବେ ଏହିପରି ଭାବୁ ଭାବୁ ମୋ ଜୀବନଟା ଚାଲିଯିବ, ତାହାହେଲେ ମୃତ୍ୟୁଶଯ୍ୟାରେ ହେଲେ ଟିକିଏ ସାନ୍ତ୍ୱନା ପାଇବି ।'' ତାଙ୍କ ତକିଆ ପାଖରେ ଖଣ୍ଡେ ଡାଏରୀ, ଖଣ୍ଡେ ଦୈନିକ ପଞ୍ଜିକା ଓ ଖଣ୍ଡେ ଟିପାବହି ରଖାହୋଇଥିଲା । ସେ ଟିପାବହି ଖଣ୍ଡକ ମୁଁ ପଢ଼ିବା ନିମନ୍ତେ ଆଗ୍ରହ ପ୍ରକାଶ କଲାରୁ ମତେ ନିଷେଧ କଲେ, କହିଲେ, ''ସେଗୁଡ଼ିକ ମୋର ପ୍ରଳାପ, ସେଗୁଡ଼ାକ ବାତୁଳତା ।'' ଏହା ଶୁଣି ଅଗତ୍ୟା ନିବୃତ୍ତ ହେଲି । ମନେ ମନେ ବିଚାରିଲି - ସେ ବ୍ୟାକୁଳତାରୁ କଣିକାଏ ହେଲେ ମୋର ଥା'ନ୍ତା ।

ଅନେକ ସମୟରେ ନିଭୃତରେ ରାମଚନ୍ଦ୍ର ଓ ମୁଁ ଉତ୍କଳର ସୁଖଦୁଃଖ ସମ୍ବନ୍ଧରେ ଅନେକ କଥାବାର୍ତ୍ତା ହୋଇଅଛୁଁ । ପାଶ୍ଚାତ୍ୟ ଶିକ୍ଷାରେ ଅଭିମନ୍ତ୍ରିତ ନ ହୋଇଥିଲେ ସୁଦ୍ଧା ତାଙ୍କର ଯେଉଁ ଉଦାର ଭାବ ଥିଲା ତାହା ଦେଖି ମୁଁ ଯୁଗପଦ୍ ଆନନ୍ଦିତ ଓ ବିସ୍ମିତ ହୋଇଅଛି । ଆଜି ଉତ୍କଳ ମାତାଙ୍କର ଭବିଷ୍ୟତ୍ ତମୋମୟ । ତାହା ନ ହୋଇଥିଲେ ଆଜି ସେ ରାମଚନ୍ଦ୍ରଙ୍କୁ ହରାଇ ନ ଥାନ୍ତେ । ମୁଁ ଥରେ ତାଙ୍କୁ ତର୍କଚ୍ଛଳରେ କହିଥିଲି, ''ଉତ୍କଳରେ ଏତେ ବଡ଼ଲୋକ ଥାଉଁ ଥାଉଁ ଉତ୍କଳର ଭବିଷ୍ୟତ୍ ସମ୍ବନ୍ଧରେ ଆପଣ ଏତେ ମ୍ଳାନମୁଖ କାହିଁକି ?'' ସେ ଉତ୍ତର କଲେ, ''ମାରେ ସିପାହି, ନାମ ସର୍ଦ୍ଦାରକା । ବଡ଼ଲୋକଙ୍କ ଦ୍ୱାରା କୌଣସି କାଳେ କିଛି ହେବ ନାହିଁ । ସେମାନେ ଆପଣା ମର୍ଯ୍ୟାଦା ଓ ମୁଣ୍ଡ ଜଗୁ ଜଗୁ ପ୍ରାଣାନ୍ତ, ସେମାନେ ଉତ୍କଳ-ବିଷୟ ଚିନ୍ତା କରିବେ କେତେବେଳେ ? ସେମାନେ ବାହାଦୁରି ନେବାକୁ ବ୍ୟସ୍ତ, କାର୍ଯ୍ୟ ସଙ୍ଗେ ସେତେ ଇଲାକା ରଖନ୍ତି ନାହିଁ । କାର୍ଯ୍ୟକ୍ଷେତ୍ର ଚାରିଦଉଡ଼ି କଟାଙ୍କର - ତୁମ ଆମ ଭଳି ଛତରଖିଆମାନଙ୍କର । ଜିଣିଲେ ପରଶୁରାମ କ୍ଷେତ୍ରୀ, ହାରିଲେ ବ୍ରାହ୍ମଣ ଭିଖାରି ।''

ବିଗତ କନ୍‌ଫରେନ୍‌ସ୍ ପୂର୍ବରୁ ରାମଚନ୍ଦ୍ର ଅତିଶୟ ପୀଡ଼ିତ ହୋଇ ଚଳତ୍‌ଶକ୍ତିବିହୀନ ହୋଇଥିଲେ; କିନ୍ତୁ ବାଲେଶ୍ୱରଠାରେ ମାତୃପୂଜାରେ ଯୋଗ ଦେବା ନିମନ୍ତେ କଦାପି ପଶ୍ଚାତ୍‌ପଦ ହୋଇ ନ ଥିଲେ । ସେଠି ତାଙ୍କର ବକ୍ତୃତା ଶୁଣି ସମସ୍ତେ ମୁଗ୍‌ଧ ହେଉଥିଲେ ।

ରୋଗଶଯ୍ୟାରେ ତାଙ୍କର ପରିବାରବର୍ଗ ଓ ଶିଶୁସନ୍ତାନମାନଙ୍କ ପାଇଁ ସେ ଚିନ୍ତିତ ନ ଥିଲେ । ମୁଁ ସେ କଥା କହିଲାରୁ କହିଲେ - ''ସେଥିପାଇଁ ଈଶ୍ୱର ଅଛନ୍ତି ।'' ସେହି ସମୟରେ ମୋର 'ଭୀଷ୍ମଶ୍ରାଦ୍ଧ' କଥା ମନେ ପଡ଼ିଲା । ଭୀଷ୍ମ ଅପୁତ୍ରକ ଥିଲେ, ଜଗତକୁ ସେ ପୁତ୍ର ବୋଲି ମଣୁଥିଲେ । ଅଦ୍ୟାପି ପ୍ରତ୍ୟେକ ହିନ୍ଦୁ ଗୃହସ୍ଥ ଭୀଷ୍ମଙ୍କର ବାର୍ଷିକ ଶ୍ରାଦ୍ଧ କରିଥା'ନ୍ତି । ମୁଁ ମନେ ମନେ ବିଚାରିଲି ଯେ ଓଡ଼ିଶା ରାମଚନ୍ଦ୍ରଙ୍କ ପାଇଁ 'ଭୀଷ୍ମଶ୍ରାଦ୍ଧ' କରିବାକୁ ଧର୍ମତଃ ବାଧ, ଅର୍ଥାତ୍ ତାଙ୍କ ପରିବାର ଓ ଶିଶୁସନ୍ତାନଙ୍କ ଭାର ଗ୍ରହଣ କରିବେ । ଶୁଣିଲି, ରାମଚନ୍ଦ୍ରଙ୍କ ମୃତ୍ୟୁ ପରେ ପୁରୀସ୍ଥ ତାଙ୍କର କେତେକ ବନ୍ଧୁ ତାଙ୍କ ସନ୍ତାନମାନଙ୍କର ବିଦ୍ୟାଶିକ୍ଷାର ଭାର ବହନ କରିବା ପାଇଁ ପ୍ରସ୍ତୁତ ହୋଇଅଛନ୍ତି ।

ରାମଚନ୍ଦ୍ର ପୁରୀରେ ତଥା ଓଡ଼ିଶାରେ କେତେଗୁଡ଼ିଏ ଶିଷ୍ୟ ରଖି ଯାଇଅଛନ୍ତି, ସେମାନେ ରାମଚନ୍ଦ୍ରଙ୍କ ଉଦାହରଣକୁ ଅନୁସରଣ କରି ଦେଶର ହିତ ସାଧନ କରିବେ, ଏହା ଆଶା ହେଉଅଛି ।

ଉତ୍କଳ ସାହିତ୍ୟ/୧୦ମ ଭାଗ/୫ର୍ଥ ସଂଖ୍ୟା/୧୩୧୪ ସାଲ ।

## ।। ଦଶ ।।

ମାଇପେ କହନ୍ତି - ''ଆଲୋ ସଖି ! ଆପଣା ମହତ ଆପେ ରଖି ।'' ଏହି ପ୍ରବାଦ ମଧ୍ୟରେ ଆତ୍ମସମ୍ମାନର ପ୍ରଧାନତମ ମନ୍ତ୍ର ନିହିତ ଅଛି । ଯେଉଁ ଜାତି ଆପଣାର ମହତ୍ତ୍ୱ ଆପେ ରକ୍ଷା କରିବାକୁ ଜାଣି ନାହିଁ, ସେ ଜାତି ପକ୍ଷରେ ଜାତୀୟ ସମ୍ମାନ ଆକାଶକୁସୁମବତ୍ ପଦାର୍ଥ । ଆପଣା ପ୍ରତି, ପରିବାର ପ୍ରତି, ଆପଣା ଗ୍ରାମର ଲୋକଙ୍କ ପ୍ରତି, ଦେଶର ଲୋକଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବାକୁ ନ ଶିଖିଲେ ଆପଣା ଜାତି କଦାପି ଉନ୍ନତି ପଥରେ ଅଗ୍ରସର ହୋଇ ପାରିବ ନାହିଁ । ଜଣେ ବନ୍ଧୁ ମତେ କହିଥିଲେ ଯେ, ତାଙ୍କର ଅଧସ୍ତନ କର୍ମଚାରୀ ଓ ଭୃତ୍ୟମାନେ ତାଙ୍କ ଆଦେଶ ଅବଜ୍ଞା କରନ୍ତି, ତାଙ୍କୁ ସମ୍ମାନ ଦିଅନ୍ତି ନାହିଁ । ଦିନେ ଦେଖିଲି ଉପରୋକ୍ତ ବନ୍ଧୁଟି ଆପଣା ବାଡ଼ିଦୁଆରର ଚାବି ଚାକର ହାତକୁ ବଢ଼ାଇ ଦେଇଅଛନ୍ତି, ଚାବିଟି ପାଇ ଚାକରଟି ତହିଁର ଅସଦ୍‌ବ୍ୟବହାର କରିଅଛି । ସେତିକିବେଳେ ବନ୍ଧୁଙ୍କ ଅଭିଯୋଗର ଗୂଢ଼ କାରଣଟି ଧରାପଡ଼ିଲା । ଆମ ଜାତିର ଲୋକେ ଅନେକଙ୍କ ନିକଟରେ ହେୟ, ଅପଦାର୍ଥ ବୋଲି ପରିଗଣିତ ହୋଇଛନ୍ତି ଓ ଏଥିପାଇଁ ଅଭିଯୋଗ ମଧ୍ୟ କରିଥାନ୍ତି; କିନ୍ତୁ କେତେଜଣ ସେ ଅଭିଯୋଗର ମୂଳ ଅନୁସନ୍ଧାନ କରନ୍ତି ? ଆମ୍ଭମାନଙ୍କ ମଧ୍ୟରେ କେତେଜଣ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କଠାରୁ ଲାଞ୍ଛନା ଓ ଅପମାନ

ପାଇ, ଯେଉଁ ଅନୁଗ୍ରହ ପାଇବାର ଆଶା କରିଥାନ୍ତି, ସେ ଆଶାରେ ଜଳାଞ୍ଜଳି ଦେବାକୁ ପ୍ରସ୍ତୁତ ଅଛନ୍ତି ? ଆମ୍ଭ ଜାତିର କେତେଗୁଡ଼ିଏ ଲକ୍ଷଣ ଅଛି । ସେସବୁ ସ୍ଥିର କରିବା ବା ତାହାର ଗୋଟାଏ ନିର୍ଘଣ୍ଟ ପ୍ରସ୍ତୁତ କରିବା ମୋ ପକ୍ଷରେ ଅସମ୍ଭବ । ତେବେ ମୁଁ ଅନେକ ଶିକ୍ଷିତ, ସମ୍ଭ୍ରାନ୍ତ ଓ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କଠାରେ ଗୋଟିଏ ଗୁଣ ଦେଖିଅଛି - ସେମାନେ ଯାଚକ ରୂପେ କୌଣସିଠାରେ ଉପସ୍ଥିତ ହେଲେ ନିଜର ନୀଚ ସ୍ୱାର୍ଥ ଲାଭରେ ବାଧା ପଡ଼ିବ ବୋଲି ଆପଣା ପ୍ରତି, ଜାତୀୟ ଲୋକଙ୍କ ପ୍ରତି ଓ ଆପଣା ଜାତି ପ୍ରତି କେତେଗୁଡ଼ିଏ ଅପମାନ ସୂଚକ ବିଶେଷଣ ପ୍ରୟୋଗ ହେବାର ଶୁଣି ତାହା ଅନୁମାନ ବଦନରେ ସହ୍ୟ କରନ୍ତି । ଏମନ୍ତ କି, ପଦେ ଅଧେ ବିଶେଷଣର ବିଶେଷଣ ନିଜେ ଯୋଗ କରିଦେବା ନିମନ୍ତେ କୁଣ୍ଠିତ ହୁଅନ୍ତି ନାହିଁ ।

ସ୍ୱାର୍ଥ ଦୁଇ ପ୍ରକାର - ସାଧାରଣ ସ୍ୱାର୍ଥ ଆଉ ବିଶେଷ ସ୍ୱାର୍ଥ । ହାକିମହୁକୁମାଙ୍କ ନିକଟରେ କୌଣସି ବିଶେଷ କାର୍ଯ୍ୟ ନ ଥିଲେ ସୁଦ୍ଧା ରବିବାର ଦିନ ଯାଇ ଗୋଟାଏ ସଲାମ ପକାଇ ପଦେ ଅଧେ ସ୍ତବ ପାଠ କରିବା ଏବଂ ସାଧାରଣ ସ୍ୱାର୍ଥର ବଶବର୍ତ୍ତୀ ହୋଇ ହାକିମହୁକୁମାଙ୍କ କୃପାଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ମଝିରେ ମଝିରେ ଯାଇ ହାକିମମାନଙ୍କୁ ଗୋଟାଏ ଲେଖାଁ ସଲାମ ଠୁକିଦେଇ ଆସନ୍ତି । କେଜାଣି ଏହାଦ୍ୱାରା କେବେହେଲେ କାର୍ଯ୍ୟକ୍ଷେତ୍ରରେ ହାକିମଙ୍କ ହାବୁଡ଼ରେ ପଡ଼ିଗଲେ ଏହି 'ସାଧାରଣ ସଲାମ'ର ମୂଲ୍ୟଟା ଅସୁଲ ହୋଇଯିବ କିମ୍ବା ଉପାଧିଟାଏ ମିଳିଯିବ । ଏଣେ ହାକିମଙ୍କ ସଙ୍ଗରେ ଘନିଷ୍ଠତା ଅଛି ବୋଲି ସାଇପଡ଼ିଶା, ଚାକରବାକର, ପ୍ରଜା, ମକ୍‌କେଲମାନଙ୍କ ମହଲରେ ଖ୍ୟାତ ହେଲେ ଲୋକଙ୍କର ଗୋଟିଏ ଭୟ ରହିଯିବ । ହାକିମମାନଙ୍କ ନିକଟକୁ କେତେବେଳେ ମାଛଟାଏ, କେତେବେଳେ ସୁଖାଦ୍ୟ ସଜ୍ଜିତ ଡାଲାଟାଏ - ଏହି ସାଧାରଣ ସ୍ୱାର୍ଥଲାଭ ଉଦ୍ଦେଶ୍ୟରେ ପଠାଯାଇଥାଏ ।

ବିଶେଷ ସ୍ୱାର୍ଥ - କୌଣସି ଉପସ୍ଥିତ ଅନୁଗ୍ରହ ଲାଭ କରିବା ଉଦ୍ଦେଶ୍ୟରେ ହାକିମମାନଙ୍କ ନିକଟରେ ଯେଉଁ ଅନୁସରଣ କରାଯାଏ । ଏହା ବଳିଗଲେ ଅର୍ଥାତ୍ କୌଣସି ଜାନ୍ତବ, ଉଦ୍ଭିଦ ବା ଧାତୁମୟ ପଦାର୍ଥରେ ପରିଣତ ହେଲେ ତାହାକୁ ଉତ୍କୋଚ ବୋଲି କହନ୍ତି ।

ମନେକରନ୍ତୁ, ମୋର ସାଧାରଣ କିମ୍ବା ବିଶେଷ ସ୍ୱାର୍ଥଲାଭ ଆଶାରେ କୌଣସି ଶ୍ୱେତାଙ୍ଗ ହାକିମଙ୍କ ନିକଟକୁ ମୁଲାକାତ କରିବାକୁ ଯାଇ 'as your honour pleases' 'ହଜୁର ଦୁନିଆକା ମା ବାପ୍' ଇତ୍ୟାଦି ଆରମ୍ଭ କରି ବସିଛି । ଏହି ସମୟରେ ମୋର କୌଣସି ପରିଚିତ ବ୍ୟକ୍ତିଙ୍କ ନାମ ଧରି ଗୋଟିଏ ବିଶେଷଣ ପ୍ରୟୋଗ କରି ହାକିମ କହିଲେ - ''ବଦ୍‌ମାସ୍ ଆଦ୍‌ମି ହେ ।'' ମୁଁ ସେଥିରେ ଆହୁରି ବିଶେଷଣ ଯୋଗ କରି ଉତ୍ତର କଲି - ''ଖୋଦାବନ୍ଦ, ଠିକ୍ ବୋଲ୍‌ତେ ହେଁ । ବଡ଼ା ବଦ୍‌ମାସ୍ ଆଦ୍‌ମି ହେ ।'' ଏତଦ୍ୱାରା - ଦେଶର ସମ୍ମାନ, ମୋର ସମ୍ମାନ, ମୋ ଜାତିର ସମ୍ମାନ କ'ଣ ହେଲା ?

ବଢ଼ିଲା ନା କମିଲା ? ଘଟଣାକ୍ରମେ - ସେହି ହାକିମଙ୍କ ନିକଟରେ ପହଞ୍ଚିଲା । ହାକିମ - ସମ୍ବନ୍ଧରେ ମୋତେ ଯାହା କହିଥିଲେ, ମୋ ସମ୍ବନ୍ଧରେ ମଧ ତାଙ୍କୁ ସେଇଆ କହିଲେ । ମୁଁ ଯାହା ଉତ୍ତର କରିଥିଲି - ମଧ ସେଇଆ ଜବାବ ଦେଲେ । ଏଇଥିରୁ ବିଦେଶୀମାନେ ଆମ୍ଭମାନଙ୍କ ମୂଲ୍ୟ ଠଉରାଉଥା'ନ୍ତି । ସେଥିପାଇଁ କହନ୍ତି, ''ଆଲୋ ସଖି ! ଆପଣା ମହତ ଆପେ ରଖି ।''

ଉତ୍କଳ ସାହିତ୍ୟ/୧୦ମ ଭାଗ/୭ମ ସଂଖ୍ୟା/୧୩୧୪ ସାଲ ।

## ।। ଏଗାର ।।

ସେଦିନ ଉତ୍କଳ ସାହିତ୍ୟ ସମାଜର ଗୋଟିଏ ଅଧିବେଶନ ହୋଇଥିଲା । ସେଥିରେ 'ଉତ୍କଳର ଲୌକିକ ସାହିତ୍ୟ' ବିଷୟରେ ମୋର ବନ୍ଧୁ ଶ୍ରୀଯୁକ୍ତ ବାବୁ ଅଭିରାମ ଭଞ୍ଜ ଏମ୍.ଏ., ବି.ଏଲ୍. ମହାଶୟ ବକ୍ତୃତା କରିବେ ବୋଲି ସ୍ଥିର ହୋଇଥିଲା । ବକ୍ତୃତାର ବିଷୟ ନିର୍ବାଚନ କରିବା ନିମନ୍ତେ ସେ ମତେ ଅନୁରୋଧ କରିଥିଲେ । ମୁଁ କହିଲି, Popular Literature of Orissa, ଏହାର ଉତ୍କଳାନୁବାଦ କରିବା ପାଇଁ ଆମ୍ଭ ଦୁହିଁଙ୍କୁ ଘଣ୍ଟାଏ ଲାଗିଥିଲା । ପ୍ରଥମେ - 'ସାଧାରଣ ସାହିତ୍ୟ', 'ଇତର ସାହିତ୍ୟ', 'ଅନୁଚ୍ଚ ସାହିତ୍ୟ', 'ନୀଚ ସାହିତ୍ୟ', 'ନିମ୍ନ ସାହିତ୍ୟ', 'ବ୍ୟକ୍ତିଗତ ସାହିତ୍ୟ', 'ସର୍ବଜନବୋଧ୍ୟ ସାହିତ୍ୟ', 'ସାର୍ବଜନିକ ସାହିତ୍ୟ' ଇତ୍ୟାଦି କେତେଗୁଡ଼ିଏ ପ୍ରତିଶବ୍ଦ ପରୀକ୍ଷିତ ହେଲା । ଶେଷରେ ଅଭିରାମବାବୁଙ୍କ 'ଲୌକିକ ସାହିତ୍ୟ' ଅନୁବାଦଟା ମୋ ମନକୁ ଆସିଲା । ମନେ ମନେ ବିଚାରିଲି, ଏଡ଼େ ସହଜ ଅନୁବାଦଟା ମୋ ମନେ ନ ପଡ଼ିଲା କିପରି ? ପଛକୁ ଆଶ୍ୱସ୍ତ ହେଲି, 'ଏମ୍.ଏ. ପାସ୍' ଓ ଏମ୍.ଏ. ଫେଲ' ମଧରେ ପ୍ରଭେଦଟା ଅନିବାର୍ଯ୍ୟ । ଯାହାହେଉ, ଉପଯୁକ୍ତ ଅନୁବାଦ ନିମନ୍ତେ ଭାଇସାହେବଙ୍କୁ ଧନ୍ୟବାଦଟାଏ ଦେଲି । ଦିନେ ଦୁଇଦିନ ପରେ ଅଭିରାମବାବୁ କହିଲେ, ''ଭାଇ, ବିଷୟଟା ତ ନିର୍ବାଚନ କରିଦେଲ; କିନ୍ତୁ କିପରି ଭାବରେ ତାହା ଆଲୋଚନା କରିବି, ବାଟଟା ଭଲା ଦେଖାଇଦିଅ ।'' ମୁଁ ଉତ୍ତର କଲି, "What it is, what it was, what it should be, what it will be, to what it had been, what it should have been, what it has been and what it will have been, ଏହିପରି ଭାବରେ ଚର୍ଚ୍ଚା କରିଯିବ ।'' ନବ୍ୟଶିକ୍ଷିତ ବନ୍ଧୁମାନଙ୍କ ମଧରେ ଏହିପରି ଭାବରେ ଅନେକ ଥର କଥା ହୋଇଅଛି, ମୋ କଥାଟା ମଧ ସେହିପରି ବାଏଁ ବାଏଁ ଉଡ଼ିଗଲା ।

ତା'ପରେ ଆସି କେତେକ ସଭ୍ୟ ସଭାଗୃହରେ ଜୁଣ୍ଟ ହେଲୁଁ । କଟକଟା ଉତ୍କଳର କେନ୍ଦ୍ରରେ, ସେଥିରେ ପୁଣି 'ଉତ୍କଳ ସାହିତ୍ୟ ସମାଜ'ର ଗୋଟିଏ ଅଧିବେଶନ, ଅଧିବେଶନରେ ମଧ ବିଶେଷତ୍ୱ ଅଛି; କାରଣ ବର୍ଷାରମ୍ଭ ଠାରୁ ଆଠ ନଅ ମାସ ମଧରେ

'ଅୟମାରମ୍ଭ' । ସମାଜର କଟକବାସୀ ସଭ୍ୟ ଓ ପୃଷ୍ଟପୋଷକଙ୍କ ସଂଖ୍ୟା ପଣେ କି ଛଅକୋଡ଼ି; ଚାହୁଁ ଚାହୁଁ ଏକ, ଦୁଇ, ତିନି, ଚାରି ଠାରୁ ୧୪ ପର୍ଯ୍ୟନ୍ତ ଗଲା, ବାକି ଜଣେ ସଭ୍ୟ ନ ଆସିଲେ ସଭାର କାର୍ଯ୍ୟ ଆରମ୍ଭ ନିଷେଧ । ଯେଉଁ ସଭ୍ୟଙ୍କ ଘର ସଭାଗୃହର ନିକଟରେ ? ତାଙ୍କ ନିକଟକୁ ଜଣେ ସଭ୍ୟ ଯାଇ ଡାକିଆଣନ୍ତୁ; ଏହିପରି ବିଚାର ପଡ଼ିଲା । ଯେଉଁ ସଭ୍ୟ ଡାକିବାକୁ ଯିବେ ସେ ଯେବେ ବନ୍ଧୁଙ୍କୁ ନ ପାଇ ସେହିଆଡ଼େ ଖସନ୍ତି, ତାହେଲେ ଆଜି ସଭାର ଅଧିବେଶନ ହେବା କଥା ସେହିପରି ସେହିପରି; ଏହା ଭାବି ସମସ୍ତେ ବସିଛୁଁ । ଏହି ସମୟରେ ଜଣେ ସଭ୍ୟ ଆସି ସଭାଗୃହରେ ପ୍ରବିଷ୍ଟ ହେଲେ । ସମସ୍ତେ ତାଙ୍କୁ ସସ୍ନେହରେ ଅଭିବାଦନ କଲେ - ସଭାର କାର୍ଯ୍ୟ ଆରମ୍ଭ ହେଲା । ଏସବୁ ଘଟଣା ମୋ ମନରେ ସେ ସମୟରେ ଯେଉଁ ଭାବ ଉଦିତ ହେଲା, ତାହା ଏହି - "ହେ ଉତ୍କଳମାତା, ତୁ ଧନ୍ୟା, ହେ ଉତ୍କଳ ସାହିତ୍ୟ, ତୁ ଧନ୍ୟ, ହେ ଉତ୍କଳ ସମାଜ, ତୁ ଧନ୍ୟ, ହେ ଉତ୍କଳ ସାହିତ୍ୟ ସମାଜର ସଭ୍ୟମାନେ, ତୁମ୍ଭେମାନେ ଧନ୍ୟ । ସବୁ ସଭ୍ୟ ଯେବେ ସମାଜର ଅଧିବେଶନରେ ଉପସ୍ଥିତ ହେବେ, ସେ ସମୟରେ ତାଙ୍କ ଅନୁପସ୍ଥିତିରେ ଦେଶର ଅନ୍ୟାନ୍ୟ ଅତ୍ୟାବଶ୍ୟକ ବିଷୟ ଭାବିବାକୁ କେହି ଘରେ ରହିବେ ନାହିଁ, ଏହି ନୀତିର ଅନୁସରଣ କରି ଯେଉଁ ସଭ୍ୟମାନେ ଆଜି ସଭାକୁ ନ ଆସି ଘରେ ଥାଇ ପୁତ୍ର ସେବା, କଳଂତ୍ର ସେବା, ମହାପ୍ରସାଦ ସେବା, ମୋଦକ ସେବା ଇତ୍ୟାଦି କରୁଅଛନ୍ତି, (ନୋଟ - ସମ୍ପାଦକ ମହାଶୟ, ଦେଖିବେ ଏଠାରେ ଯେପରି ମୁଦ୍ରାକର ପ୍ରମାଦ ରହି ନ ଯାଏ) ସେମାନେ ମଧ ଧନ୍ୟ ।" ଯାହାହେଉ ସଭାରେ ଅଳ୍ପସଂଖ୍ୟକ ଲୋକ ଉପସ୍ଥିତ ହେବାର ଦେଖି ଆମ୍ଭେମାନେ ମଧ ଟିକିଏ ଚିନ୍ତାଗ୍ରସ୍ତ ହେଲୁ - ଶ୍ରୋତୃମଣ୍ଡଳୀଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କଲେ ସିନା ବକ୍ତାଙ୍କ ଉତ୍ସ ବା ପ୍ରସ୍ରବଣ ଫିଟିବ, ୧୦-୧୫ଟି ଲୋକଙ୍କୁ ସମ୍ବୋଧନ କରିବାକୁ ଗଲେ ବାଗ୍ମୀପ୍ରବର ମଧ ଘଣ୍ଟାଏ ଥକ୍କା ମରା ହୋଇଯିବେ, ଅନ୍ୟ ପରେ କଥା । ମୁଁ ଏହି କଥାଟା ଭାବୁଛି, ଏହି ସମୟରେ ଅଭିରାମବାବୁ ମଧ ତାହା କହି ପକାଇଲେ । କ୍ଷଣକାଳ ପରେ କଟକ ଟ୍ରେନିଂ ସ୍କୁଲର ପଣ୍ଡିତ ବିଭାଗର ଛାତ୍ରଗୁଡ଼ିକ ଆସି ଉପସ୍ଥିତ ହେଲେ । ସଭାଗୃହର ଅନେକ ଗୁଡ଼ିଏ ଦ୍ୱାର ବନ୍ଦ ଥିଲା, ସେଥିଯୋଗୁଁ ସମାଜର ସଭାପତି ମହାଶୟ ବାୟୁରେ ଅଙ୍ଗାରାକାମ୍ଳ ଭାଗ ବେଶି ହୋଇ ଯିବାର ଆଶଙ୍କାରେ ପ୍ରବେଶୋନ୍ମୁଖ ଯୁବକମାନଙ୍କୁ ପାର୍ଶ୍ୱବର୍ତ୍ତୀ ଗୃହରେ ଅବସ୍ଥାନ କରି ବକ୍ତୃତା ଶୁଣିବା ନିମନ୍ତେ ଇଙ୍ଗିତ କଲେ । ତଦ୍‌କ୍ଷଣାତ୍ ମୁଁ ଓ ମୋର ବନ୍ଧୁ ବାବୁ ବ୍ରଜସୁନ୍ଦର ଦାସ ବି.ଏ. ମହାଶୟ ଚିତ୍କାର କରି ଉଠିଲୁ - "ନା, ନା, ସେମାନେ ସମସ୍ତେ ଭିତରକୁ ଆସନ୍ତୁ ତାହା ନ ହେଲେ ବକ୍ତା କାହାକୁ ଚାହିଁ ବକ୍ତୃତା କରିବେ ?" ଉତ୍କଳଖଣ୍ଡର ସର୍ବୋଚ୍ଚ ଉତ୍କଳ ବିଦ୍ୟାଳୟର ପ୍ରାୟ ୫୦ ଜଣ ଛାତ୍ରଙ୍କ ଦ୍ୱାରା ସଭାଗୃହର କେତେକ ଅଂଶ ପୂର୍ଣ୍ଣ ହେଲା ଓ ସଭାର କାର୍ଯ୍ୟ ଆରମ୍ଭ ହେଲା । ଦୁଇ ତିନିଗୋଟି ପ୍ରସ୍ତାବ ସ୍ଥିରୀକୃତ ହେଲାରୁ ସଭାପତିଙ୍କ ଆଦେଶକ୍ରମେ ଅଭିରାମବାବୁ ଗାତ୍ରୋତ୍ଥାନ କଲେ । ସେତିକିବେଳେ ମୋ ହାତରେ ଶ୍ରୀଯୁକ୍ତ

ବିଶ୍ୱନାଥ କର (ସାହିତ୍ୟ ସମ୍ପାଦକ) ପୁଳାଏ କାଗଜ ଓ ଖଣ୍ଡେ ପେନ୍‌ସିଲ ଗୁଞ୍ଜିଦେଲେ । ମତଲବଟା କଣ ? ନା, ନିଜେ ଅଭିନିବିଷ୍ଟ ହୃଦୟରେ ବକ୍ତୃତାର ରସମାଧୁର୍ଯ୍ୟ ଓ ବକ୍ତାଙ୍କର ମନର ଭାଗଗୁଡ଼ାକ ଛାଙ୍କି ନେବେ ଓ ତାଙ୍କ ନିମନ୍ତେ ମୁଁ କାଗଜରେ ବକ୍ତୃତାଟିର ମର୍ମ ନୋଟ୍ କରିଦେବି । ମୁଁ ସଭାର ଜଣେ ସହକାରୀ ସମ୍ପାଦକ । ସମ୍ପାଦକଙ୍କ ଆଦେଶ ପାଳନ କରିବା ନିମନ୍ତେ ମୁଁ ଆଇନ ଅନୁସାରେ ବାଧ୍ୟ; ତା ଉପରେ ଫେର ଏତକ କରି ଦେଲେ, ବିଶ୍ୱନାଥବାବୁଙ୍କ ଠାରୁ 'ସାବାସ'ଟାଏ ପାଇବି । କେଜାଣି କାହିଁକି (ବିଶ୍ୱନାଥବାବୁଙ୍କ ହସ୍ତର କୋମଳତାରୁ ହେଉ କିମ୍ବା ମୋ ପିଠିର କିଛି ବିଶେଷ ଗୁଣ ଯୋଗୁଁ ହେଉ) ବିଶ୍ୱନାଥବାବୁ ମୋ ପିଠିଟା ଆଉଁଶି ଦେଲେ ମତେ ବଡ଼ ଆରାମ ବୋଧହୁଏ । ଏଥିପାଇଁ କେତେ ଅନ୍ତରଙ୍ଗ ବନ୍ଧୁଙ୍କ ଠାରୁ ମିଠା କଡ଼ା ପଦେଅଧେ ମଧ୍ୟ ଶୁଣିବାକୁ ହୋଇଥାଏ । କେହି କେହି ଏଥିଯୋଗୁଁ ମତେ କହନ୍ତି, 'ତୁମେ ବିଶ୍ୱନାଥବାବୁଙ୍କ ଦଳର', 'ତୁମେ ଉତ୍କଳ ସାହିତ୍ୟର ସମ୍ପାଦକଙ୍କ ଅନୁଗତ', 'ତୁମେ କନଫରେନ୍‌ସ୍‌ର ବିରୋଧୀ', 'ପ୍ରଣତ ଗୋପାଳ,' 'ବିଶ୍ୱନାଥବାବୁଙ୍କ ଓକିଲ', 'ଉତ୍କଳ ସାହିତ୍ୟ ପତ୍ରିକାର ଅଯଥା ଉକ୍ତି' ଓ ଏହି ଯୋଗୁଁ ଅନ୍ୟାନ୍ୟ ପତ୍ରିକାର ବିପକ୍ଷ - ଏହିପରି ଅନେକ ସମ୍ବୋଧନ ମତେ ଶୁଣିବାକୁ ହୋଇଥାଏ; କିନ୍ତୁ ବିଶ୍ୱନାଥବାବୁଙ୍କ 'ବାହାବା' କୁହୁକଟା ବହୁ ଚେଷ୍ଟାରେ ଛାଡ଼ି ହେଲା ନାହିଁ । ଗୋଟାଏ ସଦାବର୍ତ୍ତ ମଠର ମହନ୍ତ ମତେ ଚେଲା କରିବାକୁ ବସିଥିଲେ; ଏମନ୍ତ କି, ଚରମ ପତ୍ରର (ଉଇଲନାମା) ଚିଠା ମଧ୍ୟ କରି ସାରିଥିଲେ; କିନ୍ତୁ ବିଶ୍ୱନାଥ - ଭକ୍ତର ଆଭାସ ପାଇବା ବାସିଦିନ ମତେ ଅର୍ଦ୍ଧଚନ୍ଦ୍ର ଦେଇ ବିଦାୟ ଦେଲେ ଓ ମୁଁ ଅଚଳାଚଳ ସମ୍ପତ୍ତିରୁ ବଞ୍ଚିତ ହେଲି । ଛାଡ଼ ଏ ସବୁ ବାଜେ କଥା - ମୁଁ କହୁଥିଲି ଯେ ବକ୍ତୃତାର ମର୍ମ ଟିପି ନେବା ନିମନ୍ତେ ସମ୍ପାଦକ ମହାଶୟ ଦେଇଥିବା କାଗଜ କଲମ ଧରି ମୁଁ ବସିଗଲି । ବକ୍ତା ତାଙ୍କର ବକ୍ତବ୍ୟ ଆରମ୍ଭ କଲେ, ମୋର ମଧ୍ୟ ପେନ୍‌ସିଲ ଚାଲିଲା । ମନେ ମନେ ଭାବିଲି, ଉତ୍କଳରେ ଏତେ କର୍ମବୀର ଅଛନ୍ତି, ଉତ୍କଳ ଭାଷାରେ Short-hand (ସଙ୍କେତଲିପି କୌଶଳ) ପ୍ରଥାର ସୃଷ୍ଟି କେହି କରୁ ନାହାନ୍ତି କାହିଁକି ?

ଅଭିରାମବାବୁ ଏପରି ଗୋଟାଏ ବିଷୟ ନିର୍ବାଚନ କରିଥିବା ଯୋଗୁଁ ସଭାପତି ମହାଶୟ ତାଙ୍କୁ ଧନ୍ୟବାଦ ଦେଇଥିଲେ । କିନ୍ତୁ ବକ୍ତୃତାର ଆରମ୍ଭରେ ଅଭିରାମବାବୁ ସେ ଧନ୍ୟବାଦ ମୁଣିଟି ମୋ ଉପରେ ଝାଡ଼ିଦେଲେ । କହିଲେ, ''ମୋର ବନ୍ଧୁ ଗୋପାଳବାବୁ ବିଷୟଟି ନିର୍ବାଚନ କରିଥିବାରୁ ଏ ଧନ୍ୟବାଦରେ ତାଙ୍କର ଅଂଶ ଅଛି ।'' ଯାହାହେଉ, ଧନ୍ୟବାଦର ମାତ୍ରା ଓ ଧନ୍ୟବାଦଗ୍ରହୀତାଙ୍କ ସଂଖ୍ୟାଟା ବଢ଼ିଲେ ଦେଶର ଅନେକ ପ୍ରକାର ମଙ୍ଗଳ । ଜଣେ ବକ୍ତୃତା କରିବାରୁ ଧନ୍ୟବାଦ ପାଇବେ, ଜଣେ ଅନୁବାଦ କରିବାରୁ ଧନ୍ୟବାଦ ପାଇବେ, ସଭାପତି ଧନ୍ୟବାଦ ପାଇବେ, ରିପୋର୍ଟର ଧନ୍ୟବାଦ ପାଇବେ, ବାକି ରହିଲେ ତିନିଜଣ - (୧) ସଭାଗୃହରକ୍ଷକ ଚପରାସୀ, (୨) ସଭାଗୃହରେ ଆଲୋକ ଦେଇଥିବା ବ୍ୟକ୍ତି ଓ (୩) ସଭାଗୃହର ଝାଡୁବାଲା । ଦେଶ ଯେପରି କ୍ରମଶଃ ସଭ୍ୟତାର

'ବାଇଶି ପାହାଚ' ଉପରକୁ ଯିବ, ସଙ୍ଗେ ସଙ୍ଗେ ଶେଷୋକ୍ତ ବ୍ୟକ୍ତିମାନେ ଧନ୍ୟବାଦର ହିଂସା ପାଇଯିବେ । ଏ ଧନ୍ୟବାଦଟା ଶୁଣି ମୋ ମନ କୁଣ୍ଢେମୋଟ ହୋଇଗଲା । ମୋ କପାଳଟା ଏତେ ତାଜା ଯେ, ଅଭିରାମବାବୁଙ୍କୁ ପଦେକଥା କହି ଦେଇଥିଲି ବୋଲି ୫୦ ଜଣଙ୍କ ଆଗରେ ମୋର ନାମ ଗୌରବାନ୍ୱିତ ହେଲା । ଆଉ ଗୋଟିଏ କଥା - ବର୍ତ୍ତମାନ ଉତ୍କଳରେ ପରସ୍ପର ମଧ୍ୟରେ ଏପରି ଗୋଟିଏ ଧନ୍ୟବାଦ ଦେବା (mutual admiration) ପଦ୍ଧତି ନ ରହିଲେ ଦେଶର କଦାପି ମଙ୍ଗଳ ହେବ ନାହିଁ । ମୋ ବେଳକୁ ତୁମେ, ତୁମ ବେଳକୁ ମୁଁ, ଏପରି ନ ହେଲେ ଯେ ସୁନିଦ୍ରାଟା ଭାଙ୍ଗିଯିବ । ଆପାତତଃ ଦେଶସେବା ଓ ଦେଶର ଉନ୍ନତି କରିବା ନିମନ୍ତେ ପ୍ରତ୍ୟେକ ଉତ୍କଳୀୟଙ୍କର 'ମେଜାଜ୍'ଟା 'ଖୋସ୍' ରହିବାର ଆବଶ୍ୟକ । ତାହା ନ ହେଲେ ଉତ୍ସାହ ଅଭାବରୁ ଜାତୀୟ ଉନ୍ନତିର କଢ଼ ମଉଳିଯିବ ଓ ଉପାଧିଧାରୀ ହେବା ନିମନ୍ତେ ଉତ୍କଳୀୟମାନେ ଆଗ୍ରହ ପ୍ରକାଶ କରିବେ ନାହିଁ ।

ଯାହାହେଉ, ବକ୍ତୃତା ଶେଷ ହେଲା । ସଭାପତି ମହାଶୟ କହିଲେ, ''ଅଭିରାମବାବୁ ଧନ୍ୟବାଦର ପାତ୍ର  ବିଷୟର ଗୁରୁତ୍ୱ ପ୍ରତି ଉତ୍କଳ-ସାହିତ୍ୟ ସମାଜର ମନୋଯୋଗ ଆକର୍ଷଣ କରିଥିବାରୁ ଅଭିରାମବାବୁ ଧନ୍ୟବାଦର ପାତ୍ର କିନ୍ତୁ - ''(ଦିନେ ଜଣେ ବନ୍ଧୁ ମତେ ଖଣ୍ଡେ ପୁସ୍ତକ ସମ୍ବନ୍ଧରେ ମତ ପଚାରିଥିଲେ, ଉତ୍ତର କଲି - ''ବେଶ ହୋଇଅଛି; କିନ୍ତୁ -'' ଏତିକି କହିଛି, ମୋ ବନ୍ଧୁଟି କହିଉଠିଲେ - ''ଏ ହତଭାଗା ଦେଶରେ 'କିନ୍ତୁ' ଛଡ଼ା କଥା କହିବାର ଜୁ ନାହିଁ ।'' ପାଠକମାନେ ଏ ଅବାନ୍ତର ପ୍ରଳାପଟା ମାପ କରିବେ ।) ''ଗୋପାଳବାବୁ ଏ ସମ୍ବନ୍ଧରେ ବିଶେଷ ପରିଶ୍ରମ କରିଅଛନ୍ତି ।'' ''ଲଘୁ ସାହିତ୍ୟ ସଂଗ୍ରହ କରି ଶିକ୍ଷିତମାନଙ୍କ ଦୃଷ୍ଟି ତହିଁପ୍ରତି ଆକର୍ଷଣ କରିଥିବା ହେତୁରୁ ଗୋପାଳବାବୁ ଧନ୍ୟବାଦର ପାତ୍ର ।'' (ବୁଢ଼ୀମା ଓ ଜେଠେଇଙ୍କ ମୁହଁରୁ ଦୁଇଟା ଗୋଟାଏ କାହାଣୀ ଓ ନାନାବାୟା ଗୀତ ଶୁଣି ସେଗୁଡ଼ାକ ଗାରେଇ ପକାଇଥିଲି ଓ ମୋ ପରି କେତେକ ନିଷ୍କର୍ମା ସେଗୁଡ଼ାକ ପଢ଼ି ପାଟିଟାଏ କରି ଉଠିଲେ) ''ଅତଏବ ଆଜି ଏ ବକ୍ତୃତା ସମ୍ବନ୍ଧରେ କିଛି ଆଲୋଚନା କରିବା ପୂର୍ବରୁ ଲୌକିକ ସାହିତ୍ୟ ସମ୍ବନ୍ଧରେ ଗୋପାଳବାବୁ ପଦେଅଧେ କହି ଆମ୍ଭମାନଙ୍କୁ ଆପ୍ୟାୟିତ କରନ୍ତୁ ।'' ମନେମନେ ବିଚାରିଲି, ସଭାପତି ମହାଶୟଙ୍କର ମୁଁ କି ଅପକାର କରିଥିଲି ଯେ, ସେ ଆଜି ବେଳକାଳ ଉଣ୍ଡି ଠେଙ୍ଗୁରେ ହଣାଟାଏ ଦେଲେ । ଦେଖଣାହାରି ହେବା ଯେଢ଼େ ସୁଖ, ନିଜେ ନାଚିବା ସେଢ଼େ ସୁଖ ନୁହେଁ । ଏ କ୍ଷେତ୍ରରେ ମଧ୍ୟ ସେହିପରି । ବଡ଼ ବିଷମ ଅବସ୍ଥାରେ ପଡ଼ିଲି । ମୁଁ ବସି ବକ୍ତୃତାର ନୋଟ୍ କରିଥିଲି, ଏପରି ସ୍ଥଳରେ ସଭାପତିଙ୍କର ମୃଦୁସ୍ୱରଯୁକ୍ତ କଠୋର ଆଦେଶ ମସ୍ତକରେ ପଡ଼ିଲା । ମୁଁ ଅଗତ୍ୟା ଠିଆହେଲି । ପୂର୍ବ ବକ୍ତାଙ୍କର ଜଳଦଗମ୍ଭୀର ସ୍ୱର, ମୋର ହେଲା ଭେକ ରଡ଼ି । ଶୁଣିଥିଲି, ଅଭିରାମବାବୁ କହିଥିଲେ Thackeray, Milton, Shakespeare, ମୁଁ କଥାପ୍ରସଙ୍ଗରେ କହିଗଲି ଭୀମା ଧୀବର, ସାରଳା ଦାସ, ରମା ତନ୍ତୀ, ଶାମ ତୁଳାଭିଣା ଇତ୍ୟାଦି ।

ପରିଶେଷରେ ସଭାପତିଙ୍କ ଆଡ଼କୁ ଚାହିଁଲି, ସେ ତାଙ୍କର ବେକୁବି ବୁଝିପାରି ତଳକୁ ଅନାଇ ବସିଥିବା ପରି ବୋଧହେଲା - ଅତଏବ ତାଙ୍କ ସମ୍ମାନଟା ବଜାୟ ରଖିବା ନିମନ୍ତେ କହିଲି, ''ମୁଁ ଅନେକ ଦିନ ହେଲା ଲୌକିକ ସାହିତ୍ୟର ଆଲୋଚନା କରୁଅଛି, କିନ୍ତୁ ଉକ୍ତ ଆଲୋଚନାର ଫଳ ମୁଁ ବର୍ତ୍ତମାନ ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବା ନିମନ୍ତେ ପ୍ରସ୍ତୁତ ନୁହେଁ। ଏହା ଗୋଟିଏ ଗୁରୁତର ବିଷୟ ଓ ଏଥିପ୍ରତି ଦୃଷ୍ଟି କରିବା ଉତ୍କଳ ସାହିତ୍ୟ ସମାଜର ଗୋଟିଏ ପ୍ରଧାନ କର୍ତ୍ତବ୍ୟ । ବକ୍ତା ମହାଶୟ ବାଗ୍ମିତାମୟ ଓ ଗବେଷଣାପୂର୍ଣ୍ଣ ଉପଦେଶ ଛଳରେ ଯାହା ଯାହା କହିଗଲେ, ତାହାଛଡ଼ା ଏ ସମ୍ବନ୍ଧରେ ଅନ୍ୟାନ୍ୟ ଅନେକ ଜ୍ଞାତବ୍ୟ ବିଷୟ ଅଛି । ଆପଣ ଟିକିଏ ଭାବିଲେ ଦେଖିପାରିବେ ଯେ ମୋର କଥା ଅକ୍ଷରେ ଅକ୍ଷରେ ସତ୍ୟ । ବକ୍ତା ମହାଶୟ M. A., B.L. ଉପାଧିଧାରୀ ଓ ଉତ୍କଳ ରାଜଧାନୀ କଟକର ଜଣେ ଉଦୀୟମାନ 'ହାଇକୋର୍ଟିଆ ଓକିଲ' । ଏପରି ସ୍ଥଳରେ ଏହା ସ୍ୱତଃସିଦ୍ଧ ଯେ, ସେ ଯାହା କହିଲେ ତାହା ଅବଶ୍ୟ ଗବେଷଣାପୂର୍ଣ୍ଣ । ଆପଣ କହିବେ, ଉପଦେଶ ବୋଲି ଜାଣିଲ କିପରି ? ମୁଁ ଉତ୍ତର କରୁଛି - ମୁଁ ନୋଟ କରିବାବେଳେ ଯେତେଥର ବେକ ସଳଖିଥିଲି, ସେତେଥର ଦେଖିଛି ଯେ ବକ୍ତାଙ୍କର ଦୃଷ୍ଟି ସେହି ଟ୍ରେନିଂ ସ୍କୁଲର ଯୁବକମାନଙ୍କ ପ୍ରତି । ଏଥିରୁ ସ୍ଥିର କଲି ଯେ ବକ୍ତା ମହାଶୟ ବକ୍ତୃତାବ୍ୟାଜରେ ଉଦ୍‌ଗ୍ରୀବ ଯୁବକମାନଙ୍କୁ ଘନ ଗମ୍ଭୀର ଉପଦେଶ ଦେଉଥିଲେ । ଆପଣ ପଚାରିବେ - ବକ୍ତା ଯାହା କହିଲେ, ତାହାଛଡ଼ା ଅନ୍ୟାନ୍ୟ ଅନେକ ଜ୍ଞାତବ୍ୟ ବିଷୟ ଅଛି ବୋଲି ତୁମେ ଜାଣିଲ କିପରି ? ମୁଁ କହିବି - ସାଧାରଣତଃ ଦେଖାଯାଏ ଯେ, ପୂର୍ବରୁ ନିର୍ଦ୍ଦିଷ୍ଟ ଓ ବିଜ୍ଞାପିତ ବିଷୟରେ ସଭାରେ ବକ୍ତା ମହାଶୟ ବକ୍ତୃତା କଲାପରେ ଉକ୍ତ ବକ୍ତୃତା ସମ୍ବନ୍ଧରେ ଆଲୋଚନା କରିବା ନିମନ୍ତେ ଉପସ୍ଥିତ ବ୍ୟକ୍ତିମାନଙ୍କୁ ସଭାପତି ଆହ୍ୱାନ କରନ୍ତି । କିନ୍ତୁ ଏ କ୍ଷେତ୍ରରେ ସଭାପତି ମହାଶୟ ସାତପୁରୁଷିଆ ପାଠ ଛାଡ଼ି ନୂଆ ପାଠ ଧଇଲେ କାହିଁକି ? ସଭାପତିଙ୍କ ସଙ୍ଗେ ବକ୍ତାଙ୍କର ଯେବେ କିଛି ମନୋମାଳିନ୍ୟ ଥାଆନ୍ତା, ତା ଗୋଟାଏ କଥା । କିନ୍ତୁ ଆମେ ଜାଣୁ ଯେ ଏ ଆଶଙ୍କା ଅମୂଳକ । ସେଇଠୁଁ ମୁଁ ସ୍ଥିର କଲି ଯେ ଏ ବକ୍ତୃତା ଶୁଣି ଅନ୍ତତଃ ସଭାପତି ଧାରଣା କରିଛନ୍ତି କି ଏ ସମ୍ବନ୍ଧରେ ଆହୁରି ଅନେକ ଜ୍ଞାତବ୍ୟ ବିଷୟ ଅଛି । ଅତଏବ ମୁଁ ଉପସ୍ଥିତ ବୁଦ୍ଧିବଳରେ ଯାହା ସ୍ଥିର କଲି, ତଦନୁସାରେ ଶ୍ରୋତୃମଣ୍ଡଳୀଙ୍କର ଅଭ୍ୟସ୍ତ କର୍ଣ୍ଣକୁହରରେ ଢାଳି ଦେଲି । ଶ୍ରୋତୃମଣ୍ଡଳୀ ମୋର ବକ୍ତୃତାର ଏ ବାକ୍ୟଗୁଡ଼ିକ ଶୁଣି ପଞ୍ଚସପ୍ତତି ମୁଖରେ (ଶତମୁଖରେ ଶବ୍ଦଟା ବ୍ୟବହାର କରିବା ପାଇଁ ଭାରି ଆକାଂକ୍ଷା ହୋଇଥିଲା, କିନ୍ତୁ ଗଣନା କରି ଦେଖିଲି ଯେ ସ୍କୁଲ ଛାତ୍ର ସଭ୍ୟ ଆଗନ୍ତୁକ ସଭାଗୃହର ଚପରାସୀଟି ୭୫) କହିଥିବେ - ଅହୋ ! କି ପାଣ୍ଡିତ୍ୟ ! କି ଅମାୟିକତା !! କି ଗବେଷଣା !!!

ଯାହାହେଉ, ସଭାପତିଙ୍କ ଆହ୍ୱାନକ୍ରମେ କେତେକ ସଭ୍ୟ ବକ୍ତୃତାର ସମାଲୋଚନା କଲେ । ସମାଲୋଚନାରୁ ବୁଝିଲି ଯେ, ସମାଲୋଚକଯାକ ସମସ୍ତେ ଚାଲୁଣୀ । ଅର୍ଥାତ୍

ଅସଲ 'ଲୌକିକ ସାହିତ୍ୟ' ସମ୍ବନ୍ଧରେ ଅଭିରାମବାବୁ ଯେଉଁ ଉକ୍ତି କରିଥିଲେ, ସେଗୁଡ଼ିକର ନାମଗନ୍ଧ କେହି ଧରିଲେ ନାହିଁ । କହିଲେ - ସମାଲୋଚନା ସମ୍ବନ୍ଧରେ ଅଭିରାମବାବୁଙ୍କର ମତ ଭୁଲ, ଲେଖକ ଓ ସାହିତ୍ୟସେବୀମାନଙ୍କ ସମ୍ବନ୍ଧରେ ଅଭିରାମବାବୁ ବିକାରଗ୍ରସ୍ତ । କେହି କେହି ମଧ ସମାଲୋଚକଙ୍କୁ ସେଦିନ ସଭାରେ ବିକାରକ୍ରାନ୍ତ ବୋଲି ସନ୍ଦେହ କଲେ । ବକ୍ତା ଓ ସମାଲୋଚକଙ୍କ ମଧରେ ମିଠା କଡ଼ା ପଦେ ଅଧେ ମଧ ଚାଲିଲା । ଯାହାହେଉ, ଶେଷକୁ ସମସ୍ତେ ମିଳିମିଶି ଗଲେ । ଶେଷକୁ ଅଭିରାମବାବୁ ସଭାପତିଙ୍କୁ ଧନ୍ୟବାଦ (Vote of thanks) ଦେବାରୁ ସଭା ଭଙ୍ଗହେଲା । ମନେ ମନେ ବିଚାରିଲି, ଅଭିରାମବାବୁ ତ ଆଜି ଋଣଟା ରୋକ୍‌ଠୋକ୍ ପରିଶୋଧ କରିଦେଲେ । ମତେ କେବେ ପରିଶୋଧ କରିବାକୁ ସୁଯୋଗ ଘଟିବ, ଏହାହିଁ ଆଜି ପର୍ଯ୍ୟନ୍ତ ଭାବୁଛି । ଯାହାହେଉ, ସଭାଗୃହରୁ ଫେରିଆସିବା ବେଳେ ବିଶ୍ୱନାଥବାବୁ, ଅଭିରାମବାବୁ, ବ୍ରଜସୁନ୍ଦରବାବୁ ଇତ୍ୟାଦି କେତେଗୁଡ଼ିଏ ବନ୍ଧୁଙ୍କ ସାଙ୍ଗରେ ଆମେ ଆସିଲୁଁ । ଅଭିରାମବାବୁଙ୍କୁ ସମ୍ବୋଧନ କରି ବିଶ୍ୱନାଥବାବୁ କହିଲେ - ''ଦେଖନ୍ତୁ ଅଭିରାମବାବୁ, ଆପଣ ଆଜି ଆମ୍ଭମାନଙ୍କୁ ନିରାଶ କରିଦେଲେ । ଆମ୍ଭେମାନେ ଆପଣଙ୍କଠାରୁ ଏହା ଆଶା କରି ନ ଥିଲୁ ।'' ଅଭିରାମବାବୁ ଉତ୍ତର କଲେ - (୧) ସମୟ ହେଲା ନାହିଁ, (୨) ଶ୍ରୋତା ଅତି ଅଳ୍ପ ହେବାରୁ ମନ ସରିଲା ନାହିଁ ।

ବକ୍ତୃତାର ମର୍ମ ମୁଁ ହୃଦୟଙ୍ଗମ କରି ନ ଥିଲି ବୋଲି ଏହାର ମର୍ମ ବୁଝିବା ମୋ ପକ୍ଷରେ କଠିନ ହେଲା । ମୁଁ ବିଚାରିଲି, ଅଭିରାମବାବୁ ତ ଅନୁରୋଧ ରକ୍ଷାକଲେ, ସଭାରେ ଯୋଗଦେଲେ, ଅନେକ ସମୟ ବେଶ୍ ବକ୍ତୃତା କଲେ, ଆଉ ବିଶ୍ୱନାଥବାବୁ ନିରାଶ ହେଲେ କିପରି ? ମନେ ମନେ ଭାବିଲି, ଅଭିରାମବାବୁ ତାଙ୍କ ଅର୍ଜନରୁ ପ୍ରତି ଟଙ୍କାରେ ସୁଉକିକ ଠାରୁ ଛ'ଅଣା ପର୍ଯ୍ୟନ୍ତ ଦେଇଥିଲେ ବିଶ୍ୱନାଥବାବୁଙ୍କ ଆଶା ମେଣ୍ଟିଥା'ନ୍ତା ପରା ? ନା, ଅଭିରାମବାବୁ ବକ୍ତୃତାବ୍ୟାଜରେ ଆପଣାର ଘରଦ୍ୱାର ବୋହିଆଣି 'ଉତ୍କଳ-ସାହିତ୍ୟ' ପତ୍ରିକାର ଅଙ୍ଗ ପୁଷ୍ଟ କରି ଦିଅନ୍ତେ ବୋଲି ବିଶ୍ୱନାଥବାବୁ ମନେ କରିଥିଲେ ?

ଏହି ସ୍ଥଳରେ ଗୋଟାଏ କଥା ଆପଣମାନଙ୍କୁ କହିବା ଉଚିତ । ଶ୍ରୀଯୁକ୍ତ ବୈକୁଣ୍ଠନାଥ ଦତ୍ତ ଓକିଲ ସେଦିନ ସଭାକୁ ଆସି ମୋ ନିକଟରେ ବସିଗଲେ । କହିଲେ, ''ଆଜି ଅଭିରାମଙ୍କ ବକ୍ତୃତା ଶୁଣିବାକୁ ଆସିଅଛି ।'' ଦେଖିଲି ତାଙ୍କର ଗୋଟିଏ ସନ୍ତାନ ମଧ ସଙ୍ଗରେ ଆସିଅଛି । ବୈକୁଣ୍ଠବାବୁ କହିଲେ, ''ଏ ପିଲାକୁ ମଧ ସଙ୍ଗରେ ଆଣିଛି, ଏ ବକ୍ତୃତା ଶୁଣି ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ ତା ମନରେ ଆଜିଠାରୁ ଗୋଟାଏ impression (ଧାରଣା) ହୋଇଯିବ ବୋଲି ଆଜି ତାକୁ ଏଠାକୁ ଆଣିଛି ।'' ବକ୍ତୃତା ହେବା ସମୟରେ ମୁଁ ଯେତେଥର ମୁଣ୍ଡ ଟେକିଛି ଦେଖିଛି, ସେ ଏକାନ୍ତ ଚିତ୍ତରେ ବକ୍ତାଙ୍କ ଆଡ଼କୁ ଅନାଇଥା'ନ୍ତି ଓ ମୁହଁ ଆମ୍ବିଳା କରି ମୁଣ୍ଡ ହଲଉଥା'ନ୍ତି । ସେ ମନେ ମନେ

ବକ୍ତୃତା ବିଷୟ ଭାବୁଥା'ନ୍ତି, କି ତାଙ୍କ ପୁଅଟିର ସାହିତ୍ୟିକ ଭବିଷ୍ୟଦ୍ ବିଷୟ ଭାବୁଥା'ନ୍ତି ତାହା ଭଗବାନ୍‌ଙ୍କୁ ଜଣା । ଉତ୍କଳ ସାହିତ୍ୟ ସମାଜରେ ଯେଉଁମାନଙ୍କ ଦେଖା କ୍ୱଚିତ୍ ମିଳେ, ଏପରି କେତେଗୁଡ଼ିଏ ଲୋକଙ୍କୁ ମଧ୍ୟ ସେଦିନ ଦେଖିଲି । କିନ୍ତୁ ଗଲାବେଳେ ସେମାନେ କିପରି ମୁହଁ କରି ଯାଇଥିଲେ, ଅନ୍ଧାରରେ ମୁଁ ଦେଖିପାରିଲି ନାହିଁ । ଅତଏବ ସେମାନଙ୍କ ବିଷୟ ଭଗବାନ୍‌ଙ୍କୁ ଜଣା ।

ଯାହାହେଉ, ଅଭିରାମବାବୁ ଓ ମୁଁ ଛାତ୍ରାବସ୍ଥାରେ ଅନେକଥର ସାଙ୍ଗସୁଖ ହୋଇଅଛୁଁ, ସୁଖଦୁଃଖ ହୋଇଅଛୁଁ, ସାହିତ୍ୟ, ବିଜ୍ଞାନ, ସମାଜ, ଭାଷାତତ୍ତ୍ୱ, ଗଦ୍ୟ, ପଦ୍ୟ ଆଦି ଆଲୋଚନା କରିଅଛୁ, ଏକ ଗୁରୁଙ୍କଠାରୁ ବିଦ୍ୟାଲାଭ କରିଅଛୁ । ଛାତ୍ର ଜୀବନରୁ ଆସି ବ୍ୟବସାୟରେ ପ୍ରବେଶ କରି ମକଦ୍ଦମା ମାମଲାରେ ଏକ ସଙ୍ଗରେ କାର୍ଯ୍ୟ କରିଅଛୁ । ଦେଶହିତକରାନୁଷ୍ଠାନରେ ମସ୍ତକୋପରେ ଗୁରୁଭାର ବହନ କରି ଏକ ସଙ୍ଗରେ ଦେଶସେବା (ଏମନ୍ତ କି ମହାପ୍ରସାଦ ସେବା ପର୍ଯ୍ୟନ୍ତ) କରିଅଛୁଁ । ଏକ ସଙ୍ଗରେ ବିଦେଶ ଭ୍ରମଣ କରି ଅଭିଜ୍ଞତା ଲାଭ କରିଅଛୁଁ । ଏପରି ସ୍ଥଳରେ ମୋର ଟିପ୍‌ପଣୀକୁ ତନ୍ନ ତନ୍ନ କରି ନ ଦେଖି ସେ ସମ୍ବନ୍ଧରେ 'ନିରାଶ କଲେ' ଇତ୍ୟାଦି ମର୍ମାନ୍ତିକ (ଓ ମୁଁ ଭୟ କରେ ମର୍ମାନ୍ତିକ) ମନ୍ତବ୍ୟ ପ୍ରକାଶ କରିବାକୁ ମୁଁ ନିତାନ୍ତ ନାରାଜ ।

ଉତ୍କଳ ସାହିତ୍ୟ/୧୦ମ ଭାଗ/୮ମ ସଂଖ୍ୟା/୧୩୧୪ ସାଲ ।

## ॥ ବାର ॥

ଏ ବର୍ଷ ଉତ୍କଳ ସମ୍ମିଳନୀର ଅଧିବେଶନ ଗଞ୍ଜାମର କେନ୍ଦ୍ର ବ୍ରହ୍ମପୁରଠାରେ ହୋଇଥିଲା । ଦୁର୍ଯୋଗରୁ ହେଉ ବା ସୁଯୋଗରୁ ହେଉ, ମୁଁ ଏଥରକ 'ମାତୃପୂଜା'ରେ ଯୋଗ ଦେଇ ପାରି ନ ଥିଲି । ୧ମ ବାଧା - ଖଣ୍ଡିଏ ବାସଗୃହ କଟକରେ ତିଆରି କରୁଅଛି, ସେଥିରେ ୬ମାସ ହେଲା ନ୍ୟୂନାଧିକ ଏକଶତ ଲୋକ ପରବସ୍ତ ହେଉଅଛନ୍ତି । ସନ୍ଧ୍ୟାବେଳକୁ ସମସ୍ତଙ୍କୁ ନଗଦ ପଇସା ଦେବାକୁ ହୁଏ । ପାଠ ମଧ୍ୟ ଡାକୁଛି 'ଦେ କଉଡ଼ି, ଖା ପିଠା, ଏଥିପାଇଁ କିଆଁ ଦାନ୍ତ ନିକୁଟା' । ତୁମ ମୂଲ ଗଣ୍ଡାକ ଯେବେ ରୋକ୍‌ଠୋକ୍ ସନ୍ଧ୍ୟାବେଳକୁ ବୁଝି ନେବ, ତେବେ ଦିନସାରା ତୁମ ପିଛାଧରି ରଗଡ଼ କରି ୧୬ ପଣି କାମ ନେବାକୁ ଆମେ ଛାଡ଼ିବା କିଆଁ ? ଓକିଲାତି କରିବା ଦିନୁଁ ଟରଣିକୁ ଦସ୍ତୁରି ଦେବା ମୋ ଭାଗ୍ୟରେ ଆଜିପର୍ଯ୍ୟନ୍ତ ଘଟି ନାହିଁ, ଏ ନିୟମକୁ ମୁଁ ମୂଲିଆ ମୂଲିଆଣୀଙ୍କ କର୍ମକ୍ଷେତ୍ରରେ ମଧ୍ୟ ପ୍ରବର୍ତ୍ତାଇଅଛି । ମୋ ଅଧୀନସ୍ଥ ମୂଲିଆମାନେ ମିସ୍ତ୍ରିକୁ ଆଜି ପର୍ଯ୍ୟନ୍ତ ଦସ୍ତୁରି ଦେଇ ନାହାନ୍ତି । କାମର ବରାଦ ମୁଁ କରିବି, ଦିନଯାକ ମୂଲିଆଙ୍କ ସାଙ୍ଗେ ସାଙ୍ଗେ କାମ ଦେଖିବି, ସନ୍ଧ୍ୟାବେଳକୁ ସାଙ୍ଗେ ସାଙ୍ଗେ ପଇସା ଗଣିଦେବି । ଏପରି ସ୍ଥଳରେ ମିସ୍ତ୍ରିକୁ ଦସ୍ତୁରି ଦେବା ମୋ ମୂଲିଆଙ୍କ ଭାଗ୍ୟରେ ଘଟି ନାହିଁ । ଯାହାହେଉ, ଦଣ୍ଡେ କାମ

ନ ଜଗିଲେ ସମସ୍ତେ କାମରେ ଢିଲା କରିବେ । ଏ ତ ଗଲା ପ୍ରଥମ ବାଧା । ୨ୟ ବାଧା - ପ୍ରତିଦିନ ସକାଳୁ ଉଠି ଝିଅ ପୁଅଙ୍କ ପାଇଁ ମୁଠାଏ 'ବଢ଼ା ଭାତ' ରାନ୍ଧି ସେମାନଙ୍କୁ ଖୁଆଏ । ସେମାନଙ୍କୁ ଖୋଇ ମାଷ୍ଟରଙ୍କ ନିକଟକୁ ପଢ଼ିବା ନିମନ୍ତେ ଛାଡ଼ିଦିଏଁ, ମୁଁ ମୋର ଦୈନିକ କାର୍ଯ୍ୟରେ ଲାଗେ । ସମ୍ମିଳନୀରେ ଯୋଗଦେଲେ ୩।୪ ଦିନ ପାଇଁ ବଢ଼ାଭାତ ରନ୍ଧା ବନ୍ଦ ହୁଅନ୍ତା । ୩ୟ ବାଧା - ବାଟ ଖରଚର ଭାବନା । ସମ୍ମିଳନୀର କୌଣସି ଗୋଟାଏ ଅଂଶର ଭାର ମୋ ଉପରେ ଥିଲେ ମତେ ଶେଷୋକ୍ତ ବାଧା ବିଷୟରେ ଭାବିବାକୁ ପଡ଼ି ନ ଥା'ନ୍ତା । ଯେଉଁ ଆଡ଼କୁ ଯାଆନ୍ତି, On H.M.S. only କରି ଦିଅନ୍ତି । ଯାହାହେଉ, ଅଗ୍ରପଶ୍ଚାଦ୍ ଭାବିଚିନ୍ତି ସମ୍ମିଳନୀରେ ଯୋଗ ଦେବାର ଆଶା ପରିତ୍ୟାଗ କଲି ।

ସମ୍ମିଳନୀ କେତେଦିନ ଥିଲା, ଶୁଣିଲି ଯେ ଖଲ୍ଲିକୋଟର ରାଜା ବାହାଦୁର ଅଭ୍ୟର୍ଥନା ସମିତିର ସଭାପତି ପଦ ତ୍ୟାଗ କରିବାରୁ ବଡ଼ଖେମିଡ଼ିର ରାଜା ମହୋଦୟ ଉକ୍ତ ପଦ ଗ୍ରହଣ କରିବା ନିମନ୍ତେ ସ୍ୱୀକୃତ ହୋଇଅଛନ୍ତି । ଖଲ୍ଲିକୋଟର ରାଜା ବାହାଦୁର କି ନିମନ୍ତେ ନାରାଜ ହେଲେ, ତାହା ଜାଣିବାର ସୁବିଧା ମୋତେ ଘଟି ନାହିଁ; କିନ୍ତୁ ଅଭ୍ୟର୍ଥନା ସମିତିର ସଭାପତି ହେଲେ ଯେବେ ଅଙ୍ଗୀକୃତ ଚାନ୍ଦା ଅପେକ୍ଷା ବେଶି ଜୋରିମାନା ଦେବାକୁ ନ ପଡ଼ନ୍ତା, ତାହାହେଲେ ଏପରି ପଦ ଗ୍ରହଣ କରିବାକୁ ମୁଁ କଦାପି ପଶ୍ଚାତ୍ପଦ ହୁଅନ୍ତି ନାହିଁ । ଯାହାହେଉ, ଶେଷକୁ ସମ୍ମିଳନୀର ଆମନ୍ତ୍ରଣପତ୍ର ବଡ଼ଖେମିଡ଼ିର ରାଜାସାହେବଙ୍କ ସ୍ୱାକ୍ଷରରେ ବାହାରିଲା । କଟକର ଲୋକମାନଙ୍କୁ ଆମନ୍ତ୍ରଣ କରିବା ନିମନ୍ତେ ଗଞ୍ଜାମର ଶ୍ରୀଯୁକ୍ତ ନରସିଂହ ଦାସ ଆସିଥିଲେ । ସେ ଏଠାରେ ଦ୍ୱାର ଦ୍ୱାର ବୁଲି ଆମନ୍ତ୍ରଣ କରିଗଲେ । ଦାସ ମହାଶୟ ଏହି ଉପଲକ୍ଷରେ ମୋର ଦ୍ୱାରସ୍ଥ ମଧ୍ୟ ହୋଇଥିଲେ । ତାଙ୍କୁ କହିଥିଲି ''ବିଶେଷ ବାଧା ନ ଘଟିଲେ, ମୁଁ ଯିବି ।'' ମୋ ଅଙ୍ଗୀକାରର ସତ୍ୟତା ମୁଁ ରଖିବାକୁ ସମର୍ଥ ହୋଇଅଛି କି ନାହିଁ, ପାଠକମାନେ ଉପରୋକ୍ତ ବିବରଣରୁ ବୁଝି ପାରିବେ । ଏଠାରେ ଆଉ ଗୋଟିଏ କଥା କହିବା ଅପ୍ରାସଙ୍ଗିକ ହେବ ନାହିଁ । ଗଞ୍ଜାମର ମହାଜନ ଶ୍ରୀ ପରମାନନ୍ଦ ସାହୁ ଆମନ୍ତ୍ରିତ ବ୍ୟକ୍ତିମାନଙ୍କର ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ବ୍ୟବସ୍ଥା କରିବାର ଭାର ପୂର୍ବରୁ ଗ୍ରହଣ କରିଥିଲେ । କଟକରେ ତାଙ୍କର ମହାଜନି କାରବାର ଅଛି, ଘଟନାଚକ୍ରରେ ସେ ମୋର ମକ୍‌କେଲ । ଏଥି ମଧ୍ୟରେ ମୋର କୋଠା ଖଣ୍ଡ ତିଆରି କରିବା ସମ୍ବନ୍ଧରେ ତାଙ୍କୁ ଆର୍ଥିକ ସାହାଯ୍ୟ ପ୍ରାର୍ଥନା କରି ପତ୍ର ଲେଖିଥିଲି । ସମ୍ମିଳନୀର ଅଧିବେଶନ ୨।୩ ଦିନ ଅଛି, ତାଙ୍କଠାରୁ ଖଣ୍ଡିଏ ପତ୍ର ପାଇଲି - ଆପଣ ଏଠାକୁ ନିଶ୍ଚୟ ଆସିବେ, ଆପଣ ଆସିଲେ ଆପଣଙ୍କର ପତ୍ରର ଉତ୍ତର ପାଇବେ । ମନେ ମନେ ବିଚାରିଲି ସାହୁକାରେ ବଡ଼ ଚତୁର, ସାହୁକାରେ ମନେ ମନେ ବିଚାରିଲେ ଯେ ଯେଉଁ ବ୍ରାହ୍ମଣ କୁଳପୁଙ୍ଗବମାନେ ପଇସାଟିଏ ଦକ୍ଷିଣା ପାଇବା ଲୋଭରେ ୫।୭ କୋଶ ଚୁଡ଼ା ଦହି ଖାଇବା ନିମନ୍ତେ ଦୌଡ଼ି ଯାଇ ପାରନ୍ତି, ସେହି ବଂଶର ଜଣେ ଲୋକ (ଢିଙ୍କି ସ୍ୱର୍ଗକୁ ଗଲେ ସୁଦ୍ଧା ଧାନ କୁଟାଟି ଛାଡ଼ି ଦେବ ନାହିଁ ?) ପତ୍ରର ଆର୍ଥିକ ଉତ୍ତର

ପାଇବା ଆଶାରେ କଟକଠାରୁ ବ୍ରହ୍ମପୁର ପର୍ଯ୍ୟନ୍ତ ଦୌଡ଼ି ଆସିବା ଅସମ୍ଭବ ନୁହେଁ । ମୁଁ ବ୍ରହ୍ମପୁର ଯାଇଥିଲେ ପତ୍ରର ଉତ୍ତର ପାଇଥା'ନ୍ତି ଏଣେ ସାହୁକାରଙ୍କୁ ଅତିଥିଚର୍ଯ୍ୟାରେ କିଞ୍ଚିତ୍ ସାହାଯ୍ୟ କରିଥା'ନ୍ତି, ନିତାନ୍ତ ପକ୍ଷରେ ସାହୁକାରଙ୍କ ଅତିଥିଚର୍ଯ୍ୟୋପକରଣର ଯଥାସମ୍ଭବ ସଦ୍‌ବ୍ୟବହାର କରିଥା'ନ୍ତି । ଯାହାହେଉ ମୁଁ 'ଗଛମେ କଠଲ ଉଠମେ ତେଲ' ନୀତିର ପକ୍ଷପାତୀ ନୁହେଁ । ଭବିଷ୍ୟଦ୍‌ରେ କିଛି ଲାଭ ହେବା ଆଶାରେ ମୁଁ ହାତରୁ ରେଳ ଟିକଟ କିଣିବା ଜନ୍ତୁ ନୁହେଁ । ଅଗତ୍ୟା ମୋର ବ୍ରହ୍ମପୁର ଯିବାର ସ୍ଥଗିତ ହେଲା ।

ମୁଁ ଏକା ନୁହେଁ, ମୋ ପରି କେତେଗୁଡ଼ିଏ ଅଭାଗା ଏ ବର୍ଷ ସମ୍ମିଳନୀରେ ଯୋଗ ଦେଇ ନ ଥିଲେ । ଅବଶ୍ୟ ସମସ୍ତଙ୍କର ଯେ ମୋ ଭଳି ତିନୋଟି ବାଧା ଘଟିଥିଲା, ତାହା ନୁହେଁ; କିନ୍ତୁ ଯଦି କେହି ବୁଲି ବୁଲି ସେଗୁଡ଼ିକ ଲିପିବଦ୍ଧ କରନ୍ତେ, ତାହାହେଲେ ସମ୍ମିଳନୀର ଯେ ଗୋଟିଏ ପ୍ରକାଣ୍ଡ ଜନ୍ମପତ୍ରିକା ପ୍ରସ୍ତୁତ ହୋଇପାରନ୍ତା, ଏଥିରେ ସନ୍ଦେହ ନାହିଁ । ସେହି ଜନ୍ମପତ୍ରିକାରୁ ସମ୍ମିଳନୀର ଲଗ୍ନ, ରାଶି, ନକ୍ଷତ୍ର, ମାରକ, ଗ୍ରହଯୋଗ, ରିଷ୍ଟ ଇତ୍ୟାଦି ସବୁ ବିଷୟ ଧରାପଡ଼ନ୍ତା । କିନ୍ତୁ ତାହା କରିବାକୁ ସମ୍ମିଳନୀର ସର୍ବେସର୍ବାମାନେ ନିତାନ୍ତ ନାରାଜ । ସମ୍ମିଳନୀକୁ ଦୃଢ଼ ଭିତ୍ତି ଉପରେ ରଖିବାକୁ ହେଲେ ତାହାର ଦରଦ୍‌ଗମ ଜାଗାଗୁଡ଼ିକ ହାତରେ ଟିପି ବାହାର କରିବାକୁ ହେବ ଓ ସେଗୁଡ଼ିକ ଉପଯୁକ୍ତ ଔଷଧ ପ୍ରୟୋଗ ଦ୍ୱାରା ସୁଦୃଢ଼ କରିବାକୁ ହେବ । ତାହା ନ କରି ବର୍ଷକେ ଥରେ ପୋଡୁଆଁ ଅଷ୍ଟମୀ ଦିନ ପିଲାଟିକୁ କସ୍ତା ଶାଢ଼ି ଖଣ୍ଡେ ପିନ୍ଧାଇ ଦେଇ ତେଲ ହଳଦୀ ଓ ଚନ୍ଦନପାଟି ଦେଇ ଦାଣ୍ଡରେ ଠିଆ କରିଦେଲେ ଲୋକେ ଦେଖି ତାଳି ମାରିବେ, ବାହାବା ଦେବେ, ଖବରକାଗଜଯାକ ହୁରି ପଡ଼ିଯିବ, କିନ୍ତୁ ପିଲାଟିର ପରମାୟୁ ବୃଦ୍ଧି ସମ୍ବନ୍ଧରେ କେହି ଥରେ ମାତ୍ର ଭାବିବେ ନାହିଁ ।

ପ୍ରଥମେ ଯେତେବେଳେ ସମ୍ମିଳନୀର କଳ୍ପନା ହେଲା, ସେତେବେଳେ ମୁଁ ପୂରାପୂରି ଆଶା ଓ ଆନନ୍ଦରେ ସ୍ଫୀତ ହୋଇଥିଲି; ସମ୍ମିଳନୀର ସମସ୍ତ ଅନୁଷ୍ଠାନରେ ପୂର୍ଣ୍ଣ ହୃଦୟରେ ଯୋଗ ଦେଇଥିଲି । କେତେ ଲୋକ କହିଲେ 'ସମ୍ମିଳନୀ ଜଣକର', ମୁଁ ଉଗ୍ର ଭାବରେ ଉତ୍ତର କଲି, 'ନା, ସମ୍ମିଳନୀ ଉତ୍କଳର ସାଧାରଣ ସମ୍ପତ୍ତି' । ମୋର ଜଣେ ବନ୍ଧୁ ଦିନେ ସମ୍ମିଳନୀକୁ ଲକ୍ଷ୍ୟ କରି କହିଥିଲେ ଯେ ''ଏ ଭୂତ କାରଖାନା ।'' କଥାଟା ଶୁଣି ମୁଁ ଭାରି ରାଗିଗଲି, ସେତେବେଳେ ମଧ୍ୟ ରକ୍ତର ତାପଟା ଟିକିଏ ବେଶି ଥିଲା । ଖଡ଼େଦମ ଏକଥା ଯାଇ ସମ୍ମିଳନୀର କର୍ତ୍ତୃପକ୍ଷଙ୍କୁ ରିପୋର୍ଟ କଲି ଓ ବନ୍ଧୁଙ୍କ ପ୍ରତି ସମୁଚିତ ଦଣ୍ଡବିଧାନର ବ୍ୟବସ୍ଥା କଲି । ସେ ଉତ୍କଳମାତାର କୁଳାଙ୍ଗାର ସନ୍ତାନ, ଦେଶଦ୍ରୋହୀ, ଜାତିଦ୍ରୋହୀ ବୋଲି ସମସ୍ତଙ୍କ ନିକଟରେ ଘୋଷଣା କରି ତାଙ୍କ ନିକଟକୁ ସମ୍ମିଳନୀର ଆମନ୍ତ୍ରଣପତ୍ର ପଠାଯିବାର ବନ୍ଦ କରିଦେଲି । କର୍ତ୍ତୃପକ୍ଷମାନେ (ମାନ୍ୟାର୍ଥେ ବହୁବଚନ ପ୍ରୟୋଗ ମୋର କପୋଳକଳ୍ପିତ ନୁହେଁ) କହିଲେ, ଏପରି ଲୋକର ଉପସ୍ଥିତିରେ ସମ୍ମିଳନୀ ମଣ୍ଡପକୁ କଳଙ୍କିତ କରିବାର ଆବଶ୍ୟକ ନାହିଁ । ମୁଁ ମଧ୍ୟ ସେତେବେଳେ ଦେଶସେବା ରୂପ

ମହାଛାଞ୍ଚରେ ତଳା ହେଉଥାଏ । ମୁଁ ଉପରୋକ୍ତ ମତକୁ 'ଦ୍ୱିତୀୟ' (Second) କଲି । ଏବେ ସେହି ବନ୍ଧୁଙ୍କ ସଙ୍ଗେ ଦେଖା ହେଲେ ସେ ମୋତେ ବ୍ୟଙ୍ଗୋକ୍ତି ଛଳରେ ପ୍ରଶ୍ନ କରନ୍ତି, ''କିହୋ ! ସେତେବେଳେ ତ ଆମ କଥା ଗନ୍ଧାଉଥିଲା, ବର୍ତ୍ତମାନ ଫଳରେ କି କାରଖାନା ହେଲା ?'' ମୁଁ ମୁଣ୍ଡଟି ନୁଆଁଇ ମୌନଭାବ ଧାରଣ କରେଁ ।

ସମ୍ମିଳନୀ ସମ୍ବନ୍ଧରେ ଜଣେ ଦିଓଟି ଗୋଟିଏ ଅପ୍ରିୟ ସତ୍ୟ ଗାଇଦେଇ ଗଲେ ବୋଲି ସେ ଦେଶଦ୍ରୋହୀ, ଜାତିଦ୍ରୋହୀ ଇତ୍ୟାଦି ବିଶେଷଣରେ ଅଳଙ୍କୃତ ହେଲେ । ଏପରି ସ୍ଥଳରେ ମୋ ଭାଗ୍ୟରେ କ'ଣ ଅଛି, ତାହା ବୋଲାଯାଇ ନ ପାରେ ।

ସମ୍ମିଳନୀ ଦ୍ୱାରା ଓଡ଼ିଶାର କିମ୍ବା ଉତ୍କଳ ପୁତ୍ରଙ୍କର ଯେ ଆଦୌ ଉପକାର ହୋଇ ନାହିଁ, ସେ କଥା ମୁଁ କହୁ ନାହିଁ । ନିତାନ୍ତପକ୍ଷରେ ବର୍ଷକେ ଥରେ ସବୁ ଭାଇ ଏକ ସ୍ଥାନରେ ମିଳି ଦୁଃଖସୁଖ ହୁଅନ୍ତି, ଗୁଡ଼ିଏ ସମ୍ମିଳନୀ ପାଗ ବିକ୍ରି ହୁଏ, ଛାପାଖାନାବାଲାଙ୍କର କିଛି ରୋଜଗାର ହୁଏ, ବକ୍ତୃତା ଦେବାକୁ କେତେଗୁଡ଼ିଏ ଲୋକଙ୍କ ମନ ବର୍ଷଯାକ ହାଇଁପାଇଁ ହେଉଥାଏ, ତାଙ୍କ ମନରେ ଓରମାନଟା ମେଣ୍ଟେ, ସମ୍ମିଳନୀର ସେବକମାନଙ୍କ ମଧ୍ୟରୁ ଫି ବର୍ଷ କେତେଜଣ ହାକିମ ହୋଇଯା'ନ୍ତି (ଦିପୋଟି, ସବ୍-ଦିପୋଟି ଇତ୍ୟାଦି - ଏହିଟା ସମ୍ମିଳନୀର ସମ୍ପର୍କରୁ ହୁଏ କି କାକତାଳିକ ନ୍ୟାୟରେ ହୁଏ, ତାହା ଭଗବାନ୍ ଜାଣନ୍ତି), ଭଡ଼ାଗାଡ଼ିବାଲାମାନେ କିଛି ପଇସା ପାଆନ୍ତି, ମୋ ଶ୍ରେଣୀର କେତେ ଲୋକଙ୍କର ସମ୍ମିଳନୀ ସମୟରେ ଅନ୍ୟାନ୍ୟ ଅନେକ ପ୍ରକାର ଉପର ଲାଭ ମଧ୍ୟ ହୋଇଥାଏ । ସେ ସମୟରେ ଦେଶର କେତେଗୁଡ଼ିଏ ଧନୀ ଏକ ଜାଗାରେ ରୁଣ୍ଡ ହୋଇଥା'ନ୍ତି ଓ ସେମାନଙ୍କ ମନ ଦେଶ ହିତୈଷଣାରେ ଉଚ୍ଛୁଳୁ ଥାଏ । ସେହି ସମୟରେ ବେଳକାଳ ଉଣ୍ଡି (Strike the iron while it is hot) କୌଣସି ହିତକର ପ୍ରସ୍ତାବର ବାନାଧରି ସେମାନଙ୍କ ନିକଟକୁ ବାହାରି ପଡ଼ିଲେ ଦେଶ ନିମନ୍ତେ ତ ଯାହା ମିଳିବାର ମିଳେ, ତାହାଛଡ଼ା ଆପଣା ପରିବାରଙ୍କ ଅଦୂର ଭବିଷ୍ୟତ୍ ବିଷୟରେ ମଣିଷ ଦିନାକେତେ ଥଣ୍ଡା ହୋଇଯାଏ । ଖବରକାଗଜବାଲାଙ୍କର କେତେ ତମାଦି ବାକି କେତେ ଗରଜାଏ ବାକି ଆଦାୟ ହୋଇଯାଏ । ବର୍ଷକଯାକ ନିଜ ମନ ଓ ଖିଆଲ ଅନୁସାରେ ଯେ ଯାହା କାର୍ଯ୍ୟ କରିଥାଏ, ସୁଯୋଗ ପାଇଲେ ସେଗୁଡ଼ିକ ସମ୍ମିଳନୀର ଅଙ୍ଗ ଓ ଅନୁଷ୍ଠାନ ବୋଲି ଉଦ୍‌ଘୋଷିତ ହୁଏ । ଏହିପରି ନାନା ପ୍ରକାର ଉପକାରର ଦୃଷ୍ଟାନ୍ତ ଦିଆଯାଇପାରେ ।

କେତେ ଲୋକ ଯେ ଆଶା କରିଥିଲେ, ସମ୍ମିଳନୀ ଉତ୍କଳରେ ଯୁଗାନ୍ତର ଉପସ୍ଥିତ କରାଇବ, ସେ ଆଶା କେଉଁ ପର୍ଯ୍ୟନ୍ତ ଗଲା, ମୁଁ ଏହାହିଁ ଭାବୁଅଛି । ସମ୍ମିଳନୀର କ୍ଷଣପ୍ରଭା ଆଲୋକ ଉତ୍କଳାକାଶରେ ଦେଖାଦେବାର ବହୁଦିନ ପୂର୍ବରୁ ମୁଁ ମୋର କ୍ଷୁଦ୍ର ସୀମା ମଧ୍ୟରେ ମୋର ନଗଣ୍ୟ ଶକ୍ତି ଅନୁସାରେ କେତେଗୁଡ଼ିଏ କ୍ଷୁଦ୍ର କାର୍ଯ୍ୟରେ ହସ୍ତକ୍ଷେପ କରିଥିଲି । ଯେଉଁକ୍ଷଣି ସମ୍ମିଳନୀର ମୃତସଞ୍ଜୀବନୀ ମନ୍ତ୍ରରେ ଦୀକ୍ଷିତ ହେଲି, ହଠାତ୍ ମୋର ଚକ୍ଷୁ ଉନ୍ମୀଳିତ ହୋଇଗଲା । ପୂର୍ବେ ମୋର କର୍ମକ୍ଷେତ୍ର ଥିଲା କଟକର ଗୋଟିଏ

କ୍ଷୁଦ୍ର ଗ୍ରାମ ସିଦ୍ଧେଶ୍ୱରପୁର । ବର୍ତ୍ତମାନ ସମଗ୍ର ଉତ୍କଳଭାଷୀ ଅଞ୍ଚଳ ମୋର କ୍ରୀଡ଼ାସ୍ଥଳ ହୋଇଉଠିଲା । ପୂର୍ବେ ଗ୍ରାମର ପ୍ରଧାନ ଲୋକମାନଙ୍କ ସଙ୍ଗେ ମୋର ସଂଘର୍ଷଣ ହେଉଥିଲା, ବର୍ତ୍ତମାନ ବଡ଼ ବଡ଼ ଉପାଧିଧାରୀ, ରାଜା, ମହାରାଜା ଓ ଧନୀ ବ୍ୟକ୍ତିମାନେ ମୋର କରମର୍ଦ୍ଦନ କଲେ । ପୂର୍ବେ ଆମ ଗ୍ରାମ ସ୍କୁଲର ଶିକ୍ଷକ (ବାଲ୍ୟକାଳରେ ଯାହାଙ୍କଠାରୁ ବିଦ୍ୟାଶିକ୍ଷା କରିଥିଲି) ମୋର ଆଦର୍ଶ ଥିଲେ । ବର୍ତ୍ତମାନ ଉତ୍କଳର ପ୍ରଧାନତମ ବ୍ୟକ୍ତି ମୋର ଆଦର୍ଶ ହେଲେ । ଚାହୁଁ ଚାହୁଁ ଦିନ କେତେଟାରେ ମତେ ଆଉ ଦଉଡ଼ି ପାଇଲା ନାହିଁ । ମୋ ପକ୍ଷରେ ସମୁଦାୟ ଉତ୍କଳାକାଶ ଉଜ୍ଜ୍ୱଳ ଆଲୋକମୟ ହୋଇ ଉଠିଲା । ଦିନାକେତେ ଦିଗ୍‌ବିଦିଗ ଜ୍ଞାନଶୂନ୍ୟ ହୋଇ ଦେଶସେବାରେ ମାତି ଉଠିଲି । ସେଥିଯୋଗୁଁ ବଡ଼ ବଡ଼ ସାର୍ଟିଫିକେଟ୍ ମଧ୍ୟ ପାଇଲି । ଯେଉଁଠାକୁ ଗଲି, ସେଠାରେ ମୋର ସମ୍ମାନ । କେତେ ଲୋକ ମୋଠାରୁ ପଦେ କଥା ଶୁଣିବା ପାଇଁ ଲାଳାୟିତ ହେଲେ । ଦିନାକେତେ ପରେ ଉତ୍କଳାକାଶଟା ନକ୍ଷତ୍ରଶୂନ୍ୟ ବା ଅନ୍ଧାର ହୋଇଗଲେ ମୁଁ ଉତ୍କଳକୁ ପୁନର୍ବାର ଗୁଲଜାର କରିଦେବି, ଏପରି କଥା ମଧ୍ୟ କେହି କେହି ଉଚ୍ଚପଦସ୍ଥ ରାଜପୁରୁଷମାନଙ୍କ ନିକଟରେ ଘୋଷଣା କରିଦେଲେ ।

ଯାହାହେଉ, ପ୍ରଥମେ ପ୍ରଥମେ କେତେ ଲୋକ କହୁଥିଲେ, ସମ୍ମିଳନୀଟା ବ୍ୟକ୍ତିଗତ ସମ୍ପତ୍ତି । ମୁଁ ସେମାନଙ୍କୁ ନିନ୍ଦୁକ ଶ୍ରେଣୀଭୁକ୍ତ କରିଥିଲି । ସମ୍ମିଳନୀ ବ୍ୟକ୍ତିଗତ କି ଜାତିଗତ, ଏହା ସ୍ଥିର କରିବା ପାଇଁ ମତେ ଦୁଇ ବର୍ଷ କେତେମାସ ଲାଗିଲା - କେତେ ପରିଶ୍ରମ, କେତେ ଗର୍ଜନ, କେତେ ରଡ଼ି, କେତେ ପଦ୍ମତୋଳା, କେତେ ମାଙ୍କଡ଼ଚିତ୍, କେତେ ଖତୁମୁଷା ବୃଥା ଗଲା । କିନ୍ତୁ ହେଲେ କଣ ହେବ 'ଖାଇଲେ ଖାଇଲି ଚିନି, କୋରଡ଼ା, ମନ ଓରମାନ ଗଲା', ମନରୁ ସନ୍ଦେହ ଫିଟିଗଲା । ଭିଦ୍ୟତେ ହୃଦୟଗ୍ରନ୍ଥି ଶ୍ଛିଦ୍ୟନ୍ତେ ସର୍ବସଂଶୟଃ । ଏତେଦିନ ଉମେଦାରି କରି ଯେତେବେଳେ ଫେର୍ ଗାଁକୁ ଗଲି, ଦେଖିଲାବେଳକୁ ଆମ ଗ୍ରାମର ସ୍କୁଲ ଘରର ଚାଳ ଉଲୁରି ପଡ଼ିଲାଣି, କାନ୍ଥରେ ଛେଳି ଡେଉଁଛନ୍ତି, ଲାଇବ୍ରେରୀଟି ଉଇହୁଙ୍କା, ସଭାଘର ଡିହରେ ବିଲୁଆ ରଜା ! ଆମ ଗ୍ରାମର ସାଉଟି ସାହୁ ବୁଢ଼ା ମୁରୁକି ହସଟାଏ ଦେଇ ପଚାରିଲା, "କିହୋ ବାବୁ, ଏତେଦିନ ଗାଁ ମନେ ପଡ଼ିଲା ପରା !" ମୁଁ କହିଲି, "ମା'କୁ କହିଦେବ ବଳଦ ବିକିବେ ନାହିଁ, ମୋ ବଇଷମ ହେବା କଥା ନୋହିଲା ।" ସାଉଟି ସାହୁ କହିଲା, "ବଳଦ ବିକା ସରିଲାଣି ।" ମୁଁ ନିରୁତ୍ତର ହୋଇ ଘରକୁ ଗଲି, କାନ ମୋଡ଼ି ଚଟକଣା ମାରିହେଲି, ରହିଲି । ସେହି ଦିନ୍‌ଠାରୁ କୋଠାତୋଳା ଓ ପିଲାଙ୍କ 'ବଢ଼ା ଭାତ ରନ୍ଧା'ରେ ଲାଗିଛି ।

ପାଠକ ଅବଧାନ । ଭାରି ଖପ୍‌ପା ହେବେଣି ପରା ! ନାଚାର ହୋଇ ଆପଣଙ୍କ 'ଖପ୍‌ପା'କୁ ଚରା ଖାଲୋଇରେ ପକାଇବି । ଫଳ କଥା ଏହି ଯେ, ସମ୍ମିଳନୀଟା ବର୍ତ୍ତମାନ ଉତ୍କଳଖଣ୍ଡର On H.M.S. only ସମ୍ମିଳନୀ ପାଇଁ ଓଡ଼ିଆମାନେ ପ୍ରସ୍ତୁତ ନୁହନ୍ତି । ଓଡ଼ିଆ ଜାତି ସମ୍ମିଳନୀର ଯୋଗ୍ୟ ହୋଇ ନାହିଁ । ଗତ ତିନି ବର୍ଷର ଅନୁଭବରୁ ଯେଉଁମାନେ ଏ

କଥା ସ୍ୱୀକାର କରିବାକୁ ନାରାଜ, ସେମାନେ ହୁଏତ ଅନ୍ଧ, ନଚେତ୍ ଓଡ଼ିଶାକୁ ଅନ୍ଧକରି ନିଜର ସ୍ୱାର୍ଥ ଲାଭର ବାଟ ଓଳାଇ ରଖୁଅଛନ୍ତି । ମୋ ନିଜର ବାସ ପାଇଁ ମୁଁ ବନ୍ଧୁଘରକୁ ଗଲି – ଏବେ ସମ୍ମିଳନୀର ଦ୍ୱାହି ଦେଇ ମୁଣ୍ଡରେ ଶ୍ରୀକାପଡ଼ା ବାନ୍ଧିଦେଲି; ମୋର ମନର ରାଗର ପ୍ରତିଶୋଧ ନେଲି, ଏଣେ ସମ୍ମିଳନୀ ଓ ଜାତିର ଦ୍ୱାହି ପକାଇଲି । ଗତ ତିନିବର୍ଷ ମଧରେ ଉତ୍କଳଖଣ୍ଡରେ ଏହିପରି କେତେ ସ୍ୱାର୍ଥ ଖେଳ ହୋଇ ଗଲାଣି । ଏ କଥା ଦୁଇ ଶ୍ରେଣୀର ଲୋକେ ମାନିବାକୁ ନାରାଜ । (୧) ନିତାନ୍ତ ଓଲୁ (୨) ନିତାନ୍ତ ଚାଲାଖ । ଅର୍ଥାତ୍ ଯେଉଁମାନେ ପ୍ରଥମ ଶ୍ରେଣୀର ଲୋକଙ୍କୁ କୁହୁକ ଲଡ୍ଡୁ ଖୁଆଇ ଆପଣାର ବୋକଚାବୁହା ରୂପରେ ପରିଣତ କରି ଅଛନ୍ତି ।

ଉଦାହରଣସ୍ୱରୂପ ଦେଖନ୍ତୁ - ଓଡ଼ିଶାତମାମ ହୁରି ପଡ଼ିଗଲା ଯେ, ଗତ ବର୍ଷ ସମ୍ମିଳନୀର ପ୍ରତିନିଧିସ୍ୱରୂପ କଟକରୁ ଯେଉଁମାନେ ସମ୍ବଲପୁରକୁ ଯାଇଥିଲେ ସେମାନେ ଅକର୍ମଣ୍ୟ, ନିନ୍ଦୁକ, ଭଙ୍ଗାଇ ମଙ୍ଗାଇ, ପାରନ୍ତି ନାହିଁ, ସମ୍ବଲପୁରିଆଙ୍କୁ ଚିଡ଼ାଇ ଦେଲେ । ଏହି ସମ୍ବାଦରେ ଓଡ଼ିଶା ଚମକି ଉଠିଲା । ସେମାନଙ୍କ ଅତ୍ୟାଚାର ଦୃଶ୍ୟ ଉତ୍କଳରୂପ ଦର୍ପଣରେ ପ୍ରତିଫଳିତ ହୋଇଗଲା । ଏ ବର୍ଷ ସମ୍ବଲପୁରିଆ ଭାଇମାନଙ୍କୁ ଗୁଆ ଦେଇ ଆମନ୍ତ୍ରଣ କରିବା ପାଇଁ ବଛା ବଛା ଗଣ୍ୟମାନ୍ୟ ଜଣକେତେ ବ୍ୟକ୍ତି ଗଲେ, ସେମାନେ ସମ୍ମିଳନୀର ଉଦ୍ଦେଶ୍ୟ ସମ୍ବଲପୁରବାସୀଙ୍କ ହୃଦୟଦର୍ପଣରେ ସ୍ପଷ୍ଟଭାବରେ ପ୍ରତିଫଳିତ କରାଇ ଦେଇ ଆସିଲେ, ତଦ୍‌ପରେ ସମ୍ମିଳନୀର ଗଞ୍ଜାମସ୍ଥ ସମ୍ପାଦକ ଜଣେ ମଧ ସମ୍ମିଳନୀର ଅବ୍ୟବହିତ ପୂର୍ବରୁ ସମ୍ବଲପୁରରେ 'ଦ୍ୱାରସ୍ଥ' ହୋଇ ଆସିଲେ । କିନ୍ତୁ ଏ ବର୍ଷ ସମ୍ମିଳନୀର ଅଧିବେଶନ ବେଳେ ସମ୍ବଲପୁର ପ୍ରତିନିଧିମାନଙ୍କ ସଂଖ୍ୟା (୦) ଦେଖି ଜଣେ ସମ୍ମିଳନୀ-ପ୍ରତ୍ୟାଗତ ବନ୍ଧୁ ମୋତେ ପଚାରିଲେ, ଯେଉଁମାନେ ଆମନ୍ତ୍ରଣ କରିବା ବ୍ୟାଜରେ ସମ୍ବଲପୁର ଯାଇଥିଲେ, ସେମାନେ କାହିଁକି ସମ୍ବଲପୁର ଯାଇଥିଲେ ? ମୁଁ ଉତ୍ତର କଲି On H.M.S. only.

ତଦ୍‌ପରେ ଦେଖିବା ହୁଅନ୍ତୁ, ବଙ୍ଗ ବ୍ୟବସ୍ଥାପକସଭାର ସଭ୍ୟ ନିର୍ବାଚନ ସମସ୍ୟା । ସମ୍ମିଳନୀ ମଣ୍ଡପରେ ଏକତାନରେ ସ୍ୱର ଉଠିଲା -

ଭାଇୟେ ଆଏ ଉତ୍କଳୀୟେ ।
ଲାଇୟୋ ତସରୀଫଯାନ୍,
ସୋଚୟୋ ଅପନି ଭଲାଇ ହୋକେ
ଏକ୍ ଦିଲ୍, ଏକ୍ ଜାନ୍ ।

କିନ୍ତୁ ଉତ୍କଳର ଖବରକାଗଜଠାରୁ ଆରମ୍ଭ କରି ପ୍ରାର୍ଥୀ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ପର୍ଯ୍ୟନ୍ତ କେହିଁ ଏକମତ ହୋଇପାରିଲେ ନାହିଁ । ପରିଶେଷରେ କାଉନ୍‌ସିଲ୍ ଚେମ୍ବରରେ (ଯେଉଁଠାରେ ଶେଷ ପରୀକ୍ଷା ହେଲା) ପ୍ରମାଣିତ ହୋଇଗଲା ଯେ ଉତ୍କଳସମ୍ମିଳନୀ ମଣ୍ଡପ 'ପୋଥି ବାଇଗଣ', କାର୍ଯ୍ୟକ୍ଷେତ୍ର 'ବାଡ଼ି ବାଇଗଣ' । ଉତ୍କଳୀୟଙ୍କ ମୁହଁ ପାଣି

ମୁହଁରେ ମଲା । ଉତ୍କଳୀୟ ପ୍ରତିନିଧିମାନେ ଖଲାସ, ଉତ୍କଳୀୟ ଜାତି ଖଲାସ, ଉତ୍କଳୀୟ ମ୍ୟୁନିସିପାଲିଟିର ପ୍ରତିନିଧିମାନେ ଖଲାସ, ସମସ୍ତେ ଏକା ପଦକେ ଖଲାସ !!! ସେଥିପାଇଁ କହନ୍ତି - ଆପଣା ସେରକ ଯେ ପଛକୁ ଦିଏ, ତା ମୁଣ୍ଡରେ ଟାକରାଏ । ଏହା ଯେ କହେ, ସେ ଦେଶଦ୍ରୋହୀ, ଜାତିଦ୍ରୋହୀ, କୁଳାଙ୍ଗାର !! ସେଥିପାଇଁ ନନା କହନ୍ତି, ''ବାଡ଼ିବାଇଗଣ, ପୋଥିବାଇଗଣ ଆଗେ ଠିକଣା କର, ପଛେ ପଦାକୁ ବିଶାକାଠି ଘେନି ବାହାର'' । ମୁଁ ଉତ୍ତର କରେଁ, On H.M.S. only.

ସମ୍ମିଳନୀ ଦ୍ୱାରା ଉତ୍କଳର ଏତିକି ହୋଇଅଛି -

''ଯୋ ଧ୍ରୁବାଣି ପରିତ୍ୟାଜ୍ୟ
ଅଧ୍ରୁବାଣି ନିସେବତେ ।
ଧ୍ରୁବାଣି ତସ୍ୟ ନଶ୍ୟନ୍ତି
ଅଧ୍ରୁବଂ ନଷ୍ଟମେବହି ।''

ଏଥିପାଇଁ ପାଠକ, ଅବଧାନମାନେ ଓ ଦେଶର ନେତାମଣିମାନେ ଯେଉଁ ଦଣ୍ଡ ଦେବେ, ସେଥିକି ହାଜର ଅଛି । ଉତ୍କଳୀୟ ଜାତି ବର୍ତ୍ତମାନ ବାଇଶି ପାହାଚରେ ଡେକା ପକାଇ ବସି ମହାପ୍ରସାଦ ସେବା କରିବା କଥା ଦୂରେଥାଉ, ଶରଧା ବାଲିରେ ଗଡ଼ିବାର ଯୋଗ୍ୟ ହୋଇ ନାହିଁ । ''ପର ଲୁଗା ପିନ୍ଧି ଯାତକୁ ଯାଏ, ଲୋକେ ପଚାରିଲେ ମୁଣ୍ଡ ଟୁଙ୍ଗାରୁଥାଏ ।'' ଉତ୍କଳର ବର୍ତ୍ତମାନ ଏହି ଅବସ୍ଥା । ଦିଆସିଲାଇ କାଠି ମାରି ଦେଖ, ଆଇନାରେ ଦେଖ, ନକ୍ଷତ୍ରାଲୋକରେ ଦେଖ, ମତେ ଯେତେ ମାଠୁଥିବୁ ମାଠ, ମୁଁ ସେହି ଦରପୋଡ଼ା କାଠ । ଦାଗ ଲିଭୁ ଲିଭୁ ଯାଏ ପୁରୁଷେ ଖଣ୍ଡେ । ଆଜି ଏତିକି ।

ଉତ୍କଳ ସାହିତ୍ୟ/୧୦ମ ଭାଗ/ ୧୦ମ ସଂଖ୍ୟା/୧୩୧୪ ସାଲ ।

## ॥ ତେର ॥

ଜଣେ ଆଧୁନିକ ଉତ୍କଳ ସାହିତ୍ୟ କାନନବିହାରୀ କହିଅଛନ୍ତି ଯେ, ଆଜିକାଲି ଓଡ଼ିଶାରେ 'ସମାଲୋଚନା' ରୋଗର ବିଶେଷ ପ୍ରାଦୁର୍ଭାବ । ତାହାର ଉତ୍ତରରେ ଆଉ ଜଣେ ସାହିତ୍ୟସେବୀ କହିଲେ ଯେ 'ସମାଲୋଚନାତଙ୍କ' ରୋଗ ଓଡ଼ିଶାର ଉଚ୍ଚାସନଗୁଡ଼ାକୁ ଘୋଟି ଯାଇଅଛି । ପାଠ ମଧ୍ୟ ଡାକୁଛି ''କରୁ ଯେବେ ଡରୁ କିଆଁ ? ଡରୁ ଯେବେ କରୁ କିଆଁ ?'' ଗତ ସଂଖ୍ୟା 'ସାହିତ୍ୟ'ରେ 'ଦୁନିଆର ହାଲଚାଲ' ଦେଖି ମୋର କେତେକ ବନ୍ଧୁ ମୋ ଉପରେ ଭାରି ବିରକ୍ତ । ସେମାନଙ୍କର ଯୁକ୍ତି ଏହି - 'ମଦ ଖାଅ, କିନ୍ତୁ ଦେହରେ ବୋଲି ହୁଅ ନାହିଁ' । ବୈଦ୍ୟ ପଛକେ ଗୁମରଗୁଡ଼ାକ ଜାଣିଯାଇ ତୁମ୍ଭଙ୍କୁ ଧିକ୍କାର କରନ୍ତୁ, ବେମାରିଟା ଭଲ ହେଉ । ତାହା ନ କରି କନାପଟି ବାନ୍ଧି କେତେଦିନ ବୁଲିବ ? ବେମାରିଟା ଚଉରସ କରି ପଗଡ଼ିନେଲେ ଯେ ଦାଣ୍ଡରେ ମୁହଁ ଦେଖାଇ ପାରିବ ନାହିଁ, ଏ କଥା ଯେବେ ରୋଗୀମାନେ ଜାଣନ୍ତେ, ତାହାହେଲେ

ହାସପାତାଳ କିରାନି ପରିଶ୍ରମ ଲାଘବ ହୁଅନ୍ତା । ଓଡ଼ିଶାରେ 'ସମାଲୋଚନା' ରୋଗ କିମ୍ବା 'ସମାଲୋଚନାତଙ୍କ' ରୋଗର ଯେ ପ୍ରାଦୁର୍ଭାବ ହୋଇଅଛି, ତାହା ନିର୍ଣ୍ଣୟ କରିବା ମୋର ସାଧ୍ୟାୟତ୍ତ ନୁହେଁ । ଓଡ଼ିଶାରେ ଅଧିକାଂଶ ସ୍ଥଳରେ ଦେଖ - ''ଠାକୁର ଘରେ କିଏ ରେ ?'' ଏ ପ୍ରଶ୍ନ ଶୁଣିଲାକ୍ଷଣି କେତେ ଲୋକଙ୍କର ପିଳେହି ପାଣି ହୋଇଯାଉଅଛି, ସେମାନେ ଉତ୍ତର କରୁଅଛନ୍ତି- ''ମୁଁ କଦଳୀ ଖାଇ ନାହିଁ ।'' ଏ ରୋଗକୁ ସମାଲୋଚନା ରୋଗ ବୋଲ, ସମାଲୋଚନାତଙ୍କ ରୋଗ ବୋଲ, ଯେକୌଣସି ନାମରେ ଡାକିଲେ ହେଲା । ମୁଁ ଏହି ରୋଗକୁ କହେଁ - 'ବିସ୍‌ମିଲ୍ଲାରେ ଗଲତ୍' ରୋଗ ।

ମନେକରନ୍ତୁ, କେତେଗୁଡ଼ିଏ ଉଦାହରଣ ଦେଇ ଆପଣ ବକ୍ତୃତା ଛଳରେ ପ୍ରମାଣିତ କରିଦେଲେ ଯେ, 'ଉତ୍କଳମାତା ବର୍ତ୍ତମାନ ଉନ୍ନତିର ଶୀର୍ଷଦେଶରେ ପହଞ୍ଚି ଅଛନ୍ତି ।' ଆପଣ ଉତ୍କଳର କୃତୀସନ୍ତାନ, ଏହା ପ୍ରମାଣିତ କରିବାର ଆପଣଙ୍କର ପୂର୍ଣ୍ଣ ଅଧିକାର ଅଛି । ବେଶ୍‌କଥା, କିନ୍ତୁ ମୁଁ ଯେବେ ଉଦାହରଣଦ୍ୱାରା ଦେଖାଇପାରେ ଯେ ପ୍ରକୃତରେ ତାହା ନୁହେଁ, ଉତ୍କଳମାତାଙ୍କ ଅଳଙ୍କାରଗୁଡ଼ାକ ଗିଲ୍‌ଟି ଓ ଯେବେ ଏ କଥାଟାକୁ ଆପଣା ଆପଣା ଆଡ଼କୁ ଓଟାରି ନିଅନ୍ତି, ତାହାହେଲେ ନାଚାର । ଗଲାବର୍ଷ ଯେତେବେଳେ 'ସ୍ୱଦେଶୀ ଆନ୍ଦୋଳନ'ର ପ୍ରଥମ ଧୂମ୍ (ହପ୍‌ପା) କଲିକତାରେ ବହୁଥାଏ, ସେତେବେଳେ ମୋର ଜଣେ ଉଚ୍ଚଶିକ୍ଷିତ ବନ୍ଧୁ ରଙ୍ଗମଞ୍ଚ ଉପରେ ଠିଆହୋଇ ହଜାରେଖଣ୍ଡେ ଦର୍ଶକଙ୍କ ଆଡ଼କୁ ଚାହିଁ ନାଟକୀୟ ଛଟାରେ କହିଲେ, ''ଆମ୍ଭ ଗ୍ରାମର ଆବାଳ ବୃଦ୍ଧ ବନିତା ସମସ୍ତେ ସ୍ୱଦେଶୀ ବସ୍ତ୍ର ବ୍ୟବହାର କରିବେ ବୋଲି ଦୃଢ଼ସଙ୍କଳ୍ପ କରିଅଛନ୍ତି, ସେମାନଙ୍କର ପୁରୁଣା ବିଲାତୀ ଲୁଗା ଏମନ୍ତ କି ଗାମୁଛା ପର୍ଯ୍ୟନ୍ତ, ସବୁ ଆମ୍ଭ ଗ୍ରାମର ସ୍ତ୍ରୀମାନେ ଚିକିଚିକି କରି ଚିରି ଫୋପାଡ଼ି ଦେଇଅଛନ୍ତି ।'' ଏହା ଶୁଣିଲା ମାତ୍ରକେ ସଭାଗୃହ ଘନ ଘନ କରତାଳିରେ ଘନିଷ୍ଠ ହୋଇଗଲା, ଦେଶର ନେତାଏ ଗର୍ବ-ବିସ୍ଫାରିତଲୋଚନରେ ଶ୍ରୋତାମାନଙ୍କ ଆଡ଼କୁ ଚାହିଁ ମୁରୁକେଇ କରି ହସିଦେଲେ । ମନେ ମନେ ବିଚାରିଲେ, ଉତ୍କଳମାତା ଖଲାସ । ଉତ୍କଳମାତାଙ୍କ ସ୍ୱର୍ଗବାସ ଚିତ୍ର କେତେ ଭକ୍ତ ପୁତ୍ରଙ୍କ ହୃଦୟରେ ଅଙ୍କିତ ହୋଇଗଲା । ବକ୍ତାଙ୍କ ବାଗ୍ମିତା, ମୁଖଭଙ୍ଗୀ, ଅଙ୍ଗବିକ୍ଷେପ ଦେଖି ମୋ ଭଳି କୁଳାଙ୍ଗାର ଉତ୍କଳ ପୁତ୍ରର ମନ ଯେତେବେଳେ ଉଲ୍ଲସିତ ହୋଇଅଛି, ସେତେବେଳେ ''ଅନ୍ୟେ ପରେ କା କଥା'' । ବକ୍ତୃତା ଶୁଣି ମୁଁ ହାତ ଉଠାଇ ସେହି ସଭାମଣ୍ଡପରେ ବକ୍ତା ବନ୍ଧୁଙ୍କୁ ଗୋଟିଏ ସଭକ୍ତି ପ୍ରଣାମ କଲି ଓ ଭକ୍ତି ଗଦ୍‌ଗଦ ଚିତ୍ତରେ ତାଙ୍କ ଗ୍ରାମର ବୀରା ନାରୀମାନଙ୍କୁ ସହସ୍ର ସହସ୍ର ପ୍ରଣିପାତ କରି ମନେ ମନେ ବିଚାରିଲି ଯେ ଉତ୍କଳମାତାଙ୍କ ଅଦୂର ଭବିଷ୍ୟତ୍ ଆଲୋକମୟ, ଆଶାମୟ ଓ ଆନନ୍ଦମୟ; ଆମ ପୁରୁଷଟା ତ ଯେନ ତେନ ପ୍ରକାରେଣ ଗଲା, ଏହି ବୀରମାତାଙ୍କ ସନ୍ତାନମାନେ ଅର୍ଥାତ୍ ଆମର ତଳ ପୁରୁଷଟା ଓଡ଼ିଶାମାତାଙ୍କୁ ବାଏଁ ବାଏଁ ସ୍ୱର୍ଗକୁ ଉଡ଼ାଇ ନେବେ । ଏହିପରି ଭାବୁ ଭାବୁ ଘରକୁ ଆସିଲି । ବକ୍ତା ବନ୍ଧୁଙ୍କର ଜଣେ ପଡ଼ିଶା ହାବୁଡ଼ରେ ପଡ଼ିଗଲେ, ଚାହିଁଦେଲି, ପରିଧାନ ଖଣ୍ଡେ ଫୁଲକିନାରି

୪୫ ଇଞ୍ଚିଆ ଗୋଷ୍ଠମାର୍କା ଧୋତି । ମୋ ପିଲେହି ଚମକି ଗଲା । ବୁଝୁ ବୁଝୁ ପଡ଼ିଶାଜଣକ କହିଲେ, ବକ୍ତା ମହାଶୟ କାର୍ଯ୍ୟୋପଲକ୍ଷ୍ୟରେ ଅଳ୍ପଦିନ ତଳେ ଉତ୍ତରାଞ୍ଚଳକୁ ଯାଇଥିଲେ, ସେଠାରେ 'ସ୍ୱଦେଶୀ' ବକ୍ତୃତାର ଛଟା ଦେଖି ସେହି ବ୍ୟାଧି ଘେନି ଏ ଦେଶରେ ପହଞ୍ଚି ଅଛନ୍ତି । ତାଙ୍କର କଥାଗୁଡ଼ିକ 'ପୋଥି ବାଇଗଣ' । ବକ୍ତୃତା ଶୁଣି ଯେଉଁ ଭାବ ମୋ ମନରେ ଉଇଁ ଉଠିଥିଲା ସେ ଭାବ ଉଭେଇଗଲା ଓ ସେତେବେଳେ ବିଚାରିଲି ଯେ, ବକ୍ତାଙ୍କର ପ୍ରସାଦରୁ ଯେଉଁ ସଂକ୍ରାମକ ବ୍ୟାଧି ଆଜି ସଭାମଣ୍ଡପସ୍ଥ ଲୋକଙ୍କ ଭିତରେ ସଂକ୍ରମଣ କଲା (ତହିଁର ପ୍ରମାଣ ଘନିଷ୍ଠ କରତାଳି ଓ ବାଃ ବାଃ), ସେ ବ୍ୟାଧିରେ ଆମର ନିମ୍ନସ୍ଥ କେତେ ପୁରୁଷ ଜର୍ଜରିତ ହୋଇଯିବେ । ଘଟଣାକ୍ରମେ ତହିଁ ଆରଦିନ ସ୍ୱଦେଶର ଜନୈକ ନେତା ହାବୁଡ଼ରେ ପଡ଼ିଗଲି । ସେ ପଚାରିଲେ, "କିହୋ ! ତୁମେ ତ କହୁଥିଲ ଦେଶ କି ଉନ୍ନତି କରି ନାହିଁ, କାଲି ଯେଉଁ ଚିତ୍ର ଦେଖିଲ, ତାହା କେଉଁ ଆନ୍ଦୋଳନର ଫଳ ?" ମୁଁ ଉତ୍ତର କଲି- "ବାଡ଼ି ବାଇଗଣ ଓ ପୋଥି ବାଇଗଣ" । ଏହା ଶୁଣି ନେତା ମହାଶୟ ରୋଷ-କଷାୟିତ ଲୋଚନରେ ଉତ୍ତର କଲେ, 'ସମାଲୋଚନା ରୋଗ ତୁମ୍ଭଙ୍କୁ ଘୋଟିଅଛି, ତୁମ୍ଭେ ନିତାନ୍ତ ପରଶ୍ରୀକାତର' । ନେତା ମହାଶୟଙ୍କ Theoryଟୀ - ତାଙ୍କର ନିର୍ମିତ କଳ୍ପନାପିତୁଳିଟି ଭାଙ୍ଗିଯିବାରୁ ନେତାଙ୍କଠାରୁ ତ ସାର୍ଟିଫିକେଟ୍ ଖଣ୍ଡ ପାଇଲି । ଦେଶର ଶିକ୍ଷକ ପଦରେ ଯେଉଁମାନେ ଆବିର୍ଭୂତ ହୋଇ ଦେଶ କମ୍ପାଉ ଅଛନ୍ତି, ସେମାନେ 'ବିସ୍‌ମିଲ୍ଲାରେ ଗଲଦ୍' କରୁଅଛନ୍ତି, ଏଥିରେ କାହାର ପାଟି ଫିଟାଇବାର ଜୁ ନାହିଁ । ଯେ କହିବ ସେ ପରଶ୍ରୀକାତର । ଆଜି ଓଡ଼ିଶାଟା କେତେଜଣଙ୍କର ସ୍ୱପାର୍ଜିତ ସମ୍ପତ୍ତି ଓ କ୍ରୀଡ଼ାସ୍ଥଳ ହୋଇଅଛି । ସେମାନେ ଓଡ଼ିଶାର ଧଳା ବଳଦକୁ କଳା, କଳା ବଳଦକୁ ଧଳା କରୁଅଛନ୍ତି । ଓଡ଼ିଶାମାତାଙ୍କୁ କେତେବେଳେ ପାଟପଟନି, କେତେବେଳେ ପିଚାପାଡ଼ିଆ ଶାଢ଼ି, କେତେବେଳେ କେଲୁଣୀ କନ୍ଥା, କେତେବେଳେ ଗାଉନ, କେତେବେଳେ ବାହା ଖଡୁ, କେତେବେଳେ ବ୍ରେସ୍‌ଲେଟ୍, ଯାହା ମନ ହେଉଅଛି ତାହା ପିନ୍ଧାଇ ଦେଇ ଦାଣ୍ଡକୁ ବାହାର କରାଉଅଛନ୍ତି । ଆଉ ସମସ୍ତେ ଦର୍ଶକ ହୋଇ ଦେଖୁଥାଅ, ତାଳି ମାରୁଥାଅ; କିନ୍ତୁ ଯେବେ ପାଟି ଫିଟାଇବ, ତେବେ ତୁମ୍ଭ ସପ୍ତପୁରୁଷ ନରକରେ ପଡ଼ିବେ । ଏହାକୁ କହନ୍ତି, 'ବିସ୍‌ମିଲ୍ଲାର ଗଲଦ୍' । ଦେଶର କେତେ ପ୍ରବୀଣ ଲୋଭ ଗର୍ବ ବିସ୍ତାରିତ କଣ୍ଠରେ ଘୋଷଣା କରନ୍ତି ଯେ, ସେମାନେ ସ୍ପଷ୍ଟବାଦୀ ଓ ଅନ୍ୟର ସ୍ୱାଧୀନ ମତକୁ ସମ୍ମାନ କରନ୍ତି ପୁଣି ସ୍ୱ-କଥିତ ଉଦାହରଣଦ୍ୱାରା ଏହାକୁ ସମର୍ଥନ କରିଥାନ୍ତି । କିନ୍ତୁ ସେମାନେ ଯେଉଁ 'ବାଡ଼ି ବାଇଗଣ ପୋଥି ବାଇଗଣ' ନୀତିଟି ଉତ୍କଳରେ ପ୍ରବେଶ କରାଇଦେଇ ଯାଉଅଛନ୍ତି, ସେଥିଯୋଗୁଁ ଉତ୍କଳର ସଭ୍ୟତା ଆଗକୁ ଯିବାତ ଦୂରେଥାଉ ପୁରୁଷେଖଣ୍ଡେ ପଛକୁ ଘୁଞ୍ଚି ଯାଇଅଛି । ଫେର 'ସିଦ୍ଧିରସ୍ତୁ' ଠାରୁ ଆରମ୍ଭ ନ କଲେ ପରିତ୍ରାଣ ନାହିଁ । ସେମାନେ ଭିତରେ ଭିତରେ କାହାର ନୁହନ୍ତି, ଖଞ୍ଜା ଖାଞ୍ଜା ଉଣ୍ଟୁଥାନ୍ତି । କିନ୍ତୁ ପଦାରେ ହିନ୍ଦୁ, ବ୍ରାହ୍ମ, ମୁସଲମାନ, ଖ୍ରୀଷ୍ଟିୟାନ, ବଙ୍ଗାଳୀ, ଓଡ଼ିଆ, ଉତ୍କଳୀୟ - ସମସ୍ତଙ୍କର ଖଞ୍ଜା ଖାଞ୍ଜା ବେଳେ

ସେମାନଙ୍କ ଆଶ୍ରା ଧରନ୍ତି । ଏପରି ଦେଶଧ୍ୱଜୀ ଗୁରୁସ୍ଥାନୀୟ ବ୍ୟକ୍ତିମାନଙ୍କ ନିକଟରେ ମୋର ନିବେଦନ ଏହି ଯେ, ଈଶ୍ୱର ରାଜ୍ୟରେ ଗିଲ୍‌ଟି ବସ୍ତୁଯାକ ଅଢ଼େଇଦିନିଆ ଓ ଓଡ଼ିଶାଟା ସବୁଦିନେ ଅନ୍ଧ ନ ଥିବ । ବକ୍ତୃତା ବେଳେ ଲୋକେ ତାଳି ମାରିବେ । ବକ୍ତୃତା ଓ ଉପଦେଶର କଥାଗୁଡ଼ିକ ନିଜର ବ୍ୟକ୍ତିଗତ ଜୀବନରେ କାର୍ଯ୍ୟରେ ପରିଣତ ହେବାର ନ ଦେଖିଲେ ଦିନେ ଖଣ୍ଡେ ମୋହବଦ୍ ରଖି କିଛି କହିବେ ନାହିଁ; କିନ୍ତୁ ତହିଁ ଆରଦିନ ପଛବୁହା କରି ପେଲିଦେଲେ ଏକା ମାଙ୍କଡ଼ଚିତ୍‌କେ ତୁମେ ଖଲାସ, ଦେଶ ଖଲାସ, ସମାଲୋଚକ ଖଲାସ, ଉତ୍କଳମାତା ଖଲାସ, ଆଜି ମୁଁ ମଧ ଖଲାସ ।

ଉତ୍କଳ ସାହିତ୍ୟ/୧୦ମ ଭାଗ/୧୧ଶ ସଂଖ୍ୟା/୧୩୧୪ ସାଲ ।

## ।। ଚଉଦ ।।

ଈଶ୍ୱର ଯେଉଁମାନଙ୍କୁ କ୍ଷମତା ଓ ପ୍ରଭୁତ୍ୱ ଦେଇଅଛନ୍ତି, ସେମାନେ ସମସ୍ତେ ଯେବେ ସେହି କ୍ଷମତା ଓ ପ୍ରଭୁତ୍ୱ ଚାଳନା କରିବା ସମୟରେ ସୌଜନ୍ୟ ଓ ବିନୟ ଏ ଦିଓଟି ଗୁଣ ଅବଲମ୍ବନ କରନ୍ତେ, ତେବେ ପୃଥିବୀ ଆନନ୍ଦମୟ ଓ ମଧୁରତର ହୋଇଉଠନ୍ତା । କାର୍ଯ୍ୟକ୍ଷେତ୍ରରେ ଦୃଢ଼ କର୍ତ୍ତବ୍ୟ ପାଳନ ସହିତ ମଧୁର, ବିନୟ ଓ ସୌଜନ୍ୟ ମିଶ୍ରିତ ହେଲେ କ୍ଷମତାର ଗରିମା କମିଯାଏ ବୋଲି କେତେଗୁଡ଼ିଏ ଲୋକଙ୍କର ଧାରଣା ଅଛି । ପୃଥିବୀରେ ଉଚ୍ଚତମ ଠାରୁ ନୀଚତମ କର୍ମକ୍ଷେତ୍ର ପର୍ଯ୍ୟନ୍ତ ସବୁ ସ୍ଥାନରେ ବିନୟ ଓ ଭଦ୍ରତା ଅଳଙ୍କାର ସ୍ୱରୂପ । ଏ ସମ୍ବନ୍ଧରେ ଗୋଟିଏ ଆଖ୍ୟାନ ମନେପଡ଼ିଲା । ଇଟାଲୀର ଜଣେ ପ୍ରଧାନ ଧର୍ମଯାଜକ (Pope) ଉକ୍ତ ପଦରେ ଆରୂଢ଼ ହେବା ପୂର୍ବରୁ ଯେଉଁମାନେ ତାଙ୍କୁ ନମସ୍କାର କରୁଥିଲେ ସେ ତାଙ୍କୁ ପ୍ରତିନମସ୍କାର କରୁଥିଲେ । ଧର୍ମଯାଜକ ପଦରେ ଆରୂଢ଼ ହେଲାପରେ ସେ ସେହିପରି ପ୍ରତିନମସ୍କାର କରୁଥିବାର ଦେଖି ତାଙ୍କର ଜଣେ ଅନୁଚର ତାଙ୍କୁ କହିଲେ, 'ମହାରାଜ ! ପ୍ରତିନମସ୍କାର କରିବା ଆପଣଙ୍କ ପଦବୀର ବିଧି ନୁହେଁ ।' ତହୁଁ ସେ ଗମ୍ଭୀର ଭାବରେ ଉତ୍ତର କଲେ, 'ମୁଁ ଏହି ପଦବୀରେ ଆରୋହଣ କରି ଏକାବେଳେ ଭଦ୍ରତା ଭୁଲି ଯାଇ ନାହିଁ ।' ଅଧିକାଂଶ ସ୍ଥଳରେ ଦେଖାଯାଏ ଯେ ଆମ୍ଭେମାନେ କ୍ଷମତା ଓ ପ୍ରଭୁତ୍ୱ ପାଇଲେ ଗର୍ବସ୍ଫୀତ ହୋଇ ଅନେକ ସମୟରେ ଭଦ୍ରଜନୋଚିତ ଆଚାର ଭୁଲିଯାଉଁ ଓ ଆପଣାର କ୍ଷମତାର ଛାୟାଦ୍ୱାରା ଉପଗତ ବ୍ୟକ୍ତିମାନଙ୍କୁ ସନ୍ତର୍ପିତ କରିବା ଦୂରେଥାଉ, ପ୍ରତାପ ବହ୍ନିରେ ସେମାନଙ୍କୁ ଜର୍ଜରିତ କରିବାକୁ କୁଣ୍ଠିତ ହେଉ ନାହିଁ । କୌଣସି ବିଚାରପତିଙ୍କ ନିକଟରେ ସାକ୍ଷ୍ୟ ଦେବା ନିମନ୍ତେ ଜଣେ ବୃଦ୍ଧ ଉପସ୍ଥିତ ହେଲେ । ଠିଆହୋଇ ସାକ୍ଷ୍ୟ ଦେଲେ ବୃଦ୍ଧଙ୍କୁ ବିଶେଷ କଷ୍ଟ ହେବ ବୋଲି ବୃଦ୍ଧ ହାକିମଙ୍କୁ ଜଣାଇବା ମାତ୍ରକେ ହାକିମ ତତ୍‌କ୍ଷଣାତ୍ ବୃଦ୍ଧଙ୍କ ନିମନ୍ତେ ଖଣ୍ଡିଏ କାଷ୍ଠାସନର ବ୍ୟବସ୍ଥା କରିଦେଲେ । ଆଉଜଣେ ହାକିମଙ୍କ ନିକଟରେ ଘଟନାଚକ୍ରରେ ସେହି ବୃଦ୍ଧଙ୍କୁ ସାକ୍ଷ୍ୟ ଦେବା ନିମନ୍ତେ ଉପସ୍ଥିତ ହେବାକୁ ପଡ଼ିଲା । ପୂର୍ବ ଅନୁଭବର ସୌଜନ୍ୟକୁ ସ୍ମରଣ

କରି ସେ ହାକିମଙ୍କୁ ଖଣ୍ଡିଏ ଆସନ ନିମନ୍ତେ ପ୍ରାର୍ଥନା କରିବାରୁ ବିଚାରପତି ମହାଶୟଙ୍କ ରକ୍ତ ଗରମ ହୋଇ ଉଠିଲା । ଅଦାଲତକୁ ସାକ୍ଷ୍ୟ ଦେବାକୁ ଆସି ଏପରି ଲଜ୍ଜାକର ପ୍ରସ୍ତାବ କରିବା ଦ୍ୱାରା ଅଦାଲତର ଅବମାନନା କରିବା ଯୋଗୁଁ ସେ ବୃଦ୍ଧକୁ ଦଣ୍ଡ ଦେବାର ବ୍ୟବସ୍ଥା କରି ବସିଲେ । ପ୍ରଥମୋକ୍ତ ହାକିମ ଓ ଦ୍ୱିତୀୟ ହାକିମ ଜୀବସୃଷ୍ଟିରେ କେଉଁ କେଉଁ ଶ୍ରେଣୀର ଅନ୍ତର୍ଗତ, ତାହା ଆପଣମାନେ ବୁଝି ପାରିବେ । ଯାହାହେଉ ପଦମର୍ଯ୍ୟାଦାର ବୃଦ୍ଧି ସଙ୍ଗରେ ଭଦ୍ରତା ଓ ସୌଜନ୍ୟକୁ ବିସ୍ମୃତ ନ ହେବା ହିଁ ମନୁଷ୍ୟତ୍ୱ ।

ପାଠକମାନେ କ୍ଷମା କରିବେ, ଆଜିର ବିଷୟଟା ବୁଝାଇବା ନିମନ୍ତେ ବ୍ୟକ୍ତିଗତ କଥାର ଅବତାରଣା କରିବାକୁ ପଡ଼ିବ । ଆଇନ ବ୍ୟବସାୟ ଠାରୁ ସ୍ୱାଧୀନ ବ୍ୟବସାୟ ଆଉ ନାହିଁ ବୋଲି ଲୋକେ ହୁଲର କରନ୍ତି । ମୁଁ ନିଜର ଅନୁଭବରୁ ଯାହା ବୁଝିଲିଣି, ସେଥିରେ ଯେବେ ଓକିଲାତିକୁ ସ୍ୱାଧୀନ ବ୍ୟବସାୟ ବୋଲିବାକୁ ହେବ, ତେବେ ପୃଥିବୀରେ ପରାଧୀନ ବ୍ୟବସାୟ ନାହିଁ କହିଲେ ଚଳିବ । ଚାକିରି - ନିର୍ଦ୍ଦିଷ୍ଟ ପରାଧୀନତା, ଓକିଲାତି - ଅନିର୍ଦ୍ଦିଷ୍ଟ ପରାଧୀନତା - ମୁଁ ଏଥି ମଧ୍ୟରେ ଏତିକି ମାତ୍ର ପ୍ରଭେଦ ପାଇଅଛି । କାର୍ଯ୍ୟର ଅନିଶ୍ଚିତତା, ସମୟର ଅନିଶ୍ଚିତତା, ଅର୍ଥର ଅନିଶ୍ଚିତତା, ବିଦ୍ୟାର ଅନିଶ୍ଚିତତା ପ୍ରଭୁଙ୍କ ଅନିଶ୍ଚିତତା, ପ୍ରଭୁଙ୍କ ମନରେ ଅନିଶ୍ଚିତତା, ଏହିପରି ଅନେକ 'ଅନିଶ୍ଚିତ' କଥା ମଧ୍ୟରେ ଆମ୍ଭମାନଙ୍କୁ ଦିନରାତି ବୁଲିବାକୁ ହେଉଥାଏ । ରାମ ସାମଲ ଠାରୁ ମହାରାଜାଙ୍କ ପର୍ଯ୍ୟନ୍ତ ଓ ଅନାହାରୀ ହାକିମଙ୍କ ଠାରୁ ମାଂସାଶୀ ହାକିମମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ପାଖରେ ଆମ୍ଭମାନଙ୍କୁ ବୁଲିବାକୁ ହୁଏ । ଏକ ଦିଗରେ ଯେପରି ମନୁଷ୍ୟ ପ୍ରକୃତି ପର୍ଯ୍ୟାଲୋଚନା କରିବାର ସୁବିଧା ଆମ୍ଭମାନଙ୍କୁ ମିଳେ, ଅପରଦିଗରେ ସେହିପରି ହାକିମମାନଙ୍କ 'ମେଜାଜ' ଓ ବ୍ୟବହାରରୁ ଅନେକ ସମୟରେ ଆମ୍ଭମାନଙ୍କୁ ମନୋକଷ୍ଟ ଓ ବିଷମ ସମସ୍ୟାରେ ପଡ଼ିବାକୁ ହୁଏ । ଅନେକ ସମୟରେ ଆପଣା ମହତ୍ତ୍ୱ ଟିକକ ପଦାରେ କାଢ଼ି ରଖି ମକ୍‌କେଲମାନଙ୍କ ଜୀବନ ନାଟିକାଟିମାନ ଓ ଆମ୍ଭମାନଙ୍କ ଖାଲି ପକେଟ ନେଇ ବିଚାରାସୀନ ନିକଟକୁ ଯିବାକୁ ପଡ଼େ । ଯେବେ ନ୍ୟାୟର କୌଣସି ବ୍ୟତିକ୍ରମ ଦେଖି ଆମ୍ଭମାନଙ୍କ ମେଜାଜ ଓ ମୁହଁ କଡ଼ା ହୋଇଯାଏ, ତାହାହେଲେ ସଙ୍ଗେ ସଙ୍ଗେ ମକ୍‌କେଲର ସର୍ବନାଶ । ହାକିମଙ୍କ ମୋସାହେବ ନ ହେଲେ, ତାଙ୍କ ମିଜାଜ ଠଉରାଇ ସ୍ତୁତିପାଠ ନ କଲେ ଅନେକ ସମୟରେ ଆମ୍ଭମାନଙ୍କୁ ନିସ୍ତାର ନାହିଁ । ଆମ୍ଭମାନଙ୍କ ନିଜ ଦୋଷରୁ ଆମ୍ଭମାନଙ୍କୁ ଅନେକ ସମୟରେ କଦର୍ଯ୍ୟ କାର୍ଯ୍ୟ କରିବାକୁ ହୁଏ । ଅଧିକାଂଶ ସମୟରେ ହାକିମମାନଙ୍କ ଅବୁଝାମଣା ନିଶାପ ଯୋଗୁଁ ଆମ୍ଭେମାନେ ମିଥ୍ୟାଚାରୀ ହେବାକୁ ବାଧ ହେଉଁ । ସମୟ ସମୟରେ ଗୋଟିଏ ଗୋଟିଏ ହାକିମଙ୍କୁ ଦେଖି ଓ ସେମାନଙ୍କ ବ୍ୟବହାର ଦେଖି ବଡ଼ ଆନନ୍ଦ ଜାତ ହୁଏ । କିନ୍ତୁ ଅନେକ ସ୍ଥଳରେ ଦେଖାଯାଏ ଯେ ହାକିମମାନେ ବିଚାରାସନକୁ ଆସିବା ପୂର୍ବରୁ ସୌଜନ୍ୟକୁ ତଳେ କାଢ଼ି ପକାଇଥା'ନ୍ତି । ଏଥିରେ ପ୍ରଭୁତ୍ୱର କି ମହିମା ବୃଦ୍ଧିପ୍ରାପ୍ତ ହୁଏ, ତାହା ଭଗବାନ୍‌ଙ୍କୁ ଜଣା । ସେମାନଙ୍କର ଏହି ଅବତାର ଦେଖି ସମାଗତ ଓକିଲ ମୁକ୍ତାରମାନେ ସ୍ତବ ପାଠର ମାତ୍ରା ଟିକିଏ ବଢ଼ାନ୍ତି ସତ୍ୟ, କିନ୍ତୁ

ଏହି ଅବତାର ଧାରଣା କରିବା ଦ୍ୱାରା ପ୍ରଭୁତ୍ୱ ବା କ୍ଷମତାର ଗରିମା କେତେଦୂର ବୃଦ୍ଧିପ୍ରାପ୍ତ ହୁଏ, ତାହା ମୋ କ୍ଷୁଦ୍ର ବୁଦ୍ଧିର ଧାରଣାର ଅତୀତ । ମୁଁ ପୂର୍ବେ କହିଅଛି, କାର୍ଯ୍ୟ ଓ ସମୟରେ ଅନିଶ୍ଚିତତା ମଧ୍ୟରେ ଆମ୍ଭମାନଙ୍କୁ ଘୂରିବାକୁ ହେଉଥାଏ । ଖାଲି ପକେଟ ଓ ଖାଲି ପେଟରେ ହାତ ବୁଲାଇ ଦେଲା ବେଳକୁ କଲିଜା କମ୍ପିଉଠେ । ଜୀବନ ବିକଳରେ ଦୁଇ ହାତରେ ଗୁଣ୍ଡା ବଳି ପାଟିରେ ପୂରାଇ ଦେବାକୁ ବସୁ । ଏକ ସମୟରେ ଦୁଇଜଣ ହାକିମଙ୍କ ନିକଟରେ ମକଦ୍ଦମା ଡାକରା ପଡ଼େ । ସେତେବେଳେ ଓକିଲାତି ବ୍ୟବସାୟର ସ୍ୱାଧୀନତା ଓ ସ୍ପଷ୍ଟବାଦିତା ସ୍ପଷ୍ଟରୂପେ ପ୍ରତୀୟମାନ ହୁଏ । ହୁଏତ ମକ୍କେଲର ସର୍ବନାଶ କରିବାକୁ ହେବ, ନଚେତ ଜଣେ ହାକିମଙ୍କୁ ନେହୁରା ନମସ୍ତେ କରି ସମୟ ନେବାକୁ ହେବ । କେହି କେହି ହାକିମ ଭଦ୍ରତା ଅନୁରୋଧରେ ସମୟ ଦେଇଥା'ନ୍ତି । କିନ୍ତୁ ଅନେକ ସ୍ଥଳରେ ହାକିମମାନେ ବେଳକାଳ ଉଣ୍ଡି ସେତିକିବେଳେ ମାଡ଼ି ବସନ୍ତି । ସେତିକିବେଳକୁ ପଦ୍ମତୋଳା ବୋଲା ଓ ପାଚିଲା ବାଳୁଆ ଓକିଲଙ୍କ କରଣି ଖୁବ୍ କାଟେ । ସେତେବେଳେ ହାକିମମାନେ ଅଡ଼ିଗଲେ ଆମର ହୀନାବସ୍ଥା କହିଲେ ନ ସରେ । ଏହି ଅବସ୍ଥାରେ ହାକିମମାନଙ୍କୁ ପାକଳାଇ ନେବା ହିଁ ପ୍ରକୃତ ଓକାଲତି । ପଦ୍ମତୋଳା ବୋଲିବାରେ ମଧ୍ୟ ଖୁବ୍ ବାହାଦୁରି ଅଛି । ଦିନେ ଗୋଟିଏ ମକଦ୍ଦମାରେ ମୁଁ ଜଣେ ହାକିମଙ୍କ ହଜୁରରେ ମକ୍କେଲର ଜୀବନନାଟିକାକୁ ହାତରେ ଧରି ପହୁଞ୍ଚିଲି । ହାକିମ ପ୍ରଥମରୁ ଗୋଟିଏ ଆଡ଼କୁ ଢଳି ପଡ଼ିଅଛନ୍ତି । ମୁଁ ଯେତେ କହିଲି, ଯେତେ ଆଇନ ଦେଖାଇଲି, ଯେତେ ନ୍ୟାୟର ଦ୍ୱାହି ଦେଲି, ହାକିମଙ୍କର ସେଥିରେ ଭ୍ରୂକ୍ଷେପ ନାହିଁ । ସେ ଯେଉଁଆଡ଼କୁ ବାଗେଇଛନ୍ତି ସେହି ଆଡ଼କୁ । ନିରୂପାୟ ହୋଇ ମୁଁ ମାମଲତକାରଙ୍କୁ ଇସାରା କରିଦେଲି । ସେମାନେ ଯାଇ ଜଣେ ପଦ୍ମତୋଳା ନିପୁଣ ଓକିଲଙ୍କୁ ଧରି ଆଣିଲେ । ପ୍ରବୀଣ ବନ୍ଧୁ ଆସି ପହଞ୍ଚିବା ମାତ୍ରକେ ତାଙ୍କ କାନରେ ହାଲଚାଲତକ କହିଦେଲି ସେ ବାଗଧରି ଆରମ୍ଭ କଲେ, "ହଜୁର ଯାହା ବୁଝିଛନ୍ତି ଠିକ୍, କିନ୍ତୁ * * *" ଏହି 'କିନ୍ତୁ' ପଛ ଧରି ଧରି ହାକିମଙ୍କୁ ଏପରି ବାଗେଇ ନେଲେ ଯେ ମକଦ୍ଦମା ନିଷ୍ପତ୍ତି ବେଳକୁ ହାକିମ କଡ଼ ଲେଉଟାଇ ବସିଗଲେ । ମକ୍କେଲ ବିଚାରା ହେଣ୍ଡି ମାରି କାଳୀ ଠାକୁରାଣୀଙ୍କ ପାଖରେ ବୋଦାଟାଏ ପକାଇ ଦେଇ ବାଟେ ବାଟେ ଗାଁକୁ ଚଳି । ଏ ତ ଗଲା ପଦ୍ମତୋଳାର ମାହାତ୍ମ୍ୟ । ଆମ୍ଭମାନଙ୍କୁ ଆଇନ ବ୍ୟବସାୟରେ ଅନେକ ପ୍ରକାର ଅନୁଭବ ଲାଭ କରିବାକୁ ହୁଏ । ଆମ୍ଭମାନଙ୍କ ମହତ୍ତ୍ୱ ଓ ସଂଭ୍ରମ ହାକିମମାନଙ୍କ ହାତରେ । ସେମାନଙ୍କ ସୌଜନ୍ୟ ଉପରେ ଆମ୍ଭମାନଙ୍କ ସ୍ୱଚ୍ଛନ୍ଦତା ବହୁ ପରିମାଣରେ ନିର୍ଭର କରେ । ନୈପାତନିକ ଅବସ୍ଥା ଛାଡ଼ି ଦିଅନ୍ତୁ । କିନ୍ତୁ ସାଧାରଣତଃ ଦେଖିବାକୁ ଗଲେ ଦେଖାଯାଏ ଯେ ହାକିମ ଓ ଓକିଲଙ୍କ ମଧ୍ୟରେ ବିଦ୍ୟା ଓ ବୁଦ୍ଧିର ପ୍ରଭେଦ କମ୍ । ପ୍ରଭେଦ ମଧ୍ୟରେ ଏତିକି ଯେ ଓକିଲମାନେ ମକ୍କେଲମାନଙ୍କ ପ୍ରତିନିଧିସ୍ୱରୂପ ପ୍ରାର୍ଥୀ ରୂପରେ ହାକିମମାନଙ୍କ ସମ୍ମୁଖରେ ଦଣ୍ଡାୟମାନ ହୁଅନ୍ତି । ଏଥିଯୋଗୁଁ ଅନେକ ସ୍ଥଳରେ ଓକିଲମାନେ ହାକିମଙ୍କ ସୌଜନ୍ୟରୁ ବଞ୍ଚିତ ହେବା ସେମାନଙ୍କ ଦୁର୍ଭାଗ୍ୟ ବୋଲିବାକୁ ହେବ ।

ଉତ୍କଳ ସାହିତ୍ୟ/୧୧ଶ ଭାଗ/୨ୟ ସଂଖ୍ୟା/୧୩୧୪ ସାଲ ।

## ।। ପନ୍ଦର ।।

ନ୍ୟାୟପର ଗଭର୍ଣ୍ଣମେଣ୍ଟ ଆମ୍ଭମାନଙ୍କ ଘରେ ଘରେ ନ୍ୟାୟ ବିଚାର ବଣ୍ଟନ କରୁଅଛନ୍ତି । ଆମ୍ଭେମାନେ ରାମ ରାଜ୍ୟରେ ବାସ କରୁଅଛୁଁ । କାହାର ହଲଚଲ ହେବାର 'ଚୁ' ନାହିଁ । ବାଘ ବକରୀ ଏକ ତୋଠରେ ପାଣି ପିଉଛନ୍ତି । କେହି ଲୋକ ଅପରାଧ କଲା, ସେ ପଳାଇ ଯିବା ଅସମ୍ଭବ । ସେ ସାତସମୁଦ୍ର ଲଙ୍କା ପାରି ହୋଇ ପଳାଇଲେ ସୁଦ୍ଧା ମୁହୂର୍ତ୍ତକ ମଧ୍ୟରେ ଧର୍ମାଧିକରଣରେ ଆସି ହାଜର ହେବ । ଠାବେ ଠାବେ ଫଉଜଧାରୀ ଅଦାଲତ, ଦେବାନି ଅଦାଲତ ଓ ମାଲ ଅଦାଲତମାନ ଧର୍ମଧ୍ୱଜା ଉଡ଼ାଇ ବସିଅଛନ୍ତି । ଅତ୍ୟାଚାର ଜର୍ଜରିତ ପ୍ରାଣୀମାନଙ୍କୁ ପ୍ରତିକାର ଦେବା ନିମନ୍ତେ ହସ୍ତ ପ୍ରସାରଣ କରୁଅଛନ୍ତି । ଡାକୁଅଛନ୍ତି - ''ହେ ପ୍ରାଣୀମାନେ ! ଆମ୍ଭମାନଙ୍କ ଶାନ୍ତିମୟ କ୍ରୋଡ଼ରେ ବିଶ୍ରାମ ଓ ଶାନ୍ତି ଲାଭ କର ।'' ଆଇନ କାନୁନ୍‌ର ବିଧାନ ଯେପରି ବିଧିବଦ୍ଧ ହୋଇଅଛି, ସେଥିରେ 'ମାଛି ପଡ଼ିଲେ ନବଖଣ୍ଡ' ହେବ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଥରେ ନ ବୁଝିବା ପର୍ଯ୍ୟନ୍ତ, ଥରେ କାର୍ଯ୍ୟକ୍ଷେତ୍ରରେ ପଶି ନ ଠିକିବା ପର୍ଯ୍ୟନ୍ତ, ପୋଥି ବାଇଗଣ ସଙ୍ଗେ ବାଡ଼ି ବାଇଗଣର ପରଖ ନ କରିବା ପର୍ଯ୍ୟନ୍ତ କାର୍ଯ୍ୟକ୍ଷେତ୍ରରେ ଆଇନ କାନୁନ୍‌ର କେତେ ମର୍ଯ୍ୟାଦା କରାଯାଏ, ତାହା ବୁଝିବା ଦୁରୁହ । ଆଜି ଫଉଜଦାରୀ ଅଦାଲତ ଆଡ଼କୁ ନ ଯାଇ ପାଠକମାନଙ୍କୁ ଦେବାନି ଅଦାଲତର ଓଳିତଳକୁ ଥରେ ଯିବାକୁ ହେବ । ଅଦାଲତରେ ମକଦମା କରିବାକୁ ଯାଇ ପ୍ରଥମେ ଟରଣିମାନଙ୍କ କବଳରେ ପଡ଼ିବାକୁ ହେବ । ଟରଣିମାନଙ୍କ ସମ୍ବନ୍ଧରେ ପୂର୍ବେ କେତେକଥା କହିଅଛି । ଆଜି ସେମାନଙ୍କୁ ଚାହିଁବାର ଆବଶ୍ୟକ ନାହିଁ । ଆଇନ୍ ପ୍ରଣେତାମାନେ ଟରଣିମାନଙ୍କ ପ୍ରତି ଭାରି ଖଡ଼୍‌ଗହସ୍ତ; କିନ୍ତୁ ପୂର୍ବଜନ୍ମ ସୁକୃତରୁ ହେଉ ବା ଆଇନ ବ୍ୟବସାୟୀମାନଙ୍କ ଆଶ୍ରିତ ବାତ୍ସଲ୍ୟରୁ ହେଉ, କିମ୍ବା ହାକିମମାନଙ୍କ ଦୟାରୁ ହେଉ, ଟରଣିମାନଙ୍କ ରାଜତ୍ୱ ଅପ୍ରତିହତ । ଦିନେ କଥା ପ୍ରସଙ୍ଗରେ ମୁଁ ଜଣେ ହାକିମଙ୍କୁ ଟରଣିମାନଙ୍କ ଅତ୍ୟାଚାର ବିଷୟରେ ପଦେଅଧେ କଥା କହିଥିଲି । ସେ ଗମ୍ଭୀର ଭାବରେ ଉତ୍ତର କଲେ, ''ଯେତେଦିନ ପର୍ଯ୍ୟନ୍ତ ଓକିଲ ମୋହରିରମାନଙ୍କ ଅବସ୍ଥାର ପରିବର୍ତ୍ତନ ହୋଇ ନାହିଁ, ସେତେଦିନଯାଏ ଟରଣିମାନଙ୍କୁ ବାଧ୍ୟ ହୋଇ ହାକିମମାନେ ପ୍ରଶ୍ରୟ ଦେବେ । ଟରଣିମାନଙ୍କୁ ବନ୍ଦ କରିବା ମାତ୍ରେ ପକ୍ଷମାନେ ଓକିଲ ମୋହରିରଙ୍କ ଅତ୍ୟାଚାରରେ ଦ୍ୱିଗୁଣ ଜର୍ଜରିତ ହେବେ ।'' କଥାଟା ମୋ ମନକୁ ବେଶ ମାନିଲା । ଓକିଲ ମୋହରିର ହେବା ନିମନ୍ତ କୌଣସି ବିଶେଷ ଯୋଗ୍ୟତା ବା ପରୀକ୍ଷାର ଆବଶ୍ୟକତା ନାହିଁ । ଉଚ୍ଚଶିକ୍ଷିତମାନଙ୍କୁ ଅନ୍ୟ କିଛି ଉପାୟ ନ ମିଳିଲେ ସେମାନେ ଓକାଲତି ପେସାରେ ପଶନ୍ତି । ସେହିପରି ଅପାଠୁଆ ଓ ଅଧାପାଠୁଆମାନଙ୍କୁ ପେଟ ପୋଷିବାର ଅନ୍ୟ କୌଣସି ଉପାୟ ନ ମିଳିଲେ ସେମାନେ ଓକିଲମାନଙ୍କ ସିରସ୍ତାରେ ଆସି ଯୁଟନ୍ତି ।

ସେମାନଙ୍କ ଅକ୍ଷର ସାଧାରଣତଃ କଦର୍ଯ୍ୟ, ଶିକ୍ଷା ଆଦୌ ନାହିଁ, ଶୁଦ୍ଧାଶୁଦ୍ଧ ବିଚାରର ଧାର ଧାରନ୍ତି ନାହିଁ, ଧର୍ମାଧର୍ମ ହିତାହିତ ଜ୍ଞାନ ତଥୈବଚ । କ, ବ, ଚ, କରି ଖଣ୍ଡେ ପଇସିକିଆ କାଗଜରେ ଚାରିଧାଡ଼ି ଲେଖିଦେଲେ ନଗଦ ସୁଉକିଟିଏ ଥୁଆ । ଏହାଛଡ଼ା ଉପୁରି ଲାଭ । କିନ୍ତୁ ମଫସଲ ଅଦାଲତମାନଙ୍କରେ ଓକିଲ ମୋହରିରମାନଙ୍କ ଉପରେ ମାମଲତକାରମାନଙ୍କ ଭାଗ୍ୟ ସମ୍ପୂର୍ଣ୍ଣ ରୂପେ ନିର୍ଭର କରେ । ଅନେକ ସ୍ଥଳରେ ଦେଖାଯାଏ ଯେ ମୋହରିରମାନେ ଅର୍ଥଲୋଭରେ ପକ୍ଷମାନଙ୍କର ସର୍ବନାଶ କରନ୍ତି ଓ ନିଜ ନିଜର ପ୍ରଭୁମାନଙ୍କୁ ଅପଦସ୍ଥ କରାନ୍ତି । କେତେକ ସ୍ଥଳରେ ସେହିମାନେ ଓକିଲମାନଙ୍କର ସର୍ବେସର୍ବା, ଓକିଲମାନେ ମୋହରିରମାନଙ୍କ କିଙ୍କର । ଜଣେ ମୋହରିରଙ୍କ ବାହାଦୁରି ଯୋଗୁଁ ଓକିଲଙ୍କୁ ଫୌଜଦାରୀ ଅଦାଲତର ସୀମା ପର୍ଯ୍ୟନ୍ତ ଟଣା ହୋଇଥିଲା । ସେ ମୋହରିରଟିକୁ ଖାରଜ କରି ଦେବାକୁ କେତେକ ବନ୍ଧୁ ଉକ୍ତ ଓକିଲଙ୍କୁ ଅନୁରୋଧ କଲେ । କିନ୍ତୁ ଓକିଲବାବୁ ଭୀତତ୍ରସ୍ତ ହୋଇ ଉତ୍ତର କଲେ, ‘‘ସଂସାରରେ ସବୁ କରିପାରିବି, ସବୁ ସହିପାରିବି କିନ୍ତୁ ସେ ବିରହ ବେଦନା ସହିପାରିବି ନାହିଁ; ଛାତି ଫାଟିଯିବ ।’’ ଅନେକ ସମୟରେ ଓକିଲ ମୋହରିରମାନେ ଅର୍ଥ ଲୋଭରେ ନାନା ଜଘନ୍ୟ କାର୍ଯ୍ୟ କରନ୍ତି, ଅନେକ ଲୋକଙ୍କ ଗଳା କାଟନ୍ତି । କିନ୍ତୁ ପଇସା ଲୋଭରେ ଓକିଲମାନେ ସେହିମାନଙ୍କୁ ପ୍ରଶ୍ରୟ ଦିଅନ୍ତି । ଯେତେଦିନ ପର୍ଯ୍ୟନ୍ତ ଓକିଲ-ମୋହରିରମାନଙ୍କର ସଂସ୍କାର ହୋଇ ନାହିଁ, ସେତେଦିନ ପର୍ଯ୍ୟନ୍ତ ମାମଲତକାରମାନଙ୍କର (ପକ୍ଷରେ) ଶୋଚନୀୟ ଅବସ୍ଥା ଦୂର ହେବା ଅସମ୍ଭବ - ପକ୍ଷମାନେ ଦହଗଞ୍ଜ ହେବା ଅବଶ୍ୟମ୍ଭାବୀ । ଓକିଲମାନଙ୍କ ଲୋଭର ସୀମା ଅଛି; କିନ୍ତୁ ମୋହରିରମାନଙ୍କ ତଦ୍‌ବିର ଅସୀମ, ଲୋଭ ଅସୀମ, ବିଦ୍ୟା ଅସୀମ ଓ ହାତଯଶ ମଧ୍ୟ ଅସୀମ ।

ଯେନତେନ ପ୍ରକାରେଣ ସେମାନଙ୍କୁ ଟପି ପକ୍ଷ ବିଚାରା ଅର୍ଜି ଖଣ୍ଡିକ ଆଣି ଅଦାଲତରେ ଦାଖଲ କରିଦେଲା । କିନ୍ତୁ କେବେ ତାରିଖ ପଡ଼ିବ, ଏହା ଜାଣିବା ନିମନ୍ତେ ସାଙ୍ଗେ ସାଙ୍ଗେ କିଛି ଦକ୍ଷିଣା ଦରକାର । ଦଣ୍ଡବିଧି ଆଇନ ପାଟିକରି ସମସ୍ତଙ୍କୁ କହୁଅଛି, ‘‘ହୁସିଆର ! କେହି ଘୁଷ ନିଅ ନାହିଁ, କି କେହି ଘୁଷ ଦିଅ ନାହିଁ । ଯେ ଦକ୍ଷିଣା ଦବ ସେ ଦଣ୍ଡ ପାଇବ, ଯେ ଦକ୍ଷିଣା ନବ ସେ ଦଣ୍ଡ ପାଇବ ।’’ କିନ୍ତୁ ଅମଲା ବିଚାରା ଦିନରାତି ମୁଣ୍ଡ ଲଇଁ ଲଇଁ ତା ପିଠି କୁଜା ହୋଇଗଲାଣି, କାନ ବଧିରା ହୋଇଗଲାଣି, ଦଣ୍ଡବିଧି ଆଇନର ବଜ୍ର ନିର୍ଘୋଷ ତା କାନରେ ପଶିବା ଅସମ୍ଭବ । ବେଳ ସଳଖିଲା ବେଳକୁ ଅର୍ଥୀ ପ୍ରତ୍ୟାର୍ଥୀ ସମସ୍ତେ ସମ୍ମୁଖରେ ଉପସ୍ଥିତ । ଅମଲା ବିଚାରା ପକ୍ଷଠାରୁ କିଛି ଅଣ୍ଡାଗୁଞ୍ଜା ନେଇ ତାରିଖଟା ଜଣାଇଦିଏ । ମନେକର ଯେବେ ଅଣ୍ଡାଗୁଞ୍ଜା ନାହିଁ, ତେବେ ‘ଫୁର୍ସଦ୍ ନାହିଁ ।’ ‘ଫୁର୍ସଦ୍’ କଥାଟାର ମୂଲ୍ୟ ବହୁତ । କାରଣ ଅଦାଲତର ସମସ୍ତ

ଅମଲା ଦିନରାତି ଗଧ ପରି ଖଟି ଖଟି, ନିଜେ ହାତରୁ ପଇସା ଖର୍ଚ୍ଚକରି ବାହାରେ ଲୋକ ଲଗାଇ ସୁଦ୍ଧା କାର୍ଯ୍ୟ ଶେଷ ହୁଏ ନାହିଁ । ଏ କଥା ହାଇକୋର୍ଟ ହାକିମଙ୍କଠାରୁ ଛୋଟ ହାକିମଙ୍କ ପର୍ଯ୍ୟନ୍ତ ସମସ୍ତେ ଜାଣନ୍ତି । ଯେବେ କିଛି କଥାରେ କୈଫିୟତ ତଲବ ହୁଏ, ତେବେ 'ଫୁର୍ସତ୍ ନାହିଁ' ବୋଲି କହିଦେଲେ ଏକଦମ ଖଲାସ୍ । ସରକାର ମଧ ଜାଣି ଶୁଣି 'ଫୁର୍ସତ୍ ନାହିଁ' କୈଫିୟତଟାକୁ ଭାରି ମାନ୍ୟ କରନ୍ତି । ତାହା ନ କଲେ ଅମଲାଙ୍କ ଦରମା ବଢ଼ାଇବାକୁ ହେବ । ଜଣକ ଜାଗାରେ ଦୁଇଜଣ ଅମଲା ରଖିବାକୁ ହେବ । ଏହା ନ କରି ଆଖି ବୁଜିଦେଲେ, ସେହି କମ୍ ଦରମାରେ ଜଣେ ମନୁଷ୍ୟ ସମୁଦାୟ କାର୍ଯ୍ୟ କରି ଚାଲିଯିବ । ଗଭର୍ଣ୍ଣମେଣ୍ଟଙ୍କ ଖଜଣାଖାନାରେ ଆଞ୍ଚ୍ ଲାଗିବ ନାହିଁ ।

ତାରିଖ କେବେ ପଡ଼ିବ ଏହା ଜାଣିଲା ପରେ, ଦ୍ୱିତୀୟ କଥା - ପ୍ରତିବାଦୀ ଉପରେ ସମନ ଜାରି । କେଉଁ ପିଆଦା ସମନ ଜାରି କରିବାକୁ ଯିବ, ସେ କେବେ ଯିବ, ଏ ସବୁ ତ ଜାଣିବା ଦରକାର । ସେଥିପାଇଁ ମଧ କିଛି ଦକ୍ଷିଣାର ବ୍ୟବସ୍ଥା କରିବାକୁ ହେବ । ଯେଉଁ ପିଆଦା ସମନ ଜାରି କରିବାକୁ ଯିବ, ତାଙ୍କୁ ସନ୍ତୋଷ ନ କଲେ ସେ ନିଶାଣଦାର ଅଭାବରୁ ଫେରିଆସିବେ, ତାହାହେଲେ ଫେର ଡବଲ ଖରଚ । ଏ କଥା ବଡ଼ଠାରୁ ସାନ ପର୍ଯ୍ୟନ୍ତ ସବୁ ହାକିମ ଜାଣନ୍ତି । କୌଣସି ଗୋଟିଏ ଯଜ୍ଞବେଦୀରେ ଦକ୍ଷିଣା ଦିଆ ନ ଗଲେ 'ବାର ବରଷ ତପସ୍ୟା ଏକା ଶୁଖୁଆ ପୋଡ଼ାରେ' ଖଲାସ ହେବ । ତାରିଖ ଦିନ ଏଫିଡ଼େଭିଡ଼୍ କରିବାକୁ ହେବ । ସାକ୍ଷୀଙ୍କ ନାମରେ ସମନ କରିବାକୁ ଦେବ, ହାଜିରା ଦାଖଲ କରିବାକୁ ହେବ, କାଗଜପତ୍ର ଦାଖଲ କରିବାକୁ ହେବ । ସାକ୍ଷୀମାନଙ୍କ ଉପରେ ସମନ ଜାରି କରାଇବାକୁ ହେବ, ନଥି ଦେଖିବାକୁ ହେବ, ଅନ୍ୟ ଅଦାଲତରୁ ଆବଶ୍ୟକମତେ ନଥି ତଲବ କରାଇବାକୁ ହେବ । ଏସବୁ କାର୍ଯ୍ୟରେ ପୁରୋହିତ-ଦକ୍ଷିଣା ଦିନ ଦି'ପହରେ ହାକିମମାନଙ୍କ କଡ଼ରେ ପୁରୋହିତମାନଙ୍କଠାରେ ଜବରଦସ୍ତି ଗୁଞ୍ଜିବାକୁ ହେବ । ଏ ଦକ୍ଷିଣାତକ ନଗଦ ନ ଗଣିବାଯାକେ ପକ୍ଷମାନେ କାଗଜପତ୍ରରେ ଯେତେ ସାବଧାନ ହେଲେ ସୁଦ୍ଧା ସେହି କାଗଜପତ୍ରରୁ ଗୋଟାଏ କିଛି ହେଲେ ଆଇନ ଘଟିତ ଦୋଷ ବାହାରି ପଡ଼ିବ । ସେଥିରେ ପକ୍ଷର ବା ଓକିଲଙ୍କର ପାଟି ଫିଟାଇବାର ଜୁ' ନାହିଁ । ଘୁଷ୍ ଦେବା ସମ୍ବନ୍ଧରେ ପିଙ୍ଗଳ କୋର୍ଡ ଧରାବନ୍ଧା । କିନ୍ତୁ ଏ ସବୁ କଥା ଧଇଲେ ଘଣ୍ଟାଏ ଚଳି ହେବ ନାହିଁ । ତୁମେ ମକଦ୍ଦମା କରିବାକୁ ଆସିଛ । ମକଦ୍ଦମାର 'ତଦ୍‌ବିର' କରିବା, ନା ଅମଲା ଓ ପିଆଦାମାନଙ୍କ ନାମରେ ଦରଖାସ୍ତ ଗୁଞ୍ଜିବ ଓ ଖର୍ଚ୍ଚାନ୍ତ ହେବ ? ଏତେ କଥାରେ ନ ପଶି ତୁନି କରି ସୁଉକିଟିଏ ବା ଅଧୁଲିଟିଏ ଗୁଞ୍ଜିଦେଲେ କାମ ଫତେ ହେବ । ଘରେ ନିଶ୍ଚିନ୍ତ ହୋଇ ଶୋଇଥାଅ, ଦକ୍ଷିଣାତକ ହିସାବ କରି ଓକିଲ ମୋହରିରଙ୍କ ମାରଫତ ଦେଇଯାଅ । ତାରିଖ ଦିନ ଆସି ଦେଖିବ ଯେ ଇନ୍ଦ୍ରଜାଲ ପ୍ରଭାବରୁ ତୁମର ସବୁ କାମ ସୁବିଧାମତେ ଫତେ ହୋଇଯାଇଅଛି ।

ତୁମେ ଜଣକ ନାମରେ ଖାତା ବାବଦରେ ନାଲିସ କରିବାକୁ କଚେରିକୁ ଆସିଲ । ଅର୍ଜି ସଙ୍ଗେ ସଙ୍ଗେ କାରବାରି ଖାତା ଓ ତହିଁର ଏକ ପ୍ରସ୍ଥ ନକଲ ଦାଖଲ କରିବାକୁ ହେବ । ଅମଲାମାନେ ନକଲ ସାଙ୍ଗେ ଅସଲ ଖାତାକୁ ମିଳାଇ ଦେଖି ନ ନେଲେ ତୁମ୍ଭେ ଖାତା ଉଆପସ ପାଇବ ନାହିଁ । ଯେବେ ଖାତା ଦିନେ ଅଦାଲତରେ ବନ୍ଦ ରହିଯିବ, ତେବେ ତୁମ୍ଭ କାରବାର ସେ ଦିନକ ସକାଶେ ବନ୍ଦ ହେବ ଓ ତୁମ୍ଭକୁ ନାନା ଅସୁବିଧା ଭୋଗ କରିବାକୁ ପଡ଼ିବ । ଏଣେ ଫେର୍ ଅଦାଲତ ଅମଲାମାନେ ଦିନରାତି କାର୍ଯ୍ୟରେ ବ୍ୟସ୍ତ । ଏପରିକି ଅନେକ ଅମଲା ହଇଚା ସମୟରେ ମରିବାକୁ ସୁଦ୍ଧା ଫୁର୍‌ସତ୍ ପା'ନ୍ତି ନାହିଁ । ସେମାନେ ଯାହା ଦରମା ପାଇବେ, ସେଥିରେ ପେଟ ପୂରି ପିଠି ଘୋଡ଼ାଇ ହେବା ଏକପ୍ରକାର ଅସମ୍ଭବ । ତାଙ୍କ ଦରମା ବଢ଼ିଲେ ଗଭର୍ଣ୍ଣମେଣ୍ଟର କ୍ଷତି ହେବ । ଗଭର୍ଣ୍ଣମେଣ୍ଟଙ୍କର ଏହି ନୀତି ଯୋଗୁଁ ଗରିବ ଅମଲାମାନେ ଦିନରାତି ଖଟି ଖଟି ସୁଦ୍ଧା କାର୍ଯ୍ୟ ଶେଷ କରିପାରନ୍ତି ନାହିଁ । ଏଣେ କିନ୍ତୁ ତୁମ ଖାତାଖଣ୍ଡି ସଙ୍ଗେ ସଙ୍ଗେ ଉଆପସ ନ ମିଳିଲେ ତୁମ୍ଭର ବିସ୍ତର କ୍ଷତି । ମୁହେଁ ମୁହେଁ ରିକ୍ତ ହସ୍ତରେ ଖାତାଖଣ୍ଡି ନକଲ ସଙ୍ଗେ ମିଳାଇ ନେଇ ଉଆପସ ଦେବାକୁ କହିଲେ ଅମଲା କହିବେ, ''ଅପେକ୍ଷା କର, ମତେ ଫୁରସତ୍ ହେଲେ ତ ଦେଖିବି ।'' ଅଗତ୍ୟା ତୁମ୍ଭକୁ ଅପେକ୍ଷା କରିବାକୁ ହେବ । ଯେବେ ଅମଲାଙ୍କୁ ଉପର୍ଯ୍ୟୁପରି ଦୁଇ ତିନି ଦିନ ସକାଶେ ମଧ ଫୁର୍‌ସତ୍ ନ ମିଳେ, ତେବେ ସୁଦ୍ଧା ତୁମ୍ଭକୁ ଅପେକ୍ଷା କରିବାକୁ ହେବ । ଏଥିରେ ଯେବେ ତୁମ୍ଭେ ନିତାନ୍ତ ଅମଲା ବିଚାରା ଉପରେ ଖପ୍‌ପା ହୋଇ ହାକିମଙ୍କ ନିକଟରେ ଫେରାଦ ହେବାକୁ ଯାଅ, ବୁଢ଼ା ହାକିମ ହେଲେ ତୁମ୍ଭକୁ ଚାହିଁ ମୁରକି ହସାଟିଏ ହସିବେ । ମନେ ମନେ ବିଚାରିବେ, ତୁମ୍ଭେ 'ତଦବିର'ର ମାହାତ୍ମ୍ୟ ବୁଝି ନାହଁ । ଏଣେ ମୁହଁରେ କହି ଦେବେ, ବୁଝାଯିବ । ଟୋକା ହାକିମ ହେଲେ ତାଙ୍କର ରକ୍ତ ଗରମ ହୋଇଉଠିବ, ସେ ବିଲଫଏଲ ସିରସ୍ତାକୁ ଦଉଡ଼ି ଯିବେ । ଅମଲାଙ୍କୁ ଆଖିତରାଟି ପଚାରିବେ - କି ହେ ! ଏହାଙ୍କ ଖାତା ଉଆପସ ନ ଦେଇ ହରକତ୍ କରୁଛ କିଆଁ ? ଅମଲା ତ କଂସାରି ଘର ପାରା, ସେ ତତ୍‌କ୍ଷଣାତ୍ ଉତ୍ତର ଦେବେ, ''ହଜୁର ! ହାଇକୋର୍ଟ ସରକୁଲାର ଅନୁସାରେ ଅମୁକ କାର୍ଯ୍ୟ ଶେଷ କରିବା ନିମନ୍ତେ ଭାରି ତୁମ୍ବି ଲାଗିଛି, ସେ କାର୍ଯ୍ୟ ଶେଷ ନ ହେବା ପର୍ଯ୍ୟନ୍ତ ଆମକୁ ଫୁରସତ୍ ନାହିଁ, ଖାତା ମିଳାଇବୁ କିପରି ? ଏ ଉତ୍ତରରେ ହାକିମ ବିଚାରା 'ଭୋଗିବ'– 'ମନ୍ତ୍ରୌଷଧିରୁଦ୍ଧବୀର୍ଯ୍ୟଃ' ଥଣ୍ଡା ହୋଇ ଫେରି ଆସିବେ । ତୁମ୍ଭେ ମଧ ବୋଧଶୋଧ ହୋଇ ଅପେକ୍ଷା କରିବ । କିନ୍ତୁ ଏତେ କଥା ନ କରି 'କମେର ଜୋର' ଦେଖାଇ ପାରିଲେ କିଛି ପିକାଖିଆ ବା ପାନଖିଆ ବା ଜଳଖିଆର ବନ୍ଦୋବସ୍ତ କରିଦେଲେ ଆଖି ପଲକ ନ ପଡୁଣୁ ତୁମ୍ଭ ଖାତା ତୁମ୍ଭକୁ ଉଆପସ ମିଳିଯିବ । ତୁମ୍ଭେ ହେଣ୍ଡିମାରି ଚାଲିଯିବ । ତାମ୍ର ଓ ରୌପ୍ୟ ଫଳକ ଅଦାଲତରେ ଅମଲାମାନଙ୍କର ପରିଶ୍ରମର ଦରଜ ଯେତେ

ଦୂର କମାଇ ଦିଏ, ଅଫିମର ମଧ୍ୟ ତେତେ କରାମତ ନାହିଁ । ଏଠାରେ ଗୋଟିଏ ଗଭୀର ପ୍ରତ୍ନତତ୍ତ୍ୱ କଥା ପାଠକମାନଙ୍କୁ ଜଣାଇବୁ - ଆୟୁର୍ବେଦ ପ୍ରଣୟନ ହେବା ସମୟରେ ଆମ୍ଭମାନଙ୍କ ଦେଶରେ ଅଦାଲତ ନ ଥିଲା । ଅଦାଲତ ଥିଲେ ଅଫିମ ଇତ୍ୟାଦି ପ୍ରାସହାରକ ଔଷଧ ସଙ୍ଗେ ମାତ୍ରା କ୍ରମେ ଆୟୁର୍ବେଦକାରମାନେ ସୁଉକି, ଦୋଅଣି ଓ ଅଧୁଲିର ବ୍ୟବସ୍ଥା କରିବାକୁ କଦାପି ଭୁଲି ନ ଥାନ୍ତେ । ଯାହାହେଉ ଏ ତ ମକଦ୍ଦମା କରିବାର ପ୍ରଥମ ସୋପାନ । କ୍ରମଶଃ ମକଦ୍ଦମାରେ ଯେତିକି ପ୍ରବୀଣତା ଲାଭ ହେଉଥିବ, ସେତିକି ସେତିକି ଏ ବିଷୟରେ ଅନେକ ଶିକ୍ଷା ଲାଭ ହେଉଥିବ । ପ୍ରଥମରେ ଯେତେବେଳେ ଆମ୍ଭେମାନେ କଚ୍ଛନା ରାଜ୍ୟରୁ ନୂଆ ନୂଆ ଆମଦାନୀ ହୋଇ ଚୋଗା, ଚପକନ୍ ଓ ସାମଲା ପିନ୍ଧିଲୁ  ଚୋଗା, ଚପକନ୍ ଓ ସାମଲାରେ ମଇଳାଦାର ନ ଲାଗିବା ଯାକେ ସେସବୁ ବଡ଼ ଅଖଣ୍ଡିଆ ବୋଧ ହେଉଥିଲା । ଘୁଷ୍ ଦେବା କଥା ଶୁଣିଲା ମାତ୍ରେକେ ଦିହରେ ନିଆଁ ଲାଗି ଯାଉଥିଲା । କିନ୍ତୁ କ୍ରମଶଃ ଯେତିକି ଯେତିକି ପୁରୁଣା ହେଉଅଛୁଁ, ସେତିକି ସେତିକି ଏସବୁ କଥା ଦିହରେ ସହିଯାଉଅଛି । କ୍ରମଶଃ ଆଇନ କାନୁନର ଉପଦେଶ ସଙ୍ଗେ ସଙ୍ଗେ ମକ୍‌କେଲମାନଙ୍କୁ 'ତଦ୍‌ବିର'ର ଉପଦେଶ ମଧ୍ୟ ଦେବାକୁ ପଡୁଅଛି । ଏଥିରେ ମଇଳା ମେଳଛିଆ ଅମଲା ଓ ପିଆଦାଙ୍କୁ ଦୋଷ ଦେଲେ ଚଳିବ ନାହିଁ । ଏହା ଗଭର୍ଣ୍ଣମେଣ୍ଟଙ୍କ ବ୍ୟୟସଙ୍କୋଚ ନୀତିର ଅବଶ୍ୟମ୍ଭାବୀ ଫଳ । ଅମଲା ଓ ପିଆଦାମାନଙ୍କ ଦରମା ଅତି ନିକୁଛିଆ; କିନ୍ତୁ ସେମାନଙ୍କ ଉପରେ ପଥର ବୋଝ ଲଦା ହେଉଅଛି । ଏହି ଗୁରୁଭାରର ଦାଉରେ ଅଣ୍ଟା ପିଠି ଭାଙ୍ଗି ପଡୁଅଛି । ସରକାର ବାହାଦୁର ଦେଖି ନ ଦେଖିଲା ପରି ଆଖି ବୁଜି ଦେଉଅଛନ୍ତି । ପେଟ ନ ପୂରିଲାରୁ ବାଧ୍ୟହୋଇ ଅମଲା ଓ ପିଆଦାମାନେ ଓଲିଆ ଗାଈ ପରି ଏଣେତେଣେ ମୁହଁ ବୁଲାଇ ଦେଉଅଛନ୍ତି । ସେମାନେ ତ ମନୁଷ୍ୟ । ମନୁଷ୍ୟ ପ୍ରକୃତିର କରାମତିକୃତ ଧୋବଧାଉଳିଆମାନେ ଏଡ଼ି ପାରୁ ନାହାନ୍ତି । ମୂଲିଆ ମୁଣ୍ଡ ସେ ପ୍ରଲୋଭନକୁ ସମ୍ଭାଳି ନ ପାରିଲେ ବୋଲି ତାଙ୍କୁ ଦୋଷ ଦେବା ଅନୁଚିତ ଓ ଅନ୍ୟାୟ । ମାତ୍ର ଅଦାଲତରେ ଯେ ନୈପାତନିକ ବିଧି ନାହିଁ ବା ନିରୋଳ ଧର୍ମରକ୍ଷା କରି ଆପଣା ଗଣ୍ଡାକରେ ସନ୍ତୁଷ୍ଟ ଥାଇ କାର୍ଯ୍ୟ କରିବା ଭଳି ଅମଲା ଆଦୌ ନାହାନ୍ତି, ଏହା ଆମ୍ଭେମାନେ କହୁ ନାହୁଁ । ଯାହାହେଉ ଅଦାଲତରେ ପଇସା ଖେଳ ଲାଗିଛି, ଏଥିରେ ସନ୍ଦେହ କିଛି ନାହିଁ । ଆଇନ କାନୁନ ଓ ଅଦାଲତ ବଡ଼ଲୋକମାନଙ୍କ ନିମନ୍ତେ ହୋଇଅଛି । ଯେ ପଇସା ବିଞ୍ଚି ପାରିଲା, ତାହାରି ଜୟ । ଯାହାର କମରରେ ଜୋର୍ ନାହିଁ; ସେ ମଲା । ଆଜି ଏତିକି ଥାଉ । ସୁବିଧା କ୍ରମେ ଅନ୍ୟାନ୍ୟ ଇଲାକା ତଦାରଖ କରିବୁ ।

ଉତ୍କଳ ସାହିତ୍ୟ/୧୧ଶ ଭାଗ/୪ର୍ଥ ସଂଖ୍ୟା/୧୩୧୪ ସାଲ ।

## ।। ଷୋହଳ ।।

ସେଦିନ ବିଚାରାଳୟମାନଙ୍କରେ ସରକାର ବାହାଦୁରଙ୍କ ବ୍ୟୟ ସଙ୍କୋଚ ନୀତିର ଉଦାହରଣ ଦେଇଥିଲି । ବର୍ତ୍ତମାନ ବିଚାର ପ୍ରଣାଳୀର ନୀତି ପ୍ରତି ଦୃଷ୍ଟିପାତ କରନ୍ତୁ । ମକଦ୍ଦମା ଯେତେଶୀଘ୍ର ଫଏସଲ ହୁଏ ସରକାରଙ୍କର ସେତିକି ବେଶି ଲାଭ । ଏଥିପାଇଁ ମକଦ୍ଦମାଗୁଡ଼ାକ ଚଞ୍ଚଳ ଚଞ୍ଚଳ ପିଟିଦେବା ନିମନ୍ତେ ହାକିମମାନଙ୍କ ନିକଟକୁ ଘନ ଘନ ତାଗିଦ ଆସେ । ହାକିମମାନେ ମଧ ସେହି ନଜିରଟିମାନ ମୁଣ୍ଡରେ ବାନ୍ଧି ଦୂବ ବରକୋଳି ପତ୍ର, ଅକ୍ଷତ ଓ କୁଶ ଘେନି ଧର୍ମ ବେଦୀ ଉପରେ ଚେକା ପକାଇ ବସିଯାଆନ୍ତି ଓ ମକଦ୍ଦମାଗୁଡ଼ାକ ଜଳଜଳା ହାଣ୍ଡି ଭଳିଆ ପିଟି ପକାନ୍ତି । ଏହି ଗୋଗଛ ବାଡ଼ିଆ ଦାଉରେ ଧର୍ମ ସତ୍ୟ ଓ ନ୍ୟାୟ କେଉଁଆଡ଼େ ଲୁଚିରହେ, ତାହାର ଠିକଣା ମିଳେ ନାହିଁ । ଦିନେ ଏହିପରି ଗୋଟିଏ ଶ୍ରାଦ୍ଧ ବେଳେ ମୁଁ ଉପସ୍ଥିତ ଥିଲି । ମଫସଲରେ ହଇଜା ଲାଗିଥିବାରୁ ପ୍ରତିବାଦୀର ସାକ୍ଷୀ ଉପସ୍ଥିତ ନ ଥିବାରୁ ପ୍ରତିବାଦୀ ମହଲତ୍ ମାଗିଲା । ହାକିମ ଦରଖାସ୍ତ ଖଣ୍ଡିକ ନାମଞ୍ଜୁର କରିଦେଇ ମକଦ୍ଦମା ଏକତରଫା ବିଚାର କରିଦେଲେ । କଚେରିବେଳେ ତ 'ହଜୁର' 'ହଜୁର' କରିବାକୁ ହେବ, ସେତେବେଳେ ହାକିମଙ୍କୁ ଘରୋଇ ଭାବରେ ପଦେ କଥା କହିବାର ଜୁ' ନାହିଁ । ଘରକୁ ଆସି ଉଭୟ ତରଫ (ହାକିମ ଓ ମୁଁ) ପୋଷାକ ପାଲଟି ସାରିବା ପରେ ଦୈବ ଯୋଗରୁ ଉକ୍ତ ହାକିମଙ୍କ ସଙ୍ଗେ ଦେଖାହେଲା । ହାକିମ ଟିକିଏ ଖୋଲା ମିଜାଜର ଲୋକ, ତିନିଟା ବାଜେ କଥା ହେଲା ପରେ ମୁଁ କହିଲି, ଆପଣମାନେ ନ୍ୟାୟବିଚାର କରିବାକୁ 'ପରିତ୍ରାଣାୟ ସାଧୁନାଂ, ବିନାଶାୟଚ ଦୁଷ୍କୃତାଂ, ଧର୍ମ ସଂସ୍ଥାପନାର୍ଥାୟ,' ମିସଲରେ ଅବତାର ହୋଇ ଅଛନ୍ତି । ଆପଣମାନେ ପକ୍ଷଙ୍କ ମା ବାପ । ଆପଣମାନଙ୍କ ଖାମଖିଆଲ ଉପରେ ପକ୍ଷର ଧନ, ଜନ, ଗୋପଲକ୍ଷ୍ମୀ, ଏମନ୍ତ କି ଜୀବନ ପର୍ଯ୍ୟନ୍ତ ନିର୍ଭର କରେ । ଏପରିସ୍ଥଳେ ଆପଣମାନେ ଯେବେ ପକ୍ଷମାନଙ୍କ ସୁବିଧା ଅସୁବିଧା ପ୍ରତି ସଦୟ ଦୃଷ୍ଟି ନିକ୍ଷେପ ନ କରିବେ, ତେବେ ସେମାନେ ଆଉ କାହା ଆଗରେ ଗୁହାରି କରିବେ ? ଏହା ଶୁଣି ହାକିମ ଟିକିଏ ହସିହସି କହିଲେ, ''ପ୍ରଥମେ ପ୍ରଥମେ ଚାକିରି କଲାବେଳେ 'ବିବେକ' ବେଳେ ବେଳେ ତା ତରଫକୁ ମତେ ଝିକୁଥିଲା, ଏଣିକି ଦିହ ସହି ଗଲାଣି । ବିଶେଷତଃ ଚାକିରି ଖଣ୍ଡକର ମାୟା ରଖି ତ କାମ କରିବାକୁ ହେବ । ଦିନରାତି ଖଟି ଖଟି ସୁଦ୍ଧା କାମ ବାକି ରହୁଛି ଓ ସେଥିଯୋଗୁଁ ଉପରୁ ବେଳେ ବେଳେ କେତେ ଗର୍ଜନ ଘାତ ସହିବାକୁ ପଡ଼ୁଛି । ଏପରି ସ୍ଥଳରେ ବେଳେବେଳେ ଏହିପରି ଆଖିବୁଜା ନ କଲେ ଯେ ଚାକିରି ଖଣ୍ଡିକରେ ଚୋଟ ଲାଗିବ । ପକ୍ଷର ଅପିଲ କରିବାର ବା ସାନି ଦାଏର କରିବାର ବାଟ ଅଛି; କିନ୍ତୁ ଆମର ଚାକିରି ଖଣ୍ଡିକରେ ଚପଟ ଲାଗିଲେ ଆମକୁ ଯେ ଆଉ କିଛି ବାଟ ନାହିଁ ।'' ମନେ ମନେ ସରକାରଙ୍କ ବ୍ୟୟସଙ୍କୋଚ ନୀତିକୁ ଜୁହାର କଲି ଓ ବିଚାରିଲି - ଅବୁଝାମଣା ରଜାକୁ ପାଳବିଣ୍ଡା ମନ୍ତ୍ରୀ ମିଳିବା ସ୍ୱାଭାବିକ ।

କୌଣସି ସ୍ଥାନରେ ନିର୍ଦ୍ଦିଷ୍ଟସଂଖ୍ୟକ ହାକିମଙ୍କ ଦ୍ୱାରା ମକଦ୍ଦମା ନିଷ୍ପତ୍ତି ହେବା ପରେ ଯେବେ ଅନେକ ମକଦ୍ଦମା ବାକି ରହିଯାଏ, ତେବେ ଅଳିଆ ସଫା କରିବା ପାଇଁ ନ୍ୟାୟପର ସରକାର ବାହାଦୁର ଜଣେ ଜଣେ ଅଧିକା ହାକିମ ପଠାଇ ଦିଅନ୍ତି । - ପୁରୁଣା ହାକିମମାନେ ଅଳିଆଗଦା ଯାକ ନବାଗତ ହାକିମଙ୍କ ନିକଟକୁ ପେଲି ଦିଅନ୍ତି । ସେହି ଅଧିକା ହାକିମମାନେ ଯାହା ଯେଉଁଠାରେ ଯେତେ ଅଳିଆଗଦା ହୋଇଥାଏ, ତାକୁ ଝାଡୁ ଦ୍ୱାରା କିମ୍ବା ଅଗ୍ନି ଦ୍ୱାରା, କିମ୍ବା ପୋଡ଼ିପକାଇ, କିମ୍ବା ଚଳୁ କରିଦେଇ ସଫାକରି ଚାଲିଯା'ନ୍ତି । ଏକ ଜାଗାର କାମ ସରିଗଲେ ଅନ୍ୟ ଜାଗାର ଅଳିଆ ସଫା କରିବାକୁ ତାଙ୍କୁ ମୁତୟନ କରାଯାଏ । ଏହିପରି ଜଣେ ହାକିମଙ୍କ ହାବୁଡ଼ରେ ଦିନେ ପଡ଼ିଲି । ପ୍ରମାଣ ଦେବା ନିମନ୍ତେ ବାଦୀ ପ୍ରତିବାଦୀ ଉଭୟେ ପ୍ରସ୍ତୁତ ନ ଥିଲେ । ଉଭୟ ପକ୍ଷରୁ ପ୍ରମାଣ ଦେବା ନିମନ୍ତେ ମହଲତ ଦରଖାସ୍ତ ପଡ଼ିଲା । ହାକିମ ଅବଲୀଳାକ୍ରମେ ମୁରୁକି ମୁରୁକି ହସି (ଏ ହସଟା ଅବଶ୍ୟ ସାତ୍ତ୍ୱିକ ହସ) ଉଭୟ ପକ୍ଷଙ୍କ ଦରଖାସ୍ତ ନାମଞ୍ଜୁର କଲେ ଓ ମକଦ୍ଦମା ଚଳିବ ବୋଲି ଉଭୟ ପକ୍ଷଙ୍କ ଓକିଲଙ୍କୁ ତଲବ କଲେ । ଏହି ସମୟରେ ବାଦୀଙ୍କ ପକ୍ଷର ଓକିଲ ବେଳକାଳ ଉଣ୍ଡି ଜଣକୁ ଆଣି ସାକ୍ଷୀ ଗୋପାଳ କରି ଠିଆ କରି ମକଦ୍ଦମାଟି ଏକତରଫା ଡିଗ୍ରୀ କରାଇ ନେଲେ ଓ ହାକିମଙ୍କୁ ଆଶୀର୍ବାଦଟାଏ କରି ମୁଁ (ପ୍ରତିବାଦୀ ପକ୍ଷର ଓକିଲ) ବସାକୁ ଫେରିଲି । ଘରୋଇ ଭାବରେ ପରେ ହାକିମଙ୍କୁ ପଚାରିଲି - ଏ କ'ଣ ହେଲା ? ସେ କହିଲେ, ଅଳିଆ ସଫା କରି ନ ପାରିଲେ ସରକାର ଯେବେ ମୋ ହାତରୁ ଝାଡୁ ଖଣ୍ଡକ ଛଡ଼ାଇ ନେବେ, ତେବେ ମତେ ତୁମେ ରକ୍ଷା କରିବ, ନା ପକ୍ଷ ରକ୍ଷା କରିବ ? ଏ ସନ୍ତୋଷଜନକ କୈଫିୟତରେ ମୁଁ ନିରୁତ୍ତର ହୋଇ ରହିଲି ।

ଏଥିପୂର୍ବେ ଅଦାଲତରେ ସାକ୍ଷୀ ଜମାନବନ୍ଦି କଲାବେଳେ ସାକ୍ଷୀର ଜମାନବନ୍ଦି ଓଡ଼ିଆରେ ପେସ୍କାର ଅବିକଳ ଲେଖି ଯାଉଥିଲେ ଓ ତହିଁର ମର୍ମ ହାକିମମାନେ ଇଂରାଜୀରେ ଟିପି ନେଉଥିଲେ । ଯେଉଁ ସ୍ଥଳରେ ଏହି ଦୁଇ ନୋଟ୍ ମଧ୍ୟରେ ଅମେଳ ହେଉଥିଲା, ସେହିଠାରେ ଓଡ଼ିଆ ଲେଖା ଉପରେ ନିର୍ଭର କରାଯାଉଥିଲା । ଏଣିକି ହାଇକୋଟ ସରକ୍ୟୁଲାର ଜାରି କରିଦେଲେ ଯେ ଓଡ଼ିଆରେ ପେସ୍କାର ଆଉ ଜମାନବନ୍ଦି ଲେଖିବେ ନାହିଁ । ହାକିମ ସେଗୁଡ଼ିକ ଇଂରାଜୀରେ ଲେଖିବେ ଓ ସେଗୁଡ଼ିକ ଓଡ଼ିଆରେ ତର୍ଜମା କରି ଗୁହାକୁ ଶୁଣାଇ ଦେଇ ତାଙ୍କଠାରୁ ଦସ୍ତଖତ କରାଇ ନେବେ । ହାକିମଙ୍କ ମନ ଉପରେ କେହି ରଜା ନୁହେଁ, ତାଙ୍କର ଯାହା ଇଚ୍ଛା ହବ, ତାହା ଲେଖିବେ । 'ଅବିକଳ ଲେଖିବା କର୍ତ୍ତବ୍ୟ' ପୋଥି ବାଇଗଣ ସ୍ଥଳରେ ''ଆପଣା ମନମୁତାବକ ଯେତିକି ଦରକାର ବୋଲି ମନେ କରିବି ସେତିକି ଲେଖିବି,'' ଏହି ବାଡ଼ିବାଇଗଣ ହୁଏ । ଯେଉଁମାନେ ଆଇନ କାନୁନ ପ୍ରଣୟନ କରନ୍ତି ବା ସରକ୍ୟୁଲାର ଜାରି କରନ୍ତି, ସେମାନେ ସରଜମିନ୍‌ରେ ହାକିମ ଅବତାରଙ୍କ ହାବୁଡ଼ରେ ପଡ଼ି ନାହାନ୍ତି । ସରଜମିନ୍‌ରେ ଆଇନ କାନୁନ ସରକ୍ୟୁଲାର ଏମାନ କିଛି ନୁହେଁ, ହାକିମଙ୍କ ଖେୟାଲ ଓ ମିଜାଜ ସବୁ । ପଂକ୍ଷ ଯାହା ଯାହା କହେ,

ସେଥିରୁ ହାକିମ ଛଣାଛଣି କରି ଲେଖିଯା'ନ୍ତି ଓ ପେସ୍କାର ତାଙ୍କ ତର୍ଜମା କରିବା କ୍ଷମତା ଅନୁସାରେ ପକ୍ଷକୁ ଶୁଣାଇ ଦିଅନ୍ତି ଓ ଦସ୍ତଖତ କରାଇ ନିଅନ୍ତି । ଏପରି ଛାଣୁ ଛାଣୁ ବେଳେବେଳେ ଦେଖାଯାଏ ଯେ ଅସଲ ମାଲତକ ଛଣାଛଣିରେ ଅଦୃଶ୍ୟ ହୋଇଯାଇଅଛି । ସାକ୍ଷୀ ଜମାନବନ୍ଦି ଦେଲାବେଳେ ହାକିମମାନେ ତହିଁର ମର୍ମ ଯାହା ଇଂରାଜୀରେ ଲେଖି ନିଅନ୍ତି, ତାହା ଯଦି ସଙ୍ଗେ ସଙ୍ଗେ ପକ୍ଷମାନଙ୍କ ଓକିଲଙ୍କୁ ଶୁଣାଇ ଦିଅନ୍ତେ, ତାହାହେଲେ ଆପତ୍ତିର କାରଣ କିଛି ରୁହନ୍ତା ନାହିଁ । ଯାହା ଯାହା ଆପତ୍ତିଜନକ, ତାହା ସଙ୍ଗେ ସଙ୍ଗେ ସଂଶୋଧନ ହୋଇ ଯାଉଥାନ୍ତା; କିନ୍ତୁ ତାହା କଲାବେଳକୁ ବହୁତ ସମୟ ନଷ୍ଟ ହେବ । ଯେତିକି ବେଶି ସମୟ ଯିବ, ସରକାରଙ୍କ ଅର୍ଥ ସଙ୍କୋଚ ନୀତିରେ ସେତିକି ବାଧା ପଡ଼ିବ ।

୧୦ ଆଇନ ଅନୁସାରେ ଜମିଦାରମାନଙ୍କ ଖଜଣା ନାଲିସ୍ କିଲଟରିରେ ହୁଏ ଓ ଡିପୋଟି କିଲଟରମାନେ ସେ ମକଦ୍ଦମା ବୁଝନ୍ତି; କିନ୍ତୁ ମକଦ୍ଦମା ସଂଖ୍ୟା ଏତେ ବେଶି ଯେ ଜଣେ ଜଣେ ହାକିମଙ୍କୁ ଚତୁର୍ଦ୍ଧାମୂର୍ତ୍ତି ହୋଇ କାର୍ଯ୍ୟ କରିବାକୁ ପଡ଼େ । ସେଥିରେ ସେଗୁଡ଼ିକ ଫଏସଲା କରି ନ ପାରିଲେ ଘନ ଘନ କୈଫିୟତ ତଲବ । ଏଥିରେ ସେମାନେ ଦିନ ଦିନକରେ ଯେତେ ନମ୍ବର ମକଦ୍ଦମା ଫଏସଲା କରନ୍ତି, ତାହା ସରଜମିନରେ ନ ଦେଖିଥିବା ମନୁଷ୍ୟର କଳ୍ପନାତୀତ ।

ଆଇନର ବିଧାନ ଏକ ହେଲେ ମଧ୍ୟ ହାକିମମାନଙ୍କ ମିଜାଜ୍ ଓ ପ୍ରକୃତି ଅନୁସାରେ ମକଦ୍ଦମାର ହାଲ କେତେବେଳେ କିମ୍ଭୂତକିମାକାର ହୁଏ, ତାହାର ଇୟତ୍ତା କରାଯାଇ ନ ପାରେ । କେଉଁ ହାକିମ କଠୋର ଭାବରେ, କିଏ ସଦୟ ଭାବରେ, କିଏ ହାମ୍‌ବଡ଼ା ଭାବରେ, କେଉଁ ହାକିମ କୋମଳ ଭାବରେ, କିଏ କର୍କଶ ଭାବରେ, କିଏ ସରଳ ଭାବରେ, କିଏ ବକ୍ର ଭାବରେ, କିଏ ଘନ ଭାବରେ, କିଏ ତରଳ ଭାବରେ, କିଏ ପ୍ରଚୁର ଭାବରେ, କିଏ କୃପଣ ଭାବରେ, କିଏ କ୍ଷିପ୍ର ଭାବରେ, କିଏ ଲଘୁ ଭାବରେ ଆଇନର ମର୍ଯ୍ୟାଦା ରକ୍ଷା କରନ୍ତି, ତାହା ଦେଖିଲେ ଓ ବିଚାର ବିଭ୍ରାଟ ଓ ଫଳ ବୈଷମ୍ୟ ତୁଳନା କଲେ ମନୁଷ୍ୟକୁ ହସ ମାଡ଼େ ।

ସାଧାରଣଙ୍କ ଉପକାର ଓ ସୁବିଧା ନିମନ୍ତେ ମଫସଲମାନଙ୍କ ନିମନ୍ତେ ନିୟମ ବାନ୍ଧିବା ପାଇଁ ଗଭର୍ଣ୍ଣମେଣ୍ଟ ହାଇକୋର୍ଟକୁ କ୍ଷମତା ଦେଇଅଛନ୍ତି ଓ ତଦନୁସାରେ ହାଇକୋର୍ଟ କେତେଗୁଡ଼ିଏ 'ସରକ୍ୟୁଲାର ଅର୍ଡ଼ର' ପ୍ରଚାର କରିଅଛନ୍ତି । ଗୋଟିଏ ସରକ୍ୟୁଲାରରେ ଅଛି ଯେ ପ୍ରଥମ କଚେରିରେ ହାକିମମାନେ ଦରଖାସ୍ତ ଗ୍ରହଣ କରିବେ କିନ୍ତୁ ସାଧାରଣତଃ ଦେଖାଯାଏ ଯେ, ପହିଲା କଚେରି ଠାରୁ ଶେଷ କଚେରି ପର୍ଯ୍ୟନ୍ତ ଦରଖାସ୍ତ ଖଣ୍ଡକୁ ଖଣ୍ଡ ଉଡ଼ିଆସି ମିସଲରେ ପଡୁଥାଏ ଓ ଦିନତମାମ ହୁକୁମ ଦିଆ ଲାଗିଥାଏ । ପହିଲା କଚେରିରେ ଦରଖାସ୍ତ ଗ୍ରହଣ କରି ହୁକୁମ କରିଦେଲେ ସମସ୍ତଙ୍କର ସୁବିଧା ହୁଏ । ଯାହାର ମକଦ୍ଦମା ନ ପଡ଼ିବ, ସେ ପହିଲା କଚେରିରେ ଜାଣି ପାରିଲେ ଦିନତମାମ କଚେରିରେ

ଗରୁଡ଼ ଅନୁସରଣ ନ କରି ସେ ବିଚାରା ଘରକୁ ଯା'ନ୍ତା । ଏଥିରେ ଓକିଲମାନଙ୍କର, ପକ୍ଷମାନଙ୍କର ଓ ସାକ୍ଷୀମାନଙ୍କର ଅସୁବିଧା, କେବଳ ସୁବିଧା ହାକିମଙ୍କର ଓ ପେସ୍କାରଙ୍କର ।

ହାଇକୋର୍ଟର ଆଉ ଗୋଟିଏ ଅର୍ଡ଼ର ଅଛି ଯେ, ହାକିମ କୌଣସି ମକଦ୍ଦମାର ତାରିଖ ପକାଇଲେ କିମ୍ବା ଅନ୍ୟ କିଛି ହୁକୁମ ଦେଲେ ସେହି ଅର୍ଡ଼ରରେ ପକ୍ଷଙ୍କର କିମ୍ବା ଓକିଲଙ୍କର ସଙ୍ଗେ ସଙ୍ଗେ ସ୍ୱାକ୍ଷର କରାଇନେବେ । କୌଣସି କୌଣସି ହାକିମ ଏ ନିୟମ ରଖନ୍ତି, ଅଧିକାଂଶ ସ୍ଥଳରେ ଏ ନିୟମ ଆଦୌ ପାଳିତ ହୁଏ ନାହିଁ । ଏପରିକି ତାରିଖ ଧାର୍ଯ୍ୟ ହୋଇ ମକଦ୍ଦମା ଏକତରଫା ହୋଇ ସାରିଲାଣି, ପକ୍ଷ ବା ଓକିଲ ଏଥିର ଗନ୍ଧ ସମ୍ବନ୍ଧ ଜାଣି ନାହାନ୍ତି ।

ଦେଖାଯାଏ ଯେ ଅଳ୍ପ ତାଦାଦର (ମୂଲ୍ୟ) ମକଦ୍ଦମା ସଂଖ୍ୟା ଢେର ବେଶି ଏବଂ ସେଥିରେ ପକ୍ଷମାନେ ଅଦାଲତର ଆଶ୍ରୟ ନେଇ ବହୁତ ଖର୍ଚ୍ଚାନ୍ତ ହୁଅନ୍ତି । ଦୁଇ ତିନି ଟଙ୍କା ପାଇବା ଦାବିରେ ଜଣେ ନାଲିଶ୍ କଲା; କିନ୍ତୁ ଡିଗ୍ରୀ ହେବା ବେଳକୁ ଉପୁରି ଖରଚ ଓ ବାଜେ ଖରଚରେ ତାହାର ଚାରି ପାଞ୍ଚ ଟଙ୍କା ଉଡ଼ିଗଲାଣି । ଏ ବିଷମ ଅସୁବିଧା ଦୂର ନ ହେବା ପର୍ଯ୍ୟନ୍ତ ପକ୍ଷମାନେ ନାନା ଅସୁବିଧା ଭୋଗ କରୁଥିବେ । ମୋର ପ୍ରାପ୍ୟ ମୁଁ ପାଇବି, ସେଥି ନିମନ୍ତେ ସରକାରଙ୍କ ଅଦାଲତକୁ ଆସି ସରକାରଙ୍କୁ ଲାଞ୍ଚ ଦେବି, ଓକିଲଙ୍କୁ ଲାଞ୍ଚ ଦେବି, ଓକିଲ-ମୋହରିରଙ୍କୁ ଲାଞ୍ଚ ଦେବି, ଅମଲା ଓ ପିଆଦାଙ୍କ ଅଣ୍ଟାର ଗଲୁ ମାରିବି, ତେବେ ଯାଇ ଡିଗ୍ରୀ ପାଇବି । ଏଥିଯୋଗୁଁ ମକଦ୍ଦମା ମାମଲାରେ ଦେଶବାସୀ ଲୋକେ ଉଚ୍ଛନ୍ନ ହେଲେଣି, ପୁରୁଣା ଖାନ୍ଦାନ ଘରଯାକ ଭାଙ୍ଗି ଚୂନା ହୋଇଗଲାଣି । ସେଥିଲାଗି ଜଣେ ଅନୁଭବୀ ବୃଦ୍ଧ ବ୍ରାହ୍ମଣ କୁପିତ ହୋଇ ଜଣେ ଲୋକକୁ ଅଭିଶାପ ଦେଇଥିଲେ - ''ତୋ ଘରେ ମାମଲା ପଶୁ ।'' ଅଭିଶପ୍ତ ଲୋକଟି ମାମଲା ପଶିବାର ମାହାତ୍ମ୍ୟ ବୁଝି ନ ଥିଲା ବୋଲି ବୃଦ୍ଧଙ୍କ କଥାକୁ ନାପସନ୍ଦ କରି ଚାଲିଗଲା । ବୁଝିଥିଲେ ମୁଣ୍ଡରେ ହାତଦେଇ ବସିଥା'ନ୍ତା ।

ଅଦାଲତର ହାଲଚାଲ ବୁଝି ରିପୋର୍ଟ କରିବା କାରଣ ସରକାର ବାହାଦୁର ଅନେକ ଥର ସରଜମିନ ତଦନ୍ତ କରାନ୍ତି; କିନ୍ତୁ ଏ ଦେଶର ଜଳବାୟୁ ଦୋଷରୁ ସେସବୁ ତଦନ୍ତ 'ତଦନ୍ତ'ରେ ପରିଣତ ହୁଏ । ଗଭର୍ଣ୍ଣମେଣ୍ଟ ଅଦାଲତରୁ ଢେର ପଇସା ପାଆନ୍ତି; କିନ୍ତୁ ମକଦ୍ଦମା ମାମଲାରେ ସରକାର ଯାହା ପଇସା ନିଅନ୍ତି, ତହିଁରୁ ଅନେକ ଗୁଣ ଅର୍ଥ ପକ୍ଷମାନେ ଏଣେ ତେଣେ ବ୍ୟୟ କରିବାକୁ ବାଧ ହୁଅନ୍ତି । ମକଦ୍ଦମା ନିଷ୍ପତ୍ତି ପାଇଁ ୨।୩ଟା ଅଦାଲତ ଘୂରି ଆସିଲା ବେଳକୁ ଯେ ହାରିଯାଏ ତାହାର ତ ସହଜରେ ସର୍ବନାଶ; କିନ୍ତୁ ଯେ ଜିତେ ସେ ମଧ୍ୟ ଫମ୍ପା କଇଥ ହୋଇ ଯାଇଅଛି ।

ଯେଉଁ ମକଦ୍ଦମାରେ ଉଭୟ ପକ୍ଷ ମଧ୍ୟରେ ଲଢ଼େଇ ହୁଏ, ସେ ମକଦ୍ଦମାରେ ହାକିମମାନଙ୍କର ଯେତେ ସମୟ ଲାଗେ, ଏକତରଫା ମକଦ୍ଦମାରେ ତାହା ଅପେକ୍ଷା

ଢେର କମ୍ ସମୟ ଲାଗେ, ଓକିଲମାନଙ୍କୁ ମଧ୍ୟ ସାମାନ୍ୟ ପରିଶ୍ରମ କରିବାକୁ ହୁଏ । ଏପରି ସ୍ଥଳରେ ସରକାରଙ୍କ ନିୟମ ଅନୁସାରେ ଲଢ଼ଉ ମକଦ୍ଦମାରେ ଯେଉଁ ହାରରେ ଓକିଲ ଫିସ୍ ଡିଗ୍ରୀ ଦିଆଯାଏ, ଏକତରଫା ମକଦ୍ଦମା କିମ୍ବା ରଫା ହେବା ମକଦ୍ଦମାରେ ତହିଁର ଅଧା ଫିସ ଡିଗ୍ରୀ ହୁଏ; କିନ୍ତୁ କୋର୍ଟଫିସ୍ ସବୁ ମକଦ୍ଦମାରେ ସମାନ । ଲଢ଼ଉ ମକଦ୍ଦମାରେ ହାକିମଙ୍କର ଯେତେ ସମୟ ଯାଏ, ସେ ସମୟରେ କ୍ଷତିପୂରଣ ଏକତରଫା ମକଦ୍ଦମାର ପକ୍ଷମାନେ କରନ୍ତି । ଏପରି ନିୟମ କରିବା ଦ୍ୱାରା ପକ୍ଷମାନଙ୍କ ପ୍ରତି ଅବିଚାର କରାଯାଇଅଛି । ଯେଉଁ ମକଦ୍ଦମା ଏକତରଫା ହେବ କିମ୍ବା ରଫା ହେବ ତହିଁରେ ପକ୍ଷଙ୍କୁ ଅଧେ କୋର୍ଟଫିସର ମୂଲ୍ୟ ଫେରସ୍ତ ମିଳିବ, ଏପରି ନିୟମ କରିବା ସର୍ବତୋଭାବରେ ଉଚିତ ।

ଅଦାଲତରେ ପ୍ରଚଳିତ ଅବିଚାର, ଅତ୍ୟାଚାର, ଅନାଚାରଗୁଡ଼ିକ ସର୍ବତୋଭାବରେ ସଂସ୍କାର କରିବା ସରକାରଙ୍କର ପ୍ରଥମ କର୍ତ୍ତବ୍ୟ । ଗରିବ ଲୋକ ନ୍ୟାୟ ବିଚାର ପାଇବା ସକାଶେ ଧର୍ମର ଦ୍ୱାହି ଦେଇ ଅଦାଲତକୁ ଆସେ; କିନ୍ତୁ ସେଠାରେ ଯେବେ ଅବିଚାର ହୁଏ, ସେ ବିଚାରା କହିବ କାହାକୁ ? ଏଥିପ୍ରତି ଗଭର୍ଣ୍ଣମେଣ୍ଟଙ୍କର ହାକିମମାନଙ୍କର, ଓକିଲ ମୁକ୍ତାରମାନଙ୍କର ସର୍ବଦା ଦୃଷ୍ଟି ରଖିବା ଉଚିତ । ପଇସାର ଜୟ ନ ହୋଇ ଧର୍ମର ଓ ସତ୍ୟର ଜୟ ହେବା ନିମନ୍ତେ ସମସ୍ତଙ୍କର ଦୃଷ୍ଟି ନ ରହିଲେ ବିଚାର ବିଭାଗର ସଂସ୍କାର ଅସମ୍ଭବ ।

ଉତ୍କଳ ସାହିତ୍ୟ/୧୧ଶ ଭାଗ/୬ଷ୍ଠ ସଂଖ୍ୟା/୧୩୧୫ ସାଲ ।

## ।। ସତର ।।

ଦିନେ ସହର କଟକ ମିଲକିଅତ ସରକାର ମାହାଲ ଖାସ ଚୌଧୁରୀ ବଜାର ଛକର ବିଦ୍ ବଜାର ଉପରେ ଜଣେ ବହୁତ ପୁରୁଣାକାଳିଆ ବନ୍ଧୁଙ୍କ ହାବୁଡ଼ରେ ପଡ଼ିଗଲି । ସେ ମତେ ପଚାରିଲେ- କିହୋ, ଶିକ୍ଷା ବିଭାଗ, ବିଶେଷତଃ ଓଡ଼ିଶାର ଶିକ୍ଷା ବିଭାଗଟା ଦୁନିଆରୁ ବାହାର ପରା ? ପୁରୁଣା ପୁରୁଣାଙ୍କ ମଧ୍ୟରେ କଥାଭାଷା ହେଲେ ଇସାରାରେ କଥାଗୁଡ଼ିକ ବୁଝାପଡ଼େ । ମୁଁ 'ତଥାସ୍ତୁ' କରି ଘରକୁ ଫେରିଲି । ଶିକ୍ଷା ବିଭାଗର ଦୁଇ ତିନୋଟି ବନ୍ଧୁଙ୍କୁ ପଚାରିଲି - ଶିକ୍ଷା ବିଭାଗ ବିଶେଷତଃ ଓଡ଼ିଶାର ଶିକ୍ଷା ବିଭାଗ, ତହିଁରେ ପୁଣି ଓଡ଼ିଶାର ମଫସଲରେ ବିରାଜିତ ଅଧସ୍ତନ ଶିକ୍ଷା ବିଭାଗ ଦୁନିଆର ସୀମା ମଧ୍ୟକୁ ଆସିବ, ଏହା ଭାବି ବନ୍ଧୁମାନେ ଟିକିଏ ଭ୍ରୂକୁଞ୍ଚିତ କଲାପରି ଜଣାଗଲା । ମୁଁ ଉତ୍ତର କଲି, ଯେଉଁ ବିରାଡ଼ି ଆପଣା ଛୁଆଙ୍କୁ ଜଳଖିଆ କରେ, ପର ଛୁଆଙ୍କୁ ଦେଖି ତା ପାଟିରୁ ପାଣି ବୋହିବା ସ୍ୱାଭାବିକ । ବନ୍ଧୁମାନେ ଏ ଯୁକ୍ତିର ସାରବତ୍ତା ହୃଦୟଙ୍ଗମ କରି ସେମାନଙ୍କ ଉତ୍ତରରେ ଗୋଟାକେତେ 'କିନ୍ତୁ' ଲଗାଇ ଦେଲେ - (ଉଦାହରଣସ୍ୱରୂପ ଦେଖନ୍ତୁ - କିନ୍ତୁ ସବୁ ସ୍ଥାନରେ ତ ସବୁକଥା

ନାହିଁ, କିନ୍ତୁ ଅମୁକତ ଆଦର୍ଶ ଲୋକ, କିନ୍ତୁ ସେ ତ ଶିକ୍ଷାବିଭାଗର ଦୋଷ ନୁହେଁ, ଇତ୍ୟାଦି) ଯାହାହେଉ ସେ ଇଲାକାଟି ହାବୁଡ଼ରେ ପଡ଼ିଲେ ଛାଡ଼ିବା ଉଚିତ ନୁହେଁ, ପଛକୁ ଏହି କଥା ମୁଁ ସ୍ଥିର କଲି ।

ବଙ୍ଗ ପ୍ରଦେଶର କୌଣସି ଅନୁନ୍ନତ ଅଞ୍ଚଳରେ ମୋର ଜଣେ ଗୁରୁସ୍ଥାନୀୟ ବନ୍ଧୁ ଡେପୁଟି ଇନିସ୍‌ପେକ୍‌ଟର ହୋଇଥିଲେ । ସେ ଅଞ୍ଚଳର ପ୍ରାଥମିକ ବିଦ୍ୟାଳୟମାନଙ୍କୁ ପରିଦର୍ଶନ କରିବାକୁ ଯିବା ପୂର୍ବରୁ ସେ ଇଲାକାର ଅଧସ୍ତନ ପରିଦର୍ଶନ କର୍ମଚାରୀମାନଙ୍କୁ ଓ ଶିକ୍ଷକମାନଙ୍କୁ ଜଣାଇ ସେ ବିଦ୍ୟାଳୟମାନ ପରିଦର୍ଶନ କରୁଥିଲେ । ପହଞ୍ଚି ଦେଖୁଥିଲେ ଯେ ପ୍ରାଥମିକ ବିଦ୍ୟାଳୟଗୁଡ଼ିକର ଅବସ୍ଥା ସନ୍ତୋଷଜନକ, ଉପସ୍ଥାନ ସଂଖ୍ୟା ଆଶାପ୍ରଦ । ଏହା ଦେଖି ଡେପୁଟି ଇନିସ୍‌ପେକ୍‌ଟର ମନରେ ଦିନେ ସନ୍ଦେହ ଉପସ୍ଥିତ ହେଲା । ଦିନେ ଅଧସ୍ତନ କର୍ମଚାରୀମାନଙ୍କୁ ନ ଜଣାଇ, ସ୍କୁଲର ଶିକ୍ଷକଙ୍କୁ ପୂର୍ବରୁ ଖବର ନ ଦେଇ ଡେପୁଟି ଇନିସ୍‌ପେକ୍‌ଟର ଘୋଡ଼ା ଚଢ଼ି କୌଣସି ବିଦ୍ୟାଳୟରେ ପହଞ୍ଚିଲେ । ଦେଖିଲେ ସ୍କୁଲ ଗୃହରେ ଚାବି ପଡ଼ିଅଛି । ଦିଓଟି ପିଲା (ଯାହାଙ୍କୁ ପୂର୍ବତନ ପରିଦର୍ଶନରେ ଡେପୁଟି ଇନିସ୍‌ପେକ୍‌ଟର ମହାଶୟ ସ୍କୁଲର ଛାତ୍ରାବତାରରେ ଦେଖିଥିଲେ) ସ୍କୁଲ ନିକଟସ୍ଥ ଗୋଟିଏ ଗଛରେ ଚଢ଼ି କୋଳି ଖାଉଅଛନ୍ତି । ପିଲା ଦିଓଟିଙ୍କୁ ଚିହ୍ନିପାରି ଡେପୁଟି ଇନିସ୍‌ପେକ୍‌ଟର ତାଙ୍କୁ ପଚାରିଲେ ''କିହୋ ! ତୁମ୍ଭେମାନେ ଆଜି ପଢୁ ନାହଁ କାହିଁକି ? ସେ ପିଲା ଦିଓଟି ଏ ପ୍ରଶ୍ନରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଉତ୍ତର କଲେ, ''ସେ କି କଥା ! ଆଜି ତ ସ୍କୁଲ ହେବାର ଦିନ ନୁହେଁ । ଯେଉଁଦିନ ସ୍କୁଲର ହାକିମ ଆସିବେ ବୋଲି ଆମ ଶିକ୍ଷକ ଖବର ପାଇଥା'ନ୍ତି, ସେହି ଦିନ ଆମ୍ଭମାନଙ୍କର ପଢ଼ିବା ଦିନ । ଆଜି ତ ଶିକ୍ଷକ ହଳ ବୁଲାଇ ଯାଇଅଛନ୍ତି ।'' ଏ ଉତ୍ତର ଶୁଣି ଡେପୁଟି ଇନିସ୍‌ପେକ୍‌ଟର ସ୍ୱସ୍ଥାନକୁ ଫେରିଆସିଲେ । କ୍ରମଶଃ ଏହିପରି ଦୁଇଚାରି ଚୋରା ଗସ୍ତରେ ଅନେକ ସ୍କୁଲର ପ୍ରକୃତ ଅବସ୍ଥା ଜଣାପଡ଼ିଲା । ସେ ଅଞ୍ଚଳରେ ସ୍କୁଲ ଖୋଲିବାର ଉଦ୍ଦେଶ୍ୟ ସରକାରରୁ ଶିକ୍ଷକକୁ ସାହାଯ୍ୟ ମିଳିବା । ଅଧସ୍ତନ ପରିଦର୍ଶନ କର୍ମଚାରୀମାନଙ୍କୁ ସନ୍ତୁଷ୍ଟ କରି ଗୋଟିଏ ଗ୍ରାଣ୍ଟ ମଞ୍ଜୁର କରାଇନେଲେ ଶିକ୍ଷକ ବିଚାରାର କୁଟୁମ୍ବ ପୋଷିହେବେ । ଏଣେ ଉପରିସ୍ଥ ବଡ଼ କର୍ମଚାରୀମାନେ ପରିଦର୍ଶନ କରିବାକୁ ଯିବାର ସମ୍ବାଦ ପାଇଲେ ଅଧସ୍ତନ୍ କର୍ମଚାରୀମାନେ ଶିକ୍ଷକଙ୍କୁ ଆଗରୁ ଖବର ଦେଇ ରଖନ୍ତି ଓ ବଡ଼ ହାକିମଙ୍କ ଆଗମନ ପ୍ରତୀକ୍ଷାରେ ଶିକ୍ଷକ ବିଚାରା ସ୍କୁଲଟିକୁ ଓ ହାଜିରା ବହିକୁ ସରଗରମ କରି ରଖିଥାଏ । ବଡ଼ ହାକିମଙ୍କ ଆଖି ଏ ଝଟକରେ ଝଲସିପଡ଼େ । ଦର୍ଶନାଭିପ୍ରାୟ ବହିରେ ନରମ ଗରମ କରି ଥୋଡ଼ା ରାମ୍ପି ଦିଅନ୍ତି; ଚାଲି ଆସନ୍ତି ।

ଏ'ତ ଗଲା ବଙ୍ଗଦେଶର କଥା - ଓଡ଼ିଶାର ଅଧସ୍ତନ ଶିକ୍ଷା ବିଭାଗ ସଙ୍ଗେ ମୁଁ ଅନେକ ଭାବରେ ସଂଶ୍ଳିଷ୍ଟ । ଆମ ଗ୍ରାମରେ ଗୋଟିଏ ମାଇନର ସ୍କୁଲ ଓ ଗୋଟିଏ

ପ୍ରାଇମେରୀ ବାଳିକା ବିଦ୍ୟାଳୟ ଅଛି । ମଝିରେ ଦିନାକେତେ ଖଣ୍ଡିଏ ଅନ୍ତ୍ୟଜ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା, କିନ୍ତୁ କର୍ତ୍ତାମାନଙ୍କ ସୁଦୃଷ୍ଟିରୁ ଅନେକ ସମୟରେ କର୍ତ୍ତୃପକ୍ଷଙ୍କ ସଙ୍ଗେ ସଙ୍ଗେ ସଂଘର୍ଷ ହୋଇଥାଏ ।

ଦିନକର କଥା, ପାଠକମାନେ ଶୁଣନ୍ତୁ - ବାଉରି କଣ୍ଡରା ପିଲାମାନଙ୍କ ପ୍ରାଥମିକ ଶିକ୍ଷା ଦେବା ପାଇଁ ଆମ ଗ୍ରାମରେ ଗୋଟିଏ ଚାଟଶାଳୀ ବସାଇବାର ସ୍ଥିର କରି ଦିନାକେତେ ଗୋଟିଏ ଅବଧାନକୁ ରଖାଇ ଗୋଟାକେତେ ପିଲାଙ୍କୁ ପଢ଼ାଇଲୁ । ପଛକୁ ଅନେକ ଅନୁସରଣ କରି ବିଦ୍ୟାଳୟଟି ପାଇଁ ଗୋଟିଏ ସ୍ଥାୟୀ ଗ୍ରାଣ୍ଟ ମଞ୍ଜୁର କରାଇ ପାରିଲି ନାହିଁ । ସରକାର ବାହାଦୁର ଆତ୍ମ-ଶାସନ ନୀତିର ନମୁନା ଦେଖାଇବା ପାଇଁ ପ୍ରାଥମିକ ବିଦ୍ୟାଳୟଗୁଡ଼ିକୁ ଡିଷ୍ଟ୍ରିକ୍ଟ ବୋର୍ଡ଼ ଓ ଲୋକାଲ ବୋର୍ଡ଼ଙ୍କଠାରେ ସମର୍ପି ଦେଇଅଛନ୍ତି । ଗ୍ରାମରୁ ଅନ୍ତ୍ୟଜ ବିଦ୍ୟାଳୟଟି ଉଠିଗଲା । ଏଥିପାଇଁ ମୋ ରକ୍ତ ଭାରି ଗରମ ହୋଇଗଲା । ବିଦ୍ୟାଳୟର ସ୍ଥାନୀୟ କର୍ତ୍ତୃପକ୍ଷମାନଙ୍କ ବିରୋଧରେ ଫେରାର ହେବାଲାଗି କଟକ୍ ଆସିଲି । କଟକଠାରେ ବସାରେ ଲୁଗାପଟା ଦି'ଖଣ୍ଡ ଫୋପାଡ଼ି ଦେଇ ମାଛି ଲାଗିଲା ଭଳି ହାତଗୋଡ଼ ନ ଧୋଇ ଅଧୁଆ ମୁହଁରେ ବୋର୍ଡ଼ର ଜଣେ ଅଗ୍ରଣୀ ସଭ୍ୟଙ୍କ ନିକଟରେ ବିଲ୍‌ଫଏଲ ପହଞ୍ଚିଗଲି । ଅନ୍ୟ କଥା ନ ପଡ଼ୁଣୁ ଅନ୍ତ୍ୟଜ ବିଦ୍ୟାଳୟ ସମ୍ବନ୍ଧରେ ସଭ୍ୟଙ୍କ ନିକଟରେ ଅରଜି ଖଣ୍ଡିକ ଦାଖଲ କରିଦେଲି । ଭାଇରେ ! ଅରଜି ଖଣ୍ଡିକ ଦାଖଲ କରିଦେଇ ମୁଁ ଯାଏ କୁଆଡ଼େ ? ଚାହୁଁ ଚାହୁଁ କର୍ତ୍ତାଙ୍କ ଭ୍ରୂ କୁଞ୍ଚିତ ହୋଇଗଲା । ସେ ଉତ୍ତର କଲେ, ''ଗୋପାଳବାବୁ ତୁମ୍ଭଙ୍କୁ ଏ ଦୁର୍ବୁଦ୍ଧି କିଏ ଦେଲା ? ତୁମ୍ଭ ଭଳିଆ ଗଣ୍ଡାକେତେ ଦେଶହିତୈଷୀ ଜନ୍ମ ହେଲେ ଆମକୁ ଆଉ ମୂଲିଆ ମିଳିବେ ନାହିଁ । ଯେଉଁମାନେ ପୁରୁଷାନୁକ୍ରମେ ଆମ୍ଭମାନଙ୍କର ବେଠି ଖଟି, ଆମ୍ଭମାନଙ୍କ ଠାରୁ ବିଧା ଗୋଇଠା ଖାଇ ଆପଣାକୁ କୃତକୃତ୍ୟ ମଣୁଥିଲେ, ସେମାନଙ୍କୁ ବିଦ୍ୟା ଶିକ୍ଷା ଦେଲେ ଦେଶର ଅପକାର ଛଡ଼ା ଉପକାର ନାହିଁ । ମୋ ଦ୍ୱାରା ଏ ବିଷୟରେ କିଛି ହୋଇପାରିବ ନାହିଁ । କର୍ତ୍ତାଙ୍କ ନିକଟରେ ସେ ସମୟରେ ଜଣେ ମୋସାହେବ ବିରାଜମାନ ଥିଲେ । ସେ କହିଲେ, ''ଆରେ ଆମେ ଦାଣ୍ଡ ପିଣ୍ଡାରେ ବସିଥିଲା ବେଳେ ଛୋଟଲୋକମାନେ ସେ ବାଟରେ ଯାଉ ନ ଥିଲେ । ଦିନାକେତେ ଗଲାରୁ ଆମ୍ଭେମାନେ ଦାଣ୍ଡପିଣ୍ଡାରେ ବସିଥିଲା ବେଳେ ଛୋଟଲୋକମାନେ ଦାଣ୍ଡବାଟେ ଚାଲିଗଲେ ନଇଁପଡ଼ି ଡାହାଣ ହାତକୁ ଲମ୍ବ କରି ଯାଉଥିଲେ । ଏଣିକି ସେହି ଲୋକମାନେ ଦାଣ୍ଡରେ ଆମ ଆଗରେ ସିଧା ହୋଇ ଚାଲି ଯାଉଅଛନ୍ତି । ଗୋପାଳବାବୁ ଯହିଁରେ ହସ୍ତକ୍ଷେପ କରିଅଛନ୍ତି, ତାହା କାର୍ଯ୍ୟରେ ପରିଣତ ହେଲେ ବାଉରି କଣ୍ଡରାମାନେ ଆମ ସଙ୍ଗରେ ଏକ ବିଛଣାରେ ବସିବେ ।'' ତିନି ତୁଣ୍ଡରେ ଛେଳି କୁକୁର । ମୋର ବାସନା ପୂର୍ଣ୍ଣ ହେଲା ନାହିଁ । ମୋ ନାଲିସ ସାଙ୍ଗେ ସାଙ୍ଗେ ଡିସ୍‌ମିସ୍ ହୋଇଗଲା । କର୍ତ୍ତାଙ୍କୁ ପଦେଅଧେ ମନକଥା ଶୁଣାଇଦେଇ ମନଟା ବୋଧ କରିନେଲି ସତ, କିନ୍ତୁ ଅନ୍ତ୍ୟଜ ବିଦ୍ୟାଳୟଟି ସରକାରୀ ସାହାଯ୍ୟ ଅଭାବରୁ

ଉଠିଗଲା । ମନେ ମନେ ବିଚାରିଲି, ଯେଉଁମାନଙ୍କ ମତ ଏହିପରି, ସେହିମାନେ ପୁଣି ପ୍ରାଥମିକ ଶିକ୍ଷା ବିଭାଗର ହର୍ତ୍ତା-କର୍ତ୍ତା-ବିଧାତା ରୂପେ ଦଣ୍ଡାୟମାନ । ଏହା ବିଧିର ବିଡ଼ମ୍ବନା ଓ ଶିକ୍ଷା ବିଭାଗର ପାର୍ଶ୍ଵଦେବତା ବା ଚଳନ୍ତି ପ୍ରତିମାମାନଙ୍କର ଶିକ୍ଷା ଉପରେ କିପରି ମାୟା ଓ ଭକ୍ତି, ତାହା ଅନୁଭବ ନ କରି ସୁଦ୍ଧା ଅନୁମାନ କରାଯାଇପାରେ । ମୁଁ ଅନୁଭବରେ ଦେଖିଛି ଯେ ପ୍ରାଇମେରୀ ବିଦ୍ୟାଳୟର ଶିକ୍ଷକ (ଅର୍ଥାତ୍ ଚାହାଳିର ଅବଧାନମାନେ) ସିଧା ସାମଗ୍ରୀ ଯୋଗାଡ଼ କରି ନୈବେଦ୍ୟ ଡାଲାଟିମାନ ଆଣି ଥୋଇଦେବା ବିଷୟରେ ଯେତେ ପଟୁ, ବିଦ୍ୟାଳୟର ଉପସ୍ଥାନ ସଂଖ୍ୟା ବୃଦ୍ଧି କରିବା ବିଷୟରେ ତେତେ ପଟୁ ନୁହନ୍ତି । ଅବଧାନମାନଙ୍କ କଥା ଛାଡ଼ନ୍ତୁ, ମୁଁ ନିଜେ ଅନୁଭବରେ ଦେଖିଛି ଯେ, ଆମ ବଗିଚାର ନାଲି ନଡ଼ିଆ ଗଛର ପଇଡ଼କାଣି ସଙ୍ଗେ ଦର୍ଶକାଭିପ୍ରାୟ ବହିର ମନ୍ତବ୍ୟଗୁଡ଼ିକର ଗୋଟିଏ ନୈସର୍ଗିକ ସମ୍ବନ୍ଧ ଅଛି । କିନ୍ତୁ ସେ ସମ୍ବନ୍ଧରେ ଗାଣିତିକ ବୀଜ ମୋର କ୍ଷୁଦ୍ର ବୁଦ୍ଧିରେ ଥୟ କରି ନ ପାରିବାରୁ ପାଠକମାନଙ୍କୁ ଉପହାର ଦେଇ ପାରିଲି ନାହିଁ । ଓଡ଼ିଶାର ପ୍ରାଇମେରୀ ଶିକ୍ଷାର ହାଲଚାଲ ମତେ କିଛି ଜଣାଅଛି । ସେଥିରୁ ମୁଁ ଯାହା ଦେଖିଅଛି – ମୋର ଏହି ଧାରଣା ମନରେ ଦୃଢ଼ ହୋଇଅଛି ଯେ ପ୍ରାଇମେରୀ ଶିକ୍ଷା ନିମନ୍ତେ ଗଭର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ଅର୍ଥଗୁଡ଼ିକର ମଫସଲରେ କେତେଦୂର ଶିକ୍ଷା ବିସ୍ତାର ହେଉଅଛି ତାହା ଭଗବାନ୍‌ଙ୍କୁ ଗୋଚର; କିନ୍ତୁ ସହରର ଚେହେରା ଯେ ଅନେକ ପରିମାଣରେ ବଦଳୁଅଛି ଏ କଥାରେ ମତଦ୍ଵୈଧ ହୋଇ ନ ପାରେ । ବର୍ତ୍ତମାନ ଯୁଗର କୌଣସି ନବାବିଷ୍କୃତ ବୈଜ୍ଞାନିକ ଯନ୍ତ୍ର ସାହାଯ୍ୟରେ ଯେବେ ପ୍ରାଇମେରୀ ଶିକ୍ଷାରେ ବ୍ୟୟିତ ଟଙ୍କାଗୁଡ଼ାକରେ କୌଣସି ଗୋଟିଏ ମାର୍କା ମରାଯାଇପାରନ୍ତା, ତେବେ ସେ ଟଙ୍କାରୁ କେତେ ଇଟାବାଲାଙ୍କ ଘରେ ବାହୁଡ଼ରେ ପଡ଼ନ୍ତା । ଆମ ଗ୍ରାମରେ ମୁଁ ଯେତେବେଳେ ଗୋଟିଏ ବାଳିକା ବିଦ୍ୟାଳୟ ସ୍ଥାପିତ ହେବାର ସୂତ୍ରପାତ କଲି, ସେତେବେଳେ ସେହି ବିଦ୍ୟାଳୟର ଶିକ୍ଷକ ମତେ ଦିନେ ୩୦ ଟଙ୍କା କରଜ ମାଗିଲେ । ଅତି ଜିଗର କରି କାରଣ ପଚାରିବାରେ ସେ କହିଲେ ଯେ ସ୍କୁଲର ସରକାରୀ ସାହାଯ୍ୟ ପାଇବା ଉଦ୍ଦେଶ୍ୟରେ କିଛି ଦୈବୀ (ଦୈବୀ କି ଅସୁରୀ କଣ କହିଲେ ମୋର ଠିକ୍ ମନେ ପଡୁ ନାହିଁ, ଶିକ୍ଷକଙ୍କର ଭଗବଦ୍‌ଗୀତାରେ ବିଶେଷ ଜ୍ଞାନ ଥିଲା କି ନାହିଁ ତାହା ମୁଁ କହି ପାରୁ ନାହିଁ ।) ଅନୁଷ୍ଠାନ କରିବା ପାଇଁ ଟଙ୍କା ଆବଶ୍ୟକ । ମୁଁ କଥାର ମର୍ମଟା ବୁଝିପାରି ଟାଳଟୁଳ କଲି । ଘଟଣାକ୍ରମେ କେତେ ଦିନ ପରେ ଓଡ଼ିଶା ଶିକ୍ଷା ବିଭାଗର ନବାଗତ କର୍ତ୍ତା ସିଦ୍ଧେଶ୍ଵରପୁର ସ୍କୁଲ ପରିଦର୍ଶନ କରିବାକୁ ଏକାକୀ ଉପସ୍ଥିତ ହେଲେ । ମୁଁ ବେଳ କାଳ ଉଣ୍ଡି ତା'ଙ୍କୁ 'ମହତୀ ଦେବତା ହ୍ୟେଷା ନରରୂପେଣ ତିଷ୍ଠତି' ଉକ୍ତି ଅନୁସାରେ ଦେବତା ସ୍ଵରୂପ ଜ୍ଞାନ ନ କରି ଦେବୀ ଅନୁଷ୍ଠାନ ଉଦ୍ଦେଶ୍ୟରେ ବାଳିକା ବିଦ୍ୟାଳୟ ଶିକ୍ଷକଙ୍କ ପ୍ରାର୍ଥିତ ୩୦ ଟଙ୍କା କର୍ତ୍ତାଙ୍କ ଆଗରେ ଥୋଇଦେଲି । କର୍ତ୍ତା ମହାଶୟ ଟିକିଏ ବିସ୍ମିତ ହୋଇ ପ୍ରଶ୍ନ କଲେ - ଏ କଣ ? ମୁଁ ଉତ୍ତର ଦେଲି, ''ବାଳିକା ବିଦ୍ୟାଳୟର

ଦୈବୀ ଅନୁଷ୍ଠାନ ।'' ଓଡ଼ିଶାର ଶିକ୍ଷା ବିଭାଗର ଦୈବୀ ଅନୁଷ୍ଠାନ ସମ୍ବନ୍ଧରେ ମତେ ଯାହା ଜଣାଥିଲା, ତାହା ମଧ୍ୟ ତାଙ୍କୁ ନିର୍ଭୀକ ଚିତ୍ତରେ କହିଲି । ସେ ଶୁଣି ଭାରି ରାଗାନ୍ୱିତ ହେଲେ ଓ ଏ ଦୈବୀ ଅନୁଷ୍ଠାନମାନଙ୍କର ପ୍ରତିକାର କରିବା ଲାଗି ପ୍ରତିଶ୍ରୁତି ଦେଲେ । ତହିଁ ଆରଦିନ ଦେଖିଲି ଯେ, ମଫସଲ ଗସ୍ତକୁ ଯିବା ସମୟରେ କର୍ତ୍ତାଙ୍କ ସଙ୍ଗରେ ଜଣେ ଲବ୍ଧପ୍ରତିଷ୍ଠ ପାର୍ଶ୍ୱ ଦେବତା ।

ମୋର ବର୍ଣ୍ଣିତ ଦୈବୀ ଅନୁଷ୍ଠାନ କର୍ତ୍ତାଙ୍କ ହୃଦୟରେ ସରଜମିନରେ ଯେତିକି ଉଇଁଥିଲା, ସେହିଠାରେ ଉଭେଇଗଲା । କର୍ତ୍ତା ପାର୍ଶ୍ୱ ଦେବତାଙ୍କ ଚେଲା ହେଲେ କି ପାର୍ଶ୍ୱ ଦେବତା କର୍ତ୍ତାଙ୍କ ଚେଲା ହେଲେ ତାହା ଭଗବାନ୍‌ଙ୍କୁ ଜଣା । ଲାଭ ମଧ୍ୟରେ ମୋର ଲାଭ ହେଲା ଏତିକି ଯେ ସେହି ଦିନଠାରୁ ଶିକ୍ଷା ବିଭାଗର ଦଶଦିଗପାଳମାନଙ୍କର ମୋ ଉପରେ ଓ ଆମ ସ୍କୁଲଗୁଡ଼ିକ ଉପରେ ସବୁବେଳେ ଦୃଷ୍ଟି ରହିଲା । ବର୍ତ୍ତମାନ ସେ ଦୃଷ୍ଟି ଅଛି କି ନାହିଁ, ତାହା ଭଗବାନ୍ ଜାଣନ୍ତି ।

ମୁଁ ସିଦ୍ଧେଶ୍ୱରପୁର ବାଳିକା ବିଦ୍ୟାଳୟର ସମ୍ପାଦକ । ଦିନେ ଜଣେ ପରିଦର୍ଶନ କର୍ମଚାରୀ ମୋ ଅନୁପସ୍ଥିତିରେ ସ୍କୁଲ ପରିଦର୍ଶନ କରିବାକୁ ଯାଇଥିଲେ । ସ୍କୁଲର ପାଠୋନ୍ନତିର ଶୋଚନୀୟ ଅବସ୍ଥା ଦେଖି ଉକ୍ତ ମହାଶୟଙ୍କ ହୃଦୟରେ ଆଘାତ ଲାଗିଲା । ସେ ଦର୍ଶକାଭିପ୍ରାୟ ବହିରେ ଲେଖିଲେ, ''ସେକ୍ରେଟେରୀଙ୍କ ଆଖି ଆଗରେ ଏ ସ୍କୁଲରେ ବୋର୍ଡ଼ର ଟଙ୍କାଗୁଡ଼ାକ ଅପବ୍ୟୟ ହେଉଅଛି ।'' ପରିଦର୍ଶନ କର୍ମଚାରୀ ମୋର ଜଣେ ବନ୍ଧୁ । ତାଙ୍କର ଏପରି ଗୋଟିଏ ମନ୍ତବ୍ୟ ଦେଖି ମୋ ମର୍ମକୁ ବାଧିଲା । ମୁଁ ତହିଁର ଉତ୍ତରରେ ଏତିକି ଲେଖିଲି - ''ଏ ଅଞ୍ଚଳର ସମଶ୍ରେଣୀୟ ଅନ୍ୟାନ୍ୟ ସ୍କୁଲର ଅବସ୍ଥା ବିଷୟରେ ଆମ୍ଭେମାନେ ନିତାନ୍ତ ଅଜ୍ଞ ନୋହୁଁ । ଓଡ଼ିଶାର ବର୍ତ୍ତମାନ ଅବସ୍ଥାରେ ମଫସଲ ବାଳିକା ବିଦ୍ୟାଳୟର ଅବସ୍ଥା ଶୋଚନୀୟ ହେବା ଅବଶ୍ୟମ୍ଭାବୀ । ସ୍କୁଲର ଉନ୍ନତି ନିମନ୍ତେ ମୁଁ ବ୍ୟକ୍ତିଗତ ଭାବରେ ଅନେକ ପରିଶ୍ରମ ଓ ଯତ୍ନ କରୁଅଛି, କିନ୍ତୁ ଦୁର୍ଭାଗ୍ୟର ବିଷୟ ଯେ ସ୍କୁଲଟି ଉନ୍ନତି ଦେଖାଇ ପାରୁ ନାହିଁ ।'' ପରେ ଶୁଣିଲି ଯେ ମୋର ଏ ମନ୍ତବ୍ୟ ଧ୍ରୁବ ଲୋକ ପର୍ଯ୍ୟନ୍ତ ଉଠିଗଲା । ଫଳ କଣ ହେଲା, ତାହା ମୋ ଜ୍ଞାନର ଅଗୋଚର ।

ଓଡ଼ିଶାର ଶିକ୍ଷା ବିଭାଗରେ ପୀଠ ଦେବତା, ବାସ୍ତୁ ଦେବତା, କୁଳ ଦେବତା, ପାର୍ଶ୍ୱ ଦେବତା, ଦିଗପାଳ, ପାର୍ଶ୍ୱ ଦେବତାଙ୍କ ବାହନ, ପୀଠ ଦେବତାଙ୍କ ବାହନ ଇତ୍ୟାଦି ଅନେକ ଦେବତା ଓ ବାହନ ଅଛନ୍ତି । ସମସ୍ତଙ୍କର ଯଥାଯୋଗ୍ୟ ସ୍ତବ ଅଛି, ସେଗୁଡ଼ିକ ମୁଖସ୍ଥ କରିବାକୁ ମତେ ଅଡୁଆ ଲାଗିଲା । ସେଥିପାଇଁ ବାଧ ହୋଇ ସିଦ୍ଧେଶ୍ୱରପୁର ମାଇନର ସ୍କୁଲର ସମ୍ପାଦକତ୍ୱ ଛାଡ଼ି ସ୍ତବପାଠରେ କିୟଦ୍ ପରିମାଣରେ ନିପୁଣ କନିଷ୍ଠ ସହୋଦରଙ୍କ ଜିମା ସେ ସମ୍ପାଦକତ୍ୱଟି ରଖିଦେଇ ମୁଁ ଆପାତତଃ ଖଲାସ ପାଇଅଛି । ସେ କଣ କରୁଅଛନ୍ତି ତାହା ତାଙ୍କୁ ଜଣା, କିନ୍ତୁ ସ୍କୁଲର ସମ୍ପାଦକ ଅବତାରରେ ମୋର

ସହୋଦର ସମୟ ସମୟରେ ଯେତେବେଳେ ମୋ ହାବୁଡ଼ରେ ପଡ଼ି ଅଛନ୍ତି ମୁଁ ଏତିକି ବୁଝି ପାରିଅଛି ଯେ ମୁଁ ଅଯୋଗ୍ୟ ବ୍ୟକ୍ତି ହସ୍ତରେ ଗୁରୁଭାର ଅର୍ପଣ କରି ନାହିଁ । ଦିନକର ନମୁନା ଦେଖନ୍ତୁ - ଥରେ ତାଙ୍କଠାରୁ ଖଣ୍ଡେ ତାଲିକା ମୋ ନିକଟରେ ଆସି ପହଞ୍ଚିଲା । ତାଲିକାଟି ଏହି - ଦେବଦାରୁ ଡାଳ ୧ ଗାଡ଼ି, ସୁନେଲି ରୁପେଲି କାଗଜ ୧ ଦିସ୍ତା, ରଙ୍ଗିନ କାଗଜ ୧ ଦିସ୍ତା, କଳା ଓ ନାଲି ସାଲୁକନା ୬ ଗଜ । କି ନିମନ୍ତେ ଏସବୁ ଦରକାର, ତାହା ତାଙ୍କ ପତ୍ରରୁ କିମ୍ବା ପତ୍ରବାହକଠାରୁ କିଛି ଇସାରା ପାଇଲି ନାହିଁ । ତହିଁ ଆରଦିନ ଗ୍ରାମକୁ ଯାଇ ଦେଖିଲି ଯେ ଉପକରଣଗୁଡ଼ିକରେ ପତାକା ଓ ମାଳ ପ୍ରସ୍ତୁତ ହେଉଅଛି । କାରଣ ବୁଝିଲି ଯେ ଓଡ଼ିଶା ସ୍କୁଲର ବିଧାତାଙ୍କ ଆଗମନ ପ୍ରତୀକ୍ଷାରେ ଏସବୁ ଆୟୋଜନ । ମନେ ମନେ ବିଚାରିଲି ଏଗୁଡ଼ିକ ସମ୍ପାଦକଙ୍କ ମନଗଢ଼ା ଛଟା । କିନ୍ତୁ ବୁଝିଲି ଯେ ବିଧାତାଙ୍କ ପାର୍ଶ୍ୱଦେବତାଙ୍କ ଇଙ୍ଗିତ କ୍ରମେ ସବୁ ଅନୁଷ୍ଠାନର ଆୟୋଜନ ଲାଗିଅଛି । ସମ୍ପାଦକଙ୍କୁ ବାହାଦୁରିଟାଏ ଦେଲି, କିନ୍ତୁ ସବୁ ଆୟୋଜନଯାକ ମୁଁ ନିଜ ହାତରେ ଭଣ୍ଡୁର କରିଦେଲି ଓ ସରଜମିନରେ ଉପସ୍ଥିତ ହେଲାବେଳେ ନବାଗତ ହାକିମଙ୍କୁ ଏ ଆୟୋଜନ ହୋଇଥିବା ବିଷୟ ଇଙ୍ଗିତରେ ଶୁଣାଇ ଦେଲି । ଏହିପରି କେତେଗୁଡ଼ିଏ ସମ୍ପାଦକୀୟ ସାର୍ଟିଫିକେଟ୍ ଅଛି । ସେଗୁଡ଼ିକ ଲେଖି ବର୍ତ୍ତମାନ ପୋଥି ବଢ଼ାଇବାର ଦରକାର ନାହିଁ । ଯେତେବେଳେ ସ୍କୁଲ ପ୍ରତି କର୍ତ୍ତୃପକ୍ଷମାନଙ୍କର ନିଗ୍ରହ ଦୃଷ୍ଟି ପଡ଼ିବ ଓ ସମ୍ପାଦକଙ୍କୁ ଗ୍ରହପୀଡ଼ା ହେବ, ସେତେବେଳେ ଏ ସାର୍ଟିଫିକେଟଗୁଡ଼ିକ ଦେଖାଇ ଗ୍ରହ ଶାନ୍ତି କରିବି ବୋଲି ସଞ୍ଚି ରଖିଅଛି ।

ବର୍ତ୍ତମାନ ଓଡ଼ିଶାର ପ୍ରାଥମିକ ଶିକ୍ଷା ବିଭାଗ ଅସୁରୀମାୟା ଓ ପୈଶାଚିକ ନରକଙ୍କାଳରେ ପରିପୂର୍ଣ୍ଣ ଏକଥା ଅତ୍ୟୁକ୍ତି ନୁହେଁ । ଯେତେଦିନ ଯାକେ ଉପସ୍ଥିତ ଅବସ୍ଥାରେ ପରିବର୍ତ୍ତନ ନ ହେବ, ସେତେଦିନ ଯାକେ ଓଡ଼ିଶାରେ ନିମ୍ନ ଶିକ୍ଷା ବିସ୍ତାର କରାଇବାର ଆଶା ସରକାରଙ୍କ ପକ୍ଷରେ ଦୁରାଶା ମାତ୍ର । ଶିକ୍ଷା ବିଭାଗ ସଙ୍ଗେ ସଙ୍ଗେ ପୁସ୍ତକର ଘନିଷ୍ଠ ସମ୍ବନ୍ଧ । କିନ୍ତୁ ତାହା ନ ହୋଇ ଶିକ୍ଷା ବିଭାଗ ଦ୍ୱାରା ଅନୁଗୃହୀତ ବ୍ୟକ୍ତିମାନଙ୍କ ସହିତ କୁଣ୍ଡା, କୁଳୁଚି, ସିଧାସଞ୍ଜା, ପନିପରିବା, ସୁନିଆ, ଦଶହରା, ବ୍ରତ ବିବାହ, କୋଠା ତୋଳାଇ ଇତ୍ୟାଦିର ଘନିଷ୍ଠ ସମ୍ବନ୍ଧ ଥିବାଯାକେ ଗଭର୍ଣ୍ଣମେଣ୍ଟଙ୍କ ବାବା ମଧ୍ୟ ଓଡ଼ିଶାର ପ୍ରାଥମିକ ଶିକ୍ଷାର ବହୁଳ ପ୍ରଚାର କରାଇ ପାରିବେ ନାହିଁ । ଶିକ୍ଷା ବିଭାଗର ଦେବତାମାନଙ୍କ ଦେଉଳଗୁଡ଼ିକ ଶୋଧ ହେବା ଆବଶ୍ୟକ । ତାହା ନ କରି ଗଭର୍ଣ୍ଣମେଣ୍ଟ ଖାଲି ଅର୍ଥ ବ୍ୟୟ କରି ଚାନ୍ଦୁଆ ଟାଣୁଥିବେ ସତ୍ୟ, କିନ୍ତୁ ଚେମଣି ତଡ଼େଇଙ୍କ ଦାଉରୁ ଭୋଗଯାକ ବିବାକ ମାରା ହେଉଥିବ ।

ଉତ୍କଳ ସାହିତ୍ୟ/୧୧ଶ ଭାଗ/୭ମ ସଂଖ୍ୟା/୧୩୧୫ ସାଲ ।

## ।। ଅଠର ।।

ଆମ୍ଭମାନଙ୍କର ଓ ଉତ୍କଳର ଜଣେ ପ୍ରିୟ ବନ୍ଧୁ ଓ ଆଶାର ସ୍ଥଳ ଶ୍ରୀଯୁକ୍ତ ଅଭିରାମ ଭଞ୍ଜ ଏମ.ଏ. ବି.ଏଲ. ହଠାତ୍ ଆମ୍ଭମାନଙ୍କୁ ଛାଡ଼ି ଗତ ଜାନୁଆରୀ ମାସ ୧୫ ତାରିଖ ଦିନ ଇହ ସଂସାରରୁ ବିଦାୟ ହୋଇ ଚାଲିଗଲେ । ଏ ଦାରୁଣ ଶୋକ ସଂବାଦ ଶୁଣି ଉତ୍କଳରେ ସର୍ବତ୍ର ହାହାକାର ପଡ଼ି ଯାଇଅଛି । ଉତ୍କଳର ଆବାଳବୃଦ୍ଧବନିତା ସମସ୍ତେ ଏହି ଦୁଃସଂବାଦରେ ଶୋକ ପ୍ରକାଶ କରୁଅଛନ୍ତି । କିନ୍ତୁ ସରକାରୀ ହୁକୁମରେ ହାତ ଦେବା ଆମ ଭଳି ସାମାନ୍ୟ ଓ ଇତର ଜୀବଙ୍କର ତାକତ୍ ନାହିଁ କିମ୍ବା ସେଠାରେ ଆମର voice (କହିବାର ଅଧିକାର) ନାହିଁ । କି ଉଦ୍ଦେଶ୍ୟରେ ଦୁନିଆର ଲାଟ ତାଙ୍କୁ ଆମ ଭିତରୁ କାଢ଼ି ନେଲେ, ତାହା ତାଙ୍କୁ ଜଣା । ଆମ୍ଭମାନଙ୍କ ମନକୁ'ତ ଫେର ସ୍ଥିର କରିବା ଦରକାର । ରାଜକୀୟ ବିଷୟରେ ଯେପରି 'In the exegencies of the Public Service' ଅର୍ଥାତ୍ 'ସାଧାରଣଙ୍କ ଉପକାରାର୍ଥେ' କେତେ କେତେ କଥା ନିତି ଅଭିନୀତ ହୋଇ ଯାଉଅଛି, କିନ୍ତୁ ସେ Exegency ଟା କଣ ତାହା ପଚାରିବାର ବା ବୁଝିବାର ଆମର ତାକତ୍ ନାହିଁ, ସେହିପରି ଅଭିରାମବାବୁଙ୍କ ଅକାଳ ବିୟୋଗରେ ଏକ ମାତ୍ର ସାନ୍ତ୍ୱନା ଏହି ଯେ 'In the exegencies of universal service' ଅର୍ଥାତ୍ 'ବିଶ୍ୱବ୍ରହ୍ମାଣ୍ଡର ଗୂଢ଼ ଉପକାର ସାଧନ ଉଦ୍ଦେଶ୍ୟରେ' ବିଶ୍ୱନିୟନ୍ତା ଅଭିରାମବାବୁଙ୍କୁ ଆମ ଭିତରୁ କାଢ଼ି ନେଲେ । ସଂସାରରେ ଏତିକି ସାନ୍ତ୍ୱନା ଅଛି ବୋଲି ପ୍ରିୟତମ ବ୍ୟକ୍ତିମାନଙ୍କ ବିୟୋଗ ଆମ୍ଭେମାନେ ସହିପାରୁ ଓ ସେମାନଙ୍କ ବିୟୋଗ ପରେ ପୁନର୍ବାର ସଂସାର ସଙ୍ଗେ ପେଟ ଅଣ୍ଟି କାମ କରିବାକୁ ବାହାରୁ । ସେଥିପାଇଁ କବି ଆମର ସଙ୍ଗୀତରେ କହିଅଛନ୍ତି, 'ଅହନ୍ୟହିନି ଭୂତାନି ଗଚ୍ଛନ୍ତି ଯମମନ୍ଦିରଂ, ଶେଷାଣ୍ଡିରତ୍ୱ ମିଚ୍ଛନ୍ତି କିମାଶ୍ଚର୍ଯ୍ୟମତଃପରଂ ।' ତେବେ ସଂସାରର ରାଜକୀୟ କାର୍ଯ୍ୟ ଓ ବିଶ୍ୱ ବ୍ରହ୍ମାଣ୍ଡର ରାଜକୀୟ କାର୍ଯ୍ୟ ମଧ୍ୟରେ ଏହି କୈଫିୟତ୍‌ରେ ମନ ମାନି ଯାଏ, କିନ୍ତୁ ସଂସାରର କାର୍ଯ୍ୟରେ ଏ କୈଫିୟତ୍‌ରେ ମନ ଆଦୌ ମାନେ ନାହିଁ ବୋଲି ମନୁଷ୍ୟ ଖଜବଜ ହୁଏ, କେତେବେଳେ ଦି'ପଦ ଭୁକି ହୁଏ, କେତେବେଳେ ଢେଲାଟାଏ, ବିଧାଟାଏ, ଏହିପରି ମାରି ଦିଏ । ମନ ମାନିବାର ଗୋଟିଏ ଗୂଢ଼ ତତ୍ତ୍ୱ ଅଛି - ଏଠାରେ କୈଫିୟତ୍ କର୍ତ୍ତାମାନେ ଦିଅନ୍ତି ଓ ସେଥିଯୋଗୁଁ ମନରେ ଭୟ ହୁଏ, କେଜାଣି ଏଥିରେ କିଛି ଭିତିରି ପେଞ୍ଚ ଅଛି; କିନ୍ତୁ ଈଶ୍ୱରଙ୍କ କୈଫିୟତ୍ ଈଶ୍ୱର ଦିଅନ୍ତି ନାହିଁ । ଯେଉଁମାନଙ୍କ ମନ ମାନିବା ପାଇଁ କୈଫିୟତ୍‌ର ସୃଷ୍ଟି, ସେହିମାନେ ଏହି କୈଫିୟତ୍ ଦିଅନ୍ତି, ସେଥିପାଇଁ ଈଶ୍ୱରଙ୍କ କୈଫିୟତ୍‌ରେ ମନ ମାନି ଯାଏ । ମନ ମାନୁ ନ ମାନୁ, ସବୁ କଥାରେ ଗୋଟାଏ କିଛି କୈଫିୟତ୍ ଅନିବାର୍ଯ୍ୟ, ମନ ମାନିଲେ ଉତ୍ତମ, ନ ମାନିଲେ ଉତ୍ତମ, ତା ଉପରକୁ ତ ଆଉ ଅପିଲ୍ ଅଦାଲତ ନାହିଁ । ଅପିଲ ଅଦାଲତର ନିଷ୍ପତ୍ତିରେ ଯେ ମନ ମାନିବ ଏ କଥା କିଏ ତଥ୍ୟ ଜବାବ ଦେବ ? ଅପିଲ ଅଦାଲତ ମଧ୍ୟ କର୍ତ୍ତାଙ୍କ ସୀମା ଭିତରେ । ଯାହାହେଉ ସେ କଥା ଏଠାରେ ପକାଇବାର ଆବଶ୍ୟକ ନାହିଁ ।

ଅଭିରାମବାବୁ ଆମ ଭିତରୁ ଚାଲିଗଲେ ଏ କଥା ନିଶ୍ଚିତ । ସେ କାହିଁକି ଗଲେ, କେଉଁଆଡ଼େ ଗଲେ, ଏ ସବୁ ବୁଝିବାର ଅଧିକାର ତୁମ ଆମ ଭଳି କ୍ଷୁଦ୍ର ପ୍ରାଣୀଙ୍କର ନାହିଁ । କିନ୍ତୁ ସେ ଯେ ଆମ ଭିତରେ ଜଣେ ହୋଇ ଠିଆ ହୋଇଥିଲେ ଓ ସେ ସେ ଜାଗାଟିରୁ ଖସି ଗଲାରୁ ଯେ ଉତ୍କଳରେ ଗୋଟିଏ ଫାଙ୍କ ଦିଶି ଗଲା, ଏ କଥା ତ ଆମେ ସମସ୍ତେ ଅନୁଭବ କରି ପାରିଥାଇ - ସେ ଫାଙ୍କାଟିର ପରିମାଣ ଅନୁଭବ କରି କି କି ମାଲ ମସଲା ହେଲେ ତାହା ପୂରି ଯିବ, ଏହାହିଁ ସ୍ଥିର କରିବା ଜାତିର ମନୁଷ୍ୟ ପଦବାଚ୍ୟ ପ୍ରତ୍ୟେକ ବ୍ୟକ୍ତିଙ୍କର ବର୍ତ୍ତମାନ କର୍ତ୍ତବ୍ୟ ।

କଲେଜରେ ମୁଁ ଓ ଅଭିରାମ ସହପାଠୀ ଥିଲୁ । ସହପାଠୀମାନଙ୍କ ମଧ୍ୟରେ ସେ ସର୍ବକନିଷ୍ଠ ଥିଲେ । ତାଙ୍କର ଅମାୟିକ ବ୍ୟବହାର ଦ୍ୱାରା ସେ ଆମ୍ଭମାନଙ୍କର ପ୍ରୀତିଭାଜନ ହୋଇଥିଲେ । ସେହି ସମୟରେ ଆମ୍ଭମାନଙ୍କ ମଧ୍ୟରେ ଅନେକ ସମୟରେ ସାହିତ୍ୟ, ବିଜ୍ଞାନ, ଦର୍ଶନ, ରାଜନୀତି ଇତ୍ୟାଦିର ଚର୍ଚ୍ଚା ହେଉଥିଲା - ବାର ଜଣ ମିଶି ଗୋଟିଏ club ବା ସମାଜ ସ୍ଥାପନ କରିଥିଲୁଁ, ସେଥିରେ ଆମ୍ଭେମାନେ ନାନା ବିଷୟରେ ବକ୍ତୃତା, ପ୍ରବନ୍ଧ ପାଠ ଓ ଆଲୋଚନା ଇତ୍ୟାଦି କରୁଥିଲୁଁ । ସେସବୁ କଳ୍ପନା ଜଗତର ଲୀଳାକୁ କାର୍ଯ୍ୟରେ ପରିଣତ କରିବା ଲାଗି ଆମ୍ଭମାନଙ୍କ ମଧ୍ୟରୁ ସମସ୍ତେ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲୁଁ, କିନ୍ତୁ ଆମ୍ଭମାନଙ୍କୁ ଅଧବାଟରେ ଛାଡ଼ି ଦେଇ ଅଭିରାମ ଚାଲିଗଲେ । ଅଭିରାମଙ୍କଠାରେ ସମସ୍ତଙ୍କର ବେଶି ଆଶା ଥିଲା । ଦୁନିଆରେ ମଧ୍ୟ ପ୍ରାୟ ଦେଖାଯାଏ ଯେ ଯେଉଁମାନଙ୍କଠାରେ ବେଶି ଆଶା, ସେହିମାନେ ଅଧବାଟରେ ଗଳା କାଟିଦେଇ ଚାଲିଯା'ନ୍ତି । ଯାହାହେଉ ସେଥିରେ ଚାରା କାହାର ଅଛି । ଆମ୍ଭେମାନେ କାନ୍ଦୁଅଛୁଁ, ସେ ଚାଲିଗଲେ । ସେ ଅଳ୍ପ ବୟସରେ ଶିକ୍ଷା ଶେଷ କରି କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କରିଥିଲେ । ଅମାୟିକତା, ବାଳକୋଚିତ ସରଳତା ତାଙ୍କ ଜୀବନର ପ୍ରଧାନ ଗୁଣ ଥିଲା । ଇଂରାଜୀରେ ରଚନା ଓ ବକ୍ତୃତା କରିବା ବିଷୟରେ ସେ ବେଶ ପଟୁତା ଲାଭ କରିଥିଲେ । ତାଙ୍କର ଗର୍ବ ଓ ଅଭିମାନ ଆଦୌ ନ ଥିଲା । ଅନେକ ସମୟରେ ତାଙ୍କ ସଙ୍ଗେ ମୋର ମତଭେଦ ଘଟୁଥିଲା ଓ ସମୟ ସମୟରେ ତାଙ୍କୁ ମୋର ତୀବ୍ର ସମାଲୋଚନା ସହ୍ୟ କରିବାକୁ ପଡ଼ିଅଛି, ତଥାପି ସେଥିରେ ତାଙ୍କର ମୋ ପ୍ରତି ପୂର୍ବ ସ୍ନେହ ଓ ଭ୍ରାତୃଭାବର କୌଣସି ପରିବର୍ତ୍ତନ ଦେଖାଯାଇ ନ ଥିଲା । କୌଣସି ଦେଶହିତକର କାର୍ଯ୍ୟରେ ତାଙ୍କର ସାହାଯ୍ୟ ଓ ସହାନୁଭୂତି ପ୍ରାର୍ଥନା କଲେ ସେ ଅକୁଣ୍ଠିତ ଭାବରେ ଯଥାଶକ୍ତି ସାହାଯ୍ୟ କରୁଥିଲେ । ମଧୁବାବୁ ସାଧାରଣ କାର୍ଯ୍ୟରୁ ଅବସର ଗ୍ରହଣ କରିବା ପରେ ତାଙ୍କ ସ୍ଥାନ ଅଭିରାମବାବୁଙ୍କ ଦ୍ୱାରା କେତେକ ପରିମାଣରେ ପୂର୍ଣ୍ଣ ହେବ, ଏହା ଲୋକ ଆଶା କରିଥିଲେ । କିନ୍ତୁ ଅଭିରାମବାବୁ ସବୁ ଡୋରି କାଟି ଦେଇ ଚାଲିଗଲେ । ଅଭିରାମବାବୁଙ୍କ ମୃତ୍ୟୁ ସମ୍ବାଦରେ ବିଶ୍ୱାସ କରିବା ପାଇଁ ଆଜି ପର୍ଯ୍ୟନ୍ତ ମଧ୍ୟ ଆମ୍ଭମାନଙ୍କ ହୃଦୟ ନାରାଜ ହେଉଅଛି । କିନ୍ତୁ ଆମ୍ଭମାନଙ୍କ ରାଜି ଅରାଜିରେ ଯାଏ କେତେ ଆସେ କେତେ । ତାଙ୍କର ମୃତ୍ୟୁ ଦିବସଠାରୁ

ଆଜି ପର୍ଯ୍ୟନ୍ତ ତାଙ୍କର ବନ୍ଧୁମାନେ ଯେଉଁଠାରେ ଭେଟ ହେଉଅଛନ୍ତି, ସେଠାରେ କେବଳ ଏକମାତ୍ର ଆଲୋଚନା - ଅଭିରାମଙ୍କ ଅକାଳ ମୃତ୍ୟୁ । ଈଶ୍ୱର ତାଙ୍କ ଆତ୍ମାର ସଦ୍‌ଗତି କରନ୍ତୁ, ତାଙ୍କର ଶୋକସଂତପ୍ତ ବୃଦ୍ଧ ପିତା ଓ ଯୁବତୀ ସ୍ତ୍ରୀଙ୍କ ମନରେ ସାନ୍ତ୍ୱନା ଦିଅନ୍ତୁ ଏହା ଛଡ଼ା ଆଉ କିଛି କହିବାକୁ ବା ଭାବିବାକୁ ମନ ହେଉ ନାହିଁ । ଶାନ୍ତିଃ-ଶାନ୍ତିଃ-ଶାନ୍ତିଃ ! ଜଣେ ଲୋକ ଚାଲିଗଲେ, କିନ୍ତୁ ଉତ୍କଳରେ ଗୋଟିଏ ବିଷାଦ-କାଳିମା ବୋଳି ଦେଇଗଲେ । ସେ ବିଷାଦ-କାଳିମା ବର୍ତ୍ତମାନ ଲିଭିବାର ନୁହେଁ ।

ଉତ୍କଳ ସାହିତ୍ୟ/୧୧ଶ ଭାଗ/୯ମ ସଂଖ୍ୟା/୧୩୧୫ ସାଲ ।

## ।। ଉଣେଇଶ ।।

ଆମ ଗାଁରେ ପିଲାଦିନେ ଶୁଣିଥିଲି 'କୋଦିଣ୍ଡା ନିଶାପ' ଦୁନିଆରୁ ବାହାର । ବର୍ତ୍ତମାନ ଦେଖୁଅଛି ଯେ ଓଡ଼ିଶାର ନିଶାପ ଦୁନିଆ ବାହାର । ଆପଣମାନେ ଦେଖିବା ହେଉନ୍ତୁ, ଦୁନିଆରେ ପ୍ରଚଳିତ ସଂଜ୍ଞାମାନଙ୍କ ସଙ୍ଗେ ଓଡ଼ିଶା ପ୍ରଚଳିତ ସଂଜ୍ଞାର କି ପାର୍ଥକ୍ୟ ଅଛି । ଦୁନିଆରେ 'ଭଲ ଲୋକ' ଶବ୍ଦର ଅର୍ଥ କଣ - ଯେ ସମସ୍ତଙ୍କର ମଙ୍ଗଳ କାମନା କରେ, ଦେଶ ପାଇଁ ଆପଣା ଜୀବନ ଉତ୍ସର୍ଗ କରିବାକୁ କୁଣ୍ଠିତ ହୁଏ ନାହିଁ, ପରାର୍ଥରେ ସ୍ୱାର୍ଥତ୍ୟାଗ କରିବାକୁ ପ୍ରସ୍ତୁତ ଥାଏ, ସେ ଦୁନିଆରେ ଭଲ ଲୋକ ବୋଲି ପରିଚିତ ହୁଏ ଓ ଦୁନିଆରେ ତାର ଆସନ ଉଚ୍ଚ । ଦୁନିଆରେ ସେପରି ଲୋକ ପଦେ ପଦେ ବିଡ଼ମ୍ବିତ ହେଲେ ସୁଦ୍ଧା ତାର ଚେଲା ଅନେକ ଓ ମଲାବେଳେ ତା ମନରେ ଏତିକି ସାନ୍ତ୍ୱନା ହୁଏ ଯେ ମୋ ଭଳି ମୋ ପଛରେ ଆଉ ଦଶ ପୁଞ୍ଜା ଲୋକ ନିଆଁକୁ ଡେଇଁବାକୁ ଅଣ୍ଟା ଭିଡ଼ି ଠିଆ ହୋଇଅଛନ୍ତି । ପାଠକମାନେ ଏ ଚିତ୍ରଟି ନିବିଷ୍ଟ ହୃଦୟରେ ଉତ୍ତମରୂପେ ଥରେ ପରୀକ୍ଷା କରି ଓଡ଼ିଶାରେ ସରଜମିନ ତଦନ୍ତ କରିବାକୁ ଅବଧାନ କରନ୍ତୁ । ଓଡ଼ିଶାର ସର୍ବଜନସମ୍ମତ ଶବ୍ଦକୋଷରେ 'ଭଲଲୋକ'ର ଉପରୋକ୍ତ ସଂଜ୍ଞା ଦୁଷ୍ପ୍ରାପ୍ୟ । ସୁବର୍ଣ୍ଣରେଖାଠାରୁ ଚିଲିକା ପାରି ପର୍ଯ୍ୟନ୍ତ ଯାହାକୁ ପଚାର 'ଭଲଲୋକ' ଶବ୍ଦର ଅର୍ଥ କଣ - ସେ ଦଣ୍ଡେ ନ ଭାବି ଉତ୍ତର ଦେବ - ଯେ କାହାରି ଭଲରେ ବା ମନ୍ଦରେ ନ ଥାଏ, ଯେ ହଲିଲା ପାଣିରେ ଗୋଡ଼ ଦିଏ ନାହିଁ, ଯେ ଦିନରାତି ଆପଣାର ଦୁଃଖସୁଖରେ ଲାଗିଥାଏ, ଯେ କୁଟା ଖଣ୍ଡିକ ଦି'ଖଣ୍ଡ କରେ ନାହିଁ, ସେହି ଭଲଲୋକ । ଦିନେ ଜଣେ ଭଲଲୋକଙ୍କ ସଙ୍ଗେ ବସିଥିଲି । ଦାଣ୍ଡରେ ଦୁଇଜଣ ମନୁଷ୍ୟଙ୍କର ରାବ ଶୁଭିଲା, ମୁଁ ଉକ୍ତ ଶବ୍ଦ ଶୁଣି କଥାଟା ବୁଝିବା ନିମନ୍ତେ ପଦାକୁ ଉଠି ଆସିଲି । ଭଲଲୋକ ମହାଶୟ କହିଲେ, ''ଦୁଇଜଣ କଜିଆ କରୁଛନ୍ତି, ସେଠାକୁ ଆମର ଯିବାର ଦରକାର କଣ । ସେଠାକୁ ଗଲେ ମକଦ୍ଦମାରେ ସାକ୍ଷୀ ମାନିବେ ।'' ଏକଥା କହି ସେ ଘର ଭିତରେ କବାଟ କିଳି ପଶିଲେ ଓ ମୁଁ ତାଙ୍କୁ ନମସ୍କାର କରି ବିଦାୟ ନେଲି । ''ଆଉ ଗୋଟିଏ ଭଲଲୋକଙ୍କ କଥା ଶୁଣିଥିଲି - ଅଳ୍ପଦିନ ତଳେ ଭଲଲୋକ ମହାଶୟ କୌଣସି ଅନୁଗ୍ରହ ପ୍ରାର୍ଥନା କରିବା ପାଇଁ କୌଣସି ହାକିମଙ୍କ

ନିକଟକୁ ଯାଇଥିଲେ । ଭଲଲୋକ ଅବଶ୍ୟ 'ଦେଶୀ ଆଦିମ' । ହାକିମ ତାଙ୍କୁ ସମ୍ବୋଧନ କରି କହିଲେ, ''ଦେଖୋ, ସ୍ୱଦେଶୀ ଚିଜକୁ ପ୍ରଶ୍ରୟ ଦେବା ଭାରି ଖରାପ ।'' ଭଲଲୋକ ହଠାତ୍ ଜବାବ ଦେଲେ, ''ଖୋଦାବନ୍ଦ ଖାମିଦ । ଯାହା ଫରମାଇଲେ ତାହା ସମସ୍ତ ଠିକ୍, କିନ୍ତୁ ଜନାବ ! ଆମ ଓଡ଼ିଶାରେ କେହି ସ୍ୱଦେଶୀ ଚିଜ ବ୍ୟବହାର କରନ୍ତି ନାହିଁ । ଓଡ଼ିଆଯାକ ସମସ୍ତେ ଭଲଲୋକ ।'' ହାକିମ ଏ ପଦକ ଶୁଣି ସାବାସଟାଏ ଦେଲେ । ତତ୍ପରେ ଘଟନାକ୍ରମେ ସେ ଭଲଲୋକଙ୍କ ସଙ୍ଗେ ମୋର ସାକ୍ଷାତ୍ ହେଲାରୁ ମୁଁ ତାଙ୍କୁ ପଚାରିଲି, ''ଆପଣ ତ ଆଜନ୍ମ ଭଲଲୋକ; କିନ୍ତୁ କୋଟିକ ଯାକ ଓଡ଼ିଆ ପୁଅଙ୍କୁ ଆଜି ଯେ ଭଲଲୋକ ବନାଇ ଦେଲେ ? ଟିକିଏ ଆଗପଛ ଭାବିଲେ ନାହିଁ ?'' ସେ ଉତ୍ତର ଦେଲେ - ''ଆରେ କାଦୁଅରେ ପଶିଲେ ସିନା ଗୋଡ଼ ଧୋଇବାକୁ ପଡ଼ିବ, ଦେଖୁ ନାହିଁ, ସ୍ୱଦେଶୀ ଆନ୍ଦୋଳନ ଯୋଗେ ବଙ୍ଗଦେଶବାସୀଙ୍କ ଉପରେ କେତେ ବିପଦ ପଡୁଛି, ଏହା ଦେଖି ସୁଦ୍ଧା ତୁମର ଚେତା ହୋଇ ନାହିଁ । ଆମ ଓଡ଼ିଶାରେ ସ୍ୱଦେଶୀ ଆନ୍ଦୋଳନର ଅସ୍ତିତ୍ୱ ଅଛି ବୋଲି ଜାଣି ପାରିଲେ ସମସ୍ତଙ୍କ ଉପରେ ରାଧାଚଡ଼କ ପଡ଼ିବ । ଏଣେ ମୋ ପୁଅଟି ପାଇଁ ଖଣ୍ଡେ ଚାକିରି ମିଳିବ ନାହିଁ ।'' ମୁଁ ଏ ଉତ୍ତରକୁ ଧନ୍ୟବାଦଟାଏ ଦେଇ ବାହାରି ଆସିଲି । ଯେଉଁଦିନ ବିଲାତର ପାର୍ଲିଆମେଣ୍ଟର ମେମ୍ବର ଡାକ୍ତର ରଥରଫୋର୍ଡ଼ ସାହେବ ଏଠାକୁ ଆସିଥିଲେ, ସେଦିନ ଦି'ପହର ବେଳେ ଏଠାରେ ଅବସ୍ଥା ଜାଣିବା ପାଇଁ ସାଧାରଣ ଭଦ୍ରଲୋକଙ୍କ ସଙ୍ଗେ କଥା ଭାଷା ହେବେ ବୋଲି ସ୍ଥିର ହୋଇଥିଲା । ତଦନୁସାରେ କେତେକ ସ୍ଥାନୀୟ ବ୍ୟକ୍ତି ଯାଇ ତାଙ୍କ ସଙ୍ଗେ ସାକ୍ଷାତ୍ କରି ମନ ଓର୍‌ମାନ ମେଣ୍ଟାଇ ନେଲେ । ମୋ ଶ୍ରେଣୀର ଜଣେ ଚିହ୍ନିତ ଭଲ ଲୋକଙ୍କ ସଙ୍ଗେ ମୋର ସେହି ସମୟରେ ଅଦାଲତରେ ସାକ୍ଷାତ୍ ହେଲା । ମୁଁ ପଚାରିଲି, ''ଆପଣ ସାହେବଙ୍କ ସଙ୍ଗେ ଦେଖା କରିବାକୁ ଗଲେ ନାହିଁ କିଆଁ ?'' ସେ ଉତ୍ତର ଦେଲେ, ''ଗୋଟିଏ ମକଦ୍ଦମାର ତାରିଖ ଅଛି, ସେଥିଯୋଗୁଁ କଚେରି ଛାଡ଼ି ଯାଇ ପାରିଲି ନାହିଁ ।'' ମୁଁ କହିଲି, ''କାହିଁକି ? ଆପଣତ ମହଲତ ନେଇ ଯାଇ ପାରିଥାନ୍ତେ,'' ସେ ଉତ୍ତର କଲେ, ''ମହଲତ ନେଇଥିଲେ ତ ଆଜି ମକଦ୍ଦମା ପଡ଼ି ନ ଥାନ୍ତା । ମକଦ୍ଦମା ପଡ଼ି ନ ଥିଲେ ମକ୍‌କେଲ ଫିସ୍ ଦେଇ ନ ଥାନ୍ତା । ରଥରଫୋର୍ଡ଼ ସାହେବଙ୍କୁ ଆମର ଦୁଃଖ ଜଣାଇଲେ ଦୂର ଭବିଷ୍ୟତ୍‌ରେ କିଛି ଫଳ ହେବ କି ନାହିଁ ତାହା ଭଗବାନ୍‌ଙ୍କୁ ଜଣା; କିନ୍ତୁ ଦେଶର ଏହି ଅନିଶ୍ଚିତ ଉପକାର ପାଇଁ କେତେଗୁଡ଼ିଏ ନଗଦ ଟଙ୍କା ଛାଡ଼ିକରି ଯିବା ବାତୁଳତା ମାତ୍ର ।'' କଥାଟା ମୋ ମନକୁ ଭାରି ଲାଗିଗଲା । ମୁଁ ମଧ୍ୟ ସେହି ମୂଲ୍ୟବାନ୍ ଉପଦେଶଗୁଡ଼ିକୁ ଶିରୋଧାର୍ଯ୍ୟ କରି ଘରେ ରହିଲି । ଓଡ଼ିଶାର ଦୁର୍ଭାଗ୍ୟ କି ସୌଭାଗ୍ୟ ତାହା ଭଗବାନ୍‌ଙ୍କୁ ଜଣା, କିନ୍ତୁ ଓଡ଼ିଶାର ହାଓଆ ଗୁଣରୁ ଆମ୍ଭମାନଙ୍କ ସମାଜରେ ଏହିପରି ''ଭଲଲୋକ ଜୀବଗୁଡ଼ିଏ ସାଲୁ ସାଲୁ ହେଉଅଛନ୍ତି । ସେଥିପାଇଁ ଆମ ଗୁରୁଗୋସାଇଁ କହନ୍ତି, ''ଆରେ ମୁହଁରେ କହୁଛ ଦେଶର ଉନ୍ନତି, ସମାଜର ଉନ୍ନତି,

ସବୁ ଆଖି ବୁଜି ଦେଲା ମାତ୍ରେ ଓଡ଼ିଶାରେ ହୋଇଯିବ ବୋଲି  କିନ୍ତୁ ଓଡ଼ିଶାର ପୁନର୍ବାର 'ସିଦ୍ଧିରସ୍ତୁ'ଠାରୁ ଆରମ୍ଭ ହୋଇ ମାଟି ଶୋଧ ହୋଇ ଖସା ବୁଣା ନ ଗଲେ, ଅର୍ଥାତ୍ କାଳିଦାସଙ୍କ ପରି ଏକା ଜୀବନରେ ୭ଥର ଜନ୍ମ ନ ହେଲେ ସବୁ କଥା ନିଶାର ସ୍ୱପନ ମାତ୍ର ।''

ପାଠକ ମହୋଦୟ ! ଆପଣ ଭାବୁଥିବେ, ଲୋକଟା ଏଣୁତେଣୁ ଗୁଡ଼ାଏ ବାଜେ ଗଳ୍ପ କରି ଆମର ବହୁମୂଲ୍ୟ ସମୟକୁ ବୃଥାରେ ଖରଚ କରାଉଅଛି; କିନ୍ତୁ ଥରେ ମନେ ମନେ ବ୍ୟକ୍ତିଗତ ଜୀବନ ଓ ଅନୁଭବରୁ ଦେଖନ୍ତୁ, ଆପଣମାନେ ବୁଝି ପାରିବେ ଯେ ଆମ୍ଭମାନଙ୍କ ଜାତୀୟ ଆଦର୍ଶ ଓ ବ୍ୟକ୍ତିଗତ ଆଦର୍ଶ ଅତି କ୍ଷୁଦ୍ର ସୀମା ମଧ୍ୟରେ ଆବଦ୍ଧ ହୋଇ ରହିଛି । ଜାତୀୟ ଭାବରେ ଦେଖନ୍ତୁ, ଉନ୍ନତି କାମନା କ୍ଷୁଦ୍ର ମୁଷ୍ଟିମେୟ ଓଡ଼ିଆ ଜାତି ମଧ୍ୟରେ ଘୂର୍ଣ୍ଣାୟମାନ ହୋଇ ରହିଅଛି । ବ୍ୟକ୍ତିଗତ ଭାବରେ ଦେଖନ୍ତୁ, ଆପଣା ପେଟ, ଆପଣା ପୁଅ-ମାଇପ ଓ ବଡ଼ ଜୋର୍ ଆପଣା ଭାଇ-ବିରାଦରଙ୍କ ସୀମା ମଧ୍ୟରେ ସବୁବେଳେ ଲୁଚିଛି । ଏଥିରେ ଦେଶପାଇଁ କହିବ କିଏ ? ଦେଶ ପାଇଁ କରିବ କିଏ ? ଆଦର୍ଶ ବଳରେ ମନୁଷ୍ୟ ଓ ଜାତି ଉନ୍ନତ ହୁଏ । ଆଦର୍ଶରୂପ କୈନ୍ଦ୍ରିକ ଶକ୍ତି ମନୁଷ୍ୟକୁ ଓ ଜାତିକୁ ଉପରକୁ ଉଠାଇ ନିଏ, ପୃଥିବୀର ଉନ୍ନତ ଜାତି ଓ ଉନ୍ନତ ପୁରୁଷମାନଙ୍କ ଦୃଷ୍ଟାନ୍ତ ପ୍ରତି ଥରେ ଅବଧାନ କରନ୍ତୁ - ଦେଖି ପାରିବେ ଯେ ସ୍ୱାର୍ଥପରତା, ଆଳସ୍ୟ, ଅହମିକା, ଭୀରୁତା ସେମାନଙ୍କୁ ଛୁଇଁ ନାହିଁ । ଇଂରେଜ ଜାତି ଆଜି ଏପରି ଉନ୍ନତ କାହିଁକି ? ସେମାନଙ୍କର ଉଚ୍ଚ ଆଦର୍ଶ, ସେମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥତ୍ୟାଗ ଓ ନୈତିକ ଶକ୍ତି ଆମର କାହିଁ ? କିନ୍ତୁ ଓଡ଼ିଆ ଜାତି ଆପଣାର କ୍ଷୁଦ୍ର ସୀମା ମଧ୍ୟରେ, ଆପଣା ଘରର ଉଚ୍ଚ ପିଣ୍ଡା ଉପରେ ବସି, ନାସ ଶୁଂଘୁ ଶୁଂଘୁ ସୂର୍ଯ୍ୟ ଅସ୍ତାଚଳୋନ୍ମୁଖ ଓ ଘରଭିତରକୁ ଯାଇ କତରାଖଣ୍ଡ ଘୋଡ଼ି ହୋଇ ସ୍ୱପ୍ନ ଦେଖୁ ଦେଖୁ ରାତି ଭୋର । ଏପରି ତନ୍ଦ୍ରାଭିଭୂତ ଅବସ୍ଥାରେ କୌଣସି ଜାତିର ବା ବ୍ୟକ୍ତିର ଉନ୍ନତି ସୁଦୂର ପରାହତ ଓ ମରୁ ମରୀଚିକା ସଦୃଶ ।

ଆଉ ଗୋଟିଏ ଆଦର୍ଶ ଆପଣମାନେ ଦେଖିବା ହେଉନ୍ତୁ - କଥା କଥାକେ ଲୋକ ଧମକାନ୍ତି ''ଆରେ କିଛି ନ ହେବ, ମତେ ମୁଠାଏ ଭିକ ମିଳିବ ନାହିଁ, ମୁଁ ଭିକ ମୁଠାଏ ମାଗି ପେଟ ପୋଷି ପାରିବି ନାହିଁ ?'' ଭିକମଗାଟା କଣ ? ଥରେ ଭାବନ୍ତୁ ଦେଖି, ଭିକ ମାଗିବାର ଅର୍ଥ ସଂସାରର ଗଳଗ୍ରହ ହେବା ଓ ସମାଜର ଗଳଗ୍ରହ ହେବା । ମୁଁ ଜଣଙ୍କର ଗଳଗ୍ରହ ହୋଇଅଛି, ମୋର ଆଳସ୍ୟ କିମ୍ବା ଅନ୍ୟ କୌଣସି ଦୁର୍ଗୁଣ ଯୋଗୁଁ ଯେବେ ସେ ବାହାର କରି ଦେବାକୁ କହିବେ, ତେବେ ତାଙ୍କୁ ଧମକ ଦେବି ଯେ ମୁଁ ଦୁନିଆର ଗଳଗ୍ରହ ହେବି । କିନ୍ତୁ ଉନ୍ନତ ଜାତୀୟ ଲୋକଙ୍କ ଧମକାଣ ଏପରି ନୁହେଁ । ସେ କହିବ - ''କିଛି ନ ହେଲେ ମୁଁ ଦାଣ୍ଡରେ ମୂଲ ଲାଗି ପେଟ ପୋଷିବି ।'' ଏଥିରୁ ଉନ୍ନତ ଓ ଅନୁନ୍ନତ ଜାତି ମଧ୍ୟରେ ପାର୍ଥକ୍ୟ ଆମ୍ଭେମାନେ ଉତ୍ତମ ରୂପେ ହୃଦୟଙ୍ଗମ କରିପାରିବା । ଉନ୍ନତ ଜାତୀୟ ଲୋକର ଶେଷ ଭରସା ଆତ୍ମନିର୍ଭର । ଆମ୍ଭମାନଙ୍କ ଶେଷ ସୀମା ପରମୁଖାପେକ୍ଷିତା ।

ଆମ ଦେଶର ଯେଉଁ ଦିଗକୁ ଆମ୍ଭେମାନେ ଆଖି ଫେରାଇବା, ସେ ଦିଗରେ ଦେଖିବା ନୈରାଶ୍ୟପୂର୍ଣ୍ଣ ଭବିଷ୍ୟତ୍ । ଦେଖିବା ହେଉନ୍ତୁ, ଆମ ଦେଶର ରାଜା ମହାରାଜା ଓ ଧନକୁବେରମାନେ ହେଲେ ଆମର ପେଡ଼ିଲୁଗା । ଯେପରି କୌଣସି ନିମିତ୍ତ ପର୍ବ ବା ଯାନିଯାତ୍ରାରେ ଲୋକେ ପେଡ଼ିଲୁଗା ପିନ୍ଧି ପଦାକୁ ଆସନ୍ତି ଓ ତଦ୍ୱାରା ଜନସାଧାରଣରେ ଆପଣାର ମର୍ଯ୍ୟାଦା ଓ ଇଜ୍ଜତର ମୂଲ୍ୟ ଘୋଷଣା କରନ୍ତି, ସେହିପରି କୌଣସି କାର୍ଯ୍ୟରେ ଦାଣ୍ଡକୁ ବାହାରିଲା ବେଳେ ଆମେ ଆମ ଦେଶର ରାଜା ମହାରାଜା ଜମିଦାରମାନଙ୍କୁ ବିମାନରେ ବସାଇ ଘଣ୍ଟ ଝାଞ୍ଜ ବଜାଇ ପଦାକୁ ବାହାରୁଁ । କିନ୍ତୁ ଥରେ ଭଲା ଆପଣମାନେ ଆମ ରଜାମାନଙ୍କ ଆଦର୍ଶ ପ୍ରତି ଦୃଷ୍ଟି ଦିଅନ୍ତୁ । (ଏହିଠାରେ ଆପଣମାନଙ୍କୁ ଗୋଟିଏ କଥା ବୁଝାଇ ରଖିବା ଉଚିତ, ନୋଚେତ ବେକୁବିରେ ପଡ଼ିବାକୁ ହେବ । ପାଣିନି ଫିଟାଇ ଦେଲେ ଦେଖିବେ, ହଳୀଶା, ଲାଙ୍ଗଳୀଶା । ଆପଣ ବିଚାରିବେ ଏଗୁଡ଼ାକ ପଣ୍ଡିତିଆ ପାଠ, କିନ୍ତୁ ଦେଖିବା ହେବେ ସବୁଠାରେ ହଳୀଶା ଲାଙ୍ଗଳୀଶା ବିଦ୍ୟମାନ । ସରକାର ବାହାଦୁର ଛପନ କୋଟି ଜୀବଜନ୍ତୁଙ୍କ ପାଇଁ ଦଣ୍ଡବିଧି ଆଇନ କରିଅଛନ୍ତି, ସେଥିରେ ମଧ ହଳୀଶା ଲାଙ୍ଗଳୀଶା । ସେହିପରି ଆମ ଦେଶର ରାଜା ମହାରାଜା ଜମିଦାରଙ୍କ ମଧରେ ହଳୀଶା ଲାଙ୍ଗଳୀଶା ଅଛନ୍ତି । ତାଙ୍କୁ ଆଙ୍ଗୁଠି ଅଗରେ ଗଣତି କରାଯାଇପାରେ । ସେମାନଙ୍କ କଥା ଛାଡ଼ନ୍ତୁ !) ଅଧିକାଂଶ ସ୍ଥଳରେ ସୂର୍ଯ୍ୟଦେବ ତାଙ୍କ ଇଲାକାରେ ପଶିବା ଦୁଷ୍କର । ଚାଣକ୍ୟ ରାଜ୍ୟ ମଧକୁ କେବେ ହେଲେ ଯାଇ ନାହାନ୍ତି । ଦେବାର୍ଚ୍ଚନ, ମଣୋହି ବିଜେ, ଝଗଡ଼, ଶୂଳେଇ ବିଜେ ଇତ୍ୟାଦି ଉତ୍ସବ ସଙ୍ଗେ ସଙ୍ଗେ ପୁରୋହିତ, ଭଣ୍ଡାରି, ଶଙ୍ଖୁଳିଆ, ଗଉଡ଼ ଇତ୍ୟାଦି ପାଖ ଲୋକମାନଙ୍କ ଅମାନୁଷୀ ଲୀଳା ଓ ବ୍ୟସନ ପୂର୍ଣ୍ଣମାତ୍ରାରେ ବିରାଜିତ । ହାକିମମାନଙ୍କ ଆଗମନୋପଲକ୍ଷେ ଆତସବାଜି ଠାରୁ ସେମାନଙ୍କ ଆଶା ହ୍ରଦ, ନୈତିକ ଉଚ୍ଚତା, ଦେଶର ହିତକାମନା, ସ୍ୱାର୍ଥ ତ୍ୟାଗ ଏସବୁ ସେମାନଙ୍କ ପକ୍ଷେ ପଶୁଶାଳାରେ ବା ଯାଦୁଘରେ (museum) ସୁରକ୍ଷିତ ଦୁଷ୍ପ୍ରାପ୍ୟ ଜାନୁଆର । ଶୁଣିଲି ଦିନେ କୌଣସି ଜାତୀୟ ଅନୁଷ୍ଠାନରେ ଯୋଗ ଦେବା ପାଇଁ ଛାମୁକୁ ଖଣ୍ଡେ ଚିଟାଉ ଯାଉଥିଲା । ଛାମୁ ସେ ପତ୍ର ଚିରି (Waste paper basket) ଅଳିଆ ପାଚିଆରେ ପକାଇ ଦେଲେ । ପାଖ ଲୋକେ ବସି ହୁଳହୁଳି ଦେଲେ ଓ କହିଲେ; ଛାମୁ ଯାହା କଲେ ସବୁ ସୁନ୍ଦର । ଛାମୁ ଦଣ୍ଡକ ଭିତରେ ଓଡ଼ିଆ ଜାତିଟାକୁ ଖତଗଦାରେ ମାଡ଼ି ଦେବାକୁ କୁଣ୍ଠିତ ହେଲେ ନାହିଁ । ଏପରି ହାମ୍‌ବଡ଼ା ଛାମୁ ଉତ୍କଳରେ ସାଲୁ ସାଲୁ ହେଉ ଅଛନ୍ତି । ଯାହାର ପେଡ଼ିଲୁଗାଯାକ ଏପରି ପୋକଖିଆ ଓ ଚିରା, ସେ ଦେଶର ପଖାଳ କରା ଲୁଗା ଯେ ପୋରିହା ହେବ, ଏଥିରେ ଆଉ ଆଶ୍ଚର୍ଯ୍ୟର ବିଷୟ କଣ ଥାଇପାରେ ?

ତାପରେ ଧର୍ମ ଆଡ଼କୁ ନଜର ପକାନ୍ତୁ, ଓଡ଼ିଶା ଭାରତରେ ହିନ୍ଦୁ ଧର୍ମର କେନ୍ଦ୍ରସ୍ଥଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ନୀଳଚକ୍ରରେ ବାନା ଉଡୁଛି - ଆସ ପାପୀ, ତାପୀ, ରଙ୍କୀ, ଦୁଃଖୀ, ଆଣ୍ଠୁକୁଡ଼ା ସମସ୍ତେ ଥରେ କଳାଶ୍ରୀମୁଖ ଦର୍ଶନ କର, ସ୍ୱ ଦେହରେ

ସ୍ୱର୍ଗକୁ ଉଠିଯାଅ - ଏଠାରେ ଜାତି ନାହିଁ, ପଦମର୍ଯ୍ୟାଦା ନାହିଁ, ରାଜା ପ୍ରଜା ସମସ୍ତେ ସମାନ, ମହାପ୍ରସାଦ ସମସ୍ତଙ୍କ ଚକ୍ଷୁରେ ସମାନ । ଓଡ଼ିଶାର ଜଗନ୍ନାଥ କ୍ଷେତ୍ର ଭାରତର ସର୍ବପ୍ରଧାନ ତୀର୍ଥସ୍ଥଳ, ବିଲାତର ସୁଲେଖକ Mr. Nevinson ସାହେବ ଏହି Worship of equality (ସମତାର ପୂଜା) ଦେଖି ମୁଗ୍ଧ ହୋଇ ଯାଇଅଛନ୍ତି । ସେଦିନ ଉତ୍କଳ ସମ୍ମିଳନୀର ପଞ୍ଚମ ଅଧିବେଶନ ହୋଇଥିଲା । ରାତ୍ରରେ ଏମାର ମଠର ମହନ୍ତ ମହାରାଜ ସମ୍ମିଳନୀକୁ ସମାଗତ ହିନ୍ଦୁ ଅତିଥିମାନଙ୍କୁ ଜଗନ୍ନାଥଙ୍କ ବେଢ଼ା ମଧ୍ୟରେ ମହାପ୍ରସାଦ ସେବା କରିବା ପାଇଁ ନିମନ୍ତ୍ରଣ କରିଥିଲେ । ଘୃତାନ୍ନ, ଅମାଲୁ, କାନିକା, ତିଅଣରେ ସମସ୍ତଙ୍କୁ ଭସାଇ ଦେଲେ । ସମ୍ମିଳନୀର ସଭାପତି ସୁରଙ୍ଗୀର ରାଜାସାହେବଙ୍କ ଠାରୁ ଶାସନୀ ବ୍ରାହ୍ମଣ ଲଗାଏତ ରାମ ସାହୁ ତେଲୀ ପର୍ଯ୍ୟନ୍ତ ସମସ୍ତେ ଏକ ବେଢ଼ା ଭିତରେ ବସି ପଙ୍ଗତ ଲଗାଇ ଦେଲେ । ଏ ଦୃଶ୍ୟକୁ ତ ଦେଖଣାହାରି ଦରକାର, ସେଥିପାଇଁ ମୁଁ ଏ ଦୃଶ୍ୟଟା ମନପୂରା କରି ଦେଖିବି ବୋଲି ଗୋଟିଏ ଛକ ଜାଗା ଉଣ୍ଡି ଠିଆ ହୋଇଗଲି । ଏହି ସମୟରେ ସୁରଙ୍ଗୀର ରାଜାସାହେବ ମତେ କହିଲେ, ''ଆଜି ଦୃଶ୍ୟଟା ବଡ଼ ମନୋହର ହୋଇଅଛି । ଆଜି ଆମ୍ଭେମାନେ ସମସ୍ତ ପ୍ରଭେଦ ଭୁଲିଯାଇ ଏକ ପଙ୍ଗତରେ ବସିଅଛୁଁ । ଏ ଦୃଶ୍ୟ ଭାରି ଆଶାପ୍ରଦ ।'' ମୁଁ ମୁରୁକି ହସଟାଏ ହସି ଉତ୍ତର କଲି, ''ମହାରାଜ ! ଓଡ଼ିଶା ତମାମ ଘରେ ଘରେ ଠାକୁର ବାଡ଼ି ହେଲେ ଯାଇ ମନର ଓରମାନଟା ମେଣ୍ଟିବ । ଆଜି ପୁରୀରେ ସମ୍ମିଳନୀ ହେଲା ବୋଲି ସମସ୍ତେ ଭାଇ ଭାଇ ହୋଇ ଏକ ପଙ୍ଗତରେ ବସିଗଲୁଁ, କାଲି ଯେ ଯାହା ଘରକୁ ଯାଇ ପୁନର୍ମୂଷିକୋ ଭବ । ଲାଭ ମଧ୍ୟରେ ମହନ୍ତ ମହାରାଜାଙ୍କ ଭଣ୍ଡାର ଘରର କିୟଦଂଶ ଖାଲିହେଲା ମାତ୍ର ।'' ଏହା ଶୁଣି ରାଜା ବାହାଦୁର ହସିଲେ । ଜଗନ୍ନାଥଙ୍କ ପ୍ରସାଦରେ ବାରଣ ନାହିଁ । ବେଶ୍ କଥା । ଜଗନ୍ନାଥ ସର୍ବବ୍ୟାପୀ, ଏହା ମଧ୍ୟ ପୁରୁଣା କଥା । ତେବେ ଜଗନ୍ନାଥଙ୍କ ଚକଡ଼ା ଭିତରେ ଏ ବିଶ୍ୱଜନୀନତା ଆବଦ୍ଧ ହୋଇ ରହିଛି କିଆଁ ? ଏ ପ୍ରଶ୍ନର ମୀମାଂସା ନ ହେବା ପର୍ଯ୍ୟନ୍ତ ଓଡ଼ିଶାର ତଥା ଭାରତର ସର୍ବାଙ୍ଗୀଣ ଉନ୍ନତି ଆକାଶ କୁସୁମ ବା ପୋଥି ବାଇଗଣ, ଏଥିରେ ସନ୍ଦେହ ନାହିଁ । ଧର୍ମ ରାଜ୍ୟରେ ଓଡ଼ିଶାର ଜଗନ୍ନାଥ କ୍ଷେତ୍ର, ଯେଉଁ ଆଦର୍ଶ ଭାରତରେ ସ୍ଥାପନ କରିଥିଲା, ସେହି ଆଦର୍ଶକୁ ଆଧୁନିକ ଓଡ଼ିଆ ବଜାୟ ରଖିଥିଲେ, ଆଜି ଓଡ଼ିଆପୁଏ ଭାରତବର୍ଷଟାକୁ ବୁଢ଼ା ଆଙ୍ଗୁଠି ଉପରେ ରଖିଥାନ୍ତେ; କିନ୍ତୁ ଆଜି ଓଡ଼ିଶାର, ଓଡ଼ିଆଙ୍କର ଓ ଜଗନ୍ନାଥ ଠାକୁରଙ୍କର ଏବଂ ଠାକୁରରଜାଙ୍କର ଅବସ୍ଥା ଦେଖି ସବୁ ସ୍ୱପ୍ନ ଦୃଶ୍ୟ ବୋଲି ମନେହୁଏ ।

ମୋର କେହି କେହି ବନ୍ଧୁ ଭ୍ରୂକୁଞ୍ଚିତ କରି ମୋତେ କହନ୍ତି, ଘରକଥାଗୁଡ଼ାକ ପଦାରେ ପକାଇଲେ ଇଜ୍ଜତ ଯାଏ; କିନ୍ତୁ ଥରେ ଭାବି ଦେଖିବା ଉଚିତ ଯେ, ଜୀବନ୍ତ ମନୁଷ୍ୟକୁ ଆଶ୍ରୟ ଦେବା ପାଇଁ ଘରର ସୃଷ୍ଟି । ଯେତେବେଳେ ମନୁଷ୍ୟ ଦେହରୁ ଜୀବନ ଛାଡ଼ିଯାଏ, ସେତେବେଳେ ସେ ଶବକୁ ଅଧିକ କାଳଯାଏ ଘର ଭିତରେ ରଖିଲେ ପୂତିଗନ୍ଧ ମାତ୍ର

ସାର ହୁଏ । ସେଥିପାଇଁ ଗୃହକୁ ମନୁଷ୍ୟ ବାସୋପଯୋଗୀ କରିବାକୁ ହେଲେ ପ୍ରତିଦିନ ଅଳିଆ ସଫା କରିବା ଦରକାର, ମୂଷାଗାଡ଼ଗୁଡ଼ିକ ବନ୍ଦ କରିବା ଦରକାର ଓ ଶବ ଏବଂ ଦୁର୍ଗନ୍ଧଯୁକ୍ତ ପଦାର୍ଥଗୁଡ଼ିକ କାଢ଼ି ଫୋପାଡ଼ି ଦେବା ଦରକାର । ଏହା ନ କଲେ ଗୃହ, ମନୁଷ୍ୟ ବାସୋପଯୋଗୀ ନ ହୋଇ ମନୁଷ୍ୟର ଚିରଶତ୍ରୁ କୀଟ ସର୍ପାଦିଙ୍କର କ୍ରୀଡ଼ାକ୍ଷେତ୍ର ରୂପେ ପରିଣତ ହୁଏ । ଜାତିର ମାହାତ୍ମ୍ୟ ଗଲାଣି, ଅଛି କେବଳ ଚିତା, ପଇତା - ସେଗୁଡ଼ିକ ଘେନି ଆଉ କେତେ କାଳ ଡିଆଁଡେଇଁ କରିବାକୁ ଭଲ ଲାଗିବ ?

ତା'ପରେ ଦେଖନ୍ତୁ, ଓଡ଼ିଶାରେ ମନୁଷ୍ୟ ପଦବାଚ୍ୟ ଜୀବ କେତୋଟି ଅଛନ୍ତି । ସେଥିରେ ଗୋଟିଏ ତାଲିକା କରିବାକୁ ବସିଲେ ଦୁଆତ କଲମ ନ ଛୁଉଁଣୁ ହାତ କୋଲ ମାରିଯାଏ । ଓଡ଼ିଶା ସୀମା ମଧ୍ୟରୁ ବାହାରକୁ ଯାଇ ଭାରତବର୍ଷରେ ମନୁଷ୍ୟ ମଧ୍ୟରେ ସୁମାରି ହେବା ଭଳି ଲୋକ କେତେ ଜଣ ଅଛନ୍ତି ଓ କେତେ ଜଣ ହେବାର ଆଶା ଦେଖାଯାଉଅଛି, ଏକଥା ଥରେ ଭଲା ସମସ୍ତେ ଭାବନ୍ତୁ । ସେଦିନ ଆମ ଭଣ୍ଡାରରୁ କବି ରାଧାନାଥ ଉଭେଇ.ଗଲେ । ବାକି ରହିଲେ କେତେ ଜଣ ? ସେ ଦିଓଟି ଗୋଟିଏ ଖସିଗଲେ ବାକି ଓଡ଼ିଶାରେ ରହିବ କିଏ ? ଓଡ଼ିଶାର ଆଧୁନିକ ଇତିହାସ ଓ ସାହିତ୍ୟରୁ ଚନ୍ଦ୍ରଶେଖର, ରାଧାନାଥ, ଗୌରୀଶଙ୍କର, କବି ମଧୁସୂଦନ, ଫକୀରମୋହନ ଓ ମଧୁବାରିଷ୍ଟରଙ୍କୁ କାଢ଼ିନେଲେ ଇତିହାସର ଓ ସାହିତ୍ୟର ଯେଉଁ ଅଂଶ ରହିବ ସେଥିରେ ଆମର ଭବିଷ୍ୟଦ୍ ଉନ୍ନତିର ମୂଳଦୁଆ କିପରି ଭାବରେ ବନ୍ଧାଯିବ ତାହା ସମସ୍ତେ ଥରେ ଭାବନ୍ତୁ ଭଲା । ଚନ୍ଦ୍ରଶେଖର ଯାଇଥିଲେ, ରାଧାନାଥ ଗଲେ, ବାକି କେତେ ଜଣ ତାଟି କବାଟରୁ ଧଡ଼ା କାଢ଼ି ବେଳ ବୁଡ଼ିବାକୁ ଚାହିଁ ବସିଛନ୍ତି । ସେମାନେ ବାଟ ଖରଚ ପାଇଁ ଚୁଡ଼ା ଚାଉଳ ବାନ୍ଧି ସାରି ବସିଲେଣି । ତେବେ ସୁଦ୍ଧା ଆପଣା ବଳକୁ ଚାହିଁ ଘରଠାରୁ ବାହାର ପର୍ଯ୍ୟନ୍ତ ଯାହା ହାବୁଡ଼ରେ ପଡୁଅଛି ତାକୁ ଓଳାଇ ପକାଉ ଅଛନ୍ତି; କିନ୍ତୁ ଆଉ କେତେ ଦିନ ଓଳାଇବେ ?

ସେଦିନ ସରକାର ବାହାଦୁର ଓଡ଼ିଶାର ରେଭେନ୍ସା କଲେଜରୁ ଆଇନ ପଢ଼ିବା କ୍ଲାସ ଉଠାଇ ଦେଲେ । ସରକାରଙ୍କ ବେଅନୁଗ୍ରହ ହେଲେ ଆମର ଦୁର୍ଭାଗ୍ୟ, ଏଥିରେ ଆଉ ସନ୍ଦେହ ନାହିଁ । ଆଇନ କ୍ଲାସ ପୁନର୍ବାର ବସାଇବା ପାଇଁ ସମ୍ମିଳନୀ ପକ୍ଷରୁ ସରକାରଙ୍କୁ ପ୍ରାର୍ଥନା କରାଯିବ ବୋଲି ସେ ଦିନ ସ୍ଥିର ହେଲା । ୧୦ ଜଣଙ୍କ ପ୍ରସ୍ତାବ, ସେଥିରେ ତୁମ ଆମ ଭଳି ନଗଣ୍ୟ ଲୋକଙ୍କର ବାଧା ଦେବାର ଅକ୍ତିଆର ନାହିଁ । ଅଧିକାଂଶଙ୍କ ମତକୁ ମୋ ମତ ବୋଲି ଗ୍ରହଣ କରିବାକୁ ହେବ । ତା ନ ହେଲେ ଜାତୀୟ ଉନ୍ନତି ଅସମ୍ଭବ । ପ୍ରଥମେ ପ୍ରସ୍ତାବ ଦେଲାବେଳେ ମୁଁ କହିଥିଲି, ''ଈଶ୍ୱର ଯାହା କରନ୍ତି, ଜୀବର ଭଲ ପାଇଁ କରନ୍ତି ।'' ଓଡ଼ିଶାର ଭବିଷ୍ୟଦ୍ ଉନ୍ନତି ପାଇଁ ବୋଧହୁଏ ଈଶ୍ୱର ଓଡ଼ିଶାରୁ ଆଇନ୍ କ୍ଲାସ ଉଠାଇ ଦେଇ ଅଛନ୍ତି । ଜଣେ ନଛୋଡ଼ବନ୍ଧା ବନ୍ଧୁ ଅତି ଜିଗର କରି ମୋତେ ଧଇଲେ । ଏପରି ମତ ପୋଷଣ କରିବାର କାରଣ କଣ ? କଟକରୁ ଆଇନ କ୍ଲାସ ଉଠିଗଲେ ଓଡ଼ିଆ ଓକିଲଙ୍କ ସଂଖ୍ୟା କମିଯିବ, ଓଡ଼ିଆ ମୁନ୍ସଫ୍ ଶବ୍ଦ

ଚାକିରିର ଅଭିଧାନରୁ ଉଠିଯିବ, ଓଡ଼ିଶାର ପଇସାଗୁଡ଼ାକ ରେଳ ଯୋଗେ ଉତ୍ତରାଭିମୁଖ ହୋଇ ଯିବ, ଓଡ଼ିଶାଟା ଖଡ଼େଦମ୍ ରସାତଳକୁ ଗଡ଼ିଯିବ । ମୁଁ ଶୁଣି ଶୁଣି କହିଲି, "କାହିଁକି ? ଆମ ଯୁବକମାନେ କଲିକତାରେ ଆଇନ ପଢ଼ି ପାସ୍ କରି ଓକିଲ ହୋଇ ଆସିବେ ।" ସେ କହିଲେ, "କଲିକତାରେ ପଢ଼ି ଖରଚ ଯୋଗାଇପାରିବାର କ୍ଷମତା କେତେ ଜଣଙ୍କର ଅଛି ? ମୁଁ ଉତ୍ତର କଲି - ପଢ଼ିଲା ବେଳେ କଲିକତାରେ ପଢ଼ିବା ଖରଚ ଯୋଗାଇ ପାରିବାର ସଙ୍ଗତି ଯେଉଁମାନଙ୍କର ନାହିଁ, ସେମାନଙ୍କ ପକ୍ଷରେ ଓକିଲାତି ବ୍ୟବସାୟ ଅବଲମ୍ବନ କରିବା ଉଚିତ ନୁହେଁ ।" ବନ୍ଧୁ ମୁରୁକି ହସଟାଏ ହସି କହିଲେ, "ତୁମେ ବ୍ୟବସାୟ କ୍ଷେତ୍ରରେ ପଶିଲଣି ବୋଲି ଆଗକୁ ଯେଉଁ ଯୁବକମାନେ ଓକିଲ ହୋଇ ତୁମ ଅର୍ଥାଗମ ପଥରେ କଣ୍ଟକ ହେବେ, ସେମାନଙ୍କୁ ପୂର୍ବରୁ ଓପାଡ଼ିବାର ଉପାୟ କରୁଅଛ ପରା ?" ମୁଁ ଏ କଥା ଶୁଣି ମନେ ମନେ ବିଚାରିଲି, ଓଡ଼ିଶା ପଇସା ପ୍ରତି ବନ୍ଧୁଙ୍କର ଭାରି ମମତା, ଏଥିରେ ସନ୍ଦେହ ନାହିଁ; କିନ୍ତୁ ଓଡ଼ିଶାର ମଙ୍ଗଳ ପାଇଁ ତହିଁରୁ ଅଧେ ନଜର ଥିଲେ ବନ୍ଧୁ ମୋ ଆଡ଼କୁ ଏଡ଼େ ବାଙ୍କ ଚାହାଣିଟାଏ ପକାଇ ନ ଥା'ନ୍ତେ । ଯାହାଙ୍କର ପ୍ରାଥମିକ ଅନ୍ନସଂସ୍ଥାନର ଉପାୟ ନାହିଁ, ସେମାନେ ଓକିଲାତିରେ ପଶି ଆଜି ବ୍ୟବସାୟକୁ ଗୋଟିଏ ଜଘନ୍ୟ ନାରକୀୟ କ୍ରୀଡ଼ା-ଭୂମିରେ ପରିଣତ କରିଅଛନ୍ତି ଓ 'ପେଟ ପୋଷ ନାହିଁ ଦୋଷ' ନୀତିକୁ ବ୍ୟବସାୟରେ ଚଳାଉ ଅଛନ୍ତି । ମୋର କ୍ଷୁଦ୍ର ନଗଣ୍ୟ ବ୍ୟକ୍ତିଗତ ଅନୁଭୂତିରୁ ବୁଝି ପାରିଅଛି, (ମୋ ଭଳି) ଚୁଲିରେ ପାଣିହାଣ୍ଡି ବସାଇଦେଇ ଚାଉଳ ଗଣ୍ଡାଏ ଖୋଜିବା ପାଇଁ ଯେ ଅଦାଲତକୁ ଆସନ୍ତି, ତାଙ୍କ ଦ୍ୱାରା ଦେଶର ଓ ବ୍ୟବସାୟର କଦାପି ମଙ୍ଗଳ ହେବ ନାହିଁ । ବନ୍ଧନୀ ମଧ୍ୟସ୍ଥ ଦୁଇଟା ଶବ୍ଦ ଛାଡ଼ିଗଲେ କେତେକ ବନ୍ଧୁ ଭାରି ବିରକ୍ତ ହୋଇଯିବେ । ତା ପରେ ଦେଖନ୍ତୁ, ଦେଶରେ ଓକିଲଙ୍କ ସଂଖ୍ୟା ବେଶି ହେଲେ ଦେଶଟା ଏକ୍‌ଦମ୍ ବାଇଶ ପାହାଚରେ ଗଡ଼ଗଡ଼ାଇବ ନାହିଁ । ଆମ ଦେଶ ପାଇଁ କେତେଟା ତିଆରି ମନୁଷ୍ୟ ପଦବାଚ୍ୟ ଜୀବ ଦରକାର । କିନ୍ତୁ ସେ ଜୀବ ତିଆରି ହେବାର ଉପାଦାନ ଓଡ଼ିଶାରେ ନାହିଁ । ଆମ୍ଭେମାନେ ସମସ୍ତେ କୂପମଣ୍ଡୂକ । ଆମ ଦେଶରେ ଯେତେଗୋଟି ଲୋକ ଉପରକୁ ଉଠିଅଛନ୍ତି (ପାଠକେ ମନେ କରିବେ ନାହିଁ ଯେ ଉଠିଛନ୍ତି କଥାଟାର ଅର୍ଥ ନିଜର ଦୋତାଲା ବା ତିନିତାଲା କୋଠାର ଛାତ ଉପରକୁ ଉଠି ସାନ୍ଧ୍ୟ ସମୀରଣ ସେବନ କରୁଅଛନ୍ତି) ସେମାନେ ସମସ୍ତେ ଓଡ଼ିଶାର ବାହାରେ ଉନ୍ନତ ଆଦର୍ଶ ଦେଖିଅଛନ୍ତି ଓ ଉନ୍ନତ ଲୋକମାନଙ୍କ ସଂଘର୍ଷଣରେ ଉନ୍ନତ ଭାବ ପାଇଅଛନ୍ତି । କିନ୍ତୁ ଯେଉଁଗୁଡ଼ିକ ଓଡ଼ିଶା କୂପରେ ପଶିଛନ୍ତି, ସେମାନଙ୍କର ମୋ ସ୍ତ୍ରୀ, ମୋ ପୁଅ, ମୋ ଅଳଙ୍କାର, ମୋ କୋଠା, ମୋ ସମ୍ପତ୍ତି ଏହାଛଡ଼ା ଅନ୍ୟ ଆରାଧ୍ୟ ଦେବତା ନାହାନ୍ତି । ଏପରି ଲୋକଙ୍କ ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଚାଉଳ ମହର୍ଗ ହେବା ଛଡ଼ା ଦେଶର ଯେ ଆଉ କି ଉପକାର ହେବ, ତାହା ମୋର କ୍ଷୁଦ୍ର ବୁଦ୍ଧିକୁ ଦ୍ରୁଉଁ ନାହିଁ ।

ତା ପରେ ଦେଖନ୍ତୁ, ଓଡ଼ିଆ ଭାରତୀୟ ଅନ୍ୟାନ୍ୟ ଜାତିମାନଙ୍କ ସଙ୍ଗେ ପଟ ପକାଇବାକୁ ଯୋଗ୍ୟ ହେଲେଣି କି ନାହିଁ । ଲୋକେ କହନ୍ତି, "ଆମ ବାପାଙ୍କ ଅମଳରେ ଅଣାକରେ

ଘିଅ ପରଷା ହେଉଥିଲା ।'' କିନ୍ତୁ ଏ ବୋଲି ସଭ୍ୟ ଜଗତ କେତେଦିନ ଆମକୁ ସାହାଯ୍ୟ କରିବ ? ଏ ବୋଲିଟି ଶୁଣିଲା ମାତ୍ରକେ ଶ୍ରୋତା ପଚାରିବେ, ''ଏବେ ?'' ଏହି ପ୍ରଶ୍ନର ସନ୍ତୋଷଜନକ ଉତ୍ତର ନ ଦେବା ପର୍ଯ୍ୟନ୍ତ 'ଯଥୈବାସ୍ତେ ତଥୈ ବାସ୍ତାଂ' ।

ତା ପରେ ବିଚାର କରି ଦେଖନ୍ତୁ, ଓଡ଼ିଶାର ଶିକ୍ଷିତ ସମାଜକୁ 'ହାମ୍ ବଡ଼ା' ନୀତି ପୂର୍ଣ୍ଣ ଭାବରେ ଗ୍ରାସ କରି ରହିଅଛି । ଯେ ପୋଖରୀଟିଏ ଖୋଳାଇ ଅଛି, ସେ କହେ ମୁଁ ବଡ଼, ଯେ କୂଅଟିଏ ଖୋଳାଇଛି ସେ କହେ ମୁଁ ବଡ଼ । ଯେ କୂଅ ପୋଖରୀ ଖୋଳାଇବ ବୋଲି ଥରେ ମାତ୍ର ଭାବିଛି- ସେ କହେ ମୁଁ ବଡ଼ । ସମସ୍ତେ ନିଜେ ନିଜେ ଆପଣା ଆପଣା ପାଇଁ ଗୋଟିଏ ଗୋଟିଏ ସୁନାର ସିଂହାସନ ତିଆରି ହେବା ପାଇଁ ବଣିଆକୁ ବଇନା ଦେଇ ବସିଅଛନ୍ତି । ଏତେ ସିଂହାସନ ରଖିବା ପାଇଁ ଓଡ଼ିଶାରେ ନାଲାଏକ ପଡ଼ିଆର ପରିମାଣ କେତେ, ତାହା ଭଲା ସିଂହାସନ ତିଆରି ପୂର୍ବରୁ କେତେଜଣ ଭାବି ଅଛନ୍ତି ? ଯେଉଁ ଜାତିର ଲୋକେ ବ୍ୟକ୍ତିଗତ ପ୍ରାଧାନ୍ୟକୁ ଜାତୀୟତା ମଧ୍ୟରେ ବୁଡ଼ାଇବାକୁ ଶିଖି ନାହାନ୍ତି, ସେ ଜାତି ଯେବେ ସ୍ୱର୍ଗକୁ ଯିବେ, ତେବେ ସୃଷ୍ଟିରେ ରସାତଳ କାହା ପାଇଁ ?

ଏଥିପାଇଁ କହୁଥିଲି, ଓଡ଼ିଶାଟା ସୃଷ୍ଟିଛଡ଼ା ଓ ଓଡ଼ିଶାର ହାଓଆ ମଧ୍ୟ ସୃଷ୍ଟିଛଡ଼ା ଏବଂ ଓଡ଼ିଶା ଯାକ 'କୋଦଣ୍ଡା-ନିଶାପ' - ଆଜି ଏତିକି ।

ଉତ୍କଳ ସାହିତ୍ୟ/୧୧ଶ ଭାଗ/୧୧ଶ ସଂଖ୍ୟା/୧୩୧୫ ସାଲ ।

## ।। କୋଡ଼ିଏ ।।

ଜିଲେ-କଟକ, ଗେର୍ଦ-ଓଡ଼ିଶା, ସବ୍‌ଡିଭିଜନ-ଯାଜପୁର, ପୁଲିସ ଷ୍ଟେସନ ଧର୍ମଶାଳା, ସବ୍-ରେଜିଷ୍ଟର-ଯାଜପୁର ଇଲାକାଧୀନ, ପ୍ରଗନେ ଅଲତି, ମୌଜେ ପାଟପୁର, ସାକିନ ସିଦ୍ଧମଠରେ ମୋର ଜଣେ 'ମେହେରବାନ୍ ଦୋସ୍ତାନ୍' ସ୍ଥାନୀୟ ବ୍ୟକ୍ତି ମହନ୍ତ ବଳରାମ ଦାସ ଗୋସ୍ୱାମୀ, ସେବାଏତ ମାରଫତ୍‌ଦାର ଶ୍ରୀ ବଳଦେବଜୀଉ ଠାକୁର, ସଶରୀରରେ ବିଦ୍ୟମାନ । ଗତ ଚନ୍ଦନଯାତ୍ରା ସମୟରେ ମହନ୍ତ ମହାରାଜଙ୍କ ସାଗ୍ରହ ନିମନ୍ତ୍ରଣ ଓ ସାର୍ଥକ ଆହ୍ୱାନକୁ ଏଡ଼ି ନ ପାରି ମୁଁ ସିଦ୍ଧ ମଠକୁ ଯାଇଥିଲି । ମଠଟି ସଦାବ୍ରତୀ ମଠ । ଦିବାରାତ୍ର ଅତିଥି ଅଭ୍ୟାଗତଙ୍କପାଇଁ ମଠର ଦ୍ୱାର ଖୋଲା ଥାଏ । ମହନ୍ତ ମହାରାଜ ମଧ୍ୟ ଟିକିଏ ଖୋଲା ଧରଣର ମନୁଷ୍ୟ । କେତେ ଲୋକ କହନ୍ତି, 'ମହନ୍ତ ପାଗଳ' । ମହନ୍ତ ମଧ୍ୟ କହନ୍ତି 'ମୁଁ ପାଗଳ' । ଦୁନିଆର ସଂଜ୍ଞା ଓ ମହନ୍ତଙ୍କ ସଂଜ୍ଞା ମଧ୍ୟରେ ଅବଶ୍ୟ ତଫାତ୍ ଅଛି । ଦିନେ ବିଶ୍ୱସ୍ତ ଭାବରେ କଥାଭାଷା ହେଉଁ ହେଉଁ ମହନ୍ତ ମହାରାଜ କହି ପକାଇଲେ, ''ଦୁନିଆ ଜାଣନ୍ତି - ନ ଜାଣି ନ ଶୁଣି ବଳିଆ ବାୟା, ମୁଁ ନିଜେ ଜାଣେ - ଜାଣିଶୁଣି କରି ବଳିଆ ବାୟା ।'' ଏ କଥାଟା ଏକା ମୋ ମନକୁ ଭାରି ଲାଗିଗଲା । ସେହିଦିନ ଠାରୁ ମହନ୍ତ ମହାରାଜଙ୍କ ସଙ୍ଗେ ପ୍ରୀତିଟା ଆହୁରି ପଜେଇ ନେଲି । ମନେ ମନେ ଭାବିଲି,

ଏପରି ପାଗଳାମିରେ ଅବଶ୍ୟ କିଛି ବିଶେଷତ୍ୱ ମଧ୍ୟରେ ଶିକ୍ଷଣୀୟ ଅନେକ ଜିନିଷ ଅଛି । ପାଗଳମାନଙ୍କ ପ୍ରତି ମୋର ବାଲ୍ୟକାଳରୁ ଭକ୍ତି । ୫-୭ ବର୍ଷ ପୂର୍ବେ ଜଣେ ପାଗଳ ମସ୍ତରାମ, ମୋ ଜୀବନଟାକୁ ପ୍ରେମମୟ କରି ପାରିଥିଲା । ଏଥିରେ କବି କହିଅଛନ୍ତି - "There is pleasure in madness which none but madness know" ମୋ ମତରେ ଏହି ସୁଖ ହିଁ ମନୁଷ୍ୟ ଜୀବନରେ ଶେଷ ସୁଖ । ପାଠକମାନଙ୍କ ମଧ୍ୟରୁ ଶରୀରଭେଦ ଭଜନ ଚଉତିଶା ସଙ୍ଗେ ଅନେକଙ୍କର ପରିଚୟ ଥିବ । ଆଧ୍ୟାତ୍ମିକ ଓ ଭକ୍ତିରସାତ୍ମକ ଭଜନଗୁଡ଼ିକ 'ବାଇମନ' ଉଦ୍ଦେଶ୍ୟରେ ଉତ୍ସୃଷ୍ଟ । ସେ ଯାହାହେଉ ବାୟା ମହନ୍ତଙ୍କ ଅତିଥିଚର୍ଯ୍ୟାରେ ୨।୩ ଦିନ କଟାଇ ଚନ୍ଦନଯାତ୍ରାରେ ମନପ୍ରାଣ ଢାଳି ଯୋଗ ଦେଲୁଁ । ମହନ୍ତଙ୍କ ଆମନ୍ତ୍ରଣ କ୍ରମେ ଦର୍ପଣ କିଲାର Wards manager ଶ୍ରୀଯୁକ୍ତ ବାବୁ କୃଷ୍ଣଚନ୍ଦ୍ର ନନ୍ଦ, ଧର୍ମଶାଳା ପୁଲିସ ସବ୍‌ଇନିସ୍‌ପେକ୍ଟର, ଖଏରା ଇଲାକାର ବାରିକ ମିସ୍ତ୍ରି, ସବ୍‌ଓଭରସିଅରବାବୁ ଇତ୍ୟାଦି କେତେଗୁଡ଼ିଏ ଭଦ୍ରଲୋକ ମଧ୍ୟ ସେଠାରେ ସମ୍ମିଳିତ ହୋଇଥିଲେ । ୨।୩ ଦିନ ବେଶ ଆମୋଦ ଆନନ୍ଦରେ କଟିଗଲା । ଆମ୍ଭେମାନେ ପହୁଞ୍ଚିବାର ଦିନକ ପୂର୍ବରୁ ମହନ୍ତ ମହାରାଜଙ୍କ ସ୍ୱଜାୟାଙ୍କ ଉଦରରୁ ଗୋଟିଏ ପୁତ୍ର ସନ୍ତାନ ଜାତ ହୋଇଥିଲା । ପାଠକମାନେ ସମ୍ବାଦଟି ଶୁଣି ହଠାତ୍ ଚମକି ଉଠିବେ ନାହିଁ । ମହନ୍ତ ମହାରାଜ, ସେଥିରେ ଫେର ସ୍ୱଜାୟା କଣ । ଆଚ୍ଛା, ମୁଁ ଆପଣମାନଙ୍କୁ ବିନୀତ ଭାବରେ ପଚାରୁଛି, ଆପଣମାନେ ଶ୍ରୀଯୁକ୍ତ ରାମଶଙ୍କରବାବୁଙ୍କ ଯୁଗଧର୍ମ ନାଟକ ପଢ଼ିଅଛନ୍ତି ତ ? ଯୁଗଧର୍ମର ମହନ୍ତ ଉଦ୍ଧବ ଦାସ ସ୍ୱଦେହରେ ଦେଶର ମଠମାନଙ୍କରେ ଆବିର୍ଭୂତ ହୋଇ ଯେଉଁ ରାକ୍ଷସୀ ଲୀଳାର ପରାକାଷ୍ଠା ଦେଖାଉ ଅଛନ୍ତି ଓ କେତେ ଶାନ୍ତି କୁଟୀରରେ ଅଗ୍ନି ଲଗାଇ ପୋଡ଼ି ଦେଉଅଛନ୍ତି, ତାହା ଅପେକ୍ଷା ଗୃହୀ ମହନ୍ତ ଶତଗୁଣରେ ଓ ସହସ୍ରଗୁଣରେ ଭଲ ନୁହନ୍ତି କି ? ଏ ପ୍ରଶ୍ନର ଉତ୍ତର ପାଇବା ପାଇଁ ଗେର୍ଦ ଓଡ଼ିଶା ମଧ୍ୟରେ ବିରାଜମାନ ଥିବା ମଠମାନଙ୍କୁ ଥରେ ତଦାରଖ କରନ୍ତୁ । ଏ କଥାଟା ଅବାନ୍ତର କଥା - ଏ ଯୁକ୍ତିଟା ଆମର ଏ ମହନ୍ତଙ୍କ ପ୍ରତି ଖଟିବ ନାହିଁ । କାରଣ ଏ ମହନ୍ତ ଗୃହୀ ବୈଷ୍ଣବ ନୁହନ୍ତି ବା ନିହଙ୍ଗୀ ବାବାଜି ନୁହନ୍ତି । ମହନ୍ତ ବଳରାମ ଦାସ ଆମ୍ଭମାନଙ୍କ ଭଳି ଗୃହୀ ଶାକ୍ତ ବ୍ରାହ୍ମଣ । ଏହାଙ୍କର ପୂର୍ବପୁରୁଷମାନେ ସିଦ୍ଧ ବଳଦେବଙ୍କୁ ପ୍ରତିଷ୍ଠା କରି ଅନେକ ରାଜା ମହାରାଜାମାନଙ୍କଠାରୁ ସଦାବ୍ରତ ନିମନ୍ତେ ଏ ମଠତଳେ କେତେଗୁଡ଼ିଏ ଲାଖରାଜି ଦେବୋତ୍ତର ସମ୍ପତ୍ତି ଖଞ୍ଜା କରାଇଥିଲେ । ସେହିଦିନଠାରୁ ଆଜିପର୍ଯ୍ୟନ୍ତ ସିଦ୍ଧ ବଳଦେବ ସେବାୟତମାନେ ମହନ୍ତ ନାମରେ ଅଭିହିତ ହୋଇ ଆସୁଅଛନ୍ତି । ମଠଠାରେ ଠାକୁର ଅଛନ୍ତି । ସେଠାରେ ତାଙ୍କର ଦୈନିକ ନୀତି ହୁଏ । ମଠଠାରୁ କିଛି ଦୂରରେ ମହନ୍ତଙ୍କର ପାରିବାରିକ ଗୃହ ଅବସ୍ଥିତ । ସେଠାରେ ମହନ୍ତଙ୍କର ଏ ନୈପାତନିକ ସମ୍ବନ୍ଧ ଦେଖି ମୁଁ ସେଦିନ ମହନ୍ତ ମହାରାଜଙ୍କୁ କହିଦେଲି "ମହାରାଜ ! ସଦାବ୍ରତ ସମ୍ପତ୍ତିର ହିସାବ ପତ୍ର ତଦାରଖ ପାଇଁ ବର୍ତ୍ତମାନ ସରକାର ବାହାଦୁର ଏକ କଡ଼ା ଆଇନର ପାଣ୍ଡୁଲିପି ପ୍ରସ୍ତୁତ

କରିଅଛନ୍ତି । ସେହି ହିସାବ ମଧ୍ୟରେ ପରିବାରଙ୍କ ଆଭରଣ ଓ ଆବରଣ କେଉଁ ହେଡ଼ିଙ୍ଗରେ ପଡ଼ିବ ?'' ମହନ୍ତ ମହାରାଜ ମୋ ପ୍ରଶ୍ନକୁ ଚାହିଁ ତାଙ୍କର ସ୍ୱଭାବସିଦ୍ଧ ବାତୁଳତା ପୂର୍ଣ୍ଣ ଉତ୍ତରଟିଏ ଦେଲେ । ''ନିତାନ୍ତ ନ ଚଳିଲା ବେଳକୁ ଏଣିକି ଆମ ପରିବାର ଚୁଡ଼ିକରି ପାଣି ପିଇବାକୁ ଶିଖିବେ ।'' ସେ ଯାହାହେଉ ଏ ସବୁ ବାଜେକଥା - ଏ ସବୁ କଥା ସଙ୍ଗେ ଉପସ୍ଥିତ ପ୍ରସଙ୍ଗର କୌଣସି ସମ୍ବନ୍ଧ ନାହିଁ । ପାଠକମାନେ ବିରକ୍ତ ହେବେ ନାହିଁ । ଅଧାକାଣ୍ଡିଆ, ଦରପାଚିଲା ଲେଖକମାନଙ୍କ ପିଛା ଧଇଲେ ମନସ୍ତାପ ମାତ୍ର ସାର ହୁଏ । ଆପଣମାନେ କୃଷ୍ଣଲୀଳା, ରାମଲୀଳା ନାଚ ଦେଖିଥିବେ । ଅସଲ କାର୍ଯ୍ୟ ଆରମ୍ଭ ହେବା ପୂର୍ବରୁ ଅର୍ଥାତ୍ 'ଡାରେ ଡାରେ' 'ଧିନ୍ଦା ତା ଧିନ୍ଦା' ଇତ୍ୟାଦି ଆଳାପ କରୁ କରୁ ରାତି ଭୋର । ସେହିପରି ମୋ ପରି ଅଧାଡୁଆ ଲେଖକମାନେ ପାଗ ବାନ୍ଧୁ ବାନ୍ଧୁ କଚେରି ବରଖାସ୍ତ । ଅସଲ କଥା କହିବା ପୂର୍ବରୁ ଅବତାରଣା ଓ ଆଳାପନା କରୁ କରୁ ଆମ ମାଲ ମସଲାରୁ ଚଉଦପଣ ଖତମ ହୋଇ ସାରିଥାଏ । ଅସଲ କଥା ବାହାରିଲା ବେଳକୁ ମନ ଓ ମୁନ ଶୁଖିଲା କାଠ ଭଳିଆ ନୀରସ ଓ ଦରଜଗମ ହୋଇ ଯାଇଥାଏ । ଆମ୍ଭମାନଙ୍କ ସଙ୍ଗେ ଆପଣମାନଙ୍କୁ ଭାରି ତାକତରକରେ ଚଳିବାକୁ ହେବ । କାରଣ ପାଠ ଡାକୁଚି, 'କବି ତୁଣ୍ଡ, ମେଣ୍ଢା ମୁଣ୍ଡ,' କବି ତୁଣ୍ଡ ମେଣ୍ଢା ମୁଣ୍ଡ ମାତି ଉଠିଲେ କାହାକୁ ମାନନ୍ତି ନାହିଁ । ଯେବେ ଆମ ଲେଖାକୁ ନ ଶୁଣିବେ, ତାହା ହେଲେ ଆମେ ବିଲ୍ ଫଏଲ୍ ଆପଣମାନଙ୍କୁ ଅରସିକ ବା ବଦରସିକ ଶ୍ରେଣୀରେ ଭର୍ତ୍ତି କରିଦେବୁଁ । ଯେବେ ଶୁଣିବେ, ତେବେ ବିରକ୍ତି ମାତ୍ର ସାର ହେବ । ସେଥିପାଇଁ ମୋର ଜଣେ ବନ୍ଧୁ କହିଥିଲେ, ''ଲେଖକମାନଙ୍କ ପ୍ରତି ମୋର ଭକ୍ତି ନାହିଁ; କିନ୍ତୁ ସେମାନଙ୍କୁ ମୁଁ ପ୍ରାଣପଣେ ଭୟ କରେ ।'' ଛାଡ଼ ସେ କଥା - ବର୍ତ୍ତମାନ ଅପ୍ରାସଙ୍ଗିକ କଥାଗୁଡ଼ିଏ ବକି ଆପଣମାନଙ୍କ ମୂଲ୍ୟବାନ୍ ସମୟ ନଷ୍ଟ କରିବା ଆମ୍ଭମାନଙ୍କ ନିୟମବିରୁଦ୍ଧ । ସେଥିପାଇଁ ବର୍ତ୍ତମାନ ପ୍ରବନ୍ଧର ମୂଳକଥା ଅର୍ଥାତ୍ ପାଟପୁର ସିଦ୍ଧମଠର ଚନ୍ଦନଯାତ୍ରା ମଜଲିସକୁ ଚାଲନ୍ତୁ । ମଜଲିସଠାରେ ବିମାନରେ ବଳଦେବଜୀଉ ବିରାଜମାନ । ଠାକୁରଙ୍କ ସାମନାରେ ନୃତ୍ୟଗୀତାଦି ଦେଖିବା ପାଇଁ ଆମ୍ଭେମାନେ କେତେକ ବନ୍ଧୁ ଏକତ୍ର ଉପବିଷ୍ଟ ହୋଇଅଛୁଁ । ଏହି ସମୟରେ ଗୋଟିଏ ସୁଆଙ୍ଗ ବାହାରିଲା । ବିଦୂଷକ ଗୀତ ବୋଲି ବୋଲି ଆସି ସଭା ମଧ୍ୟରେ ଉପସ୍ଥିତ - ''କି ନ କଲାରେ ପନ୍ଦର ଅଙ୍କର ବଢ଼ି, ଭସାଇ ନେଲା ମୋ ଘସି ପଦାଡ଼ି ।'' ଚାଲିଗଲା ତା' ଉପରେ ମରୁଡ଼ି, ବାଡ଼ି, ବୃଢ଼ୀ, ରଡ଼ି, ଘଡ଼ଘଡ଼ି ଇତ୍ୟାଦି । ଗୀତଟି ଶୁଣି ମୋର ଅନେକ କଥା ମନେ ପଡ଼ିଗଲା । କିଛି ଦିନ ପୂର୍ବେ ଜଣେ ଉଚ୍ଚପଦସ୍ଥ ହାକିମଙ୍କ ସଙ୍ଗେ କଥାଭାଷା ହେଉ ହେଉ ମୁଁ ପଚାରିଲି, ''ହଜୁର ! ଆପଣମାନେ ଆମ୍ଭମାନଙ୍କର ତ ଗୁହାରି କିଛି ଶୁଣନ୍ତି ନାହିଁ । ଆମ୍ଭେମାନେ ବୃଥାରେ ସମ୍ବାଦପତ୍ରରେ ଆନ୍ଦୋଳନ କରୁଅଛୁଁ, ବୃଥାରେ ସଭାସମିତି କରି ପ୍ରସ୍ତାବ ଧାର୍ଯ୍ୟ କରୁଅଛୁଁ । କିନ୍ତୁ ଆପଣମାନେ ଆମ୍ଭମାନଙ୍କ ଅଭିଯୋଗରେ କର୍ଣ୍ଣପାତ କରନ୍ତି ନାହିଁ କିଆଁ ?'' ହାକିମ ଉତ୍ତର କଲେ, 'ଗୋପାଳବାବୁ ! ଆପଣମାନେ ଏଠାରେ ବିବ୍

ବଜାର ଭିତରେ ଚଉକିରେ ବସି ଯେଉଁ (Resolution) ପ୍ରସ୍ତାବମାନ ପାସ୍ କରନ୍ତି ଓ ଖବରକାଗଜଗୁଡ଼ାକରେ ଯାହା ଲେଖିପକାନ୍ତି, ସେସବୁ Popular Voice ଅର୍ଥାତ୍ ଜନସାଧାରଣଙ୍କ ମତ ନୁହେଁ । ଜନସାଧାରଣଙ୍କ ଆନ୍ତରିକ ମତ ବା ଖାଣ୍ଟି ଅଭିଯୋଗର ପ୍ରତିକାର କରିବା ପାଇଁ ସରକାର ସର୍ବଦା ଇଚ୍ଛୁକ, କିନ୍ତୁ ଆଜିକାଲିର ଶିକ୍ଷିତ ଲୋକମାନଙ୍କ ଆନ୍ଦୋଳନର ମୂଳରେ ଅପାମର ସାଧାରଣଙ୍କର ସହାନୁଭୂତି ନାହିଁ, ସେଥିପାଇଁ ଆମ୍ଭେମାନେ ତତ୍‌ପ୍ରତି ଭ୍ରୂକ୍ଷେପ ନାହିଁ ।' ପାଟପୁରଠାରେ ଏ ଗୀତଟି ଶୁଣି ହାକିମଙ୍କର ପୂର୍ବୋକ୍ତ ଛଳନାଟି ମୋ ମନେ ପଡ଼ିଗଲା । ଏହି ସମୟରେ ସୁଆଙ୍ଗରେ ଚଉକିଦାର ଆସି ପହଞ୍ଚିଗଲା । ପୂର୍ବରେ ଚଉକିଆମାନେ ହଳାବିଡ଼ା ନେଇ କର୍ତ୍ତବ୍ୟ କାର୍ଯ୍ୟ ପାଳନ କରୁଥିଲେ । ବର୍ତ୍ତମାନ ଚୁଲି ଟିକସ ହେବା ଦିନଠାରୁ ଲୋକମାନଙ୍କ ଉପରେ ଟିକସ ଆଦାୟ ପାଇଁ ଅତ୍ୟାଚାର ହେଉଅଛି, କିନ୍ତୁ ଚଉକିଦାରମାନେ ପୂର୍ବାପେକ୍ଷା କର୍ତ୍ତବ୍ୟବିମୁଖ ହୋଇଅଛନ୍ତି, ଏହା ସେ ସୁଆଙ୍ଗର ଚଉକିଦାରର କଥାଭାଷାରୁ ସ୍ପଷ୍ଟ ଜଣାଗଲା । ଉପସ୍ଥିତ ବନ୍ଧୁମାନଙ୍କୁ ପଚାରିଲି, 'ସାବଧାନ ! ଏଗୁଡ଼ିକ ବିତ୍ ବଜାରର ଚଉକିଲଗା ଆନ୍ଦୋଳନ ବା ବାସ୍ତବ ଜଗତ ଅର୍ଥାତ୍ ମଫସଲର Poupular Voice, ଗରିବଙ୍କ ରଡ଼ି ? ବନ୍ଧୁମାନେ ନିରୁତ୍ତର ହୋଇ ରହିଲେ । ମୁଁ ମନେ ମନେ ବିଚାରିଲି, ଆମ୍ଭେମାନେ ଗୋରୁ ଚରାଉଁ, ସରକାର ବାହାଦୁର ମଣିଷ ଚରାଉଛନ୍ତି, ଆମ୍ଭେମାନେ ସରକାରଙ୍କ ନିକଟକୁ ଯାଉଁ ଗୁହାରି କରୁ ଆପଣାର ଦୁଃଖମୋଚନ କରିବା ସକାଶେ, କିନ୍ତୁ ସରକାର ବାହାଦୁର ଯେବେ କୈଫିୟତ ଦେଇ ଆମ ଗୁହାରିର ଉତ୍ତର ଦିଅନ୍ତି, ତେବେ ଆମ୍ଭେମାନେ କପାଳକୁ ଠୁଙ୍କିବା । ପିଲାଦିନେ ଶୁଣିଥିଲି, ଦିନେ ମୋର ଦଦେଇ ସ୍ୱର୍ଗୀୟ ରଘୁନାଥ ସାମନ୍ତରାୟ ଏଠାରେ ଜଣେ ଭୂତପୂର୍ବ କିଲଟର ସାହେବଙ୍କ ନିକଟକୁ ଦେଖା କରିବାକୁ ଯାଇଥିଲେ । କୌଣସି ଗୁହାରି କରି ସେହି ପ୍ରସଙ୍ଗରେ ମୋର ଦଦେଇ ସାହେବଙ୍କୁ କହିଲେ, "ହଜୁର ! ଯେ କାମ୍ ବେଆଇନି ହୁଆ ହୈ ।" ସାହେବ ଉତ୍ତର କଲେ, "ଆଇନ୍ କାନୁନ୍ ତୁମାରା ବାପ୍ ଦାଦା କିୟା ନା, ହମାରା ବାପ୍ ଦାଦା କିୟା ହୈ, ହମ୍ ଯୋ ବୋଲେଙ୍ଗେ ଓଇ ଆଇନ୍ ।" ଏହା ପ୍ରାୟ ତିରିଶ ବର୍ଷ ତଳର କଥା - ଦଦେଇ ଏ ଉତ୍ତରଟି ଶୁଣି କହିଲେ, "ହଜୁର ଖୋଦାବନ୍ଦ୍ ଖାମିନ୍ଦ୍ ।" ଏହା କହି ସଲାମଟିଏ ପକାଇ ବିଦାୟ ନେଲେ । ଆମ୍ଭେମାନେ କହୁଁ, ଆଇନ୍ କାନୁନ୍ ତୁମ୍ଭେମାନେ କରିଅଛ, ଅନେକ ସ୍ଥଳରେ ଚର୍ମଦୋଷରୁ ହେଉ, କର୍ମଦୋଷରୁ ହେଉ, ସେଗୁଡ଼ିକ ପାଳିତ ହୁଏ ନାହିଁ କାହିଁକି ? ନରମ ଭାବରେ ପଚାରିଲେ କହିବ, ସାଧାରଣଙ୍କ ଅଭିମତ ନୁହେଁ । ଗରମ ଭାବରେ କହିଲେ କହିବ, ରାଜଦ୍ରୋହ । ଆମ୍ଭେମାନେ କହୁଅଛୁଁ, ଚର୍ମର ପ୍ରଭେଦଟା ଉଠାଇ ଦିଅ - ଆମେ ବିଦ୍ୟା, ବୁଦ୍ଧି ଓ ଜ୍ଞାନ ବିଜ୍ଞାନରେ ସଭ୍ୟ ଜାତିମାନଙ୍କ ସଙ୍ଗେ ପ୍ରତିଯୋଗିତା କରି ଜିତିଲୁଁ, ତେବେ ସୁଦ୍ଧା ଈଶ୍ୱରଦତ୍ତ କଳା ଚମଡ଼ା ପାଇଁ ଆମକୁ ସଭ୍ୟ ଜାତିମାନେ ଏକାସନ ଦେବେ ନାହିଁ, ଏହା କିପରି କଥା ? ତେବେ ବର୍ତ୍ତମାନ ମଧ୍ୟ ଆମ୍ଭମାନଙ୍କର ସଭ୍ୟ ଜାତିଙ୍କ ଠାରୁ ଢେର

ଶିଖିବାର ଅଛି । ସ୍ୱାଧୀନତା ଶବ୍ଦରେ ହୃଦୟର ନିଭୃତତମ ପ୍ରଦେଶ ନାଚି ନ ଉଠିବ, ଏପରି ପାଷଣ୍ଡ ପୃଥିବୀରେ ଅତି ଅଳ୍ପସଂଖ୍ୟକ ଅଛନ୍ତି । କିନ୍ତୁ ଜାତୀୟ ସ୍ୱାଧୀନତା ପାଇଁ ଯେଉଁ ଯେଉଁ ଉପକରଣଗୁଡ଼ିକ ଦରକାର, ସେ ଗୁଣଗୁଡ଼ିକ ଆମ୍ଭେମାନେ ଅବଧି ସଂପୂର୍ଣ୍ଣ ରୂପେ ହାସଲ କରି ନାହୁଁ । ସଭ୍ୟ ଜାତିଙ୍କ ଅଧୀନରେ ଆଉ ଦିନାକେତେ ଶିଷ୍ୟତ୍ୱ କରିବାକୁ ହେବ । ଯେଉଁ ଶିକ୍ଷା ଗୁଣରେ ଆଜି ଆମ୍ଭେମାନେ 'ସ୍ୱାଧୀନତା' ଦେବୀଙ୍କର ଆରାଧନା କରୁଅଛୁଁ, ସେ ଶିକ୍ଷା ଆମ୍ଭେମାନେ ପାଶ୍ଚାତ୍ୟ ସଭ୍ୟତା ପ୍ରଭାବରୁ ପାଇଅଛୁଁ । ଜାତୀୟ ସ୍ୱାଧୀନତାର ଉପାଦାନ ଇଂରେଜ, ଆମେରିକା, ଜାପାନ ଇତ୍ୟାଦି ସଭ୍ୟ ଜାତିମାନଙ୍କ ଠାରେ ଅଛି । ସେମାନେ ବହୁ ସାଧନ ପରେ ସେ ଉପାଦାନଗୁଡ଼ିକ ହସ୍ତଗତ କରିଅଛନ୍ତି । ଆମ୍ଭେମାନେ ଜାତୀୟ ଭାବରେ ସେ ଗୁଣଗୁଡ଼ିକ ହାସଲ ନ କରିବା ପର୍ଯ୍ୟନ୍ତ 'ମିଠେଇ ମିଠେଇ' ବୋଲି ଡାକ ଛାଡ଼ିଲେ ପାଟି କେବେ ହେଁ ମିଠା ହେବ ନାହିଁ । ଭାରତବର୍ଷରେ ଜାତୀୟ ଭାବର କ୍ଷୀଣ ଆଲୋକ ଉଇଁଅଛି ମାତ୍ର । ଏହାକୁ ସଂଯତ ଭାବରେ ଓ ସାବଧାନ ହୋଇ ଜଗିବାକୁ ହେବ । ଏ ପ୍ରଭା ଉଚ୍ଛୃଙ୍ଖଳ ଭାବରେ କାର୍ଯ୍ୟ କଲେ ଆମ୍ଭମାନଙ୍କର ଅମଙ୍ଗଳ ଅବଶ୍ୟମ୍ଭାବୀ । ପାଶ୍ଚାତ୍ୟ ସଭ୍ୟତାର ସ୍ରୋତ ପ୍ରଭାବରେ ଜାତୀୟ ଜାଗରଣ ଅନିବାର୍ଯ୍ୟ । କିନ୍ତୁ ଉକ୍ତ ଜାଗରଣକୁ ସୀମା ମଧ୍ୟରେ ଚାଳନ କରିବା ଆବଶ୍ୟକ । ଯେ ଏହା ସ୍ୱୀକାର ନ କରେ, ସେ ବାତୁଳ । କିନ୍ତୁ ଚେଇଁଉଠି ମୁଣ୍ଡ ଟେକିଲା ବେଳକୁ ଠେଙ୍ଗା ପାହାର ବସାଇ ଦେବାଟା କେଉଁ ନୀତି ?

ଏ ଥରକ ଦୁନିଆର ହାଲ୍‌ଚାଲ୍ ଲେଖି ସାରିଲିଣି, ଦେଖିଲି ଯେ ମୋର ସୋଦରପ୍ରତିମ ବନ୍ଧୁ ଶ୍ରୀଯୁକ୍ତ କାମପାଳ ମିଶ୍ର ବି.ଏଲ୍. ଆସି ପାଗପଟୁକା ପିନ୍ଧି ଭେକ ଧରି ଓକିଲଖାନାରେ ଉପସ୍ଥିତ । କାମପାଳବାବୁ ପାଠ୍ୟାବସ୍ଥାରେ ମୋର ସହଚର ଥିଲେ । ବିଦ୍ୟାଳୟ ଛାଡ଼ି ମୁଁ ଏ 'ସ୍ୱାଧୀନ' ବ୍ୟବସାୟରେ ପଶିଲି । କାମପାଳବାବୁ ମୟୂରଭଞ୍ଜ ମହାରାଜାଙ୍କ ବଳିୟାର ଭୁଜତଳେ ଆଶ୍ରୟ ନେଲେ ଓ ମୟୂରଭଞ୍ଜ ଷ୍ଟେଟର ଜଣେ ହାକିମ ହେଲେ । ହାକିମ୍ ଅବତାରରେ ଥରେ କାମପାଳବାବୁଙ୍କୁ ଦେଖିଥିଲି, କିନ୍ତୁ ସେତେବେଳେ ତାଙ୍କୁ ଦେଖି ମୋ ମନଟା ଖୋଲିଲା ନାହିଁ । ବର୍ତ୍ତମାନ କାମପାଳବାବୁ ଆମ ଗୋଠକୁ ଆସିବାର ଦେଖିଲାରୁ ପିଲାଦିନର ମନ ଖୋଲି ହୋଇଗଲା । ପ୍ରଥମ ପ୍ରଶ୍ନ ପଚାରିଲି, "ଭାଇସାହେବ ! ମୟୂରଭଞ୍ଜ ଦୁନିଆର ସୀମା ବାହାରେ ନା ଭିତରେ ?" ଭାଇସାହେବ ଉତ୍ତର କଲେ, "ଗତଥର ଦୁନିଆର ହାଲଚାଲରେ ଲେଖିଚ ଯେ ଓଡ଼ିଶାର ଗଡ଼ଜାତଗୁଡ଼ାକ ଅସୂର୍ଯ୍ୟଂପଶ୍ୟା । ଆଜି ଫେର ଏପରି ପ୍ରଶ୍ନ କରିବା ବାତୁଳତା ନୁହେଁ କି ?" ମୁଁ ବି ଛାଡ଼ିବା ଜନ୍ତୁ ନୁହେଁ । ଅର୍ଥାତ୍ ଜବାବ ଦେଲି, "ମୟୂରଭଞ୍ଜକୁ ରେଳ ହେଲାଣି, ସେଥିଯୋଗୁଁ ଜଙ୍ଗଲ କଟାହୋଇ ବାଟ ଫିଟିଗଲାଣି ପରା; କିନ୍ତୁ ଜଣେ ବାଟ ଦେଖାଳିଙ୍କ ପିଛା ନ ଧଇଲେ ଗଡ଼ଜାତ ଜଙ୍ଗଲରେ ବାଘ ଭାଲୁ ଟାଣିନେବେ, ଏହି ଭୟରେ ଭାଇ

ତୁମ୍ଭ ପିଛା ଧରିଛି, ତୁମେ ଏପରି ଗୋଡ଼ କଚାଡ଼ିଲେ ଚଳିବ କାହୁଁ ?'' ଏହା ଶୁଣି କାମପାଳବାବୁ କହିଲେ, ''ଏଡ଼େ ତରବର ହେଲେ ଚଳିବ କି ? ଗୋଡ଼ରେ କଣ୍ଟା ଗଳିଯିବ ଯେ ।'' ଏ ଆଶ୍ୱାସନା ବାଣୀ ଶୁଣି ମୁଁ ଥୟହୋଇ ରହିଲି ।

ବାଇ ମାହାନ୍ତିଙ୍କ ପାଞ୍ଜିରୁ ସର୍ପ, ମଶକ, ବ୍ୟାଘ୍ର ଇତ୍ୟାଦି କେତେ ପ୍ରକାର ହାକିମଙ୍କ ନମୁନା ପାଇଥିଲି, ସରଜମିନରେ ମଧ୍ୟ ଅନେକ ଜାତୀୟ ହାକିମଙ୍କ ହାବୁଡ଼ରେ ପଡ଼ିଥିଲି । ଥରେ ସୁଯୋଗରୁ ଜଣେ 'ଗୋଧି' ଜାତୀୟ ହାକିମଙ୍କ ହାବୁଡ଼ରେ ପଡ଼ିଗଲି । ପାଠକମାନେ ଜାଣନ୍ତି, ଗୋଧି ଉଭୟଚର ଓ ଦୋନସଲା । ଗୋଧିଙ୍କର ଚାରିଟା ଗୋଡ଼ ଅଛି, ତଥାଚ ତାଙ୍କୁ ଗୋଧିସାପ୍ ବୋଲି କହନ୍ତି । ଗୋଧିଙ୍କର ଭାରି ଅହନ୍ତା । ସାପଙ୍କ ଉପରେ ଆଘାତ ନ ବାଜିଲେ ସାପ କାମୁଡ଼ନ୍ତି ନାହିଁ, କିନ୍ତୁ ଗୋଧି ମନୁଷ୍ୟକୁ ଗୋଡ଼ାଇକରି କାମୁଡ଼ନ୍ତି ଓ ତାଙ୍କ ବିଷ ମଧ୍ୟ ଭାରି ମାରାତ୍ମକ । ତହିଁର କେବଳ ଗୋଟିଏ ଉପାୟ ଘଡ଼ଘଡ଼ି ରଡ଼ି । ଗୋଧିସାପ କାମୁଡ଼ିଥିବ, ଏହି ସମୟରେ ଯେବେ ଘଡ଼ଘଡ଼ି ମାରେ, ତେବେ ସେ ବିଷ ଛାଡ଼ିଯାଏ । ନଚେତ୍ ଗୋଧିସାପ କାମୁଡ଼ିବାକୁ ଅନ୍ୟ ଉପାୟ ନାହିଁ । ଏ ଶ୍ରେଣୀର ହାକିମମାନେ ବୃଥାରେ ଅହନ୍ତା କରି ପକ୍ଷମାନଙ୍କୁ ଓ ପକ୍ଷଙ୍କର ଓକିଲ ମୁଖ୍ତାରଙ୍କୁ କାମୁଡ଼ି ଗୋଡ଼ାନ୍ତି । କଥା କଥାକେ 'Contempt of Court' ଅଦାଲତର ଅବମାନନାର ଦ୍ୱାହି ଦିଅନ୍ତି ଓ ଫଉଜଦାରୀ ସୁପର୍ଦ୍ଦ କରିବେ ବୋଲି ଡରାନ୍ତି । ଦିନେ ଏହି ଶ୍ରେଣୀର ଜଣେ ହାକିମଙ୍କ ହାବୁଡ଼ରେ ପଡ଼ିଗଲି । ଜଣେ ଆସାମୀ ତରଫରୁ ଫଉଜଦାରୀ ମକଦ୍ଦମାରେ ହାଜର ହୋଇଥିଲି । ଅପର ପକ୍ଷର ସାକ୍ଷୀ ମୋ ପ୍ରଶ୍ନର ଉତ୍ତରରେ ଗୋଟିଏ କଥା କହିଲା, ହାକିମ ସେ ପଦକ ଲେଖିଲେ ନାହିଁ । ମୁଁ କହିଲି, ''ହଜୁର, ଏ ପଦକ ଲେଖାଯାଉ ।'' ଏହା ଶୁଣିଲା ମାତ୍ରକେ ହାକିମ ଆରକ୍ତ ନୟନରେ (ଗୋଧିଗୁଡ଼ାକର ଆଖି ନାଲିଆ) ମୋ ଆଡ଼କୁ ଚାହିଁଲେ । ତାଙ୍କ ଚାହାଣି ଦେଖି ମୋର ଗାତ୍ରକମ୍ପ ହେଲା ଓ ମକ୍‌କେଲଟିର ଅଙ୍ଗବିଶେଷ କଞ୍ଚା ପାଣି ହୋଇଗଲା । ହାକିମ କହିଲେ, ''ତୁମେ କଣ ମୋ ଉପରେ ହୁକୁମ ଚଳାଇବାକୁ ଆସିଅଛ ? ଫଉଜଦାରୀ ଅଦାଲତରେ ମୋ ପଛରେ ମୁଁ ଆସାମୀଟିକୁ ବୋକଚା ବାନ୍ଧି ଅଛି, କରେ କଣ ? ସେଥର ଗଲା । ଫେର ଆଉଥରେ ଅପର ପକ୍ଷର ସାକ୍ଷୀ ଗୋଟିଏ କଥା କହିଲା । ହାକିମ ତାକୁ ଲେଖିଲେ ନାହିଁ । ମୁଁ କହିଲି, ''ହଜୁର, ଏ ପଦକ ଲେଖାଯିବାର ଆଜ୍ଞା ହେଉ ।'' (ବିଚାରିଲି ଯେ ଆଉଁଶା ଘଷା ପାଇଲେ କେଜାଣି ଟିକିଏ ନରମ ହୋଇଯିବେ; କିନ୍ତୁ ଗୋଧି ଚମଡ଼ା ନରମ ହୁଏ ନାହିଁ ।) ହଜୁର ଟିକେ ଚିତ୍କାର କରି ଉତ୍ତର କଲେ, ''ତୁମେ ମୋ ଆସନକୁ ଆସ, ମୁଁ ତୁମ ଆସନକୁ ଯାଏଁ, ତୁମେ କଣ ମତେ ଶିଖାଇବାକୁ ଆସିଅଛ ?'' କର୍ମକୁ ଆଦରି ତୁନି ହୋଇ ରହିଲି । ତୃତୀୟ ଥର ପୁନର୍ବାର ଏପରି ହେଲାରୁ ମୁଁ ଅତି ବିନୀତଭାବେ କହିଲି, ''ହଜୁର, ଏ ପଦକ ମୋ ପକ୍ଷରେ ବିଶେଷ ପ୍ରୟୋଜନୀୟ ପ୍ରମାଣ ବୋଲି ମୁଁ ମନେ କରୁଅଛି, ଅତଏବ ମୁଁ ବିନୀତ ଭାବରେ ଜଣାଉଅଛି ଯେ ଏ ପଦକ ହଜୁର

ଅନୁଗ୍ରହ ସହକାରେ ଟିପି ନ ରଖିଲେ ଆସାମୀର ଅପକାର ହେବ ।'' ଏଥର ହାକିମଙ୍କର ହାକିମତ୍ୱ ଉପରେ ଚାଇଁକରି ଦାଗଟାଏ ଲାଗିଗଲା । ଚଉକି ଉପରେ ଶରୀରଟା ଝାଡ଼ିଝୁଡ଼ି ଦେଇ ଆରକ୍ତ ନୟନରେ ଭେକ ଗର୍ଜନରେ ମତେ କହିଲେ, ''ସାବଧାନ ! ଏ ତୃତୀୟ ଥର ।'' ଅର୍ଥାତ୍ ଧର୍ମ ତିନିବାର, ଏଥରକ ଅଦାଲତଙ୍କ ଅବମାନନା ଯୋଗୁଁ ଫଉଜଦାରିରେ ଠେଲିବି । ଚାରିଆଡ଼କୁ ଚାହିଁ ଦେଖିଲି, ପେସ୍କାର, ଚପରାସୀ, କନିଷ୍ଠବଳ ଓ ଜ୍ୟେଷ୍ଠବଳ । ପ୍ରମାଣ ବେଳକୁ ଏ ସମସ୍ତ ମୋ ପକ୍ଷରେ ଯାହା ସାକ୍ଷ୍ୟ ଦେବେ, ତାହା କଳ୍ପନା ଚକ୍ଷୁରେ ଦେଖିନେଲି, ତୁନି ହୋଇ କପାଳକୁ ଠୁଙ୍କି ରହିଲି । ମନେ ମନେ ବିଚାରିଲି, ଦିନେ ମୋ ପାଳି ଆସିବ ଯେ । ପୁନର୍ବାର ସେହି ମକଦ୍ଦମାରେ ହଜୁରଙ୍କ ନିକଟରେ ଅନ୍ୟ ତାରିଖରେ ଉପସ୍ଥିତ ହେଲି । ହାକିମଙ୍କର ସେହି ଗୋଧିମୁହଁ ଅକ୍ଷୁଣ୍ଣ ଅଛି । ଆସାମୀ ଉପରେ ଅଭିଯୋଗ (charge) ହେଲା । ଅଭିଯୋଗ ହେଲା ପରେ ଅପରପକ୍ଷର ସାକ୍ଷୀମାନଙ୍କୁ ଜେରା କରିବାର ଅଧିକାର ମୁଦାଲାର ଅଛି । ହାକିମ ମତେ ପଚାରିଲେ, ସାକ୍ଷୀମାନଙ୍କୁ ଜେରା କରିବ ? ମୁଁ ଉତ୍ତର କଲି, ହଁ । (ମନେ ମନେ ହାକିମଙ୍କୁ ସମ୍ବୋଧନ କରି କହିଲି, ''ମୋର ସପକ୍ଷ ଯେଉଁ କଥାଗୁଡ଼ାକ ଲେଖା ଯାଇ ନାହିଁ, ସେଗୁଡ଼ିକ ଲେଖିବ କିଏ ?'' ଏହି ସମୟରେ ଅନ୍ୟଜଣେ ଓକିଲ ବନ୍ଧୁ କାର୍ଯ୍ୟାନ୍ତରରେ ସେହି ହାକିମଙ୍କ ନିକଟରେ ଉପସ୍ଥିତ ହେଲେ । କିଛି ଭଲ ମନ୍ଦ ହେଲେ ବାହାରର ଜଣେ ଲୋକ ସାକ୍ଷୀ ରହିବେ, ଏହି କଥା ଭାବି ମୋ ମନଟା ଟିକିଏ ଥଣ୍ଡା ହେଲା । ହାକିମ ଗରମ ହୋଇ କହିଲେ, ''ଅଭିଯୋଗର ପୂର୍ବରୁ ତୁମେ ତ ଥରେ ଲେଖାଏଁ ସାକ୍ଷୀଙ୍କୁ ଜେରା କରିଥିଲ, ଫେର୍ କାହିଁକି ଜେରା କରିବ ?'' ମୁଁ ମଧ ଟିକିଏ ଗରମ ଭାବରେ ଜବାବ ହେଲି, ''ହଜୁର । ମତେ ଆଇନ ଯେଉଁ ଅଧିକାର ଦେଇଅଛି, ସେ ଅଧିକାର କାଢ଼ି ନେବାର ତାକତ୍ ଯେବେ ହଜୁରଙ୍କର ଅଛି, ତେବେ ହଜୁର ମତେ ଜେରା କରିବାକୁ ଅନୁମତି ନ ଦେଇ ପାରନ୍ତି ।'' ଏହା ଶୁଣି ହଜୁର ଆହୁରି ଟିକିଏ କଡ଼କି ଗଲେ, କହିଲେ, ''ଥରେ ତ ଜେରା କରିଛ ଆଉ କେତେଥର ଜେରା କରିବ ?'' ମୁଁ କହିଲି, ''ପ୍ରଥମ ଥର ଜେରା କଲାବେଳେ ମକ୍‌କେଲଠାରୁ ସମ୍ପୂର୍ଣ୍ଣ ରୂପେ ସମସ୍ତ ବିଷୟର ଉପଦେଶ ପାଇ ନ ଥିଲି, ଏଥରକ ଜେରା କଲାବେଳେ ସମ୍ପୂର୍ଣ୍ଣ ଭାବରେ ଉପଦେଶ ଗ୍ରହଣ କରି ଆହୁରି କେତେକ ବିଷୟରେ ଜେରା କରିବି ।'' ହାକିମ କହିଲେ, ''ତାହାହେଲେ ଉପଦେଶ ନ ନେଇ ତୁମେ ହାଜର ହେଲ କାହିଁକି ଓ କିପରି ?'' * ମୁଁ ମଧ ଟିକିଏ ସରଗରମ ହୋଇ ଉତ୍ତର କଲି, ''କିପରି ହାଜର ଦେଲି, କାହିଁକି ହାଜର ହେଲି, ସେସବୁ ବିଷୟରେ କୈଫିୟତ ଦେବାକୁ ମୁଁ ଏଠାକୁ ଆସି ନାହିଁ କିମ୍ବା ତହିଁର ସ୍ଥାନ ଏ ନୁହେଁ । ଆଇନ ଅନୁସାରେ

---

* ହାକିମ ବୋଧହୁଏ ଅନୁମାନ କରି ନ ଥିଲେ ଯେ କିଛି ନ ହେଲା ବେଳକୁ ସିଦ୍ଧେଶ୍ୱରପୁରଠାରେ ବଖରାଏ ମଉରସି ଘର, ମୁଠାଏ ବଗଡ଼ା ଭାତ, ଖଣ୍ଡେ ମୋଟା ଲୁଗା ମୋ ପାଇଁ ଅଛି ।

ଆସାମୀର ଯେଉଁ ଅଧିକାର ଅଛି, ସେ ଅଧିକାର ପାଇବା ପାଇଁ ମୁଁ ଆସିଅଛି ।'' ଗୋଧି କାମୁଡ଼ାକୁ ଘଡ଼ଘଡ଼ି ରଡ଼ି ସମାନ ହୋଇଗଲା, ବିଷଟା ଝଡ଼ିଗଲା । ସାକ୍ଷୀଙ୍କୁ ଜେରା କରିବା ପାଇଁ ହାକିମ ମହୋଦୟ 'ଅନୁଗ୍ରହ ପୂର୍ବକ' ମତେ ଅନୁମତି ଦେଲେ । ଉପସ୍ଥିତ ଓକିଲବନ୍ଧୁଙ୍କ ଆଡ଼କୁ ଚାହିଁ ମୁଁ ମୁରୁକେଇ ମୁରୁକେଇ ହସି ହାକିମଙ୍କୁ ଧନ୍ୟବାଦଟାଏ ଦେଇ ସଲାମଟିଏ ଠୁକି ଇଜଲାସରୁ ବିଦାୟ ନେଲି । ସେଥିପାଇଁ ମୁଁ କହେ ଯେ ଓକିଲାତିଟା ସୃଷ୍ଟି ଛଡ଼ା ଜୀବିକା । କେତେବେଳେ କେଉଁ ଜୀବଙ୍କ କାମୁଡ଼ାରେ ଏ ଜୀବନ ଯିବ, ତହିଁର ଠିକଣା ନାହିଁ । ଆଉ କିଛି ରକମର ଅନୁସଂଧାନ ନ ମିଳିଲେ ଲୋକେ ଏଥିରେ ପଶନ୍ତି । ସେଥିପାଇଁ କାମପାଳଭାଇ ହାକିମଙ୍କ ଅବତାର ଛାଡ଼ି ଏ ସୃଷ୍ଟି ଛଡ଼ା ପେସାରେ ପଶିବାର ଦେଖି ମୁଁ ପ୍ରଥମେ ଚମକି ପଡ଼ିଲି ଓ ପଚାରିଲି, ମୟୂରଭଞ୍ଜଟା କ'ଣ ଦୁନିଆ ବାହାରେ ?

ଉତ୍କଳ ସାହିତ୍ୟ/୧୨ଶ ଭାଗ/୨ୟ ସଂଖ୍ୟା/୧୩୧୫ ସାଲ ।

## ।। ଏକୋଇଶ ।।

ଖବରକାଗଜରେ ପ୍ରକାଶ ଯେ ଶ୍ରୀଯୁକ୍ତ ମଧୁସୂଦନ ଦାସ, C.I.E. ବଙ୍ଗ ବ୍ୟବସ୍ଥାପକ ସଭ୍ୟ ପଦରେ ଓଡ଼ିଶାର District Board ମାନଙ୍କ ଦ୍ୱାରା ମନୋନୀତ ହୋଇ ଅଛନ୍ତି । କିନ୍ତୁ ଏହା ମଧରେ କେତେଗୁଡ଼ିଏ ଘୂର୍ଣ୍ଣିବାୟୁ ଓଡ଼ିଶାରେ ଖେଳିଗଲା, ତାହା ଏକା ଓଡ଼ିଶାର District Board memberମାନେ ଜାଣନ୍ତି । ଅନେକ ଲୋକ ଏ ଘଟଣାଚକ୍ରରେ ଦୁର୍ଭିକ୍ଷ ଦାଉ ସମ୍ଭାଳି ଗଲେ, କେତେ ଲୋକ ପୁରୀ ଅମାଲୁ ଖାଇଲେ । ଡାକ, ରେଳ ଓ ଟେଲିଗ୍ରାଫ୍ ବିଭାଗର ଦି' ପଇସା ଲାଭ ହୋଇଗଲା, କେତେ ଲୋକ ଫଉଜଦାରୀ ଅଦାଲତର ଧମକ ସମ୍ଭାଳି ନେଲେ, କେତେ ଲୋକ କବାଟ କିଳି ବେମାର ଦାଉ ସହିଗଲେ, କେତେ ଲୋକ ମଧ ଦାଉକୁ ଏଡ଼ି ପାରିଲେ ନାହିଁ । କେତେ ଲୋକ ପଳାଇ ପଶିଲେ ମାଉସୀ ଘରେ ।

ଘଟଣାଚକ୍ରରେ କଟକ ଡିଷ୍ଟ୍ରିକ୍ଟ ବୋର୍ଡ଼ର ମୁଁ ଜଣେ ଅସଭ୍ୟ ସଭ୍ୟ । କଥାଟା ଆହୁରି ଟିକିଏ ବୁଝାଇ ଦିଏ, ନଟ ଛିଣ୍ଡିଯିବ । କଟକର District Boardର ପୂର୍ବତନ ସଭ୍ୟ ଓ ଭାଇସ୍ ଚେୟାରମ୍ୟାନ୍ ପ୍ରଖ୍ୟାତନାମା ରାୟ ଯୋଗେଶ୍ୱର ଚନ୍ଦ୍ର ବାହାଦୁର ଦିନେ ହଠାତ୍ କାଳଗ୍ରାସରେ ପତିତ ହେଲେ । ଡିଷ୍ଟ୍ରିକ୍ଟ ବୋର୍ଡ଼ର ଭାଇସ୍ ଚେୟାରମ୍ୟାନ ପଦ ଶ୍ରୀଯୁକ୍ତ ଗୋକୁଳାନନ୍ଦବାବୁଙ୍କ ଦ୍ୱାରା ପୂର୍ଣ୍ଣ ହେଲା । ବାକି ରହିଲା ମେମ୍ବର ପଦ । ସେ ପଦଟି ଅନାହାରୀ (Honorary) ପଦ । କିନ୍ତୁ ଆଜିକାଲି ଦେଖାଯାଏ ଯେ ଅନାହାରୀ ପଦ ପାଇଁ ପ୍ରାର୍ଥୀ ଅନେକ । ମ୍ୟୁନିସିପାଲିଟିର କମିସନର, ବେଞ୍ଚ ମାଜିଷ୍ଟ୍ରେଟ୍, ଡିଷ୍ଟ୍ରିକ୍ଟ ଓ ଲୋକାଲ ବୋର୍ଡ଼ର ସଭ୍ୟ, ଏଗୁଡ଼ାକ ସବୁ ଅନାହାରୀ ପଦ । କିନ୍ତୁ ଏଥିପାଇଁ ଉମେଦବାରଙ୍କ ସଂଖ୍ୟା ଢେର । ଏହାର କାରଣ ଆମ ଦେଶର ହାୱା କିମ୍ବା ଅନାହାରର

ମାହାତ୍ମ୍ୟ ଯାହା ମୁଁ ବ୍ୟକ୍ତିଗତ ଅନୁଭବରେ ଆଜିପର୍ଯ୍ୟନ୍ତ ବୁଝିପାରି ନାହିଁ । ବୁଝି ପାରିବାର ସୁଯୋଗ ପାଇଲେ ଯଥାସମୟରେ ପାଠକମାନଙ୍କୁ ସେ ପ୍ରସାଦରୁ କଣିକାଏ ଲେଖାଏଁ ଦେବାର ବାସନା ଅଛି ।'' 'ଶେର ହାଓଆ'ର ଅର୍ଥ ଟିକେ ଖୋଲିଦେବା ଆବଶ୍ୟକ । ହିନ୍ଦୁଶାସ୍ତ୍ରରେ ଅଛି ଯେ ଏକାଦଶୀଟି ହରିବାସର, ସେଦିନ ଅନଶନ କର୍ତ୍ତବ୍ୟ, ନିତାନ୍ତ ପକ୍ଷରେ କିଛି ଫଳାହାର କରି ସେ ଦିନଟି ଅତିପାତ କରିବାକୁ ହେବ । ଏହା ହେଲେ କ୍ଷୁଧାର୍ତ୍ତ ଅବସ୍ଥାରେ ଭଗବାନ୍‌ଙ୍କୁ ଭଜନ କରିବାକୁ ହେବ । ସ୍ୱୟଂ ଭଗବାନ୍ ଭଗବଦ୍‌ଗୀତାରେ ଡାକି ଡାକି କହିଅଛନ୍ତି - ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନୋଽର୍ଜ୍ଜୁନ । ଆର୍ତ୍ତୋଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ । ଯାହାହେଉ, ଏକାଦଶୀ ଦିନ ଆମ ଦେଶରେ ଅନାହାରୀମାନଙ୍କର ପାଳି ପଡ଼େ । ସେଦିନ ଦିଶୁ ସରୁଚୁଡ଼ା, ଦିଶୁ ବସାଦହି, ଦିଶୁ କନ୍ଦ, ଦିଶୁ ପାଚିଲା କଦଳୀ, ଦିଶୁ ନିରୋତା ଦୁଧ, ଦିଶୁ ନଡ଼ିଆକୋରା ଇତ୍ୟାଦିରେ ଆମ ଦେଶର ଏହି ବ୍ରତ ପାଳନ କରାଯାଏ । ସେ ଦିନ ଭୋଜନଟା ମଧ ଖୋସଣି ଫିଟା । ସାଧାରଣ ଦିନ ଅପେକ୍ଷା ସେ ଦିନ ଭୋଜନର ମାତ୍ରା ଓ ଭୋଜନର ଖରଚଟା ମଧ ଡବଲ ପଡ଼ିଯାଏ । ଯେଉଁ ହାଓଆ ପ୍ରଭାବରୁ ଉପବାସ ଦିବସର ଦାଉ ଡବଲ, ସେହି ହାଓଆ ପ୍ରଭାବରୁ ଅନାହାରୀ ପଦର ମୂଲ୍ୟ ଡବଲ ବା ତିପଟ ହେବା ସ୍ୱାଭାବିକ । ଯେବେ ମୂଲ୍ୟ ବା ମାହାତ୍ମ୍ୟ ବେଶି ହୋଇ ନ ଥାନ୍ତା, ତେବେ ଏତେ ଲୋକଙ୍କ ପାଟିରୁ ଅନାହାରୀ ପଦପାଇଁ ଲାଳ ବହନ୍ତା କିଆଁ ? ଦିନେ (ସ୍ୱପ୍ନରେ ପରା ?) ଦେଖିଲି ଯେ ଜଣେ ଅନାହାରୀଙ୍କ ଆହାର୍ଯ୍ୟ ସାମଗ୍ରୀ ସଂଗ୍ରହ କରୁ କରୁ ଜଣେ ଭକ୍ତର ଘରଦ୍ୱାର ପର୍ଯ୍ୟନ୍ତ ବନ୍ଧା ପଡ଼ିଗଲା, ତେବେ ସୁଦ୍ଧା ଅନାହାରୀ ପ୍ରଭୁଙ୍କର ପେଟ ପୂରିଲା ନାହିଁ । ମନୁଷ୍ୟ କେତେ ପ୍ରକାର ସ୍ୱପ୍ନ ଦେଖେ - ଆଖି ବୁଜି, ଆଖି ମେଲା କରି, ଶୋଇଲା ବେଳେ, ଚେଇଁଲା ବେଳେ ଏହିପରି କେତେପ୍ରକାର ସ୍ୱପ୍ନ ଦେଖାଯାଏ । ସଂସାରଟା ସ୍ୱପ୍ନ ଛଡ଼ା ଆଉ କଣ ? ଜଣେ ଲୋକ ଅନାହାରୀ କାର୍ଯ୍ୟ କରୁ କରୁ କ୍ରମଶଃ ସ୍ଥୂଳକାୟ ହେଲେ । କାର୍ଯ୍ୟରେ ଦିନରାତି ଅବିଶ୍ରାନ୍ତ ଲାଗିଥା'ନ୍ତି । ତାଙ୍କର ଅବୈତନିକ ପରିଶ୍ରମ ଦେଖି ମୁଁ ବିସ୍ମିତ ହେଲି । ବାଡ଼ିଦୁଆର ଚାବି ଖୋଲି ଦେଖିଲା ବେଳକୁ ଏ ନିଃସ୍ୱାର୍ଥ ପରିଶ୍ରମଗୁଡ଼ିକ ଆପଣା ବିରାଦରଙ୍କ ଆହାର ପାଇଁ ବିହନ ସଂଗ୍ରହ ମାତ୍ର । କାହାର ଉଦ୍ଦେଶ୍ୟ ହାକିମୀ, କାହାର ଉଦ୍ଦେଶ୍ୟ ସତ୍ୟନାରାୟଣ ପୂଜା, କାହାର ଉଦ୍ଦେଶ୍ୟ ବୈର ସାଧନ, କାହାର ଉଦ୍ଦେଶ୍ୟ ପାଲିଙ୍କି ପାଟଛତା, କାହାର ଉଦ୍ଦେଶ୍ୟ ସ୍ତ୍ରୀ ପୁତ୍ରାଦିଙ୍କୁ ସୁନାର ଅଳଙ୍କାରରେ ଛାଉଣୀ କରିବା, କାହାର ଉଦ୍ଦେଶ୍ୟ ନିଜର ସ୍ଥୂଳ ଶରୀରକୁ ଆହୁରି ସ୍ଥୂଳତର କରିବା, ଏହିପରି କେତେ ଜୀବ ଅନଶନ ବ୍ରତ ଧାରଣ କରି ଏହି ପୁଣ୍ୟ ଭୂଖଣ୍ଡରେ ବିଚରଣ କରୁଅଛନ୍ତି ଓ କେତେଗୁଡ଼ିଏ ପ୍ରାଣୀଙ୍କର ଐହିକ ଓ ପାରିତ୍ରିକ ଶ୍ରାଦ୍ଧ କରୁଅଛନ୍ତି । ଦିନେ ଜଣେ ବନ୍ଧୁଙ୍କୁ ତାଙ୍କ ଅନାହାରୀ ଅବତାରରେ ଦର୍ଶନ କରିବାକୁ ଗଲି, ଦେଖିଲି ଯେ ସାଧାରଣ ଅବତାରର ତୋଡ଼ ଅପେକ୍ଷା ଅନାହାରୀ ଅବତାରର ତୋଡ଼ ମଧ ଡବଲ ।

ଛାଡ଼ ସେ କଥା । କଟକ ଡିଷ୍ଟ୍ରିକ୍ଟ ବୋର୍ଡ଼ର ମେମ୍ବର ପଦ ଖାଲି ହେଲା । ଏକାଧିକ ବ୍ୟକ୍ତି ଉକ୍ତ ପଦ ପାଇଁ ଠିଆ ହେଲେ, କେହି କେହି ଆଶାବାଡ଼ି ଖଣ୍ଡିଏ ଲେଖାଏଁ ଧରି ଠିଆହେଲେ । ସେ ପଦର ପ୍ରଲୋଭନ ଏଡ଼ିବା ପଦାର୍ଥ ନୁହେଁ । ମୁଁ ବିଚାରିଲି, ମୁଁ ମଧ ଢେଲାଟାଏ ବଜାଏଁ । ଫେର ବିଚାରିଲି, ଏକାଦଶୀ ବ୍ରତର ଉପକରଣମାନ ଯୋଗାଡ଼ କରିବାର କ୍ଷମତା ନ ଥାଇଁ ଅନାହାରୀ ପଦ ପ୍ରାର୍ଥନା କରିବା ବିଡ଼ମ୍ବନା ମାତ୍ର । ଏହା ଭାବି ଆଶ୍ୱସ୍ତ ହେଲି, ରହିଲି ଭାବିଲି ଯେ ଈଶ୍ୱର ରଖିଲେ ଦିଶୁ ଚୁଡ଼ା ପାଇଁ ସରୁ ଧାନର ଓଳିଆ ବାନ୍ଧିରଖି ଏ ପଦର ପ୍ରାର୍ଥୀ ହେବି । ଦୁଇ ଚାରି ଦିନ ପରେ District Boardର କର୍ତ୍ତାଙ୍କଠାରୁ ଖଣ୍ଡିଏ ପ୍ରଶ୍ନସୂଚକ ପତ୍ର ପାଇଲି । ମୁଁ District Boardର ମେମ୍ବର ହେବାପାଇଁ ଇଚ୍ଛୁକ କି ନା ସେ ଏହି କଥା ପଚାରି ଅଛନ୍ତି । ଯେଉଁ ପଦ ପାଇଁ ଲୋକେ ଧନ ଜନ ଗୋପ ଲକ୍ଷ୍ମୀଙ୍କର ଶ୍ରାଦ୍ଧ କରିବାକୁ ତିଆର, ସେ ପଦ ଯେବେ ଶୂନ୍ୟେ ଶୂନ୍ୟେ ବିନା ଉମେଦ୍‌ବାରି, ବିନା ଭେଟି, ସଲାମି, ବିନା ତୈଳ ମର୍ଦ୍ଦନରେ ମିଳିଗଲା, ଏ ସୁଯୋଗ ଛାଡ଼ିବାର ନୁହେଁ । ଏହା ଭାବି ମୁଁ ଖଣ୍ଡେ ସମ୍ମତିସୂଚକ ପତ୍ର ଲେଖିଲି । ଯଥାରୀତି ମୋ ନାମଟା ସଦରକୁ ଚାଲିଗଲା ଓ ତେଣୁ ମଞ୍ଜୁର ହୋଇ ଆସିଗଲା । ସଦରରୁ ମଞ୍ଜୁର ହୋଇ ଆସିବା ପୂର୍ବରୁ ଓଡ଼ିଶାର ଚାରି ଜିଲାର District Board ମାନଙ୍କରେ ଏକ ବାରିଣୀ ଯୋଗ ପଡ଼ିଗଲା । ଛୋଟଲାଟ ସାହେବଙ୍କ ବ୍ୟବସ୍ଥାପକ ସଭାକୁ ଓଡ଼ିଶାର ଡିଷ୍ଟ୍ରିକ୍ଟ ବୋର୍ଡ଼ମାନେ ଜଣେ ସଭ୍ୟ ପଠାଇବେ ବୋଲି ସରକାରଙ୍କ ଗେଜେଟରେ ବିଜ୍ଞାପନ ବାହାରିଲା । ଅନାହାରୀ ପଦର ମର୍ଯ୍ୟାଦା ବୁଝିବାର ଏପରି ଗୋଟିଏ ସୁଯୋଗ ସାଙ୍ଗେ ସାଙ୍ଗେ ମିଳିଗଲା ବୋଲି ମୁଁ ଈଶ୍ୱରଙ୍କୁ ଗୋଟିଏ ସାବାସ ଦେଲି । ଦେଖିଲି ଯେ ଯେଉଁଠାରେ ଆଗେ କୋଇଲି ସୂତାରେ କାମ ଚଳୁଥିଲା, ସେଠାରେ ଲଙ୍ଗଳ ଦଉଡ଼ି ପାଇଲା ନାହିଁ । ଡିଷ୍ଟ୍ରିକ୍ଟ ବୋର୍ଡ଼ ମେମ୍ବରମାନଙ୍କ ଦାଣ୍ଡଦୁଆରେ ଗାଡ଼ି ଠିଆହେଲା । ସେମାନଙ୍କୁ କେତେ ପ୍ରକାର ଉପହାର, ପୁଷ୍ପମାଳା ମିଳିଲା, ତାଙ୍କ ପାଦରେ ମର୍ଦ୍ଦନ କରିବା ଲାଗି କେତେ କଣ୍ଢପୁରୀ ଜଡ଼ାତେଲ ଆମଦାନୀ ହେଲା । କିଏ କେତେବେଳେ କଣ ଆଣି ଗୁଞ୍ଜିଦେଇ ଗଲେ, ତାର ଠିକଣା ରହିଲା ନାହିଁ । ମନେ ମନେ ପ୍ରଭୁଙ୍କୁ ଡାକିଲି "ଭଲା ଏଥିମଧରେ ମୋ ମନଟା ସଦର ଗେଜେଟର ଛାପା ହୋଇଗଲେ ନିତାନ୍ତ ପକ୍ଷରେ ମୋ ଆଲମାରିରେ ଛାପଚିକଣ ସୁନେଲି କାଳିଦିଆ ନୂଆ ବହି ଖଣ୍ଡିଏ ରହିଯା'ନ୍ତା । ବାଲେଶ୍ୱରର ଶ୍ରୀଯୁକ୍ତ ରାଜାବାହାଦୁରଙ୍କ ବଦାନ୍ୟର ଜ୍ୱଳନ୍ତ ମଶାଲ ସ୍ୱରୂପ ଉକ୍ତ ପୁସ୍ତକ ଖଣ୍ଡି ରାଜାବାହାଦୁରଙ୍କ ପାର୍ଶ୍ୱଦେବତାଙ୍କ ଦ୍ୱାରା ଡିଷ୍ଟ୍ରିକ୍ଟ ବୋର୍ଡ଼ର ମେମ୍ବରମାନେ ପାଇ ଆପଣାକୁ କୃତାର୍ଥ ମଣିଥିଲେ ।

ମୋର ମେମ୍ବର ହେବା ସମ୍ବାଦ ଗେଜେଟରେ ବାହାରିଲା ବେଳକୁ ପୁସ୍ତକର ବିତରଣ କାର୍ଯ୍ୟ ସରିଥିଲା । ଅଗତ୍ୟା ସେ ଆଶାରେ ଏଥରକ ଜଳାଞ୍ଜଳି ଦେଲି । ପ୍ରାର୍ଥୀମାନଙ୍କ ମଧରୁ କେହି କେହି ମେମ୍ବରମାନଙ୍କ 'ଦ୍ୱାରସ୍ଥ' ହୋଇଥିଲେ । ଯାହାହେଉ ସେ ସୁଖ ମୋ

ଭାଗ୍ୟରେ ଘଟିଲା ନାହିଁ । ଘଟନାକ୍ରମେ କେତେକ ଗଣ୍ୟମାନ୍ୟ ମେମ୍ବରଙ୍କ ସଙ୍ଗେ ମୋର ସାକ୍ଷାତ୍ ହୋଇଥିଲା । କଥା ପ୍ରସଙ୍ଗରେ ପଚାରିଲି, ସେମାନେ କାହା ପାଇଁ ଭୋଟ ଦେବେ ? କେତେ ଜଣ କହିଲେ, ''କଣ କରିବି ? ଭାଇ, ଅମୁକ ଏ କ୍ଷେତ୍ରରେ ଯୋଗ୍ୟତର ବ୍ୟକ୍ତି ବୋଲି ମୁଁ ଜାଣେ, କିନ୍ତୁ ମୁଁ ତ ଅନ୍ୟ ଜଣେ ପ୍ରାର୍ଥୀଙ୍କ ପାଇଁ ଭୋଟ୍ ଦେବି ବୋଲି ଜବାବ ଦେଇ ସାରିଅଛି ।'' ମୁଁ ଏ ଉତ୍ତର ଶୁଣି କହିଲି, ''ଆମ ଦେଶଟା ଆତ୍ମ-ଶାସନ ପାଇଁ ଧୂଆଁ ଫୁଙ୍କା ହୋଇ ଲତପତ ହୋଇ ପାଚି ରହିଅଛି ।'' ପାଠକମାନେ ଭଲା ଥରେ ଭାବିଦେଖନ୍ତୁ ଦେଖି - ଯେଉଁ ଦେଶରେ ଆତ୍ମ-ଶାସନ କ୍ଷେତ୍ରରେ କର୍ତ୍ତାମାନଙ୍କର ଏଭଳି ଯୋଗ୍ୟତା ଅଛି, କେଉଁ ନିମକହାରାମ କହେ ଯେ ସେ ଦେଶଟା ଆତ୍ମଶାସନ ପାଇଁ ଉପଯୁକ୍ତ ନୁହେଁ । ଯେଉଁ ଦେଶର ଅନାହାରୀ ପ୍ରଭୁମାନଙ୍କ ପଦ ମର୍ଦ୍ଦନ ପାଇଁ କଣ୍ଟପୁରୀ ଜଡ଼ାତେଲର ଆମଦାନୀ ହୁଏ, କେଉଁ କୁପୁତ୍ର କହେ ଯେ ସେ ଦେଶ ଆତ୍ମ-ଶାସନ ପାଇଁ ପ୍ରସ୍ତୁତ ନୁହେଁ । ପଛକୁ ଭାବିଲି ଯେ, ଏ ପଦଟା ବି ଅନାହାରୀ ପଦ ପ୍ରାର୍ଥୀମାନେ ଗୋଟିଏ ଗୋଟିଏ ଭୋଟ ପାଇଁ କିଛି ଜରସମନ ଓ ମିଠେଇ ହାଣ୍ଡିଏ ଲେଖାଏଁ ରୋକ୍‌ଠୋକ୍ ବନ୍ଦୋବସ୍ତ କରିଦେଇ ନିଶ୍ଚିନ୍ତ ହୋଇ ବସୁ ନାହାନ୍ତି କିଆଁ ? ଏଥି ମଧ୍ୟରେ ସ୍ୱପ୍ନ ଦେଖିଲି ଯେ ଜଣେ ପରିଚିତ ପ୍ରାର୍ଥୀ ଗୋଟିଏ କଳା ଶାଢ଼ି ପିନ୍ଧି ଖଣ୍ଡିଏ ବନାରସୀ ଓଢ଼ଣା ପକାଇ ଟଙ୍କା ତୋଡ଼ାଟିଏ କାଖରେ ଜାକି ମୋ ପାଇଖାନା ଦୁଆରେ ଲୁଙ୍ଗୁପୁଙ୍ଗୁ ହେଉଅଛନ୍ତି; କିନ୍ତୁ ସେ ତୋଡ଼ାଟି ନେବାପାଇଁ ହାତ ବଢ଼ାଇ ଦେଲାବେଳକୁ ମୋ ନିଦଟି ଭାଙ୍ଗିଗଲା । ଚାହିଁଦେଇ ଦେଖିଲି ଯେ ଜଣେ ପୁରୁଣା ବନ୍ଧୁ ଆସି ମୋ ଶଯ୍ୟା ନିକଟରେ ବସି ଜଣେ ପ୍ରାର୍ଥୀଙ୍କ ପାଇଁ ସିଦ୍ଧ ବିନାୟକ ସ୍ତବପାଠ କରୁଅଛନ୍ତି । ତାଙ୍କୁ କହିଲି, ''ଫୁଲ, ବେଲପତ୍ର, ଅକ୍ଷତ ଦୂର୍ବା, ବାଲଭୋଗ ଓ ଦକ୍ଷିଣା ନ ଆଣି ଖାଲି ସ୍ତବପାଠ କଲେ ଆମ ଦେଶର ଠାକୁରଗୁଡ଼ାକ ଆଣ୍ଠୁଆଡୁ ବୁଝାମଣା କରନ୍ତି ।'' ଏ ବାଜେ କଥାଗୁଡ଼ାକ ଛାଡ଼ନ୍ତୁ । ଜଣେ ମେମ୍ବରବନ୍ଧୁ କଥା ପ୍ରସଙ୍ଗରେ କହିଲେ, ''ଏ କ୍ଷେତ୍ରରେ ମଧୁବାବୁ ଯୋଗ୍ୟତମ ବ୍ୟକ୍ତି, କିନ୍ତୁ ମୋ ଦାନା -'' ଏତିକି ମାତ୍ର କହି ଥକାମରା ହୋଇ ରହିଗଲେ ଓ ମୁଁ ବାକିତକ ପୂରଣ କରିପାରିଲି ନାହିଁ । ଜଣେ ଓସ୍ତାତି ବନ୍ଧୁ କହିଲେ, ''ମୁଁ ମଧୁବାବୁଙ୍କ ପାଇଁ ଅବଶ୍ୟ ଭୋଟ ଦେବି, ମୋ ପାଖକୁ ଅନ୍ୟ କୌଣସି ପ୍ରାର୍ଥୀଙ୍କର ପଣ୍ଡା ମଉଳା ନିମନ୍ତ୍ରଣ ନେଇ ଆସିଥିଲେ, କିନ୍ତୁ ମୁଁ ଯୋଗ୍ୟତମ ବ୍ୟକ୍ତି ପାଇଁ ଭୋଟ ଦେବି ଓ ଡିଷ୍ଟ୍ରିକ୍ଟ ବୋର୍ଡ଼ ମିଟିଙ୍ଗରେ ଉପସ୍ଥିତ ହୋଇ ଯୋଗ୍ୟତାର ଜୟ, ଅନୁରୋଧର ପରାଜୟ ଏ କଥା ସାକ୍ଷ ଲକ୍ଷ ପ୍ରତ୍ୟକ୍ଷରେ ଦେଖାଇ ଦେବି ।' କିନ୍ତୁ ଶିକାର ବେଳକୁ କୁକୁରା ପୋଖରୀପାଣି କରିବାକୁ ଚମ୍ପଟ । ମିଟିଙ୍ଗ୍ ପରେ ମୋ ଦ୍ୱାରସ୍ଥ ହୋଇ ବନ୍ଧୁଟି ଅତି ମିଠା ଭାବରେ କହିଲେ - ''ମୁଁ ନିଶ୍ଚୟ ମଧୁବାବୁଙ୍କ ପାଇଁ ଭୋଟ୍ ଦେଇଥା'ନ୍ତି, କିନ୍ତୁ ମିଟିଙ୍ଗରେ ଯୋଗ ଦେବା ପାଇଁ ଘରୁ ବାହାରି ଅଧାବାଟରେ ପାନେ Castor Oil (ଜଡ଼ାତେଲ) ପଡ଼ିଯିବାରୁ ମୋଠାରୁ ଦୁଇଟା ଗୋଟାଏ ପୋଖରୀ

ହୋଇଗଲା, ଆସିପାରିଲି ନାହିଁ । ଅଗତ୍ୟା ଡିଷ୍ଟ୍ରିକ୍ଟ ବୋର୍ଡ଼ର ସଭାରେ ଯୋଗ ଦେଇପାରିଲି ନାହିଁ ।'' ଘଟନାକ୍ରମେ ବନ୍ଧୁଙ୍କ 'ଘରଆଡ଼େ' ଦେଖିଲି, ଗୋଟିଏ ସୁନାର ତେନରି ହାର ଓ ଖଣ୍ଡିଏ ଚିରା ତମସୁକ ପଡ଼ିଛି । ଏଗୁଡ଼ିକ ସଙ୍ଗେ ସଦସ୍ୟ ନିର୍ବାଚନ କିଛି ସମ୍ପର୍କ ଅଛି କି ନାହିଁ ସ୍ଥିର କରି ନ ପାରି କ୍ଷୁଣ୍ଣ ମନରେ ଘରକୁ ଫେରିଲି, ଭାବିଲି କେଡ଼େ ସୁବିଧାଟାଏ ଚାହୁଁ ଚାହୁଁ ଛାଡ଼ିଦେଲି । ସେ ଯାହାହେଉ କଟକ ଡିଷ୍ଟ୍ରିକ୍ଟ ବୋର୍ଡ଼ରେ ଭୋଟ୍ ଦେବାଲାଗି ଯେଉଁଦିନ ସଭା ହୋଇଥିଲା ସେଦିନ କେତେଗୁଡ଼ିଏ ସଭ୍ୟ ଉପସ୍ଥିତ ଥିଲେ । ସେଥିରୁ ଦିଓଟି ଗୋଟିଏଙ୍କୁ ଦେଖିଲି ଯେ ସେମାନେ ମଧୁବାବୁଙ୍କ ପାଇଁ ଭୋଟ୍ ଦେଲେ, କିନ୍ତୁ ସେମାନଙ୍କ ଚେହେରା ଦେଖି ମନେକଲି ଯେ ସେମାନେ ଭାରି ସଂତ୍ରସ୍ତ ଓ ଭୀତ ଭାବରେ ବସିଥା'ନ୍ତି । ସଭା ଭାଙ୍ଗିଲା ପରେ ସେମାନଙ୍କ ପଛ ଆଡ଼କୁ ବୁଲିଯାଇ ଝଟ୍ କୈଫିୟତଟାଏ ତଲବ କରି ବସିଲି । ସେମାନେ ଜବାବ ଦେଲେ, ''ଭାଇ ! ଫଉଜଦାରୀ ଅଦାଲତର କାଠଗଡ଼ା ଭିତରେ ଠିଆହେବା ଲାଗି କାହାର ଡର ନ ଥାଏ ଯେ, ଆମର ଚେହେରା ଦେଖି ତୁମେ ଏଡ଼େ ଲଣ୍ଡଭଣ୍ଡ ହୋଇଗଲ ?'' ଏ ଉତ୍ତର ଶୁଣି ମୁଁ ପଚାରିଲି, ''ଫଉଜଦାରୀ ଅଦାଲତର ଅର୍ଥ ଗ୍ରାମ୍ୟ ଅନାହାରୀ ପ୍ରେସିଡେଣ୍ଟ ଠାରୁ ଆରମ୍ଭ କରି ହାଇକୋର୍ଟ ପର୍ଯ୍ୟନ୍ତ ମୁଁ କେତେ ପାହାଚ ଉଠିବି ?'' ଏ ପ୍ରଶ୍ନଟି ଶୁଣି ସେମାନେ ଉପସ୍ଥିତ ସଭ୍ୟମାନଙ୍କ ପ୍ରତି ବାଙ୍କ ଚାହାଣିଟିଏ ଚାହିଁଲେ, ଚାଲିଗଲେ । ଏତ ଗଲା କଟକ ଡିଷ୍ଟ୍ରିକ୍ଟ ବୋର୍ଡ଼ର ଘଟନା ।

ଓଡ଼ିଶାରେ ୭ଟି ଭୋଟ୍ । ସେଥିମଧ୍ୟରୁ କଟକର ୩, ବାଲେଶ୍ୱର ୨, ପୁରୀର ୧ ଓ ସମ୍ବଲପୁରର ୧ । କଟକ, ପୁରୀ ଓ ସମ୍ବଲପୁର ମଧୁବାବୁଙ୍କ ପାଇଁ ଭୋଟ୍ ଦେଲେ । ସର୍ବଶେଷରେ ମଧୁବାବୁଙ୍କ ପାଇଁ ଭୋଟ୍ ସଂଖ୍ୟା ବେଶି ହେବାରୁ ମଧୁବାବୁ ବଙ୍ଗ ବ୍ୟବସ୍ଥାପକ ସଭାର ଉତ୍କଳୀୟ ପ୍ରତିନିଧି ରୂପେ ନିର୍ବାଚିତ ହେଲେ । ସେ ଯାହାହେଉ ବାଲେଶ୍ୱରର ବିଧିବିଡ଼ମ୍ବନା ଦେଖି ଏଥର ଟିକିଏ ହସ ମାଡ଼ିଲା । ଗତଥର ଓଡ଼ିଶା ଓ ଛୋଟନାଗପୁରର ମ୍ୟୁନିସିପାଲିଟିମାନଙ୍କ ପାଳିରେ ନିର୍ବାଚନର ଭାର ପଡ଼ିଥିଲା । ଛୋଟନାଗପୁରର ପ୍ରାର୍ଥୀ ଓ ଉତ୍କଳର ପ୍ରାର୍ଥୀଙ୍କ ମଧ୍ୟରେ ଟକ୍କର ଲାଗିଥିଲା । ବାଲେଶ୍ୱରର ପ୍ରତିନିଧି ଛୋଟନାଗପୁରକୁ ଅଣେଇ ହୋଇ ପଡ଼ିଲାରୁ ଓଡ଼ିଶା ଭାଗ୍ୟଟା ଚିତଉପିଠା ଭଳି ଲେଉଟି ପଡ଼ିଲା । କିନ୍ତୁ ବିଧି ବିଡ଼ମ୍ବନାରେ ତ କାହାରି ହାତ ନାହିଁ । ଗତବର୍ଷ ଯେଉଁ ବାଲେଶ୍ୱର ସମସ୍ତ ଓଡ଼ିଶାକୁ ଠେସିଦେଇ ଛୋଟନାଗପୁରକୁ କୁଦାଟାଏ ମାରିଥିଲା, ପ୍ରାୟଶ୍ଚିତ୍ତସ୍ୱରୂପ ଏଥରକ ସେହି ବାଲେଶ୍ୱର ମାଙ୍କଡ଼ଚିତ୍‌ଟାଏ ମାରି ଆଚ୍ଛା କଚଡ଼ାଏ ପାଇଲା । ଏଇଥିପାଇଁ ଆମ ଗାଁ ମାଇପେ କହନ୍ତି, ''ଉଧାର ମାଣକ ପାଞ୍ଚ ପାଆ ।'' ଏଥର ଓଡ଼ିଶାରେ ଯେଉଁ ସର୍କସଟା ହୋଇଗଲା, ସେଥିରେ ଯେ ଯାହା ଖଞ୍ଜରେ ଓସ୍ତାତି ପେଞ୍ଚ ମାଇଲେ, ଯେ ଜିତିଗଲେ ସେ କହିଲେ, ''ଇଏବି ଏକ କସରତ୍,'' ଯେ ଚିତ୍‌ପଟାଙ୍କ ହୋଇପଡ଼ିଲେ ସେ ବିଚାରିଲେ, ''ଇଏ ବି ଏକ କସରତ୍ ।'' ପାଠକମାନେ

କେହି କେହି କହିବେ, ଏ ଶେଷ ପଦର ଅର୍ଥ କଣ ? ଦୂର୍ କର । ଏତେ ସାଫ୍‌ସୁତୁରା କରି ବୁଝାଇଲା ବେଳକୁ କଣ୍ଟାବାଡ଼ରେ ଲୁଗା ଲାଗିବ ଯେ । ତେବେ ମୁଁ ନିର୍ବାଚନ ଅଭିନୟ ମଧ୍ୟରେ ଗୋଟାଏ କଥା ଦେଖିଲି - 'ବାଘ ଗୋଳକୁ ଚୋର ଗୋଳ', 'ଜଙ୍କଡ଼ାକୁ ଗୋଳିପାଣି' ଇତ୍ୟାଦି ଢଗଗୁଡ଼ିକର ବିଶେଷକଥନ ମୁଁ ଦେଖୁଥାଏ । ସଂକୀର୍ତ୍ତନ ବେଳେ ହାଉଡ଼ାଟା ମଧ୍ୟ ଆଁ କରିଦିଏ । କେହି କେହି ସୁଯୋଗ ବୁଝି ଆର ବର୍ଷକୁ ବିହନ ଓଳିଆ ବାନ୍ଧି ରଖିଥିଲେ, କିନ୍ତୁ ଓଳିଆ ଫିଟାଇ ଦେଖିଲା ବେଳକୁ ଓଳିଆ ଭିତରଯାକ ଭମାପୋକ ଓ ଟୁଙ୍ଗେଇମୂଷା । ମନେ ମନେ ବିଚାରିଲି, ଓଡ଼ିଶାଯାକ ଭମାପୋକ ଓ ଟୁଙ୍ଗେଇମୂଷା ।

ମୋ କଥାଟି ସଇଲା, ଫୁଲଗଛଟି ମଲା, ଯେଝା ଖଞ୍ଜରେ ଯେ ଘର ଦ୍ୱାର କଲେ, ମୁଁ ଗଲାରୁ ମତେ କଥା କହିଲେ ନାହିଁ । ଏତେ ଗଣ୍ଡଗୋଳ, ଖିରିପିଠା, ଆଉଁଘଘା, ହୁଁ ହାଁ ହେଲା । ମୋ ବ୍ରାହ୍ମଣିଆ କପାଳକୁ ବନମାଳୀ ସାହୁ ଦୋକାନରୁ କିସ୍‌ମିସ୍ ଦିଆ ଗୋଟାଏ ଲଡୁର ଫାଳେ ସୁଦ୍ଧା ହାବୁଡ଼ରେ ପଡ଼ିଲା ନାହିଁ । ସେଇଥିପାଇଁ ଭୋକବିକଳରେ ଚୁଲି ଦରାଣ୍ଡି ପକାଇଲି । ପାଠକ ଓ ଉପପାଠକମାନେ କ୍ଷମା କରିବେ, ଆଜି ରହିଲି ।

ଉତ୍କଳ ସାହିତ୍ୟ/୧୨ଶ ଭାଗ/୧୩୧୫ ସାଲ ।

## ।। ବାଇଶ ।।

ଉତ୍କଳ ସମ୍ମିଳନୀର ଷଷ୍ଠ ଅଧିବେଶନ । ଗତ ଡିସେମ୍ବର ମାସ ୨୮ ଓ ୨୯ ତାରିଖ ଦିନ କଟକ ନଗରରେ ଉତ୍କଳ ସମ୍ମିଳନୀ ସଭାର ଷଷ୍ଠ ଅଧିବେଶନ ହୋଇଗଲା । କଟକ, ପୁରୀ, ବାଲେଶ୍ୱର, ଗଡ଼ଜାତ, ସମ୍ବଲପୁର, ଗଞ୍ଜାମ ଓ କଲିକତାରୁ କେତେଗୁଡ଼ିଏ ପ୍ରତିନିଧି ସଭାରେ ଯୋଗ ଦେଇଥିଲେ । ଆଠଗଡ଼ର ରାଜା ବାହାଦୁର ଏଥର ସଭାପତିଙ୍କ ଆସନ ଗ୍ରହଣ କରିଥିଲେ । ଗତ ନଭେମ୍ବର ମାସରେ ଯେତେବେଳେ ତାଙ୍କୁ 'ରାଜାବାହାଦୁର' ସନନ୍ଦ ଦେବା ଲାଗି ଛୋଟ ଲାଟସାହେବ କଟକରେ ଦରବାର କରିଥିଲେ, ସେତେବେଳେ ଆମ୍ଭେମାନେ ରାଜା ବାହାଦୁରଙ୍କୁ ଦେଖିଥିଲୁଁ ଓ ତାଙ୍କୁ ସଭାପତି ପଦରେ ମନୋନୀତ କରିବା ଲାଗି ଯେତେବେଳେ ସମ୍ମିଳନୀର ଅଧିବେଶନ ପୂର୍ବରୁ ପ୍ରଥମେ କେନ୍ଦ୍ରସମିତିରେ ପ୍ରସ୍ତାବ ହୋଇଥିଲା, ସେତେବେଳେ ଆମ୍ଭେମାନେ ବିଚାରିଲୁଁ ଯେ ଉଚ୍ଚାରଣର ଅସ୍ପଷ୍ଟତା ଯୋଗୁଁ ସେ ବକ୍ତୃତା ପାଠ କରି ପାରିବେ ନାହିଁ । ଅଧିକାଂଶ ସଭ୍ୟଙ୍କ ମତ ଅନୁସାରେ ତାଙ୍କୁ ସଭାପତି ପଦରେ ମନୋନୀତ କରାଯାଇ ତାଙ୍କୁ ପତ୍ର ଲେଖା ଯାଇଥିଲା; କିନ୍ତୁ ସତକୁ ସତ ରାଜାବାହାଦୁର ଉତ୍ତର ଦେଲେ ଯେ ଉଚ୍ଚାରଣର ଅସ୍ପଷ୍ଟତା ଦୋଷରୁ ସେ ଉକ୍ତ ପଦ ଗ୍ରହଣ କରିବାକୁ କୁଣ୍ଠିତ । ତତ୍‌ପରେ ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ସି.ଆଇ.ଇ. ମହୋଦୟଙ୍କୁ ଉକ୍ତ ପଦ ଗ୍ରହଣ କରିବା ସକାଶେ ଅନୁରୋଧ କରାଗଲା । ସେ ଉତ୍ତର ଦେଲେ କି ଉତ୍କଳ ସମ୍ମିଳନୀ ସଙ୍ଗେ ତାଙ୍କ ନାମକୁ କେତେକ ବ୍ୟକ୍ତି ଏପରି

ଭାବରେ ଜଡ଼ିତ କରିଅଛନ୍ତି ଯେ ସେ ସମ୍ମିଳନୀର ସଭାପତି ହେଲେ ତହିଁରୁ କେତେ 'ଅନର୍ଥ' ବାହାରିବାର ସମ୍ଭାବନା, ଅତଏବ ସେ ମଧ ଅନିଚ୍ଛା ପ୍ରକାଶ କଲେ । ଦୈବ ଯୋଗକୁ ସେହି ସମୟରେ ସୋନପୁରର ମହାରାଜା କଟକ ଆସିଥିଲେ, କେନ୍ଦ୍ର ସମିତି ତାଙ୍କୁ ସଭାପତି ହେବା ସକାଶେ ଅନୁରୋଧ କଲେ, କିନ୍ତୁ ସେ ଉକ୍ତ ପଦ ଗ୍ରହଣ କରିବାକୁ ସ୍ୱୀକୃତ ହେଲେ ନାହିଁ । ଅବଶେଷରେ ଢେଙ୍କାନାଳର ରାଜା ମହୋଦୟଙ୍କୁ ଅନୁରୋଧ କରାଗଲା, ସେ ମଧ ଧନ୍ୟବାଦର ସହିତ ନାସ୍ତି କଲେ । ଏ ସବୁ ଘଟନା ଦେଖି କେତେ ଲୋକ ନିରାଶ ହେଲେ ଓ ମୋ ଭଳି କେତେ ବ୍ୟକ୍ତି ଆଶାପୂର୍ଣ୍ଣ ନୟନରେ ଭବିଷ୍ୟଦ୍ ଗର୍ଭକୁ ଅନାଇ ରହିଲେ । ଦିନେ ଗୋଟାଏ ଭାରି ସୁଖ ସ୍ୱପ୍ନ ଦେଖିନେଲି, କେଜାଣି ମୋ ନାମଟା - ଦୂର କର୍ ! କଣ କହୁ କହୁ କଣ କହି ପକାଇଲି - ଛାଡ଼ ସେ କଥା । ସବୁ ଆଡ଼ ନିରାଶ ହୋଇ ସମସ୍ତେ ମୁଣ୍ଡ ପୋତି ବସିଗଲେ । ସେଇଠଉଁ କଣ ହେଲା ନା, କେନ୍ଦ୍ର ସମିତି ଅବଶେଷରେ ଆଠଗଡ଼ର ରାଜାବାହାଦୁରଙ୍କଠାରୁ ଖଣ୍ଡିଏ ପତ୍ର ପାଇଲେ । ସେଥିରେ ଲେଖାଅଛି - ''ମୋ ବକ୍ତୃତା ମୁଁ ସମ୍ମିଳନୀ ମଣ୍ଡପରେ ନିଜେ ପାଠ କରି ନ ପାରିଲେ ଯେବେ ଆପଣମାନଙ୍କ ମଧରୁ କେହି ତାହା ପାଠ କରିବାକୁ ସ୍ୱୀକୃତ ହୁଅନ୍ତି, ତାହାହେଲେ ମୁଁ ସଭାପତି ହେବାକୁ ସ୍ୱୀକୃତ ହେବି ।'' ଏ ପତ୍ରଖଣ୍ଡିକ ପାଇ ସମସ୍ତେ ଗୋଟାଏ ଲେଖାଏଁ ଦୀର୍ଘ ନିଃଶ୍ୱାସ ମାଇଲେ । ଆଉ ତ ଚାରା ନାହିଁ, ଅଗତ୍ୟା ସେ ପ୍ରସ୍ତାବରେ ସଭ୍ୟମାନେ ସମ୍ମତ ହେଲେ । ସମ୍ମିଳନୀର ଅଧିବେଶନର ଦିବସ ଉପସ୍ଥିତ ହେଲା । ସଭାପତି ମହାଶୟ ନିଜେ ବକ୍ତୃତା ପାଠ ନ କରି ବସି ରହିବେ, ଆଉ ଜଣେ ତାଙ୍କ ବକ୍ତୃତା ପାଠ କରିବେ, ଏହା ସମସ୍ତଙ୍କୁ ଅଡୁଆ ଲାଗୁଥାଏ । କୌଣସି କୌଣସି ଖବରକାଗଜରେ ଆଗରୁ ପ୍ରକାଶ ହେଲା ଯେ ସଭାପତିଙ୍କ ବକ୍ତୃତା ସଭାମଣ୍ଡପରେ 'ଗ୍ରାମୋଫୋନ୍' ଦ୍ୱାରା ପଢ଼ା ଗଲେ ଭଲ ହୁଅନ୍ତା । ଯାହାହେଉ, ସଭାପତି ମହାଶୟ ଗାତ୍ରୋତ୍ଥାନ କରିବା ପୂର୍ବରୁ ତାଙ୍କର ବକ୍ତୃତା ମୁଦ୍ରିତ ହୋଇ ସମ୍ମିଳନୀ ସଭାରେ ବଣ୍ଟା ହେଲା । ସଭାପତି ମହାଶୟ ବକ୍ତୃତା ପାଠ କରିବାକୁ ଆରମ୍ଭ କଲେ ଓ ଧୀର ଗମ୍ଭୀର ଭାବରେ ବକ୍ତୃତାଟି ଶେଷ କଲେ । ତାଙ୍କର ପଠନ ପ୍ରଣାଳୀ ସ୍ଥୂଳତଃ ସୁନ୍ଦର ହୋଇଥିଲା । ତହିଁ ପରଦିନ ସଭା ଭଙ୍ଗ ହେଲା ପରେ କେତେ ଲୋକଙ୍କଠାରୁ ଶୁଣିଲି ଯେ କେତେକ ଅପେକ୍ଷାକୃତ ଅଳ୍ପବୟସ୍କ ବକ୍ତାଙ୍କ ବକ୍ତୃତା ଅପେକ୍ଷା ବୟସ୍କ ସଭାପତିଙ୍କ ବକ୍ତୃତା ବେଶି ଲୋକ ସ୍ପଷ୍ଟ ଭାବରେ ଶୁଣି ପାରିଥିଲେ । ମନେ ମନେ ବିଚାରିଲି ଯେ ସଭାପତି ମହାଶୟ ନିଜେ ବକ୍ତୃତାଟି ପଢ଼ି ନ ପାରି ଅନ୍ୟ କୌଣସି ଚଳନ୍ତି ପ୍ରତିମାଙ୍କଦ୍ୱାରା ତାହା ପଢ଼ା ହୋଇଥିଲେ ମୋ ଭଳିଆ କେତେ ସମାଲୋଚକଙ୍କୁ ଗୋଟାଏ ବାରୁଣୀଯୋଗ ପଡ଼ିଥା'ନ୍ତା । ଯାହାହେଉ, ଗଲା କଥା ଗଲାଣି ।

ସଭାପତିଙ୍କ ବକ୍ତୃତା ସମ୍ବନ୍ଧରେ ଉତ୍କଳୀୟ ସଂବାଦପତ୍ରମାନେ ମଧ ଅନୁକୂଳ ମନ୍ତବ୍ୟ ପ୍ରକାଶ କରିଥିବାର ଦେଖିଲି । ମୁଁ ଏତିକି ଦେଖି ପାରିଲି ଯେ ପୂର୍ବ ବର୍ଷମାନଙ୍କ ପରି ଏ

ବକ୍ତୃତାଟି ଦୀର୍ଘ ନ ଥିଲେହେଁ ଦୃଢ଼ଭାବରେ ଦିଓଟି ଗୋଟିଏ ବିଷୟ ପ୍ରତି ଲକ୍ଷ୍ୟ ରଖି କାର୍ଯ୍ୟ କରିବାଲାଗି ସଭାପତି ମହାଶୟ ଯେଉଁ ଉପଦେଶ ଦେଇଥିଲେ, ତାହାହିଁ ଏ ବର୍ଷ ବକ୍ତୃତାର ବିଶେଷତ୍ୱ । ସଭାପତିଙ୍କ ଉପଦେଶରୁ ମୁଁ ତଳଲିଖିତ ସ୍ଥୂଳ ମର୍ମ ଗ୍ରହଣ କରିଥିଲି । ବର୍ଷକଯାକ ଆଖୁ କିଆରିରେ ପଶି ଶେଷକୁ ଆମ୍ଭେମାନେ କିଛି କରିପାରିଲୁ ନାହିଁ ବୋଲି ସକେଇ ହେବା ଅପେକ୍ଷା ଲାଗିପଡ଼ି ଦିଓଟି ଗୋଟିଏ କାର୍ଯ୍ୟରେ କୃତକାର୍ଯ୍ୟ ହେବା ସହସ୍ର ଗୁଣରେ ଭଲ ।

ଏଥର ସମ୍ମିଳନୀରେ ସମ୍ବଲପୁର ଅଞ୍ଚଳର ଦୁଇ ଜଣ ବିଶିଷ୍ଟ ବ୍ୟକ୍ତି ଯୋଗ ଦେଇ ଆମ୍ଭମାନଙ୍କୁ ପରମାପ୍ୟାୟିତ କରିଥିଲେ । ଏଥରକ ମଧ୍ୟ ସମ୍ମିଳନୀ ମଣ୍ଡପରେ ଜାତୀୟ ସଜୀବତାର ନିଦର୍ଶନ ମିଳିଥିଲା । କଟକ କଲେଜର ଶ୍ରୀଯୁକ୍ତ ଗାରେଟ ସାହେବ ଓ ଓଡ଼ିଶାର କମିସନର ଶ୍ରୀଯୁକ୍ତ ଲେଭିଞ୍ଜ ସାହେବ ପ୍ରଥମ ଦିନ ସଭାରେ ଉପସ୍ଥିତ ହୋଇ ଆମ୍ଭମାନଙ୍କୁ ଉତ୍ସାହିତ କରିଥିଲେ । ସୌଭାଗ୍ୟବଶତଃ ଏ ବର୍ଷ ସମ୍ମିଳନୀ ମଣ୍ଡପରେ ଗୋଟିଏ ସ୍ଥାୟୀ ପାଣ୍ଠି ପ୍ରତିଷ୍ଠିତ ହେବାର ସୂତ୍ରପାତ ହୋଇଅଛି ଓ କେତେଗୁଡ଼ିଏ ଚାନ୍ଦା ମଧ୍ୟ ସ୍ୱୀକୃତ ହୋଇଅଛି । ଏହାକୁ ହିଁ ମୁଁ ଏ ବର୍ଷର ବିଶେଷତ୍ୱ ବୋଲି ମନେ କରିଅଛି । ଯେବେ କଟକର କେନ୍ଦ୍ର ସମିତି ପୁନର୍ବାର ସୁଖନିଦ୍ରାରେ ଅଭିଭୂତ ନ ହୋଇ ଗେଲବସରପଣିଆ ଛାଡ଼ି କାର୍ଯ୍ୟରେ ହସ୍ତକ୍ଷେପ କରନ୍ତି, ତାହାହେଲେ ସମ୍ମିଳନୀର ଜୀବନରେ ଗୋଟିଏ ନୂତନ ଯୁଗର ଆରମ୍ଭ ହେଲା ବୋଲି ମନେ କରାଯିବ । ତାହା ନ ହେଲେ ଯଥୈବାସ୍ତେ ତଥୈବାସ୍ତାଂ । ଏଥର ସମ୍ମିଳନୀର 'ସ୍ୱେଚ୍ଛାସେବକ' ମାନଙ୍କୁ ପରିଚାଳନା କରିବାର ଭାର ମୋ ଉପରେ ପଡ଼ିଥିଲା । କେତେକ ଦିନ ସେହି ଯୁବକମାନଙ୍କ ସଙ୍ଗେ ଭ୍ରାତୃଭାବରେ ମିଳିମିଶି କାର୍ଯ୍ୟ କରିବାର ସୁବିଧା ପାଇଥିଲି ଓ ସେମାନଙ୍କର ଅମାୟିକ ବ୍ୟବହାର ଏବଂ ଶ୍ରମସହିଷ୍ଣୁତା ଦେଖି ମୁଁ ମୁଗ୍ଧ ହୋଇଥିଲି ଓ ମନେ ମନେ ଯୁବକମାନଙ୍କୁ ସହସ୍ରବାର ଆଶୀର୍ବାଦ କରିଅଛି ।

ଏ ବର୍ଷ ଅଭ୍ୟର୍ଥନା ସମିତିର ସଭାପତି ପଦରେ ଶ୍ରୀଯୁକ୍ତ କନିକାର ରାଜା-ମହୋଦୟ ମନୋନୀତ ହୋଇଥିଲେ । କୌଣସି ସାଧାରଣ କାର୍ଯ୍ୟରେ ପ୍ରଭେଦ ଭୁଲି ଯାଇ ସମସ୍ତଙ୍କ ସଙ୍ଗେ ଭ୍ରାତୃଭାବରେ ଯୋଗ ଦେବାର କ୍ଷମତା ତାଙ୍କର ଯାହା ମୁଁ ନିଜେ ଏଥର ଅନୁଭବ କଲି, ଏପରି କ୍ଷମତା ଉତ୍କଳର ବିଭବଶାଳୀ ବ୍ୟକ୍ତିମାନଙ୍କଠାରେ ଖୁବ କମ୍ ଦେଖାଯାଏ । କାର୍ଯ୍ୟଗତିରେ ତାଙ୍କ ସଙ୍ଗେ ସମ୍ମିଳନୀର ଆନୁଷଙ୍ଗିକ ଆୟୋଜନ ସମ୍ବନ୍ଧରେ ମୋର ଅନେକ ସମୟରେ ମତ ପାର୍ଥକ୍ୟ ଘଟିଅଛି ସତ୍ୟ, କିନ୍ତୁ ସେ ଉକ୍ତ ମତ ପ୍ରଭେଦକୁ କଦାପି ବ୍ୟକ୍ତିଗତ କରି ପକାଇ ନାହାନ୍ତି । 'ଜ୍ଞାନେ ମୌନଂ କ୍ଷମା ଶକ୍ତୌ, ତ୍ୟାଗେ ଶ୍ଲାଘାବିପର୍ଯ୍ୟୟଃ' ଏହିଗୁଡ଼ିକ ସିନା ମନୁଷ୍ୟପଣିଆ । ନଚେତ୍ ତାଙ୍କ ରାଜ୍ୟରେ ସେ ରାଜା, ମୋ ମେଣ୍ଢା କୁଡ଼ିଆରେ ମୁଁ ଏକାଙ୍ଗ ଚକ୍ରବର୍ତ୍ତୀ । ଏଥରକ ସମ୍ମିଳନୀର ସମସ୍ତ ଆୟୋଜନରେ ସେ କାୟମନୋବାକ୍ୟରେ ଲାଗିଥିଲେ ଓ ଏଥିମଧ୍ୟରେ ତାଙ୍କୁ ସମ୍ମିଳନୀ

ନିମନ୍ତେ ଅର୍ଥ ବ୍ୟୟ, ସମୟ ବ୍ୟୟ ଓ ପରିଶ୍ରମ କରିବା ପାଇଁ କୁଣ୍ଠିତ ହେବାର ମୁଁ ଦେଖି ନାହିଁ । ବର୍ତ୍ତମାନ ଗୁଡ଼ିଏ ଦେଶହିତକର ଅନୁଷ୍ଠାନରେ ତାଙ୍କର ନାମ ଘନିଷ୍ଠ ଭାବରେ ସଂଶ୍ଳିଷ୍ଟ ଓ ଅନେକ ବାଳକଙ୍କର ପଠନ ବ୍ୟୟ ସେ ଅକୁଣ୍ଠିତ ଭାବରେ ଗ୍ରହଣ କରିଅଛନ୍ତି । ତାଙ୍କର ଇଉରୋପ ଭ୍ରମଣରୁ ଫେରି ଆସିବା ଦିନଠାରୁ ଆମ୍ଭେମାନେ ତାଙ୍କ ଜୀବନରେ ଗୁଡ଼ିଏ ଶୁଭ ପରିବର୍ତ୍ତନ ଦେଖିପାରି ଆନନ୍ଦିତ ଓ ମୁଗ୍ଧ ହୋଇଅଛୁଁ । ସେହି ପରିବର୍ତ୍ତନ ପାଇଁ ଦେଶାଟନ ଓ ସତ୍‌ସଙ୍ଗ କି ପରିମାଣରେ ଦାୟୀ, ତାହା ଅବଶ୍ୟ ବର୍ତ୍ତମାନ ଇୟତ୍ତା କରିବାର ସମୟ ନୁହେଁ । କେତେ ଲୋକ ବିଲାତ ନ ଯାଉଣୁଁ ଅଧବାଟରୁ ଡିମ୍ବ କାଞ୍ଜିଆ କରି ଫସରଫାଟି ଯାଉଅଛନ୍ତି, କିଏ କିଏ ବିଲାତକୁ ଯାଇ ତେଣୁ ଗୁଡ଼ିଏ ଦୁର୍ଗୁଣ ଆମଦାନୀ କରି ଆସୁଛନ୍ତି, କିନ୍ତୁ କନିକାର ରାଜା ମହୋଦୟ ବିଲାତରୁ ଫେରି ଆସି ତାଙ୍କର ଅମାୟିକତା ଏବଂ ଜାତୀୟ ଓ ଦେଶହିତକର କାର୍ଯ୍ୟମାନଙ୍କରେ ସହାନୁଭୂତିର ଯେଉଁ ନିଦର୍ଶନ ଦେଖାଇଅଛନ୍ତି, ତାହା ତାଙ୍କ ପକ୍ଷରେ କେତେ ଦୂର ମଙ୍ଗଳଜନକ ତାହା ସେ ଜାଣନ୍ତି, କିନ୍ତୁ ତାହା ଆମ୍ଭମାନଙ୍କ ପକ୍ଷରେ ଗୌରବର ବିଷୟ ବୋଲିବାକୁ ହେବ । ସମଗ୍ର ଉତ୍କଳ ଆଶାବିସ୍ଫାରିତ ନୟନରେ ତାଙ୍କ ଆଡ଼କୁ ଅନାଇଅଛନ୍ତି ଓ କହୁଅଛନ୍ତି, ''ମହାପ୍ରଭୁ ତାଙ୍କୁ କୋଟି ଆୟୁଷ ଦିଅନ୍ତୁ ।'' (ପାଠକ ଉପ-ପାଠକ ଅବଧାନ ! ଅବାନ୍ତର କଥାଟାଏ କହିବି, କ୍ଷମା କରିବେ । ଆପଣମାନେ କେହି ମନେ କରିବେ ନାହିଁ ଯେ ଯାଉଁଳି ବାନ୍ଧିବା ଲୋଭରେ ବ୍ରାହ୍ମଣିଆ ତୁଣ୍ଡରୁ ଲାଳ ବୋହିପଡୁଛି । ସାବଧାନ ! ସରଜମିନ ତଦନ୍ତ ନ କରି ଓ ହଲପାନ୍ ଇଜହାର ନ ନେଇ ହଠାତ୍ ରାୟ ଦେଇ ପକାଇବେ ନାହିଁ !)

ବଡ଼ ବଡ଼ ନିମିତ୍ତ ପର୍ବରେ ଛୋଟିଆ ଛୋଟିଆ ଆକସ୍ମିକ ଦୁର୍ଘଟନା ଅବଶ୍ୟମ୍ଭାବୀ । ତିଅଣ ବଘାରୁ ବଘାରୁ ଆଇମା'ର ଗୋଡ଼ରେ ଦୁଇଟା ଗୋଟାଏ ଫୋଟକା ହୋଇଯାଏ, ମହୁର ହାଣ୍ଡିଟା ଫାଟିଯାଇ ନାନୀ ଗୋଡ଼ଟା ତାତିଯାଏ, ଏହିପରି କେତେ ନଗଣ୍ୟ ଦୁର୍ଘଟନା ଘଟିଥାଏ; କିନ୍ତୁ ''କନ୍ୟା ବରୟତେ ରୂପଂ, ମାତା ବିତ୍ତଂ, ପିତା ଶ୍ରୁତଂ, ବାନ୍ଧବାଃ କୁଳମିଚ୍ଛନ୍ତି, ମିଷ୍ଟାନ୍ନମିତରେ ଜନାଃ ।'' ବରର ରୂପ, ଧନ, ବିଦ୍ୟା, କୁଳ ହେଲେ ଓ ସାଧାରଣ ଲୋକଙ୍କୁ ଖୋଷଣିଫିଟା ଖିରିପିଠାଟାଏ ମିଳିଲେ ବିବାହଟି ସର୍ବାଙ୍ଗସୁନ୍ଦର ହେଲା – ବାଇନାନୀର ଗୋଡ଼ ଫୋଟକାକୁ ପଚାରେ କିଏ ? ଏଥର ସମ୍ମିଳନୀବେଳେ ଦୁଇଟା ଗୋଟାଏ ଛୋଟିଆ ଛୋଟିଆ ଅଖଞ୍ଜିଆ କଥା ଘଟିଥିଲା, ତାହା ଘଟିବା ମଧ୍ୟ ସ୍ୱାଭାବିକ । ସେପରି ସାମାନ୍ୟ କଥା ସାଙ୍ଗେ ସାଙ୍ଗେ ଉଭେଇ ଗଲା ଓ ଏଥର ସମ୍ମିଳନୀର ଅଧିବେଶନଟି ସର୍ବାଙ୍ଗ ସୁନ୍ଦର ହୋଇଥିଲା; କିନ୍ତୁ ନାନା ଅସୁବିଧା ଯୋଗୁଁ ଦୂରାଗତ ବନ୍ଧୁମାନଙ୍କୁ ସମୁଚିତ ଭାବରେ ଚର୍ଚ୍ଚା କରି ନ ପାରି ଆମ୍ଭେମାନେ ଦୁଃଖିତ ଓ ଲଜ୍ଜିତ ହୋଇଅଛୁଁ ଓ ସେଥିପାଇଁ ସେମାନଙ୍କ ନିକଟରେ ଶତବାର କ୍ଷମା ପ୍ରାର୍ଥନା କରୁଅଛୁଁ ।

ଅଧିବେଶନର କେତେଦିନ ପୂର୍ବରୁ ମାନ୍ୟବର ଶ୍ରୀ ମଧୁସୂଦନ ଦାସ ସି.ଆଇ. ହଠାତ୍ ପୀଡ଼ାଗ୍ରସ୍ତ ହୋଇ ଶଯ୍ୟାଗତ ହେଲେ; ଏପରିକି, କେତେକ ଦିନ ପର୍ଯ୍ୟନ୍ତ ସେ

ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଉଠି ପାରିଲେ ନାହିଁ । ସେ ଏପରି ଦୁର୍ବଳ ହୋଇଥିଲେ ଯେ ମାନସିକ ପରିଶ୍ରମ ଓ ମସ୍ତିଷ୍କ ଚାଳନା କରିବା ସକାଶେ ତାଙ୍କୁ ଡାକ୍ତର ବିଶେଷ ଭାବରେ ନିଷେଧ କରିଥିଲେ ତଥାଚ ରୋଗଶଯ୍ୟାରେ ଅତି ପୀଡ଼ିତ ଅବସ୍ଥାରେ ପଡ଼ି ରହି ସୁଦ୍ଧା ସମ୍ମିଳନୀର ଆନୁଷଙ୍ଗିକ ଆୟୋଜନ କେତେଦୂର ଅଗ୍ରସର ହେଲା ଏହା ଜାଣିବା ପାଇଁ ସେ ସର୍ବଦା ଉତ୍କଣ୍ଠା ପ୍ରକାଶ କରୁଥିଲେ ଓ ଡାକ୍ତରଙ୍କ ବାରଣ ନ ମାନି ଅନ୍ତରଙ୍ଗ ବନ୍ଧୁମାନଙ୍କ ସଙ୍ଗେ ସମ୍ମିଳନୀ ବିଷୟରେ ତର୍କ-ବିତର୍କ କରୁଥିଲେ । ରୋଗଶଯ୍ୟାରେ ସେ ସ୍ଥିର ହୋଇ ରହି ପାରିଲେ ନାହିଁ, ଡାକ୍ତରଙ୍କ ପରାମର୍ଶକୁ ଏଡ଼ି ଦିନେ ସମ୍ମିଳନୀ ମଣ୍ଡପ ଦେଖିବାକୁ ଗଲେ, ଫେରି ଆସି ଅତିଶୟ ରୋଗଯନ୍ତ୍ରଣା ଭୋଗ କରିବାକୁ ପଡ଼ିଲା । ତେବେ ସୁଦ୍ଧା ସେ ସମ୍ମିଳନୀର ଅଧିବେଶନର ଦୁଇ ଦିନଯାକ ସଭାରେ ଉପସ୍ଥିତ ହୋଇଥିଲେ ଓ ଯଥାଶକ୍ତି ବକ୍ତୃତା କରିଥିଲେ । ଏଥରତ ସମ୍ମିଳନୀ ପୂର୍ବରୁ ତାଙ୍କର ରୋଗଶଯ୍ୟାରେ ଉତ୍କଣ୍ଠା ଦେଖି ମନେ ମନେ ବିଚାରିଲି ଯେ ମୋ ଭଳିଆ କେତେ ଲୋକଙ୍କର ଚକ୍ଷୁ ଫିଟାଇବା ପାଇଁ ଈଶ୍ୱର ଏପରି ସମୟରେ ତାଙ୍କୁ ପୀଡ଼ାଗ୍ରସ୍ତ କରାଇଥିଲେ । ସମ୍ମିଳନୀ ପ୍ରତି ରୋଗଶଯ୍ୟାରେ ଏପରି ଅଚଳାଭକ୍ତି କେତେ ଜଣଙ୍କର ଅଛି, ଏହାହିଁ ମୁଁ ଭାବୁଥିଲି । ମଧୁବାବୁ ସମ୍ମିଳନୀକୁ ଯେପରି ଆପଣାର ବୋଲି ମନେ କରି ତନ୍ମୟ ହୋଇଥିବାର ମୁଁ ଦେଖିଅଛି, ଯେବେ ସେହିପରି ପବିତ୍ର ନିଷ୍ଠା ଆମ ଦେଶର ନେତୃସ୍ଥାନୀୟ ଜଣ କେତେକଙ୍କର ଥା'ନ୍ତା, ତେବେ ଆଜି ସମ୍ମିଳନୀର ଭବିଷ୍ୟତ୍ ଅନ୍ଧାରୁଆ ଦିଶନ୍ତା ନାହିଁ । ସମ୍ମିଳନୀର କାର୍ଯ୍ୟକଳାପ ଓ ପରିଚାଳନ ପ୍ରଣାଳୀ ସମ୍ବନ୍ଧରେ ତାଙ୍କ ସଙ୍ଗେ ମୋର ମତ ମିଳି ନ ପାରେ । କିନ୍ତୁ ଜନ୍ମଭୂମି ତ ସମସ୍ତଙ୍କଠାରୁ ନିଷ୍ପାପର ଭକ୍ତିର ଆଶା କରିବା ସ୍ୱାଭାବିକ । ସେତକ ନ ଥିବା ଯୋଗୁଁ ଆଜି ଆମ ଜାତିଟା କୁହୁଡ଼ି ପହଁରୁଅଛି ଓ ଖତ ଗଦାକୁ ରାଜସିଂହାସନ ବୋଲି ମନେ କରି ସୁଖନିଦ୍ରାରେ ଶୋଇ ରହିଅଛି ଏବଂ ପରଠାରୁ ଅନୁଗ୍ରହ ପ୍ରାର୍ଥନା କରି ଦିନେ ଜାତିଟା ଏକଦମ୍ ହାବେଳି ପରି ସ୍ୱର୍ଗକୁ ଉଠିଯିବ, ଏହା ଭାବି ଶିକ୍ଷିତ ଓଡ଼ିଆପୁଅଯାକ ଢୋଳାଉଅଛନ୍ତି ।

ପାରଳାଖେମୁଣ୍ଡି ପଦ୍ମନାଭ ଥିଏଟର ।

ଏଥର ସମ୍ମିଳନୀର ଅଧିବେଶନ ସମୟରେ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ପାରଳାଖେମୁଣ୍ଡିର ପଦ୍ମନାଭ ନାଟକ ଦଳ ଅଭିନୟ ଦେଖାଇବା ସକାଶେ କଟକକୁ ଆସି ଏଠାରେ ତିନି ସପ୍ତାହ କାଳ ରହି ନାଟକ ଅଭିନୟ ଦେଖାଇଲେ । ସ୍ୱର୍ଗୀୟ ସେକେଣ୍ଡ ପ୍ରିନ୍ସ ପଦ୍ମନାଭ ଦେବ ପାରଳାଖେମୁଣ୍ଡି ରାଜବଂଶର ଗୋଟିଏ ଚନ୍ଦ୍ରମା ଥିଲେ । ଗଞ୍ଜାମ ଅଞ୍ଚଳରେ ସମସ୍ତେ ତାଙ୍କୁ 'ଚନ୍ଦ୍ରମହାରାଜା' ବୋଲି ଡାକୁଥିଲେ । ତାଙ୍କୁ ହରାଇ ଗଞ୍ଜାମ ତଥା ଉତ୍କଳରେ ଗୋଟିଏ ବିଷାଦ କାଳିମା ବୋଲି ହୋଇ ଯାଇଅଛି । ସେ ନିଜେ ଅନେକ ଓଡ଼ିଆ ନାଟକ ଲେଖି ଯାଇଅଛନ୍ତି ଓ ନାଟକଗୁଡ଼ିକ ଅଭିନୀତ ହେବା ଉଦ୍ଦେଶ୍ୟରେ ଏବଂ ଉତ୍କଳରେ ନାଟକସାହିତ୍ୟ ଓ ଅଭିନୟର ଉନ୍ନତି କାମନାରେ ସେ ପାରଳାଖେମୁଣ୍ଡି ଠାରେ

ଗୋଟିଏ ନାଟକ ଦଳ ଗଠନ କରି ଗୋଟିଏ ରଙ୍ଗମଞ୍ଚ ସ୍ଥାପନ କରିଥିଲେ । ତାଙ୍କର ଅକାଳମୃତ୍ୟୁରେ ସେ ନାଟକ ଦଳ ଅନାଥ ହେଲା । ତାଙ୍କ ମୃତ୍ୟୁ ପରେ ତାଙ୍କର କେତେଜଣ ଭକ୍ତ ନାନା ଅସୁବିଧାକୁ ଏଡ଼ି ସେହି ନାଟକଦଳକୁ ଆଜିପର୍ଯ୍ୟନ୍ତ ଜୀବିତ ରଖିଅଛନ୍ତି । ପଦ୍ମନାଭ ଦେବଙ୍କ ପ୍ରାଇଭେଟ ସେକ୍ରେଟେରୀ ଶ୍ରୀ ବି.କେ. ଦ୍ୱୈପାୟନ ରାଓ ମହାଶୟ ତାମିଲ (ଦ୍ରାବିଡ଼) ବ୍ରାହ୍ମଣ, କିନ୍ତୁ ସେକେଣ୍ଡ ପ୍ରିନ୍ସଙ୍କ ମୃତ୍ୟୁ ପରେ ପଦ୍ମନାଭ ଥିଏଟରର ଉନ୍ନତି ତାଙ୍କ ଜୀବନର ଗୋଟିଏ ବ୍ରତ ରୂପରେ ପରିଣତ ହୋଇଅଛି ଓ ଏହି ନାଟକ ଦଳ ସବୁଠାରେ ନିଜ ଗୁଣରେ ଆଦୃତ ହେଲେ କିପରି ସ୍ୱର୍ଗୀୟ ପଦ୍ମନାଭଙ୍କ ସ୍ମୃତିରକ୍ଷା ହେବ, ରାଓ ମହାଶୟଙ୍କର ସର୍ବଦା ଏହି ବକଧ୍ୟାନ ରହିଅଛି । ଜଣେ ଲୋକଙ୍କ ସ୍ନେହରେ ଅନୁପ୍ରାଣିତ ହୋଇ ତାଙ୍କ ମୃତ୍ୟୁ ପରେ ତାଙ୍କର ସ୍ମୃତିରକ୍ଷା ନିମନ୍ତେ ଏପରି ଆନ୍ତରିକ ତତ୍ପରତା ମୁଁ ଅତି ଅଳ୍ପ ସ୍ଥାନରେ ଦେଖିଅଛି । ସ୍ୱର୍ଗୀୟ ପଦ୍ମନାଭ ଦେବଙ୍କ ସ୍ମୃତି ଦ୍ୱୈପାୟନ ରାଓଙ୍କର ଅମୂଲ୍ୟ ରତ୍ନସ୍ୱରୂପ ସର୍ବଦା ହୃଦୟରେ ବିଦ୍ୟମାନ ରହିଅଛି । ସେହି ନାଟକ ଦଳ କଟକକୁ ଆସି ଏଠା ଲୋକଙ୍କର ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ଏଠାରେ ତିନି ସପ୍ତାହ କାଳ ଅବସ୍ଥାନ କରି ଏଠାରେ ସ୍ଥାନୀୟ 'ଉଷା-ଥିଏଟର' ରଙ୍ଗମଞ୍ଚରେ ଅଭିନୟ ଦେଖାଇଥିଲେ । ନାଟକ ଦଳ ଏଠାକୁ ଆସିବାର କେତେକ ଦିନ ପୂର୍ବରୁ ସମସ୍ତ ଆନୁଷଙ୍ଗିକ ଆୟୋଜନ କରିବା କାରଣ ଦ୍ୱୈପାୟନବାବୁ ଏ ନଗରକୁ ଆସି ଏହି ନଗରର କେତେକ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସଙ୍ଗେ ସାକ୍ଷାତ୍ କରି ସେମାନଙ୍କ ଠାରୁ ସହାନୁଭୂତି ଭିକ୍ଷା କରିଥିଲେ । ମୌଖିକ ସହାନୁଭୂତି ଅନୁସାରେ କାର୍ଯ୍ୟତଃ କେତେଦୂର ସହାନୁଭୂତି ପାଇଲେ, ତାହା ଦ୍ୱୈପାୟନବାବୁଙ୍କୁ ଜଣା ଓ ବ୍ୟକ୍ତିଗତ ଭାବରେ ମତେ କିଛି କିଛି ଜଣା । କିନ୍ତୁ ଥିଏଟର ଦଳ ଏଠାରୁ ବିଦାୟ ନେବା ସମୟରେ ମୁଁ ଶୁଣିଅଛି ଯେ କଟକଠାରେ ସେମାନେ ଯାହା ଆୟ କରିଥିଲେ, ଆନୁଷଙ୍ଗିକ ବ୍ୟୟ ତହିଁରୁ ବଳି ପଡ଼ିଅଛି । ଏହି ଦଳର ବିଶେଷତ୍ୱ ଏହି ଯେ, ଗୋଟିଏ ସୌଖୀନ ଦଳ । ଏଥିର ଏହା ସଭ୍ୟମାନେ ସମସ୍ତେ କଲେଜରେ ପଢ଼ନ୍ତି ଓ ପଢ଼ାନ୍ତି ଓ ଚାକିରି କରନ୍ତି, ଅବସର ବେଳେ ନାଟକ ଅଭିନୟ କରନ୍ତି । ଖ୍ରୀଷ୍ଟମାସ୍ (ବଡ଼ଦିନ) ଛୁଟି ଯୋଗୁଁ ସ୍କୁଲ କଲେଜ ବନ୍ଦ ଥିବାରୁ ସେମାନେ ଅବସର ପାଇ ଏଠାରେ ତିନି ସପ୍ତାହ ଅବସ୍ଥାନ କରିଥିଲେ । ସେହି ଦଳ ମଧ୍ୟରେ କେହି ଅଭନେତ୍ରୀ ନାହାନ୍ତି । ପୁରୁଷ ଓ ବାଳକମାନେ ଅତି ସୁନ୍ଦର ଭାବରେ ସ୍ତ୍ରୀ-ଚରିତ୍ରଗୁଡ଼ିକ ଅଭିନୟ କରୁଅଛନ୍ତି । ଏହି ଦଳର ସାଜସଜ୍ଜା, ଅଭିନୟ, ସଙ୍ଗୀତ ଓ ନୃତ୍ୟ ଅତି ମନୋହର ହୋଇଥିଲା । ଏହି ଦଳର ବିଦୂଷକଙ୍କର ନବନବୋନ୍ମେଷଶାଳିନୀ ବୁଦ୍ଧି ଓ ଅଭିନୟ ଦେଖି ସମସ୍ତେ ମୁଗ୍ଧ ହୋଇଅଛନ୍ତି । ମୁଁ ୬ ବର୍ଷ ପୂର୍ବେ ଯେତେବେଳେ ପାରଳାଖେମୁଣ୍ଡିଠାକୁ ଯାଇଥିଲି, ସେତେବେଳେ ଏହି ଦଳର ଅଭିନୟ ଥରେ ଦେଖିବାର ସୁବିଧା ପାଇଥିଲି । ଏଠାକୁ ନାଟକ ଦଳ ଆସିବା ପୂର୍ବରୁ ଦ୍ୱୈପାୟନବାବୁ ମୋଠାରୁ ବହୁତ ମୌଖିକ ସହାନୁଭୂତି ପାଇଥିଲେ । ଯେଉଁମାନେ ଏଠାରେ ନାଟକ ଦଳଙ୍କ ପ୍ରତି

ମୌଖିକ ସହାନୁଭୂତି ପ୍ରକାଶ କରି 'ଶିକାର ବେଳକୁ ପୋଖରୀପାଣି ବସିବାକୁ ଚମ୍ପଟ' କରିଥିଲେ, ମୁଁ ସେମାନଙ୍କ ମଧ୍ୟରେ ଅଗ୍ରଣୀ । ତେବେ କଣ ନା, ମୋର ଗୋଟାଏ ସନ୍ତୋଷଜନକ କୈଫିୟତ୍ ଅଛି ତାହା ଏହି - ଯେଉଁ ପରିମାଣରେ ସହାନୁଭୂତି ଦେଖାଇବାର ମୋର କ୍ଷମତା ଥିଲା, ମୁଁ ମୌଖିକ ସହାନୁଭୂତି ଦ୍ୱାରା ସେଥିରୁ ପନ୍ଦର ପଣ ଉଣେଇଶ ଗଣ୍ଡା ତିନି କଡ଼ା ଦୁଇ କ୍ରାନ୍ତି ଖରଚ କରି ସାରିଥିଲି । କାର୍ଯ୍ୟତଃ ସହାନୁଭୂତି ଦେଖାଇ ନାଟକ ଉତ୍ସାହିତ କରିବାର ସମୟ ଉପସ୍ଥିତ ହେଲା ବେଳକୁ ମୋର ସହାନୁଭୂତିର ପାଣ୍ଠି ଶେଷ ହୋଇଥିଲା । ଅତଏବ ସେମାନଙ୍କୁ କାର୍ଯ୍ୟତଃ କିଛି ସହାନୁଭୂତି ଦେଖାଇ ପାରିଲି ନାହିଁ । ପାଠକ ଓ ଭକ୍ତମାନେ ମୋଠାରୁ ସହାନୁଭୂତିର ଯେଉଁ ନମୁନା ପାଇଲେ, ସାଧାରଣ ଦେଶହିତକର କାର୍ଯ୍ୟରେ ଉତ୍କଳର ସନ୍ତରା ବଣରେ ଆପଣମାନେ ମୋ ଭଳି ଅନେକ ସାଧକ ପାଇବେ; ଏପରି କି, ଏ ବିଷୟରେ ମତେ ଚିତା କାଟି ଦେବା ଭଳି ମହାପ୍ରାଣୀ ମଧ୍ୟ ବିରଳ ନୁହନ୍ତି । ଆମ୍ଭମାନଙ୍କର ଦେଶହିତୈଷିଣୀ ମୁହେଁ ମୁହେଁ ଖଲାସ । ଅବଶ୍ୟ ସ୍ଥାନୀୟ ବ୍ୟକ୍ତିବିଶେଷଙ୍କଠାରୁ ଏମାନେ କାର୍ଯ୍ୟତଃ ସହାନୁଭୂତି ପାଇଅଛନ୍ତି । ସେମାନଙ୍କ ତାଲିକା ଦେବା ନିମନ୍ତେ ମୁଁ ଆଇନ ବା କାନୁନ ଅନୁସାରେ ବାଧ୍ୟ ନୁହେଁ । ଥରେ ଦୁଇ ଥର କେତେଜଣ ଇଉରୋପୀୟ ଭଦ୍ରଲୋକ ଓ ଭଦ୍ରମହିଳା ଅଭିନୟ ଦେଖିବାକୁ ଆସି ଏମାନଙ୍କୁ ଉତ୍ସାହିତ କରିଥିଲେ । ମୁଁ ପାଞ୍ଚ ବର୍ଷ ତଳେ ଏମାନଙ୍କୁ ଯାହା ଦେଖିଥିଲି, ଆଜି ସେମାନେ ତଦପେକ୍ଷା ଢେର ଉନ୍ନତି କରିଅଛନ୍ତି । ଅଭିନୟ ପ୍ରଣାଳୀ ଓ ଭାଷାରେ ଯାହା ଅବଶ୍ୟମ୍ଭାବୀ ଦୋଷ ରହି ଯାଇଅଛି, ତାହା କ୍ରମଶଃ ସଂଶୋଧିତ ହୋଇ ଯିବାର ଆଶା କରାଯାଏ ।

ମ୍ୟୁନିସିପାଲିଟି ନିର୍ବାଚନ ।

ଗତ ଜାନୁଆରୀ ମାସ ୨୩ ତାରିଖର ଉତ୍କଳ ଦୀପିକାରେ ଦେଖିଲି ଯେ କଟକ ମିଉନିସିପାଲିଟିର ଚେଆର୍‌ମେନ୍ ବାହାଦୁର ୨୦-୧-୦୯ ତାରିଖରେ ସ୍ୱାକ୍ଷରିତ ଖଣ୍ଡିଏ ବିଜ୍ଞାପନ ଦେଇଅଛନ୍ତି କି କଟକ ମ୍ୟୁନିସିପାଲିଟିର ଭୋଟର୍‌ମାନଙ୍କ ନାମ ସାଧାରଣଙ୍କ ଅବଗତି ନିମନ୍ତେ ମ୍ୟୁନିସିପାଲିଟିଙ୍କ ଅଫିସରେ ରଖା ଯାଇଅଛି । ଯେବେ ସେଥିରେ କାହା ନାମ ଭୁଲରେ ଚଢ଼ି ନ ଥାଏ କିମ୍ବା କାହା ନାମ ଭୁଲରେ ଚଢ଼ିଥାଏ, ସେ ସମ୍ବନ୍ଧରେ ୧୫ ଦିନ ମଧ୍ୟରେ ଆପତ୍ତି କରାଯାଇ ପାରିବ ।

ମ୍ୟୁନିସିପାଲିଟିର ଅଢ଼େଇଦିନିଆ (ଅର୍ଥାତ୍ ତିନି ବରଷିଆ) କମିସନରମାନଙ୍କର ଆୟୁଷ ଆଗାମୀ ମାର୍ଚ୍ଚ ମାସରେ ପୂରିବ ଓ କଟକ ନଗରର ଟିକସଦାତାମାନେ ଫେର ଭୋଟ ଦେଇ କମିସନର ମୁକରର କରିବେ । ଯେଉଁ ଟିକସଦାତାମାନେ ବର୍ଷକୁ ଟ ୧୪ ବା ତହିଁରୁ ବେଶି ଟିକସ ଦିଅନ୍ତି, ସେହିମାନେ କମିସନର ମୁକରିର କରିବଲାଗି ଭୋଟ ଦେବାର ଅଧିକାରୀ । କଟକ ମ୍ୟୁନିସିପାଲିଟି ୯ ଗୋଟି ଉଆର୍ଡ଼ ବା ଚକଡ଼ାରେ ବିଭକ୍ତ । ପ୍ରତ୍ୟେକ ଚକଡ଼ାରୁ ଜଣେ ଦୁଇ ଜଣ ଲେଖାଏଁ କମିସନର ମୁକରିର ହେବେ । ଟିକସଦାତାମାନଙ୍କ ତରଫରୁ ସବୁ ଉଆର୍ଡ଼ରୁ ମୋଟରେ ୧୨ ଜଣ କମିସନର ରହିବେ ।

ସରକାର ତରଫରୁ ୬ଜଣ ମୁକରିର ହେବେ । ଏପରି ସର୍ବସୁଦ୍ଧା ୧୮ ଜଣ କମିସନରଙ୍କ ଉପରେ ଆଗାମୀ ତିନି ବର୍ଷ ସକାଶେ କଟକ ସହରକୁ ସଫା ଓ ଲୁଙ୍ଗୁରା କରିବାର ଭାର ରହିବ । ଟିକସଦାତାମାନଙ୍କ ଉପରେ ଟିକସ ବସାଇବା, ଅଦିଆ ଓ ମହରଗିଆମାନଙ୍କ ହାଣ୍ଡି ଲୋଟା କଂସା ଖଦୁ ଇତ୍ୟାଦି ନିଲାମ କରାଇବା, ହଇଜା ଓ ବସନ୍ତ ଠାକୁରାଣୀଙ୍କୁ ଆଧୁନିକ ବିଜ୍ଞାନ ବଳରେ ଧମକାଇବା, ବାଟଘାଟକୁ ଧୂଳିମୟ ଓ କାଦୁଆ କରିବା ଓ ବଡ଼ଦାଣ୍ଡମାନଙ୍କରେ ପାଣିକଳ ବସାଇ ଅଘରଦ୍ୱାରୀ ସମସ୍ତିଙ୍କଠାରୁ ପାଣିଟିକସ ଆଦାୟ କରିବା, ୫୨ ବଜାଟ ୫୩ ଗଳିରେ ଭୁକ୍ରୁ ଭୁକ୍ରୁ କରି ଆଲୁଅ ଜାଳିବା, ଧତରା ଗାଡ଼ି ଓ ଠେଙ୍ଗୁହଣା ଘୋଡ଼ାଯାକଙ୍କୁ ସାର୍ଟିଫିକଟ ଦେବା ଇତ୍ୟାଦି ସମସ୍ତ ପ୍ରକାର ଅଖଣ୍ଡିଆ ଦାଉଘାତଯାକ ମ୍ୟୁନିସିପାଲିଟିର କମିସନରମାନଙ୍କୁ ତିନି ବର୍ଷ ସକାଶେ ସହିବାକୁ ପଡ଼ିବ । ଲାଭ ମଧ୍ୟରେ ଏତିକି ଯେ ଲାଟସାହେବ ଏଠାକୁ ଆସିଲେ ଆଗେ ମ୍ୟୁନିସିପାଲିଟିର କମିସନରମାନେ ତାଙ୍କୁ ନଗର ମଧ୍ୟକୁ ପାଛୋଟି ଆଣିବେ । ଏ ପଦ ଅନାହାରୀ ପଦ ଥିବା ଯୋଗୁଁ ଏଥିଲାଗି ବାବୁଭାୟାମାନଙ୍କ ପାଟିରୁ ନାଳ ବହିପଡ଼େ । ଯାହାହେଉ କମିସନର ପଦ ପ୍ରାର୍ଥୀ ବାବୁମାନଙ୍କ ପଣ୍ଡାମାନେ ଏହି ମାସେ ଦୁଇ ମାସ ରାମା କେଉଟଠାରୁ ଆରମ୍ଭ କରି ଶାମା ତନ୍ତୀ ପର୍ଯ୍ୟନ୍ତ ସମସ୍ତଙ୍କ ପିଣ୍ଡାରେ ଯାଇ ଘଡ଼ିଏ ଲେଖାଏଁ ନାକେଇବେ ଓ ସେମାନଙ୍କୁ କେତେ ନେହୁରା ନମସ୍ତେ କରି ଆପଣା ଆପଣା ଯଜମାନମାନଙ୍କ ଉଦ୍ଦେଶ୍ୟରେ ସିଦ୍ଧବିନାୟକ ସ୍ତୋତ୍ର ପାଠ କରିବେ ଓ ଭୋଟ୍ ଦେବା ଦିନ ଅକ୍ଷମ ଭୋଟରମାନଙ୍କ ଘରଠାକୁ ଘୋଡ଼ାଗାଡ଼ି ନେଇ ସେଠାରୁ ଭୋଟରମାନଙ୍କୁ ବିନା ଗାଡ଼ି ଭଡ଼ାରେ ଆଣି ଭୋଟ୍ ଦେବା ଜାଗାରେ ପହଞ୍ଚାଇ ଦେବେ ଓ ଲୋଡ଼ା ହେଲେ ଭୋକିଲା ଭୋଟରମାନଙ୍କୁ ଅଉଲ୍ ନମ୍ବର ଲେମନେଡ଼, କଞ୍ଚାଗୋଲା ଓ 'ଲେଡ଼ିକେନିଂ' ମାନ ଗିଳାଇ ଦେବେ । ଦିନାକେତେ ବଜାରଯାକ ସରଗରମ ହୋଇ ଉଠିବ ଓ କେତେ ଦଳାଦଳି ଓ ମଳାମଳି ଲାଗିବ, ତାହାର ଠିକଣା ରହିବ ନାହିଁ । ଭୋଟରମାନେ କୁହୁକ ଲଡୁଟିମାନ ଗିଳି ଦେଲାରୁ ବେହୋସ ହୋଇଯିବେ ଓ ଘଡ଼ିଏ ଲେଖାଏଁ ପାଟିସୁଖ କରି ୩ ବର୍ଷ ପାଇଁ ଆପଣା ଗଳାଟିମାନ କମିସନରମାନଙ୍କ ହାତରେ ସମ୍ପି ଦେବେ । କେତେ ମାସ ପୂର୍ବରେ ଏଠାର ମ୍ୟୁନିସିପାଲିଟିର କମିସନରମାନେ ଜଳ କଳ ବସାଇ ସହରବାସୀଙ୍କ ଠାରୁ ଟିକସ ଆଦାୟ କରିବାର ପ୍ରସ୍ତାବ କରିବାରୁ ସେଥିରେ ପ୍ରତିବାଦ କରିବା ନିମନ୍ତେ ସହରବାସୀ ପ୍ରାୟ ୫୦୦୦ ଲୋକ ଏକତ୍ରିତ ହୋଇ ମ୍ୟୁନିସିପାଲିଟିର ଉକ୍ତ ପ୍ରସ୍ତାବ ବିରୋଧରେ ମତ ଦେଇଥିଲେ । କଟକର କେତେ ଗୋଟି ସଦର ରାସ୍ତାରେ ପାଣି କଳର ୫୦ଟି ଖୁଣ୍ଟି ବସାଇଲେ କସୋଟ ଓ ହିସାବ ମାଫିକେ ସହରତମାମ ଲୋକ ପାଣି ପାଇବେ ଓ ସେଥିଲାଗି ସହରର ସମସ୍ତ ଲୋକେ ପାଣି ଟିକସ ଦେବେ, କଟକର ମ୍ୟୁନିସିପାଲିଟି ସଭାରେ ଏହି ପ୍ରସ୍ତାବ ହୋଇ ସଦରକୁ ମଞ୍ଜୁରି ଆଶାରେ ଚାଲିଗଲା । ଏପରି ଗୋଟିଏ ଗୁରୁତର ପ୍ରସ୍ତାବ ଯେଉଁଦିନ ମ୍ୟୁନିସିପାଲିଟି

ସଭାରେ ଧାର୍ଯ୍ୟ ହେଲା, ସେଦିନ ନିର୍ବାଚିତ ୧୨ ଜଣ କମିସନରଙ୍କ ମଧ୍ୟରୁ କେବଳ ୪ ଜଣ ମାତ୍ର ଉପସ୍ଥିତ ଥିଲେ । ଯେଉଁ ସହରବାସୀମାନେ ଏମାନଙ୍କୁ ତାଙ୍କର ପ୍ରତିନିଧିସ୍ୱରୂପ ସଭାକୁ ବାଛି ବାଛି ପଠାଇଥିଲେ, ସେମାନଙ୍କର ଘର ବୁଡ଼ି ପାଣି ଆଣ୍ଠୁଏ ହେଲାଣି, କିନ୍ତୁ ନିର୍ବାଚିତ କମିସନରମାନଙ୍କର ସେଦିନର ମିଟିଙ୍ଗରେ (ସଭା) ଯୋଗ ଦେବାପାଇଁ ସୁବିଧା ହେଲା ନାହିଁ । ଏହାକୁ କହନ୍ତି ନିମକସଚ୍ଚାପଣିଆ ବା କର୍ତ୍ତବ୍ୟନିଷ୍ଠା ! ଏ ବିଷୟରେ ଯେଉଁଦିନ ସାଧାରଣ ସଭା ହୋଇଥିଲା, ସେଦିନ ମୁଁ ଟିକିଏ ସମସ୍ତଙ୍କୁ ଚେତାଇ ଦେଇ କହିଥିଲି ଯେ, ଲେମନେଡ଼ ଓ ଲଡ୍ଡୁର ଲୋଭ ଏବଂ ପାଟିଲାଳସାର ଅବଶ୍ୟମ୍ଭାବୀ ଫଳ ଟିକସଦାତାମାନଙ୍କୁ ଭୋଗ କରିବାକୁ ହେବ । ଏଥିପାଇଁ ଦାନ୍ତ ନିକୁଟିଲେ ଶୁଣିବ କିଏ ? କମିସନର ବାଛିଲାବେଳେ ଭୋଟରମାନେ ଯେପରି ଚକ୍ଷୁଲଜ୍ଜା ଏଡ଼ି ନ ପାରି କିମ୍ୱା ମାଗଣା ଗାଡ଼ି ଚଢ଼ିବା ଲୋଭରୁ ଅଥବା ଲେମନେଡ଼ ଓ ମିଠାଇ ଚାଖିବା ଲାଳସାରୁ ଉପଯୁକ୍ତ ବ୍ୟକ୍ତିଙ୍କୁ ମୁକରିର ନ କରି ଯେ ବେଶି ଆଉଁଶି ଘଷି ପାରିଲା ତାକୁ ଆପଣାର ପ୍ରତିନିଧି ସ୍ୱରୂପ ମୁକରିର କରନ୍ତି, ଶିକାର ବେଳକୁ ସେହି ପ୍ରତିନିଧିଙ୍କୁ ପରିସ୍ରା ତଲବ ଦେଲେ ସେଥିରେ ଦୁଃଖ କରିବାର କିଛି କାରଣ ନାହିଁ । ଜଣେ କମିସନରଙ୍କୁ କଥା ପ୍ରସଙ୍ଗରେ ଦିନେ ପଚାରିଲି, ''କି ହୋ ଭାଇ ! ଏତେ ଲୋକଙ୍କ ଗଳାରେ ଛୁରି ବସାଇ ଦେବା ପୂର୍ବରୁ ଥରେ ହେଲେ ତାଙ୍କୁ ପଚାରିଲ ନାହିଁ ?'' ସେ ଉତ୍ତର କଲେ, ''ମତେ ନିର୍ବାଚନ କଲା ପୂର୍ବରୁ ମୁଁ ଘର ଘର ଓ ସାଇ ସାଇ ବୁଲି ଯେଉଁ ଆଉଁଶା ଘଷା କରିଥିଲି, ସେ ଓରମାନଟା ତ ଫେର ମେଣ୍ଟାଇବା ଦରକାର ।'' ଉତ୍ତରଟି ପୁଣି ମନେ ମନେ ବିଚାରିଲି, - ''ସରକାର ବାହାଦୁର ଯେଉଁପରି ଭାବରେ ସ୍ୱାୟତ୍ତ-ଶାସନର ଭାର ଆମକୁ ଦିଅନ୍ତୁ, ଆମେ ଯେବେ ମଣିଷ ନ ହେବା ତେବେ ସବୁ ଫସରଫସା ! ଆମେ ଯେବେ ମନୁଷ୍ୟ ହେବା ତେବେ ଆମର ପ୍ରତିନିଧିମାନେ ଅବଶ୍ୟ ସେମାନଙ୍କ କର୍ତ୍ତବ୍ୟ ପାଳନ କରିବାକୁ ବାଧ୍ୟ ହେବେ ଏବଂ ପାଳନ କରିବେ ।'' ଦିନେ ଜଣେ ଶ୍ୱେତାଙ୍ଗ ହାକିମଙ୍କୁ ସରକାରଙ୍କ ନୂତନ ପ୍ରଦତ୍ତ 'Reform' (ଶାସନ ସଂସ୍କାର) ସମ୍ୱନ୍ଧରେ ମତ ପଚାରିଲି । ସେ ଗମ୍ଭୀର ଭାବରେ ଉତ୍ତର କଲେ, ଲଡ଼ ମର୍ଲି (Lord Morley)ଙ୍କ ପ୍ରଦତ୍ତ ସଂସ୍କାର ଭାରତରେ କାର୍ଯ୍ୟକାରୀ ହେବା ତୁମ୍ଭମାନଙ୍କ ମନୁଷ୍ୟପଣିଆ ଉପରେ ନିର୍ଭର କରେ । ସାଧାରଣ ଲୋକେ ଉପଯୁକ୍ତ ବ୍ୟକ୍ତିଙ୍କୁ ପ୍ରତିନିଧିସ୍ୱରୂପ ନିର୍ବାଚନ କଲେ ସବୁ ଉତ୍ତମ ହେବ । ତାହା ନ କରି ଯେବେ ସାଧାରଣ ଲୋକେ ଜିଭ ଲଡ଼ବଡ଼ିଆ ଖୋଇ ନ ଛାଡ଼ିବେ, ତେବେ ଯେଉଁ କଥାକୁ ସେହି କଥା । ମ୍ୟୁନିସିପାଲିଟି କମିସନରମାନଙ୍କ ନିର୍ବାଚନ ହେବାର ସମୟ ଅତି ନିକଟବର୍ତ୍ତୀ । ବୁଝି ଶୁଝି ଉପଯୁକ୍ତ ବ୍ୟକ୍ତିଙ୍କୁ ବାଛି କମିସନର ପଦରେ ନିର୍ବାଚନ ନ କଲେ ଫେର ତିନି ବର୍ଷ ସେହିମାନଙ୍କ ଦାଉରେ ପ୍ରାଣ ଅସ୍ଥିର ହେବ ଓ ଚେତିଲା ବେଳକୁ ଘର ବୁଡ଼ି ପାଣି ଆଣ୍ଠୁଏ ! ଏତେବେଳେ କହୁଣି ଗୁଡ଼ ଲେଡ଼ିକି ବୁହାଇ ଦେଇ ସେତେବେଳେ ଅଭିଧାନ ବହିର୍ଭୂତ ଶବ୍ଦଗୁଡ଼ିଏ କହିଲେ ଶୁଣିବ କିଏ ? ଆଜି ଏତିକି ।

ଉତ୍କଳ ସାହିତ୍ୟ/୧୨ଶ ଭାଗ/୮ମ ସଂଖ୍ୟା/୧୩୧୬ ସାଲ ।

## ।। ତେଇଶ ।।

କଟକ ମ୍ୟୁନିସିପାଲିଟିର କମିସନରମାନଙ୍କ ନିର୍ବାଚନ ଗତ ମାର୍ଚ୍ଚମାସ ୨୭ ତାରିଖ ଦିନ ହୋଇଥିଲା । ସେ ଦିନ ଓ ତା ପୂର୍ବରୁ କେତେ ଦିନ କଟକ ସହରର ଓ କମିସନର ପଦପ୍ରାର୍ଥୀମାନଙ୍କର ନାଡ଼ି ଚିପିବାର ଯେପରି ଗୋଟିଏ ବାରିଣୀ ସୁଯୋଗ ପଡ଼ିଥିଲା, ଏପରି ସୁଯୋଗ ସବୁ ସମୟରେ ମିଳେ ନାହିଁ । ଅଭୋଟର ହୋଇ 'ହକ୍ ବକୁଆ' ହେବା ବଡ଼ ସଜ କଥା । କାରଣ ଦେଖଣାହାରି ହୋଇ ଠେଙ୍ଗୁରେ ହାଣିବା ଠାରୁ ଆଉ ମଉଜର କଥା କିଛି ନାହିଁ । କିନ୍ତୁ ହକ୍ ବକୁଆ ହୋଇ ଭୋଟର ହେବାଠାରୁ ବିପଦ ଆଉ କିଛି ନାହିଁ । କାରଣ ଉପଦେଶ ବେଳେ ଯାହା କହିବାକୁ ହୋଇଥାଏ, ଶିକାର ବେଳେ ସରଜମିନରେ ତାହା ସାକ୍ଷଲକ୍ଷ ପ୍ରମାଣ ଦ୍ୱାରା ଅଲ୍‌ବଦ୍ ଦେଖାଇବାକୁ ହେବ । ତା ନ ହେଲେ 'ମାଳା ଜପେ, ଘର ଘର ଟପେ, କରେ ଠକାଇ କାମ' ଶ୍ରେଣୀ ମଧ୍ୟରେ ସୁମାରି ହେବାକୁ ପଡ଼ିବ । ଘଟନାକ୍ରମେ କଟକ ମ୍ୟୁନିସିପାଲିଟିର ଯେଉଁ ଓ୍ୱାର୍ଡ଼ରେ (ନିର୍ବାଚନ ଚକଡ଼ା) ମୋ ଘର, ସେ ଚକଡ଼ାରେ ମୋର ୨ ଗୋଟି ଭୋଟ ଦେବାର ଅଧିକାର ଅଛି । ଆମ ଚକଡ଼ାରେ ୨ ଜଣ କମିସନର ନିର୍ବାଚିତ ହେବାର କଥା । ସେଥିପାଇଁ ଅନେକ ପ୍ରାର୍ଥୀ ହୋଇଥିଲେ । ପ୍ରାର୍ଥୀମାନେ ସବୁ ଭୋଟରଙ୍କ ଦାଣ୍ଡ ଦୁଆର ଓ ବାଡ଼ି ଦୁଆର ଜଗି ଭୋଟ ଦେବାର କେତେ ଦିନ ପୂର୍ବରୁ ଲୁଙ୍ଗପୁଙ୍ଗ ହେଉଥିଲେ । ସାଧାରଣ ନିୟମ ଅନୁସାରେ ଜଣକେତେ ପ୍ରାର୍ଥୀ ମୋ ବାଡ଼ି ଦୁଆର ତାଟିର ଧଡ଼ା ମଧ କାଢ଼ିଥିଲେ । କ୍ରମଶଃ ସେମାନଙ୍କ ଦାଉ ବେଶି ହେଲେ ସମ୍ଭାଳି ପାରିବି ନାହିଁ, ଏହି ଭୟରେ ମୁଁ ଅସ୍ଥିର ହେଉଥିଲି । ଏହି ସମୟରେ ମତେ ଗ୍ରାମକୁ ଯିବାର ସୁଯୋଗ ମିଳିଲା ଓ ଭୋଟ ଦେବା ତାରିଖ ପୂର୍ବରୁ କେତେ ଦିନ ଗ୍ରାମରେ ମେଣ୍ଢା କୁଡ଼ିଆରେ ମୁଣ୍ଡ ଗୁଞ୍ଜିଥିଲି । ଭୋଟ୍ ଦେବା ତାରିଖ ଦିନ ଆସି କଟକରେ ରହୁଥିଲି । ବିଚାରିଲି ଯେ କମିସନର ପଦପ୍ରାର୍ଥୀମାନଙ୍କ କୋଡ଼ରୁ ଏଥର ଖଲାସ ପାଇଲି । ଭୋଟ ଦେବା ସ୍ଥାନରେ ଯାଇ ଦେଖେଁ ଯେ ପ୍ରାର୍ଥୀମାନେ ସେମାନଙ୍କ ପଣ୍ଡାମାନେ ଜଗି ବସିଅଛନ୍ତି, ସେମାନଙ୍କ ଦିହରୁ ଗୋଟାକୁ ଗୋଟା ଝାଳ ବୋହି ଯାଉଅଛି । ସେମାନେ ଭୋଟରମାନଙ୍କ ଉତ୍ତମାଙ୍ଗ** ମୁହଁ ଠାରୁ ଅଧମାଙ୍ଗ** ଲିଂଗ ପର୍ଯ୍ୟନ୍ତ ସବୁ ଜାଗାରେ ଭୋଟ ପାଇବା ବିକଳରେ ହାତ ବୁଲାଇ ପକାଉଅଛନ୍ତି । ଆଉଁଶା ଘଷାଠାରୁ ଧକମ୍ ଧକ୍କା ପର୍ଯ୍ୟନ୍ତ, ଗାଡ଼ି ଘୋଡ଼ା ଠାରୁ ସୋଡ଼ା ଲେମନେଡ଼ ପର୍ଯ୍ୟନ୍ତ ସବୁ ଚାଲୁଅଛି । ଏଥିରେ ଭୋଟରମାନେ ଗୋଳିପାଣିରେ ବୈଶାଖ ମାସରେ ମାଛଯାକ ବଉଳି ଯିବା ପରି ହାଉଯାଉ ହେଉଅଛନ୍ତି । ଏହା ଦେଖି ମୋ ହାଲୁକ ଶୁଖିଗଲା । ବିଚାରିଲି, ଗ୍ରାମରେ ରହିବା ଛାଡ଼ିକି ଝକମାରିଲେ ଆସି ପଡ଼ିଲି ! ପ୍ରଥମେ ଫାଟକ ନିକଟରେ ୨।୩ ଜଣ ପଣ୍ଡାଙ୍କୁ ଭେଟିଲି । ସେମାନେ ସେତେବେଳେ ବିନୟର ଅବତାର । ପ୍ରଥମ ପଣ୍ଡା କହିଲେ, ''ମହାଶୟ, ଆପଣ ଆମ ବାବୁଙ୍କ ପାଇଁ ଭୋଟ ଦେବେ ନାହିଁ ?'' ମୁଁ ଉତ୍ତର କଲି, ''ପ୍ରାର୍ଥୀମାନଙ୍କ ମଧ୍ୟରୁ ମୁଁ ଯାହାଙ୍କୁ ଭୋଟ

ପାଇବାର ଉପଯୁକ୍ତ ମନେକରିବି, ତାଙ୍କ ପାଇଁ ଭୋଟ୍ ଦେବି । ମତେ ଯେବେ କେହି ସୁପାରିସ କରି କହିବେ, ତେବେ ମୁଁ ତାଙ୍କ ତରଫ ପ୍ରାର୍ଥୀଙ୍କ ପାଇଁ ଭୋଟ ଦେବି ନାହିଁ ବୋଲି ସଂକଳ୍ପ କରି ଘରୁ ବାହାରିଛି ।'' ଏହା କହିବାରୁ ପଣ୍ଡା ମହାଶୟ ଟିକିଏ ଚମକିପଡ଼ି ମତେ ଛାଡ଼ି ଦେଲେ । ବିଚାରିଲି, ଏ ଯାତ୍ରାରୁ ରକ୍ଷା ପାଇଲି । ଖଣ୍ଡେ ଦୂର ଯାଇଛି, ଦ୍ୱିତୀୟ ପ୍ରାର୍ଥୀଙ୍କ ପଣ୍ଡା (ଯେ କି ମୋର ଜଣେ ନାମଲେଖା ବନ୍ଧୁ) ଆସି ଯୁଟିଲେ ।

ମତେ ପଚାରିଲେ, ''କି ହୋ ! କାହାପାଇଁ ଭୋଟ୍ ଦେବ ?'' ମୁଁ ଉତ୍ତର କଲି, ''ମୁଁ ଯାହାଙ୍କୁ ଭୋଟ ଦେବାର ଉଚିତ ମନେ କରିବି, ତାଙ୍କ ପାଇଁ ଭୋଟ ଦେବି ।'' ପଣ୍ଡା କହିଲେ, ''ତୁମେ ଅବଶ୍ୟ ଆମ ପ୍ରାର୍ଥୀଙ୍କ ପାଇଁ ଭୋଟ ଦେବ ।'' ମୁଁ କହିଲି ଯେ ''ମୁଁ ଏଠାକୁ କର୍ତ୍ତବ୍ୟ, କାର୍ଯ୍ୟ କରିବାକୁ ଆସିଛି, ଉପରୋଧ ମିଛୁଆ ହେବାକୁ ଆସି ନାହିଁ ।'' ଏହା ଶୁଣି ବନ୍ଧୁ ନାଲି ହୋଇଗଲେ । ବନ୍ଧୁ ଜଣେ ଭଦ୍ରଲୋକ ଓ ଭଦ୍ରଲୋକ ଘରର ସନ୍ତାନ ବୋଲି ମୋର ଅନେକ ଦିନରୁ ଧାରଣା ଥିଲା । କିନ୍ତୁ ସେ ମୋର କଥା ଶୁଣି ଆପଣାର ମର୍ଯ୍ୟାଦା ଓ ତୋଖମ୍ ଦୁହିଁଙ୍କୁ ଭୁଲିଗଲେ । ମତେ 'ଯା ବେ ଯା' କହି ଚାଲିଗଲେ ଓ ମୁଁ କହୁଣିଟିଏ ଖାଇ ସ୍ୱାୟତ୍ତ-ଶାସନରେ କର୍ତ୍ତବ୍ୟପରାୟଣତାର ନମୁନା ପାଇ ଭୋଟ ଗୃହୀତ ହେଉଥିବା ସ୍ଥାନକୁ ଅଗ୍ରସର ହେଲି । ବାଟରେ ଫେର ଆଉ ଜଣେ ପଣ୍ଡାଙ୍କ ହାବୁଡ଼ରେ ପଡ଼ିଲି । ତାଙ୍କ ସଙ୍ଗେ ପୂର୍ବରୁ ଘନିଷ୍ଠତା ଥିଲା । ସେ ମତେ ଦେଖିଲାକ୍ଷଣି ଭାରି ଗୋଟାଏ ସାଦର ସମ୍ଭାଷଣ କଲେ ଓ ମୋର ଦୁଇ ବାହାକୁ ଧରି କହିଲେ, ''ତୁମ୍ଭକୁ ଆମ ପ୍ରାର୍ଥୀଙ୍କ ପାଇଁ ଅବଶ୍ୟ ଭୋଟ୍ ଦେବାକୁ ହେବ ।'' ମୁଁ ଉତ୍ତର କଲି, ''ଭାଇ ! ଏ ଅନୁରୋଧ ଉପରୋଧର ସ୍ଥାନ ନୁହେଁ । ମୁଁ ଯାହାକୁ ଉପଯୁକ୍ତ ମନେକରିବି, ତାଙ୍କ ପାଇଁ ଭୋଟ୍ ଦେବି । ଆଶାକରେଁ ତୁମେ ମତେ ଅଯଥା ଅନୁରୋଧ କରିବ ନାହିଁ ।'' ଏହା ଶୁଣି ସୁପରିଚିତ ବନ୍ଧୁ କଡ଼ା ସ୍ୱରରେ ଉତ୍ତର କଲେ, ''ତୁମେ ବଡ଼ ନିମକ୍‌ହାରାମ୍, ମୁଁ ତୁମ ବାପାଙ୍କର ଗତ ବର୍ଷ ଅନେକ ଉପକାର କରିଛି, ତୁମର ଏତେ ଦୂର ଦିମାକ୍ ! ମୁଁ ମୋର ଜଣେ ବନ୍ଧୁଙ୍କଠାରୁ ଶୁଣିଥିଲି ଯେ ତୁମେ ଜଣେ ଛୋଟ ଲୋକ, ଆଜି ମଧ୍ୟ ଫଳରେ ତାହା ଦେଖିଲି । ହଉ, ଫେର୍ ଦେଖାଦେଖି ହେବା ।'' ଛୋଟଲୋକ ଶବ୍ଦର ଗୋଟିଏ ନୂତନ ସଂଜ୍ଞା ଆଜି ମୋର ଅନୁଭବ ଅଭିଧାନରେ ଯୋଗ କରିସାରି ସେ ବନ୍ଧୁଙ୍କୁ କହିଲି, ''ଭାଇ, ତୁମେ ତ ମୋ ଉପରେ ଏପରି ଜୁଲମ କରୁଛ, ସାଧାରଣ ଭୋଟରମାନଙ୍କୁ କିପରି କୁଆବୁଆ କରୁଥିବ ତାହା ମୁଁ ଆଜି ତୁମ୍ଭ ବ୍ୟବହାରରୁ ଉତ୍ତମ ରୂପେ ବୁଝିପାରୁଛି । ମ୍ୟୁନିସିପାଲିଟିରେ ସଭ୍ୟ ହେବା ପାଇଁ ଏତେ ବେଇଜ୍ଜତ ହୋଇ ତୁମ୍ଭକୁ ଲଜ୍ଜା ହେଉ ନାହିଁ ?'' ଏ ପ୍ରଶ୍ନର ଉତ୍ତର ପାଇଁ ଅପେକ୍ଷା ନ କରି ଠେଲାଠେଲି କରି ଭୋଟ ଗୃହୀତ ହେଉଥିବା ସ୍ଥାନରେ ଯାଇ ପହଞ୍ଚିଲି । ପ୍ରାର୍ଥୀମାନେ ଘେରି ବସିଅଛନ୍ତି ଓ ସେମାନଙ୍କ ପଣ୍ଡାମାନେ ଭୋଟରମାନଙ୍କୁ ସ୍ତବ କରୁଅଛନ୍ତି । ସ୍ତବ ପାଠ, ଖୋସାମତ, ଧମକ ଚମକ, କାନ ଫୁଙ୍କା, କାନ ମୋଡ଼ା, କହୁଣି, ଦ୍ୱାହି, କଲମ ଜୋର୍, କମର

ଢୋର୍, ଠାକୁରଙ୍କ ଆଜ୍ଞା ସବୁ ଏକ ଜାଗାରେ ରୁଣ୍ଡ ହୋଇଅଛି । ମୁଁ ଯଥାସ୍ଥାନରେ ପହଞ୍ଚି ମୋର ଦିଓଟି ଭୋଟ୍ ଦେଇ ଚାଲି ଆସିଲି । ଶେଷୋକ୍ତ ଯେଉଁ ବନ୍ଧୁ ମତେ 'ଛୋଟ ଲୋକ' ଉପାଧିରେ ଭୂଷିତ କରିଥିଲେ, ତାଙ୍କ ତରଫ ପ୍ରାର୍ଥୀଙ୍କୁ ମୁଁ ଉପଯୁକ୍ତ ମନେ କରି ତାଙ୍କ ପକ୍ଷରେ ଗୋଟିଏ ଭୋଟ୍ ଦେଲି । ଭୋଟ ଦେଇ ସାରିବା ପରେ ସେ ବନ୍ଧୁଟି ଟିକିଏ ଲଜ୍ଜିତ ଭାବରେ ମତେ କହିଲେ, ''ତୁମେ ତ ଆମ ପକ୍ଷରେ ଭୋଟ୍ ଦେଲ, କିନ୍ତୁ ସେ କଥା ଆଗରୁ ମତେ କହିଦେଲ ନାହିଁ କିଆଁ ?'' ମୁଁ ଗମ୍ଭୀର ଭାବରେ ଉତ୍ତର କଲି, ''ସେ କଥା ଆଗରୁ କହିଦେଇଥିଲେ ତୁମ ହୃଦୟର ଗଭୀରତା ଓ ତୁମ ବନ୍ଧୁତାର ମୂଲ୍ୟ ବୁଝିଥାନ୍ତି କାହୁଁ ?'' ଏହା କହି ସେଠାରୁ ଫେରି ଅଧୁଆ ମୁହଁରେ ଘରକୁ ଆସିଲି । ମନେ ମନେ ବିଚାରିଲି, ଆଜି କଟକ ସହରଟାଯାକ ବୁଲି ପ୍ରାର୍ଥୀମାନଙ୍କ ତରଫରୁ କେତେ ଖଣ୍ଡ ଲେଖାଏଁ ଗାଡ଼ି ଭଡ଼ା ନିଆ ଯାଉଅଛି, କେତେ ଡଜନ୍ ଲେଖାଏଁ ସୋଡ଼ା ଲେମନେଡ଼ ଖରିଦ ହୋଇଅଛି, କେତେ ଲେଖାଏଁ ଲଡ୍ଡୁ, ରସଗୋଲା ଗୁଡ଼ିଆମାନଙ୍କ ଦୋକାନରୁ ଆସିଅଛି, ଏଥିର ଗୋଟିଏ ତାଲିକା କରି ପକାଇଲେ କଟକ ମ୍ୟୁନିସିପାଲିଟିର ଆଗାମୀ ତିନି ବର୍ଷର ଜନ୍ମପତ୍ରିକା ଓ ଇତିହାସ ଲେଖିବା ପାଇଁ ମାଲମସଲା ସଂଗ୍ରହ ହୋଇଯାନ୍ତା । ଫେର ବିଚାରିଲି, ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ଦାନାରେ ଧୂଳି ଦେବା 'ଛୋଟଲୋକ'ମାନଙ୍କ କର୍ତ୍ତବ୍ୟ ନୁହେଁ । ଏହା ବିଚାରି ରହିଲି ।

କଟକର ନୂତନ ହାଲଚାଲ ମଧ୍ୟରେ କଟକସ୍ଥ ଉଷା ଥିଏଟର ଆଧୁନିକ 'ଶ୍ରୀବୃଦ୍ଧି' ! ଉଷା ଥିଏଟର ସଙ୍ଗେ କେତେଗୁଡ଼ିଏ ସ୍ଥାନୀୟ ଭଦ୍ରଲୋକଙ୍କ ନାମ ଘନିଷ୍ଠ ଭାବରେ ସମ୍ବନ୍ଧ । ଉକ୍ତ ଥିଏଟର ପ୍ରଥମେ ପ୍ରଥମେ ଆରମ୍ଭ ହେଲା ବେଳେ ଥିଏଟରର ଉତ୍ସାହଦାତା ଜଣେ ଅଗ୍ରଣୀଙ୍କ ସଙ୍ଗେ ଦେଖା ହେଲା । ଥିଏଟର ପ୍ରସଙ୍ଗ ପଡ଼ିବାରୁ ସେ କହିଲେ ଯେ ଯୁବକଗୁଡ଼ାକ ଅବସର ସମୟରେ ଉପଯୁକ୍ତ କାର୍ଯ୍ୟାଭାବରୁ ବିପଥଗାମୀ ହୋଇ ଯାଉଅଛନ୍ତି । ସେମାନଙ୍କୁ ସଂଯତ କରି ବିଶୁଦ୍ଧ ଆମୋଦ ମଧ ଦେଇ ଉନ୍ନତି ଆଡ଼କୁ ଟାଣି ଆଣିବା ପାଇଁ ଆମ୍ଭେମାନେ ଏଠାରେ ଉଷା ଥିଏଟରର ପ୍ରତିଷ୍ଠା କରିଅଛୁଁ । କିଛିଦିନ ପରେ ସେହି ଉଷା ଥିଏଟରର ମଞ୍ଚରେ ପାରଳାଖେମୁଣ୍ଡିରୁ ଆଗତ ଓଡ଼ିଆ ଥିଏଟର ଦଳ ଅଭିନୟ କରିଥିଲେ । ବର୍ତ୍ତମାନ ଶୁଣିଲି ଯେ କେତେଗୁଡ଼ିଏ ନର୍ତ୍ତକୀ କଲିକତାରୁ ଆମଦାନୀ ହୋଇ ଆସି ଏ ଥିଏଟରର ଶ୍ରୀବୃଦ୍ଧି ସମ୍ପାଦନ କରିଅଛନ୍ତି । କଲିକତାର କେତେଗୁଡ଼ିଏ ରୋଗ ଆମ ଏଠାକୁ ଛୁଇଁଥିଲା, ବାକି ଗୋଟାଏ ରୋଗ ଆସିବାରୁ ଅନୁକରଣ ପ୍ରଣାଳୀଟା ଅଙ୍ଗହୀନ ହୋଇ ରହି ଯାଇଥିଲା । ସେଇଟା ପୂର୍ଣ୍ଣ ହୋଇ ଥିଏଟରର ଅଙ୍ଗସୌଷ୍ଠବ ସମ୍ପାଦିତ ହୋଇଗଲା ! ବର୍ତ୍ତମାନ କଟକ ତମାମ ବିଶୁଦ୍ଧ ଆମୋଦ ଉପଭୋଗ କରିବ ଓ ସୁକୁମାରମତି ଯୁବକମାନେ କଚ୍ଚନାରାଜ୍ୟ ଓ ଡାକ୍ତରଖାନା ଏହା ମଧ୍ୟରେ ସ୍ୱଚ୍ଛନ୍ଦରେ ବିଚରଣ କରିପାରିବେ । ଏହି ଅନୁଷ୍ଠାନର ପ୍ରବର୍ତ୍ତକ ଅଗ୍ରଣୀମାନଙ୍କ ନାମ କଟକର ଇତିହାସରେ ମାଙ୍କଡ଼ାପଥରରେ ଖୋଳା ହୋଇ ରହିବ । ଏ ଥିଏଟର ସଙ୍ଗରେ ଶିକ୍ଷିତ

ଓ ପଦସ୍ଥ ବ୍ୟକ୍ତିବିଶେଷଙ୍କ ନାମ ସଂଶ୍ଳିଷ୍ଟ ନ ଥିଲେ ଟିକିଏ ପଦାରେ ମୁହଁ ଦେଖାଇବାର ବାଟ ଥା'ନ୍ତା । ଏଥି ସଙ୍ଗେ ସଙ୍ଗେ କଟକରେ ଓ ସମାଜରେ କି ବିଷକୀଟ ପ୍ରବେଶ କରୁଅଛି, ତାହା ଥରେ ଅଗ୍ରଣୀମାନେ ଭାବୁ ନାହାନ୍ତି ! ଥିଏଟରରେ ଗୋଟିଏ ପ୍ରଲୋଭନର ମାତ୍ରା ବଢ଼ାଇ ଦେଇ ସେହି ଅବସରରେ ବି ବୀଭତ୍ସ ଅଭିନୟର ପ୍ରଶ୍ରୟ ଦିଆ..ଯାଉଅଛି । ଥରେ ଉଷା ଥିଏଟରର ନେତାମାନେ ଦାୟିତ୍ୱପୂର୍ଣ୍ଣ ହୃଦୟରେ ଭାବୁ ନାହାନ୍ତି, ଏହାଠାରୁ ବଳି ଲଜ୍ଜା ଓ ପରିତାପର ବିଷୟ ଆଉ କଣ ହୋଇପାରେ ? ଏଥି ମଧ୍ୟରେ ଶୁଣିଲି ଯେ ଆମ୍ଭମାନଙ୍କ ସମାଜର ଜଣ କେତେ ଶୀର୍ଷ ସ୍ଥାନୀୟ ବ୍ୟକ୍ତି (ବିଶେଷଣ ଓ ବିଶେଷ୍ୟ ଓଡ଼ିଆ ଭାଷାରେ ସବୁ ସ୍ଥଳରେ ଏକଲିଙ୍ଗବୋଧକ ହୁଏ ନାହିଁ, ଓଡ଼ିଆ ବ୍ୟାକରଣର ଏ ବିନିମୟଟା ଅବଶ୍ୟ ଆମର ପାଠକ ଓ ଉପ-ପାଠକମାନଙ୍କୁ ଜଣା ଅଛି) ଉକ୍ତ ରଙ୍ଗମଞ୍ଚରେ ଆପଣା ପଦଧୂଳି ପକାଇ ଏହି ନବାନୁଷ୍ଠାନକୁ ଆଶୀର୍ବାଦ କରି ଆସିଅଛନ୍ତି ଓ ଅନ୍ୟ କେତେଗୁଡ଼ିଏ ମହତୋମହୀୟାନ୍ ବ୍ୟକ୍ତି ବ୍ୟକ୍ତିଗତ ଭାବରେ ଆପଣାର ସହାନୁଭୂତି ଦେଖାଇବାରେ ତ୍ରୁଟି କରୁ ନାହାନ୍ତି । କେତେଗୁଡ଼ିଏ ସ୍ମରଣୀୟ ଲୋକ ଆଜି ଏତେ ପରିଶ୍ରମ ଓ ସ୍ୱାର୍ଥତ୍ୟାଗ କରି ଉଷା ଥିଏଟରକୁ ପବିତ୍ର କରିବା ଲାଗି କଲିକତାରୁ ଯେଉଁ ବିଷ ଆମଦାନୀ କରି ଆଣିଅଛନ୍ତି, ତାଙ୍କର ବଂଶଧରମାନେ ତାଙ୍କ ଅନୁସୃତ ଓ ପ୍ରଦର୍ଶିତ ପନ୍ଥାକୁ ଆହୁରି ଦୃଢ଼ତର ଭାବରେ ଅନୁସରଣ କରି ତାଙ୍କ ଅପେକ୍ଷା ଆହୁରି ଖଣ୍ଡେଦୂର ବାଟ ଅଗ୍ରସର ହେବେ ଓ ସେତେବେଳକୁ କଟକ ଓ କଟକର ସଭ୍ୟମାନେ ବଡ଼ବଡୁଆ ଭଳି ଅନ୍ଧାର ଆଲୁଅରେ ଯିବାଆସିବା କରିବେ । ଈଶ୍ୱର କରନ୍ତୁ ଯେ ଏ ଦୃଶ୍ୟଗୁଡ଼ିକ ସ୍ୱଚକ୍ଷୁରେ ଦେଖିବା ପାଇଁ ଥିଏଟରର ଅଗ୍ରଣୀମାନେ ଶତାୟୁ ହୁଅନ୍ତୁ !

ସେଦିନ 'ବ୍ୟକ୍ତିଗତ ପବିତ୍ରତା ଓ ସାମାଜିକ ପବିତ୍ରତା' ବିଷୟ ଆଲୋଚନା କରିବା ଲାଗି କଟକ ଟାଉନ ସ୍କୁଲ ଗୃହରେ ଗୋଟିଏ ସଭା ହୋଇଥିଲା । ସେଥିରେ ଉପସ୍ଥିତ ଥିଲେ କେତେଗୁଡ଼ିଏ ନିଷ୍କର୍ମା ଧର୍ମଯାଜକ, ଶିକ୍ଷକ ଓ ଗୁଡ଼ିଏ ଛାତ୍ର । ଆଉ ସମସ୍ତେ କଟକର ସାମାଜିକ ପବିତ୍ରତା ବିଷୟରେ ସୁଖସ୍ୱପ୍ନ ଦେଖୁଥିଲେ ଓ ଉଷା ଥିଏଟରର ଶ୍ରୀବୃଦ୍ଧି ସଙ୍ଗେ କଟକର ଭବିଷ୍ୟତ୍ ସଙ୍ଗେ ଲୀଳାବତୀ ସୂତ୍ର ଅନୁସାରେ ଅନୁପାତ କଷୁଥିଲେ ! ଯେଉଁ ସମାଜରେ ବୟସ୍କ ସଭ୍ୟମାନେ ଶାନ୍ତି କୁଟୀରରେ ଥାଇ ସୁଖସ୍ୱପ୍ନ ଦେଖୁ ଦେଖୁ ଘୁଂଗୁଡ଼ି ମାରୁଅଛନ୍ତି, ସେହିମାନଙ୍କର ପିଲାଏ ଯେ ଶାନ୍ତି କୁଡ଼ିଆଖଣ୍ଡିମାନ ଛପରବନ୍ଦି କରି ଆପଣା ଆପଣା ଅଭିଭାବକମାନଙ୍କର ସୁଖନିଦ୍ରାର ସୁପନ୍ଥା ଚିନ୍ତା କରିବେ, ଏହା ଅବଶ୍ୟ ବିଚିତ୍ର ନୁହେଁ ।

ମନ୍ଦ ଓ ଅହିତକର କାର୍ଯ୍ୟରୁ ବିରତ ହେବା ପାଇଁ ସବୁବେଳେ ସୁସମୟ ଥାଏ । ଅର୍ଥାତ୍ ଯେତେ ବିଳମ୍ବ ହେଉ ପଛକେ କୌଣସି ଗର୍ହିତ ଅନୁଷ୍ଠାନରୁ ବିରତ ହେବା ମଙ୍ଗଳକର, ଏଥିରେ ସନ୍ଦେହ ନାହିଁ । ଉଷା ଥିଏଟରର ପ୍ରଧାନ ପୃଷ୍ଠପୋଷକମାନଙ୍କ ନିକଟରେ ନିବେଦନ ଏହି କି ଗୁଡ଼ିଏ ଦୁଶ୍ଚରିତ୍ରା ଓ ପତିତା ସ୍ତ୍ରୀମାନଙ୍କୁ ଆଣି ଥିଏଟରରେ

ପ୍ରଲୋଭନ ବଢ଼ାଇ ଅର୍ଥ ଉପାର୍ଜନ କରିବା ଅପେକ୍ଷା ମୂଳଧନ ଖଟାଇ ଆୟ କରିବାର ଅନ୍ୟାନ୍ୟ ଅନେକ ସଦୁପାୟ ଅଛି । କର୍ତ୍ତବ୍ୟଜ୍ଞାନଶୂନ୍ୟ ହୋଇ ସ୍ଥାନୀୟ ସମାଜରେ ଗୋଟିଏ ବିଷକୀଟ ପ୍ରବେଶ କରାଇ ସୁକୁମାରମତି ବାଳକ ଓ ଯୁବକମାନଙ୍କ ପାଇଁ ବିପଥ ପରିଷ୍କାର କରିଦେବା ଦ୍ୱାରା ସେମାନେ ଆପଣା ଉପରେ କି ଦୂରପନେୟ କଳଙ୍କରାଶି ଜମା କରୁଅଛନ୍ତି, ତାହା ଥରେ ଧୀର ଭାବରେ ଭାବି ଏପରି ଗୋଟାଏ ପୈଶାଚିକ ଅନୁଷ୍ଠାନରୁ ପଶ୍ଚାତ୍ପଦ ହୁଅନ୍ତୁ । ଏହା କଲେ କଟକ ଏବଂ କଟକର ସମାଜ ସେମାନଙ୍କଠାରେ କୃତଜ୍ଞ ରହିବ । ଆଦର୍ଶ ଉନ୍ନତ ହେଲେ ସମାଜ ଉନ୍ନତି ଆଡ଼କୁ ଅଗ୍ରସର ହୁଏ ଓ ନିକଟରେ ଗୋଟିଏ ଜଘନ୍ୟ ଆଦର୍ଶ ରଖିଦେଲେ ସମାଜର ଅଧୋଗତି ଅନିବାର୍ଯ୍ୟ !

ବ୍ୟକ୍ତିଗତ ଭାବରେ ମୁଁ ଏଠାରେ କିଛି କହୁ ନାହିଁ । କିନ୍ତୁ ଏହାଦ୍ୱାରା ସମାଜର କି ଅନିଷ୍ଟ ଅବଶ୍ୟମ୍ଭାବୀ, ତାହା ହିଁ ମୋର କହିବାର ଅଭିପ୍ରାୟ ଅଟେ । ଆଶା କରେଁ ଉପରୋକ୍ତ କଥାଗୁଡ଼ିକ କେହି ବ୍ୟକ୍ତିଗତ ଆକ୍ରୋଶ ଅର୍ଥରେ ଗ୍ରହଣ କରିବେ ନାହିଁ ।

ଉତ୍କଳ ସାହିତ୍ୟ/୧୨ଶ ଭାଗ/୧୦ମ ସଂଖ୍ୟା/୧୩୧୬ ସାଲ ।

## ।। ଚବିଶ ।।

ଯେଉଁ ପାଠ ଡାକୁଛି 'ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍ ମା ବ୍ରୂୟାତ୍ ସତ୍ୟଂ ପ୍ରିୟଂ' ଅର୍ଥାତ୍ ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ ସେହି ପାଠ ମଧ ଡାକୁଛି ''ହିତଂ ମନୋହାରୀ ଚ ଦୁର୍ଲଭଂ ବଚଃ' ଅର୍ଥାତ୍ ହିତକଥାଗୁଡ଼ାକ ସାଧାରଣତଃ ନିମ୍ବପିତା ଭଳିଆ । ଏ ବାକ୍ୟ ମନୁଷ୍ୟ ପ୍ରତି ଯେପରି ଖଟେ, ଜାତି ପ୍ରତି ମଧ ସେହିପରି ଖଟେ । ଅଯଥା ଆତ୍ମଶ୍ଳାଘା ସାମାଜିକ ଓ ଜାତୀୟ ଜୀବନ ଗଠନ ପକ୍ଷରେ ଗୋଟିଏ ବିଷକୀଟସ୍ୱରୂପ । ଯେଉଁ ଜାତି ଓ ସମାଜ ମଧରେ ଏହି ମହାକୀଟ ପ୍ରବେଶ କରେ ସେ ଜାତି ଓ ସମାଜର ଉନ୍ନତି ସୁଦୂରପରାହତ । ଏହି କୀଟ ଭାରତୀୟ ଜାତିମାନଙ୍କ ମଧରେ ପ୍ରବେଶ କରି କି ଘୋର ଅନିଷ୍ଟ ସାଧନ କରୁଅଛି ଓ 'ସମବେତ ଭାରତୀୟ ଜାତି' ଗଠିତ ହେବା ବିଷୟରେ କିପରି ଅନ୍ତରାୟ ହୋଇଅଛି ତାହା ଏଠାରେ ଆଲୋଚ୍ୟ ବିଷୟ ନୁହେଁ । ବର୍ତ୍ତମାନ ଏହି ଭାରତବର୍ଷରେ ନାନାବିଧ ସ୍ରୋତ ପ୍ରଭାବିତ ହେଉଅଛି । ଏହି ବିପ୍ଳବର ଆବର୍ତ୍ତ ମଧରେ ପଡ଼ି କ୍ଷୁଦ୍ର କ୍ଷୁଦ୍ର ଜାତିମାନଙ୍କ ଭବିଷ୍ୟତ୍ କି ପରିମାଣରେ ଗଠିତ ହେଉଅଛି ଓ କେଉଁ ଜାତି କେଉଁ ଦିଗରେ ଅଗ୍ରସର ହେଉଅଛି ତାହା ପୁଙ୍ଖାନୁପୁଙ୍ଖ ଭାବରେ ନିର୍ଣ୍ଣୟ କରିବା ସହଜସାଧ ନୁହେଁ । କେଉଁ ଜାତି ଆପଣାର କ୍ଷୁଦ୍ର ସ୍ୱାର୍ଥର ସୀମାକୁ ଲଘନ କରି ଆପଣାର କ୍ଷୁଦ୍ର ସ୍ୱାର୍ଥରେ ଜଳାଞ୍ଜଳି ଦେଇ ଏକ 'ମହାଭାରତୀୟ ଜାତି' ରୂପ ଆଦର୍ଶକୁ ଲକ୍ଷ୍ୟ କରି ଅଗ୍ରସର ହେଉଅଛି । କେଉଁ ଜାତି ଅନ୍ୟାନ୍ୟ ଜାତି ଅପେକ୍ଷା ଉନ୍ନତି ସୋପାନର ବହୁ

ନିମ୍ନସ୍ତରରେ ଅବସ୍ଥାନ କରି ଆପଣାର ନିକଟ ସ୍ୱାର୍ଥ ପ୍ରତି ଦୃଷ୍ଟି ରଖି ଲକ୍ଷ୍ୟଭ୍ରଷ୍ଟ ହେଉଅଛି । କେଉଁ ଜାତି ଜାତୀୟତାର ଅର୍ଥ ବୁଝିବାକୁ ଅକ୍ଷମ ହୋଇ ନିକଟ ବା ଦୂର ଭବିଷ୍ୟତ୍ ବିଷୟରେ ଉଦାସୀନ ହୋଇ ଉଦର ଜ୍ୱାଳାରେ ଆପଣାର ମହତ୍ତ୍ୱକୁ ବଳି ଦେଉଅଛି । ସଭ୍ୟତାର ଉଚ୍ଚତମ ସୋପାନରୁ ଆରମ୍ଭ କରି ନୀଚତମ ସୋପାନ ପର୍ଯ୍ୟନ୍ତ ଅବସ୍ଥିତ ଜାତିନିଚୟରେ ଆଜି ଭାରତବର୍ଷ ପରିପୂର୍ଣ୍ଣ । ନିଜ ବଳରେ ଦଣ୍ଡାୟମାନ ହୋଇ, ସମସ୍ୱରରେ ଚିତ୍କାର କରି, ମହାଜାତୀୟତାର ମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ସେହି ମହାଜାତୀୟତାରୂପ ମହାଯଜ୍ଞ କୁଣ୍ଡରେ ଆପଣାର ସ୍ୱାର୍ଥକୁ ବଳି ଦେବା ସକାଶେ ଏପର୍ଯ୍ୟନ୍ତ ଭାରତୀୟ ଜାତିଗୁଡ଼ିକ ଶିକ୍ଷା କରି ନାହାନ୍ତି । ଏପରି ସ୍ଥଳରେ 'ଭାରତବର୍ଷରେ ଜାତୀୟତାର ଭବିଷ୍ୟତ୍ ଚିତ୍ର ଅଙ୍କନ କରିବାକୁ ଅନେକ ଚିନ୍ତାଶୀଳ ବ୍ୟକ୍ତି ଯେ ପଶ୍ଚାତ୍ପଦ ହେବେ ଏହା ବିଚିତ୍ର ନୁହେଁ । ଐତିହାସିକ ଯୁଗ ମଧ୍ୟରେ ଭାରତବର୍ଷ କେତେଗୁଡ଼ିଏ ସଭ୍ୟତା, ଶାସନ ପ୍ରଣାଳୀ ଓ ଧର୍ମ ପନ୍ଥାର ସଂଶ୍ରବରେ ଆସିଅଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭାବଗୁଡ଼ିକର ସଂଘର୍ଷଣରେ ଆଜି ଭାରତବର୍ଷ ପୃଥିବୀ ମଧ୍ୟରେ ଗୋଟିଏ ଆଲୋଚ୍ୟ କ୍ଷେତ୍ର ରୂପେ ଉପସ୍ଥିତ ହୋଇଅଛି । ଅନେକ ସମୟରେ ଭାରତବର୍ଷ ପ୍ରାଚ୍ୟପ୍ରତୀଚୀର ମଙ୍ଗଳମୟ ସମନ୍ୱୟ ଦ୍ୱାରା ଉନ୍ନତି ଆଡ଼କୁ ଅଗ୍ରସର ହୋଇଅଛି – ଅନେକ ସମୟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଭ୍ୟତାର ସଂଘର୍ଷଣରେ ଅଗ୍ନିସ୍ଫୁଲିଙ୍ଗମାନ ଉଦ୍‌ଥିତ ହୋଇ ଭାରତବର୍ଷକୁ ଛାରଖାର କରି ପକାଉଛି – ଏହି ସନ୍ଧି ସ୍ଥଳରେ ଦଣ୍ଡାୟମାନ ହୋଇ ଭାରତର ଭାଗ୍ୟ ସମ୍ବନ୍ଧରେ ଭବିଷ୍ୟଦ୍‌ବାଣୀ ଉଚ୍ଚାରଣ କରିବା ସହଜସାଧ୍ୟ ନୁହେଁ ।

ଆଧୁନିକ ଜାତୀୟତା ଆଦର୍ଶ ଆମ୍ଭେମାନେ ପାଶ୍ଚାତ୍ୟ ସଭ୍ୟତାରୁ ପ୍ରାପ୍ତ ହୋଇଅଛୁଁ । ଏ କଥା ଅନେକ ଚିନ୍ତାଶୀଳ ବ୍ୟକ୍ତି ସ୍ୱୀକାର କରିଥାନ୍ତି; ପୂର୍ବେ ଭାରତବର୍ଷରେ ଅନାର୍ଯ୍ୟ ଓ ଆର୍ଯ୍ୟ ଶବ୍ଦମାନ ଜାତିବାଚକ ଥିଲା । ପରେ ଆର୍ଯ୍ୟ ଜାତି ମଧ୍ୟରେ ଚାତୁର୍ବର୍ଣ୍ଣ୍ୟ ସୃଷ୍ଟି ହେଲା । କ୍ରମଶଃ ଆର୍ଯ୍ୟଧର୍ମାବଲମ୍ବୀମାନେ ଭାରତବର୍ଷରେ ପଦାର୍ପଣ କରିବାରୁ ହିନ୍ଦୁ, ମୁସଲମାନ, ଯବନ ଇତ୍ୟାଦି ଜାତିବାଚକ ଶବ୍ଦମାନ ପ୍ରବର୍ତ୍ତିତ ହେଲା । କିନ୍ତୁ ଜାତି ଶବ୍ଦର ଦେଶବାଚକ ଭାବ ଆଧୁନିକ ସଭ୍ୟତାର କୀର୍ତ୍ତି । ଯେଉଁମାନଙ୍କର ମାତୃଭୂମି ଏକ ସେହିମାନେ ଧର୍ମନିର୍ବିଶେଷରେ ଏକ ଜାତି ମଧ୍ୟରେ ପରିଗଣିତ । ଏହି ଜାତୀୟତା ରୂପ ମହାମନ୍ତ୍ର ଆଧୁନିକ ଯୁଗ ଓ ସଭ୍ୟତାର ବିଶେଷତ୍ୱ । ପୁରାକାଳରେ ସବୁ ଦେଶରେ ଅଳ୍ପାଧିକ ପରିମାଣରେ ବ୍ୟକ୍ତିଗତ ପରାକ୍ରମ ପରିଲକ୍ଷିତ ହେଉଥିଲା । କ୍ରମଶଃ ସଭ୍ୟତାର ବିନାଶ ସଙ୍ଗେ ସଙ୍ଗେ ସାମାଜିକ ଭାବନିଚୟ ବ୍ୟକ୍ତିଗତ ଭାବର ସ୍ଥାନ ଅଧିକାର କଲା । କ୍ରମେ କ୍ରମେ ଏହି ସାମାଜିକ ଭାବ ପରିପୁଷ୍ଟ ହୋଇ ଜାତୀୟ ରୂପରେ ପରିଣତ ହେଲା ଓ ଏହି ଜାତୀୟ ଭାବ ଆଧୁନିକ ସଭ୍ୟଜାତିମାନଙ୍କୁ ମାତୃଭୂମି ଆଡ଼କୁ ଦୃଢ଼ଭାବରେ ଆକର୍ଷଣ କରୁଅଛି । ଏଥିପାଇଁ କହୁଥିଲି ଯେ 'ଜାତି' ଶବ୍ଦର ଦେଶବାଚକତ୍ୱ ଭାବ ଆଧୁନିକ ସଭ୍ୟତାର କୀର୍ତ୍ତି ।

ଯାହାହେଉ ଏ ବିଷୟ ଆଲୋଚନା କରିବାପାଇଁ ମୁଁ ଏ ପ୍ରସଙ୍ଗର ଅବତାରଣା କରି ନାହିଁ । ବଙ୍ଗ, ଉତ୍କଳ, ମହାରାଷ୍ଟ୍ର ଇତ୍ୟାଦି ଅଞ୍ଚଳର ଅଧିବାସୀମାନେ ତତ୍ ଦେଶର ନାମ ଅନୁସାରେ ଗୋଟିଏ ଗୋଟିଏ ଜାତି ରୂପରେ ପରିଗଣିତ ହେଉଅଛନ୍ତି ! ସୂକ୍ଷ୍ମଦୃଷ୍ଟିରେ ଦେଖିବାକୁ ଗଲେ ଏଗୁଡ଼ିକ ଉପଜାତି; ଅର୍ଥାତ୍ ଏକ ମହାଜାତିର ଶାଖା ବିଶେଷ ବା ଉପାଦାନ ମାତ୍ର । ବିଭିନ୍ନାଞ୍ଚଳବାସୀ ଉପଜାତିଗୁଡ଼ିକ ଆଧୁନିକ ଯୁଗର ସଂଶ୍ଲେଷଣ ଦ୍ୱାରା ନିଜ ନିଜର ସଂକୀର୍ଣ୍ଣ ସୀମା ଅତିକ୍ରମ କରି ଗୋଟିଏ ଭାରତୀୟ ଜାତିରେ ପରିଗଣିତ ହେବେ, ଏହି ଆଦର୍ଶ ହିଁ ଆଜି ଭାରତର ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ଲକ୍ଷ୍ୟ ହୋଇଅଛି । ଏହି ମହାଲକ୍ଷ୍ୟ ପ୍ରତି ଯେଉଁ ଉପଜାତିର ଦୃଷ୍ଟି ଯେତେ ପରିମାଣରେ ପ୍ରଖର, ସେହି ଜାତି ଆଜି ସେତିକି ପରିମାଣରେ ଉନ୍ନତ ବୋଲିବାକୁ ହେବ । କେତେକ ଇଂରେଜ ରାଜନୀତି-କୁଶଳ ପଣ୍ଡିତମାନେ ଘୋଷଣା କରୁଅଛନ୍ତି ଯେ ଭାରତରେ ଉପ-ଜାତିଗୁଡ଼ିକ ଯୁଗଯୁଗାନ୍ତବ୍ୟାପୀ ପ୍ରଭେଦ ଭୁଲିଯାଇ ଏକ ମହାଭାରତୀୟ ଜାତି ରୂପରେ ପରିଣତ ହେବାର ଆଶା ସୁଦୂରପରାହତ । ଏପରି ସିଦ୍ଧାନ୍ତ ସର୍ବତୋଭାବରେ ସତ୍ୟ ବା ସମୀଚୀନ ହୋଇ ନ ପାରେ; କିନ୍ତୁ ଏହି ମତ ପ୍ରକଟନ ଦ୍ୱାରା ଆମ୍ଭମାନଙ୍କର ଏତିକି ଲାଭ ହେଉଅଛି ଯେ ଯେଉଁମାନେ ବିଭିନ୍ନ ଉପ-ଜାତିମାନଙ୍କର କାର୍ଯ୍ୟକଳାପ ପ୍ରତି ଦୃଷ୍ଟି ରଖିଅଛନ୍ତି ସେମାନଙ୍କ ମନରେ ଏହି ଭାବ ଉଦୟ ହେଉଥିବା ବିଷୟ ଆମ୍ଭେମାନେ ବୁଝିପାରିଲେ ତଦନୁସାରେ ଭବିଷ୍ୟତ୍‌କୁ ସତର୍କତା ଅବଲମ୍ବନ କରି ନିଜ ନିଜର ସଂକୀର୍ଣ୍ଣତା ତ୍ୟାଗ କରିବାକୁ ସମର୍ଥ ହୋଇ ଜାତି ଗଠନ ପନ୍ଥାକୁ ଦୃଢ଼ ଭାବରେ ଅନୁସରଣ କରିପାରିବା । ଏକ ପକ୍ଷରେ ଦେଖାଯାଉଅଛି ଯେ ଭାରତବର୍ଷୀୟ କେତେକ ଉନ୍ନତ ଜାତି ପୃଥିବୀର ଅପରାପର ଉନ୍ନତ ଜାତିମାନଙ୍କ ସଙ୍ଗେ ଜୀବନ ସଂଗ୍ରାମରେ ସମକକ୍ଷ ହେବାକୁ ସମର୍ଥ ହେଉଅଛନ୍ତି । ଅନ୍ୟପକ୍ଷରେ ମଧ ଭାରତୀୟ କେତେକ ଜାତି ନିଜର ଜାତୀୟ ଆକାଂକ୍ଷାକୁ ନିତାନ୍ତ ସଂକୀର୍ଣ୍ଣ ସୀମା ମଧରେ ଆବଦ୍ଧ ରଖି କୂପମଣ୍ଡୂକବତ୍ ସେହି ସଂକୀର୍ଣ୍ଣ ସୀମାକୁ ଆପଣାର କ୍ରୀଡ଼ାସ୍ଥଳ କରିଅଛନ୍ତି । ଏପରି ସ୍ଥଳରେ ଏହି ବିଭିନ୍ନ ଜାତିନିଚୟ ସଭ୍ୟତାର ରଙ୍ଗଭୂମିରେ ସମାନ ଭାବରେ ଅଗ୍ରସର ହୋଇ ଏକ ମହାଭାରତୀୟ ଜାତି ଗଠନ କରିବାର ଆଶା କେତେକ ଚିନ୍ତାଶୀଳ ବ୍ୟକ୍ତିଙ୍କୁ କୁହେଳିକାମୟ ଦେଖାଯିବ, ଏକଥା ବିଚିତ୍ର ନୁହେଁ । ବରଂଚ ଏହା ସ୍ୱୀକାର କରିବାକୁ ହେବ ଯେ ଯେତେ ଦିନ ପର୍ଯ୍ୟନ୍ତ ଭାରତୀୟ ବିଭିନ୍ନ ଜାତିମାନେ ଏକ ଜାତୀୟ ମହାଆଦର୍ଶ ପ୍ରତି ଦୃଢ଼ ଲକ୍ଷ୍ୟ ରଖି ସମାନ ଭାବରେ ଅଗ୍ରସର ହେବାକୁ ଶିଖି ନାହାନ୍ତି ବା ସମର୍ଥ ହୋଇ ନାହାନ୍ତି, ସେତେ ଦିନ ପର୍ଯ୍ୟନ୍ତ ଏପରି ଆଶା ମରୁ-ମରୀଚିକା ସଦୃଶ ପ୍ରତୀୟମାନ ହେଉଥିବ ।

ପ୍ରଥମେ ଜାତୀୟ ଜୀବନକୁ ବିଶ୍ଳେଷଣ କରି ଦେଖିବା ଉଚିତ । ଏହା କେଉଁ କେଉଁ ଉପାଦାନରେ ଗଠିତ, ଏହା ନ ଜାଣିଲେ ଅନ୍ଧକାରରେ ଭ୍ରମଣ କରିବା ସ୍ୱାଭାବିକ । ଏହି ଅନ୍ଧକାର ଭ୍ରମଣକୁ ଓଡ଼ିଆ ଭାଷାରେ 'ଭୁଆଁ' ବୋଲାଯାଏ । ଆଜି ଆମ ଓଡ଼ିଆ ଜାତିର

'ଭୁଆଁବୁଲା' ଏହି ପ୍ରବନ୍ଧର ଆଲୋଚ୍ୟ ବିଷୟ । ଜାତୀୟ ଜୀବନ ବ୍ୟକ୍ତିଗତ ଜୀବନର ସମଷ୍ଟି ମାତ୍ର । କିନ୍ତୁ ବ୍ୟଷ୍ଟି ଭାବରେ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ ଜାତୀୟ ସ୍ୱାର୍ଥ ଓ ବ୍ୟକ୍ତିଗତ ସ୍ୱାର୍ଥ ଏ ଦିଓଟି କାର୍ଯ୍ୟକ୍ଷେତ୍ରରେ ଅନେକ ସ୍ଥଳରେ ପରସ୍ପର ବିରୋଧୀ । ଜାତୀୟ ସ୍ୱାର୍ଥ ସାଧନ ଉଦ୍ଦେଶ୍ୟରେ ବ୍ୟକ୍ତିଗତ ସ୍ୱାର୍ଥକୁ ଅନେକ ସମୟରେ ପୋଡ଼ି ଜାଳି ଦେବାକୁ ହେବ । ଏପରି ମଧ୍ୟ ଦେଖାଯାଇଅଛି ଯେ କେତେଗୁଡ଼ିଏ ବ୍ୟକ୍ତିଙ୍କ ସ୍ୱାର୍ଥତ୍ୟାଗ ଓ ସ୍ୱାର୍ଥନାଶ ସଙ୍ଗେ ସଙ୍ଗେ ଜାତି କ୍ରମଶଃ ଉପରକୁ ଉଠିଅଛି । ଯେତେବେଳ ପର୍ଯ୍ୟନ୍ତ ଜାତୀୟ ଜୀବନ ଓ ବ୍ୟକ୍ତିଗତ ଜୀବନରେ ଏହି ସତ୍ୟକୁ ଆମ୍ଭେମାନେ ଉପଲବ୍ଧି କରି ପାରି ନାହୁଁ ବା କାର୍ଯ୍ୟରେ ପରିଣତ କରି ପାରି ନାହୁଁ ସେତେବେଳ ପର୍ଯ୍ୟନ୍ତ ଜାତୀୟ ଉନ୍ନତି କେବଳ ଆକାଶକୁସୁମବତ୍ ହୋଇ ଆମ୍ଭମାନଙ୍କ କଳ୍ପନା ଜଗତ୍‌ରେ ସ୍ଥାନ ପାଇଥିବ ମାତ୍ର । ଆମ୍ଭମାନଙ୍କ ମଧ୍ୟରେ ଦେଖାଯାଏ ଯେ ଯେଉଁ ସ୍ଥଳରେ ଜାତୀୟ ସ୍ୱାର୍ଥ ସଙ୍ଗେ ବ୍ୟକ୍ତିଗତ ସ୍ୱାର୍ଥର ପ୍ରତିଘାତ ବା ପ୍ରତିଦ୍ୱନ୍ଦ୍ୱିତା ଉପସ୍ଥିତ ହୁଏ, ସେହି ସ୍ଥଳରେ ଆମ୍ଭେମାନେ ଜାତୀୟ ଉନ୍ନତିକୁ ଭୁଲିଯାଇ ବ୍ୟକ୍ତିଗତ ସ୍ୱାର୍ଥର ସେବାରେ ଲାଗିଯାଉଁ । ଜାତିର ପ୍ରତ୍ୟେକ ବ୍ୟକ୍ତି ବା ଅଧିକାଂଶ ବ୍ୟକ୍ତିଙ୍କର ଯେବେ ଏହିପରି ଧାରଣା ଓ ସଂକଳ୍ପ ହୁଏ ଯେ ଯେଉଁଠାରେ ଜାତିର ଉନ୍ନତି ଓ ମୋର ସ୍ୱାର୍ଥ ମଧ୍ୟରେ କନ୍ଦଳ ଉପସ୍ଥିତ ହେବ, ମୁଁ ସେହି ସ୍ଥାନରେ ମୋର ସ୍ୱାର୍ଥକୁ ଜଳାଞ୍ଜଳି ଦେବି ଓ ମୁଁ ବଳି ପାଇବା ସଙ୍ଗେ ସଙ୍ଗେ ମୋ ଜାତି ମୋର ରକ୍ତବିନ୍ଦୁ ଦ୍ୱାରା ବଳୀୟାନ୍ ହେବ, ଯେବେ ଏହି ମହାମନ୍ତ୍ର ଆମ ଜାତିର ସମସ୍ତ ପ୍ରାଣର ତନ୍ତ୍ରୀରେ ପ୍ରବେଶ ଲାଭ କରେ, ତେବେ ଆମ ଜାତିର ଭବିଷ୍ୟତ୍ ଏତେ ଅନ୍ଧକାରମୟ ଦେଖାଯିବ ନାହିଁ । ଉଦାହରଣସ୍ୱରୂପ ଦେଖାଯାଉ ଯେ, କୌଣସି ଜାତୀୟ ଅନୁଷ୍ଠାନରେ ଯୋଗ ଦେବା ଲାଗି ଅର୍ଥ ବ୍ୟୟ କରିବା ଦୂରେ ଥାଉ, ସ୍ୱାର୍ଥତ୍ୟାଗ କରିବା ଦୂରେ ଥାଉ, ଆମ ମଧ୍ୟରୁ କେତେ ଜଣ ୧୦।୫ ମିନିଟ୍ ସମୟ ବ୍ୟୟ କରିବାକୁ ପ୍ରସ୍ତୁତ ? ଫଳତଃ ଦେଖାଯାଏ ଯେଉଁ ସମୟ ଆମ୍ଭେମାନେ ଘରେ ଆଳସ୍ୟରେ କଟାଉଁ, ସେହି ସମୟରେ ଯେବେ କୌଣସି ହିତକର ଜାତୀୟ ଅନୁଷ୍ଠାନରେ ଯୋଗ ଦେବାର ଆବଶ୍ୟକ ହୁଏ ତେବେ ଆମ ମଧ୍ୟରୁ କେତେଜଣ କର୍ତ୍ତବ୍ୟ ଅନୁରୋଧରେ ଉକ୍ତ ଅନୁଷ୍ଠାନରେ ଯୋଗ ଦେଇଥାଉଁ ? ଜାତି ମଧ୍ୟରୁ ଦୁଇ ଜଣ ଜଣେ କୌଣସି କାର୍ଯ୍ୟ କରିବାର ଦେଖାଗଲେ ତାହା ସାଧାରଣ ନିୟମ ମଧ୍ୟରେ ଗଣନା କରିବା ମୂର୍ଖତା ।

ଜାତୀୟ ଜୀବନରେ ଉନ୍ନତି କରିବାକୁ ହେଲେ ବ୍ୟକ୍ତିଗତ ପ୍ରାଧାନ୍ୟ ଲୋପ କରିବାକୁ ହେବ । ସମଷ୍ଟି ଭାବରେ ସମସ୍ତଙ୍କର ବା ଅଧିକାଂଶଙ୍କର ଯାହା ମତ ହେବ ବ୍ୟକ୍ତିଗତ ଭାବରେ ମୁଁ ସେହି ଆଦେଶ ଶିରୋଧାର୍ଯ୍ୟ କରିବି । ଜାତିର ମତ ବା ଆଦେଶ ନିକଟରେ ମୋର ବ୍ୟକ୍ତିଗତ ମତ ବା ପ୍ରାଧାନ୍ୟ ଚୂର୍ଣ୍ଣ ହୋଇଯିବ । ଏହି ଭାବ ଆମ୍ଭମାନଙ୍କର ମଧ୍ୟରୁ ଅଧିକାଂଶଙ୍କ ମନରେ ବଦ୍ଧମୂଳ ନ ହେବା ପର୍ଯ୍ୟନ୍ତ ଆମ୍ଭମାନଙ୍କର 'ଭୁଆଁ ବୁଲିବା'

ସ୍ୱାଭାବିକ । ସାଧାରଣତଃ ଦେଖାଯାଏ ଯେ ଆମ ଜାତିର 'ଦନ୍ତା'ମାନଙ୍କ ମନକୁ ଯେଉଁ କଥାଟା ନ ଆସେ, ସେ କଥାଟା ହଜାର ସଭାସମିତି କରି ନିର୍ଦ୍ଧାରଣ କଲେ ସୁଦ୍ଧା ତାହା ସେମାନେ ଗ୍ରହଣ କରିବାକୁ ନିତାନ୍ତ ନାରାଜ । ମୂଳ ମନ୍ତ୍ରଟା ଏହି – ମୋର ବ୍ୟକ୍ତିଗତ ପ୍ରାଧାନ୍ୟ ଯେବେ ବଜାୟ ନ ରହିଲା, ତେବେ ଜାତି ସଙ୍ଗେ ମୋର ସମ୍ପର୍କ କଣ ?

ତୃତୀୟ କଥା – ଜାତୀୟ ଜୀବନର ଗୋଟିଏ ପ୍ରଧାନ ଉପାଦାନ ଏହି ଯେ ସମ୍ମିଳିତ ଭାବରେ କାର୍ଯ୍ୟ କରିବାକୁ ଶିକ୍ଷା କରି କାର୍ଯ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ଜାତି କ୍ରମଶଃ ଉନ୍ନତି ସୋପାନରେ ଅଗ୍ରସର ହୁଏ । ଅର୍ଥାତ୍ "ତୃଣୈର୍ଗୁଣତ୍ୱ ମାପନ୍ନୈର୍ବଧ୍ୟନ୍ତେ ମତ୍ତଦନ୍ତିନଃ ।" ସମ୍ମିଳିତ ଚେଷ୍ଟା ଆଧୁନିକ ସଭ୍ୟତାର ବିଶେଷତ୍ୱ କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁ କାର୍ଯ୍ୟ ବା ଅନୁଷ୍ଠାନ ବ୍ୟକ୍ତିବିଶେଷଙ୍କର ସାଧାତୀତ, ତାହା ସମ୍ମିଳିତ ଚେଷ୍ଟା ଦ୍ୱାରା ଅନାୟାସରେ ସାଧିତ ହୋଇପାରେ । ବ୍ୟକ୍ତିଗତ ପରାକ୍ରମ ଓ ଅର୍ଥ-ବଳ ଯେତେବେଳେ ସମ୍ମିଳିତ ହୋଇ ଗୋଟିଏ ମହାଲକ୍ଷ୍ୟ ଆଡ଼କୁ ଅଗ୍ରସର ହୁଏ, ସେତେବେଳେ ତହିଁର ଗତିରୋଧ କରିବା କାହାର ସାଧ ? ଆମ ଦେଶରେ ଦେଖାଯାଏ ଯେ ଯେଉଁ କାର୍ଯ୍ୟ ବ୍ୟକ୍ତିବିଶେଷ ସାଧନ କରିବା ପାଇଁ ସଂକଳ୍ପ କରନ୍ତି, ତାହା କେତେକ ପରିମାଣରେ ସାଧିତ ହୋଇଥାଏ । କିନ୍ତୁ ଉକ୍ତ କାର୍ଯ୍ୟ ସମାଧାନ କରିବା ପାଇଁ ସମ୍ମିଳିତ ଚେଷ୍ଟା ପ୍ରୟୋଗ କଲା ମାତ୍ରକେ ବ୍ୟର୍ଥମନୋରଥ ହେବାକୁ ହୁଏ । ଅର୍ଥାତ୍ ଯେତେବେଳ ପର୍ଯ୍ୟନ୍ତ ଜଣକ ଉପରେ କୌଣସି କାର୍ଯ୍ୟଭାର ପଡୁଅଛି, ତାହା ସେ ନିଜର ଶକ୍ତି ଓ ସାମର୍ଥ୍ୟ ଅନୁସାରେ ସାଧନ କରିବା ପାଇଁ ତତ୍ପର ହେଉଅଛି; କିନ୍ତୁ ସେହି କାର୍ଯ୍ୟଟି ପାଞ୍ଚ ଜଣଙ୍କ ଉପରେ ନ୍ୟସ୍ତ ହେଲା ମାତ୍ରକେ ଦେଖା ଯାଉଅଛି ଯେ କାର୍ଯ୍ୟଟି ଭଣ୍ଡୁର ହୋଇ ଫସରପାଟି ଯାଉଅଛି । ଏଥିର ବିଶେଷକଥନ ନିମନ୍ତେ ବେଶି ଦୂର ଯିବାକୁ ହେବ ନାହିଁ । ଆମ ଦେଶରେ ସଭା ସମିତିର କାର୍ଯ୍ୟକଳାପ ପର୍ଯ୍ୟାଲୋଚନା କଲେ ଏହି ସତ୍ୟ ସହଜରେ ଉପଲବ୍ଧ ହୋଇପାରିବ । ସମ୍ମିଳିତ ଚେଷ୍ଟାର ମାହାତ୍ମ୍ୟ ଉତ୍କଳୀୟ ଜାତି ହୃଦୟଙ୍ଗମ କରିଥିଲେ ଆଜି ଉତ୍କଳ ସମ୍ମିଳନୀ ରୂପ ଜାତୀୟ ଆୟୋଜନ 'ଭୁଆଁବୁଲା'ରେ ଶେଷ ହୋଇ ନ ଥାନ୍ତା । ଏଥିର ମୂଳ କଥା ଦାୟିତ୍ୱ ଶୂନ୍ୟତା । ବୃହଦ୍ ଜାତୀୟ ଅନୁଷ୍ଠାନରେ ୧୦ଜଣ ସମ୍ମିଳିତ ହୋଇ କାର୍ଯ୍ୟ କରିବାକୁ ବସି ସମସ୍ତେ ନେତା ହେବାକୁ ବସିଲେ ଚଳିବ ନାହିଁ କି ଜଣେ ରୁଷିଆର ଜାର (Czar) ହେଲେ ଚଳିବ ନାହିଁ । ସମସ୍ତେ ଯୋଗୀ ହେଲେ ଭିକ ଦେବ କିଏ ? ଜଣେ ଏକାଙ୍ଗଚକ୍ରବର୍ତ୍ତୀ ହେଲେ ଜାତୀୟ ଭାବର ମାହାତ୍ମ୍ୟ ରହିବ କାହୁଁ ? ଏହି ସବୁ ବିଷମ ସମସ୍ୟାରେ ପଡ଼ି ଆଜି ଆମ ଜାତି ଜର୍ଜରିତ ଓ ଜୀବନ୍ମୃତ ଅବସ୍ଥାରେ ପଡ଼ିଅଛି । ଯୌଥ କାରବାର ବୋଲ, ସଭା ସମିତି ବୋଲ, ସମସ୍ତ ସମ୍ମିଳିତ ଅନୁଷ୍ଠାନମାନ ପ୍ରାଥମିକ ସୋପାନ ଅତିକ୍ରମ କରିବାକୁ ଅସମର୍ଥ ହେଉଅଛନ୍ତି ।

ତତ୍‌ପରେ ଦେଖିବା ଉଚିତ ଯେ କୌଣସି ଜାତୀୟ ଅନୁଷ୍ଠାନ ବା ମଙ୍ଗଳମୟ କାର୍ଯ୍ୟରେ ବ୍ୟକ୍ତିବିଶେଷଙ୍କ ଅନୁରୋଧ ରକ୍ଷା କରିବା ଲାଗି ଆମ୍ଭେମାନେ ଯେତେଦୂର ହୃଦୟର ସହିତ ଯୋଗ ଦେଇଥାଉଁ, କର୍ତ୍ତବ୍ୟ ଅନୁରୋଧରେ ସେତେଦୂର ଆନ୍ତରିକ ଯୋଗ ଦେଉ ନାହିଁ । ଏ କାର୍ଯ୍ୟରେ ଅମୁକଙ୍କର ସହାନୁଭୂତି ଅଛି ବା ଏ କାର୍ଯ୍ୟରେ ସାହାଯ୍ୟ କଲେ ଅମୁକ ସନ୍ତର୍ପିତ ହେବେ, ଏହି ଧାରଣାର ବଶବର୍ତ୍ତୀ ହୋଇ ଆମ୍ଭେମାନେ କୌଣସି ଜାତୀୟ କାର୍ଯ୍ୟରେ ଯେଉଁ ପରିମାଣରେ ଯୋଗ ଦେଇଥାଉଁ, ସେହି ଅମୁକଙ୍କର ସମ୍ପର୍କ ବା ସହାନୁଭୂତିରହିତ ହୋଇଗଲା ମାତ୍ରକେ ସେହି କାର୍ଯ୍ୟରେ ଆମ୍ଭେମାନେ ସେହି ପରିମାଣରେ ସାହାଯ୍ୟ ଦେଉ ନ ଥିବାର ଦେଖାଯାଏ । ଏହି ବ୍ୟକ୍ତିଗତ ଯୁଗ ନ ଟପିବା ପର୍ଯ୍ୟନ୍ତ ଆମ୍ଭମାନଙ୍କର ଜାତୀୟ ଉନ୍ନତି ହେବା ଅସମ୍ଭବ । ଓଡ଼ିଶାର ଏହି ଯୁଗକୁ ମୁଁ 'କାହ୍ନା ଲାଗି ଗାଈଗୁହାଳ' ଯୁଗ ନାମରେ ନାମକରଣ କରିଅଛି ।

ଉପର୍ଯ୍ୟୁକ୍ତ ବିବରଣରୁ ସ୍ପଷ୍ଟରୂପେ ଦେଖା ଯାଉଅଛି ଯେ ଆଜି ଉତ୍କଳୀୟ ଜାତି 'ଜାତି' ପଦବାଚ୍ୟ ହେବାର ଯୋଗ୍ୟ ହୋଇ ନାହିଁ ଓ ଭାରତୀୟ ଅନ୍ୟ ଉନ୍ନତ ଜାତିମାନଙ୍କ ସମକକ୍ଷ ହୋଇ ନାହିଁ । ବର୍ତ୍ତମାନ କଠୋର କର୍ତ୍ତବ୍ୟ ଆମ୍ଭମାନଙ୍କ ସମ୍ମୁଖରେ ରହିଅଛି । ଦିଓଟି ଭବିଷ୍ୟତ୍ ଆମ୍ଭମାନଙ୍କ ସମ୍ମୁଖରେ ରଖା ହୋଇଅଛି । ୧ମ ଉଦ୍ୟମର ଉଜ୍ଜ୍ୱଳ ଭବିଷ୍ୟତ୍ ୨ୟ ମୋହନିଦ୍ରାର ଅନ୍ଧକାର ଭବିଷ୍ୟତ୍ । ଯେଉଁ ଯୁଗର ପ୍ରଭାବରୁ ପୃଥିବୀର ଅନ୍ୟାନ୍ୟ ଜାତିମାନେ ଉଦ୍ୟମ ଓ ଅଧ୍ୟବସାୟ ଦ୍ୱାରା ଅସାଧ୍ୟ ସାଧନାରେ ପ୍ରବୃତ୍ତ ହୋଇ ଶିଳ୍ପ, ବିଜ୍ଞାନ, ରାଜ୍ୟଚାଳନ, ଧର୍ମଚର୍ଚ୍ଚା, ନୈତିକ ଉନ୍ନତି କରୁଅଛନ୍ତି, ସେହି ଅନନ୍ତ ପ୍ରଭାବ ଦ୍ୱାରା ପୁନଃ ପୁନଃ ଅଭିମନ୍ତ୍ରିତ ହୋଇ ଆମ୍ଭେମାନେ ଅଗ୍ରସର ହେଲେ ଭାରତୀୟ ଜାତିମାନଙ୍କ ମଧ୍ୟରେ ଗୋଟିଏ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରିପାରିବା ନଚେତ୍ ଯେଉଁ ଅଭିଶାପ ପ୍ରଭାବରୁ କନ୍ଧ, କୋହ୍ଲ, ସାନ୍ତାଳ, ଭୂୟାଁ, ଯୁଆଙ୍ଗ ଇତ୍ୟାଦି ଜାତିମାନେ ଆପଣା ସଂକୀର୍ଣ୍ଣସୀମା ମଧ୍ୟରେ ଆବଦ୍ଧ ରହି ଆଳସ୍ୟ ଜର୍ଜ୍ଜରିତ ପ୍ରାଣରେ ଅନ୍ୟାନ୍ୟ ଉନ୍ନତ ଜାତିମାନଙ୍କ ପଦତଳରେ ଆପଣାର ବିଶେଷତ୍ୱ ବଳି ଦେବା ଲାଗି ଦଣ୍ଡେମାତ୍ର ଚିନ୍ତା କରୁ ନାହାନ୍ତି, ସେହି ଆଳସ୍ୟ ଓ ଏକଦେଶଦର୍ଶୀ ସଂକୀର୍ଣ୍ଣତା ଅବଲମ୍ବନ କରି ଏହି ଉତ୍କଳୀୟ ଜାତିର ଅସ୍ତିତ୍ୱ ଉନ୍ନତତର ଜାତିମାନଙ୍କ ମଧ୍ୟରେ ବିଲୀନ ହୋଇଯିବ । ଏହି ଦିଓଟି ଭବିଷ୍ୟତ୍‌ରୁ କେଉଁଟି ଆମ୍ଭମାନଙ୍କ ଭାଗ୍ୟରେ ଅଛି, ତାହା ବର୍ତ୍ତମାନ ଇୟତ୍ତା କରିବା ସହଜ ନୁହେଁ । ତେବେ ବର୍ତ୍ତମାନ ଏତିକି ମାତ୍ର ବୋଲାଯାଇପାରେ ଯେ, ଉତ୍କଳ ବର୍ତ୍ତମାନ ଗୋଟିଏ ସନ୍ଧିସ୍ଥଳରେ ଦଣ୍ଡାୟମାନ ହୋଇଅଛି । ନିୟାମକମାନଙ୍କ ସୂକ୍ଷ୍ମ ଦର୍ଶନ, ବୁଦ୍ଧିମତ୍ତା ଓ ପରିଶ୍ରମ ଏବଂ ସ୍ୱାର୍ଥତ୍ୟାଗ ଉପରେ ଏହାର ଭବିଷ୍ୟତ୍ ଅନେକ ପରିମାଣରେ ନିର୍ଭର କରୁଅଛି ।

ଉତ୍କଳ ସାହିତ୍ୟ/୧୨ଶ ଭାଗ/୧୨ଶ ସଂଖ୍ୟା/୧୩୧୬ ସାଲ ।

## ।। ପଚିଶ ।।

ଗତ ସଂଖ୍ୟା ଉତ୍କଳ ସାହିତ୍ୟ ପ୍ରକାଶିତ ହେବା ପରେ ଦିଓଟି ଗୋଟିଏ ପୁରୁଣାକାଳିଆ ବନ୍ଧୁଙ୍କୁ ଭେଟିଲି । ସେମାନେ କହିଲେ, ''କିହୋ ! ଏଥରକ ଅଚା ଛାଡ଼ିଲ କିଆଁ ।'' ମତଲବଟା କଣ ? ନା, ଏଥିପୂର୍ବେ 'ଦୁନିଆର ହାଲଚାଲ' ଯେଉଁ 'ଟପକ୍ ନବିସିଆ' ଭାଷା ଓ ଢଙ୍ଗରେ ଚାଲୁଥିଲା ଗତ ସଂଖ୍ୟା 'ଦୁନିଆର ହାଲଚାଲ'ର ସେପରି ଛାପ ଚିକ୍କଣ ଭାଷା ନ ଥାଇ 'ମୁରବି ଧରଣିଆ' ଅର୍ଥାତ୍ ଗମ୍ଭୀର ଭାଷା ହୋଇଗଲା କାହିଁକି ? ମୁଁ ଉତ୍ତର କଲି, ''ଭାବ ସଙ୍ଗେ ଭାଷାର ଖାପ ଖୋଇବାକୁ ଯାଇ ମୁଁ ଅଚା ଛାଡ଼ିଗଲି ।'' ସେମାନେ କିନ୍ତୁ ଏ କୈଫିୟତରେ ସନ୍ତୁଷ୍ଟ ହେଲେ ନାହିଁ । ମୁଁ ମଧ ମୋ କପାଳକୁ ଆଦରି ରହିଲି ।

ବର୍ତ୍ତମାନ ଓଡ଼ିଶାର ହାଲଚାଲ ମଧରେ 'ବଙ୍ଗାଳୀ-ଓଡ଼ିଆ' ରହସ୍ୟ ପ୍ରଥମ ସ୍ଥାନ ଅଧିକାର କରିଅଛି କଥାଟା ମୁଁ ଏଠାରେ ରସମୟ ଭାବରେ ବ୍ୟବହାର କରୁ ନାହିଁ । ଓଡ଼ିଶାର କେନ୍ଦ୍ରଗୁଡ଼ିକରେ ବାହାରେ ହେଉ ବା ଭିତରେ ହେଉ ଏହି ରହସ୍ୟ ନେଇ ଘଣ୍ଟା ଚକଟା ଲାଗିଅଛି । ବଙ୍ଗୀୟ ଓ ଉତ୍କଳୀୟମାନଙ୍କ ମଧରେ ୧୦ ବର୍ଷ ପୂର୍ବେ ଯେଉଁ ସମ୍ବନ୍ଧ ଥିଲା ଆଜି ତାହା ହୁଗୁଳା ହେଲାପରି ଜଣାଯାଉଅଛି । ମାନ୍ୟବର ଶ୍ରୀଯୁକ୍ତ କେ. ଜି. ଗୁପ୍ତ ସାହେବ ଓଡ଼ିଶାର କମିସନର ଥିବା ସମୟରେ ପ୍ରାୟ ୭ବର୍ଷ ତଳେ (୧୯୦୨ ସାଲ ସେପ୍ଟେମ୍ବର ମାସ ୨୯ ତାରିଖରେ) ଏଠାରେ ଗୋଟିଏ ବିଦ୍ୟାଳୟର ପୁରସ୍କାର ବିତରଣ ସଭାରେ ଏ ବିଷୟରେ ଉତ୍‌ଥାପନା କରି କହିଥିଲେ ଯେ ବଙ୍ଗୀୟ ଓ ଉତ୍କଳୀୟମାନଙ୍କ ମଧରେ ଘନିଷ୍ଠତା କ୍ରମଶଃ କମୁଅଛି ଓ ଏହା କଦାପି ବାଞ୍ଛନୀୟ ନୁହେଁ । ମୁଁ ସେତେବେଳେ ଭାବିଥିଲି ଯେ ଗୁପ୍ତ ସାହେବ ଏପରି ବିଳିବିଳେଇଲେ କିଆଁ ? କାରଣ ସେତେବେଳେ ଓଡ଼ିଶାରେ ଏପରି ତୋଡ଼ ଥିବାର ମୋତେ ଜଣା ନ ଥିଲା । ଏବେ ସେ ତୋଡ଼ର ଦାଉ କଳନା କରିବାକୁ ପଡ଼ିବାରୁ ଏ ସମ୍ବନ୍ଧରେ ଆମ୍ଭମାନଙ୍କ ଦୁର୍ଦ୍ଦଶା ଭାବି ଚିନ୍ତିତ ହେବାକୁ ପଡୁଅଛି । ବର୍ତ୍ତମାନ ଉତ୍କଳୀୟ ଓ ଉତ୍କଳବାସୀ ବଙ୍ଗୀୟମାନଙ୍କ ମଧରେ କେତେଗୁଡ଼ିଏ ସ୍ୱାର୍ଥ -ବ୍ୟବସାୟୀ ଖେଳୁଆଡ଼ ଅଛନ୍ତି । ସେମାନେ ଅଳିଆଗଦାରୁ କୁଟାଲୁଣ୍ଠାତକ ରାଣ୍ଡୀପୁଅ ଅନନ୍ତା ଭଳିଆ ସାଉଁଟି ନେଇ ଘର ଭିତରେ ସାଇତି ଅଗି ଜଳାଇବା ଉଦ୍ୟମରେ ଅଛନ୍ତି । ଓଡ଼ିଆ-ବଙ୍ଗାଳୀ ବିଦ୍ୱେଷକୁ ସେମାନେ କିରାସିନି ତେଲ ସାହାଯ୍ୟରେ ଜଳାଇ ଦେବା ପାଇଁ ବ୍ୟସ୍ତ । ଏଥିପାଇଁ ସ୍ଥାନେ ସ୍ଥାନେ ବାଦିପାଲା ଓ ଦାଏକା ଓ ଚଅଁର ଡିଆଁର ବ୍ୟବସ୍ଥା ହେଉଅଛି । ସେଦିନ ଜଣେ ଭାୟା ହୁରି ପକାଇଲେ, ''ଆରେ ଓଡ଼ିଆଭାଇମାନେ, ଆମ ଦେଶରେ ବଙ୍ଗାଳୀଗୁଡ଼ାକ ଶଁବାଳୁଆ ପୋକ ଭଳିଆ ସାଲୁ ସାଲୁ ହେଉଅଛନ୍ତି, ଆମ ଭାତ ପତରରେ ଚଢ଼ି ଯାଉଛନ୍ତି ଓ ସଜନା ଗଛଯାକ ଲାଣ୍ଡିକରି ପକାଉଛନ୍ତି ! ସେଗୁଡ଼ାକୁ ଏକଦମ୍ ବାଏଁ ବାଏଁ ଓଡ଼ିଶାରୁ ମନ୍ତ-ଫୁଙ୍କ ଦ୍ୱାରା ଉଡ଼ାଇ ଦେବାକୁ ହେବ ।'' ଏହା ଶୁଣି ଆଉଜଣେ ଓସ୍ତାଦ୍ ଖେଳୁଆଡ଼ କୁହାଟି ଉଠିଲେ-

''ଆରେ ଗଧ ନିମକ୍‌ହାରାମ ଓଡ଼ିଆମାନେ ! ତୁମେ ବୁଝିପାରୁ ନାହଁ ଯେ ତୁମର ନିଜସ୍ୱ କିଛି ନ ଥିଲା, ତୁମର ବାପ ଅଜା ସାତ ପୁରୁଷଗୁଡ଼ାକ ସମସ୍ତେ ମାଳୀ ଓ ବେହେରା ଥିଲେ । ବଙ୍ଗାଳୀମାନେ ''ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ ଆସି ଓଡ଼ିଶାରେ ଅବତୀର୍ଣ୍ଣ ହୋଇ ଓଡ଼ିଆଙ୍କୁ ମାଉସୀ-ମା ଘର ନିକଟକୁ ରଥ ଦଉଡ଼ିରେ ଟାଣି ନେଇଗଲେ ।'' ଏହି କୁହାଟର ପ୍ରତିଧ୍ୱନି ରାଜପ୍ରାସାଦରେ ବାଜି ଋଷିଙ୍କ ପର୍ଣ୍ଣଶାଳାରେ ପ୍ରତିଘାତ ପାଇ ନୀଳାଚଳ ପର୍ଯ୍ୟନ୍ତ ସମଗ୍ର ଓଡ଼ିଶାଟାକୁ ଝଙ୍କାରିତ କରିଦେଲା । ଏହି ଅବସରରେ ଓଡ଼ିଶାର ସବୁ ନୂଆ ଡାହାଣୀଯାକ ଓ ଅପୂଜା ଦେବତାଗୁଡ଼ାକ ଚେଇଁ ଉଠିଲେ । କେତେ ଗୁଣିଗାରେଡ଼ି, କେତେ କୁଆଁରୀ ହାଡ଼, ଅଘରଦ୍ୱାରୀ ଲୋଡ଼ା ପଡ଼ିଲା । ଯାହାହେଉ ସମୁଦ୍ର କୂଳରେ ଠିଆହୋଇ ଗୋପବନ୍ଧୁଭାଇ ଡାହାଣୀ ଛଡ଼ାଇବାକୁ ଚେଷ୍ଟା କଲେ । କୈଳାସବାସୀ ଯୁଗଳମୂର୍ତ୍ତିଙ୍କୁ ଆରାଧନା କରି ଗୋପବନ୍ଧୁଭାଇ ସମସ୍ତଙ୍କୁ ଡାକି କହିଲେ, ''ଆରେ ଭାଇମାନେ ! ବୃଥାରେ କାହିଁକି ଚକ୍ଷୁ କୁଟୁଛ ? ଦୁଇ ପକ୍ଷଯାକ ନାଲି ନେଳି ଚଷମା ପିନ୍ଧିଛ; ସେଇଟିମାନ ଆଖିରୁ କାଢ଼ିଦିଅ, ଆପଣା ଜାତିର ଆଭ୍ୟନ୍ତରୀଣ ଅବସ୍ଥା ଓ ଭବିଷ୍ୟତ୍ ଆଶା ପ୍ରତି ଲକ୍ଷ୍ୟ ରଖ । କେଳା କୁହୁକରେ ଭୁଲିଯାଅ ନାହିଁ । ବଙ୍ଗୀୟ ଭ୍ରାତାମାନେ ଆମ୍ଭମାନଙ୍କର ଜ୍ୟେଷ୍ଠଭ୍ରାତାସ୍ୱରୂପ । ସେମାନଙ୍କଠାରୁ ଓ ସେମାନଙ୍କ ଜାତିରୁ ଅନେକ ମାଲମସଲା ନେଇ ଆମ ଜାତିର ଦଦରା ଓ ପୁରୁଣା କାନ୍ଥଗୁଡ଼ାକ ଓ ଶିବେଇ ସାନ୍ତରାଙ୍କ ଦେଉଳର ଫାଟଯାକ ଲେସିବାକୁ ହେବ । ଆମ କର୍ପୂର ଗଲାଣି, କନାଖଣ୍ଡି ପଡ଼ିରହିଛି । ବୃଥା ଅଭିମାନ, ବୃଥା ବିଦ୍ୱେଷ, ବୃଥା କଟାକ୍ଷ ଓ ନିଉଛୁଣା ଗରବକୁ ଛାଡ଼ି ପ୍ରେମ ପାଶରେ ସମସ୍ତେ ଦୃଢ଼ଭାବରେ ବନ୍ଧାବନ୍ଧି ହୋଇ ବାଟ ଚାଲିବାକୁ ହେବ । ଏହା ନ କଲେ ବିବାଦ – ବିଷ, ସ୍ୱାଦ ଦ୍ୱାରା ସମସ୍ତେ ଛାରଖାର ହୋଇଯିବା । ଦାଣ୍ଡ ଲୋକେ ହସିବେ ।'' ଏହିପରି କେତେଗୁଡ଼ିଏ ମନ୍ତ୍ର ଫୁଙ୍କି ଗୋପବନ୍ଧୁଭାଇ କେତେ ଲୋକଙ୍କୁ ଟିକିଏ ପ୍ରକୃତିସ୍ଥ କଲା ପରି ବୋଧ ହେଲା । ମନେ ମନେ ଗୋପବନ୍ଧୁଭାଇଙ୍କୁ କେତେ ଆଶୀର୍ବାଦ କଲି । ତତ୍‌ପରେ ଥରେ ଦୃଢ଼ ଭାବରେ ଏ ସମସ୍ୟାଟାକୁ ଭାବିଲି । ଯେତିକି ବେଶି ଭାବିଲି, ସେତିକି ବେଶି ଗୋଟାଏ ଲେଖାଏଁ ପରଦା ଫିଟିଗଲା । ବିଚାରିଲି ଯେ ଏ ବେମାରି ଓଡ଼ିଶାରେ ଯେତେଦୂର ଘୋଟିଛି, ସେଥିରେ ଅଢ଼େଇ ଚରଣିଆ ମନ୍ତ୍ରକୁ ମାନିଲେ ତ ହୁଏ । ଏହି ସମୟରେ ଜଣେ ପ୍ରବୀଣ ଉଚ୍ଚଶିକ୍ଷିତ ଦରବୁଢ଼ା ଖାଣ୍ଟି ଓଡ଼ିଆଙ୍କ ସଙ୍ଗେ ଦେଖାହେଲା । ତାଙ୍କ ସଙ୍ଗେ ବର୍ତ୍ତମାନ ଜଳୁଥିବା ନିଆଁ ନିଭାଇବା କଥା ପକାଇଲି । ସେ କହିଲେ - ''ମୁଁ ୨୫ ବର୍ଷ ତଳେ ପୁରୀଠାକୁ ଯାଇଥିଲି । ସେତେବେଳେ ବିଛାବାଲିଆ ଚୁଙ୍ଗୁଡ଼ି ପଇସାକୁ ଚାରିପୁଞ୍ଜା ଲେଖାଏଁ ମିଳୁଥିଲା । ହାଲ୍ ପୁରୀ ଯାଇ ଦେଖିଲି ଯେ ସେ ଚୁଙ୍ଗୁଡ଼ି ପଇସାରେ ଦୁଇଟା ସୁଦ୍ଧା ମିଳିବା କଷ୍ଟ । ଏବେ ପୁରୀର ସମୁଦ୍ର କୂଳରେ ମୁର୍ଦ୍ଦାର ପୋଡ଼ିବାକୁ ସୁଦ୍ଧା ଜାଗା ନାହିଁ । ଏସବୁ ବିଦେଶୀୟମାନଙ୍କ ଅତ୍ୟାଚାର ନୁହେଁ ତ ଆଉ କଣ ? ଏକଥା ଶୁଣି ମୋ ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ କୋଲ ମାରିନେଲା ଓ ହାତ ମୁଠା

ମୁଠା ହୋଇଗଲା । ଭାବିଲି, ଉକ୍ତ ମହାନୁଭବ ବ୍ୟକ୍ତି ଆପଣା ଅନୁଭବରୁ କେଡ଼େ ଜ୍ୱଳନ୍ତ ଚିତ୍ରଟାଏ ଆଣି ମୋ ଆଖି ଆଗରେ ରଖିଦେଲେ । ଯେଉଁ ଦେଶର ପ୍ରବୀଣ ଦଳପତିମାନଙ୍କର ଦେଶହିତୈଷଣା ବିଛାବାଳିଆ ଚୁଙ୍ଗୁଡ଼ିରେ ପର୍ଯ୍ୟବସିତ, ସେ ଜାତିର ଭବିଷ୍ୟତ୍ ପାଇଁ ଯେ ବର୍ତ୍ତମାନ କେତେ ପୁରୁଷ ପର୍ଯ୍ୟନ୍ତ ନିଷ୍ଚିତ ରହିବାକୁ ହେବ, ଏଥିରେ ଆଉ ସନ୍ଦେହ କଣ ଥାଇପାରେ ? ପ୍ରବୀଣ ବନ୍ଧୁ ଆଉ କେତେଗୁଡ଼ିଏ ନଜିର ଆପଣା ମୁଣିରୁ କାଢ଼ି ମୋ ସଙ୍ଗରେ କସ୍ରତ କରିବାକୁ ବସିଥିଲେ; କିନ୍ତୁ ତାଙ୍କ ପ୍ରବୀଣତାରେ ଗୋଟିଏ ନମୁନା ଚିପି ନେଲାରୁ ତାଙ୍କୁ ଆଉ ବେଶି କଷ୍ଟ ଦେବାକୁ ଇଚ୍ଛା ବଳିଲା ନାହିଁ । ତହୁଁ ତାଙ୍କୁ ପଦେ ଅଧେ ମିଠା କଡ଼ା ଭାଷାରେ ବୋଧସୋଧ କରି ତାଙ୍କଠାରୁ ବିଦାୟ ନେଲି । ଏ ସମ୍ବନ୍ଧରେ ମୋର ଭକ୍ତିଭାଜନ ଜଣେ ବିଶିଷ୍ଟ ବନ୍ଧୁଙ୍କ ସଙ୍ଗେ ଦିନେ କଥାବାର୍ତ୍ତା ପଡ଼ିଥିଲା । ତାଙ୍କର ମନ୍ତବ୍ୟ ମୋର ମନକୁ ଭାରି ମାନିଲା । ସେ କହିଲେ, ''କାହିଁ କୋଟି ସନ୍ତାନ ସମନ୍ୱିତ ଓଡ଼ିଆ ଜାତି । କାହିଁ ସେହି ସପ୍ତକୋଟି ସନ୍ତାନ ସମନ୍ୱିତ ବଙ୍ଗାଳୀ ଜାତି । ଏ ଦୁଇ ଜାତିର ଭୂତ ଭବିଷ୍ୟତ୍ ଆମ ଭିତରୁ କେତେଜଣ ଦୃଢ଼ଭାବରେ ଚିନ୍ତା କରିଥା'ନ୍ତି ? ଆମ୍ଭେମାନେ ଗୋଟାକେତେ ମଝିରେ ବାହାରିପଡ଼ି ଏ ଦୁଇ ଜାତିର ଅକ୍ଷମତା ପ୍ରାପ୍ତକାର ପରଦାଜ ସ୍ୱରୂପ ବୃଥା ସବାଲ ଜବାବରେ ପ୍ରବୃତ୍ତ ହୋଇଅଛୁଁ ଓ ସମୟ ପଡ଼ିଲେ ନିଜ ନିଜ ଜାତିର ଦ୍ୱାହି ଦେଇ ଆପଣା ପିଲାଙ୍କ ପାଇଁ ଖଣ୍ଡେ ଅଇଁଠା ପତ୍ର ବା ଖଣ୍ଡେଅଧେ ଅଢ଼େଇଦିନିଆ ଇନାମ୍‌ର ବ୍ୟବସ୍ଥା କରିବା ପାଇଁ ଦୁଇ ଜାତି ମଧ୍ୟରେ ବିଦ୍ୱେଷ ବହ୍ନି ଜାଳିଦେଇ ଭବିଷ୍ୟତ୍‌କୁ ଅନ୍ଧକାରମୟ କରୁଅଛୁଁ ମାତ୍ର ।

ମୁଁ ମଧ୍ୟ ଭାବିଲି, ବଙ୍ଗୀୟମାନେ ବ୍ୟକ୍ତିଗତ ଜୀବନରେ ଓ ଜାତୀୟ ଜୀବନରେ ଯେଉଁ ଉନ୍ନତି କରିଅଛନ୍ତି, ଆମ ଜାତିର 'ହଳୀଶା, ଲାଙ୍ଗଳୀଶା,' ଟକ ଛାଡ଼ିଦେଲେ ଆମେ ତହିଁରୁ କାଣିଚାଏ ସୁଦ୍ଧା କରି ନାହୁଁ, ଏପରି ସ୍ଥଳରେ ବ୍ୟକ୍ତିଗତ ଭାବରେ ଓ ଜାତୀୟ ଭାବରେ ସେହି ଉନ୍ନତ ଜାତିର ଆଦର୍ଶକୁ ବର୍ତ୍ତମାନ ଛାଡ଼ିଦେଇ ବସିଲେ ଆମ୍ଭମାନଙ୍କୁ ଭୁଆଁ ବୁଲିବାକୁ ହେବ । କୋଟିକ ଭିତରେ ଶତକଡ଼ା କେତେଜଣଙ୍କର ଆଦର୍ଶ ପିତୁଳାଗୁଡ଼ାକ ବାଡ଼ିଆଡ଼ ଗୃହ ପଡ଼ିଆକୁ ଟପିଅଛି ? କୋଟିକରେ ଦିଓଟି ଗୋଟିଏଙ୍କୁ 'ହଳୀଶା, ଲାଙ୍ଗଳୀଶା' ନ ବୋଲି ଆଉ କଣ ବୋଲିବାକୁ ହେବ ? ଆମ୍ଭେମାନେ ମୁହଁରେ 'ଓଡ଼ିଆ ଜାତି' 'ଓଡ଼ିଆ ଜାତି' ବୋଲି ରଡ଼ି ପକାଇ ସ୍ୱର୍ଗ ମଞ୍ଚ ପାତାଳକୁ ଉଲ୍‌କାପାତ କରୁଅଛୁଁ, କିନ୍ତୁ ମୁଁ ବର୍ଷେ ହେଲା ଦରାଣ୍ଡୁଛି ଯେ ଆମ ଜାତିଟା କେଉଁ ବିମ୍ବରେ ପଶିଛି ? ମନେ ମନେ ବିଚାରିଛି ଯେ ଜାତିର କୌଣସି ଟାଣୁଆ ଅଂଶରେ ହାତ ପଡ଼ିଗଲେ ତାକୁ ଆଲୁଅକୁ ଓଟାରି ଆଣି ସଭ୍ୟ ଜଗତ ଉପରେ ଚପାଇ ଦେବି ଓ ସାବାସ୍‌ଟାଏ ମାରିନେବି; କିନ୍ତୁ ଉଣ୍ଡାଳି ଉଣ୍ଡାଳି ଦିହ ହାତ ବରଡ଼ା ପତର ଭଳିଆ ଥରିଲାଣି; ତେବେସୁଦ୍ଧା ଅବତକ୍ କିଛି ଠିକଣା ଲଗାଇ ପାରିଲା ନାହିଁ; ଉଣ୍ଡାଳି କରି କେବଳ ପାଇଲି କୁଜିଗେଣ୍ଡା, ଶାମୁକା ଓ ଲମ୍ବ ଲମ୍ବ କୋଚିଆ ଗୁଡ଼ାଏ । ଏଣେ ବାହାରେ ଦେଖିଲା ବେଳକୁ ହୁରି ପଡ଼ିଛି ଯେ

ଓଡ଼ିଆ ଜାତିଟା ଉଡ଼ାଫାନୁସ ଭଳି ଉପରକୁ ଉଠୁଛି । ଯେ ଥରେ ଆମ ଜାତିର ଅନ୍ଧିସନ୍ଧି ଖୋଜିଛି, ତାକୁ ଆମ ଜାତିର ମୂଲ୍ୟ ଅଛପା ନୁହେଁ । 'ହୋ'ରେ ମାଡି କିମ୍ବା ଦେହରେ ତୁଳା ପକାଇ କୌଣସି ଜାତି ଉନ୍ନତି କରି ନାହିଁ କି ଆମ ଜାତି ଏହା କରି କୋଇଲିବୈକୁଣ୍ଠକୁ ବାହାରିଯିବ ନାହିଁ । ବର୍ଷ କେତେ ତଳେ ଜଣେ ଭାଇ ଜଙ୍ଗଲ ଆଢୁଆଳରେ ଥାଇ ଡକା ପକାଇଥିଲେ, ''ଆରେ ହୋ.! ଧାଇଁପଡ଼ ହୋ ! ଓଡ଼ିଆ ଜାତିର ରୋହି ଭାକୁଡ଼ ଜାଆଁଳଗୁଡ଼ିକ ମନ୍ଦା ମନ୍ଦା ହୋଇ ମହାନଦୀ ପାଣିରେ ଉଜାଣି ଉଠି ଯାଉଛନ୍ତି । ସେଗୁଡ଼ିକୁ ସାତ ଦୀପ ନେଇ ହୁଳହୁଳି ପକାଇ ବନ୍ଦାଇବାକୁ ହେବ ।'' ମୁଁ ସେତିକିବେଳେ ଭାଇଙ୍କ ପିଠି ଚାପୁଡ଼ାଇ ତାଙ୍କ ନିଦ ଭଙ୍ଗାଇଥିଲି ବୋଲି ମୋ ଉପରେ କେତେ ଲୋକଙ୍କର ବାଙ୍କଚାହାଣି ପଡ଼ିଥିଲା । ଯାହାହେଉ, ତୁଲିକି ଯାଉ ସେକଥା । ଧର ସେ ବଙ୍ଗାଳୀ ଜାତିଙ୍କ କଥା – ସେହି ଉନ୍ନତ ଜାତିର ଇତିହାସ ପର୍ଯ୍ୟାଲୋଚନା କର । ଦେଖିପାରିବ ଯେ ଶିକ୍ଷା ଓ ସଭ୍ୟତାର ଢେଉ ମାଡ଼ିବା ବେଳେ ଯେ ଯାହା ଖଞ୍ଜରେ ବ୍ୟକ୍ତିଗତ ଭାବରେ କାଠି, କୁଟା, ଗଛ, ଲଟା ଓ ଘର ଛପରର ଆଶ୍ରା ଧରି ସେହି ସୁଅରେ ପହଁରିଗଲେ । ସେତେବେଳେ ଜାତୀୟ ଭାବରେ ତାଙ୍କର କେହି ସାହା ନ ଥିଲା; ଆଗରେ କେହି ଆପଣାର ଲୋକ ବାଟ ଦେଖାଇବାକୁ ନାହିଁ କି ପଛରେ କେହି ସୋଲ ଟିପେଇ ଧରିବାକୁ ନାହିଁ । ଭାସିଭାସିକା ଯାଇ କିଏ ଆମେରିକାରେ, କିଏ ବିଲାତରେ, କିଏ ଜାପାନରେ, କିଏ ହିମାଳୟରେ, କିଏ ବିନ୍ଧ୍ୟାଚଳରେ ଲାଗିଲେ । ଜାତୀୟ ଭାବରେ ଓ ଜାତୀୟ ସଭାରେ ଡେଙ୍ଗୁରା ଦିଆଯାଇ କୌଣସି ଘୋଷଣା ନ ହେଉଣୁ ବ୍ୟକ୍ତିଗତ ଭାବରେ ବ୍ୟକ୍ତିଗତ ଉଚ୍ଚ ଆଦର୍ଶମାନଙ୍କୁ ଲକ୍ଷ୍ୟକରି ଯେଝା ଖଞ୍ଜରେ ଯେ ଦଉଡ଼ିଗଲେ । ଏହିପରି ଶତ ଶତ ଲୋକ ଭିନ୍ନ ଭିନ୍ନ କ୍ଷେତ୍ରରେ ନିଜ ନିଜ ମଶାଲଖଣ୍ଡମାନ ଧରି ଆପଣା ଗଣ୍ଠିରିଟିମାନ ଆପଣା ପିଠିରେ ବୋକଚା କରି ବାଟ ଚାଲିଲେ । କିଏ ଧର୍ମ କ୍ଷେତ୍ରରେ, କିଏ ସାହିତ୍ୟ କ୍ଷେତ୍ରରେ, କିଏ ବିଜ୍ଞାନ କ୍ଷେତ୍ରରେ, କିଏ ଶିଳ୍ପ ବାଣିଜ୍ୟ, କିଏ ବିଚାର (ଆଇନ) ଏହିପରି ନାନା ବିଭାଗ ଓ ନାନା କନ୍ଦିବିକନ୍ଦିରେ ଯେଝା ଖଞ୍ଜରେ ଯେ ଖେଳିଗଲେ । କାହା କଥା କେହି ଜାଣିବାକୁ ନାହିଁ । ଏହିପରି ଶତ ଶତ ଲୋକଙ୍କର ମୂଳଦୁଆ ଟିକିଟା ମାଟିରେ ଗଡ଼ା ହୋଇଗଲା । କ୍ରମଶଃ ପାଶ୍ଚାତ୍ୟ ସଭ୍ୟତାର ବିସ୍ତାର ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ସଭ୍ୟତାର ଅବଶ୍ୟମ୍ଭାବୀ ଫଳସ୍ୱରୂପ ଯେତେବେଳେ ଏକ କାନରେ ଜାତୀୟ ତନ୍ତ୍ରୀ ବାଜିଉଠିଲା, ସେତେବେଳେ ସେମାନେ ସବୁଆଡୁ ଆସି ଏକ ଜାଗାରେ ଠୁଳ ହୋଇଗଲେ । ତାଙ୍କର ଜାତୀୟ ବଳ ଠଉରାଇ ନେଲେ ଓ ସମସ୍ତେ ସମସ୍ତଙ୍କର ବଳକୁ କେନ୍ଦ୍ରୀଭୂତ କରି ଜାତି ସଂଗଠନ କାର୍ଯ୍ୟରେ ଲଗାଇ ଦେଇ ଗୋଟିଏ ଉଚ୍ଚ 'ବଙ୍ଗାଳୀ ଜାତି' ଆଣି ସଭ୍ୟଜଗତର ଚକଡ଼ାରେ ଠିଆ କରାଇ ଦେଲେ । ପିଲାଦିନୁ ମୁଁ ଟିକିଏ ମାନ୍ଦାବୁଦ୍ଧିଆ । ସେଥିପାଇଁ ବଙ୍ଗୀୟ ଜାତିର ଉପରୋକ୍ତ ଅବସ୍ଥାକୁ ମହାନଦୀ ବଢ଼ି ସାଙ୍ଗରେ ତୁଳନା କରି ମନ ଭିତରେ ଛବି ଆଙ୍କି ରଖିଅଛି । ଆଷାଢ଼ ଓ ଧାରା ଶ୍ରାବଣରେ ହେଲା ଭାରି ଲଗାଣବୃଷ୍ଟି

ଓ ଓଡ଼ିଶାର ଉପରମାଳରୁ ଅର୍ଥାତ୍ ଗଡ଼ଜାତର ପର୍ବତ ଗହ୍ୱରମାନଙ୍କରୁ ଜଳଧାରାମାନ ବାହାରି କ୍ରମେ କ୍ରମେ ଗିରିନଦୀରେ ପରିଣତ ହୋଇ ମହାନଦୀରେ ଯୋଗ ଦେଲେ । ମହାନଦୀ ଦୁଇକୂଳ ଲଘିଁଲା । କେତେ ଗ୍ରାମ, ପଲ୍ଲୀ, ବସତି ଓ ଶସ୍ୟଶ୍ୟାମଳ କ୍ଷେତ୍ର ବୁଡ଼ାଇ ହାବୁକା ମାରି ଗୋଳିଆ ପାଣିରେ ନଈଟାଯାକ ପୂରିଗଲା । କେତେ କେତେ ଜଙ୍ଗଲରୁ କାଠ, ଗଛଗଣ୍ଡି, ଲଟାସବୁ ଭାସି ଆସିଲା । ସେହି ପ୍ରଳୟରେ ମଧ୍ୟ କେତେ ମହାପ୍ରାଣୀ ନିରାଶ୍ରୟ ଅବସ୍ଥାରେ ଭାସିଆସିଲେ । କିଏ ଖଣ୍ଡେ କାଠର ଆଶ୍ରାନେଲା, କିଏ ଗଛ ମୂଳରେ ଆଶ୍ରାନେଲା, କିଏ ଛପର ଉପରେ ଆଶ୍ରାନେଲା, କିଏ ପହଁରିଲା, କେହି ବା ବୁଡ଼ିମଲା । ସରକାର ବାହାଦୁର ମହାନଦୀର ତୋଡ଼ ଭାଙ୍ଗିବା ସକାଶେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟକରି ଯୋବ୍ରାଠାରେ ଗୋଟାଏ ପ୍ରକାଣ୍ଡ ପଥରବନ୍ଧ ପକାଇ ଦେଇଅଛନ୍ତି । ସେହିଠାରେ ମହାନଦୀର ସ୍ରୋତ ପ୍ରତିଘାତ ପାଇଲାରୁ ସମସ୍ତେ ଆସି ସେଠାରେ ଲାଗିଲେ । ମୂର୍ଦ୍ଧାରଗୁଡ଼ାକ ସେହି ପଥରବନ୍ଧର ସନ୍ଧିରେ ପଡ଼ି ଘାଉଁରି ଖାଇ ଖାଇକା ତଳକୁ ଭାସି ଚାଲିଗଲେ । ଯାହାଙ୍କର ଶାରୀରିକ ବଳ ମହାନଦୀ ତୋଡ଼ର ଦାଉକୁ ସମ୍ଭାଳି ପଥରବନ୍ଧ ପର୍ଯ୍ୟନ୍ତ ସେମାନଙ୍କୁ ସଜୀବ ଅବସ୍ଥାରେ ଆଣିଥିଲା, ସେହିମାନେ ଏହି ପଥରବନ୍ଧର ଆଶ୍ରାପାଇ ସେହିଠାରେ ଆଉଜି ଗଲେ ଓ କ୍ରମେ କ୍ରମେ ଗୁରୁଣ୍ଡି ଗୁରୁଣ୍ଡି ବନ୍ଧ ଉପରକୁ ଉଠି ଝାଡ଼ିଝୁଡ଼ି ହେଲା ବେଳକୁ ଦେଖିଲେ ଯେ ତାଙ୍କରି ପରି କେତେଗୁଡ଼ିଏ ମହାପ୍ରାଣୀ ସେହିଠାରେ ନଈବଢ଼ିରେ ଭାସିଆସି ଦୈବଯୋଗକୁ ରୁଣ୍ଡ ହୋଇ ଅଛନ୍ତି । ସେହିଥିରୁ ସେମାନଙ୍କର ସମସ୍ତଙ୍କ ଦେହରେ ନୂତନ ବଳର ସଞ୍ଚାର ହେଲା, ସମସ୍ତେ ଚିହ୍ନାଚିହ୍ନି ହେଲେ । ସେଠାରୁ ସମସ୍ତେ ଏକମେଳ ହୋଇ ନିଜ ନିଜ କ୍ଷେତ୍ରକୁ ବାହୁଡ଼ିଗଲେ । ଏହିପରି ଗୋଟିଏ ଚିତ୍ର ଆଙ୍କିଦେଲେ ବଙ୍ଗୀୟ ଜାତିର ଉନ୍ନତିର ଉଦାହରଣଟି ମୋ ମନରେ ଲାଖିରହେ । ଅବଶ୍ୟ ମୁଁ କହୁ ନାହିଁ ଯେ ଆମ ଇଲାକାର କୋଟିକ ଯାକ ଜୀବ ମୋ ଭଳିଆ ଗଣ୍ଡବୁଦ୍ଧିଆ ଅଟନ୍ତି ବା ହୁଅନ୍ତୁ । କିନ୍ତୁ ମୁଁ ଏ ଉଦାହରଣଟି କେବଳ ମୋ ଶ୍ରେଣୀର ମୂର୍ଖଙ୍କ ପାଇଁ ଏଠାରେ ଲେଖିଲି । ପଣ୍ଡିତମାନେ ଅବଶ୍ୟ କ୍ଷମା କରିବେ । ସଭ୍ୟତମ ବ୍ରିଟିଶ ଜାତିକୁ ଦେଖ, ଜାପାନକୁ ଦେଖ, ଆମେରିକାକୁ ଦେଖ, ସମସ୍ତେ ପାହାଚ ପାହାଚ ହୋଇ ଧୀରେ ଧୀରେ ଗରୁଡ଼ ଖମ୍ଭ ନିକଟରେ ପହଞ୍ଚି ଅଛନ୍ତି । ଆମରି ଜାତିଟା କେବଳ ବେଲୁନ୍ ସାହାଯ୍ୟରେ ଶରଧାବାଲିରୁ ଉଡ଼ିଯାଇ ଶଙ୍ଖନାଭି ମଣ୍ଡଳରେ ଏକଦମ ପହଞ୍ଚି ଯିବାକୁ ହାଇଁପାଇଁ ହେଉଅଛି । ଆମ ଜାତିଟାର 'ଶିରୋନାସ୍ତି ଶିରୋବ୍ୟଥା' ହୋଇଅଛି । ଆମ ଜାତିର ମୁଣ୍ଡିଆଳମାନେ ବିଚ ବଜାର ଓ ଛକଜାଗାମାନ ଉଣ୍ଡି ସେଠାରେ ଠିଆହୋଇ ନାଗରା ଦେଉଅଛନ୍ତି – ''ଏତଦ୍ୱାରା ସର୍ବସାଧାରଣଙ୍କୁ ଜଣାଇ ଦିଆଯାଉଅଛି ଯେ ଅମୁକ ମାସ ଅମୁକ ତାରିଖ ଏତେ ଘଣ୍ଟା ସମୟରେ ଓଡ଼ିଆ ଜାତି ଉନ୍ନତି ମଞ୍ଚରେ ଆରୋହଣ କରିବ । ସମସ୍ତେ ସେଠାରେ ଚିରାଖ୍ ସହିତ ହାଜର ହେବ । ଏ କାମକୁ ତାଗିଦ୍ ଜାଣିବ ।'' ସେଦିନ ଉକ୍ତ କବି ଆକ୍ଷେପ କରି ଉତ୍କଳମାତା

ଆଗରେ କାନ୍ଦି ଉଠିଥିଲେ, ''କୋଟିଏ ସନ୍ତାନ ମାଗୋ ଧରିଅଛୁ କୋଳେ, ଗୋଟିଏ ମନୁଷ୍ୟ କିନ୍ତୁ ନ ଦେଖିଲି ତୋଳେ ।'' ଆମ ସାଇ ମାଇପେ ଗୋଟିଏ ଢଗ ମେଲନ୍ତି, ''ପଇସା ନ ଥାଇ ମୂଲଉଥାଏ, ଦେଖୁଥିଲେ ପେଟ ଫୁଲଉଥାଏ ।'' ଆମ ଅବସ୍ଥା ବର୍ତ୍ତମାନ ସେହିତା ହୋଇଅଛି । ବାପ ସାଆନ୍ତେ ଓରଫ ପାପା ସିନା ଆମ ପାଇଁ ଭାତରାନ୍ଧି ଥୋଇଦେବେ, ପାଞ୍ଚ ଭଜା, ସାତ ତିଅଣ, ଖିରି ଏଣ୍ଡୁରି ସବୁ ତିଆରି କରି ଥୋଇଦେବେ, ଅତି ଗେଲବସର ପିଲାଙ୍କ ପାଇଁ ଗୁଣ୍ଡାଟିମାନ ଝଲକ ଲଡ୍ଡୁ ଭଳିଆ ବଳିଦେଇ ପାଟିରେ ମଧ ଗୁଞ୍ଜିଦେବେ । କିନ୍ତୁ ତେବେ ସୁଦ୍ଧା ସେ ଗୁଣ୍ଡାଟିମାନ ଗିଳି ନ ଦେଲେ ପାପାଙ୍କ କଥା ଦୂରେ ଥାଉ, ପାପାଙ୍କ ବାପା ମଧ ଆମକୁ ଗିଳାଇ ପାରିବେ ନାହିଁ । ଆମର ଗିଳି ପାରିବାର ତାକତ ଅଛି କି ନାହିଁ ଏକଥା ନ ବୁଝି, ଫୋକଟରେ ଅନ୍ନବ୍ୟଞ୍ଜନର ବରାଦ ଦେଇ ବସିଲେ ଚଳିବ କାହୁଁ ? ଆଉ ମଧ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟରେ ପରିପୂର୍ଣ୍ଣ ଖାଦ୍ୟ ପାତ୍ରକଯାକ ଅନ୍ୟ ପ୍ରାଣୀମାନେ ଖାଇଗଲେ ବୋଲି ଅଭିମାନ କରିବା ନୀତି କେଉଁ ନିଶାପ ? ଏହାଙ୍କୁ ହିଁ କହନ୍ତି 'ଉଠି ନ ପାରି ମାରୋଙ୍ଗା ନୀତି ବା କୋଦିଣ୍ଡା ନିଶାପ ।'

ଯାହାହେଉ ଏସବୁ ବୃଥା ବିଦ୍ୱେଷ ଦ୍ୱାରା ଆମ୍ଭମାନଙ୍କ ଅଙ୍କୁରିତ ଜାତୀୟ ଜୀବନରେ ରାଧାଚଡ଼କ ପକାଇବା ଯେପରି ଏକଦେଶଦର୍ଶିତାର ପରିଚାୟକ, ସେହିପରି ଅପରିଣାମଦର୍ଶିତାର ନିଦର୍ଶନ, ଏଥିରେ ସନ୍ଦେହ ନାହିଁ ।

ଏହି ଘଣ୍ଟାଚକଟା ମଧରେ ଫେର ଆଉ ଗୋଟିଏ ଆନ୍ଦୋଳନର ସୂତ୍ରପାତ ହୋଇଅଛି । ତାହା ପୁଣି ଆମର 'ଖାଣ୍ଟି ଓଡ଼ିଆ' ଓ Domiciled ବା ଉତ୍କଳର ସ୍ଥାୟୀ ଅଧିବାସୀ ଓଡ଼ିଆଙ୍କ ମଧରେ । ଅତି ଆକ୍ଷେପର ସହିତ କହିବାକୁ ହେଉଅଛି ଯେ ଉଭୟ ସମ୍ପ୍ରଦାୟର କେତେଗୁଡ଼ିଏ ହାମବଡ଼ା ବ୍ୟକ୍ତି ଏ ଆନ୍ଦୋଳନରେ ଯୋଗଦେଇ ମେଣ୍ଢାପଲଙ୍କୁ ଅଡ଼ାଉଅଛନ୍ତି । ଏଥିଯୋଗୁଁ ଆମ ମଧରେ ଫେର୍ କନ୍ଦଳ ଉପସ୍ଥିତ । ଓଡ଼ିଶାର ରାଜା ମହାରାଜାଙ୍କଠାରୁ ଲଗାଏତ ବ୍ରାହ୍ମଣ, କରଣ ପର୍ଯ୍ୟନ୍ତ ଉଚ୍ଚ ଜାତିଯାକ Domiciled ଓରଫ୍ ଓଡ଼ିଆ । ତେବେ ଆମର ଏଠାକୁ ଆସିବା ପରେ ଯେଉଁମାନେ ଆସି ଉତ୍କଳରେ ସ୍ଥାୟୀ ଭାବରେ ବସତି କରୁଅଛନ୍ତି ଓ ଧୋଇ ମରୁଡ଼ି, କାନମୋଡ଼ା, ନାକମୋଡ଼ା ଇତ୍ୟାଦି ସବୁ ଦାଉଯାକ ସମ୍ଭାଳୁ ଅଛନ୍ତି, ସେମାନଙ୍କର କି ଅପରାଧ ହେଲା ? କଥାରେ କହନ୍ତି, ''କଳି ଯେବେ କରିବସିବ ସଙ୍ଗେ ଥିବ ଭାଇ ।'' ଭାଇ ଓ ଆତ୍ମୀୟଙ୍କ ସଂଖ୍ୟା ବୃଦ୍ଧି ହେଲେ ଜାତୀୟ ଭାବରେ ଜୀବନ ସଂଗ୍ରାମରେ କୃତକାର୍ଯ୍ୟତା ଲାଭ କରିବା ସୁଖସାଧ ହୁଏ । ଏପରି ସ୍ଥଳରେ Domiciled ମାନଙ୍କୁ ଆମମାନଙ୍କ ଜାତିରେ ଅନ୍ତର୍ଗତ କରିନେବା ଓ ବାହୁ ପ୍ରସାରଣ କରି ଭ୍ରାତୃଭାବରେ ସେମାନଙ୍କୁ ଆଲିଙ୍ଗନ କରିବା । ଆପାତତଃ ଶରୀରରେ ରାମ୍ପୁଡ଼ା ଚିହ୍ନ ରଖିଲେ ଜାତିଟାକୁ ଦିନେ ମାଛିଆପାତକ ପାଇଁ ପ୍ରାୟଶ୍ଚିତ୍ତ କରିବାକୁ ହେବ, ଏଥିରେ ସନ୍ଦେହ ନାହିଁ । ଓଡ଼ିଶାର ଉନ୍ନତିର ଇତିହାସରେ ସେମାନଙ୍କର

ଅବଶ୍ୟ କିସ୍‌ମତ୍ ଅଛି - ସେ କିସ୍‌ମତ୍ ଯେତେଦିନ ପର୍ଯ୍ୟନ୍ତ ତଉଜି ପୃଥକ (Separate account) ନ ହୁଏ, ତେତେକାଳ ଓଡ଼ିଶାର ମଙ୍ଗଳ ।

ଆଜିକାଲି ଭିକ୍ଷାଝୁଲି ଘେନି ବୁଲିବାର ଯୁଗ ନୁହେଁ; ଚିଆଁ ପହଡ଼ରେ ଗଡ଼େଇତଡ଼େଇ ହେବାର ବେଳ ନୁହେଁ 'ଆପେ ଖାଇବି ନାହିଁ କି କାହାକୁ ଖୁଆଇ ଦେବି ନାହିଁ' - ଏ ନୀତିର ସମୟ ନୁହେଁ; ମାଇପଙ୍କ ଭଳି ଅଭିମାନ କରି କବାଟ କିଳି ମୁହଁମାଡ଼ି ଶୋଇବାର ସମୟ ନୁହେଁ । ଆଜିକାଲି ସମସ୍ତ ସଭ୍ୟଜଗଦ୍ ନବ ବଳରେ ବଳୀୟାନ୍ । ସାର୍ବଜନୀନ ଭାବ ଆଜିକାଲି ଯୁଗର ଓ ଦୀକ୍ଷାର ବିଶେଷତ୍ୱ । ଶିକ୍ଷା ଓ ସଭ୍ୟତାର ସମସ୍ତ ସରଞ୍ଜାମ ଆମ୍ଭମାନଙ୍କ ଆଗରେ ଥୁଆ । ଏହାର ସଦ୍‌ବ୍ୟବହାର ନ କରି ଶିକ୍ଷା ଓ ସଭ୍ୟତାର ଆହ୍ୱାନକୁ କର୍ଣ୍ଣ ନ ଡେରି ଓଡ଼ିଶାର କବାଟକଣ ଓ ମାଇପଙ୍କ କାନିପଣନ୍ତରେ ପଶିଥିଲେ ପଶିଥାଅ, ସେଥିପାଇଁ ସଭ୍ୟଜଗଦ୍‌ର ଗତି ଅଟକିବ ନାହିଁ । 'ଶୋଇଲା ପୁଅର ଭାଗ ନାହିଁ' ଢଗଟା ଓଡ଼ିଆ ଭାଷାର ସମ୍ପତ୍ତି । ଜୀବନ ସଂଗ୍ରାମର ଅନ୍ୟାନ୍ୟ ଉନ୍ନତ ଜାତିମାନଙ୍କୁ ଆପଣାର ଯୋଗ୍ୟତା ଦେଖାଇବାକୁ ହେବ । ଆପଣା ନ୍ୟାଯ୍ୟ ଅଧିକାର ଦାବି କରିବାକୁ ହେବ । ତାହାହେଲେ ଅପରାପର ଜାତିମାନେ ଅବଶ୍ୟ ଆମ୍ଭମାନଙ୍କୁ ସ୍ନେହ ଚକ୍ଷୁରେ ଦେଖିବେ ଓ ଆମ୍ଭମାନଙ୍କ ସଙ୍ଗେ ସମାନସ୍କନ୍ଧ ହୋଇ ଚାଲିବେ । ତାହା ନ କରି ହେଁସ ଘୋଡ଼ିହୋଇ ତାଟି ଧଡ଼ାଟିମାନ ଲଗାଇ ଦେଇ ''ଆରେ ଖାଇଗଲେ ହୋ, ଆରେ ବୋହିନେଲେ ହୋ, ଆରେ ଧାଇଁପଡ଼ ହୋ ବୋଲି କୁହାଟୁଥିଲେ, ଆମେ ଜଳକା ହୋଇ ବସିଥିବା ଓ ଆମ ଧାନ କିଆରିଯାକ ବାୟା ଟୋକିଯିବେ ଏବଂ ଆମ ଜାତି ପାଇଁ ବଙ୍ଗ ବିଭାଗର ବିସ୍ତୃତ ଗୋଚାରଣ ଭୂମିଖଣ୍ଡମାନ, ତେଲିଙ୍ଗ ବାଉଁଶ, ବାଗାନ୍, ପଙ୍ଖା ଦଉଡ଼ି, ହୁଦା ପଗଡ଼ି ଓ କଲିକତାର ନର୍ଦ୍ଦମା ଏଗୁଡ଼ାକ ଯୁଗଯୁଗାନ୍ତରକୁ କିଣା ଖରିଦାସ୍ୱରୂପ ବିରାଜୁଥିବ । ଆଉ ଓଡ଼ିଆ ଜାତିଟା ଶୃଙ୍ଖଳା ମହାପ୍ରସାଦ ସେବାକରି ବାଇଶି ପାହାଚରେ ଚିରକାଳ ଗଡ଼ଗଡ଼ାଉଥିବ । ଆଜି ଏତିକି ।

ଉତ୍କଳ ସାହିତ୍ୟ/୧୩ଶ ଭାଗ/୨ୟ ସଂଖ୍ୟା/୧୩୧୬ ସାଲ ।

## ।। ଛବିଶ ।।

ଦିନେ ସକାଳୁ ଉଠି ଆମ ଗାଁ ଦାଣ୍ଡପିଣ୍ଡାରେ ବସିଛି, ଏହି ସମୟରେ ମୋ ଜେଡ଼ୁତା ପୁଅ ଭାଇ ଭିକାରିଭାଇନା ଗ୍ରାମମୁଣ୍ଡ ପୋଖରୀ ହୁଡ଼ାରେ ମଳମୂତ୍ର ତ୍ୟାଗକରି ସେହି ପୋଖରୀରେ ଗାଧୋଇ ପାଧୋଇ ସାରି ଡାଳଟିଏ ଧରି ଗାଁ ଦାଣ୍ଡବାଟେ ଗୁଣୁଗୁଣୁ ହୋଇ ଗାଉଅଛନ୍ତି -

''ଶିବ ଦ୍ୱାଦଶ ନାମାନି ତ୍ରିସନ୍ଧ୍ୟଂ ଯଃ ପଠେନରଃ, ଗୋଘ୍ନଶ୍ଚ କୃତଘ୍ନଶ୍ଚୈବ ବ୍ରହ୍ମହା ଗୁରୁତଳ୍ପଗଃ, ସ୍ତ୍ରୀ ବାଳ ଘାତକ ଶ୍ଚୈବ ସୁରାପୋ ବୃଷଳୀ ପତିଃ, ମୁଚ୍ୟତେ ସର୍ବପାପେଭ୍ୟଃ

ଶିବଲୋକଂ ସ ଗଚ୍ଛତି ।'' ପୂର୍ବେ ପିଲାଦିନେ ମୁଁ ମଧ୍ୟ ଶିବ ଦ୍ୱାଦଶ ନାମ ଓ ବଗଳାମୁଖୀ ଓ ସିଦ୍ଧବିନାୟକ ସ୍ତୋତ୍ର ମୁଖସ୍ଥ କରିଥିଲି ଓ ନିତି ସ୍ନାନ କରିସାରି ଏଗୁଡ଼ିକ ଆଉଡ଼ାଉଥିଲି । ଏସବୁ ଦ୍ୱାରା ମୋର କେତେଦୂର ପାରିତ୍ରିକ ଲାଭ ହୋଇଅଛି, ତାହା କଳନା କରିବାକୁ ସରଜମିନ ତଦାରଖ ଆବଶ୍ୟକ ହେବ; କିନ୍ତୁ ମୋର ଏହି ଐହିକ ମଙ୍ଗଳ ହୋଇଅଛି ଯେ ଗୁଡ଼ିଏ ସଂସ୍କୃତ ସ୍ତୋତ୍ର ମୁଖସ୍ଥ କରିଥିବା ଯୋଗୁଁ ସଂସ୍କୃତ ଶ୍ଳୋକ ରଚନା କରିବା ମୋ ପ୍ରତି ଟିକିଏ ସହଜସାଧ୍ୟ ହୋଇଥିଲା । ଛାଡ଼ ସେ କଥା, ମୁଁ ପିଲାଦିନେ ଅନେକ ଥର ଏହି ଶିବ ଦ୍ୱାଦଶ ନାମ ବୋଲିଥିଲି, କିନ୍ତୁ ଆଜି ଭିକାରିଭାଇନାଙ୍କ ମୁହଁରୁ ଏ ସ୍ତୋତ୍ରଟି ଶୁଣି ମନରେ ଆଧୁନିକ ହିନ୍ଦୁଜାତିର ଆଧ୍ୟାତ୍ମିକ ମୂଳଦୁଆଟା ଶୋଧିଦେଲି - ବର୍ତ୍ତମାନ ହିନ୍ଦୁମାନଙ୍କର ଆଧ୍ୟାତ୍ମିକ ଅବନତିକୁ ଟିକିଏ ତନ୍ନ ତନ୍ନ କରି ଦେଖିଲେ ଜଣାଯିବ ଯେ ଆମ୍ଭମାନଙ୍କ ପାଇଁ ସ୍ୱର୍ଗକୁ ଯିବାର ପକ୍କା ସଡ଼କମାନେ ଏହିପରି ନାନା ସ୍ତୋତ୍ର ଦ୍ୱାରା ତିଆରି ହୋଇଅଛି । ଯେତେ ପାପ କର, ଯେତେ ଅକାର୍ଯ୍ୟ କର, ଥରେ ବଡ଼ି ସକାଳୁ ଉଠି 'ସ୍ନାନ ପ୍ରକାର' ଓ 'ଚିତା ପଇତା' କରି 'ଶିବ ଦ୍ୱାଦଶ ନାମ', 'ସୂର୍ଯ୍ୟସ୍ତବରାଜ' ବୋଲି ଦିଅ - ସବୁ ପାପ ଜୁଆରିଆ ପାଣିରେ ପୋଛିପାଛି ହୋଇ ଧୋଇଧାଇ ହୋଇଯିବ । ଧର୍ମର ଏପରି ପକ୍କା ସଡ଼କ ଥାଉଁ ଥାଉଁ ଏ ବାଟ ଛାଡ଼ି ଦୁର୍ଗମ କଣ୍ଟକ ବଣରେ ପଶି ଇନ୍ଦ୍ରିୟ ସଂଯମ ପ୍ରଭୃତି କରିବା ବେକୁବି ନୁହେଁ ତ ଆଉ କଣ ? ଯାହା ନିକଟରେ ଅଜୀର୍ଣ୍ଣର ମହୌଷଧି ମହଜୁଦ୍ ଅଛି, ସେ ଆକଣ୍ଠ ଭୋଜନ କରିବାକୁ ଡରିବ କିଆଁ ? ପାଟି ଲଡ଼ବଡ଼ିଆ ପ୍ରବୃତ୍ତିକୁ ଚରିତାର୍ଥ ନ କରିବ କିଆଁ ? ଆମ୍ଭମାନଙ୍କ ଧର୍ମର ଏ ଗୋଟିଏ ମହୌଷଧି । ଆମ ଔଷଧ ବଟିକା ଝାଡ଼ିଲେ ଏହିପରି କେତେଗୁଡ଼ିଏ ମହୌଷଧି ହାବୁଡ଼ରେ ପଡ଼ିବ । ଅନ୍ୟ ଗୋଟିଏ ମହୌଷଧି 'ପ୍ରାୟଶ୍ଚିତ୍ତ' । ଯାହା ଇଚ୍ଛା ତାହା କର, 'ପଞ୍ଚଗବ୍ୟ' କରି ବ୍ରାହ୍ମଣ ଭୋଜନ କରାଇଦେଲେ ସବୁ ପାତକ ରାଜ୍ୟଛାଡ଼ି ପଳାଇ ଯିବ । ପଞ୍ଚଗବ୍ୟ ପିଇଦେଲେ ଦେହର ମଇଳାଯାକ ଏକା ପାନକେ ପରିଷ୍କାର ହୋଇଯିବ ଓ ମଇଳା ମନଟା ମଧ୍ୟ ଦର୍ପଣ ଭଳିଆ ତୋଫା ହୋଇଯିବ । ପ୍ରତିଦିନ ଇଷ୍ଟ ମନ୍ତ୍ରରୁ ଅଚାଏ ଲେଖାଏଁ ଜପିଦେବା ଆମ୍ଭମାନଙ୍କର ଆହୁରି ଗୋଟିଏ ମହୌଷଧି । ଏହିପରି ଗୁଡ଼ିଏ 'ଡାବ' ଆମ୍ଭମାନଙ୍କ ପାଇଁ ଶାସ୍ତ୍ରକାରମାନେ ସାଇତି ଯାଇଅଛନ୍ତି । ଏହିସବୁ ଡାବ ଆମ ହିନ୍ଦୁସମାଜରେ ଭାରି 'କାଟୁ' କରୁଅଛି ବୋଲି ଆଜିକାଲିକାର ହିନ୍ଦୁମାନେ ଆଧ୍ୟାତ୍ମିକ ଉନ୍ନତିର ଛାପାମାରି ସଂସାରକୁ ଦେଖାଇ ବାହାବା ନେଉଅଛନ୍ତି । ଭାରତର ଭୂତପୂର୍ବ ବଡ଼ଲାଟ ଲର୍ଡ୍ କର୍ଜନସାହେବ କଲିକତାରେ ଆମ୍ଭମାନଙ୍କ ଉପରେ ଯେଉଁଦିନ ତର୍ଜନ କରି ପଦେ ମର୍ମକଥା କହିଦେଇଥିଲେ, ସେ ସମୟରେ ହିମାଳୟଠାରୁ ସେତୁବନ୍ଧ ରାମେଶ୍ୱର ପର୍ଯ୍ୟନ୍ତ ଗର୍ଜନ ଢେଉ ଉଠିଥିଲା । ମୁଁ ସେହି ସମୟରେ ମୁରୁକି ହସି ହସି ବିଚାରୁଥିଲି, ''ସତ୍ କହୋ, ମରମ୍ ନେହିଁ କହୋ ।'' ଲାଟସାହେବ ଶିରଃ ଦେଖି ଚଟୁଟାଏ ମାରି ଦେଇଥିଲେ ବୋଲି ସମସ୍ତଙ୍କୁ ସେ ନିଆଁଟା କାଟିଲା । ସେ

ଯାହାହେଉ ଆମ ପାଠରେ ଅଛି, ''ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍ ମା ବ୍ରୂୟାତ୍ ସତ୍ୟଂ ପ୍ରିୟଂ, ପ୍ରିୟଂଚ ନାନୃତଂ ବ୍ରୂୟାତ୍ ଏଷ ଧର୍ମଃ ସନାତନଃ ।'' ଏହି ସମସ୍ୟାଟିକୁ ସାଧିବାକୁ ଯାଇ ଅନେକ ଖେଳୁଆଡ଼ଙ୍କର ଯେ ଗୋଡ଼ ଖସିଯିବ, ଏହା ବିଚିତ୍ର ନୁହେଁ ।

ହିନ୍ଦୁଧର୍ମକୁ ନିନ୍ଦା କରିବା ଉଦ୍ଦେଶ୍ୟରେ ମୁଁ ଏ ବିଷୟରେ ଅବତାରଣା କରି ନାହିଁ । ଆମ୍ଭେମାନେ ଯେଉଁ ସମାଜରେ ଜନ୍ମଗ୍ରହଣ କରି ଆବାଲ୍ୟ ବଢ଼ିଅଛୁଁ, ସେ ସମାଜ ମଧ୍ୟରେ କେତେଗୁଡ଼ିଏ କୀଟ ପ୍ରବେଶ କରି ଆମ୍ଭମାନଙ୍କୁ ହୀନବଳ କରି ପକାଉଅଛି ଓ ଜାତି ଗଠନ ବିଷୟରେ ଆମ୍ଭମାନଙ୍କୁ ଅଗ୍ରସର କରାଇ ଦେଉ ନାହିଁ । ଆମ୍ଭମାନଙ୍କ ଅଧୋଗତି ବିଷୟ ଉପଲବ୍ଧି କରିବାର ସମୟ ଉପସ୍ଥିତ ହୋଇଅଛି । ଆମ୍ଭମାନଙ୍କ ଆଳସ୍ୟଜର୍ଜରିତ ଜୀବନ ଘେନି ଗୋଟିଏ ଉନ୍ନତ ସଭ୍ୟ ଜାତି ଗଠିତ ହେବାର ଆଶା ବିଡ଼ମ୍ବନା । ପ୍ରତ୍ୟେକ ଉନ୍ନତ ଜାତିର ଆଦର୍ଶମାନ ମଧ୍ୟ ଉନ୍ନତ । ଆମ୍ଭମାନଙ୍କ ଆଦର୍ଶଗୁଡ଼ିକ ଅତି କ୍ଷୁଦ୍ର ସୀମାରେ ଆବଦ୍ଧ ରହିଅଛି । ନୈତିକ, ଆଧ୍ୟାତ୍ମିକ, ସାମାଜିକ ସମସ୍ତ ବିଭାଗର ଅନ୍ତରାୟଗୁଡ଼ିକ ତନ୍ନ ତନ୍ନ ପରୀକ୍ଷାକରି ସେଗୁଡ଼ିକ ସମାଜରୁ ନିର୍ବାସିତ କରିବାକୁ ହେବ ।

ଉଦାହରଣସ୍ୱରୂପ ଦେଖନ୍ତୁ - ଆମ୍ଭମାନଙ୍କ ଶିକ୍ଷିତ ସମାଜରେ ଦେଖିବାକୁ ଗଲେ 'ସତ୍ୟନିଷ୍ଠା' ଅର୍ଥାତ୍ ସତ୍ୟ ପ୍ରତି ଅଟଳ ଓ ଅଚଳ ଭକ୍ତି କେତେଜଣଙ୍କର ଅଛି ? ''ସତ୍ୟ କହିଲେ ଫାଶୀ ପାଇବାକୁ ହେବ, ମିଛ କହିଲେ ବଞ୍ଚିଯିବ,'' ଏହିପରି ଗୋଟିଏ ପଣ ଆମ୍ଭମାନଙ୍କ ଆଗରେ ରଖିଦେଲେ ଆମ ମଧ୍ୟରୁ କେତେଜଣ ଜୀବନର ମାୟା ଲଙ୍ଘି ସତ୍ୟନିଷ୍ଠା ଦେଖାଇ ପାରିବେ ? ଏଥିର କାରଣ କେହି କେହି ପାଶ୍ଚାତ୍ୟ ସଭ୍ୟତା ଓ ଶିକ୍ଷାର ଦୋଷ ବୋଲି ନିର୍ଦ୍ଦେଶ କରିଥାଆନ୍ତି । କିନ୍ତୁ ମୁଁ କହେଁ, ଏଥିର କାରଣ ଆମ୍ଭମାନଙ୍କ ଦେଶର 'ଅବହାଓଆ' । ଆମ ଦେଶର ପାଠ ଡାକୁଛି, ''ଗୋରୁ, ବ୍ରାହ୍ମଣ, ବନ୍ଧୁ ଓ ନିଜର ପ୍ରାଣରକ୍ଷା କରିବା ପାଇଁ ମିଛ କହିଲେ ପାପ ନାହିଁ ।'' ଆମରି ପାଠରେ ଦେଖାଯାଏ ଯେ ଶ୍ରୀକୃଷ୍ଣ ଭଗବାନ୍ ପୃଥିବୀରେ ଅବତାରସ୍ୱରୂପ ଅବତୀର୍ଣ୍ଣ ହୋଇ ଷୋଳସହସ୍ର ଗୋପାଙ୍ଗନାମାନଙ୍କୁ ଘରୁ ବାହାର କରି ନେଇ କେଳି ବିପିନରେ ନିତ୍ୟ ରାସ ଲୀଳା ଲଗାଇଥିଲେ ଓ ସେହି ଆଦର୍ଶ ଧରି ବର୍ତ୍ତମାନ ମଧ୍ୟ ସେହି ରାସ-ରସିକଙ୍କ ଆଦର୍ଶକୁ ଅନୁସରଣ କରି ମାଳି, ଚିତା, ପଇତା ଧରି ଲୋକେ ଆଧ୍ୟାତ୍ମିକତା ଓ ପାଶବିକତା ମଧ୍ୟରେ ପଥରର ପୋଲ ତିଆରି କରିବାରେ ଦିନରାତି ବ୍ୟସ୍ତ । ଆମରି ଦେଶରେ ଅଛି - ମଦ୍ୟପାନ କରିବା ନିଷେଧ, କିନ୍ତୁ ସେହି ପାଠ ଫେର ଡାକୁଛି, ମଦ ଟୋପାକୁ ପଞ୍ଚଗବ୍ୟ ଟୋପାଏ ଓ ଦକ୍ଷିଣା ସୁଉକାଏ ହେଲେ ଦେହରୁ ମଦଗନ୍ଧ ଛାଡ଼ିଯିବ । ତା ପରେ ଆମ୍ଭମାନଙ୍କ ଶାସ୍ତ୍ରରେ ସବୁ ପ୍ରକାର ନଜିର ଅଛି । କଳା ବଳଦକୁ ଧଳା କହିବାର ମଧ୍ୟ ନଜିର ଅଛି । ଏଥିପାଇଁ କହୁଥିଲି ଯେଉଁ ହାଓଆ ଗୁଣରୁ ଏସବୁ ହୋଇଅଛି, ସେହି ହାଓଆ ଯେ ଆଧୁନିକ ଶିକ୍ଷିତଙ୍କ ଦେହରେ ଲାଗିବ, ଏଥିରେ ଆଉ ଆଶ୍ଚର୍ଯ୍ୟର କଥା କଣ ଅଛି ?

ଉତ୍କଳ ସାହିତ୍ୟ/୧୩ଶ ଭାଗ/୫ମ ସଂଖ୍ୟା/୧୩୧୭ ସାଲ ।

## ।। ସତେଇଶ ।।

ଓକାଲତି ପେସା କେତେ ଦୂର ସ୍ୱାଧୀନ ବ୍ୟବସାୟ ତାହା ଦୁନିଆର ହାଲଚାଲର ପାଠକମାନେ ଥୋଡ଼ା ବହୁତ ୱାକବ୍ ଅଛନ୍ତି । ସେ ବ୍ୟବସାୟର ସ୍ୱାଧୀନତାରେ ପଶି ୭ ବର୍ଷ ବିତିଗଲା, ସ୍ୱାଧୀନତାର ମଉଜ ମଧ ଭୋଗ କରିବାକୁ ପଡ଼ିଲା । ଶେଷକୁ ସେ ସ୍ୱାଧୀନତା ଭଲ ନ ଲାଗିବାରୁ ଫେର ଗୋଡ଼ରେ ବେଡ଼ି ପିନ୍ଧିବାକୁ ମନ ହେବାରୁ ଜଣେ ବନ୍ଧୁଙ୍କ ନିକଟରେ ପହଞ୍ଚିଲି । ତାଙ୍କୁ ସମସ୍ତ ହାଲଚାଲ କହିବାରୁ ସେ କହିଲେ, ''କିହୋ ! ଫେର ଏଦିନେ ହରିମନ୍ଦିର ଚିତା କାହିଁକି ? ତୁମେ ଯେଉଁ ଭେକ ନେଇଅଛ, ସେ ଭେକରେ ଭାରି ମର୍ଯ୍ୟାଦା, ଭାରି ସମ୍ମାନ, ଭାରି ସ୍ୱାଧୀନତା, ଏପରି ସ୍ଥଳରେ ଏ ସ୍ୱାଧୀନ ପେସା ଛାଡ଼ି ଫେର ଚାକିରିରେ ମନ ବଳାଉଛ କିଆଁ ?'' ଏହା ଶୁଣି ପେସାକୁ ଗୋଟିଏ ମନବୋଧିଆ ଧନ୍ୟବାଦ ଦେଲି । ବିଚାରିଲି, ଆମ୍ଭେମାନେ ଯେତେଗୁଡ଼ିଏ ଧଳା ବଳଦକୁ କଳା କରୁଁ, ଅଖାଡୁଆ ଓ ଆଣ୍ଡୁଆ ହାକିମମାନଙ୍କ ନିକଟରେ ପରଦା ପଛଆଡ଼େ ଖା'ସ କାମରାରେ ଆମ୍ଭମାନଙ୍କୁ ଯେତେ କବାଟ କିଳା ଅପମାନ ଓ ଲାଞ୍ଛନା ସହିବାକୁ ପଡ଼େ, ବାଘ ଅଧାର ନ ଯୁଟିଲେ ଯେତେଦିନ ଆମ୍ଭମାନଙ୍କୁ ପେଟରେ ଓଦାକନା ପକାଇ ଶୋଇବାକୁ ହୁଏ, ଦିନରାତି ଅର୍ଥ ପଞ୍ଚାକ୍ଷର ମନ୍ତ୍ର ଜପକରି ଆମ୍ଭେମାନେ ଯେପରି ସଂସାରର ସମସ୍ତ ଉଚ୍ଚ ଚିନ୍ତା ଭୁଲିଯାଉଁ, ସେସବୁ କଥା ବାହାରର ଲୋକଙ୍କ କାନକୁ ଆସେ ନାହିଁ । ଆସୁଥିଲେ ଆମ୍ଭମାନଙ୍କୁ ବହିର୍ଜଗତ୍ ଏଡ଼େବଡ଼ ପାଲଗଦା ଉପରେ ବସାଇ ହୁଲହୁଲି ପକାଉ ନ ଥାନ୍ତେ ।

ଯାହାହେଉ ସେ ପାଲଗଦା ଉପରୁ ଓହ୍ଲାଇ ଚାକିରି କରିବାକୁ ମନ ହେଲାରୁ ନାନାଆଡ଼େ ଦିନାକେତେ ବୁଲିଲି । କୁକୁର ଦାଉଡ଼ି ମାତ୍ର ସାରହେଲା - ଅଗନାଗ୍ନି ବନସ୍ତଠାରୁ ଆରମ୍ଭ କରି ରମ୍ୟ ରାଜପ୍ରାସାଦର ତୂଳୀତଳ୍ପ ପର୍ଯ୍ୟନ୍ତ ଉଣ୍ଡିଲି, କିନ୍ତୁ ଦେଖିଲି ଯେ ସବୁଠାରେ ସେହି ବାରଭୂତ କାରଖାନା - ସେହି ଟାଟିକିଳା ମାଡ଼, ସ୍ୱାଧୀନତା କେଉଁଠାରେ ନାହିଁ । ଏ ସ୍ୱାଧୀନ ପେସାରେ ଯେପରି ପରାଧୀନତା, ଦୁନିଆରେ ସବୁଠାରେ ସେହି ପରାଧୀନତା । ବୁଲି ବୁଲି ଥକିଗଲାରୁ ମନେ ମନେ ଗୋଟାଏ ସାନ୍ତ୍ୱନା ହେଲା ଯେ ଅନେକ କଥା ଅନୁଭବ କଲି । ଏ ଅନୁଭବଗୁଡ଼ିକ ବୋକଚାରେ ବାନ୍ଧି ସଜାଡ଼ି ରଖିଲି । ଦରକାର ବେଳେ ଏଗୁଡ଼ିକ ବାହାର କରି ଦାଣ୍ଡରେ ବିକି ପଣେ ରୋଜଗାର କରିନେବି ବୋଲି ମନରେ ଆଣ୍ଡ ବାନ୍ଧିଲି । ଏହିପରି ବୁଲୁ ବୁଲୁ ଦୁର୍ଯୋଗକ୍ରମେ ବାଇ ମାହାନ୍ତିଙ୍କ ସଙ୍ଗେ ଭେଟ ହେଲା - ସେ କାଖତଳେ ସେହି ପାଞ୍ଜିବିଡ଼ାକ ଜାକି ଜଙ୍ଗଲ ମଧରେ କୁଡ଼ିଆ ମାରି ପଡ଼ିଅଛନ୍ତି । ପୁରୁଣାକାଳିଆ ବନ୍ଧୁଙ୍କ ସଙ୍ଗେ ଦେଖାହେଲେ ଆନନ୍ଦସାଗର ଉଛୁଳି ଉଠିବା ସ୍ୱାଭାବିକ ଓ ଏଠାରେ ମଧ ତାହା ହେଲା । ବାଇ ମାହାନ୍ତି ଚୁଆ ଚର୍ଚ୍ଚିତ ବଟୁଆରୁ ମୁଖବାସ*ର ଉପକରଣଗୁଡ଼ିକ ବାହାର କରି ସର୍ବପ୍ରଥମେ ମତେ·

* ଭଙ୍ଗାପାନ

ଅଭ୍ୟର୍ଥନା କଲେ । ତତ୍‌ପରେ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟର ବ୍ୟବସ୍ଥା ହେଲାରୁ ଦୁହେଁଯାକ 'ଦୁଃଖ ସୁଖ' ହେବାରେ ପ୍ରବୃତ୍ତ ହେଲୁଁ । ବାଇ ମାହାନ୍ତି କହିଲେ, ସେ ମୋଗଲବନ୍ଦିରୁ ଆସିବା ଦିନଠାରୁ ଗଡ଼ଜାତର ରାଜାମାନଙ୍କ ବାହୁଚ୍ଛାୟାରେ ପଡ଼ିଅଛନ୍ତି ଓ ଯେତେବେଳେ ଯାହା ହେଉଛନ୍ତି, ସେଗୁଡ଼ିକ ପାଞ୍ଜିରେ ଟିପି ରଖିଅଛନ୍ତି ଓ କଟକ ଫେରି ବାଇ ମାହାନ୍ତି ପାଞ୍ଜିର ଦ୍ୱିତୀୟ ବିଡ଼ାଟି ସାଧାରଣଙ୍କ ଆଗରେ ରଖିଦେବେ ବୋଲି ମନସ୍ଥ କରିଅଛନ୍ତି । ମୁଁ ମନେ ମନେ ବୁଝିନେଲି ଯେ ବାଇ ମାହାନ୍ତି ଗଡ଼ଜାତ ଅଞ୍ଚଳରୁ ସଂଗୃହୀତ ଚେରମୂଳିମୂଳିକାଗୁଡ଼ିକ ନେଇ ମୋଗଲବନ୍ଦିରେ ବିକି ପେଟପୋଷି ଭବିଷ୍ୟଦ୍ ଜୀବନଟା କଟାଇବେ ବୋଲି ଆଣ୍ଟ ବାନ୍ଧିଅଛନ୍ତି - ଏପରି ସ୍ଥଳରେ ତାଙ୍କ ଦାନାରେ ଧୂଳି ପକାଇବା ଅଭଦ୍ରୋଚିତ ହେବ ବୋଲି ମୋ ଆଶାରେ ଜଳାଞ୍ଜଳି ଦେଲି । ଯାହାହେଉ କେତେଗୁଡ଼ିଏ ଗଡ଼ଜାତ ରାଜା ମହାରାଜାଙ୍କ ସଙ୍ଗେ ମୋର ଇତିମଧ୍ୟରେ ଘନିଷ୍ଠତା ହେଲା । ମନେ ମନେ ଈଶ୍ୱରଙ୍କୁ ଡାକଟାଏ ମାଇଲି । କହିଲି, ଉତ୍ତାପ ସଂଯୋଗରେ ଘନ ପଦାର୍ଥ ତରଳ ହୁଏ, ଆହୁରି ଉତ୍ତାପ ପାଇଲେ ତରଳ ପଦାର୍ଥ ବାୟବୀୟ ଆକାର ବା ନିରାକାର ଅବସ୍ଥା ଧାରଣ କରି ଶୂନ୍ୟରେ ମିଶିଯାଏ । ଗଡ଼ଜାତର ସ୍ୱାଭାବିକ ଉତ୍ତାପ ଯୋଗୁଁ ଏ ଘନିଷ୍ଠତା କେବେ ବାୟବୀୟ ଆକାର ଧାରଣ କରିବ, ତାହା ଭଗବାନ୍‌ଙ୍କୁ ଜଣା । ଏହା ଭାବି ଦୀର୍ଘ ନିଃଶ୍ୱାସଟାଏ ପକାଇ ଫେର ସେହି ସ୍ୱାଧୀନ ବ୍ୟବସାୟର ଅମୃତମୟ କ୍ରୋଡ଼କୁ ଫେରିଲି ।

ଫେରି ଆସି କଳ୍ପନା ଚକ୍ଷୁରେ ଏ ସ୍ୱାଧୀନ ବ୍ୟବସାୟରେ ଭବିଷ୍ୟଦ୍ ଆଶାର ଦୌଡ଼ କେତେଦୂର, ତାହା ଦେଖିନେଲି - ଦେଖିଲି ଯେ ବଡ଼ଲାଟ ଛୋଟଲାଟଙ୍କ ସଭାର ଦେହୁଡ଼ି ଆମ୍ଭମାନଙ୍କ ପାଇଁ ଅବାରିତ ଭାବରେ ଖୋଲା ରହିଅଛି । ଭାବିଲି, ଥରେ ଏ ମଉଜଟା ଭୋଗ କରିନିଏଁ । ଏହି ସମୟରେ ଓଡ଼ିଶାରେ ବଙ୍ଗ ବ୍ୟବସ୍ଥାପକସଭାର ସଦସ୍ୟ ନିର୍ବାଚନର ଧୂମ୍ ଲାଗିଅଛି । ବିଚାରିଲି, ଏହି ସମୟରେ ମୋ ଭାଗ୍ୟଟାକୁ ମଧ୍ୟ ପଜାଇ ନିଏଁ । କିନ୍ତୁ ''ଓଡ଼ିଶାଟା (ଓରଫ୍ ଉତ୍କଳ) ଯାକ ବୁଲି ଅଇଲି, କେହି ନ କହିଲା ବସ ବୋଲି ।'' ମୋ ନାମଟା ପ୍ରାର୍ଥୀମାନଙ୍କ ମଧ୍ୟରେ କେହି ପ୍ରସ୍ତାବ ବା ଅନୁମୋଦନ କଲେ ନାହିଁ । ନିର୍ବାଚନର ଶେଷଦିନ ଟପିଗଲାରୁ ନିଶ୍ଚିତ ରୂପେ ଜାଣିଲି ଯେ, ମୋ ନାମଟା ପ୍ରାର୍ଥୀ ତାଲିକା ମଧ୍ୟରେ ନାହିଁ । ଯାହାହେଉ ଏ ଯାତ୍ରାଟା ଦିଲ୍ଲୀକା ଲଡ୍ଡୁ ପରି ହାତରୁ ଖସିଯିବାର ଦେଖି ମନଟାକୁ ଯେନ ତେନ ପ୍ରକାରେଣ ବୋଧଶୋଧ କରି ଦେଖଣାହାରିଙ୍କ ଆସନରେ ଖଣ୍ଡିଏ ଥାର୍ଡ଼ କ୍ଲାସ ଟିକେଟ କିଣି ବସିଗଲି । ଖେଳୁଆଡ଼ମାନଙ୍କ କସ୍‌ରତ, କୁହୁକ, ମାଙ୍କଡ଼ଚିଡ଼ି ଭିଡ଼ିରି ପେଞ୍ଚ, ଦେଖିବାକୁ ଗାଲେରି ଉପରେ ଥାଇ ଯେତେ ସୁବିଧା ମିଳେ, ରିଜର୍ଭ ଆସନରେ ବସିଲେ ତହିଁରୁ ଚାରିପଣ ସୁବିଧା ମଧ୍ୟ ମିଳେ ନାହିଁ । ସେଥିରୁ ଲାଗିଲା ପ୍ରାର୍ଥୀମାନଙ୍କ ମଧ୍ୟରେ କସରତ୍ । ଏ କନ୍ଦଳ ମଧ୍ୟରେ କେତେ ଲୋକଙ୍କ ଦେହ ଖଣ୍ଡିଆ ହୋଇଗଲା, କିଏ ମନବୋଧିଆ ଟଣାଘୋଷରା ପାଇଲେ, କିଏ ଠେଙ୍ଗାଏ

ଲେଖାଏଁ ପାଇଲେ, କାହାର ଗାଞ୍ଜିଆ ଖାଲି ହେଲା, କାହାର ଖିରିପିଠା ହେଲା, କାହାର ଦଶଖପରା ବାଡ଼ିଆ ହେଲା । ବୁଝିଲି ଯେ, ଏସବୁ ମଧ୍ୟ କୁହୁକ । କାର୍ଯ୍ୟସିଦ୍ଧି ପାଇଁ ଯାହାଙ୍କୁ ଯେତେ ରକମ ପେଞ୍ଚ ଆସେ, ତାହା ସେ ଦେଖାଇଲେ; କିନ୍ତୁ ଫଳ ଏତିକି ହେଲା ଯେ ଦେଖଣାହାରିଙ୍କ ଭିତରୁ ଦାଣ୍ଡଲୋକଯାକ ତାଳି ମାଇଲେ । ମନେ ମନେ ଭାବିଲି ଯେ ମଝିରେ ମଝିରେ ଏପରି ଗୋଟାଏ ଲେଖାଏଁ ଆନ୍ଦୋଳନ ଓଡ଼ିଶାରେ ପହଞ୍ଚିଯିବାରୁ ସିନା ଓଡ଼ିଆଯାକ ଟିକିଏ ସରଗରମ ହୋଇଯିବାର ସୁଯୋଗ ପାଇବେ । ସେଥିପାଇଁ ମାଇପେ କହନ୍ତି, ''ଆପଣା ସୁନା ତ ଭେଣ୍ଡି, ପର ସଙ୍ଗେ କିଆଁ ବାଳ ଧରାଧରି ।'' ଆମ ଘର କଥା ତ ଆମକୁ ଜଣା ନାହିଁ, କେଉଁ କୋଣରେ ମୂଷା ଖୋଳୁଅଛନ୍ତି, କେଉଁ କୋଣରେ ଉଇହୁଙ୍କା ମାରି ଛତୁ ଫୁଟିଲାଣି, କେଉଁ କୋଣରେ ବିରାଡ଼ିଯାକ ପାଞ୍ଚଆଇନ ଜାରି ହୋଇଥିବାର ସମ୍ବାଦ ନ ପାଇ ଆଶ୍ରୟ ନେଉଅଛନ୍ତି । ଏଗୁଡ଼ିକ ଅନ୍ଧାରୁଆ ଯୋଗୁଁ ଆମକୁ ଜଣାପଡୁ ନାହିଁ ବୋଲି ସିନା ଆମେ ପଦାରେ କୁହାଟ ମାରୁଥାଇଁ - ''ଆରେ ଧାଇଁପଡ଼ ହୋ । ଓଡ଼ିଆ ଜାତିଟା ଦିହରେ ପିମ୍ପୁଡ଼ିଙ୍କ ଭଳିଆ ପକ୍ଷୀ ଲାଗିଗଲାଣି । ଜାତିଟା ଖଡ଼େଦମ ଆକାଶକୁ ଉଠିଯିବ ।'' ଆମ୍ଭମାନଙ୍କୁ ସ୍ୱାୟତ୍ତ-ଶାସନର ନମୁନା ଦେଖାଇ ଶିଖାଇବା ପାଇଁ ଗଭର୍ଣ୍ଣମେଣ୍ଟ ନିର୍ବାଚନ ପ୍ରଥା ଆଣି ଆମ୍ଭମାନଙ୍କ ହାତରେ ଧରାଇ ଦେଉଅଛନ୍ତି । କିନ୍ତୁ ଆମେ ତ ନିଜେ ଅଯୋଗ୍ୟ, ଅଳସୁଆ - ଏଥିରେ ସରକାରଙ୍କର ଦୋଷ କଣ ? ସେଥିପାଇଁ ଜଣେ ଏହି ପ୍ରସଙ୍ଗରେ ସମଗ୍ର ଓଡ଼ିଆ ଜାତିଟା ତାଙ୍କର 'ଘରଆଡ଼'ର ସମ୍ପର୍କରେ ବିଶେଷଣ ଲଗାଇ ସମ୍ବୋଧନ କରୁଥିଲେ । ମୁଁ ତାଙ୍କୁ ଏଣୁତେଣୁ ବୁଝାଇ ଟିକିଏ ପ୍ରକୃତିସ୍ଥ କଲି । ପରେ କଥା-ପ୍ରସଙ୍ଗରେ ସେ ମୋତେ କହିଲେ, ''ତୁମେ ଦୋନାବୁଡ଼ିଆ'', ମତଲବ କଣ ନା, ମୁଁ ମୃଦଙ୍ଗ ଦୁଇପିଠିରେ ହାତ ମାରୁଛି । ତାଙ୍କ କଥାଟାକୁ ନିହାତି ମିଛ ବୋଲି ଉଡ଼ାଇ ଦେବାର ଜୁ ନାହିଁ । ମୁଁ ସେ ବିଶେଷଣଟାକୁ ଆଗ୍ରହ ସହକାରେ ଶିରୋଧାର୍ଯ୍ୟ କରି ତାଙ୍କୁ କହିଲି ଯେ ଓଡ଼ିଶାରେ 'Public life'ର ଅର୍ଥ 'ଦୋନାବୁଡ଼ିଆ ନୀତି' । ଯେତେବେଳେ ଯେଉଁଆଡ଼େ ପବନ ବୋହିବ, ସେତେବେଳେ ସେହିଆଡ଼େ ଛତା ଧଇଲେ ଓଡ଼ିଶାରେ ଗୋଟାଏ ମନୁଷ୍ୟ ବୋଲି ସୁମାରି ହୋଇପାରିବ । ମୁଁ ଯେତେବେଳେ ସେହି Public life ପାଇଁ ଲାଳାୟିତ, ସେତେବେଳେ 'ଦୋନାବୁଡ଼ିଆ ନୀତି'ର ସ୍କୁଲରେ ଦିନାକେତେ ତାଲିମ ନେଇ ପାସ୍ ନ କଲେ ମତେ କିଏ ପଚାରିବ କାହିଁକି ? ମୁଁ ତ ସ୍ୱାର୍ଥପର, ମୁଁ ନିତାନ୍ତ ସଂକୀର୍ଣ୍ଣ ସ୍ୱାର୍ଥ ମଧ୍ୟରେ ଦିନରାତି ଘୂରୁଛି; କିନ୍ତୁ ଯେଉଁମାନେ ବାଇଶ ପାହାଚରେ ଗଡ଼ଗଡ଼ଉଛନ୍ତି, ଆମ ଜାତିଟା ଯେଉଁମାନଙ୍କ ଆଡ଼କୁ ଦିନରାତି ଅନାଇ ରହିଛି, ସେଗୁଡ଼ାକ ତ ସମସ୍ତେ ଦୋନାବୁଡ଼ିଆ ଅର୍ଥାତ୍ 'ଉଭୟଚର' । ସେଥିପାଇଁ ପାଠ ଡାକୁଛି - ''ଗଙ୍ଗାୟାଂ ଚ ଜଳେ, ମୁକ୍ତିର୍ବାଣାଣସ୍ୟାଂ ଜଳେ ସ୍ଥଳେ, ଜଳେ ସ୍ଥଳେ ଚାନ୍ତରୀକ୍ଷେ ମୁକ୍ତିଃ ଶ୍ରୀ ପୁରୁଷୋତ୍ତମେ ।'' ଯେଉଁ ନଜିର ଜଣେ ପ୍ରାର୍ଥୀଙ୍କ ପାଇଁ ଖଟିବ ନାହିଁ, ସବୁ ପ୍ରାର୍ଥୀଯାକ ଏକା ନିଜର

ଦ୍ୱାହିହେଲେ ଚଳିବ କାହୁଁ ? ଏଇଟା ହେଲା ଓଡ଼ିଶାର ହାଓଆର ବିଶେଷତ୍ୱ । କଥା ପ୍ରସଙ୍ଗରେ ଜଣେ ପ୍ରାର୍ଥୀ ଜୀବନ ବିକଳରେ କହିପକାଇଲେ, ''ଆରେ ସମସ୍ତେ ଦେଶ ଦେଶ ବୋଲି ବୋବାଳି ଛାଡ଼ିଛନ୍ତି, ଆପଣା ନାମ ଅଧିକାର ପାଇଁ ସମସ୍ତେ ଦଉଡୁଛନ୍ତି, ମଝିରେ ମଝିରେ ଦଦରା ଡଙ୍ଗାରେ ପାଣି ନ ପଶିବ ବୋଲି ଅସ୍ତା ବାଡ଼ାଉଅଛନ୍ତି ।'' କଥାଟା କିନ୍ତୁ ମୋ ମନକୁ ଭାରି ମାନିଲା । ଯାହାହେଉ ଛାଡ଼ ସେକଥା, ବର୍ତ୍ତମାନ ଈଶ୍ୱରଙ୍କ ନିକଟରେ ଉତ୍କଳବାସୀ ସମସ୍ତେ ପ୍ରାର୍ଥନା କରୁଛୁଁ ଯେ ଯେଉଁମାନେ ଆମ୍ଭମାନଙ୍କର ମୁଖିଆସ୍ୱରୂପ ଲାଟ୍‌ସାହେବଙ୍କ ସଭାକୁ ଗଲେ, ସେମାନଙ୍କ ଦ୍ୱାରା ଦେଶର ମଙ୍ଗଳ ସାଧିତ ହେବା ପାଇଁ ଈଶ୍ୱର ସେମାନଙ୍କୁ ବଳ ଓ ଆୟୁଷ ଦିଅନ୍ତୁ ।

## ଉତ୍କଳ ସମ୍ମିଳନୀ

ଏବର୍ଷ ଏଡ଼େବଡ଼ ଶୀତଦିନଟା ବିତିଗଲା, ଓଡ଼ିଆ ଜାତିଟା ଟାଟି କିଳି ଶୀତର ଦାଉ ସମ୍ଭାଳି ନେଲା । ୫।୬ ବର୍ଷ ହେଲା ବର୍ଷକୁ ବର୍ଷ ଉତ୍କଳ ସମ୍ମିଳନୀର ଅଧିବେଶନ ହୋଇ ଆସୁଥିଲା । ଏବର୍ଷ ତାହା ହୋଇ ପାରିଲା ନାହିଁ । ଉତ୍କଳ ସମ୍ମିଳନୀ ହେବା ଦିନଠାରୁ ବର୍ଷକେ ଥରେ ଉତ୍କଳର ବିଭିନ୍ନାଞ୍ଚଳବାସୀ ଭାଇମାନେ ସମସ୍ତେ ଦେଖାଦେଖି ହେବାର ସୁବିଧା ମିଳିବାରୁ ଭ୍ରାତୃଭାବ ସଂରକ୍ଷିତ ଓ ସମ୍ବର୍ଦ୍ଧିତ ହେବାର ଗୋଟିଏ ସୁଯୋଗ ବର୍ଷକେ ଥରେ ପଡୁଥିଲା; କିନ୍ତୁ ସେତକ ସୁଯୋଗ ଈଶ୍ୱର ଏବର୍ଷ କାଢ଼ିନେଲେ । ହଉ, ଏଥିରୁ ଏତିକି ଜଣାପଡ଼ିଲା ଯେ ଆମ ଜାତିର ମଣିମାଣିକ୍ୟ ଓ ମୁକ୍ତାବସା ଜହରାତଗୁଡ଼ାକ ବିଞ୍ଛି ହୋଇ ଯାଇଅଛି ଓ ଆମ ଜାତିଟା କର୍ମବୀରଙ୍କର ଲୀଳାଭୂମି ହୋଇଅଛି । ଏତେ ପଇସା ଖରଚ, ଏତେ ତର୍ଜନ ଗର୍ଜନ, ଏତେ ମେଘ ରଡ଼ି ସବୁ କେଉଁଆଡ଼େ ଫସର ଫାଟିଗଲା । ଏଥିପାଇଁ କହୁଥିଲି ଯେ ଓଡ଼ିଶାଯାକ ଖାଲି କେଳା କୁହୁକ । ସବୁ କ୍ଷେତ୍ରରେ ଦେଖିବ ଯେ କୁଆଁରୀ ହାଡ଼ ଖଣ୍ଡ ଲଗାଇ ଦେଲେ ଧନ, ଜନ, ଗୋପଲକ୍ଷ୍ମୀ ସବୁ ଭରପୂର ହୋଇ ଯାଉଅଛି । ଦିନେ ଜଣେ ଭାଇଙ୍କୁ କଥା ପ୍ରସଙ୍ଗରେ ପଚାରିଥିଲି, ''ଆମ ଜାତିଟା ଭିତରେ ମାଲ୍ ମସଲା କ'ଣ ଅଛି ? ମାଟି ଗାଛିନିରେ କେତେଦିନ ଏ ଜାତିଟାର ଧଡ଼ ରହିବ ?'' ଏ ପ୍ରଶ୍ନଟା ଶୁଣି ଭାଇସାହେବଙ୍କ ଅଷ୍ଟାଙ୍ଗ ଶରୀରଯାକ ଶୂନେଇ ହେଲା । ମୁଁ ବିଚାରିଲି, ଏହିଟା ଆମ କର୍ମର ଦୋଷ । ଆମ ଭଳିଆ ଖାଉଟି ହଜାରେ ଗଣ୍ଡାକୁ ପଚାରେ କିଏ ? ଆମ ହାତରେ ତ ଶାଗ ସିଝିବ ନାହିଁ, ଯେଉଁମାନଙ୍କ ଆଡ଼କୁ ଦେଶ ଦିନରାତି ଅନାଇ ରହିଛି, ଯେଉଁମାନଙ୍କର ପଦେ କଥାରେ ଅନେକ କାମ ହେବ, ଯେଉଁମାନେ ଅଣ୍ଟା ଭିଡ଼ିଲେ ସେତୁବନ୍ଧ ବନ୍ଧା ଯାଇପାରିବ, ସେମାନେ ହେଲେ ଦୋନାବୁଡ଼ିଆ ଅଥବା ଲଡ଼ବଡ଼ିଆ । ଏହି ପାଳଗୋଛାକୁ ନେଇ କେବେ କାହାର ଘର ଛପରବନ୍ଦୀ ହୋଇ ନାହିଁ କି ହେବ ନାହିଁ ।

ଆମ ଭିତରେ ଏକତା ଓ ସ୍ୱାର୍ଥ ତ୍ୟାଗ ନାହିଁ । ସାନ ବଡ଼ ସମସ୍ତେ ସ୍ୱାର୍ଥ ଘେନି ମାତିଅଛନ୍ତି ଓ ମୋ ଭଳିଆ ଅନୁସରଣିଆଯାକ ସେହି ସ୍ୱାର୍ଥ ଭିତରେ ପଶି ଘାଉଁରି ଖାଉଅଛୁଁ । ଶିଳ, ଶିଳପୁତା ଗଗନେ ଉଡୁଛନ୍ତି, ଶିମିଳି ତୁଳାକୁ ପଚାରେ କିଏ ? ସମସ୍ତେ ଓଳିଆରୁ ଗଜା ହେଲେ ବିହନ ମାରାଯିବ । ଲାଭ ମଧ୍ୟରେ ଏତିକି, ''ଯେଉଁମାନେ ଯୋଗୀ ଓ କର୍ମବୀର ହେଲେ ସେମାନେ ଓଡ଼ିଶାକୁ ମଉରସି ସମ୍ପତ୍ତି ଭଳି ନିଗୂଢ଼ ଦଖଲୀ ସ୍ୱତ୍ୱ ପ୍ରମାଣ କରିବାକୁ ଦିବାନିଶି ତତ୍ପର । ତାଙ୍କୁ ଦିନରାତି ତାକତରକରେ ଚଳିବାକୁ ପଡୁଛି । କାଳେ କେହି ତାଙ୍କ ଅଧିକାରଟାକୁ ଛଡ଼ାଇ ନେବ, ଏହି କଥା ସବୁବେଳେ ଭୟ । ମୋର ଅନୁରୋଧ ଅବଶ୍ୟ ଅନେକ ଲୋକଙ୍କୁ ପିତା ଲାଗିବ । ଲାଗୁ, ସେଥିପାଇଁ ଯେ ଯାହା ଦଣ୍ଡ ଦେବେ ଦିଅନ୍ତୁ, ଭାବନା ନାହିଁ । କିନ୍ତୁ ଯେବେ ଜାତି ଗଠନ କରି ଆମ ଜାତିକୁ ଅନ୍ୟାନ୍ୟ ଉନ୍ନତ ଜାତି ସଙ୍ଗେ ସମକକ୍ଷ ହୋଇ ଠିଆ କରାଇବାକୁ ହେବ, ତେବେ ନଳ, ନୀଳ, ସୁଷେଣ ବଡ଼ ବଡ଼ ପର୍ବତମାନ ଟେକି ସେତୁବନ୍ଧ ତିଆରି କରନ୍ତୁ ଓ ଗୁଣ୍ଡୁଚିମୂଷା ସାମର୍ଥ୍ୟକୁ ଚାହିଁ ତା' କାମ କରୁ । ଦେଖିବା ଯେ ସଭ୍ୟଜଗଦ୍ ଆମ୍ଭମାନଙ୍କୁ ସ୍ନେହ ଓ ଆଦର କରିବ । ଏହା ନ କରି ଯେଝା ହାତରେ ଯେ ଚଉଦପାଆ ହେଲେ ସମସ୍ତେ ଢଳ ଢଳ କରି ଚାହିଁଥିବା, ଦେଶଟା ଉଚ୍ଛନ୍ନ ହେବ । ଯେ ଯେଉଁ ଅଢ଼େଇ ଚରଣିଆ ମନ୍ତ୍ର ଶିଖି ସାପ ଗାତରେ ହାତ ପୂରାଉ ଅଛନ୍ତି, ସେମାନେ ସେହି ମନ୍ତ୍ରଗୁଡ଼ିକ ମୌରସି ସମ୍ପତ୍ତି କରିନେଲେ ସେମାନେ କ୍ଷଣିକ ଉପକାର ପାଇବେ ଓ ବଡ଼ଲୋକ ହେବେ, ଏଥିରେ ସନ୍ଦେହ ନାହିଁ; କିନ୍ତୁ ସେମାନେ ଆଖି ବୁଜିଲା ବାସିଦିନ ଯେଉଁ ଅନ୍ଧାରକୁ ସେହି ଅନ୍ଧାର । ଆଜି ଏତିକି ।

ଉତ୍କଳ ସାହିତ୍ୟ/୧୩ଶ ଭାଗ/୭ମ ସଂଖ୍ୟା/୧୩୧୭ ସାଲ ।

## ।। ଅଠେଇଶ ।।

ଦୁନିଆଟା ଭାରି ଅଖଣ୍ଡିଆ - ବେଳେ ବେଳେ ଦୁନିଆରେ ପାଣି ପଶି ଅନେକ ପ୍ରକାର ମାଡ଼ ସମ୍ଭାଳିବାକୁ ହୁଏ । ସେ ମାଡ଼ରେ କେତେ ଲୋକଙ୍କର ଦିହ ହାତ ଦରଜ ହୁଏ, କେତେ ଲୋକଙ୍କର ଦିହ ହାତ ଦରଜ ଛାଡ଼େ; କେତେ ଲୋକ କେବଳ ଅଭ୍ୟାସ ଦୋଷରୁ ସେ ମାଡ଼ ଖାଇବାକୁ ଭଲ ପାଆନ୍ତି । ସଂସାରର ଏହି ନୀତିଟା ବାରମାସିଆ । ଏହି ନୀତିର ବୀଜ କାଢ଼ି ମାମଲା ଫଏସଲା କରିବା ସକାଶେ କେତେ କେତେ ଯୋଗୀ, ଋଷି, ମୁନି ମୁଣ୍ଡାଏ ମୁଣ୍ଡାଏ ଖଡ଼ି ଘଷି ଗୋଟାଳି କରିଅଛନ୍ତି । ତେବେ ସୁଦ୍ଧା ଏ ପାଠ ଛିଣ୍ଡି ନାହିଁ ବୋଲି ଅନେକ ମୁନି, ଋଷିଙ୍କର ମନର ଓରମାନ ମେଣ୍ଟି ନାହିଁ । ଖୋଦ୍ ଭଗବାନ୍ ମଧ୍ୟ ଆପଣାର ଓସ୍ତାତି ପେଞ୍ଚ ଦେଖାଇବାକୁ ଯାଇ କୁହୁଡ଼ି ପହଁରି ପହଁରି ଥକି ଯାଇଅଛନ୍ତି । ଶେଷରେ ଅର୍ଜୁନଙ୍କୁ କହିଲେ, ''ଏତେ ଲଲାଟରେ କାମ କିସ ? ଯଦ୍

କରୋସି ଯଦସ୍ନାସି ଯଜ୍ଜୁହୋଷି ଦଦାସି ଯତ୍, ଯତ୍ ତପସ୍ୟସି କୌନ୍ତେୟ ତତ୍ କୁରୁଷ୍ୱ ମଦର୍ପଣଂ ।'' ଯାହାହେଉ, ସେ ପାଠକୁ ବୁଝୁଛି କିଏ ? ବୁଝିଲେ ସୁଦ୍ଧା ସେହି ଅନୁସାରେ ଅଣ୍ଡାଭିଡ଼ି କାମ କରୁଛି କିଏ ? ଛାଡ଼ ସେ କଥା - ମୁଁ କହୁଥିଲି, ଦୁନିଆଟା ଅଖଣ୍ଡିଆ ଅର୍ଥାତ୍ ପେଞ୍ଚପୂର୍ଣ୍ଣ । ଖୋଦ୍ ଭଗବାନ୍‌ଙ୍କର ଅଷ୍ଟାଙ୍ଗ ଶରୀରଯାକ ପେଞ୍ଚପୂର୍ଣ୍ଣ, ଅର୍ଥାତ୍ ଭଗବାନ୍ ଭାରି ସିଆଣିଆ (ଯାହାକୁ ଇଂରାଜୀରେ Politician କହନ୍ତି) । ଗୋଟାଏ ଉଦାହରଣ ଦେଲେ ଆପଣମାନେ କଥାଟାକୁ ଖିଅ ଲଗାଇ ପାରିବେ । ଦେଖିବା ହୁଅନ୍ତୁ, ତୁଚ୍ଛା ତୁଚ୍ଛାରେ କିପରି ଭଗବାନ୍ ସଂସାରରେ କେଳାକୁହୁକ ଲଗାଇ ଦେଇଅଛନ୍ତି - ମାତା ଦିନ ରାତି ଦହଗଞ୍ଜ ହୋଇ ପିଲାଙ୍କୁ ୧୦ ମାସ ଗର୍ଭରେ ଧାରଣ କରିବ, ପିଲାଟି ଭୂମିଷ୍ଠ ହେଲାରୁ ତା ପାଇଁ ଜୀବନବ୍ୟାପୀ ସାଧନା, ପରିଶ୍ରମ ଓ କଷ୍ଟ ସ୍ୱୀକାର କରି ବାବା ମା ତାକୁ ମଣିଷ କରିବା ପାଇଁ ପ୍ରାଣ ସମ୍ପିଦେବେ । ବୋଧହୁଏ ମାସକୁ ହଜାରେ ଲେଖାଏଁ ଟଙ୍କା ଦରମା ଦେଲେ ସୁଦ୍ଧା ଏପରି ଯୋଡ଼ାଏ ଚାକର ଚାକରାଣୀ ମିଳିବା ଦୁଷ୍କର ହୁଅନ୍ତା । ପିଲାଟି ଜରାୟୁରେ ରହିବା ଦିନଠାରୁ ମନୁଷ୍ୟ ହେବା ପର୍ଯ୍ୟନ୍ତ ଅର୍ଥାତ୍ ତା ନିଜ ମୁଣ୍ଡକୁ ତା ହାତ ପାଇବା ପର୍ଯ୍ୟନ୍ତ ଏପରି ଦୁଇଜଣ ସେବକ ସେବିକା ପିଲା ନିମନ୍ତେ ଅବଶ୍ୟ ଲୋଡ଼ା । ଏପରି ନିରାଶ୍ରୟ ଅବସ୍ଥାରେ ତାକୁ ଆଶ୍ରୟଦାତା ଖଞ୍ଜିବା ଦରକାର - ଦରମାଦିଆ ଚାକର ଖଞ୍ଜି ଦେଲେ ସେ ଏତେ ଦାଉ ସମ୍ଭାଳିବେ କିଆଁ ? ସେଥିପାଇଁ ପିଲାଟିର ଧଡ଼ା ବୁଝିବା ପାଇଁ ଭଗବାନ୍ ଗୋଟିଏ ପେଞ୍ଚ ଖୋଳି ସାଧାରଣତଃ ଯୋଡ଼ିଏ ବେଠିଆ ପିଲାର ଜନ୍ମ ହେବା ଆଗରୁ ଠିକଣା କରିଦିଅନ୍ତି ଓ ପେଞ୍ଚର ବଳ ସ୍ୱରୂପ ବାପ-ମା'ଙ୍କ ମନରେ 'ଅପତ୍ୟ ସ୍ନେହ' ଚିଜଟିଏ ଆଣି ରଖିଦେଇ ଅଛନ୍ତି । ଦେଖିଲ ଭଲା, ଏ ଚିଜଟା ଖାଲି ଗୋଟାଏ ହାଓଆ ଅର୍ଥାତ୍ Sentiment ଅଥଚ ଏହିପରି ଗୋଟିଏ ଫମ୍ପା ଚିଜରେ ଦୁନିଆଟା ଛାନ୍ଦୁଣି ମାନ୍ଦୁଣି ହୋଇଅଛି - କିନ୍ତୁ ଏଥିରେ ବାପ-ମା'ଙ୍କର ସଂପୂର୍ଣ୍ଣ ସ୍ୱାର୍ଥ ଅଛି । ଯେବେ କେହି ବାପ ମା କହିବେ ଯେ ''ଆମେ ପିଲା ପାଇଁ ଆମ ସୁନା ଦେହ ଚୂନା କରି ଦେଉଅଛୁଁ,'' ଏହା ଶୁଣି ଦୁନିଆ ଉତ୍ତର କରିବ, ''କିହୋ ! ତୁମେ କଣ କାହାର ବେଠି କରୁଛ କି ? ଆପଣା ପୁଅପାଇଁ କରୁଛ ନା ପର ପୁଅପାଇଁ କରୁଛ ?'' ପାଠକ ଅବଧାନେ ଦେଖିଲେନା, ଏ କିପରି ପେଞ୍ଚ ? ପରପାଇଁ ବେଠି କରିବି, ଅଥଚ ସେଥିପାଇଁ ଗର୍ବ କରିବାର କି କାହାଆଗରେ ବାହାଦୁରି କରିବାର ତାକତ ନାହିଁ । ଏହାକୁ ହିଁ କହନ୍ତି ଓସ୍ତାଦି ପେଞ୍ଚ । ଭଗବାନ୍ ଦୁନିଆରେ ସ୍ନେହ ବୋଲି ଯେଉଁ ପେଞ୍ଚ ଖଣ୍ଡକ ରଖିଦେଇ ଅଛନ୍ତି, ତାହାଯୋଗୁଁ ସଂସାରରେ କେତେ ଲୀଳା, କେତେ ଖେଳା, କେତେ କୁହୁକ, କେତେ କୁହୁଡ଼ି ପହଁରା ଦିନରାତି ଲାଗିଛି । ସବୁ କରୁଛୁଁ ଆମେ, ଅର୍ଥାତ୍ ଗଧ ଭୋଜନ, କାକ ସ୍ନାନ, କୁକୁର ଧାଉଡ଼ି ଲଗାଇଛୁଁ, କିନ୍ତ ସବୁଥିରେ ବାହାଦୁରି ନେଉଅଛନ୍ତି ଭଗବାନ୍ । ସବୁଠାରେ ସାକ୍ଷୀ ଗୋପାଳ । କେଉଁଥିରେ ଦେହରେ ପଙ୍କ

ଲାଗୁ ନାହିଁ, ଅଥଚ ଦୁନିଆଟାଯାକ ତାଙ୍କରି ସ୍ତୁତିଗାନ କରୁଅଛନ୍ତି । ଆମ ଗ୍ରାମର ବୃନ୍ଦାବନ ଓରଫ ବୁରୁନ୍ଦା ପଣ୍ଡା ନିତି ବୁଢ଼ାଲିଙ୍ଗ ଉପରେ ଟୋକେଇଏ ବେଲପତ୍ର ଓ ପଣେ * ପାଣି ଢାଳିକରି ଭଗବାନ୍‌ଙ୍କୁ ଦେୟ ଖଞ୍ଜଣା ଡକ ଆଦାୟ କରୁଛି । କେହିବା ପାଞ୍ଚଧୂପ ସାତ ଅବକାଶରେ ଘଣ୍ଟିମାରି ସେହି ପାଉଣା ଶୁଝିବାକୁ ବସିଛି, କେହି ଆଖିବୁଜି ନିରାକାର ପରଂବ୍ରହ୍ମରେ ଲୟ ଲଗାଇଛି । ଆମ ଗାଁ ପାଖ କିଣାଦାସ ବାବାଜି ଶରୀରଭେଦ ବୋଲି 'ଅଣାକାର'ରେ 'ମନମୁନ ଚଇତନ'କୁ ଯୋଖି ବଟଗୋସାଇଁଙ୍କ ମୂଳଗାଦିରେ ବଇଠକ କରି ଖଞ୍ଜଣି ମାଡ଼ରେ ସେହି ଓରମାନ ମେଣ୍ଟାଉଛି । ଏହାକୁ ହିଁ କହିନ୍ତି ଭଗବାନ୍‌ଙ୍କର Imperialism ବା ଓସ୍ତାତି ପେଞ୍ଚ । ଅର୍ଥାତ୍ ଯେ ଯାହା କର, କିନ୍ତୁ ମତେ କେନ୍ଦ୍ରସ୍ୱରୂପ କରି ଘାଉଁରି ଖାଉଥାଅ । ଏ ତ ଭଗବାନ୍‌ଙ୍କର ଗୋଟାଏ ପେଞ୍ଚର ଉଦାହରଣ ଆପଣମାନଙ୍କୁ ଦେଲି, ଏଇଟା ମଧ୍ୟ ମୋ କାରଖାନାରେ ଗଢ଼ା ପେଞ୍ଚ ନୁହେଁ । ଏ ଉଦାହରଣଟି ମୋର ଗୁରୁସ୍ଥାନୀୟ ଜଣେ ବୃଦ୍ଧ ବନ୍ଧୁଙ୍କ ଠାରୁ ଶୁଣିଥିଲି, ଏହା ବଡ଼ ହୃଦୟଗ୍ରାହୀ ହେବାରୁ ଆଜି ପଦାକୁ କାଢ଼ିଲି ।

ଉପର୍ଯ୍ୟୁକ୍ତ ଉଦାହରଣରୁ ସୁଚତୁର ପାଠକମାନେ ଭଗବାନ୍‌ଙ୍କ ପେଞ୍ଚର ଗୋଟାଏ ନମୁନା ପାଇବେ । ଏହିପରି ଭଗବାନ୍‌ଙ୍କର ଅସଂଖ୍ୟ ପେଞ୍ଚ । ଆହୁରି ଗୋଟିଏ ଉଦାହରଣ ଦେଖନ୍ତୁ । Family life ଅର୍ଥାତ୍ ପାରିବାରିକ ଜୀବନ ଭଗବାନ୍‌ଙ୍କର ଆହୁରି ଗୋଟିଏ ପେଞ୍ଚ । Joint family ଅର୍ଥାତ୍ ଅବିଭକ୍ତ ପରିବାର ଗୋଟିଏ Joint Stock Company Limited ଅର୍ଥାତ୍ ଗୋଟିଏ ଦାୟିତ୍ୱପୂର୍ଣ୍ଣ ଯୌଥ କାରବାର ମାତ୍ର - ଗୋଟିଏ Joint Stock Company(ଯୌଥ କାରବାର କମ୍ପାନୀ)ରେ ଭଗବାନ୍ ଗୋଟିଏ Sentiment ଅର୍ଥାତ୍ ହାଓଆ ପୂରାଇ ଦେଇ ତାକୁ ଦୁନିଆରେ ପାରିବାରିକ ଯୌଥ କାରବାର ରୂପେ ଠିଆ କରାଇ ଦେଇଅଛନ୍ତି । ସେ ହାଓଆଟିକକ ଆସଙ୍ଗଲିପ୍ସା ବା ଦଳବଦ୍ଧ ହୋଇ ରହିବାର ବଳବତୀ ଇଚ୍ଛା । ସେହି ହାଓଆ ଯୋଗୁଁ ପରିବାରୀୟ ପରିଜନମାନେ ସମସ୍ତେ ଖେନ୍ଦଣି ମେନ୍ଦଣି ହୋଇ କୁକୁର ଧାଉଡ଼ି ଲଗାଇ ଅଛନ୍ତି - ସେହି ହାଓଆ ଯୋଗୁଁ ପାରିବାରିକ ଜୀବନଟା ପଦ୍ୟମୟ ଓ ସୁଖମୟ ହୋଇ ଉଠୁଅଛି । ସେ poetry ବା ପଦ୍ୟତକ କାଢ଼ିନିଅ, ଫେର ଜୀବନଟା ନିରସ ଓ ଗଦ୍ୟମୟ ହୋଇଯିବ ଓ ବିବାଦ ବିସମ୍ବାଦ ଆସି ପରିବାର ମଧ୍ୟରେ ପ୍ରବେଶ କରି ଶହେ ହାଣ୍ଡିକୁ ଏକ ଠେଙ୍ଗାରେ ଛାରଖାର କରି ପକାଇବ । ପରିବାର ମଧ୍ୟରେ କଳହ ପଶିଲାରୁ poetry ବା ପଦ୍ୟାଂଶତକ କେଉଁଆଡ଼େ ଉଭେଇଗଲା ଓ ସବୁ କୁହୁକ ଭାଙ୍ଗିଗଲା । ସଂସାରରେ ମନୁଷ୍ୟ ମଲେ ବେଶି କାନ୍ଦେ କିଏ ? ଯାହାର କାରବାର ନ ଚଳିବ, ସେହି ବେଶି ହାଉଳି ଖାଇ ରଡ଼ି

* ଚାରିକୋଡ଼ି ବା ଅଶୀ

ଛାଡ଼େ, ଅଧାବୟସରେ ଯେ ମରେ ତା ପାଇଁ ଏହି Joint Stock କମ୍ପାନୀର ବେଶି ଲୋକସାନ ହୁଏ । ସେଥିପାଇଁ ତା'ଯୋଗୁଁ କାନ୍ଦ ବୋବାଳିର ରୋଳ ପଡ଼ିଯାଏ । ଅଶୀତିପର ବୃଦ୍ଧ ଏ କୋମ୍ପାନୀକୁ ଅତୁଆ ବୋଲି, ତାଙ୍କ ଉପସ୍ଥିତ ଅନୁପସ୍ଥିତିରେ କମ୍ପାନୀର କ୍ଷୟ ବୃଦ୍ଧି ନାହିଁ ବୋଲି ତାଙ୍କ ପାଇଁ କାନ୍ଦଣା କମ୍ ହୁଏ । ତେବେ ଦାଣ୍ଡ ଲୋକଙ୍କ ପତିଆରା ସକାଶେ କମ୍ପାନୀର ଅନ୍ୟାନ୍ୟ ଅଂଶୀଦାରମାନେ ଦଣ୍ଡେ ଘଡ଼ିଏ ସକାଇ ହୁଅନ୍ତି । ଏହି କମ୍ପାନୀକୁ ଚଳାଇବା ଯନ୍ତ୍ର ପାରିବାରିକ ପ୍ରେମ - ଭଗବାନ୍ ଏହା ମଧ୍ୟରେ ଗୋଟିଏ ପେଞ୍ଚ ରଖିଦେଇ କିଛି ନ ଜାଣିଲା ଭଳି ତୁନି ହୋଇ ବସି ଅଛନ୍ତି । କମ୍ପାନୀର ଅଂଶୀଦାରମାନେ ଦିନରାତି ପରିଶ୍ରମ କରି ଆପଣା ଝାଳବୁହା କଉଡ଼ିଯାକ ଆଣି ସେହି ଚିରା ଖାଳେଇରେ ପକାଉ ଅଛନ୍ତି । କିନ୍ତୁ ଏତେ କରି ସୁଦ୍ଧା ପାଟି ଫିଟାଇବାର ଜୁ ନାହିଁ । ହାତ ପରିଶ୍ରମ କରିବ, ପେଟ ଖାଇବ । ଦୁନିଆଟାଯାକ ସବୁଆଡ଼େ ଏହି Joint Stock କମ୍ପାନୀ ।

ଯାହାହେଉ ସେ ପେଞ୍ଚ ମଧ୍ୟରେ ପ୍ରବେଶ କରିବା ଛାର ମନୁଷ୍ୟର କି ସାଧ ? ସେଥିପାଇଁ ଭଗବାନ୍‌ଙ୍କର ଆଉ ଗୋଟିଏ ନାମ 'ଅଘଟନ ଘଟନ ନାଟକସ୍ୟାଭିନେତା ।' ଭଗବାନ୍‌ଙ୍କର ବିଶାଳ ସୃଷ୍ଟିକୁ ଛାଡ଼ି ପାହାଚ ପାହାଚ ତଳକୁ ଖସି ଖସିକା ଆସିଲେ ଦେଖାଯିବ ଯେ ସବୁଠାରେ ଏହି ପେଞ୍ଚ ବା Policyର ଲୀଳାଖେଳା ଲାଗିଅଛି ଓ ସମସ୍ତେ ସେହି ମଳମଳିରେ ଶିଙ୍ଗିବୁଡ଼ା ଖାଉଅଛନ୍ତି । ରାଜନୀତି ବିଶାରଦ ମହାପଣ୍ଡିତମାନେ ମଶାଲ ଧରି ସଭ୍ୟଜଗତ୍ ଗୋଡ଼ରେ ପାଳଦଉଡ଼ି ଲଗାଇ ଘୋଷାରି ଘୋଷାରି ବିଚ୍ ବଜାର ମଝିରେ ନେଉଅଛନ୍ତି । ସେମାନଙ୍କର ମୂଳମନ୍ତ୍ର ସେହି Policy ବା ପେଞ୍ଚ । ସୁସଭ୍ୟ ବ୍ରିଟିଶ ସିଂହ ପୃଥିବୀର ଚାରିପଣ ତେରଗଣ୍ଡା ଦୁଇକଡ଼ା ଏକକ୍ରାନ୍ତି ଚଉଦ ବିଶ୍ୱାକୁ ସ୍ୱୀୟ ଆୟତ୍ତାଧୀନ ରଖି ଦଣ୍ଡ ଛତ୍ରଦ୍ୱାରା ଶାସନ କରୁଅଛନ୍ତି କାହା ବଳରେ ? ସେହି ଅନିବାର୍ଯ୍ୟ, ଅଭେଦ୍ୟ, ସୂକ୍ଷ୍ମାଦପିସୂକ୍ଷ୍ମ ପେଞ୍ଚ ବା policy ଦ୍ୱାରା ଆଜି ସଭ୍ୟଜଗତ୍ ସଂସ୍କୃତ, ପରିମାର୍ଜିତ, ପରିବର୍ଦ୍ଧିତ ଓ ପରିଷ୍କୃତ ହୋଇ ଦାଉ ଦାଉ ହୋଇ ଦିଶୁଛି - ଏ ସବୁ ବଡ଼ ବଡ଼ କଥା । ଏହା ତୁମ ଆମଭଳି ଲୋକ ବୁଝିବା ସହଜ ନୁହେଁ । ଏହିପରି ସବୁ ରାଜ୍ୟରେ, ସବୁ ବିଭାଗରେ, ସବୁ ଜାତିରେ, ସବୁ ସମାଜରେ, ସବୁ ଆଖଡ଼ାରେ ଅସଂଖ୍ୟ ପେଞ୍ଚ ବ୍ୟବହୃତ ହେଉଅଛି ଓ ସ୍ଥୂଳତଃ କହିବାକୁ ଗଲେ ପେଞ୍ଚ ଦ୍ୱାରା ଦୁନିଆଟା ଚଳୁଅଛି । ''ଯୁଗକୁ ଯୁଗ ଏହିମତେ, ପରମାନନ୍ଦ ଏ ଜଗତେ ।''

ବ୍ୟକ୍ତିଗତ ଜୀବନରେ ମଧ୍ୟ ଦେଖ, ସେହି ପେଞ୍ଚ କିନ୍ତୁ ଏ ପେଞ୍ଚଗୁଡ଼ାକ ଛୋଟିଆ, ଅର୍ଥାତ୍ ଏ ପେଞ୍ଚଗୁଡ଼ାକର 'ଘରା'ର ସଂଖ୍ୟା ଅଳ୍ପ । ତଥାପି ଏହାର କି ଅଦ୍ଭୁତ କ୍ଷମତା । ଯେଉଁ ବ୍ୟକ୍ତିର ପେଞ୍ଚରେ (Screw) ଯେତିକି ବେଶି 'ଘରା' ସେ ବ୍ୟକ୍ତି ସମାଜରେ ସେତିକି ଉଚ୍ଚସ୍ଥାନୀୟ । ଅର୍ଥାତ୍ ଯାହାର ପେଞ୍ଚର ଘରା ବେଶି, ସେ ଦୁନିଆଟାକୁ ସେତିକି ବେଶି ଆପଣା କବଳରେ ରଖିପାରେ । ଯାହାର ଘରା କମ୍, ସେ ଘରା ମଧ୍ୟରୁ ଦୁଇଟା

ଗୋଟାଏ ଦୁନିଆର ସଂଘର୍ଷଣରେ ଘୋରି ହୋଇଗଲେ ସେ ମନୁଷ୍ୟଟି ଚିତ୍‌ପଟାଙ୍ଗ ହୋଇ ଭୂଇଁରେ ଖସିପଡ଼େ । ଯାହାର ପେଞ୍ଚର ଘରା ବେଶି, ସେମାନେ ଜିତିଯା'ନ୍ତି ଓ ସହଜରେ Battle of life ବା ଜୀବନର କନ୍ଦଳରେ ହାର ମାନନ୍ତି ନାହିଁ । କାରଣ ଯେଉଁ କାରିଗର ହାତରେ ପେଞ୍ଚ କମ୍ (Screw driver) ନ ଥାଏ, ସେ ଯେପରି ପେଞ୍ଚଟିଏ ଖୋଲିବା ଅସମ୍ଭବ, ସେହିପରି ନିତାନ୍ତ ଭଲ ଲୋକଟିଏ ହେଲେ ସଂସାରର ଏହି ବ୍ୟକ୍ତିଗତ ପେଞ୍ଚ ବିଷୟ ହୃଦୟଙ୍ଗମ କରିବା କଷ୍ଟକର । ପାଠକମାନେ ଯେ ଏ ପେଞ୍ଚ କଥାଟାକୁ ସହଜରେ ବୁଝିନେବେ, ଏହା ଆଶା କରାଯାଇ ନ ପାରେ । ଏଥିପାଇଁ ନିଜ ହାତରେ ଗୋଟିଏ ଖଣ୍ଡେ ପେଞ୍ଚକସ୍ ରହିବା ଆବଶ୍ୟକ । ତା'ପରେ ଏଥିରେ ମଧ୍ୟ ଆଉ ଗୋଟିଏ ଅସୁବିଧା ଅଛି । ଗୋଟାଏ ପେଞ୍ଚକସ୍‌ରେ ସବୁ ପେଞ୍ଚ ଫିଟାଇ ହେବ ନାହିଁ । ନାନା ଜାତୀୟ ପେଞ୍ଚ ଖୋଲିବା ସକାଶେ ବିଭିନ୍ନ ପ୍ରକାରର ପେଞ୍ଚକସ୍ ଦରକାର । ଏଥିପାଇଁ କହୁଥିଲେ ଯେ ଏ 'ପେଞ୍ଚ' କଥାଟା ଟିକିଏ ଦୁର୍ବୋଧ । ଏହାକୁ ମଧ୍ୟ ବ୍ୟକ୍ତିଗତ ଉଦାହରଣଦ୍ୱାରା ବୁଝାଇବାର ଜୁ ନାହିଁ । କାରଣ ଦଣ୍ଡବିଧି ଆଇନର ଅପବାଦ ଦଫାକୁ ନଜର କରି ପେଞ୍ଚକସ୍ ବ୍ୟବହାର କରିବା ସର୍ବଥା କର୍ତ୍ତବ୍ୟ । ତେବେ ମୋଟାମୋଟି ଏତିକି କହି ହେଉଅଛି ଯେକୌଣସି କସରତରେ ଦୁଇଜଣ ଖେଳୁଆଡ଼ ପ୍ରତିଯୋଗିତା ଦେଖାଉଅଛନ୍ତି, ଯେ ଜିତିଲା ତାର ପେଞ୍ଚ ସରସ, ଯେ ହାରିଗଲା ତା ପେଞ୍ଚ ନିରସ । ଏଥିରୁ ଆପଣମାନେ ଏତିକି ବୁଝି ରଖିବେ ଯେ ସବୁଠାରେ ଓସ୍ତାଦ ଖେଳୁଆଡ଼ଙ୍କ ପେଞ୍ଚର ଘରା ସଂଖ୍ୟା ଇତର ଲୋକଙ୍କ ପେଞ୍ଚର ଘରାର ସଂଖ୍ୟା ଅପେକ୍ଷା ଢେର ବେଶି । ଦୁଇ ଓସ୍ତାଦଙ୍କ ମଧ୍ୟରେ କସରତ୍ ହେଲେ ଦୁହେଁଯାକ ଯେ ଯାହାର ଓର ଉଣ୍ଡି ପେଞ୍ଚ ଲଗାନ୍ତି, ଶେଷରେ ଯାହାଙ୍କର ପେଞ୍ଚ ସରସ, ସେ ଜିତନ୍ତି । ଏହି ଓସ୍ତାତି କସରତକୁ ବଙ୍ଗଳା ଭାଷାରେ କହନ୍ତି, 'ସିଆନାୟ ସିଆନାୟ କୋଲାକୁଲି ।' ତୁମେ ଆମେ ସେ ପେଞ୍ଚ ଭିତରକୁ ପଶିବା କଥା ଦୂରେ ଥାଉ, ସେ ପେଞ୍ଚକୁ ଠଉରାଇ ମଧ୍ୟ ପାରିବା ଅସମ୍ଭବ । ଘଟନାଚକ୍ରରେ ଥରେ ମୁଁ ଦୁଇଜଣ ଓସ୍ତାଦଙ୍କ ମଧ୍ୟରେ ଓସ୍ତାତି କସରତ ଦେଖିବାର ସୁବିଧା ପାଇଥିଲି - ଜଣଙ୍କର ୬ ପେଞ୍ଚ, ଆଉ ଜଣଙ୍କର ୬ ଅଧେ ପେଞ୍ଚ । (ନୋଟ୍-ପାଠକମାନଙ୍କୁ ଏଠାରେ କହିବା ଉଚିତ ଯେ ମୋର ନିଜର ୩୩ ଅଧେ ପେଞ୍ଚ । କିନ୍ତୁ ବିଦ୍‌ବଜାରରେ ପଞ୍ଚାଏତମାନେ ବସି ମୋ ୫ ଅଧେ ପେଞ୍ଚ ବୋଲି ଗାର କାଟିଦେଲେ । ଅବଶ୍ୟ ପଞ୍ଚମୁଖରେ ଖୋଦ୍ ଭଗବାନ୍ ହାଜର । ସେଥିପାଇଁ ମୋର ପେଞ୍ଚକସ୍ ବ୍ୟବହାର କରିବାର ତାକତ ନାହିଁ । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ଏ ଘରାଗୁଡ଼ିକର ସଂଖ୍ୟା ବଢ଼ିବ କି ଛିଣ୍ଡିବ, ତାହା ମତେ ଅଗୋଚର) ଦୁହେଁଯାକ ମାଲକଛା ଭିଡ଼ି କସରତ୍ ଆରମ୍ଭ କଲେ । ପହିଲେ ପହିଲେ କିଏ ଜିତିବ କିଏ ହାରିବ କିଛି ଠିକଣା ହେଲା ନାହିଁ । ଏପରି ପହରେ ଖଣ୍ଡେ ବିତିଗଲା । ଦେଖିଲି ଯେ ୬ ପେଞ୍ଚବାଲା ଜିତିଗଲେ ୬୪ ପେଞ୍ଚବାଲା ଲଥିକିନି ଭୂଇଁରେ

ବସିପଡ଼ିଲେ । କିନ୍ତୁ ଆପଣାର ପରାଜୟଟା ତ ଘୋଡ଼ାଇ ଇଜ୍ଜତ ବଞ୍ଚାଇବାର ଚାହି । ବସି ପଡ଼ି କହିଲେ, ''ଦୂର କର । ମତେ କସରତ ଭଲ ଲାଗେ ନାହିଁ । ମୁଁ ଏଗୁଡ଼ାକ ଘୃଣା କରେ । ଛୋଟ ଲୋକମାନେ ଟଣା ଓଟରାକୁ ସୁଖ ପାଆନ୍ତି ।'' ଦେଖଣାହାରିଯାକ ସମସ୍ତେ କହିଲେ, ''ବାଃ ! ବାଃ ! ଠିକ୍ କଥା ।''

୬ ପେଞ୍ଚବାଲା ଓସ୍ତାଦ୍ ଜୟଲାଭ କରି ସୁଦ୍ଧା ଏହିପରି ଅପ୍ରତିଭ ହୋଇଗଲେ, ୬୪ ପେଞ୍ଚବାଲା ଓସ୍ତାତ ପରାଜିତ ହୋଇ ସୁଦ୍ଧା ବାହାବା ନେଇ ସମସ୍ତଙ୍କଠାରୁ ସରସ ମୁହଁରେ ବିଦାୟ ନେଇ ବାଟେ ବାଟେ ଚାଲିଗଲେ । ଏହାକୁ ହିଁ କହନ୍ତି ଓସ୍ତାତି ପେଞ୍ଚ । ସେଥିପାଇଁ ମାଇପେ କହନ୍ତି - ''ବାରହାତ କାକୁଡ଼ିକୁ ତେର ହାତ ମଞ୍ଜି, କହି ଜାଣିଲେ ଫଳେ ।''

ଅତଏବ ମୁଁ ପ୍ରସ୍ତାବ କରେ ଯେ ଏ ଅନୁନ୍ନତ ଓଡ଼ିଶା ଦେଶରେ ଓ ଅର୍ଦ୍ଧସଭ୍ୟ ଓଡ଼ିଆ ଜାତି ମଧ୍ୟରେ ଯେଉଁ କେତୋଟି ବଡ଼ ପେଞ୍ଚବାଲା ଓସ୍ତାଦ୍ ଅଛନ୍ତି, ସେମାନେ ପେଞ୍ଚ ଶିଖାଇବା ପାଇଁ ଗୋଟିଏ ଲେଖାଏଁ ଆଖଡ଼ା ପ୍ରତିଷ୍ଠା କରନ୍ତୁ । (ପାଠକମାନେ ଏପରି ମନେ କରିବେ ନାହିଁ ଯେ ଆମ ଦେଶର ଲୋକେ ବଙ୍ଗଳାରେ ସବାରି ବୁହନ୍ତି ଓ ବଗିଚାରେ ମାଳୀ କାମ କରନ୍ତି ବୋଲି ଆମ ଭିତରେ ୬୪ ପେଞ୍ଚବାଲା ଓସ୍ତାଦ୍ ନାହାନ୍ତି । କିନ୍ତୁ ସେମାନଙ୍କ ସଂଖ୍ୟା ଅନେକ ନ ହୋଇପାରେ) । ସେ ଆଖଡ଼ାରେ ଓଡ଼ିଶାର ଯୁବକମାନଙ୍କୁ 'ପେଞ୍ଚ' ବିଦ୍ୟାର ନିୟମିତ ସନ୍ଥ ଦିଆଯାଉ । ତାହାହେଲେ ଦିନାକେତେ ବାଦ୍ ଓଡ଼ିଆଙ୍କ ପକ୍ଷରୁ ନିତାନ୍ତ ପକ୍ଷରେ ଆଠ ପଣ ବଡ଼ଲୋକ 'ପେଞ୍ଚ' ଗୁଡ଼ାକ ଶିଖି ପାରିବେ । ଆଗେ ଜଣେ ବଡ଼ଲୋକଙ୍କୁ ପରୀକ୍ଷାସ୍ୱରୂପ 'ସାଗିରଦ୍' ବା ବଡ଼ଚାଟ ଗ୍ରହଣ କରାଯାଉ । ତାଙ୍କର ପେଞ୍ଚ ବିଦ୍ୟାରେ କ୍ରମୋନ୍ନତି ଦେଖାଗଲେ ଗୋଟିଏ ଶ୍ରେଣୀ ବା ଆଖଡ଼ା ଖୋଲାଯିବ ଓ ଯେ ପରୀକ୍ଷାରେ ସମସ୍ତଙ୍କୁ ଟପି ପାରିବେ, ତାଙ୍କୁ 'ଓସ୍ତାତି ଶିରୋପା' ଦିଆଯିବ ।

ଏଥିରୁ ପାଠକମାନେ ଏପରି ମନେ କରିବେ ନାହିଁ ଯେ ଓଡ଼ିଶାରେ ଏପରି ଆଖଡ଼ା ନାହିଁ ବା ଥିବା ଅସମ୍ଭବ । ଓସ୍ତାତମାନେ ପିଲାଦିନୁ କସରତ କରି କରି ସେଥିରେ ଏପରି ଅଭ୍ୟସ୍ତ ହୋଇଥା'ନ୍ତି ଯେ ଦିନ ଗୋଟାଏ ପେଞ୍ଚ ନ ଖେଳି ଖାଲି ବସିଗଲେ ତାଙ୍କ ଦିହହାତ ଘୋଳାବିନ୍ଧା ହୁଏ । ସେଥିପାଇଁ ନିତାନ୍ତ ପକ୍ଷରେ ଆପଣା ପ୍ରକୃତି ମେଣ୍ଟାଇବା ସକାଶେ ଦିଓଟି ଗୋଟିଏ ସାଗିରଦ୍ ଆପଣା ପାଖରେ ରଖିଥା'ନ୍ତି । କିଛି କସରତ ନ ଜୁଟିଲା ଦିନ ସେହି ଚାଟମାନଙ୍କଦ୍ୱାରା ମନର ଓରମାନ ମେଣ୍ଟାନ୍ତି । ବର୍ତ୍ତମାନ ଏହି ସାଗିରଦ୍‌ମାନଙ୍କର ଗୋଟିଏ ତାଲିକା ତିଆରି ହେଉଅଛି । ତାଲିକା ଶେଷ ହେଲେ ଗୋଟାଏ ଫିସ୍ ତଏନ୍ କରାଯିବ । ସେ ଫିସ୍ ଦାଖଲ କଲେ ସର୍ବସାଧାରଣଙ୍କ ମଧ୍ୟରୁ ଯେ କେହି ଉକ୍ତ ତାଲିକା ଦେଖି ଜ୍ଞାତବ୍ୟ ବିଷୟ ଜାଣିପାରିବେ ।

ଉତ୍କଳ ସାହିତ୍ୟ/୧୩ଶ ଭାଗ/୧୦ମ ସଂଖ୍ୟା/୧୩୧୭ ସାଲ ।

## ।। ଅଣତିରିଶ ।।

ଗତ ୧୩।୪।୧୦ରେ ଉତ୍କଳସାହିତ୍ୟ ସମାଜର ସାମ୍ବତ୍ସରିକ ଅଧିବେଶନ କଟକ ଟାଉନ ଲାଇବ୍ରେରୀ ହଲ୍‌ରେ ହୋଇଗଲା - ଗଞ୍ଜାମ ଜିଲାସ୍ଥ ସୁରଙ୍ଗୀ ଅଧିପତି ଶ୍ରୀ ଚନ୍ଦ୍ରଚୂଡ଼ାମଣି ଦେବ ମହୋଦୟ ସଭାପତିତ୍ୱ ଗ୍ରହଣ କରିଥିଲେ । ଏହି ଉପଲକ୍ଷରେ ଗଞ୍ଜାମ ଜିଲାର ଚିକିଟି ଅଧିପତି ଶ୍ରୀ ରାଧାମୋହନ ରାଜେନ୍ଦ୍ରଦେବ ଓ ଗଞ୍ଜାମର କେତେଗୁଡ଼ିଏ ଭଦ୍ରବ୍ୟକ୍ତି ଏଠାକୁ ଆସି ସଭାରେ ଯୋଗ ଦେଇଥିଲେ - ଅବୈତନିକ ଚାକିରିରେ କେତେଗୁଡ଼ାଏ ପୋଲାଫାଙ୍କିଆ ସୁଖ ଫୋକଟରେ ମିଳିଯାଏ, ବେଳେବେଳେ ଫୋକଟରେ କାନ ମୋଡ଼ାଟାଏ, ନାକ ଘଷାଟାଏ, ବିଧାଟାଏ, ଢେଲାଟାଏ ଏପରି ମଧ କେତେ ଉପରି ଲାଭ ମିଳିଯାଏ । ମୁଁ ଉକ୍ତ ସମାଜର ଜଣେ ଅବୈତନିକ ବା ଅନାହାରୀ କର୍ମଚାରୀ । ଅତଏବ ଜ୍ୟାମିତିକ ବିଧି ଅନୁସାରେ ମତେ ଓ ଅନ୍ୟ କତିପୟ ଅନାହାରୀ କର୍ମଚାରୀଙ୍କୁ ଅଧିବେଶନର ପୂର୍ବ ରାତ୍ରରେ ଆମନ୍ତ୍ରିତ ଆଗନ୍ତୁକମାନଙ୍କ ଅପେକ୍ଷାରେ ରେଳ ଷ୍ଟେସନକୁ ଯିବାକୁ ପଡ଼ିଥିଲା । ମୋର କେତେକ ଭାବୀ-ଆତ୍ମୀୟ ସେଦିନ ପୁରୀ ଯାଉଥିଲେ । ଯାହାହେଉ ମୁଁ ସେଦିନ ଷ୍ଟେସନକୁ ଯାଇ ପୁରୀ ଯାତ୍ରୀ ବନ୍ଧୁମାନଙ୍କୁ ବାଟ ବଳାଇ ଦେଲି ଓ ସୁରଙ୍ଗୀ ଏବଂ ଚିକିଟିର ରାଜାମାନଙ୍କୁ ସାହିତ୍ୟ ସମାଜର ଦିହୁଡ଼ିଆ ସ୍ୱରୂପ କଟକଠାକୁ ପାଛୋଟି ଆଣିଲି । ଏକା ହାଟ ପାଳିକେ କନ୍ୟା ଦେଖା ଓ ବାଇଗଣ ବିକା ସମସ୍ତଙ୍କ ଭାଗ୍ୟରେ ଘଟେ ନାହିଁ । ଯେଉଁମାନଙ୍କ ଭାଗ୍ୟରେ ଘଟେ, ସେମାନେ ଈଶ୍ୱରାନୁଗ୍ରହୀ ବୋଲିବାକୁ ହେବ । ସାହିତ୍ୟ ସମାଜର ଅନ୍ୟ କେତେକ କର୍ମଚାରୀ ମଧ ସେଦିନ ଷ୍ଟେସନକୁ ଯାଇଥିଲେ, କିନ୍ତୁ ଏପରି ଯୋଡ଼ିଯମକ ସୁଖ ସେମାନଙ୍କ ଭାଗ୍ୟରେ ଘଟିଲା ନାହିଁ ବୋଲି ସେମାନେ ବେଳେବେଳେ ମତେ ତରାଟି କରି ଚାହୁଁଥିଲେ । କି ଭାବରେ ସେମାନେ ମୋ ଆଡ଼କୁ ବାଙ୍କ ଚାହାଣି ମାରୁଥିଲେ, ତାହା ସେମାନଙ୍କୁ ଜଣା । କିନ୍ତୁ ମୁଁ ସେ ଚାହାଣିକୁ ମୋ ନିଜ ପ୍ରଚକ୍ଷୁରେ ଚାହିଁଲି ଅର୍ଥାତ୍ ପରର ଡବଲ ସୁଖ ଦେଖିଲେ ମୁଁ ଯେପରି ମନେ ମନେ ଭାରି ରବେଇ ଖବେଇ ହୁଏ । ମୋ ସୁଖ ଦେଖି ବୋଧହୁଏ ଏମାନଙ୍କ ଦିହ ସହୁ ନାହିଁ । ସେଥିପାଇଁ ସେମାନେ ହାଇଁପାଇଁ ହେଉଅଛନ୍ତି । ଏହାହିଁ ମୁଁ ସ୍ଥିର କରିନେଲି ଓ ଘଡ଼ିଏ ଖଣ୍ଡେ ଏହି ଭାବନା କରିବାକୁ ଟିକିଏ ସୁଖ ମଧ ଲାଗିଲା । ଖରାଦିନ ରାତି, ପ୍ଲାଟଫର୍ମ ଉପରେ ସୁଲୁସୁଲିଆ ବାଆ ବହୁଅଛି । ତା' ଉପରେ ଏ ମନବୋଧିଆ ସୁଖ । କିନ୍ତୁ ବିଧାତା ବେଶି କ୍ଷଣ ଏ ସୁଖ ଦେଖିଲେ ନାହିଁ ।

କାଠଯୋଡ଼ି ନଇପୋଲ ଉପରେ ମାନ୍ଦ୍ରାଜରୁ ଆସୁଥିବା ଡାକଗାଡ଼ି ଭେଁ କିନା ବୋବାଇ ଉଠିଲା ଓ ଷ୍ଟେସନଟାଯାକ ସରଗରମ ହୋଇଉଠିଲା । ଏଣେ ଷ୍ଟେସନର କର୍ମଚାରୀମାନଙ୍କଠାରୁ ନିଜ ଅସାବଧାନତା ଯୋଗୁଁ ପୁରସ୍କାର ପାଇବା ଭୟରେ ଅଗତ୍ୟା

ମୋ ସୁଖସ୍ୱପ୍ନ ଭାଙ୍ଗିଗଲା ଓ ଆମ୍ଭେମାନେ ଆଗନ୍ତୁକମାନଙ୍କ ପ୍ରତୀକ୍ଷାରେ ଷ୍ଟେସନ ପ୍ଲାଟଫର୍ମ ଉପରେ ନିସ୍ପନ୍ଦ ଭାବରେ ଠିଆ ହୋଇ ରହିଲୁଁ । ଯଥାକ୍ରମେ ଟୁଣ୍‌ଟାଣ୍, ଦୁଲ୍‌ଦାଲ୍, ଭୁସ୍‌ଭାସ୍, ଦୁମ୍‌ଦାମ୍, ଝଣ୍‌ଝାଣ୍, କେଁ କାଁ, ପେଁ ପାଁ, ଭେଁ ଭାଁ ଇତ୍ୟାଦି ନିତ୍ୟନୈମିତ୍ତିକ କ୍ରିୟାକଳାପଗୁଡ଼ାକ ଆଇନ ଦସ୍ତୁର ମୁତାବକ ସମାହିତ ହୋଇସାରିବା ପରେ ଯଥାସମୟରେ ରେଳଗାଡ଼ି ଆସି ପ୍ଲାଟଫର୍ମ ନିକଟରେ ତୁନି ହୋଇ ଠିଆ ହୋଇଗଲା । ସେହିଥିରୁ ଆମ ପୁଞ୍ଜାକଯାକ କର୍ମଚାରୀ ଗାଡ଼ିର ସବୁ କାମରାଯାକ ଦରାଣ୍ଡି ପକାଇଲୁଁ । ଅନ୍ତଶେଷରେ ସୁରଙ୍ଗୀ ଓ ଚିକିଟିର ରାଜାମାନେ ସେମାନଙ୍କ ସାଧା କାମରାରୁ ଅବତରଣ କଲେ । ଇତି ପୂର୍ବେ ସୁରଙ୍ଗୀର ରାଜାଙ୍କ ସଙ୍ଗେ ମୋର ଏକାଧିକ ଥର ଆଳାପ ପରିଚୟ ହୋଇଥିଲା । ରାଜାସାହେବ ଆମ୍ଭମାନଙ୍କୁ ଦେଖିବା ମାତ୍ରକେ ଆନନ୍ଦିତ ହୋଇ କରମର୍ଦ୍ଦନ କଲେ । ଚିକିଟିର ରାଜା ମହୋଦୟଙ୍କ ସଙ୍ଗେ ପୂର୍ବରୁ ପତ୍ରାଳାପ ଥିଲେ ହେଁ ତାଙ୍କ ସଙ୍ଗେ ଏଥିପୂର୍ବେ କେବେ ସାକ୍ଷାତ୍ ହୋଇ ନ ଥିବାରୁ ଉପସ୍ଥିତ ମଧ୍ୟସ୍ଥ ବନ୍ଧୁମାନେ ମତେ ତାଙ୍କ ନିକଟରେ ପରିଚିତ କରାଇ ଦେବାରୁ ଆଧୁନିକ ଆଦବକାଏଦା ମୁତାବକ ଆନୁଷଙ୍ଗିକ ଆଳାପନାଦି ହୋଇଗଲା ଓ ସେମାନଙ୍କୁ ନେଇ ଆମ୍ଭେମାନେ ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ବସାକୁ ଫେରିଲୁଁ । ବସାରେ ସୁରଙ୍ଗୀର ରାଜା ମହୋଦୟ ମତେ ପ୍ରଶ୍ନ କଲେ, ''ସମାଜରେ ଯୋଗଦେବା ନିମନ୍ତେ କେଉଁ କେଉଁ ରାଜା ଓ ପଦସ୍ଥ ବ୍ୟକ୍ତିମାନେ ଆସିଅଛନ୍ତି ?'' ପ୍ରଶ୍ନଟା ଶୁଣି ବୁଝିଲି ଯେ 'ଗତି' ଭଲ ନୁହେଁ । ରାଜା ମହୋଦୟ କାଲି ସଭାପତି ହେବେ, ଅଥଚ ଆଜି ନିଷ୍ଠୁର ସତ୍ୟଟା କହିଦେଲେ କାଳେ ତାଙ୍କ ମନ ମଉଳିଯିବ, ଏହି ଭାବନାରେ ମୁଁ ଅସ୍ଥିର ହେଲି । ଫେର ବିଚାରିଲି ଦମ୍‌ଦିଲାସା ନ କରି କଥାଟାକୁ ଠୋ ଠୋ ଛିଣ୍ଡାଇ ଦେଲେ ନଟ ଛିଡ଼ିଯିବ । ମୁଁ ଉତ୍ତର କଲି, ''ଆପଣଙ୍କର ସିନା ରେଳର ସୁବିଧା ଅଛି ବୋଲି ଆପଣ ବିଚାରିଲା ମାତ୍ରକେ ଏଠାକୁ ବାହାରି ଆସିଲେ, ସବୁ ରାଜାଙ୍କର ତ ସେ ସୁବିଧା ନାହିଁ, ସେମାନେ ଆସିବେ କିପରି ? ତେବେ କେଉଁ କେଉଁ ରାଜା ଓ ବିଶିଷ୍ଟ ବ୍ୟକ୍ତି ସାହିତ୍ୟ ସମାଜକୁ ଆସୁଅଛନ୍ତି, କାଲି ସମାଜର ଅଧିବେଶନ ହେବା ପୂର୍ବରୁ ତାହା ସ୍ଥିର ଭାବରେ କୁହାଯାଇ ନ ପାରେ ।'' ଏ ଉତ୍ତରଟା ଶୁଣି ସୁଚତୁର ରାଜା ମହୋଦୟ ମୁରକି ହସାଟାଏ ମାଇଲେ । କହିଲେ, ''ତେବେ କ'ଣ, ଉତ୍କଳର ରାଜାମାନଙ୍କ ମଧ୍ୟରେ ଆମେ ଦୁଇଜଣ କେବଳ ବେକୁବ୍ ?'' ମୁଁ ସୌଜନ୍ୟାନୁମୋଦିତ ମୌନାବଲମ୍ବନ କରି ଏ ପ୍ରଶ୍ନର ଉତ୍ତର ଦେଲି । ଉପସ୍ଥିତ ଅନ୍ୟ ଜଣେ ସ୍ଥାନୀୟ ବନ୍ଧୁ କହିଲେ ''ତେବେ ଆପଣ ବିଚାରିବେ ନାହିଁ ଯେ ଉତ୍କଳର ରାଜା ଓ ପଦସ୍ଥ ବ୍ୟକ୍ତିମାନଙ୍କର ସାହିତ୍ୟ ସମାଜ ପ୍ରତି ସହାନୁଭୂତି ବା ମମତା ନାହିଁ । ଆମ୍ଭେମାନେ ଅମୁକ ଅମୁକଙ୍କ ଠାରୁ ସହାନୁଭୂତି ସୂଚକ ପତ୍ର ପାଇଅଛୁଁ । କାଲି ମଧ୍ୟ ଗୋଛାଏ ଖଣ୍ଡେ ପତ୍ର ଓ ଟେଲିଗ୍ରାମ ପାଇବୁଁ ।'' ଭାବୀ ସଭାପତି ମହାଶୟ

ପଚାରିଲେ, ''ଆମନ୍ତ୍ରଣ ପତ୍ରର ଉତ୍ତର ପାଇବା ଆଶାରେ ସମାଜ ପକ୍ଷରୁ ଉକ୍ତ ପତ୍ର ସଙ୍ଗରେ ଖଣ୍ଡିଏ ଲେଖାଏଁ ଡାକ ଟିକେଟ ଦିଆଯାଇ ନ ଥିଲା ପରା ? ବୋଧହୁଏ ଡାକଟିକଟ ଅଭାବରୁ ଅନେକ ସହାନୁଭୂତି ବ୍ୟଞ୍ଜକ ଭାବ ଆମନ୍ତ୍ରିତ ବ୍ୟକ୍ତିମାନଙ୍କ ମନେ ମନେ ଫୁଟି ଝଡ଼ିଲା । ଏହି ସହାନୁଭୂତି ବ୍ୟଞ୍ଜକ ଭାବଗୁଡ଼ିକ ପତ୍ରମାନଙ୍କରେ ସନ୍ନିବେଶିତ ହୋଇ ଡାକରେ ଆସି କାଲି ସାହିତ୍ୟ ସମାଜର ଅଧିବେଶନରେ ପଠିତ ହୋଇଥିଲେ ସାହିତ୍ୟ ସମାଜର ମଙ୍ଗଳ ହୋଇଥା'ନ୍ତା ଓ ସଙ୍ଗେ ସଙ୍ଗେ ସେଗୁଡ଼ିକ ଫାଇଲ କରି ରଖିବା ସକାଶେ ଆପଣମାନଙ୍କ ଭଳି ଅନାହାରୀ କର୍ମଚାରୀମାନଙ୍କୁ ଆହାର ମିଳିଥାନ୍ତା ।'' ମୁଁ ଦେଖିଲି ଯେ ଏଣିକି ଏ ପ୍ରସଙ୍ଗରେ ସୂତ୍ରଟା ବଢ଼ାଇଲେ କେତେ କେତେ ଲୋକଙ୍କ ଗଣ୍ଠିରା ଦରାଣ୍ଡିବାକୁ ପଡ଼ିବ । ଏହା ଭାବି ସେ ପ୍ରସଙ୍ଗରୁ କ୍ଷାନ୍ତ ରହି ଅନ୍ୟ ପ୍ରସଙ୍ଗ ପକାଇଲି । ତତ୍‌ପରେ କଥାପ୍ରସଙ୍ଗରେ 'ଉତ୍କଳ ସମ୍ମିଳନୀ'ର 'ଦଶାପୋଥି' ଫିଟିଗଲା । ଆମ୍ଭେମାନେ ଦେଖିଲୁଁ ଯେ ବର୍ତ୍ତମାନ ସମ୍ମିଳନୀର ଜନ୍ମ ପତ୍ରିକାରେ 'ଶନିସପ୍ତା' ଉପସ୍ଥିତ । ଏହା ଦେଖି ଟିକିଏ ଆଶ୍ୱସ୍ତ ହେଲୁଁ । କାରଣ ପୂର୍ବେ ଆମ୍ଭେମାନେ ଭାବିଥିଲୁଁ ଯେ ଆମରି ଦୋଷରୁ ସମ୍ମିଳନୀର ପ୍ରାଣ ଗଲା; କିନ୍ତୁ ବର୍ତ୍ତମାନ ଦେଖିଲୁଁ ଯେ ଜାତକ ସ୍ଥିତ ଗ୍ରହମାନଙ୍କ ଓଟରା ଝିଙ୍କାରୁ ସମ୍ମିଳନୀର ଏ ମହାଦଶା ଘଟିଅଛି - ଅତଏବ ଓଡ଼ିଶାଟା ଯାକ ଓ ଓଡ଼ିଆ ଜାତିଟାଯାକ ବେକସୁର ଖଲାସ । ବାଃ ବାଃ । ଏହାକୁ ହିଁ କହନ୍ତି ଦର୍ଶନଶାସ୍ତ୍ର । ତତ୍‌ପରେ ବ୍ୟକ୍ତିଗତ ଭାବରେ କେତେଟା କଥାଭାଷା ହୋଇ ଆମ୍ଭମାନେ ଭାବୀ ସଭାପତିଙ୍କୁ ତାଙ୍କ ବସାରେ ରଖାଇ ନିଜ ନିଜ କୁଟୀର ଓରଫ ବସାକୁ ଫେରିଲୁଁ ।

ତହିଁ ଆରଦିନ ଅର୍ଥାତ୍ ୧୩।୪।୧୦ ସନ୍ଧ୍ୟା ସମୟରେ ସାହିତ୍ୟ ସମାଜର ସାମ୍ବତ୍ସରିକ ଅଧିବେଶନ ହେଲା । ଦେଖିଲୁଁ ଯେ ଅଧିକାଂଶ ନିଷ୍କର୍ମା ସେଠାରେ ଜୁଣ୍ଟ ହୋଇଥିଲେ । ଯେଉଁମାନେ ଓଡ଼ିଶାର କର୍ମବୀର, ସେଥିରୁ ଗୋଟିଏ ସୁଦ୍ଧା ଆଖିରେ ପଡ଼ିବାକୁ ନାହାନ୍ତି । ଯେଉଁମାନେ ରାଜ୍ୟ ଶାସନରେ ବ୍ୟସ୍ତ, ଯେଉଁମାନେ ସାମ୍ରାଜ୍ୟ ଶାସନ ପରାମର୍ଶ କାର୍ଯ୍ୟରେ ଅଗ୍ରଣୀ, ସେମାନଙ୍କୁ ଏ ପୋଡ଼ା ସାହିତ୍ୟର ଚର୍ଚ୍ଚା କରିବାକୁ ସମୟ କାହିଁ ? ଉତ୍କଳର ଜଣେ କୃତୀ ସନ୍ତାନ ଦିନେ କହିଲେ, ''ଆରେ ! ସାହିତ୍ୟ ସାହିତ୍ୟ ବୋଲି ପାଣି ପିଉ ନାହଁ, ଶୁଖିଲା ସାହିତ୍ୟ ପୋଥି ନେଇ କଣ ଚାଟୁଥିବ । ଆମେ ଯାହା କଥାଭାଷା ହେଉଅଛୁଁ, ସେହିଗୁଡ଼ାକ ତୁମରି ଭଳିଆ ନିଷ୍କର୍ମା ଲୋକଯାକ ଲେଖି ପକାଇଲାରୁ ସେହିଗୁଡ଼ାକ 'ସାହିତ୍ୟ' ବୋଲି ଦାଣ୍ଡରେ ବିକାଉଅଛ । ଆମଭଳି କର୍ମବୀର ନ ଥିଲେ ସାହିତ୍ୟ ଆସିବ କାହୁଁ ? ଜାତିଟା ଉନ୍ନତ ହୋଇଗଲେ ତା ସାଙ୍ଗେ ସାଙ୍ଗେ ସାହିତ୍ୟଟା ବଳେ ବଳେ ଉନ୍ନତ ହୋଇଯିବ । ଖାଲି ସାହିତ୍ୟ ସାହିତ୍ୟ ବୋଲି ଘୋଷି ହେଉଥିଲେ ଜାତିର ବା ବ୍ୟକ୍ତିର ଦାରିଦ୍ର୍ୟ ଘୁଞ୍ଚିବ ନାହିଁ ।'' ଏ ହିସାବରେ ଧରିବାକୁ ଗଲେ ସେ ଦିନ

ଯେଉଁମାନେ ସାହିତ୍ୟ ସମାଜକୁ ଆସି ନାହାନ୍ତି କିମ୍ବା ଯେଉଁମାନେ ଏହି ଶୃଙ୍ଖଳା ଚିଜ 'ସାହିତ୍ୟ'କୁ ଅବହେଳା ଚକ୍ଷୁରେ ଦେଖିବାକୁ ଶିଖିଅଛନ୍ତି, ସେମାନେ ଚତୁର ବା ଓସ୍ତାଦ୍ ଏଥିରେ ସନ୍ଦେହ ନାହିଁ ।

କାରଣ ଉକ୍ତ ବରପୁତ୍ରଙ୍କ ଦୃଷ୍ଟିରେ ଦେଖିବାକୁ ଗଲେ ଦେଖାଯିବ ଯେ ସାହିତ୍ୟ ଓ ମଦ ଏକା କଥା - ଏଗୁଡ଼ିକ ଯେଉଁମାନେ ସେବନ କରନ୍ତି ସେମାନେ କଳ୍ପନାଜଗତରେ ଲୀଳାଖେଳା କରନ୍ତି । ଯେଉଁମାନେ କର୍ମବୀର, ସେମାନେ ବାସ୍ତବ ଜଗତରେ କସରତ୍ କରନ୍ତି । କଳ୍ପନା ଜଗତ୍ ଓ ବାସ୍ତବ ଜଗତ୍ ମଧ୍ୟରେ ଯେ ପ୍ରଭେଦ, 'ସାହିତ୍ୟ ସେବୀ' ଓ 'କର୍ମବୀରମାନଙ୍କ' ମଧ୍ୟରେ ସେହି ପ୍ରଭେଦ । ଅତଏବ କର୍ମବୀର ବା ଓସ୍ତାଦ୍ ହେବାକୁ ହେଲେ 'ସାହିତ୍ୟ'କୁ ରାଜ୍ୟରୁ ତଡ଼ିଦେବାକୁ ହେବ ଓ ଲେଖକ ଏବଂ କବିମାନଙ୍କୁ ରବିନ୍‌ସନ୍ କ୍ରୁସୋ ଭଳିଆ ହଲାପଟା କରି ଏକଘରିକିଆ କରିବାକୁ ହେବ । ମୋର ଜଣେ ବିଶିଷ୍ଟ ବନ୍ଧୁ ଦିନେ ବିଚ ବଜାରରେ ଚିତ୍କାର କରିଉଠିଲେ, ''ଆରେ ହୋ ! ମୁଁ କବି ଓ ଲେଖକମାନଙ୍କୁ ଭୟ କରେ'', ଅର୍ଥାତ୍ ସେଗୁଡ଼ାକ ମଣିଷମାରୁ ବା ଫିସାଦିଆ । ବନ୍ଧୁ ଏ ଖବରଟା ଉପରକୁ ପଠାଇଅଛନ୍ତି କି ନାହିଁ ତାହା ଭଗବାନ୍‌ଙ୍କୁ ଜଣା । ଯାହାହେଉ ଛାଡ଼ ସେ କଥା ।

ରାୟ ସୁଦାମଚରଣ ନାୟକ ବାହାଦୁର ଆଗନ୍ତୁକମାନଙ୍କୁ ସ୍ୱାଗତ ସମ୍ଭାଷଣ କଲାପରେ ସୁରଙ୍ଗୀର ରାଜା ମହୋଦୟ ସଭାପତିଙ୍କ ବକ୍ତୃତା ପାଠକଲେ । ବକ୍ତୃତାଟିଯାକ କେବଳ ଆକ୍ଷେପ, ପରିତାପ ଓ ଦୁଃଖୋକ୍ତିରେ ପୂର୍ଣ୍ଣ - ଉତ୍କଳ ସାହିତ୍ୟର ବର୍ତ୍ତମାନ ଦଶା ଦେଖିବାକୁ ଗଲେ ସଭାପତିଙ୍କର ଆକ୍ଷେପ ଓ ଦୁଃଖୋକ୍ତି ଯେ ସମୟୋଚିତ ହୋଇଅଛି ଏହା ସବୁ 'ସାହିତ୍ୟ ସେବକ' ରୁଦ୍ଧ କଣ୍ଠରେ ସ୍ୱୀକାର କରିବେ । ତତ୍‌ପରେ ରାୟ ମଧୁସୂଦନ ରାଓ ବାହାଦୁର 'ଆଧୁନିକ ଯୁଗର ସାହିତ୍ୟ ଚର୍ଚ୍ଚା' ବିଷୟରେ ଗୋଟିଏ ସୁଦୀର୍ଘ ବକ୍ତୃତା କଲେ । ସର୍ବଶେଷରେ ମହାମହୋପାଧ୍ୟାୟ ଶ୍ରୀ ଯାଦବେଶ୍ୱର ତର୍କରତ୍ନ ମହାଶୟ ତାଙ୍କର ବକ୍ତବ୍ୟ ପ୍ରକାଶ କଲେ । ସଭାଗୃହରେ ହାସ୍ୟର ରୋଳ ପଡ଼ିଗଲା ଓ ରସିକ, ଅରସିକ, ସୁରସିକ, କୁରସିକ ସମସ୍ତେ ପାଟିଟାମାନ ମେଲାକରି ଉଠିଲେ । ପଣ୍ଡିତ ମହାଶୟ ମରହଟ୍ଟା ଓ ବୃଦ୍ଧ ଥିବାରୁ ''ସନ୍ତଃ ସଦାଭିରନ୍ତବ୍ୟା ଯଦ୍ୟପ୍ୟୁପଦିଶନ୍ତିନ । ଯାହି ସ୍ୱୈର କଥା ସ୍ତେଷା ମୁପଦେଶା ଭବନ୍ତି ନଃ ।'' ତାଙ୍କର ସ୍ୱୈର କଥାଗୁଡ଼ାକ ଆମଭଳି ଇତର ସାଧାରଣଙ୍କ ପକ୍ଷରେ ଉପଦେଶର ଅବତାର ଧାରଣା କଲା । ମନେ ମନେ ବିଚାରିଲି, ପଣ୍ଡିତ ମହାଶୟଙ୍କୁ ଗୋଟାଏ ଜାଲ୍ ଟେଲିଗ୍ରାମ କିମ୍ବା ସମ୍ବାଦ ଦେଇ ପ୍ରକୃତିସ୍ଥ କରି ଦେଲେ ଭଲ ହୁଅନ୍ତା । ଏହା ଭାବିବା ସମୟରେ ଜଣେ ପଦସ୍ଥ ବନ୍ଧୁଙ୍କ ଇଙ୍ଗିତ ଅନୁସାରେ ପଣ୍ଡିତ ମହାଶୟ ଲଥିକିନି ବସିପଡ଼ିଲେ ।

ସେଦିନ ସାହିତ୍ୟ ସମାଜର ସାମ୍ବତ୍ସରିକ ଅଧିବେଶନରେ ଟିକିଏ ବିଶେଷତ୍ୱ ଥିଲା । ପୂର୍ବ ବର୍ଷମାନଙ୍କରେ ସାହିତ୍ୟ ସମାଜ ଯା ତା ବାଡ଼ିଦୁଆରେ ମୁଣ୍ଡଗୁଞ୍ଜି ଠିଆ ହେଉଥିଲା । ଏବର୍ଷ ଅଧିବେଶନଟି ସ୍ୱତନ୍ତ୍ର ଭାବରେ ହୋଇଥିବାରୁ ଏହାର ସ୍ୱାତନ୍ତ୍ର୍ୟ ଅନୁଭବ କରିବାର ସୁବିଧା ଆମ୍ଭମାନଙ୍କୁ ମିଳିଲା । ଏହି ସ୍ୱାତନ୍ତ୍ର୍ୟ ଓ ସଜୀବତା ମଧ୍ୟରେ ଉତ୍କଳ ସାହିତ୍ୟର ଭବିଷ୍ୟଦ୍ ଆମ୍ଭମାନଙ୍କୁ ଟିକିଏ ଆଶାମୟ ଦେଖାଗଲା । ଯାହାହେଉ ସର୍ବ ଶୁଭରେ ଅଧିବେଶନର କାର୍ଯ୍ୟ ସମାହିତ ହୋଇଗଲା ଓ ଆମ୍ଭେମାନେ ସମସ୍ତେ ଆନନ୍ଦରେ ଘରକୁ ଫେରିଲୁଁ । ବାଟରେ ଆସିଲା ବେଳେ କବି ସେକ୍ସପିଅରଙ୍କ "Fit audience though few" କଥାଟା ମନେ ପଡ଼ିଲା । ତେବେ ତହିଁ ସଙ୍ଗେ ସଙ୍ଗେ ବିଷାଦ ଓ ନିରାଶାର କାଳିମାଟା ବିବାକ ଅଦୃଶ୍ୟ ହୋଇ ନ ଥିଲା,- ମନେ ମନେ କବିଙ୍କ ବାକ୍ୟରେ ପଚାରିଲି -

''ଯାଉନ୍ତୁ ଲକ୍ଷ୍ମୀ ବିଳାସ - ବାସେ ସଙ୍ଗୀଗଣ,
ତବ ଦରିଦ୍ର କୁଟୀରେ ଯାପିବି ଜୀବନ ।
ବାଛିଦିଅ ଭାରତି ଗୋ ଦୁର୍ଲଭ କବିତା ।''

ତତ୍ପରେ ଗତସଂଖ୍ୟା 'ମୁକୁର' ପତ୍ରିକାରେ ଏହି ଅଧିବେଶନର ଗୋଟିଏ ସଂକ୍ଷିପ୍ତ ବିବରଣ ପ୍ରକାଶିତ ହୋଇଅଛି । ତହିଁ ମଧ୍ୟରେ ଦେଖିଲି ଯେ ଯେଉଁମାନେ ସେଦିନ ଉକ୍ତ ଅଧିବେଶନରେ ଯୋଗ ଦେଇଥିଲେ, ଲେଖକ ସେମାନଙ୍କୁ ଗୋଟିଏ ଗୋଟିଏ ବିଶେଷଣ ଦ୍ୱାରା ଭୂଷିତ କରି ଛାଡ଼ିଦେଇଅଛନ୍ତି । ମୋ ମନକୁ କିନ୍ତୁ ସେ ବିଶେଷଣଗୁଡ଼ିକ ମାନିଲା ନାହିଁ । ଗୁଣ ଅନୁସାରେ ବିଶେଷଣଗୁଡ଼ିକ ଦିଆ ନ ଯାଇ ବିଶେଷ୍ୟମାନଙ୍କର ଆକାର ଅବୟବାଦି ଶାରୀରିକ ଗୁଣ ଅନୁସାରେ ହୋଇଥିଲେ ଆହୁରି ସୁନ୍ଦର ହୋଇଥା'ନ୍ତା । ଯଥା - ଲମ୍ବା ଦାଢ଼ିଆ, ଅନ୍ତଲ ପେଟିଆ, ଦହି ନଉତିଆ, ପୋଲା ଫାଙ୍କିଆ, ଛାପ ଚିକିଣିଆ, ଲହଲହକିଆ, ସଭା ବଳୁଆ, ମାଳା ତିଳକିଆ, ଚୁରୁକି କଳିଆ, ବୋଇତି କଖାରୁଆ, ପଲଙ୍କ ପିଠିଆ, ମାଗୁର ନିଶୁଆ, ପାଳୁଆ ପାଟିଆ, ପେଟ ବିକଳିଆ ଇତ୍ୟାଦି । ଲେଖକମାନଙ୍କର ଭବିଷ୍ୟଦ୍ ଅବଲମ୍ବନ ଓ ଅନୁକରଣ ପାଇଁ ଏଠାରେ କେବଳ ଗୋଟାକେତେ ନମୁନା ଦିଆଗଲା । ଏପରି ବିଶେଷଣଗୁଡ଼ାକ ଦେଲେ ବିଶେଷ୍ୟ ଅର୍ଥାତ୍ ବିଶିଷ୍ଟ ବ୍ୟକ୍ତିଗୁଡ଼ିକ ସହଜରେ ଉପଲବ୍ଧ ହେବେ ଓ ଯେଉଁମାନେ ସଭାକୁ ଆସି ନାହାନ୍ତି ସେମାନେ ଏହି ବିଶେଷଣଗୁଡ଼ିକ ସାହାଯ୍ୟରେ କଳ୍ପନା ଚକ୍ଷୁରେ ଅଧିବେଶନର ଫଟୋଗ୍ରାଫ୍‌ଟା ମଧ୍ୟ ଛାଙ୍କିନେଇ ପାରନ୍ତି । ପାଠକ, ଉପ-ପାଠକମାନେ ଏ କଥାଗୁଡ଼ାକୁ ବାଚାଳତାରେ ସୁମାରି କରି ମତେ ବାଏଁ ବାଏଁ ଉଡ଼ାଇ ଦେବେ ନାହିଁ । କାରଣ ପାଠ ଡାକୁଛି - 'ଆକାରସ ଦଶ ପ୍ରାଜ୍ଞଃ ।'

ଉତ୍କଳ ସାହିତ୍ୟ/୧୩ଶ ଭାଗ/୧୦ମ ସଂଖ୍ୟା/୧୩୧୬ ସାଲ ।

## ।। ତିରିଶ ।।

ବର୍ତ୍ତମାନ ସୁସଭ୍ୟ ବ୍ରିଟିଶ ରାଜ୍ୟରେ ସ୍ତ୍ରୀମାନେ ରାଜନୀତିକ ସ୍ୱାଧୀନତା ପାଇବା ସକାଶେ ଯେଉଁ ମହା ଆନ୍ଦୋଳନ ସୂତ୍ରପାତ କରିଅଛନ୍ତି, ତାହା ଥରେ ଦିବ୍ୟଚକ୍ଷୁ ଦ୍ୱାରା ଦୃଷ୍ଟି କଲେ ଏହାର ଭବିଷ୍ୟଦ୍ ସୀମା ଯେ କେଉଁ ପର୍ଯ୍ୟନ୍ତ ବିସ୍ତୃତ ହେବ, ଏହା କଳ୍ପନା ଦ୍ୱାରା ଅନୁମାନ କରାଯାଇପାରେ । ସେମାନଙ୍କ ଅଧ୍ୟବସାୟ ଓ ଦୃଢ଼ପ୍ରତିଜ୍ଞା ପ୍ରତି ଦୃଷ୍ଟିପାତ କଲେ କାହାର ହୃଦୟ ମୋହିତ ଓ ବିସ୍ମିତ ହେବ ? ପରାଜୟ ସେମାନଙ୍କ ପକ୍ଷରେ ଆଶାର ସୋପାନ ମାତ୍ର, ଭ୍ରୁକୁଟି ସେମାନଙ୍କ ପକ୍ଷରେ ଉତ୍ସାହପ୍ରଦ ସାନ୍ତ୍ୱନା ମାତ୍ର । ସେମାନଙ୍କ ଅମୋଘ ବିକ୍ରମ ଦେଖି ଆମ୍ଭେମାନେ ବୃଦ୍ଧ ଚାଣକ୍ୟଙ୍କୁ ପାସୋରି ପକାଉଁ । 'ବିନାଶ୍ରୟେବର୍ତ୍ତନ୍ତେ କବିତା ବନିତା ଲତା' ପାଠ କେଉଁଆଡ଼େ ଉଭେଇ ଯାଏ । ବହୁଯୁଗାବଧି ସ୍ତ୍ରୀ ଜାତିଙ୍କ କିସ୍‌ମତ୍ ଏ ଦୁନିଆରେ ପୃଥକ କରାଯାଇଥିଲା । ଦୁନିଆର ସବୁ ଅଂଶ ଓ ବିଭାଗରେ ପୁରୁଷମାନଙ୍କର ଅଧିକାର । କେବଳ ସ୍ତ୍ରୀମାନଙ୍କ ଅଧିକାର ଥିଲା - ରୋଷେଇ ଘର ଓ ଅନ୍ତୁଡ଼ିଶାଳ । ତିଅଣ ଅଲଣା କିମ୍ବା ଦରସିଝା ହୋଇଗଲେ ଅଳିଆ ଓ ଗାଳିର ବୋଝଯାକ ସ୍ତ୍ରୀମାନଙ୍କ ଉପରେ ଲଦା ହେଉଥିଲା ଓ ପୁଅର ମା ଝିଅର ମା' ହେଲେ ସେମାନଙ୍କ ପାଇଁ ଛାଡ଼ପତ୍ରର ବ୍ୟବସ୍ଥା ପର୍ଯ୍ୟନ୍ତ ଥିଲା । ଆମେ ପଢ଼ିବା, ଶୁଣିବା, ମାମଲତ ବୁଝିବା, କଳିକଜିଆ କରିବା, ଗ୍ରାସ ମାରିବା, ଧୋବଲୁଗା ପିନ୍ଧିବା, ନାନାପ୍ରକାର ଅସନା ଓ ଅକ୍ରିୟା କରିବା, କିନ୍ତୁ ତାଙ୍କ ବେଳକୁ 'ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟମର୍ହତି' । ଶାସ୍ତ୍ରକାରଗୁଡ଼ାକ ତାଙ୍କରି ପାଇଁ ସବୁ ବ୍ୟବସ୍ଥା ବୁଜୁଳିଯାକ ରୁଣ୍ଡେଇ ପୁଣ୍ଡେଇ ଗଦାକରି ରଖିଥିଲେ । ଯେ ବେଶ ମାଡ଼ଖାଇ ତୁନିହୋଇ ରହିପାରିଲା, ଯେ ସବୁ ଜଞ୍ଜାଳ ସହି ଘରଛୁଆଣିକୁ ଘରଛୁଆଣି ଆମ ପରିବାର ସଂଖ୍ୟା ବଢ଼ାଇ ପାରିଲା, ସେ ହେଲା ସତୀ ସାଧ୍ୱୀ । କିନ୍ତୁ ଯେଉଁ ସ୍ତ୍ରୀ ଅତ୍ୟାଚାର ଅବିଚାରରେ ମ୍ରିୟମାଣ ହୋଇ ପଦେ ପାଟି ଫିଟାଇଲା, ସେ ହେଲା ଦୁଷ୍ଟା, କୁଳଟା, ଅଣ୍ଡିରାଚଣ୍ଡୀ ଇତ୍ୟାଦି ଇତ୍ୟାଦି । ଆବହମାନ କାଳରୁ ଆଇନ ଅନୁସାରେ ଆମ୍ଭେମାନେ ସେମାନଙ୍କ ଉପରେ ଏକାଧିପତ୍ୟ ବିସ୍ତାର କରି ଆସୁଅଛୁଁ । ଏତକ ହାତରୁ ଖସିଗଲେ ଦୁନିଆଟାର ଶାସନକାର୍ଯ୍ୟ ଚଳିବ କାହୁଁ ? ଶାସ୍ତ୍ରକାରମାନେ ଭାରି ସିଆଣା, ସେମାନେ ଅଣ୍ଡିରିପୁଅମାନଙ୍କୁ ସାବଧାନ କରିଦେବେ ବୋଲି ଡାକ ଛାଡ଼ିଲେ - ''ଆରେ ଦୁନିଆର ଅଣ୍ଡିରିପୁଅଗୁଡ଼ାକ, ସାବଧାନ ରହିବ, କଳିକାଳରେ ମନୁଷ୍ୟଯାକ ନାରୀବଶ ଅର୍ଥାତ୍ ମାଇପ ସୋହାଗିଆ ହୋଇଯିବେ ଓ ସୃଷ୍ଟିଟା ବୁଡ଼ିଯିବ । ଅତଏବ ସମସ୍ତେ ତାକତରକରେ ଚଳିବ ଓ ଶିର ଉଣ୍ଡି ସେ ଜନ୍ତୁମାନଙ୍କୁ ଚଡ଼ୁ ଦେଉଥିବ ।'' "Frailty ! Thy name is woman", ଅର୍ଥାତ୍ ସେଗୁଡ଼ାକ ଓଳିଆ ଗଦା ଓ ପାଇଖାନା, ଆଉ ଆମ୍ଭେମାନେ ସ୍ୱର୍ଗର ଜୀବ ଓ ତୁଳସୀ ଗଛ । ଏ ହେଲା ପୁରାତନ ସଭ୍ୟ ଜାତିର ଆଇନ । ଯେଉଁ ଯେଉଁ ପ୍ରତ୍ନତତ୍ତ୍ୱବିଦ୍ ପଣ୍ଡିତମାନେ ଅସଭ୍ୟ ଆଦିମ ଜାତିର ଇତିହାସ ଓ ରୀତିନୀତି ପର୍ଯ୍ୟାଲୋଚନା କରିଅଛନ୍ତି ଓ ସରଜମିନ୍ ତଦାରଖ କରିଅଛନ୍ତି, ସେମାନେ ସ୍ୱୀକାର କରିଅଛନ୍ତି ଯେ ଆଦିମ ଜାତିମାନଙ୍କ ମଧ୍ୟରେ ସ୍ତ୍ରୀ ପୁରୁଷ

ଏହି ଉଭୟ ଜାତି ମଧ୍ୟରେ ସାମାଜିକ, ମାନସିକ, ବ୍ୟାବହାରିକ ଓ ବୈଷୟିକ ପ୍ରଭେଦ ଅତି ଅଳ୍ପ । (ଯଦି କେହି ପାଠକ ଏଥିପାଇଁ ନଜିର ଖୋଜିବେ, ତେବେ ତାହା ଦେଖାଇବା ପାଇଁ ମୁଁ ପ୍ରସ୍ତୁତ ଅଛି ।) ଘଟନାଚକ୍ରରେ ପୁରୁଷମାନେ କ୍ରମଶଃ ସ୍ତ୍ରୀ ଜାତିଙ୍କ ଅଧିକାରଗୁଡ଼ିକ ଅପହରଣ କରି ଶେଷରେ ତାଙ୍କୁ ପ୍ରସୂତି ଓ ପାଚିକା ଶ୍ରେଣୀରେ ଆଣି ପକାଇଲେ । ଏହିପରି ଯୁଗକେତେ ଚାଲିଗଲା । ଅବଶେଷରେ ଘଟନାଚକ୍ରରେ ପୁନର୍ବାର ଉଭୟ ଜାତିର କାର୍ଯ୍ୟକ୍ଷମତାର ପରୀକ୍ଷା ହେଲା । ଦେଖାଗଲା ଯେ କାର୍ଯ୍ୟକାରିତା ସମ୍ବନ୍ଧରେ ସ୍ତ୍ରୀ-ଜାତି ପୁରୁଷ-ଜାତି ଅପେକ୍ଷା କୌଣସି କ୍ରମେ ନ୍ୟୂନ ନୁହନ୍ତି । କ୍ରମଶଃ ଏହି ଜାତିର ଦାସତ୍ୱ ଶୃଙ୍ଖଳ ମୋଚନ ହେବାର ଆଶା ନିକଟବର୍ତ୍ତୀ ହେଲା । ପୂର୍ବେ ଯେଉଁ ଯେଉଁ ବିଭାଗରେ ସ୍ତ୍ରୀମାନଙ୍କର ପ୍ରବେଶାଧିକାର ନ ଥିଲା, ଆଧୁନିକ ସଭ୍ୟତାର ଢେଉ ସଙ୍ଗେ ସଙ୍ଗେ ତଦ୍‌ବଦ୍ ବିଭାଗର ଦ୍ୱାରମାନ ସ୍ତ୍ରୀ ଜାତିଙ୍କ ନିମନ୍ତେ ଉନ୍ମୁକ୍ତ ହେଲା । ପ୍ରଥମେ ପରୀକ୍ଷାସ୍ୱରୂପ ଯେଉଁ କାର୍ଯ୍ୟମାନ ଆରମ୍ଭ ହେଲା, ତହିଁରୁ ସ୍ପଷ୍ଟ ବୁଝାଗଲା ଯେ ବଳ, ବିଦ୍ୟା, ବୁଦ୍ଧି, ପରାକ୍ରମରେ ଏମାନେ ଆମ୍ଭମାନଙ୍କ ଅପେକ୍ଷା ନ୍ୟୂନ ନୁହନ୍ତି । ବରଂଚ ଅନେକ ସ୍ଥଳରେ ସେମାନେ ଆମ୍ଭମାନଙ୍କ ଅପେକ୍ଷା ଶ୍ରମସହିଷ୍ଣୁ ଓ କାର୍ଯ୍ୟପଟୁ । ବରଂଚ ଅଧ୍ୟବସାୟ ଗୁଣରେ ସେମାନେ ବେଳେବେଳେ ପୁରୁଷ ଜାତିଙ୍କୁ ବଳିଯା'ନ୍ତି । ଏ କଥା ଯେତେବେଳେ ସେମାନେ ବୁଝିପାରିଲେ, ସେତେବେଳେ ସେମାନେ ଆପଣାର right ବା ସ୍ୱତ୍ୱ ରକ୍ଷା କରିବା ଲାଗି ତତ୍ପର ହେଲେ । ନିଜର କ୍ଷମତାର ପରିମାଣ ଉପଲବ୍ଧି କରିପାରିଲେ ଜୀବ ଆପଣାର ସ୍ୱତ୍ୱରକ୍ଷା ପ୍ରତି ତତ୍ପର ହେବା ସ୍ୱାଭାବିକ ଅଟେ । ଅତଏବ ଶିକ୍ଷା ଓ ସଭ୍ୟତାର ବିସ୍ତାର ସଙ୍ଗେ ସଙ୍ଗେ ସ୍ତ୍ରୀମାନେ ଆପଣା ଆପଣା ନ୍ୟାଯ୍ୟ ସ୍ୱତ୍ୱ ବିଷୟରେ ଦଣ୍ଡାୟମାନ ହେବା ସ୍ୱାଭାବିକ ଅଟେ ଓ ସଭ୍ୟଜଗତ୍ ସେମାନଙ୍କୁ ଅଧିକ ଦିନ ସେମାନଙ୍କ ନ୍ୟାଯ୍ୟ ସ୍ୱତ୍ୱରୁ ବଞ୍ଚିତ କରିପାରିବେ ନାହିଁ ଏବଂ ଜଗତରେ 'ରକ୍ଷଣଶୀଳତା' ପ୍ରଭୃତି ଯୋଗୁଁ ଏ ସମ୍ବନ୍ଧରେ ନିକଟ ଭବିଷ୍ୟତ୍ କୁହେଳିକାମୟ ବୋଧ ହେଉଥିଲେ ହେଁ ଦୂର ଭବିଷ୍ୟତ୍‌ରେ ସ୍ତ୍ରୀ ଜାତିର ଉନ୍ନତି ଯେ ଅବଶ୍ୟମ୍ଭାବୀ - ଏଥିରେ ସନ୍ଦେହ ନାହିଁ ।

କେତେଦିନ ହେଲା ଆମ୍ଭମାନଙ୍କ ଗଭର୍ଣ୍ଣମେଣ୍ଟ ଗୋଟିଏ ସାର୍କୁଲାର ପ୍ରଚାର କରିଅଛନ୍ତି ଯେ ସରକାରୀ କର୍ମଚାରୀମାନେ ଦେଶୀୟ ବ୍ୟକ୍ତିମାନଙ୍କ ସଙ୍ଗେ ବନ୍ଧୁ ଭାବରେ ମିଶିବାକୁ ଚେଷ୍ଟା କରି ସେମାନଙ୍କ ସଙ୍ଗେ ନାନାବିଧ ବିଷୟରେ ଆଳାପ ଆଦି କରି ସେମାନଙ୍କ ଅଜ୍ଞାନତାଜନିତ ମତମାନ ଦୂର କରିବାକୁ ଚେଷ୍ଟା କରିବେ । ଏ ସାର୍କୁଲାର ପାଠକଲେ ଗଭର୍ଣ୍ଣମେଣ୍ଟଙ୍କ ନୀତିକୁ ପ୍ରଶଂସା ନ କରି ରହି ହୁଏ ନାହିଁ । ଅନେକ ଲୋକ ବୃଥାରେ ଗଭର୍ଣ୍ଣମେଣ୍ଟଙ୍କ କ୍ରିୟାକଳାପ ପ୍ରତି ତୀବ୍ର କଟାକ୍ଷପାତ କରିଥାନ୍ତି ଓ ନିଜେ ଅନୁସନ୍ଧାନ କରି ଶୁଣା କଥା ଉପରେ ବିଶ୍ୱାସ କରି ଗଭର୍ଣ୍ଣମେଣ୍ଟଙ୍କୁ ଦୋଷ ଦେଇଥାନ୍ତି । ଗଭର୍ଣ୍ଣମେଣ୍ଟ କର୍ମଚାରୀମାନେ ଠିକ୍ ସମ୍ବାଦଗୁଡ଼ିକ ଲୋକମାନଙ୍କୁ ଯୋଗାଇ ଲୋକମାନଙ୍କ ଭ୍ରମ ଦୂର କରିପାରିଲେ ଅଶାନ୍ତି ଓ ଅସନ୍ତୋଷର କାରଣ ଅନେକ ପରିମାଣରେ ଦୂରୀଭୂତ ହେବ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏହା କରିବାକୁ ହେଲେ ସରକାରୀ ହାକିମମାନେ

ସାଧାରଣଙ୍କ ସଙ୍ଗେ ବନ୍ଧୁ ଭାବରେ ମିଶି ସେମାନଙ୍କ ସଙ୍ଗେ ସୌହାର୍ଦ୍ଦ୍ୟ ସ୍ଥାପନ କରିବା ଆବଶ୍ୟକ; ଅର୍ଥାତ୍ ହାକିମ ପୋଷାକଟିମାନ କାଢ଼ି ପକାଇ ପଖାଳକରା ଲୁଗା ଖଣ୍ଡେ ଲେଖାଏଁ ପିନ୍ଧିବେ । ଏହା ନ କଲେ ରାମ ପଧାନ ଓ ଶ୍ୟାମ ବିଶ୍ୱାଳଙ୍କ ସଙ୍ଗେ ଘରୋଇ ଭାବରେ ମିଶିବା ସମ୍ଭବ ନୁହେଁ । ଗଭର୍ଣ୍ଣମେଣ୍ଟ ଯେପରି ସଦିଚ୍ଛା ଦ୍ୱାରା ପ୍ରଣୋଦିତ ହୋଇ ଏହି ବିଜ୍ଞାପନ ପ୍ରକାଶ କରିଅଛନ୍ତି, ଯେବେ ଉଚ୍ଚତମ ଠାରୁ ନିମ୍ନତମ କର୍ମଚାରୀମାନେ ସେହି ଅନୁଶାସନ ପ୍ରତି ଆନ୍ତରିକ ସହାନୁଭୂତି ଦେଖାଇ ହୃଦୟର ସହିତ କାର୍ଯ୍ୟ କ୍ଷେତ୍ରରେ ଅଗ୍ରସର ହୁଅନ୍ତି, ତାହାହେଲେ ଅଚିରେ ଏହା ଦ୍ୱାରା ଦେଶର ଓ ଶାସନପ୍ରଣାଳୀର ମଙ୍ଗଳ ହେବ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏହା କରିବାକୁ ଧୈର୍ଯ୍ୟ ଓ ଉଦାରତା ଆବଶ୍ୟକ । ହାକିମମାନେ ଯେବେ ମନେକରନ୍ତି ଯେ ମିସଲ ଉପରେ ଚଉକିରୁ ଓହ୍ଲାଇ ରାମ ପ୍ରଧାନ ପିଣ୍ଡା ଉପରେ ହେଁସରେ ବସିଗଲେ ଆମର ପୋଷାକରେ ମଇଳା ଲାଗିଯିବ ଓ ଆମ ଗଉଁ ଭାଙ୍ଗିଯିବ, ତାହା ହେଲେ ଏ ବିଜ୍ଞାପନ ଦ୍ୱାରା ଗଭର୍ଣ୍ଣମେଣ୍ଟଙ୍କ ସଦୁଦ୍ଦେଶ୍ୟ ଆଦୌ ସାଧିତ ହୋଇପାରିବ ନାହିଁ । ଆମ୍ଭମାନଙ୍କ ମତ ଓ ମଙ୍ଗଳ ପ୍ରତି ଗଭର୍ଣ୍ଣମେଣ୍ଟଙ୍କର ଯେ ସମ୍ପୂର୍ଣ୍ଣ ଆସ୍ଥା ଓ ସହାନୁଭୂତି ଅଛି, ଏହି ସାର୍‌କୁଲାର ଦ୍ୱାରା ତାହା ସ୍ପଷ୍ଟ ରୂପେ ପ୍ରକାଶିତ ହୋଇଅଛି । ଯଦି ସରକାରୀ କର୍ମଚାରୀମାନେ ଗଭର୍ଣ୍ଣମେଣ୍ଟଙ୍କ ଏ ଆଦେଶ ପ୍ରତିପାଳନ କରନ୍ତି, ତାହା ହେଲେ ସେମାନେ କର୍ମଚ୍ୟୁତ ହେବେ ବୋଲି ଗଭର୍ଣ୍ଣମେଣ୍ଟ ସ୍ପଷ୍ଟ ରୂପେ ପ୍ରକାଶ କରିଅଛନ୍ତି, ଆଉ ଯଦି ଆମ୍ଭେମାନେ ସରକାରଙ୍କ ଉଦ୍ଦେଶ୍ୟ ପ୍ରତି ସହାନୁଭୂତି ଦେଖାଇବୁଁ, ତେବେ ତହିଁର ବିଷମୟ ଫଳ ଆମ୍ଭମାନଙ୍କୁ ଭୋଗ କରିବାକୁ ହେବ ।

ଏଥିପାଇଁ ହାକିମମାନଙ୍କୁ କେତେଗୁଡ଼ିଏ ସ୍ୱାର୍ଥ ତ୍ୟାଗ କରିବାକୁ ହେବ । ସେମାନେ ସାଧାରଣଙ୍କ ସଙ୍ଗେ ମିଶିବାକୁ ଚେଷ୍ଟାକଲେ ଲୋକେ ଅବଶ୍ୟ ସେମାନଙ୍କ ସଙ୍ଗେ ମିଶିବେ । ଅନେକ ସ୍ଥଳରେ ଦେଖାଯାଏ ଯେ କେତେ ହାକିମ, ହାକିମ ଚଉକିରେ ବସିଲାକ୍ଷଣି ମଣିଷପଣିଆକୁ ଏକବାରକେ ପାସୋରି ପକାନ୍ତି । ସାଧାରଣ ଲୋକଗୁଡ଼ାକ ତାଙ୍କୁ ଗନ୍ଧାନ୍ତି । ସେମାନେ ବିଚାରନ୍ତି ଯେ କାଳେ ମନୁଷ୍ୟପଣିଆ ବା ଭଦ୍ରତା ଦେଖାଇଲେ ଆମ ହାକିମୀ ଇଜ୍ଜତଟା ଭଣ୍ଡୋର ହୋଇଯିବ । ମୋ ମତରେ ଏହି ଜାତୀୟ ହାକିମମାନେ ଯେତେ ଅନର୍ଥର ହେତୁ । ହାକିମମାନେ ହେଲେ ସରକାରଙ୍କର ପ୍ରତିନିଧି ବା ନମୁନା । ନମୁନାତକ ଖରାପ ହେଲେ ଅସଲ ଜିନିଷର କାଟ୍‌ତି ପ୍ରତି ବାଧା ପଡ଼ିବା ସ୍ୱାଭାବିକ । ହାକିମମାନଙ୍କ ସରଳ ଓ ଭଦ୍ର ବ୍ୟବହାର ଦ୍ୱାରା ଲୋକଙ୍କର ଗଭର୍ଣ୍ଣମେଣ୍ଟଙ୍କ ପ୍ରତି ଭକ୍ତି ଓ ସ୍ନେହ ଜନ୍ମିବ, ଏଥିରେ ସନ୍ଦେହ ନାହିଁ । ସରକାର ବାହାଦୁର ଏହି ସତ୍ୟକୁ ବର୍ତ୍ତମାନ ଉତ୍ତମ ରୂପେ ବୁଝି ପାରିଅଛନ୍ତି ଓ ସେଇଥିପାଇଁ ବର୍ତ୍ତମାନ ଏହି ଉଦାରଭାବାପନ୍ନ ଘୋଷଣା ପ୍ରଚାର କରିଅଛନ୍ତି । କ୍ଷମତାକୁ କଠୋର ଭାବରେ ପରିଚାଳିତ କରି ତହିଁରେ ଦୟା, ଦାକ୍ଷିଣ୍ୟ, ଭଦ୍ରତା ମିଶାଇଲେ ତହିଁର ଶେଷଫଳ ନିଶ୍ଚୟ ଅମୃତମୟ ହେବ, ଏଥିରେ ସନ୍ଦେହ ନାହିଁ । ଯେଉଁ ରାଜକର୍ମଚାରୀମାନେ ଏହି ସତ୍ୟକୁ ହୃଦୟଙ୍ଗମ କରି କାର୍ଯ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତି, ସେମାନେ ସରକାରଙ୍କର ପ୍ରଧାନ ପୃଷ୍ଠପୋଷକ ଓ ସାଧାରଣଙ୍କର ବନ୍ଧୁ ଅଟନ୍ତି ।

ଭାରତର ରାଜକର୍ମଚାରୀମାନେ ଦୁଇ ଭାଗରେ ବିଭକ୍ତ, ୧ - ଦେଶୀୟ, ୨ - ଇଂରେଜ ବା ସାହେବ । ଦେଶୀୟ କର୍ମଚାରୀମାନେ ଦେଶୀୟ ଲୋକଙ୍କ ସଙ୍ଗେ ମିଳିମିଶି ସେମାନଙ୍କ ମନରୁ ଅନେକ ଅମୂଳକ ଧାରଣା ଦୂର କରିବା ପାଇଁ ବିଶେଷ ସମର୍ଥ । କାରଣ ଅତି ଅଳ୍ପ ଆୟାସରେ ସେମାନେ ସାଧାରଣ ଲୋକଙ୍କର ବିଶ୍ୱାସ-ଭାଜନ ହୋଇ ପାରନ୍ତି ଓ ଦେଶର ରୀତି, ନୀତି, ଆଚାର, ବ୍ୟବହାର, ବିଶ୍ୱାସ ଓ ଅବସ୍ଥା ଦେଶୀୟ କର୍ମଚାରୀମାନଙ୍କୁ ଯେତେ ଜଣା, ସାହେବମାନଙ୍କୁ ତେତେଦୂର ଜଣା ନୁହେଁ । ପୁଣି ଦେଶର ଜନସାଧାରଣ ଦେଶୀୟ ହାକିମଙ୍କ ସଙ୍ଗେ ଯେତେଦୂର ମିଶି ପାରିବେ, ଇଂରେଜ ହାକିମଙ୍କ ସଙ୍ଗେ ତେତେ ଦୂର ମିଶି ପାରିବେ ନାହିଁ । ଏପରି ସ୍ଥଳରେ ଉପସ୍ଥିତ ଗଭର୍ଣ୍ଣମେଣ୍ଟ ସାର୍କୁଲାର୍‌କୁ କାର୍ଯ୍ୟରେ ପରିଣତ କରିବାର ଭାର ଦେଶୀୟ ହାକିମମାନଙ୍କ ଉପରେ ଅଧିକ ପରିମାଣରେ ନ୍ୟସ୍ତ ଓ ସେମାନେ ନିଜ ନିଜ ଦାୟିତ୍ୱ ହୃଦୟଙ୍ଗମ କରି କାର୍ଯ୍ୟ କଲେ ସରକାରଙ୍କ ସଦୁଦ୍ଦେଶ୍ୟ ଅନେକ ପରିମାଣରେ ସଫଳ ହେବ ଓ ଶାସନ କାର୍ଯ୍ୟରେ ଅନେକ ସୁବିଧା ହେବ । ପ୍ରଥମେ ଲୋକପ୍ରିୟ ହେବାକୁ ହେବ । ସେଥିରେ ସେମାନଙ୍କର ବିଶ୍ୱାସଭାଜନ ହୋଇପାରିବ । ତାହା ହେଲେ ସାଧାରଣଙ୍କ ସଙ୍ଗେ ଭାବର ଆଦାନପ୍ରଦାନ ସୁବିଧାଜନକ ଓ ସହଜସାଧ୍ୟ ହୋଇ ଉଠିବ ।

ଦ୍ୱିତୀୟ ଶ୍ରେଣୀର କର୍ମଚାରୀ ଅର୍ଥାତ୍ ସାହେବ ହାକିମମାନେ ସାଧାରଣତଃ ଆମ୍ଭମାନଙ୍କର ଆଚାର ବ୍ୟବହାର, ରୀତିନୀତି ଇତ୍ୟାଦି ବିଷୟରେ ଅଜ୍ଞ ଥାଇ ଏଠାକୁ ଆସିଅଛନ୍ତି । ଏପରି ସ୍ଥଳରେ ସାଧାରଣଙ୍କ ସଙ୍ଗେ ମିଶିବା ପ୍ରଥମେ ପ୍ରଥମେ ସେମାନଙ୍କ ପକ୍ଷରେ କଷ୍ଟସାଧ୍ୟ ହୋଇଉଠେ । କିନ୍ତୁ ସେଥିମଧ୍ୟରୁ ଯେଉଁମାନେ ନିଜର ସଦ୍‌ଗୁଣଦ୍ୱାରା ସାଧାରଣଙ୍କର ପ୍ରିୟ ହୁଅନ୍ତି ଓ ସାଧାରଣ ହିତକର ଅନୁଷ୍ଠାନମାନଙ୍କରେ ଯୋଗ ଦେଇଥା'ନ୍ତି, ସେମାନଙ୍କ ନାମ ପୁରୁଷାନୁକ୍ରମେ ଏ ଦେଶବାସୀମାନେ ଘୋଷି ହେଉଥା'ନ୍ତି - ଭାରତବର୍ଷରେ ଏହାର ଭୂରି ଭୂରି ଉଦାହରଣ ରହିଅଛି । ସାଧାରଣ ଲୋକେ ଯୋଗ୍ୟତା କିମ୍ବା ଉପାଧି ଦେଖନ୍ତି ନାହିଁ, କିନ୍ତୁ ତାଙ୍କ ଦୁଃଖରେ ଯେ ଦୁଃଖୀ ଓ ସୁଖରେ ଯେ ସୁଖୀ ହୁଅନ୍ତି, ସାଧାରଣ ଲୋକ ସେହି ବ୍ୟକ୍ତି ପ୍ରତି ସ୍ୱଭାବତଃ ଆକୃଷ୍ଟ ଓ ଅନୁରକ୍ତ ହୁଅନ୍ତି । ଯେଉଁ ହାକିମ ଯେତିକି ବେଶି ଲୋକପ୍ରିୟ ହୋଇପାରିବେ, ତାଙ୍କ ଦ୍ୱାରା ରାଜା ଓ ପ୍ରଜା ଉଭୟଙ୍କର ସେତିକି ବେଶି ମଙ୍ଗଳ ହୋଇ ପାରିବ । ସାଧାରଣତଃ ଏ ଦେଶବାସୀମାନେ ଆଦବ କାଏଦା (Etiquette) ବିଷୟରେ ଅଜ୍ଞ - ଏପରି ସ୍ଥଳରେ ଦେଶବାସୀମାନଙ୍କ ସଙ୍ଗେ ମିଳି ମିଶି ଚଳିବାକୁ ହେଲେ ସେ ଆଦବକାଏଦାଗୁଡ଼ିକୁ ସବୁବେଳେ ଧରି ବସିଲେ ଚଳିବ ନାହିଁ । ଯଦି ଦେଶୀୟ ଓ ସାହେବ ହାକିମମାନେ ନିଜ ନିଜର ଗଉଁ ଛାଡ଼ି ଦେଇ ଅମାୟିକ ଭାବରେ ସରକାରଙ୍କ ନୂତନ ସାର୍କୁଲାର୍ ପାଳନ କରନ୍ତି, ତାହାହେଲେ ଅନେକ ଲୋକ କୁହୁଡ଼ି ପହଁରାରୁ ରକ୍ଷା ପାଇବେ ଓ ଦେଶରେ ଶାନ୍ତି ବିରାଜିତ ହେବ ।

ଉତ୍କଳ ସାହିତ୍ୟ/୧୪ଶ ଭାଗ/୨ୟ ସଂଖ୍ୟା/୧୩୧୭ ସାଲ ।

## ।। ଏକତ୍ରିଶ ।।

''ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ !'' ସମ୍ପାଦକ ଅବଧାନ ! ଅଭିମାନ କଲେ ଚଳିବ କାହୁଁ ? ଆପଣଙ୍କ ମାସିକ ପତ୍ରିକା ଖଣ୍ଡିକ ଚଳିବ, ଚଳୁ, ସେ ତ ଭଲ କଥା; କିନ୍ତୁ ଗରିବଗୁରୁବାଙ୍କର ତ ପେଟପାଟଣା ଅଛି, ସେ ଗୁମ୍ଫାଟି ତ ପୂରିବା ଦରକାର । ସେତକ ବାଲି ମାଟିରେ ଭର୍ତ୍ତି ନ କରି ଖାଲି ଆପଣଙ୍କ ପିଛା ଧଇଲେ ଛାଞ୍ଚୁଣୀ ଓ ପାହି ଖଡୁ ସିନା ମହରଗ ହେବ । ଏତକ ମନ୍ତ୍ର ଆପଣଙ୍କୁ କିମ୍ବା ସର୍ବସାଧାରଣଙ୍କୁ ଶିଖାଇବାର ବୟସ ମୋର ନାହିଁ । ମନେ ଅଛି ତ, କାଳୁଦାସ ଓରଫ ଛେଳି ରଖୁଆଳ କମ୍ବଳ ପଲା ଖଣ୍ଡେ ଘୋଡ଼ିହୋଇ ଦରିଆ ପନ୍ତାରରେ ଥରଥର ହୋଇ ଡାକ ପକାଇଥିଲେ, ''ଇୟଂ ତୁ ଢାଠରୀ କାକୁ ରାକୁଳୀକୁରୁତେ ନ କଂ ।'' ଆମ ଗ୍ରାମର ସାଉଟି ସାହୁ ମଧ୍ୟ ଢଗ ମେଲୁଥିଲା, ''ଆଲୋ ମଉସା, ଢଡ଼ ପଇସା !'' ଏ ତ ଗଲା କୈଫିୟତ ଅଧ୍ୟାୟ - ଅର୍ଥାତ୍ ଗତ ଦୁଇ ସଂଖ୍ୟା ଉତ୍କଳ ସାହିତ୍ୟ ବାହାରିବା ପୂର୍ବରୁ ବହୁତ ଚେଷ୍ଟା କରି ସୁଦ୍ଧା ମୋର ଅମୂଲ୍ୟ ଲେଖାରୁ ଚାରି ଧାଡ଼ି ଆପଣଙ୍କ ପତ୍ରିକାକୁ ଦେଇ ନ ପାରିଥିବାରୁ ତହିଁର ପ୍ରାୟଶ୍ଚିତ୍ତ । ଆପଣ କହିବେ, ''ଆଚ୍ଛା ! ହେଲା, ଏ ଠାରଠୁରଙ୍କାକ ସମଝି ଗଲୁଁ, କିନ୍ତୁ ଆମ ମକ୍କେଲମାନଙ୍କୁ ତ ଏ କୈଫିୟତଟା ବୁଝାଇବାର ଚାହି ।'' ଓକାଲତୀ ପେସାରେ ଯେପରି ଅନେକ ଶ୍ରେଣୀର ଲୋକ (ପଣ୍ଡିତ ମୂର୍ଖ, ଦିଆ ଅଦିଆ, ବୁଝା ଅବୁଝା, ମିଠା କଡ଼ା, ସିଧା ବଙ୍କା, କାଠିଆ ବନ୍ତଳ, ଇତ୍ୟାଦି) ମକ୍କେଲ ଯୁଟନ୍ତି, ସେହିପରି ସମ୍ପାଦକୀ ପେସାରେ ନାନା କିସମର ଓ ହରେକ ରଙ୍ଗର ଗ୍ରାହକ ଓ ଉପ-ଗ୍ରାହକ ଆପଣଙ୍କୁ ଜୁଟୁଥିଲେ । ସମସ୍ତେ ତ ଏ କୈଫିୟତକୁ ବୁଝିବା ଦରକାର । ଏଥିଲାଗି ଆପଣଙ୍କ ପାଠକ ଉପ-ପାଠକମାନେ ବୁଝିବା ପାଇଁ କଥାଟା ଖୋଲାଖୋଲି କରି କହିଦେବା ଆବଶ୍ୟକ । ଗତ ୨।୩ ମାସ ହେଲା ମୁଁ ଉଦରପୂର୍ତ୍ତି ସକାଶେ ନାନା ଆଡ଼େ ବୁଲୁଥିଲି, ସେଥିପାଇଁ ଅଥୟ ହୋଇ ଏଣେ ତେଣେ ଘାଉଁରି ଖାଉଥିଲି, ଏଥିମଧ୍ୟରେ ଟିକିଏ ନିଶ୍ଚିନ୍ତ ହୋଇ ବସି ଲେଖିବାର ସୁବିଧା ମିଳି ନ ଥିବାରୁ ଉତ୍କଳ ସାହିତ୍ୟ ପାଇଁ କିଛି ଲେଖିପାରି ନାହିଁ । ତେବେ ମନରେ ଆଶ୍ୱାସନା ଏତିକି ଯେ ଏହି ସଫର ମଧ୍ୟରେ ଦୁନିଆର ହାଲଚାଲ ପାଇଁ କେତେଗୁଡ଼ିଏ ମାଲମସଲା ହାବୁଡ଼ରେ ପଡ଼ିଅଛି । ବେଳ ହେଲା ବେଳେ ସେଗୁଡ଼ିକ ସାଉଣ୍ଟି ପଛଆଡ଼ ଖାଳୋଇକୁ ଫିଙ୍ଗି ଦେଇଅଛି । ଖାଳୋଇଟା ଚିରା କି ଦୃଢ଼, ତାହା ଦେଖିବାକୁ ସୁଦ୍ଧା ଇତିମଧ୍ୟରେ ସୁବିଧା ପାଇ ନାହିଁ । ଯେବେ ଓଡ଼ିଶାର ଲୁଣି ହାଦଆ ଲାଗି ସୁଦ୍ଧା ଖାଳୋଇଟି ବଡ଼ ଥିବ, ତେବେ ସମୟ ହେଲେ ସେଗୁଡ଼ିକ ଝାଡ଼ଝୁଡ଼ କଲେ ଯାହା ବାହାରିବ, ତହିଁରେ ଅବଶ୍ୟ ଆପଣଙ୍କର ଓ ଆପଣଙ୍କ ପତ୍ରିକାର ଏକଚେଟିଆ ଅଧିକାର ରହିବ, ଏଥିରେ ସନ୍ଦେହ ନାହିଁ ।

ଏଥି ମଧ୍ୟରେ ଉପରୋକ୍ତ ଅଗ୍ନିର ତେଜ ଭାଙ୍ଗିବା ସକାଶେ ଘୋର ଜଙ୍ଗଲ ମଧ୍ୟରେ ମତେ ପଶିବାକୁ ହୋଇଥିଲା । ତା ମଧ୍ୟରେ ସହର ତଳିଆ ଲୋକ ଏକୁଟିଆ ପଡ଼ିଲେ

ଯାହା ମନ ହୁଏ, ତାହା ଅନୁଭବୀ ମାତ୍ରେ ଉଆକବ୍ ଅଛନ୍ତି । ଯାହାହେଉ ବାଟରେ ମୋର ପୂର୍ବପରିଚିତ ବାଇ ମାହାନ୍ତିଙ୍କ ସଙ୍ଗେ ଭେଟ ହେବାରୁ ମନଟା ଟିକିଏ ଉଶ୍ୱାସ ହେଲା । ପରମ୍ପରା ବିଧି ଅନୁସାରେ ପରସ୍ପର କୁଶଳାଦି ପ୍ରଶ୍ନୋତ୍ତରମାଳା ଓ ଚୂନପତ୍ର ଆଦାନ ପ୍ରଦାନର ହସ୍ତା ବନ୍ଦ ହୋଇଗଲାରୁ ବାଇ ମାହାନ୍ତି କହିଲେ, ‘‘ଗୋସାଇଁ ମହାପ୍ରଭୁ ! ଏ ଅଗନାଗ୍ନି ବନସ୍ତରେ ପଶିଲ କିଆଁ ? ଏଠେଇ କୁଆର ଥଣ୍ଟ ନାହିଁ, କି ଚଢ଼େଇର ବେଣ୍ଟ ନାହିଁ । ଏ ସବୁ ଜଙ୍ଗଲ ରାଜ୍ୟରେ ଜନ୍ତୁଗୁଡ଼ାକ ସାଲୁ ସାଲୁ ହେଉଅଛନ୍ତି । ଅର୍ଥାତ୍ ଏକଶିଙ୍ଗା, ଦୋଶିଙ୍ଗା, ଏକଦନ୍ତା, ଦୁଇଦନ୍ତା, ଏକଆଖିଆ, ଦୁଇଆଖିଆ, ଏକଗୋଡ଼ିଆ, ଦୁଇଗୋଡ଼ିଆ, ଏକନଖିଆ, ଦୁଇନଖିଆ, ଏକଲାଙ୍ଗୁଡ଼ିଆ, ଦୁଇଲାଙ୍ଗୁଡ଼ିଆ, ଏକଗୋତ୍ରିଆ, ଦିଗୋତ୍ରିଆ ଇତ୍ୟାଦି ନାନା କିସମର ଜନ୍ତୁ ଏ ଜଙ୍ଗଲ ରାଜ୍ୟଯାକ ଦାଣ୍ଡି ମାରୁଅଛନ୍ତି, କେତେବେଳେ କାହା ହାବୁଡ଼ରେ ପଡ଼ିବ ଠିକଣା ନାହିଁ । ଏପରି ସ୍ଥଳରେ ଗୃହସ୍ଥାଶ୍ରମର ମାୟା ଛାଡ଼ି ଏଣିକି ପେଟ ବିକଳରେ ବାହାରି ପଡ଼ିବା ସୁସଙ୍ଗତ ହୋଇ ନାହିଁ । ଚବିଶ ଘଣ୍ଟା ଏ ମୁଲକରେ ଦିହ ଜଗି ଚଳିବାକୁ ପଡ଼ିବ । କେତେବେଳେ ଗୋଡ଼ ଛୋଟା ହୋଇଯିବ, କେତେବେଳେ ବେକ ମୋଡ଼ି ହୋଇଯିବ, କେତେବେଳେ ଦିହ ହାତ ଚିରି ହୋଇଯିବ, କେତେବେଳେ ଗିଲଟି ଦରଜ ହୋଇଯିବ, ତହିଁର ଠିକଣା ନାହିଁ ।’’ ଏହା ଶୁଣି ବାଇ ମାହାନ୍ତିଙ୍କୁ ଆଧୁନିକ ଆଦବ୍ କାଏଦା ଅନୁସାରେ ମନବୋଧିଆ ଧନ୍ୟବାଦ ଗୋଟାଏ ଖଣ୍ଡେ ଦେଇ ଖୁସ୍‌ମେଜାଜ୍ କରି ନେଲି ଓ ସେ କେବେ କୌଣସି ଜନ୍ତୁଙ୍କ ହାବୁଡ଼ରେ ପଡ଼ିଥିଲେ କି ନାହିଁ ଏବଂ ଯେବେ ପଡ଼ିଥା’ନ୍ତି ତାଙ୍କ ହାତରୁ କିପରି ଉଦ୍ଧାର ପାଇଅଛନ୍ତି, ଏପରି ଦୁଇଟା ଗୋଟାଏ ଅନୁଭବ କଥା ପ୍ରକାଶ କରିବା ନିମନ୍ତେ ତାଙ୍କୁ ଅନୁରୋଧ କଲି । ବାଇ ମାହାନ୍ତି ମୋ ପ୍ରଶ୍ନ ଶୁଣି ଚମକି ଉଠିଲେ । କହିଲେ, ‘‘ମୁଁ ଗୋହସ୍ତାଠାରୁ ଲଗାଏଦ୍ ଜଙ୍ଗଲରେ ବୁଲି ଚେର ମୂଳମୂଳିକା ଗୋଟାଇବାରେ ଲାଗିଅଛି ଓ ସଙ୍ଗେ ସଙ୍ଗେ ମୋ କାଖରେ ଥିବା ପାଞ୍ଜି ବିଡ଼ାକର କଳେବର ବଢ଼ାଉ ଅଛି ଓ ଲେଖନର ମୁନ ଘୋରି ପକାଉଅଛି । ମୋ ଅନୁଭବୀ କଥାଗୁଡ଼ାକ ତୁମକୁ କହିଦେଲେ ଦାଣ୍ଡରୁ ବାହାରିବା ପାଇଁ ମୋଠାରେ ଆଉ କି ପସରା ରହିବ ?’’ ମୁଁ କହିଲି, ‘‘ତୁମ୍ଭେ ସିନା ଜଙ୍ଗଲରେ ବୁଲି ଚେରମୂଳ ଓ ଜଙ୍ଗଲବାସୀ ମନୁଷ୍ୟମାନଙ୍କ ବିଷୟରେ ଟିପା ତିଆରି କରୁଅଛ । ଏମାନଙ୍କ ବିବରଣ ପାଞ୍ଜିରେ ଟିପି ପ୍ରକାଶ କଲେ ବହି ଖଣ୍ଡିକ କେହି ବଡ଼ମୁଣ୍ଡିଆ ‘ଗ୍ରାହକ’ ଧରି ପାଣି ଛଡ଼ାଇ ଦେବ । କିନ୍ତୁ ଜଙ୍ଗଲ ଜନ୍ତୁମାନଙ୍କ କଥା ମୋ ନିକଟରେ ପ୍ରକାଶ କଲେ ତୁମର ତ କ୍ଷତି ହେବାର ସମ୍ଭାବନା ନାହିଁ । ଅରଣ୍ୟବାସୀ ମନୁଷ୍ୟମାନଙ୍କ କଥା କିମ୍ବା ଚେରମୂଳିକାର କରାମତ ତୁମ୍ଭଠାରୁ ଶୁଣିବାର ମୋର ଆବଶ୍ୟକ ନାହିଁ, କାରଣ କାର୍ଯ୍ୟ କ୍ଷେତ୍ରରେ ମୁଁ ଅବଶ୍ୟ କେତେକ ଲୋକଙ୍କ ସଙ୍ଗେ ପରିଚିତ ହୋଇପାରିବି, ମୂଳମୂଳିକା ଓ ଗଦ ସଂଗ୍ରହ କରିପାରିବି । କିନ୍ତୁ ଜଙ୍ଗଲ ଜନ୍ତୁମାନଙ୍କ ବିବରଣ ତୁମ୍ଭଠାରୁ ଶୁଣିଥିଲେ ଅସମୟରେ ମୁଁ ସୁବିଧା ଦେଖି ଆତ୍ମରକ୍ଷା

କରିବା ପାଇଁ ସମର୍ଥ ହେବି । ଏଥିପାଇଁ ବଣଜନ୍ତୁମାନଙ୍କ ସମ୍ବନ୍ଧରେ ମୋର ଟିକିଏ ସତର୍କ ପୂର୍ବରୁ ଦରକାର ଓ ବନ୍ଧୁ ଭାବରେ ମୋର ଭବିଷ୍ୟଦ୍ ଉପକାରପାଇଁ ତୁମ୍ଭେ ଏତକ ମତେ ନ କହିଲେ ମୁଁ ବଡ଼ ହଟହଟା ହେବି ।'' ବାଇ ମାହାନ୍ତିଙ୍କ ହୃଦୟ ସର୍ବଦା ଦୟାପ୍ରବଣ, ସେ ମୋର ଅନୁନୟ ଶୁଣି ଜଙ୍ଗଲୀ ଜନ୍ତୁମାନଙ୍କ ସମ୍ବନ୍ଧରେ ତାଙ୍କର ଅଭିଜ୍ଞତା ପ୍ରକାଶ କଲେ । (ନୋଟ - ବିଜ୍ଞାନବେତ୍ତା ପାଠକମାନଙ୍କ ଭ୍ରମ ଦୂରୀକରଣାର୍ଥ ଏଠାରେ ଲେଖିବାର ଆବଶ୍ୟକ ଯେ, ବିଜ୍ଞାନ ଅନୁସାରେ 'ଜନ୍ତୁ'ର ଅର୍ଥ ଯାହା, ଏଠାରେ ସେହି ଅର୍ଥ ପ୍ରଯୁଜ୍ୟ ନୁହେଁ । ବିଜ୍ଞାନ ଅନୁସାରେ ମନୁଷ୍ୟ ମଧ୍ୟ ଜନ୍ତୁ ମଧ୍ୟରେ ସୁମାରି । କିନ୍ତୁ ବର୍ତ୍ତମାନ ଅର୍ଥରେ ଜନ୍ତୁର ଅର୍ଥ ଅ-ମନୁଷ୍ୟ ଜନ୍ତୁ ଅର୍ଥାତ୍ ଜନ୍ତୁ ଶବ୍ଦ କହିଲେ ବୈଜ୍ଞାନିକ ଜନ୍ତୁ ଶବ୍ଦର ଅର୍ଥରୁ ମନୁଷ୍ୟଶ୍ରେଣୀକୁ ବାଦ୍ ଦେଇ ବାକି ଜନ୍ତୁମାନଙ୍କୁ ବୁଝାଇବ । ଅତଏବ ବିଜ୍ଞାନବେତ୍ତା ପାଠକମାନଙ୍କୁ ଏତଦ୍ୱାରା ସାବଧାନ କରାଇ ଦିଆଯାଉଅଛି ଯେ ସେମାନେ ଜନ୍ତୁଶ୍ରେଣୀ ମଧ୍ୟରେ ଟାଣିଓଟାରି ମନୁଷ୍ୟଶ୍ରେଣୀକୁ ପୂରାଇ ନେବେ ନାହିଁ । ସମୟ ସମୟରେ ମନୁଷ୍ୟ ପ୍ରକୃତି ଓ କାର୍ଯ୍ୟ ସଙ୍ଗେ ଜନ୍ତୁ ପ୍ରକୃତିର ସାମଞ୍ଜସ୍ୟ ଦେଖାଯାଇପାରିବ । ତାହା ବୋଲି ମନୁଷ୍ୟ ଶ୍ରେଣୀକୁ ଆମର ଜନ୍ତୁଶ୍ରେଣୀ ମଧ୍ୟକୁ ପେଲି ଦେବେ ନାହିଁ ।) ବାଇ ମାହାନ୍ତି ଆରମ୍ଭ କଲେ - ''ଶାସ୍ତ୍ରରେ କଥିତ ଅଛି, ବନର ରାଜା ସିଂହ । କିନ୍ତୁ ସେ ପଦାର୍ଥ ଏଠା ଜଙ୍ଗଲରେ ନ ଥା'ନ୍ତି । ଆଗେ ଏଠା ଜଙ୍ଗଲମାନଙ୍କର ସିଂହ ଥିଲେ । ତାହା ନ ହୋଇଥିଲେ ଆମ ଦେଶର ଦେଉଳଗୁଡ଼ାକରେ ଓ ରାଜାମାନଙ୍କ ସିଂହଦୁଆରରେ ପଥୁରିଆମାନେ ସିଂହ ବସାଇ ଦେଇ ନ ଥାନ୍ତେ । କିନ୍ତୁ ଅନେକ ଦିନରୁ ସେ ସୁଖ (ନା ଦୁଃଖ ?) ଆମ ଜଙ୍ଗଲରୁ ଗଲାଣି । (ନୋଟ - ଏ କଥାଟା କିନ୍ତୁ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କର ଅନୁସନ୍ଧେୟ । ବାଇ ମାହାନ୍ତିଙ୍କ ମତରେ ସିଂହ ଆମ ଦେଶରୁ ଲୁପ୍ତ ହେବା ଦୁର୍ଭାଗ୍ୟର ବିଷୟ ଅଟେ ଓ ସିଂହ ଆଣି ଆମ ଦେଶର ଜଙ୍ଗଲରେ ନ ପାଳିଲେ ଆମ୍ଭମାନଙ୍କ ଜଙ୍ଗଲ ଶ୍ରୀହୀନ ହୋଇ ପଡ଼ିବ । କାରଣ ସିଂହ ହିଂସ୍ରଜନ୍ତୁ ହେଲେହେଁ ସିଂହ ପରି ସୁଶ୍ରୀ ଜନ୍ତୁ ଅନ୍ୟ କେହି ନାହିଁ । ଅବଶ୍ୟ ଏ କଥାରେ ତାଙ୍କ ସଙ୍ଗରେ ମୁଁ ଏକମତ ହୋଇପାରିଲି ନାହିଁ ।) ''ଗଲା କଥା ଗଲାଣି, ବର୍ତ୍ତମାନ ସେ ବିଷୟ ଆଲୋଚନା କରିବାର ଆବଶ୍ୟକ ନାହିଁ । କାରଣ ଆମ ଦେଶର ଜଙ୍ଗଲମାନଙ୍କରେ ସିଂହକୁ ଭୟ କରିବାର କୌଣସି କାରଣ ନାହିଁ । ସିଂହ ପଶୁରାଜ ଅଟେ । ସିଂହ ଅପେକ୍ଷା ନିକୃଷ୍ଟ ଶ୍ରେଣୀର ଜନ୍ତୁଗୁଡ଼ାକଙ୍କ ଦାଉ ଆମ ଦେଶ ଜଙ୍ଗଲରେ ଭାରି ଅଧିକ । ସେଥିପାଇଁ ତୁମ୍ଭକୁ ସେହି ଜନ୍ତୁମାନଙ୍କ ବିବରଣ କହିବା ଆବଶ୍ୟକ । ଯେପରି ସରକାର ବାହାଦୁର ମନୁଷ୍ୟମାନଙ୍କର ସୁମାରି କରି ସେନ୍‌ସସ୍ କରିଅଛନ୍ତି, ଯଦି ସେହିପରି ଜଙ୍ଗଲରେ ଜନ୍ତୁମାନଙ୍କର ସୁମାରି କରାଯା'ନ୍ତା, ତାହାହେଲେ ଜଙ୍ଗଲରେ ମନୁଷ୍ୟ ସଂଖ୍ୟା ଅପେକ୍ଷା ଜନ୍ତୁମାନଙ୍କ (ଅର୍ଥାତ୍ ହିଂସ୍ରଜନ୍ତୁ) ସଂଖ୍ୟା ଢେର ବେଶି ହୁଅନ୍ତା । ଜଙ୍ଗଲରେ ଜନ୍ତୁମାନେ ଆଇନ କାନୁନର ଅଧୀନ ନୁହନ୍ତି । ସେମାନଙ୍କର ସ୍ୱତନ୍ତ୍ର ନିଶାପ । କେଉଁ ଜଙ୍ଗଲରେ ହାତୀ, କେଉଁଠାରେ ବାଘ୍‌ହା, କେଉଁଠାରେ ଭାଲୁ, କେଉଁଠାରେ

ମଣିଷଖିଆ ବାଘ, କେଉଁଠାରେ କେନ୍ଦୁଆ, କେଉଁଠାରେ ବଳିଆ କୁକୁର, କେଉଁଠାରେ ଗୟଳ, ଏହିପରି ଗୋଟିଏ ଗୋଟିଏ ଜଙ୍ଗଲ ଇଲାକାରେ ଅଳ୍ପ ବହୁତ ସବୁ ଜନ୍ତୁ ଚଳପ୍ରଚଳ ଥିଲେ ମଧ୍ୟ ଗୋଟିଏ ଗୋଟିଏ ଜନ୍ତୁଙ୍କର ଦାଉ ସେ ଜଙ୍ଗଲରେ ବେଶି । ଯେଉଁ ଜଙ୍ଗଲକୁ ଯିବାକୁ ହେବ, ସେହି ଜଙ୍ଗଲର ଦେବତା ଜନ୍ତୁଙ୍କର ପ୍ରକୃତି ନ ଠଉରାଇ ସେଠା ଜଙ୍ଗଲରେ ପଶିଲେ ଦିନ ଦୁଇ ପହରେ ଟିକିଟିକି କରି ଖାଇଯିବେ, ଏଥିରେ ସନ୍ଦେହ ନାହିଁ ।'' ବାଇ ମାହାନ୍ତି କହିଲେ ଯେ ସେ ଆଜି ପର୍ଯ୍ୟନ୍ତ ଚାରି ପାଞ୍ଚଗୋଟି ଜଙ୍ଗଲରେ ଗସ୍ତ କରିଅଛନ୍ତି ଓ ସେହି କେତେ ଗୋଟି ଜଙ୍ଗଲର ଅଭିଜ୍ଞତା ମୋ ନିକଟରେ ପ୍ରକାଶ କଲେ । କିନ୍ତୁ ସେ ଅଭିଜ୍ଞତାରୁ ମୋର ବହୁଦର୍ଶିତା ଲାଭ ହେବା କଥା ଦୂରେ ଥାଉ, ମୋର କେତେକ ସମୟ ବୃଥା ବାକ୍ୟାଳାପରେ ନଷ୍ଟ ହେଲା ବୋଲି ମୁଁ ଅବଶେଷରେ ଜାଣିପାରିଲି । ପାଠକମାନଙ୍କ କୌତୂହଳ ଚରିତାର୍ଥ କରିବା ସକାଶେ ବାଇ ମାହାନ୍ତିଙ୍କ ବର୍ଣ୍ଣିତ ଅନୁଭବର ଦିଓଟି ଗୋଟିଏ ଉଦାହରଣ ଏଠାରେ ଲିପିବଦ୍ଧ କଲି । ଏଥିରୁ ପାଠକମାନେ ସ୍ପଷ୍ଟ ବୁଝି ପାରିବେ ଯେ ବାଇ ମାହାନ୍ତିଙ୍କ ମସ୍ତିଷ୍କ ବିଗିଡ଼ିଅଛି । ତାହା ନ ହେଲେ ସେ ଏପରି ଅସଙ୍ଗତ ପ୍ରଳାପଗୁଡ଼ିଏ କରି ମୋର ସମୟ ନଷ୍ଟ କରିବାକୁ ନିଶ୍ଚୟ କୁଣ୍ଠିତ ହୋଇଥାନ୍ତେ ।

ବାଇ ମାହାନ୍ତି ଆରମ୍ଭ କଲେ -

ମନୁଷ୍ୟମାନଙ୍କର ଯେପରି ଗୋତ୍ର ଅଛି, ପ୍ରତ୍ୟେକ ଜଙ୍ଗଲ-ଅଧିଷ୍ଠାତ୍ରୀ ଜନ୍ତୁମାନଙ୍କର ମଧ୍ୟ ସେହିପରି ଭିନ୍ନ ଭିନ୍ନ ଗୋତ୍ର ଅଛି । (ନୋଟ୍ - ପିଲାଦିନୁ ଆମ୍ଭେମାନେ ଭାଷା ବ୍ୟାକରଣଠାରୁ ଆରମ୍ଭ କରି ଲଘୁକୌମୁଦୀ ପର୍ଯ୍ୟନ୍ତ ଅଳ୍ପ ବହୁତ ଅଭ୍ୟାସ କଲୁ, ସେଥିରେ ପଢ଼ିଲୁଁ ଯେ ବିଶେଷ୍ୟ ପୁଂଲିଙ୍ଗ ଥିଲେ ବିଶେଷଣ ମଧ୍ୟ ପୁଂଲିଙ୍ଗ ହେବ । କିନ୍ତୁ ବାଇ ମାହାନ୍ତି କହି ବସିଲେ, 'ଅଧିଷ୍ଠାତ୍ରୀ ଜନ୍ତୁ !' ଏଥିରୁ ପାଠକମାନେ ବାଇ ମାହାନ୍ତିଙ୍କର ଅସଙ୍ଗତ ବ୍ୟାକରଣ ଜ୍ଞାନର ନମୁନା ପାଇପାରିବେ ।) କାହାର ଛାଗଳ ଗୋତ୍ର, କାହାର ବୃଷଭ ଗୋତ୍ର, କାହାର ବରାହ ଗୋତ୍ର, କାହାର କୁକ୍କୁଟ ଗୋତ୍ର । ଏହି ଜନ୍ତୁମାନଙ୍କ ଇଲାକା ବା ଚାରଣଭୂମି ମଧ୍ୟକୁ ଚାଣକ୍ୟ, ପାଣ୍ଡବ ଓ ସାଉଟି ସାହୁ ଭଳି ଜୀବମାନେ ପ୍ରବେଶ କରି ନାହାନ୍ତି । ଦିନେ ସେ ବୃଷଭ-ଗୋତ୍ରର ଜନ୍ତୁଙ୍କ ଦ୍ୱାରା ଅଧିଷ୍ଠିତ ଏକ ଜଙ୍ଗଲରେ ଯାଇ ପହଞ୍ଚିଲେ - ସେଠାରେ ଦେଖିଲେ ଯେ ସେ ଜନ୍ତୁମାନଙ୍କ ମଧ୍ୟରେ ଗୋଠେ ସ୍ତ୍ରୀ ଜନ୍ତୁଙ୍କ ମଧ୍ୟରେ ଗୋଟିଏ ମାତ୍ର ପୁଂଲିଙ୍ଗ ବାଚକ ଜନ୍ତୁ-ରଜା । ରଜାମାନଙ୍କର ଯେପରି 'ନୀତି' (ଅର୍ଥାତ୍ ପ୍ରାତ୍ୟହିକ କର୍ମ ଓ ଅବସର ବିଭାଗ) ହୋଇଥାଏ, ସେହି ଜନ୍ତୁମାନଙ୍କର ସେହିପରି ସମସ୍ତ ନୀତି ଆବହମାନ କାଳରୁ ଚଳି ଆସୁଅଛି । ଏ ଗୋଠମାନଙ୍କରେ ଭାରି ବଂଶବୃଦ୍ଧି ହୋଇଥାଏ । କିନ୍ତୁ ଫଳତଃ ଦେଖାଯାଏ ଯେ ଭାବୀ ବଂଶଧରମାନଙ୍କଠାରେ ପୂର୍ବପୁରୁଷଙ୍କର କୌଣସି ଗନ୍ଧ ସମ୍ବନ୍ଧ ରହେ ନାହିଁ । କିମ୍ୱା କୌଣସି ସୌସାଦୃଶ୍ୟ ଦେଖାଯାଏ ନାହିଁ । କେତେଗୁଡ଼ିଏ ଜଙ୍ଗଲରେ ଛେଳି ଗୋତ୍ରିଆ ଓ କୁକୁର ଗୋତ୍ରିଆ ଜନ୍ତୁମାନଙ୍କ ସଂସ୍ରବରେ ଆସିଥିବାର ବାଇ ମାହାନ୍ତି ପ୍ରକାଶ କଲେ । ବାଇ

ମାହାନ୍ତି କହିଲେ ଯେ ଆଜି ଯେଉଁ ଜଙ୍ଗଲରେ ଛେଳି ଗୋତ୍ର ବିଶିଷ୍ଟ ଜନ୍ତୁ ଅଧିଷ୍ଠିତ, କାଲି ସେ ଜନ୍ତୁଙ୍କ ପରବର୍ତ୍ତୀ ପୁରୁଷରେ ସେହି ଜଙ୍ଗଲରେ କେବଳ କୁକୁର ଗୋତ୍ରର ପ୍ରାଦୁର୍ଭାବ ହୋଇଥିବାର ବାଇ ମାହାନ୍ତି ନିଜ ଅନୁଭବରେ ଦେଖି ଅଛନ୍ତି । ଯାହାହେଉ ସେ ବିଷୟଗୁଡ଼ିକ ଏଠାରେ ପ୍ରକାଶ କରି ପାଠକମାନଙ୍କୁ ଆଉ ବିରକ୍ତ କରିବି ନାହିଁ । ମୁଁ ମାହାନ୍ତି ମଜକୁରଙ୍କୁ କହିଲି, ଏ ସବୁ ଅଭିଜ୍ଞତାରେ ମୋର ଦରକାର ନାହିଁ, ମୋର ଆତ୍ମରକ୍ଷା ନିମନ୍ତେ ଯାହା ଯାହା ଦରକାର ତାହା କହିଦେଲେ ମୁଁ ମୋର ରାହା ଧରି ଆପଣଙ୍କଠାରୁ ବିଦାୟ ହେବି । ଏହା ଶୁଣି ପ୍ରଥମେ ସେ ମୋତେ ସତର୍କ କରିଦେଲେ, ''ଓକିଲ ମୁକ୍ତାରମାନଙ୍କ ନାମ ଶୁଣିଲେ ଜନ୍ତୁଗୁଡ଼ାକ ଭାରି ହୁରୁଡ଼ନ୍ତି ଓ ସେଥିପାଇଁ ଓକିଲ ମୁକ୍ତାରଙ୍କୁ ଜଙ୍ଗଲ ମଧ୍ୟରେ ପ୍ରବେଶ ନିଷେଧ ।'' କଥାଟା ବୋଧହୁଏ ବାଇ ମାହାନ୍ତି ମତେ ବ୍ୟକ୍ତିଗତ ଭାବରେ ଥଟ୍ଟାରେ କହିଲା ପରି ବୋଧ ହେଲା । ମୁଁ ଜାଣେ ଯେ କେତେକ ହାକିମଙ୍କୁ ଓକିଲ ମୁକ୍ତାର ଗନ୍ଧାନ୍ତି, କିନ୍ତୁ ଜଙ୍ଗଲୀ ଜନ୍ତୁଗୁଡ଼ାକଙ୍କର ମନୁଷ୍ୟ ସଙ୍ଗେ ଖାଦ୍ୟ ଖାଦକ ସମ୍ବନ୍ଧ ଥିବା ସ୍ଥଳେ ଓକିଲ ମୁକ୍ତାରଙ୍କର ଜଙ୍ଗଲକୁ ପ୍ରବେଶ ନିଷେଧ କାହିଁକି ହେବ ବୁଝିପାରିଲି ନାହିଁ । ଜୀବ ପ୍ରକୃତି ସଙ୍ଗେ ସମୟ ସମୟରେ ମନୁଷ୍ୟ ପ୍ରକୃତିର ସୌସାଦୃଶ୍ୟ ଦେଖା ଯାଇଥାଏ । ତାହା ବୋଲି ଯେ ଅରଣ୍ୟ ଜୀବଗୁଡ଼ାକ ଓକିଲ ମୁକ୍ତାରଙ୍କୁ ଘୃଣା କରିବେ, ଏହା ମୁଁ ମନ ମଧ୍ୟରେ କଳ୍ପନା କରି ନ ପାରି ମୁରୁକି ହସଟାଏ ହସି ଦେଲି । ବାଇ ମାହାନ୍ତି ମୁଖଭଙ୍ଗୀ ଦେଖି ମୋ ମନର ଭାବ ଠଉରାଇ ନେଇ ଏ ସମ୍ବନ୍ଧରେ ତାଙ୍କର ବ୍ୟକ୍ତିଗତ ଅନୁଭବ କଥା ମତେ କହି ବସିଲେ - ''ଦିନେ ଘୋର ଜଙ୍ଗଲ ମଧ୍ୟରେ ଗୋଟିଏ କଣା ବାଘ ହାବୁଡ଼ରେ ପଡ଼ିଗଲି - ବାଘଟି ମତେ ଦେଖି ମୋ ଆଗରେ ଲାଙ୍ଗୁଡ଼ ପିଟି ଗାଲଫୁଡ଼ିକି ମାରି ବସିଗଲା । ମୁଁ ଅଳ୍ପଦିନ ହେଲା ମୋଗଲବନ୍ଦିରୁ ଆସିଥାଏଁ । ବାଘ ଆଗରେ ବସିବାର ଦେଖି ମୁଁ ହତବୁଦ୍ଧି ହୋଇଗଲି । ଆବାକାବା ହୋଇ ଚିତ୍କାର କରି ଉଠିଲି - ମୁଁ ନିର୍ଦ୍ଦୋଷ - ମୁଁ ଆପଣଙ୍କ ରାଜ୍ୟରେ ଅନଧିକାର ପ୍ରବେଶ କରୁଅଛି, କିନ୍ତୁ ମୁଁ କିଛି ଜ୍ଞାନକୃତ ଅପରାଧ କରି ନାହିଁ, ମୋ ପ୍ରତି ଦୟା କରି ମତେ ତ୍ରାହି କର । ବାଘ ଏହା ଶୁଣି ଗମ୍ଭୀର ଭାବରେ ଆସନରେ ବସିଲା । ଏହା ଦେଖି ମୁଁ ବୁଝିଲି ଯେ ବାଘରଜା ମୋ କାତରୋକ୍ତି ବେଶ ବୁଝି ପାରିଅଛନ୍ତି, ତାହା ନ ହେଲେ ଗମ୍ଭୀରଭାବରେ ବସିଯାନ୍ତେ କିଆଁ ? ଏହା ଦେଖି ମୁଁ ବିଚାରିଲି ଯେ - ଯେପରି ସଭ୍ୟଜଗତରେ ଅଦାଲତ ଅଛି, ସେହିପରି ଏ ବାଘରଜାଙ୍କର ମଧ ଅଦାଲତ ଥିବ । କାରଣ ତାହା ନ ହେଲେ ସେ ଏଡ଼େ ଗଉଁରେ ମିସଲ ଉପରେ ଆସନ ଜମାଇଲା ଭଳି ବସିଯାନ୍ତେ କିଆଁ ? ଏହା ଭାବି ମୁଁ ହାତ ଯୋଡ଼ି ବାଘ ରଜାଙ୍କୁ ପୁନର୍ବାର ସମ୍ବୋଧନ କରି କହିଲି - 'ତେବେ ଛାମୁ, ଆଦେଶ କରିବେ, ତେବେ ମୁଁ ଛାମୁଙ୍କ ନିକଟରେ ଓକିଲ ମୁକ୍ତାର ଦେଇ ମୋର ନିର୍ଦ୍ଦୋଷତା ପ୍ରମାଣ କରାଇବି ।' 'ଆରେ ଭାଇ ! ୟା ତ କହିଦେଲି, ମୁଁ ଯାଏଁ କୁଆଡ଼େ ? ବାଘ ଏକ

ଲମ୍ଫ ପ୍ରଦାନ କରି ମୁଖବ୍ୟାଦାନପୂର୍ବକ ମୋ ଉପରକୁ ଉହୁଙ୍କି ଆସିଲା । ମୁଁ ଜୀବନବିକଳରେ ପଛକୁ ନ ଚାହିଁ ଊର୍ଦ୍ଧ୍ୱଶ୍ୱାସରେ ପଳାଇଲି । ପଳାଉଥାଏଁ, ଏଣେ ମୁହଁରେ କହୁଥାଏଁ, ମୁଁ ଆଉ କେଭେଁ ଓକିଲ ମୁକ୍ତାରଙ୍କ ନାମ ତୁଣ୍ଡରେ ଧରିବି ନାହିଁ ।' ଖଣ୍ଡେଦୂର ବାଟ ଯାଇ ପଛକୁ ଚାହିଁ ଦେଖିଲି ଯେ ବାଘରଜା ମୋ ପଛଆଡୁ ଅନ୍ତର୍ଦ୍ଧାନ ହୋଇ ଯାଇଅଛନ୍ତି ଓ ଶୂନ୍ୟ ଶବଦ ହେଲା - 'ମୋଗଲବନ୍ଦିଆ ! ଯା, ଯା, ତୋ ବଞ୍ଚେଇ ବଳିଆର । ଏକା ଜାବୁଡ଼ାକେ ତୋ ଲହୁ ନିକାଲି ଦେଇଥା'ନ୍ତି । ଫେର ମୋ ରାଜ୍ୟକୁ ଆସିଲେ ଦେଖାଦେଖି !' ମୁଁ ସେ ଯାତ୍ରାରୁ ରକ୍ଷା ପାଇଲି । ଅତଏବ ଏହି ଅନୁଭବରୁ ମୁଁ ଉତ୍ତମରୂପେ ବୁଝିପାରିଲି ଯେ ଜଙ୍ଗଲ ରାଜ୍ୟକୁ ଓକିଲ ମୁକ୍ତାର ଆସିବା ତ ଦୂର କଥା, ଓକିଲ ମୁକ୍ତାରଙ୍କ ନାମ ଉଲ୍ଲେଖ କଲେ ଜଙ୍ଗଲୀ ଜନ୍ତୁମାନେ ଖାଇ ଯିବେ ।''

(ନୋଟ - ବାଇ ମାହାନ୍ତି ଯେ ପ୍ରାଣୀତତ୍ତ୍ୱାନୁଶୀଳନରେ ଏତେଦୂର ଅଗ୍ରସର ହୋଇଅଛନ୍ତି, ଏହା ମୋର ପୂର୍ବେ ଧାରଣା ନ ଥିଲା; ଖବରକାଗଜରେ ପଢ଼ିଥିଲି ଯେ ଜଣେ ସାହେବ ଆଫ୍ରିକାର ଜଙ୍ଗଲ ମଧ୍ୟରେ ବାସ କରି ବାନରମାନଙ୍କ ଭାଷାକୁ ଆୟତ୍ତ କରିଅଛନ୍ତି । ବର୍ତ୍ତମାନ ଫଳତଃ ଦେଖିଲି ଯେ ବାଇ ମାହାନ୍ତି ନିଜ ଅଭିଜ୍ଞତା ଦ୍ୱାରା ଉକ୍ତ ସାହେବଙ୍କୁ ଚିତା କାଟିଅଛନ୍ତି । ଏଠାରେ ଉଲ୍ଲେଖ କରିବା ଉଚିତ ଯେ କାର୍ଯ୍ୟୋପଲକ୍ଷରେ ମତେ କେତେକ ଥର ଗଡ଼ଜାତର ଦରବାରମାନଙ୍କରେ ହାଜର ହେବାକୁ ହୋଇଅଛି । ଇଂରେଜ ଶାସିତ ଭାରତବର୍ଷରେ ପ୍ରଚଳିତ ଆଇନ ଅନୁସାରେ ଫଉଜଦାର ଅଦାଲତରେ ଅଭିଯୁକ୍ତ ବ୍ୟକ୍ତି ତାହାର ପକ୍ଷ ସମର୍ଥନ କରିବା ପାଇଁ ଓକିଲ ମୁକ୍ତାର ନିଯୁକ୍ତ କରିବାର ଅଧିକାରୀ ଅଟେ - କିନ୍ତୁ ଗଡ଼ଜାତ ଅଦାଲତମାନଙ୍କରେ ଏ ବିଧି ନାହିଁ । ସେଠାରେ ଅଭିଯୁକ୍ତ ବ୍ୟକ୍ତି ନିଜର ପକ୍ଷ ସମର୍ଥନ କରିବା ସକାଶେ ଓକିଲ ନିଯୁକ୍ତ କରିବାର ଅଧିକାରକୁ ଆଇନ ଅନୁସାରେ ଦାବି କରି ନ ପାରେ । ଯେବେ ବିଚାରପତିଙ୍କର ଆସାମୀ ଉପରେ ଦୟା ହେବ, ସେ ଆସାମୀ ପକ୍ଷରୁ ଓକିଲ ଗ୍ରହଣ କରି ପାରିବେ, ନଚେତ୍ ନାହିଁ । ମୁଁ ଏ ନିପାତନର କାରଣ ଅନୁସନ୍ଧାନ କରି କିଛି ନିର୍ଣ୍ଣୟ କରିପାରି ନାହିଁ । ଶେଷକୁ ଭାବିଲି ଯେ ମନୁଷ୍ୟ ଗଡ଼ଜାତରେ ଜନ୍ମ ହେଲେ କିମ୍ୱା ଗଡ଼ଜାତରେ ପଦନିକ୍ଷେପ କଲା ମାତ୍ରକେ ସଭ୍ୟଜଗତର ସୀମାରୁ ବାହାରି ଆସେ । ସେଥିପାଇଁ ବୋଧହୁଏ ପଶୁଶ୍ରେଣୀଭୁକ୍ତ ହୁଏ ଏବଂ ଏଥିଯୋଗୁଁ ସଭ୍ୟ ସମାଜରେ ପ୍ରଚଳିତ ଗୋଟିଏ ନ୍ୟାଯ୍ୟ ଅଧିକାରରୁ ଗଡ଼ଜାତ ବଞ୍ଚିତ ହୁଏ । କିନ୍ତୁ ଫଳରେ ବାଇ ମାହାନ୍ତିଙ୍କ ଅନୁଭବରୁ ଦେଖିଲି ଯେ ଜଙ୍ଗଲୀ ଜନ୍ତୁମାନେ ମଧ ଓକିଲ ମୁକ୍ତାରଙ୍କ ନାମ ଶୁଣିଲେ ଚିହିଁକି ଉଠନ୍ତି ! ଏ ସମସ୍ୟାର ମୀମାଂସା ପ୍ରାଣୀତତ୍ତ୍ୱବିତ୍‌ମାନଙ୍କଠାରେ ନ୍ୟସ୍ତ ରହିଲା ।)

ବାଇ ମାହାନ୍ତିଙ୍କ ସଙ୍ଗେ ଜଙ୍ଗଲ ମଧ୍ୟରେ ଯାଉଁ ଯାଉଁ ଅନେକ ପାଲବିଣ୍ଡା ବାଟରେ ପଡ଼ିଥିବାର ଦେଖିଲି । ବାଇ ମାହାନ୍ତି କହିଲେ, ଏଗୁଡ଼ିକ ନ୍ୟାୟ ନିଶାପ ବେଳେ ଭାରି

କାମରେ ଆସେ । କଥାଟା ମୁଁ ଠିକ ପକଡ଼ି ପାରିଲି ନାହିଁ । ମନେକଲି, ଜଙ୍ଗଲକୁ କାଠ ହାଣି ଆସୁଥିବା ଶହରମାନେ ପିକା ଖାଇବାକୁ ଏ ପାଲବିଣ୍ଡାଗୁଡ଼ିକ ଆଣିଥିବେ ଓ ଜଙ୍ଗଲରୁ ଫେରିଲାବେଳେ ବାଟରେ ପକାଇ ଦେଇ ଯାଇଥିବେ ।

ବାଇ ମାହାନ୍ତି ତାଙ୍କ କଥା ପ୍ରସଙ୍ଗରେ ଅଗ୍ରସର ହେଲେ - ''ସଭ୍ୟ ଜଗତର ଅନେକ ଗୃହପାଳିତ ଜନ୍ତୁ ପେଟ ବିକଳରେ ଆସି ଜଙ୍ଗଲ ମଧ୍ୟରେ ପଶିଅଛନ୍ତି । ସେମାନେ ଜଙ୍ଗଲ ହାଓଆ ଗୁଣରୁ ହେଉ ବା ଜଙ୍ଗଲୀ ଜନ୍ତୁଙ୍କ ପିଛା ଧରିବା ଯୋଗୁଁ ହେଉ, ଜଙ୍ଗଲୀ ଜନ୍ତୁଙ୍କ ପ୍ରକୃତି ଅନୁସରଣ କରି ନଖ ବାଳ ବଢ଼ାଇ ପୂରା ଜଙ୍ଗଲୀ ହୋଇଅଛନ୍ତି । ବିରାଡ଼ି ସାଧାରଣତଃ ଗୃହପାଳିତ ଜନ୍ତୁ, କିନ୍ତୁ ସେମାନେ ଜଙ୍ଗଲକୁ ଆସି 'ବଣଭୁଆ' ପାଲଟି ଯା'ନ୍ତି ଓ ଭୟାନକ ଅବତାର ଧାରଣ କରି ମନୁଷ୍ୟକୁ କାମୁଡ଼ି ଗୋଡ଼ାନ୍ତି । ସେହିପରି କୁକୁରଗୁଡ଼ାକ ଗୃହପାଳିତ ପଶୁ ହେଲେହେଁ ସେଥିରୁ ଦିଓଟି ଗୋଟିଏ ଜଙ୍ଗଲରେ ଯାଇ ହିଂସ୍ର ବଲିଆ କୁକୁରର ବଂଶ ସୃଷ୍ଟି କରିଅଛନ୍ତି; ଏହିପରି ଦେଖନ୍ତୁ ଯେ ଛେଳିମାନେ ମୃଗଙ୍କ ପୂର୍ବପୁରୁଷ, ଘୁଷୁରିମାନେ ବାର୍ହାମାନଙ୍କ ପୂର୍ବପୁରୁଷ, ଚୁଙ୍ଗେଇ ମୂଷାମାନେ ପାହାଡ଼ିଆ ମୂଷାମାନଙ୍କ ଆଦିପୁରୁଷ, ଘୋଡ଼ାମାନେ ଘୋଡ଼ଙ୍ଗମାନଙ୍କର, ଗାଈମାନେ ଗୟଲମାନଙ୍କର ଓ ମଇଁଷିମାନେ ଅରଣା ମଇଁଷିମାନଙ୍କର ଓ ବିରାଡ଼ିମାନେ ବାଘମାନଙ୍କର ଓ ଢିଆମାନେ ଜଙ୍ଗଲୀ ସାପଙ୍କର ଓ ମନୁଷ୍ୟମାନେ ମାଙ୍କଡ଼ ବଂଶର ଆଦିପୁରୁଷ ଅଟନ୍ତି ।'' ବାଇ ମାହାନ୍ତିଙ୍କର ଏ ବର୍ଣ୍ଣନା କଳ୍ପନାପ୍ରସୂତ କି ବାସ୍ତବ, ତାହା ଭଗବାନ୍ ଜାଣନ୍ତି; କିନ୍ତୁ ପ୍ରାଣିତତ୍ତ୍ୱବିତ୍ ପଣ୍ଡିତମାନେ ଏ ସମ୍ବନ୍ଧରେ ଲେଖିଅଛନ୍ତି ଯେ - ଏକଦା ଗୋଟିଏ ମନୁଷ୍ୟ ଶିଶୁ କୌଣସି ଜଙ୍ଗଲୀ ଜନ୍ତୁ ହାବୁଡ଼ରେ ପଡ଼ିଥିଲା ଓ ସେ ଜନ୍ତୁଟି ଦୟା ବହି ସେ ଶିଶୁକୁ ଘେନିଯାଇ ସ୍ତନ୍ୟପାନ କରାଇ ବଢ଼ାଇଲା । ଏହିପରି କେତେକ ବର୍ଷ ଲାଳିତ ପାଳିତ ହେଲା ପରେ ଦେଖାଗଲା ଯେ ସେହି ଶିଶୁଟି ମନୁଷ୍ୟ ପରି ନ ଚାଲି ପଶୁପରି ଚାରି ଗୋଡ଼ରେ ଚାଲୁଥିଲା, ପଶୁପରି ବୋବାଉଥିଲା ଓ ମନୁଷ୍ୟ ଦେଖିଲେ ଗାତରେ ଲୁଚୁଥିଲା । ଯେବେ ମନୁଷ୍ୟ ଜଙ୍ଗଲୀ ଜନ୍ତୁଙ୍କ ସହବାସ କଲେ ଜଙ୍ଗଲୀ ଜନ୍ତୁରେ ପରିଣତ ହୋଇପାରେ, ତେବେ ଏକ ଜାତୀୟ ଜନ୍ତୁ ଅନ୍ୟ ଜାତୀୟ ଜନ୍ତୁଙ୍କ ସଙ୍ଗେ ବଢ଼ିଲେ ଅବଶ୍ୟ ବଦଳି ଯାଉଥିବେ, ଏଥିରେ ସନ୍ଦେହ ନାହିଁ । ସେ ଯାହାହେଉ, ଆଜି ମୁଁ ବାଇ ମାହାନ୍ତିଙ୍କୁ ହୃଦୟର ଅନ୍ତରତମ ପ୍ରଦେଶରୁ ଧନ୍ୟବାଦ ଦେଲି - କାରଣ ମନୁଷ୍ୟକୁ ବାନରଙ୍କର ଆଦି-ପୁରୁଷ ରୂପେ କଳ୍ପନା କରି ଆଜି ବାଇ ମାହାନ୍ତି ଆଚାର୍ଯ୍ୟ ଡାରଉଇନଙ୍କୁ (Darwin) ଏବଂ ସଭ୍ୟଜଗତର ବିବର୍ତ୍ତନବାଦୀ ବିଜ୍ଞାନକୁ ଚଉରସ ରାମାନନ୍ଦୀ ଚିତାଟାଏ କାଟି ଦେଲେ !

ବାଇ ମାହାନ୍ତି ମୋ ଠାରୁ ବିଦାୟ ନେଇ ତାଙ୍କ ପର୍ଣ୍ଣ କୁଟୀରକୁ ଗଲେ ଓ ଯିବା ସମୟରେ ମୁଁ ତାଙ୍କୁ ଟିକିଏ ଚୂନପତ୍ର ମାଗିବାରୁ ସେ ତାଙ୍କ ବଟୁଆ ମୋ ଆଡ଼କୁ ବଢ଼ାଇ ଦେଲେ । ବଟୁଆଟି ଫିଟାଇ ଦେଖେ ଯେ ସେଥିରେ ଗୋଟିଏ ଆପୁଡ଼ିବା ! ବାଇ

ମାହାନ୍ତିଙ୍କର ଏ ଅଭ୍ୟାସ ହେଲାଣି ବୋଲି ଜାଣିପାରି ମୁଁ ଟିକିଏ ଚମକି ପଡ଼ିଲି । ସେ ମୋ ଭଙ୍ଗୀ ବୁଝିପାରି କହିଲେ ଯେ ମାଳପ୍ରଦେଶର ହାଓଆ ଓ ଝର ପାଣି ଯୋଗୁଁ 'ଭୁଇଁଆ କର' ହେବାର ଭୟ ଥିବାରୁ ସେ ଚାରି ଛ' ମାସ ହେଲା ଟିକିଏ ଲେଖାଏଁ ଆପୁ ଅଭ୍ୟାସ କରିଅଛନ୍ତି । ମୁଁ ମନରେ ବିଚାରିଲି, ଜଙ୍ଗଲ ହାଓଆ ପ୍ରଭାବରୁ ଏହି ଘନ ପଦାର୍ଥ ଧୀରେ ଧୀରେ ତରଳ ଓ କ୍ରମଶଃ ବାୟବୀୟ ଆକାର ଧାରଣା କଲେ ବାଇ ମାହାନ୍ତି ଗଡ଼ଜାତରୁ ଫେରିଲାବେଳକୁ ତାଙ୍କ ବଂଶ ଉଚ୍ଛନ୍ନ ହୋଇଥିବେ । ପୂର୍ବେ ବାଇ ମାହାନ୍ତିଙ୍କ ଅନୁଭବର ମୂଳ କାରଣ ମୁଁ ବୁଝିପାରି ନ ଥିଲି, କିନ୍ତୁ ବର୍ତ୍ତମାନ ଅଫିମ ଡିବାଟି ଦେଖି ସବୁ ସନ୍ଦେହ ଯାକ ଖୋଲାସା ହୋଇଗଲା ।

ବାଇ ମାହାନ୍ତିଙ୍କଠାରୁ କେତେଗୁଡ଼ିଏ ଅଭିଜ୍ଞତା ଲାଭ କରି ସେହି ଅଭିଜ୍ଞତା ଉପରେ ନିର୍ଭର କରି ଗଡ଼ଜାତର ଘୋର ଜଙ୍ଗଲ ମଧ୍ୟ ଦେଇ ନିର୍ଭୀକ ଭାବରେ ଅଗ୍ରସର ହେଲି । ପରିଶେଷରେ ଆପଣା ଗନ୍ତବ୍ୟ ସ୍ଥାନରେ ପହଞ୍ଚି କର୍ତ୍ତବ୍ୟ କାର୍ଯ୍ୟ ସମାଧାନ କରି ବର୍ତ୍ତମାନ ମୁଁ ସ୍ୱସ୍ଥାନକୁ ଫେରି ଆସିଅଛି । ଏହି କେତେକ ଦିନ ଅନୁପସ୍ଥିତ୍ ଯୋଗୁଁ ଗତ ଦୁଇ ସଂଖ୍ୟା 'ଉତ୍କଳ ସାହିତ୍ୟ' ପାଇଁ କିଛି ଲେଖି ପାରି ନ ଥିଲି ଓ ଗଡ଼ଜାତରେ ଏହି କେତେଦିନ ଚଳି ଯେଉଁ ସାମାନ୍ୟ ଅଭିଜ୍ଞତା ଲାଭ କରିଅଛି, ତହିଁରେ ଅବଶ୍ୟ ପାଠକମାନଙ୍କର ଦାବି ଅଛି, ତାହା ମୁଁ କଦାପି ଅସ୍ୱୀକାର କରୁ ନାହିଁ । ଗଡ଼ଜାତରେ କେତେକ ମହାନୁଭବ ବ୍ୟକ୍ତିଙ୍କ ସ୍ୱଭାବ ଚରିତ୍ର ଆଦି ଦେଖି ମୁଁ ବାସ୍ତବିକ ବିମୋହିତ ହୋଇଅଛି ଓ କେତେକ ଜନ୍ତୁଙ୍କ ଗତିବିଧି ଦେଖି ସ୍ତମ୍ଭୀଭୂତ ହୋଇଅଛି । ଗଡ଼ଜାତର ରାଜା ଓ ରାଜବଂଶୀୟ ବ୍ୟକ୍ତିମାନଙ୍କଠାରୁ ତଥା ରାଜକର୍ମଚାରୀମାନଙ୍କଠାରୁ ମୁଁ ଆଶାତିରିକ୍ତ ସାହାଯ୍ୟ, ସ୍ନେହ ଓ ବନ୍ଧୁତା ଲାଭ କରି କୃତାର୍ଥ ହୋଇଅଛି । କାର୍ଯ୍ୟଗତିରେ ଅନେକ ଆଉଁଶା ଘଷା ପାଇଅଛି ଓ ଅନେକ ଜନ୍ତୁଙ୍କର ଗର୍ଜନ ରଡ଼ି ମଧ୍ୟ ସମ୍ଭାଳି ଅଛି । ଇତିମଧ୍ୟରେ ସମୟ ସମୟରେ କେତେକ ଅରଣା ଜନ୍ତୁଙ୍କ ହାବୁଡ଼ରେ ପଡ଼ିଅଛି, କିନ୍ତୁ ରାଜାମାନଙ୍କ ପ୍ରସାଦରୁ ସେମାନଙ୍କ ଅସ୍ତ୍ରଶସ୍ତ୍ର ଓ ଅନୁଚରମାନଙ୍କଦ୍ୱାରା ବେଷ୍ଟିତ ହୋଇ ମୁଁ ଜଙ୍ଗଲ ବୁଲୁଥିବାରୁ କୌଣସି ଜଙ୍ଗଲୀ ଜନ୍ତୁ ମୋର ଅନିଷ୍ଟ କରି ନ ପାରି ରବେଇ ଖବେଇ ହୋଇ ଲାଙ୍ଗୁଡ଼ ପିଟି ଦେଇ ଓ ଗାଲଫିଡ଼ିକି ମାରି ଅଗତ୍ୟା ମତେ ଉଦରସାତ୍ କରିବାର ଆଶା ପରିତ୍ୟାଗ କରି ପୁନର୍ବାର ଜଙ୍ଗଲ ଭିତରେ ଉଭେଇ ଯାଇଅଛନ୍ତି । ଯେବେ ଈଶ୍ୱର ସମୟ ଓ ସୁଯୋଗ ଦିଅନ୍ତି, ତାହାହେଲେ ଅନ୍ୟ ଉପାୟରେ ଅନ୍ନସଂସ୍ଥାନ ନ ହେଲେ ବାଇ ମାହାନ୍ତିଙ୍କ ଦାନାରେ ଧୂଳି ଦେଇ ଗଡ଼ଜାତର ହାଲଚାଲ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରି ପାଠକମାନଙ୍କ ଠାରୁ କିଛି କିଛି ଟିକସ ଅସୁଲ କରିପାରିବି ବୋଲି ଆଶା ଅଛି - ତେବେ ବର୍ତ୍ତମାନ ମୋର ଅଭିଜ୍ଞତା ନିତାନ୍ତ ଅଳ୍ପକାଳସ୍ଥାୟୀ, ନଗଣ୍ୟ, ସୀମାବଦ୍ଧ ଓ ଅପରିପକ୍ୱ ଥିବାରୁ ମୁଁ ସେଗୁଡ଼ିକ ପ୍ରକାଶ କରିବାକୁ କୁଣ୍ଠିତ । ଅତଏବ ଅଗତ୍ୟା ଆପଣମାନଙ୍କୁ

ବର୍ତ୍ତମାନ ନିମନ୍ତେ ବାଇ ମାହାନ୍ତିଙ୍କ ନୈପାତନିକ ଅନୁଭବର ବର୍ଣ୍ଣନାରେ ସନ୍ତୁଷ୍ଟ ହୋଇ ରହିବାକୁ ପଡ଼ିବ ।

ଗଡ଼ଜାତରୁ ବାହାରି ପୁନର୍ବାର ଆସି ସଭ୍ୟଜଗତ୍‌ରେ (ଓଃ ରାମ ! ଇଂରେଜ ଶାସିତ ଭୂଭାଗରେ) ପହଞ୍ଚି ଦେଖିଲି ଯେ ଭାଇଯାକ ଏ ବର୍ଷ ଉତ୍କଳ ସମ୍ମିଳନୀର ଅଧିବେଶନ କରିବାର ଉଦ୍‌ଯୋଗ କରୁଅଛନ୍ତି । ଭଲ କଥା । ଉତ୍କଳ ସମ୍ମିଳନୀ ପାଇଁ ମୁଁ ତ ଦିନେ ହେଲେ ଘଣ୍ଟାଏ ପରିଶ୍ରମ କରିଥିଲି, ଆଜି ବଳ ନାହିଁ ବା ସୁବିଧା ନାହିଁ ବା ମନ ନାହିଁ ବୋଲି ଅଣ୍ଟା ଭିଡ଼ି ପାରୁ ନାହିଁ । କିନ୍ତୁ ଉତ୍କଳ ସମ୍ମିଳନୀ ପ୍ରତି ଗୋଟାଏ ସହଜ ମମତା ଅଛି - ସେତକ ଲୋପ ହେବାର ନୁହେଁ । ପ୍ରକୃତ କଥା କହିବାକୁ ଗଲେ ନାନା କାରଣରୁ ଉତ୍କଳ ସମ୍ମିଳନୀର ଭବିଷ୍ୟତ୍ ପ୍ରତି ମୁଁ ଭାରି ସନ୍ଦିହାନ ହୋଇ ପଡ଼ିଅଛି । କିନ୍ତୁ ଦେଶର ବରପୁତ୍ରମାନେ ଯଦି ଚେଷ୍ଟା କରି ଉତ୍କଳୀୟ ଜାତିର ମ୍ରିୟମାଣ ଜୀବନରେ ପୁନର୍ବାର ମୃତସଞ୍ଜୀବନୀ ସୁଧା ଢାଳି ଏକତା ମନ୍ତ୍ରରେ ଦୀକ୍ଷିତ ହୋଇ ପୁନର୍ବାର ଉତ୍କଳ ସମ୍ମିଳନୀକୁ ଆଣି ଠିଆ କରାଇ ଦେଇ ପ୍ରସ୍ତାବିତ ଅନୁଷ୍ଠାନମାନଙ୍କରେ ମନପ୍ରାଣ ଢାଳି ଦିଅନ୍ତି, ତାହାହେଲେ ଉତ୍କଳର ଅମାନିଶା ପୁନର୍ବାର ଜ୍ୟୋତ୍ସ୍ନାମୟ ହେବ, ଏଥିରେ ଆଉ ସନ୍ଦେହ କଣ ? କିନ୍ତୁ ମାସେ ଖଣ୍ଡେ ରାତି ଅନିଦ୍ରା ହୋଇ ଛାମୁଡ଼ିଆଟା ବାନ୍ଧି ଦେଇ ବାରଦ୍ୱାର ଲୁଣ୍ଠାଇପୁଣ୍ଠାଇ କନା କତରା ଗୋଟାଇ ଆଣି ଜଳାଇ ଦେଇ ଫେର ବର୍ଷକ ସକାଶେ ନିଶ୍ଚିନ୍ତ ହୋଇ ଘୁଙ୍ଗୁଡ଼ି ମାରିଲେ ଚଳିବ ନାହିଁ । ଯେଉଁମାନେ କାର୍ଯ୍ୟ ନ କଲେ ତାଙ୍କୁ ତଡ଼ି ଦିଅ, ଯେଉଁମାନେ କାମରେ ଖିଲାପ କଲେ ତାଙ୍କୁ ବଦଳାଇ ଦିଅ । ନୂତନ ଲୋକ, ନୂତନ କଳ, ନୂତନ ବଳ, ନୂତନ ସାହସ, ନୂତନ ଉପାୟ ପ୍ରୟୋଗ କରି ଦେଶ ଉଦ୍ଧାର କରିବାକୁ ଚେଷ୍ଟା କର । ଜାତିଟାଯାକ ସମସ୍ତେ ସୁନାପୁଅ ନ ଥା'ନ୍ତି । ତା ମଧ୍ୟରୁ କେତେ ଜଣ ବରପୁତ୍ର ସ୍ୱୀୟ ପ୍ରତିଭା, ପରିଶ୍ରମ ଓ ବୁଦ୍ଧିବଳରେ ନେତୃତ୍ୱ ଲାଭ କରି ଅନ୍ୟ ସମସ୍ତଙ୍କୁ ଯେଉଁ ଆଦେଶ ପାଳନ କରିବାକୁ କହନ୍ତି, ଜାତିର ଇତର ବ୍ୟକ୍ତିମାନେ ବାଧ ହୋଇ ସେହି ଆଦେଶ ପାଳନ କରନ୍ତି - ସେ କ୍ଷେତ୍ରରେ କୈଫିୟତ୍ ତଲବ କରିବାର ଦରକାର ହୁଏ ନାହିଁ । ଯିଶୁ, ବୁଦ୍ଧଦେବ, ଚୈତନ୍ୟ, ଶଙ୍କରାଚାର୍ଯ୍ୟ, ରାମମୋହନ, ରାମକୃଷ୍ଣ ପରମହଂସ, ଈଶ୍ୱରଚନ୍ଦ୍ର, କେଶବଚନ୍ଦ୍ର କାହାକୁ କୈଫିୟତ୍ ତଲବ କରୁ ନ ଥିଲେ କିମ୍ବା କାହାକୁ କୈଫିୟତ୍ ଦେଉ ନ ଥିଲେ । ସେମାନେ ନିଜ ନିଜ କର୍ତ୍ତବ୍ୟ ପଥରେ ଅଗ୍ରସର ହେଉଥିଲେ ଓ ଶେଷରେ ଜଗତ୍ ସେମାନଙ୍କ ଅନୁସରଣ କଲା । ପରକୁ କିମ୍ବା ସାଇପଡ଼ିଶାଙ୍କୁ କୈଫିୟତ୍ ଦେବା ଭୟରେ ଯେବେ ସମ୍ମିଳନୀର ଆଗାମୀ ଅଧିବେଶନର ଯୋଗାଡ଼ ହେଉଥାଏ, ତେବେ ଆମ ଜାତିର ଭବିଷ୍ୟତ୍ ଆମ ହାତ ଆଗରେ ଥୁଆ - କିନ୍ତୁ ଯଦି ପ୍ରକୃତରେ କର୍ତ୍ତବ୍ୟନିଷ୍ଠା ଓ ଜାତୀୟ ମମତା ଦ୍ୱାରା ପରିଚାଳିତ ହୋଇ ସମ୍ମିଳନୀର କର୍ତ୍ତୃପକ୍ଷମାନେ ଏହି ଅନୁଷ୍ଠାନରେ ହସ୍ତକ୍ଷେପ କରିଥା'ନ୍ତି, ତାହାହେଲେ ଜାଣିବାକୁ ହେବ ଯେ ବର୍ତ୍ତମାନ ସୁଦ୍ଧା ଓଡ଼ିଶାର ସୁଦିନ ଉପସ୍ଥିତ ହେବାର ଆଶା ସୁଦୂର

ପରାହତ ନୁହେଁ । ଅତଏବ ଗୁରୁଜନସ୍ଥାନୀୟ ନେତୃବୃନ୍ଦଙ୍କୁ ପ୍ରାର୍ଥନା କରୁଅଛି ଯେ ସେମାନେ ମନପ୍ରାଣ ଦେଇ ଜାତୀୟ ଉନ୍ନତି ନିମନ୍ତେ ଚେଷ୍ଟା କରି ଜାତିର ଧନ୍ୟବାଦ ଓ ଆଶୀର୍ବାଦର ଅଧିକାରୀ ହେଉନ୍ତୁ । ତାହା ନ କରି କେବଳ 'ହୋ'ରେ ମାତିବା ପାଇଁ ଓ ବୁଲବୁଲକୁ ପାଚିଲା ଫଳ ଦେଖାଇବା ପାଇଁ ଅଧିବେଶନ କରି ଦେଇ ସମ୍ମିଳନୀ ବାସି ଦିନ ସମସ୍ତେ ଫେର ତାଟି ଧଡ଼ାଟିମାନ କିଳି ଦେଇ ମାଠଟିମାନ ଘୋଡ଼ିଘାଡ଼ି ହୋଇ ଶୋଇବେ, ତେବେ ଆଜି ଏତିକି ।

ଏଥିମଧ୍ୟରେ ଓଡ଼ିଶାର ଆଉ ଗୋଟିଏ ଉଲ୍ଲେଖଯୋଗ୍ୟ ପ୍ରସଙ୍ଗ - ଶିକ୍ଷାର୍ଥୀ ଓଡ଼ିଆଙ୍କର ବିଲାତ ଯାତ୍ରା । କେତେକ ଦିନ ପୂର୍ବେ କଟକର ଶ୍ରୀମାନ୍ ରିଚାର୍ଡ଼ ରାଉତ ଚମଡ଼ା ତିଆରି କରିବା ପ୍ରଣାଳୀ ଶିକ୍ଷା କରିବା ନିମନ୍ତେ ବିଲାତ ଯାଇଥିଲେ ଓ ଅବଧି ସେଠାରେ ଉକ୍ତ ବିଦ୍ୟାଶିକ୍ଷା କରୁଅଛନ୍ତି । ଗତବର୍ଷ କନିକାର ମାନ୍ୟବର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ବାରିଷ୍ଟରୀ ପଢ଼ିବା ସକାଶେ ବିଲାତ ଯାଇଥିଲେ ଓ ବର୍ତ୍ତମାନ କଟକ ଜିଲ୍ଲା ନିବାସୀ ଶ୍ରୀମାନ୍ ହେମଚନ୍ଦ୍ର ଶତପଥୀ ଓ ପୁରୀ ଜିଲ୍ଲା ନିବାସୀ ଗଞ୍ଜାମୀ ଓକିଲ ଶ୍ରୀଯୁକ୍ତ ବିଶ୍ୱନାଥ ମିଶ୍ର ବାରିଷ୍ଟରୀ ପଢ଼ିବା ନିମନ୍ତେ ବିଲାତ ଯାତ୍ରା କରିଅଛନ୍ତି । ଏଗୁଡ଼ିକ ଅନୁନ୍ନତ ଓଡ଼ିଆ ଜାତି ପକ୍ଷରେ ଅବଶ୍ୟ ଶୁଭ ସଂବାଦ, ଏଥିରେ ସନ୍ଦେହ ନାହିଁ । ଉତ୍କଳର ସଭ୍ୟ ସମାଜ ମଧ୍ୟରୁ ମାନ୍ୟବର ମଧୁସୂଦନ ଦାସ ସି.ଆଇ.ଇ. ମହାଶୟ ସର୍ବପ୍ରଥମେ ବିଲାତ ଯାଇ ଓଡ଼ିଶା ପ୍ରତି ବିଲାତବାସୀମାନଙ୍କର ଦୃଷ୍ଟି ଆକର୍ଷଣ କରି ବିଲାତ ଯାତ୍ରାର ପଥପ୍ରଦର୍ଶକ ହୋଇଅଛନ୍ତି । ଯାହାହେଉ ଶିକ୍ଷାର୍ଥୀ ଯୁବକମାନେ କୃତକାର୍ଯ୍ୟ ହୋଇ ବିଲାତରୁ ଫେରିଆସନ୍ତୁ, କାୟମନୋବାକ୍ୟରେ ସମସ୍ତେ ଏହାହିଁ ପ୍ରାର୍ଥନା କରିବା ଉଚିତ । ଆଶା କରାଯାଏ ଯେ ଭବିଷ୍ୟତ୍‌ରେ ଏମାନଙ୍କ ଉଦାହରଣ ଅନୁସରଣ କରି ଅନ୍ୟାନ୍ୟ ଉତ୍କଳୀୟ ଯୁବକମାନେ ଶିକ୍ଷାର ଅନ୍ୟାନ୍ୟ ବିଭାଗରେ ପ୍ରବେଶ କରିବାପାଇଁ ବିଲାତ ଯିବେ ଓ ତେଣୁ ଫେରି ଆସି ଦେଶର ମୁଖୋଜ୍ଜ୍ୱଳ କରିବେ ।

୭/୮ ବରଷ ତଳେ କଥା ପ୍ରସଙ୍ଗରେ ମତେ ଜଣେ ବଙ୍ଗୀୟ ଭ୍ରାତା ପଚାରିଥିଲେ, "ଗୋପାଳବାବୁ, ମିଷ୍ଟର ଦାସଙ୍କ ଛଡ଼ା ତୁମ ଦେଶରୁ ଆଉ କେତେଜଣ ପର୍ଯ୍ୟନ୍ତ ବିଲାତ ଯାଇଅଛନ୍ତି ?" ମୁଁ ଖଡ଼େଦମ୍ ଉତର କଲି, "ଶହେ ଖଣ୍ଡେ ଓ ଏହା ଛଡ଼ା ଆଫ୍ରିକା ଓ ଆମେରିକାକୁ ମଧ୍ୟ ଓଡ଼ିଆ ପ୍ରବେଶ କରିଅଛନ୍ତି ।" ଏହା ଶୁଣି ବନ୍ଧୁ ଟିକିଏ ହତବୁଦ୍ଧି ହୋଇଥିଲେ ଓ ଦଣ୍ଡେ ଖଣ୍ଡେ ମୋ ଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଅନାଇ ରହିଲେ । ବନ୍ଧୁଙ୍କୁ ଜଣା ନ ଥିଲା ଯେ ବମ୍ବେଠାରୁ ବିଲାତକୁ ଓ ଅନ୍ୟ ଦେଶମାନଙ୍କୁ ଯେଉଁ ଜାହାଜମାନ ଯାଏ, ସେଥିରେ ଭାରତୀୟ ଲସ୍କରମାନେ କାମ କରନ୍ତି ଓ ଆଫ୍ରିକାର ଆଖୁ କିଆରିମାନଙ୍କ ପାଇଁ ଯେଉଁ କୁଲିମାନେ ଯା'ନ୍ତି, ସେମାନେ ଅଧିକାଂଶ ଭାରତୀୟ । ଏପରି ସ୍ଥଳରେ ଏହି ଉଚ୍ଚପଦମାନଙ୍କରେ ଓଡ଼ିଆ କୁଲିଙ୍କର ଯେ ନ୍ୟାଯ୍ୟ ଦାବି ନାହିଁ, ଏହା କିଏ କହିବ ?

ଅତଏବ ମୋର ଉତ୍ତର କେତେ ଦୂର ସୁସଙ୍ଗତ, ତାହା ସହୃଦୟ ପାଠକମାନେ ଉପଲବ୍ଧି କରିପାରିବେ । ବଙ୍ଗୀୟ ବନ୍ଧୁ ଏ କୈଫିୟତ୍ ଶୁଣି କହିଲେ ଯେ ସେ ମତେ ବ୍ୟଙ୍ଗ ଭାବରେ ପ୍ରଶ୍ନ କରି ନ ଥିଲେ । ମୁଁ କହିଲି ଯେ ମୁଁ ମଧ ବ୍ୟଙ୍ଗ ଭ ବରେ ତାଙ୍କ ପ୍ରଶ୍ନର ଉତ୍ତର କରି ନାହିଁ । କାରଣ ଭାରତର ସଭ୍ୟତାରେ ଓଡ଼ିଶାର ଯେଉଁ ଦାବି ଓ ଅଧିକାର ଅଛି, ଭାରତୀୟ କୁଲିଙ୍କ ମଧରେ ତ ଓଡ଼ିଆ କୁଲିଙ୍କର ସେହି ଦାବି ଓ ଅଧିକାର ଥିବା ନ୍ୟାୟସଙ୍ଗତ ଓ ଅନିବାର୍ଯ୍ୟ ।

୫।୭ ବର୍ଷ ପୂର୍ବେ ଓଡ଼ିଆଙ୍କର ବିଲାତ ଯାତ୍ରା ସମ୍ବନ୍ଧରେ ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଥିଲି, ତାହା ଅନୁମାନ ମାତ୍ର ଥିଲା । ଫଳତଃ ଘଟନାଚକ୍ରରେ ଏହି ୫।୭ ବର୍ଷ ମଧରେ ସୌଭାଗ୍ୟକ୍ରମେ ୪।୫ ଜଣ ବିଲାତ ଓ ଆଫ୍ରିକାରୁ ପ୍ରତ୍ୟାଗତ ଓଡ଼ିଆଙ୍କ ସଙ୍ଗେ ଦେଖା ହୋଇଅଛି । ଅତଏବ ମୋ ଅନୁମାନଟା ଯେ ତୁଚ୍ଛା ମିଛ ବା ନିପଟ ବାହାପିଆ କଥା ନୁହେଁ, ପାଠକମାନେ ତାହା ଅବଶ୍ୟ ସ୍ୱୀକାର କରିବେ । ମୋର କେତେକ ବନ୍ଧୁ ମଧ ସେ ବିଲାତ ଫେରନ୍ତାଙ୍କୁ ଦେଖିଅଛନ୍ତି । ଅତଏବ ମୋ କଥାଗୁଡ଼ାକ ଉଡ଼ାଇ ଦେବାର ଜୁ' ନାହିଁ ।

ଆଜି ଯେଉଁମାନେ ଶିକ୍ଷା ନିମନ୍ତେ ବିଲାତ ଓ ବିଦେଶକୁ ଯାଇଅଛନ୍ତି, ସେମାନେ ଓଡ଼ିଶାର ଆଶା ଭରସାସ୍ଥଳ । ଓଡ଼ିଶାର ଭବିଷ୍ୟତ୍ ଅନେକ ପରିମାଣରେ ସେମାନଙ୍କ ଉପରେ ନିର୍ଭର କରେ । କାରଣ ସେମାନେ କୃତକାର୍ଯ୍ୟ ଓ ସୁନାପୁଅ ହୋଇ ଫେରି ଆସିଲେ ଭବିଷ୍ୟତ୍‌ରେ ଅନେକ ଓଡ଼ିଆ ଯୁବକଙ୍କୁ ବିଲାତ ପଠାଇବା ପାଇଁ କାହାରି କିଛି ଆପତ୍ତି ରହିବ ନାହିଁ । ନଚେତ୍, ଈଶ୍ୱର ନ କରନ୍ତୁ, ଯେବେ ସେମାନେ ଫସର ଫାଟି ଇଡ଼ି ଯିବେ ବା ଲୋସଡ଼ି ପଡ଼ିବେ, ତାହାହେଲେ ଯୁବକମାନଙ୍କୁ ବିଲାତ ପଠାଇବା ପାଇଁ ଏଣିକି ଅଭିଭାବକମାନେ ସହଜରେ ସ୍ୱୀକୃତ ହେବେ ନାହିଁ ଓ ଓଡ଼ିଶା ମାତାଙ୍କ ଭାଗ୍ୟ ଭଣ୍ଡାରରେ ବର୍ତ୍ତମାନ ଦିନାକେତେ ସକାଶେ ଚବ୍‌ସ୍ (chubbs) ତାଲା ଠୁଙ୍କାଯିବ । ଆଜି ଥାଉ ।

ଉତ୍କଳ ସାହିତ୍ୟ/୧୪ଶ ଭାଗ/୮ମ ସଂଖ୍ୟା/୧୩୧୮ ସାଲ ।

## ।। ବତିଶ ।।

କେତେକ ବନ୍ଧୁଙ୍କର ମତ ଯେ ଦୁନିଆର ହାଲଚାଲକୁ ଓଡ଼ିଶା ବା ଉତ୍କଳ ପ୍ରଦେଶ ମଧରେ ସୀମାବଦ୍ଧ ରଖିବା ସମୀଚୀନ ନୁହେଁ । କଥାଟା ଠିକ୍, କିନ୍ତୁ ପାଠକ ଅବଧାନ ! ବୁଝିଲେ କି ନା ? ପଡ଼ିଶା ବୁଲି ବାହାରିଲେ ମୂଳଧନ ଆବଶ୍ୟକ ନାହିଁ, ଯାନବାହନ ଦରକାର ନାହିଁ, ସାଜସଜ୍ଜା ନ ଥିଲେ ମଧ ଚଳେ, ବାଟଖରଚ ପାଇଁ ମଧ ଭାବିବାକୁ ପଡ଼େ ନାହିଁ । ଏଥିପାଇଁ ଟିକିଏ କସରତ୍ କରିଦେଲେ ଓଡ଼ିଶା ଭଣ୍ଡାରରୁ ଦୁନିଆର ହାଲଚାଲ ପାଇଁ କିଛି ମାଲମସଲା ଯୋଗାଡ଼ ହୋଇପାରେ; କିନ୍ତୁ ହାଲଚାଲ ପାଇଁ ସୁବର୍ଣ୍ଣରେଖା ଓ ଋଷିକୁଲ୍ୟା ପାରି ହେଲେ ପ୍ରଥମେ ଦରକାର ବାଟଖର୍ଚ୍ଚ, ତା ପରେ

କମର୍ ଢୋର୍ ଓ କେତେକ ସ୍ଥଳରେ କଦର ଢୋର୍, ଅର୍ଥାତ୍ କଥାଟାକୁ ଉପମା, ଅନୁପ୍ରାସ ବାଦ ଦେଇ ଠୋ ଠୋ କହିଦେବାକୁ ହେଲେ, କଥାଟା ଏହି - ସୁବର୍ଣ୍ଣରେଖା ଓ ଋଷିକୂଲ୍ୟା ପାରି ହୋଇ ଭାରତର ସମତଳ ଭୂମିରେ ବିଚରଣ କରିବା ଭଳି ତାକତ୍ ଆମ ଭିତରେ କେତେ ଲୋକଙ୍କର ଅଛି ? ସମସ୍ତେ ଅଛୁ ବହୁତ କୂଅ ବେଙ୍ଗ । କେବଳ ଦିଓଟି ଗୋଟିଏ ଯେ କୂଅ ଭିତରୁ ମୁଣ୍ଡ ଟେକି କୂଅ ଉପରେ ଥିବା ବିସ୍ତୃତ ମଇଦାନକୁ ଅନାଉ ଅଛନ୍ତି, ସେଗୁଡ଼ାକ ନିପାତନ ଅର୍ଥାତ୍ ବେଙ୍ଗ ହାବିଳି । ସେମାନେ ବିଦେଶୀ ବାଣକାରମାନଙ୍କ ହାତରୁ ମାଡ଼ ଖାଇ କାରିଗରମାନଙ୍କ ପେଞ୍ଚର କରାମତି ଅନୁସାରେ ଏଠାରେ ଦର୍ଶକମାନଙ୍କ ସମ୍ମୁଖରେ ଗୋଟାଏ ଆଲୋକର ରେଖା ଦେଖାଇ ଦେଇ ଉପରକୁ ଉଠିଗଲେ । ଆମେ ସମସ୍ତ ଥକ୍‌କା ହୋଇ ଉପରକୁ ଅନାଇଁ ରହିଅଛୁଁ ଓ ବାଃ ବାଃ କରୁଅଛୁଁ । 'ଆସମାନ ଗୋଲା' ଭଳି ସେମାନଙ୍କ ଦେହରୁ କେତେ ରଙ୍ଗର ନାଲି, ନେଳି, ସବୁଜ ଆଲୋକ ବିନ୍ଦୁ ସବୁ ଖସୁଅଛି । ଓଡ଼ିଶା ତମାମ ସ୍ତମ୍ଭୀଭୂତ ହୋଇ 'ଚିତ୍ରାର୍ପିତାରମ୍ଭ' ପରି ଦଣ୍ଡାୟମାନ; କିନ୍ତୁ ସେଗୁଡ଼ିକ କେଉଁଆଡ଼େ ଉଭେଇଯିବେ ଓ କିଛିଦିନ ପରେ ଦର୍ଶକମାନେ ଫେର ସେହି ପୂର୍ବର ଶୀତରେ ମଇଦାନ ମଧ୍ୟରେ ଠିଆ ହୋଇ ଅନ୍ଧାର ରାତିରେ ଥର୍ ଥର୍ ହେଉଥିବେ । ସେଥିପାଇଁ ଭାବୁଥିଲି ଯେ ଓଡ଼ିଶାର ଏ ଅବସ୍ଥାରେ ଓଡ଼ିଶାରୁ ବାହାରି ପଦାକୁ ଯିବା ଭଳି ଅଣ୍ଟିରିପୁଅ କେତେଜଣ ଅଛନ୍ତି ? ଯେ ହଲେ ଦେଢ଼ହଲ ଅଛନ୍ତି, ସେମାନେ ହଳୀଷା, ଲାଙ୍ଗଳୀଷା । ଛାଡ଼ ସେ କଥା । କେତେକ ବନ୍ଧୁ କଥା ପ୍ରସଙ୍ଗରେ ମତେ କହିଲେ ଯେ 'ଦୁନିଆର ହାଲଚାଲ'ର 'ନାମ ବଡ଼ା', କିନ୍ତୁ ଆଜି ପର୍ଯ୍ୟନ୍ତ 'ଦର୍ଶନ ଥୋଡ଼ା' ହେଉଅଛି । ଅର୍ଥାତ୍ ଓଡ଼ିଶା ମଧ୍ୟରେ ଘାଉଁରି ଖାଇ ବୁଲୁଅଛି । ଲେଖକଙ୍କର ସବୁଦିନେ ସଦ୍ୟ ପ୍ରସୂତ କୁକୁରଛୁଆଙ୍କ ଅବସ୍ଥା ହେଲେ ଚଳିବ କାହୁଁ ? ମୁଁ ଉତ୍ତର କଲି, ''ସେ ତାକତ ଥିଲେ ଲେଖକ ରାମ ପଧାନ ଶ୍ୟାମ ବିଶ୍ୱାଳଙ୍କ ବାଡ଼ିଆଡ଼େ ପଡ଼ିଥାନ୍ତେ କିଆଁ ?''

ବର୍ତ୍ତମାନ ଉକ୍ତ ପ୍ରସ୍ତାବ ବିଚାରାଧୀନ । ଓଡ଼ିଶାର ସବୁ ପ୍ରସ୍ତାବଗୁଡ଼ିକର ଦଶା ସଙ୍ଗେ ଯେବେ ଏ ପ୍ରସ୍ତାବଟିର ଦଶା ମେଳ ହୋଇଯାଏ, ତାହାହେଲେ ରାଜଯୋଟକ ହେବ ଓ ସମସ୍ତେ ଏକା ଯୋଗକେ ଖଲାସ ପାଇବା ।

ଓଡ଼ିଶାର କେତେଗୋଟି ଶିକ୍ଷାର୍ଥୀ ଯୁବକ ବର୍ତ୍ତମାନ କଲିକତାରେ ଅବସ୍ଥାନ କରି ଶିକ୍ଷାଲାଭ କରୁଅଛନ୍ତି । କଲିକତାଠାରେ ୨।୩ ଥର ସେଥିରୁ କେତେ ଜଣଙ୍କ ସଙ୍ଗେ ସାକ୍ଷାତ୍ ହୋଇଥିଲା । ଦେଖିଲି ଯେ, ସେମାନଙ୍କ ମନ ପ୍ରଶସ୍ତତା ଲାଭ କରିଅଛି ଓ ସେମାନଙ୍କ ଆଶାର ପରିସର ବିସ୍ତୃତି ଲାଭ କରିଅଛି । ଯେତେବେଳେ ଗଭର୍ଣ୍ଣମେଣ୍ଟ ଏଠାରୁ ଆଇନ କ୍ଲାସ୍ ଉଠାଇ ଦେଇ ଓଡ଼ିଶାର ଯୁବକମାନେ କଲିକତାରେ ଆଇନ ପଢ଼ିବାର ପ୍ରସ୍ତାବ ଉପସ୍ଥାପିତ କରିଥିଲେ, ସେତେବେଳେ ଅନେକ ଲୋକ ଟିକିଏ ଲଣ୍ଡଭଣ୍ଡ

ଓ ଧଣ୍ଡସଣ୍ଡ ହୋଇଥିଲେ; ମୁଁ କିନ୍ତୁ ସେତେବେଳେ ଡକା ଛାଡ଼ିଥିଲି, ''ଥୟ ଧର, ତୁଚ୍ଛା ହୁଲର ପକାଇଲେ ତଣ୍ଟି ଦରଜ ସାର ହେବ ।'' ସତକୁ ସତ ଗରିବ ଡାକ ଶେଷବେଳକୁ ଶୁଭେ । ଫଳତଃ ତଣ୍ଟି ଦରଜ ଓ ହାତଟିପ ଦରଜ ମାତ୍ର ସାର ହେଲା ଓ ଓଡ଼ିଶା ପିଲାମାନେ କଲିକତାରେ Law ପଢ଼ିବାର ସ୍ଥିର ହେଲା । ଗଭର୍ଣ୍ଣମେଣ୍ଟ ଏ ବିଧାନ କରିବା ଦ୍ୱାରା ଓଡ଼ିଶାର ପ୍ରଭୂତ ମଙ୍ଗଳ ସାଧନ କରିଅଛନ୍ତି । ଯେତେବେଳେ ଏମାନେ ଫେରିଆସିବେ, ସେତେବେଳେ ସେମାନେ ନୂତନ ଉଦ୍ୟମ, ନୂତନ ତେଜ ଓ ବଳ ଆଣି ଦେଶକୁ ଦେବେ, ସନ୍ଦେହ ନାହିଁ । ମୟୂରଭଞ୍ଜର ମହାରାଜ ପୃଥିବୀ ଭ୍ରମଣ କରି କଲିକତାକୁ ବାହୁଡ଼ିବା ବେଳେ ଏହି ଯୁବକମାନଙ୍କ ଉଦ୍ୟମରେ ମହାରାଜାଙ୍କୁ ସେଠାରେ ଗୋଟିଏ ଅଭିନନ୍ଦନ ପତ୍ର ସମର୍ପିତ ହୋଇଥିଲା । ଏହି ଗୋଟିଏ ଘଟଣାକୁ ମୁଁ କଳ୍ପନା ଚକ୍ଷୁରେ ଭାରି ମୂଲ୍ୟବାନ୍ ଓ ଆଶାପ୍ରଦ ମନେ କରୁଅଛି । ଯେଉଁମାନଙ୍କ ମସ୍ତିଷ୍କରୁ ଏ ପ୍ରସ୍ତାବ ନିଃସୃତ ହୋଇଅଛି, ସେମାନେ ଆମ୍ଭମାନଙ୍କ ଅପେକ୍ଷା ଅବଶ୍ୟ ଉନ୍ନତି କରିଅଛନ୍ତି, ଏହା ବାଧ୍ୟ ହୋଇ ସ୍ୱୀକାର କରିବାକୁ ହେବ । ଆହୁରି ମଧ୍ୟ କଲିକତା ପ୍ରବାସୀ ଉତ୍କଳୀୟ ଯୁବକମାନେ 'ହିନ୍ଦୁ ସମାଜ' ବୋଲି ଗୋଟିଏ ସମାଜ ପ୍ରତିଷ୍ଠା କରିବାର ଅନୁଷ୍ଠାନ ପତ୍ର ପ୍ରଚାର କରିଅଛନ୍ତି । ଏହାର ସମୟୋପଯୋଗିତା ବା ଭାବୀ ଫଳ ସମ୍ବନ୍ଧରେ ମୁଁ ଏଠାରେ ଆଲୋଚନା କରୁ ନାହିଁ, କିନ୍ତୁ ଏପରି ଗୋଟିଏ ଅନୁଷ୍ଠାନ ପତ୍ର ଘେନି ଯେ କେତେଜଣ ପଦାକୁ ବାହାରିବାକୁ ଅଗ୍ରସର ହୋଇଅଛନ୍ତି, ତାହା ଅବଶ୍ୟ ପ୍ରଚ୍ଛନ୍ନ ଶକ୍ତିମତ୍ତାର ପରିଚାୟକ ଓ ଏହି ଶକ୍ତିମତ୍ତା ସୁପରିଚାଳିତ ହେଲେ ଓଡ଼ିଶାର ଭବିଷ୍ୟଦ୍ ଆଲୋକମୟ ହେବ, ସନ୍ଦେହ ନାହିଁ ।

ଶ୍ରୀମାନ୍ କୈଳାସ ଚନ୍ଦ୍ର ଭଗତ ଜାପାନରୁ ଉନ୍ନତ ଶିଳ୍ପବିଦ୍ୟା ଶିକ୍ଷା କରି ପ୍ରତ୍ୟାଗତ ହୋଇଅଛନ୍ତି । ସେଦିନ ସମ୍ମିଳନୀ ମଣ୍ଡପରେ ତାଙ୍କର ଅଭ୍ୟର୍ଥନା ହୋଇଗଲା । ଓଡ଼ିଶାର ହାଓଆ ଅଭ୍ୟର୍ଥନାର ପକ୍ଷପାତୀ, କାର୍ଯ୍ୟ ପକ୍ଷରେ ତେତେ ଅନୁକୂଳ ନୁହେଁ । ଏଥି ପୂର୍ବରୁ ଶ୍ରୀମାନ୍ ମହେଶ ଚନ୍ଦ୍ର ଜାପାନରେ ରେଶମ ଶିଳ୍ପ ବିଷୟରେ ଶିକ୍ଷା ସମାପ୍ତ କରି ଫେରିଆସି କିଛି ଦିନ ଓଡ଼ିଶାରେ ଏ ଓଳି ସେ ଓଳି ବୁଲି ଶେଷକୁ କାଶିମ ବଜାରର ମହାରାଜାଙ୍କ ଆଶ୍ରୟ ଗ୍ରହଣ କଲେ । ପୁଣି ଦିନା କେତେ ପରେ ସାରଙ୍ଗଧର ଆମେରିକାରୁ ଫେରି ଆସିବେ । ତାଙ୍କର ମଧ୍ୟ ଆଦର ଅଭ୍ୟର୍ଥନା ସେହିପରି ବା ତତୋଽଧିକ ହେବ । ମାତ୍ର କାର୍ଯ୍ୟତଃ ଏମାନଙ୍କ ପାଇଁ ଓଡ଼ିଶାରେ ସ୍ଥାନ କାହିଁ ? ସ୍ଥାନ ପ୍ରସ୍ତୁତ କରିବାର ଆୟୋଜନ ବା କିଏ କରୁଅଛି ? ଓଡ଼ିଶାରେ ଧନ ଅଛି, କିନ୍ତୁ ମୂଳଧନ ପାଇଁ ଧନ ଓ ବଳ ନାହିଁ । ଫଳ କଥା ଏହି କି Enterprising Spirit ଆମ୍ଭମାନଙ୍କର ନାହିଁ - ସେଥିପାଇଁ ଲୋକେ କହନ୍ତି, ''ସବୁ ବିକି କଂସା କଲି, ଏବେ କଂସାରେ ଖାଏ କଣ ?'' ଆଜି ଏତିକି ।

ଉତ୍କଳ ସାହିତ୍ୟ/୧୮ଶ ଭାଗ/୧୦ମ ସଂଖ୍ୟା/୧୩୧୮ ସାଲ ।

## ।। ତେତିଶ ।।

ଭାରତବାସୀମାନେ ସ୍ୱଦେଶର ଶାସନ ପ୍ରକ୍ରିୟାରେ କେତେକ ଅଂଶରେ ଅଧିକାର ପାଇବା ନିମନ୍ତେ ଅନେକ ଦିନରୁ ଚିହ୍ନାର କରି ଆସୁଅଛନ୍ତି । ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଭାରତବାସୀଙ୍କ ଦାବିର ଆଂଶିକ ଯଥାର୍ଥ ଉପଲବ୍ଧି କରି ସେମାନଙ୍କୁ ଘେନି ପ୍ରଥମେ ଜିଲା ବୋର୍ଡ଼, ଲୋକାଲ ବୋର୍ଡ଼, ମ୍ୟୁନିସିପାଲିଟି ସ୍ଥାପନ ଦ୍ୱାରା ସ୍ୱାୟତ୍ତ-ଶାସନର ନମୁନା ପ୍ରଦାନ କରିଥିଲେ ଓ କିଛିକାଳ ପରେ ଚଉକିଦାର ଆଇନ ପ୍ରବର୍ତ୍ତନ ସମୟରେ ପଞ୍ଚାଏତ ପ୍ରଥା ସୃଷ୍ଟି କରି ସେହି ଦିଗରେ କିଛିଦୂର ଅଗ୍ରସର ହୋଇଥିଲେ । ବର୍ତ୍ତମାନ ଲର୍ଡ଼ ମର୍ଲି ଓ ଲର୍ଡ଼ ମିଣ୍ଟୋ ଭାରତବାସୀମାନଙ୍କୁ Reformed Council (ସଂସ୍କୃତ ଶାସନସଭା) ପ୍ରଦାନ କରି ଓ ଭାରତବାସୀମାନଙ୍କୁ ଶାସନ ଓ ବିଚାର ବିଭାଗର ସ୍ଥାନମାନ ପ୍ରଦାନ କରି ସେମାନଙ୍କ ନ୍ୟାୟସଙ୍ଗତ ଆକାଂକ୍ଷା ପ୍ରତି ସମ୍ୟକ୍ ସହାନୁଭୂତି ଦେଖାଇ ଅଛନ୍ତି । ଏହା ଅବଶ୍ୟ ଭାରତ ବର୍ଷ ପ୍ରତି ଶୁଭଯୋଗ । ଯେଉଁମାନେ ସ୍ୱୀକାର ନ କରୁଅଛନ୍ତି, ସେମାନେ ଅଦୂରଦର୍ଶୀ । ଗତ କେତେକ ଦିନ ହେଲା ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କ କାର୍ଯ୍ୟକଳାପରୁ ସ୍ପଷ୍ଟରୂପେ ପ୍ରତୀୟମାନ ହେଉଅଛି ଯେ ଭାରତବାସୀମାନଙ୍କ Legitimate right (ନ୍ୟାୟସଂଗତ ଦାବି) ଓ Well founded aspirations (ଦୃଢ଼ ଭିତ୍ତିମୂଳକ ଆଶା) ପ୍ରତି ଗଭର୍ଣ୍ଣମେଣ୍ଟଙ୍କର ଯଥେଷ୍ଟ ଆସ୍ଥା ଅଛି । ଭିନ୍ନ ଭିନ୍ନ କେନ୍ଦ୍ରରେ Reformed Council (ସଂସ୍କୃତ ସଭା) ପ୍ରତିଷ୍ଠିତ ହେବା ଦିନଠାରୁ ଆଜିପର୍ଯ୍ୟନ୍ତ ଦେଖାଯାଉଅଛି ଯେ ଦେଶର ପ୍ରତିନିଧିମାନେ ଯେଉଁ ଗୁହାରିମାନ ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ଉପସ୍ଥାପିତ କରିଅଛନ୍ତି, ଯଥାସାଧ ଚେଷ୍ଟା ଦ୍ୱାରା ସେଗୁଡ଼ିକର ପ୍ରତିକାର କରିବା ପାଇଁ ପଶ୍ଚାତ୍ପଦ ହେଉ ନାହାନ୍ତି । ଗତ କଂଗ୍ରେସର ପ୍ରତିନିଧିମାନେ କଂଗ୍ରେସ ପକ୍ଷରୁ ଯେତେବେଳେ ବଡ଼ଲାଟ ମହୋଦୟଙ୍କ ନିକଟରେ ଦଣ୍ଡାୟମାନ ହେଲେ ସେ ସେମାନଙ୍କୁ ଯେଉଁ ଉତ୍ତର ଦେଇଅଛନ୍ତି ଓ ଯେଉଁ ସାନ୍ତ୍ୱନାବାଣୀ ଶୁଣାଇଅଛନ୍ତି, ତହିଁରେ ନିରାଶ ହୃଦୟରେ ଆଶାର ସଞ୍ଚାର ହେବ, ଅନ୍ୟ ପରେ କେଉଁ କଥା । ଏଥିରୁ ସ୍ପଷ୍ଟ ଜଣା ପଡୁଅଛି ଯେ ଦେଶବାସୀମାନଙ୍କ ଅଭାବ ଅଭିଯୋଗ ଦୂର କରିବା ବିଷୟରେ ଗଭର୍ଣ୍ଣମେଣ୍ଟଙ୍କ ସମ୍ପୂର୍ଣ୍ଣ ସହାନୁଭୂତି ଅଛି । ବର୍ତ୍ତମାନ ସେ ଯେପରି ଭାବରେ ଆମ୍ଭମାନଙ୍କୁ ସାହାଯ୍ୟ କରିବାକୁ ଅଗ୍ରସର ହେଉଅଛନ୍ତି, ତଦ୍ୱାରା ଭାରତର ଭବିଷ୍ୟଦ୍ ଉଜ୍ଜ୍ୱଳତର ହୋଇଅଛି । ଆମ୍ଭମାନଙ୍କର କର୍ତ୍ତବ୍ୟ ସ୍ଥିର କରି କାର୍ଯ୍ୟ କରିବାର ସମୟ ବର୍ତ୍ତମାନ ଉପସ୍ଥିତ ହୋଇଅଛି - କି କି କାର୍ଯ୍ୟ କଲେ ଦେଶର ମଙ୍ଗଳ ହେବ, ଭାବୀ-ବଂଶଧରମାନଙ୍କର ମଙ୍ଗଳ ହେବ, ଦେଶରୁ ଅରାଜକତା, ପଶୁବୃତ୍ତି, ଅଶାନ୍ତି, ଅନ୍ଧକାର, ଅତ୍ୟାଚାର ଦୂରୀଭୂତ ହେବ, ଏଥିନିମନ୍ତେ ସମ୍ମିଳିତ ଚେଷ୍ଟା ଦ୍ୱାରା ଗଭର୍ଣ୍ଣମେଣ୍ଟଙ୍କୁ ସାହାଯ୍ୟ କରିବା ଆମ୍ଭମାନଙ୍କର ଏକାନ୍ତ କର୍ତ୍ତବ୍ୟ । ଶିକ୍ଷା ବିଷୟରେ ସେ ଯେଉଁ ପ୍ରଣାଳୀମାନ ଅବଲମ୍ବନ

କରିଅଛନ୍ତି ଓ କରୁଅଛନ୍ତି, ସେଗୁଡ଼ିକ ଦେଶବାସୀମାନଙ୍କର ସମ୍ମିଳିତ ଚେଷ୍ଟା ଦ୍ୱାରା ପରିପୁଷ୍ଟ ହେଲେ ଦେଶର ପ୍ରଭୂତ ମଙ୍ଗଳ ସାଧିତ ହେବ, ସନ୍ଦେହ ନାହିଁ ।

କିଛିଦିନ ପୂର୍ବେ ସମ୍ରାଟ୍ ଏଡ୍‌ଉଆର୍ଡଙ୍କ ଅମଳରେ ଭାରତର ଶାସନ ପ୍ରଣାଳୀ ପର୍ଯ୍ୟବେକ୍ଷଣ କରିବା ଉଦ୍ଦେଶ୍ୟରେ ଯେଉଁ କମିଶନ ଅର୍ଥାତ୍ ସମିତି (Decentralization Commission) ଭାରତକୁ ପ୍ରେରଣ କରିଥିଲେ, ସେମାନେ ନାନା ସ୍ଥାନ ପରିଭ୍ରମଣ କରି ନାନା ଶ୍ରେଣୀର ଲୋକଙ୍କ ସାକ୍ଷ୍ୟ ଗ୍ରହଣ କରି କେତେଗୁଡ଼ିଏ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଓ ସେଗୁଡ଼ିକ ସେମାନେ ଲିପିବଦ୍ଧ କରି ଷ୍ଟେଟ୍ ସେକ୍ରେଟାରୀଙ୍କ ସମୀପରେ ଉପସ୍ଥାପିତ କରିଥିଲେ । ସେମାନଙ୍କର ଅନେକ ପ୍ରସ୍ତାବ ମଧ୍ୟରୁ ଗୋଟିଏ ପ୍ରସ୍ତାବ ଏହି ଯେ ଗ୍ରାମେ ଗ୍ରାମେ ଗୋଟିଏ ଲେଖାଏଁ ପ୍ରତିନିଧି ସଭା ଅର୍ଥାତ୍ ପଞ୍ଚାୟତ ସ୍ଥାପିତ ହେଉ । ପୁରାକାଳରେ ଭାରତବର୍ଷରେ ଏହି ପଞ୍ଚାୟତ ପ୍ରଥା ପ୍ରଚଳିତ ଓ ବର୍ତ୍ତମାନ ସେଗୁଡ଼ିକ ପୁନରୁଜ୍ଜୀବିତ କରିବା ଦ୍ୱାରା ଦେଶବାସୀମାନଙ୍କର ପ୍ରଭୂତ ମଙ୍ଗଳ ହେବ ଓ ଗଭର୍ଣ୍ଣମେଣ୍ଟ ଦେଶ-ଶାସନ-ପ୍ରକ୍ରିୟାରେ ଉକ୍ତ ପଞ୍ଚାୟତମାନଙ୍କଠାରୁ ଅନେକ ସାହାଯ୍ୟ ପାଇବେ । ଏହାର ସଭ୍ୟମାନେ ଗ୍ରାମର ସାମାନ୍ୟ ସାମାନ୍ୟ ଫୌଜଦାରୀ ଓ ଦେବାନି ମକଦ୍ଦମାମାନ ନିଷ୍ପତ୍ତି କରିପାରିବେ ଓ ସ୍ଥାନୀୟ ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତାଘାଟ ଇତ୍ୟାଦିର ତତ୍ତ୍ୱ ନେଇପାରିବେ । ଏ ପର୍ଯ୍ୟନ୍ତ ଗଭର୍ଣ୍ଣମେଣ୍ଟ ଉକ୍ତ ପ୍ରସ୍ତାବକୁ କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟା କରି ନାହାନ୍ତି, କିନ୍ତୁ ଉକ୍ତ ପ୍ରସ୍ତାବ ସମ୍ବନ୍ଧରେ ଦେଶବାସୀଙ୍କର କି କର୍ତ୍ତବ୍ୟ, ତାହା ଆମ୍ଭେମାନେ ନ ଭାବିବା ବଡ଼ ଦୁଃଖର ବିଷୟ । କୌଣସି ଚେଷ୍ଟା ଫଳବତୀ ନ ହେବ ବୋଲି ସ୍ୱତଃସିଦ୍ଧ କରି ଉକ୍ତ ସ୍ୱତଃସିଦ୍ଧ ଉପରେ ଦଣ୍ଡାୟମାନ ହୋଇ ନିଶ୍ଚେଷ୍ଟ ରହିବା କାପୁରୁଷର ଲକ୍ଷଣ ଅଟେ । ବଙ୍ଗଦେଶରେ କେତେକ ସ୍ଥାନରେ ଗ୍ରାମ୍ୟ ପଞ୍ଚାୟତ ବୋର୍ଡ଼ମାନ ସ୍ଥାପିତ ହୋଇଅଛି ଓ ତଦ୍ୱାରା ଲୋକେ କେତେକ ପରିମାଣରେ ଛୋଟ ଛୋଟ ମାମଲା ଅଦାଲତକୁ ନ ଆଣି ପଞ୍ଚାୟତ ଦ୍ୱାରା ମୀମାଂସା କରାଉ ଅଛନ୍ତି । ଏହା ଅବଶ୍ୟ ଦେଶ ପକ୍ଷରେ ଶୁଭ ଲକ୍ଷଣ । ସେଗୁଡ଼ିକର ସଂଖ୍ୟା ଓ ପରିସର ବୃଦ୍ଧି ନ ହେବା ପର୍ଯ୍ୟନ୍ତ ଓ ସାଧାରଣଙ୍କର ତହିଁ ପ୍ରତି ଆସ୍ଥା ଓ ଭକ୍ତି ନ ହେବା ପର୍ଯ୍ୟନ୍ତ ସେହି ଶ୍ରେଣୀର ଅନୁଷ୍ଠାନମାନଙ୍କଦ୍ୱାରା ଦେଶର ଓ ସମାଜର କି ଉପକାର ସାଧିତ ହେବ, ତାହା ସ୍ପଷ୍ଟ ରୂପେ ଉପଲବ୍ଧି କରାଯାଇପାରିବ ନାହିଁ । ଦେଶ ସେ ପରିମାଣରେ କିୟଦ୍ଦୂର ଅଗ୍ରସର ହେଲେ ଗଭର୍ଣ୍ଣମେଣ୍ଟ ସେଗୁଡ଼ିକ ପ୍ରତି ଦୃଷ୍ଟିପାତ କରିବେ, ଏହା ନିଃସନ୍ଦେହରେ ଆଶା କରାଯାଏ । ଗୟା, ମୁଜାଫରପୁର, ପାଟନା ଜିଲାମାନଙ୍କରେ ଏହିପରି କେତେଗୁଡ଼ିଏ ଅନୁଷ୍ଠାନର ସୂତ୍ରପାତ ହୋଇଅଛି ଓ କେତେଗୁଡ଼ିଏ ପଞ୍ଚାୟତ (Village Arbitration Board) ସମ୍ବନ୍ଧରେ ସ୍ଥାନୀୟ ଉଚ୍ଚ କର୍ମଚାରୀମାନେ ବିଶେଷ ସନ୍ତୁଷ୍ଟ ହୋଇଥିବାର ମତ ପ୍ରକାଶ କରିଅଛନ୍ତି । ସେଦିନ ଗୟା ଜିଲା ଜାହାନାବାଦ ସବ୍‌ଡିଭିଜନରେ ଗୋଟିଏ ପଞ୍ଚାୟତ ମଣ୍ଡପର (Arbitration Hall) ମୂଳଭିତ୍ତି ଜିଲାର ମାଜିଷ୍ଟ୍ରେଟ ପ୍ରତିଷ୍ଠିତ କଲେ

ଓ ସେହି ଉପଲକ୍ଷ୍ୟରେ ଯେଉଁ ସଭା ହୋଇଥିଲା, ସେଥିରେ ସ୍ଥାନୀୟ ଡିଷ୍ଟ୍ରିକ୍ଟଜଜ୍ ସାହେବ ସଭାପତି ଆସନ ଗ୍ରହଣ କରିଥିଲେ । ଉଭୟେ ଏହି ପଞ୍ଚାୟତ ପ୍ରଥାକୁ ବିଶେଷ ଭାବରେ ସମର୍ଥନ କରିଥିଲେ ଓ କହିଥିଲେ ଯେ ଯେତେଦିନ ପର୍ଯ୍ୟନ୍ତ ଏ ଅନୁଷ୍ଠାନମାନ ଦେଶର ମଙ୍ଗଳ ସାଧନରେ ପ୍ରବୃତ୍ତ ହୋଇ ବିଚାର ବିଭାଗର ସାହାଯ୍ୟ କରିବେ, ସେ ପର୍ଯ୍ୟନ୍ତ ଗଭର୍ଣ୍ଣମେଣ୍ଟଙ୍କଠାରୁ ସମ୍ପୂର୍ଣ୍ଣ ସହାନୁଭୂତି ଓ ସାହାଯ୍ୟ ପାଇବେ । ଦେଶ ପକ୍ଷରେ ଏହା ବଡ଼ ଆଶାର ବିଷୟ । ଦେଶ ଯେପରି ଦିନକୁଦିନ ମକଦ୍ଦମା ମାମଲାରେ ସର୍ବସ୍ୱାନ୍ତ ହେଉଅଛି, ଏହିପରି ଅନୁଷ୍ଠାନମାନ ସ୍ଥାନେ ସ୍ଥାନେ ସ୍ଥାପିତ କରି ଦେଶର ବୃଥା କଳହ ଦୂର କରିବା ପାଇଁ ଚେଷ୍ଟା କରିବା ପ୍ରତ୍ୟେକ ଜାତୀୟ ବୀରମାନଙ୍କର ପ୍ରଧାନ କର୍ତ୍ତବ୍ୟ ମଧ୍ୟରେ ପରିଗଣିତ ହେବା ଉଚିତ । ଦେଶବାସୀମାନେ ଏ ବିଷୟରେ ଅଗ୍ରସର ହେଲେ ଗଭର୍ଣ୍ଣମେଣ୍ଟ ଆନନ୍ଦ ସହକାରେ ଏହିସବୁ ଅନୁଷ୍ଠାନମାନଙ୍କ ପ୍ରତି ଆସ୍ଥା ପ୍ରଦର୍ଶନ କରିବେ ଓ ଏହାଦ୍ୱାରା ଦେଶରୁ ଅନିଷ୍ଟ, ଅଶିକ୍ଷା, ଅସ୍ୱାସ୍ଥ୍ୟ, ଅଶାନ୍ତି ଓ ଅସୁବିଧାମାନ ସହଜରେ ଦୂରୀଭୂତ ହେବ ବୋଲି ସ୍ଥିର ଭାବରେ ବୋଲାଯାଇପାରେ ।

ଉତ୍କଳ ସାହିତ୍ୟ/୧୪ଶ ଭାଗ/୧୧ଶ ସଂଖ୍ୟା/୧୩୧୮ ସାଲ ।

## ।। ଚଉତିରିଶ ।।

କଟକରେ ଉତ୍କଳ ସମ୍ମିଳନୀର ଗତ ଅଧିବେଶନ (୧୯୧୦ ଡିସେମ୍ବର) ହେବାର ପର ଦିନ ସମ୍ମିଳନୀ ମଣ୍ଡପରେ ଭିକ୍ଟୋରିଆ ଗୋରକ୍ଷିଣୀ ସଭାର ବାର୍ଷିକ ଅଧିବେଶନ ହୋଇଥିଲା । ଜଣେ ବଡ଼ ଲୋକ ସେହି ସମୟରେ କାର୍ଯ୍ୟାନ୍ତର ଉପଲକ୍ଷରେ ସେ ସ୍ଥାନକୁ ଆସିଥିଲେ । ତାଙ୍କୁ ପୂର୍ବରୁ ଆମନ୍ତ୍ରଣ ହୋଇଥିଲେହେଁ ସେ ସଭା ମଧ୍ୟକୁ ପ୍ରବେଶ ନ କରି ସଭା ଶେଷ ହେବା ପର୍ଯ୍ୟନ୍ତ ବାହାରେ ଠିଆ ହୋଇ ରହିଲେ । ତାଙ୍କର ଏ ବ୍ୟବହାର ମତେ ଟିକିଏ ଅଡୁଆ ଲାଗିଥିଲା ।

ଦିନାକେତେ ବାଦ କାର୍ଯ୍ୟୋପଲକ୍ଷରେ ମୁଁ ତାଙ୍କ ନିକଟକୁ ଯାଇଥିଲି । କଥା ପ୍ରସଙ୍ଗରେ ସେ ଦିନ ଗୋରକ୍ଷିଣୀ ସଭା କଥା ପଡ଼ିଲା । ସେ କହିଲେ ଯେ- ''ଗୋରକ୍ଷିଣୀ ସଭାର ଉଦ୍ଦେଶ୍ୟ ସାଧିତ ହେବା ଦୁଷ୍କର ବା ଅସମ୍ଭବ । କାରଣ ଦେଖାଯାଏ ଯେ ଭାରତବାସୀମାନେ ଗୋପାଳନ ବିଷୟରେ ନିତାନ୍ତ ପଶ୍ଚାତ୍ପଦ ଓ ପାଶ୍ଚାତ୍ୟ ଦେଶମାନଙ୍କରେ ଗୋପାଳନ ନିମନ୍ତେ ଲୋକେ ଯେତେଦୂର ଯତ୍ନ କରନ୍ତି ଓ ଗୋରୁଗାଈଙ୍କୁ ଯେପରି ହେପାଜତରେ ରଖନ୍ତି, ଆମ ଦେଶରେ ତାହା ନାହିଁ । ଭାରତରେ ପ୍ରତିଦିନ ଗୋମାଂସ ଖାଦକମାନଙ୍କ ନିମନ୍ତେ ଲକ୍ଷ ଲକ୍ଷ ଗୋରୁ ହତ ହେଉଅଛନ୍ତି । ଏପରି ଅବସ୍ଥାରେ ଦୁଇ ଚାରିଟା ଗୋଶାଳା ସ୍ଥାପନ କରି ୧୦।୨୦ଟା ଲେଖାଏଁ ଗୋରୁ ପାଳିଲେ କି ଉପକାର ହେବ ? ଭାରତରେ ଗୋହତ୍ୟା ବନ୍ଦ ହେବା ଅସମ୍ଭବ । ଅତଏବ ଗୋରକ୍ଷା ଉଦ୍ଦେଶ୍ୟ

Practical politics ର ତ୍ରିସୀମା ମଧ୍ୟରେ ନୁହେଁ । ଅର୍ଥାତ୍ ଯେଉଁ କାର୍ଯ୍ୟ ବନ୍ଦ ହେବାର ଅସମ୍ଭବ, ସେଥିରେ ହାତ ପୂରାଇବା ପଣ୍ଡ ଶ୍ରମ ମାତ୍ର ।'' ବଡ଼ ଲୋକଗୁଡ଼ାକ ଭାରି ଠୋ ଠୋ କରି କଥାଗୁଡ଼ାକ କହିଯା'ନ୍ତି । କଥାରେ ବାଟୁଳି ବାଜେ ନାହିଁ ଓ ତୁମ ଆମ ଭଳିଆ ମଣିଷଗୁଡ଼ାକ ସେମାନଙ୍କ ମୁହଁକୁ ବଲ ବଲ କରି ଅନାଇଥାଉଁ । ଏ କ୍ଷେତ୍ରରେ ମୋ ଦଶା ମଧ୍ୟ ସେହିତା ହେଲା । ମୁହଁଟା ସିନା ବଡ଼ ଲୋକଙ୍କୁ ଡରିଲାବାଲା, କିନ୍ତୁ ମନ ତ ଅବୁଝା - ତା ପ୍ରତି ଆଇନ କାନୁନ କିଛି ନାହିଁ । ମନେ ମନେ ବିଚାରିଲି, କେତେ କେତେ ବିଭାଗୀୟ କମିସନର, କଲେକ୍ଟର, ଜଜ୍, ରାଜା, ମହାରାଜା, ଜମିଦାର, ଡିପୋଟୀ, ସବ୍‌ଜଜ୍, ମୁନସଫ, ଓକିଲ, ମୁକ୍ତାର ଆମ୍ଭମାନଙ୍କ ଗୋଶାଳା ପରିଦର୍ଶନ କରି ଗୋଶାଳାର ପରିଚାଳକମାନଙ୍କୁ ବାକ୍ୟତଃ ଓ କାର୍ଯ୍ୟତଃ ସହାନୁଭୂତି ଦେଖାଇଅଛନ୍ତି । ଗଭର୍ଣ୍ଣମେଣ୍ଟ ଗୋରକ୍ଷା ଓ ଗୋପାଳନପାଇଁ ଗୋଟିଏ ସ୍ୱତନ୍ତ୍ର ବିଭାଗ ଖୋଲି ସ୍ଥାନେ ସ୍ଥାନେ ଗୋ ଚିକିତ୍ସାଳୟମାନ ପ୍ରତିଷ୍ଠା କରିଅଛନ୍ତି । କିନ୍ତୁ କର୍ତ୍ତାଙ୍କର କଦାଦୃଷ୍ଟି ଗୋଶାଳା ଉପରେ ପଡ଼ିଲା କାହିଁକି ? ଫେର ବିଚାରିଲି, ଆମ ବିଶିଷ୍ଟ ବ୍ୟକ୍ତିଙ୍କର ଭବିଷ୍ୟଦ୍ ଆଡ଼କୁ ବେଶି ନଜର ଥିବାରୁ ସେ ଦିବ୍ୟ ଚକ୍ଷୁରେ ଯେଉଁ କଥା ଦେଖି ପାରୁଅଛନ୍ତି, ଆମ ତୁମ ଭଳି ମୋଟାବୁଦ୍ଧିଆଙ୍କର ଦୃଷ୍ଟି ସେ ପରଦାଗୁଡ଼ାକ ଭେଦ କରି ପାରୁ ନ ଥିବାରୁ ଆମ୍ଭେମାନେ ଗୋରକ୍ଷିଣୀ ସଭା ନେଇ କୁହୁଡ଼ି ପହଁରୁଅଛୁଁ । ସେହି ସମୟରେ ମନେପଡ଼ିଲା ଯେ ମୟୂରଭଞ୍ଜ ମହାରାଜା ଆପଣା ରାଜ୍ୟରେ ଗୋ-ହତ୍ୟା ଓ କଂସାଇଙ୍କୁ ଗୋରୁ ବିକ୍ରୟ କରିବା ପ୍ରଥା ବନ୍ଦ କରିଅଛନ୍ତି ଓ କେହି ଏ ଅନୁଶାସନ ଲଙ୍ଘନ କଲେ ଶାସ୍ତିର ବ୍ୟବସ୍ଥା ମଧ୍ୟ କରିଅଛନ୍ତି । ଉପରୋକ୍ତ ବଡ଼ଲୋକଙ୍କ ନିକଟରୁ ଏ ନିରାଶିଆ ଝଡ଼ାଟାଏ ପାଇ ତିନ୍ତୁଳି ଖାଇଲା ଭଳିଆ ମୁହଁ କରି ଘରକୁ ଫେରିଲି । କିଛି ଦିନ ପରେ ସମ୍ବାଦପତ୍ରମାନଙ୍କରେ ପଢ଼ିଲି ଯେ କାଶ୍ମୀରର ମହାରାଜା ଓ ହାଇଦ୍ରାବାଦର ନିଜାମ ସ୍ୱ ସ୍ୱ ରାଜ୍ୟରେ ଗୋହତ୍ୟା ନିଷେଧ କରିଅଛନ୍ତି । କାଶ୍ମୀରରେ ଗୋହତ୍ୟା ବନ୍ଦ ହେବା ସମ୍ବନ୍ଧରେ ବିଲାତର ପାର୍ଲିଆମେଣ୍ଟ ମହାସଭା ପର୍ଯ୍ୟନ୍ତ ଆନ୍ଦୋଳିତ ହୋଇ ଯାଇଅଛି । ପାର୍ଲାମେଣ୍ଟର ଜଣେ ମେମ୍ବର ଭାରତର ଅଣ୍ଡର ସେକ୍ରେଟେରୀଙ୍କୁ ତଳଲିଖିତ ପ୍ରଶ୍ନ କରିଥିଲେ - ''କାଶ୍ମୀରର ମହାରାଜା ସ୍ୱରାଜ୍ୟରେ ଖାଦ୍ୟ ନିମନ୍ତେ ଗୋବଧ ନିଷେଧ କରିଅଛନ୍ତି କି ନାହିଁ ଓ କୌଣସି ଆକାରରେ ତାଙ୍କ ରାଜ୍ୟକୁ ଗୋମାଂସ ଆସିବାର ବାରଣ କରିଅଛନ୍ତି କି ନାହିଁ ? ଏବଂ ଏତଦ୍ୱାରା କାଶ୍ମୀରର ଅଧିକାଂଶ ପ୍ରଜାଙ୍କୁ ଓ କାଶ୍ମୀର ପ୍ରବାସୀ ଅନେକ ସାହେବଙ୍କୁ ସାଧାରଣ ଖାଦ୍ୟରୁ ବଞ୍ଚିତ କରିଅଛନ୍ତି କି ନାହିଁ ? ଯଦି ଏହା ସତ୍ୟ ହୋଇଥାଏ, ତାହାହେଲେ କାଶ୍ମୀରର ପ୍ରଜା ଓ କାଶ୍ମୀର ପ୍ରବାସୀ ସାହେବ ଓ ଦର୍ଶକମାନଙ୍କ ମଙ୍ଗଳାର୍ଥେ ଏ ବିଧିକୁ ରହିତ କରିବା ପାଇଁ କାଶ୍ମୀରର ମହାରାଜାଙ୍କୁ ଅନୁରୋଧ କରାଯାଇପାରିବ କି ନାହିଁ ?'' ଏ ପ୍ରଶ୍ନର ଉତ୍ତରରେ ଅଣ୍ଡର ସେକ୍ରେଟେରୀ ମହାଶୟ କହିଲେ କି ଏହା ମିତ୍ର ରାଜ୍ୟର ଆଭ୍ୟନ୍ତରୀଣ ଶାସନସମ୍ବନ୍ଧୀୟ ବିଷୟ ଅଟେ ।

ଷ୍ଟେଟ ସେକ୍ରେଟେରୀ ସରକାରୀ ଭାବରେ ଏ ବିଷୟର କୌଣସି ସମ୍ବାଦ ପାଇ ନାହାନ୍ତି । କିନ୍ତୁ ମେମ୍ବର ମହୋଦୟଙ୍କ ପ୍ରଶ୍ନ ସତ୍ୟ ହୋଇଥିଲେ ମଧ୍ୟ ଷ୍ଟେଟ ସେକ୍ରେଟେରୀ ଏ ବିଷୟରେ ହସ୍ତକ୍ଷେପ କରିବାକୁ ଇଚ୍ଛୁକ ନୁହନ୍ତି । ଅତଏବ ଏ ସମ୍ବନ୍ଧରେ ତଦନ୍ତ କରିବା ଅନାବଶ୍ୟକ ।'' ପୁନର୍ବାର ଏଥିମଧ୍ୟରେ ସଂବାଦପତ୍ରରୁ ଅବଗତ ହେଲି ଯେ ମାନ୍ଦ୍ରାଜ ହତା ଅନ୍ତର୍ଗତ କୋଚିନ ରାଜ୍ୟର ଅଧୀଶ୍ୱର ନିଜ ରାଜ୍ୟର ମ୍ୟୁନିସିପାଲିଟି ସୀମାମାନଙ୍କ ମଧ୍ୟରେ ଗୋହତ୍ୟା ନିଷେଧ ଆଜ୍ଞା ପ୍ରଚାର କରିଅଛନ୍ତି । ସମ୍ଭବତଃ କୋଚିନର ମହାରାଜା ଆପଣା ରାଜ୍ୟରେ ଗୋହତ୍ୟା ବନ୍ଦ କରିବା ସମ୍ବନ୍ଧରେ କାଶ୍ମୀର ମହାରାଜାଙ୍କ ଉଦାହରଣ ଅନୁସରଣ କରିବେ ।

ଦେଶୀୟ ରାଜାମାନେ ଏ ବିଷୟରେ ଅଗ୍ରସର ହେଲେ ଦେଶରୁ ଅଚିରେ ଗୋହତ୍ୟା ବନ୍ଦ ହୋଇପାରନ୍ତା । ଏହା ଅସମ୍ଭବ ନୁହେଁ କିମ୍ବା Practical politics ର ତ୍ରିସୀମାର ବହିର୍ଭୂତ ମଧ୍ୟ ନୁହେଁ । ସେଦିନ କାବୁଲର ଅମିର ମହୋଦୟ ଭାରତକୁ ଆସି ହିନ୍ଦୁମାନଙ୍କ ଧର୍ମମତ ପ୍ରତି ଆସ୍ଥା ପ୍ରଦର୍ଶନ କରି ମୁସଲମାନମାନଙ୍କ ବକରିଦ୍ ପର୍ବ ଉପଲକ୍ଷରେ ଗୋହତ୍ୟା ନିଷେଧ କରି ଯେଉଁ ଉଦାରତା ଦେଖାଇଅଛନ୍ତି, ତାହା ଭାରତୀୟ ରାଜନ୍ୟବର୍ଗଙ୍କର ଅନୁକରଣୀୟ । ଆକବର ବାଦଶାହଙ୍କ ରାଜତ୍ୱ ସମୟରେ ଗୋବଧ ନିଷିଦ୍ଧ ଥିଲା । ଏବେ ପ୍ରବଳ-ପ୍ରତାପ ଭାରତ ସମ୍ରାଟ୍‌ଙ୍କର ପ୍ରସ୍ତାବିତ ଦିଲ୍ଲୀ ଦରବାର ପ୍ରସଙ୍ଗରେ ବିଲାତର ବିଖ୍ୟାତ ମାସିକ ପତ୍ରିକା 'Review of Review' ର ପ୍ରବୀଣ ସମ୍ପାଦକ ମହାମତି ଷ୍ଟେଡ୍ ସାହେବ ତାଙ୍କ ପତ୍ରିକାରେ ତଳଲିଖିତ ସମ୍ପାଦକୀୟ ମନ୍ତବ୍ୟ ପ୍ରକାଶ କରିଅଛନ୍ତି । ''ପ୍ରଥମେ ଦିଲ୍ଲୀରେ ଦରବାର ହେବା ନିମନ୍ତେ ଯେଉଁ ତାରିଖ ଧାର୍ଯ୍ୟ ହୋଇଥିଲା, ସେହି ତାରିଖରେ ମୁସଲମାନମାନଙ୍କର ପର୍ବ ପଡ଼ିବାରୁ ମହାମତି ସମ୍ରାଟ୍ ମହୋଦୟ ଦିଲ୍ଲୀ ଦରବାରର ପ୍ରଥମ ପ୍ରସ୍ତାବିତ ତାରିଖକୁ ଘୁଞ୍ଚାଇ ଦେଇ ମୁସଲମାନମାନଙ୍କ ଧର୍ମ-ବିଶ୍ୱାସ ପ୍ରତି ଆସ୍ଥା ଦେଖାଇଅଛନ୍ତି । ଅତଏବ ହିନ୍ଦୁ ପ୍ରଜାମାନଙ୍କ ଧର୍ମବିଶ୍ୱାସ ପ୍ରତି ଆସ୍ଥା ଦେଖାଇବା ନିମନ୍ତେ ଦିଲ୍ଲୀ ଦରବାର ସମୟରେ କୌଣସି ଅନୁଷ୍ଠାନର ସୂତ୍ରପାତ ହେବା ବାଞ୍ଛନୀୟ ବୋଲି ଆମ୍ଭେ ଗତ ମାସରେ ପ୍ରକାଶ କରିଥିଲୁଁ । ଏହି ମାସକ ମଧ୍ୟରେ ବହୁ ଚିନ୍ତା ପରେ ଆମ୍ଭେ ସ୍ଥିର କଲୁଁ ଯେ ସମ୍ରାଟ୍ ଦରବାର ଉପଲକ୍ଷରେ ଭାରତରେ ଅବସ୍ଥାନ କରୁଥିବା ସମୟ ମଧ୍ୟରେ ଦେଶରେ ଗୋ-ବଧ ହେବ ନାହିଁ ଓ ଦିଲ୍ଲୀ ଦରବାର ପରେ ଆକବର ବାଦଶାହଙ୍କ ସମୟରେ ପ୍ରଚଳିତ ଗୋ-ବଧ-ନିଷେଧ ବିଧି ଭାରତରେ ଚଳିବ । ସମ୍ରାଟ୍ ଏହି ଆଦେଶ ପ୍ରଚାର କଲେ ସମଗ୍ର ହିନ୍ଦୁ ପ୍ରଜାମାନେ ମାନନୀୟ ସମ୍ରାଟ୍‌ଙ୍କୁ ହୃଦୟର ଭକ୍ତି ପ୍ରୀତି ଦେଇ ପୂଜା କରିବେ । ମୁସଲମାନ ସମ୍ରାଟ୍‌ମାନେ ହିନ୍ଦୁମାନଙ୍କ ଧର୍ମବିଶ୍ୱାସ ପ୍ରତି ଆସ୍ଥା ଦେଖାଇଥିବା ସ୍ଥଳେ ଖ୍ରୀଷ୍ଟିୟାନ ସମ୍ରାଟ୍‌ଙ୍କଠାରୁ ଏହା ଆଶା କରିବା ସ୍ୱାଭାବିକ ଅଟେ ।'' ଏହି ମନ୍ତବ୍ୟତକ ପାଠ କରି ମୁଁ ମନେ ମନେ ବିଚାରିଲି ଯେ ବୃଦ୍ଧ ଷ୍ଟେଡ୍ ସାହେବଙ୍କୁ ଆମ ଦେଶର 'ସବଜାନ୍ତା'

ହାଉଆ ବାକି ନାହିଁ । ଷ୍ଟେଡ୍‌ସାହେବଙ୍କ ପରି ଭାବୁକ ଓ ପ୍ରବୀଣ ବ୍ୟକ୍ତି ବିଲାତରେ ମଧ ଅଳ୍ପ ଅଛନ୍ତି । ତାଙ୍କ ମନକୁ ଏ କଥାଟା ମାନିଲା, କିନ୍ତୁ ଆମ ଦେଶର ବିଶିଷ୍ଟ ବ୍ୟକ୍ତିବିଶେଷ ଗୋରକ୍ଷିଣୀ ସଭାର ଉଦ୍ଦେଶ୍ୟଟାକୁ ଫୁଟୁକି ମାରି ଉଡ଼ାଇ ଦେଲେ । ସେଥିପାଇଁ ପାଠ ଡାକୁଛି ''ବଡ଼ଲୋକଙ୍କୁ ଉତ୍ତର ନାହିଁ କିମ୍ବା ସ୍ୱର୍ଗକୁ ନିଶୁଣି ନାହିଁ ।'' ୮-୪-୧୧ ତାରିଖର ଉତ୍କଳ ଦୀପିକାରେ ଷ୍ଟେଡ୍‌ସାହେବଙ୍କ ଉକ୍ତି ଉଦ୍ଧୃତ ହୋଇଅଛି ଓ ଦୀପିକାର ପ୍ରବୀଣ ସମ୍ପାଦକ ଷ୍ଟେଡ୍‌ସାହେବଙ୍କ ସଙ୍ଗେ ଏକମତ ହୋଇ ଉପସଂହାରରେ କହିଅଛନ୍ତି ଯେ, ''ଭାରତରେ ଗୋହତ୍ୟା ନିଷେଧ ହେଲେ ଏକା ହିନ୍ଦୁ କାହିଁକି, ଭାରତବାସୀ ସକଳ ସମ୍ପ୍ରଦାୟର ପରମ ଉପକାର ହେବ, ହିନ୍ଦୁ-ମୁସଲମାନ ମନୋମାଳିନ୍ୟର ପ୍ରଧାନ କାରଣ ଘୁଞ୍ଚିଯିବ, ଦେଶର ଅଶାନ୍ତି ଦୂର ହେବ ଏବଂ କୃଷିକାର୍ଯ୍ୟ ସୁଗମ ଓ ଦୁଧ ଘିଅ ପ୍ରଭୃତି ପୁଷ୍ଟିକର ଖାଦ୍ୟ ସୁଲଭ ହେବା ଦ୍ୱାରା ରୋଗ ଓ ଅକାଳ ମୃତ୍ୟୁ ହ୍ରାସପ୍ରାପ୍ତ ହେବ । ଆମ୍ଭେମାନେ ଏକାନ୍ତ ଆଶା କରୁଁ ଯେ ରାଜମନ୍ତ୍ରୀମାନେ ଏହି ଅସୀମ ହିତକର ପ୍ରସ୍ତାବ ସମ୍ରାଟ୍‌ଙ୍କ ଗୋଚରରେ ଉପସ୍ଥାପନ କରି ସୁମନ୍ତ୍ରଣା ଦେବାରେ ବିଳମ୍ବ କରିବେ ନାହିଁ ।'' ଏ ସବୁ ପାଠ କରି ଆମ ବଡ଼ ମୁଣ୍ଡିଆଙ୍କର Domain of practical politics ର ସରଦ ଦରାଣ୍ଡି ଦରାଣ୍ଡି ମୁଁ ଆଜତକ୍ ଠଉରାଇ ପାରିଲି ନାହିଁ ।

ଆମ ଦେଶର ହାଉଆର ମଧ କେତେକ ବିଶେଷତ୍ୱ ଅଛି - ରାମ ପ୍ରଧାନ, ଶାମ ପ୍ରଧାନ ପାଇଁ ଏକ ନଜିର ଓ ରାଜା ଜମିଦାରମାନଙ୍କ ପ୍ରତି ସ୍ୱତନ୍ତ୍ର ନଜିର ! ରାମ ପ୍ରଧାନ ପାଇଁ ପୁରାଣ ଅଛି, ପ୍ରାୟଶ୍ଚିତ୍ତ ଅଛି, ଜୋରିମାନା ଓ ବ୍ରାହ୍ମଣ ଭୋଜନର ବ୍ୟବସ୍ଥା ଅଛି । କିନ୍ତୁ ସୁନାମୁଦିଆମାନଙ୍କୁ ସବୁ ଛାଡ଼ ! ଉଦାହରଣସ୍ୱରୂପ ଦେଖିବା ହେଉନ୍ତୁ - ରାମ ପ୍ରଧାନର ଗୋରୁଟିଏ ମଲା, ସେ ବିଚାରା ସର୍ବସ୍ୱାନ୍ତ, ଆଉ ଗୋଟିଏ ବଳଦ ନ କିଣିଲେ ତାର ଚାଷ ବନ୍ଦ । ଆଉ ଗୋଟିଏ ବଳଦ କିଣିବାକୁ ରାମ ହାତରେ କଉଡ଼ି କାହିଁ ? କିନ୍ତୁ ରାମା ! ତୁ ସାବଧାନ ହୋ ! ମଲା ଗୋରୁ ଚମଡ଼ାଟି ବିକ୍ରି କଲେ ତୋପାଇଁ ଗୋସାଇଁ ମହାପ୍ରଭୁମାନେ ଠାକୁର ଚକଡ଼ାରେ ପୁରାଣ ପୋଥି ଫିଟାଇ ପ୍ରାୟଶ୍ଚିତ୍ତ ଓ ପଞ୍ଚଗବ୍ୟର ବ୍ୟବସ୍ଥା କରି ବସିବେ - ସଙ୍ଗେ ସଙ୍ଗେ ବ୍ରାହ୍ମଣ ବୈଷ୍ଣବଙ୍କର ଖୋଷଣିଫିଟା ଭୋଜନର ବ୍ୟବସ୍ଥା ହେବ ! କିନ୍ତୁ ରାମଙ୍କ ଜମିଦାର ବା ରାଜା ସେହି ଚମଡ଼ାର ଖରିଦଦାରଠାରୁ ଟିକସ ନେଇ ବସିଲେ, ତାଙ୍କ ବେଳକୁ ସବୁ ଛାଡ଼ ! କାରଣ ସେ ପରା ସୁନାମୁଦିଆ ! ଏ ହେଲା ଆମ ଦେଶର ନିଶାପ ! ଏହାକୁ ଆମ ଗ୍ରାମର ଭାଷାରେ କୋଦିଣ୍ଡା ନିଶାପ ବୋଲି କହନ୍ତି । ଜମିଦାର ଓ ଭୂସ୍ୱାମୀମାନେ ଚମଡ଼ା ବିକ୍ରିରୁ ଯେଉଁ ହଜାର ହଜାର ଟଙ୍କା ଆମଦାନୀ କରୁଅଛନ୍ତି, ସେଥିରୁ ଭଲା କାଣିଚାଏ ଗୋରକ୍ଷା ପାଇଁ ଖରଚ କରନ୍ତେ ? ଗୋରୁଟିଏ ମଲେ ରାମା ବିଚାରାର ସର୍ବନାଶ, କିନ୍ତୁ ରାମଙ୍କ ଜମିଦାରଙ୍କର ପୁଷ ମାସ ! ଏଥିରେ ଆମ ଦେଶ ଦରିଦ୍ର ହେଲା ବୋଲି ଲକ୍ଷ୍ମୀସାଆନ୍ତାଣୀଙ୍କୁ ଆଣ୍ଠୁକୁଡ଼ୀ କଲେ ଚଳିବ କାହୁଁ ? ପୁଣି ଏ ଦେଶରେ ଗୋରୁଙ୍କୁ ବିଷ ଦେଇ ମାରିବାକୁ ପାଣ ଓ ଇତର ଜାତିମାନେ

କୁଣ୍ଠିତ ହେବେ କାହିଁକି ? ଯେଉଁ ସମାଜରେ କଣିକାଏ ମହାପ୍ରସାଦ ଛୁଇଁ ନିୟମ କଲେ ମହାପାପ, କିନ୍ତୁ ବୋଝେ ମହାପ୍ରସାଦ ଛୁଇଁ ହଲପ କଲେ ବେକସୁର ଖଲାସ, ସେ ସମାଜ ଯେବେ ତଣ୍ଟିଆ ନ ଖାଇବ, ତେବେ ତଣ୍ଟିଆ ସୃଷ୍ଟି ଆଉ କାହା ପାଇଁ ? ଦେଶର ଧନପତି ଓ ଭୂମିଫଳମାନଙ୍କ ଉପରେ ଚୋଟ ଲାଗିବ ବୋଲି ଯେଉଁ ଦେଶର ନେତାମାନଙ୍କ କଣ୍ଠରେ ସରସ୍ୱତୀ ମୁକରିର ହେଉଅଛନ୍ତି, ସେ ଦେଶର ଭବିଷ୍ୟତ୍ ଆମ ଜିଭ ଅଗରେ ଥୁଆ ! ଏଥିପାଇଁ କହନ୍ତି - ''ଧୋବଧାଉଳିଆ ଚୋରି କରନ୍ତି, ରଙ୍କୁଣୀ ଦେଖିଲେ ମାରି ଗୋଡ଼ାନ୍ତି ।''

ଅବଶ୍ୟ ଏ ମନ୍ତବ୍ୟଗୁଡ଼ାକ ଯୋଗୁଁ ଦେଶର ଭୂମିପତିମାନେ ଗରିବ ଉପରେ ଖପ୍ପା ହେବେ । କେତେକ ଉଚ୍ଚପଦସ୍ଥ ବ୍ୟକ୍ତିମାନେ ମନେକରନ୍ତି ସେ ସେମାନେ ସମାଲୋଚନାରୁ ବାହାର । ଅର୍ଥାତ୍ ସେମାନଙ୍କ କାର୍ଯ୍ୟକଳାପକୁ ସମାଲୋଚନା କରିବାର କ୍ଷମତା ତୁମ ଆମ ଭଳି ଇତର ଲୋକଙ୍କର ନାହିଁ ।

ପଞ୍ଜାବ ପ୍ରଦେଶର ଭୂସ୍ୱାମୀମାନଙ୍କୁ ସମ୍ବୋଧନ କରି ଲାହୋର ଦରବାରରେ ୩-୪-୧୯୧୧ରେ ବଡ଼ଲାଟ ଲର୍ଡ଼ ହାର୍ଡ଼ିଞ୍ଜ ମହୋଦୟ ଯେଉଁ ଉପଦେଶ ଦେଇଅଛନ୍ତି, ତାହା ପ୍ରତି ଏକା ପଞ୍ଜାବର କାହିଁକି, ସମଗ୍ର ଭାରତର ଓ ବିଶେଷତଃ ଉତ୍କଳର ରାଜାମାନଙ୍କର ଦୃଷ୍ଟି ଆକର୍ଷିତ ହେବା ଏକାନ୍ତ ଆବଶ୍ୟକ । ମହାମତି ରାଜପ୍ରତିନିଧି ଲର୍ଡ଼ ହାର୍ଡ଼ିଞ୍ଜ ସେହି ଉପଲକ୍ଷରେ ରାଜାମାନଙ୍କୁ ସମ୍ବୋଧନ କରି ତଳଲିଖିତ ମହାମୂଲ୍ୟ ଉପଦେଶ ପ୍ରଦାନ କରିଅଛନ୍ତି -

To you, Chiefs of the Punjab, I would say one word in conclusion. Whatever are the problems and responsibilities of British India you have each your full share in them. Times have changed and are still changing. We all live under a glare of criticism which was unknown to our fathers, but from that the progress of the world demands a higher standard of duty and principle than sufficed for the rough and ready days of old. This is not an age when principalities can be carved out with the sword, or when glory is to be won by holding your own against a hostile invader. But you live among dangers of a more subtle nature. The battle you have to fight is against the temptation to lives of ease and luxury. I ask you one and all to resist those temptations with all your might. You have in trust the well-being and happiness of thousands of your subjects. Let it be your ideal to leave them happier and better than you found them, and let it be your ambition to hand down to posterity a name that shall ever be loved and reverenced by those that come after.

ଏହାର ମର୍ମ ଏହି କି ଆମ୍ଭମାନଙ୍କ କାର୍ଯ୍ୟକଳାପ ସର୍ବଦା ସାଧାରଣଙ୍କଦ୍ୱାରା ସମାଲୋଚିତ ହେଉଅଛି ଏବଂ ମାନ୍ଧାତାଙ୍କ ଅମଳର ନୀତି ଓ କର୍ତ୍ତବ୍ୟଜ୍ଞାନ ଅପେକ୍ଷା ବର୍ତ୍ତମାନ ନୀତି ଓ କର୍ତ୍ତବ୍ୟଜ୍ଞାନର ସୀମା ଢେର ବଢ଼ିଅଛି । ରାଜା ହୋଇ ଆଳସ୍ୟ ଓ ମଉଜରେ ଦିନ କାଟିବାର ପ୍ରଲୋଭନକୁ ଆପଣମାନେ ସମସ୍ତେ ଯଥାସାଧ୍ୟ ଏଡ଼ିବାକୁ ଚେଷ୍ଟା କରନ୍ତୁ, ଏହାହିଁ ଆମ୍ଭର ଆପଣମାନଙ୍କୁ ବିଶେଷ ଅନୁରୋଧ । ସହସ୍ର ସହସ୍ର ପ୍ରଜାଙ୍କ ସୁଖ ସ୍ୱଚ୍ଛନ୍ଦତା ଆପଣମାନଙ୍କଠାରେ ଧର୍ମତଃ ଅର୍ପିତ ହୋଇଅଛି । ଆପଣମାନଙ୍କ ରାଜତ୍ୱ ପୂର୍ବେ ସେମାନେ ଯେପରି ଅବସ୍ଥାରେ ଥିଲେ, ଆପଣମାନେ ସେମାନଙ୍କୁ ତଦପେକ୍ଷା ଅଧିକ ଉନ୍ନତ ଓ ସୁଖୀ କରି ଯିବେ, ଏହି ଉଦ୍ଦେଶ୍ୟ ପ୍ରତି ଆପଣମାନଙ୍କର ସର୍ବଦା ଦୃଷ୍ଟି ରଖିବା ଏକାନ୍ତ ଆବଶ୍ୟକ ଏବଂ ଭାବୀ-ବଂଶଧରମାନେ ଯେପରି ଆପଣମାନଙ୍କ ନାମକୁ ସର୍ବଦା ଘୋଷି ହେଉଥିବେ, ତହିଁ ପ୍ରତି ଲକ୍ଷ୍ୟ ରଖି ଚଳିବା ଦରକାର ।

ଆମ ଦେଶୀୟ ରାଜାମାନଙ୍କ ନଜର ଏ ଉପଦେଶ ଉପରେ ନ ପଡ଼ିଲେ ନାଚାର । ଆଜି ଏତିକି ।

ଉତ୍କଳ ସାହିତ୍ୟ/୧୪ଶ ଭାଗ/୧୨ଶ ସଂଖ୍ୟା/୧୩୧୪ ସାଲ ।

## ।। ପଇଁତିରିଶ ।।

ପାଠ ଡାକୁଛି, ''ଚାରି ମାଇପିରେ ଚାରି କଥା, ଚାରି ମିଣିପିରେ ଚାରି କଥା ।'' ଅର୍ଥାତ୍ ପଞ୍ଚାଏ ନିଷ୍କର୍ମା ଏକ ଜାଗାରେ ଜୁଟିଲେ ପର କଥା, ଘର କଥା ଅନେକ ପଡ଼ିଯାଏ । ପଶା ଖେଳବେଳେ ଯେଉଁ ଗୋଟିଗୁଡ଼ିକର କାମ ସରିଯାଏ, ସେଗୁଡ଼ିକ ପାଲି ମଝିରେ ଥୁଆ ହୁଏ । ସେହିପରି ଓକିଲଖାନାରେ (Bar Library) ନିଷ୍କର୍ମା ଓକିଲଯାକ ବସିଯା'ନ୍ତି ଓ ସେଠାରେ ସୀତା ଠାକୁରାଣୀଙ୍କଠାରୁ ଲଗାଏତ୍ ଘୁଷୁରିଆ ମା ପାଲୁଣୀ ପର୍ଯ୍ୟନ୍ତ ସବୁ କଥା ପଡ଼ିଯାଏ । ଦିନେ ପୂଜ୍ୟପାଦ କେତେଗୁଡ଼ିଏ ପ୍ରବୀଣ ଓକିଲ ଆସି କଟକର ଓକିଲଖାନାରେ ଅଡ୍ଡାମରା ହୋଇ ବସିଥା'ନ୍ତି । ଏହି ସମୟରେ ମୁଁ ଆସି ଘାଉଁରି ଖାଇ ତାଙ୍କ ମଝିରେ ଲଥ୍‌କିନି ବସିଗଲି ।

'ଓକିଲାତି ପେସା'ର ମାହାତ୍ମ୍ୟ ସେ ଦିନ ଗଳ୍ପର ବିଷୟ ଥିଲା । ଜଣେ ବୁଢ଼ା କହିଲେ, ''ଆରେ ! ଏ ପେସାରେ ବାଳ ପାଚିଲା, ଦାନ୍ତ ପଡ଼ିଲା, ମୁଁ ଅନୁଭବରେ ଦେଖିଲି ଯେ ଓକିଲାତି ପେସାଠାରୁ ନିଉଛୁଣା ପେସା ଦୁନିଆରେ ନାହିଁ । ମନୁଷ୍ୟର ଜୀବିକା ନିର୍ବାହର ଅନ୍ୟ କିଛି ଉପାୟ ଥିଲେ ଏଥିରେ କଦାପି ପଶିବା ଉଚିତ ନୁହେଁ ।'' ଆଉ କାହା ମୁହଁରୁ ଏ କଥା ଶୁଣିଥିଲେ ଅବଶ୍ୟ ମୁଖିଟାଏ ମାରିବାକୁ ମନ ହୋଇଥାନ୍ତା, କିନ୍ତୁ ବୁଢ଼ାଙ୍କ କଥାକୁ ହସରେ ଉଡ଼ାଇ ଦେବାର ଜୁ' ନାହିଁ । ଅନୁଭବ ଦ୍ୱାରା ସେ ପେସାଟାକୁ ତୁପୁଡ଼ି ଚାପୁଡ଼ି ଅରକ ନିଗାଡ଼ି ରଖି ଅଛନ୍ତି ଓ ବର୍ତ୍ତମାନ ମଧ ସେହି ପେସାର କୁହୁକ

ଲଡୁ ଚାଟୁ ଅଛନ୍ତି । ଏପରିସ୍ଥଳରେ ତାଙ୍କୁ ତର୍କ ବିତର୍କ ଓ ଭୁରୁଡ଼ାଭୁରୁଡ଼ି ଦ୍ୱାରା ହୁଙ୍କାଇ ଦେବାର ଜୁ' ନାହିଁ । ଏହା ବିଚାରି ମୁଁ ଗୁପଚୁପ କାନ ପାରି ତାଙ୍କ କଥାଗୁଡ଼ାକ ଠିକେ ଠିକେ ସାଉଁଟି ନେଲି । ତାଙ୍କ ଅନୁଭବସିଦ୍ଧ ଉପଦେଶର ମର୍ମ ଏହି - ''ଏ ବ୍ୟବସାୟଠାରୁ ଅସନା ଓ ଅଲରା ବ୍ୟବସାୟ ଦୁନିଆରେ ନାହିଁ - ଏ ବ୍ୟବସାୟରେ ପଶିଥିବା ଲୋକ ଦୁନିଆରେ ସମସ୍ତଙ୍କ ମଙ୍ଗଳ କାମନା କରିବା ଅସମ୍ଭବ । ଏ ବ୍ୟବସାୟରେ ବୁଦ୍ଧିର ବା ବିଚକ୍ଷଣତାର କସରତ ନାହିଁ, କେବଳ ଦ୍ୱାହି ଅମୁକ ହାଇକୋର୍ଟର, ଦ୍ୱାହି ଅମୁକ ନଜିରର, ଏହା କହି ପେଟ ପୋଷିବାକୁ ହୁଏ ।'' ଆଉ ଜଣେ ପ୍ରବୀଣ ପେସାଦାର ବ୍ୟକ୍ତି କହିଲେ, ''ଏ ତ ପେସାର ଗୋଟାଏ ପାଖ, ଏ ପେସାର ଭଲ ପାଖଟାଏ ତ ଅଛି । ଏ ପେସାରେ ଲୋକ ଚରିତ୍ରକୁ ଅନୁଧ୍ୟାନ କରିବାକୁ ଯେପରି ସୁବିଧା ମିଳେ ବୋଧହୁଏ ଅନ୍ୟ କୌଣସି ପେସାରେ ତାହା ନାହିଁ ।'' ଆଉ ଜଣେ କହିଲେ, ''କେତେବେଳେ କେଉଁ ହାକିମଙ୍କ ପାଖରେ କିପରି ବ୍ୟବହାର ଆମ୍ଭେମାନେ ପାଉଁ, ତହିଁର ଠିକଣା ନାହିଁ । କିଏ ଓକିଲଙ୍କୁ ଦେଖିଲେ ନିଧି ପାଇଲା ଭଳି କୃତକୃତ୍ୟ ହୁଅନ୍ତି, କିଏ ଆମକୁ ଦେଖିଲାକ୍ଷଣି ଯାଦୁ କୁଣ୍ଡାଇଲା ଭଳିଆ ମୁହଁଟାମାନ କରିପକାନ୍ତି, କିଏ ଅବା ଆପଣା ଚଉକିବସା ମର୍ଯ୍ୟାଦାର ଆତସବାଜି ଆମ୍ଭମାନଙ୍କୁ ଦେଖାନ୍ତି, କେହି କେହି ଆଗରୁ ତେଲମରା ହୋଇଥିବା ନିଶ ଦୁଇ ପଟାକୁ ମୋଡ଼ି ବସନ୍ତି, କେହି କେହି ଆଇନ-ସଂସାରର ନୂତନ ଛଙ୍କା ଖବରଗୁଡ଼ାକ ଆଗ୍ରହ ସହକାରେ ଆମ୍ଭମାନଙ୍କଠାରୁ ସଂଗ୍ରହ କରି ପକାନ୍ତି, କେହି କେହି ଆପଣା ଗଣ୍ଡବୁଦ୍ଧିକୁ ଘୋଡ଼ାଇବା ପାଇଁ ମୁହଁଟାମାନଙ୍କୁ ଝଟକିନି କୋଡ଼ମେଇ ଭଳିଆ କରି ପକାନ୍ତି ଇତ୍ୟାଦି ଇତ୍ୟାଦି ।'' ଆଉ ଜଣେ କହିଲେ, ''କଚେରିକୁ ଯେଉଁମାନେ ମକଦ୍ଦମା କରିବାକୁ ଆସନ୍ତି, ସେମାନଙ୍କ ମଧ୍ୟରୁ ଚଉଦ ପଣ ସତ୍ୟର ଧାର ଧାରନ୍ତି ନାହିଁ । ଯେଉଁ ଦୁଇ ପଣିଆ ସତ୍ୟର ଜୟ, ଧର୍ମର ଜୟ କରିବାକୁ କଚେରିକୁ ଆସନ୍ତି, ସେମାନେ ମନବୋଧିଆ ମକଚା ମଲା ପାଇ ମୁହଁଟିମାନ ଶୁଖେଇ ଦେଇ ଘରକୁ ଫେରନ୍ତି । ଏ ପେସାରେ ଦିନରାତି ଆମ୍ଭେମାନେ କେବଳ ଏହି ଚଉଦପଣିଆଙ୍କ ଭିତରେ ଲଟପଟ ହେଉଅଛୁଁ ।'' କେହି କେହି କହିଲେ, ''ବାବା ! ବି.ଏ. କର, ଏମ୍.ଏ. କର, ବି.ଏଲ. କର, ଯାହା କର, ଟରଣିଙ୍କୁ ସଲାମଟାଏ ଲେଖାଏଁ ନ ବଜାଇଲେ ଚୁଲିରେ ହାଣ୍ଡି ନ ବସେ ରେ ବାବା ।'' ଏହିପରି ନାନା ତର୍କ ବିତର୍କ ହେଲା । ସଂକୀର୍ତ୍ତନ ବେଳେ ମୋ ଭଳିଆ ହାଉଡ଼ାଟା ମଧ୍ୟ ଘଡ଼ିଏ ଓସ୍ତାତି ଦେଖାଇ ନିଏ । ମୁଁ ପ୍ରଲୋଭନ ସମ୍ଭାଳି ନ ପାରି କହିଲି, ''ଏ ପେସାରେ ସମୟ, ଧନ, ମକ୍କେଲ, ହାକିମ ଇତ୍ୟାଦିର କିଛି ସ୍ଥିରତା ନାହିଁ । ଏ କଥା 'ନାହିଁ' କରିବାର ଜୁ' ନାହିଁ । କିନ୍ତୁ ଏହି ଅନିଶ୍ଚିତ ଘଟନାମାନଙ୍କ ମଧ୍ୟରେ ଘାଉଁରି ଖାଇ ଆମ୍ଭମାନଙ୍କୁ କାର୍ଯ୍ୟକ୍ଷେତ୍ରରେ ମସ୍ତିଷ୍କ ଚାଳନାର ଯେଉଁ ବିସ୍ତୃତ ପରିସର ମିଳେ, ତାହା ଅନ୍ୟ କ୍ଷେତ୍ରରେ ସର୍ବଦା ମିଳିବା ଦୁଷ୍କର । ମନେକରନ୍ତୁ, ଗୋଟିଏ ମକଦ୍ଦମାରେ ପ୍ରବୀଣ ଡାକ୍ତରଙ୍କୁ ଜେରା କରିବାକୁ ହେବ । ଏପରି ସ୍ଥଳରେ ଓକିଲ ଡାକ୍ତରଙ୍କଠାରୁ ବିଦ୍ୟାରେ ନ ବଳିଲେ ତାଙ୍କୁ

ଢେରା କରି ତାଙ୍କ ପରୀକ୍ଷାରେ ଦୋଷ ଦେଖାଇବା ଅସମ୍ଭବ ହେବ । ଅତଏବ ଉପସ୍ଥିତ ମକଦ୍ଦମାର ବିଷୟ ସମ୍ବନ୍ଧରେ ଅନେକ ଡାକ୍ତରୀ ବହି ଆୟତ୍ତ କରିବାକୁ ହେବ । କୌଣସି ଜମିଦାରୀ ସିରସ୍ତା ସମ୍ବନ୍ଧୀୟ ମକଦ୍ଦମାରେ ଜମିଦାରୀ ପରିଚାଳନାର ହାଲଚାଲ ଉତ୍ତମ ରୂପେ ଆୟତ୍ତ କରିବାକୁ ହେବ । ଜମି ମାପ ମକଦ୍ଦମାରେ ମାପ ସମ୍ବନ୍ଧରେ ଯଥେଷ୍ଟ ଅଭିଜ୍ଞତା ସଙ୍ଗେ ସଙ୍ଗେ ଶିକ୍ଷା କରିବାକୁ ହେବ । ଧର୍ମ ସମ୍ବନ୍ଧୀୟ ମକଦ୍ଦମାରେ ଉକ୍ତ ଧର୍ମ ସମ୍ବନ୍ଧୀୟ ଶାସ୍ତ୍ରମାନ ଉତ୍ତମ ରୂପେ ଆୟତ୍ତ କରିବାକୁ ହେବ । ସାଧାରଣତଃ ଦେଖାଯାଏ ଯେ "A jack of all trades is the master of none" କିନ୍ତୁ ଓକିଲ "Jack of all trades" ଅର୍ଥାତ୍ ସବଜାନ୍ତା ହେବା ଦରକାର ଓ ତହିଁ ସଙ୍ଗେ ସଙ୍ଗେ "Master of all" ହେବାର ଦରକାର । ମକଦ୍ଦମାରେ ଯେତେବେଳେ ଯେଉଁ ପାଠର ପରଖ ହେବ, ସେ ପାଠରେ ଜିତିବାକୁ ହେବ । ଏ ସୁବିଧା ଓକାଲତି ପେସାରେ ଯେପରି ମିଳେ, ବୋଧହୁଏ ଅନ୍ୟ ପେସାରେ ମିଳେ ନାହିଁ । ଏ ପେସାରେ ଆଇନ କାନୁନ, ଧର୍ମଶାସ୍ତ୍ର, ସର୍ଭେ, ସେଟଲମେଣ୍ଟ, ଡାକ୍ତରୀ, ଜମିଦାରୀ ଓ ମହାଜନୀ ସିରସ୍ତା, ବିଜ୍ଞାନ, ରସାୟନ, ବିଷାୟନ, ଜାରଣ, ମାରଣ, ଉଚ୍ଚାଟନ, ବଶୀକରଣ, ମୋହନ, ସ୍ତମ୍ଭନ ସବୁଥିରୁ ମାଲ୍ ମସଲା ସବୁବେଳେ କୋଥଳିରେ ସାଉଁଟି ରଖିଥିବା ଦରକାର ଓ ଘାଉଡ଼ ଲାଗିଲା ବେଳେ ବେଳକାଳ ଉଣ୍ଡି ମୂଣି ଦରାଣ୍ଡି ସମୟୋଚିତ ମୂଳ ମୂଳିକା ଲଗାଇ ବିଷ ଖସାଇବାକୁ ହେବ ।'' ମୋ କଥାଟା ଶୁଣି ଜଣେ ଦୁଇ ଜଣ ବୁଢ଼ା ମୁରକିହସା ଦେଲେ । କହିଲେ, ''ହଁ ସତ !'' ଏହିପରି ସବୁ ସେଦିନ ଅନେକ ଦୁଃଖସୁଖ ପଡ଼ିଲା । ଜଣେ ଜଣେ ଏ ପେସାରେ ଆପଣା ଆପଣା ଅନୁଭବ କରିଥିବା କଥା ସବୁ କହିଲେ । ଜଣେ ପ୍ରବୀଣ ଓକିଲ କହିଲେ ଯେ ସେ ଦିନେ ଜଣେ ହାକିମଙ୍କ ଘରକୁ ଯାଇଥିଲେ । କଥା ପ୍ରସଙ୍ଗରେ ହାକିମ କହିଲେ, ''ହାକିମମାନଙ୍କ ହୃଦୟ ପୋଷିତ-ଇଚ୍ଛାଗୁଡ଼ାକ ଓକିଲମାନେ କାର୍ଯ୍ୟରେ ପରିଣତ କରାଇ ଦିଅନ୍ତି ନାହିଁ । କଥା କଥାକେ ଆଇନ ଓ ନଜିରର ଦ୍ୱାହି ଦେଇ ହାକିମମାନଙ୍କର ପାଟି ଓ ହାତକୁ ଛନ୍ଦଣି ମନ୍ଦଣି କରି ବାନ୍ଧି ପକାନ୍ତି ଓ ମିସଲରେ ଓକିଲ ମୁକ୍ତାରଗୁଡ଼ାକ ଉପସ୍ଥିତ ଥିବା ପର୍ଯ୍ୟନ୍ତ ହାକିମଙ୍କୁ ଭାରି ତାକତରକରେ ଜଗିଜାଗି ଚଳିବାକୁ ପଡ଼େ । ପ୍ରଥମ ଭୟ - ଆଇନ ଓ ନଜିରର ଦ୍ୱାହି, ଦ୍ୱିତୀୟ ଭୟ - ଓକିଲଗୁଡ଼ାକ ଭାରି ଦୁଷ୍ଟ, ଟିକିଏ ତିଳଭଳିଆ ବେଆଡ଼ା କଥାଟାଏ ହୋଇଗଲେ ଓକିଲଗୁଡ଼ାକ ଯାଇ ଦାଣ୍ଡ ହାଟରେ ସେ କଥାକୁ ତାଳ କରି ହାଟ ବସାଇ ଦିଅନ୍ତି । ଅତଏବ ଓକିଲ ମୁକ୍ତାରଙ୍କୁ ମିସଲରୁ ଓ ରାଜ୍ୟରୁ ତଡ଼ିବାର କୌଣସି ସୁବିଧା ଥିଲେ ଆମ୍ଭେ ଉକ୍ତ ସୁବିଧାର ସଦ୍‌ବ୍ୟବହାର କରିବାକୁ କୁଣ୍ଠିତ ହେଉ ନାହିଁ । ଆମ୍ଭେ ଯେତେବେଳେ ଅମୁକ ଜଙ୍ଗଲ ମୁଲକରେ ଥିଲୁଁ, ସେଠାରେ ଆସାମୀ ପକ୍ଷରୁ ଓକିଲ ମୁକ୍ତାର ହାଜର ହେବା ସକାଶେ ଅନୁମତି ଦେବାକୁ ହାକିମ ବାଧ୍ୟ ନୁହନ୍ତି । ସେହି ସମୟରେ ଗୋଟିଏ ଆସାମୀ ପକ୍ଷ ସମର୍ଥନ କରିବା ନିମନ୍ତେ ଆମ୍ଭ ମିସଲରେ ଜଣେ ମୁକ୍ତାର ଯାଇ ହାଜର ହେଲେ ଓ ମ

ଫୁଟ ପରିଧି ବିଶିଷ୍ଟ ଗୋଟିଏ ସଲାମ ଠୁକି ମିସଲ ଆଗରେ ବସିଗଲେ । ଆମ୍ଭେ ପ୍ରଥମେ ଉକ୍ତ ମୁକ୍ତାରଙ୍କୁ ସ୍ୱାଗତ ପ୍ରଶ୍ନ କରି ତାଙ୍କ ଆଗମନର କାରଣ ପଚାରିଲୁଁ ଓ ତାଙ୍କଠାରୁ ଉତ୍ତର ଶୁଣି ତାଙ୍କୁ କହିଲୁଁ, "ମହାଶୟ ! ଆପଣ ଏତେ କଷ୍ଟ ସ୍ୱୀକାର କରି ଏଠାକୁ ଆସିଥିବାରୁ ଆମ୍ଭେ ଆପଣଙ୍କ ସହିତ ସହାନୁଭୂତି ପ୍ରକାଶ କରୁଅଛୁଁ । ଆମ୍ଭେ ଏଠା ପ୍ରଚଳିତ ଆଇନ ଅନୁସାରେ ଓକିଲ ମୁକ୍ତାର ଗ୍ରହଣ କରିବାକୁ ବାଧ୍ୟ ନୋହୁଁ ଓ ଏ ମକଦ୍ଦମାରେ ଆମ୍ଭେ ଆପଣଙ୍କୁ ହାଜର ହେବାକୁ ଅନୁମତି ଦେବୁଁ ନାହିଁ ।" କେବଳ ଅନୁଗ୍ରହର ଏତିକି ନିଦର୍ଶନ ଦେଖାଇ ହାକିମ ନିଶ୍ଚିନ୍ତ ହେଲେ ନାହିଁ । ମୁକ୍ତାରଙ୍କୁ କହିଲେ, "୨୪ ଘଣ୍ଟା ମଧ୍ୟରେ ଆପଣଙ୍କୁ ଏ ରାଜ୍ୟ ତ୍ୟାଗ କରିଯିବାକୁ ହେବ ଓ ଏହା ପାଳିତ ହେଲା କି ନାହିଁ ତହିଁ ପ୍ରତି ଦୃଷ୍ଟି ରଖିବା ପାଇଁ ଆମ୍ଭେ ପୁଲିସ ଦାରୋଗାଙ୍କ ପ୍ରତି ଆଦେଶ ପ୍ରଦାନ କରିଅଛୁଁ ।" ମୁକ୍ତାରବାବୁ ଏହା ଶୁଣି ଆଉ ଗୋଟିଏ ଅଧେ ଫୁଟିଆ ବୃତ୍ତଖଣ୍ଡ ବିଶିଷ୍ଟ ସଲାମଟିଏ ବଜାଇ ମିସଲରୁ ଖସି ଯେନତେନପ୍ରକାରେଣ ଆପଣା ମୂଳକରେ ପହଞ୍ଚିଲେ ।

ସେଦିନ ଏହିପରି ଅନେକ କଥା ଓକିଲଙ୍କ ଖଟିରେ ପଡ଼ିଗଲା । ଆଉ ଜଣେ ଓକିଲ କହିଲେ ଯେ ସେ ଏକ ଘୁମା ହାକିମଙ୍କ ପାଖରେ ମକ୍କେଲର ଜୀବନ ନାଟିକା ନେଇ ଉପସ୍ଥିତ ହେଲେ । ଓକିଲ ଜବାବ ସୁଆଲ ଆରମ୍ଭ କଲା ମାତ୍ରେ ହାକିମ ଓ ତନ୍ଦ୍ରାଦେବୀଙ୍କ ମଧ୍ୟରେ ଟେଲିଫୋନ୍ ଚାଲିଲା । ଓକିଲ ବିଚାରା କରେ କଣ ? ପଛକୁ ଉପାୟାନ୍ତର ନ ଦେଖି ଦଣ୍ଡକ ବାଦ ତାଙ୍କ ସମ୍ମୁଖରେ ଥିବା ଆଇନ ବହିମାନଙ୍କୁ ଟେବୁଲ ଉପରେ ଜୋରରେ କଚାଡ଼ି ଦେଉଥା'ନ୍ତି ଓ ସେ ଶବ୍ଦ କାନରେ ପଶିଗଲା କ୍ଷଣି ନିଦ୍ରାଦେବୀ ଦଣ୍ଡକ ସକାଶେ ଆଡ଼େଇ ଯାଉଥା'ନ୍ତି । ଓକିଲ ସେହି ଅବସରରେ ଜବାବ ସୁଆଲ କରି ଯା ରକ୍ଷା ପାଇଲେ । ଅପର ଦିଗରେ ମଧ୍ୟ ଦେଖାଯାଏ ଯେ ହାଇକୋର୍ଟ ଜଜ୍‌ଙ୍କଠାରୁ ଲଗାଏତ୍ ଜିଲ୍ଲା ଜଜ୍ ପର୍ଯ୍ୟନ୍ତ ବିଚାରପତିମାନେ ସରଳ ଭାବରେ ପ୍ରକାଶ କରନ୍ତି ଯେ ଓକିଲମାନେ ମକଦ୍ଦମା ବିଚାର ସମ୍ବନ୍ଧରେ ହାକିମମାନଙ୍କୁ ଢେର ସାହାଯ୍ୟ କରନ୍ତି ଓ ଓକିଲମାନେ ନ ଥିଲେ ନ୍ୟାୟ ବିଚାରରେ ଅନେକ ସମୟରେ ତ୍ରୁଟି ହେଉଥା'ନ୍ତା । କେହି କେହି କହନ୍ତି, ଓକିଲ ମୁକ୍ତାରମାନେ ମାର୍କାମରା ଠକ । କେହି କେହି କହନ୍ତି ଯେ କର୍ତ୍ତୃପକ୍ଷମାନେ ଓକିଲମାନଙ୍କୁ ଘୃଣା କରନ୍ତି । ଏପରି ସ୍ଥଳରେ 'ନାନା ମୁନିଙ୍କର ନାନା ମତ' । ଓକିଲମାନେ ଯେଉଁ ଅସ୍ତ୍ରଶସ୍ତ୍ର ଧରି ଦାଣ୍ଡକୁ ବାହାରନ୍ତି, ସେଗୁଡ଼ାକ ତ ତାଙ୍କ ଘର ତିଆରି ପାଠ ନୁହେଁ । ନ୍ୟାୟ ବିଚାରର ତ୍ରୁଟି ନ ହେବ ବୋଲି ନ୍ୟାୟପର ଗଭର୍ଣ୍ଣମେଣ୍ଟ ଯେଉଁ ପ୍ରମାଣ ଆଇନ ଓ ଅମାନ୍ୟ ଆଇନମାନ କରିଅଛନ୍ତି, ଓକିଲ ମୁକ୍ତାରମାନେ ସେହିଗୁଡ଼ିକର ଦ୍ୱାହି ଦେଇ ହାକିମଙ୍କ ନିକଟରେ ପକ୍ଷର ଦାବି ସମର୍ଥନ କରନ୍ତି ଓ ସରକାରଙ୍କ ନିର୍ଦ୍ଧାରିତ ଯୋଗ୍ୟତା-ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଓକାଲତି କରିବାକୁ ଅନୁମତି ଦିଆଯାଏ । ଏପରି ସ୍ଥଳରେ ଓକିଲଗୁଡ଼ାକ ଯେ ସମାଜର ବୋଝ ଓ ଅଳିଆ, ଏ କଥା କହିଲେ ଛାଡୁଛି କିଏ ? ଆମକୁ ସରକାର ଯେଉଁ ଭେକ ଓ ନାମାବଳୀ ଦେଇଅଛନ୍ତି, ତାହା ଘେନି ଆମେ

ସରକାରଙ୍କ ରାଜ୍ୟରେ ସ୍ୱଚ୍ଛନ୍ଦରେ ବିଚରଣ କରୁଅଛନ୍ତି । ଯେବେ କୌଣସିଠାରେ କାଦୁଅରେ ଗୋଡ଼ ପୂରାଇବୁ, ତେବେ ସାଧାରଣ ଲୋକଙ୍କ ଭଳି ଆମକୁ ମଧ୍ୟ ଗୋଡ଼ ଧୋଇବାକୁ ହେବ । କିନ୍ତୁ କାଦୁଅରେ ନ ପଶି ବାଟେ ବାଟେ ଯାଉଥିବା ପର୍ଯ୍ୟନ୍ତ ଯେ ଯେତେ ଇଚ୍ଛା ତେତେ ରଡ଼େଇ ଖଡ଼େଇ ହେବ, କିନ୍ତୁ କିଛି କରିପାରିବେ ନାହିଁ । ତାଙ୍କର ଗର୍ଜନ ଗର୍ଜନରେ ପର୍ଯ୍ୟବସିତ ହେବ । ଲାଭ ମଧ୍ୟରେ ତାଙ୍କରି କଣ୍ଠନାଳିରେ ଘା' ହେବ । ଏହି ପ୍ରସଙ୍ଗରେ ଦିନେ ଜଣେ ବୃଦ୍ଧ ଓକିଲ ବନ୍ଧୁ ଗୋଟିଏ ଘଟନା ମତେ କହିଥିଲେ; ଦିନେ ଜଣେ ହାକିମଙ୍କର ଓ ତାଙ୍କର ନିମ୍ନଲିଖିତ ଭାବରେ ଘରୋଇ କଥୋପକଥନ ହୋଇଥିଲା -

ହାକିମ - ''ଓକିଲମାନେ ଭାରି କୁହୁକ ଜାଣନ୍ତି । ସେମାନେ ହାକିମମାନଙ୍କୁ କୁହୁକ ଦେଖାଇ ଭୁଲାଇ ଦିଅନ୍ତି ଓ ହାକିମମାନେ ସେହି କୁହୁକରେ ଭୁଲିଯାଇ ଓକିଲଙ୍କ କଥା ଅନୁସାରେ ଢଳି ପଡ଼ନ୍ତି ।''

ଓକିଲ - ''ସଭ୍ୟ ଜଗତ୍ ଯେତେବେଳେ ଓକିଲାତିର ସୃଷ୍ଟି କଲା, ତେତେବେଳେ ଓଲୁ ହାକିମଙ୍କ ଅସ୍ତିତ୍ୱ ବିଷୟ ଆଇନକର୍ତ୍ତାମାନେ କଳ୍ପନାଚକ୍ଷୁରେ ଭାବି ନ ଥିଲେ । ତାହାହେଲେ ଓଲୁ ଓ ଗଧିଆ ହାକିମମାନଙ୍କ ମିସଲର ପ୍ରବେଶ ଦ୍ୱାରରେ 'ଓକିଲଙ୍କର ପ୍ରବେଶ ନିଷେଧ' ବୋଲି ଟିକଟ ମରାଯିବାର ବ୍ୟବସ୍ଥା କରିଥାନ୍ତେ !'' ଏହା ଶୁଣି ହାକିମ ଟିକିଏ ଅଖଣ୍ଡ ଅବୋଧ କରି ହଠାତ୍ ଚା' ପିଆଲାଟାକୁ ମୁହଁ ପାଖକୁ ନେଇ ମନବୋଧିଆ ଶୋଷାଟାଏ ଶୋଷି ନେଲେ । ମୁଖଭଙ୍ଗୀ ଦେଖି ତାଙ୍କ ମନଟା ଠଉରାଇବାକୁ ବନ୍ଧୁ ସୁଯୋଗ ପାଇଲେ ନାହିଁ ।

ପରିଶେଷରେ ସେଦିନ ଓକିଲଖାନାରେ ଅଧିକାଂଶ ଲୋକଙ୍କ ମତରେ ଏହି କଥା ସ୍ଥିର ହେଲା ଯେ ପେସାଟା ନିହାତି ଅସନା ନୁହେଁ, କିନ୍ତୁ ଏ ପେସାରେ ପଶିଲେ ମନୁଷ୍ୟ ହେବାର ଯେପରି ଅନେକ ସୁବିଧା ଓ ସୁଯୋଗ ଅଛି, ଅମନୁଷ୍ୟ ହେବାର ମଧ୍ୟ ତେତିକି ପ୍ରଲୋଭନ ଅଛି । ସମାଜର ଓ ଦେଶର ମଙ୍ଗଳ କରିବାପାଇଁ ଯେତିକି ଅବସର ଅଛି, ଦେଶକୁ ଉଚ୍ଛନ୍ନ କରିବାକୁ ତେତିକି ପ୍ରଲୋଭନ ମଧ୍ୟ ଅଛି । ସଂସାରର ସବୁ ପେସା ଓ ସବୁ ସ୍ଥାନରେ ବିବେକର କାର୍ଯ୍ୟକ୍ଷେତ୍ର ପ୍ରସାରିତ ରହିଅଛି, ଏ ପେସାରେ ମଧ୍ୟ ତାହା ଅଛି - କିନ୍ତୁ କେହି କେହି ଦେଶଦ୍ରୋହୀ ଓ ସମାଜଦ୍ରୋହୀ ଏ ପେସାର ବାନା ଘେନି ଦ୍ୱାରକା ଛାପାରେ ଦୁନିଆକୁ ଠକୁଅଛନ୍ତି ବୋଲି ଯେ ଏ ପେସାଟାକୁ ନରକର ନର୍ଦ୍ଦମା ପାଣିରେ ଉଝାଳିବାକୁ ହେବ, ଏହା ଯୁକ୍ତିଯୁକ୍ତ ନୁହେଁ । ବରଂଚ ଦେଖାଯାଏ ଯେ ଦେଶର ଅଧିକାଂଶ କର୍ମବୀର ଓ ସେବକ ଏହି ଶ୍ରେଣୀରୁ ବାହାରନ୍ତି ଓ ଦେଶସେବା ନିମନ୍ତେ ଏ ପେସାରେ ଯେତେ ସୁଯୋଗ, ସମୟ ଓ ସୁବିଧା ମିଳେ, ଅନ୍ୟ ପେସାରେ ସଚରାଚର ତାହା ମିଳେ ନାହିଁ । ଜନସାଧାରଣ ଓ ସରକାରଙ୍କ ମଧ୍ୟରେ ଘନିଷ୍ଠ ସଂଯୋଗ ଘଟାଇବାର ସୁଯୋଗ ଯେବେ କାହାରି ଥାଏ, ତେବେ ତାହା ଓକିଲ, ମୁକ୍ତାର ଓ ବ୍ୟବସାୟୀମାନଙ୍କର ।

କାର୍ଯ୍ୟ ଉପଲକ୍ଷରେ ରାମ ପ୍ରଧାନର ବାଡ଼ିଦୁଆରଠାରୁ ଆରମ୍ଭ କରି ପ୍ରଧାନତମ ଧର୍ମାଧିକରଣର ସଦର ଦରଜା ପର୍ଯ୍ୟନ୍ତ ସବୁଠାରେ ଏମାନଙ୍କର ସଂସ୍ରବ ଥାଏ ଓ ଏମାନେ ଦେଶର ମଙ୍ଗଳ କରିବାକୁ ଇଚ୍ଛା କଲେ ସହଜରେ ସରକାରଙ୍କ ଉଦ୍ଦେଶ୍ୟମାନ ଲୋକଙ୍କୁ ବୁଝାଇ ଓ ଲୋକଙ୍କର ଇଚ୍ଛା କର୍ତ୍ତୃପକ୍ଷକୁ ଜଣାଇ ଲୋକଙ୍କୁ ଓ ହାକିମଙ୍କୁ ସୁପରାମର୍ଶ ଦେଇ ଦେଶର ଅଶେଷ କଲ୍ୟାଣ ସାଧନ କରିପାରନ୍ତି ।

ପାଠକ ଅବଧାନ ! ମୋ ପେସାଟାକୁ ମୋ ନିଜ ହାତରେ ଖଣ୍ଡେ ଦୂର ସ୍ୱର୍ଗକୁ ଉଠାଇଦେଲି ବୋଲି ଆପଣମାନେ ମୋ ଉପରେ ଆଖି ରଙ୍ଗାଇବେ ନାହିଁ । ପେସା ଉପରେ ମନୁଷ୍ୟ ନିର୍ଭର କରେ ନାହିଁ, ମନୁଷ୍ୟତ୍ୱ ଉପରେ ପେସା ନିର୍ଭର କରେ । ମନୁଷ୍ୟ ଉଚ୍ଚ ଆଦର୍ଶ ନେଇ ଯେଉଁ ପେସାରେ ପଶିବ, ସେ ପେସାରେ ଆପଣା ବ୍ୟକ୍ତିଗତ ଉଚ୍ଚ ଆଦର୍ଶର ଛାୟା ଅବଶ୍ୟ ଅଙ୍କିତ ହୋଇଯିବ । କିନ୍ତୁ ନୀଚ ସ୍ୱାର୍ଥ, ଅହମିକା, ଦ୍ୱେଷ, କୂଟନୀତି ଇତ୍ୟାଦି ଦୁର୍ଗୁଣ ବୁଜୁଳି କାନ୍ଧରେ ପକାଇ ଯେଉଁ ସ୍ଥାନକୁ ଯିବା, ସେ ସ୍ଥାନକୁ ଆମେ ନିଜେ ନିଜେ ଦୁର୍ଗନ୍ଧମୟ କରିଦେବା ଓ ସେ ଦୁର୍ଗନ୍ଧ ଯୋଗୁଁ ସେ ସ୍ଥାନରେ କୀଟାଣୁ ଜାତ ହୋଇ ଆମରି ନାକରେ ପଶିଲା ବେଳକୁ ଆପଣାର ଦୋଷତକ ପ୍ରତି ଲୋକଙ୍କର ନଜର ଏଡ଼ାଇବା ଅଭିପ୍ରାୟରେ ସେ ସ୍ଥାନକୁ ଓ ସେ ପେସାକୁ ନିନ୍ଦା କରିବା ! ଏ ଚାତୁରୀ ସମସ୍ତଙ୍କଠାରେ ସମ୍ଭବେ ନାହିଁ । ସବୁ ସ୍ଥାନରେ ଓ ସବୁ ପେସାରେ ପ୍ରଲୋଭନ ଅଛି । ତାକୁ ଏଡ଼ାଇବାର ନାମ ମନୁଷ୍ୟତା, ସବୁ ସ୍ଥାନରେ ସୁଯୋଗ ମିଳେ, ସେହି ଆଗତ ସୁଯୋଗମାନଙ୍କୁ ସଦ୍‌ବ୍ୟବହାର କରିବାର ନାମ ମନୁଷ୍ୟତା । ସବୁ ସ୍ଥାନରେ ନିଜର କ୍ଷମତା ବିସ୍ତାରର ଉପାୟ ଅଛି, କିନ୍ତୁ ସେ କ୍ଷମତାକୁ ପାଶବିକ ବଳ ବା ଧନ ଉପରେ ଠିଆ ନ କରାଇ ନିଜ ଜୀବନରେ ପ୍ରମାଣିତ ଓ ପ୍ରତ୍ୟକ୍ଷୀକୃତ ଉଚ୍ଚ ଆଦର୍ଶ ଓ ଆଚରଣଦ୍ୱାରା କ୍ଷମତା ବିସ୍ତାର କରିବାହିଁ ମନୁଷ୍ୟତା । ଏହା ଛଡ଼ା ଆଉ ସବୁ କସରତ ଓ ଗଳାବାଜି ଓ ଭାଣ୍ଡପଣିଆର ଦ୍ୱାର, ଏଥିରେ ସନ୍ଦେହ ନାହିଁ । ଆଜି ଇତି ଶ୍ରୀ -

ଉତ୍କଳ ସାହିତ୍ୟ/୧୫ଶ ଭାଗ/୨ୟ ସଂଖ୍ୟା/୧୩୧୮ ସାଲ ।

## ।। ଛତିଶ ।।

ଗତ ସଂଖ୍ୟା ସାହିତ୍ୟ ପାଇଁ ହାଲଚାଲ ଯୋଗାଇ ନ ପାରିବାରୁ ସମ୍ପାଦକ ମହାଶୟ ତ ସହଜେ ବିରକ୍ତ । କିନ୍ତୁ କେହି କେହି ପାଠକ ମଧ୍ୟ ମୋ ଉପରେ ଭ୍ରୂକୁଟି କରିଅଛନ୍ତି । ସେଦିନ ଜଣେ ବାଟରେ ମତେ ଗିରଫଦାର କରି ଭାରି ତୋଡ଼ରେ ପଚାରିଲେ, ‘‘ହଇ ହୋ ! ଏଥରକ ଦୁନିଆର ହାଲଚାଲ ଦେଲ ନାହିଁ କାହିଁକି ?’’ ସତେକି ଯେପରି ପ୍ରଶ୍ନକର୍ତ୍ତାଙ୍କ ଠାରୁ ଆମ ବାପା ଶହେ ପଚାଶ ଧାରନ୍ତି ! ପହିଲେ ମନ ହେଲା ପଦେ ଟାଣୁଆ କରି ହାଣି ଦେବାକୁ  ଫେର ମନେ ମନେ ବିଚାରିଲି, ଯେଉଁମାନଙ୍କ ମତ

ଉପରେ ଆମ ଭଳିଆ ଦଦରା ଲେଖକଙ୍କ ପସାର ନିର୍ଭର କରେ ଓ ବେଳକାଳ ପଡ଼ିଲେ ଯେଉଁମାନଙ୍କଠାରୁ ଖଣ୍ଡେ ସୁପାରିସ ନେବା ଲାଳସାରେ ତାଙ୍କ ବାଡ଼ିଦୁଆରେ ଦାଣ୍ଡଦୁଆରରେ ଘଡ଼ିଏ ଦୁଇ ଘଡ଼ି ନାକେଇବାକୁ ହୁଏ, ସେମାନଙ୍କଠାରୁ ବେଳେ ବେଳେ ମୁଖ୍ଟାଏ, ଚଟକଣିଟାଏ ସହିବାକୁ ଚମଡ଼ାକୁ ଟିକିଏ ମୋଟା ନ କଲେ ଚଳିବ କାହୁଁ ? ଏହା ବିଚାରି ବନ୍ଧୁଙ୍କ କଥାର ଉତ୍ତର ନ ଦେଇ ମୁହଁଟାକୁ ତଳକୁ ଝାଡ଼ିଦେଲି ଓ କହିଲି, ''ଆଗାମୀ ସଂଖ୍ୟାରେ ଦେବି !'' ସେହି ଅଙ୍ଗୀକାର ରକ୍ଷା କରିବା ନିମନ୍ତେ ଏଥି ମଧ୍ୟରେ ବହୁତ କସରତ୍ କଲି, କିନ୍ତୁ ଚେଷ୍ଟା ବିଫଳ ହେଲା । ପାଠ ଡାକୁଛି, 'ଅଭାବେ କୁଛନଂ କୁର୍ଯ୍ୟାତ୍' ଅଥବା 'ବସ୍ତ୍ରାଭାବେ ସୂତ୍ରଂ ଦଦ୍ୟାତ୍' । ଗୋଟିଏ ଗଳ୍ପ ମନେପଡ଼ିଲା - ଗୋସେଇଁ ମହାପ୍ରଭୁ ବୁଢ଼ା ଦିନେ ପୋକଖିଆ ତାଳପତ୍ର ଖେଦାରୁ ଉଦ୍ଧାର କରି ଖଣ୍ଡିଏ ନୂଆ ତାଳପତ୍ର ପୋଥି ଲେଖୁ ଲେଖୁ 'ସୂତ୍ର'କୁ 'ମୂତ୍ର' କରିଦେଲେ । ଗୋସେଇଁ ମହାପ୍ରଭୁଙ୍କ ବଂଶଧରମାନେ ପିତାମହଙ୍କ ଲିଖିତ ପୋଥିଖଣ୍ଡି କାଖରେ ଜାକି ଯଜମାନ ଘରକୁ ଶ୍ରାଦ୍ଧ କରିବାକୁ ବାହାରିଲେ । ପୋଥିଖଣ୍ଡକ ଫିଟାଇ ଦେଖନ୍ତି ଯେ ପିଣ୍ଡ ଉପରେ ''ବସ୍ତ୍ରାଭାବେ ମୂତ୍ରଂ ଦଦ୍ୟାତ୍ ।'' ଏବେ ପୁରୋହିତ ଗୋସେଇଁ ମହା ହରବରରେ ପଡ଼ିଲେ । ପିଣ୍ଡ ଉପରେ 'ଏକ' କରିବେ ବା କିପରି ? ଅନେକ ଭାବିଚିନ୍ତି ଟିକିଏ ଗୋମୂତ୍ରର ବ୍ୟବସ୍ଥା କରିଦେଲେ ଓ ପିତୃଲୋକମାନେ ସେ ଯାତ୍ରାରୁ ବସ୍ତ୍ରାଭାବେ ଟିକିଏ ଗୋମୂତ୍ର ପାଇ ଖଲାସ ପାଇଲେ ଓ ଅଗତ୍ୟା ତହିଁରେ ବଡ଼ବଡୁଆମାନଙ୍କୁ ସନ୍ତୁଷ୍ଟ ରହିବାକୁ ହେଲା । ଏ ଗଳ୍ପଟା ଏଠାରେ ଉଲ୍ଲେଖ କରିବାର ମତଲବ ଏହି କି ସମୟ ପଡ଼ିଲେ ଯେତେବେଳେ ପିତୃଲୋକେ ବସ୍ତ୍ରାଭାବେ ଟିକିଏ ଗୋରୁ ମୂତରେ ସନ୍ତୁଷ୍ଟ ହେଉଅଛନ୍ତି, ସେତେବେଳେ ଲେଖକଙ୍କ ସୁବିଧା ଅନୁସାରେ ଲେଖକଙ୍କ ଲେଖନରୁ ମନ୍ଦକଥା ପୁଞ୍ଜାଏ ଖଣ୍ଡେ ବାହାରିଲେ ମଧ୍ୟ ପାଠକମାନଙ୍କୁ ତହିଁରେ ସନ୍ତୁଷ୍ଟ ହେବାକୁ ହେବ । ଆମ ପ୍ରତି ପାଠକମାନେ ଏତକ ଅନୁଗ୍ରହ ନ ଦେଖାଇଲେ ଆମେ ଲେଖନ ଧରିବୁଁ କିଆଁ ? ଓଡ଼ିଶାରେ ଲେଖକ ହେବାକୁ ହେଲେ କେତେଗୁଡ଼ିଏ ଗୁଣ (Qualification) ଥିବା ଦରକାର । ପ୍ରଥମ ଗୁଣ - ଯେଉଁମାନଙ୍କର ଘରୁ ଖାଇ ଘୋଡ଼ା ଆଗରେ ଡେଇଁବାର ସଂଗତି ଥିବ, ସେହିମାନେ ଓଡ଼ିଶାରେ ଲେଖକ ବୋଲି ରେଜିଷ୍ଟରୀ ହେବା ଦରକାର । ଏଥିପାଇଁ ଏହି ଶ୍ରେଣୀର ଜଣେ ବୁଢ଼ା ଚିତ୍କାର କରି ଉଠିଲେ, 'ଘରୁ ଖାଇ ପର କାମ କିଏ କରେ ବାପା ?' ଘରୁ ଖାଇ ଯେ ଘୋଡ଼ା ଆଗରେ ଡିଅଁନ୍ତି, ଇଂରାଜୀ ଭାଷାରେ ତାଙ୍କୁ 'Honorary' ଅର୍ଥାତ୍ 'ମାଗଣା' ଉପାଧି ଦିଆଯାଏ । ଅନେକ Honorary କାର୍ଯ୍ୟରେ ଦେଖାଯାଏ ଯେ ବେଳେବେଳେ ବିଧାଟାଏ, ଚଟକଣିଟାଏ, ଶାଗଟାଏ, ମାଛଟାଏ, ଏହିପରି ଉପୁରି ଲାଭ ମିଳିଯାଏ । ଲେଖକମାନଙ୍କୁ ପ୍ରଥମ ଲିଖିତ ଦୁଇ ଶ୍ରେଣୀର ଉପୁରି ଲାଭ ଅନେକ ସମୟରେ ମିଳେ, କିନ୍ତୁ ଶାଗଟାଏ, ମାଛଟାଏ ଶ୍ରେଣୀର ଉପୁରି ଲାଭ ଏ ଦେଶରେ ସେମାନଙ୍କ କପାଳରେ ବିରଳ । ଯାହାହେଉ, ଛାଡ଼ ସେ କଥା । ମୁଁ କହୁଥିଲି ଯେ ଅନାହାରୀ ଲେଖକଙ୍କଠାରୁ ସବୁ ବେଳେ ସରସା ମାଲ ଆଶା କରିବା ଦୁରାଶା । ଇତି ଭୂମିକା ଅର୍ଥାତ୍ ମୂଳଦୁଆ ।

ବର୍ତ୍ତମାନ କଟକରେ ଗୋଟିଏ ଅନାଥାଶ୍ରମ ପ୍ରତିଷ୍ଠା କରିବା ନିମନ୍ତେ କଟକର ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ଇଜର୍ଟନସାହେବ ବିଶେଷ ଚେଷ୍ଟା କରୁଥିବାର ଦେଖି ଆମ୍ଭେମାନେ ଆନନ୍ଦିତ ହୋଇଅଛୁଁ । ସେଥିପାଇଁ ସାହେବ ମହୋଦୟ ସାଧାରଣଙ୍କ ସାହାଯ୍ୟ ଲୋଡ଼ିଅଛନ୍ତି । ଆମ ଦେଶର ସମାଜ ସ୍ତ୍ରୀଜାତି ପ୍ରତି ସର୍ବଦା ପ୍ରତିକୂଳ - ଅର୍ଥାତ୍ ପୁରୁଷମାନଙ୍କ କାର୍ଯ୍ୟକଳାପ ଓ ପ୍ରକୃତିଗତ ଦୋଷମାନଙ୍କୁ ସମାଜ ଯେଉଁ ଚକ୍ଷୁରେ ଦେଖେ, ସ୍ତ୍ରୀମାନଙ୍କ କାର୍ଯ୍ୟକଳାପକୁ ତଦପେକ୍ଷା ତୀକ୍ଷ୍ଣତର ଦୃଷ୍ଟିରେ ଦେଖେ । ଆବହମାନ କାଳରୁ ସମାଜର ବଦ୍ଧମୁଷ୍ଟି ସ୍ତ୍ରୀ ଜାତି ପ୍ରତି ସର୍ବଦା ଉତ୍ତୋଳିତ । ସୌଭାଗ୍ୟକ୍ରମେ ସମାଜରେ ଯେତିକି ଆଧୁନିକ ସଭ୍ୟତା ଓ ଉଦାରତା ପ୍ରବେଶ କରୁଅଛି, ସେତିକି ସେତିକି ସ୍ତ୍ରୀଜାତିର ଭବିଷ୍ୟତ୍ ଉଜ୍ଜ୍ୱଳ ହେଉଅଛି ଓ ଦିନେ ସ୍ତ୍ରୀଜାତି ପୁରୁଷ ଜାତି ସଙ୍ଗେ ଏକାସନରେ ବସି ଏକ ଅଧିକାର ଲାଭ କରିବେ ବୋଲି ଆଶା କରିବା ବର୍ତ୍ତମାନ ଯୁଗରେ ବିଡ଼ମ୍ବନା ନୁହେଁ । ଆମ୍ଭମାନଙ୍କ ପ୍ରତି ଶିକ୍ଷାପଥ ଉନ୍ମୁକ୍ତ । ଆମ୍ଭମାନଙ୍କୁ ସାତ ଖୁଣ ମାଫ ଓ ସାତ କନ୍ୟା ଛାଡ଼, କିନ୍ତୁ ସ୍ତ୍ରୀମାନଙ୍କ ପ୍ରତି ସବୁ ଦ୍ୱାର ବନ୍ଦ । ସମାଜ ପୁରୁଷମାନଙ୍କ ଦୋଷ ପାଇଲେ ତାହା ଘୋଡ଼ାଇ ପକାଏ, କିନ୍ତୁ ସ୍ତ୍ରୀମାନଙ୍କ ଦୋଷ ଦେଖିଲେ ନିଜର ପାଶବ ବଳ ସେହି ହତଭାଗିନୀମାନଙ୍କ ଉପରେ ପ୍ରୟୋଗ କରେ । ଏଥିର ଭୂରି ଭୂରି ଉଦାହରଣ ଅଳ୍ପ ବହୁତ ସବୁ ସମାଜରେ ଦେଖାଯାଏ ଓ ଆଧୁନିକ ହିନ୍ଦୁ ସମାଜ ନାରୀ ଜାତିର ରକ୍ତରେ କଳୁଷିତ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେଥିପାଇଁ ଜଣେ ଡାକ ପକାଇଥିଲେ - "ବୃଦ୍ଧକୁ ବିବାହ ବିଧି, ବାଳିକାକୁ ନାହିଁ ! ଏହା କେଉଁ ରୀତି କହ ସାମାଜିକ ଭାଇ !" ସମାଜର ଏହିପରି ଦୁର୍ନୀତି ବେଦିରେ କେତେ ସହସ୍ର ନିରୀହ ଅବଳା ବଳି ପାଉଅଛନ୍ତି, ତହିଁ ପ୍ରତି ଆମ୍ଭମାନଙ୍କର କେବେ ନଜର ପଡ଼େ କି ? ଯେଉଁ ସ୍ତ୍ରୀ ବାଲ୍ୟକାଳରୁ ବୈଧବ୍ୟ ଯନ୍ତ୍ରଣାରେ ଜର୍ଜରିତ ହୋଇ ଚିରକାଳ ଅମାନିଶାର ଅନ୍ଧକାରରେ ଜୀବନ ଅତିବାହିତ କରେ, ତାକୁ ଏକାକିନୀ ନିଃସହାୟା ପାଇ ଯେଉଁ ଉନ୍ନତ ସ୍ୱଭାବ ପୁରୁଷମାନେ କୁପଥକୁ ନେବାକୁ ଅଗ୍ରସର ହୁଅନ୍ତି ଓ ସେହି ପାଶବିକ ଚେଷ୍ଟାରେ କୃତକାର୍ଯ୍ୟ ହୁଅନ୍ତି, ସେମାନଙ୍କ ଦ୍ୱାରା ଆମ୍ଭମାନଙ୍କ ସମାଜ କଳୁଷିତ ହୁଏ ନାହିଁ, ସେମାନଙ୍କୁ ସମାଜ ଅକାତର ଭାବରେ ଆପଣା କ୍ରୋଡ଼ରେ ଉଚ୍ଚସ୍ଥାନ ଦେଇଥାଏ; କିନ୍ତୁ ଯେଉଁ ନିଃସହାୟା, ଅନୁନ୍ନତା, ଅଶିକ୍ଷିତା ରମଣୀ ସେହି କୁହୁକକୁ ଏଡ଼ି ନ ପାରି ପୁରୁଷମାନଙ୍କ ଲାଳସାଗ୍ନିରେ ଆପଣାକୁ ବଳି ଦିଏ, ତାହା ପ୍ରତି ସମାଜର ଖଡ୍ଗ ଉତ୍ତୋଳିତ । ତାହା ପାଇଁ ସମାଜରେ, ସଂସାରରେ ସ୍ଥାନ ମିଳେ ନାହିଁ ଓ ସେଥିପାଇଁ ସମାଜରେ ଭ୍ରୂଣ ହତ୍ୟା ଓ ଶିଶୁ ହତ୍ୟା ପଣ ପଣ ! ସାଧାରଣ ହତ୍ୟା ନିମନ୍ତେ ଘାତକ ପ୍ରତି ଆଇନରେ ଯେଉଁ ଦଣ୍ଡର ବ୍ୟବସ୍ଥା ହୋଇଅଛି, ଶିଶୁ ହତ୍ୟା ପ୍ରତି ସେହି ଦଣ୍ଡର ବ୍ୟବସ୍ଥା ହୋଇଅଛି । ୧୮୭୬ ସାଲରେ ମାନ୍ଦ୍ରାଜର ପ୍ରସିଦ୍ଧ ସାର୍ ଟି. ମାଧବ ରାଓ କେ.ସି.ଏସ୍.ଆଇ. ଆଇନର ଏହି କଠୋର ବ୍ୟବସ୍ଥା ପ୍ରତି ଗଭର୍ଣ୍ଣମେଣ୍ଟଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଯେଉଁ ଅପରାଧୀ କ୍ରୋଧ ପରବଶ ହୋଇ ଅନ୍ୟକୁ ହତ୍ୟା

କରେ, ତାହାପାଇଁ ଯେଉଁ ଗୁରୁ ଦଣ୍ଡର ବିଧାନ କରାଯାଇଅଛି, ଆପଣାର ପାପ ପ୍ରକାଶ ହେଲେ ସମାଜରେ କଳଙ୍କ ଲାଗିବ ଓ ଲଜ୍ଜା ହେବ, ଏହି ଗରୀୟାନ୍ କଳଙ୍କ ଓ ଲଜ୍ଜାକୁ ଭୟ କରି ଯେଉଁ ହତଭାଗିନୀ ରମଣୀ ଭୟବିହ୍ୱଳା ହୋଇ ଅଗତ୍ୟା ଭ୍ରୂଣ ହତ୍ୟା ବା ଶିଶୁ ହତ୍ୟା କରେ, ତାହା ପ୍ରତି ନରହତ୍ୟାର ଗୁରୁଦଣ୍ଡ ବିଧାନ ହେବା ଉଚିତ ନୁହେଁ ବୋଲି ରାଓ ମହାଶୟ ମତ ପ୍ରକାଶ କରିଥିଲେ । କିନ୍ତୁ ୧୮୭୯ ସାଲରେ ଭାରତ ଗଭର୍ଣ୍ଣମେଣ୍ଟ ସ୍ଥିର କଲେ ଯେ ଏ ସମ୍ବନ୍ଧରେ ଆଇନର ବିଧାନ ପରିବର୍ତ୍ତନ କରିବାର ପ୍ରୟୋଜନ ନାହିଁ, କିନ୍ତୁ ଅବସ୍ଥା ଦୃଷ୍ଟିରେ ଉପରୋକ୍ତ ହତଭାଗିନୀମାନଙ୍କ ପ୍ରତି ଆଇନ ଅନୁସାରେ ଯେଉଁ ଦଣ୍ଡର ଆଦେଶ ହେବ, ତାହା ପ୍ରାଦେଶିକ ଶାସନକର୍ତ୍ତାମାନେ କମାଇ ଦେଇପାରିବେ । ସେହିଦିନଠାରୁ ଦୌରା ଜଜ୍‌ମାନେ ଶିଶୁହତ୍ୟା ଅପରାଧରେ ଅପରାଧିନୀମାନଙ୍କ ଦଣ୍ଡ ହ୍ରାସ କରିବା ନିମନ୍ତେ ପ୍ରାଦେଶିକ ଲାଟମାନଙ୍କୁ ସୁପାରିସ କରିଥା'ନ୍ତି ଓ ସେହି ସୁପାରିସ ଅନୁସାରେ ଲାଟସାହେବ ଉକ୍ତ ଅପରାଧିନୀମାନଙ୍କ ଦଣ୍ଡକୁ ହ୍ରାସ କରିଦିଅନ୍ତି ।

କଲିକତା ହାଇକୋର୍ଟର ବିଚାରପତି ମାନନୀୟ ଶ୍ରୀଯୁକ୍ତ ସାରଦା ଚରଣ ମିତ୍ର ମହାଶୟ ୧୯୦୬ ସାଲରେ ଶିଶୁ ହତ୍ୟା ମକଦ୍ଦମାର ତାଲିକା ଦେଖି ସ୍ଥିର କଲେ ଯେ ବଙ୍ଗଦେଶର ଅନ୍ୟାନ୍ୟ ଜିଲ୍ଲାମାନଙ୍କ ଅପେକ୍ଷା କଟକ, ପୁରୀ, ସାହାବାଦ ଓ ସାରଣ ଜିଲ୍ଲାମାନଙ୍କରେ ଏହି ଶ୍ରେଣୀର ଶିଶୁ ହତ୍ୟା ଅପରାଧ ଢେର ବେଶି ଓ ଉକ୍ତ ଅପରାଧ ଊଣା ହେବାର କୌଣସି ଲକ୍ଷଣ ଦେଖାଯାଉ ନାହିଁ । ମିତ୍ର ମହାଶୟ ପ୍ରକାଶ କରିଅଛନ୍ତି ଯେ ଅଧିକାଂଶ ସ୍ଥଳରେ ପ୍ରଲୋଭନକାରୀମାନଙ୍କ ସାହାଯ୍ୟରେ ଓ ସମାଜର ଭୟରେ ଏହି ଅପରାଧମାନ ସଂଘଟିତ ହୋଇଥାଏ ଓ ଏପରି ଅବସ୍ଥାରେ ଏହି ହତଭାଗିନୀମାନଙ୍କୁ ଗୁରୁ ଦଣ୍ଡ ଦେଲେ ଏ ଶ୍ରେଣୀର ଅପରାଧ ସଂଖ୍ୟା କମିଯିବାର ସମ୍ଭାବନା ନାହିଁ । ଯେତେ ଦିନ ପର୍ଯ୍ୟନ୍ତ ଏହି ପ୍ରଲୋଭନକାରୀ ନରରାକ୍ଷସମାନଙ୍କୁ ଦଣ୍ଡ ନ ଦିଆଯିବ, ସେତେ ଦିନ ପର୍ଯ୍ୟନ୍ତ ଏହି ଅପରାଧର ସଂଖ୍ୟା କମିବାର ସମ୍ଭାବନା ନାହିଁ ଏବଂ ଏହି ରାକ୍ଷସମାନଙ୍କ ପ୍ରତି ଦଣ୍ଡବିଧାନ ହେଲେ ଏ ଶ୍ରେଣୀର ଅପରାଧ ଊଣା ହେବ । ମନୁଷ୍ୟମାନଙ୍କ ସାମାଜିକ ବିଧାନ ଉପରେ ଗଭର୍ଣ୍ଣମେଣ୍ଟଙ୍କର ପ୍ରତ୍ୟକ୍ଷ ଭାବରେ କୌଣସି ଅଧିକାର ନାହିଁ ଓ ସାମାଜିକ ବନ୍ଧନ ଉପରେ ହସ୍ତକ୍ଷେପ କରିବା ଗଭର୍ଣ୍ଣମେଣ୍ଟଙ୍କର ସାଧ୍ୟାୟତ୍ତ ନୁହେଁ । ଗଭର୍ଣ୍ଣମେଣ୍ଟ ଅବଶ୍ୟ ଜନସାଧାରଣଙ୍କୁ ଶିକ୍ଷା ଦ୍ୱାରା ସୁପଥକୁ ଆଣିପାରନ୍ତି ଓ ଗଭର୍ଣ୍ଣମେଣ୍ଟ ତାହା କରିବାରେ ବ୍ରତୀ ହୋଇଅଛନ୍ତି । କିନ୍ତୁ ଶିକ୍ଷା ଦ୍ୱାରା ସାମାଜିକ କୁପ୍ରଥାଗୁଡ଼ାକ ଦୂର କରିବା ସମୟ ସାପେକ୍ଷ । ଉପାୟାନ୍ତର ଥିଲେ ମାତା ଆପଣା ଶିଶୁକୁ ମାରିବାକୁ କୁଣ୍ଠିତ ହେବ । ଏହା ମନୁଷ୍ୟପ୍ରକୃତିର ଅବଶ୍ୟମ୍ଭାବୀ ନିୟମ । ଅବୈଧ ଶିଶୁମାନଙ୍କୁ ଭରଣ ପୋଷଣ କରିବାର ସଂଗତି ନ ଥାଏ ବୋଲି ଓ ଶିଶୁ ଜୀବିତ ରହିଲେ ମାତା ଚିହ୍ନା ପଡ଼ିବ ଓ ସମାଜରେ ଏକଘରକିଆ ହେବ ବୋଲି ଭୟ ଓ ଲଜ୍ଜାରେ ମାତାମାନେ ଅବୈଧ ଶିଶୁମାନଙ୍କର ପ୍ରାଣ ନାଶ କରିଥା'ନ୍ତି । ଏହିସବୁ କାରଣମାନ ଆଲୋଚନା କରି ମିତ୍ର

ମହାଶୟ ପ୍ରସ୍ତାବ କରିଅଛନ୍ତି ଯେ ସ୍ଥାନେ ସ୍ଥାନେ ଅନାଥ ଶିଶୁମାନଙ୍କ ପାଇଁ ଗୋଟାଏ ଲେଖାଏଁ ଆଶ୍ରମ ପ୍ରତିଷ୍ଠିତ ହେବା ଆବଶ୍ୟକ । ଉକ୍ତ ଶିଶୁମାନେ ସେହି ଆଶ୍ରମମାନଙ୍କରେ ଲାଳିତ ପାଳିତ ହେବେ । ଅବୈଧ ଶିଶୁମାନଙ୍କୁ ଆଶ୍ରୟ ଦେବାପାଇଁ ଏପରି ବ୍ୟବସ୍ଥା କରାଗଲେ ଶିଶୁହତ୍ୟାର ସଂଖ୍ୟା କମିଯିବ - କାରଣ ଯେତେବେଳେ ହତଭାଗିନୀ ମାତାମାନେ ଦେଖିବେ ଯେ ଅବୈଧ ଶିଶୁମାନଙ୍କୁ ଅଲକ୍ଷିତ ଭାବରେ ଆଶ୍ରମ ନିକଟସ୍ଥ କୌଣସି ସ୍ଥାନରେ ରଖି ଆସିଲେ ଆଶ୍ରମର କର୍ତ୍ତୃପକ୍ଷମାନେ ସେ ଶିଶୁମାନଙ୍କୁ ଗୋଟାଇ ନେଇ ସେମାନଙ୍କର ଲାଳନପାଳନର ସୁବ୍ୟବସ୍ଥା କରିବେ, ସେତେବେଳେ ମାତାମାନେ ସ୍ୱଗର୍ଭଜାତ ଶିଶୁମାନଙ୍କୁ ଓ ଭ୍ରୂଣମାନଙ୍କୁ ହତ୍ୟା ନ କରି ଶିଶୁମାନେ ଭୂମିଷ୍ଠ ହେବା ମାତ୍ରେ ସେହି ଆଶ୍ରମରେ ଛାଡ଼ିଆସିବେ । ଶିଶୁମାନେ ସେଠାରେ ସୁଚାରୁରୂପେ ଲାଳିତପାଳିତ ହେବେ ଅଥଚ ମାତାମାନେ ସମାଜରେ ଚିହ୍ନା ପଡ଼ିବେ ନାହିଁ । ଏପରି ସୁବିଧା ହେଲେ ସ୍ୱ-ଗର୍ଭଜାତ ଶିଶୁ ଓ ଭ୍ରୂଣମାନଙ୍କୁ ହତ୍ୟା କରିବାପାଇଁ ମାତାମାନେ କୁଣ୍ଠିତ ହେବେ, ଏଥିରେ ସନ୍ଦେହ ନାହିଁ ।

ଗଭର୍ଣ୍ଣମେଣ୍ଟ ଏହି ଅନାଥାଶ୍ରମମାନ ପ୍ରତିଷ୍ଠା କରିବା ନିମନ୍ତେ ସାଧାରଣଙ୍କ ସାହାଯ୍ୟ ଓ ସହାନୁଭୂତି ଲୋଡ଼ୁଅଛନ୍ତି ଏବଂ ସ୍ଥାନୀୟ କର୍ତ୍ତୃପକ୍ଷମାନେ ଏ ବିଷୟ ପ୍ରତି ମନୋଯୋଗୀ ହୋଇଅଛନ୍ତି, ଏହା ବଡ଼ ଆନନ୍ଦର ବିଷୟ । କଟକ ଜିଲ୍ଲାରେ ଶ୍ରୀଯୁକ୍ତ ମାଜିଷ୍ଟ୍ରେଟ ଇଜର୍ଟନସାହେବ ଏ ବିଷୟରେ ପଦସ୍ଥ ଓ ଶିକ୍ଷିତ ବ୍ୟକ୍ତିମାନଙ୍କ ସାହାଯ୍ୟ ଲୋଡ଼ି ଏ କାର୍ଯ୍ୟରେ ହୃଦୟର ସହିତ ଅଗ୍ରସର ହୋଇଥିବାରୁ ସେ ଆମ୍ଭମାନଙ୍କର ଧନ୍ୟବାଦର ପାତ୍ର । ସାହେବ ମହୋଦୟ ଦୁଃଖୀର ଦୁଃଖମୋଚନରେ ସର୍ବଦା ତତ୍ପର ଥିବାର ଆମ୍ଭେମାନେ ଅନେକ ପ୍ରମାଣ ପାଇ ଓ ନିଜେ ଅନୁଭବ କରି ଆହ୍ଲାଦିତ ହୋଇଅଛୁଁ । ଈଶ୍ୱରଙ୍କ ଇଚ୍ଛାରୁ ଅନାଥ ଶିଶୁମାନଙ୍କ ନିମନ୍ତେ ଆଶ୍ରମ ସ୍ଥାନେ ସ୍ଥାନେ ପ୍ରତିଷ୍ଠିତ ହେଉ ଓ ଆମ୍ଭମାନଙ୍କ ସମାଜର କୁହୁକ ନିଦ୍ରା ଭାଙ୍ଗୁ । ଆଜି ଏତିକି ।

ଉତ୍କଳ ସାହିତ୍ୟ/୧୫ଶ ଭାଗ/୫ମ ସଂଖ୍ୟା/୧୩୧୯ ସାଲ ।

## ।। ସଇଁତିରିଶ ।।

ବର୍ତ୍ତମାନ ଭାରତର ସବୁ ସ୍ଥାନରେ ଏକ ମୁଖରେ ଏକ ବାକ୍ୟରେ ଏକ କଥା - କରୋନେସନ ବା ଦିଲ୍ଲୀଠାରେ ରାଜ୍ୟାଭିଷେକ । ଶ୍ରୀ ଶ୍ରୀ ପ୍ରବଳ ପ୍ରତାପ ସମ୍ରାଟ୍ ଜର୍ଜ୍ଜ ଓ ସାମ୍ରାଜ୍ଞୀ ମେରୀ ଆଗାମୀ ଡିସେମ୍ବର ମାସରେ ଦିଲ୍ଲୀଠାରେ ଦରବାର ଅର୍ଥାତ୍ ଅଭିଷେକୋତ୍ସବ କରିବେ ଓ ସେହି ଉପଲକ୍ଷରେ ଭାରତବ୍ୟାପୀ ଉତ୍ସବର ବିପୁଳ ଆୟୋଜନ ହେଉଅଛି । ବଡ଼ଠାରୁ ସାନପର୍ଯ୍ୟନ୍ତ ସମସ୍ତେ ଯେ ଯାହା କାର୍ଯ୍ୟରେ ଦିନ ରାତି ବ୍ୟସ୍ତ । ଲାଟସାହେବ ତାଙ୍କ ଦରବାର ସଜାଇବାରେ ବ୍ୟସ୍ତ । ଏଣେ ଆମ ଗାଁ

ଚଉକିଆ ରାମ ମଲିକ ତା ହୋଦା ମାଜିବାରେ ବ୍ୟସ୍ତ । ରାଜା ମହାରାଜାମାନେ ସଦଳବଳରେ ଯାନବାହନ ନେଇ ଦିଲ୍ଲୀ ଦରବାରରେ ଉପସ୍ଥିତ ହୋଇ ସମ୍ରାଟ୍‌ଙ୍କ ଶ୍ରୀମୁଖରୁ ଘୋଷଣା ଶୁଣିବା ପାଇଁ ଉଦ୍ୟମ ଲଗାଇଅଛନ୍ତି । ଏଣେ ୨୭୮ ନମ୍ବର ତଉଜିର କିସମତ ପଣେ ପାଞ୍ଚ ଗଣ୍ଡା ତିନି କଡ଼ା ଦୁଇ କ୍ରାନ୍ତି ଜମିଦାର ରାମ ଓଝା ଗ୍ରାମ ପ୍ରେସିଡେଣ୍ଟଙ୍କ ଦରବାରରେ ସେ ଦିନ ଉପସ୍ଥିତ ହୋଇ ଘୋଷଣାପତ୍ର ଶୁଣିବା ପାଇଁ ପେଡ଼ି ଲୁଗା ଦି'ଖଣ୍ଡ ଧୋବା ଘରେ ପକାଇବାରେ ଲାଗିଅଛି । ବିଲାତର ବଡ଼ ବଡ଼ କୋମ୍ପାନୀ ବୈଦ୍ୟୁତିକ ବତି କଳ ତିଆରି କରୁଅଛନ୍ତି ।  ଏଣେ ଆମ ଗାଁ ପାଖ ଗୋବିନ୍ଦ ମୁଦୁଲି କୁମ୍ଭାର ଗ୍ରାମ ଜମିଦାରଙ୍କୁ ଫରମାସି ମାଟି ଦିପାଳି ପୋଡ଼ିବାରେ ବ୍ୟସ୍ତ । ବର୍ତ୍ତମାନ ଏହି ଅଭିନବ ଦରବାର ଉପଲକ୍ଷରେ ବିଲାତଠାରୁ ଭାରତ ପର୍ଯ୍ୟନ୍ତ, ରାଜଦରବାରଠାରୁ ଗରିବର କୁଟୀର ପର୍ଯ୍ୟନ୍ତ ସବୁଠାରେ ଆନନ୍ଦ କୋଳାହଳ ଲାଗିଅଛି । ଆଗାମୀ ଡିସେମ୍ବର ମାସ ୧୨ ତାରିଖ ଦିନ ଦିଲ୍ଲୀଠାରେ ସମ୍ରାଟ୍ ଜର୍ଜ୍‌ଙ୍କ ଦ୍ୱାରା ଯେଉଁ ମହାରାଜସୂୟ ଯଜ୍ଞ ଅନୁଷ୍ଠିତ ହେବ, ତାହା ପୃଥିବୀର ଇତିହାସରେ ବିରଳ ଓ ଅଭୂତପୂର୍ବ । ସମ୍ରାଟ୍ ଓ ସାମ୍ରାଜ୍ଞୀ ବହୁ ବ୍ୟୟ ଓ ବହୁ କଷ୍ଟ ଏବଂ ବହୁ ଅସୁବିଧା ସ୍ୱୀକାର କରି ଭାରତବର୍ଷକୁ ଆଗମନ କରି ପ୍ରଜାପୁଞ୍ଜଙ୍କୁ ସ୍ୱଚକ୍ଷୁରେ ଦର୍ଶନ କରି ନିଜେ ତୃପ୍ତିଲାଭ କରିବେ ଓ ପ୍ରଜା ଏବଂ ଦେଶୀୟ ରାଜନ୍ୟମଣ୍ଡଳୀଙ୍କୁ ଆପ୍ୟାୟିତ କରିବେ । ଭାରତବର୍ଷ ଇଂରେଜ ଶାସନାଧୀନ ହେବା ଦିନଠାରୁ ଏହି ଅଭିଷେକ ଅନୁଷ୍ଠାନ ଭାରତ ପକ୍ଷରେ ନୂତନ । ଆଜି ଭାରତର ସମ୍ରାଟ୍ ଭାରତର ରାଜଧାନୀରେ ସଭାକରି ମୁକୁଟ ପରିଧାନ କରିବେ ଓ ଭାରତବାସୀମାନେ ତାହାଙ୍କୁ ଯଥାଶକ୍ତି ରାଜଭକ୍ତି ଦେଖାଇବେ । ଏତଦ୍ୱାରା ଭାରତ ଓ ଇଂଲଣ୍ଡ ମଧ୍ୟରେ ସମ୍ବନ୍ଧ ଘନିଷ୍ଠତର ହେବ ଓ ବ୍ୟବହାର ମଧୁରତର ହେବ ବୋଲି ଆଶା କରାଯାଏ । ପୁରାକାଳରୁ ଭାରତବାସୀମାନେ ରାଜାଙ୍କୁ ଦେବାବତାର ବୋଲି ଜ୍ଞାନ କରି ଆସିଅଛନ୍ତି ଓ ଭାରତବାସୀ ମାତୃସ୍ତନ୍ୟ ପାନ ସମୟରୁ ରାଜଭକ୍ତି କରିବାକୁ ଶିଖନ୍ତି ।  ପିଲାମାନେ ମାତୃକ୍ରୋଡ଼ରେ ଶୁଣନ୍ତି, 'ମେଘ ବରଷଇ ଟପର ଟପର, କେଶୁର ମାଇଲା ଗଜା, କେଉଁ ରାଇଜରେ ରହିଲେ ମୋ ରାଜା, ତେଲିଙ୍ଗି ବାଇଦ ବଜା ।' ଏହି ଅଭିନବ ଦରବାର ବ୍ୟାପାରଦ୍ୱାରା ସମ୍ରାଟ୍ ନିଜ ଚକ୍ଷୁରେ ଭାରତର ବିପୁଳ ବିଭବ, ବିପୁଳ ଆଡ଼ମ୍ବର, ବିପୁଳ ସମ୍ପଦ, ବିପୁଳ ଯାନବାହନ, ବିପୁଳ ରାଜଭକ୍ତି ଏ ସବୁର ନିଦର୍ଶନ ଅନୁଭବ କରି ଭାରତବାସୀଙ୍କଠାରୁ ନିଜେ ଭକ୍ତିର ଅଭ୍ୟର୍ଥନା ଗ୍ରହଣ କରିବେ, ନିଜେ ସୁଖୀ ହେବେ ଓ ଭାରତକୁ ଆପ୍ୟାୟିତ କରିବେ ।

ଆମ୍ଭେମାନେ ସର୍ବଦା ପ୍ରତିମାପୂଜକ । ଏଡ଼େବଡ଼ ଈଶ୍ୱରଙ୍କୁ ଆମ ଦିଅଁଙ୍କ ଘରର ସାନ ଖଟୁଲିରେ ଥିବା ଗୋଟାଳି ଆକୃତି ଶାଳଗ୍ରାମ ଶିଳା ମଧ୍ୟରେ ପୋଟଳା ବାନ୍ଧି ରଖିବାରେ ଆମ୍ଭେମାନେ ଅଭ୍ୟସ୍ତ । ଅତଏବ ଯେଉଁମାନଙ୍କ ଭାଗ୍ୟରେ ଦିଲ୍ଲୀ ଦରବାରରେ ଉପସ୍ଥିତ ହେବାର ସୁଯୋଗ ନାହିଁ, ସେମାନେ ଭାରତର ପ୍ରତ୍ୟେକ ନଗର, ପ୍ରତ୍ୟେକ

ପ୍ରଗନ୍ନା, ପ୍ରତ୍ୟେକ ଜିଲ୍ଲା, ପ୍ରତ୍ୟେକ ଗ୍ରାମ ଓ ପ୍ରତ୍ୟେକ ପଲ୍ଲୀରେ ଭକ୍ତି ଚକ୍ଷୁରେ ସମ୍ରାଟ୍‌ଙ୍କ ସ୍ନେହମୟ ପିତୃଳାକୁ ହୃଦୟରେ ରଖି ସେହିଠାରେ ଭକ୍ତିର ନିଦର୍ଶନସ୍ୱରୂପ ନିଜ ନିଜର ଶକ୍ତି ଅନୁସାରେ ଉତ୍ସବ ଓ ଆମୋଦ ପ୍ରମୋଦର ଆୟୋଜନ କରୁଅଛନ୍ତି । କେହି କେହି ବାଣ ନିଶାଣ ହାତୀ ଘୋଡ଼ାରେ ମନବୋଧ କରୁଅଛନ୍ତି, କେହି କେହି କଦଳୀଗଛ, ତାଳଫୋଟକା, ଗଧ ଗୋରୁରେ ମନ ଓରମାନ ମେଣ୍ଟାଇବେ । ଭକ୍ତି ଆଡ଼ମ୍ବରର ପରିମାଣ ଉପରେ ନିର୍ଭର କରେ ନାହିଁ । ତାହା ହୃଦୟର ଆର୍ଦ୍ରତା ଓ ସରଳତା ଉପରେ ନିର୍ଭର କରେ । ଆମ ଦେଶର ଗୋଟିଏ ପୁରୁଣା କଥା ମନେପଡ଼ିଲା । ଜଗନ୍ନାଥ ମହାପ୍ରଭୁଙ୍କ ଛତିଶା ନିଯୋଗ - ମହାପ୍ରଭୁଙ୍କ ଛାମୁରେ ସାତ ଧୂପ ଓ ବାର ଅବକାଶ କରି ଠାକୁରଙ୍କ ଛାମୁରେ ସେବା କରି ଆପଣା ଜୀବନ ସାର୍ଥକ କରୁଅଛନ୍ତି । ଏଣେ ବାଲିଗାଁ ନିବାସୀ ବାଉରିପୁଅ ଦାସିଆ ଆପଣା ଗାଁରେ ଥାଇ ଜଗନ୍ନାଥଙ୍କ ଆଡ଼କୁ ଲକ୍ଷ୍ୟ କରି ଶୂନ୍ୟରେ ନଡ଼ିଆଟିଏ ଦେଖାଇ ଦେଉଅଛି । ଅନ୍ତର୍ଯାମୀ ଠାକୁର ଛତିଶା ନିଯୋଗଙ୍କ ଅର୍ପିତ ସରପୁଲି, କାନିକା, ଖିରି ଖେଚୁଡ଼ି ଓ ପଚପଚିଆ ମାଲଗୁଡ଼ାକ ଛାଡ଼ି ଦେଇ ବାଉରିପୁଅର ନଡ଼ିଆ ଉପରେ ଲୋଭ କଲେ । ଏହାକୁହିଁ କହନ୍ତି ଆଶ୍ରିତବାତ୍ସଲ୍ୟ, ଏହାକୁହିଁ କହନ୍ତି ଭକ୍ତି ପୂଜା । ସେହିପରି ଯେ ଯାହାର କ୍ଷୁଦ୍ର କ୍ଷେତ୍ରରେ, କ୍ଷୁଦ୍ର ରାଜ୍ୟରେ, କ୍ଷୁଦ୍ର ଶକ୍ତିରେ, କ୍ଷୁଦ୍ର କୁଟୀରରେ ସଭକ୍ତି ପୂଜା କରି ରାଜପୂଜା କରିବେ । ସମ୍ରାଟ୍‌ଙ୍କ ଚକ୍ଷୁରେ ତାହା ମୂଲ୍ୟବାନ୍ ହେବ ଆଶା କରାଯାଏ । ସମ୍ରାଟ୍ ଓ ସାମ୍ରାଜ୍ଞୀ ସୁଖରେ ଆସି, ସୁଖରେ ରହି, ସୁଖରେ କାରବାର କରି, ସୁଖ ଦେଖି, ସୁଖରେ ସୁଖରେ କିପରି ପ୍ରତ୍ୟାଗମନ କରନ୍ତୁ ଓ ଦୀର୍ଘଜୀବୀ ହୋଇ ସୁଖରାଜ୍ୟ ଭୋଗ କରନ୍ତୁ, ଆଉ ଭାରତବର୍ଷ ତମାମ ସୁଖମୟ ହେଉ, ଏହାହିଁ ପ୍ରତ୍ୟେକ ଭାରତବାସୀର ଈଶ୍ୱରଙ୍କଠାରେ ପ୍ରାର୍ଥନା କରିବା ଉଚିତ ।

ଏଥିମଧ୍ୟରେ ମୋ ଦୁଃଖଧନ୍ଦାରେ ମୁଁ ପୁରୀ ଜିଲ୍ଲାକୁ ଯାଇଥିଲି । ସେଠାରେ କେତେକ ବନ୍ଧୁଙ୍କଠାରୁ ଶୁଣିଲି, ପୁରୀର ବ୍ରାହ୍ମଣ ସମାଜରେ ଗୋଟିଏ ଭାରି ଚହଳ ପଡ଼ି ଯାଇଅଛି । ପୁରୀର ବ୍ରାହ୍ମଣ ସମାଜରେ ପୁରୀ ସହରଠାରୁ ଆରମ୍ଭ କରି ପୁରୀର ବ୍ରାହ୍ମଣଶାସନ ପର୍ଯ୍ୟନ୍ତ ଆନ୍ଦୋଳନ ଲାଗିଅଛି - ''ଟୋକାଗୁଡ଼ାକ କୁଳାଙ୍ଗାର ହୋଇଗଲେ ।'' ଅର୍ଥାତ୍ ପୁରୀ ଅଞ୍ଚଳନିବାସୀ କେତେଗୁଡ଼ିଏ ନବ୍ୟ ଉଚ୍ଚ ଶିକ୍ଷିତ ବ୍ରାହ୍ମଣ ଯୁବକ ନିଶ ରଖିଲେ ଓ ବ୍ରାହ୍ମଣେତର ଜାତିଙ୍କ ସଙ୍ଗେ ଭୋଜନ କଲେ । ବାଘ ନେଲା ବାଧୁ ନାହିଁ, କିନ୍ତୁ ବାଘ ଘୋଷରା ବେଶି ବାଧୁଅଛି । ଅର୍ଥାତ୍ ଆଜିକାଲି ଦେଖାଯାଏ ଯେ ବ୍ରାହ୍ମଣ ଟୋକାଗୁଡ଼ାକ ଇଂରେଜୀ ପଢ଼ି ଧର୍ମ, କର୍ମ, ସନ୍ଧ୍ୟା, ପୂଜା ସବୁ ଛାଡ଼ିଲେଣି, ହୋଟେଲରେ ଖାଇଲେଣି, ସାହେବଙ୍କ ଘରେ ଖାଇଲେଣି, ଠିଆ ଠିଆ 'ଏକ' କଲେଣି ଇତ୍ୟାଦି ଇତ୍ୟାଦି । ଏହା ଯେ ଆଜି ଏ ଟୋକାଗୁଡ଼ାକ ନୂଆ କରି କଲେ, ତାହା ନୁହେଁ କିନ୍ତୁ ''ଆରେ ବାବା ! ଯାହା ତ କଲ କଲ, ଆପଣା ଘରେ କର, ଲୁଚେଇ କରି ଆଖିବୁଜିଆ କରି କର, ଏ

କଥାଗୁଡ଼ାକ ଦାଣ୍ଡରେ ହାଟରେ କହିହେଉଛ କିଆଁ ? କେହି ପଚାରିଲେ ମିଛ କହି ମୁଣ୍ଡ ନୁଆଁଇ ନ ଦେଇ ସତ କହି ଦମ୍ଭ ଦେଖାଉଛ କିଆଁ ?'' ଅତଏବ ଏହି ଦାମ୍ଭିକତାପାଇଁ ସାମାଜିକ ଶାସନ ଓ ଦମନ ଆବଶ୍ୟକ । ଟୋକାଯାକ ଆଜିପର୍ଯ୍ୟନ୍ତ ଯେଉଁ କ୍ରିୟାଗୁଡ଼ାକ କରି ଯାଉଥିଲେ, ତାହା ସମାଜ ଆଗରେ ମୁକାବିଲା ହେଲାବେଳକୁ ମିଛ କହି ସେଗୁଡ଼ାକ ଘୋଡ଼ାଇ ନେଉଥିଲେ ଓ ସମାଜ ମଧ ସେମାନଙ୍କଠାରୁ ଏତକ ଭକ୍ତି ପାଇ ସେଗୁଡ଼ାକ ଧରୁ ନ ଥିଲେ । କିନ୍ତୁ ଏବେ କେତେକ ଶିକ୍ଷିତ ଯୁବକ ଯେଉଁ ସମାପିକା ଓ ଅସମାପିକା କ୍ରିୟାଗୁଡ଼ାକ କଲେ, ତାହା ସମାଜ ଆଗରେ ମୁକାବିଲା ହେଲା ବେଳକୁ ଠକଠାକ ସତ କହୁଅଛନ୍ତି ଓ ସମାଜପତିମାନଙ୍କୁ ଧମକାଉଅଛନ୍ତି । ଏହି କାରଣରୁ ପୁରୀର ବ୍ରାହ୍ମଣ ସମାଜରେ ଭାରି ଏକ ଆନ୍ଦୋଳନ ଉପସ୍ଥିତ । ଏ ଆନ୍ଦୋଳନର Immediate cause - ମୁଖ୍ୟ କାରଣ ଶ୍ରୀ ବାବୁ ନୀଳକଣ୍ଠ ଦାଶ M.A. ପ୍ରମୁଖ କେତେଗୁଡ଼ିଏ ଯୁବକଙ୍କର 'ନିଶ' । ଏହି ଯୁବକମାନେ ସମାଜର ପ୍ରଥାକୁ ଲଙ୍ଘନ କରି ପଟାଏ ଲେଖାଏଁ 'ନିଶ' ରଖିଅଛନ୍ତି । କେହି କେହି ପଚାରିଲେ କହୁଅଛନ୍ତି, ''ଆମେ ରଖିଲୁଁ ଆଚ୍ଛା କଲୁଁ । କିଏ କଣ କରିବ କର ।'' ଭୋ ଧର୍ମ ! କାଳ ଆସି ଲଟାରେ ପଶିଲା ! ଏଣିକି ଏହି ଦୁଇପଟା ନିଶ ଯୋଗୁଁ ବ୍ରାହ୍ମଣ ସମାଜ (ଅର୍ଥାତ୍ ପୁରୀର ବ୍ରାହ୍ମଣ ସମାଜଟା) ଟୁବ୍‌କିନି ସମୁଦ୍ର ଭିତରେ ବୁଡ଼ିଯିବ ! ଏହିପରି ନାନା ମୁଖରୁ ନାନା ଗୁଜବ ଶୁଣି ଜଣେ ସାମାଜିକ ବୃଦ୍ଧ ବନ୍ଧୁଙ୍କ ନିକଟରେ ମୁଁ ଉପଗତ ହେଲି । ଏହି ଆନ୍ଦୋଳନଟା କିପରି ମୀମାଂସା ହୋଇଯିବ, ଏହାହିଁ ମୋର ଉଦ୍ଦେଶ୍ୟ ଥିଲା । ମୁଁ କଟକ ଜିଲ୍ଲାବାସୀ ହେଲେ ମଧ ପୁରୀର ବ୍ରାହ୍ମଣ ସମାଜ ସଙ୍ଗେ ମୋର ଖୁବ୍ ଘନିଷ୍ଠ ସମ୍ବନ୍ଧ ବର୍ତ୍ତମାନ ପର୍ଯ୍ୟନ୍ତ ବିଦ୍ୟମାନ ଅଛି । ମୋର ପୂର୍ବପୁରୁଷମାନେ ପୁରୀର ଅଧିବାସୀ ଥିଲେ ଓ ବର୍ତ୍ତମାନ ମଧ ମୋର ଅଧିକାଂଶ ବନ୍ଧୁବାନ୍ଧବ ପୁରୀ ଜିଲ୍ଲାରେ । ଏପରି ସ୍ଥଳରେ ପୁରୀ ବ୍ରାହ୍ମଣଙ୍କ ମଧରେ ଏପରି ଗୋଟିଏ କନ୍ଦଳ ଉପସ୍ଥିତି ହେଲେ ଗୃହବିବାଦ ଯୋଗୁଁ ସାମାଜିକ ଅବନତିର ସଂପୂର୍ଣ୍ଣ ଭୟ ଅଛି, ଏହି କାରଣରୁ ଏ ଅଗ୍ନିକୁ ନିଭାଇବାର ଚେଷ୍ଟା କରିବା ଉଚିତ ବୋଲି ମୁଁ ପ୍ରଥମେ ଭାବିଲି । ରକ୍ଷଣଶୀଳ ବୃଦ୍ଧମାନଙ୍କ ନିକଟରେ ଯାଇ ପହଞ୍ଚିଲି, ସେମାନଙ୍କ ଆଗରେ ଯୁବକମାନଙ୍କ ପକ୍ଷ ସମର୍ଥନ କରି ଯୁକ୍ତି କଲି ଓ ସେମାନଙ୍କ ମନ ନରମ କରିବାକୁ ଚେଷ୍ଟା କଲି । ଏଣେ ପରିବର୍ତ୍ତନଶୀଳ ସଂପ୍ରଦାୟର ପକ୍ଷପାତୀ କେତେକ ଯୁବକଙ୍କ ସଙ୍ଗେ କଥାଭାଷା ହୋଇ ରକ୍ଷଣଶୀଳ ସମାଜର ମତ ପ୍ରତି ଅନାସ୍ଥା ଓ ତାଚ୍ଛଲ୍ୟ ପ୍ରଦର୍ଶନ କରିବା ଉଚିତ ନୁହେଁ ବୋଲି ଯୁକ୍ତି କଲି ଓ ସେମାନଙ୍କ ମନ ଟିକିଏ ଥଣ୍ଡା କରିବାକୁ ଚେଷ୍ଟା କଲି । ଏହାକୁ ହିଁ କହନ୍ତି, 'ଦୋନାବୁଡ଼ିଆ' ରୀତି ବା ସଭ୍ୟ ଜଗତରେ 'Policy' ଓ ଓସ୍ତାତି କ୍ଷେତ୍ରରେ 'ପେଁଚ' । ଯେତେବେଳେ ଯାହା ପାଖରେ ଥିବ, ସେତେବେଳେ ଗୋଟାଯାକ ତାହାର ହୋଇଯିବ । ତାହା ହେଲେ ତୁମ୍ଭର କୌଣସି ଆପଦ ଆଶଙ୍କା ନାହିଁ, ସମାଜ ତାଡ଼ନାର ଭୟ ନାହିଁ । ରକ୍ଷଣଶୀଳ ସମାଜର ଜଣେ ବିଶିଷ୍ଟ ବନ୍ଧୁ ମତେ କହିଲେ, ''ହଇକିହେ

ପହରାଢେ ! ତୁମେ ତ ନିଶ ଦାଢ଼ି ଦୁହିଁଙ୍କି ରଖିଛ, (ନୋଟ - ମତେ ନ ଦେଖିଥିବା ପାଠକ ଅବଧାନ ! ମୁଁ ଯେତେବେଳେ ପିଲାଦିନେ ପ୍ରଥମେ ଇସ୍କୁଲରେ ପଢ଼େଁ, ସେତେବେଳେ ମୋର ଆକର୍ଣ୍ଣବିସ୍ତୃତ ଚୁଟି ଥିଲା । ଗୋଟିଏ ଗୋଟିଏ କ୍ଲାସ ଉଠିବା ସଙ୍ଗେ ସଙ୍ଗେ ନାରଣ ବାରିକର ସୁଦୟାରୁ ମୋ ଚୁଟିଟି ଦୁଇ ଦୁଇ ଆଙ୍ଗୁଳି ପେଲି ହୋଇଗଲା ଓ ଶେଷରେ ଏଣ୍ଟ୍ରାନ୍ସ ପାସ୍ କଲାବେଳକୁ ମୋ ଚୁଟିଟି ଶାସ୍ତ୍ରାନୁମୋଦିତ 'ଗୋଷ୍ପଦ' ଆକାର ଧାରଣ କଲା ଓ ମୁଣ୍ଡଟି ସାତ ଦିନକୁ ସାତ ଦିନ ଦରପୋଡ଼ା ଅନ୍ନ କୁଡୁଆର ଅବତାର ଧାରଣ କଲା । ଏହିପରି ଦିନାକେତେ କରିସାରିଲା ପରେ ସାତ ଦିନକୁ ସାତ ଦିନ ନାରଣ ବାରିକ ଭଣ୍ଡାରିର ଆଶ୍ରୟ ନ ନେଇ ସେ ରୁଢ଼ଗୁଡ଼ିକ ବଢ଼ାଇଲି ଓ ୩।୪ ମାସରେ ଥରେ ଲେଖାଏଁ କ୍ଷୌର ହେଲି । ଏହିପରି ୧୦।୫ ଥର କରିସାରିଲା ପରେ ତେଣିକି କ୍ଷୌର ନ ହୋଇ ବଢ଼ିବା ରୁଢ଼ଗୁଡ଼ିକୁ କତୁରି ସାହାଯ୍ୟରେ ଛଣ୍ଟା ଛଣ୍ଟି କଲି । ଏଣେ ଲଣ୍ଡା ହେବା ସଙ୍ଗେ ସଙ୍ଗେ ଗୋଷ୍ପଦଟି ଚଇତନ ଚୁରୁକିରେ ପରିଣତ ହେଲା ଓ ଚାହୁଁ ଚାହୁଁ ବାରିକପୁଅ ପ୍ରସାଦରୁ ମୋର ଇଙ୍ଗିତ ମାତ୍ରେ ସେ ଶିଖାଟି କେଉଁଆଡ଼େ ଚୁର୍‌କିନା ଉଭେଇଗଲା ! ନନା, କକେଇ, ପିଇସା, ଭାଇନା, ସମସ୍ତଙ୍କ ଆଖିରେ ଧୂଳି ପଡ଼ିଗଲା ଓ କ୍ରମେ କ୍ରମେ ମୁଁ ଶିକ୍ଷିତ ଓ ସଜ୍ଜିତ 'ଟେରିକଟା' ଫିଟ୍ ଫାଟ୍ ମଧ୍ୟରେ ପରିଗଣିତ ହେଲି । ସେତେବେଳକୁ ଯାଇ ବି.ଏ.,ଏମ୍.ଏ. ଫେଲ୍ ପର୍ଯ୍ୟନ୍ତ ତଡ଼ିଲି । ଏଣେ ବୟସ ସଙ୍ଗେ ସଙ୍ଗେ ନିଶ ଦାଢ଼ି ଗଜୁରି ଆସିଲା । ଆହୁରି ଏକ ସମସ୍ୟା ଆସି ହାବୁଡ଼ରେ ପଡ଼ିଲା। ଦଇବ ଦଣ୍ଡକୁ ମଣିଷର ଚାରା କଣ । ନିଶ ଦାଢ଼ିକୁ ଏବେ କରେଁ କଣ ? ବର୍ଷେ ଦୁଇ ବା ଆଠ ଦିନକୁ ଆଠ ଦିନ ନାରଣ ବାରିକକୁ ଅନୁସରଣ କରିବାକୁ ପଡ଼ିଲା, ଏଣେ କ୍ଷୌର ହେଲା ବେଳେ ପ୍ରତିଥର ରକ୍ତବୁହା ହୁଏ । ପ୍ରତିଥର ବ୍ରାହ୍ମଣ ଘରେ ଜନ୍ମ ହୋଇଥିବା ଯୋଗୁଁ ଆପଣାକୁ ବହେ ଧିକ୍କାର କରେ ଓ ବେଳକାଳ ଉଣ୍ଡି ବାରିକପୁଅକୁ ମୁଖିଟାଏ, କାନ ମୋଡ଼ାଟାଏ ଦିଏଁ । ପଛକୁ ସାମାଜିକ ଶାସ୍ତ୍ର ଡାକିଲା - ବ୍ରାହ୍ମଣର ଶ୍ମଶ୍ରୁରକ୍ଷଣ ନିଷେଧ, କିନ୍ତୁ 'ସଭାବାଳ' ରଖିବା ନିଷେଧ ! ଏହି ନଜିରର ଦ୍ୱାହି ଦେଇ ଦାଢ଼ି ଛାଡ଼ିଲି । ବଢୁ ବଢୁ ଦାଢ଼ି ଆସି ତିନି ତିନି ଆଙ୍ଗୁଳି ଲମ୍ବ ହେଲା । ମହର୍ଗରୁ ଆସି କାନ୍ତାରରେ ପଡ଼ିଲି । କ୍ରମଶଃ ମୁଛ (ନିଶ) ବଢ଼ିଲା ଓ ମୁଛ ଦାଢ଼ି ରଖି ଖାଇବା ପିଇବା ବସିବା ଶୋଇବା ଇତ୍ୟାଦିରେ ଭାରି ଅଖଞ୍ଜିଆ ହେଲା - ଏଣେ ଶିକ୍ଷିତ ସମାଜର ବୃତ୍ତାକାର, ତ୍ରିକୋଣାକାର, ସରଳରୈଖିକ ଦାଢ଼ିମାନ 'ଫେସନ' ପ୍ରତି ମନ ଉଡ଼ିଲା ଓ ଧୀରେ ଧୀରେ ମୁରବି ଓ ସାମାଜିକମାନଙ୍କ ସମକ୍ଷରେ ଥରେ ଦୁଇଥର ଲେଖାଏଁ ସବୁ ଫେସନର ଦାଢ଼ି ରଖି ଓ କ୍ରମେ କ୍ରମେ ନିଶ ଓ ଦାଢ଼ିଙ୍କ ମଧ୍ୟରେ କନିଷ୍ଠ ସମ୍ବନ୍ଧ ହେଲା ଓ ମତେ ଦେଖିଲେ ସ୍ପଷ୍ଟ ରୂପେ ଜଣାଯାଏ ଯେ ମୁଁ ମଧ୍ୟେ ମଧ୍ୟେ ଫେସନର ବଶବର୍ତ୍ତୀ ହୋଇ ନିଶ ଦାଢ଼ିକୁ କାଟ ଛାଣ୍ଟ କରିଥାଏଁ । ସେହି ସଂସ୍କୃତ, ପରିମାର୍ଜିତ ଓ ପରିବର୍ତ୍ତିତ ନିଶ ଦାଢ଼ି ଘେନି ମୁଁ କଟକ ଓ ପୁରୀର କୁଳୀନ ବ୍ରାହ୍ମଣ ସମାଜରେ ନିର୍ଦ୍ୱନ୍ଦ୍ୱରେ ବିଚରଣ

କଲି ଓ ବର୍ତ୍ତମାନ ପର୍ଯ୍ୟନ୍ତ କରୁଅଛି । ଈଶ୍ୱରଙ୍କ ଇଚ୍ଛାରୁ ଏହି ଦୋନାବୁଡ଼ିଆ ପଛପେଲା ନୀତିର ଅନୁସରଣ କରି ଦିନାକେତେ ବାଦ କେବଳ ନିଶ ଦୁଇପଟା ରଖି ଓ ଦାଢ଼ିକୁ ସାପ୍ତାହିକ ତଡ଼ାଟାଏ ଦେଇ ବ୍ରାହ୍ମଣ ଜନ୍ମଟା ସାର୍ଥକ କରିଥା'ନ୍ତି । କିନ୍ତୁ ନୀଳକଣ୍ଠବାବୁ ପ୍ରମୁଖ ଦୁଷ୍ଟ ଯୁବକମାନେ ମୋ କୁହୁକ ଭାଙ୍ଗି ଦେଲେ ଓ ମୋର ସବୁ plan - ଆଗତ ଚିନ୍ତାକୁ ହୁରୁଡ଼ାଇ ଦେଲେ । (ଏହିଠାରେ ବନ୍ଧନୀ ଶେଷ ହେଲା ।) ମୋର ବିଶିଷ୍ଟ ବନ୍ଧୁଟି କହିଲେ, ''ତୁମ୍ଭକୁ ତ ଆମେ କିଛି କହୁ ନାହୁଁ । କାରଣ ତୁମ୍ଭଙ୍କୁ କୌଣସି କୈଫିୟତ୍ ତଲବ କଲା ମାତ୍ରକେ ତୁମ୍ଭ ମୁହଁରୁ ବଚନ ବାହାରେ ନାହିଁ, କିନ୍ତୁ ଏ ଟୋକାଯାକଙ୍କର ଏତେଦୂର ଛାତି ଯେ ସେ ବୁଢ଼ା ବୁଢ଼ାଙ୍କ ଆଗରେ ନିଶରେ ହାତ ପକାଇ କହୁ ଅଛନ୍ତି - ନିଶ ରଖିଲୁଁ, କଣ କରିବ କର । ଏ କଥାରେ ଆମ୍ଭମାନଙ୍କ ହୃଦ କରତି ହୋଇ ଯାଉଅଛି । ଯାହା କଲ ତ କଲ, କିନ୍ତୁ ଟିକିଏ ନଇଁ ପଡ଼ିଲେ କି ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ ?'' ବନ୍ଧୁଙ୍କ କଥାଟାକୁ ମୁଁ ବାଏଁ ବାଏଁ ଉଡ଼ାଇ ଦେଇପାରିଲି ନାହିଁ । ହାଁ'ଜୀ ହାଁ'ଜୀ ହୋଇ କହିଲି, ''ଓଡ଼ିଶାର ବ୍ରାହ୍ମଣ ସମାଜର ଅବସ୍ଥା ବିବେଚନା କଲେ ଏପରି ଆନ୍ତଃସାମାଜିକ ବିବାଦ ବିସମ୍ବାଦରେ ଆମ୍ଭମାନଙ୍କ କ୍ଷୁଦ୍ର ସମାଜର ସମୂହ ଅମଙ୍ଗଳ । ଯାହାହେଉ ଏ ଅଡୁଆଟା ମେଣ୍ଟିଗଲେ ଆମର ମଙ୍ଗଳ । ଆପଣମାନେ ଶିକ୍ଷିତମାନଙ୍କ କାର୍ଯ୍ୟକୁ ତୀବ୍ର ଆଲୋଚନା ଦ୍ୱାରା ହାଣିଲେ ସେମାନେ ସମାଜକୁ ହସରେ ଉଡ଼ାଇ ଦେବେ ଏବଂ ସମାଜ ଓ ଶିକ୍ଷିତ ଯୁବକଙ୍କ ମଧରେ ଭେଦଜ୍ଞାନ ବଢ଼ିବ ଓ କ୍ରମେ କ୍ରମେ ବ୍ରାହ୍ମଣ ସମାଜରୁ ସେମାନେ ଅନ୍ତରିତ ହେବେ । ଏପରି ହେଲେ ସବୁଆଡ଼େ ଅମଙ୍ଗଳ ।'' ସାମାଜିକ ବନ୍ଧୁଙ୍କୁ ଏହିପରି ବୋଧ ଶୋଧ କରି ସେଠାରୁ ଫେରିବା ପରେ ଜଣେ ଶିକ୍ଷିତ ଯୁବକଙ୍କ ସଙ୍ଗେ ଦେଖା ହେଲା । ତାଙ୍କୁ ଦେଖି ମନେ ମନେ ସେକ୍ସପିଅର କବିଙ୍କର "Moderation on either side" ମନେପଡ଼ିଲା । ଯୁବକଙ୍କ ସଙ୍ଗେ ମୋର ପୂର୍ବରୁ ବନ୍ଧୁତା ଥିଲା । ସେ କହିଲେ, ''ପହରାଜେ ! ଆପଣ ଦାଢ଼ି ନିଶ ରଖିଲେ, ଆପଣଙ୍କୁ କେହି କିଛି କହିଲେ ନାହିଁ । କିନ୍ତୁ ଆମେ ନିଶ ଦୁଇ ପଟା ରଖିଲୁଁ ବୋଲି ପୁରୀ ବ୍ରାହ୍ମଣ ସମାଜ ଓ ପୁରୀ ମୁକ୍ତି ମଣ୍ଡପ ଆମର ଉପରେ ଭାଙ୍ଗିପଡୁଛି କିଆଁ ? ବାଇ ମାହାନ୍ତି ତାଙ୍କ ପାଞ୍ଜିରେ ପୁରୀ ବ୍ରାହ୍ମଣଯାକଙ୍କୁ ମନ କଥା ଦୁଇ ପଦ ଶୁଣାଇ ଦେଲେ, ସେ କଥା କାହାକୁ ବାଧିଲା ନାହିଁ । କିନ୍ତୁ ଆମେ ବୁଢ଼ାଙ୍କୁ ପଦେ ଟାଣ କରି କହିଦେଲୁଁ ବୋଲି ନରକରେ ପଡ଼ିଲୁଁ ! ଏଥିର ରହସ୍ୟ ଆମ୍ଭେମାନେ କିଛି ବୁଝି ପାରୁ ନାହୁଁ ।'' ଯୁବକଙ୍କୁ ମୁଁ ସ୍ନେହଭାବରେ କହିଲି, ''ଭାଇ ! ଟିକିଏ ଥୟ ଧର, କାମ ବନ୍ଦ କର ନା; କିନ୍ତୁ ଆଗ ପଛକୁ ଚାହିଁ ସମସ୍ତ କାର୍ଯ୍ୟ ଧୀର ଭାବରେ କର । ସମସ୍ତଙ୍କୁ ପଦେ କଅଁଳେଇ ସଅଁଳେଇ କହିଲେ କାହାର କ୍ଷତି ନାହିଁ । ସମାଜକୁ ସାଙ୍ଗେ ସାଙ୍ଗେ ଟାଣିନେବା ହିଁ ବାହାଦୁରି ।'' ଏହା କହି ଯୁବକଙ୍କ ସଙ୍ଗେ ଭବିଷ୍ୟତରେ ସାକ୍ଷାତ୍ ହେଲେ ଏ ସମ୍ବନ୍ଧରେ ଯୁକ୍ତି ଓ ପରାମର୍ଶ କରାଯିବ ବୋଲି କହି ତାଙ୍କଠାରୁ ବିଦାୟ ନେଲି । ଆଜି ରହିଲି ।

ଉତ୍କଳ ସାହିତ୍ୟ/୧୫ଶ ଭାଗ/୭ମ ସଂଖ୍ୟା/୧୩୧୯ ସାଲ ।

## ।। ଅଠତିରିଶ ।।

ବର୍ତ୍ତମାନ ଭାରତରେ ଏକ ପ୍ରାନ୍ତରରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଏକ ମୁଖରେ ଏକକଥା 'ଦିଲ୍ଲୀ ଦରବାର ।' ୧୯୧୧ ମସିହା ଡିସେମ୍ବର ୧୨ ତାରିଖ ଦିନ ଐତିହାସିକ ଇନ୍ଦ୍ରପ୍ରସ୍ଥ ନଗରୀରେ ଭାରତ ସମ୍ରାଟ୍ ପଞ୍ଚମ ଜର୍ଜ ଓ ସାମ୍ରାଜ୍ଞୀ ମେରୀଙ୍କର ମୁକୁଟୋତ୍ସବ ମହାସମାରୋହରେ ଉଦ୍‌ଘୋଷିତ ହୋଇ ଯାଇଅଛି ଏବଂ ଏହି ଉପଲକ୍ଷରେ ଭାରତରେ ଦିଗନ୍ତ ବ୍ୟାପୀ ଜୟଧ୍ୱନି ନିନାଦିତ ହୋଇଅଛି । ଅନେକ ବାଜି ପୋଡ଼ା ଯାଇଅଛି, ଅନେକ ଟଙ୍କା ଶ୍ରାଦ୍ଧ ହୋଇଅଛି, ଅନେକ ଉପାଧି, ପଦକ, ସାର୍ଟିଫିକେଟ ବିତରଣ ହୋଇଅଛି, ଅନେକ ଜିନିଷ ଚୋରି ଓ ଲୁଟି ହୋଇଅଛି, ଅନେକ ଲୋକ ଅନିଦ୍ରା ଭୋଗ କରିଅଛନ୍ତି, ଇତ୍ୟାଦି ଇତ୍ୟାଦି । ଏସବୁର ଠିକ୍ ବିବରଣ ଇତିହାସ ଲେଖକମାନେ ସଂଗ୍ରହ କରୁଅଛନ୍ତି, କରୁଥିବେ ଓ କରିବେ । କିନ୍ତୁ ଏହି ଅଦୃଷ୍ଟପୂର୍ବ ଘଟନା ମଧ୍ୟରେ ଦୁଇ ତିନୋଟି ବିଷୟ ମୋ ମନକୁ ଭାରି ଲାଗିଅଛି । ସେଗୁଡ଼ିକର ଏଠାରେ ଅବତାରଣା କରି ମୋର ଇତିକର୍ତ୍ତବ୍ୟତା କରିବି । ଭାରତରେ କେତେକ ଉଦ୍ଦାମପ୍ରକୃତିକ ବ୍ୟକ୍ତିଙ୍କ ଦ୍ୱାରା ଗତ କେତେ ବର୍ଷ ମଧ୍ୟରେ ଯେଉଁ ଲୋମହର୍ଷଣ ବ୍ୟାପାରମାନ ସଂଘଟିତ ହୋଇଅଛି, ସେଗୁଡ଼ିକ ଭାରତର ପ୍ରତ୍ୟେକ ମଙ୍ଗଳକାମୀ ଓ ଧୀରଚିତ୍ତ ବ୍ୟକ୍ତିଙ୍କ ମନରେ ଘୋର ଆତଙ୍କ ଉପସ୍ଥିତ କରାଇଅଛି - ଏକଥା ବୋଧହୁଏ କେହି ଅସ୍ୱୀକାର କରିବେ ନାହିଁ । ଭାରତର ଏହି ଚରମପନ୍ଥୀ ଦଳର ସୃଷ୍ଟି, ସ୍ଥିତି ଓ ପ୍ରଳୟର ଇତିହାସ ଚର୍ଚ୍ଚା କରିବାକୁ ଆମର ତାକତ ନାହିଁ - ଭାରତର ଭବିଷ୍ୟତ୍ ସଭ୍ୟତାର ଇତିହାସରେ ଏହି ଚରମପନ୍ଥୀ ଦଳର ଆନ୍ଦୋଳନ କେଉଁ ସ୍ଥାନ ଲାଭ କରିବ, ତାହା ନିରୂପଣ କରିବା ଆମ ଇଲାକାର ବହିର୍ଭୂତ । ଭାରତ କିପରି ଥିଲା, ଆଜି କିପରି ହେଲା ଓ କାଲି କିପରି ହେବ, ଏ ସୀମା ଏବଂ ଆଲୋଚନା ମଧ୍ୟରେ ତୁମ ଆମ ଭଳି ମଣିଷଙ୍କର ପ୍ରବେଶ ନାନା କାରଣରୁ ନିଷେଧ । ସମାଜର ଇତିହାସରେ ରାମଚନ୍ଦ୍ର ମହାରାଜାଙ୍କର ଗୋଟିଏ ସ୍ଥାନ ଅଛି ଓ ରାମ ଧୋବାର ଓ ଛକଡ଼ିଆ ମେହେନ୍ତରର ସମସ୍ତଙ୍କର ଗୋଟିଏ ଗୋଟିଏ ସ୍ଥାନ ଅଛି । କିଏ କେଉଁଠାରେ ବସିବ, କିଏ ଆଦୌ ବସିବ ନାହିଁ, ସେ କଥା ଆମର ସ୍ଥିର କରିବାର ଦରକାର ନାହିଁ - ''ଆମେ ସ୍ଥିର କଲେ ଶୁଣିବ ବା କିଏ ? ଯାହାହେଉ ଛାଡ଼ ସେ କଥା । ମୁଁ କହୁଥିଲି ଯେ ଏହି ପନ୍ଥାବଲମ୍ବୀ କେତେକ ବ୍ୟକ୍ତି ଭୀଷଣ ମୂର୍ତ୍ତି ଧାରଣ କରି ଭାରତରେ ଯେଉଁ ଗୁପ୍ତହତ୍ୟାର ନମୁନା ଦେଖାଇ ଦେଲେ, ତହିଁରେ ପ୍ରତ୍ୟେକ ଧୀରହୃଦୟ ଲଜ୍ଜା, ଭୟ ଓ ଘୃଣାରେ କମ୍ପିତ ହୋଇଗଲା । ଏହି ସମୟରେ ଲର୍ଡ଼ ମର୍ଲିଙ୍କ Reform ବା ଶାସନସଂସ୍କାର ଉଦ୍ଘୋଷିତ ହେଲା - ବିଲାତର କେତେକ ଆସନ ଉକ୍ତ ସଂସ୍କାର ଘୋଷଣା ଦ୍ୱାରା ଟଳି ଗଲା ଓ କେତେକ ବଡ଼ଲୋକ ବୋବାଇ ଉଠିଲେ ଯେ ''ଏହି ଶାସନସଂସ୍କାର ଦ୍ୱାରା ଭାରତରେ ଇଂରେଜ ଗୌରବ ଲୁପ୍ତ ହୋଇଯିବ । ଯେଉଁମାନଙ୍କୁ ଧମକ ଚମକ ଓ ତରବାରି ଦ୍ୱାରା ଥଣ୍ଡା ରଖି ଭାରତ ଶାସନ କରିବାର କଥା, ସେହିମାନଙ୍କୁ ଶାସନ ଅଧିକାର

ଦେଲେ ସେମାନଙ୍କର ମୁହଁଗୁଡ଼ାକ ବଢ଼ିଯିବ ଓ ଭାରତବାସୀମାନେ ଜାଣିବେ ଯେ ଚରମପନ୍ଥୀମାନଙ୍କ ଡରରେ ବିଲାତ ଗଭର୍ଣ୍ଣମେଣ୍ଟ ଛେରି ପକାଇଲେ। ତାହାହେଲେ ଚରମପନ୍ଥୀ ଦଳ ଭାରି ସୁଦୃଢ଼ ହେବ ଓ ଭାରତରେ ଘରେ ଘରେ ରାଜଦ୍ରୋହ ଓ ଅଶାନ୍ତି ଖେଳିଯିବ।'' କିନ୍ତୁ ଫଳତଃ ଦେଖାଗଲା ଯେ ସଂସ୍କାର ଘୋଷଣା ହେବା ଦିନଠାରୁ ଭାରତ ଶାନ୍ତମୂର୍ତ୍ତି ଧାରଣ କଲା ଓ ବିଲାତର ଭବିଷ୍ୟଦ୍‌ବକ୍ତାମାନଙ୍କ ଭୟ ଅମୂଳକ ଥିବାର ପ୍ରମାଣ ହେଲା। ଇତ୍ୟବସରରେ ସମ୍ରାଟ୍ ପଞ୍ଚମ ଜର୍ଜ ଓ ସାମ୍ରାଜ୍ଞୀ ମେରୀ ଦିଲ୍ଲୀଠାରେ ରାଜ୍ୟାଭିଷେକ ଘୋଷଣା କରିବା ପାଇଁ ନିଜେ ଭାରତକୁ ବିରାଜମାନ କରିବେ, ଏହି ସଂବାଦ ଭାରତରେ ସର୍ବତ୍ର ପ୍ରଚାରିତ ହେଲା। ଏ ସଂବାଦ ଶ୍ରବଣ ମାତ୍ରେ ଭାରତ ଆନନ୍ଦରେ ନାଚି ଉଠିଲା ଓ ଭାରତର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଆନନ୍ଦର ରୋଳ ଉଠିଲା। ଭାରତବାସୀମାନେ ଉଦ୍‌ପକ୍ଷ୍ମ ନୟନରେ ସମ୍ରାଟ୍‌ଙ୍କ ଭାରତ ପଦାର୍ପଣକୁ ଅନାଇ ରହିଲେ। ଏଣେ ବିଲାତରେ କେତେକ ବ୍ୟକ୍ତି ଟିକିଏ ଗେଁ ପେଁ ହେଲେ। କେହି କେହି କହିଲେ ଯେ ଭାରତର ଘରେ ଘରେ ବର୍ତ୍ତମାନ ଅଶାନ୍ତି ଓ ରାଜଦ୍ରୋହ ପୋତା ହୋଇ ରହିଅଛି ଓ ଘରେ ଘରେ ଚରମପନ୍ଥୀମାନେ ଲୁଚି ରହିଅଛନ୍ତି, ଏପରି ସ୍ଥଳରେ ସମ୍ରାଟ୍ ବର୍ତ୍ତମାନ ଭାରତକୁ ଯିବା ପ୍ରସ୍ତାବ ସମୀଚୀନ ବୋଧ ହେଉ ନାହିଁ। କେହି କେହି କହିଲେ, ଦିଲ୍ଲୀଟା ଭାରି ବଦନାମିଆ ଜାଗା, କେତେ ରାଜବଂଶ ଏହି ସିଂହାସନରେ ବସିଅଛନ୍ତି ଓ ଲୋପ ପାଇଅଛନ୍ତି। ଅତଏବ ଏଥିରେ ଯେ ବସିବ ତାହାର ପତନ ଅବଶ୍ୟମ୍ଭାବୀ। ଏହିପରି ନାନା କଥା ନାନା ଲୋକେ ବିଲାତରେ କହିବାକୁ ଲାଗିଲେ। କିନ୍ତୁ ଉଦାରହୃଦୟ ଦେଶକାଳଦର୍ଶୀ ସମ୍ରାଟ୍ ସେ କଥାକୁ ମନରେ ସ୍ଥାନ ନ ଦେଇ ସେହି ଅମୂଳକ ବିଭୀଷିକା ଦ୍ୱାରା ବିଚଳିତ ନ ହୋଇ ଭାରତବାସୀ ପ୍ରଜାମାନଙ୍କୁ କୃତାର୍ଥ କରିବା ସକାଶେ ଦୃଢ଼ସଂକଳ୍ପ ହେଲେ। ସମ୍ରାଟ୍ ବିଲାତରୁ ବାହାରିବା ପୂର୍ବରୁ ଜଣେ ବନ୍ଧୁଙ୍କ ସଙ୍ଗେ ମୋର ଦେଖା ହେଲା। ମୁଁ ତାଙ୍କୁ ଅତି ଆନନ୍ଦ ସହକାରେ କହିଲି - ''ଭାଇ! ସମ୍ରାଟ୍ ବର୍ତ୍ତମାନ ଆମ୍ଭମାନଙ୍କୁ ଦେଖା ଦେବାକୁ ଆସୁଅଛନ୍ତି, ବର୍ତ୍ତମାନ ସମସ୍ତ ଭାରତ ପକ୍ଷରେ ସୁଦିନ। କାରଣ ସମ୍ରାଟ୍ ବିଲାତ ଛାଡ଼ି ଭାରତବାସୀଙ୍କୁ ଦେଖା ଦେବା ଲାଗି ବିଲାତରୁ ଏଠାକୁ ବହୁ କଷ୍ଟ ସ୍ୱୀକାର କରି ଆସିବା ଏକ ଅଭିନବ ବ୍ୟାପାର ଅଟେ।'' ବନ୍ଧୁ ଏକଥା ଶୁଣି ଟିକିଏ ବିମର୍ଶଭାବ ଧାରଣ କଲା ପରି ଦେଖାଗଲା। ମୁଁ ଟିକିଏ ବିସ୍ମିତ ହେଲି। ବନ୍ଧୁ ଉତ୍ତର କଲେ - ''ଭାଇ! ସମ୍ରାଟ୍ ଭାରତକୁ ଆଗମନ କରୁଥିବା ଅବଶ୍ୟ ଆମ୍ଭମାନଙ୍କ ପକ୍ଷରେ ବହୁ ଭାଗ୍ୟର କଥା। କିନ୍ତୁ -'' ବନ୍ଧୁ 'କିନ୍ତୁ' ଠାରେ କଥାଟା ଢୋକି ନେଲେ, କିନ୍ତୁ ମୁଁ ସହଜରେ ତାଙ୍କୁ ଢୋକିବାକୁ ଦେଲେ ତ ହୁଏ। ମୁଁ ଝଅଟ ମାଡ଼ିବସିଲି, 'କିନ୍ତୁ - କିନ୍ତୁଠାରେ ବନ୍ଦ କଲ କାହିଁକି?' ବନ୍ଧୁଟି ଟିକିଏ ଚାରିଆଡ଼କୁ ଚାହିଁଲେ ଏବଂ ଟିକିଏ ଆଶ୍ୱସ୍ତ ହୋଇ କଥା ଆରମ୍ଭ କଲେ, ''କିନ୍ତୁ ସମ୍ରାଟ୍ ଏଠାକୁ ନିର୍ବିଘ୍ନରେ ଆସି ଏଠାରୁ ନିର୍ବିଘ୍ନରେ ଫେରି ବିଲାତରେ ନିର୍ବିଘ୍ନରେ ନ ପହଞ୍ଚିବା ପର୍ଯ୍ୟନ୍ତ

ମୋର ଚିନ୍ତା ଯିବ ନାହିଁ । କାରଣ ଚରମପନ୍ଥୀ ଦଳର ଉଦ୍ଦାମ ଯୁବକଙ୍କର ଉଚ୍ଛୃଙ୍ଖଳତା ପ୍ରତି ମୋର ବିଶେଷ ଭୟ ଅଛି । ଏଥିପାଇଁ ସମ୍ରାଟ୍‌ଙ୍କ ଭାରତ ଆଗମନ ସଂବାଦରେ ମୁଁ ଯେପରି ସମ୍ରାଟ୍‌ଙ୍କର ଭାରତବାସୀଙ୍କ ପ୍ରତି ବାତ୍ସଲ୍ୟର ନିଦର୍ଶନ ଦେଖି ଆନନ୍ଦିତ ହୋଇଅଛି, ସମ୍ରାଟ୍‌ଙ୍କ ନିରାପଦ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ମୁଁ ତତୋଽଧିକ ନିଶ୍ଚିତ ଅଛି ।'' ମୋର ବୁଦ୍ଧିଟା ଟିକିଏ ଗଣ୍ଡ ଅର୍ଥାତ୍ ମାନ୍ଦା । ସେଥିପାଇଁ ବନ୍ଧୁଙ୍କ ମନରେ ଭାବଟା ଏଥିପୂର୍ବେ ମୋ ମନକୁ ଆସି ନ ଥିଲା । ବନ୍ଧୁଙ୍କ କଥା ଶୁଣି ଏ ଭାବକୁ ହଠାତ୍ ମୁଁ ମଧ ଗିରଫ କରିନେଲି - ମନେ ମନେ ଧନ୍ୟବାଦଟାଏ ଦେଲି, ବିଚାରିଲି । 'ସ୍ନେହଃ ପାପମାଶଙ୍କତେ ।' ମନେ ମନେ ଭାବିଲି, ଏ କଥାଟା ମୁଁ ଆଗରୁ ଭାବି ପାରି ନ ଥିଲି କିଆଁ ?

ଯାହାହେଉ ସେହିଦିନଠାରୁ ସମ୍ରାଟ୍ ଭାରତକୁ ଆସି ଭାରତରୁ କୁଶଳରେ ଫେରିଯିବା ପର୍ଯ୍ୟନ୍ତ ମନଟା ମୋର ଖୁଢୁବୁଢୁ ହେଉଥାଏ ଓ ଶେଷରେ ଯେଉଁଦିନ ଜାଣିଲି ଯେ ସମ୍ରାଟ୍ ଓ ସାମ୍ରାଜ୍ଞୀ ସର୍ବଶୁଭରେ ଭାରତବର୍ଷରୁ ବିଦାୟ ଗ୍ରହଣ କରିଅଛନ୍ତି, ସେ ଦିନ ଈଶ୍ୱରଙ୍କୁ ଅନେକ ଧନ୍ୟବାଦ ଦେଲି । ସମ୍ରାଟ୍‌ଙ୍କର ଭାରତ ଆଗମନ ଦ୍ୱାରା ଭାରତର ରାଜାଧିରାଜଙ୍କଠାରୁ କୁଟୀରବାସୀ ଭିକ୍ଷୁକ ପର୍ଯ୍ୟନ୍ତ ସମସ୍ତଙ୍କ ହୃଦୟରେ ଯେଉଁ ରାଜଭକ୍ତି ପ୍ରଚ୍ଛନ୍ନ ଭାବରେ ଥିଲା ତାହା ପୂର୍ଣ୍ଣରୂପେ ବିକାଶ ପାଇବାର ସୁବିଧା ମିଳିଲା ଓ ସମସ୍ତେ ରାଜଭକ୍ତି ଓ ଆମୋଦରେ ମାତିଉଠିଲେ - ଭାରତ ଯେ ରାଜଦ୍ରୋହୀମାନଙ୍କ କ୍ରୀଡ଼ାକ୍ଷେତ୍ର ବୋଲି ବିଲାତର କେତେ ବଡ଼ ଲୋକ ଘୋଷି ହେଉଥିଲେ, ତାହା ସମ୍ପୂର୍ଣ୍ଣ ମିଥ୍ୟା ବୋଲି ପ୍ରମାଣିତ ହେଲା ଓ ସ୍ଥାନୀୟ ଶାସନକର୍ତ୍ତାମାନଙ୍କର କେତେକ କାର୍ଯ୍ୟକଳାପରେ ଲୋକେ ବିରକ୍ତ ବା ଦୁଃଖିତ ହେଲେ ମଧ, ଉଚ୍ଚଠାରୁ ନୀଚ ପର୍ଯ୍ୟନ୍ତ ସମସ୍ତେ ସମ୍ରାଟ୍‌ଙ୍କୁ ଭକ୍ତି ଚକ୍ଷୁରେ ଦେଖନ୍ତି ଓ ସମ୍ରାଟ୍‌ଙ୍କୁ ହୃଦୟରେ ପୂଜା କରନ୍ତି, ଏହା ସର୍ବବାଦିସମ୍ମତ ରୂପେ ପ୍ରମାଣିତ ହେଲା । ସମ୍ରାଟ୍ ଭାରତକୁ ଆଗମନ କରିବା ଦ୍ୱାରା ସମସ୍ତଙ୍କର ଚକ୍ଷୁ ଫିଟିଅଛି - ରାଜା ପ୍ରଜା ଉଭୟେ ଏହି ଆଗମନ-ଉତ୍ସବଦ୍ୱାରା ଶିକ୍ଷା ଲାଭ କରିଅଛନ୍ତି । ଭାରତବାସୀଙ୍କର କିପରି ରାଜଭକ୍ତି ଅଛି, ସମ୍ରାଟ୍ ନିଜେ ତାହା ଅନୁଭବ କରିବାର ସୁବିଧା ପାଇଅଛନ୍ତି । ସମ୍ରାଟ୍‌ଙ୍କର କିପରି ପ୍ରଜାବାତ୍ସଲ୍ୟ ଅଛି, ପ୍ରଜାପୁଞ୍ଜଙ୍କ ସୁଖଦୁଃଖକୁ ସମ୍ରାଟ୍ କିପରି ନିଜର ସୁଖଦୁଃଖ ବୋଲି ମନେକରନ୍ତି, ତାହା ଭାରତବାସୀମାନେ ସ୍ୱଚକ୍ଷୁରେ ଦେଖି ଅନୁଭବ କରିଅଛନ୍ତି ଓ ସମ୍ରାଟ୍‌ଙ୍କର ଭାରତ ଆଗମନ ଦ୍ୱାରା ଇଂଲଣ୍ଡ ଓ ଭାରତ ମଧରେ, ପାଶ୍ଚାତ୍ୟ ଓ ପ୍ରାଚ୍ୟ ମଧରେ ବନ୍ଧନ ସୁଦୃଢ଼ ହୋଇଅଛି । ଯାହା କାଲି ଦୂର ଭବିଷ୍ୟତ୍‌ର ମରୀଚିକାବତ୍ ପ୍ରତୀୟମାନ ହେଉଥିଲା, ତାହା ଆଜି ହାତ ପାହାନ୍ତାରେ ମିଳିଅଛି । ବକ୍ତୃତା ଓ ଘୋଷଣା ଓ ସଂବାଦମାନଙ୍କଦ୍ୱାରା ସମ୍ରାଟ୍ ଭାରତବାସୀଙ୍କ ପ୍ରତି ଯେଉଁ ଗଭୀର ଅପତ୍ୟ ସ୍ନେହ ଦେଖାଇଅଛନ୍ତି, ତାହା ଭାରତ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ଓ ୧୯୧୧ ସାଲର ଡିସେମ୍ବର ୧୨ ତାରିଖ ଭାରତର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଚିହ୍ନିତ ହୋଇ ରହିବ । ଯାହା ଶତ ଶତ

ବର୍ଷର ଚେଷ୍ଟା ସାଧନ କରିବାକୁ ସମର୍ଥ ହୋଇ ନ ଥିଲା, ତାହା କୁହୁକ ପରି ଦଣ୍ଡକେ ସଂସାଧିତ ହୋଇଗଲା ଓ ଭାରତ ପ୍ରତି ସମସ୍ତ ସଭ୍ୟ ଜଗତର ଦୃଷ୍ଟି ଆକର୍ଷିତ ହେଲା ଏବଂ ଭାରତର ଭବିଷ୍ୟତ୍ ଉଜ୍ଜ୍ୱଳ ହେଲା । ସମ୍ରାଟ୍‌ଙ୍କ ଅଭିଷେକୋତ୍ସବରେ ସମ୍ରାଟ୍‌ଙ୍କ ଶ୍ରୀହସ୍ତରୁ କିଛି ହେଲେ ବର ଲାଭ ହେବ ବୋଲି ସମସ୍ତେ ଆଶା କରିଥିଲେ । ଫଳତଃ ସମ୍ରାଟ୍ ସେଦିନ ଦିଲ୍ଲୀଦରବାରରେ କେତେଗୁଡ଼ିଏ ବର ଘୋଷଣା କରିବା ଦ୍ୱାରା ଦିଲ୍ଲୀ ଦରବାରକୁ ଚିରସ୍ମରଣୀୟ କରି ଗଲେ । ଯେଉଁ ସମସ୍ତ ବର ଆମ୍ଭେମାନେ ରାଜାଙ୍କ ଶ୍ରୀହସ୍ତରୁ ଲାଭ କଲୁଁ, ତଦ୍ୱାରା ଦେଶବିଶେଷର ସମ୍ପ୍ରଦାୟବିଶେଷର, ଜାତିବିଶେଷର କିମ୍ବା ବ୍ୟକ୍ତିବିଶେଷର କି ଲାଭ ହୋଇଅଛି, ତାହା ଆଲୋଚନା କରିବାର ଏ ସ୍ଥାନ ନୁହେଁ । ଇଂରେଜ ଶିକ୍ଷା ଓ ସଭ୍ୟତା ଭାରତବାସୀମାନଙ୍କୁ ଯେଉଁ ଉଚ୍ଚ ଭାବଗୁଡ଼ିକ (High principles) ଶିଖାଇଥିଲା ଓ କାର୍ଯ୍ୟକ୍ଷେତ୍ରରେ ଯେଉଁ ନିୟମମାନଙ୍କୁ ଖଟାଇବା ପାଇଁ ଭାରତବାସୀମାନେ ଶିକ୍ଷାଲାଭ କରିଥିଲେ, ସମ୍ରାଟ୍ ସ୍ୱୀୟ ବର ଦ୍ୱାରା (Boon) ସେହି ସାମାନ୍ୟ କଥନଗୁଡ଼ିକ ବିଶେଷ କଥନରେ ପରିଣତ କଲେ । ଏହାହିଁ ସମ୍ରାଟ୍‌ଙ୍କ ପ୍ରତି ଗୌରବର ବିଷୟ ଓ ଭାରତବାସୀମାନଙ୍କ ପ୍ରତି ଆନନ୍ଦର ବିଷୟ, ସନ୍ଦେହ ନାହିଁ । ଦିଲ୍ଲୀ ଲଡ୍ଡୁକୁ ଆଗେ ବଙ୍ଗାଳୀପୁଏ ଏକୁଟିଆ ପାଟିରେ ପୂରାଇ ଦେଉଥିଲେ, ତାକୁ ଫାଳ ଫାଳ କରି ଫାଳେ ବଙ୍ଗାଳୀ ଭାଇକୁ ଓ ଆର ଫାଳକ ବିହାରୀ ଓ ଓଡ଼ିଆକୁ ବଣ୍ଟା ହେଲା କି ନାହିଁ, ବର୍ତ୍ତମାନ ତାହା ଦେଖିବାର ସମୟ ନୁହେଁ । ବର୍ତ୍ତମାନ ଆମ୍ଭେମାନେ ସମ୍ରାଟ୍ ପ୍ରଦତ୍ତ ଉପହାରକୁ ଅନ୍ୟ ଏକ ଦୃଷ୍ଟିରେ (in the light of principles) ଦେଖିଲେ ତହିଁର ମୂଲ୍ୟ ଉପଲବ୍ଧି କରିପାରିବା । ଲର୍ଡ଼ କର୍ଜନଙ୍କ ଅମଳରେ ଗଭର୍ଣ୍ଣମେଣ୍ଟ ଦେଶବାସୀଙ୍କ ମତ ପ୍ରତି ଅନାସ୍ଥା ଦେଖାଇ ବଙ୍ଗଳାକୁ ଦୁଇଖଣ୍ଡ କରି ଦେଇଥିଲେ ଓ ଦେଶବାସୀମାନେ ତହିଁରେ ବିଶେଷ ନାରାଜ ଥିଲେ । ବିଲାତ ପାର୍ଲିଆମେଣ୍ଟ ପର୍ଯ୍ୟନ୍ତ ସୁଦ୍ଧା ସମସ୍ତେ ବଙ୍ଗ ବ୍ୟବଚ୍ଛେଦକୁ Settled fact (ଅଖଣ୍ଡନୀୟ ଘଟନା) ବୋଲି ଘୋଷଣା କରି ଦେଲେ । ଲର୍ଡ ମର୍ଲିଙ୍କ ଭଳି ଜଣେ ଉଦାରନୈତିକ ରାଜନୀତି ବିଶାରଦ ପଣ୍ଡିତ ମଧ୍ୟ ତାଙ୍କ ଆସନ ଜମାଇ ସିଧା ହୋଇ ବସି ରହିପାରିଲେ ନାହିଁ । କଟା ଘା'କୁ ଶୁଖାଇବା ପାଇଁ କାହାର ବଳ ପାଇଲା ନାହିଁ । ଦେଶବାସୀଙ୍କ ମନର ବେଦନା କେହି ପ୍ରଶମନ କରିପାରିଲେ ନାହିଁ । କିନ୍ତୁ ଆଜି ସମ୍ରାଟ୍ ଆସି ମୁହୂର୍ତ୍ତକ ମଧ୍ୟରେ ସବୁ ଅଖଣ୍ଡନୀୟ ଘଟନାକୁ (Settled fact) ଖଣ୍ଡିତ (unsettled) କରି ଦେଇ ଗଲେ ଓ ଘୋଷଣା କରି ଦେଇ ଗଲେ ଯେ ଯେଉଁ ବଙ୍ଗ ବ୍ୟବଚ୍ଛେଦ ପାଇଁ ଭାରତ କାନ୍ଦୁଅଛି, ସେହି ବ୍ୟବଚ୍ଛେଦ ରହିତ ହୋଇ ଦୁଇ ଖଣ୍ଡ ବଙ୍ଗ ପୁନର୍ବାର ଏକ ଶାସନାଧୀନ ହେବ । ଏତଦ୍ୱାରା ସମ୍ରାଟ୍ ପ୍ରଜାମାନଙ୍କ ମତ ପ୍ରତି ଯେଉଁ ଆସ୍ଥା ଦେଖାଇଅଛନ୍ତି, ତାହା ଇତିହାସରେ ବିରଳ । ଆପଣା ତହସିଲଦାର କୌଣସି କାଇଲ୍ କାମ କଲେ କେତେଜଣ ଜମିଦାର ତାହା ମାନିବାକୁ ପ୍ରସ୍ତୁତ ? ବର୍ତ୍ତମାନ ସମ୍ରାଟ୍‌ଙ୍କ ତହସିଲଦାରମାନେ ଯେଉଁ ଚାପୁଡ଼ାଟା ବଜାଇଥିଲେ, ସମ୍ରାଟ୍ ନିଜେ ଆସି

ତାହା ସମସ୍ତଙ୍କ ମନରୁ ପୋଛି ଦେଇ ଗଲେ । ସମ୍ରାଟ୍‌ଙ୍କ ପ୍ରଦତ୍ତ ବର (Royal Boon) ମଧ୍ୟରେ ଏହାହିଁ ଅନୁଭବ କରି ମୁଁ ମୁଗ୍ଧ ହୋଇଅଛି । ପ୍ରଜାପୁଞ୍ଜଙ୍କ ମତ ପ୍ରତି ଆସ୍ଥା ଦେଖାଇ ସମ୍ରାଟ୍ ଭାରତରେ ଚିରସ୍ମରଣୀୟ କୀର୍ତ୍ତି ରଖିଗଲେ । ଭାରତବର୍ଷ ସମ୍ରାଟ୍ ପଞ୍ଚମ ଜର୍ଜଙ୍କଠାରେ ଚିରକୃତଜ୍ଞ ରହିବ ଓ ଇତିହାସ ସ୍ୱର୍ଣ୍ଣାକ୍ଷରରେ ସମ୍ରାଟ୍‌ଙ୍କ ନାମ ଲିପିବଦ୍ଧ କରିବ । 'ପ୍ରଜାଙ୍କ ମତ ପ୍ରତି ସମ୍ମାନ ପ୍ରଦର୍ଶନ' ନାମକ ଯେଉଁ ବୀଜ ସମ୍ରାଟ୍ ସ୍ୱହସ୍ତରେ ଭାରତରେ ଆଜି ବୁଣି ଦେଲେ, ତାହା ଭାରତରେ ରତ୍ନ ପ୍ରସବ କରିବ ଓ ଇଂଲଣ୍ଡ ଏବଂ ଭାରତ ମଧ୍ୟରେ ଘନିଷ୍ଠତା ବନ୍ଧନ ଶତ ସହସ୍ର ଗୁଣରେ ଦୃଢ଼ ହେବ, ଏଥିରେ ସନ୍ଦେହ ନାହିଁ । ଏପରି ପ୍ରଜାବତ୍ସଳ ସମ୍ରାଟ୍‌ଙ୍କ ପ୍ରତି କାହାର ହୃଦୟରେ ଭକ୍ତିର ସଂଚାର ନ ହେବ ? ଦିଲ୍ଲୀକୁ ଭାରତର ପ୍ରଧାନ ନଗର (Capital) ଘୋଷଣା କରି ସମ୍ରାଟ୍ ଆହୁରି ଗୋଟିଏ ଚିରସ୍ମରଣୀୟ କାର୍ଯ୍ୟ କରିଅଛନ୍ତି । ପୌରାଣିକ ଇନ୍ଦ୍ରପ୍ରସ୍ଥ ଓ ଐତିହାସିକ ଦିଲ୍ଲୀ ଭାରତ ସାମ୍ରାଜ୍ୟର ରାଜଧାନୀ ହେଲା । ପୁରାକାଳରେ ହିନ୍ଦୁ ରାଜାମାନେ ଓ ମୁସଲମାନ ରାଜାମାନେ ଦିଲ୍ଲୀଠାରେ ରାଜଧାନୀ କରୁଥିଲେ । 'ପୁଷ୍ପେଷୁ ମଲ୍ଲୀ-ନଗରେଷୁ ଦିଲ୍ଲୀ' ଏ ଢଗଟା ଆମେ ପିଲାଦିନୁ ଗଣେଶ ଅଜାଙ୍କଠାରୁ ଶୁଣିଅଛୁଁ । ଆଧୁନିକ ଭାରତର ରାଜଧାନୀ ଆଜିପର୍ଯ୍ୟନ୍ତ କଲିକତା ଥିଲା । ବର୍ତ୍ତମାନ ଦିଲ୍ଲୀଠାରେ ରାଜଧାନୀ ପ୍ରତିଷ୍ଠା କରିବା ଦ୍ୱାରା ଭାରତରେ ଐତିହାସିକ ସାମଞ୍ଜସ୍ୟ ରକ୍ଷା କରାଗଲା ଓ ତଦ୍ୱାରା ଲୋକଚକ୍ଷୁରେ ଇଂରେଜ ରାଜତ୍ୱର ଗୌରବ ବଢ଼ିଲା, ଏଥିରେ ସନ୍ଦେହ ନାହିଁ । ତତ୍‌ପରେ ସାଧାରଣ ଶିକ୍ଷାର ପଥ ଉନ୍ମୁକ୍ତ କରିବା ଲାଗି ସମ୍ରାଟ୍ ଭାରତକୁ ୫୦ ଲକ୍ଷ ଟଙ୍କା ଦାନ କରି ଗଲେ । ଏଥିରେ ମଧ୍ୟ ସେହି Principle ର ଜୟ । ଭାରତରେ ଶିକ୍ଷାବିସ୍ତାର କରିବାକୁ ହେବ ଓ ଲୋକମାନଙ୍କୁ ଶିକ୍ଷା ଦେବା ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ, ଏହି ଦାନ ଦ୍ୱାରା ସମ୍ରାଟ୍ ଏହି କଥାଟା ଘୋଷଣା କରି ଗଲେ । ଅତଏବ (Royal Boon) ସମ୍ରାଟ୍ ପ୍ରଦତ୍ତ ବର ଦ୍ୱାରା କାହାର କେତେ କଡ଼ା କେତେ କ୍ରାନ୍ତି ଲାଭ ହେଲା କି ଲୋକସାନ ହେଲା, ତାହା ଖଡ଼ି ଗୋଟାଳି ଧରି ହିସାବ କିତାବ କରିବା ପୂର୍ବରୁ ଆମ୍ଭମାନଙ୍କର ସ୍ମରଣ ରଖିବା ଉଚିତ ଯେ ସମ୍ରାଟ୍ ଭାରତକୁ ଆଗମନ କରି ଯେଉଁ ତିନିଗୋଟି ସତ୍ୟର ଜୟ ଘୋଷଣା କରି ଗଲେ ଓ ଫଳତଃ ଭାରତବାସୀଙ୍କ ମଙ୍ଗଳ ପ୍ରତି ଯେଉଁ ଅନୁରାଗ ଦେଖାଇ ଦେଇଗଲେ, ତାହା ଭାରତର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲେଖା ରହିଲା । ଯେଉଁ ରାଜନୀତିକୁଶଳ ଉପଦେଷ୍ଟାମାନଙ୍କ ପରାମର୍ଶରେ ସମ୍ରାଟ୍ ଏହି ବରଗୁଡ଼ିକ ଘୋଷଣା କଲେ, ସେମାନେ ମଧ୍ୟ ଓସ୍ତାତି ଖେଳୁଆଡ଼ । ବେଳ କାଳ ଉଣ୍ଡି ସେମାନେ ସମ୍ରାଟ୍‌ଙ୍କୁ ପରାମର୍ଶ ଦେଇ ଭାରତର ଘରେ ଘରେ ସମ୍ରାଟ୍‌ଙ୍କ ଛବି ଟଙ୍ଗାଇ ଦେଲେ ।

ଏହା ଛଡ଼ା ଏହି ବରଗୁଡ଼ିକ ସମ୍ବନ୍ଧରେ 'ସାଂସାରିକ ମତ'ରେ ମୁଁ ଆଜିପର୍ଯ୍ୟନ୍ତ ଆଲୋଚନା କରି ନାହିଁ । ଓଡ଼ିଶାର କି ଉପକାର ହେଲା, ସରକାରୀ ଚାକିରିରେ ଓଡ଼ିଆଙ୍କ

କିସମତ୍ କେତେ ବଢ଼ିଲା, ଓଡ଼ିଆଙ୍କ କିମତ୍ କେତେ ବଢ଼ିଲା, ଓଡ଼ିଆଙ୍କ ଖିଜମତ୍ କେତେ ବଢ଼ିଲା, ଓଡ଼ିଆଙ୍କ କରାମତ୍ କେତେ ବଢ଼ିଲା, ଏ ସବୁ କଥା ସ୍ଥିର ଭାବରେ ଭାବିବାକୁ ମୁଁ ଆଜିପର୍ଯ୍ୟନ୍ତ ସମୟ ପାଇ ନାହିଁ । କିନ୍ତୁ ଏହି ବରଗୁଡ଼ିକ ଦ୍ୱାରା ଭାରତର ରାଜନୈତିକ ଭିତ୍ତି ସମ୍ରାଟ୍‌ଙ୍କ ଦ୍ୱାରା ଦୃଢ଼ ଭାବରେ ସ୍ଥାପିତ ହେଲା ଓ ରାଜନୈତିକ ଉନ୍ନତି କ୍ଷେତ୍ରରେ ଭାରତ ଅଗ୍ରସର ହେଲା, ଏଥିରେ ଆପାତତଃ ମୋର ସନ୍ଦେହ ନାହିଁ । ବିହାର, ଛୋଟନାଗପୁର, ଓଡ଼ିଶା ଏକ ଶାସନାଧୀନ ହେବାଦ୍ୱାରା ଓଡ଼ିଆଙ୍କର କି ଉପକାର ହେବ, ତାହା ଭବିଷ୍ୟତ୍ ଇତିହାସ ଲେଖକଙ୍କର ଇଲାକା । ଜଣେ ବୁଢ଼ାଙ୍କୁ ମୁଁ ଏ କଥା ପଚାରିଥିଲି । ସେ ଉତ୍ତର କଲେ, ବିହାର ଓଡ଼ିଶା ଛୋଟନାଗପୁର ଏକତ୍ରିତ ହୋଇ ପାଟନାଠାରେ ରାଜଧାନୀ ହେଲେ ଅନେକ ଓଡ଼ିଆ କାର୍ଯ୍ୟାନୁରୋଧରେ ପାଟନା ଯାଇ ଏକା ଯାତ୍ରାକେ 'କନ୍ୟା ଦେଖା' ଓ 'ବାଇଗଣ ବିକା' ଉଭୟ ଲଟରା ଛିଣ୍ଡାଇ ଦେଇ ଆସିବେ, ଅର୍ଥାତ୍ ରାଜଧାନୀରେ ରାଜକାର୍ଯ୍ୟ ସମାଧାନ କରି ସିଧାଏ ସିଧାଏ ଗୟାରେ ପିତୃକାର୍ଯ୍ୟ ସଂପନ୍ନ କରି ଆସିବେ । ଆଗେ 'ଛାଡ଼ ପିତୃକାର୍ଯ୍ୟ କର ରାଜକାର୍ଯ୍ୟ' ଆମ୍ଭମାନଙ୍କର ଏହି Motto (ନୀତି) ଥିଲା । ବର୍ତ୍ତମାନ ଆମର Motto ହେବ 'କର ରାଜକାର୍ଯ୍ୟ, କର ପିତୃକାର୍ଯ୍ୟ ।' ରାଜଧାନୀଠାରୁ ଓଡ଼ିଶାକୁ ସରଳିଆ ବାଟ ଫିଟିଗଲେ ଅଫିମ ଓ ପାଟନାଇ କୋବି ଓ ଗୋଲ ଆଳୁ ଏଗୁଡ଼ାକ ଶସ୍ତା ହୋଇଯିବ, ଓଡ଼ିଆଯାକ ବିନା ଖରଚରେ ଖୋଟ୍ଟା ଅର୍ଥାତ୍ ହିନ୍ଦୁସ୍ଥାନୀ ବୋଲି ଶିଖିଯିବେ । ବୁଢ଼ାଙ୍କର ଏ କଥାଗୁଡ଼ାକ ଶୁଣି ମୁଁ ଟିକିଏ ମୁରୁକେଇ କରି ହସିଲି । ମୋ ମତରେ ଫଳ କଥା ଏହି କି ଓଡ଼ିଆଙ୍କ ଭାଗ୍ୟ ଓଡ଼ିଆଙ୍କ ଯୋଗ୍ୟତା ଉପରେ ନିର୍ଭର କରେ । ଆଧୁନିକ ସଭ୍ୟତାରେ ସବୁ କ୍ଷେତ୍ରରେ ପ୍ରତିଯୋଗିତାରେ ଉତ୍ତୀର୍ଣ୍ଣ ହେବାକୁ ହେବ, ଜୀବନ କ୍ଷେତ୍ରରେ ସଂଗ୍ରାମ କରିବାକୁ ହେବ । ସେଥିରେ ଜିତିଲେ ସଭ୍ୟ ଜାତିର ରେଜିଷ୍ଟରିରେ ତୁମ ନାମ ଦରଜ ହେବ । ତାହା ନ ହେଲେ ପୁନର୍ମୂଷିକୋଭବ ! ଆମ ଆଗରେ କେହି ଭାତ ଥାଳିଏ ଥୋଇଦେଲେ ଆମ ଜୀବନଟା ସାର୍ଥକ ହୋଇଯିବ ନାହିଁ । ଆମ ହାତ ସାହାଯ୍ୟରେ ତାକୁ ପାଟିକୁ ନେବାକୁ ହେବ । ପାଟିକୁ ନେଲାକ୍ଷଣି କାର୍ଯ୍ୟ ସରିବ ନାହିଁ । କଷ୍ଟ ସ୍ୱୀକାର କରି ସେଗୁଡ଼ିକ ଚୋବାଇ ଢୋକି ଉଦରସ୍ଥ କରିବାକୁ ହେବ, ସେତିକିରେ ମଧ କାର୍ଯ୍ୟ ସରିଲା ନାହିଁ । ସେଗୁଡ଼ିକ ଉଦରସ୍ଥ ହେଲା ପରେ ତାକୁ ଜୀର୍ଣ୍ଣ କରିବାକୁ ହେବ । ଜୀର୍ଣ୍ଣ କରିବାକୁ ହେଲେ ସେଥିପାଇଁ ଶାରୀରିକ ସୁସ୍ଥତା ଓ ଅଗ୍ନିବଳ ଦରକାର । ଏତେଗୁଡ଼ିଏ କଥା ଠିକଣା କରିସାରି ଯେ ଭାତଥାଳି ଆଗରେ ଦେଖିଲେ ଖୁସି ହୁଏ, ମୁଁ ତାକୁ ମନୁଷ୍ୟ ମଧ୍ୟରେ ସୁମାରି କରେଁ । ଏତକ ତାକତ୍ ନ ଥାଇ ଯେ ସାମନାରେ ଥାଳିଏ ଭାତ ଦେଖିଲେ ଖୁସି ହୁଏ, ତାକୁ ମୁଁ ବିଚାରେ ଓଲୁ । ତେବେ ଏତିକି ମାତ୍ର ସୁନିଶ୍ଚିତ ଯେ ନୂତନ ବିଭାଗ (Province) ପ୍ରତିଷ୍ଠା ଦ୍ୱାରା ଓଡ଼ିଶାର ଭାଗ୍ୟ ଅବଶ୍ୟ ପରିବର୍ତ୍ତିତ ହେବ । କିନ୍ତୁ ସେ ପରିବର୍ତ୍ତନଟା ଭଲଆଡ଼କୁ ଗତି କରିବ କି ମନ୍ଦ

ଆଡ଼କୁ ଗତି କରିବ, ତାହା ଅନ୍ୟ କାହାରି ହାତରେ ନାହିଁ । ତାହା ଆମରି ହାତରେ ଅଛି । ଆମେ ଅଣ୍ଟା ବାନ୍ଧିଲେ ଅଳ୍ପ ବହୁତ ସବୁଠାରେ ଘଡ଼ିଏ ଖଣ୍ଡେ କସରତ୍ କରିପାରିବା । ଆମ ଅଣ୍ଟାଖଣ୍ଡମାନ ଲଡ଼ବଡ଼ିଆ ହେଲେ ଆଜି ବଙ୍ଗଳାରେ ଥାଇ ଯେଉଁ ପଟକଣ ଖାଇବାର ଭୟ ହେଉଥିଲା, ବିହାରକୁ ଯାଇ ମଧ ସେହି କିମ୍ବା ତତୋଽଧିକ ହିନସ୍ତା ହେବା ।

ବର୍ତ୍ତମାନ ଏହି ରାଜକୀୟ ଘୋଷଣା ଦ୍ୱାରା ସୁପ୍ତ ଓଡ଼ିଆ ଜାତିର ମଧ ଟିକିଏ ନିଦ୍ରା ଭାଙ୍ଗିଅଛି - ଏହା ଅବଶ୍ୟ ଚିର ରୋଗୀ ପକ୍ଷରେ ଶୁଭ ଲକ୍ଷଣ । ଐତିହାସିକ ଓଡ଼ିଶା ଘଟନାକ୍ରମେ ଭାରତର ବିଭିନ୍ନ ବିଭାଗ ମଧରେ ଛିନ୍ନ ବିଚ୍ଛିନ୍ନ ହୋଇ ପଡ଼ିଥିଲା । ଆଠ ଦଶ ବର୍ଷ ପୂର୍ବେ ସମସ୍ତ ଉତ୍କଳଭାଷୀ ଅଞ୍ଚଳମାନ ଏକ ଶାସନାଧୀନ ରହିବ ବୋଲି ଓଡ଼ିଆମାନେ ଗଭର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା କରୁଥିଲେ । ବଙ୍ଗ ବିଭାଗ ଅନ୍ତର୍ଗତ ଓଡ଼ିଶା, ମେଦିନୀପୁର ଓ ଛୋଟନାଗପୁର, ମାନ୍ଦ୍ରାଜ ବିଭାଗ ଅନ୍ତର୍ଗତ ଗଞ୍ଜାମ, ମଧ୍ୟପ୍ରଦେଶ ଅନ୍ତର୍ଗତ ସମ୍ବଲପୁର ଏ ସମସ୍ତ ଅଞ୍ଚଳଗୁଡ଼ିକ ଏକ ଶାସନାଧୀନ ରଖିବାପାଇଁ ଉତ୍କଳର ବିଭିନ୍ନ ଅଞ୍ଚଳରୁ ପ୍ରାର୍ଥନାପତ୍ରମାନ ପ୍ରେରିତ ହୋଇଥିଲା । ବଙ୍ଗ ବ୍ୟବଚ୍ଛେଦ ସମୟରେ ସମ୍ବଲପୁର ଓ ଛୋଟନାଗପୁର, ଓଡ଼ିଶା ଓ ମେଦିନୀପୁର ଅଂଶଗୁଡ଼ିକ ପଶ୍ଚିମବଙ୍ଗ ବିଭାଗ ମଧରେ ଏକତ୍ରିତ ହେଲା । କେବଳ ଗଞ୍ଜାମ ଓ ସମ୍ବଲପୁର ନିକଟସ୍ଥ କେତେକ ଜମିଦାରୀ ଓଡ଼ିଶାର ବାହାରେ ରହିଗଲା ଓ ଆଜିପର୍ଯ୍ୟନ୍ତ ରହିଅଛି । ଏହି ସମୟରେ ଦିଲ୍ଲୀ ଦରବାରରେ ସମ୍ରାଟ୍‌ଙ୍କର ରାଜକୀୟ ଘୋଷଣା ପ୍ରଚାରିତ ହେଲା । ରାଜକୀୟ ଘୋଷଣାର ମୂଳମନ୍ତ୍ର 'ଜାତୀୟ ସ୍ୱାତନ୍ତ୍ୟ' । ଅର୍ଥାତ୍ ବଙ୍ଗାଳୀମାନେ ଏକଶାସନାଧୀନ ରହିବେ, ଆସାମୀମାନେ ଏକ ଶାସନାଧୀନ ରହିବେ । ବିହାରୀମାନେ ଓ ଓଡ଼ିଆମାନେ ଏକ ଶାସନାଧୀନ ରହିବେ । ଏହି ହିସାବରେ ଧରିବାକୁ ଗଲେ ଯେଉଁ ନଜିରର ଦ୍ୱାହିରେ ଅନ୍ୟ ସମସ୍ତ ଜାତି ଏକତ୍ରିତ ହେଲେ, ସେ ନଜିର ବଳରେ ଓଡ଼ିଆଭାଷୀମାନେ ସମସ୍ତେ ଏକତ୍ରିତ ହେବା ଉଚିତ । ସମ୍ରାଟ୍‌ଙ୍କ ଘୋଷଣା ଓ ଲାଟସାହେବଙ୍କ Despatch ପତ୍ରରେ ଉଲ୍ଲେଖ ଅଛି ଯେ ଓଡ଼ିଶା, ବିହାର ଓ ଛୋଟନାଗପୁର ଏକ ଶାସନାଧୀନ ରହିବ ଓ ଶାସନ କାର୍ଯ୍ୟର ସୁବିଧା ନିମନ୍ତେ ଯେଉଁ ଯେଉଁଠାରେ ବିଭାଗୀୟ ସୀମାର ପରିବର୍ତ୍ତନ ଆବଶ୍ୟକ ହେବ, ତାହା ବଡ଼ଲାଟ କରିପାରିବେ । ଏଥିରୁ ଆଶା ହେଉଅଛି ଯେ, ନୂତନ ବିଭାଗ ସୃଷ୍ଟି କଲାବେଳେ ଗଞ୍ଜାମ, ମେଦିନୀପୁର, ମଧ୍ୟପ୍ରଦେଶ, ଛୋଟନାଗପୁର ବିଭାଗମାନଙ୍କରେ ଥିବା ଓଡ଼ିଆ ଅଞ୍ଚଳମାନଙ୍କୁ ଓଡ଼ିଶା ମଧକୁ ଆଣି ସମସ୍ତ ଓଡ଼ିଆଙ୍କୁ ଏକ ଶାସନାଧୀନ ରଖିବା ପାଇଁ ବଡ଼ଲାଟ ବାହାଦୁର ଓ ତାଙ୍କର ପରାମର୍ଶଦାତାମାନେ ଭୁଲିବେ ନାହିଁ । ତାହା ନ ହେଲେ ଓଡ଼ିଆପୁଏ ଯେଉଁ ତିନି ଫାଙ୍କ ଥିଲେ ସେହିତା ରହିବେ । ଅର୍ଥାତ୍ ବର୍ତ୍ତମାନ ଓଡ଼ିଆଯାକ ଅଧିକାଂଶ ବଙ୍ଗ ବିଭାଗରେ, କେତେକ ମାନ୍ଦ୍ରାଜ

ବିଭାଗରେ ଓ କେତେକ ମଧ୍ୟପ୍ରଦେଶ ବିଭାଗରେ ଅଛନ୍ତି । ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ଏକତ୍ରିତ ନ କରି ନୂତନ ବିହାର ବିଭାଗ ସୃଷ୍ଟି କଲେ ଓଡ଼ିଆଯାକ ପୁନର୍ବାର ଚାରି ଫାଙ୍କରେ ଚାରି ବିଭାଗରେ ଗଳି ପଡ଼ିରହିବେ । ଅର୍ଥାତ୍ ଫୁଲଝର ଇତ୍ୟାଦି ମଧ୍ୟପ୍ରଦେଶରେ, ଗଞ୍ଜାମ, ମାନ୍ଦ୍ରାଜରେ, ମେଦିନୀପୁର କାନ୍ଥି ଓ ବଙ୍ଗଦେଶର ଓଡ଼ିଶା ବିହାରପ୍ରଦେଶରେ, ଓଡ଼ିଆଯାକ ଏହି ଭଳି ବାରଦ୍ୱାର ଶୁଣିପିଣ୍ଡା ହେବେ । ଅତଏବ ଏହି ସମୟରେ ଓଡ଼ିଆ ଭାଇଯାକ ସମ୍ମିଳିତ ଚେଷ୍ଟା କରି ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ଆପଣାର ଗୁହାରି ଜଣାଇବାର ଦରକାର । ଉତ୍କଳ ସମ୍ମିଳନୀରେ ଓଡ଼ିଆଙ୍କ ପାଟି ଥିବାର ସମସ୍ତେ ଜାଣିଅଛନ୍ତି । ଓଡ଼ିଆଙ୍କର କାର୍ଯ୍ୟକାରିତା କେତେ ଦୂର ଅଛି, ତାହା ବର୍ତ୍ତମାନ କ୍ଷେତ୍ରରେ ଜଣାପଡ଼ିବ । ତାହା ନ ହେଲେ ଓଡ଼ିଆଙ୍କର ଜାତି ସୁଲଭ ଜୟଧ୍ୱନି- 'ଆରେ ଖାଇଗଲେ ହୋ ! ଆରେ ବୋହିନେଲେ ହୋ ! ଆରେ ଧାଇଁପଡ଼ ହୋ !' ଚିତ୍କାର ମାତ୍ର ସାର ହେବ ! ଆମ ମଧ୍ୟରୁ ମୁଖିଆ ମୁଖିଆ ଯେଉଁମାନଙ୍କୁ ଲାଟଦରବାରକୁ ପେଲାପେଲି କରି ଓଡ଼ିଆଯାକ ନେଇଅଛନ୍ତି, ସେମାନେ ଏତେବେଳେ କର୍ତ୍ତବ୍ୟନିଷ୍ଠ ହୋଇ ଏ ବିଷୟରେ ଅଣ୍ଟା ଭିଡ଼ିବେ ବୋଲି ସମସ୍ତ ଉତ୍କଳ ଆଶା କରି ବସିଅଛି । ମାନ୍ୟବର ମଧୁସୂଦନ ଦାସ, ମାନ୍ୟବର କନିକା ରାଜା, ମାନ୍ୟବର ଧରାକୋଟ ରାଜା ଆପଣା ଆପଣାର ଦାୟିତ୍ୱ ଓ କର୍ତ୍ତବ୍ୟର ଗୁରୁତା ଉପଲବ୍ଧି କରି ଓଡ଼ିଆଙ୍କର ଗୁହାରିକୁ ଲାଟସାହେବଙ୍କ କର୍ଣ୍ଣଗୋଚର କରାଇବାକୁ ତ୍ରୁଟି କରିବେ ନାହିଁ ବୋଲି ଆଶା କରାଯାଏ । ଉତ୍କଳଭାଷୀ ବିଭିନ୍ନ ଅଞ୍ଚଳରୁ ଲାଟସାହେବଙ୍କ ନିକଟକୁ ଏ ବିଷୟରେ ପ୍ରାର୍ଥନାପତ୍ରମାନ ପଠାଉଅଛନ୍ତି ଓ ପଠାଯିବାର ଉଦ୍ୟମ ଲାଗିଅଛି । ଏତିକିରେ କାର୍ଯ୍ୟ ଶେଷ ହେଲା ବୋଲି ଜ୍ଞାନ କରିବାକୁ ହେବ ନାହିଁ । ଯେଉଁ ଅଦମ୍ୟ ଉତ୍ସାହ ଓ ପରାକ୍ରମ ବଳରେ ବିହାରୀମାନେ ବିହାରର ୧୬ ପଣ କିସମତ୍ ପାଇଲେ, ସେହି ଅଦମ୍ୟ ଉତ୍ସାହର ଅନୁସରଣ କରି ଓଡ଼ିଆମାନେ ସମସ୍ତେ ଏକତ୍ରିତ ହେବାପାଇଁ ଧୀରଭାବରେ ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ଆପଣାର ଗୁହାରି ଉପସ୍ଥାପିତ କରିପାରିଲେ ଉଦ୍ଦେଶ୍ୟ ସିଦ୍ଧିର ସମ୍ଭାବନା ଅଛି । ତାହା ନ ହେଲେ ଆମେ ସମସ୍ତେ 'ଯେ ଯାହା ହାତରେ ଚଉଦପା' ହୋଇ ନିଜ ନିଜର ବଇଠକଖାନା ଆରାମ-ଚଉକିରେ ପଡ଼ି ଘୁଂଗୁଡ଼ି ମାଇଲେ ଚଳିବ ନାହିଁ । ଦେଶ ଏବଂ ଜାତିର ମଙ୍ଗଳ ଉଦ୍ଦେଶ୍ୟରେ ନିଜ ନିଜର ହାମବଡ଼ା ଖୋଇ ଛାଡ଼ିବାକୁ ହେବ, ନିଜ ନିଜ ମଧ୍ୟରେ ମନୋମାଳିନ୍ୟ ଓ ପ୍ରଭେଦ ଲୋପ କରିବାକୁ ହେବ, ନିଜର ସ୍ୱାର୍ଥ ଛାଡ଼ି ସମସ୍ତେ ଅଣ୍ଟା ଭିଡ଼ି ନିଜ କ୍ଷେତ୍ରରେ ନିଜ ନିଜର କରାମତ୍ ଜାହିର କରିବାକୁ ହେବ । ଏହା ନ କଲେ ଯେତେ ପାଟି କର-

''ଯଥୈବାସ୍ତେ ତଥୈବାସ୍ତାଂ ।''

ଉତ୍କଳ ସାହିତ୍ୟ/୧୫ଶ ଭାଗ/୯ମ ସଂଖ୍ୟା/୧୩୧୯ ସାଲ ।

## ।। ଅଣଚାଳିଶ ।।

ଗତଥର ଦୁନିଆର ହାଲଚାଲ 'ଉତ୍କଳ ସାହିତ୍ୟ'ରେ ବାହାରିବାଠାରୁ ଏଥିମଧ୍ୟରେ କେତେଥର ସାହିତ୍ୟ ପତ୍ରିକା ପ୍ରକାଶିତ ହୋଇଅଛି । ଉତ୍କଳରେ କେତେଗୁଡ଼ିଏ କାଣ୍ଡ ହୋଇ ଯାଇଅଛି, କିନ୍ତୁ ହାଲଚାଲର ଲେଖକ ଶୋଇ ପଡ଼ିଥିଲେ । ଯାହାହେଉ ସମ୍ପାଦକ ମହାଶୟଙ୍କ ଅଧ୍ୟବସାୟରୁ ଲେଖନୀ ପୁନର୍ବାର ଜାଗ୍ରତ ହୋଇଅଛି । ଆଶା କରାଯାଏ ଇତ୍ୟାଦି - ପାଠକ ଅବଧାନମାନେ ଟିକିଏ ଅନୁଗ୍ରହପୂର୍ବକ ସ୍ମରଣ ରଖିବେ ଯେ କଥା ଓ କାମଗୁଡ଼ାକ ପୁରୁଣା ହୋଇଗଲେ କଥାଗୁଡ଼ାକ ବିକାଏ ନାହିଁ; ବିଶେଷତଃ ଦୁନିଆର ହାଲଚାଲର ବ୍ୟବସାୟ ହେଲା ପାଠକମାନଙ୍କ ମନକୁ ଟଟକା ମାଲ ଦ୍ୱାରା ସନ୍ତର୍ପଣ କରିବା ।

ବର୍ତ୍ତମାନ ଉତ୍କଳ ସମ୍ରାଟ୍‌ଙ୍କ ଆଜ୍ଞା ଦ୍ୱାରା ବିହାର ସଙ୍ଗେ ମିଳିତ ହେବା ଦିନଠାରୁ ମତେ କଲମ ଧରିବାକୁ ଅବସର ମିଳି ନ ଥିଲା - ତହିଁର କାରଣ ପେଟ ଚିନ୍ତା ଓ ପିଠି ଚିନ୍ତା । ଛାଡ଼ନ୍ତୁ ସେ କଥାଗୁଡ଼ାକ, ପାଠକମାନେ ବ୍ୟକ୍ତିଗତ 'ଦୁଃଖସୁଖ' ଶୁଣିବା ନିମନ୍ତେ ଘଡ଼ିଏ ଦଣ୍ଡେ ସମୟ ନଷ୍ଟ କରି ଆମ ପାଖକୁ ଆସନ୍ତି ନାହିଁ । ସେଥିପାଇଁ ବ୍ୟକ୍ତିଗତ କୈଫିୟତଗୁଡ଼ାକ ଦେଇ ସମସ୍ତଙ୍କୁ ବ୍ୟତିବ୍ୟସ୍ତ କରିବା ଆମଭଳିଆ ନିଃସ୍ୱାର୍ଥ ଲେଖାଳିଙ୍କର Policy ବା ଚାଲ୍ ନୁହେଁ । ତେବେ ଅବାନ୍ତରରେ ମଝିରେ ମଝିରେ ପଦେ ଅଧେ କେଉଁଠାରେ ବାହାରି ପଡ଼ିବ, ସେଥିକି ଅବଶ୍ୟ ନାଚାର - ତେବେ କହିଜାଣିଲେ ହେଲା ।

ଗତ କେତେକ ବର୍ଷ ହେଲା ଆମର କେତେକ ଦୂରଦର୍ଶୀ ମୁଖିଆଙ୍କ ଯୋଗୁଁ ଓଡ଼ିଶାରେ ଗୋଟିଏ ଆନ୍ତର୍ଜାତୀୟ ବହ୍ନି ଜଳୁଥିଲା । ତାହା ଅଜ୍ ଓଡ଼ିଆ ଓ ସ୍ଥାୟୀ ଅଧିବାସୀ ଓଡ଼ିଆଙ୍କ (Domiciled) ମଧ୍ୟରେ କିସ୍‌ମତ୍ ବଣ୍ଟରା ଘେନି । ''ଶିଳ ଶିଳପତା ଗଗନେ ଉଡ଼ିଲେ - ଶିମିଳି ତୁଳା କହିଲା ମତେ ରଖ ।'' ବଡ଼ ବଡ଼ଙ୍କ ମଧ୍ୟରେ ବହୁତ କସରତ୍ ହେଲା । ତୁମ ଆମ ଭଳିଆ ମୂଲିଆମୁଣ୍ଡକୁ ପଚାରେ କିଏ । କେତେ ବର୍ଷ ହେଲା ଆମ ମଧ୍ୟରେ ଗୋଟିଏ ବୃଥା ଦଳାଦଳି, ବୃଥା ମନୋମାଳିନ୍ୟ ଚାଲିଲା । ପୁରୁଷାନୁକ୍ରମେ ଯେଉଁମାନେ ଓଡ଼ିଶାରେ ବସତି କରି ଆପଣା ଭାଗ୍ୟକୁ ଓଡ଼ିଶାର ଭାଗ୍ୟ ହାଞ୍ଚରେ ପକାଇଲେଣି, ସେମାନଙ୍କୁ ଅଲଗା କରିଦେବା ଅମନୁଷ୍ୟତା । ଯେଉଁମାନେ ଆଜି ଅଜ୍ ଓଡ଼ିଆ ବୋଲି ପରିଚୟ ଦେଉଅଛନ୍ତି, ସେମାନେ କିପରି ଓଡ଼ିଆ ହେଲେ ? ଏ କଥା ଥରେ ଧୀରଭାବରେ ଚିନ୍ତା କରିବା ଦରକାର । ସେ ହିସାବରେ ଧରିବାକୁ ଗଲେ 'କଙ୍କଡ଼ାଖିଆ ଓଡ଼'ଙ୍କ ଛଡ଼ା ବାକି ଆମେ ସମସ୍ତେ ଦୋନସଲା (Domiciled) । ମୁଁ ଯେବେ ଏଠାରେ ଚଉଦ ପୁରୁଷ ହେଲା ଘର କରି ସମ୍ପତ୍ତିରେ କିସ୍‌ମତ୍ ଦାବି କଲି, ଯେ ଚାରି ପାଞ୍ଚ ପୁରୁଷ ହେଲା, ଆସିଲା, ତାହାର ମଧ୍ୟ ତ ଗୋଟିଏ କିସ୍‌ମତ୍ ଆଇନ ଅନୁସାରେ ହେବ ! ତାକୁ ବରାବର ବାଏଁ ବାଏଁ ଫାଙ୍କିରେ ଉଡ଼ାଇଲେ ସେ ଛାଡ଼ିବ କାହୁଁ ? ଯେ ଯାହାର ପ୍ରାପ୍ୟ ନିଶ୍ଚୟ ଦାବି

କରିବେ ଓ ପାଇବେ । ଲାଭ ମଧ୍ୟରେ ହେବ ଅନ୍ତଃଶତ୍ରୁ ସଂଖ୍ୟା ବୃଦ୍ଧି ଓ ଆନ୍ତର୍ଜାତୀୟ ବଳର ହାନି ! ତା'ପରେ ଆମର ଦେଖିବାର ଚାହି ଯେ କଳିଆ ତକରାର କି ସକାଶେ । ଅଢ଼େଇଖଣ୍ଡ ଗୋଲାମି ଓ ପୁଞ୍ଜାଏ ଖଣ୍ଡେ ବୃତ୍ତି ! ସେଥିରେ ଯାଏ କେତେ ଆସେ କେତେ ? ଆଜି ସେହି ପରମୁଖାପେକ୍ଷିତା ଓ ଅନୁଗ୍ରହଯାଚ୍ଞା ଯୋଗୁଁ ତ ଆମ୍ଭମାନଙ୍କର ଏ ହୀନାବସ୍ଥା ! ଏହି ଅନୁଗ୍ରହ ଯାଚ୍ଞା ନୀତି ଆମ ମଧ୍ୟରୁ ସମୂଳେ ବିନଷ୍ଟ ନ ହେବା ପର୍ଯ୍ୟନ୍ତ ଆମର ଭଲ ଗତି ନାହିଁ । ସେହି ଦୃଷ୍ଟିରେ ମଧ୍ୟ ଏ କଥାଟାକୁ ଚିନ୍ତା କଲେ ଦେଖାଯିବ ଯେ ଆମର ଅନୁଗ୍ରହ ପ୍ରାର୍ଥନାର ପ୍ରସାର ଯେତିକି କମେ, ତେତିକି ଆମ ଜାତିର ମଙ୍ଗଳ । ଅତଏବ ଏଥିପାଇଁ ଆମର ଏତେ ଦାନ୍ତନିକୁଟା କିଆଁ ? ସୁରୁଖୁରୁ କରି ଘର କରିବାକୁ ହେଲେ ଭାଇ ଭାଇ ମଧ୍ୟରେ ଘନିଷ୍ଠତା, ସରଳ ବ୍ୟବହାର ଓ ବିଶ୍ୱାସ ଅକ୍ଷୁଣ୍ଣ ରହିବା ନିତାନ୍ତ ଦରକାର । ବିପଦ ଆପଦ ବୋଲ, ସୁଖ ସମ୍ପଦ ବୋଲ, ସବୁଥିରେ ଭାଇ ଭାଇ ମିଳିମିଶି କାର୍ଯ୍ୟ କରିବା ଏକାନ୍ତ ଆବଶ୍ୟକ । ତାହା ନ ହେଲେ ଦେଶର ଅବନତି ଅନିବାର୍ଯ୍ୟ ! ଏହି କଳିକଜିଆରେ ଯଦୁବଂଶ ନାଶ ଗଲେ । ମୁଁ ବରାବର କହି ଆସୁଅଛି ଯେ Domiciledମାନଙ୍କୁ (ସ୍ଥାୟୀ ଅଧିବାସୀ) ତଡ଼ିବା ପୂର୍ବରୁ ରାଧାନାଥ, ଗୌରୀଶଙ୍କର, ପ୍ୟାରୀମୋହନ, ଜଗମୋହନ, ମଧୁସୂଦନ ରାଓ, ଜଗନ୍ମୋହନ ଲାଲା ଇତ୍ୟାଦିଙ୍କଠାରେ ଉତ୍କଳ କି ପରିମାଣରେ ଋଣୀ, ତାହା ଥରେ ଦୃଷ୍ଟି କରିବା ଦରକାର । କିନ୍ତୁ ଗରିବ କଥା ପହିଲେ ଭାରି ପିତା ଲାଗେ । ଯାହାହେଉ, ଛାଡ଼ ସେ କଥା । "All is well that ends well" - ମଧୁର ସମାପ୍ତି ସବୁଠାରେ ଆନନ୍ଦମୟ । ଦୟାପର ଗଭର୍ଣ୍ଣମେଣ୍ଟ ଆମ୍ଭମାନଙ୍କର ସବୁ ହାଣ୍ଡି ଏକା ଠେଙ୍ଗାରେ ଚୂନା କରି ଦେଲେ । ଏବେ ସରକାର ବାହାଦୁର ଘୋଷଣା କରିଦେଲେ ଯେ ରାଜନୈତିକ ଅନୁଗ୍ରହ ଓ ଚାକିରି ବିତରଣ ସମୟରେ ନିପଟ ଓଡ଼ିଆ ଓ ସ୍ଥାୟୀ ଅଧିବାସୀ ଓଡ଼ିଆଙ୍କ ଦାବିର ସମ ବିଚାର ହେବ । ଅର୍ଥାତ୍ ଏମାନଙ୍କ ମଧ୍ୟରେ ଯୋଗ୍ୟତା ଓ କରିଥିବା କାର୍ଯ୍ୟ ବିଚାରରେ ଯାହାର ଦାବି ଅଗ୍ରଗଣ୍ୟ ହେବ, ସେ ଚାକିରି ବା ଅନୁଗ୍ରହ ପାଇବ । ଏହି ସୁନୀତି ଦ୍ୱାରା ଓଡ଼ିଶାର ଉପସ୍ଥିତ Gordian knot (ଛନ୍ଦଣିମନ୍ଦଣି ଗଣ୍ଠି) ଠକ୍କିନା ଛିଣ୍ଡିଗଲା ଓ ଏହି ନୀତି ଦ୍ୱାରା ଉତ୍କଳର ସମସ୍ତ ଭ୍ରାତା ଦେଶର ଉନ୍ନତିକଳ୍ପେ ଏକମତ ହୋଇ କାର୍ଯ୍ୟ କରିବେ ଓ ମଣିଷ ଘରପୋଡ଼ିଆଙ୍କ ଦାଉରୁ ରକ୍ଷା ପାଇଲା । ଆଉ ଯେଉଁମାନେ ଭୋକ ବିକଳରେ ଯୋଡ଼ାକଯାକ ହାତ ପାପୁଲି ପର୍ଯ୍ୟନ୍ତ ପାଟିରେ ପୂରାଉଥିଲେ, ସେମାନେ ମଧ୍ୟ ହାତ କାମୁଡ଼ାରୁ ରକ୍ଷା ପାଇଲେ । ବର୍ତ୍ତମାନ ଓଡ଼ିଆ ଓ ଡୋସିମାଇଲ୍ ଉତ୍କଳୀୟମାନଙ୍କୁ ଦେଶର ଏତିକି ମାତ୍ର ପ୍ରାର୍ଥନା ଯେ ସମସ୍ତେ ଆଖିମିଟିକା ଓ ଦୋନାବଡ଼ିଆ ରୀତି ଛାଡ଼ି ଆପଣା ଆପଣା ମଧ୍ୟରେ ପରସ୍ପରର ଉନ୍ନତି ଓ ସାହାଯ୍ୟ ନିମନ୍ତେ ବଦ୍ଧପରିକର ହୁଅନ୍ତୁ ଓ ମାତୃଭୂମିର ସର୍ବବିଧ ଉନ୍ନତି ପାଇଁ ସମ୍ମିଳିତ ଭାବରେ ସରଳାନ୍ତଃକରଣରେ ଚେଷ୍ଟା କରନ୍ତୁ । ଆଜିପର୍ଯ୍ୟନ୍ତ ଯେଉଁ ମନୋମାଳିନ୍ୟ ଘଟିଅଛି, ସେଥିରେ ଗୋଟାଏ ପକ୍ଷକୁ ବିଛୁଆତି ଓ

ଗୋଟାଏ ପକ୍ଷକୁ ତୁଳସୀ ବୋଲା ଯାଇ ନ ପାରେ । ଉଭୟପନ୍ଥୀଙ୍କ ମଧ୍ୟରେ କେତେଗୋଟି ଘରପୋଡ଼ିଆ ମହାତ୍ମାଙ୍କ କସରତ୍ ଦ୍ୱାରା ଦେଶ ଅନ୍ତର୍ବିବାଦରେ ସନ୍ତୁଥିଲା । ସେହି ଓସ୍ତାତଗୁଡ଼ିକଙ୍କର ମନସ୍କାମନା ଅପୂର୍ଣ୍ଣ ରହିଲା ଓ ରହିବ । କିନ୍ତୁ ଗଭର୍ଣ୍ଣମେଣ୍ଟଙ୍କର ଏହି ଉଦାର ନୈତିକ ଘୋଷଣା ଦ୍ୱାରା ଦେଶ ଶାନ୍ତ ହେଲା ଓ ଆମେ ସବୁ ଠରାଠରି, ଖେଞ୍ଚାଖେଞ୍ଚ, ଧରାଧରି ସୂତ୍ରାସୂତ୍ରରୁ ରକ୍ଷା ପାଇଲୁଁ ।

ଉତ୍କଳ ସାହିତ୍ୟ/୧୬ଶ ଭାଗ/୨ୟ ସଂଖ୍ୟା/୧୩୧୪ ସାଲ ।

## ।। ଚାଳିଶ ।।

ଏଥରକ ଓଡ଼ିଶାର ହାଲଚାଲ ମଧ୍ୟରେ ନବ ସଂଗଠିତ ବିହାର ଓ ଓଡ଼ିଶାପ୍ରଦେଶର ନବ ଛୋଟଲାଟଙ୍କର ଓଡ଼ିଶାକୁ ନବ ଶୁଭାଗମନ । ମାନ୍ୟବର ସାର୍ ଚାର୍ଲସ ଷ୍ଟୁଆର୍ଟ ବୋଲି ବିହାର ଓ ଓଡ଼ିଶାର ଗାଦିରେ ବସିବାର ଅଳ୍ପ ଦିନ ମଧ୍ୟରେ (୨୨।୭।୧୨ରେ) ଓଡ଼ିଶାକୁ ଶୁଭାଗମନ କରିବାଦ୍ୱାରା ଓଡ଼ିଆ ଓ ଓଡ଼ିଆଙ୍କ ପ୍ରତି ତାଙ୍କର କେତେଦୂର ମମତା ତାହା କାର୍ଯ୍ୟ ଦ୍ୱାରା ଓ ଦରବାର ଆଦିରେ ବକ୍ତୃତା ଦ୍ୱାରା ଆମ୍ଭମାନଙ୍କୁ ଦେଖାଇ ଦେଇ ଆପ୍ୟାୟିତ କରିଅଛନ୍ତି । ଓଡ଼ିଶାର ଭାଗ୍ୟ ବହୁ ଦିବସାବଧି ବଙ୍ଗ ସଙ୍ଗେ ନିହିତ ଥିଲା - ସମ୍ରାଟ୍ ଘୋଷଣାପତ୍ରଦ୍ୱାରା ଓଡ଼ିଶାକୁ ବଙ୍ଗରୁ ନେଇ ବିହାର ତଳେ ରଖିଅଛନ୍ତି । ଏହି ନୂତନ ପ୍ରଦେଶ ଗଠନ ସଙ୍ଗେ ସଙ୍ଗେ ଓଡ଼ିଶା ସମ୍ବନ୍ଧରେ ଅନେକ ଗୁରୁତର ପ୍ରଶ୍ନର ମୀମାଂସାର ଭାର ଗଭର୍ଣ୍ଣମେଣ୍ଟଙ୍କ ଉପରେ ପଡ଼ିଅଛି ଓ ଶାସନର ସୌକର୍ଯ୍ୟାର୍ଥ ସେଗୁଡ଼ିକର ଆଶୁ ନିଷ୍ପତ୍ତି ହେବା ଏକାନ୍ତ ଆବଶ୍ୟକ । ଏସବୁ ବିଷୟ ମୀମାଂସା ପୂର୍ବରୁ ଓଡ଼ିଶାବାସୀଙ୍କର ପ୍ରତ୍ୟେକ ପ୍ରଶ୍ନ ସମ୍ବନ୍ଧରେ କି ପ୍ରକାର ମତ, ତାହା ସ୍ଥିର କରିବାର ଆବଶ୍ୟକ, ବଡ଼ ବଡ଼ ହାକିମହୁକୁମାଙ୍କ ମତ ବୁଝିବା ଆବଶ୍ୟକ, ସ୍ଥାନୀୟ ଗ୍ରାମଦେବତାମାନଙ୍କ ମତ ଜାଣିବା ଆବଶ୍ୟକ ଓ ପ୍ରତିନିଧି ସଭାସମିତିମାନଙ୍କ ମତ ଜାଣିବା ଆବଶ୍ୟକ । ଏଥିଲାଗି ଛୋଟ ଲାଟସାହେବ ଏତେ ଜଲ୍‌ଦି ଓଡ଼ିଶାକୁ ଶୁଭାଗମନ କଲେ । ଓଡ଼ିଶାର ଭାଗ୍ୟକୁ ଏ ପ୍ରଶ୍ନଗୁଡ଼ିକ କେଉଁ ଭାବରେ ନିଷ୍ପତ୍ତି ହେବ, ତାହା ବୁଝିବାର ତାକତ୍ ଆମ୍ଭମାନଙ୍କର ନାହିଁ କି ଛୋଟଲାଟଙ୍କ ଦପ୍ତରଠାରୁ ଆରମ୍ଭ କରି ଗ୍ରାମ୍ୟ ପ୍ରେସିଡେଣ୍ଟଙ୍କ ବସ୍ତାନି ପର୍ଯ୍ୟନ୍ତ ଆମ୍ଭମାନଙ୍କର ସେତେ ମିଳାମିଶା ନାହିଁ । ତେବେ 'ଗଲି ଅଇଲି, ଯାହା ଦେଖିଥିଲି ତାହା କହିଲି ।' ବାହାରରେ ଯେଉଁ କଥାଗୁଡ଼ାକ ପ୍ରକାଶ ହେଲା, ସେଥିରୁ ଆମଭଳିଆ ଲୋକେ ଯାହା ଠଉରାଇଲେ, ସେଥିରେ ଆପାତତଃ ବର୍ତ୍ତମାନ ଥଣ୍ଡା ରହିବା ଦରକାର । ତେବେ ସେତକ ଠଉରାଇବାରେ ମଧ୍ୟ ବାହାଦୁରି ଅଛି । କାରଣ କବିରାଜ କହିଅଛନ୍ତି, 'ଆକାରୈରିଙ୍ଗିତୈର୍ଗତ୍ୟା ଚେଷ୍ଟୟା ଭାଷିତେନ ଚ । ନେତ୍ରବକ୍ତ୍ରବିକାରୈଶ୍ଚ ଗୃହ୍ୟତେନ୍ତର୍ଗତଃ ମନଃ ।' ତେବେ ପାଠକମାନେ ଏପରି ମନେ

କରିବେ ନାହିଁ ଯେ ବଡ଼ ଆକାର, ସହର୍ଷ ମୁଖ, ଦ୍ରୁତ ଗତି ସମସ୍ତଙ୍କ ସଙ୍ଗେ ମିଶିବାର ଚେଷ୍ଟା, ଉଚ୍ଚ ସ୍ୱରରେ ବକ୍ତୃତା, ଆଖି ପିଛଡ଼ା, ବେକହଲା, ଏହି କଥାଗୁଡ଼ାକ ଦେଖିବା ମାତ୍ରକେ ଯେ ଇଚ୍ଛା ସେ ମନ କଥାଟା ଠଉରାଇ ନେବେ । ତାହା ହୋଇଥିଲେ ତ ସମସ୍ତେ ଆମ ଭଳିଆ ଜଣେ ଜଣେ 'ମନିଷ'ରେ ସୁମାରି ହୋଇ ଯାଉଥାନ୍ତେ ! ଈଶ୍ୱର ସମସ୍ତଙ୍କୁ ମନ ଦେଇଅଛନ୍ତି, ସମସ୍ତଙ୍କୁ ଠଉରାଇବାର କ୍ଷମତା ଦେଇଅଛନ୍ତି, କିନ୍ତୁ କାହାର ଠଉରାଇବାଟା ଠିକ୍ ବୋଲି ଫଳରେ ଦେଖାଯାଏ, କାହାର ଠଉରାଇବାଟା ପଛକୁ ବେଠିକ୍ ବୋଲି ଜଣାଯାଏ । ଏହାହିଁ ଆମ ଭଳିଆ ମନୁଷ୍ୟଙ୍କର ସ୍ୱାତନ୍ତ୍ର୍ୟ । ଯାହାହେଉ ସେ ଠଉରାଠଉରି ଏଠାରେ ପ୍ରକାଶ କରିବାର ସ୍ଥାନ ନୁହେଁ । ଯାହା ସାଧାରଣ ଲୋକେ ଦେଖିଲେ, ଯାହା ସମସ୍ତେ ଶୁଣିଲେ ଓ ଅନୁଭବ କଲେ, ସେହି କଥା ବର୍ତ୍ତମାନ ଆମ୍ଭେମାନେ ପାଠକମାନଙ୍କୁ ଉପହାର ଦେବୁଁ ଓ ଦି'ଟା ଗୋଟାଏ କଥା ଇସାରା ଦେବୁଁ । ତେଣିକି ଠଉରାଠଉରି ଭାର ପାଠକମାନଙ୍କ ଉପରେ । ବର୍ତ୍ତମାନ କଥାଗୁଡ଼ାକ ସାଫ କରି ଫିଟାଇ ଦେଲେ ତେଣିକି ଆମକୁ ଲୋକେ ଆଉ ପଚାରିବେ କିଆଁ ? ଏହିଠାରେ କଥାଟାକୁ ଟିକିଏ ଖୋଲି କରି ଉଦାହରଣ ଦ୍ୱାରା ପାଠକମାନଙ୍କୁ ବୁଝାଇ ଦେବା ଦରକାର ।

ତାହାହେଲେ ତେଣିକି ଅଟା ଧରି ଚାଲିବାକୁ ପାଠକମାନଙ୍କୁ ସୁବିଧା ହେବ । ଜଣେ ଭଦ୍ରଲୋକ (ଅବଶ୍ୟ ତାଙ୍କ ନାମଟା ଏତେ ଜଲ୍ଦି ପ୍ରକାଶ କରି ଦେବା ତାଙ୍କ ପକ୍ଷରେ ଅସୁବିଧା, ଆମ ପକ୍ଷରେ ଅଖଜିଆ ଓ ପାଠକମାନଙ୍କ ପକ୍ଷରେ ଅସଜିଆ) ମୋର ମୁରବିସ୍ଥାନୀୟ ଓ ତାଙ୍କୁ ବରାବର ମୋର ହିତାକାଙ୍କ୍ଷୀ ମୁରବି ବୋଲି ମନେ କରି ଆସୁଥିଲି - ଆଜିପର୍ଯ୍ୟନ୍ତ ତାଙ୍କ ନ୍ୟାଯ୍ୟ କିସମତ୍ ଅନୁଯାୟୀ ମନେ କରି ଆସୁଅଛି । କୌଣସି କାର୍ଯ୍ୟ ନିମନ୍ତେ ମୁଁ ପ୍ରାର୍ଥୀ ହେଲି । ସେ କାର୍ଯ୍ୟ ନିମନ୍ତେ ମୋ ପାଇଁ ସୁପାରିସ କରିବାକୁ ଉକ୍ତ ମୁରବିଙ୍କ ନିକଟରେ ମଧ ଅନୁସରଣ କଲି । ମୁରବି ମତେ କଥାଟା ଖୋଲି କରି କିଛି କହନ୍ତି ନାହିଁ, ଇସାରାରେ ମତେ ଜବାବ ଦିଅନ୍ତି, ସୁତରାଂ ତେଣିକି ତାଙ୍କ ମନ କଥାଟା ଠଉରାଇବାର ଭାର ମୋ ଉପରେ ଆସି ପଡ଼େ । ମୁଁ ଯେତେବେଳେ ପଚାରେଁ, 'ଆଜ୍ଞା ! ମୁଁ ଅନୁସରଣ କରିଥିବା କଥା କେଉଁ ପର୍ଯ୍ୟନ୍ତ ଗଲା ?' ମତେ ଜବାବ ଦିଅନ୍ତି, 'ଏତେ ବ୍ୟସ୍ତ ହେଲେ ଚଳିବ କାହୁଁ ? ଯେ ଯାହା ପାଇଁ ଯାହା କରୁଥାଏ, ସେ କଣ ନାଗରା ଦେଇ ବୁଲୁଥାଏ ? ଫଳରେ ତ ବୁଝିବୁ । ମୁଁ ମୋ କାମରେ ତ୍ରୁଟି କରୁ ନାହିଁ ।' ମୁଁ ମଧ ଏତକ ଶୁଣି ଠଉରାଇ ନିଏଁ ଯେ ମୁରବି ଧରଣର ଲୋକ ମୁରବି ଧରଣିଆ କଥାରେ ଆଉ ବେଶିଗୁଡ଼ାଏ କହନ୍ତେ କଣ ? ମୋ ପକ୍ଷରେ ଏତିକି ଅନୁଗ୍ରହ ଓ ଆଶ୍ରିତବାତ୍ସଲ୍ୟ ଯଥେଷ୍ଟ । ଫଳତଃ ଦିନାକେତେ ବାଦ ମୁଁ ଯେଉଁ କାର୍ଯ୍ୟ ପାଇଁ ପ୍ରାର୍ଥୀ ହୋଇଥିଲି ସେ କାର୍ଯ୍ୟଟି ମୋର ହେଲା । ଯେଉଁ ଦିନ କାର୍ଯ୍ୟଟି ହାସଲ ହେଲା, ସେହି ଦିନ ମୁରବି ଆସି ମୁରକି ହସାଟାଏ ଦେଇ କହିଲେ, ''ଆରେ ବାବା ! ତୋ ପ୍ରାର୍ଥନାଟା ମଞ୍ଜୁର କରାଇ ଦେଲି । ଅବଶ୍ୟ କାଗଜ କଲମରେ ତୋ ପାଇଁ ମୁଁ ଚେଷ୍ଟା କରିଥିବାର

କିଛି ନିଦର୍ଶନ ନାହିଁ କି ରହିବାର ଉଚିତ ନୁହେଁ । କିନ୍ତୁ ଅନେକ ପ୍ରାର୍ଥୀ ଥିଲେ ହେଁ ମୁଁ ତୋ କଥାଟାକୁ ହାକିମଙ୍କ କାନରେ ଏପରି ଅସାକ୍ଷାତ୍ ଭାବରେ (indirectly) ପକାଇ ଦେଲି ଯେ ହାକିମ ତୋ ଅରଜିକୁ ମଞ୍ଜୁର ନ କରି ଯାନ୍ତେ କୁଆଡ଼େ ?'' କଥାଟା ଶୁଣି ମନେ ମନେ ବିଚାରିଲି, 'ଏହାକୁ ହିଁ କହନ୍ତି ମୁରବି ।' ଏହା ମନେ ମନେ ବିଚାରି ମୁରବିଙ୍କୁ କହୁଣିଆ ଧନ୍ୟବାଦଟାଏ ରଗଡ଼ିଲି । ଏଣେ ମୁରବିଙ୍କ କଥାରୁ ଠଉରାଇ ନେଲି ଯେ ମୁରବି ମୋ ପାଇଁ ପଟାଏ ଲଢ଼ିଛନ୍ତି । ଦିନା କେତେ ବିତିଗଲାରୁ ଘଟନାକ୍ରମେ ମୋର ଉକ୍ତ ପ୍ରାର୍ଥନା ମଞ୍ଜୁର କରିଥିବ, ହାକିମଙ୍କ ସଙ୍ଗେ ମୁଲାକାତ ହେଲା । ହାକିମ ମୁରକି ହସାଟାଏ ଦେଇ କହିଲେ, 'କିହୋ ମାଲିକ ! ତୁମ କାମଟା ତ ହାସଲ ହୋଇଗଲା !' ମୁଁ କହିଲି 'ଖୋଦାବନ୍ଦ, ଖାମିନ୍ଦ !' ଏହା କହି ସଲାମଟିଏ ପକାଇଲି । ହାକିମଙ୍କ ନେତ୍ର ବକ୍ର ବିକାରରୁ ଠଉରାଇଲି ଯେ ମୋ ମନସ୍କାମନା ହାସଲ ହୋଇଥିବା ଯୋଗୁଁ ବାହାଦୁରିର ୧୬ ପଣ କିସମତ୍ ଖୋଦ ହାକିମ ନେବା ପାଇଁ ଉଦ୍‌ଗ୍ରୀବ ହୋଇଅଛନ୍ତି । ମୋର କୌତୂହଳଟା ଟିକିଏ ପାଚି ଉଠିଲା । ସେଥିରୁ ମୁଁ ଟିକିଏ ସାହସୀ ହୋଇ ଗୋରା ହାକିମଙ୍କୁ ଇସାରାରେ କହିଲି, 'ଅବଧାନ ! ମୁଁ ଅମୁକ (ମୋର ପୂର୍ବୋକ୍ତ ମୁରବିଙ୍କ ନାମ ଉଚ୍ଚାରଣ କରି) ବାବୁଙ୍କଠାରୁ ପୂର୍ବରୁ ଶୁଣିଥିଲି ଯେ ମୋର ପ୍ରାର୍ଥନା ସିଦ୍ଧ ହେବାର ନିଶ୍ଚିତ ।' ଏ କଥା ଶୁଣି ଗୋରା ହାକିମ ଗୋଟାଏ ବିକଟ ଦାନ୍ତ ନେଫଡ଼ା ହସ ହସିଲେ । କହିଲେ, 'ଆରେ ହଁ ! ତାଙ୍କର ତୋ ପାଇଁ ଭାରି ସୁପାରିସ ! 'ସୁପାରିସ ଶବ୍ଦଟା ଉଚ୍ଚାରଣ କଲାବେଳେ ହାକିମଙ୍କ ମୁଖଟା ଟିକିଏ ବ୍ୟଙ୍ଗ ଭାବ ଧାରଣ କଲାରୁ ମୁଁ ଠଉରାଇଲି ଯେ ମୋ କାମ ହାସଲ ସଙ୍ଗେ ମୋର ମୁରବିଙ୍କର ବିଶେଷ କିଛି ସମ୍ବନ୍ଧ ନ ଥିଲା ପରା ? ଏହା ବିଚାରି ଘରକୁ ଫେରିଲି । ତହିଁ ଆର ଦିନ ମୁରବିଙ୍କ ସଙ୍ଗେ ଦେଖା ହେଲା । ତାଙ୍କୁ ହାକିମଙ୍କ ସଙ୍ଗେ ଦେଖା ହେବା କଥା କହିଲି । ଏ କଥା ଶୁଣିଲା ମାତ୍ରକେ ମୁରବିଙ୍କର ଶିକଲ ଚାରି ପଣରେ ଖସି ପଡ଼ିଲା । ସାଗ୍ରହରେ ମତେ ପଚାରିଲେ, ଏ କଥା କିଛି ପଡ଼ିଥିଲା ? ମୁଁ କହିଲି, ହଁ । ଦେଖିଲି ଯେ ଆହୁରି ଚାରିପଣ ଶିକଲ ଥଣ୍ଡାପଡ଼ି ଆସିଲା । ମୁରବିଙ୍କର ମୋ ପ୍ରତି କେତେ ଦୂର 'କୋସିସ' ହୋଇଅଛି, ତାହା ମୁଁ ଠଉରାଇ ନେଇ ବାଆଁରା ବାଆଁରି କରି ଅନ୍ୟ ପ୍ରସଙ୍ଗ ପକାଇଲି । ମୁଁ ବି ଏତିକିରେ ଛାଡ଼ିବା ଜନ୍ତୁ ନୁହେଁ । ଦିନା କେତେ ଛାଡ଼ି ଦେଇ ଫେର ହାକିମଙ୍କ କୋଠିକୁ ମୁଲାକାତ କରିବାକୁ ଗଲି ଓ କଥା ପ୍ରସଙ୍ଗରେ ମୋ ମୁରବି ସୁପାରିସ କରିଥିବାର ସତ୍ୟାସତ୍ୟ କଥା ଉତ୍ଥାପନ କଲି । କଳା ଚମଡ଼ା ଓ ଧଳା ଚମଡ଼ା ମଧ୍ୟରେ ଢେର ପ୍ରଭେଦ ଅଛି । ଗୋରା ହାକିମଙ୍କୁ ମୁଁ ସ୍ପଷ୍ଟାକ୍ଷରରେ କହିଲି ଯେ ମୁରବି ମୋ ନିମନ୍ତେ ହାକିମଙ୍କ ନିକଟରେ ବହୁତ ଲଢ଼ିଥିବା ବିଷୟ ମତେ କହିଅଛନ୍ତି । ହାକିମ ମୋଠାରୁ ଏତକ ଶୁଣି କଲମଟାକୁ କାମୁଡ଼ି କିଛି କ୍ଷଣ ରହିଗଲେ ଓ ପଛକୁ ଫାଇଲ୍ ମଧ୍ୟରୁ ଖଣ୍ଡିଏ ରେଙ୍ଗା କାଗଜ କାଢ଼ି ମତେ ଆମ ମୁରବିଙ୍କ ଶ୍ରୀହସ୍ତଲିପି ଦେଖାଇଲେ । ଦେଖିଲା ବେଳକୁ ମୁରବି ନିଜେ ମୋ ପାଇଁ ସୁପାରିସ ନ କରି ମୋର

ପ୍ରାର୍ଥିତ୍ୱ କାର୍ଯ୍ୟ ନିମନ୍ତେ ଅନ୍ୟ ଜଣକପାଇଁ ସୁପାରିସ କରି ହାକିମଙ୍କ ନିକଟକୁ କାଗଜ ପଠାଇଥିଲେ ଓ ମୋ ସମ୍ବନ୍ଧରେ କଥା ପ୍ରସଙ୍ଗରେ ହାକିମଙ୍କୁ ଯାହା କହିଥିଲେ ସେଥିରୁ ହାକିମ ଠଉରାଇ ନେଇଥିଲେ ଯେ (୰ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ କଥାରେ) ମୁଁ ମୁରବିଙ୍କର କିଛି ହେଲେ ଉପକାର କରିଅଛି ! ସୁଯୋଗକୁ ଗୋରା ହାକିମ ମୋ ମୁରବିଙ୍କ ସୁପାରିସ ପ୍ରତି ଆସ୍ଥା ନ କରି ମୋ ନାମରେ କାମଟା ଫଏର କରିଦେଲେ ।

ପାଠକ ଆପଣେ ! ଆପଣଙ୍କୁ 'ଠଉରାଇବା' କଥାର ଅର୍ଥ ଉଦାହରଣ ଦ୍ୱାରା ବୁଝାଇବାକୁ ଯାଇଁ କେତେ ଗହୀର ଚଷିବାକୁ ହେଲା !

ଫଳ କଥା ଏହିକି କାର୍ଯ୍ୟଭଙ୍ଗୀରୁ ଓ ଫଳରୁ ଭିନ୍ନ ଭିନ୍ନ ଲୋକ ଭିନ୍ନ ପ୍ରକାର ଠଉରାନ୍ତି । ସେଥିପାଇଁ ମୋର ଯାହା ଅନୁମାନ, ଆପଣଙ୍କର ତାହା ଅନୁମାନ ହୋଇ ନ ପାରେ । ଆହୁରି ମଧ ଏପରି ଘଟେ ଯେ ବାହାର କଥାରୁ ଆମେ ଯାହା ଠଉରାଇଥାଉଁ, ଭିତର କଥା ତହିଁର ବିପରୀତ ଓ ଠଉରା କଥା ଏବଂ ଅସଲ କଥା ମଧରେ ଜମିନ ଆସମାନ ଫରକ୍ । ସେଥିପାଇଁ କହୁଥିଲି ଯେ ମାନ୍ୟବର ଛୋଟ ଲାଟସାହେବ ବାହାଦୁର ଏଠାକୁ ଆସି ଯାହା ଯାହା କରିଗଲେ ଓ କହିଗଲେ, ସେଗୁଡ଼ିକ ଦେଖି ଓ ଶୁଣି ଆମ୍ଭମାନଙ୍କ ମନରେ ଯେଉଁ ଆଶା ଜାଗ୍ରତ ହୋଇଅଛି, ତାହାହିଁ ବର୍ତ୍ତମାନ ଆମ୍ଭମାନଙ୍କର ଆଲୋଚ୍ୟ ବିଷୟ ।

ସମ୍ରାଟ୍‌ଙ୍କ ଘୋଷଣା ଦ୍ୱାରା ଓଡ଼ିଶା ବିହାର ସଙ୍ଗେ ମିଶିବାରୁ ଓଡ଼ିଶାର ଭାଗ୍ୟ ପରିବର୍ତ୍ତିତ ହୋଇଅଛି - ତହିଁର ଗତି କେଉଁଆଡ଼େ, ଓଡ଼ିଶା ଉଠିବ କି ପଡ଼ିବ, ତାହା ସ୍ଥିର କରିବାର ତାକତ ଆମର ନଦାରଦ । ବର୍ତ୍ତମାନ ଯେ କେତେଗୁଡ଼ିଏ ଗୁରୁତର ବିଷୟ ଆମ୍ଭମାନଙ୍କ ଆଗରେ ହାବୁଡ଼ିଅଛି, ସେଗୁଡ଼ିକ ମୀମାଂସା ଉପରେ ଓଡ଼ିଶାର ଭବିଷ୍ୟତ୍ୱ ଅନେକ ପରିମାଣରେ ନିର୍ଭର କରେ, ଏଥିରେ ମତଦ୍ୱୈଧ ହୋଇ ନ ପାରେ ।

ଆଗେ ବଙ୍ଗ, ବିହାର ଏବଂ ଓଡ଼ିଶା ଏକ ଶାସନାଧୀନ ଥିଲା, କିନ୍ତୁ ହେଉଥିଲା - 'ବେଙ୍ଗଲ ଗଭର୍ଣ୍ଣମେଣ୍ଟ' ଓ (Province of Bengal) 'ବଙ୍ଗପ୍ରଦେଶ' । ବର୍ତ୍ତମାନ ନାମ ହେଲା 'ବିହାର ଓ ଓଡ଼ିଶା ଗଭର୍ଣ୍ଣମେଣ୍ଟ' ଓ (Province of Bihar & Orissa) 'ବିହାର ଓ ଓଡ଼ିଶା ପ୍ରଦେଶ' । ଫଳତଃ ନାମରେ ଦେଖିବାକୁ ଗଲେ ସାବକ ରାଜଗିରେ 'ଓଡ଼ିଶା'ର ନାମରେ ଖଡ଼ି ପଡୁ ନ ଥିଲା, ବର୍ତ୍ତମାନ ସବୁଠାରେ 'ଓଡ଼ିଶା'ର ନାମଟା ପଡ଼ିଲା ।

ଦିନାକେତେ ପୂର୍ବେ ଜଣେ ଭାରି ବଡ଼ ହାକିମଙ୍କ ସଙ୍ଗେ ଦେଖା ହେଲା । ସେ ଡାକି ହାକି କହିଗଲେ, ନୂତନ ଶାସନ ବିଭାଗଦ୍ୱାରା ଓଡ଼ିଶାର କରଣି କାଟିବ ଓ ଓଡ଼ିଆମାନଙ୍କର ନ୍ୟାଯ୍ୟ କିସମତ୍ ଯାହା, ଓଡ଼ିଆମାନେ ତାହା ଅପେକ୍ଷା ଢେର ବେଶି ପାଇବେ । ଓଡ଼ିଶାର ଦାବି କଦାପି କୌଣସି କ୍ରମେ ଉପେକ୍ଷିତ ହୋଇପାରିବ ନାହିଁ । ଏଇଟା ଅବଶ୍ୟ ସେ ସମୟରେ ଅଭୟ ବାଣୀ ଭଳିଆ ବୋଧ ହେଲା । ଦିନ ଗଡ଼ିବା ସଙ୍ଗେ ସଙ୍ଗେ ପ୍ରଥମେ

ଯେତେ ହାଲୋରମୟ ଦିଶୁଥିଲା, ତାହା କ୍ରମଶଃ ଜାଲଜାଲୁଆ ହୋଇଗଲା । ବର୍ତ୍ତମାନ ସାମନାରେ ତଳଲିଖିତ କେତେଗୁଡ଼ିଏ ସମସ୍ୟା ଉପସ୍ଥିତ -

(୧) ସମଗ୍ର ଉତ୍କଳଭାଷୀ ଅଞ୍ଚଳଗୁଡ଼ିକ ଏକ ଶାସନାଧୀନ ରହିବ - ଯେ ଯାହା କହୁ, ସମଗ୍ର ଉତ୍କଳଭାଷୀ ଅଞ୍ଚଳ ଏକ ଶାସନାଧୀନ ନ ହେବା ପର୍ଯ୍ୟନ୍ତ ଓଡ଼ିଆମାନେ 'ଯଥୈବାସ୍ତେ ତଥୈବାସ୍ତାଂ' । ତା ନ ହେବା ପର୍ଯ୍ୟନ୍ତ, ବାରଦ୍ୱାର ହେଉଥିବା ପର୍ଯ୍ୟନ୍ତ ଆମର ମଙ୍ଗଳ ନାହିଁ କି ଆମର ଜାତୀୟ ଉନ୍ନତି ଓ ବଳ ଅସମ୍ଭବ । ଏ ସମ୍ବନ୍ଧରେ ଛୋଟ ଲାଟ ବାହାଦୁର କଟକରେ କହିଗଲେ ଯେ 'I fully sympathise with your wish to see all Orissa united in one province and under one Government, but the question is a very large one and now that I am in your attractive country. I can also sympathise a little (ଏହିଠାରେ sympathise a little ଶବ୍ଦ ଜନିତ ଶ୍ରୋତାମାନଙ୍କ ମୁହଁର କାଳିମା ଦୂର କରିବା ସକାଶେ ଲାଟସାହେବ ଗୋଟାଏ ମୌଖିକ paranthesis ବସାଇ ଦେଲେ - in fact very little - ଏତକ paranthesis ଅବଶ୍ୟ କୌଣସି କାଗଜ ବା ରିପୋର୍ଟରେ ବାହାରି ନାହିଁ) with those who may be unwilling to give up any portion of the holy land of India. All I can promise you in this stage is that your wishes shall be brought to the notice of those with whom the decision will rest.'

ଅର୍ଥାତ୍ ଓଡ଼ିଆମାନେ ଏକ ଶାସନାଧୀନ ରହିବା ପ୍ରସ୍ତାବରେ ଛୋଟଲାଟଙ୍କର ପୂର୍ଣ୍ଣ ସହାନୁଭୂତି ଅଛି - କିନ୍ତୁ (ମୋର ଏଥିପୂର୍ବେ ଧାରଣା ଥିଲା ଯେ 'କିନ୍ତୁ'ର ଏକଚାଟିଆ ଦାବି କେବଳ ଆମରି) ଅନ୍ୟ ଜାତିମାନେ ଓଡ଼ିଶାର ଲଡୁରୁ ଖଣ୍ଡେ ଖଣ୍ଡେ ଯେ ପାଟିରେ ପୂରାଇ ସୁଖ ଅନୁଭବ କରୁଅଛନ୍ତି ଓ ତାଙ୍କ ପାଟିରେ ଯେଉଁ ମିଠା ଲାଗି ଯାଇଅଛି, ସେ ସୁଖରୁ ତାଙ୍କୁ ବଞ୍ଚିତ କଲା ବେଳକୁ ମନୁଷ୍ୟର ମନରେ ଟିକିଏ ଦୟା ମାୟା ହେଉଅଛି । ଯାହାହେଉ ଆମ୍ଭମାନଙ୍କର ଏକତ୍ରିତ ହେବାର ଇଚ୍ଛା ପ୍ରତି ଛୋଟଲାଟ ବାହାଦୁର ଭାରତର ଭାଗ୍ୟ ବିଧାତାଙ୍କ ଦୃଷ୍ଟି ଆକର୍ଷଣ କରିବେ । ଅବଶ୍ୟ ଏହି ଆଶ୍ୱାସବାଣୀରୁ ଆଶା ହେଉଅଛି ଯେ ସର୍‌ବେଲିଙ୍କ ପରି ବୃଦ୍ଧ ବିଚକ୍ଷଣ ରାଜନୀତିକୁଶଳ ଲାଟ ଚେଷ୍ଟା କଲେ ଆମ୍ଭମାନଙ୍କର ଆଶା ପୂର୍ଣ୍ଣ ହେବ । ଏହି ଆଶା ଉପରେ ଆପାତତଃ ବର୍ତ୍ତମାନ ଆମ୍ଭମାନଙ୍କୁ ଥୟ ଧରିବାକୁ ହେବ ଓ ଏହି ପବିତ୍ର ଭୂମିର ବିଧାତାପୁରୁଷ ଆମ୍ଭମାନଙ୍କର ମିଳିତ ହେବାର ଆକାଂକ୍ଷା ଦିନେ ପୂର୍ଣ୍ଣ କରିବେ । ଏହା ଆଶା କରିବା ପ୍ରତ୍ୟେକ ଓଡ଼ିଆଙ୍କ ପକ୍ଷରେ ସ୍ୱାଭାବିକ ।

(୨) ଓଡ଼ିଶା ନିମନ୍ତେ ଉଚ୍ଚତମ ବିଚାରାଳୟ (ହାଇକୋର୍ଟ)ର ବନ୍ଦୋବସ୍ତ । ଯେବେ ନୂତନ ଗଠିତ ପ୍ରଦେଶ ନିମନ୍ତେ ସ୍ୱତନ୍ତ୍ର ହାଇକୋର୍ଟ ହୁଏ ଓ ଯଦି ତାହା ନୂତନ ପ୍ରଦେଶର ରାଜଧାନୀ ପାଟଣାଠାରେ ପ୍ରତିଷ୍ଠିତ ହୁଏ, ତେବେ ଓଡ଼ିଆଙ୍କର ସବୁ ପ୍ରକାରେ ଅସୁବିଧା ।

ଆଗେ ଆମ୍ଭେମାନେ ଶେଷ ବିଚାର ନିମନ୍ତେ ସୁପରିଚିତ କଲିକତା ଯାଉଥିଲୁଁ, ବର୍ତ୍ତମାନ ସୁଦୂର ଓ ଅପରିଚିତ ପାଟଣା ଯିବାକୁ ହେବ । ଏଥିପାଇଁ ଅଞ୍ଚ ବହୁତ ସବୁ ଓଡ଼ିଆଯାକ ଏଥିକୁ ନାରାଜ । କେହି କହନ୍ତି, ପ୍ରଦେଶର କୌଣସି କେନ୍ଦ୍ର ସ୍ଥଳରେ ହାଇକୋର୍ଟ ହେଉ, କେହି କହନ୍ତି, ଓଡ଼ିଶାକୁ କଲିକତା ହାଇକୋର୍ଟର ଅଧୀନ ରଖାଯାଉ, କେହି କହନ୍ତି, ଓଡ଼ିଶାର ଅପିଲ ମକଦ୍ଦମାମାନ ଫଏସଲ କରିବା ସକାଶେ ହାଇକୋର୍ଟରୁ ପଞ୍ଚାଏ ଜଜ୍ ଓଡ଼ିଶାକୁ ଆସି ଘରେ ଘରେ ସୁବିଚାର ବୁଣି ଦେଇ ଯାଆନ୍ତୁ । ଏ ସମ୍ବନ୍ଧରେ ଛୋଟ ଲାଟସାହେବ କହିଗଲେ, 'I fully recognise the importance of the position of Orissa with respect to the High Court. I can assure you that this will not be decided without full deliberation and that it should be determined to constitute a separate High Court for Bihar and Orissa. Every care will be taken to obviate inconvenience to litigants from the south of the Province.' ଅର୍ଥାତ୍ ହାଇକୋର୍ଟ ସମ୍ବନ୍ଧୀୟ ବିଷୟଟି ଗୁରୁତର ଓ ତାହା ସମ୍ୟକ୍ ଆଲୋଚନା ପରେ ମୀମାଂସିତ ହେବ ଓ ଯଦିସ୍ୟାତ୍ ନବଗଠିତ ପ୍ରଦେଶ ପାଇଁ ଗୋଟିଏ ସ୍ୱତନ୍ତ୍ର ହାଇକୋର୍ଟ ପ୍ରତିଷ୍ଠିତ ହୁଏ, ତେବେ ପ୍ରଦେଶର ଦକ୍ଷିଣାଞ୍ଚଳବାସୀଙ୍କର ଯେପରି ଅସୁବିଧା ନ ହୁଏ, ତହିଁର ବିହିତ ବିଧାନ କରାଯିବ । ପ୍ରସ୍ତାବଟି ବିଶେଷ ଗୁରୁତର ଓ ନିରୀହ ଓଡ଼ିଆମାନେ ଯେପରି ସୁଖ-ସ୍ୱାଚ୍ଛନ୍ଦ୍ୟରେ ରହିବେ, ପିତୃସ୍ଥାନୀୟ ଦୟାପର ଗଭର୍ଣ୍ଣମେଣ୍ଟ ଅବଶ୍ୟ ତହିଁର ଉପାୟ କରିବେ ।

(୩) ପ୍ରାଦେଶିକ ବ୍ୟବସ୍ଥାପକ ସଭାରେ ଓଡ଼ିଶାର ପ୍ରତିନିଧି ସଭ୍ୟ ଉପଯୁକ୍ତ ପରିମାଣରେ ରହିବାର ବ୍ୟବସ୍ଥା - ଏ ସମ୍ବନ୍ଧରେ ଛୋଟ ଲାଟସାହେବ କହିଲେ - 'In the new Council I greatly hope that all four bodies (i.e., the District Boards and Municipalities of Orissa and Chhotanagpur) will be fully represented.' ଅର୍ଥାତ୍ ଓଡ଼ିଶାର ମ୍ୟୁନିସିପାଲିଟି ଓ ଡିଷ୍ଟ୍ରିକ୍ଟ ବୋର୍ଡ଼ମାନେ ପ୍ରତିଥର ବ୍ୟବସ୍ଥାପକ ସଭାକୁ ପ୍ରତ୍ୟେକେ ଗୋଟିଏ ଲେଖାଏଁ ପ୍ରତିନିଧି ସଭ୍ୟ ପଠାଇବେ ।

(୪) ପ୍ରାଦେଶିକ ଶାସନକର୍ତ୍ତା ବର୍ଷ ମଧ୍ୟରେ କେତେକ ସମୟ ଓଡ଼ିଶାରେ ଅବସ୍ଥାନ କରିବା ପ୍ରସ୍ତାବ - ଏ ସମ୍ବନ୍ଧରେ ଲାଟସାହେବଙ୍କ ଉତ୍ତର ସୌହାର୍ଦ୍ଦ୍ୟ ପରିପୂର୍ଣ୍ଣ ଅଟେ । ତାହା ଏହି - 'Speaking for myself, and I doubt not for my successors also, I can safely say that this wish (that the Local Government should spend a portion of each year in this part of the province) will be fulfilled. One of my chief objects in coming here is to see how best to secure its fulfilment.' ଅର୍ଥାତ୍ ଛୋଟଲାଟ ନିଶ୍ଚୟ ଆସି ବର୍ଷ ମଧ୍ୟରେ କେତେକ ସମୟ ଓଡ଼ିଶାରେ ରହିବେ । ଏହା ବଡ଼ ଆନନ୍ଦର ବିଷୟ ।

ଏହା ଛଡ଼ା ଓଡ଼ିଶାର ଏକମାତ୍ର କଲେଜର ଉନ୍ନତି, ରିଭିଜନ ବନ୍ଦୋବସ୍ତ ସଂକ୍ରାନ୍ତ ମେଣ୍ଟେନାନ୍ସ ଅଫ୍ ରେକର୍ଡ଼ ପ୍ରତି ସାଧାରଣଙ୍କର ଅନିଚ୍ଛା, ଉତ୍କଳବାସୀଙ୍କର ରାଜଭକ୍ତି ଇତ୍ୟାଦି ସମ୍ବନ୍ଧରେ ଲାଟସାହେବ ଯାହା ଯାହା କହିଲେ, ତହିଁରୁ ଓଡ଼ିଶା ପ୍ରତି ତାଙ୍କର କେତେ ଦୂର ସ୍ନେହ ଓ ମମତା ତାହା ଦେଖି ସମସ୍ତେ ଆହ୍ଲାଦିତ ହୋଇଅଛନ୍ତି । ସେଥିପାଇଁ ଷ୍ଟାର ଅଫ୍ ଉତ୍କଳ ରାବିଲେ, 'He came, he said, he conquered' ଅର୍ଥାତ୍ ଛୋଟଲାଟ ମହୋଦୟ ତାଙ୍କର ବକ୍ତୃତା ଓ ଆଳାପ ଦ୍ୱାରା ସମଗ୍ର ଓଡ଼ିଶାକୁ ମୁଗ୍ଧ କରି ଦେଇଗଲେ । ଶେଷରେ ଆମ୍ଭମାନଙ୍କୁ ଏହି ଅମୃତମୟ ବାଣୀ ଶୁଣାଇଦେଇ ଗଲେ - 'Orissa shall not be left without a very full measure of attention. There is no chance of Orissa being forgotten and neglected.'

ଓଡ଼ିଶା ପ୍ରତି କର୍ତ୍ତୃପକ୍ଷଙ୍କର ସର୍ବଦା ଦୃଷ୍ଟି ରହିବ ଓ ଓଡ଼ିଶା ପ୍ରତି ଦୃଷ୍ଟି ଦେବାଲାଗି ବଡ଼ଲାଟ ନିଜେ ଛୋଟଲାଟଙ୍କୁ ବିଶେଷଭାବରେ ଆଦେଶ କରିଅଛନ୍ତି ବୋଲି ସେଦିନ ଲାଟସାହେବ ବିଦ୍ ଦରବାରରେ ପ୍ରକାଶ କଲେ । ଏସବୁ ଅଭୟବାଣୀ ଶୁଣି ସମସ୍ତେ ଅନେଇଛନ୍ତି ଯେ ଓଡ଼ିଶାରେ ନବଯୁଗର ସୂତ୍ରପାତ ହୋଇଛନ୍ତି ଓ ଆଜି ଆମ୍ଭେମାନେ ରାଜପ୍ରତିନିଧିଙ୍କର ଯେଉଁ ଅବତାର ଦର୍ଶନ କଲୁଁ, ପ୍ରାଦେଶିକ ଶାସନକର୍ତ୍ତାମାନଙ୍କର ଓଡ଼ିଶା ଓ ଓଡ଼ିଶାଙ୍କ ପ୍ରତି ଏହି ଦୃଷ୍ଟି ଚିରଦିନ ରହିଲେ ଓଡ଼ିଶାର ରାଜା-ପ୍ରଜା, ଜମିଦାର-ରଇତ, ଧନୀ-ଦରିଦ୍ର, ଓକିଲ-ମକ୍କେଲ, ମୁନିବ-ଚାକର, ବଡ଼-ସାନ, ସମସ୍ତେ ସୁଖୀ ହେବେ । ଆଜି ଏତିକି ।

ଉତ୍କଳ ସାହିତ୍ୟ/୧୬ଶ ଭାଗ/୪ର୍ଥ ସଂଖ୍ୟା/୧୩୧୯ ସାଲ ।

## ।। ଏକଚାଳିଶ ।।

ଆମ ସାଇ ମାଇପେ କହନ୍ତି, ''ସାତ ମାଇପିରେ ସାତ କଥା, ସାତ ମିଣିପିରେ ସାତ କଥା'' - ଅର୍ଥାତ୍ ''ବହୁତ ଲୋକ ଯହିଁ ମିଳି, ଅବଶ୍ୟ ଉପୁଜଇ କଳି'' - ଅର୍ଥାତ୍ ଜଣକୁ ଦୁଇଜଣ ହେଲେ କଳିକଜିଆ, ଦୁଃଖ ସୁଖ, 'ହରି କଥା, ଘର କଥା, ଭାତ ଲୁଗା ଚାରି କଥା' ପଡ଼ିଥାଏ ପକ୍ଷମାନଙ୍କ ବିଶେଷତ୍ୱ ଅନୁସାରେ ପଡ଼ିବା ପ୍ରସଙ୍ଗରେ ବିଶେଷତ୍ୱ ହୋଇଥାଏ । ବିଜ୍ଞାନ ମଧ୍ୟ ଡାକେ ଯେ ବିପରୀତାତ୍ମକ ବଳ (Positive, negative) ହାବୁଡ଼ି ଗଲେ ମେଳ ହୋଇଯାଏ ଓ ସମାତ୍ମକ ବଳ (Positive, Positive) ହାବୁଡ଼ି ଗଲେ କଳିକଜିଆ ଆରମ୍ଭ ହୁଏ । ଦୁନିଆରେ ହାଲଚାଲ ଏହାହିଁ । ପାଠକ ଅବଧାନ, ଆପଣମାନେ ଅବଧାନ କରନ୍ତୁ ଯେ ଆଇନବ୍ୟବସାୟୀମାନେ ମକଦ୍ଦମା ଜବାବସୁଆଲ କରିବାବେଳେ ଆଇନଘଟିତ ସତ୍ୟ ଓ ପ୍ରସ୍ତାବମାନ ହାକିମମାନଙ୍କ ମସ୍ତିଷ୍କରେ ଭର୍ତ୍ତି କରିଦେବା ସକାଶେ ଯେପରି ହାଇକୋଟିଆ ଏବଂ ଅଷ୍ଟିକୌସିଲ (Privy Council)

ନଜିରମାନ ଦାଉଁ ଦାଉଁ କରି ହାକିମମାନଙ୍କ ଉପରକୁ ଛାଡ଼ି ଦିଅନ୍ତି, ସେହିପରି ଆମର ଘରୋଇ କଥା ଭାଷାରେ ଉଚ୍ଚତମ ନଜିର ମାଇପଙ୍କ ଢଗଢମାଳି । ସେଗୁଡ଼ିକ ବହୁପୁରୁଷସଞ୍ଚିତ ଅନୁଭବରୁ ବୁଢ଼ୀମାନଙ୍କ ଦ୍ୱାରା କଢ଼ା ହୋଇଥିବା ଅରଖ୍। ସେ ଯାହାହେଉ, ମୁଁ କହୁଥିଲି, ସାଙ୍ଗ ସୁଖ ପଞ୍ଚାଏ ଏକାଠେଇଁ ହାବୁଡ଼ିଗଲେ ଅନେକ ଦୁଃଖସୁଖ କଥାଭାଷା ପଡ଼େ, ସେଥିରେ ଅନେକ ବାଜେ କଥା, ଅନେକ ଥଟ୍ଟା କଥା, ଅନେକ ପରମତୁଟ କଥା ଥାଏ । ଅବଶ୍ୟ ଏପରି କଥାଭାଷା ହେଲାବେଳେ କାହାକୁ ହଲପ ଦିଆ ଯାଇ ନ ଥାଏ କିମ୍ବା କେହି ହଲପାନ୍ ଇଜାହାର କରୁ ନ ଥାଏ, କିନ୍ତୁ ବେଳେ ବେଳେ 'ଦୁଃଖସୁଖ' ହେଲାବେଳେ ହୃଦୟରୁ ଯେଉଁ କଥାଗୁଡ଼ାକ ବାହାରିପଡ଼େ, ତହିଁକି ହଲପାନ୍ ଇଜାହାର ସରି ହୁଏ ନାହିଁ । ଲୋକେ ହଲପ ନେଇ କଚେରିରେ ଠିଆ ହେଲାବେଳେ ପୂର୍ବରୁ ତିଆରି ହୋଇ ଆସିଥାନ୍ତି । ଅର୍ଥାତ୍ ଦାଣ୍ଡ କବାଟ, ବାଡ଼ି କବାଟରେ ଚାବି ଠୁକି ଯେତିକି କଥା ପଦାକୁ କାଢ଼ିବା ଦରକାର, ସେତିକି କଥା କହିବାକୁ ପ୍ରସ୍ତୁତ ହୋଇ ଅଲଗଡ଼ା ଭିତରେ ପଶନ୍ତି । କାହାରି କାହାରି କୋଲପଖଣ୍ଡମାନ ଦଦରା କିମ୍ବା ମେରୁଭଙ୍ଗା ଥିବାରୁ ଜୋରାରେ କେତେଗୋଟା ଚାବିଦିଆ କଥା ପଦାକୁ ବାହାରିପଡ଼େ । ନଚେତ୍ ହଲପାନ୍ ଇଜାହାରର ଅଧିକାଂଶ ତାକତରକିଆ କଥା । କିନ୍ତୁ ସାଙ୍ଗସୁଖ ମଧ୍ୟରେ ଯେଉଁ କଥାଭାଷା ହୁଏ, ସେଗୁଡ଼ିକ ଅଧିକାଂଶ ଖାଣ୍ଟି ମନର କଥା ଓ ସେଥିରେ ଭେଲ ନ ଥାଏ । ଏ କଥା ଅବଶ୍ୟ ଅଳ୍ପ ବହୁତ ସମସ୍ତେ ଅନୁଭବ ଦ୍ୱାରା ବୁଝିଥାଉଁ । ସେତେବେଳେ କେହି ଗୁରୁଜନ, ମାନତ ମଣିଷ, ଶତ୍ରୁ କିମ୍ବା ଅଳ୍ପ ବୟସ୍କ ଲୋକ ଉପସ୍ଥିତ ଥିଲେ ଆବଶ୍ୟକମତେ ଅନେକ ମନକଥା ଘୋଡ଼ାଇ ପକାଇବାକୁ ହୁଏ ! ଆପଣମାନଙ୍କୁ ଏଠାରେ ଗୋଟାଏ ଉଦାହରଣ ଦେଲେ ଆପଣମାନେ କଥାଟା ସହଜରେ ବୁଝିନେବେ । ଦିନେ ଆମ କଟକର ଓକିଲଖାନାରେ ଗୋଟିଏ ମିଟିଙ୍ଗ ହୋଇଥିଲା । ଅଦାଲତ ଓ ଆଇନବ୍ୟବସାୟୀମାନଙ୍କ ସଙ୍ଗେ ଇଲାକା ରଖୁ ନ ଥିବା ପାଠକମାନଙ୍କ ଅବଗତି ନିମନ୍ତେ ଏଠାରେ ଗୋଟାଏ କଥା କହିରଖିବା ଦରକାର । ଓକିଲମାନେ ଗାଇ ବଜାଇ ଜବରଦସ୍ତି ବିଦ୍‌ବଜାରରେ ସମସ୍ତଙ୍କଠାରୁ ପଇସା ଅସୁଲ କରନ୍ତି ଓ ବେଳେ ବେଳେ ଇଚ୍ଛା ଅନୁସାରେ କିଛି କିଛି ଦାନ, ଖଇରାତ ଓ ଚାନ୍ଦା ଦିଅନ୍ତି । କିନ୍ତୁ ଗୋଟିଏ ଜାଗା ଅଛି, ଯେଉଁଠାରେ ସେମାନଙ୍କଠାରୁ ଇଚ୍ଛା ଓ ଅନିଚ୍ଛା ସହ କଉଡ଼ି ଆଦାୟ କରାଯାଏ, ସେଠାରେ ଦନ୍ତା ଓକିଲଠାରୁ ଆରମ୍ଭ କରି ତିନ୍ତୁଳି ଚକଟା ଓ ଦାନ୍ତନିକୁଟା ପର୍ଯ୍ୟନ୍ତ ସବୁ ଶ୍ରେଣୀର ସାନ ବଡ଼ ଓକିଲ ସମସ୍ତେ ସମାନ ଓ ସମସ୍ତେ କର ଦେବାକୁ ବାଧ । ସେଠାରେ କାହାର କୌଣସି ଓଜର ଶୁଣାଯାଏ ନାହିଁ । କଚେରିରେ ଯେତେ ଲୋକଙ୍କର କାମ ଥାଏ, ସମସ୍ତଙ୍କପାଇଁ ସରକାର ତରଫରୁ ବସିବା ସ୍ଥାନ ନିର୍ଦ୍ଦିଷ୍ଟ ଥାଏ । ହାକିମଙ୍କପାଇଁ ମିସଲ, ଅମଲାଙ୍କ ପାଇଁ ଅଫିସ, ସାକ୍ଷୀଙ୍କ ପାଇଁ ଅଲଗଡ଼ା, ନବସିନ୍ଦା ଓ ପକ୍ଷମାନଙ୍କ ପାଇଁ ବରଗଛ ତଳ କୁତ୍ରଚିତ୍ ଟୁଙ୍ଗି, ଏହିପରି ସ୍ଥାନମାନ ନିର୍ଦ୍ଦିଷ୍ଟ ଥାଏ । କିନ୍ତୁ ଓକିଲମାନଙ୍କ

ପାଇଁ ସରକାରଙ୍କ ତରଫରୁ ବସିବାର କିଛି ବ୍ୟବସ୍ଥା ନ ଥାଏ । ସେଥିପାଇଁ ଓକିଲ ମୁକ୍ତାରମାନେ ନିଜ ନିଜ ବ୍ୟୟରେ କଚେରି ପାଖରେ ଖଣ୍ଡିଏ ବୈଠକୀ ଟୁଙ୍ଗି ଖଞ୍ଜାଖାଞ୍ଜି ଦେଖି କରିଥାନ୍ତି, ସେଥିରେ ନିଜ ନିଜର ପ୍ରୟୋଜନ ଅନୁସାରେ ଆଇନ ବହି, ଚଉକି, ମେଜ, ପଙ୍ଖା, ଗୁଡ଼ାଖୁ, ଚାକର, ପରିସ୍ରାଖାନା, ପାଇଖାନା ସବୁ ଥାଏ । ଓକିଲଙ୍କ ମୋହରିମାନେ ନିଜ ନିଜର ସିରସ୍ତା ମଧ୍ୟ ସେହି ଓକିଲଖାନାର ନିର୍ଦ୍ଦିଷ୍ଟ ସ୍ଥାନରେ ରଖନ୍ତି । ଏତେଗୁଡ଼ିଏ କାରଖାନା ହେଲା ବେଳକୁ ସେଥିପାଇଁ ଖରଚ ଦରକାର । ଚାକର ମାସକୁ ମାସ ଦରମା ନ ପାଇଲେ ବାବୁମାନଙ୍କ ପଙ୍ଖା ଓଟାରିବ କିଆଁ ? ନୂଆ ନୂଆ ଆଇନ ବହି ନ ରଖିଲେ କାମ ଚଳାଇବାକୁ ଓକିଲମାନେ ବହି ପାଇବେ କାହୁଁ ? ଅତଏବ ଓକିଲଖାନା ବା Bar Library ପାଇଁ ପ୍ରତ୍ୟେକ ଓକିଲଙ୍କୁ ମାସିକ କିଛି କିଛି ଅଣ୍ଟାରୁ କାଢ଼ିବାକୁ ପଡ଼େ । ଯେ ସେତକ ନ ଦେବେ, ତାଙ୍କୁ ଓକିଲଖାନାରେ ପ୍ରବେଶାଧିକାର, ବଇଠକାଧିକାର, ସିରସ୍ତାଧିକାର, ପୁସ୍ତକାଧିକାର, ଗୁଡ଼ାଖୁ ଅଧିକାର ଦିଆଯିବ ନାହିଁ । ଆହୁରି ମଧ୍ୟ ଓକିଲଖାନାର ଆଡ଼ମ୍ବର ଅନୁସାରେ ଓକିଲ ଶ୍ରେଣୀର ମାନ ବଢ଼େ । ପାଠ ମଧ୍ୟ କହିଛି, ''ଗାଁ ପରିଗୁଣ ଧୋବା ତୁଠରୁ ।'' ସେହିପରି ଯେଉଁ ସ୍ଥାନର ଓକିଲଖାନାର ଯେତିକି ଆଡ଼ମ୍ବର, ସେହି ସ୍ଥାନର ଓକିଲଙ୍କର ବାହାରେ ସେତିକି ବେଶି ମର୍ଯ୍ୟାଦା । ଏଥିପାଇଁ ସାଧାରଣତଃ ଦେଖାଯାଏ ଯେ ଓକିଲଖାନାର କୋଠା ଓ ସାଜସଜ୍ଜା ଦ୍ୱାରା ଆପଣା ଇଜ୍ଜତ୍ ବଢ଼ାଇବା ସକାଶେ ପ୍ରାୟ ସବୁ ଓକିଲ ମୁସ୍ତେଜ । ଓକିଲଖାନାଟା ସବୁ ନାମଲେଖା ଓକିଲଙ୍କର ସାଧାରଣ ସମ୍ପତ୍ତି ଓ ତହିଁର ପରିଚାଳନା ନିମନ୍ତେ ସମୟ ସମୟରେ ଗୋଟିଏ ଲେଖାଏଁ ଓକିଲ ସଭା ହୁଏ । ସେହି ମିଟିଙ୍ଗ କଥା ମୁଁ କହୁଥିଲି ।

ଦିନେ ଏହିପରି ଗୋଟିଏ ମିଟିଙ୍ଗରେ ଓକିଲମାନେ କେତେକ ଉପସ୍ଥିତ ଥିଲେ, ସେଥିରେ ବୁଢ଼ା, ଦରବୁଢ଼ା, କଞ୍ଚାବୁଢ଼ା, ଅଧାଡୁଆ, ଯୁବକ, ଟୋକା ଓକିଲ ସମସ୍ତେ ଥିଲେ । ମିଟିଙ୍ଗରେ ଗୋଟିଏ ପ୍ରସଙ୍ଗ ପଡ଼ିଲା । ଜଣେ ବୁଢ଼ା ଏକ ପ୍ରସ୍ତାବ କରି ବସିଲେ; ଦେଖିଲି ଯେ ସେଦିନ ଆମେ ଯେତେ ଲୋକ ଉପସ୍ଥିତ ଥିଲୁଁ, ବୁଢ଼ାଙ୍କ ମତ ସଙ୍ଗେ କାହାରି ମତ ମିଳିଲା ନାହିଁ । ସମସ୍ତେ ଆମ ଭିତରେ ଭିତରେ ଚୁପଚାପ ହେଉଥାଉଁ ଯେ ବୁଢ଼ାଙ୍କ ପ୍ରସ୍ତାବଟି ଅଖାଡୁଆ, ସେ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେଲେ ନାନା ଅସୁବିଧା ଘଟିବ । କିନ୍ତୁ ସେଠାରେ ୩୦।୩୫ ଜଣ ଥିଲେ । କେହି ସାହସ କରି ପ୍ରକାଶ୍ୟ ଭାବରେ ବୁଢ଼ାଙ୍କ ପ୍ରସ୍ତାବର ପ୍ରତିବାଦ କଲେ ନାହିଁ । ସମସ୍ତେ ଚାହାଁଚାହିଁ ହେଉଥାନ୍ତି, ଗେଁ ଗାଁ ହେଉଥାନ୍ତି, କିନ୍ତୁ ଭରସି କରି କେହି ବୁଢ଼ାଙ୍କ ପ୍ରସ୍ତାବକୁ ଏଡ଼ିକରି ପାଟି ଫିଟାଉ ନ ଥାନ୍ତି । ମୁଁ ଏତକ ଏଠାରେ ଲେଖିଦେଲି ବୋଲି କେହି ଉପ-ପାଠକ ଯେପରି ମନେ ନ କରନ୍ତି ଯେ ମୁଁ ଗୋଠରୁ ବାହାର । ମୁଁ ମଧ୍ୟ ତଦବସ୍ଥ । ମନେ ମନେ ବିଚାରିଲି, ଏତେଗୁଡ଼ାଏ ପାକଲାବାଳୁଆ, ଲମ୍ବନିଶୁଆ, ଦରବୁଢ଼ା, ପୋଲାଫାଙ୍କିଆ, ଦହିନଉଡିଆ, ଥନ୍ତଲପେଟିଆ ଓକିଲ ବସିଅଛନ୍ତି, କାହା ମୁହଁ ଫିଟିବାକୁ ନାହିଁ ! ଏହା ବିଚାରି ମୋ ପାଖରେ ବସିଥିବା

ସାଙ୍ଗବୟସିଆ ଜଣେ ଦୁଇ ଜଣଙ୍କର ଆଖିଠରା ହେମତ ପାଇ ମୁଁ ବକ୍ତାଙ୍କ କଡ଼ ପଟରେ ଥାଇ ଅନ୍ୟ ବ୍ୟକ୍ତିମାନଙ୍କୁ ସମ୍ବୋଧନ କରି କହିଲି, ''ଏ ଯେଉଁ ପ୍ରସ୍ତାବ ହେଉଅଛି ଏହା ଆଇନସଙ୍ଗତ ଓ ଯୌକ୍ତିକ ଅଟେ, କିନ୍ତୁ'' - (ଏହିଠାରେ ମୋ ପାଟି ମଧ ଖନି ମାରିଗଲା) ଏତିକି କହୁ ନ କହୁଣୁ କର୍ତ୍ତା ଉପସ୍ଥିତ ସଭ୍ୟମାନଙ୍କ ଭାବଭଙ୍ଗୀରୁ ପ୍ରସବ ବେଦନାର ଇଙ୍ଗିତ ବୁଝିନେଇ ସେ ସ୍ଥାନରୁ ଗାତ୍ରୋତ୍ଥାନ କଲେ ଓ କର୍ତ୍ତାଙ୍କ ପ୍ରସ୍ତାବ ସେ ଦିନ ସଭାରେ କାଞ୍ଜିଆ ହୋଇଗଲା । ଅତଏବ ମୁଁ କହୁଥିଲି ଯେ ଅନ୍ତରଙ୍ଗ ବନ୍ଧୁ ଜଣେ କେତେ ମିଳିଗଲେ 'ଭିଦ୍ୟତେ ହୃଦୟଗ୍ରନ୍ଥି' ଓ ମନର ଅସଲ କଥାଗୁଡ଼ାକ ପାଟି ବାଟେ ବାହାରିପଡ଼େ । କିନ୍ତୁ ଏପରି ବାରିଣୀଯୋଗ ମନୁଷ୍ୟ ଜୀବନରେ ଖୁବ କମ୍ ସମୟରେ ଘଟେ । ମୋ ଜୀବନରେ ଅଳ୍ପ ସମୟରେ ଏହିପରି ଯୋଗ ଘଟିଅଛି । କିନ୍ତୁ ସେଗୁଡ଼ିକ 'ଅକାଳବିଜୁଳି' । ଦିନକର ଯୋଗ କଥା ଆଜି ପାଠକମାନଙ୍କୁ କହିବି - ଦିନେ ହତା ବଙ୍ଗଳା, ଗେର୍ଦ ଓଡ଼ିଶା ମଧଭାଗ, ଜିଲ୍ଲେ କଟକ, ଥାନା ଓ ସବ-ରେଜିଷ୍ଟରୀ ମୁକାମ କଟକ ଇଲାକାଧୀନ । ବାଖରାବାଦ ବଜାର ହାଏବୁଲଦେ ସହର କଟକ ମିଲିକିୟତ୍ ସରକାର ମାହାଲ ଖାସ୍ ଇଲାକାରେ ଥିବା କାଠଯୋଡ଼ି ନଦୀର ପଥର ବନ୍ଧର ଗୋଟିଏ ବୁରୁଜ ଉପରେ ସନ୍ଧ୍ୟା ପରେ ଥକାମରା ହୋଇ ମୁଁ ବସିଅଛି । ଏହି ସମୟରେ ମୋର ବାଲ୍ୟସଙ୍ଗୀ ତିନି ଜଣ ସାନ୍ଧ୍ୟ ସମୀରଣ ସେବନ କରୁ କରୁ ସେହିଠାରେ ଯାଇ ଧଡ଼କିନି ପହଞ୍ଚିଗଲେ । ଅବଶ୍ୟ ଆଜିକାଲି କାଏଦା ଅନୁସାରେ ମରହଟ୍ଟୀ ପାନ ବଟୁଆ କିମ୍ବା ଦରମରହଟ୍ଟିଆ ପାନବଟାକୁ ସଭ୍ୟ ସମାଜରେ ପ୍ରବେଶ ନିଷେଧ । ସେଥିପାଇଁ ଆମେ ପାନଅମଳିଆଯାକ କୁର୍ତ୍ତା ମଧସ୍ଥ ପକେଟ ଦ୍ୱାରା ସେ କାମ ଚଳାଇ ନେଇଥାଉଁ । ବନ୍ଧୁମାନଙ୍କୁ ଦେଖିଲାକ୍ଷଣି ମୋ ପକେଟ ଆଡ଼କୁ ମୋ ହାତ ସ୍ୱତଃ ଚଳିଗଲା । ଦେଖିଲି ଯେ ପକେଟଟି ପାନଖିଲ ଶୂନ୍ୟ - ତା ପରେ ପଡ଼ିଲା ହାତ ଅଣ୍ଟାରେ, ସେଠାରେ ମଧ ଧାତୁମୟ ପଦାର୍ଥ ନଦାରଦ - ମନ କଥା ମନରେ ରହିଲା । ମିଷ୍ଟାଳାପ, ଶିଷ୍ଟାଳାପ, ରିଷ୍ଟାଳାପ ଦ୍ୱାରା ବନ୍ଧୁମାନଙ୍କୁ ଯଥାସମ୍ଭବ ସମ୍ବର୍ଦ୍ଧନା କଲି । ବନ୍ଧୁମାନେ ମୋ ନିକଟରେ ପ୍ରସ୍ତର ଶଯ୍ୟାରେ ଉପବେଶନ କଲେ । ବହୁଦିନ ପରେ - ବହୁବର୍ଷ ପରେ ମିଳନ ହୋଇଅଛି । ବନ୍ଧୁମାନଙ୍କ ସଙ୍ଗେ ଅନେକ ବର୍ଷ ହେଲା ବାକ୍ୟାଳାପ ବା ପତ୍ରାଳାପ ନ ଥିଲା, ତଥାପି ଦୀର୍ଘକାଳ ବ୍ୟାପୀ ବିଚ୍ଛେଦ ସତ୍ତ୍ୱେ ପିଲାଦିନର ଘନିଷ୍ଠତା କିଛି କମି ଯାଇଥିଲା ପରି ଜଣାପଡ଼ିଲା ନାହିଁ ଓ ଏତେ ଦିନର ନୀରବତା ପାଇଁ କେହି କାହାରିକୁ କୈଫିୟତ୍ ତଲବ କଲେ ନାହିଁ । ଏହାହିଁ ମରହଟ୍ଟୀ ବନ୍ଧୁତାର ବିଶେଷତ୍ୱ । ଆଜିକାଲି ବନ୍ଧୁତାର ନାମ 'ଦୋସ୍ତି' । ସେଥିରେ ଏକ ହପ୍ତା ପତ୍ର ଆଦାନପ୍ରଦାନ ବନ୍ଦ ହୋଇ ଗଲେ ସଙ୍ଗେ ସଙ୍ଗେ କୈଫିୟତ୍ ତଲବ । ଆଜିକାଲି ବନ୍ଧୁତାର ଅର୍ଥ ଭଲ କାଗଜ କଲମ ଓ କାଳି ଖରଚରେ ମୁକ୍ତହସ୍ତତା । ଯାହାହେଉ ଆମେ ଦରବୁଢ଼ାଯାକ ସେ ଆଇନକାନୁନରୁ, ସେ ଆଦବକାଇଦାରୁ ଖଲାସ । ଛାଡ଼ ସେ କଥା - ପହିଲି ସମ୍ବର୍ଦ୍ଧନା ପରେ ଦୁଃଖସୁଖ ଆରମ୍ଭ ହେଲା । ପଠଦଶା ଛାଡ଼ିଲା ଦିନୁ କାହାର କି କି ଶାରୀରିକ,

ମାନସିକ, ସାଂସାରିକ, ଆଧ୍ୟାତ୍ମିକ ଉନ୍ନତି ବା ଅବନତି ହୋଇଅଛି, ସେସବୁ କଥାଭାଷା ପଡ଼ିଗଲା । ତତ୍‌ପରେ କେଜାଣି କାହିଁକି କଥା ଉଠିଲା - ''ଈଶ୍ୱରଙ୍କୁ ବର୍ତ୍ତମାନ ସାକ୍ଷାତ୍‌ରେ ପାଇଲେ କିଏ କି ବର ମାଗନ୍ତେଇଁ ?'' ଉପସ୍ଥିତ ଚାରି ବନ୍ଧୁଙ୍କ ମଧ୍ୟରୁ ଚାରି ଜଣଯାକ ଚାରି ପ୍ରକାର ବରର ଅଭିଳାଷୀ ବୋଲି ପ୍ରକାଶ କଲେ । ଜଣେ କହିଲେ, ''ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କରନ୍ତି ଯେ ମୋର ସ୍ତ୍ରୀସଂଖ୍ୟା ବୃଦ୍ଧି ହେଉ ।'' ଅନ୍ୟ ସମସ୍ତେ ଏ କଥା ଶୁଣି ଜିଭଟାମାନଙ୍କୁ ଅଧାସହି କାମୁଡ଼ି ପକାଇଲେ । ଛି ! ଛି ! ଆଜିକାଲି ସଭ୍ୟତା ଓ ସଂସ୍କାରର ଯୁଗରେ ଏପରି କଥା ତୁଣ୍ଡରେ ଧରିବାକୁ ଅଛି ? ଆଜିକାଲିର ଯୁଗ ଓ ସଭ୍ୟତା ମନୁଷ୍ୟର ପଶୁବୃତ୍ତିକୁ ସବା ପଛରେ ରଖିଅଛି, ଏପରି ଅବସ୍ଥାରେ ଏପରି ଗୋଟିଏ ଯୁଗବହିର୍ଭୂତ, ନୀତିବହିର୍ଭୂତ, ସଭ୍ୟତାବହିର୍ଭୂତ, ସମାଜବିରୁଦ୍ଧ, ଧର୍ମବିରୁଦ୍ଧ କଥା ମନରେ ଭାବିବା ହିଁ ପାପ ବୋଲି ବକ୍ତାଙ୍କ ଛଡ଼ା ଅନ୍ୟ ସମସ୍ତେ ଏକମୁଖରେ କହି ଉଠିଲେ । ବକ୍ତା ଅବଶ୍ୟ ସେଥିରେ ନିଷ୍ପ୍ରଭ ହେଲେ ନାହିଁ । କହିଲେ, ''ମୁଁ ସେ ଅର୍ଥରେ ଏପରି ଗୋଟିଏ ବର ପ୍ରାର୍ଥନା କରୁ ନାହିଁ । ସଭ୍ୟ ସମାଜର ଶୀର୍ଷସ୍ଥାନୀୟ ଜଣେ ସସ୍ତ୍ରୀକ ବଡ଼ଲୋକଙ୍କ ସଙ୍ଗେ ଦିନେ ଦେଖା ହେଲା - ତାଙ୍କ ଅର୍ଦ୍ଧାଙ୍ଗୀଙ୍କ ଦେହରେ ବାଇଶିପଳିଆ ବାହିଖଡୁ ଓ ଦଶମାଢ଼ିଆ ଚୁଡ଼ି ଅବଶ୍ୟ ନ ଥିଲା, କିନ୍ତୁ ଯାହା ଜକଜକିଆ ଅଳଙ୍କାର ଥିଲା, ସେଗୁଡ଼ିକ ବହୁମୂଲ୍ୟ - ମୋର ତହିଁ ଉପରେ ଏକାଧିକଥର ନଜର ପଡ଼ିବାର ଦେଖି ବଡ଼ଲୋକ ମତେ କାନେ କାନେ କହିଲେ - ବୁଝିଲ ନା ! ଏ ଜନ୍ତୁଗୁଡ଼ିକ ଗୋଟିଏ ଲେଖାଏଁ Savings Bank - ଅର୍ଥାତ୍ ସଞ୍ଚୟ ଭଣ୍ଡାର । ଆହୁରି ମଧ୍ୟ ସଂସାରରେ ଏ ଜୀବଙ୍କର ସୃଷ୍ଟି ହୋଇ ନ ଥିଲେ ମଣିଷ ଭାରି ସାହାଖରଚି ହୋଇଯାନ୍ତେ । ଏଥିପାଇଁ ଏମାନଙ୍କର ଆଗ୍ରହାତିଶଯ୍ୟ ବା ନିଗ୍ରହାତିଶଯ୍ୟରୁ ଆଧୁନିକ ସଭ୍ୟମାନେ ଆପଣାର ବ୍ୟୟ ସଂକୋଚ କରି ସୁନା ଓ ପଥରବସା ଅଳଙ୍କାରମାନ କିଣି ସଞ୍ଚୟ ପାଣ୍ଠିର ମୂଳଭିତ୍ତି ସ୍ଥାପନ କରନ୍ତି । ସେହି କଥାଟା ମୋ ମନକୁ ଭାରି ଲାଗିଅଛି ଓ ସେହି ଦିନଠାରୁ ମୁଁ ବିଚାରିଛି, ମନୁଷ୍ୟର 'ସଂଚୟ ବୁଜୁଳି'ର (Savings Bank) ସଂଖ୍ୟା ଯେତିକି ବେଶି ହୁଏ, ତାହାର ତେତିକି ସାଂସାରିକ ମଙ୍ଗଳ ବଢ଼େ ।'' ବନ୍ଧୁଙ୍କର ବର ପ୍ରାର୍ଥନାସୂଚକ ଉକ୍ତି ବ୍ୟଙ୍ଗାତ୍ମକ ଥିବାର ଆମେ ସମସ୍ତେ ବୁଝିନେଲୁଁ ।

ଦ୍ୱିତୀୟ ବ୍ୟକ୍ତି କହିଲେ, ''ଈଶ୍ୱରଙ୍କୁ ଯେବେ ସଫଳ ବର ମାଗିବାକୁ ମତେ ସୁଯୋଗ ଦିଆଯା'ନ୍ତା, ତେବେ ମୁଁ କହନ୍ତି 'ମୋ ଆଖି ଦିଓଟି ଫୁଟିଯାଉ' ।'' ବନ୍ଧୁ ଏହା କହୁଁ କହୁଁ ଦୁଇ ହାତର ଦୁଇ ବଦନାମିଆ ଆଙ୍ଗୁଠିକୁ ଦୁଇ ଆଖି ନିକଟକୁ ଉଠାଇଲେ । ତାଙ୍କ ଦୁଇ ପାଖରେ ବସିଥିବା ଦୁଇ ବନ୍ଧୁ ତାଙ୍କର ଦୁଇ ହାତକୁ ଧରି ପକାଇଲେ, ଆମେ ସମସ୍ତେ ବିଚାରିଲୁଁ, ବନ୍ଧୁଙ୍କର ଉତ୍ତମାଙ୍ଗର ଆଭ୍ୟନ୍ତରୀଣ ଅବସ୍ଥା ଟିକିଏ କିପ୍ରକାର ବିଗିଡ଼ିଅଛି । ଫଳତଃ କଥାଟା ଆମ୍ଭମାନଙ୍କୁ ଟିକିଏ ଅଡୁଆ ଲାଗିଲା । ସେଥିପାଇଁ ସମସ୍ତେ ସତୃଷ୍ଣ ନୟନରେ ବନ୍ଧୁଙ୍କର ଏପରି ଅଖାଡୁଆ ବରର କୈଫିୟତ୍ ପାଇବା ଲାଗି ବନ୍ଧୁଙ୍କ ଆଡ଼କୁ

ଅନାଇଲୁଁ । ସେ କହିଲେ, ''ସଂସାରରେ ମୋର ଯେତିକି ବେଶି ଅନୁଭବ ହେଉଅଛି, ମୁଁ ସେତିକି ଜାଣୁଅଛି ଯେ ମୋର ଏ ଆଖି ଦୁଇଟା ଭାରି ବଦନାମିଆ ଚିଜ । ଆଖି ଫୁଟିବା ସମ୍ବନ୍ଧରେ ଅନେକ ପୌରାଣିକ ଉପାଖ୍ୟାନ ଅଛି । ପୁରାଣରେ ଶୁଣା ଅଛି ଯେ ମନର ଏକାଗ୍ରତା ସାଧନ ଉଦ୍ଦେଶ୍ୟରେ ଜଣେ ଋଷିକୁମାର ଆପଣା ଆଖି ଦୁଇଟା ଫୁଟାଇ ଦେଇଥିଲେ - ଅବଶ୍ୟ ଇନ୍ଦ୍ରଦେବତାଙ୍କ ଅପ୍‌ସରା ପ୍ରେରଣ ଭୟରେ । ମୁଁ ଅବଶ୍ୟ ସେ ଦୃଷ୍ଟିରେ ଆଖି ଫୁଟିବାର ବାଞ୍ଛା କରୁ ନାହିଁ । ମୁଁ ଦେଖି ପାରୁଅଛି ଯେ 'ଚକ୍ଷୁଲଜ୍ଜା' ବୋଲି ଜିନିଷଟି ଆମ ଦେଶକୁ ମାଟି କରୁଅଛି । ସେହି ଚକ୍ଷୁଲଜ୍ଜା ପ୍ରସାଦରୁ ଆଜି ଆମ ଦେଶର ଜାତୀୟ ଅନୁଷ୍ଠାନମାନଙ୍କରେ ଅରାଜକତା ପହଞ୍ଚୁଅଛି, ବଡ଼ଲୋକଗୁଡ଼ାକ ଦେଶର ଓ ଜାତିର ଦ୍ୱାହି ଦେଇ ସବୁ ଅସନା ଓ ଅଲରା କାମଯାକ କରୁଅଛନ୍ତି । ସ୍ପଷ୍ଟବକ୍ତାଯାକ ପଛରେ କୁହାଟ ମାରୁଅଛନ୍ତି, କିନ୍ତୁ ଆଗରେ, ମୁହଁ ଉପରେ ସମସ୍ତେ ଚୁପ୍ ହୋଇ ରହୁଅଛନ୍ତି । ଅଥଚ ଦେଶର ବଡ଼ଲୋକଯାକ 'Fools paradise' ନିଜର ବାହାଦୁରି ରୂପ ବାଇଶ ପାହାଚରେ ଗଡ଼ଗଡ଼ାଉ ଅଛନ୍ତି ଓ ଦେଶଟାକୁ ସ୍ୱର୍ଗକୁ ଉଠାଉଅଛନ୍ତି ବୋଲି ଘଡ଼ଘଡ଼ିଆ ରଡ଼ିରେ ଦେଶକୁ କମ୍ପାଉଅଛନ୍ତି । ଆମ ଦେଶର ଶିକ୍ଷିତ ଯୁବକମାନଙ୍କ ବକ୍ତୃତା ଓ ନୈତିକ ସାହସର ଦାଉ କେବଳ ନିରୀହ ପ୍ରାଣୀଙ୍କ ଉପରେ, ଯେଉଁମାନେ ଜବାବ ଦେଇପାରିବେ ନାହିଁ, ସେହି କୁଜି ଅସରପାମାନଙ୍କ ଉପରେ କାଣୀ ବିରାଡ଼ି ହୋଇ ଶିକ୍ଷିତମାନେ ଆପଣାର ତେଜ ସଭ୍ୟସମାଜରେ ଜାହେର କରୁଅଛନ୍ତି । କିନ୍ତୁ ଯେଉଁ କେତେଜଣ ହାମବଡ଼ାଙ୍କ ମଙ୍ଗଧରା ପ୍ରଭାବରୁ ଦେଶର ଅଧୋଗତି ଅନିବାର୍ଯ୍ୟ, ସେମାନଙ୍କର ମୁହଁ ଟାଣ । ସେମାନଙ୍କୁ 'ଏଁ' କରି ପଦେ କହିଲେ, ସେମାନେ 'କେଁ' କରି କାମୁଡ଼ି ଦେବେ । ସେହିମାନଙ୍କର ରାଜତ୍ୱ ବର୍ତ୍ତମାନ ଦେଶରେ ଅମୋଘ ହୋଇଅଛି ଓ ଏହି ଚକ୍ଷୁଲଜ୍ଜା ପ୍ରଭାବରୁ ତାଙ୍କୁ ମୁହେଁ ମୁହେଁ ହାଣିବାକୁ କେହି ନାହିଁ । ଦେଶର ଏ ଅବସ୍ଥା ନ ଯିବା ପର୍ଯ୍ୟନ୍ତ ଆମର ଜାତୀୟ ଉନ୍ନତି ଅସମ୍ଭବ । ଏଥିଲାଗି କହୁଥିଲି, ଆମ ଦେଶର ଶିକ୍ଷିତମାନଙ୍କର ଚକ୍ଷୁଲଜ୍ଜା ନ ଯିବା ପର୍ଯ୍ୟନ୍ତ ସେମାନେ ସମସ୍ତଙ୍କ ସମକ୍ଷରେ ତର୍କ ସ୍ଥଳରେ ବ୍ୟକ୍ତି ନିର୍ବିଶେଷରେ ଚକ୍ଷୁଲଜ୍ଜା ଛାଡ଼ି ପ୍ରକୃତ କଥା କହିବାକୁ ସାହସ ନ ବାନ୍ଧିବା ପର୍ଯ୍ୟନ୍ତ ଆମ ଦେଶର ଉନ୍ନତି କେବଳ ପୁସ୍ତକଗତ ହୋଇ ରହିବ । ମୁଁ ଏଥିପାଇଁ ପ୍ରାର୍ଥନା କରୁଥିଲି ଯେ ଈଶ୍ୱର ମୋ ଆଖି ଦୁଇଟା ଫୁଟାଇ ଦେଲେ ମୁଁ ମୋର ମନ ଓରମାନା ମେଣ୍ଟାଇ ବିଚ୍ ବଜାରରେ ବଡ଼ଲୋକଗୁଡ଼ାଙ୍କୁ ମୁହେଁ ମୁହେଁ ପଦେଅଧେ ସତ କଥା ଶୁଣାଇ ମୋ ମନକୁ ଥୟ କରନ୍ତି ।'' ବନ୍ଧୁଙ୍କର ଏହି କଥା ସରୁଣୁ ନ ସରୁଣୁ ଆମ୍ଭେମାନେ ଦେଖିଲୁଁ ଯେ କାଠଯୋଡ଼ି କୂଳଟି କ୍ରମଶଃ ଜନପ୍ରାଣୀଶୂନ୍ୟ ହୋଇଅଛି । ଅଦୂରରେ ଗୋଟିଏ କଳାପଚ୍ଛିଦବିଶିଷ୍ଟ ଛାୟା ଝାପ୍‌ସା ମାଲୁମ ହେବାରୁ ଚାରି ବନ୍ଧୁ ସେଠାରୁ ଉଠି ଯେ ଯାହା ବସା ଅଭିମୁଖରେ ଫେରିଲୁଁ । ମନ କଥା ମନରେ ରହିଲା ।

ଉତ୍କଳ ସାହିତ୍ୟ/୧୬ଶ ଭାଗ/୫ମ ସଂଖ୍ୟା/୧୩୧୯ ସାଲ ।

## ।। ବୟାଳିଶ ।।

ପାଠକ ଅବଧାନ ! ଦଶହରା ପରେ ନମସ୍କାର - ଅର୍ଥାତ୍, ଯେ ନମସ୍କାରଣୀୟ ପାତ୍ର ତାଙ୍କୁ ନମସ୍କାର, ଆଉ ଯାହାର ଯେପରି ଦଣ୍ଡବତ, ଓଳିକି, 'ଆୟୁରାରୋଗ୍ୟୈଶ୍ୱର୍ଯ୍ୟାଣାଂ ନିବୃଦ୍ଧୟଃ ସନ୍ତୁ', 'ଧନ ଜନ ଗୋପ ଲକ୍ଷ୍ମୀ' ଯଥାଯୋଗ୍ୟ ପାଉଣା, ସେ ତାହା ଗ୍ରହଣ କରନ୍ତୁ, ଦିଅନ୍ତୁ । ଦିଅ ନିଅ, ଏ ହେଲା ସଂସାରର ନିୟମ । ନ ଦିଅ ନ ନିଅ - ଏ ହେଲା ତାହାର ବିପରୀତ ପ୍ରତିଜ୍ଞା । ମାଇପେ ଢଗରେ କହନ୍ତି - ''ତୁ ଦେଉଥିବୁ, ମୁଁ ଖାଉଥିବି, ତୋର ସୁନ୍ଦର ବଦନ ଚାହୁଁଥିବି, ତୁ ନ ଦେବୁ, ମୁଁ ନ ଖାଇବି, ତୋର ଫଲଫଲା ମୁହଁ ନ ଚାହିଁବି ।'' ଅତଏବ ଦେବୀପର୍ବ ପରେ ଯାହାର ଯାହାର ବନ୍ଧୁ ମିଳନ ହୁଏ, ତହିଁରେ ଦଶହରାରୁ ଯାହା ବାକି ରହି ଯାଇଥାଏ (ଅର୍ଥାତ୍, ସେମିଈ, ବଡ଼ି, ପିଚାପାଡ଼ି, ବନାରସୀ ସଜା ଝୁଟା, ଲମ୍ଵ ସାଟପଟ, ସନ୍ଦେଶ, ମନୋହର, ମୁଆଁ, ସୁନୁଲି ରୂପୁଲି କାଚ (ଚୁଡ଼ି), ଲେଭେଣ୍ଡର, ଚୁଆ, ଚନ୍ଦନ, ପମେଟମ, ମଥାଘଷା, ସତୀଶୋଭନା ସିନ୍ଦୂରଠାରୁ ଆରମ୍ଭ କରି ଇଟାଗୁଣ୍ଡି ପର୍ଯ୍ୟନ୍ତ, ଭାର, ବେଭାର - ଏ ସବୁର ଦଶହରା ସମୟରେ ଚୂଡ଼ାନ୍ତ ହୋଇଥାଏ - କେବଳ ବାକି ଥାଏ ସୋହାଗ ଆଳପନା ବା ଭଦ୍ର ସମାଜରେ ଯାହାକୁ କହନ୍ତି 'କୋଲାକୋଲି' ତାହାହିଁ ବନ୍ଧୁମାନଙ୍କ ମଧ୍ୟରେ ଆଦାନ ପ୍ରଦାନ ହୁଏ । ବଙ୍ଗାଳୀମାନେ କହନ୍ତି, ବିଜୟାର 'କୋଲାକୋଲି'ରେ ସବୁ ରାଗ, ଅପମାନ, ଅଭିମାନ, ମନଦୁଃଖାଦୁଃଖୀ । ଏ ସବୁକୁ ପାସୋରି ପକାଇବାକୁ ହୁଏ ଓ ଦେବୀ ଜଗନ୍ମାତା ମର୍ତ୍ତ୍ୟଧାମକୁ ଅବତରଣ କରି ଦୁନିଆର ଅସନଟିଆ ଅଲରା ଅଳିଆ କଳିମଞ୍ଜିଯାକ ଗଣ୍ଠିରା କରି ସ୍ୱର୍ଗପୁରକୁ ନେଇଯା'ନ୍ତି । ସ୍ୱର୍ଗକୁ ଏତେ ଅନର୍ଥର ମଞ୍ଜିବୁଜୁଲା ନେଇ ଜଗନ୍ମାତାଙ୍କର ଯେଉଁ ଅବସ୍ଥା ହେଉଥିବ, ତାହା ଆମେ ମର୍ତ୍ତ୍ୟଲୋକେ ବା କାହୁଁ ଠଅର କରିବୁଁ ? କିନ୍ତୁ ଅନୁମାନ ହୁଏ ଯେ ମହାଦେବ ଶାସ୍ତ୍ରର ନଜିର ଅନୁସାରେ ବାଇଟୁଙ୍ଗୁରି ଅର୍ଥାତ୍ ଚାରିଦଉଡ଼ିକଟା । ଅତଏବ ଘରଣୀ ଏଣୁ ତଳ ମାହାଲାରୁ କଳିବୁଜୁଳିଗୁଡ଼ାକ ଲୁଣ୍ଠେଇ ପୁଣ୍ଠେଇ ନେଇ ଉପର ମାହାଲାରେ ପହଞ୍ଚିଲା ବେଳକୁ ମହାଦେବଙ୍କର ରୁଦ୍ରମୂର୍ତ୍ତି ବହୁକାଳ ବ୍ୟାପୀ ବିଚ୍ଛେଦ ଦ୍ୱାରା ଭୀଷଣତର ହୋଇଥାଏ ଓ ପାର୍ବଣ ଆଳିମାଳିକା ପେଡ଼ି ଝାଡ଼ି ଦେଲାବେଳକୁ ଦୁହିଁଙ୍କ ମଧ୍ୟରେ ବହେ ଧକଡ଼ଚକଡ଼ ଲାଗୁଥିବ । ପାଠକ ଅବଧାନ, 'ଯଥା ଦେବେ ତଥା ଦେହେ' । ଶେଷକୁ ଏହିତା ହୁଏ ଯେ ଜଗନ୍ମାତା ସେ କଳିକତରା ବୁଜୁଳିର ମାହାତ୍ମ୍ୟ ଅନୁଭବ କଲା ମାତ୍ରକେ ସେ ବୁଜୁଳିଟିକି ଓପର ମାହାଲାର ଗୋଟିଏ କଣା ବାଟେ ଫେର ଡୁନିକରି ତଳ ମାହାଲାକୁ ଗଳେଇ ପକାନ୍ତି । ଫଳ କଥା, ଦେବୀଙ୍କ ମର୍ତ୍ତ୍ୟ ଆଗମନ ପୂର୍ବେ ଦୁର୍ବଳ ମାନବର ଯେଉଁ ନାରକୀ ଅବସ୍ଥା ଥାଏ, ତାହାହିଁ ଫେରିଆସେ । ଏ ହେଲା ବିଜୟା ସଂବର୍ଦ୍ଧନାର ଅବତରଣିକା । ଅର୍ଥାତ୍ ମନୁଷ୍ୟର ମନ ସର୍ବଦା ଦୁର୍ବଳ, ସର୍ବଦା ପରଶ୍ରୀକାତର, ସର୍ବଦା ପ୍ରତିଶୋଧ

ନେବା ନିମନ୍ତେ ଜାଗ୍ରତ, ସର୍ବଦା ନିର୍ଯାତନ ସ୍ମରଣ ରଖିବାକୁ ତତ୍ପର - ଅତଏବ 'ମତେ ଯେତେ ମାଠୁଥିବୁ ମାଠ, ମୁଁ ସେହି ଦରପୋଡ଼ା କାଠ !' ଆଜି ଯେଉଁ ମନୁଷ୍ୟ, ଯେଉଁ ଦରପୋଡ଼ା ପ୍ରକୃତି, କାଲି ସେହିତା ରହିବ । ପୁଣ୍ୟ ପର୍ବ ଇତ୍ୟାଦି କେବଳ ପେଟସୁଖ, ପିଠିସୁଖ, ହାତସୁଖ, ପାଟିସୁଖ, ଆଖିସୁଖ, କାନସୁଖ, ନାକସୁଖ ଇତ୍ୟାଦି ପାଇଁ ମାତ୍ର । ଆଜି ପାଠକ ଅବଧାନମାନଙ୍କୁ ଏତକ ଅବତରଣିକା କହିବାର କାରଣ ଅଛି । ଦଶହରା ଗଲା, କୁଆଁର ପୂନିଅ ଗଲା, ଦିଆଲି ଅମାବାସ୍ୟା ଗଲା, କାର୍ତ୍ତିକ ହବିଷ୍ୟ ଆସିଗଲା, କିନ୍ତୁ ମନର କେତେଗୁଡ଼ାଏ ଦାଗ ଲିଭି ନାହିଁ । ସେହି ଦାଗଗୁଡ଼ିକ ସମବେଦନାଯୁକ୍ତ ଓ ସମସୁଖୀ ବନ୍ଧୁମାନଙ୍କୁ ଦେଖାଇବା ପାଇଁ ଏତେ ଫାନ୍ଦ ଆରମ୍ଭ । ବର୍ତ୍ତମାନ ଦଶହରା ପୂର୍ବର କେତେକ ବିଷୟ ପାଠକମାନଙ୍କ ସମୀପରେ ଉପସ୍ଥାପିତ କରୁଅଛି ।

ସରକାର ବାହାଦୁର ସ୍ୱାୟତ୍ତ-ଶାସନର ସୁଫଳ ଆମ ହାତେ ହାତେ ଧରାଇ ଦେବା ନିମନ୍ତେ ମିଉନିସିପାଲିଟି, ଡିଷ୍ଟ୍ରିକ୍ଟ ବୋର୍ଡ଼ର ନିର୍ବାଚନ ପ୍ରଣାଳୀ ସୃଷ୍ଟି କରି ଆମରି ହାତରେ ଆମର ଲଟ ଧରାଇ ଦେଇ ଉପରେ ବସି ଆମ୍ଭମାନଙ୍କ ରଙ୍ଗ ଓ ଢ଼ଙ୍ଗର ଦେଖୁଅଛନ୍ତି ଓ ଆମ୍ଭେମାନେ ସ୍ୱାୟତ୍ତ ଶାସନ ପାଇଁ କେତେଦୂର ଉପଯୁକ୍ତ, ତାହା ମଧ୍ୟ ଠଉରାଇ ନେଉଅଛନ୍ତି । ବ୍ରାହ୍ମଣିଆ ମନ ତ । ଏହି ମିଠାଟା ଚାଖିବାର ବହୁ ଦିନରୁ ବାସନା ଥିଲା । କଟକ ମ୍ୟୁନିସିପାଲିଟିର କମିଶନର ନିର୍ବାଚନର ବେଳ ଆସି ପହଞ୍ଚିଗଲା । କମିଶନର ପଦପ୍ରାର୍ଥୀମାନେ ମାସକ ପୂର୍ବରୁ କାକ-ସ୍ନାନ, ଗଧ-ଭୋଜନ, କୁକୁର-ଧାଉଡ଼ି ଇତ୍ୟାଦି ଉପଚାରମାନ କରି ଆପଣା କାର୍ଯ୍ୟସାଧନପାଇଁ ଦିନ ନାହିଁ, ରାତି ନାହିଁ, ଲାଗିଗଲେ । ଦିଲ୍ଲୀ ଲଡ୍ଡୁ ଯେ ଖାଇଲେ ସେ ପସ୍ତାଇଲେ, ଯେ ନ ପାଇଲେ ସେ ତ ସହଜେ ମୁହଁଟାମାନଙ୍କୁ ଟାକୁଆ ଆମ୍ବୁଲ ଚାଟିବା ଭଳିଆ କଲେ । ଏ ସମସ୍ତ ଦେଖି ଶୁଣି ମୋର ଏହି ଧାରଣା ହୋଇଅଛି ଯେ, ସ୍ୱାୟତ୍ତ-ଶାସନ ପାଇଁ ଯୋଗ୍ୟ ହେବା ନିମନ୍ତେ ଆମକୁ ଅଛି ଇଲାଗେ ଦିନାକେତେ । ଅବଧାନ ! ଦିନାକେତେର ଆକ୍ଷରିକ ଅର୍ଥ କରି ବସିବେ ନାହିଁ । ଭଦ୍ରସମାଜରେ ଗୋଟିଏ କାଏଦା ଅଛି । ତାହାକୁ ଇଂରାଜୀ ସାହିତ୍ୟରେ କୁହାଯାଏ Euphemism (a figure of Rhetoric by which an unpleasant of offensive thing is designated by an indirect and milder term) ଅର୍ଥାତ୍ ଆମ ତର୍ଜମା ଅନୁସାରେ 'କୋମଳଭାଷାଳଙ୍କାର' । ଅମଙ୍ଗଳସୂଚକ କଥାଟା ମୁହଁରେ ପ୍ରକାଶ ନ କରି ତାକୁ କୋମଳ ବାକ୍ୟ ଦ୍ୱାରା ପ୍ରକାଶ କରିବାର ନାମ Euphemism । ଉଦାହରଣସ୍ୱରୂପ କୌଣସି ଲୋକଙ୍କୁ ସାପ କାମୁଡ଼ିଲେ ଅମୁକକୁ 'ସାପ କାମୁଡ଼ିଲା' ବୋଲି ନ କହି 'ଲହ ଛୁଇଁଲା' ବୋଲି କହନ୍ତି । କେହି ଲୋକ ମରିଗଲେ ଅମୁକ ଲୋକ 'ମଲା' ବୋଲି ନ କହି ଅମୁକଙ୍କର 'ସମୟ ହୋଇଗଲା' ବୋଲି କୁହାଯାଏ । କୌଣସି

ଖାଦ୍ୟଦ୍ରବ୍ୟ ଗନ୍ଧ କଲେ ମାଇପେ କହନ୍ତି, ଅମୁକ ପଦାର୍ଥ 'ବାସୁଛି' ଇତ୍ୟାଦି, ଇତ୍ୟାଦି । ସେହିପରି ମୁଁ ଏଠାରେ ଯେ 'ଦିନାକେତେ' କଥାଟା ବ୍ୟବହାର କଲି, ତାହାର ଅର୍ଥ 'ପୁରୁଷ କେତେ' ବଡ଼ ଜୋର 'ବରଷ କେତେ' । ମ୍ୟୁନିସିପାଲିଟି କମିସନର ନିର୍ବାଚନ ସମୟରେ ଦେଖିଲି ଯେ ଆଜି 'ଭଲଲୋକ'ଗୁଡ଼ାକ ପାଜି ପାଲଟି ଗଲେ । ତାଙ୍କ ଶିକ୍ଷା, ଭଦ୍ରତା, ବିବେକ, ଏସବୁ କେଉଁଆଡ଼େ ଲୁଚିଗଲା । ଏଥିରେ ଫେର ପଞ୍ଚାଏ ଆପଣାର ଅନାହାରୀ ପଦ ଖଣ୍ଡମାନ ପାଇବା ଲାଗି 'ଓଡ଼ିଆ ବଙ୍ଗାଳୀ' ଢୁଆ ଲଗାଇ ଦେଲେ । କହିଲେ, ବଙ୍ଗାଳୀଯାକଙ୍କୁ ଦେଶରୁ ଘଉଡ଼ାଇ ଦିଅ, ଓଡ଼ିଆଙ୍କର ଅଖଣ୍ଡ ରାଜ୍ୟ ହେଉ । ବଙ୍ଗାଳୀଭାଇମାନେ ମଧ୍ୟ ଚମକି ଗଲେ । ସେମାନେ କହିଲେ ଯେ ପୁରୁଷାନୁକ୍ରମେ ଯେଉଁ ଏକାଧିପତ୍ୟ କରିଅଛୁଁ, ତାକୁ ତୁମେ ଛଡ଼ାଇ ନେଲେ ଆମେ ଛାଡ଼ିବୁ କିଆଁ ? ଆମ ବଙ୍ଗାଳୀଙ୍କର ଜମି ଚଷିଲାବାଲା ଓଡ଼ିଆ ପ୍ରଜା, ମକଦ୍ଦମା କଲାବାଲା ଓଡ଼ିଆ ମକ୍କେଲ, ଦୁଧ ଯୋଗାଇଲାବାଲା ଓଡ଼ିଆ ଗଉଡ଼, ଅଇଁଠା ଚାଟିଲାବାଲା ଓଡ଼ିଆ ଚାକର, ହଜାମତ କଲାବାଲା ଓଡ଼ିଆ ଭଣ୍ଡାରି, ମାଛ ଦେଲାବାଲା ଓଡ଼ିଆ କେଉଟ, ମିଠାଇ ଦେଲାବାଲା ଓଡ଼ିଆ ଗୁଡ଼ିଆ, ଟଙ୍କା କରଜ ନେଲାବାଲା ଓଡ଼ିଆ ଖାତକ, ପାଇଖାନା ସାଫ କଲାବାଲା ଓଡ଼ିଆ ମେହେନ୍ତର, ଘରଭଡ଼ା ନେଲାବାଲା ଓଡ଼ିଆ ଦୋକାନଦାର, ଏମାନେ ଅଛନ୍ତି । ଏ ସମସ୍ତେ ତ ଆମ ପାଇଁ ଭୋଟ ଦେବେ । ଓଡ଼ିଆ ଶିକ୍ଷିତ ଗୋଟାକେତେ 'ଦ୍ୱାହି ଓଡ଼ିଶା ମାତା, ଦ୍ୱାହି ଓଡ଼ିଆ ଜାତି' କରି ଏମାନଙ୍କୁ ଆମ ରାଜ୍ୟକୁ ଛଡ଼ାଇ ନେଇପାରିବ ନାହିଁ । ମୋ ସାଙ୍ଗରେ ପରିଚିତ ପାଠକମାନେ ଆଗରୁ ମୋର 'ଦୋନାବଡ଼ିଆ' ନୀତି ତ ଠଉରାଇ ଅଛନ୍ତି । ମୁଁ ଗୋଟାଏ ମଝିମଝିକିଆ ବାଟ ଉଣ୍ଡି ଧଇଲି । ଓଡ଼ିଆରେ ଗୋଟାଏ ଢଗ ଅଛି, "ନା ସାଆନ୍ତ, ନା ସାଆନ୍ତ, ସାଆନ୍ତଙ୍କ ପାଖରେ ଥାଇ ସାଆନ୍ତ ।" ସେହିପରି ବଙ୍ଗାଳୀମାନଙ୍କୁ ମୁଁ ଦୁଇ ଶ୍ରେଣୀରେ ବିଭକ୍ତ କରିଅଛି । ୧ ବଙ୍ଗାଳୀ, ୨ ଥାଇ (ସ୍ଥାୟୀ) ବଙ୍ଗାଳୀ । ଯେଉଁ ବଙ୍ଗାଳୀମାନେ କାର୍ଯ୍ୟ ପ୍ରସଙ୍ଗରେ ଆଜି ଏଠାକୁ ଆସି ଏଠାରୁ କଳେ ବଳେ କୌଶଳେ ଯାହା ଗିଳନ୍ତି, ତାହା ପାକୁଳି କରିବା ସକାଶେ ଆପଣା ଦେଶକୁ ଚମ୍ପଟ କରନ୍ତି ଓ ପାକୁଳି ସରିଲେ ଫେର ଏଠାକୁ ଆସନ୍ତି ଓ ଏଠାରେ ଯାହା କିଛି ଚଳନ୍ତି ଅଚଳନ୍ତି କରନ୍ତି, ତାହା କେବଳ ରୋଜଗାର ପାଇଁ ଭେକ, ସେମାନଙ୍କର ଓଡ଼ିଶା ହେଲା କୋଶଳା କିଆରି । ବିଜ୍ଞାନବେତ୍ତା ପାଠକମାନେ ଅବଶ୍ୟ ଜାଣନ୍ତି ଯେ ପୋଖରୀରେ ଦିଓଟି ଗୋଟିଏ ଯୋକ ଛାଡ଼ି ଦେଲେ ଅଳ୍ପଦିନ ମଧ୍ୟରେ ସେମାନଙ୍କର ସଂଖ୍ୟା ବଢ଼ିଯାଏ । ଅତଏବ ଏ ଶ୍ରେଣୀର ବିଦେଶୀ ଥରେ ଘରେ ପଶିଲେ ସେମାନେ ବେଳକାଳ ଉଣ୍ଡି ଆପଣାର ଶଳାର ପୁଅ, ପିଇସୀ ପୁଅ, ମାଉସୀ ପୁଅ, ପୁତୁରାର ଶଳାର ଝିଆରୀର ଭଣଜା, ମଉଳାଶୁରଙ୍କର ଭାଇର ପୁଅ, ଜ୍ୱାଇଁଙ୍କର ମାସ୍‌ତୋର ପୁଅ ଇତ୍ୟାଦି ଅନେକ କିସମର ଜୀବଙ୍କୁ ଆଣି ଖଞ୍ଜାଖଞ୍ଜରେ ପୂରାନ୍ତି ଓ ଚାହୁଁ ଚାହୁଁ ଆମ ଦାନା ମାରନ୍ତି । ଏ ଶ୍ରେଣୀଙ୍କ ପ୍ରତି ପ୍ରତ୍ୟେକ ଦେଶହିତକାମୀ ଦେଶୀୟ ବ୍ୟକ୍ତିଙ୍କର ନଜର ରହିବା ଆବଶ୍ୟକ ।

ଏହିଠାରେ ଗୋଟାଏ ଅବାନ୍ତର କଥା କହିଲେ ଆପଣମାନେ ଆମ ଅବସ୍ଥାକୁ ଠିକ୍ ଠଉରାଇ ନେବେ । ଗୋଟିଏ ବଡ଼ ଷ୍ଟେଟର ମେନେଜରର କାମ ନିମନ୍ତେ କେହି ଓଡ଼ିଆ ରାଜି ହେଲେ ନାହିଁ କିମ୍ବା ମିଳିଲେ ନାହିଁ । ସେଥିପାଇଁ ଜଣେ ବିଦେଶୀ ଆସି ସେ କାମ ଚଳାଇଲେ । ଦିନେ ଘଟନାକ୍ରମେ ମୁଁ କୌଣସି ହାକିମଙ୍କ ନିକଟକୁ ଯାଇଥିଲି । ସେ ପଚାରିଲେ, କିହୋ ! ଏ କାର୍ଯ୍ୟ ନିମନ୍ତେ କେହି ଜଣେ ଉପଯୁକ୍ତ ଲୋକ ନ ମିଳିବାରୁ ଜଣେ ବିଦେଶୀ ଲୋକ ଆଣିବାକୁ ହେଲା, କିନ୍ତୁ ତୁମେ ଓଡ଼ିଆଯାକ କିଛି ଦିନ ବାଦ ହୁରି ପକାଇବ - 'ଆରେ ଖାଇଗଲେ ହୋ ! ଆରେ ବୋହିନେଲେ ହୋ' ! ମୁଁ ଉତ୍ତର କଲି, ''ଆମ ଦେଶରେ ଯେବେ କୌଣସି କାର୍ଯ୍ୟ ନିମନ୍ତେ କେହି ଉପଯୁକ୍ତ ବ୍ୟକ୍ତି ନ ମିଳିଲା, ତେବେ ଉକ୍ତ କାର୍ଯ୍ୟ ନିମନ୍ତେ ଜଣେ ବିଦେଶୀ ଯୋଗ୍ୟ ଲୋକ ଆଣିବା ଆବଶ୍ୟକ । ଆମର ସେଥିପାଇଁ ପରେଇ ନାହିଁ । କିନ୍ତୁ ଆମର ଭୟ ହାତ ପଶୁ ପଶୁ ବାହା ପଶିବାପାଇଁ । ଯୋଗ୍ୟଲୋକ ଯୋଗ୍ୟତା ଅନୁସାରେ ଥିଲେ କାହିଁକି ଶହେଥର ପୂଜା ପାଉ । କିନ୍ତୁ ଚାହୁଁ ଚାହୁଁ ଷ୍ଟେଟର ମାଲିମକଦ୍ଦମାମାନ ଚଳାଇବା ସକାଶେ ପାରଙ୍ଗମ ଦେଶୀ ଓକିଲ ମୁକ୍ତାର ଥାଉଁ ଥାଉଁ ମେନେଜରଙ୍କର ଜ୍ୱାଁଇ, ମାସ୍ତୁତୋ, ପିସ୍ତୁତୋମାନେ ପ୍ରଶ୍ରୟ ପାଇବେ, ଉକ୍ତ ଷ୍ଟେଟର କୋଠା ଆଦି କରିବା ସକାଶେ ଓଡ଼ିଶାରେ କଣ୍ଟ୍ରାକ୍ଟର ମିଳିବେ ନାହିଁ, ଷ୍ଟେଟକୁ କରଜ ଦେବା ନିମନ୍ତେ ଓଡ଼ିଶାରେ ମହାଜନ ଜୁଟିବେ ନାହିଁ, ଷ୍ଟେଟର ଅନାବାଦୀ ଜମି ଆବାଦ କରିବାକୁ ଓଡ଼ିଶାରେ ରଇତ ମିଳିବେ ନାହିଁ - ଏମନ୍ତ କି ଷ୍ଟେଟର ଅର୍ଦଳି ଚପରାସୀ ହେବା ନିମନ୍ତେ ଓଡ଼ିଶାରେ ପିଆଦାଟିଏ ସୁଦ୍ଧା ମିଳିବ ନାହିଁ ! ଆମର ଏହି କଥାକୁ ଭୟ ! ଯୋଗ୍ୟ ଲୋକ ଯୋଗ୍ୟ ଆସନ ପାଉ - ସେଥିରେ ଯେ ଆପତ୍ତି କରେ ସେ ପରଶ୍ରୀକାତର, ସେ ନିନ୍ଦୁକ, ସେ ନୀଚଲୋକ; କିନ୍ତୁ ସଙ୍ଗେ ସଙ୍ଗେ ଯେ ଯୋକ ପଞ୍ଜାକର ଆମଦାନୀ ହେବ, ଗୋଟିଏ ଯୋକ ଦେଖିଲାକ୍ଷଣି ମୋ ମନରେ ଏହି କଥାର ଭୟ ହୁଏ ।'' ହାକିମ ମୋର ଏ କଥା ଶୁଣି ଟିକିଏ ହସିଲେ । କହିଲେ, ''ଗୋପାଳବାବୁ, ତୁମ କଥାକୁ ବାଏଁ ବାଏଁ ଉଡ଼ାଇ ଦେବାର ଜୁ' ନାହିଁ ।'' ମନ କଥାଟା ପଦାରେ ଫିଟାଇ ଦେଲେ ଟିକିଏ ସାନ୍ତ୍ୱନା ହୁଏ । ମୋର ମଧ୍ୟ ତାହା ଏଠାରେ କହି ରଖିବା ଉଚିତ ଯେ ବଙ୍ଗାଳୀ ଜାତି ଗୋଟିଏ ଆଦର୍ଶ ଜାତି ।

ବଙ୍ଗାଳୀ ଜାତି ଆମ ଅପେକ୍ଷା ଢେର ଉନ୍ନତ - ସେମାନଙ୍କଠାରୁ ଆମ୍ଭମାନଙ୍କର ଢେର ଶିଖିବାର ଅଛି - ସେମାନେ ଯୋଗ୍ୟତର ଓ ଯୋଗ୍ୟତର ବ୍ୟକ୍ତି ବଡ଼ଭାଇର ଆସନ ପାଉ ଓ ପାଇବା ସ୍ୱାଭାବିକ ଓ ସେମାନଙ୍କ ଭିତରେ ଶତ ଶତ ମହାନୁଭବ ବ୍ୟକ୍ତି ଅଛନ୍ତି । କିନ୍ତୁ ସେପରି ଦେବୋପମ ବ୍ୟକ୍ତି କ୍ୱଚିତ୍ ଏ ଦେଶକୁ ଆସନ୍ତି । ଯେ ଆସି ଆମ ତଣ୍ଟିରେ ଖୁର ଦିଅନ୍ତି, ଆମର ସେହିମାନଙ୍କୁ ଭୟ । ହେଲା - ଯାହାହେଉ ଛାଡ଼ ସେ କଥା । ଏ ହେଲେ ପ୍ରଥମ ଶ୍ରେଣୀ ବଙ୍ଗାଳୀ - ତା ପରେ ଦ୍ୱିତୀୟ ଶ୍ରେଣୀ - 'ଥାଇ ବଙ୍ଗାଳୀ' ଅର୍ଥାତ୍ ଓଡ଼ିଶାର ସ୍ଥାୟୀ ଅଧିବାସୀ ବଙ୍ଗାଳୀ । ଯେଉଁମାନଙ୍କର ପୂର୍ବପୁରୁଷମାନେ

ଘଟନାକ୍ରମେ ବା ରୋଜଗାର ଉଦ୍ଦେଶ୍ୟରେ ବହୁକାଳ ପୂର୍ବେ ଏ ଦେଶକୁ ଆସି ଏହିଠାରେ ପୁରୁଷାନୁକ୍ରମେ ବସତି କରିଅଛନ୍ତି ଓ ଯାହାଙ୍କର ଭଲ ମନ୍ଦ ସଙ୍ଗେ ଓଡ଼ିଆଙ୍କର ଭଲମନ୍ଦ ଏକା ଛାଞ୍ଚରେ ବହୁ ପୁରୁଷ ହେଲା ଢଳା ହେଲାଣି ଓ ଯାହାଙ୍କର ବଙ୍ଗ ଦେଶରେ ବାସ୍ତୁର ଚିହ୍ନ ସୁଦ୍ଧା ନାହିଁ ଓ ଯାହାଙ୍କର ଘରଦ୍ୱାର, ଜମିବାଡ଼ି, ପ୍ରିୟାପ୍ରୀତି, କାରବାର ବେଭାର ଏହି ଦେଶରେ - ସେମାନେ ହେଲେ ଆମ ଦେଶର ସ୍ଥାୟୀ ଅଧିବାସୀ । ବୁଝିବାକୁ ଗଲେ ସେମାନେ ପ୍ରକୃତରେ ଓଡ଼ିଆ । ସେମାନଙ୍କୁ ସଭ୍ୟସମାଜ ଡାକେ Domiciled Oriya, ବଙ୍ଗଳାର ବଙ୍ଗାଳୀମାନେ ତାଙ୍କୁ ଡାକନ୍ତି 'କେରା', ସେମାନେ ନିଜ ନିଜକୁ ଡାକନ୍ତି 'Domiciled Bengali', ଓଡ଼ିଆମାନେ ତାଙ୍କୁ ଡାକନ୍ତି 'ବଙ୍ଗାଳୀ' । କିନ୍ତୁ ଧର୍ମ ଓ ଇତିହାସ ବିଚାରରେ ସେମାନେ ଓଡ଼ିଆଙ୍କ ମଧ୍ୟରେ ଗଣ୍ୟ ହେବା ଉଚିତ । କାରଣ ଆଜି ଯେଉଁମାନେ ଖାଣ୍ଟି ଓଡ଼ିଆ ବୋଲି ପରିଚିତ, ସେମାନଙ୍କର ଓଡ଼ିଶାରେ ଆଦିମ ନିବାସ ନ ଥିଲା । କେହି କାନ୍ୟକୁବ୍ଜ, କେହି ଗୌଡ଼, କେହି ଦ୍ରାବିଡ଼ ଇତ୍ୟାଦି ସ୍ଥାନରୁ ଆସି ଏଠାରେ ବହୁ ଶତାବ୍ଦୀରୁ ବସବାସ କରି ଆଜି ଓଡ଼ିଆ ବୋଲି ପରିଚିତ ହେଉଅଛନ୍ତି - ତେବେ ଏମାନେ ଓଡ଼ିଆ ବୋଲି ପରିଚିତ ନ ହେବେ କିଆଁ ? ଯେଉଁ ଦିନ ଏହି ଶ୍ରେଣୀର ବ୍ୟକ୍ତିଙ୍କୁ ଆମ୍ଭେମାନେ ଆମ ମଧ୍ୟରେ ଜଣେ, ଅର୍ଥାତ୍ ଓଡ଼ିଆ ବୋଲି ସୁମାରି କରି ଆମ ଦୁଃଖସୁଖରେ ସେମାନଙ୍କୁ ଭାଗ ଦେବାକୁ କୁଣ୍ଠିତ ହେବୁଁ ନାହିଁ ଓ ଯେଉଁ ଦିନ ସେମାନେ ଆପଣାକୁ 'ଥାଇ-ବଙ୍ଗାଳୀ' ବୋଲି ପରିଚୟ ନ ଦେଇ 'ଓଡ଼ିଆ' ବୋଲି ପରିଚୟ ଦେବାକୁ ଲଜ୍ଜା ବୋଧ କରିବେ ନାହିଁ, ସେଦିନ ଓଡ଼ିଶାର ସୁଦିନ ବୋଲି କହିବାକୁ ହେବ । ନଚେତ୍ ଓଡ଼ିଶାର ଭବିଷ୍ୟତ୍ ଅମଙ୍ଗଳ ଓ ଉପସ୍ଥିତ ଅମଙ୍ଗଳର ଅଧିକାଂଶ ଭାଗ ଏହିମାନଙ୍କ ଦ୍ୱାରା ସଂଘଟିତ ହେବ - ଏଥିରେ ସନ୍ଦେହ ନାହିଁ । ସେମାନଙ୍କ ମଧ୍ୟରୁ କେତେ ଲୋକ ବିଚାରନ୍ତି ଯେ ଆପଣାକୁ ଓଡ଼ିଆ ବୋଲି ପରିଚୟ ଦେଲେ ତାଙ୍କ ମହତ ଯିବ ଓ ସେମାନେ ବଙ୍ଗାଳୀଙ୍କର ସ୍ନେହ ପାଇବେ ନାହିଁ । ଏଥି ସକାଶେ ସେମାନେ ଭିତରେ ଭିତରେ ଓଡ଼ିଶାରେ ବଙ୍ଗାଳୀଙ୍କର ଆଧିପତ୍ୟର ମୂଳଦୁଆରେ ମାଟି ପକାଉଅଛନ୍ତି ଓ ଚାକିରି, ବୃତ୍ତି ଏବଂ ଅନାହାରୀ ତେଲସାଉଁଳିଆ ପଦ ପାଇଲା ବେଳକୁ ଆପଣାକୁ ଓଡ଼ିଶାର ସ୍ଥାୟୀ ଅଧିବାସୀ ବୋଲି ପରିଚୟ ଦେଉଅଛନ୍ତି । କାମହାସଲ କରିସାରିଲା ପରେ 'ଯଥୈବାସ୍ତେ ତଥୈବାସ୍ତାଂ' କରୁଅଛନ୍ତି । ଯେତେଦିନଯାକେ ଏ ଅବସ୍ଥା ଆମ ଦେଶରୁ ନ ଯିବ, ସେତେଦିନ ପର୍ଯ୍ୟନ୍ତ ଓଡ଼ିଶାରେ ବଙ୍ଗାଳୀ ପ୍ରାଧାନ୍ୟ ଷୋଳକଳାରେ ବିରାଜମାନ କରୁଥିବ, ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ଓଡ଼ିଶାର କେତେଗୁଡ଼ିଏ ଅମଙ୍ଗଳରେ ଏହି ଦୋମିଶାଙ୍କର ଓସ୍ତାଦି ପେଞ୍ଚ ପୂର୍ଣ୍ଣଭାବରେ ଦେଖା ଯାଉଅଛି । ଚାକିରି ପାଇଲା ବେଳକୁ ଓଡ଼ିଆ ପୁଅଙ୍କ ସାଙ୍ଗରେ ଭାଗ ବସାଇବାକୁ ମୁସ୍ତେଜ । ଭୋଟ ଦେଲା ବେଳକୁ ବଙ୍ଗାଳୀଙ୍କ ପାଇଁ ଭୋଟ ଦେବେ । ଏହି ଶ୍ରେଣୀ ମଧ୍ୟରେ ସମସ୍ତେ ଯେ ଏହି

ନୀଚତାରେ ବୁଡ଼ିଅଛନ୍ତି, ଏହା କହିବାର ମୋର ଉଦ୍ଦେଶ୍ୟ ନୁହେଁ । ପ୍ରାତଃସ୍ମରଣୀୟ ରାଧାନାଥ, ପ୍ୟାରୀମୋହନ, ଗୌରୀଶଙ୍କର, ଜଗନ୍ମୋହନ ଏମାନେ ଯେଉଁ ଆଦର୍ଶ ଦେଖାଇଅଛନ୍ତି, କେତେ ଜଣ 'କେରା' ତାହା ଅନୁସରଣ କରୁଅଛନ୍ତି ? ଯେତେ ଜଣ ଭାଇ ତାହା ଅନୁସରଣ କରୁଅଛନ୍ତି, ସେମାନେ ମୋର ନମସ୍ୟ ଓ ସ୍ନେହପାତ୍ର । ସେମାନଙ୍କ ସ୍ନେହ ନିମନ୍ତେ ମୁଁ ନିଜକୁ ଧନ୍ୟ ବୋଲି ମନେ କରେଁ । କିନ୍ତୁ ବର୍ତ୍ତମାନ ଓଡ଼ିଶାର ବଙ୍ଗାଳୀ ପ୍ରାଧାନ୍ୟର ମୂଳରେ ଦେଶଦ୍ରୋହୀ ଦୋମିଶାମାନଙ୍କର ପ୍ରଭାବ ଓ ପରାକ୍ରମ ବିରାଜିତ ରହିଅଛି । ମୋର କ୍ଷୁଦ୍ର, ଅନୁଭବରେ ମୁଁ ଏହା ଠଉରାଇଅଛି । ମୋର ବ୍ୟକ୍ତିଗତ ଅନୁଭବ ଭ୍ରାନ୍ତିରେ ପରିଣତ ହେଉ, ମୁଁ ଏହାହିଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଅଛି । ଆପାତତଃ ଏହି ୫।୭ ବର୍ଷର ଘଟନାରୁ ମୁଁ ଦେଖିପାରିଅଛି ଯେ ଏହି ଅନ୍ତର୍ବିବାଦ ଯୋଗୁଁ ଆମ ଦେଶରେ ଅନେକ ଅମଙ୍ଗଳ ଘଟିଅଛି । ଗତ ବ୍ୟବସ୍ଥାପକ ସଭାର ସଭ୍ୟ ନିର୍ବାଚନ, କଟକ ମ୍ୟୁନିସିପାଲ କମିସନର ନିର୍ବାଚନ, କଟକ ମ୍ୟୁନିସିପାଲିଟି ଚେଆରମାନ ଓ ଭାଇସ-ଚେଆରମାନ ନିର୍ବାଚନରୁ ମୋର ଅନେକ ଅଭିଜ୍ଞତା ଜନ୍ମିଅଛି । ଅନେକ ସ୍ଥଳରେ ଆମ୍ଭେମାନେ ଆମ୍ଭମାନଙ୍କ ନ୍ୟାଯ୍ୟ କିସମତରୁ ଫାଙ୍କି ପାଉଅଛୁଁ । ଓଡ଼ିଶାର ସ୍ଥାୟୀ ଅଧିବାସୀମାନଙ୍କୁ ଆମ୍ଭେମାନେ ସବୁ ସ୍ଥାନରେ ଭାଇ ପରି ବ୍ୟବହାର କରିବା ଆବଶ୍ୟକ, ଏକଥା ମୁଁ କେତେ ଓଡ଼ିଆଭାଇଙ୍କୁ ବୁଝାଇବାକୁ ଯାଇ ମତେ ଏକଘରକିଆ ହେବାକୁ ପଡ଼ିଅଛି ଓ ଦେଶୀବଙ୍ଗାଳୀମାନଙ୍କୁ (ଏ ଶବ୍ଦଟା ସୁନାର ପଥର ବାଟି, କାଠାଲେର ଆମସତ୍ତ୍ୱ ଇତ୍ୟାଦି ଶ୍ରେଣୀର) ମୁଁ ଏହି ବିଷୟ ଉପଲବ୍ଧି କରାଇବାକୁ ଚେଷ୍ଟା କରି ବିଦେଶୀ ବଙ୍ଗାଳୀଙ୍କର ଶତ୍ରୁ ହୋଇଅଛି । ପୁଣି କେତେକ ସ୍ଥାୟୀ ବଙ୍ଗାଳୀ ଭାଇ ଯେତେବେଳେ ବାହାରେ ଏକ ରୂପ ଓ ଭିତରେ ଏକ ରୂପ ଏପରି ଦୁଇ ରୂପ ଦେଖାଉ ଅଛନ୍ତି, ସେତେବେଳେ ମୁଁ ଜାଣିପାରୁଅଛି ଯେ ସେମାନେ କେବଳ ଆପଣାର ଉପସ୍ଥିତ କାର୍ଯ୍ୟ ଉଦ୍ଧାର କରିବା ଓ ଓଡ଼ିଆଙ୍କର ସହାନୁଭୂତି ପାଇବା ସକାଶେ ମୁହେଁ ମୁହେଁ ମୋ ଆଗରେ 'ହାଁ' ଜୀ' 'ହାଁ'ଜୀ କରୁଅଛନ୍ତି । ବର୍ତ୍ତମାନ ଆମ ସମସ୍ତଙ୍କର ଜାଣିବା ଉଚିତ ଯେ ଓଡ଼ିଶାରେ ବର୍ତ୍ତମାନ ଏ ଗୋଟିଏ ଗୁରୁତର ସମସ୍ୟା । ଏହାର ସାଧନ ଉପରେ ଉତ୍କଳର ଭବିଷ୍ୟଦ୍ ମଙ୍ଗଳ ଅମଙ୍ଗଳ ଅନେକ ପରିମାଣରେ ନିର୍ଭର କରୁଅଛି ।

ଅବଶ୍ୟ କେତେ ଜଣ ପ୍ରାତଃସ୍ମରଣୀୟ ବ୍ୟକ୍ତି ସେମାନଙ୍କ ମଧ୍ୟରେ ଅଛନ୍ତି, ଯେଉଁମାନେ ଏ ଅବସ୍ଥା ଓ ମନର ଭାବ ଦୂର କରିବାପାଇଁ ଦିନରାତି ଚେଷ୍ଟା କରୁଅଛନ୍ତି, କିନ୍ତୁ ଏ ଭାବଟା ଅଳ୍ପ ବ୍ୟକ୍ତିଙ୍କଠାରେ ଆବଦ୍ଧ । ଓଡ଼ିଆ ଓ ଦେଶୀ ବଙ୍ଗାଳୀ ଉଭୟ ଦଳ ଭିତରେ ଅନେକ ସ୍ୱାର୍ଥାନ୍ଧ ବ୍ୟକ୍ତି ଏଥିପ୍ରତି ନଜର ରଖୁ ନ ଥିବା ବଡ଼ ଆକ୍ଷେପର ବିଷୟ । ଏତଦ୍ୱାରା ସେମାନେ ଆପଣା ସ୍ୱାର୍ଥ ଉପରେ କୁଠାରାଘାତ କରୁଅଛନ୍ତି । ଏ ଅବସ୍ଥା ଦୂର ହେବା ବିଷୟରେ ସବୁ ଦଳର ନେତା, ଉପନେତା, ଅଭିନେତାମାନଙ୍କୁ ମୁଁ ଓ ମୋ ଭଳି

କେତେଟା ନଗଣ୍ୟ ବ୍ୟକ୍ତି ହାତ ଯୋଡ଼ି ପ୍ରାର୍ଥନା କରୁଅଛୁଁ । ଶୁଣିବା ନ ଶୁଣିବା ତୁମ ଇଚ୍ଛା । ଛାଡ଼, ଢିଙ୍କିଶାଳରୁ ଆସି ଢେଙ୍କାନାଳରେ ପହଞ୍ଚିଗଲି । ଏଣେ ପୋଥି ବଢ଼ିଲା, ଏଥିପାଇଁ ସମ୍ପାଦକ ତ ସମ୍ଭାଳିଲେ ହୁଏ ।

• ମୁଁ କହୁଥିଲି ଯେ, ଗତ ମ୍ୟୁନିସିପାଲିଟି ନିର୍ବାଚନ ସମୟରେ ପ୍ରାର୍ଥୀମାନେ ଖଞ୍ଜାଖାଞ୍ଜି ଦେଖି ଶିରରେ ଚଡ୍ଡୁ ଦେଲେ । କିଏ କହିଲା ୟାକୁ ତଡ଼, କିଏ କହିଲା ତାକୁ ତଡ଼ । ଈଶ୍ୱରଙ୍କ ରାଜ୍ୟରେ ଯାହା ହେବାର ତାହା ହେଲା । ଏ ଦଳ ସେ ଦଳ ଭିତରେ ଯେଉଁ ପ୍ରାର୍ଥୀ କେତେଟା ନିଆଁ ଲଗାଇଥିଲେ, ସେ ଜଣକେତେ କହୁଣିଆ ତଡ଼ାଟାମାନ ପାଇ କାଠମୁହଁ ବାନ୍ଧିଲେ । ପହେଲମାନ ମାଙ୍କଡ଼ଚିତି ଖାଇ କହିଲା ଭଳି କହି ପକାଇଲେ, "ଆମେ ସିନା ହାରିଲୁଁ, ଏଇ ବି ଏକ କସରତ୍ ।" ଯେଉଁମାନେ ଜିତିଲେ ସେମାନଙ୍କ ବାହ୍ୱ, ଅଣ୍ଟା, ପିଠି, ପେଟ, କାନ, ନାକ ସମସ୍ତ ଦିନାକେତେ ଚେଇଁ ଉଠିଲେ । ଯେ ହାରିଗଲେ ସେ କହିଲେ, "ଛି ! ଛି ! ରାମ ! ରାମ ! ଏତିକି ଅସନାରେ ପଶିବ ! ନ ହେଲା ପଛକେ ନାହିଁ ! ଭଲ ହେଲା, ମୋର ଖୋଷଣି ଫିଟାନ୍ତା କିଏ ? ଦୁଆର ଦୁଆର ବୁଲି ତୋଡ଼ ଧରନ୍ତା କିଏ ?" ଯେ ଜିତିଲେ ସେ କହିଲେ, "ଦେଖ ! ଆମକୁ ଜିତି ଯିବାକୁ ବସିଥିଲା ! ଆମେ କଣ ଛାଡ଼ିବା ? କିନ୍ତୁ ମହାପ୍ରସାଦଠାରୁ ଆରମ୍ଭ କରି ସତ୍ୟନାରାୟଣ ପୂଜା ପର୍ଯ୍ୟନ୍ତ ଆମେ ସବୁ କଦର ଜାଣୁ ! ଯେ ମହାପ୍ରସାଦରେ ନ ଫଳିଲା, ତାକୁ ପଲାଉ ବୋତଲରେ ଅକ୍ତିଆର କଲୁଁ ।" ଏହିପରି କମିଶନର ନିର୍ବାଚନ କାଣ୍ଡ ଶେଷ ହେଲା । ତା ପରେ 'ବାଘ ଘୋଷରା' ଅଭିନୟ ହେଲା । ଲାଗିଲା ବାଦିପାଲା, ଦାଏକା, ଚଉପଦୀ ! ଜଣେ ଦୁଇଜଣ ଟଣାଓଟରା ହୋଇ ଦାଣ୍ଡକୁ ଆସିଲେ । ଫେର ପଛକୁ ଆପଣା ବେକୁଫି ବୁଝିପାରି ଯେଝା ଘରକୁ ଫେରିଗଲେ । ଏହି ଅବସରରେ ଅନାହାରୀ ପଦର ଯୁମକ ନିଶାର ମଉଜ ଯେ ବୁଝିଅଛନ୍ତି, ସେ କ୍ଷଣକାଳ ସେହି ମଉଜ ଭୋଗ କରିନେଲେ । ତହୁଁ ପଡ଼ିଲା ଚେଆରମାନ, ଭାଇସ୍ ଚେଆରମାନ ନିର୍ବାଚନର ପାଳି । ଏଥିରେ ମଧ ସେହି ଦଳାଦଳି, ସେହି ସ୍ୱାର୍ଥଖେଳ । କେତେ ଭାଇ ଆପଣା ସ୍ୱାର୍ଥକୁ ହାବିଳି ଭଳିଆ ଛାଡ଼ି ଦେଲେ; ଜଣେ ଆଉ ସମ୍ଭାଳି ହୋଇପାରିଲେ ନାହିଁ - ଦିନେ କଥାପ୍ରସଙ୍ଗରେ ମୋ ଆଗରେ କହି ପକାଇଲେ, "ଆରେ କମିଶନର ନିର୍ବାଚନବେଳେ ଶହେ ଶହେ ଛୋଟଲୋକ ଭୋଟରଙ୍କ କଥା ଓ ଅଙ୍ଗୀକାର ଉପରେ ଯେତେଦୂର ବିଶ୍ୱାସ କରାଯାଉଥିଲା, ବର୍ତ୍ତମାନ ଜଣକେତେ ଶିକ୍ଷିତ, ପଦସ୍ଥ, ଭଦ୍ର ବଡ଼ଲୋକଙ୍କ କଥାରେ ତହିଁରୁ କାଣିଚାଏ ସୁଦ୍ଧା ବିଶ୍ୱାସ କରାଯାଇପାରୁ ନାହିଁ । ମୁଁ ଜବାବ ଦେଲି, ଏହାହିଁ ଆଧୁନିକ ସଭ୍ୟତାର ମାହାତ୍ମ୍ୟ । ଫଳ କଥା ଦେଖିଲି ଯେ - ଛୋଟଲୋକଙ୍କର ମୁହଁ ଗୋଟାଏ, ବଡ଼ଲୋକଙ୍କର ସେ ଅଙ୍ଗଟା କାହାର ନଦାରଦ, କାହାର ବା ପେଟ ପୂରାଇବା ପାଇଁ ଗୋଟାଏ ଜଳା ମାତ୍ର । ଯାହାହେଉ, ଯେନତେନ

ପ୍ରକାରେଣ ନିର୍ବାଚନ କାମଟା ସମାଧାନ ହୋଇଗଲା । ସେହି ସମୟରେ ଜଣେ ବଡ଼ଲୋକ ବଙ୍ଗାଳୀ-ଓଡ଼ିଆ - କଜିଆ-ସମସ୍ୟାର ଯେପରି ମୀମାଂସା କରିବାକୁ କମିସନର ଭାଇମାନଙ୍କୁ ଉପଦେଶ ଦେଲେ, ସେ ମୂଲ୍ୟବାନ୍ ଉପଦେଶ ମୋ ମନକୁ ଭାରି ଘେନି ଗଲା । ରାବଣ-ବିଭୀଷଣ-ପୌରାଣିକ ଯୁଗଠାରୁ ପୃଥ୍ୱୀରାଜ-ଜୟପାଳ-ଐତିହାସିକ ଯୁଗ ଲଗାଏତ 'ଦୁଇ ବିରାଡ଼ିଙ୍କର ଖଣ୍ଡେ ଛେନା ଯୋଗୁଁ କଜିଆରେ ନିକିତି ଘେନି ଭଲଲୋକ ହେବା ମାଙ୍କଡ଼' କଥାଯୁଗ ପର୍ଯ୍ୟନ୍ତ ଓ 'ରାମ ପ୍ରଧାନ, ଶ୍ୟାମ ପ୍ରଧାନର କଜିଆ ଡକରାଇ ହେଲେ ରାମ ପାଣ୍ଡେ, ଶ୍ୟାମ ରାଏ ଓକିଲଙ୍କୁ ପୋଷିବା' - ଦୈନିକ ଘଟନାଯୁଗ ପର୍ଯ୍ୟନ୍ତ ମୋର ଯୁଗଗୁଡ଼ାକ ଘଟନା-ଯୁଗ ମନରେ ଆଙ୍କି ହୋଇଗଲା । ଭାୟା ଆମର ବକ୍ରଭଙ୍ଗୀ କରି ସହାସ୍ୟ ମୁଖରେ ରାବି ଦେଲେ - "ଆରେ ହୋ ଭାଇମାନେ ! ବଡ଼ ଦୁଃଖର ବିଷୟ ଯେ ମ୍ୟୁନିସିପାଲିଟି ନିର୍ବାଚନ ଘେନି ଓଡ଼ିଆ-ବଙ୍ଗାଳୀ ବିବାଦ-ବହ୍ନିଟା ମାତ୍ର ଉଠିଅଛି । ତାକୁ ଶୀଘ୍ର ନିଭାଇବା ଦରକାର । ତାହା ନ ହେଲେ ଦେଶଟା ତମାମ ଭସ୍ମ ହୋଇଯିବ । ଦାହିକା ଶକ୍ତିଯୁକ୍ତ ଦୁଇ ଖଣ୍ଡ କାଠି ଘଷି ହେଲାରୁ ସିନା ନିଆଁ ବାହାରେ । ନିଆଁ ନିଭାଇବାର ଏକ ଉପାୟ ଶୈତ୍ୟଗୁଣ ବିଶିଷ୍ଟ ପାଣି । ଅତଏବ ଦୁଇ ଦେଶୀ ଲୋକଙ୍କ ମଧରେ କଜିଆ ହେଲେ ଉକ୍ତ କଜିଆ ନିବୃତ୍ତି କରିବାର ଏକମାତ୍ର ଉପାୟ ହେଲା ବିଦେଶୀ ଲୋକଙ୍କୁ ଆନୟନ ।" ଏ ଉପାୟଟା ମୋର ମୋଟା ବୁଦ୍ଧି ହେତୁରୁ ସେତେବେଳେ ମୁଁ ତାହାକୁ ଭଲକରି ଗିରଫ କରିପାରିଲି ନାହିଁ । ଯେତେବେଳେ ଏ ମୀମାଂସାର ମାଧୁର୍ଯ୍ୟ ଚୁମ୍ବିଲି ଅର୍ଥାତ୍ ଏଥିର ସାର ଗ୍ରହଣ କଲି, ସେତେବେଳକୁ ନିର୍ବାଚନ କାମ ସରିଲାଣି । ମନେ ମନେ ବିଚାରିଲି, ଏଟାଇ ଠିକ୍ ଆମ ଦେଶର ନ୍ୟାୟ - ଯାହାକୁ କହନ୍ତି ଭାରତର ଚିରନ୍ତନ କୋଦଣ୍ଡା ନିଶାପ ! ରାମା ତନ୍ତୀ, ଶାମା ତୂଳାଭିଣା ଓଟରା ଝିଙ୍କା ହୋଇ ଅଦାଲତ ବରଗଛ ଚଉତରା ମୂଳକୁ ଆସିଲେ ବୋଲି ସିନା ଆମ ଭଳିଆ ଯୋକଯାକ ତାଙ୍କ କଜିଆ ଭାଙ୍ଗିବାକୁ ଯାଇ ଆପଣା ପେଟରୁ ଓଦାକନା କାଢ଼ିଲୁଁ ଓ ଆପଣାର ଉତ୍ପାଦିକା ଓ ଦାହିକା ଶକ୍ତିକୁ ଜାଗ୍ରତ କଲୁଁ ? ଏ ନିଶାପ ଓ ଏଭଳି ମୀମାଂସା ଆମ ଭଳିଆ ଯୋକ ଶ୍ରେଣୀର ଲୋକଙ୍କୁ ଠିକ୍ ସାଜେ । ମୁଁ ମନେ ମନେ ବିଚାରିଲି, ଯେଉଁ ପ୍ରାର୍ଥୀଙ୍କ ପାଇଁ ଭାୟା ଏତେ ଲଢ଼ିଲେ, ତାଙ୍କର ତ ଅନ୍ୟାନ୍ୟ ଅନେକ ଗୁଣ ଅଛି । ସେଥିପାଇଁ ତାଙ୍କର ଦାବି ଅଗ୍ରଗଣ୍ୟ ବୋଲି ଭାୟା ଶହେଥର ଚିତ୍କାର କରିଥିଲେ, ସେଥିପାଇଁ କେହି ଆପତ୍ତି କରି ନ ଥାନ୍ତା । କିନ୍ତୁ ଅନ୍ତର୍ବିବାଦ ନିଭାଇବା ପାଇଁ ବାହାର ଲୋକକୁ ଆଣିବାର ଯୁକ୍ତିକୁ ମୁଁ ପ୍ରଥମେ ବାତୁଳତା ବା ବାସ୍ତୁରାପଣିଆ ବୋଲି ମନେକଲି । ଏ ଯୁକ୍ତିଟାର ଅନନ୍ତ ସୀମାରେ ମତେ କେଜାଣି କାହିଁକି ବ୍ୟକ୍ତିଗତ ଆକ୍ରୋଶ ବା ଅଦଉତି ଝାପ୍‌ସା ମାଲୁମ ହେଲା । ଫେର ବିଚାରିଲି, କଥାଟା ମୋ ମନକୁ ନ ମାନିଲା ବୋଲି ଯେ ସେ କଥା କିଛି ନୁହେଁ, ଏହା ବିଚାରିବା ମୋ ପକ୍ଷରେ ବାତୁଳତା । କାରଣ ଅଧିକାଂଶ ମନକୁ ତ ଏ କଥାଟା ଘେନିଲା । ଅତଏବ

ପଛକୁ ମୋ ମନକୁ ମଧ୍ୟ ଏ କଥାଟା ଘେନିଲା । ଯାହାହେଉ ନିର୍ବାଚନ କାର୍ଯ୍ୟ ସାଙ୍ଗ ହେଲା । ମୁଁ ପ୍ରଥମେ ହାରିଗଲି ବୋଲି ମୋ ଶିକଲ ଖସି ପଡ଼ିଥିଲା, କିନ୍ତୁ ଯେଉଁ ପକ୍ଷ ଜିତିଲେ ତାଙ୍କଠାରୁ ସ୍ନେହ ସଂବର୍ଦ୍ଧନା ଓ ଆଶ୍ୱାସନା ବାକ୍ୟ ଶୁଣି ମନ ଟିକିଏ ଶାନ୍ତ ହେଲା । ନିର୍ବାଚିତ ବ୍ୟକ୍ତିମାନଙ୍କ ଯୋଗ୍ୟତା ସମ୍ବନ୍ଧରେ ମୋର କୌଣସି ସନ୍ଦେହ ନାହିଁ । ସେମାନଙ୍କର ଅଭିଜ୍ଞତା ଅଛି, ସମୟ ଅଛି, ସୁବିଧା ଅଛି, ସମାଜରେ ଅଧିକାର ଅଛି । ସେମାନେ ଯେବେ ଇଚ୍ଛା କରିବେ ଓ ଅଦଉତି ଭାବକୁ ମନରେ ସ୍ଥାନ ନ ଦେଇ ଉଚ୍ଚ ନୀଚ ସମସ୍ତଙ୍କ ସଙ୍ଗେ ମିଳିମିଶି କର୍ତ୍ତବ୍ୟ କାର୍ଯ୍ୟ ସାଧନ କରିବେ, ତାହାହେଲେ ସ୍ୱାୟତ୍ତ-ଶାସନର ମର୍ଯ୍ୟାଦା ବୃଦ୍ଧି ହେବ, ଦେଶର ଉପକାର ହେବ, ଗରିବଗୁରୁବା ସୁଖରେ ବଞ୍ଚିବେ ଓ ଦେଶର ଦାବି ଉପେକ୍ଷିତ ହେବ ନାହିଁ । ଆଜି ମୁଁ ଯାହାଙ୍କୁ ନ ଜାଣି ଯାହାଙ୍କ ବିରୋଧରେ ହସ୍ତ ଉତ୍ତୋଳନ କରୁଅଛି, କାଲି ମୁଁ ତାଙ୍କୁ ବଳ ଦେବା ପାଇଁ ମୋ କ୍ଷୁଦ୍ର ଶକ୍ତିକୁ ତାଙ୍କରି ସାହାଯ୍ୟରେ ନିୟୋଜିତ କରିବି ଓ ଶେଷରେ ଯୋଗ୍ୟତାର ଜୟ ହେବ । ବ୍ୟକ୍ତିଗତ ପାର୍ଥକ୍ୟ ଓ ବୈରଭାବ ଦୂର କରି ସମସ୍ତେ ସାଧାରଣ କାର୍ଯ୍ୟରେ ପରସ୍ପରକୁ ସାହାଯ୍ୟ କରିବା ବୋଲି ତ ସରକାର ବାହାଦୂର ଆମ୍ଭମାନଙ୍କ ଜଗୁଆଳିସ୍ୱରୂପ ଦୁଆର ମୁହଁରେ ଠିଆ ହୋଇ ଆମ୍ଭମାନଙ୍କୁ ନିଜ ନିଜ କାର୍ଯ୍ୟ ବୁଝିବା ନିମନ୍ତେ ଯୋଗ୍ୟ କରାଇବା ପାଇଁ ସ୍ୱାୟତ୍ତ ଶାସନ ଆମ୍ଭମାନଙ୍କୁ ଶିକ୍ଷା ଦେଉଅଛନ୍ତି । ତାହା ନ କଲେ ଆମ୍ଭମାନଙ୍କର ମନୁଷ୍ୟପଣିଆ ନଦାରଦ । ଅତଏବ କି ସାହେବ, କି ବଙ୍ଗାଳୀ, କି ଓଡ଼ିଆ, କି ଦେଶୀ, କି ବିଦେଶୀ, କି ହିନ୍ଦୁ, କି ମୁସଲମାନ, କି ଖ୍ରୀଷ୍ଟିୟାନ ସମସ୍ତେ ନିମକସଚ୍ଚା ହୋଇ ମାତୃଭୂମି, ଜନ୍ମଭୂମି, ଚରାଭୂମି, ବସବାସଭୂମିର ଉପକାରରେ ଲାଗିବା । ଆମ୍ଭମାନଙ୍କ ଉପରେ ଜଗନ୍ନାଥ କଳିମୁଣି ନ ଝାଡ଼ି ଆଶୀର୍ବାଦମୁଣି ଝାଡ଼ିବେ । ଅନାହାରୀ ପଦରେ କର୍ତ୍ତବ୍ୟର ମାତ୍ରା ବେଶି । ନିଜର ଅର୍ଜିଲା ଅବୈତନିକ ଚାକିରିରେ ବେଶି ଖଟିବା ନିମନ୍ତେ ପ୍ରତ୍ୟେକ ପ୍ରାର୍ଥୀ ଧର୍ମତଃ ବାଧ୍ୟ । କବି କହିଅଛନ୍ତି, ''ଚିହ୍ନିବାକୁ ଶିଖି ନାହିଁ ପର ମନ - ସେ କି କେବେ ପ୍ରଭୁପଣକୁ ଭାଜନ !'' ପରର ମନକୁ ଚିହ୍ନ, ପର ଉପରେ ପ୍ରଭୁତା କର । ଅତଏବ 'All is well that ends well' ଯେଉଁ କାର୍ଯ୍ୟର ପରିଣାମ ସୁଖକର, ତାହାହିଁ କାର୍ଯ୍ୟ । ଆଉ ସବୁ କେବଳ ଲୋକଦେଖା ଓ ହାମବଡ଼ା ନୀତିର ବିଶେଷ କଥନ ମାତ୍ର ।

ପାଠକ ଓ ସମ୍ପାଦକ ମହାଶୟ - ପୋଥିଟା ବଢ଼ିଗଲା ପରା, କିନ୍ତୁ ସବୁ ତ ଫେର ମଧୁରେଣ ସମାପନ କରିବା ଦରକାର । ଭାଇ ଭାଇ ମଧ୍ୟରେ ଘରକଥା ଘରକଜିଆଗୁଡ଼ିକ ଖୋଲାଖୋଲି କଥାଭାଷା ହୋଇଗଲେ ପରିଣାମ ମଙ୍ଗଳମୟ ହୁଏ । ଅତଏବ କହିଲି - ପାଠକ ଅବଧାନ ! ଦଶହରା ପରେ ନମସ୍କାର । ଆଜି ଏତିକି ।

ଉତ୍କଳ ସାହିତ୍ୟ/୧୬ଶ ଭାଗ/୮ମ ସଂଖ୍ୟା/୧୩୨୦ ସାଲ ।

## ।। ତେୟାଳିଶ ।।

ପାଠକ ଅବଧାନ ! 'ଆପଣ ଅବଧାନ'ଙ୍କଠାରୁ ବିଦାୟ ନେବା ଦିନଠାରୁ ଓଡ଼ିଶାରେ ଅନେକ ଘଟନା ଘଟି ଯାଇଅଛି - ସେଗୁଡ଼ିକ ଆପଣମାନେ ଅବଶ୍ୟ ଶୁଣିଅଛନ୍ତି, କିନ୍ତୁ ମୋର ତ ଥରେ ଆପଣମାନଙ୍କ ନିକଟରେ ପାଞ୍ଜି ପଢ଼ିବା ଦରକାର । ଆପଣ ଶୁଣିବେ କି ନ ଶୁଣିବେ, ଆପଣଙ୍କୁ ପିତା ଲାଗିବ କି ଖଟା ଲାଗିବ, ତାହା ଦେଖିବାର ମୋର ଦରକାର ନାହିଁ କି ଭାବିବାର ଅବସର ନାହିଁ । ଆମ ଗ୍ରାମର ବନମାଳୀ ନାହାକ ବର୍ଷକେ ଥରେ ଦୋଳ ପୂର୍ଣ୍ଣିମା ଦିନ ଦୋଳବେଦୀଠାରେ ଆଗାମୀ ବର୍ଷର ନୂଆ ପାଞ୍ଜି ପଢ଼େ । ଗାଁର ବୁଢ଼ା ବୁଢ଼ା ମୁଖିଆଯାକ ନୂଆ ପାଞ୍ଜି ଶୁଣିବାକୁ ଯାଆନ୍ତି - ଆମେ ଟୋକାଯାକ ସେଠାକୁ ଯାଉଁ ବିଧି ରକ୍ଷା କରିବା ସକାଶେ ଓ ଫଗୁ ଖେଳିବା ସକାଶେ । କେହି ଶୁଣୁ ନ ଶୁଣୁ, ବନମାଳୀ ଅବଧାନ ପାଞ୍ଜି ଫିଟାଇ ନୂତନ ପାଞ୍ଜି ବୋଲିଯାଏ - ଚୌର ଭୟ ତେର ଭାଗ, ଖପର ପାଞ୍ଚ ଭାଗ, ବ୍ୟାଘ୍ର ଭୟ ସାତ ଭାଗ ଏକ ପା, ରୋଗ ତିନି ଭାଗ ଦି' ପା, ପାପ ପାଞ୍ଚ ଭାଗ ତିନି ପା, ଇତି ଭୟ ଚାରି ଭାଗ, ବୃଷ୍ଟି ସତର ଭାଗ, ଶସ୍ୟ ପାଞ୍ଚ ଭାଗ ଇତ୍ୟାଦି । ସେଗୁଡ଼ିକ ସଙ୍ଗେ ବାସ୍ତବ ଜଗତର ସମ୍ପର୍କ କେତେ, ସେ କଥା ବନମାଳୀ ଅବଧାନ ବୁଝେ ନାହିଁ କିମ୍ବା ଶ୍ରୋତାମାନେ ବୁଝନ୍ତି ନାହିଁ । ପାଠ ଡାକୁଛି, ଅତଏବ ସେହି ହିସାବରେ ବନମାଳୀ ଅବଧାନ ମଧ ଡାକିଯାଆନ୍ତି । ସେଥିନିମନ୍ତେ ଅବଧାନେ ଗ୍ରାମର କୋଠଫଣ୍ଡରୁ କିଛି ବୃତ୍ତି ଖଞ୍ଜା ମଧ ଖାଆନ୍ତି - ସେଥିପାଇଁ ଦୋଳଗୋବିନ୍ଦେ ରାଧିକାଙ୍କ ସଙ୍ଗେ ହୋରି ଖେଳିବା ସମୟରେ ପାଞ୍ଜି ଶୁଣିବା ସକାଶେ ତାଙ୍କର ଫୁରସତ ଥାଏ କି ନାହିଁ, ସେ କଥା ବନମାଳୀ ଅବଧାନ ବୁଝେ ନାହିଁ । ଆମର ମଧ ସେହି ଅବସ୍ଥା - ପତ୍ରିକାର ଲେଖକମାନେ ହେଲେ ସମ୍ପାଦକଙ୍କର ଜାଗିରିଖିଆ ବନମାଳୀ ଅବଧାନ  ଦୋଳଘଡ଼ି ହେଲା, ପାଞ୍ଜି ବୋଲିବା ସକାଶେ ଅବଧାନଙ୍କୁ ଡାକ । ଅବଧାନ ଆଇନ ଅନୁସାରେ ବାଧ - ଯେବେ ଦୈବଦୁର୍ବିପାକରୁ କିମ୍ବା ପେଟବିକଳରୁ ଅବଧାନେ ସେତିକିବେଳେ ବାରଦ୍ୱାର ବୁଲାପାଇଟି ସାରି ନ ଥାଆନ୍ତି, ତେବେ ଆଗାମୀ ଚଇତ ମାସକୁ ଅବଧାନଙ୍କ ଜାଗିରି ଖଣ୍ଡକରେ ଗ୍ରାମ ମହାଜନଙ୍କର କୋଠହଳ ହାଜର ହେବ । ଏଥିକୁ ଅବଧାନେ ଡରିହରି ଆଗରୁ ଆପଣା ବାଟ ଓଳାଇ ରଖିଥାନ୍ତି ।

ଲେଖକଙ୍କର ମଧ ସମୟ ସମୟରେ ଏପରି ଗରହାଜିରି ପଡ଼ିଯାଏ । ସେଥିପାଇଁ ଭଲା ସମ୍ପାଦକଙ୍କ ମାଡ଼ ସମ୍ଭାଳି ହୁଏ, କିନ୍ତୁ ପାଠକମାନଙ୍କର ସେଥିପାଇଁ ଦାଉ ବେଶି । ତେବେ ଏତକ ସଂବର୍ଦ୍ଧନା କରିବାର ମତଲବ ଏହି କି, ଦିନକ ଭିତରେ ଥରେ ଦୁଇ ଥର ଭର୍ତ୍ତି କରାଯିବା ନିମନ୍ତେ ସାଧାରଣ ମନୁଷ୍ୟଙ୍କ ଭଳିଆ ଲେଖକମାନଙ୍କ ଅଙ୍ଗରେ ମଧ ଗୋଟାଏ ଗହ୍ୱର ଅଛି । ସେ ଗହ୍ୱରଟି ଦିନ ଭିତରେ ଦୁଇ ଥର ଉଝଲା ହେଲେ ତାଙ୍କର ଅଠା ଠିକ୍ ହୋଇଯାଏ । ଏଥି ସକାଶେ ଲେଖକମାନଙ୍କୁ ମଧ ଦୁନିଆରେ ପେଟଚିନ୍ତା କରିବାକୁ ହୁଏ ଓ ସେହି ସଂଗ୍ରାମରେ ହାଉଳି ଖାଇ କେତେ ଲେଖକ ଲେଖା ଛାଡ଼ି ଦିଅନ୍ତି ଓ କେହି କେହି ମାମୁଘର ମଧ ଦେଖନ୍ତି । ଏ ଗଲା କୈଫିୟତ୍ ।

ବର୍ଷକେତେ ହେଲା ଓଡ଼ିଶାର ଗୋଟିଏ ଗୋଟିଏ ନକ୍ଷତ୍ର ଖସୁଅଛନ୍ତି । ପାରଳାର ସେକଣ୍ଡ ପ୍ରିନ୍ସ - ରାମଚନ୍ଦ୍ର ମୁଦ୍ଭାର, ଚନ୍ଦ୍ରଶେଖର, ରାଧାନାଥ, ମହାରାଜ ରାମଚନ୍ଦ୍ର, ଏହିପରି ଗୋଟି ଗୋଟି ହୋଇ ଖସିଲେ । ତାହୁଁ ତାହୁଁ ଓଡ଼ିଶା ରାୟ ମଧୁସୂଦନଙ୍କୁ ହରାଇଲା । ମୁଁ ରାୟ ମଧୁସୂଦନଙ୍କ ମୃତ୍ୟୁଶଯ୍ୟା ନିକଟରେ ଉପସ୍ଥିତ ହେଲାବେଳେ "ଅଦ୍ୟ ଧାରା ନିରାଧରା, ନିରାଲମ୍ବା ସରସ୍ୱତୀ, ପଣ୍ଡିତାଃ ଖଣ୍ଡିତାଃ ସର୍ବେ ଲୋକରାଜେ ଦିବଂଗତେ" ଶ୍ଲୋକଟି ମୋର ମନେପଡ଼ିଲା । ମୃତ୍ୟୁର ସେ ସୌମ୍ୟ ମୂର୍ତ୍ତିକୁ ଦେଖି ମୃତ୍ୟୁ ପ୍ରତି ମୋର ଯାହା ଗୋଟାଏ ସ୍ୱାଭାବିକ ଭୟ ଥିଲା, ତାହା କେଉଁଆଡ଼େ ଉଭେଇ ଗଲା । ରାଓ ଓଡ଼ିଶାରେ ସର୍ବତ୍ର ଆଦରର ଧନ ଥିଲେ । ସାହିତ୍ୟ କ୍ଷେତ୍ରରେ, ଶିକ୍ଷା ବିଭାଗରେ, ଭକ୍ତି-ସାହିତ୍ୟରେ ତାଙ୍କର ନାମ ଉତ୍କଳର ଘରେ ଘରେ ସର୍ବତ୍ର ଘୋଷିତ ହେଉଥିଲା । ତାଙ୍କର ଗାର୍ହସ୍ଥ୍ୟ ଜୀବନ ଆଦର୍ଶ ଜୀବନ ଥିଲା । ତାହାଙ୍କର ନୈତିକ ଚରିତ୍ର ବିଶୁଦ୍ଧ ଥିଲା, ସ୍ୱଭାବ ଅତି ପବିତ୍ର ଥିଲା । ଏ ସବୁ ଯେଉଁମାନେ ଜୀବନରେ ମଧୁସୂଦନଙ୍କ ସହବାସ ଦ୍ୱାରା ଅନୁଭବ କରିଅଛନ୍ତି, ସେମାନେ ତାଙ୍କ ବିୟୋଗ ଦ୍ୱାରା ଜୀବନରେ ଯେ ଗୋଟିଏ ଶୂନ୍ୟତା ଅନୁଭବ କରିଅଛନ୍ତି, ଏହା ବୋଲିବା ବାହୁଲ୍ୟ ମାତ୍ର । ଉତ୍କଳଭାଷୀ ପ୍ରଦେଶରେ ମଧୁସୂଦନଙ୍କର ଗୋଟିଏ ନୈତିକ ରାଜତ୍ୱ ପ୍ରତିଷ୍ଠିତ ଥିଲା । ସେ ସ୍ଥାନ ଅପୂର୍ଣ୍ଣ ରହିଲା ଓ ବର୍ତ୍ତମାନ ରହିବ । ନୈତିକ ଉନ୍ନତ ଜୀବନ କିପରି ଅନ୍ତିମ କାଳରେ ମଧୁର ଭାବରେ ସମାପ୍ତ ହୁଏ, ତାହା ମଧୁସୂଦନଙ୍କ ମୃତ୍ୟୁଶଯ୍ୟାଶାୟିତ ପ୍ରସନ୍ନ ବଦନରୁ ସମସ୍ତ ଦର୍ଶକ ଅନୁଭବ କରିଅଛନ୍ତି । ତାଙ୍କ ଜୀବନ ଅମୃତମୟ ଥିଲା ଓ ତାଙ୍କର ମୃତ୍ୟୁ ଅମୃତମୟ ହୋଇଥିଲା । ଶିକ୍ଷା ବିଭାଗରେ ସେ କଣ କରି ଯାଇଅଛନ୍ତି, ଉତ୍କଳ ସାହିତ୍ୟରେ ତାଙ୍କ ସ୍ଥାନ କେଉଁଠାରେ, କଟକ ଟାଉନ ସ୍କୁଲର ସ୍ଥାପୟିତା ଓ କର୍ତ୍ତାସ୍ୱରୂପ ସେ କେତେ ଶତ ବାଳକଙ୍କର ଶିକ୍ଷାଦ୍ୱାର ଖୋଲି ଦେଇଅଛନ୍ତି, ଧର୍ମ ଓ ନୀତିରେ ସେ କେତେଦୂର ଅଗ୍ରସର ହୋଇଥିଲେ, ଉତ୍କଳରେ ବ୍ରାହ୍ମଧର୍ମର ଓ ବ୍ରାହ୍ମ-ସମାଜ-ଭାବର ପରାକ୍ରମ ବିସ୍ତାର ସମ୍ବନ୍ଧରେ ସେ କଣ କରିଅଛନ୍ତି, ଏ ସବୁ ତନ୍ନ ତନ୍ନ କରି ଘୋଷଣା କରିବାର ଏ ସ୍ଥାନ ନୁହେଁ । ବ୍ୟକ୍ତିଗତ ଭାବରେ ମୁଁ ତାହାଙ୍କର ବାତ୍ସଲ୍ୟରେ ଆପ୍ଲୁତ ହୋଇଅଛି ଓ ତାଙ୍କ ବିୟୋଗଦ୍ୱାରା ମୋର ଯାହା ବ୍ୟକ୍ତିଗତ କ୍ଷତି ହୋଇଅଛି ଓ ମୋ ଭଳି ଶତ ଶତ ବ୍ୟକ୍ତିଙ୍କର ଯାହା କ୍ଷତି ହୋଇଅଛି, ସେହି କ୍ଷତିର ପ୍ରଦାହ ଶୀଘ୍ର କମିବ ନାହିଁ । ସମଷ୍ଟି ଭାବରେ ଦେଖିବାକୁ ଗଲେ ଓଡ଼ିଆ ଜଣେ ବ୍ରହ୍ମଜ୍ଞାନୀ, ଶୁଦ୍ଧଚରିତ୍ର, ବିଦ୍ୱାନ୍, ପ୍ରତିଭାଶାଳୀ, କର୍ମବୀର ଓ ସାହିତ୍ୟରଥିଙ୍କୁ ହରାଇଅଛି । ବ୍ୟଷ୍ଟି ଭାବରେ ବହୁ ଶତ ବ୍ୟକ୍ତି ବନ୍ଧୁହୀନ ହୋଇଅଛନ୍ତି ।

ବର୍ତ୍ତମାନ ପାଠକମାନେ ଓଡ଼ିଶାର ରାଜନୀତିକ ହାଉଆକୁ ଅବଧାନ କରିବା ହେଉନ୍ତୁ । ବଡ଼ଲାଟ ଓ ଛୋଟଲାଟଙ୍କ ବ୍ୟବସ୍ଥାପକ ସଭାର ସଭ୍ୟ ନିର୍ବାଚନ ସମ୍ବନ୍ଧରେ ଓଡ଼ିଶାରେ ଗତ ୪।୫ ମାସ ମଧ୍ୟରେ ଗୋଟିଏ ମହା କୋଳାହଳ ଉପସ୍ଥିତ ହୋଇ ଶେଷ ହୋଇଅଛି । ସେ ସମ୍ବନ୍ଧରେ ଅନେକ ଅଭିନୟ ଉତ୍କଳରେ ହୋଇ ଯାଇଅଛି । ବ୍ୟକ୍ତିଗତ

ଭାବରେ ମୋ ଭଳି ନଗଣ୍ୟ ଲୋକ ମଧ୍ୟ ସେ ତୋଫାନରେ କଚଡ଼ା ଖାଇଅଛନ୍ତି । ଏଥିରୁ ମୁଁ ଅନେକ ରାଜନୀତିକ ଶିକ୍ଷା ଲାଭ କରିଅଛି ଓ ଅନେକ ଅନୁଭବ ଲାଭ କରିଅଛି । ବ୍ୟକ୍ତିଗତ ଭାବରେ କେତେଗୁଡ଼ିଏ ମିତ୍ରଲାଭ ଓ ଅନେକ ଶତ୍ରୁଲାଭ କରିଅଛି । ଗତ ୧୦ ବର୍ଷ ହେଲା ଆଖିରେ ଯେଉଁ ନେଳି ଚଷମା ଲଗାଇ ରାଜନୀତିକ କ୍ଷେତ୍ରରେ ବିଚରଣ କରୁଥିଲି, ସେ ଚଷମାଟି ଅଗତ୍ୟା ବାଧ ହୋଇ କାଢ଼ିଅଛି । ସତ୍ୟର ଅର୍ଥନୀତି କ୍ଷେତ୍ରରେ ପୃଥକ୍, ରାଜନୀତିକ କ୍ଷେତ୍ରରେ ପୃଥକ୍, ଏହାହିଁ ମୁଁ ଛୋଟଲାଟ ସଭାର ସଦସ୍ୟ ନିର୍ବାଚନ ଅଭିନୟରୁ ହୃଦୟଙ୍ଗମ କରିଅଛି । ସେଥିରୁ ଗୋଟିଏ ଉଦାହରଣ ପାଠକମାନଙ୍କୁ ଉପହାର ଦେଲେ ମୁଁ ଯେଉଁ ଗୋଲକଧନ୍ଦାରେ ହାଉଳି ଖାଇଥିଲି, ତାହା ବୋଧହୁଏ ସମସ୍ତେ ସମଝି ପାରିବେ ।

ମୁଁ ବରାବର କହି ଆସୁଅଛି ଯେ ଓଡ଼ିଶାନିବାସୀ ଓଡ଼ିଆ ଓ ସ୍ଥାୟୀ ଅଧିବାସୀମାନଙ୍କ ମଧ୍ୟରେ ଯେଉଁ ମନୋମାଳିନ୍ୟ ଉପସ୍ଥିତ ହୋଇଅଛି, ତାହା ନ ନିଭିବା ପର୍ଯ୍ୟନ୍ତ ଓଡ଼ିଶାର ଆଭ୍ୟନ୍ତରୀଣ ମଙ୍ଗଳ ସୁଦୂରପରାହତ । କଟକର ମ୍ୟୁନିସିପାଲିଟି ନିର୍ବାଚନ ସମ୍ବନ୍ଧରେ ମୁଁ ଗତ ଥର ଦୁନିଆର ହାଲଚାଲରେ ଏହି କଥା ସ୍ପଷ୍ଟ ଭାବରେ କହିଥିଲି ଓ ସେ ସମୟ ପର୍ଯ୍ୟନ୍ତ ମୋର କ୍ଷୁଦ୍ର କ୍ଷେତ୍ର ଓ କ୍ଷୁଦ୍ର ଶକ୍ତିରେ ଏ ପ୍ରଭେଦ ଘୁଞ୍ଚାଇବା ଲାଗି କ୍ଷୁଦ୍ର ଚେଷ୍ଟା ବହୁବାର କରିଥିଲି । ସେଥିରେ ଅବଶ୍ୟ ଗତ ୧୦ ବର୍ଷ ମଧ୍ୟରେ କୃତକାର୍ଯ୍ୟ ହୋଇ ନ ପାରି ମୁଁ ଗୋଲକଧନ୍ଦାରେ ପଡ଼ିଥିଲି । ଫଳ କଥା, ଦେଖିଲି ଯେ ସଂସାରରେ ଚାଲାଖ ଲୋକର ଜୟଲାଭ ଓ ଓଲୁର ପରାଜୟ ।

କଟକର ଗତ ମ୍ୟୁନିସିପାଲିଟି ନିର୍ବାଚନ ସମୟରେ ଜଣେ ବିଶିଷ୍ଟ ବନ୍ଧୁ ଗୋଟିଏ ଡୁଆ ଧରି ବସିଲେ ଯେ ଓଡ଼ିଆ ଓ ଓଡ଼ିଶାର ସ୍ଥାୟୀ ବଙ୍ଗାଳୀଙ୍କ ମଧ୍ୟରେ ଯେଉଁ ବିବାଦ ଚଳୁଅଛି, ତାହା ଯଦି ତଳଲିଖିତ ଭାବରେ ମୀମାଂସା ହୁଏ, ତାହାହେଲେ ସବୁ ଅଡୁଆ ତୁଟିଯିବ - ସମସ୍ତ ସାଧାରଣ କାର୍ଯ୍ୟରେ ଉଭୟ ସମାଜ ଦ୍ୱାରା ଜଣେ ଓଡ଼ିଆ ଓ ଜଣେ ସ୍ଥାୟୀ ବଙ୍ଗାଳୀ ମନୋନୀତ ହେଲେ ଉଭୟ ପକ୍ଷଙ୍କର ଦାବି ଫଳବତି ହେବ ଓ ଉଭୟ ଦଳ ମଧ୍ୟରେ ଆଉ ଟଣାଭିଡ଼ା ଲାଗିବ ନାହିଁ । ଡିଷ୍ଟ୍ରିକ୍ଟ ବୋର୍ଡ୍, ଲୋକାଲ ବୋର୍ଡ୍, ମ୍ୟୁନିସିପାଲିଟିରେ ଚେଆରମାନ ଓ ଭାଇସ୍ ଚେଆରମାନ ମଧ୍ୟରୁ ଜଣେ ଲେଖାଏଁ ଓଡ଼ିଆ ଓ ଜଣେ ଲେଖାଏଁ ସ୍ଥାୟୀ ବଙ୍ଗାଳୀ ରହିବେ ।

ସେହି ହିସାବରେ ମ୍ୟୁନିସିପାଲିଟିରେ ଜଣେ ଓଡ଼ିଆ ଓ ଜଣେ ସ୍ଥାୟୀ ବଙ୍ଗାଳୀଙ୍କ ନିମନ୍ତେ ଚେଷ୍ଟା କରାଗଲା । ଫଳତଃ ଦେଖାଗଲା ଯେ ବିଶିଷ୍ଟ ବନ୍ଧୁଙ୍କର ଏ ପ୍ରତିଜ୍ଞାକୁ କେତେକ ସ୍ଥାୟୀ ବଙ୍ଗାଳୀ ପ୍ରତିପାଳନ କଲେ ନାହିଁ । ଓଡ଼ିଆ ଓ ସ୍ଥାୟୀ ବଙ୍ଗାଳୀଙ୍କ ଛଡ଼ା ଅନ୍ୟ ଶ୍ରେଣୀର ବ୍ୟକ୍ତି ଏଥି ନିମନ୍ତେ ପଦପ୍ରାର୍ଥୀ ହେବେ, ସେ କଥା ଆମ ବିଶିଷ୍ଟ ବନ୍ଧୁଙ୍କୁ ଓ ଆମକୁ ସେତେବେଳେ ମାଲୁମ ପଡ଼ିଲା ନାହିଁ । ଅସ୍ଥାୟୀ ବଙ୍ଗୀୟ ଭ୍ରାତାମାନେ ଯେତେବେଳେ ଦେଖିଲେ ଯେବେ ତେଲୀ ତେଲ ମିଳିଗଲେ, ତେବେ ପିଡ଼ିଆ ଯିବ

କାହିଁ ? ଅତଏବ ସ୍ୱଭାବତଃ ସେମାନେ କ୍ଷୁଣ୍ଣ ହୋଇ କାର୍ଯ୍ୟତଃ ଆପଣାର ବିରକ୍ତି ପ୍ରକାଶ କରିବାକୁ ଛାଡ଼ିଲେ ନାହିଁ ଓ ସୁବିଧା ଦେଖି କେଞ୍ଚା ମାଇଲେ । ଫଳକଥା ଏହି ହେଲା ଯେ, ଓଡ଼ିଆ ସଭ୍ୟଯାକ ବିଶିଷ୍ଟ ବନ୍ଧୁଙ୍କ ପ୍ରତିଜ୍ଞା ଅନୁସାରେ କାର୍ଯ୍ୟ କରି ଜଣେ ଓଡ଼ିଆ ଓ ଜଣେ ସ୍ଥାୟୀ ବଙ୍ଗାଳୀଙ୍କୁ ଯଥାକ୍ରମେ କଟକ ମ୍ୟୁନିସିପାଲିଟିର ଚେଆରମାନ ଓ ଭାଇସ୍ ଚେଆରମାନ ହେବା ନିମନ୍ତେ ଭୋଟ ଦେଲେ ।

କିନ୍ତୁ କେହି ସ୍ଥାୟୀ ବଙ୍ଗାଳୀ ସଭ୍ୟ ଏ ପ୍ରତିଜ୍ଞା ରକ୍ଷା ନ କରିବାକୁ ଓ କୌଣସି ଅସ୍ଥାୟୀ ବଙ୍ଗୀୟ ସଭ୍ୟଙ୍କ ପ୍ରସାଦ ଲାଭ କରିବାକୁ ସ୍ଥାୟୀ ବଙ୍ଗାଳୀ ପ୍ରାର୍ଥୀ ଜିତିଗଲେ, କିନ୍ତୁ ଓଡ଼ିଆ ପଦପ୍ରାର୍ଥୀ ହାରିଗଲେ ।

ବିଶିଷ୍ଟ ବନ୍ଧୁ ଯେଉଁ ରଫାନାମା କରିଥିଲେ, ସେହିଟା ଅବଶ୍ୟ ସେ ନିଜେ କରିଥିଲେ, କିନ୍ତୁ ଓଡ଼ିଶାର ସ୍ଥାୟୀ ବଙ୍ଗାଳୀ ଅଧିବାସୀଙ୍କର ଆମ ମୋକ୍ତାର ସ୍ୱରୂପ ଜବାବ ଦେଇଥିଲେ - ସେଥିରେ ସ୍ଥାୟୀ ବଙ୍ଗାଳୀ ସଂପ୍ରଦାୟ ବାଧ ହେଲେ ନାହିଁ । ବାଧ ହେବେ ବା କାହିଁକି ? ଯାହାହେଉ ଓଡ଼ିଆଙ୍କର ଜବାବ ଓଡ଼ିଆଯାକ ରକ୍ଷା କଲେ । ଓଡ଼ିଆଯାକ ହାରିଗଲେ ସତ୍ୟ, କିନ୍ତୁ ପ୍ରତିଜ୍ଞା ରକ୍ଷା କରିଅଛନ୍ତି ବୋଲି ଆଶ୍ୱସ୍ତ ହେଲେ । ଯେଉଁ ସ୍ଥାୟୀ ବଙ୍ଗାଳୀ ଜିତିଲେ, ସେ ଜିତିଲେ କେବଳ କେହି ଅସ୍ଥାୟୀ ବଙ୍ଗୀୟ ବନ୍ଧୁଙ୍କ କୃପାରୁ । ଯାହାହେଉ ସେ ହପ୍ତାଟା ଚାଲିଗଲା ।

ତପ୍ରେ କଟକ ଡିଷ୍ଟ୍ରିକ୍ଟ ବୋର୍ଡ଼ର ମେମ୍ବର ନିର୍ବାଚନ ସମସ୍ୟା ଉପସ୍ଥିତ ହେଲା । ସ୍ଥାୟୀ ଅଧିବାସୀ ଶ୍ରେଣୀର ମୋର ଜଣେ ବନ୍ଧୁ ଆସି ମତେ କହିଲେ ଯେ ସେ ଡିଷ୍ଟ୍ରିକ୍ଟ ବୋର୍ଡ଼ର ମେମ୍ବର ହେବା ସକାଶେ ମୁଁ ଚେଷ୍ଟା କରିବି । ଘଟନାଚକ୍ରରେ ମୋର ପିତା କଟକ ଲୋକାଲ ବୋର୍ଡ଼ର ଜଣେ ମେମ୍ବର - କଟକ ଡିଷ୍ଟ୍ରିକ୍ଟ ବୋର୍ଡ଼କୁ ମେମ୍ବର ନିର୍ବାଚନ କରିବା ସମ୍ବନ୍ଧରେ ତାଙ୍କର ଗୋଟିଏ ଭୋଟ ଅଛି । ଉକ୍ତ ଭୋଟଟି ପାଇବା ସକାଶେ ତାଙ୍କ ନିକଟରେ ଜଣେ ଓଡ଼ିଆ ବନ୍ଧୁ ପ୍ରାର୍ଥୀ ଥିଲେ, କିନ୍ତୁ ମୁଁ ତାଙ୍କୁ ଉପଦେଶ ଦେଲି ଯେ ଜଣେ ସ୍ଥାୟୀ ବଙ୍ଗାଳୀ ପ୍ରାର୍ଥୀଙ୍କୁ ଭୋଟ ଦେଲେ ବିଶିଷ୍ଟ ବନ୍ଧୁଙ୍କ ନିକଟରେ ଓଡ଼ିଆ ଜାତିର କ୍ଷମତାପ୍ରାପ୍ତ କାରପଟଦାର ସ୍ୱରୂପ ମୁଁ ଯେଉଁ ପ୍ରତିଜ୍ଞା କରିଅଛି, ତାହା ରକ୍ଷା ହେବ । ମୋର ପିତା ଦେଖିଲେ ଯେ ମୁଁ ଇଂରାଜୀ ପଢ଼ିଅଛି । ସାହେବ ସୁବାଙ୍କ ଦରବାରକୁ ଯିବାଆସିବା କରୁଅଛି, ଅତଏବ ମୋ କଥା ଓ ମୋ ମତଟା ଠିକ୍ ଓ ତାଙ୍କ ମରହଟିଆ ମତ କିଛି ନୁହେଁ । ଅତଏବ ସେ ଅଗତ୍ୟା ବାଧ ହୋଇ ତାଙ୍କର ବହୁକାଳର ବନ୍ଧୁ ଓଡ଼ିଆ ଭାଇଙ୍କ ପାଇଁ ଭୋଟ ନ ଦେଇ ସ୍ଥାୟୀ ବଙ୍ଗାଳୀ ଭାୟାଙ୍କ ପାଇଁ ଆଖି ବୁଜି ଭୋଟ ଦେଇ 'ପୁତ୍ର-ସତ୍ୟ' ପାଳନ କରି ବାଟେ ବାଟେ ଚାଲିଆସିଲେ ଓ ଭାୟା ସେହି ଅଧିକା ଭୋଟ ଗୋଟିକ ପ୍ରସାଦରୁ ଡିଷ୍ଟ୍ରିକ୍ଟ ବୋର୍ଡ଼ର ମେମ୍ବର ରୂପେ ଚେର ମାଡ଼ିଲେ । ଓଡ଼ିଆ ଭାଇଯାକ ମୋର ଏହି ଭାୟା ଭକ୍ତି ଦେଖି ତିନ୍ତୁଳି ଚାଟିଲା ଭଳିଆ ମୁହଁ କଲେ, ମୁଁ ମଧ୍ୟ ତିନ୍ତୁଳି ଚକଟିଲା ଭଳିଆ ମୁହଁ ଲେଫଡ଼ିଲି ।

ଏହି ସମସ୍ୟା ପରେ ଛୋଟଲାଟ ସଭାର ସଦସ୍ୟ ନିର୍ବାଚନ ହୁନ୍ଦର ଲାଗିଲା - ସଂକୀର୍ତ୍ତନରେ ହାଉଡ଼ା ଆଁ କଲା ଭଳି ମୁଁ ମଧ୍ୟ ସେ କୁହୁକରେ ପଡ଼ି ଓଡ଼ିଶାର ଡିଷ୍ଟ୍ରିକ୍ଟ ବୋର୍ଡ଼ ପକ୍ଷରୁ ସଦସ୍ୟ ହେବା ନିମନ୍ତେ ପ୍ରାର୍ଥୀ ହେବାର ମନସ୍ଥ କଲି । ଯେଉଁ ଭାୟା ମୋହରି କରାମତରୁ ଓ ମୋ ପିତାଙ୍କ ଭୋଟ ବଳରୁ ଡିଷ୍ଟ୍ରିକ୍ଟ ବୋର୍ଡ଼ର ସଭ୍ୟ ହୋଇଥିଲେ, ତାଙ୍କରିଠାରୁ ଉପକାରର ପ୍ରତିଶୋଧ ପାଇବି ବୋଲି ମୁଁ ଅଣ୍ଟାରେ ଗୋଟାଏ କସ ଦଉଡ଼ା ଭିଡ଼ି ପହିଲେ ଯାଇ ତାଙ୍କ ନିକଟରେ ମୋର ବିଶ୍ୱାସ ମୁଣାଟା ଫିଟାଇଦେଲି । ମନେ ମନେ ବିଚାରିଲି ଯେ ଯେତେବେଳେ ମୁଁ ଜଣେ ଓଡ଼ିଆ ପ୍ରାର୍ଥୀଙ୍କୁ ସମର୍ଥନ ନ କରି ଏହାଙ୍କୁ ସମର୍ଥନ କରିଅଛି, ସେ ଅବଶ୍ୟ ବ୍ୟକ୍ତିଗତ ଭାବରେ ମୋପାଇଁ ଭୋଟ ଦେବେ । ଭାଇ ରେ ! ଜବାବଟା ଶୁଣି ମୋର ମନ ବୁଦ୍ଧି ସବୁ ସନ୍ତର୍ପିତ ହୋଇଗଲା ! ଭାୟା ମୋ ମୁହଁକୁ ଚାହୁଁ ଚାହୁଁ ମତେ କହି ପକାଇଲେ, "ଆରେ ଭାଇ ! ଯେବେ କେହି ସ୍ଥାୟୀ ବଙ୍ଗାଳୀ ପ୍ରାର୍ଥୀ ହୁଅନ୍ତି, ତାହାହେଲେ ତ ମୁଁ ତୁମ ପାଇଁ ଭୋଟ ଦେଇପାରିବି ନାହିଁ ।" ମଧୁବାବୁ ଗୋଟିଏ ଢଗ କହନ୍ତି, "ଭାଇ ! ଆମାର ତ ଯା ଆଛେ ଓ ସବ ଆମାର, କିନ୍ତୁ ତୋମାର ଯା ଆଛେ ଓତେଓ ଆମାର ସହ ଆଛେ ।" ମୋ ଅନୁଭବଟା ମଧ୍ୟ ଏହି ଢଗ ସାଙ୍ଗେ ଅବିକଳ ମିଳିଗଲା । ଏହି କଥା ପଦକେ ମୋହର ମୋହନିଦ୍ରା ଭାଙ୍ଗିଗଲା । ମୁଁ ବିଚାରିଲି, "ହଁ ! ମୋ ବେଳକୁ ମୋ ଭାଇ ନ ହେଲା, ତୁ ହେଲୁ; କିନ୍ତୁ ତୋ ବେଳକୁ ମୁଁ ଗାଧୋଇଗଲି ! ହଉ !"

ଏହା ଭାବି କିଂକର୍ତ୍ତବ୍ୟବିମୂଢ଼ ହୋଇଥାଏ - ଏହି ସମୟରେ ପୂର୍ବର ବିଶିଷ୍ଟ ବନ୍ଧୁ ଆସି ହାବୁଡ଼ିଲେ । ସେ କହିଲେ ଯେ ଓଡ଼ିଶାର ମ୍ୟୁନିସିପାଲିଟିରୁ ଗୋଟିଏ ଓ ଡିଷ୍ଟ୍ରିକ୍ଟ ବୋର୍ଡ଼ରୁ ଗୋଟିଏ ଏପରି ଦିଓଟି ସ୍ଥାନ ବ୍ୟବସ୍ଥାପକ ସଭାରେ ନିର୍ଦ୍ଦିଷ୍ଟ ଅଛି । ଅତଏବ ଆମ୍ଭମାନଙ୍କ ମଧ୍ୟରେ ପୂର୍ବ ଚୁକ୍ତି ଅନୁସାରେ ସ୍ଥିର ହୋଇଥିବା ସର୍ତ୍ତ ଅନୁସାରେ ଏଥି ନିମନ୍ତେ ଜଣେ ଓଡ଼ିଆ ଓ ଜଣେ ସ୍ଥାୟୀ ବଙ୍ଗାଳୀଙ୍କୁ ଠିଆ କରି ଦେଲେ ସବୁ ଅଡୁଆ ଠକଠାକ ଛିଣ୍ଡିଯିବ । ମ୍ୟୁନିସିପାଲିଟିରେ ଜଣେ ଓଡ଼ିଆ ଠିଆ ହୁଅନ୍ତୁ, ଡିଷ୍ଟ୍ରିକ୍ଟ ବୋର୍ଡ଼ରେ ଜଣେ ସ୍ଥାୟୀ ବଙ୍ଗାଳୀ (ପାରତ ପକ୍ଷରେ ବିଶିଷ୍ଟ ବନ୍ଧୁ ଖୋଦ) ଠିଆ ହୁଅନ୍ତୁ, ଅତଏବ ମ୍ୟୁନିସିପାଲିଟି ପକ୍ଷରୁ ଜଣେ ଓଡ଼ିଆ ପ୍ରାର୍ଥୀ ହୋଇଥିବା ସ୍ଥଳେ ଡିଷ୍ଟ୍ରିକ୍ଟ ବୋର୍ଡ଼ ପ୍ରାର୍ଥୀଶ୍ରେଣୀରୁ ତୁମେ ଅପସାରିତ ହୁଅ । ଏ ଉପଦେଶଟା ମୋ ଶିରେ ଶିରେ ଗଳିଗଲା । ଚାହୁଁ ଚାହୁଁ ମ୍ୟୁନିସିପାଲିଟି ପ୍ରାର୍ଥୀରୂପେ ଜନୈକ ସ୍ଥାୟୀ ବଙ୍ଗାଳୀ ମଧ୍ୟ ଠିଆ ହେଲେ । ଡିଷ୍ଟ୍ରିକ୍ଟ ବୋର୍ଡ଼ରେ ଦୁଇ ଜଣ ସ୍ଥାୟୀ ବଙ୍ଗାଳୀ ଠିଆ ହେଲେ । ଏ ସବୁ ଦେଖି ମୁଁ ସ୍ଥିର କଲି ଯେ "ଓଡ଼ିଆ କିସମତ ଆଠପଣ ଓ ସ୍ଥାୟୀ ବଙ୍ଗାଳୀ କିସମତ ଆଠପଣ" । ଏହି ଢୁଆଟା ଆମ ବିଶିଷ୍ଟ ବନ୍ଧୁଙ୍କର ବିଶିଷ୍ଟ ଉଦ୍ଦେଶ୍ୟ ସାଧନ ବିଷୟରେ ଗୋଟିଏ ବିଶିଷ୍ଟ ଛଳନା ମାତ୍ର । ତାଙ୍କ ସ୍ୱାର୍ଥ ସାଧନ କରିବା ସକାଶେ ସେ ଏହି ଢୁଆ ଧରିଅଛନ୍ତି । ଏ ପ୍ରତିଜ୍ଞା ସଙ୍ଗେ ସ୍ଥାୟୀ ବଙ୍ଗାଳୀ ସଂପ୍ରଦାୟର କିଛି ସମ୍ପର୍କ ନାହିଁ । ଏ କଥା ନେଇ କେତେକ

ଓଡ଼ିଆଭାଇ ଓ ବିଶିଷ୍ଟ ଭାୟାଙ୍କୁ ନେଇ ମୁଁ ଗୋଟିଏ ନିଶାପ କଲି । ସେଥିରେ ଭାୟାଙ୍କୁ ତଳଲିଖିତ ଭାବରେ ଗୋଟିକେତେ ପ୍ରଶ୍ନ କଲି -

୧. ମ୍ୟୁନିସିପାଲିଟି ଚେଆରମାନ ନିର୍ବାଚନ ସମୟରେ ଆପଣ ଓଡ଼ିଆଙ୍କ ସଙ୍ଗେ ଯେଉଁ ଚୁକ୍ତି କରିଥିଲେ, ସେଇଟା ଆପଣ ନିଜ ପକ୍ଷରୁ କରିଥିଲେ, କି ସ୍ଥାୟୀ ବଙ୍ଗାଳୀ ସମ୍ପ୍ରଦାୟ ପକ୍ଷରୁ କରିଥିଲେ ?

ଉତ୍ତର - ମୁଁ ନିଜ ପକ୍ଷରୁ କରିଥିଲି ।

୨. ଯେଉଁ ସ୍ଥାୟୀ ବଙ୍ଗାଳୀ ସଭ୍ୟ ଉକ୍ତ ନିର୍ବାଚନରେ ଓଡ଼ିଆଙ୍କ ପକ୍ଷ ସମର୍ଥନ କଲେ ନାହିଁ, ତାଙ୍କ ପ୍ରତି ସ୍ଥାୟୀ ବଙ୍ଗାଳୀ ସମ୍ପ୍ରଦାୟ କିମ୍ବା ଆପଣ କିଛି ଶିକ୍ଷାବିଧାନ କରୁଅଛନ୍ତି କି ?

ଉତ୍ତର - ନା !

୩. ବର୍ତ୍ତମାନ ବ୍ୟବସ୍ଥାପକ ସଦସ୍ୟ ନିର୍ବାଚିତ ପ୍ରସଙ୍ଗରେ ଆଠପଣିଆ କିସମତ ବଣ୍ଟୁଆରାର ପ୍ରସ୍ତାବ କରୁଅଛନ୍ତି, ସେହିଟା କାହା ପକ୍ଷରୁ ?

ଉତ୍ତର - ସେଟା ଉଭୟ ସମ୍ପ୍ରଦାୟର ମଙ୍ଗଳ - ସେଟା ଅବଶ୍ୟ ମୁଁ ନିଜେ କହୁଅଛି ।

୪. ଆଚ୍ଛା - ଏ ଯେଉଁ ପ୍ରସ୍ତାବଟି ପାଳନ କରିବା ସକାଶେ ଆମକୁ ଉପଦେଶ ଦେଉଅଛନ୍ତି, ତାହା ଆମ୍ଭମାନଙ୍କ ନିକଟରେ ଉପସ୍ଥିତ କରିବା ପୂର୍ବରୁ ସ୍ଥାୟୀ ବଙ୍ଗାଳୀ ସମ୍ପ୍ରଦାୟଙ୍କର ମତ ବା ଅନୁଜ୍ଞା ନେଇଅଛନ୍ତି କି ?

ଉତ୍ତର - ନା !

୫. ଆପଣ କହୁଅଛନ୍ତି ଯେ ମ୍ୟୁନିସିପାଲିଟି ଓ ଡିଷ୍ଟ୍ରିକ୍ଟ ବୋର୍ଡ଼ ପଦ ମଧ୍ୟରୁ ଦୁଇ କିସମତର ଦୁଇ ଜଣ, ଅର୍ଥାତ୍ ଓଡ଼ିଆ ସଂପ୍ରଦାୟରୁ ଜଣେ ଓ ସ୍ଥାୟୀ ବଙ୍ଗାଳୀ ସଂପ୍ରଦାୟରୁ ଜଣେ ହେବା ବାଞ୍ଛନୀୟ । ଆଚ୍ଛା ! ମ୍ୟୁନିସିପାଲିଟି ପକ୍ଷରୁ ଆପଣଙ୍କ ଅପେକ୍ଷା ଯୋଗ୍ୟତର ସ୍ଥାୟୀ ବଙ୍ଗାଳୀ ଯେବେ ଠିଆ ହୁଅନ୍ତି, ତାହାହେଲେ ଆପଣ ଡିଷ୍ଟ୍ରିକ୍ଟ ବୋର୍ଡ଼ ପ୍ରାର୍ଥୀପଣରୁ ଅପସାରିତ ହେବା ପାଇଁ ପ୍ରସ୍ତୁତ ଅଛନ୍ତି କି ?

ଉତ୍ତର - ନା, ନା, ନା, କଦାପି ନୁହେଁ, କଦାପି ହୋଇ ନ ପାରେ - ତାଙ୍କୁ ମ୍ୟୁନିସିପାଲିଟିରେ କରାଯିବ ନାହିଁ । ମ୍ୟୁନିସିପାଲିଟି ପକ୍ଷରୁ ଜଣେ ଓଡ଼ିଆ ଯାଉ, ଡିଷ୍ଟ୍ରିକ୍ଟ ବୋର୍ଡ଼ ପକ୍ଷରୁ ଜଣେ ସ୍ଥାୟୀ ବଙ୍ଗାଳୀ ଅର୍ଥାତ୍ 'ମୁଁ ବୋଲି ଯେଉଁ ବସ୍ତୁ - ସେହି' ଯାଆନ୍ତୁ ।

ଅତଏବ ସେଦିନ ନିଶାପରେ ବସିଥିବା ବ୍ୟକ୍ତିମାନେ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ 'ଓଡ଼ିଆ - ସ୍ଥାୟୀ ବଙ୍ଗାଳୀ' ଦୁଆଟା ସାମ୍ପ୍ରଦାୟିକ ମଙ୍ଗଳ କାମନା ବା ଉଦ୍ଦେଶ୍ୟରେ ବିଶିଷ୍ଟ ଭାୟାଙ୍କ ଦ୍ୱାରା ଧରାଯାଇ ନାହିଁ, କିନ୍ତୁ ବିଶିଷ୍ଟ ଭାୟାଙ୍କର ଆପକେବାସ୍ତେ ଗୋଟାଏ ପର୍ଯ୍ୟୁସିତ ଆବରଣ ମାତ୍ର !

ତଥାପି ମୋର ଓଡ଼ିଆଭାଇମାନେ ମତେ ସନିର୍ବନ୍ଧ ଅନୁରୋଧ କଲେ ଓ ମୁଁ ବାଧ ହୋଇ ଡିଷ୍ଟ୍ରିକ୍ଟ ବୋର୍ଡ଼ ପକ୍ଷରୁ ସଦସ୍ୟ ହେବା ବାସନାର ଜଳାଞ୍ଜଳି ଦେଲି - Honorable ଅର୍ଥାତ୍ ବ୍ୟବସ୍ଥାପକ ସଭାର 'ମାନ୍ୟବର' ସଭ୍ୟ ଉପାଧିର କୁହୁକ ମୋର ଚୂନା ହୋଇଗଲା । ମନେ ମନେ ବିଚାରିଲି, ହାତ ଖାଇବ କଉଡ଼ି, ଢୋଲ ଖାଇବ ମାଡ଼ - ଅର୍ଥାତ୍ ସଂପ୍ରଦାୟ ଖାଉ ମାଡ଼, ଭାୟା ଆମର କାଟନ୍ତୁ ଷୋଳପଣି ଫସଲ ! ହେଉ କାଟନ୍ତୁ - ଏହା ବିଚାରି ଓଡ଼ିଆ ଭାଇମାନଙ୍କଠାରୁ ବିଦାୟ ନେଲି । ଏଡ଼େ ବଡ଼ ଫୋକଟ ଆଶାଟା ପାଣିଫୋଟକା ଭଳି ଉଭେଇ ଗଲା ବୋଲି ଓଳିଏ ଖଣ୍ଡେ ମନଟା ଭାରି ବ୍ୟସ୍ତ ହେଲା ।

ବିଶିଷ୍ଟ ଭାୟା ଆମର ମନୁଷ୍ୟ ପ୍ରକୃତିକି ଭାରି ଠଉରାଇଅଛନ୍ତି - ଯେଉଁକ୍ଷଣି ଏ ସଂପ୍ରଦାୟର ଢୁଆ କୁହେଳିକା ଚାଲିଗଲା, କାଳେ ଗୋପାଳ ବ୍ୟକ୍ତିଗତ ଯୋଗ୍ୟତାର ବଶବର୍ତ୍ତୀ ହୋଇ ଅମୁକଙ୍କୁ ଭୋଟ ନ ଦିଏ, ଏହି କଥାକୁ ଦହସତ କରି ଭାୟା ଲସରପସର ହୋଇ ଦିନେ ଅନ୍ଧାରୁଆ ମୋ ବାଡ଼ି ପନ୍ଦଡ଼ାରେ ଆସି ହାଜର । କହିଲେ, "ଆହେ ! ମୋର ଟିକିଏ ଦହସତ ହେଉଛି, ତୁମେ ଅମୁକଙ୍କ ପାଇଁ ମତ ଦେବଟି ? କେଜାଣି କାହିଁକି ମୋ ମନଟା ମାନୁ ନାହିଁ ।" ମୁଁ ଉତ୍ତର କଲି, "କଣ କଲେ ଆପଣଙ୍କ ମନ ମାନିବ ?" ସେ ଆପଣା ଥନ୍ତଲ ପେଟରୁ ଆବରଣ ଖଣ୍ଡିକ ଫିଟାଇ ଦେଇ ସତୃଷ୍ଣ ନୟନରେ ମୋ ଆଡ଼କୁ ଅନାଇ ରହିଲେ । ମୁଁ ଇସାରା ବୁଝି ସେହି ମସୃଣ ଭୂମିରେ ହାତଟି ବୁଲାଇ ଦେଇ କହି ପକାଇଲି, "ଅବଶ୍ୟ ମୁଁ ଅମୁକଙ୍କ ପାଇଁ ଭୋଟ ଦେବି - କିନ୍ତୁ, -" ମୁଁ କହିଲି, "କିନ୍ତୁ ଯେବେ ବାପା -" ବନ୍ଧୁ କହିଲେ, "ହଁ ! ହଁ ! ବାପା କଣ ?" ମୁଁ କହିଲି ଯେ "କିନ୍ତୁ ଯେବେ ବାପା କୌଣସି ଗୋଟାଏ ଅଖାଡୁଆ ଆଦେଶ ଦେଇ ନ ପକାନ୍ତି ।" ବନ୍ଧୁ କହିଲେ, "ସେଦିର୍ନ ନିଶାପରେ ତ ଏପରି କିଛି ଜବାବ ହୋଇ ନ ଥିଲା । ଏଗୁଡ଼ାକ ମନୁଷ୍ୟପଣିଆ ନୁହେଁ ।" ମୁଁ ଉତ୍ତର କଲି, "ଆଜ୍ଞା ! ଟିକିଏ ଥୟ ଧରନ୍ତୁ - ଯାହା ତ ମୁହଁରୁ ବାହାରି ଗଲାଣି ଗଲାଣି - କିନ୍ତୁ ଯେବେ ଇତିମଧ୍ୟରେ କୌଣସି ଅଲଘନୀୟ ବାଧା ନ ପଡ଼େ, ତେବେ ମୁଁ ଅବଶ୍ୟ ମୋ ଝକମାରି ସତ୍ୟ ରକ୍ଷା କରିବି ।" ସେଇଠୁ କେତେ ଭାୟା ଆସି ବନ୍ଧୁ ଭାବରେ ମୋ ପିଠି ଆଉଁଶିଲେ । ସମସ୍ତଙ୍କୁ କହିଲି ସେହି କଥା - ମୁଁ ଯାହା କହୁଛି, ସେଥିରୁ କେବେହେଁ ଭ୍ରଷ୍ଟ ହେବି ନାହିଁ । ସତକୁ ସତ, ଯୋଗ ତ, ଲୋକାଲ ବୋର୍ଡ଼ ନିର୍ବାଚନବେଳେ ବାପା ଆମକୁ ଯେଉଁ ମାଣକ ଉଧାର ଦେଇଥିଲେ, ତାକୁ ଏହି ସଦସ୍ୟ ନିର୍ବାଚନ ସୁଯୋଗରେ ପାଞ୍ଚପା କରି ଅସୁଲ କରି ନେଲେ । ପିତା ଆଦେଶ ଦେଲେ, "ଆମ୍ଭେ ତୁମ୍ଭର ଇଚ୍ଛା ରକ୍ଷା କରି ଆମ୍ଭର ୨୦ ବର୍ଷର ବନ୍ଧୁତା ଛାଡ଼ି ତୁମ୍ଭ ନିର୍ବାଚିତ ସେହି ଉଧାର ମାଣକ ଓ ତହିଁରେ ପିତ୍ରାଦେଶ ପାଏ ଏପରି ପାଞ୍ଚ ପା ହିସାବରେ ପରିଶୋଧ କରି ଆମ୍ଭର ସତ୍ୟ ରକ୍ଷା କରି ଜଣେ ଓଡ଼ିଆଭାଇଙ୍କୁ ଭୋଟ ଦେବ ।" ଏ ଆଦେଶ ପତ୍ର ପାଇବାକ୍ଷଣି ମୋହର ଦିହ ହାତ

ଝିମି ଝିମି ହୋଇଗଲା ଓ ସେହି ଝୋଲାମରା ବିକଳରେ ଗୋଟାଏ ବଡ଼ ଘୋଡ଼ାରେ ଚଢ଼ି ବାପାଙ୍କ ଆଦିଷ୍ଟ ପାଞ୍ଚପାକୁ ଯୋଗାଡ଼ଯନ୍ତ୍ରଦ୍ୱାରା ଦେଢ଼ ସେର କରି ପକାଇଲି । ବାପା ତାଙ୍କର ଯେଉଁ ବନ୍ଧୁଙ୍କ ପାଇଁ ଭୋଟ ଦେବାକୁ ମୋତେ ଆଦେଶ ଦେଲେ, ତାଙ୍କ ପାଇଁ ମୁଁ ଭୋଟ ଦେଲି ଓ ଆଉ ଦିଓଟା ଗୋଟିଏଙ୍କୁ ବାପାଙ୍କ ଆଦେଶ ଜଣାଇ ଦେବାରୁ ସେମାନେ ମଧ୍ୟ ରାଜନୀତିକ ସ୍ୱତଃସିଦ୍ଧ ଅନୁସାରେ ମୋ ବାପାଙ୍କ ଆଦେଶ ପାଳନ କଲେ । ମୋ କଥାଟି ସଇଲା - ଫୁଲଗଛଟି ମଲା - ହଇରେ ଫୁଲଗଛ ତୁ କାହିଁକି ମଲୁ - ଇତ୍ୟାଦି ପ୍ରଶ୍ନୋତ୍ତର ହୋଇ ହୋଇ ଶେଷରେ ଧୂଳିଆ ଜନ୍ଦା ଗିରଫ ହେଲା । ହଇରେ ଧୂଳିଆ ଜନ୍ଦା, ତୁ କାହିଁକି କାମୁଡ଼ିଲୁ ? ଉତ୍ତର - ମୁଁ ଭୂଇଁ ତଳେ ତଳେ ଥାଏଁ, କଅଁଳ ମାଉଁସ ଟିକିଏ ପାଇଲେ ରୁଟୁକିନି ଖାଏଁ ।

ଫଳକଥା ଏହିତା ହେଲା ଯେ ଏ ବିଭ୍ରାଟ ଦ୍ୱାରା ଓଡ଼ିଶାର ଓଡ଼ିଆ-ବଙ୍ଗାଳୀ ବିବାଦ ଆହୁରି ଟିକିଏ ବଢ଼ିଲା ଓ ଓଡ଼ିଆଗୁଡ଼ାକ ଯେ କେବଳ ଥାପଡ଼ା ଖାଇବା ପ୍ରାଣୀ ନୁହନ୍ତି, ଏହାହିଁ ସିଦ୍ଧାନ୍ତ ହେଲା । ଦେଖାଗଲା ଯେ ଓଡ଼ିଶାରେ ରାଜନୈତିକ କ୍ଷେତ୍ରରେ ଓଡ଼ିଆଙ୍କ ମଧ୍ୟରେ ଦୁଇ ଫାଙ୍କ, ସ୍ଥାୟୀ ବଙ୍ଗାଳୀଙ୍କ ମଧ୍ୟରେ ତିନି ଫାଙ୍କ, ଅସ୍ଥାୟୀ ବଙ୍ଗାଳୀ ଏକ ଫାଙ୍କ, ଏହିପରି ଓଡ଼ିଶାଟା ୫୬ ଚିରୁଡ଼ାରେ ବିଭକ୍ତ - ଏଗୁଡ଼ିକ ନ ଯିବା ପର୍ଯ୍ୟନ୍ତ ଏହିପରି ବାଦିପାଲା, ଚଅଁରତିହ ଲାଗିଥିବ !

ତା ପରେ ପଡ଼ିଲା ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାର ସଦସ୍ୟ ନିର୍ବାଚନ । ଓଡ଼ିଶାରୁ ଆଜି ଜଣେ ସଭ୍ୟଙ୍କୁ ବଡ଼ଲାଟଙ୍କ ସଭାକୁ ଯିବାର ସୁଯୋଗ ମିଳିଲା । ଛୋଟଲାଟଙ୍କ ବ୍ୟବସ୍ଥାପକ ସଭାରେ ବର୍ତ୍ତମାନ ଖାସ ଓଡ଼ିଶା ପକ୍ଷରୁ ୫ ଜଣ ବେସରକାରୀ ସଭ୍ୟ - ୩ ଜଣ ନିର୍ବାଚିତ ଓ ୨ ଜଣ ସରକାରଙ୍କ ମନୋନୀତ । ଏହି ୫ ଜଣଙ୍କ ମଧ୍ୟରେ ୪ ଜଣ ଓଡ଼ିଆ ଓ ଜଣେ ସ୍ଥାୟୀ ବଙ୍ଗାଳୀ । ଛୋଟଲାଟଙ୍କ ବ୍ୟବସ୍ଥାପକ ସଭାରେ ସର୍ବସୁଦ୍ଧା ୨୩ ଜଣ ସଭ୍ୟ - ସେମାନେ ଜଣକୁ ନିର୍ବାଚନ କରି ବଡ଼ଲାଟଙ୍କ ସଭାକୁ ପଠାଇବେ । ଅଧିକାଂଶ ଯାହାଙ୍କୁ ମତ ଦେବେ, ସେ ନିର୍ବାଚିତ ହେବେ । ଏପରି ସ୍ଥଳରେ ଓଡ଼ିଶାର ଏ ୫ ଜଣ ସଭ୍ୟ ଯାହାକୁ ମନୋନୀତ କଲେ ମଧ୍ୟ ତାଙ୍କ ପାଇଁ ବିହାରର ସଭ୍ୟମାନେ ମତ ନ ଦେଲେ ସେ ନିର୍ବାଚିତ ହେବା ଅସମ୍ଭବ । ଏପରି ସ୍ଥଳରେ ବିହାରର ସଭ୍ୟମାନେ ଜଣେ ଓଡ଼ିଆଙ୍କୁ ମନୋନୀତ କରି ଓଡ଼ିଶା ପ୍ରତି ସେମାନଙ୍କର ଭ୍ରାତୃଭାବର ଯେଉଁ ନିଦର୍ଶନ ଦେଖାଇଅଛନ୍ତି, ତାହା ଚିରକାଳ ଓଡ଼ିଆମାନେ କୃତଜ୍ଞତା ସହକାରେ ସ୍ମରଣ ରଖିବେ । ଏମନ୍ତ କି ସେମାନଙ୍କ ଆଗ୍ରହାତିଶଯ୍ୟ ଦେଖି ଜନୈକ ବିହାରୀ ପ୍ରାର୍ଥୀ ଓଡ଼ିଆ ପ୍ରାର୍ଥୀଙ୍କ ପକ୍ଷରେ ଆପଣାର ପ୍ରାର୍ଥୀତ୍ୱ ଉଠାଇ ନେଲେ ଏବଂ ଦେଖାଗଲା ଯେ ଅଧିକାଂଶ ସଭ୍ୟ ଓଡ଼ିଆ ପ୍ରାର୍ଥୀଙ୍କୁ ନିର୍ବାଚନ କଲେ । କିପରି ବ୍ୟକ୍ତି ନିର୍ବାଚିତ ହେଲେ ସେ କଥା ଆଲୋଚନା କରିବାର ଏ ସ୍ଥାନ ନୁହେଁ - କିନ୍ତୁ ଓଡ଼ିଶାର ୫ ଜଣ ମେମ୍ବର ମଧ୍ୟରୁ ସମସ୍ତେ କାହାକୁ

ସମର୍ଥନ କରିଅଛନ୍ତି ଓ ସେଥିରୁ କେଉଁ କାଳିଗାଈର ଭିନ୍ନେ ଗୋଠ ହୋଇଅଛି କି ନା, ଏହା ଦେଖିବା ଓ ଭାବିବା ନିମନ୍ତେ ଓଡ଼ିଶାର ସମସ୍ତ ଓଡ଼ିଆଭାଇ ଓ ସ୍ଥାୟୀ ବଙ୍ଗାଳୀ ଭାୟାମାନଙ୍କ ଦୃଷ୍ଟି ପଡୁ । ଯେବେ କିଛି ଖଟକା ଥାଏ, ସେ କଥା ପ୍ରତି ନଜର ରଖିବା ସମସ୍ତଙ୍କର କର୍ତ୍ତବ୍ୟ ।

ଓଡ଼ିଶାର ଏ ବର୍ତ୍ତମାନ ଗୋଟିଏ ବିଷମ ସମସ୍ୟାର ସମୟ - ଢେର କଳିକଜିଆ ହୋଇଗଲା, ଏଣିକି ଯେ କଳିମଞ୍ଜି ପୋତିବ, ସେ ଘୋଷରା ଝିଙ୍କା ପାଇବ - କାହାର କଣ ଯିବ ? ମୁଁ କାନ୍ଦିଲେ ତୁମେ ହସିବ ଓ ତୁମେ କାନ୍ଦିଲେ ମୁଁ ହସିବି । କିନ୍ତୁ ଉତ୍କଳ ଜନନୀ ଏ ସବୁ ଦେଖି କାନ୍ଦୁଥିବେ । ଆଜି ଏତିକି ।

ଉତ୍କଳ ସାହିତ୍ୟ/୧୬ଶ ଭାଗ/୧୧ଶ ସଂଖ୍ୟା/୧୩୨୦ ସାଲ ।

## ।। ଚଉରାଳିଶ ।।

ସମ୍ପାଦକ ଅବଧାନ ! ମଣିଷ ଟିକିଏ ନିଃଶ୍ୱାସ ନ ମାରୁଣୁ ଆପଣ ଫେର ଉତ୍କଳ ସାହିତ୍ୟର ପ୍ରଥମ ଫର୍ମା ଛାପାଖାନାରେ ବସାଇ ଦେଲେଣି । ହାଜର ନ ହେଲେ ଆପଣ ମୁହଁ ଶୁଖାଇ କହିବେ, ''ଏଗୁଡ଼ାକ ଫେର ନିଷ୍ଠାପର ସାହିତ୍ୟିକ ?'' ଆମ ଫୁରୁସତ ବେଳକୁ, ଆମ ନୀତି ସରିଲା ବେଳକୁ ଆପଣଙ୍କର ଡାକରା ପଡ଼ନ୍ତା କି, ଆପଣ ଦେଖନ୍ତେ, ଓଡ଼ିଶାରେ ଆମ ଭଳିଆ କେତୋଟି ସ୍ୱାର୍ଥତ୍ୟାଗୀ ସାହିତ୍ୟ ସେବକ ଅଛନ୍ତି । ଆପଣ ତାହା କରିବେ ନାହିଁ, ଅଥଚ ଦୋଷ ଦେବେ । ଛାଡ଼ନ୍ତୁ ସେ କଥା । ଏ ପ୍ରସଙ୍ଗରେ ଗୋଟିଏ କୃଷକ ଗୃହସ୍ଥର କଥା ମନେପଡ଼ିଲା । ଚଷାବୁଢ଼ା ପ୍ରତିଦିନ ଗାଧୋଇ ଆସି ନିର୍ମାଲ୍ୟ କୋଥଳି ଫିଟାଇ ନିର୍ମାଲ୍ୟ ସେବାକରି ତାପରେ ମୁଠାଏ ଖାଏ । ବୁଢ଼ାର ଝିଅଟି ନିତି ଏକଥା ଦେଖେ । ଦିନେ, ବୈଶାଖ ମାସ, ବୁଢ଼ା ବିଲରେ ହଳକାମ ସାରି ଆସିଲା ବେଳକୁ ଦିନ ଦି'ପହର ଗଡ଼ିଗଲାଣି । ଏଣେ ଉହୁଉଦିଆ ଖରା, ହାଡ଼ଭଙ୍ଗା ମିହନ୍ତ, ବୁଢ଼ାର କରଡ଼ି ଜଳି ହଂସା ଉଡ଼ିଯାଉଛି । ବୁଢ଼ା ବାଟରେ ଆସିଲାବେଳେ ଗାଧୋଇପଡ଼ି ଆସିଛି । ଘରେ ଆସି ପହଞ୍ଚିଗଲା ବେଳକୁ ଭୋକ ବିକଳରେ ନିଷ୍ଠାପର ନିର୍ମାଲ୍ୟ ସେବା କଥାଟାକୁ ଏକ୍‌ଦମ୍ ପାସୋରି ପକାଇଛି । ଆସି ପହଞ୍ଚି ଘରେ ବସିଗଲା କ୍ଷଣିକା ଡାକ ପକାଇଲା, ''ଆଲୋ ଝିଅ । ଝଟ୍ ପଖାଳ ଆଣ ।'' ଝିଅ ଦେଖିଲା, ଆଜି ବୁଢ଼ାର ନିର୍ମାଲ୍ୟ ସେବା ନାହିଁ କାହିଁକି ? ଝିଅ ଜବାବ ଦେଲା, ''ବାପା ! ଆଜି ପରା ମହାପ୍ରସାଦ ସେବା କରି ନାହୁଁ ? ଭାତ ଖାଇବୁ କିମତି ?'' ବୁଢ଼ା ଏହା ଶୁଣି ଜଳି ଉଠିଲା । ଭୋକ ଆଗରେ କି ନିର୍ମାଲ୍ୟ ସେବା ? କିନ୍ତୁ କ'ଣ କରିବ ? ଆଗରୁ ତ ସେତକ ବେକୁବି କରିଛି । ରାଗିକରି କହିଉଠିଲା, ''ମୋର ତ ବେକୁବି ହୋଇଛି । ନଇଲେ ତୁ ଫେର ମତେ ନିର୍ମାଲ୍ୟସେବା କଥା ଚେତାନ୍ତୁ । ହଉ, ଆଣ୍ ଯେ ନିଆଁଲଗା

ନିର୍ମାଲ୍ୟ କୋଥଳି । ମୁଁ ଟିକିଏ ସେବା କରିଦିଏ ।'' ଝିଅ ଆଣି ଠଣାରୁ କୋଥଳିଟି ଥୋଇଦେଲା । ବୁଢ଼ା ଭାତକଂସା ଉପରେ ନଜର ରଖିଥାଏ, ଏଣେ ଝଟପଟ କୋଥଳି ଫିଟାଇ କଣିକାଏ ନିର୍ମାଲ୍ୟ ସେବା କଲା ଓ ସାଙ୍ଗେ ସାଙ୍ଗେ କଂସାକ ପଖାଳ ଓ ତୋଡ଼ାଣିତକ ତେଣ୍ଡିଦେଲା ।

ଆପଣଙ୍କୁ ତ ଆମେ ଆଗରୁ ମୁହଁ ଦେଇ ସାରିଛୁ । ସାହିତ୍ୟ ହେଲା ବେଳକୁ ଆପଣଙ୍କ ଆଗରେ ଆଣି ଆମର ନିଷ୍ଠାପର ସାହିତ୍ୟ ସେବାର ଫଳ ଥୋଇଦେଉଁ । ଆଜି ଆମେ ଭୋକ ବିକଳରେ ସେକଥା ପାସୋରିଲେ ମଧ ଆପଣ ଛାଡ଼ିବେ କିଆଁ ? କିନ୍ତୁ ବୁଢ଼ାର ଭୋକ ବିକଳ ମହାପ୍ରସାଦ ସେବାର ପାରତ୍ରିକ ଫଳ ଯାହା, ଆଜି ଆପଣଙ୍କ ତମ୍ଭିତାଗଦାରେ ଆମର ସାହିତ୍ୟ ସେବାର ଫଳ ମଧ ସେହିୟା । ଅଭ୍ୟାସଟା ଛାଡ଼ିଲେ ଲୋକେ ଖୁଣିବେ । ଏଥିଲାଗି ଲେଖନପତ୍ର ଧରା, ଏଥିର ମୂଲ୍ୟ ଏଥିର ଫଳ, ଏଥିର ପରାକ୍ରମ ଆମ ହାତେ ହାତେ । ଅର୍ଥାତ୍ ଏସବୁ ବିଧିରକ୍ଷା ।

ସେଦିନ ଉତ୍କଳ ପ୍ରଦେଶର ଏକମାତ୍ର ସାହିତ୍ୟ ସଂଘ 'ଉତ୍କଳ ସାହିତ୍ୟ ସମାଜ'ର ସାମ୍ବତ୍ସରିକ ଅଧିବେଶନରେ ସମାଜର କର୍ମଚାରୀଙ୍କ ଠାରୁ ଲଗାଏତ ସଭ୍ୟ ପର୍ଯ୍ୟନ୍ତ ବସି ଯେ ଯାହା ଲୁହ ଟୋପାଟାମାନ ପୋଛିପକାଇ ବାହୁନି ଉଠିଲେ । ସମାଜର ସଭ୍ୟ, ଅସଭ୍ୟ ସମସ୍ତେ ବର୍ଷକଯାକ ଘୁଙ୍ଗୁଡ଼ି ମାରୁଥିଲେ, ବର୍ଷକଯାକ କେହି ନିର୍ମାଲ୍ୟ ସେବା କଲେ ନାହିଁ । ଆଜି କେବଳ ବିଧିରକ୍ଷା କରିବାକୁ ଆମେ ସମସ୍ତେ ମାତୃଶ୍ରାଦ୍ଧରେ ଯୋଗ ଦେଇଅଛୁଁ । ଯେଉଁ ଦେଶର କର୍ମବୀରମାନଙ୍କର ଏ ଭବୟା, ସେହି ଦେଶ ଓ ଜାତିର ଆଶା କେତେଦୂର, ତାହା ଧରିବାକୁ ବେଶି ସମୟ ଲାଗେ ନାହିଁ । ଜଣେ ବଙ୍ଗୀୟ ବନ୍ଧୁ ସେଦିନ ମତେ ଉପଦେଶ ଦେଲେ, ଏଠାରେ ସାହିତ୍ୟ ପତ୍ରିକାର ଅଭାବ ଯୋଗୁଁ ଉତ୍କଳ ସାହିତ୍ୟର ଏ ଅବସ୍ଥା । ସମାଜ ତରଫରୁ ଖଣ୍ଡେ ସାହିତ୍ୟ ପତ୍ରିକା ବାହାର କରିବାର ପ୍ରସ୍ତାବ କଲେ ସାହିତ୍ୟ ଓ ସାହିତ୍ୟ-ସମାଜର ଉନ୍ନତି ହୁଅନ୍ତା । ଏ ପ୍ରସ୍ତାବଟା ଶୁଣି ମୁଁ ମନେ ମନେ ବିଚାରିଲି 'ଶିରୋନାସ୍ତି ଶିରୋବ୍ୟଥା ।' ବିଭାଘରର ସମସ୍ତ ଆୟୋଜନ ଠିକ୍‌ଠାକ୍, ଏଣେ ବର କନ୍ୟାଙ୍କର ଠିକଣା ନଦାରଦ୍ । ପାଠକ ଅବଧାନ ! ଆମ ଦେଶର ଅବସ୍ଥା ଭଲା ଥରେ ଭାବି ଦେଖିବେ । ଆମର ନିଷ୍ଠା କାହିଁ, କର୍ତ୍ତବ୍ୟପରାୟଣତା କାହିଁ, ସାହିତ୍ୟ ଚର୍ଚ୍ଚା କାହିଁ ? ଯାହା ଯେଉଁ କେତେଜଣଙ୍କର ଅଛି, ତାହା କେବଳ ନାମକବାସ୍ତେ ଗୋଟାଏ ସାଜ; ଲେଖକ ଭିତରେ ସୁମାରି ହେବା ପାଇଁ ଗୋଟାଏ ଉପାୟ କିମ୍ବା ସମ୍ପାଦକଙ୍କ ମନ ରଖିବା ପାଇଁ ଗୋଟାଏ ମୋହବତ ଜଗା ଫିକର । ଏଥିରେ ଭଲା କେବେ କେଉଁ ସାହିତ୍ୟ ଉନ୍ନତି ନ ହେଲା ବୋଲି ମୁଣ୍ଡ କୋଡ଼ି ହେବାରେ ଲାଭ କଣ ?

ଦେଶର ବଡ଼ମୁଣ୍ଡିଆଯାକ କହନ୍ତି, ସାହିତ୍ୟଟା ଗୋଟେ ବାଜେ ଜିନିଷ, ଲେଖକଯାକ ଗୋଟାଏ ନଗଣ୍ୟ ଘୃଣା ଶ୍ରେଣୀର ଅନ୍ତର୍ଗତ । ଆଜି ଯେଉଁ ରବୀନ୍ଦ୍ରନାଥଙ୍କ ପାଇଁ ଭାରତର ରାଜପ୍ରତିନିଧି କ୍ରନ୍ଦନ କରୁଅଛନ୍ତି ଓ ଇଂରେଜମାନେ ଯାହାଙ୍କ ପ୍ରତିଭାର ପୂଜା କରୁଅଛନ୍ତି,

ସେ କିହେତୁ ଜଗତରେ ପରିଚିତ ? ନିଷ୍ଠାପର ସାହିତ୍ୟ ସେବାକରି ବଙ୍ଗ ସାହିତ୍ୟର ଭବିଷ୍ୟତକୁ ସେ ଗୋଟିଏ ସୁଦୃଢ଼ ଭିତ୍ତି ଉପରେ ଠିଆ କରାଇ ଦେଇ ଯାଇଅଛନ୍ତି । ପ୍ରାଚ୍ୟ ପାଶ୍ଚାତ୍ୟର ଶୁଭ ସମାବେଶରେ ସେ ଆପଣାର ଶକ୍ତିକୁ ଢାଳି ଦେଇଅଛନ୍ତି ଓ ତାଙ୍କରି ଛାଞ୍ଚରେ ଗଢ଼ା ଶତ ଶତ ଲୋକ ନିଭୃତରେ ନିରଳସ ଭାବରେ ସାହିତ୍ୟ କ୍ଷେତ୍ରରେ ପରିଶ୍ରମ କରୁଅଛନ୍ତି ବୋଲି ଆଜି ବଙ୍ଗ ସାହିତ୍ୟର ଜ୍ୟୋତି ବିକାଶୁ ଅଛି । ଆମ ଦେଶରେ ସାହିତ୍ୟ ସେବା ଗୋଟାଏ ପେଡ଼ିଲୁଗା । ତା ଫେର ଚିରା ଓ ପୋକଖିଆ । ଯେଉଁ ଦେଶରେ ସାହିତ୍ୟ ସମାଜର ସଭାପତି ହେବା ନିମନ୍ତେ ସମାଜର ଉଦ୍ୟୋକ୍ତାମାନେ ଗେଣ୍ଡା କୋଚିଆ ଦରାଣ୍ଡନ୍ତି, ସେ ସାହିତ୍ୟର ଓ ସେ ଦେଶର ଭବିଷ୍ୟତ ଆମ ଆଗରେ ଥୁଆ ।

ଯେ ସାହିତ୍ୟ ସେବା କରିବ, ତାର ପେଟ ଚିନ୍ତାର 'ଦୋହି' ନାହିଁ । ସେ ଜାଣେ, ତାକୁ କର୍ତ୍ତବ୍ୟ କାର୍ଯ୍ୟ କରିବାକୁ ହେବ । ଜୀବନ ରକ୍ଷା କରିବାକୁ ଯେପରି ମୁଠାଏ ଦାନା ଦରକାର ସେହିପରି ମନୋରାଜ୍ୟରେ ଜୀବନ ରକ୍ଷା କରିବାକୁ ତାର ସାହିତ୍ୟ ସେବା ଦରକାର । ତାର ଓଜନ ନାହିଁ, ତାର ସବୁବେଳେ ଫୁରୁସେତ ।

ଏ ସବୁ କେବଳ ମରୁଭୂମିରେ କ୍ରନ୍ଦନ-କ୍ରନ୍ଦନ ବୋଲ, ଅଟ୍ଟହାସ୍ୟ ବୋଲ, ସେଥିରେ ଫଳ କିଛି ନାହିଁ । ଗୋଟାଏ ଉଦାହରଣ ଆପଣମାନଙ୍କୁ ଦେଲେ ଆପଣମାନେ ସେ କଥାଟା ଠିକ୍ ଠଉରେଇ ପାରିବେ । ନମୁନା ଦେଖନ୍ତୁ । ଉତ୍କଳ ସାହିତ୍ୟର ସମ୍ପାଦକଙ୍କଠାରୁ କଡ଼ାକଡ଼ ପତ୍ର ପାଇଲି ଯେ ସାହିତ୍ୟ ଆରମ୍ଭ ହୋଇ ଆସି ସାତମଙ୍ଗଳା ପର୍ଯ୍ୟନ୍ତ ଧକ୍କା ଦେଲାଣି, କିଛି ମାଲମସଲା ପଠାଅ । ସେଥିରେ ସୁଦ୍ଧା ନିଦ ଭାଙ୍ଗିଲା ନାହିଁ । ମୋର ପେଟ ଚିନ୍ତା, ସନ୍ଧ୍ୟା ସମୀରଣ ସେବନ, ପେସାଦାରି, ଚାକିରି, ସଉକି, ଏସବୁରେ ମୋତେ ସମୟ କେଉଁଠି ଅଛି ଯେ ସମ୍ପାଦକଙ୍କ ଡାକ ଶୁଣିବି ? ଘଟନାଚକ୍ରରେ ସମ୍ପାଦକଙ୍କ ହାବୁଡ଼ରେ ପଡ଼ିଲି । ସମ୍ପାଦକ ପଚାରିଲେ, 'କିହୋ ପ୍ରବନ୍ଧ କାହିଁ ?' ମୁଁ କହିଲି, ''ଅବଧାନ, ଆଣୁଛି ।'' ଏହା କହି ବସାକୁ ଆସି ମନବୋଧିଆ ରମ୍ପାଟାଏ ରାମ୍ପି ସମ୍ପାଦକଙ୍କ ମନରକ୍ଷା କରିବାକୁ ଏ ପ୍ରବନ୍ଧଟି ନେଇ ଆମେ ସମ୍ପାଦକଙ୍କ ନିକଟରେ ହାଜର । ଉଦ୍ଦେଶ୍ୟଟା କଣ ? ନା - ଓଡ଼ିଶାର ସୁଲେଖକଙ୍କ ତାଲିକାରୁ ଆମ ନାମଟା ନ ଉଠୁ । ଆଚ୍ଛା ଭଲା - ଯେଉଁ ଜାତିର ସାହିତ୍ୟ ସେବାର ନମୁନା ମଧ୍ୟରେ ଏ ଏକ ଥାନ, ସେ ଜାତିର ସାହିତ୍ୟର ଅନ୍ତ୍ୟେଷ୍ଟି ପାଇଁ ଆଉ ଭାବିବାର କ'ଣ ଅଛି ? ମୋର ଅବଶ୍ୟ ଟିକିଏ ବିଶେଷତ୍ୱ ଅଛି । ମୁଁ ଏ କଥାଗୁଡ଼ିକ ସାଫ କରି ଏକରାର କରି ପକାଇଲି । ଛାଡ଼ ସେ କଥା ।

ଆଜିକାଲି ଓଡ଼ିଶାରେ ନାନା ପରିବର୍ତ୍ତନର ରୋଳ ଲାଗିଛି । ଏଗୁଡ଼ିକ ନୂତନ ପ୍ରଦେଶ ଗଠନର ଅବଶ୍ୟମ୍ଭାବୀ ଫଳ । ନୂତନ ପ୍ରଦେଶରେ ନୂତନ ବିଶ୍ୱବିଦ୍ୟାଳୟ ହେବ, ନୂତନ ହାଇକୋର୍ଟ ହେବ, ନୂତନ ରାଜଧାନୀ - ଏଗୁଡ଼ିକର କଳ୍ପନା ଜଳ୍ପନା ଲାଗିଅଛି । ଯେତେବେଳେ ଏ ନୂତନ ପ୍ରଦେଶ ଗଠିତ ହେଲା, ମୁଁ ସେତେବେଳକୁ କହିଅଛି ଯେ

ନୂତନ ପ୍ରଦେଶ ହେବା ଦ୍ୱାରା ଓଡ଼ିଶାର, ଓଡ଼ିଆ ପିଲାଙ୍କର, ଓଡ଼ିଆ ପାଠୁଆଙ୍କର, ଓଡ଼ିଆ ଓକିଲଙ୍କର, ଓଡ଼ିଆ କର୍ମଚାରୀ ଓ କର୍ମପ୍ରାର୍ଥୀଙ୍କର, ଓଡ଼ିଆ ମାଲିକଙ୍କର, ଓଡ଼ିଆ ମାମଲାବାଜଙ୍କର, ଓଡ଼ିଆ ପ୍ରଜାଙ୍କର, ଓଡ଼ିଆ ମୂଲିଆଙ୍କର, ଓଡ଼ିଆ ବୃତ୍ତିଧାରୀଙ୍କର, ଓଡ଼ିଆ ଜମିଦାରଙ୍କର ସମୂହ ଲାଭ ଛଡ଼ା କ୍ଷତି ନାହିଁ । ଫଳତଃ ମଧ୍ୟ ସେହିତା ଦେଖାଯିବ । ଓଡ଼ିଶାଟା ସ୍ୱର୍ଗକୁ ଗଲେ ମଧ୍ୟ ଯଥୈବାସ୍ତେ ତଥୈବାସ୍ତାଂ ।' ଯେଉଁ ଢିଙ୍କିକୁ ସେହି ଢିଙ୍କି । ଯେଉଁଆଡ଼େ ଟରାଜୁଟା ଟିକିଏ ଉଶ୍ୱାସ ହେଉଅଛି, ଓଡ଼ିଶାକୁ ସେହିଆଡ଼େ ଧଡ଼ାରେ ପକାଇବାକୁ ହେଉଅଛି ଓ ହେବ । ଯାହାହେଉ ଘର ପୋଡ଼ିଯାଉ ପଛକେ ମଶା କେଞ୍ଚେ ପାଇଲେ । ଓଡ଼ିଶାର ଲୋକମାନେ ଅବଧି ନିଜର ମଙ୍ଗଳ ବୁଝୁ ନାହାନ୍ତି - ତେବେ ସୁଖର କଥା, ଆମ ଉନ୍ନତି ନିମନ୍ତେ ଆମର କେତେକ ମୁରବିଙ୍କର ରାତି ଦିନ ନିଦ ନାହିଁ । ଭଗବାନ୍ କରନ୍ତୁ ଯେ ନୂତନ ପ୍ରଦେଶରେ, ନୂତନ ରାଜଧାନୀରେ, ନୂତନ ବିଶ୍ୱବିଦ୍ୟାଳୟରେ, ନୂତନ ହାଇକୋର୍ଟରେ, ନୂତନ ପ୍ରଜାସ୍ୱତ୍ୱ ଆଇନରେ ଓଡ଼ିଆଙ୍କର ଅନବଚ୍ଛିନ୍ନ ଉନ୍ନତି ହେଉ । ଏହି ଆଶାରେ ସବୁ ଓଡ଼ିଆ ପୁଅ ଓ ଓଡ଼ିଆ ଝିଅଯାକ ନାଚି କୁଦି ଖୁସିରେ ରହନ୍ତୁ ।

ଓଡ଼ିଶାଟା ନୂତନ ବନ୍ଦୋବସ୍ତରେ ନାନା ଉପାୟରେ ଉନ୍ନତି କଲା । ଓଡ଼ିଶାରୁ ବଡ଼ଲାଟଙ୍କ ସଭାରେ ସଭ୍ୟ ହେଲେ, ଛୋଟଲାଟଙ୍କ ସଭାରେ ପୁଞ୍ଜା ପୁଞ୍ଜା ସଭ୍ୟ ହେଲେ, ଓଡ଼ିଶାର ପାଟି କରିବାକୁ ସୁବିଧା ମିଳିଲା । ଏଗୁଡ଼ିକ ନ ବୁଝି କେବଳ ଦିନରାତି ସନ୍ଦିହାନ ହୋଇ ବସିଲେ ଏ ଉନ୍ନତି ଯୁଗରେ ଚଳିବ କାହୁଁ ? ଓଡ଼ିଶାର ଲୋକେ ଚିରକାଳ ରାଜଭକ୍ତ । ଓଡ଼ିଶାର ପ୍ରତିନିଧିମାନେ ଚିରକାଳ 'ସୁନାପୁଅ' ଭଳି ସବୁଥିରେ ସନ୍ତୁଷ୍ଟ । ଉପସ୍ଥିତ କ୍ଷେତ୍ରରେ ତହିଁର ବ୍ୟତିକ୍ରମ ଘଟିବା ଅସ୍ୱାଭାବିକ । ଓଡ଼ିଶାର ମାର୍କାମରା ପ୍ରତିନିଧିମାନେ ଓଡ଼ିଆ ଜାତିର ଆମ କ୍ଷମତାପନ୍ନ ମୁଖ୍ତାର ସ୍ୱରୂପ ଅଜ୍ଞ ଓଡ଼ିଆମାନଙ୍କ ପାଇଁ ରାଜପ୍ରତିନିଧିମାନଙ୍କ ନିକଟକୁ ଓ ବିହାର ପ୍ରତିନିଧିମାନଙ୍କ ନିକଟକୁ ଠୋ ଠା କରି ଜବାବଟାମାନ ରେଜିଷ୍ଟରି ଡାକରେ ପଠାଇ ଦେଉଛନ୍ତି । ଦେବାଟା ସ୍ୱାଭାବିକ । ଏହା ନ ହେଲେ ଓଡ଼ିଶାର ଅବନତି ଅବଶ୍ୟମ୍ଭାବୀ । ଛାଡ଼ ସେ କଥା ।

ମୁଁ ପୁରୀ ଯିବା ଦିନଠାରୁ ମୋର ବନ୍ଧୁମାନେ 'ପୁରୀର ହାଲଚାଲ' ଦୁନିଆର ହାଲଚାଲରେ ଦେଖିବା ନିମନ୍ତେ ଭାରି ଉଦ୍‌ବିଗ୍ନ - କିନ୍ତୁ ସେ ବୋଝ ମୁଣ୍ଡାଇବାର ତାକତ୍ ବର୍ତ୍ତମାନ ମୋର ନ ଥିବାରୁ ମୁଁ ସେଥିରୁ କ୍ଷାନ୍ତ ହେଲି । କାରଣ ବର୍ତ୍ତମାନ ଏତେ ଅଳ୍ପଦିନ ମଧ୍ୟରେ ପୁରୀର ହାଲଚାଲ ବିଷୟରେ ସମ୍ପୂର୍ଣ୍ଣ ଅଭିଜ୍ଞତା ଲାଭ କରିବା ମୋ ପକ୍ଷରେ ଅସମ୍ଭବ । ତାପରେ ମୁଁ ବର୍ତ୍ତମାନ ସରକାରଙ୍କର ନିମକଖିଆ ଉମେଦ୍‌ବାର । ଏପରି ସ୍ଥଳରେ ସବୁ କଥାର ଆଗ ପିଛା ଧରି ଠଉରାଇ ଠିକଣା କରିବା ପୂର୍ବରୁ କୁହାଟଟାଏ ମାରିବା ଯୁକ୍ତିଯୁକ୍ତ ନୁହେଁ । ପୁରୀର ହାଲଚାଲ ମଧ୍ୟରେ ମୋଟାମୋଟି ମୋର ଉକ୍ତମାନଙ୍କୁ ମୁଁ ଏତିକି କହିପାରେ ଯେ ପୁରୀର ଜଳବାୟୁଟା ବିଦେଶୀଙ୍କ ଦେହକୁ ପ୍ରଥମେ ପ୍ରଥମେ

ଦିନାକେତେ ପରୀକ୍ଷା କରେ ଓ ବିଦେଶୀ ପୁରୀର ହାଓଆରେ ଚଳିବାକୁ ଉପଯୁକ୍ତ କି ନା, ତାହା ପୁରୀ ନ ଠଉରେଇବା ପର୍ଯ୍ୟନ୍ତ ବିଦେଶୀଙ୍କୁ ପୁରୀର ସମାଜ ଓ ସଂଜ୍ଞା ପହିଲେ ପହିଲେ ମନା । ପୁରୀର ନେତା ବଡ଼ ଠାକୁରେ । ବଡ଼ଠାକୁରଙ୍କର ଯାହା ଉପରେ ଅନୁଗ୍ରହ, ସେ ପ୍ରତିଦିନ ପରିଶ୍ରମ ନ କରି ଘି'ଅନ୍ନ ଚାରି ତିଅଣ ଉପରେ ଉପରେ ପାଏ ଓ ଖାଏ । ଯେ ସେ ଅନୁଗ୍ରହରୁ ବଞ୍ଚିତ ତାକୁ ସବୁ ଦୁଆର କବାଟ କିଳା । ବଡ଼ଠାକୁରଙ୍କର ପ୍ରତି ଅଙ୍ଗପ୍ରତ୍ୟଙ୍ଗର ସେବା କରିବା ପାଇଁ ଛତିଶା ନିଯୋଗର ବନ୍ଦୋବସ୍ତ ପୂର୍ବରୁ ଅଛି । ଦୁଃଖର କଥା ଯେ ଅନନ୍ତ ମହାରଣାର ଦୋଷରୁ ହେଉ ବା ବାହାଦୁରିରୁ ହେଉ, ବଡ଼ଠାକୁରଙ୍କର କେତେଗୁଡ଼ିଏ ଉତ୍ତମ ଓ ଅଧମ ଅଙ୍ଗ ନଦାରଦ । ସେଥିପାଇଁ ସେଗୁଡ଼ିକର କାର୍ଯ୍ୟ ଛତିଶା ନିଯୋଗଙ୍କ ଓସ୍ତାତପଣ ଉପରେ ନିର୍ଭର କରେ । ଜଗନ୍ନାଥଙ୍କର ହାତ ନାହିଁ, କାନ ନାହିଁ, ଗୋଡ଼ ନାହିଁ ଇତ୍ୟାଦି । କେତେଟା ଜିନିଷ ନାହିଁ; କିନ୍ତୁ ମାଦଳା ପାଞ୍ଜିର ଡାକରା ଓ ନିଯୋଗଙ୍କ ସଜ୍ଜା ବିଚକ୍ଷଣତାରୁ ଜଗନ୍ନାଥ ସବୁ ପ୍ରକାର ବେଶ ହୋଇପାରନ୍ତି । ଗଜୋଦ୍ଧାରଣଠାରୁ ଆରମ୍ଭ କରି ନଟବର ବେଶ ପର୍ଯ୍ୟନ୍ତ ସବୁଥିର ମାଲମସଲା ଜଗନ୍ନାଥଙ୍କ ଭଣ୍ଡାରରେ ମହଜୁଦ । ତାକୁ କାଢ଼ି ଠିକଣା ଥାନମାନଙ୍କରେ ଖଞ୍ଜିଦେଲେ ହେଲା । ପୁରୀର ଖବର ବାରାନ୍ତରେ ।

ଉତ୍କଳ ସାହିତ୍ୟ/୧୭ଶ ଭାଗ/୨ୟ ସଂଖ୍ୟା/୧୩୨୦ ସାଲ ।

## ।। ପଇଁଚାଳିଶ ।।

ପାଠକ ଅବଧାନ ଓ ସମ୍ପାଦକ ମଉସୁଫ । ଗତଥର ମୁଁ ଆପଣମାନଙ୍କୁ ଜଣାଇଥିଲି ଯେ ବିଦେଶୀ ଲୋକଙ୍କୁ ପହିଲୁ ପହିଲୁ ପୁରୀର ଜଳବାୟୁ ଗ୍ରହଣ କରିବାକୁ ବିଶେଷ ନାରାଜ । ଆଉ ପୁରୀର ହାଲଚାଲ ସମ୍ବନ୍ଧରେ ଭବିଷ୍ୟତରେ କେତେକ ତଥ୍ୟ ପ୍ରକାଶ କରିବି ବୋଲି ମଧ୍ୟ ଅଙ୍ଗୀକାର କରିଥିଲି । ଏପରି ସ୍ଥଳରେ ମୁଁ କେତେକ ବିଷୟ ଆଇନ ଅନୁସାରେ ଆପଣମାନଙ୍କ ନିକଟରେ ପ୍ରକାଶ କରିବାକୁ ଆଇନତଃ ବାଧ ।

ପୁରୀର ହାଲଚାଲ ମଧ୍ୟରେ ପ୍ରଥମେ ହାଲଚାଲ ସତ୍ୟବାଦୀ ସ୍କୁଲ । ସତ୍ୟବାଦୀଠାରେ କେତେକ ବର୍ଷ ପୂର୍ବେ ଗୋଟିଏ ଅପର ପ୍ରାଇମେରୀ ସ୍କୁଲ ଥିଲା ଓ ତାହା ମ୍ରିୟମାଣ ଅବସ୍ଥାରେ ଥିଲା । ସତ୍ୟବାଦୀ ଅଞ୍ଚଳ ଗୋଟିଏ ବ୍ରାହ୍ମଣପ୍ରଧାନ ଅଞ୍ଚଳ । ସତ୍ୟବାଦୀଠାରେ ଗୋପୀନାଥ ଜୀଉଙ୍କ ମନ୍ଦିର ଅଛି ଓ ପୁରୀର ପ୍ରସିଦ୍ଧ ରାହାଙ୍ଗ ବ୍ରାହ୍ମଣ ଶାସନମାନଙ୍କର ଏହା କେନ୍ଦ୍ରସ୍ଥଳ ଅଟେ । ଯେତେବେଳେ ଓଡ଼ିଶାରେ ଇଂରେଜ ଶିକ୍ଷା ଆରମ୍ଭ ହେଲା, ସେତେବେଳେ ରକ୍ଷଣଶୀଳ ବ୍ରାହ୍ମଣ ସଂପ୍ରଦାୟ ଉକ୍ତ ଶିକ୍ଷାର ସାହାଯ୍ୟ ନେବାକୁ ଇଚ୍ଛା କଲେ ନାହିଁ । ଫଳତଃ ବ୍ରାହ୍ମଣମାନେ ଇଂରାଜୀ ଶିକ୍ଷାର ପାଖ ଛୁଇଁଲେ ନାହିଁ । ବାକି ରହିଲା ସଂସ୍କୃତ ଶିକ୍ଷା; କିନ୍ତୁ ଆଦରର ଅଭାବ ଓ 'ରାଜାନୁଗତୋଧର୍ମାଃ' ନଜିର ଅନୁସାରେ

ସରକାରଙ୍କ କୃପାଦୃଷ୍ଟି ନ ଥିବାରୁ ସଂସ୍କୃତ ଶିକ୍ଷାର ବିସ୍ତାର କମିଲା ଓ ବ୍ରାହ୍ମଣମାନଙ୍କର ବାକି ରହିଲା ଜାତ୍ୟାଭିମାନ, ଚୁଡ଼ାଘଷା, ମରିଚପାଣି ଏବଂ ଏଥିର ଆନୁଷଙ୍ଗିକ ମୌରସୀ ସମ୍ପତ୍ତି ବିକ୍ରୟ । ପୁରୀ ବ୍ରାହ୍ମଣମାନଙ୍କର ଏ ଅବସ୍ଥା ଦେଖି ପୁରୀର ସ୍ୱର୍ଗୀୟ ପଣ୍ଡିତ ହରିହର ଦାଶ ବ୍ରାହ୍ମଣମାନଙ୍କର ଆଧୁନିକ ଶିକ୍ଷାଲାଭ ବିଷୟରେ ବିଶେଷ ଚେଷ୍ଟା କଲେ ଓ ସେଥିଲାଗି ରକ୍ଷଣଶୀଳ ବ୍ରାହ୍ମଣ ସମାଜରୁ ତାଙ୍କୁ ଅନେକ ସାମାଜିକ ନିର୍ଯାତନା ଭୋଗ କରିବାକୁ ପଡ଼ିଥିଲା; କିନ୍ତୁ ସେ ବ୍ରାହ୍ମଣ ସମାଜରେ ଇଂରାଜୀ ଶିକ୍ଷା ପ୍ରତି ଆଗ୍ରହର ଯେଉଁ ବୀଜ ରୋପଣ କରିଗଲେ, ତାହାରି ଫଳରେ କ୍ରମଶଃ ପୁରୀ ଜିଲ୍ଲାର ଅନେକ ବ୍ରାହ୍ମଣ ଯୁବକ ଇଂରାଜୀ ଶିକ୍ଷା ଲାଭ କଲେ ଓ ବର୍ତ୍ତମାନ ପୁରୀର ରାହାଙ୍ଗରେ ଅନେକ ଗ୍ରାଜୁଏଟ୍, ଅଣ୍ଡର ଗ୍ରାଜୁଏଟ୍ ହୋଇଅଛନ୍ତି । ସେମାନଙ୍କ ମଧ୍ୟରୁ କେତେଗୁଡ଼ିଏ ଦେଶର ଶିକ୍ଷା ବିସ୍ତାର କରିବା ଲାଗି କୃତସଂକଳ୍ପ ହୋଇ ସତ୍ୟବାଦୀଠାରେ ଗୋଟିଏ ବିଦ୍ୟାଳୟ ସ୍ଥାପନ କରିଅଛନ୍ତି । ତହିଁରେ ପ୍ରଥମେ ମଧ୍ୟଇଂରାଜୀ ମାଇନର ପର୍ଯ୍ୟନ୍ତ ଶିକ୍ଷା ଦିଆ ଯାଉଥିଲା ଓ ବର୍ତ୍ତମାନ ସେଥିରେ ମାଟ୍ରିକୁଲେସନ୍ ଅର୍ଥାତ୍ ଏଣ୍ଟ୍ରାନ୍ସ ପର୍ଯ୍ୟନ୍ତ ଶିକ୍ଷା ଦିଆଯିବାର ବ୍ୟବସ୍ଥା ହୋଇଅଛି । ବିଦ୍ୟାଳୟର ପ୍ରତିଷ୍ଠାତା, ଉଦ୍ୟୋକ୍ତା ଓ ପୃଷ୍ଠପୋଷକମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ଗୋପବନ୍ଧୁ ଦାଶ, ବି. ଏଲ., ଶ୍ରୀଯୁକ୍ତ ନୀଳକଣ୍ଠ ଦାଶ ଏମ୍.ଏ., ଶ୍ରୀଯୁକ୍ତ ହରିହର ଦାଶ, ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାଶ ବି.ଏ.ଙ୍କ ନାମ ଉଲ୍ଲେଖଯୋଗ୍ୟ । ଇତିମଧ୍ୟରେ ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର ଏମ୍.ଏ. ଉକ୍ତ ଅନୁଷ୍ଠାନରେ ଯୋଗଦେଇ ଅଛନ୍ତି । ବିଦ୍ୟାଳୟଟି ସତ୍ୟବାଦୀ ସାକ୍ଷିଗୋପାଳଙ୍କ ବକୁଳ ଉପବନରେ ପ୍ରତିଷ୍ଠିତ ହୋଇଅଛି । ଯୁବକମାନେ ସ୍ୱାର୍ଥ ତ୍ୟାଗ କରିପାରିଲେ କିପରି ସମସ୍ତ ବାଧାବିଘ୍ନ ଉଡ଼ିଯାଏ ଓ କିପରି ସର୍ବସାଧାରଣ କୌଣସି ଦେଶହିତକର ଅନୁଷ୍ଠାନରେ ଯୋଗ ଦେବାକୁ ଶିଖନ୍ତି, ତାହା ଏହି ବିଦ୍ୟାଳୟର ଇତିହାସରୁ ସ୍ପଷ୍ଟରୂପେ ବୁଝାଯାଉଅଛି, ବିଦ୍ୟାଳୟର ଉଦ୍ୟୋକ୍ତାମାନେ 'Give and take' 'ଦିଅ ନିଅ' ନିୟମର ବଶବର୍ତ୍ତୀ ହୋଇ କ୍ରମଶଃ ଲୋକପ୍ରିୟ ଓ ସମାଜପ୍ରିୟ ହେଉଥିବାର ଦେଖି ମୁଁ ଭାରି ଆନନ୍ଦିତ ହେଉଅଛି । ମନୁଷ୍ୟ ଯେତିକି ଲୋକପ୍ରିୟ ହୁଏ, ସାଧାରଣଙ୍କ ଉପକାର କରିବାର କ୍ଷମତା (usefulness) ତାହାର ତେତିକି ବଢ଼େ । ଦିନେ ଏ ଦେଶରେ ସତ୍ୟବାଦୀ ବିଦ୍ୟାଳୟ ଗୋଟିଏ ଆଦର୍ଶ ବିଦ୍ୟାଳୟ ହେବ ବୋଲି ଆଶା କରିବା ଓଡ଼ିଶା ପକ୍ଷରେ ସ୍ୱାଭାବିକ । ମୁଁ ସେ ସ୍କୁଲର ସବ୍ ସମିତିର ଜଣେକ ସଭ୍ୟ - ଏପରି ସ୍ଥଳରେ ଅଧିକ ପୋଥି ବଢ଼ାଇବା ବେଜାଏ ହେବ ।

ତତ୍ପରେ ପୁରୀର ଦ୍ୱିତୀୟ ହାଲଚାଲ ପୁରୀ ଜିଲ୍ଲା ଶିକ୍ଷା ସମିତି । ଏହି ସମିତି ଗତ ବର୍ଷ ପ୍ରତିଷ୍ଠିତ ହୋଇ ପୁରୀ ଜିଲ୍ଲାର ଶିକ୍ଷା ସମ୍ବନ୍ଧୀୟ ଅଭାବ ପୂରଣ କରିବାକୁ ଚେଷ୍ଟା କରୁଅଛି । ଏଥିର ପ୍ରଥମ ଅଧିବେଶନ ଗତ ବର୍ଷ ସତ୍ୟବାଦୀଠାରେ ହୋଇଥିଲା ଓ ସ୍ୱର୍ଗୀୟ ରାୟ ମଧୁସୂଦନ ରାଓ ବାହାଦୁର ସେଥିରେ ସଭାପତି ହୋଇଥିଲେ । ଏ ବର୍ଷ

ଗତ ମାସ ୨୯ ତାରିଖ (୨୯।୬।୧୯୩) ଦିନ ପୁରୀଠାରେ ଉକ୍ତ ଶିକ୍ଷା ସମିତିର ବାର୍ଷିକ ଅଧିବେଶନ ହୋଇଥିଲା । ରାୟ ସୁଦାମ ଚନ୍ଦ୍ର ନାୟକ ବାହାଦୁର ଏଥିରେ ସଭାପତି ହୋଇଥିଲେ । ସଭାର କିୟତ୍‌କ୍ଷଣ ପୂର୍ବେ ଅସରାଏ ବୃଷ୍ଟି ହେଲା, ତଥାପି ସଭାରେ ଅନେକ ସ୍ଥାନୀୟ ସରକାରୀ ଓ ବେସରକାରୀ ଲୋକ ଯୋଗ ଦେଇଥିଲେ । ଇମାର ମଠର ମହନ୍ତ ଉକ୍ତ ସଭାର ଅଭ୍ୟର୍ଥନା-ସମିତିର ସଭାପତି ଥିଲେ । ବର୍ତ୍ତମାନ ପୁରୀର ଅଧିକାଂଶ ସାଧାରଣ କାର୍ଯ୍ୟରେ ମହନ୍ତ ଗଦାଧର ରାମାନୁଜ ଦାସଙ୍କ ନାମ ସଂଶ୍ଲିଷ୍ଟ - ଏକ ହିସାବରେ ପୋଷ୍ୟ ମାତା ଓ ପୋଷିକା ମାତା । ତାଙ୍କର ଉତ୍କଳ ପ୍ରତି ଓ ଓଡ଼ିଆଙ୍କର ହିତକର ଅନୁଷ୍ଠାନମାନଙ୍କ ପ୍ରତି ଏପରି ଆସ୍ଥା ରହିବା ପରମ ଆନନ୍ଦର ବିଷୟ । ପିଲାଦିନର Association (ସ୍ମୃତି) ଅନୁସାରେ ବାବାଜି କହିଲେ ଗଞ୍ଜେଇ, ଜମାଓଡ୍, ମାତାଜୀ, ଚୁମୁଟା, ପଙ୍ଗତ, ହଡ଼ା ଘୋଡ଼ା ଏହା ସବୁ ମନକୁ ଆସେ । କିନ୍ତୁ ଉପସ୍ଥିତ କ୍ଷେତ୍ରରେ ବାବାଜିଙ୍କ ସଙ୍ଗେ ସାଧାରଣ ଦେଶହିତକର ଅନୁଷ୍ଠାନର ଘନିଷ୍ଠ ସମ୍ପର୍କ ଦେଖି ମନଟା ଅବଶ୍ୟ ଆନନ୍ଦ ଉପଲବ୍ଧି କରେ । ଈଶ୍ୱର ମହନ୍ତ ଗଦାଧରଙ୍କ ହାତରେ ଯେଉଁ ଚାବି ଦେଇଅଛନ୍ତି, ସେ ଚାବିଟିରେ କଳଙ୍କି ନ ଲାଗିଲେ ଓଡ଼ିଶାର ଅନେକ ମଙ୍ଗଳ ହେବ । ଯାହାର ଧନ ଅଛି, ଈଶ୍ୱର ଯେବେ ତାକୁ ମନ ଦିଅନ୍ତି, ତାହା ହାତୀଦାନ୍ତ ଉପରେ ସୁନା ଛୁଆଣି ହେବ, ଆଧୁନିକ ସଭ୍ୟତା ଓ କାଏଦାର ଅନୁମୋଦିତ କେତେଗୁଡ଼ିଏ ପଦାର୍ଥର ବିନିମୟ ନ ହେଲେ ହେଲା । ସେଥିପାଇଁ ନାଟକ ରଙ୍ଗିଆ ରାମଶଙ୍କରବାବୁ ତାଙ୍କ ଯୁଗଧର୍ମ ନାଟକରେ ମହନ୍ତ ଉଦ୍ଧବ ଦାସଙ୍କୁ ଓ ରାଧା ମାତାଙ୍କୁ ପୁରୀଠାରେ ଆସ୍ଥାନ ଦେଇଥିଲେ । ଛାଡ଼ ସେ କଥା । ମୁଁ ଅବଶ୍ୟ ବ୍ୟକ୍ତିଗତ ଭାବରେ ମହନ୍ତ ଗଦାଧରଙ୍କୁ ମହନ୍ତ ହେବା ପୂର୍ବରୁ ଓ ମହନ୍ତ ହେବା ପରେ ଜାଣେ । ମହନ୍ତ ହେବା ପୂର୍ବରୁ ପୁରୀରେ କନ୍‌ଫରେନ୍‌ସ (ଉତ୍କଳ ସମ୍ମିଳନୀ) ସମୟରେ ବଡ଼ଦେଉଳ ବେଢ଼ା ମଧ୍ୟରେ ସ୍ୱର୍ଗୀୟ ମହନ୍ତ ରଘୁନନ୍ଦନ ଯେଉଁ ମହାପ୍ରସାଦ ପଙ୍ଗତ ସମ୍ମିଳନୀରେ ସମବେତ ଅତିଥିମାନଙ୍କୁ ଦେଇଥିଲେ, ସେଦିନ ଗଦାଧର ମହନ୍ତ ହୋଇ ନ ଥିଲେ ଓ ସେ ସମୟରେ ତାଙ୍କର ଅମାୟିକ ବ୍ୟବହାର ଓ ସହୃଦୟତା ଦେଖି ଆମ୍ଭେମାନେ ସୁଖୀ ହୋଇଥିଲୁଁ । ମହନ୍ତ ହେବାପରେ ତାଙ୍କର ପୂର୍ବର ସେହି ଅମାୟିକତା ଓ ସରଳତା ରହିବ କି ନାହିଁ, ଏଥିପ୍ରତି କେତେ ଲୋକ ସନ୍ଦିଗ୍ଧଚିତ୍ତ ହୋଇଥିଲେ । କିନ୍ତୁ ମହନ୍ତ ହେବାପରେ ତାଙ୍କର ପୂର୍ବ ସରଳତା ଦେଖି ସମସ୍ତେ ସୁଖୀ ହେଲେ । ପୁରୀକୁ ସ୍ଥାୟୀ ଭାବରେ ଆସିବା ପୂର୍ବରୁ ମୁଁ ତାଙ୍କୁ ଜାଣୁଥିଲି ଓ ସେ ମୋତେ ଜାଣୁଥିଲେ । କିନ୍ତୁ ମୁଁ ପୁରୀକୁ ଆସି ତାଙ୍କୁ ଉତ୍ତମ ରୂପେ ଜାଣିବାର ସୁବିଧା ପାଇଲି । ବର୍ତ୍ତମାନ ପୁରୀର ହାଉଆ ଅବଶ୍ୟ ମୋ ଦେହରେ ଉତ୍ତମ ରୂପେ ଚଳୁ ନାହିଁ । ଏପରି ସ୍ଥଳରେ ଇମାର ମଠର ହାଉଆ ମୋ ଦେହରେ ଚଳିବ କି ନାହିଁ ସେ କଥା ସ୍ୱତନ୍ତ୍ର । ତା ବୋଲି ଇମାର ମଠର କେତେଗୁଡ଼ିଏ ଦେବୋତ୍ତର ସମ୍ପତ୍ତି ମୋର ପୁରୀ ଆସିବା ଦିନଠାରୁ

ବ୍ରହ୍ମୋତ୍ତର ରୂପରେ ପରିବର୍ତ୍ତିତ ହୋଇଅଛି କି ନାହିଁ, ଏ ପ୍ରଶ୍ନ ବର୍ତ୍ତମାନ ଆପଣମାନଙ୍କର ବିଚାରାଧୀନ ନୁହେଁ । ଛାଡ଼ ସେ କଥା । ପୁରୀର ଅଧିକାଂଶ ସାଧାରଣ ସମାଜରେ ଶିକ୍ଷାର ଅଭାବ ଉପଲବ୍ଧି କରି ତାହା ପୂରଣ କରିବା ମାନସରେ ଶ୍ରୀମାନ୍ ନୀଳକଣ୍ଠ, ଗୋଦାବରୀଶ ପ୍ରଭୃତି ଯୁବକମାନେ ଆପଣାର ଯୌବନସୁଲଭ ଉଚ୍ଚଶିକ୍ଷା ଲାଭର ଆନୁଷଙ୍ଗିକ ବୈଷୟିକ ଉନ୍ନତି ଲିପ୍ସାର ଜଳାଞ୍ଜଳି ଦେଇ କେବଳ ଖୋରାକ ପୋଷାକର ଅତ୍ୟାବଶ୍ୟକ ଖରଚ ନିମନ୍ତେ ମାସିକ ୩୦ଟଙ୍କା ଲେଖାଏଁ ଗ୍ରହଣ କରି ଏହି ବିଦ୍ୟାଳୟରେ ଶିକ୍ଷକତା କରୁଅଛନ୍ତି ଏବଂ ଗୋପବନ୍ଧୁବାବୁ ଏହି ବିଦ୍ୟାଳୟର ଉନ୍ନତି ନିମନ୍ତେ ଧନ, ମନ ଢାଳିବାକୁ ସର୍ବଦା ପ୍ରସ୍ତୁତ ଅଛନ୍ତି । ସ୍କୁଲ ଘରଟି ଥରେ ପୋଡ଼ିଗଲା, ଥରେ ତୋଫାନରେ ଭାଙ୍ଗିଗଲା । ସ୍କୁଲ ସମ୍ପର୍କୀୟ କେତେକ ବ୍ୟକ୍ତିଙ୍କର ସାମାଜିକ ମତ ନିମନ୍ତେ ସ୍ଥାନୀୟ ବ୍ରାହ୍ମଣ ସମାଜ ସଙ୍ଗେ ସେମାନଙ୍କର ମନାନ୍ତର ହେବାରୁ କେତେକ ସାମାଜିକ ନେତାମାନଙ୍କର ବେଅନୁଗ୍ରହ ଦୃଷ୍ଟି ସ୍କୁଲ ଉପରେ ପଡ଼ିଲା; ଅବଧି ସରକାରଙ୍କଠାରୁ ସ୍କୁଲକୁ ଆର୍ଥିକ ସାହାଯ୍ୟ ମିଳିଲା ନାହିଁ । ତଥାପି "Where there is will there is a way" "ଯାଦୃଶୀ ଭାବନା ଯତ୍ର ସିଦ୍ଧିର୍ଭବତି ତାଦୃଶୀ ।" ବିଦ୍ୟାଳୟର ଅବସ୍ଥା ଦିନକୁ ଦିନ ଉନ୍ନତ ହେଉଅଛି - ବିଦ୍ୟାଳୟରେ ଛାତ୍ର ସଂଖ୍ୟା ବଢୁଅଛି - ବର୍ତ୍ତମାନ ଛାତ୍ର ସଂଖ୍ୟା ୨୫୦ । ବିଦ୍ୟାଳୟ ପ୍ରତି କର୍ତ୍ତୃପକ୍ଷଙ୍କର ଅନୁଗ୍ରହ ଦୃଷ୍ଟି ଆକର୍ଷିତ ହେଉଅଛି । ବର୍ତ୍ତମାନ ଛାତ୍ରାବାସର ଅଧିବାସୀ ସଂଖ୍ୟା ୧୫୦ ଅଟେ । ସ୍କୁଲଗୃହ ଅଭାବରେ ଛାତ୍ରମାନେ ବଉଳଗଛ ମୂଳେ ଛାମୁଡ଼ିଆ ତଳେ ପାଠ ପଢୁଛନ୍ତି - ସେ ସ୍ଥାନଟିରେ ପାଞ୍ଚ ମିନିଟ ରହିଲେ ମନେହୁଏ ଯେ, ତାହା ଗୋଟିଏ ଋଷି ଆଶ୍ରମ । ଯୁବକମାନଙ୍କର ଏହି ସ୍ୱଦେଶ ସେବା ଅକ୍ଷୁଣ୍ଣ କର୍ତ୍ତବ୍ୟ ପାଳନ ଓ ସ୍ୱାର୍ଥତ୍ୟାଗ ଦେଖି ସମସ୍ତେ ମୋହିତ ହୋଇଅଛନ୍ତି ଓ "Those who come to scoff remain to pray ।" ଗୋଟାଏ କଥା ଏଠାରେ ଆପଣମାନଙ୍କ ନିକଟରେ ଗୁମର ଫିଟାଇ ଦେବି - ଆପଣମାନେ କିଛି ମନେକରିବେ ନାହିଁ । ସ୍କୁଲର ପ୍ରତିଷ୍ଠାତା ଓ ସେବକମାନଙ୍କ ନାମ ଏହି ବିଦ୍ୟାଳୟ ଯୋଗୁଁ ସବୁଆଡ଼େ ପ୍ରତିଧ୍ୱନିତ ହେଲା । ଏହା ଦେଖି ମୋ ମନଟା ଭାରି ରବେଇ ଖବେଇ ହେଲା, ବିଚାରିଲି, ଏମାନେ ଏଡ଼େ ବଡ଼ ନାମ ପାଇଗଲେ, ମୁଁ ଗୋଟାଏ ନାମ ପାଇପାରିଲି ନାହିଁ । (ନୋଟ - ପ୍ରକାଶ ଥାଉକି, ସ୍କୁଲରେ ଧନ ପ୍ରାଣ ଢାଳିବା କଥା ଦୂରେ ଥାଉ, ସ୍କୁଲ ଘର ତିଆରି ସକାଶେ ପଚାଶଟି ଟଙ୍କା ଚାନ୍ଦା ସ୍ୱୀକାର କରିଅଛି; କିନ୍ତୁ ମୋ ନିଜର ଆବଶ୍ୟକ ଗୃହ ଖରଚ, ଘୋଡ଼ାଗାଡ଼ି ଖରଚ, ଦ୍ରବ୍ୟାଭରଣ ଖରଚ, ବାଦ ଟଙ୍କା ନ ବଳିବାରୁ ସେ ଟଙ୍କାତକ ଅବଧି ବାକି ପଡ଼ିଅଛି ଓ ତିନି ବରଷିଆ ତମାଦି କେବେ ହେବ ମୁଁ ତାହାହିଁ ଆଙ୍ଗୁଠି ଆଗରେ ଗଣୁଛି ।) ଅତଏବ କିଛି ଛିଦ୍ର ଖୋଜିବା ଅନୁସନ୍ଧାନରେ ସରଜମିନକୁ ବାହାରିଲି । ଦିନାକେତେ ସରଜମିନରେ ସେହି ଓରରେ

ରହିଲି - ବିଦ୍ୟାଳୟର ଅବସ୍ଥା କିପରି, ପିଲାମାନଙ୍କୁ କିପରି ପାଠ ପଢ଼ାଇ ଦିଆଯାଉଅଛି, ପିଲାମାନେ ଛାତ୍ରାବାସରେ ସୁବିଧାରେ ଅଛନ୍ତି କି ନାହିଁ, ପିଲାମାନଙ୍କର ନୈତିକ ଚରିତ୍ର ଓ ଧର୍ମ ଜୀବନ ପ୍ରତି ଦୃଷ୍ଟି ଦିଆଯାଉଛି କି ନାହିଁ, ଏହିସବୁ ଅନୁସନ୍ଧାନ କଲି । ପିଲାମାନଙ୍କ ଅଭିଭାବକମାନଙ୍କ ସଙ୍ଗେ ସାକ୍ଷାତ୍ କଲି । ଅବଶେଷରେ "Those who went to scoff remained to pray" । ଭାବିଲି- "ଯେ ପରିଶ୍ରମ କଲା, ଯେ ସ୍ୱାର୍ଥତ୍ୟାଗ କଲା, ସେ ପୂଜା ପାଉ ଓ ମୋ ଭଳି ଛିଦ୍ରାନ୍ୱେଷୀ ପରଶ୍ରୀକାତରଙ୍କଦ୍ୱାରା କିଛି ହେବ ନାହିଁ ।" ଭଗବାନ୍ ସେହି ଅନୁଷ୍ଠାନ ଉପରେ ଆଶୀର୍ବାଦ ବୃଷ୍ଟି କରନ୍ତୁ । ଯେଉଁ ବାଧାବିଘ୍ନଗୁଡ଼ିକ ପଡୁଅଛି, ସେଗୁଡ଼ିକ ଭଗବାନ୍‌ଙ୍କର ପରୀକ୍ଷାର ଅସ୍ତ୍ର ମାତ୍ର, ଶୀଘ୍ର ଆକାଶ ନିର୍ମଳ ହେବ ଓ ବିଦ୍ୟାଳୟଟି ଅଚିରେ ଉନ୍ନତିର ଭିତ୍ତି ଉପରେ ଦଣ୍ଡାୟମାନ ହୋଇ ଦେଶରେ ଆଲୋକ ଓ ଅଧ୍ୟବସାୟର ଉଦାହରଣ ବିକିରଣ କରିବ । ଯେଉଁମାନେ ବୈଷୟିକ ସୌଭାଗ୍ୟକୁ ଭ୍ରୂକ୍ଷେପ ନ କରି ଲୋକଶିକ୍ଷା ବ୍ରତ ଧାରଣ କରନ୍ତି, ଭଗବାନ୍ ସେମାନଙ୍କର ସହାୟ - ସେମାନେ ପ୍ରକୃତ ଭଗବଦ୍ ଭକ୍ତ । ଦୋଷ ସମସ୍ତଙ୍କର ଅଛି, ଦୋଷର ମାତ୍ରା ସବୁ ଅନୁଷ୍ଠାନରେ ଅଛି - ସେଗୁଡ଼ିକ କ୍ରମଶଃ ଦୂରେଇ ଯିବ । ଅନୁଷ୍ଠାନରେ ତାଙ୍କର ଆନ୍ତରିକ ଓ କାର୍ଯ୍ୟତଃ ସହାନୁଭୂତି ଦେଖି ଅନେକେ ଆଶାପୂର୍ଣ୍ଣ ନୟନରେ ତାଙ୍କ ପ୍ରତି ଅନାଇ ଅଛନ୍ତି । ମଠର ସଦାବ୍ରତ ଓ ଅମୃତମଣୋହି ମାଲଗୁଡ଼ାକ ସେ ଆଣି ବାଏଁ ବାଏଁ ଶିକ୍ଷା ସମିତି ଭଣ୍ଡାରରେ ଢାଳି ଦେବେ, ଏପରି ଆଶା କରିବା ବାତୁଳତା । ତେବେ ତାଙ୍କର ଯେପରି ଆର୍ଥିକ ସ୍ୱଚ୍ଛଳତା ଅଛି ତହିଁକି ଚାହିଁ ଦେଶର ସାଧାରଣ ଅନୁଷ୍ଠାନମାନଙ୍କ ପ୍ରତି ତାଙ୍କର ଦୃଷ୍ଟି ରହିଲେ ଦେଶର ଅନେକ ମଙ୍ଗଳ ହେବ, ଏଥିରେ ସନ୍ଦେହ ନାହିଁ । ପୁରୀର ମହନ୍ତମାନଙ୍କ ଉପରେ ଓଡ଼ିଶା ବହୁଭାବରେ ନିର୍ଭର କରିଛି । ଏକଥା ସେମାନେ ଉପଲବ୍ଧି କରିପାରିଲେ ଓଡ଼ିଶାର ଅନେକ ଦିଗରେ ମଙ୍ଗଳ ହେବ । ଈଶ୍ୱର ସେମାନଙ୍କ ମନରେ ଏହି କର୍ତ୍ତବ୍ୟଜ୍ଞାନ ଜାଗ୍ରତ କରନ୍ତୁ, ଏହାହିଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା । ପୁରୀ ଜିଲ୍ଲା ଶିକ୍ଷା ସମିତି ପୁରୀ ଜିଲ୍ଲାରେ ବିଦ୍ୟାଳୟ ବିସ୍ତାର, ସ୍ତ୍ରୀ ଶିକ୍ଷା ବିସ୍ତାର, ପତିତ ଜାତିଙ୍କ ନିମନ୍ତେ ବିଦ୍ୟାଳୟ ସ୍ଥାପନ, ଶ୍ରମଜୀବୀମାନଙ୍କ ନିମନ୍ତେ ବିଦ୍ୟାଳୟ ସ୍ଥାପନ, ସତ୍ୟବାଦୀ ସ୍କୁଲର ଉନ୍ନତି, ପୁରୀର ଶିକ୍ଷାର ଶୋଚନୀୟ ଅବସ୍ଥା ପ୍ରତି ଗଭର୍ଣ୍ଣମେଣ୍ଟ ଓ କର୍ତ୍ତୃପକ୍ଷମାନଙ୍କର ଦୃଷ୍ଟି ଆକର୍ଷଣ, ଏଗୁଡ଼ିକ ପାଇଁ ଚେଷ୍ଟା କରୁଅଛନ୍ତି । ଫଳ ଭଗବାନ୍‌ଙ୍କ ହାତରେ । "Where there is will, there is a way".

ତପ୍ରେ ପୁରୀର ଜଗନ୍ନାଥ ଥିଏଟର । ଏଥି ମଧ୍ୟରେ ଉକ୍ତ ଥିଏଟରର ଦିଓଟି ଗୋଟିଏ ଅଭିନୟ ଦେଖିବା ମୋ ପକ୍ଷରେ ଘଟିଅଛି । ସେଥିରେ ମଧ୍ୟ ଦେଖିଲି, "Where there is a will, there is a way" ମନ ଅନୁସାରେ ଫଳ । କେତେଗୁଡ଼ିଏ ଯୁବକ ଓ ଜଣକେତେ ବୃଦ୍ଧ ମିଳି ପୁରୀରେ ଗୋଟିଏ ସ୍ଥାୟୀ ରଙ୍ଗମଞ୍ଚ ସ୍ଥାପନ କରିବା ନିମନ୍ତେ

ବଦ୍ଧପରିକର ହୋଇଅଛନ୍ତି । ଆଜିପର୍ଯ୍ୟନ୍ତ ଓଡ଼ିଶାର କେନ୍ଦ୍ରସ୍ଥଳ କଟକରେ ଗୋଟିଏ ସ୍ଥାୟୀ ରଙ୍ଗମଞ୍ଚର କଳ୍ପନା ସୁଦ୍ଧା ହେଲା ନାହିଁ । ଏପରି ସ୍ଥଳରେ ପୁରୀରେ ଏପରି ଗୋଟିଏ ଅନୁଷ୍ଠାନ ଜୀବିତ ରହିଅଛି, ଏହା ପୁରୀବାସୀମାନଙ୍କ ପକ୍ଷରେ ବଡ଼ ଗୌରବର କଥା । ପୁରୀ ଓ କଟକ ମଧ୍ୟରେ ଗୋଟିଏ ପ୍ରଭେଦ ଦେଖିଲି କଟକରେ ନାମ ବଡ଼ା, ଦର୍ଶନ ଥୋଡ଼ା - ପୁରୀରେ ନାମ ଥୋଡ଼ା ଦର୍ଶନ ଥୋଡ଼ା । କଟକରେ କୌଣସି ଅନୁଷ୍ଠାନରେ ଗର୍ଜ୍ଜନ ଓ ଆସ୍ଫାଳନର ମାତ୍ରାଟା ପୁରୀ ଅପେକ୍ଷା ଢେର ବେଶି । କଟକରେ ଅଧିକାଂଶ ସବ୍-କମିଟିଯାକ ମାଟିରେ ପରିଣତ ହୁଏ । କିନ୍ତୁ ପୁରୀରେ ଏତେ ହଟ୍ଟଗୋଳ ନାହିଁ । ଦେଶସେବାର ଦୋହି ଡେଙ୍ଗୁରା ନାହିଁ । ତଥାପି କ୍ଷୁଦ୍ର କ୍ଷେତ୍ରରେ କାର୍ଯ୍ୟ ଚାଲୁଅଛି । ଏଟା ପୁରୀ ପକ୍ଷରେ ଶୁଭ ଲକ୍ଷଣ ।

ଏତ ସବୁ ଗଲା ପୁରୀର ସମ୍ବାଦ - ବର୍ତ୍ତମାନ ପୁରୀରେ ମୋର ଅନୁଭବ କଥା କହି ପାଠକମାନଙ୍କୁ ପରମ ଆପ୍ୟାୟିତ କରିବି । ମାଇପେ କହନ୍ତି ।

‘ଦୁଃଖ କହିବି କି ସୁଖ କହିବି,
ଯାହା ଅଙ୍ଗେ ନିଭାଇଛି ତାହା କହିବି ।’

ବର୍ତ୍ତମାନ ମୁଁ ପୁରୀରେ ଘର କରିବାକୁ ଆସିବା ଦିନଠାରୁ ଅର୍ଥାତ୍ ପୁରୀରେ ଦ୍ୱିତୀୟ ସଂସାର ଆରମ୍ଭ କରି୍ବା ଦିନଠାରୁ ମତେ ଅନେକ ଅନୁଭବ ଓ ଅନୁମାନ ମଧ୍ୟରେ ଘୂରିବାକୁ ହେଉଅଛି ।

ପ୍ରଥମ ଅନୁଭବ - ମୋର ସମ୍ବନ୍ଧୀ ଶ୍ରୀଯୁକ୍ତ ଭିକାରୀ ମିଶ୍ରଙ୍କ ଅନୁଗ୍ରହରୁ ହେଉ ବା ଆଗ୍ରହାତିଶଯ୍ୟରୁ ହେଉ, ମତେ ଏ ବୃଦ୍ଧାବସ୍ଥାରେ ପୁରୀଠାରେ ଦ୍ୱିତୀୟ ସଂସାର କରିବାକୁ ହୋଇଅଛି । ଏଇଟା କିଛି ଲୁଚାଚୋରା କଥା ନୁହେଁ । ଗ୍ରାମଦେବତୀଙ୍କଠାରୁ ବଡ଼ଠାକୁର ପର୍ଯ୍ୟନ୍ତ ସମସ୍ତେ ଏ କଥା ଜାଣନ୍ତି ଓ ଯେଉଁ ଗାଁରେ ଆପଣା ଝିଅର ଶାଶୂଘର, ସେ ଗାଁକୁ କେହି ସରକାରୀ କାର୍ଯ୍ୟ ଉପଲକ୍ଷରେ ଯାଇପାରିବେ ନାହିଁ । ଏପରି କୌଣସି ଆଇନ୍ ଅଛି କି ନାହିଁ, ଏକଥା ବହୁତ ଧୁଣ୍ଡା ହୋଇଥିଲା; କିନ୍ତୁ ନ ମିଳିବାରୁ ମୁଁ ଅଗତ୍ୟା ପୁରୀକୁ ଆସିଲି । ତାଙ୍କରି ଅନୁଗ୍ରହରୁ ପୁରୀ କଚେରି ସନ୍ନିକଟସ୍ଥ ତାଙ୍କର ଖଣ୍ଡିଏ କୋଠିରେ ମତେ ରହିବାକୁ ପଡ଼ିଅଛି - ସେଥିରେ ସୁବିଧା ଯେତିକି, ଅସୁବିଧା ମଧ୍ୟ ପ୍ରାୟ ସେତିକି କିମ୍ୱା ତହିଁରୁ ଟିକିଏ କମ୍ - ଏଥିପାଇଁ ସେହି ଜାଗା କାମୁଡ଼ି ପଡ଼ିବାକୁ ହୋଇଅଛି । ମୋର ନୂତନ ସଂସାର ବା ବସା ନିକଟରେ ନାଗଫେଣିଆ କଣ୍ଟା ବହୁତ ଓ ସେଥିରେ ସାପଗୁଡ଼ାଏ । ୧ - ବନ୍ଧୁଙ୍କ ଘରେ ବିନା ଭଡ଼ାରେ ନିବାସ । ୨ - ତାହା ପୁଣି ନାଗଫେଣିଆ ପରିବେଷ୍ଟିତ । ୩ - ଉକ୍ତ କଣ୍ଟା ଭିତରଯାକ ସାପ ମାଳ ମାଳ - ଏଥିରୁ ଆପଣମାନେ ମୋର ଦ୍ୱିତୀୟ ସଂସାରର ସୁଖ କିଞ୍ଚିତ୍ ଉପଲବ୍‌ଧି କରିପାରିବେ ଏବଂ ବହୁବିଧ

ବିଶେଷଣ-ବିଶିଷ୍ଟ ହୋଇ 'ଜାନାମହେ ଚନ୍ଦନଶୀତଳୋଽସି ।' ଶୀତଳତ୍ୱ ଚନ୍ଦନର ପ୍ରକୃତି କିନ୍ତୁ ରକ୍ତମାଂସଧାରୀ ମନୁଷ୍ୟ ପକ୍ଷରେ ଏ କ୍ଷେତ୍ରରେ ଶୀତଳତ୍ୱ ଅସମ୍ଭବ । ଛାଡ଼ ସେ କଥା । ପାଠକ ଅବଧାନେ ବିଚାରୁଥିବେ, ''ଆମ ଆଗରେ ଏ ଅଭିଯୋଗଗୁଡ଼ାକ କିଆଁ ଫିଟୁଛି - ଏହାଙ୍କର ପୁରୀଠାରେ ସୁଖ ନିବାସ ପାଇଁ କ'ଣ ଏତଦ୍ୱାରା ଚାନ୍ଦା ପ୍ରାର୍ଥନା କରାଯାଉଛି ପରା ?'' ପାଠକସାଆନ୍ତେ । ଏପରି ମନେ କରିବା ଆପଣଙ୍କର ପାଗଳାମି । ଏଗୁଡ଼ିକ କେତେକଗୁଡ଼ିଏ ବୈଜ୍ଞାନିକ ତତ୍ତ୍ୱ ପ୍ରକାଶ କରିବାର ଅବତାରଣା ମାତ୍ର । ଆପଣମାନେ ଫୋକଟରେ ପୁରୀ ସମ୍ବନ୍ଧରେ କେତେଗୁଡ଼ିଏ ବୈଜ୍ଞାନିକ ରହସ୍ୟ ପାଇଯିବେ । ଏପରି ସ୍ଥଳରେ ଆପଣମାନେ ଯେବେ ଟିକିଏ ବ୍ୟକ୍ତିଗତ ବାହାଦୁରିର ମାତ୍ରା ନ ସମ୍ଭାଳିବେ, ତେବେ ହେବ କିପରି ? ଏ ହିସାବରେ ଦେଖିବାକୁ ଗଲେ ପଦେ ଅଧେ ମୋ ସମ୍ବନ୍ଧରେ ବ୍ୟକ୍ତିଗତ ବଡ଼ିମା ଅନିବାର୍ଯ୍ୟ ରୂପେ ଆପଣମାନଙ୍କୁ ସହିନେବାକୁ ହେବ । ଅତଏବ ଶୁଣିବାକୁ ସାବଧାନ ହେଉନ୍ତୁ । ବର୍ତ୍ତମାନ - ମୁଁ କହୁଥିଲି ପୁରୀଠାରେ ସର୍ପାଧିକ୍ୟ ଭାରି । ମୁଁ ନୂତନ ସଂସାରରେ ସାପଙ୍କ ହାବୁଡ଼ରେ ପଡ଼ିଛି । ଚତୁର୍ଦ୍ଦିଗରେ ସର୍ପବେଷ୍ଟିତ ହୋଇ ମତେ ଚଳିବାକୁ ହେଉଅଛି । ସେହି ସାପଗୁଡ଼ିକଙ୍କର ବୈଜ୍ଞାନିକ ତତ୍ତ୍ୱ ଅନୁସନ୍ଧାନରେ ମନରେ ଘଡ଼ିଏ ଲେଖାଏଁ ସୁଖ କରୁଅଛି । ପୁରୀରେ ଯେଉଁ ସାପଗୁଡ଼ିକ ଅଛନ୍ତି, ସେଗୁଡ଼ିକୁ ମୁଁ ୩ ଶ୍ରେଣୀରେ ବିଭକ୍ତ କରିଅଛି । ୧ - ସାମୁଦ୍ରିକ ଓ ସ୍ଥାନୀୟ । ଯଥା - ନାଗ, ଗୋଖର, ବୋଡ଼ା, ଧଣ୍ଡ । ୨ - ପାହାଡ଼ିଆ - ଯଥା - ଦୋମୁଣ୍ଡିଆ, ତମ୍ପ, ଢମଣା । ୩ - ବହୁ ଦୂରରୁ ଆନୀତ, ଯଥା - ଅହିରାଜ, ଅଜଗର ।

ଅବଶ୍ୟ ଆପଣମାନେ ଜାଣିଥିବେ ଯେ ପୁରୀରେ ଅନେକ ଲୋକ ଗୁଣି ଜାଣନ୍ତି ଓ ଯାନିଯାତ୍ରା ସମୟରେ ସେମାନେ ନାଗା ସାଜି ଦେହଯାକ ସାପମାନ ଗୁଡ଼ାଇ ହୋଇଥାନ୍ତି । କେବଳ ଧଣ୍ଡଙ୍କ ଛଡ଼ା ଆଉ ସ୍ଥାନୀୟ ସର୍ପଗୁଡ଼ିକ ବିଷଧର ଓ କେବଳ ବୋଡ଼ାଙ୍କୁ ଛାଡ଼ି ସେମାନଙ୍କୁ ସ୍ଥାନୀୟ ଗୁଣିଆମାନେ ବଶ କରି ପାରନ୍ତି ଓ ସେମାନଙ୍କ କାମୁଡ଼ାରେ ପୁରୀର କମ୍ ଲୋକ ମରନ୍ତି । କାରଣ, ଦେଖାଯାଏ ଯେ ଜାତିଆ ସାପଗୁଡ଼ାକଙ୍କ ଉପରେ ଚପଟ ନ ପଡ଼ିଲେ ସେମାନେ ଦାଉଘାତ କରନ୍ତି ନାହିଁ । ତାଙ୍କ ଉପରେ ଚପଟ ପଡ଼ିଲେ ଏକା କାମୁଡ଼ାରେ ସେ ଆକ୍ରମଣକାରୀକୁ ଶେଷ କରିଦିଅନ୍ତି । ମୁଁ ଏଗୁଡ଼ାଙ୍କୁ ଭୟାନକ ରୂପେ ଭକ୍ତି କରେ । ଅର୍ଥାତ୍ ଭକ୍ତିରେ ତାଙ୍କ ପାଖ ମାଡ଼େ ନାହିଁ । ଦୋଷ ମଧ୍ୟରେ ଏମାନଙ୍କର ଗୋଟାଏ ପ୍ରଧାନ ଦୋଷ ବୋଲି ମୁଁ ଶୁଣିଅଛି, ପାହାଡ଼ିଆ ସାପମାନଙ୍କ ହାବୁଡ଼ରେ ପଡ଼ିଲେ ଏମାନେ ତମ୍ପ, ଦୋମୁଣ୍ଡିଆ ଇତ୍ୟାଦିଙ୍କର ପୂର୍ବ ପୁରୁଷ ବା 'ପୂର୍ବ ସ୍ତ୍ରୀ' ହୋଇଯାଆନ୍ତି । ଏ ଅବଶ୍ୟ ଗୋଟାଏ ବୈଜ୍ଞାନିକ ତଥ୍ୟ ଓ ଏହା ଶୁଣା କଥା ଉପରେ ନିଶ୍ଚିତ ଭାବରେ ପ୍ରତିଷ୍ଠିତ ହୋଇ ନ ପାରେ । ତେବେ ପୁରୀରେ ତମ୍ପ, ଢମଣା ଓ କେତେଗୁଡ଼ିଏ ଦୋମିଶା ସାପଙ୍କୁ ଦେଖିଲେ ଏମାନଙ୍କ ଉତ୍ପତ୍ତି ସମ୍ବନ୍ଧରେ ଏହିପରି ଗୋଟାଏ

କିଛି ସମ୍ମିଶ୍ରଣ Theory (ପ୍ରତିଜ୍ଞାର) ଆଶ୍ରୟ ନେବାକୁ ହୁଏ । ଏହାଦ୍ୱାରା ଅବଶ୍ୟ ବଂଶବୃଦ୍ଧି ହୁଏ, କିନ୍ତୁ ତୋଖମ ଠିକ୍ ରହେ ନାହିଁ । ଏପରି ଗୋଟାଏ କାରଣ ନ ଥିଲେ ବୋଧହୁଏ ପୁରୀରେ ଅଘରଦ୍ୱାରୀ ଏତେ ସାପ ବିଚରଣ କରୁ ନ ଥାନ୍ତେ । ସେଦିନ ଇମାର ମଠର ମହନ୍ତ ମହାରାଜ କହୁଥିଲେ, ତାଙ୍କର ଜିନିଷପତ୍ର ରହିବା ଘରୁ ଗୋଟାଏ ଭାରି ବଡ଼ ନାଗ ସାପ ବାହାରିଥିଲା ଓ ତାକୁ ଲୋକେ ବାଡ଼େଇ ପକେଇଲେ । ତାର ୨।୩ ଦିନ ପରେ ମୃତ ସାପକୁ ଖୋଜିବାକୁ ତାହାର ସହଚର ବା ସହଚରୀମାନେ ମଧ ମଠ ମଧକୁ ପ୍ରବେଶ କରିଥିଲେ । ଏକଥା ଶୁଣିଲାକ୍ଷଣି ମୁଁ ଗୋଟାଏ ତଥ୍ୟ ଆବିଷ୍କାର କରିନେଲି । ତାହା ଏହି - ସାପଗୁଡ଼ାକ ଅବିକଳ ମନୁଷ୍ୟ ଭଳି ଓ ତାଙ୍କ ମଧରେ ମଧ ଆସଙ୍ଗଲିପ୍ସା ବଳବତୀ । ପୁରୀର ନାଗଫେଣିଆ ବଣରେ ବୋଡ଼ାଗୁଡ଼ାକ ସାଲୁ ସାଲୁ ହେଉଥାନ୍ତି - ସେଗୁଡ଼ାକ ଛୁଇଁଲେ ମନୁଷ୍ୟର ଆଉ ବର୍ତ୍ତିବାର ଉପାୟ ନାହିଁ । ଶୁଣିଲି, ଜଣେ ଲୋକକୁ ବୋଡ଼ା କାମୁଡ଼ିବା ମାତ୍ରେ ସେ ଗଡ଼ପରି ଫୁଲିଗଲା ଓ କାମୁଡ଼ା ଜାଗାଟିର କ୍ଷତ ବିଶେଷ ପରିମାଣରେ ଘାଇଲା ହୋଇ କିଛିଦିନ ପରେ ସେ ଲୋକଟି ମରିଗଲା । ଅତଏବ ପୁରୀକୁ ଯେଉଁମାନେ ଆସନ୍ତି ଓ ଯେଉଁମାନେ ସୁଯୋଗ ବା ଦୁର୍ଯୋଗକ୍ରମେ ନାଗଫେଣିଆ ବଣ ନିକଟରେ ବସା କରନ୍ତି, ସେମାନେ ଅନ୍ଧାର ରାତିରେ ବାହାରକୁ ବାହାରିଲେ ସଙ୍ଗରେ ଆଲୁଅ ନେଇ ଆଗ ପଛ ଚାହିଁ ବୁଲିବାକୁ ମୁଁ ସେମାନଙ୍କୁ ଉପଦେଶ ଦେଇଅଛି । ବୋଡ଼ାଙ୍କ ସମ୍ବନ୍ଧରେ ଆମ ଦେଶରେ ଇତର ଲୋକଙ୍କର ଗୋଟିଏ ବିଶ୍ୱାସ ଅଛି । ପ୍ରତି ବର୍ଷ ବୋଡ଼ାଙ୍କ ଲାଙ୍ଗୁଡ଼ରୁ ଖଣ୍ଡେ ଲେଖାଏଁ ଛିଣ୍ଡିଯାଏ ଓ ସେମାନେ ଅତି ବୁଢ଼ା ବା ବୁଢ଼ୀ ହୋଇଗଲେ ଉଡ଼ିପାରନ୍ତି । ସେ ଅବସ୍ଥାରେ ସେମାନଙ୍କ ହାବୁଡ଼ରେ ପଡ଼ିଲେ ବର୍ତ୍ତିବା ଅସାଧ । ପୁରୀର ପୁରୁଣା ପୁରୁଣା ଲୋକଙ୍କଠାରୁ ଶୁଣିଅଛି ଯେ, ପୁରୀରେ ଖଣ୍ଡିବୋଡ଼ାଙ୍କର ପ୍ରାଦୁର୍ଭାବ ଭାରି ଓ ସେମାନଙ୍କର ଘାଉଡ଼କୁ ଦେଶୀ ବିଦେଶୀ କୌଣସି ଗୁଣିଆଙ୍କ ମନ୍ତ୍ର ଆଦୌ କାଟୁ କରେ ନାହିଁ । ମଦନ ଦର୍ପହାରୀ ବୁଢ଼ା ମହାଦେବଙ୍କର ପୂର୍ବ ତେଜ ନ ଥିବାରୁ ବର୍ତ୍ତମାନ ସେ ସାପଗୁଡ଼ାକଙ୍କୁ ବଶ କରିବା ବିଷୟରେ ନିର୍ବଳ । ପୁରୀ ଜଗନ୍ନାଥଙ୍କ ବେଢ଼ା ମଧସ୍ଥ ଅନେକ ପୁରାତନ ଜୀର୍ଣ୍ଣ ଦେଉଳରେ ଗୁଡ଼ିଏ ଏହି ଶ୍ରେଣୀର ଖଣ୍ଡିବୋଡ଼ା ଅଛନ୍ତି ଓ ବେଳେବେଳେ ଜଗନ୍ନାଥଙ୍କୁ କିଳିବିଲି କରିପକାନ୍ତି । ଶ୍ରୀଅଙ୍ଗରେ ଘାଉଡ଼ ଲଗାନ୍ତି ବୋଲି ଲୋକେ ଭୟ କରନ୍ତି । ଶୁଣିଲି, ମଝିରେ ଜଣକେତେ ଗୁଣିଆ କଟକ ଗୁଣିଆଙ୍କ ସଙ୍ଗେ ପରାମର୍ଶ କରି ଏହିପରି ଖଣ୍ଡିବୋଡ଼ାର ବିଷକୁ ଗୁଣି ଦ୍ୱାରା କାଟୁ କରିବା ସକାଶେ କଟକ ନିକଟସ୍ଥ ଧବଳେଶ୍ୱର ମହାଦେବଙ୍କ ଗମ୍ଭୀରା ଭିତରକୁ ପଶି ମହାପ୍ରଭୁଙ୍କ ଶକ୍ତି ନିକଟରେ ସାପକୁ, କେଳାକୁ ଓ ରୋଗୀକୁ ପହଞ୍ଚାଇଥିଲେ ଓ ସେତେବେଳେ ସୁଦ୍ଧା ରୋଗୀର ଗରଳବୁହା ବନ୍ଦ ହୋଇ ନ ଥିଲା । ଫଳ କଣ ହେଲା, ଖବର ଶୁଣାଯାଇ

ନାହିଁ । ପୁରୀର ସ୍ଥାନୀୟ ଲୋକନାଥଙ୍କଓାକୁ ରୋଗୀକୁ ନ ନେଇ ବାଏଁ ବାଏଁ ଧବଳେଶ୍ୱର କିଆଁ ନେଲେ, ବୁଝାଗଲା ନାହିଁ ।

ତା'ପରେ ସ୍ଥାନୀୟ ସାପ ମଧ୍ୟରେ ଧଣ୍ଡ । ଏଗୁଡ଼ିକ ଜଳାଶୟ, ଝିଲ, ବିଲ ଇତ୍ୟାଦିରେ ଥାଆନ୍ତି । ପୁରୀର ସମତଳଟା ନୀଚ ଥିବାରୁ ଏଠାରେ ଗୁଡ଼ିଏ ଝିଲପାଟ ଅଛି ଓ ଏ ଧଣ୍ଡଗୁଡ଼ିକଙ୍କର ଉତ୍ପତ୍ତି ସେହିଠାରୁ । ସମୟ ସମୟରେ ଏମାନେ ପାଟରୁ ଉଠିଆସି ସହରରେ ବୁଲନ୍ତି । ଏମାନଙ୍କର ବିଷ ନାହିଁ ଓ ଏମାନଙ୍କର ଗୋଟାଏ ବିଶେଷତ୍ୱ ଏହି ଯେ, ଏମାନେ ଛୁଇଁଲେ ଅନ୍ୟ ସାପ ସେ ବ୍ୟକ୍ତିଙ୍କୁ କାମୁଡ଼ନ୍ତି ନାହିଁ । ସାପମାନଙ୍କ ମଧ୍ୟରେ ଯେ ଜାତ୍ୟଭିମାନ ଅଛି, ତାହା ଏଥିରୁ ସ୍ପଷ୍ଟ ରୂପେ ଜଣା ପଡୁଅଛି । ମୁଁ ମଧ୍ୟ ଏହିପରି ଗୋଟିଏ ଧଣ୍ଡର ଆଶ୍ରୟ ଖୋଜୁଛି । ମିଳିଲେ ପାଠକମାନଙ୍କୁ ଜଣାଇବି ।

ଏ ଗଲା ସ୍ଥାନୀୟ ସର୍ପମାନଙ୍କର କଥା - ତାପରେ ଦ୍ୱିତୀୟ ଶ୍ରେଣୀ ବା ପାହାଡ଼ିଆ ଓ ବଣୁଆ ସାପ । ପୁରୀ ସହରଟା ସମୁଦ୍ର କୂଳରେ ଓ ପୁରୀ ନିକଟରେ ପାହାଡ଼ ବା ଜଙ୍ଗଲ ନାହିଁ । ଅତଏବ ଦୋ-ମୁଣ୍ଡିଆ, ତମ୍ପ - ଏଗୁଡ଼ାକ ଦେଖିଲେ ମନେହୁଏ ଯେ, ଏଗୁଡ଼ାକ ନିକଟତମ ଖୋରଧା ସବ୍-ଡିଭିଜନସ୍ଥ ଜଙ୍ଗଲରୁ ଆସନ୍ତି ଓ ପୁରୀକୁ ଆସି ପୁରୀ ସାପଙ୍କ ବଂଶବୃଦ୍ଧି କରନ୍ତି । ଏମାନେ ରେଲ ହେବା ଦିନଠାରୁ ଆସିଲେ କିମ୍ବା ରେଲ ହେବା ପୂର୍ବରୁ ଆସିଥିଲେ, ତାହା ସ୍ଥିର କରିବା ଦୁଃସାଧ - ଅବଶ୍ୟ ଅନେକ ପାହାଡ଼ିଆ ସାପ କଟକରୁ ଓ ଗଡ଼ଜାତର ଜଙ୍ଗଲରୁ ଆସିଥିବେ । ସେଗୁଡ଼ିକ ନଈବଢ଼ିରେ ଭାସିଆସିବା ସମ୍ଭବପର । କିନ୍ତୁ ମୋର ବିଶ୍ୱାସ ଯେ ହଂସାଭଡ଼ା ସାପଗୁଡ଼ାକ ଏ ଜିଲା ଜଙ୍ଗଲ ବା ପାହାଡ଼ରୁ ଜଟଣି ରେଳବାଟେ ପୁରୀକୁ ଆସିଅଛନ୍ତି ଓ ଏଠାରେ ବିଷଧର ସାପଙ୍କ ଅଂଶ ଗ୍ରହଣ କରି ଅଧିକତର ଭୟଙ୍କର ହେଉଅଛନ୍ତି । ପାହାଡ଼ିଆ ସାପଗୁଡ଼ାକ ସାଧାରଣତଃ ଭୟଙ୍କର । ତହିଁ ଉପରେ ସେମାନେ ଏଠାକୁ ଆସି ଦୋମିଶା ହୋଇ ଆହୁରି ଭୟଙ୍କର ଓ ପଛ କାମୁଡ଼ା ହୋଇପଡ଼ନ୍ତି । 'ପଛ କାମୁଡ଼ା'ର ଅର୍ଥ ଏହି ଯେ ସେମାନେ ମନୁଷ୍ୟର ପଛଆଡୁ 'ଗୋଛି' କାଟନ୍ତି । ଦୋମୁଣ୍ଡିଆଗୁଡ଼ାକ ଗୋଟାଏ ମୁହଁରେ କିଛି ଆଘାତ କରି ନ ପାରିଲେ ତାଙ୍କର ଲାଙ୍ଗୁଡ଼ ଆଡ଼େ ଥିବା ମୁହଁ (ଅର୍ଥାତ୍ ଅଧମାଙ୍ଗଟାକୁ) ମନୁଷ୍ୟ ଦେହରେ ଲଗାଇବାକୁ କୁଣ୍ଠିତ ହୁଅନ୍ତି ନାହିଁ ।

ମୋର ବିଶ୍ୱାସ ଯେ ପାହାଡ଼ିଆଗୁଡ଼ାକ ଏଠାକୁ ଆସି ସ୍ଥାନୀୟ ସାପଙ୍କ ସହବାସରେ ଦୋମୁହାଁ ହୋଇଯାଆନ୍ତି ଓ କେତେଗୁଡ଼ିଏ ଅଜ୍ଞାତ କରାମତି ଜାହିର କରନ୍ତି । ସ୍ଥାନୀୟ ଗୁଣିଆମାନଙ୍କଠାରୁ ଶୁଣିଲି ଯେ, ସେମାନଙ୍କର ଗୁଣି ଏ ଶ୍ରେଣୀର ସାପଙ୍କୁ କାଟୁ କରେ ନାହିଁ । ପଦ୍ମତୋଳାରେ ମଧ୍ୟ ଏମାନେ ବଶ ହୁଅନ୍ତି ନାହିଁ । ଯେ ପଦ୍ମତୋଳା ବୋଲିବ, ସେ ସିନା ଗୋଟାଏ ମୁହଁ ପାଖରେ ବୋଲିବ । ଏ ମୁହଁ ପାଖରେ ପଦ୍ମତୋଳା ବୋଲିଲା ବେଳକୁ ସେମାନେ ଆର ମୁହଁରେ ମନୁଷ୍ୟକୁ ଘାଉଡ଼ କରିଦିଅନ୍ତି । ମୋର ଧାରଣା ଯେ ଏମାନଙ୍କ ଯୋଗୁଁ ସ୍ଥାନୀୟ ସର୍ପ ଏବଂ ସର୍ପୀଙ୍କର ବଂଶ ବୃଦ୍ଧି ଓ ତମ୍ପ ସଂଖ୍ୟା ବୃଦ୍ଧି ।

ତତ୍‌ପରେ ପୁରୀରେ ସମୟ ସମୟରେ ଅହିରାଜ, ମଣିନାଗ, ଅଜଗର ଅର୍ଥାତ୍ ତୃତୀୟ ଶ୍ରେଣୀର ସାପ ହାବୁଡ଼ରେ ପଡ଼ନ୍ତି ବୋଲି ବୁଢ଼ା ବୁଢ଼ାଙ୍କ ମଧ୍ୟରୁ ଶୁଣିଲି । ଏ ଜାତୀୟ ସର୍ପମାନଙ୍କର ଆଦିମ ନିବାସ ହିମାଳୟ, ବିନ୍ଧ୍ୟାଚଳ ଆଦି ଉଚ୍ଚ ପର୍ବତ କିମ୍ବା ତନ୍ନିକଟ ଜଙ୍ଗଲ । ଏମାନେ ଏଠାକୁ କିପରି ଆସିଲେ, ଏହା ମୁଁ ଅବଧି ନିର୍ଣ୍ଣୟ କରିପାରୁ ନାହିଁ । ହୁଏତ ନଦୀଏ ନଦୀଏ ଯାଇ ସମୁଦ୍ରରେ ଭାସି ଆସନ୍ତୁ କିମ୍ବା ରେଳ ଲାଇନେ ଲାଇନେ ଆସନ୍ତୁ । ଅହିରାଜଙ୍କ ମଥାରେ ମଣି ଥାଏ । ସେମାନେ ଚରିଲା ବେଳେ ମଣିଟିକୁ କାଢ଼ି ପକାନ୍ତି ଓ ପଦାକୁ ବାହାରିଲା ବେଳେ ମୁଣ୍ଡରେ ମଣିଟିକୁ ଦେଇ ବାହାରନ୍ତି ବୋଲି କାହାଣୀରେ ଶୁଣିଛି । ଅଜଗରଗୁଡ଼ାକ ଅତି ବୃହତ୍‌କାୟ - ଚଳତ୍‌ଶକ୍ତିରହିତ - ଯାହା ଆସି ମୁହଁ ପାଖରେ ହାବୁଡ଼ରେ ପଡ଼ିଯାଏ, ତାହା ଖାଦ୍ୟ ହେଉ, ଅଖାଦ୍ୟ ହେଉ, ତହିଁରେ ଉଦର ପୂର୍ଣ୍ଣ କରନ୍ତି ଓ ତାହା ଜୀର୍ଣ୍ଣ ହେବା ପର୍ଯ୍ୟନ୍ତ ଏକ ସ୍ଥାନରେ ପଡ଼ିରହନ୍ତି । ଶୁଣାଅଛି ଯେ, ଗୋଟିଏ ଶଗଡ଼ିଆ ଅଜଗର ସାପକୁ ଗଛର ଶିଅ ବୋଲି ମନେକରି ସେହି ଶିଅକୁ ଚୁଲିଝିଙ୍କା କରି ତା ତଳେ ନିଆଁ ଜାଳି ରୋଷେଇ କଲା; ତଥାପି ଅଜଗର ସାପକୁ ସେ ତାତି ଜଣାପଡ଼ିଲା ନାହିଁ । ଏଗୁଡ଼ାକ ଛେଳିଛୁଆ, ମେଣ୍ଢାଛୁଆ ଓ ଅନ୍ୟାନ୍ୟ ଅନେକ କ୍ଷୁଦ୍ର ଜୀବଙ୍କୁ ଗୋଟାସୁଦ୍ଧା ଗିଳିଯା'ନ୍ତି । ଶୁଣିଛି ପୁରୀରେ ଗୋଟାଏ ଦି'ଟା ଏପରି ବଡ଼ସାପ ଅଛନ୍ତି । କିନ୍ତୁ ଅବଧି ମୁଁ କାହା ହାବୁଡ଼ରେ ପଡ଼ି ନାହିଁ । ହାବୁଡ଼ରେ ପଡ଼ି ଯେବେ ସେଥିରୁ ବର୍ତ୍ତିବି, ତେବେ ସେମାନଙ୍କ ସମ୍ବନ୍ଧରେ କେତେକ ବୈଜ୍ଞାନିକ ତଥ୍ୟ ଉତ୍କଳ ସାହିତ୍ୟର ପାଠକମାନେ ଉପହାର ପାଇବେ ।

ଏ'ତ ଗଲା ସାପଙ୍କ କଥା । ମୋର ଯେତେଦିନ ଯାକେ ପୁରୀରେ ଦାନାପାଣି ବରାଦ ଅଛି ଓ ମୁଁ ପୁରୀର ତାଳ ଗଛ ଛାଇରେ ପଡ଼ିଅଛି, ସେତେଦିନ ମଝିରେ ମଝିରେ ଏହିପରି ପୁରୀର ଅନ୍ୟାନ୍ୟ ଜୀବଙ୍କ ସମ୍ବନ୍ଧରେ ଓ ପୁରୀ ଅଧିବାସୀମାନଙ୍କ ସମ୍ବନ୍ଧରେ ବୈଜ୍ଞାନିକ ତତ୍ତ୍ୱ ଓ ଅନୁଭବ ପାଠକମାନଙ୍କୁ ଉପହାର ଦେବାର ବାସନା ରହିଲା ।

ତତ୍‌ପରେ ମୋ ନିଜକଥା । ପୁରୀର ହାଉଆ ମୋ ଉପରେ ଭାରି ନାରାଜ ବୋଲି ଆପଣମାନଙ୍କୁ କହିଅଛି । ବର୍ତ୍ତମାନ ଔଷଧ ଓ ବୁଟି ପ୍ରୟୋଗ ଦ୍ୱାରା ଯେ ହାଉଆକୁ ମୋ ଦେହରେ ଚଳାଇ ନେବାର ଚେଷ୍ଟା କରୁଅଛି । ସେ ହାଉଆ ତ ବଦଳିବାର ନୁହେଁ । ହୁଏତ ସେ ହାଉଆକୁ ଔଷଧ ଓ ଜଡ଼ିବୁଟି ଦ୍ୱାରା ମୋ ଦେହରେ ଚଳାଇ ନେବାକୁ ହେବ । ନଚେତ୍ ଅକୃତକାର୍ଯ୍ୟ ହେଲେ ବ୍ୟକ୍ତିଗତ ରୋଗର ବୀଜ ଏଠାରେ ବୁଣି ଆମେ ବିଦାୟ ଦେବୁ । ଇତି ।

ଉତ୍କଳ ସାହିତ୍ୟ/୧୭ଶ ଭାଗ/୪ର୍ଥ ସଂଖ୍ୟା/୧୩୨୦ ସାଲ ।

## ।। ଛୟାଳିଶ ।।

ଆରଥର 'ହାଲଚାଲ'ରେ ପୁରୀ ଟାଉନ ଅନ୍ତର୍ଗତ ସର୍ପପରିବେଷ୍ଟିତ ମୋର ନୂତନ ବାସସ୍ଥାନର ବର୍ଣ୍ଣନା ଆପଣମାନଙ୍କୁ ଶୁଣାଇଥିଲି । ସେମାନଙ୍କ ଦାଉରୁ କି ଉପାୟରେ ଘଡ଼ିଏ ଖଣ୍ଡେ ରକ୍ଷା ପାଇ ପେଟ ଚିନ୍ତାରେ ଲାଗି ଦି'ଓଳି ଦି'ମୁଠାର ଆୟୋଜନ କରିବାକୁ ସମର୍ଥ ହେବି, ଏହି କଥା ଭାବି ଭାବି ମନଟା ଟିକିଏ ଅସ୍ଥିର ହୋଇ ଯାଇଥିଲା; କିନ୍ତୁ ଏଥିମଧ୍ୟରେ କୌଣସି ବନ୍ଧୁଙ୍କ ପରାମର୍ଶରେ ଗୋଟିଏ ନେଉଳ ପାଳିବାର ସ୍ଥିର କଲି । ବନ୍ଧୁ କହିଲେ, ନେଉଳ ରଖିଲେ ଦୁଇ ପ୍ରକାର ଲାଭ । ନେଉଳ ଡରରେ ସାପ ଘରେ ପଶିବେ ନାହିଁ । ପଶିଲେ ନେଉଳଭାଇ ତାଙ୍କର ଇହକାଳ ସାଙ୍ଗ କରିଦେବେ; କିନ୍ତୁ ସେଥିରେ ମଧ୍ୟ ଢେର ଅଡୁଆ - ନେଉଳଭାଇଙ୍କ ପାଇଁ ଖଣ୍ଡେ ପିଞ୍ଜରା ଦରକାର, ଫେର ତାଙ୍କ ପାଇଁ ନିତିପ୍ରତି ମାଛଟାଏ, ଶୁଖୁଆ ଖଣ୍ଡେ ଉଣ୍ଡିବାର ଆବଶ୍ୟକ । ନେଉଳ ବାପୁଡ଼ା ଥରେ ଘରୁ ବାହାରିଲେ ଫେର ଘରକୁ ଫେରିବାକୁ ଭାରି ନାରାଜ - ଯେବେ ଫେରିବାକୁ କିଛି ପ୍ରଲୋଭନ ନ ଥାଏ । ସେଥିପାଇଁ ଅବଶ୍ୟ ତାକୁ ଟିକିଏ ଲେଖାଏଁ ଆପୁ ଅଭ୍ୟାସ କରାଇବାକୁ ହେବ । ଆପୁଆ ସା'ନ୍ତଙ୍କ ନିକଟରେ ଖଟୁଥିବା ବାରିକପୁଅର ଆପୁ ଖବର ସା'ନ୍ତଙ୍କ ଡିବାରୁ ଗୁଜୁରିଯାଏ, ସେଥିପାଇଁ ବାରିକପୁଅ ସା'ନ୍ତଙ୍କ ପିଛା ଧରିଥାଏ । ସା'ନ୍ତ ମଧ୍ୟ କହନ୍ତି, ଖରଚ ଟିକିଏ ବେଶି ହେଉ, ଅର୍ଦ୍ଦଳିଟାଏ ତ ସବୁବେଳେ ସଙ୍ଗରେ ବୋକଚା ବୋହିବାକୁ ରହିବ । ଏହି ହିସାବରେ ଧରିବାକୁ ଗଲେ ନେଉଳଭାଇର ଆପୁ ଖରଚ ଚଳାଇବା ନିମନ୍ତେ ତାହାର ପ୍ରଭୁ ଆପୁଆ ହେବା ଅର୍ଥନୀତିଶାସ୍ତ୍ରସଙ୍ଗତ । ଅତଏବ ପାଠକ-ପାଠିକାମାନେ ଯେବେ ଭବିଷ୍ୟତରେ ଅବଗତ ହେବେ ଯେ ଲେଖକ ଆପୁଖୋର ତେବେ ସେ ସମ୍ବନ୍ଧରେ ଗୋଟାଏ ଆଇନ ସଙ୍ଗତ ନଜିର ଆଗରୁ ଠିକ୍‌ଠାକ ରହିଲା । ଯାହାହେଉ ବର୍ତ୍ତମାନ ଆଶା ଅଛି ଯେ ନେଉଳଭାଇଙ୍କ ପ୍ରସାଦରୁ ସାପ ଘାଉଡ଼ରୁ ଆପାତତଃ ରକ୍ଷା ପାଇପାରିବି । ଛାଡ଼ ସେ କଥା । କେତେକ ବନ୍ଧୁ ଗତ ସଂଖ୍ୟା ଦୁନିଆର ହାଲଚାଲ ପଢ଼ି ପ୍ରଥମେ ଟିକିଏ ସରଗରମ ହୋଇ ଦଣ୍ଡବିଧି ଆଇନର ୪୯୯ ଦଫା ଉଣ୍ଡାଳିଲେ । ଫେର ଟିକିଏ ସୁସ୍ଥ ହୋଇ ମତେ ପରାମର୍ଶ ଦେଲେ ଯେ ବର୍ତ୍ତମାନ ପୁରୀ ହେଲା ମୋର ଗୃହ ଓ ପୁରୀର ହାଲଚାଲଟା ହେଲା ଗୃହଛିଦ୍ର - ଅର୍ଥାତ୍ 'ନବଗୋପ୍ୟାନି' ମଧ୍ୟରୁ ଗୋଟାଏ 'ଗୋପ୍ୟ' - ଅତଏବ ଉତ୍କଳ ସାହିତ୍ୟରେ ଅପ୍ରକାଶ୍ୟ । ଗୃହଛିଦ୍ରଗୁଡ଼ାକ ପଦାରେ ଗାଇ ବଜାଇ ଡେଙ୍ଗୁର ଦେଲେ ସମସ୍ତଙ୍କର ଓ ସଙ୍ଗେ ସଙ୍ଗେ ଲେଖକର ଇଜତ କମିଯିବ । କଥାଟା ମୋତେ ସଙ୍ଗତ ବୋଲି ବୋଧହେଲା । କିନ୍ତୁ ସେ ଛିଦ୍ରଗୁଡ଼ାକ ଥିବା ପର୍ଯ୍ୟନ୍ତ ଘରେ ପଶି ଦାଉଘାତ କରିବା ଅବଶ୍ୟମ୍ଭାବୀ । ଅତଏବ ଛିଦ୍ରଗୁଡ଼ାକ ବନ୍ଦ କରିବା ଦରକାର । ବାହାରେ ଛିଦ୍ରଗୁଡ଼ାକ ଧରା ନ ପଡୁ । କିନ୍ତୁ ଘର ମଧ୍ୟରେ କେଉଁ ଛିଦ୍ରଟା ମାଟିଗୋବର ଦ୍ୱାରା, କାହାକୁ ଝୁଣା ଧୂଆଁ ଦ୍ୱାରା, କାହାକୁ ଟିକିଏ ଆହୁରି ବଡ଼ କରି ଖୋଲି ଦେଇ ଚୂନ ପଲସ୍ତରା ଦ୍ୱାରା ତ ବନ୍ଦ କରିବା ଦରକାର । ଏଥିରେ ଅବଶ୍ୟ ମୋ

ବନ୍ଧୁ ମୋ ସଙ୍ଗେ ଏକମତ ହେଲେ ଓ କହିଲେ ଘଷିଲେ ମାଜିଲେ ଛିଦ୍ରଗୁଡ଼ାକ ବଢ଼େ - ଅତଏବ ଆପାତତଃ ବର୍ତ୍ତମାନ ସେ ଛିଦ୍ରଗୁଡ଼ାକ ନିବାଡ଼ କରି ବନ୍ଦ କରିବାର ଚେଷ୍ଟା କରାଯାଉ। ବର୍ତ୍ତମାନ ମୁଁ ସେହି ଚେଷ୍ଟାରେ ଲାଗିଛି। ଦେଖାଯାଉ ଫଳ ଭଗବାନ୍‌ଙ୍କ ହାତରେ।

ତତ୍‌ପରେ ଓଡ଼ିଶାର ହାଲଚାଲ ପ୍ରସଙ୍ଗ -

ଆଗାମୀ ନଭେମ୍ବରରେ ବଡ଼ଲାଟଙ୍କର ଓଡ଼ିଶାକୁ ଶୁଭାଗମନ। ଆମ ଓଡ଼ିଆଙ୍କ ଅବସ୍ଥା ତନଖିବାକୁ ସେ ନାନା କାର୍ଯ୍ୟ ଛାଡ଼ି ଓଡ଼ିଶାକୁ ଆସୁଅଛନ୍ତି। ଅନେକ ଲୋକଙ୍କୁ ଦେଖିବେ, ଅନେକ କଥା ଶୁଣିବେ, ଯିବେ ଓ ସଙ୍ଗେ ସଙ୍ଗେ ଓଡ଼ିଆଙ୍କର କେତେକ ବାସ୍ତବିକ ଅଭାବ କିପରି ଦୂର ହେବ, ଏ ସମ୍ବନ୍ଧରେ ଲାଟସାହେବ ଅବଶ୍ୟ ଚେଷ୍ଟା କରିବେ। ଅତଏବ ଏଥିକୁ ଚାହିଁ ଲାଟସାହେବଙ୍କୁ ପାଇ ଆମ୍ଭେମାନେ ଆଖୁ କିଆରିରେ ପଶିଲା ଭଳିଆ ନ ହୋଇ ଗୋଟାଏ ଦୁଇଟା ଆମ୍ଭମାନଙ୍କର ସର୍ବବାଦିସମ୍ମତ ବାସ୍ତବ ଅଭାବ ତାଙ୍କ କାନରେ ପକାଇବା ନିମନ୍ତେ କି ବଡ଼, କି ସାନ ସମସ୍ତେ ବଦ୍ଧପରିକର ହେବା ଦରକାର। ଏଥିପାଇଁ ଜଣେ ବଡ଼ମୁଣ୍ଡିଆଙ୍କ ନିକଟକୁ ଖଣ୍ଡେ ଅରଜି ପଠାଇଥିଲି। ତହିଁର ମର୍ମ ଏହିକି - ସମଗ୍ର ଉତ୍କଳଭାଷୀ ପ୍ରଦେଶ ଏକ ଶାସନାଧୀନ ହେଉ ଓ ସମ୍ବଲପୁର ସଙ୍ଗେ ଓଡ଼ିଶା ଗୋଟିଏ ସଳଖ ରେଳ ଲାଇନ ଦ୍ୱାରା ସଂଯୁକ୍ତ ହେଉ। ମୋର କ୍ଷୁଦ୍ର ମତରେ ଏ ଦିଓଟି ଓଡ଼ିଶାର ପ୍ରଧାନ ଅଭାବ। ଏହି ଦିଓଟି ଅଭାବ ପୂରଣ ହେଲେ ଓଡ଼ିଶାର ଅବସ୍ଥା ଅନେକ ପରିମାଣରେ ଉନ୍ନତ ହୁଅନ୍ତା। ଏହାଛଡ଼ା ତ ବହୁ ଶତ ଅଭାବ ରହିଅଛି। ବଡ଼ଲାଟ ବାହାଦୁର ଏଠାକୁ ଆସିଲେ ବୋଲି ଯେ ଏ ସବୁ ଅଭାବ ଏକାଦିନକେ ଉଭେଇଯିବ, ଏହା ଆଶା କରିବା ବାତୁଳତା। ଓଡ଼ିଶାରେ ଉଚ୍ଚ ଶିକ୍ଷା ବିଷୟରେ ସୁବିଧାର ଅଭାବ, ହାଇକୋର୍ଟ ସମ୍ବନ୍ଧରେ ଅସୁବିଧା ଆଦି ଅନେକ ଅଭାବ ଅଛି। ସେଗୁଡ଼ିକ ପଛକୁ ଥାଉ। ମୋ ମତରେ ପ୍ରଥମ ଓ ପ୍ରଧାନ କଥା - ସବୁ ଓଡ଼ିଆଯାକ ଏକ ଶାସନରେ ରହିବା। ପଞ୍ଚା ପଞ୍ଚା ହୋଇ ବଙ୍ଗ, ବିହାର, ମଧ୍ୟପ୍ରଦେଶ, ମାନ୍ଦ୍ରାଜରେ ଓଡ଼ିଆଯାକ ବୁଣା ହୋଇଛନ୍ତି, ଏଥିରେ ଜାତୀୟ ଉନ୍ନତି ଅସମ୍ଭବ। ଭାରତର ଅନ୍ୟ କୌଣସି ଜାତି ଏପରି ଛିନ୍ନ ବିଚ୍ଛିନ୍ନ ହୋଇ ପଡ଼ି ନାହାନ୍ତି। ଉନ୍ନତତର ଶାସନାଧୀନ ରଖ କିମ୍ବା ଅବନତତର ଶାସନାଧୀନ ରଖ, ସେଥିରେ ଜାତୀୟ ଉନ୍ନତି ହିସାବରେ ଧରିବାକୁ ଗଲେ ଇତର ବିଶେଷ କିଛି ନାହିଁ; କିନ୍ତୁ ସମସ୍ତଙ୍କୁ ଗୋଟିଏ ଘରେ ପୂରାଅ। ମୋ ମତରେ ସମସ୍ତେ ଏକମୁଖରେ ଏହି କଥା ଲାଟସାହେବଙ୍କ ଛାମୁରେ ଗୁହାରି ଜଣାଇବା।

ଯେତେବେଳେ ଆମ ଦାଣ୍ଡ ଦୁଆରକୁ ସମ୍ରାଟ୍‌ଙ୍କ ପ୍ରତିନିଧି ବିଜେ କରି ଆଜ୍ଞା ଦେଉଛନ୍ତି, ସେତେବେଳେ ତାଙ୍କୁ ଆପଣାର ଜାତିର ଅବସ୍ଥା ଏକମୁଖରେ ନ ଜଣାଇଲେ ହେବ କିପରି ?

ଓଡ଼ିଶାର ରାଜନୀତିକ ମଞ୍ଚର ଅଭିନେତୃବର୍ଗ କୌଣସି ସାଧାରଣ ଆନ୍ଦୋଳନରେ ମତଭେଦ ଓ ପାଞ୍ଚ ମନରେ ଯେଉଁ ଉଦାହରଣ ସଭ୍ୟ ଜଗତକୁ ଆଜିଯାଏ ଦେଖାଇ ଆସୁଅଛନ୍ତି, ବଡ଼ଲାଟଙ୍କ ଶୁଭାଗମନ ବେଳେ ସେପରି କସରତ ନ ଦେଖାଇ ଏକମନ ହୋଇ ବଡ଼ଲାଟଙ୍କ ଛାମୁରେ ଠିଆ ହୁଅନ୍ତୁ, ଭଗବାନ୍‌ଙ୍କ ନିକଟରେ ଏତିକି ପ୍ରାର୍ଥନା ।

ଗୋସେଇଁଙ୍କ ନିକଟକୁ ଯେଉଁ ପ୍ରାର୍ଥନା ପତ୍ର ପଠାଇଥିଲି, ସେଥିର ଉତ୍ତରରେ ସେ କହିଲେ, "ଆରେ ଦୂର କର ! କହିଲେ ମାନୁଛି କିଏ ? ସମସ୍ତେ ତ ଯେଝା ହାତରେ ଚଉଦ ପା ହେବାକୁ ଚେଷ୍ଟା କରୁଛନ୍ତି - ଏକମତ ହୋଇ କାର୍ଯ୍ୟ କରିବେ କାହୁଁ ?" ମୁଁ ମନେ ମନେ ବିଚାରିଲି, ଏଇଟା ବର୍ତ୍ତମାନ ଆମର ମାନ ମାରିବାର ବେଳ ନୁହେଁ । ଯେ ଅବୁଝା ପିଲାକୁ ବୁଝାଇପାରେ, ଯେ ମାଡ଼ ଗାଳି ଖାଇ ନିଜର କର୍ତ୍ତବ୍ୟ ପଥରେ ଯାଇପାରେ, ଯେ ଅପମାନ ଓ ଅପବାଦକୁ ଭ୍ରୂକ୍ଷେପ ନ କରି ଆପଣାର ଦେଶ ପ୍ରତି ଓ ଜାତି ପ୍ରତି ଯାହା କର୍ତ୍ତବ୍ୟ, ତାହା ହୃଦୟଙ୍ଗମ କରି ତଦନୁସାରେ କାର୍ଯ୍ୟ କରିପାରେ, ସେ ଅବଶ୍ୟ ଦେଶର ନେତା - ସେ ଆଗଚଲା, ଆଗବୋଲା ହୋଇ ଜାତିର ଗୁରୁତର ଅଭାବ ପ୍ରତି ସଚେତ ରହିବ ଓ ବେଳକାଳ ଉଣ୍ଡି ପଦେ ଅଧେ କହିବ, ଏଥିରେ ସନ୍ଦେହ ନାହିଁ । ଓଡ଼ିଶା ତ ପୁଞ୍ଜାଏ ଖଣ୍ଡେ ମୁଖିଆ ମୁଖିଆ ବାଛି ଦରବାରକୁ ପଠାଇଅଛି । ଯେତେବେଳେ ସେମାନେ ଯା ତା ବାଡ଼ି ପଦାଡ଼ରେ ବୁଲି ଅନୁଗ୍ରହ ଓ ଆନୁକୂଲ୍ୟ ଭିକ୍ଷା କରୁଥିଲେ, ସେତେବେଳ କଥା ଯେପରି ଝଟ୍‌କରି ପାସୋରି ନ ପକାନ୍ତି । ସେ କଥା ମନେ ଥିଲେ ଆମର ଅନେକ କାର୍ଯ୍ୟ ହେବ । ନଚେତ୍ ପାଠ କହୁଛି - "ଆଗ ମାଧିଆ କି ? ମାଧିଆ ହାତରେ ଟଙ୍କା ଟୋକର, ମାଧିଆ ମଣିଷ ଚିହ୍ନଇ କି ?" ଭଗବାନ୍ ଏପରି ନ କରନ୍ତୁ । ଆମ୍ଭମାନଙ୍କର ରାଜପ୍ରତିନିଧି ଆମ ଦ୍ୱାରସ୍ଥ ହେଲାବେଳେ ଯେପରି ସମସ୍ତେ ଏକମନ ହୋଇ ତାଙ୍କ ନିକଟରେ ଓଡ଼ିଶାର ଆନ୍ତରିକ ଓ ଅଟଳ ରାଜଭକ୍ତି ଓ ଗୋଟିକେତେ ବାସ୍ତବ ଅଭିଯୋଗ ଜଣାଇପାରୁଁ, ଏଥିପାଇଁ ଦେଶର ନେତୃବର୍ଗ ଓ ଅଭିନେତୃବର୍ଗଙ୍କ ଦୃଷ୍ଟି ବିନୀତ ଭାବରେ ଆକର୍ଷଣ କରୁଅଛୁଁ ।

ନେତୃବର୍ଗ ଓଡ଼ିଆ ଜାତିଟାକୁ ଫଟ୍‌ଫାଟ୍ ତାଳଫୋଟକା ଭଳି ଫୁଟାଇଲେ ଚଳିବ ନାହିଁ । ଶିଡ଼ି ଉପରେ ଗୋଡ଼ ଦେଇ ଦେଇକା ଛାତ ଉପରକୁ ଉଠି ଗୋଟିଏ ଗୋଡ଼ ଛାତ ଉପରେ ପଡ଼ିଲା କ୍ଷଣି ଆର ଗୋଡ଼ରେ ଶିଡ଼ିଟାକୁ ନାତ ମାରି ଚିତ୍‌ପଟାଙ୍ଗ କରି ପକାଇଦେବା ଗୋଟାଏ ଅବଶ୍ୟ ଭାରି ଶୁଭ ଲକ୍ଷଣ ନୁହେଁ ।

ଆଜି ଏତିକି । ସମ୍ପାଦକ ମହାଶୟଙ୍କ ଫରମାସ ଯେ ଆଗାମୀ ସଂଖ୍ୟା ସାହିତ୍ୟ ବେଳକୁ ରସରସିଆ, ଚନ୍ଦ୍ରଉଦିଆ, ଚହଟଚିକଣିଆ ହାଲଚାଲ ପ୍ରବନ୍ଧଟାଏ ଲେଖିବାକୁ ହେବ । କାରଣ ଦୁର୍ଗାପୂଜା ସଂଖ୍ୟା ସାହିତ୍ୟରେ ମନମଉଜିଆ ଗୋଟାକେତେ ପ୍ରବନ୍ଧ ବାହାର କରିବା ନିମନ୍ତେ ଖୋଦ ସମ୍ପାଦକ ଏଥରକ ବଦ୍ଧପରିକର । ଦେଖାଯାଉ, ଫରମାସି ମୁତାବକ କି ମାଲମସଲା ଭଣ୍ଡାରରୁ ବାହାରୁଛି ।

ଉତ୍କଳ ସାହିତ୍ୟ/୧୭ଶ ଭାଗ/୫ମ ସଂଖ୍ୟା/୧୩୨୦ ସାଲ ।

## ।। ସତଚାଳିଶ ।।

ପାଠକ ଅବଧାନ ! ସମ୍ପାଦକ ଅବଧାନ ! ପାଠ ବୋଇଲା, 'ଆୟୁର୍ବିତ୍ତଂ ଗୃହଛିଦ୍ରଂ ମନ୍ତ୍ର - (ଆଉ ଗୋଟାଏ କଣ) ଭେଷଜଂ ଅପମାନଂ ତପୋଦାନଂ ନବ ଗୋପ୍ୟାନି କାରୟେତ୍ ।' ଅର୍ଥାତ୍ ସମୟ ବିଶେଷରେ ବେଳକାଳ ଉଣ୍ଡି ନଅଟି କଥା 'ଗୋପ୍ୟାନି' କରିବ, ଯଥା - ବରକନ୍ୟା ପ୍ରସଙ୍ଗ ପଡ଼ିଲାବେଳେ ପାତ୍ରପାତ୍ରୀଙ୍କର ବୟସ ଲୁଚାଇବ । ଇନ୍‌କମ୍ ଟିକସ ବସିଲାବେଳେ ତଲବ ଆସିଲେ ରୋଜଗାରର ଗୁମର ଫିଟାଇବ ନାହିଁ । ମହାପ୍ରସାଦ ନିର୍ବନ୍ଧ ପୂର୍ବରୁ ବରଘର ଦେଖିବାକୁ କୁଳୁହାଁ (ଓରଫ କୁଣିଆ) ଆସିଲାବେଳେ ଘରର ଜଳାଗୁଡ଼ାକ ଘୋଡ଼ାଇ ପକାଇବ । ଗୁଣିଗାରିଡ଼ି ଓ ଫୁଙ୍କାଫୁଙ୍କି କଲାବେଳେ ମନ୍ତ୍ରଗୁଡ଼ାକ 'ଷଡ଼କାନ' କରିବ ନାହିଁ ଇତ୍ୟାଦି, ଇତ୍ୟାଦି । ଫଳତଃ ଖଞ୍ଜ, ଅଖଞ୍ଜରେ ଏହିପରି ତାକତରକରେ ଘୋଡ଼ିଆଘୋଡ଼ି କରି ସବୁକଥା ମାରି ଚାଲିଯାଉଥିବ । ସେଥିପାଇଁ ଦିନେ ଜଣେ ଗୃହସ୍ଥଙ୍କୁ ତାଙ୍କର ପୁରୁଖା ଘରଣୀ ଚେତେଇ ଦେଇ କହିଲେ, 'ଅଖ ଗଡୁଥିଲେ ଚକ ଗଡୁଥାଏ, ଗଡ଼ି ପଡୁଥାଏ ପହି ! ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି ।' ଅତଏବ ଗତ ସଂଖ୍ୟା ହାଲଚାଲରେ କହିଥିଲି, ଗୃହଛିଦ୍ରଗୁଡ଼ାକ ଗୋପ୍ୟ ରଖିବ । ସେ ଦିନ 'ଉତ୍କଳ ସାହିତ୍ୟ'ରେ ସାପଙ୍କ ଖବର ଶୁଣି ମୋ ସମୁଦି ଆସି ଗୋଟାଏ ଭାରି ଅଭିମାନଟାଏ କରି କହିଲେ, ''ହଇ ହେ ପହରାଜେ ! କଚେରି ପାଖରେ ଆମର ଘର ଖଣ୍ଡକ ଥିଲା ଯେ, ବେଳକାଳ ଦେଖି ଭଡ଼ାଟିଆଙ୍କଠାରୁ ବେଶ୍ ପଣେ ମିଳୁଥିଲା; ତୁମେ ଡାକିହାକି ଖବରକାଗଜରେ ଲେଖି ଦେଲ ଯେ, ଆମ କୋଠାଟାର ଚାରିପାଖ ସାପ ବଣ, ଏଥିରେ ଫେର ତୁମେ ଛାଡ଼ିଗଲା ବାଦ ଭଡ଼ାଟିଆ ବାଜିବେ ଟି ? ହୁଏତ ଏଠାରୁ ବସା ଭାଙ୍ଗି ଯାଅ, ନଇଲେ ବସା ଚାରିପାଖରୁ ନାଗଫେଣିଆ ବଣତକ ସଫା କର ।'' ''ବିରି ଅଟକାଳି ଖୋଇଛି ଯେ, ରାତିରେ ହଗେଇ ନଉଚି ସେ ।'' କରେଁ କଣ ? ଅଗତ୍ୟା ମୂଲିଆ ଲଗେଇ ବସା ଚାରିପାଖରୁ ନାଗଫେଣିଆ ଜଙ୍ଗଲତକ ସଫା କଲି । ମନେ ମନେ ବିଚାରିଲି, ଏଡ଼େ ସହଜ ଉପାୟ ଥିଲା, ଏହା ଆଗରୁ ନ କରି ସାପଙ୍କ ଉପରେ ଅଭିମାନ ମାଇଲି, ନେଉଳଭାଇ ପୋଷିଲି, ଆପୁ ଅଭ୍ୟାସ କଲି କାହିଁକି ? ଯାହାହେଉ ବସା ନିକଟରୁ ନାଗଫେଣିଆ ଜଙ୍ଗଲ ସାଫ ହେବା ପରେ ନେଉଳଭାଇ ଆପୁ ଅଧଲାଟିକରେ ଆମ ପିଛା ଧରି ରହିଗଲେ । ବିଚାରିଲି, ଏଇଟା ହେଲା ପୁରୀ ଆସିବାର 'ଉପୁରି ଲାଭ' । (ନୋଟ - ଏହିଠାରେ ପାଠକମାନଙ୍କୁ କହି ରଖିଥାଏଁ ଯେ, ମୁଁ ପୁରୀ ଆସିବା ଦ୍ୱାରା ମୋର ଅନେକ ପ୍ରକାର ଉପୁରି ଲାଭ ହୋଇଅଛି । ମୋ ପୁରୀ ଆସିବା ଦ୍ୱାରା ମୋ ଗୁଣି ବଳରେ ପୁରୀ ମଶାଣିର ଡାହାଣୀ ଚିରିଗୁଣୀ ମଧ୍ୟ ଚେଇଁ ଉଠିଛନ୍ତି । ଆଉ ଏଥିମଧ୍ୟରେ କେତେ ବଢ଼ିଆ ବଢ଼ିଆ ମାଲମାନେ ମତେ ଅନେକ ପ୍ରକାର କସରତ୍ ଦେଖାଉଛନ୍ତି । ଏତଦ୍ୱାରା ମୋର ଅନେକ ପ୍ରକାର ଉପୁରି ଲାଭ ହୋଇଅଛି ଓ ହେବ ବୋଲି ଭାରି ଆଶା ଅଛି । ମୋ ଉପୁରି ଲାଭ ସାଙ୍ଗେ ସାଙ୍ଗେ ମୋର

ଓସ୍ତାତମାନଙ୍କର ମଧ କି ଉପୁରି ଲାଭ ହେବ ଏହାହିଁ ଦେଖିବାକୁ ବାକି ଅଛି ।) ଏହା ବିଚାରି ମନଟା ଟିକିଏ ଥଣ୍ଡା କଲି । ଛାଡ଼ ସେ କଥା । ସମ୍ପାଦକ ଅବଧାନେ ମନେମନେ ବିଚାରୁଥିବେ, ଗତ ସଂଖ୍ୟାରେ ଅଙ୍ଗୀକୃତ ଚହଟଚିକଣିଆ ହାଲଚାଲ କାହିଁ ? ଏ ସଂଖ୍ୟାରେ ଗୁଡ଼ାଏ ବାଜେ କଥା କାହିଁକି ? ଏଇଥିରୁ ଗୁଡ଼ିଏ କହି ଲେଖକ କର୍ତ୍ତବ୍ୟ ସାଙ୍ଗ କରିବେ ପରା ?''

ମୁଁ ପଚାରେ, ସମ୍ପାଦକ ମହାପ୍ରଭୁ । ଦୁର୍ଗାପୂଜା ସଂଖ୍ୟା ବାହାର କରି ଆପଣ ଆପଣଙ୍କ ଗହକି ଜଗିବେ ଓ ବେଳକାଳ ଉଣ୍ଡି ଭେଲୁପେବଲ V.P.P. (ଦେ କଉଡ଼ି ଖା ପିଠା) ଡାକରେ 'ସାହିତ୍ୟ' ପଠାଇବେ । ଲେଖକ ବିଚାରାର କଣ ଉପରି ଲାଭ ହେବ ଯେ ସେଥିପାଇଁ ସେ ତାର ପେଟଚିନ୍ତା ଛାଡ଼ି ଆପଣଙ୍କ ଗହକିଙ୍କ ମନ ଜଗିବାକୁ ତତ୍‌ପର ହେବ ?

ଆପଣ ଚାହାନ୍ତି, ଅଧୁଲିଟିଏ ଅଣ୍ଟାରୁ କାଢ଼ିବେ ନାହିଁ, ଅଥଚ ଏଥିରେ ଜରିଧଡ଼ିଆ, କୁମ୍ଭପକା, ମାଛିବୁଟା ବସା, ଚାଳିଶ ନମ୍ବରିଆ, ଗାଫ ଏସବୁ ବିଶେଷଣ ବିଶିଷ୍ଟ ଗାମୁଛାଟିଏ ପଚାଇବାକୁ ଆପଣଙ୍କୁ ମିଳିବ । ନ ମିଳିଲେ ହାଟର ଦୋଷ ଓ ତନ୍ତୀବାପୁଡ଼ାର ତକସିର । ସେଥିରେ ଫେର ଗାମୁଛା ଖଣ୍ଡକ ଟିକିଏ ଚିରା କିମ୍ବା ବପଡ଼ିଆ ପଡ଼ିଲେ ଆପଣ ସେ ଖଣ୍ଡକ ଉଗୁରା କରି ଉଆପସ ହେବାକୁ ଆଣିବେ !

ଆଧୁନିକ ଲେଖକଙ୍କର ଏହା ଗୋଟାଏ ଭାରି ଦୋଷ ଏହି ଯେ, ସେମାନଙ୍କ ଲେଖାରେ ଅଟକଳ ନ ଥାଏ । ଆଳାପନା ହେଲାବେଳକୁ ରାତି ଭୋର, ଅସଲ ପାଲା, ଗୀତ ଓ ଚଅଁର ଡିହା ଆରମ୍ଭ ହେବ କେବେ ? ଉପସ୍ଥିତ କ୍ଷେତ୍ରରେ ଲେଖକ ସେ ଶ୍ରେଣୀର ରୋଗରୁ ମୁକ୍ତ ନୁହେଁ । ଅତଏବ ଏହିପରି ଗୁଡ଼ାଏ ସମ୍ଭାଳିନେବା ଆପଣଙ୍କର କର୍ତ୍ତବ୍ୟ । ତାହା ନ ହେଲେ ଆମ ଭଳିଆ ଲେଖକଗୁଡ଼ାକ ଆପଣଙ୍କ ପାଖ ପଶିବେ ନାହିଁ । ଏଗୁଡ଼ାକ ହେଲା ଆପଣଙ୍କ ଖବରକାଗଜ କ୍ଷେତ୍ରର ଗୁହଛିଦ୍ର । ଏଗୁଡ଼ାକ ପଦାରେ ଅପ୍ରକାଶ୍ୟ । କିନ୍ତୁ ବଗୁଲିଆ ଲେଖାଳିଙ୍କ କଲମ ଉପରେ ଆପଣଙ୍କ ଚାରା କ'ଣ ? ଛାଡ଼ନ୍ତୁ ସେ କଥା ।

ପାଠକ ଅବଧାନେ ! ଏଥରକ ଆପଣମାନଙ୍କୁ କେତେଗୁଡ଼ିଏ ପୁରୀର ସଟୀକ ସମ୍ବାଦ ଦେବାଲାଗି ମୁଁ ବିଶେଷ ଯୋଗାଡ଼ରେ ଥିଲି । ଏଥିମଧରେ ଅନୁଭବରେ ଦେଖିପାରିଲି ଯେ ସେଥିରେ କଲମ ଧରିବାକୁ ହେଲେ ଆଗପଛ ବହୁତ ଉଣ୍ଡି, ବହୁତ ଜାଗା ଚିପିଚାପି, ବହୁତ ଚୋରାଛପା କରି, ଭୈରବୀ ଚକ୍ରର ଆକ୍ରମଣରୁ ଦିହକୁ ଜଗିଜାଗି, ସମସ୍ତଙ୍କ ମହତକୁ ପଦାରେ ନ ପକାଇ ପଦେ ଦି'ପଦ କହିବାକୁ ହେବ । ଏପରି ସ୍ଥଳରେ ଆମର କାଠ ଦେବତା ଜଗନ୍ନାଥଙ୍କ କଥା ପଦେ ଅଧେ କହିଲେ ସେଥିରେ କେହି ବିରକ୍ତ ହେବେ ନାହିଁ କିମ୍ବା ଜଗନ୍ନାଥ ବିରକ୍ତ ହେଲେ ମଧ ମୋର କିଛି କରିପାରିବେ ନାହିଁ । ଏହା

ବିଚାରି ଜଗନ୍ନାଥଙ୍କର କେତେକ ଗୃହଚ୍ଛିଦ୍ର ଏଠାରେ ପ୍ରକାଶ କଲି । ଆପଣମାନେ ଦେଖନ୍ତୁ ଯେ ଜଗନ୍ନାଥେ ମଧ୍ୟ ନିରବଚ୍ଛିନ୍ନ ଗାର୍ହସ୍ଥ୍ୟ ସୁଖ ଅନୁଭବ କରିପାରୁ ନାହାନ୍ତି । ଖୋଦ ଲକ୍ଷ୍ମୀ ସାଆନ୍ତାଣୀଙ୍କ ସଙ୍ଗେ ଖୋଦ ଜଗନ୍ନାଥଙ୍କର ମୁଲାକାତ ନଦାରଦ । ଯାହା ଭେଟାଭେଟି ତାହା ଅକ୍ଷମତାପନ୍ନ କାରପଟଦାର ଦାନ ବା Proxyଙ୍କ ଜରିଆରେ । ଏ ସୁଖଟାର ମର୍ମ 'ଯଥା ଦେହେ ତଥା ଦେବେ' କହି ଆମେ ମାନବମାନେ ବୁଝିନେଉଁ । କପାଳ ଲେଖନ ତ ଆନ କରିବାର ତାକତ୍ ନିଜେ ଜଗନ୍ନାଥ ମହାପ୍ରଭୁଙ୍କର ନାହିଁ । ସେଥିପାଇଁ ଶ୍ଳୋକ ବୋଲିଛି -

''ଏକ ଭାର୍ଯ୍ୟା ପ୍ରକୃତି ମୁଖରା ଚଞ୍ଚଳା ଚ ଦ୍ୱିତୀୟା
ପୁତ୍ରୋପ୍ୟେକୋ ତ୍ରିଭୁବନ ବିଜୟୀ ମନ୍ମଥୋ ଦୁର୍ନିବାରଃ ।
ଶେଷଃ ଶଯ୍ୟା ବସତି ଜଳଧୌ ବାହନଂ ପନ୍ନଗାରିଃ
ସ୍ମାରଂ ସ୍ମାରଂ ସ୍ୱଗୃହଚରିତଂ ଦାରୁଭୂତୋ ମୁରାରିଃ ।''

ଅତଏବ ଲକ୍ଷ୍ମୀଙ୍କଠାରୁ ମହାପ୍ରଭୁ ଅଲଗା ଥାଇଁ ସୁଦ୍ଧା ତାଙ୍କ ଚଳନ୍ତି ପ୍ରତିମା ବା ଫୁଲବାଈଙ୍କୁ ଆଠକାଳି ବାରମାସ ପାଖରେ ବସାଇ ଗୁଜୁରାନ୍ ମେଣ୍ଟାନ୍ତି । ସେହି ଚଳନ୍ତି ପ୍ରତିମାଙ୍କର ଦାଉ ସମ୍ଭାଳିବା କାଠିକର ପାଠ । ଅସଲ କଥା ପଚାରୁଛି କିଏ ? ତାଙ୍କୁ ଛାଡ଼ି ଦିନ ଆଠଟା କି ନଅଟା ଦିନ ଗୁଣ୍ଡିଚା ଘରକୁ ଯାଆନ୍ତି ବୋଲି ସେଥିରେ ଫେର ତାଙ୍କଠାରୁ ଯେଉଁ ଗଞ୍ଜଣା ଠାକୁରେ ଭୋଗ କରନ୍ତି, ସେ କଥା ପଦାରେ ଫିଟାଇବାକୁ ଲାଜ ମାଡ଼େ । ଠାକୁର ତ ଘରୁ ବାହାରିଗଲେ, କହୁଆନ ବିଚାରାର ଭଲା କି ଦୋଷ ହେଲା ? ସାରଥିର ହାତ, ରଥର ପଟା ଏମାନଙ୍କର କି ଅପରାଧ ହେଲା ? ଏତିକିରେ ଭଲା ମନବୋଧ ହୁଅନ୍ତା ? ସେଥିରେ ଫେର ସୁହାଗ କେତେ ଦେଖନ୍ତୁ; ବଡ଼ ଦାଣ୍ଡରେ ରଥ ଉପରେ ଏବେ ବେଇଜ୍ଜତ କଲ ତ କଲ । ଫେର ତେଣୁ ଫେରିଲାରୁ ଚାହାଣି ମଣ୍ଡପରେ ଏତେ ଆଖିମିଟିକା ମାରୁଛ କିଆଁ ? ''ଦେଖିଲେ କଥା ନ କହେ, ନ ଦେଖିଲେ ପାଣି ନ ପିଏ'' ଏ ଏହିପରି ନିଶାପ । ଯାହା ତ ହେଲା ହେଲା, ଠାକୁରେ ନିଜ ଆସ୍ଥାନକୁ ଫେରିଲା ବେଳକୁ ଫେର କବାଟ କିଳା ଉପରେ କବାଟ କିଳା । ବଚନିକା ଉପରେ ବଚନିକା ! ଯେ ଘରୁ ବାହାରି ଯାଇଛି, ସେ ଗୁଣାଗାରି ନ ଦେଲେ ଫେର ଆସିବ କିଆଁ ? କଣ କରିବେ, ଠାକୁରେ ନାଚାର ହୋଇ କିଛି ଲାଞ୍ଚ ଦେଇ ଫେର ଘର ଭିତରେ ପଶିବାରୁ ଛାଡ଼ ପାଆନ୍ତି । ବୋଧହୁଏ ଚଳନ୍ତି ପ୍ରତିମାଙ୍କର ଏ ଦାଉ ଦେଖି ଜଗନ୍ନାଥେ ଅସଲ ଠାକୁରାଣୀଙ୍କ ପାଖକୁ ଯିବାକୁ ହେମତ୍ କରନ୍ତି ନାହିଁ । ସେଥିରେ ମଧ୍ୟ ଦୁଇ ସଉତୁଣୀ ! ମାମଲତରେ ମହାପ୍ରଭୁ ଲଣ୍ଡଭଣ୍ଡ ହେବା ଅପେକ୍ଷା ଗୋଟାଏ ଆସ୍ଥାନ ମାଡ଼ି ବଡ଼ଭାଇଙ୍କ ଆଶ୍ରା ଧରି ପଡ଼ିରହିବା ଯୁକ୍ତିଯୁକ୍ତ ମନେ କରନ୍ତି । ଛାଡ଼ ସେ କଥା ।

କହୁଥିଲି, ଲକ୍ଷ୍ମୀ ସାଆନ୍ତାଣୀ ଆମ ମୁଖ୍ତାରଙ୍କୁ ପାଖରେ ରଖି ଜଗନ୍ନାଥେ ଆଠକାଳି ବାରମାସ ଗାର୍ହସ୍ଥ୍ୟ ସୁଖର ମାତ୍ରା ଅନୁଭବ କରୁଥା'ନ୍ତି । ସେଥିରେ ଫେର ବଡ଼ଭାଇ ଓ

ଭଉଣୀ ଏ ଦୁହେଁ ସବୁବେଳେ ପାଖରେ ଉପସ୍ଥିତ । ଏପରି ସ୍ଥଳରେ ଜଗନ୍ନାଥ ମହାପ୍ରଭୁଙ୍କ ଦିନରାତି ଛକାପଞ୍ଝାରେ ଚଳିବାକୁ ହୁଏ । ଖୋଦ ସାନ୍ତାଣୀଙ୍କ ସଙ୍ଗେ ଦେଖା ନଦାରଦ । ତହିଁ ଉପରେ ବଡ଼ଭାଇ ଓ ଭଉଣୀ ସବୁବେଳେ ଜଗୁଆଳ । ଏଥିରେ ରସିକତା, ବିଳାସିତା ଇତ୍ୟାଦି କରିବାର ଅବସର ମଧ ନ ଥାଏ । ଏଣେ ମନଟା ଖୁଜବୁଜ ହେଉଥାଏ । ବର୍ଷକେ ଥରେ ମହାପ୍ରଭୁ ବଡ଼ଦାଣ୍ଡକୁ ବାହାରି ବହିର୍ଜଗତର ଚାକଚକ୍ୟ ଓ ଆଧୁନିକ ସଭ୍ୟତାର ଲକ୍ଷଣ ସବୁ ଦେଖିଯାଆନ୍ତି ଓ ଦେଉଳ ଭିତରକୁ ଯାଇ ଫେର ସେହି ମରହଟ୍ଟା ଅମଳର ତିନିଧୂପ, ପାଞ୍ଚ ଅବକାଶ ଭିତରେ ଘାଉଁରି ଖାଇବାକୁ ତାଙ୍କୁ ଭଲ ଲାଗେ ନାହିଁ । ଆଗେ କେତେବେଳେ କଣ ମନେ ହେଉଥିଲେ ଠାକୁରେ ବଡ଼ପଣ୍ଡାଙ୍କୁ ସ୍ୱପ୍ନାଦେଶ କରୁଥିଲେ, ଆଜିକାଲି ଅମଳରେ ତାହା ବି ବନ୍ଦ । ଅତଏବ ଅଗତ୍ୟା ବଡ଼ସିଂହାର ପରେ ଦେଉଳ ଶୋଧ ହୋଇ କବାଟ ପଡ଼ିଲା ପରେ ଦୁଇଭାଇ, ଭଉଣୀ ଓ ଲକ୍ଷ୍ମୀ ସାଆନ୍ତାଣୀଙ୍କ ପ୍ରତିନିଧି ଏ ଚାରିହେଁ ବସି ଏଣୁତେଣୁ ଅନେକ ଦୁଃଖସୁଖ କଥାଭାଷା ହୁଅନ୍ତି । ସେ କଥାଗୁଡ଼ାକ ଅବଶ୍ୟ Confidential ବା ଗୋପନୀୟ ଅଟେ । ତେଣୁ ସେଗୁଡ଼ିକ ସଂଗ୍ରହ କରି ଆମକୁ ଯୋଗାଇବା ସକାଶେ ଗୋଟିଏ ଚେମେଣିକୁ Detective ବା ଗୋଇନ୍ଦା ନିଯୁକ୍ତ କରିଅଛୁଁ । କ୍ରମେ କ୍ରମେ ସେ ଖବରଯାକ ସଂଗ୍ରହ କରି ପୁସ୍ତକାକାରରେ 'ଶ୍ରୀକ୍ଷେତ୍ର ଗୁମର' ନାମ ଦେଇ ପୁରୀର ଠାକୁର ରାଜାଙ୍କ ନାମରେ ଉତ୍ସର୍ଗ କରିବାର ପ୍ରସ୍ତାବ ଆମର ସାନ୍ଧ୍ୟ ବୈଠକୀ ଆଖଡ଼ାରେ ସ୍ଥିର ହୋଇଅଛି । ସୁତରାଂ ଆପାତତଃ ସେ ସମସ୍ତ କଥୋପକଥନ ପାଠକମାନେ ମାଗଣା ପାଇଯିବେ ବୋଲି ଆଶା କରିବା ବିଡ଼ମ୍ବନା ମାତ୍ର । କେବଳ ଦିନକର କଥା, ନମୁନାସ୍ୱରୂପ ଏଠାରେ ଦେଲେ ଏକା ଫଏରକେ ଦୁଇ କାମ ସିଦ୍ଧ ହେବ । ଅର୍ଥାତ୍ ସମ୍ପାଦକଙ୍କ ନିକଟରୁ ଗୋଟାଏ ଗୁରୁ ଦାୟିତ୍ୱରୁ ନିଷ୍କୃତି ମିଳିବ ଓ ଏଣେ ପ୍ରସ୍ତାବିତ ଗ୍ରନ୍ଥର ବିଜ୍ଞାପନଦ୍ୱାରା ପୁସ୍ତକର ଭବିଷ୍ୟତ ବିକ୍ରିର ସୁବିଧା ହୋଇପାରିବ । ଅତଏବ ଶୁଣିବାକୁ ଅବଧାନ ହେଉନ୍ତୁ; ପାଠକମାନେ, ବର୍ତ୍ତମାନ -

ଶ୍ରୀକ୍ଷେତ୍ର ଗୁମର - ପ୍ରଥମ ଉଚ୍ଛ୍ୱାସ ।

ଜଗନ୍ନାଥ (ବଳଭଦ୍ରଙ୍କୁ ସମ୍ବୋଧନ କରି) - 'ପ୍ରଭୋ ! ଜୀବନଟା କ'ଣ ଏହି ଗମ୍ଭୀର ଭିତରେ ତିନି ଧୂପ, ପାଞ୍ଚ ଅବକାଶ, ଘିଅଦୀପ, ପଥରର ବାତାୟନଶୂନ୍ୟ ଦେଉଳ, ମରହଟ୍ଟିଆ ରଥ, ଏହିଥିରେ କଟିବ ? ପ୍ରଭୋ ! ଏଥିର କିଛି ଉପାୟ କରିବା ଆବଶ୍ୟକ ।'

ସୁଭଦ୍ରା - ତୁମ୍ଭମାନଙ୍କର ଭଲା ଯାହା ହେବାର ହେଉ, କିନ୍ତୁ ମୋ କଥା - ଏଣିକି ସେ ପୁରୁଣାକାଳିଆ ରଥରେ ଚଳିବ ନାହିଁ । ମନେ ମନେ ବିଚାରେଁ, ଭାଇଙ୍କ ତହବିଲରୁ ବଡ଼ ଯୋଡ଼ିଲଗା ଫିଟନ ଗାଡ଼ିରେ ବାରଭୂତ ହାଉଆ ଖାଇ ବୁଲୁଛନ୍ତି, କିନ୍ତୁ ମୋ ବେଳକୁ ସେହି କଟକଟିଆ, କଳାବେଠିଆ ଭିଡ଼ା, ରଥ ଛାଡ଼ୁ ଯାଉ ନାହିଁ ! ଏଗୁଡ଼ାକ ଭଲା ରକ୍ତ ମାଉଁସ ଦେହରେ ସହେଟିକି ?

ବଡ଼ଠାକୁର - ସେ ଗାଡ଼ିଟା ମୁଁ ଦେଖିଛି । ଗାଡ଼ି ଦେଖି ମୋର ମନ ହୋଇଥିଲା ସେଥିରେ ଚଢ଼ି ବୁଲିବାକୁ; କିନ୍ତୁ ସେଥିରେ ଗୋଟିଏ ପାଖରେ ଦୁଇଜଣ ବସିପାରିବେ । ଆମେ ତ ତିନିଜଣ, ଏକାପାଖରେ ଚଢ଼ିଲା ବେଳକୁ ଅଡୁଆ ପଡ଼ିବ ଯେ !

ଲକ୍ଷ୍ମୀଙ୍କ ଚଳନ୍ତି ପ୍ରତିମା - ଅଡୁଆ କାହିଁକି ? ସାଆନ୍ତ ଓ ଭଉଣୀ ସାଆନ୍ତାଣୀ ଗୋଟାଏ ପାଖରେ ବସିବେ ଓ ମୁଁ ଆଉ ଆମ ଠାକୁର ଗୋଟାଏ ପାଖରେ ବସିବୁ, ତାହାହେଲେ ତ ଅଡୁଆ ଛିଣ୍ଡିଯିବ ।

ସୁଭଦ୍ରା - (ଟିକିଏ ବିଭଙ୍ଗ ସ୍ୱରରେ) ମଲା ! ଯେତେହେଲେ ତୁ ପୋଇଲୀଟାଏ, ତୁ ଫେର ସେଥିରେ କାହୁଁ ବସିବୁ ? ଭାଉଜ ମଣିମାଙ୍କର ମନ ଯୋଗାଇବାକୁ ସିନା ଆଣି ତତେ ଏଠେଇଁ ବସାଇଛୁଁ, ମୁଁ ଥିଲାବେଳେ ତୁ ଫେର ସାନଭାଇଙ୍କ ପାଖରେ ବସିବୁ ?

ଲକ୍ଷ୍ମୀଙ୍କ ଚଳନ୍ତି ପ୍ରତିମା - (ଜଗନ୍ନାଥଙ୍କୁ ଅନାଇ) ଛାମୁ ଏଠେଇଁ ବିଜେକରି ଆଜ୍ଞା ହେଇଛନ୍ତି, ଏ ମତେ ସବୁବେଳେ ଇମିତି ଅପମାନ ଦେଉଥିବେ, ଛାମୁ କିଛି କହି ଆଜ୍ଞା ହେବେ ନାହିଁ । ଏପରି ହେବାର ଜାଣିଥିଲେ ମୁଁ ମଣିମାଙ୍କ ପାଖଛାଡ଼ି ଏଠାରେ ପଡ଼ନ୍ତି କାହିଁକି ? ଗାଳିମନ୍ଦ ଶୁଣିବାକୁ ?

ବଳଭଦ୍ର - (ସ୍ୱଗତ) ମାଇକିନିଆ ଜାତିଟା ସବୁଠେଇଁ କଳିହୁଡ଼ୀ । ସେଥିପାଇଁ ପାଠ କହିଲା - ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ । (ପ୍ରକାଶ୍ୟରେ ଜଗନ୍ନାଥଙ୍କୁ ଲକ୍ଷ୍ୟକରି) ସେଥିପାଇଁ ମୁଁ କେଉଁ କଥାରେ ପାଟି ଫିଟାଏ ନାହିଁ । ନୂଆ ଫେସନ ମୁତାବକ ଚଳିବାକୁ ହେଲେ କେତେ ନୂଆ କାଇଦା ଅନୁସାରେ କାମ କରିବାକୁ ପଡ଼ିବ, ନଚେତ୍ ଲୋକେ ହସିବେ ଯେ ? ବଗିଗାଡ଼ି ଚଢ଼ିବା ପୂର୍ବରୁ ଏଠାରେ ଗୋଟିଏ ମାର୍କାମରା ଅଫିସ, ଗୋଟାଏ ପରଦାଲଗା ଖାସ କାମରା, ପୁଞ୍ଜାକେତେ ହୁଦାପକା ଅର୍ଦଳି, ବିଜୁଳିବତି, କଟ୍‌ଲେଟ, ଚପ୍, କାଲିଆ, ସୁରୁଆ, ଓଲ୍‌ଡ଼ଟମ୍ ଗ୍ରୀନସିଲ୍ ପୋର୍ଟ ସେରା, ହୁଇସ୍କି, ଏହିପରି କେତେଗୁଡ଼ିଏ ଆଧୁନିକ ସଭ୍ୟତାନୁମୋଦିତ ପରିବର୍ତ୍ତନ କରିବା ଦରକାର । ଏସବୁ ହେବା କାଠିକର ପାଠ । ଏଥିରେ ଖର୍ଚ୍ଚା ଚଳିବା ନିମନ୍ତେ ତ ଗୋଟିଏ ବାଜେ ଫଣ୍ଡ ଦରକାର, ତାହା କେଉଁ ତହବିଲରୁ ଆସିବ ? ସେଦିନ ଦେଉଳରେ ବିଜୁଳିବତି ଲାଗିବ ବୋଲି ପ୍ରସ୍ତାବ ହେଲା ଯେ, ସେଥିରେ ପଣ୍ଡା ପଣ୍ଡିତ ମଣ୍ଡିତ ମୁଣ୍ଡିତମାନଙ୍କ ମଧ୍ୟରେ କେତେ ତୁମୁଳ ଆନ୍ଦୋଳନ ଲାଗିଗଲା । ଏସବୁ ହେଲା ବେଳକୁ ସୃଷ୍ଟି ରହିବଟି କି ?

ଜଗନ୍ନାଥ - (ବଳଭଦ୍ରଙ୍କ ଆଖି ବିଶେଷ ଲାଲ ହେବାର ଦେଖି ସ୍ୱଗତ) ଆଜି ବୋଧହୁଏ ଭାଇସାଆନ୍ତ ଆମର ମରହଟ୍ଟା ନିଶା ଛାଡ଼ି ଆଧୁନିକ ସଭ୍ୟ ଜଗତର କୌଣସି ମାଦକଦ୍ରବ୍ୟ ପ୍ରତି ଅନୁଗ୍ରହ ଦେଖାଇ ଅଛନ୍ତି ! (ପ୍ରକାଶ) ଆମେ ସିନା କାଠ ହୋଇ ବସିଛୁ ବୋଲି ଆମର ମନର ଭାବ କେହି ଠଉରାଉ ନାହାନ୍ତି । ଲୋକଙ୍କର ମୁହଁ ଭକ୍ ଭକ୍ ଗନ୍ଧାଉଛି - ସେମାନେ ଆସି ଶଙ୍ଖନାଭି ମଣ୍ଡଳରେ ମୁଣ୍ଡିଆ ମାରୁଛନ୍ତି, ମହାପ୍ରସାଦ

ସଙ୍ଗରେ ଅନ୍ୟ କେତେ ମହାଖାଦ୍ୟ ମିଶାଇ ଏକା ଡିସ୍‌ରେ ଖାଉଛନ୍ତି । ଆମ ନାଚୁଣୀ ଓ ଚାକିରିଆଣୀଗୁଡ଼ାକୁ ନେଇ ଛେଳି ଗୋତ୍ରୀୟା ବୈଠକ କରୁଛନ୍ତି । ଆମରି ବାନା ଧରି ପଞ୍ଚମକାରର ଧୁମ୍ ଲଗାଉଛନ୍ତି । ସେଗୁଡ଼ାକ ତ ହିନ୍ଦୁ ସମାଜରେ ଅଛନ୍ତି ଓ ପୂଜା ପାଉଛନ୍ତି ? ଆମେ 'ସିନା ପଥରଜଗା କାଠ' ବୋଲି ସେହି ମରହଟୀ ବଗଡ଼ା ଅନ୍ନ ଓ ସାରୁ କଖାରୁ ଘାଣ୍ଟ ତିଅଣ ଓ ବିରି ଡାଲି ଆମ କପାଳରେ ଅଛି । ଏଗୁଡ଼ାକ ଦେଖି ମନ ଥୟ ହୁଏଟିକି ? ଆରେ ବାବୁ ସବୁକଥା କଲ ତ କଲ, ଆମକୁ ସେ ସୁଖରୁ ବଞ୍ଚିତ କରୁଛ କିଆଁ ? ସଭ୍ୟତାର ସୁଲୁସୁଲିଆ ବାଆ ତୁମଠେଇଁ, ତୁମ କୋଠାରେ, ତୁମ ଅଫିସରେ, ତୁମ ଅନ୍ଦର ମହଲରେ, ତୁମ ଗାଦିରେ, ସବୁଠାରେ ତ ବୋହିଲା, କେବଳ ଆମ ବଡ଼ ଦେଉଳଟା କି ଦୋଷ କଲା ? ସେ ହାଉଆ ବଡ଼ ଦେଉଳରେ ବାଜିବ ନାହିଁ ? ଆମ ରାଜାଙ୍କୁ ବା ଏକଥା ସପନାନ୍ତେଇଁ, କିନ୍ତୁ ସେତ ଆମରି ଭଳି 'ଦାରୁଭୂତୋ ମୁରାରି' । (ଏହା କହୁଁ କହୁଁ କ୍ରନ୍ଦନ) ବେଳେବେଳେ ମନ ହୁଏ ଏ ରାଜ୍ୟ ଛାଡ଼ି ଚାଲିଯିବାକୁ ।

ଲକ୍ଷ୍ମୀଙ୍କ ଚଳନ୍ତି ପ୍ରତିମା - (ସ୍ୱଗତ) ଆମ ମଣିମା ରହିବେ ଅଲଗା, ଏ ଉଆଁସଖାଇ ନେଫେଡ଼ାମୁହାଁ ହେବ ମାଲିକ । ଯାଙ୍କୁ ଦୁଃଖ ମିଳିବ ନାହିଁ, ମିଳିବ କାହାକୁ ? (ପ୍ରକାଶ୍ୟ) ଏକଥା ଯେ ଛାମୁରୁ କହି ଆଜ୍ଞା ହେଲେ, ଛାମୁଙ୍କ ଖଟଣି ପାଇଁ କେତେ ମୁଲକ ଖଞ୍ଜା ହୋଇଛି, ଛାମୁଙ୍କଠାରେ ସବୁ ଅନ୍ନ, ଘିଅ, ତିଅଣ, ଖଟଣି ହେଲେ ଛାମୁଙ୍କ ଅମୃତ ମଣୋହିରୁ ବାରଭୂତ ଭାଗ ପାଇବେ କାହୁଁ ? ଆମ ମଣିମା କହୁଥିଲେ ଯେ, ଦିନେ ରାତିବିକାଳିଆ ସେ ବୁଲୁ ବୁଲୁ ରେଲ ଇଷ୍ଟେସନକୁ ଗଲେ । ସେଠାରେ ହୋଟେଲରେ ତହବିଲ ଟଙ୍କା ସୁମାରି ହେଲାବେଳେ ଦେଖିଲେ ଯେ, ଅନେକ ଅମୃତ ମଣୋହି ମାର୍କାମରା ଦେବୋତ୍ତର ସମ୍ପତ୍ତି ସେଠାରେ ପହଞ୍ଚିଅଛି । ଛାମୁଙ୍କ ସମ୍ପତ୍ତି ସେଠାରେ ପହଞ୍ଚିଛି ବୋଲି ସିନା ଆମ ମଣିମା ସେହି ହୋଟେଲମାନଙ୍କ ପ୍ରତି ଏତେ ପ୍ରସନ୍ନ ?

ସୁଭଦ୍ରା - ଫୁଲବାଈ ଯାହା କହୁଛି, ତାହା ମିଛ ନୁହେଁ ଏକା । ଆମ ଦେଉଳଟା ହେଲା ଅସଭ୍ୟ, ମରହଟିଆ କାରଖାନା, ହୋଟେଲ ହେଲା ସଭ୍ୟ ଜଗତର ଜଗନ୍ନାଥ - ମନ୍ଦିର ।

ଲକ୍ଷ୍ମୀଙ୍କ ଚଳନ୍ତି ପ୍ରତିମା - ଛାମୁ ଗଲାଥରକ ଯେତେବେଳେ ଗୁଣ୍ଡିଚା ମନ୍ଦିରକୁ ବିଜେକରି ଆଜ୍ଞା ହୋଇଥିଲେ, ସେତିକିବେଳେ ମୋତେ ଫୁରୁସେଦ୍ ଥିଲା ବୋଲି ଥରେ ମଣିମାଙ୍କ ଗହଣରେ ସାଇ ବୁଲି ବାହାରିଲି । ଦେଖିଲି, ବଡ଼ ଦେଉଳରେ ଯେପରି ଜାତି ବିଚାର ନାହିଁ, ହୋଟେଲରେ ମଧ୍ୟ ସେହିତା । କି ଭୂସ୍ୱାମୀ, କି ଗୋସ୍ୱାମୀ, କି ଧନସ୍ୱାମୀ, କି ନିଧନସ୍ୱାମୀ, କି ସେବାଦାସ, କି ଧନଦାସ, କି ଧର୍ମଦାସ, କି କର୍ମଦାସ, କି ଚର୍ମଦାସ, କି ଗୋସେଇଁଆ, କି ନିଗୋସେଇଁଆ ସମସ୍ତେ ସେଠାରେ ନତମସ୍ତକ । ସମସ୍ତେ ଏକ ଆନନ୍ଦରେ ବୁଡ଼ି ରସ ଚୋଷୁଅଛନ୍ତି ଓ ରସରେ ବୁଡ଼ିରହିଅଛନ୍ତି । ହେଲେ ଗୋଟାଏ କଥା ଦେଖିଲି - ସଫା ମଣିଷଗୁଡ଼ାକ ଗୋଟାଏ ପାଖରେ, ଧୂଳିଆଗୁଡ଼ାକ ଆଉ ଗୋଟାଏ ପାଖରେ । ମଣିମାଙ୍କୁ ପଚାରିଲି ଯେ - ମଣିମା କହି ଆଜ୍ଞା ହେଲେ, ଧୂଳିଆଗୁଡ଼ାକ

ଖଣ୍ଡତପସ୍ୟା ବଳରେ ଶ୍ରୀକ୍ଷେତ୍ରରେ ଜନ୍ମ ହୋଇଛନ୍ତି, ତାଙ୍କ ତପସ୍ୟା ପୂରିଲେ ସେ ଆର ଜନ୍ମକୁ ସଫା ଦେବତା ହୋଇଯିବେ । ସେଥିପାଇଁ ଆଗରୁ ମଞ୍ଚଦେବତାଙ୍କ ଚାଲିଚଳଣ ଶିଖୁଛନ୍ତି ପରା !

ଜଗନ୍ନାଥ ଏସବୁ କଥା ଶୁଣୁ ଶୁଣୁ ତାଙ୍କର କଣ୍ଠ ରୁଦ୍ଧ ହୋଇଗଲା ଓ ନେତ୍ର ବାଷ୍ପପୂର୍ଣ୍ଣ ହୋଇଗଲା, ସୁଭଦ୍ରା ଏହା ଦେଖି କଥାକୁ ଅନ୍ୟ ବାଟକୁ ନେବାକୁ ଚେଷ୍ଟାକରି କହିଲେ -

"ନିନ୍ଦସି ଯଜ୍ଞ ବିଧେରହ ଶ୍ରୁତିଜାତଂ,
ସଦୟ ହୃଦୟ ଦର୍ଶିତ ପଶୁଘାତଂ -
କେଶବ ଧୃତ ବୁଦ୍ଧ ଶରୀର ଜୟ ଜଗଦୀଶ ହରେ ।"

ଫେର ତୁମର ଏ ବୁଢ଼ାଦିନେ ଚପ୍, କଟ୍‌ଲେଟ୍‌କୁ ମନ ବଳୁଛି, ଯା ହେବ କିପରି ? ସେଥିପାଇଁ ପଶୁବଧ ଯେ ଦରକାର, ସେଇଟା ପାରିବଟି କି ?

ବଳଭଦ୍ର ଜବାବ ଦେଲେ - ସେଗୁଡ଼ାକ କ'ଣ ଆମେ ସମାଜରେ ଦେଖାଇ ଶିଖାଇ କରିବା କି ? ଗୁପ୍‌ଚୁପ୍ କୌଣସି ବନ୍ଧୁଙ୍କ ଘରକୁ ସନ୍ଧ୍ୟାବେଳେ ଅନ୍ଧାରିବିଙ୍କେ କଲେ ସେଠାରେ ଗଞ୍ଜାପା ମାଡ଼ ଅବା ପେଣ୍ଡୁଖେଳ ବାହାନାରେ ସବୁ କରିପାରିବା । ଏଣେ ସମାଜରେ ଯେଉଁ ମାଳି, ପଇତା, ଝୁଲିମୁଣା, 'ହଜମୀ ଗୁଳା' ଅଛି ତାକୁ ସାଙ୍ଗେ ସାଙ୍ଗେ ବାନ୍ଧିଥିବା । ହିନ୍ଦୁଙ୍କର ପଇତା ଚୁରୁକି ଓ ମାଳି ବୋଲି ଯେଉଁ ଦୁଇତିନୋଟି 'ଛାଡ଼ ଚିଠି' (Pass port) ଅଛି, ସେଥିରେ ସବୁ ଖତମ ହୋଇପାରେ । ବେଳକାଳ ଉଣ୍ଡି ଆମ ଚକଡ଼ାରେ ପଶି ମହାପ୍ରସାଦ ସେବା କର, ଉପରଓଳି କେଲନର ହୋଟେଲରେ ଅମୃତ ସେବା କର, ତହିଁ ଆରଦିନ ବନ୍ଧୁଙ୍କ ଘରେ କବାଟ କିଳି ପଞ୍ଚମକାର ଉପାସନା କର, ଦାଣ୍ଡରେ ଲୋକ ଦେଖିଲେ 'ଦ୍ୱାହି - ମୋ ଚିତା-ପଇତା' କର ଓ ଲୋକଙ୍କୁ ଭେକ ଦେଖାଅ, ସବୁ ପାର ହୋଇଯିବ, କେହି ପାଖ ଛୁଇଁବେ ନାହିଁ, ଛାଡ଼ ଯେଉଁ କଥା ଆମ କପାଳରେ ନାହିଁ, ସେ କଥା ପାଇଁ ଭାବିଲେ ଫଳ କ'ଣ ? ତୁଚ୍ଛା ମନ ଖରାପ ହେବ ସିନା । ବର୍ତ୍ତମାନ ଆଉ ଗୋଟିଏ ପ୍ରସଙ୍ଗ ପକାଇବା । ଆଚ୍ଛା କାହ୍ନୁ ! (ନୋଟ - ବଳଭଦ୍ର ପୂର୍ବଜନ୍ମର ଡାକନାମଟା ଅବଧି ଭୁଲି ଯାଇ ନାହାନ୍ତି । ଜଗନ୍ନାଥଙ୍କୁ ପୂର୍ବର ସେହି କାହ୍ନୁ ନାମରେ ସମ୍ବୋଧନ କରନ୍ତି । ସେଥିପାଇଁ ପାଠ ଡାକୁଛି, "ଢିଙ୍କି ସ୍ୱର୍ଗକୁ ଗଲେ ମଧ ସେହି ଧାନକୁଟା" ବର୍ତ୍ତମାନ ଆମେ ଦେଖିପାରୁଛୁଁ ଯେ ଆମ ଦେଉଳ ହେଲା ପରାୟତ୍ତ ଶାସନର ଉଦାହରଣ । ଆମର ହାତ ନାହିଁ, ଗୋଡ଼ ନାହିଁ, କାନ ନାହିଁ । ଅଛି କେବଳ ଆଖି ଯୋଡ଼ିକ - ସେ ଯୋଡ଼ିକରେ ଲୁଲୁଲୁ କରି ଚାହିଁଥିବା ମାତ୍ର । ଆମର ସମସ୍ତ ନୀତି ଛତିଶା ନିଯୋଗଙ୍କ ଅନୁଗ୍ରହ ଉପରେ ନିର୍ଭର କରେ । ଗୋଟିଏ ନିଯୋଗ କାମରେ ଖଇଚା କଲେ ସବୁ ନୀତି ବନ୍ଦ । ଏପରି କେତେଦିନ ଚଳିବ ? ପରାୟତ୍ତ ଶାସନ ଛାଡ଼ି ଏଣିକି ସ୍ୱାୟତ୍ତ-ଶାସନରେ କାମ ଚଳାଇବା ଆବଶ୍ୟକ, ସେଥିକି କିଛି ଉପାୟ କରିପାର ?

ଜଗନ୍ନାଥ - ତାହାତ ଆମକୁ ପ୍ରଥମେ ପ୍ରଥମେ ବଡ଼ ଅଡୁଆ ଲାଗିବ । ସେଥିପାଇଁ ଦିନାକେତେ ସ୍ୱାୟତ୍ତ-ଶାସନ ପ୍ରଣାଳୀ ଶିକ୍ଷା କରି ତାଲିମ ହେବା ଦରକାର । ତାଲିମ ହେବା ପାଇଁ ଆଜିକାଲି ଯେଉଁ ସ୍ୱାୟତ୍ତ ଶାସନର କ୍ଷେତ୍ରମାନ ମହଜୁଦ ଅଛି, ସେଥିରେ ଦିନାକେତେ କାମ କରିବା ଦରକାର । ଆପଣ ଯେବେ ମତେ ଅନୁମତି ଦିଅନ୍ତେ, ତାହା ହେଲେ ମୁଁ ଥରେ ଯାଇଁ ସଂସାରରେ ପଶି ଗୁଡ଼ାଏ ତାଲିମ ହୋଇ ଆସନ୍ତି ।

ବଳଭଦ୍ର - ପ୍ରଥମେ ଯୋଗାଡ଼ ନ କଲେ ତୁମେ ଝୁଲିଧରି ସଂସାର ବୁଲିଲେ କ'ଣ ହେବ ? ସେପରି ହେବାଲାଗି କେତେଗୁଡ଼ିଏ ଆନୁପୂର୍ବିକ ଆୟୋଜନ ଦରକାର । ସେସବୁ ଆୟୋଜନ କରି ନ ପାରିଲେ ଏ ସବୁ ସ୍ୱାୟତ୍ତ ଶାସନ ଅନୁଷ୍ଠାନମାନଙ୍କରେ ପଶି ହେବ ନାହିଁ । ଆଚ୍ଛା, ସେ ସବୁ ଯାହା କରିବା ଦରକାର, ତାହା ଆମେ କରି ତୁମକୁ ଯେନତେନ ପ୍ରକାରେଣ ଗୋଟିଏ କୌଣସି ସ୍ଥାନୀୟ ଅନୁଷ୍ଠାନରେ ପୂରାଇ ଦେବା । ସେଥି ନିମନ୍ତେ ଅମୃତ ମୁଣୋହି ସମ୍ପତ୍ତିରୁ କେତେଗୁଡ଼ିଏ ଡାଲା ସରଞ୍ଜାମ ସଜିଲ କରିବାକୁ ହେବ । ସେଥିପାଇଁ ତୁମେ କିଛି ଚିନ୍ତା କରନା, କିନ୍ତୁ ଯେଉଁ ବ୍ୟକ୍ତିଗତ ଗୁଣଗୁଡ଼ାକ ନ ହେଲେ ହେବ ନାହିଁ, ସେଗୁଡ଼ିକ ତୁମକୁ ଅଭ୍ୟାସ କରିବାକୁ ହେବ । ସେଗୁଡ଼ିକ ତୁମେ ନ ଶିଖିପାରିଲେ ଆମର ମିହନ୍ତଯାକ ବୃଥା ହେବ ।

ଲକ୍ଷ୍ମୀଙ୍କ ଚଳନ୍ତି ପ୍ରତିମା - ଛାମୁ ଆମର ସବୁ କଥା ଝଟ୍ ଶିଖି ପକାନ୍ତି । ଭାଇସା'ନ୍ତ ଖାଲି ଇସରାରେ ଇସରାରେ କଥାଗୁଡ଼ାକ କହିଯାଆନ୍ତୁ । ଛାମୁ ଆମର ପାଣି ପରି ମାଡ଼ିଯିବେ ଯେ ।

ଜଗନ୍ନାଥ - ଅବଧାନ ! ସେଗୁଡ଼ାକ କାର୍ଯ୍ୟ କି ଅକାର୍ଯ୍ୟ, ତାହା ନ ବୁଝିଲେ ମୁଁ କରିବାକୁ ଜବାବ ଦେବି କିପରି ?

ସୁଭଦ୍ରା - ସାନଭାଇଙ୍କର ଆମର ସବୁବେଳେ ଏହି ନିପାରିଲା କଥା, ଇମିତି ହେଲେ ଘର ଚଳିବ କିପରି ? ଏହି ଗୁଣରୁ ତ ଆସି ଦାଳୁଅ ଅନ୍ନ ଓ ବିରି ଡାଲିରେ ରହିଲେଣି, ଆମକୁ ଆଉ ଖଣ୍ଡି ଛାଞ୍ଚୁଣୀରେ ରଖିବାକୁ କ'ଣ ତୁମର ମନ ? ତୁମେ ଏଥିରେ ମଙ୍ଗିଯାଅ, ବଡ଼ଭାଇ ଯାହା କହୁଛନ୍ତି, ତାହା ତୁମ ଭଲ ପାଇଁକି ।

ଲକ୍ଷ୍ମୀଙ୍କ ଚଳନ୍ତି ପ୍ରତିମା - ଭଉଣୀ ସାନ୍ତାଣୀ ଯାହା କହୁଛନ୍ତି, ଛାମୁରୁ ସେ କଥା ଶୁଣି ଆଜ୍ଞା ହୁଅନ୍ତୁ । ମଣିମାଙ୍କ ସାଙ୍ଗରେ ଅନ୍ଧାରି ବିଜେ କରି ଦୁନିଆର ଯେଉଁ କାରଖାନା ସବୁ ଆମେ ଦେଖୁଛୁଁ, ବଡ଼ ଦେଉଳରେ ସେହି ଢଙ୍ଗ ସବୁ ଚଳିଗଲେ ଭାରି ଭଲ ହୁଅନ୍ତା । ଆଗେ ଏସବୁ ଦୁନିଆରେ କିମିତି ହେଉଛି, ତାହା ନ ଦେଖିଲେ ଏଠେଇଁ ସେକଥା ସବୁ ଚଳିପାରିବ କିପରି ? (ସ୍ୱଗତ) ନୂଆ ବାଟଟା ଫିଟିଗଲେ ଏ ଉଦଣ୍ଡୀର ଦାଉଟା ବହୁତ କମ୍‌ତି ହୋଇଯା'ନ୍ତା ଓ ଆମ ମଣିମା ଖୁବ୍ ପୂଜା ପା'ନ୍ତେ ।

ଜଗନ୍ନାଥ - ତଥାସ୍ତୁ ଅବଧାନ । ଆପଣଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରିବି । କଣ କରିବାକୁ ହେବ, ମତେ ଆଦେଶ ଦେବା ହେଉନ୍ତୁ, ଆଗେ ଶୁଣେ ।

ବଳଭଦ୍ର - ଆମେ ତୁମକୁ ଯାହାଙ୍କ ନିକଟକୁ ମୁଲାକାତ କରିବାକୁ ଯିବାକୁ କହିବା, ତାଙ୍କ ନିକଟକୁ ଯିବାକୁ ହେବ । ଜାଣ ନ ଜାଣ, ତୁମେ ଖୁବ୍ ବିଦ୍ୱାନ୍ ବୋଲି ବାହାରେ ଦେଖାଇ ହେବ । ପ୍ରତିଦିନ ଗୁଡ଼ିଏ ଚୁଗୁଲି ଯା ତା ନାମରେ କରିବାକୁ ହେବ । କାହା ମୁଣ୍ଡଟା ଖଣ୍ଡିଆ ହୋଇଯିବ, କାହା ହାତଟା ଭାଙ୍ଗିଯିବ, କାହା ଗୋଡ଼ଟା ଛୋଟା ହୋଇଯିବ, ସେ କଥା ଦଣ୍ଡେ ଭାବିବ ନାହିଁ । କର୍ତ୍ତା ଯାହା କହିବେ, ସେଥିରେ ହାଁ'ଜୀ ହାଁ'ଜୀ ମାରିବ, ସବୁ କଥାରେ 'ହଜୁର ଖୋଦାବନ୍ଦ ଖାମିନ୍ଦ' ବୋଲି କହିବା ନିତି ସନ୍ଧ୍ୟାବେଳେ ପଞ୍ଚାଏ ଚିତାଲଗା, ମାଳିପିନ୍ଧା ସାଙ୍ଗସୁଖଙ୍କୁ ସାକ୍ଷୀ ରଖି ମୁନ୍ଦିଏ ଲେଖାଏଁ ବିଲାତୀପାଣି ଢୋକିବ ଓ ସାଙ୍ଗସୁଖଙ୍କୁ ଢୋକାଇବ । ଖାଲି ଯେବେ ଢୋକିବାକୁ ଢୋକାଇବାକୁ କଷ୍ଟ ହେବ, ତେବେ ଦିଓଟି ଗୋଟିଏ ରୂପ ପ୍ରତିମାଙ୍କୁ ସାକ୍ଷୀ ରଖିବ । ଅମୃତର ଫୁଆରା ଛୁଟିଲା ବେଳେ ଯାହା ଇଚ୍ଛା ତାହା ବିରୋଧରେ ଗୁଡ଼ିଏ ଗପ କରିବ । ଗପ ଆରମ୍ଭ ହେଲାକ୍ଷଣି କଳ୍ପନାଦେବୀ ସବୁ ଖଞ୍ଜିଖାଞ୍ଜି ଥୋଇଦେବେ; ସେହି କଥାଗୁଡ଼ିକ ଛାଣିଛୁଣି ବାସି ନିଶା ଓ ବାସି ହାକୁଟି ନ ଛାଡୁଣୁ ଯାଇ କର୍ତ୍ତାଙ୍କ କାନରେ ଫୋଡ଼ିଦେଇ କର୍ତ୍ତାଙ୍କ ଅଧମାଙ୍ଗକୁ ତେଲ ଦେଇ ସାଉଁଳି ଦେବ । ଏତକ କଥା ଯେବେ କରିପାରିବ, ତେବେ ନିଶ୍ଚେ ଦିନେ ଏଠାରେ ମଣିଷଟିଏ ଭିତରେ ସୁମାରି ହେବ ଓ ଯାହା ଲୋଡ଼ା, ସବୁ ଶିଖି ଆସିବାର ସୁବିଧା ପାଇବ ।

ଜଗନ୍ନାଥ - (ସ୍ୱଗତ) ଏ'ତ ଗଲା ଆମପ୍ରତି ଆଦେଶ । ଏହାପରେ ଫେର ଲକ୍ଷ୍ମୀ ସାଆନ୍ତାଣୀଙ୍କୁ କେତେଗୁଡ଼ିଏ ନିୟମ ପାଳନ କରିବାକୁ ହେବ ଓ କର୍ତ୍ତାଙ୍କ ମନସ୍ତୁଷ୍ଟି ନିମନ୍ତେ ତାଙ୍କ ନିକଟରେ ସାଆନ୍ତାଣୀଙ୍କୁ ମଧ୍ୟ ମୁଲାକାତ ଦେବାକୁ ହେବ । (ପ୍ରକାଶ୍ୟ) ଅବଧାନ ! ମା'କୁ କହିଦେବ ବଳଦ ବିକିବ ନାହିଁ, ମୋ ବଇଷମ ହବାକଥା ନୋହିଲା । ମୁଁ ଏତେ ଚାକିରି ବଜାଇ ପାରିବି ନାହିଁ ।

ଏହି କଥାଭାଷା ହେଉଁ ହେଉଁ ରାତି ଫସର ଫାଟିଲା । ଜଗନ୍ନାଥ ବଡ଼ ଠାକୁରେ ଯେଉଁ କାଠମୁହାଁ ଥିଲେ, ସେହି କାଠମୁହାଁ ହୋଇଗଲେ ଓ ଭିତର ଛଉ ମହାପାତ୍ରଙ୍କ ଡାକ କଳାରାଏଟ ଦ୍ୱାର ପାଖରେ ଶୁଭିଲା । ଏଣେ ଆମର ନିଯୁକ୍ତ ଗୋଇନ୍ଦା ଶଙ୍ଖନାଭି ମଣ୍ଡଳରୁ ଦିହ ଛପାଦେଇ ଫେର ଦେଉଳ ଛାତ ମୁହଁ ତଳକୁ ଗୋଡ଼ ଉପରକୁ କରି ଝୁଲି ପଡ଼ିଲେ ଓ ଫେର ଦିନଯାକ ତାଙ୍କ ମଳମୂତ୍ର ମୁହଁବାଟେ ଖସି ମର୍ତ୍ତ୍ୟ ମଣ୍ଡଳକୁ ପବିତ୍ର କରିବାକୁ ଲାଗିଲା ।

ଉତ୍କଳ ସାହିତ୍ୟ/୧୭ଶ ଭାଗ/୬ଷ୍ଠ ସଂଖ୍ୟା/୧୩୨୦ ସାଲ ।

## ।। ଅଠଚାଳିଶ ।।

ପାଠକ ଆପଣେ ! ଆପଣମାନେ ଜାଣନ୍ତି ଯେ ବଡ଼ଲାଟ ବାହାଦୁର ଚଳିତ ନଭେମ୍ବର ମାସ ୨୮ ତାରିଖରେ ଓଡ଼ିଶାକୁ ଶୁଭାଗମନ କରି କଟକରେ ବିରାଜମାନ ହେବେ । ଏଥିଲାଗି ମୁଁ ପୂର୍ବରେ କହିଥିଲି ଯେ, ଆଖୁ କିଆରିରେ ପଶିଲା ଭଳିଆ ନ ହୋଇ ଆମ୍ଭେମାନେ ଓଡ଼ିଶାର ଦିଓଟି ଗୋଟିଏ ନିପଟ ଅଭାବ ଲାଟସାହେବଙ୍କ ଶ୍ରୀଛାମୁରେ ନିବେଦନ କରିବା । ସେଥିପାଇଁ ଓଡ଼ିଶାର ରାଜନୈତିକ କ୍ଷେତ୍ରର କର୍ମବୀରମାନେ କେତେଦୂର କସରତ୍ କରୁଅଛନ୍ତି ତା ବଳେ 'ଫଳେନ ପରିଚୟତେ' ହେବ । ଲାଟସାହେବ ସର୍ବଦା ରାଜନୀତିକ କାର୍ଯ୍ୟାନୁଷ୍ଠାନ ଓ କଳ୍ପନାରେ ବ୍ୟସ୍ତ । ଏଥିରେ ସେ ଆମ୍ଭମାନଙ୍କୁ ଦେଖିବାକୁ ଆସୁଅଛନ୍ତି । ଏହାହିଁ ଆମ୍ଭମାନଙ୍କ ପକ୍ଷରେ ଗୌରବ ଓ ପରମ ଆନନ୍ଦର ବିଷୟ ।

ଉତ୍କଳଭାଷୀ ଅଞ୍ଚଳମାନ ଏକଶାସନାଧୀନ ହେବା ସର୍ବତୋଭାବରେ ବାଞ୍ଛନୀୟ ଓ ଉତ୍କଳର ଜାତୀୟ ଉନ୍ନତି ପକ୍ଷରେ ଏକାନ୍ତ ଆବଶ୍ୟକ । ଏଥିଲାଗି ଉତ୍କଳୀୟମାନେ ପ୍ରାୟ ୮।୧୦ ବର୍ଷ ହେବ ଆନ୍ଦୋଳନ ଓ ଆଲୋଚନା କରୁଅଛନ୍ତି । ଆମ୍ଭମାନଙ୍କର ଧନ ନାହିଁ, ବଳ ନାହିଁ । ଏମାନ ନ ଥାଇ ସୁଦ୍ଧା ଯେବେ ଆମ୍ଭମାନଙ୍କର ଅଭାବ ଲାଟସାହେବଙ୍କୁ ହୃଦୟଙ୍ଗମ କରାଇବାକୁ କୃତକାର୍ଯ୍ୟ ହେବା, ତେବେ ନିଶ୍ଚୟ ରାଜପ୍ରତିନିଧି ପ୍ରଜାମାନଙ୍କ ଆନ୍ତରିକ ବେଦନା ଅନୁଭବ କରି ଆମ୍ଭମାନଙ୍କ ପ୍ରତି ଦୟା କରିବେ ଓ ଚିରକାଳ ସକାଶେ ଓଡ଼ିଆଙ୍କ ହୃଦୟରେ ପୂଜା ପାଇବେ । ପ୍ରକାଶ୍ୟ ଅଭିନନ୍ଦନ ପତ୍ରରେ ଏ ଗୁହାରି ଲିପିବଦ୍ଧ ହେବା କେତେକ ରାଜନୈତିକ କାରଣରୁ ଯୁକ୍ତିଯୁକ୍ତ ନ ହୋଇପାରେ । ତେବେ ଲାଟସାହେବ ବାହାଦୁର ଓଡ଼ିଶାରେ ବିରାଜମାନ ଥିବା ସମୟରେ ଅନେକ ଉତ୍କଳ ପ୍ରତିନିଧି - ସରକାରୀ ଓ ବେସରକାରୀ ବ୍ୟକ୍ତି ତାଙ୍କ ଛାମୁରେ ସାକ୍ଷାତ୍ କରିବେ ଓ ସମସ୍ତେ ଏକମୁଖରେ ଉତ୍କଳର ଏହି ଗଭୀର ଅଭାବ କଥା ଲାଟସାହେବଙ୍କୁ ଶୁଣାଇବାକୁ ଭୁଲିବେ ନାହିଁ ବୋଲି ଆଶା କରିବା ପ୍ରତ୍ୟେକ ଓଡ଼ିଆ ପକ୍ଷରେ ସ୍ୱାଭାବିକ ।

ବହୁଦିନ ପୂର୍ବରେ ଓଡ଼ିଶାରେ ବଙ୍ଗଳା ପ୍ରଚଳିତ ଭାଷା ହେବ ବୋଲି କର୍ତ୍ତୃପକ୍ଷମାନେ ସ୍ଥିର କରିଥିଲେ; କିନ୍ତୁ ଯେତେବେଳେ ଓଡ଼ିଶାର ସ୍ୱାତନ୍ତ୍ର୍ୟ କର୍ତ୍ତୃପକ୍ଷମାନେ ଅନୁଭବ କଲେ, ସେତେବେଳେ ଓଡ଼ିଆ ଭାଷାକୁ ସ୍ୱତନ୍ତ୍ର ଭାଷା ରୂପେ ଓଡ଼ିଶାରେ ପ୍ରତିଷ୍ଠିତ କଲେ । ସେଦିନ ସମ୍ବଲପୁରରୁ ଓଡ଼ିଆ ଭାଷା ଉଠିଯିବାର ଏକପ୍ରକାର ସ୍ଥିର ହୋଇଥିଲା; କିନ୍ତୁ ମହାମତି· ଫ୍ରେଜର ସାହେବ ଓଡ଼ିଆଙ୍କର ଆନ୍ତରିକ ବେଦନା ଅନୁଭବ କରି ଓଡ଼ିଆ ଭାଷା ପ୍ରଚଳିତ ହେବା ସମ୍ବନ୍ଧରେ ଯତ୍ନକଲେ ଓ ଫଳତଃ ସମ୍ବଲପୁର ଅଞ୍ଚଳରେ ଓଡ଼ିଆ ଭାଷା ତାର ସ୍ୱାତନ୍ତ୍ର୍ୟ ଓ ମର୍ଯ୍ୟାଦା ରକ୍ଷା କରିବାକୁ ସମର୍ଥ ହେଲା ଏବଂ ଆଜି ଫ୍ରେଜର

ସାହେବଙ୍କ ନାମ ସମ୍ବଲପୁରର ଘରେ ଘରେ ଘୋଷିତ ହେଉଅଛି । ବିହାରକୁ ବଙ୍ଗ ଦେଶରୁ ସ୍ୱତନ୍ତ୍ର ଶାସନାଧୀନ କରିବା ଯୋଗୁଁ ସମଗ୍ର ବିହାରୀ ଜାତି ଆଜି ବଡ଼ଲାଟଙ୍କ ଚରଣରେ କୃତଜ୍ଞତାର ଫୁଆରା ଢାଳିଦେବା ନିମନ୍ତେ ପ୍ରସ୍ତୁତ । ବଙ୍ଗ ଶାସନାଧୀନ ରହିବା ଦ୍ୱାରା ଓଡ଼ିଶାର ସ୍ୱାତନ୍ତ୍ର୍ୟ ରକ୍ଷା ହେବ ନାହିଁ ବୋଲି ଓଡ଼ିଶାକୁ ନୂତନ ଶାସନର ଅଧୀନ କରା ହୋଇଅଛି । କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ସମଗ୍ର ଐତିହାସିକ ଉତ୍କଳ ଏକ ଶାସନାଧୀନ ନ ହେବ, ସେତେଦିନ ପର୍ଯ୍ୟନ୍ତ ଗଭର୍ଣ୍ଣମେଣ୍ଟଙ୍କ ମଙ୍ଗଳମୟ ଉଦ୍ଦେଶ୍ୟ ସାଧିତ ହେବ ନାହିଁ । ଆଶା କରାଯାଏ ଯେ, ବଡ଼ଲାଟଙ୍କ ଶୁଭାଗମନ ଓଡ଼ିଶା ପକ୍ଷରେ ମଙ୍ଗଳମୟ ଭବିଷ୍ୟତର ଆରମ୍ଭ ସୂଚକ ହେବ ଓ ସମଗ୍ର ଉତ୍କଳଭାଷୀ ପ୍ରଦେଶର ସମ୍ମିଶ୍ରଣ ହେବା ଦ୍ୱାରା ଲର୍ଡ଼ ହାର୍ଡିଞ୍ଜଙ୍କ ନାମ ଉତ୍କଳୀୟମାନଙ୍କ ହୃଦୟରେ ପୁରୁଷାନୁକ୍ରମେ ସ୍ୱର୍ଣ୍ଣାକ୍ଷରରେ ମୁଦ୍ରିତ ହୋଇ ରହିବ ।

ଆଜି ମହାମାନ୍ୟ ସମ୍ରାଟ୍‌ଙ୍କ ପ୍ରତିନିଧିଙ୍କଠାରେ ଉତ୍କଳ ମାତା କାତର କଣ୍ଠରେ ଏହି ଭାଷା କହୁଅଛି -

''ମହାଭାଗ ! ମୋର ଧନ ନାହିଁ, ଯଦ୍ୱାରା ଆପଣଙ୍କର ଷୋଡ଼ଶୋପଚାର ପୂଜା କରିପାରିବି । ମୋର ବିଦ୍ୟା ନାହିଁ, ଯଦ୍ୱାରା ଆପଣଙ୍କର ମାନସିକ ତୃପ୍ତି ସାଧନ କରିପାରିବି । ଅଛି କେବଳ ମୋର ଅକ୍ଷୁଣ୍ଣ ରାଜଭକ୍ତି । ରାଜଭକ୍ତି ମୋର ଚିରନ୍ତନ ଧର୍ମ । ସେହି ରାଜଭକ୍ତି କୋଟି ଉତ୍କଳୀୟଙ୍କ ହୃଦୟରେ ଜାଗରୂକ ରହିଅଛି । ଉତ୍କଳର କୋଟି ଦେବାଳୟରେ ସମ୍ରାଟ୍‌ଙ୍କର ଓ ସମ୍ରାଟ୍ ପ୍ରତିନିଧିଙ୍କର ମଙ୍ଗଳ କାମନା ଦିବାନିଶି ଉଦ୍‌ଘୋଷିତ ହେଉଅଛି । ଅଛି ମୋର ପୂର୍ବ ସ୍ମୃତି, ଅଛି ମୋର ପ୍ରାଚୀନ କୀର୍ତ୍ତି ତାହା ଛଡ଼ା କ'ଣ ଦେଇ ଆପଣଙ୍କର ସଂବର୍ଦ୍ଧନା କରିବି ? ମୋର ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ ଭିନ୍ନ ଭିନ୍ନ ଅଞ୍ଚଳରେ ବିକ୍ଷିପ୍ତ ହେବା ଦ୍ୱାରା ମୁଁ ମୋର ଜୀବନୀ ଶକ୍ତି ହରାଇ ଅଛି ! ପୂର୍ବତନ ଶାସନକର୍ତ୍ତାମାନଙ୍କ ଅଧୀନରେ ମୁଁ ବହୁ କଷ୍ଟ, ବହୁ ଯନ୍ତ୍ରଣା, ବହୁ ଅତ୍ୟାଚାର ସହି ଜୀବନ ମାତ୍ର ଘେନି ପଡ଼ିରହିଥିଲି । ବହୁ ଶତାବ୍ଦୀବ୍ୟାପୀ ତାଡ଼ନାରେ ମୋ ଚଳତ୍‌ଶକ୍ତି ଲୁପ୍ତ ହୋଇଥିଲା । ସୁଯୋଗରେ ବ୍ରିଟିଶରାଜ ମୋତେ ବର୍ତ୍ତମାନ ଆଶ୍ରୟ ଦେଇଅଛନ୍ତି । ଶୁଭକ୍ଷଣରେ ବ୍ରିଟିଶ ଜାତି ମୋ ଘରେ ପାଦ ପକାଇ ଅଛନ୍ତି ଓ ଦିନକୁ ଦିନ ଶିକ୍ଷା, ସଭ୍ୟତା ମୋ ଘରେ ପ୍ରବେଶ କରୁଅଛି । ମୋର ଅଙ୍ଗପ୍ରତ୍ୟଙ୍ଗରେ ଜୀବନୀଶକ୍ତିର ସ୍ପନ୍ଦନ ଅନୁଭୂତ ହେଉଅଛି । କିନ୍ତୁ ସେଗୁଡ଼ିକ ବ୍ରିଟିଶ ଶାସନାଧୀନରେ ଏକତ୍ରିତ - ଏକ ଶାସନାଧୀନ ହେଉ ଓ ମୁଁ ମୋର ପୁରାତନ ଗୌରବ ଗୌରବାନ୍ୱିତ ହୋଇ ଅନ୍ୟ ସଭ୍ୟ ଜାତିଙ୍କ ମଧ୍ୟରେ ଗଣିତା ହୁଏଁ । ସମ୍ରାଟ୍ ଓ ସମ୍ରାଟ ପ୍ରତିନିଧିମାନଙ୍କଠାରେ ମୋର ଏତିକି ଭିକ୍ଷା । କେବେ ସେ ସୁଦିନ ଆସିବ, ସେଥିପାଇଁ ମୁଁ ସତୃଷ୍ଣ ନୟନରେ ଅନାଇ ରହିଅଛି ।''

ଆମ୍ଭେମାନେ ଆଶା କରୁଅଛୁଁ, ଉତ୍କଳ ଭୂମିରେ ପଦାର୍ପଣ କରିବା ମାତ୍ରେ ରାଜ ପ୍ରତିନିଧି ଓଡ଼ିଶାର ଏହି ଗଭୀର ସ୍ପନ୍ଦନ ଅନୁଭବ କରିବେ ଓ ଛିନ୍ନ ବିଚ୍ଛିନ୍ନ ଉତ୍କଳ ଖଣ୍ଡମାନଙ୍କ ପ୍ରତି ତାଙ୍କର ସକରୁଣ ଦୃଷ୍ଟି ପଡ଼ିବ । ଅତଏବ ହେ ଉତ୍କଳୀୟ ରାଜାମାନେ, ପ୍ରଜାମାନେ, ରାଜ ପ୍ରତିନିଧି ଓ ପ୍ରଜା ପ୍ରତିନିଧିମାନେ, ସମସ୍ତେ ଏକ ବାକ୍ୟରେ ପ୍ରାର୍ଥନା କର ଓ ଆଶୀର୍ବାଦ କର ଯେ ସମଗ୍ର ଉତ୍କଳଭାଷୀ ଅଞ୍ଚଳମାନ ମିଳିତ ହେବା ଦ୍ୱାରା ବ୍ରିଟିଶ ଶାସନର କୀର୍ତ୍ତି ଉତ୍କଳରେ ଅକ୍ଷୟ ଭାବରେ ବିରାଜମାନ କରୁ ।

ରାଜ ପ୍ରତିନିଧିଙ୍କୁ ଯଥୋଚିତ ଭାବରେ ସମ୍ବର୍ଦ୍ଧନା କରିବାର ଅର୍ଥବଳ ଉତ୍କଳର ନାହିଁ । ଗରିବ ଦେଶରେ ରାଜ ପ୍ରତିନିଧି ଗରିବ ଭାବରେ ଅଭ୍ୟର୍ଥନା ପାଇବେ । ତଥାପି ତହିଁରୁ ରାଜ ପ୍ରତିନିଧି ନିଶ୍ଚୟ ଉତ୍କଳର ରାଜଭକ୍ତିର ପରିଚୟ ପାଇବେ, ଏଥିରେ ସନ୍ଦେହ ନାହିଁ । ସେଥିପାଇଁ ଭଗବାନ୍ ଗୀତାରେ ଅର୍ଜୁନଙ୍କୁ ବୁଝାଇ ଅଛନ୍ତି 'ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି । ତଦହଂ ଭକ୍ତ୍ୟପହୃତ ମଶ୍ନାମି ପ୍ରଯତାତ୍ମନଃ' । ଭକ୍ତିର ମାତ୍ରା ଆଡ଼ମ୍ବର ଦ୍ୱାରା ପରିମିତ ହୁଏ ନାହିଁ । ତାହା ହୋଇଥିଲେ ମହାପ୍ରଭୁ ବିଦୁର ଘରେ କଳମ ଶାଗ ଭଜା ଖାଇ ପରମ ସନ୍ତୋଷ ଲାଭ କରି ନ ଥା'ନ୍ତେ ।

ଲାଟ ସାହେବଙ୍କ ଶୁଭାଗମନ ସମ୍ପର୍କରେ ଏଠାରେ ଗୋଟିଏ ଉଲ୍ଲେଖଯୋଗ୍ୟ ପ୍ରସଙ୍ଗ । ଉତ୍କଳରେ ଇଂଜିନିୟରିଂ ବିଦ୍ୟାଳୟର ଅଭାବ ଅନେକ ଦିନରୁ ଅନୁଭୂତ ହୋଇ ଆସୁଅଛି । ଏଥିପାଇଁ ଗଭର୍ଣ୍ଣମେଣ୍ଟ ବହୁକାଳରୁ ଉଦ୍ୟମ ଲଗାଇ ଅଛନ୍ତି । କିନ୍ତୁ ସାଧାରଣଙ୍କ ବଦାନ୍ୟତା ଓ ଆଗ୍ରହ ନ ଦେଖିଲେ ଗଭର୍ଣ୍ଣମେଣ୍ଟ କାହିଁକି ମରୁଭୂମିରେ ଶସ୍ୟବୀଜ ବପନ କରିବେ ? ଏଥିପାଇଁ ଗଭର୍ଣ୍ଣମେଣ୍ଟ ଏହି କଥା ପ୍ରକାଶ କରିଥିଲେ କି, ଯେବେ ଉତ୍କଳରୁ ଚାନ୍ଦା ଦ୍ୱାରା ୨୦,୦୦୦ ଟଙ୍କା (କୋଡ଼ିଏ ହଜାର) ଉଠିବ, ତେବେ ଗଭର୍ଣ୍ଣମେଣ୍ଟ ୪୦,୦୦୦ ଟଙ୍କା (ଚାଳିଶ ହଜାର) ଦେଇ କଟକଠାରେ ଗୋଟିଏ ଇଂଜିନିୟରିଂ ସ୍କୁଲ ପ୍ରତିଷ୍ଠା କରିବେ । ଏହି ପ୍ରସ୍ତାବ ବହୁ ବର୍ଷ ହେଲା ହୋଇଅଛି । ଓଡ଼ିଶାର ନେତାମାନେ ଧନପତିମାନଙ୍କ ନିକଟରେ ବର୍ଷେ ଦୁଇ ବର୍ଷକେ ଦଣ୍ଡେ ଘଡ଼ିଏ ଏଥିପାଇଁ କସରତ କରି ମାଙ୍କଡ଼ଚିଡି ମାରି ଆସୁଅଛନ୍ତି । ଫଳତଃ 'ଉତ୍‌ଥାୟ ହୃଦି ଲୀୟନ୍ତେ ଉତ୍କଳୀୟ ମନୋରଥାଃ' ହୋଇ ଆସୁଅଛି । ଏଥି ମଧ୍ୟରେ ବଡ଼ଲାଟଙ୍କ କଟକ ଆଗମନର ସ୍ଥାୟୀ ସ୍ମାରକ ଚିହ୍ନ କିଛି କରାଯିବାର ଅଭ୍ୟର୍ଥନା ସମିତି କଳ୍ପନା କରୁଥିଲେ ଓ ଏ କଳ୍ପନା କେବଳ କଳ୍ପନାରେ ପରିଣତ ହେବ ବୋଲି ଆଶା କରିବା ଆମ୍ଭମାନଙ୍କର ଅନୁଭବ ଅନୁସାରେ ସ୍ୱାଭାବିକ ବୋଧ ହୋଇଥିଲା । ବର୍ତ୍ତମାନ ଆନନ୍ଦର କଥା ଯେ ଆଠଗଡ଼ର ରାଜା ବିଶ୍ୱନାଥ ଦେବବର୍ମା ବାହାଦୁର ବଡ଼ଲାଟଙ୍କ କଟକ ଆଗମନର ସ୍ମୃତିରକ୍ଷା ଉଦ୍ଦେଶ୍ୟରେ କଟକରେ ପ୍ରସ୍ତାବିତ ଇଂଜିନିୟରିଂ ସ୍କୁଲ ନିମନ୍ତେ ପ୍ରୟୋଜନୀୟ ୨୦,୦୦୦ ଟଙ୍କା (କୋଡ଼ିଏ ହଜାର) ଦେବାର ସଙ୍କଳ୍ପ କରିଅଛନ୍ତି ଓ ଉକ୍ତ ସ୍କୁଲ 'ହାର୍ଡ଼ିଞ୍ଜ ଇଂଜିନିୟରିଂ ସ୍କୁଲ' ନାମରେ

ଅଭିହିତ ହେବାର ବାସନା ପ୍ରକାଶ କରିଅଛନ୍ତି । ଆଠଗଡ଼ ଓଡ଼ିଶାର ଗଡ଼ଜାତମାନଙ୍କ ମଧ୍ୟରେ ଖଣ୍ଡେ କ୍ଷୁଦ୍ର ରାଜ୍ୟ ଓ ତହିଁର ଆୟ ବାର୍ଷିକ ପଚାଶ ହଜାର ଟଙ୍କାରୁ ଅଧିକ ନୁହେଁ । ଏପରି ସ୍ଥଳରେ ବଡ଼ଲାଟଙ୍କ ନାମ ଚିରସ୍ମରଣୀୟ କରିବା ସଙ୍ଗେ ସଙ୍ଗେ ଉତ୍କଳର ଗୋଟିଏ ପ୍ରଧାନ ଅଭାବ ମୋଚନ କରିବା ନିମନ୍ତେ ଏକକାଳୀନ କୋଡ଼ିଏ ହଜାର ଟଙ୍କା ଦାନ କରିବା ଅବଶ୍ୟ ବଦାନ୍ୟତାର ଗୋଟିଏ ଉଚ୍ଚ ନିଦର୍ଶନ, ଏହା ସମସ୍ତେ ଏକ ମୁଖରେ ସ୍ୱୀକାର କରିବେ । ନୋଟ୍ - ଏଠାରେ ପାଠକମାନଙ୍କୁ ମୋର ସାଫିୟତି ନିମନ୍ତେ ଗୋଟାଏ କଥା କହିରଖିବା ଦରକାର । ଆଠଗଡ଼ର ରାଜାବାହାଦୁର ମୋତେ ତାଙ୍କର ବନ୍ଧୁ ବୋଲି ଜ୍ଞାନ କରନ୍ତି - ମୁଁ ବସ୍ତୁତଃ, ଅନ୍ନତଃ, ତରକାରିତଃ, ବେତନତଃ, ଲୁଗାତଃ, ପଟାତଃ, ଗଣତଃ, କାଠତଃ, ଢାଲତଃ, ଏଜେଣ୍ଟତଃ, ସଙ୍ଗାତତଃ ଏହିପରି ଅନେକ ପ୍ରକାରରେ ତାଙ୍କ ପାଖରେ ବନ୍ଧା ଓ ବାଧ୍ୟ । ଏପରି ସ୍ଥଳରେ ଗୁମରତକ ଜାଣିଥିବା ପାଠକମାନେ ମନେ ମନେ ବିଚାରୁଥିବେ ଯେ ରାଜା ବାହାଦୁରଙ୍କୁ ସମ୍ବାଦପତ୍ରରେ ଘୋଷଣା ଦ୍ୱାରା କୃତାର୍ଥ କରିବା ନିମନ୍ତେ ସଙ୍ଗାତଙ୍କର ଏ ଗୋଟାଏ ଫିକର ବା ଫନ୍ଦି ମାତ୍ର । କଥାଟା ନିହାତି ବାଏଁ ବାଏଁ ଉଡ଼ାଇ ଜୁ' ନାହିଁ । ଓଡ଼ିଶାର ହାଉଆ ପ୍ରଭାବରୁ ଅନେକ ଶିଳପୁତା ପୂଜା ପାଉଅଛନ୍ତି । ଏପରି ସ୍ଥଳରେ ଯାହାର ବର୍ଷକୁ ପାଞ୍ଚଟଙ୍କା ଆୟ, ସେ ଯେବେ ଦେଶ ଉପକାର ନିମନ୍ତେ ଗେପାଟପ୍ ଦିଓଟି ଟଙ୍କା କାଢ଼ିଦେଲା ଓ ତାହାର ପାର୍ଶ୍ୱଚରମାନେ ଯେବେ ତାକୁ ଏହି ସତ୍କାର୍ଯ୍ୟ ନିମନ୍ତେ ଖବର କାଗଜରେ ପଦେଅଧେ ବାହାଦୁରି ଦେଲେ, ଏଥିରେ ଆପଣମାନଙ୍କର ଭ୍ରୂମ ଟାଙ୍କୁରିବାର ବା ତିନ୍ତୁଳି ଖାଇବାର କିଛି କାରଣ ଦେଖୁ ନାହିଁ । ଓଡ଼ିଶାଟା ଅବଶ୍ୟ ଗରିବ । ଓଡ଼ିଶାରେ ଧନକୁବେରଙ୍କ ସଂଖ୍ୟା ଅନ୍ୟ ପ୍ରଦେଶ ଅପେକ୍ଷା ଢେର ଊଣା - କିନ୍ତୁ ଓଡ଼ିଶାରେ ବାଜେ ଖରଚରେ (ଉଦାହରଣସ୍ୱରୂପ - ବନାଶିଅଳ, ଓଲ୍ଲମ, ଏକ୍‌ସା, ନାଚବାଲା ଓ ବାଲୀ, ବବୁରଚି, ଖାନସମା ଇତ୍ୟାଦି ଇତ୍ୟାଦି) ଢେର ଖରଚ ହେଉଅଛି । ଆଠଗଡ଼ ରାଜାବାହାଦୁରଙ୍କ ଅପେକ୍ଷା ଓଡ଼ିଶାରେ ଅନେକ ଧନୀ ଅଛନ୍ତି - କିନ୍ତୁ ଓଡ଼ିଶାରେ ସାଧାରଣ ଅନୁଷ୍ଠାନରେ ସାହାଯ୍ୟର ମାତ୍ରା ଏତେ କମ୍‌ତି କିଆଁ ? ଏହାର କାରଣ ପାଠକ ଅବଧାନ ଅନୁସନ୍ଧାନ କରିଅଛନ୍ତି କି ? ଦି' ଗୋଡ଼ିଆ ତ ସଂସାରଯାକ ସବୁଠାରେ ବିଛଉଣି ହୋଇ ଅଛନ୍ତି - ସେଥିମଧ୍ୟରୁ ଯେଉଁ ଦେଶରେ ଅନୁପାତ ଅନୁସାରେ ମନୁଷ୍ୟ ପଦବାଚ୍ୟ ଜନ୍ତୁଙ୍କ ସଂଖ୍ୟା ବେଶି, ସେହି ଦେଶଟା ସେତିକି ଉନ୍ନତ । ଛାଡ଼ ସେ କଥା । ଈଶ୍ୱର ଆଶୀର୍ବାଦ କରନ୍ତୁ, ଯେପରି ଓଡ଼ିଶାରେ ଦେଶହିତକର ସାଧାରଣ ଅନୁଷ୍ଠାନ ନିମନ୍ତେ ଅର୍ଥର ଅଭାବ କ୍ରମଶଃ ମୋଚନ ହେଉ । ଦୂରକୁ ଯିବାକୁ ହେବ ନାହିଁ । ବଙ୍ଗ ଓ ବିହାରର ଧନକୁବେରମାନେ ସାଧାରଣ କାର୍ଯ୍ୟ ନିମନ୍ତେ କିପରି ଅଜସ୍ର ମୁଦ୍ରା ବର୍ଷଣ କରୁଅଛନ୍ତି, ତାହା ଦେଖିଲେ ଓଡ଼ିଶା ଲଜ୍ଜାରେ ମ୍ରିୟମାଣ ହେବ । କିନ୍ତୁ ଇଂଜିନିୟରିଂ ସ୍କୁଲ ନିମନ୍ତେ ୧୦ ବର୍ଷରେ ୨୦,୦୦୦ ଟଙ୍କା

ଓଡ଼ିଶାରୁ ଉଠିପାରିଲା ନାହିଁ । ଯେଉଁ ଜାତିର ଆତ୍ମନିର୍ଭର ଓ ଆତ୍ମସାହାଯ୍ୟ ନାହିଁ, ସେ ଜାତି ଉନ୍ନତି କରିବାର ଆକାଂକ୍ଷା ଆକାଶ କୁସୁମ ମାତ୍ର । ଇତି ସଙ୍ଗାତସ୍ୟ ପ୍ରଶଂସା କୈଫିୟତ ଅଧ୍ୟାୟ ।

ସମ୍ରାଟ୍‌ଙ୍କ ଭାରତ ଶୁଭାଗମନ ସମୟରେ ସମ୍ରାଟ୍‌ଦମ୍ପତିଙ୍କ ଦୀର୍ଘ ଜୀବନ କାମନାରେ ସମ୍ରାଟ୍‌ଙ୍କ ଭାରତ ଆଗମନକୁ ଚିରସ୍ମରଣୀୟ ଉଦ୍ଦେଶ୍ୟରେ ଆଠଗଡ଼ର ରାଜାବାହାଦୁର ଚିରକାଳ ସକାଶେ ବୃନ୍ଦାବନଠାରେ ବୈଷ୍ଣବ ଓ କାଙ୍ଗାଳୀମାନଙ୍କୁ ଦୈନିକ ୫ଟଙ୍କାର ଅଟା ଲୁଣ ବିତରଣ ହେବା ନିମନ୍ତେ ୫,୨୦୦ ଟଙ୍କାର ଗଭର୍ଣ୍ଣମେଣ୍ଟ ପ୍ରମିସେରି ନୋଟ ଖରିଦ କରି ତାହା ଗଭର୍ଣ୍ଣମେଣ୍ଟଙ୍କ ହସ୍ତରେ ଅର୍ପଣ କରିଅଛନ୍ତି । ଏଥିରେ ରାଜା ବାହାଦୁରଙ୍କ ବଦାନ୍ୟତା ଏବଂ ରାଜଭକ୍ତିର ନିଦର୍ଶନରେ ସମ୍ରାଟ୍ ଆପ୍ୟାୟିତ ହୋଇଥିବା ବିଷୟ ରାଜା ବାହାଦୁରଙ୍କୁ ଜଣାଇ ଅଛନ୍ତି । ଚିରକାଳ ସକାଶେ ପ୍ରତି ଦୁଇ ବର୍ଷରେ ଯଥାକ୍ରମେ ଆଠଗଡ଼, କଟକ, ପୁରୀ, ବାଲେଶ୍ୱର ଓ ସମ୍ବଲପୁରରେ ଜଳାଭାବ ଥିବା ସ୍ଥାନମାନଙ୍କରେ ୨୦୦୦ ଟଙ୍କା ବ୍ୟୟରେ ଗୋଟିଏ ଲେଖାଏଁ ପୁଷ୍କରିଣୀ ଖୋଳାହେବା ଉଦ୍ଦେଶ୍ୟରେ ରାଜା ବାହାଦୁରଙ୍କ ପାଟ ମହାଦେବୀ ୨୭୦୦୦ ଟଙ୍କାର ପ୍ରମିସେରି ନୋଟ ଖରିଦ କରି ଗଭର୍ଣ୍ଣମେଣ୍ଟଙ୍କ ହସ୍ତରେ ନ୍ୟସ୍ତ କରିଅଛନ୍ତି ।

ଆଠଗଡ଼, ପୁରୀ, ବୃନ୍ଦାବନ ଇତ୍ୟାଦି ସ୍ଥାନରେ ଦୈନିକ ଦୁଃଖୀ ଓ ବୈଷ୍ଣବମାନଙ୍କୁ ଖାଦ୍ୟ ବିତରଣ ହେବା, କାର୍ତ୍ତିକ ମାସରେ ବ୍ରାହ୍ମଣ ବିଧବାମାନଙ୍କୁ ଅନ୍ନଦାନ ଦେବା, ପ୍ରତିବର୍ଷ ଖଣ୍ଡେ ଲେଖାଏଁ ସଂସ୍କୃତରେ ମୌଳିକ କାବ୍ୟ ରଚିତ ହେବା, ସଂସ୍କୃତ ଶିକ୍ଷା ବିସ୍ତାର ହେବା, କୃଷି ଓ ଶିଳ୍ପର ଉନ୍ନତି କରିବା ଉଦ୍ଦେଶ୍ୟରେ ରାଜାବାହାଦୁର ଦେବୋତ୍ତର ଫଣ୍ଡରୁ ଏକ ଲକ୍ଷ ବାରହଜାର ଟଙ୍କା ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ଜମା କରିଅଛନ୍ତି ।

ସାଧାରଣ ଓ ଦାତବ୍ୟ କାର୍ଯ୍ୟରେ ଗତ ୧୦ ବର୍ଷ ମଧ୍ୟରେ ଆଠଗଡ଼ର ରାଜା ବାହାଦୁର ଓ ତାଙ୍କ ପାଟ ମହାଦେବୀ ଓରଫ ରାଜା ବାହାଦୁରଙ୍କର ଅନ୍ୟ ଅବତାର ଯେତେଗୁଡ଼ିଏ ଟଙ୍କା ଅକାତରେ ଦାନ କରିଅଛନ୍ତି, ତାହା ତାଙ୍କ ପକ୍ଷରେ ଓ ଓଡ଼ିଶା ପକ୍ଷରେ ଗୌରବର ବିଷୟ । ଏହା ଦେଖି ଆଶା ହୁଏ ଯେ ଉତ୍କଳରେ ଅବଧି ପର୍ଯ୍ୟନ୍ତ ଦାନଶୀଳତା ଲୁପ୍ତ ହୋଇ ନାହିଁ । ବଡ଼ଲାଟଙ୍କ ଶୁଭାଗମନକୁ ଚିରସ୍ମରଣୀୟ କରିବା ଉଦ୍ଦେଶ୍ୟରେ ଓଡ଼ିଶାର ଅନ୍ୟାନ୍ୟ ରାଜା ଓ ଧନପତିମାନେ କଣ ଜଳ୍ପନା କରୁଅଛନ୍ତି ଓ କରିବେ, ଦେଖିବାକୁ ବାକି ରହିଗଲା ।

ବଡ଼ଲାଟ ବାହାଦୁରଙ୍କ କଥା କହୁଁ କହୁଁ ଆସି କେଉଁଠାରେ ପହଞ୍ଚିଗଲି । ଏହାକୁ କହନ୍ତି ଭୁଆଁବୁଲା । ଆମ ଦେଶରେ ଏ ଉଦାହରଣ ବିରଳ ନୁହେଁ । ମୋଠାରୁ ବଢ଼ିଆ ବଢ଼ିଆ ଜୀବ ଯୁଗବ୍ୟାପୀ ଭୁଆଁବୁଲାରେ ଲାଗିଛନ୍ତି, ମୁଁ ଭଲା ଦିନେ ବୁଲିଲି ବ୍ୟସ୍ତ କଣ ?

ଉତ୍କଳ ସାହିତ୍ୟ/୧୭ଶ ଭାଗ/୮ମ ସଂଖ୍ୟା/୧୩୨୧ ସାଲ ।

## ।। ଅଣଚାଶ ।।

ବଡ଼ଲାଟ ବାହାଦୁର ଓଡ଼ିଶାର ରାଜଧାନୀ କଟକ ନଗରୀରେ ପଦାର୍ପଣ କରି ଉତ୍କଳୀୟ ରାଜନ୍ୟବର୍ଗଙ୍କୁ ଦରବାରରେ ଭେଟି, ଦରବାର ଉପଲକ୍ଷରେ ଆମନ୍ତ୍ରିତ ବ୍ୟକ୍ତିମାନଙ୍କୁ ପରମାପ୍ୟାୟିତ କରି, ଉତ୍କଳକୁ ଆଶାର ବାଣୀ ଶୁଣାଇ ଚାଲିଗଲେ ଓ ଉତ୍କଳ ସେ ବାଣୀ ଶୁଣି କୃତକୃତ୍ୟ ହୋଇଗଲା । ଏଣିକି ରାଜ-ପ୍ରତିନିଧିଙ୍କର ଉତ୍କଳର ଅବସ୍ଥା ପ୍ରତି ସଦୟ ଦୃଷ୍ଟି ରହିବ ବୋଲି ଲାଟସାହେବଙ୍କ ବକ୍ତୃତାରୁ ସ୍ପଷ୍ଟ ଆଭାସ ମିଳିଲା । ଏହି ସମୟରେ ବିହାରୋତ୍କଳର ଛୋଟଲାଟ ବାହାଦୁର କଟକ ଓ ପୁରୀଠାରେ ମଧ ପଦାର୍ପଣ କରିଥିଲେ ଏବଂ ମାନ୍ୟବର କନିକା ରାଜାସାହେବଙ୍କ ଉଦ୍ୟାନ ମିଳନରେ ଛୋଟଲାଟ ବାହାଦୁରଙ୍କୁ ଲାଟ ଦରବାର ଉପଲକ୍ଷରେ ଆଗତ ବ୍ୟକ୍ତିମାନେ ଭେଟିଥିଲେ । ବଡ଼ଲାଟସାହେବ ବାହାଦୁର ଜଣକେତେ ବରପୁତ୍ରଙ୍କୁ ଖାସ ମୁଲାକାତ କରିବାର ସୁଯୋଗ ଦେଇଥିଲେ ଓ ତଦ୍ ଅବସରରେ ଅନେକ 'ହରିକଥା, ଘରକଥା, ଭାତ ଲୁଗା ଚାରିକଥା' ପଡ଼ିଥିବ । ପ୍ରକାଶ୍ୟତଃ ଓଡ଼ିଶାରେ ଓ ଗଞ୍ଜାମରେ ରାଜ-ପ୍ରତିନିଧିମାନେ ଯାହା ଶୁଣାଇଲେ, ତହିଁରୁ ଏତିକି ଆପାତତଃ ପ୍ରକାଶ ଯେ, ବର୍ତ୍ତମାନ ଉତ୍କଳବାସୀଙ୍କର ଚିରପୋଷିତ ଆଶା ଦେଶ ସମ୍ମିଶ୍ରଣ ମରୁଭୂମିସ୍ଥ ଓଏସିସ୍‌ବତ୍ ଉତ୍କଳୀୟଙ୍କର ଏହିପରି ଉତ୍କଣ୍ଠା ଓ ସ୍ପନ୍ଦନର ଚିହ୍ନ ଗଭର୍ଣ୍ଣମେଣ୍ଟ ଅନୁଭବ କଲେ ଦୂର ଭବିଷ୍ୟତରେ ଉତ୍କଳର ଛିନ୍ନବିଚ୍ଛିନ୍ନ ଅଙ୍ଗମାନ ପୁନର୍ମିଳିତ ହୋଇପାରେ । ଅତଏବ ଭକ୍ତି ସହକାରେ ଏହି ଗୁହାରିକୁ ରାଜକର୍ମଚାରୀମାନଙ୍କୁ ଶୁଣାଇବାରେ ଯେପରି ଉତ୍କଳୀୟଙ୍କର ଆନ୍ତରିକ ଗଭୀରତର ସ୍ପନ୍ଦନ ରାଜପ୍ରତିନିଧି କାଳକ୍ରମେ ଠଉରାଇବେ, ଉତ୍କଳର ନେତୃସ୍ଥାନୀୟ ପୁରୁଷମାନେ ତହିଁ ପ୍ରତି ଆସ୍ଥାବାନ୍ ଓ ଯତ୍ନଶୀଳ ହୁଅନ୍ତୁ । ସମ୍ରାଟ୍ ପ୍ରତିନିଧି ଏହି ସ୍ପନ୍ଦନର ବ୍ୟାପକତା ଓ ଆନ୍ତରିକତା ଅନୁଭବ କଲେ ଦିନେ ଉତ୍କଳର ଖଣ୍ଡ ବିଖଣ୍ଡ ଅଙ୍ଗମାନ ଯୋଡ଼ି ହୋଇ ଉତ୍କଳକୁ ପୂର୍ଣ୍ଣାଙ୍ଗ କରିବ ଓ ଉତ୍କଳୀୟଙ୍କ ମନରେ ନବ ଜାତୀୟତାର ସ୍ପନ୍ଦନ ଅନୁଭୂତ କରାଇବ, ଏଥିରେ ସନ୍ଦେହ ନାହିଁ । ଯାହାହେଉ, ଛାଡ଼ ସେ କଥା ।

ଇତିମଧ୍ୟରେ ଅବଗତ ହେଲି ଯେ, ଆଠଗଡ଼ର ରାଜାବାହାଦୁର ଲାଟସାହେବଙ୍କ କଟକ ଦର୍ଶନର ସ୍ମାରକସ୍ୱରୂପ ତାଙ୍କ ନାମରେ କଟକରେ ଗୋଟିଏ ଇଂଜିନିୟରିଂ ସ୍କୁଲ ସ୍ଥାପନ ହେବା ନିମନ୍ତେ ଯେଉଁ କୋଡ଼ିଏ ହଜାର ଟଙ୍କା ଦାନ କରିବାକୁ ପ୍ରତିଶ୍ରୁତ ହୋଇଅଛନ୍ତି, ତାହା ଗଭର୍ଣ୍ଣମେଣ୍ଟ ଗ୍ରହଣ କରି ରାଜାବାହାଦୁରଙ୍କୁ ପ୍ରଶଂସା କରିଅଛନ୍ତି । କିନ୍ତୁ ନୂତନ ପ୍ରଦେଶ ଗଠନ ସଙ୍ଗେ ସଙ୍ଗେ ପୂର୍ବତନ ବଙ୍ଗ ଗଭର୍ଣ୍ଣମେଣ୍ଟ ପ୍ରସ୍ତାବିତ କଟକ ଇଂଜିନିୟରିଂ ସ୍କୁଲ ସ୍ଥାପନ ପ୍ରସ୍ତାବର ଭାଗ୍ୟ ପରିବର୍ତ୍ତନ ହୋଇଥିବାରୁ ବର୍ତ୍ତମାନ ସଙ୍ଗେ ସଙ୍ଗେ ଏଠାରେ ଗୋଟିଏ ଇଂଜିନିୟରିଂ ବିଦ୍ୟାଳୟ ସ୍ଥାପିତ ହୋଇପାରୁ ନାହିଁ । ନବ ପ୍ରଦେଶର ରାଜଧାନୀ ପାଟଣାଠାରେ ଗୋଟିଏ ଇଂଜିନିୟରିଂ କଲେଜ ସ୍ଥାପିତ ହୋଇଅଛି ଓ ଓଡ଼ିଶାର ବର୍ତ୍ତମାନ ସର୍ଭେ ସ୍କୁଲର ଉନ୍ନତିକଳ୍ପେ କ'ଣ କରାଯାଇପାରିବ, ତାହା ବିଚାର

କରି ସ୍ଥିର କରିବା ନିମନ୍ତେ ଗଭର୍ଣ୍ଣମେଣ୍ଟ ଗୋଟିଏ କମିଟି ମୁକରିର କରୁଅଛନ୍ତି । କଟକର ସର୍ଭେ ସ୍କୁଲର ପାଠ୍ୟକ୍ରମକୁ ଉନ୍ନତ ଓ ପରିପୁଷ୍ଟ କରିବା ଉଦ୍ଦେଶ୍ୟରେ ଉନ୍ନତ ସର୍ଭେ ସ୍କୁଲର ଅଙ୍ଗପୁଷ୍ଟି ଓ ଆବାସ ପୁଷ୍ଟି ନିମନ୍ତେ ସମ୍ଭବତଃ ଧାଠଗଡ଼ ରାଜାବାହାଦୁରଙ୍କ ଦାନ ବ୍ୟୟିତ ହେବ ଓ ନୂତନ ସଂସ୍କାରପ୍ରାପ୍ତ କଟକ ସର୍ଭେ ସ୍କୁଲ ସମ୍ଭବତଃ ଲର୍ଡ଼ ହାର୍ଡ଼ିଞ୍ଜଙ୍କ ମହନୀୟ ନାମ ସହିତ ସଂଯୁକ୍ତ ହେବ ।

ଏହି ଲାଟ ଦରବାର ଉପଲକ୍ଷରେ ଅବଗତ ହେଲି ଯେ, ସୋନପୁରର ମହାରାଜ ଶ୍ରୀବୀରମିତ୍ରୋଦୟ ସିଂହଦେବ ମହୋଦୟ ମାସିକ ତିରିଶ ଟଙ୍କାର ଗୋଟିଏ ବୃତ୍ତି ଖଞ୍ଜା କରିବାର ମନସ୍ଥ କରିଅଛନ୍ତି । ଓଡ଼ିଆ ପିଲାମାନେ ଉଚ୍ଚ ଡାକ୍ତରି ପଢ଼ିବାର କୌଣସି ବ୍ୟବସ୍ଥା ନ ଥିବାରୁ ମହାରାଜା ଏହି ସଂକଳ୍ପ କରିଅଛନ୍ତି କି, ଉକ୍ତ ବୃତ୍ତି ଦ୍ୱାରା ଗୋଟିଏ ଲେଖାଏଁ ଓଡ଼ିଆ ଛାତ୍ର କଲିକତା ମେଡ଼ିକାଲ କଲେଜରେ ଆସିଷ୍ଟାଣ୍ଟ ସର୍ଜନ (Assistant Surgeon) ହେବା ଉପଯୋଗୀ ଶିକ୍ଷାଲାଭ କରିବେ । ଜଣେ ବୃତ୍ତିଧାରୀର ପାଠ ଶେଷ ହେଲେ ଆଉ ଗୋଟିଏ ଉତ୍କଳୀୟ ଛାତ୍ର ପଢ଼ିବ । ଏଥିନିମନ୍ତେ ଏକକାଳୀନ ଦଶହଜାର ଟଙ୍କାରୁ କିଞ୍ଚିଦୂର୍ଦ୍ଧ୍ୱ ଗଭର୍ଣ୍ଣମେଣ୍ଟ ପ୍ରମିସରି ନୋଟସ୍ୱରୂପ ମହାରାଜା ଗଚ୍ଛିତ କରିବେ ବୋଲି ସଂକଳ୍ପ କରିଅଛନ୍ତି । ଭଗବାନ୍ ମହାରାଜାଙ୍କ ମଙ୍ଗଳମୟ ବାସନା ଅଚିରେ ପୂର୍ଣ୍ଣ କରନ୍ତୁ, ଏହାହିଁ ତାହାଙ୍କ ନିକଟରେ ପ୍ରତ୍ୟେକ ବ୍ୟକ୍ତିଙ୍କର ପ୍ରାର୍ଥନା ହେଉ ।

ଲାଟ ଦରବାର ଉପଲକ୍ଷରେ ଉତ୍କଳର ଆଉ ଗୋଟିଏ ସ୍ଥାୟୀ ମଙ୍ଗଳର ଭିତ୍ତି ସ୍ଥାପିତ ହେଲା - ଦରବାର ବାସିଦିନ ଉତ୍କଳର ରାଜନ୍ୟମଣ୍ଡଳୀ ଓ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଭେଟିବା ପାଇଁ କଟକ ଟାଉନ ହଲରେ କଟକର ଉତ୍କଳ ସାହିତ୍ୟ ସମାଜ ଗୋଟିଏ ସଭା ଆହ୍ୱାନ କରିଥିଲେ । ସମାଗତ ଭଦ୍ରମଣ୍ଡଳୀରେ ଆମ୍ଭେମାନେ ସୋନପୁର ମହାରାଜା, ବାମଣ୍ଡାର ରାଜା ଓ ଯୁବରାଜ, ଆଠଗଡ଼ର ରାଜାବାହାଦୁର, ଢେଙ୍କାନାଳ ଓ ତାଳଚେରର ରାଜାମାନଙ୍କୁ ଓ ପୁରୀ ଏମାର ମଠର ମହନ୍ତ ମହାରାଜଙ୍କୁ ଦେଖିଥିଲୁଁ । ସେଦିନ ଉତ୍କଳ ସାହିତ୍ୟର ଉନ୍ନତିକଳ୍ପେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ସମାଗତ ବିଶିଷ୍ଟ ବ୍ୟକ୍ତିମାନଙ୍କୁ କିଛି ଯାଚ୍ଞା କରିବା ସମାଜର ଉଦ୍ଦେଶ୍ୟ ନ ଥିଲା । ଜଣକେତେ ସଭ୍ୟ ସମାଗତ ରାଜା ଓ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଅଭିବାଦନ କରି ଉତ୍କଳ ସାହିତ୍ୟ ସମାଜର ତଥା ଉତ୍କଳ ସାହିତ୍ୟର ଦୁରବସ୍ଥା ବିଷୟ ଉଦ୍‌ଘାଟନ କରିଥିଲେ ମାତ୍ର । ବାମଣ୍ଡାର ରାଜା ମହୋଦୟ ସ୍ୱତଃପ୍ରଣୋଦିତ ହୋଇ ସେଦିନ ସଭାରେ ପ୍ରସ୍ତାବ କଲେ ଯେ, ଉତ୍କଳ ସାହିତ୍ୟର ଉନ୍ନତିକଳ୍ପେ ଗୋଟିଏ ସ୍ଥାୟୀ ଫଣ୍ଡ ଖୋଲାଯାଉ ଓ ଉକ୍ତ ଫଣ୍ଡର ମୂଳଭିତ୍ତି ସେହି ସଭାରେ ସ୍ଥାପିତ ହେଉ । ବାମଣ୍ଡାର ରାଜା ଉକ୍ତ ସ୍ଥାୟୀ ଫଣ୍ଡ ନିମନ୍ତେ ତିନି ହଜାର ତିନିଶହ ତେତିଶ ଟଙ୍କା ପାଞ୍ଚଅଣା ଚାରିପାହୁଲା, ସୋନପୁରର ମହାରାଜା ତିନି ହଜାର ତିନିଶହ ତେତିଶ ଟଙ୍କା ପାଞ୍ଚଣା ଚାରିପାହୁଲା, ଆଠଗଡ଼ର ରାଜାବାହାଦୁର ୫୦୦ଟଙ୍କା, ପୁରୀ ଏମାରମଠର ମହନ୍ତ ମହାରାଜା ୫୦୦ ଟଙ୍କା ସଭା ସ୍ଥଳରେ ଅଙ୍ଗୀକାର କଲେ ଓ

ଉପସ୍ଥିତ ଅନ୍ୟ ବ୍ୟକ୍ତିମାନେ ପ୍ରାୟ ୧୫୦୦ ଟଙ୍କା ଅଙ୍ଗୀକାର କଲେ ଓ ସର୍ବସୁଦ୍ଧା ୯ ହଜାର କେତେ ଶତ ଟଙ୍କା ସେଦିନ ସଭା ସ୍ଥଳରେ ସ୍ୱାକ୍ଷରିତ ହେଲା । ଉତ୍କଳରେ ଯେ ଗୋଟିଏ ସାହିତ୍ୟିକ ଜୀବନ ଅଛି, ଏହା ସେଦିନ ପ୍ରତିପନ୍ନ ହେଲା । ଏ ଟଙ୍କା କିପରି ଭାବରେ ଗଚ୍ଛିତ ହେଲେ ତହିଁର ସୁଧ ନିୟମିତ ଭାବରେ ନିରାପଦରେ ଉତ୍କଳ ସାହିତ୍ୟ ସମାଜର ହସ୍ତଗତ ହେବ ଓ ତାହା ଦ୍ୱାରା ଉତ୍କଳ ସାହିତ୍ୟର କେଉଁ ଶାଖାର କିପରି ଭାବରେ ଉନ୍ନତି କରାଯିବ, ଏହା କଳ୍ପନା ଜଳ୍ପନା ପରେ ଅବଶ୍ୟ ସ୍ଥିର ହେବ । କିନ୍ତୁ ଏ ଗୋଟିଏ କାର୍ଯ୍ୟ ଉତ୍କଳରେ ସ୍ଥାୟୀ କୀର୍ତ୍ତିର ମୂଳଭିତ୍ତି ହେଲା ଏବଂ ଏହି କାର୍ଯ୍ୟ ସଙ୍ଗେ ବାମଣ୍ଡାର ରାଜା ଓ ସୋନପୁରର ମହାରାଜାଙ୍କ ନାମ ବରାବର ସଂଶ୍ଳିଷ୍ଟ ରହିବ । ଆଶା କରାଯାଏ, ଉତ୍କଳର ଅନ୍ୟାନ୍ୟ ସାହିତ୍ୟ ଭକ୍ତ, ବିଶିଷ୍ଟ ବ୍ୟକ୍ତିମାନେ ଏବଂ ରାଜା ଓ ବୃତ୍ତୀଶ୍ୱରମାନେ ଏହି ପଣ୍ଡର ଅଙ୍ଗପୁଷ୍ଟି ନିମନ୍ତେ ଯତ୍ନବାନ୍ ହୋଇ ଉତ୍କଳ ସାହିତ୍ୟର ଭାବୀ ଉନ୍ନତିରୂପ ବୃକ୍ଷ ମୂଳରେ ଜଳସେଚନ କରିବେ ।

ଦରବାରକୁ ଆଗତ ରାଜା ମହାରାଜାଙ୍କ ମଧ୍ୟରୁ କେତେକ ଏହି ଉପଲକ୍ଷରେ ପୁରୀଠାକୁ ମଧ ଯାଇଥିଲେ ଓ କଟକ ଏବଂ ପୁରୀଠାରେ ଏମାନଙ୍କ ସଙ୍ଗେ ସ୍ଥାନୀୟ ବ୍ୟକ୍ତିମାନେ ଆଳାପ ପରିଚୟ କରିବାର ସୁବିଧା ପାଇଥିଲେ । ଜାଣିଲି ଯେ କଟକ ଏବଂ ପୁରୀସ୍ଥ କେତେଗୁଡ଼ିଏ ସାଧାରଣ ଅନୁଷ୍ଠାନମାନଙ୍କ ନିମନ୍ତେ ସୋନପୁରର ମହାରାଜା ବୀରମିତ୍ରୋଦୟ ସିଂହଦେବ ଅନ୍ୟୂନ ଷୋଳଶତ ମୁଦ୍ରା ପ୍ରଦାନ କରିଅଛନ୍ତି । (କଟକ କ୍ଲବ, ରାମକୃଷ୍ଣ ସେବକ ସଂପ୍ରଦାୟ, ପୁରୀ ବେଦ ବିଦ୍ୟାଳୟ, ପୁରୀ ବ୍ରାହ୍ମଣ ସମିତି, ମୁକ୍ତିମଣ୍ଡପ ସଭା, ପୁରୀ କରଣ ସମାଜ, ସତ୍ୟବାଦୀ ସ୍କୁଲ, ପୁରୀ ବାଳିକା ବିଦ୍ୟାଳୟ, ପୁରୀ କୁଷ୍ଠାଶ୍ରମ, ପୁରୀସ୍ଥ ଚନ୍ଦ୍ରଶେଖର ସାମନ୍ତ ହଲ୍, ପୁରୀ ଗୋରକ୍ଷିଣୀ ସଭା ଇତ୍ୟାଦି) କଟକର ଟାଉନ ଭିକ୍ଟୋରିଆ ସ୍କୁଲକୁ ମଧ ମହାରାଜ କିଛି ବିଶେଷ ସାହାଯ୍ୟ କରିବେ ବୋଲି ବାସନା ପ୍ରକାଶ କରିଅଛନ୍ତି । ପୁରୀ ମୁକ୍ତିମଣ୍ଡପ ପଣ୍ଡିତସଭାର ସଭାସଦ୍‌ବର୍ଗ ଶ୍ରୀ ମହାରାଜା ବୀରମିତ୍ରୋଦୟଙ୍କ ଧର୍ମ ନିଷ୍ଠାରେ ପ୍ରୀତ ହୋଇ ତାଙ୍କୁ 'ଧର୍ମନିଧି' ଉପାଧି ଦ୍ୱାରା ସମଲଂକୃତ କରିଅଛନ୍ତି । ଉତ୍କଳର ରାଜନ୍ୟମଣ୍ଡଳୀରେ ମହାରାଜା ମହୋଦୟ ସରକାରଙ୍କ ଦରବାରରେ ଉଚ୍ଚତମ ଆସନ ଓ ସର୍ବୋଚ୍ଚ ସମ୍ମାନ ପାଇଅଛନ୍ତି ଏବଂ ମହାରାଜ ଜନସାଧାରଣଙ୍କ ଚକ୍ଷୁରେ ଏପରି ବିଶିଷ୍ଟ ସମ୍ମାନ ପାଇବା ଅତି ଆହ୍ଲାଦର ବିଷୟ ଅଟେ । ମହାରାଜ ଯୁବରାଜ ଥିବା ଅବସ୍ଥାରେ ଉତ୍କଳ ସାହିତ୍ୟ ପ୍ରତି ତାଙ୍କର ବିଶେଷ ଆସ୍ଥା ଥିଲା ଓ ସେ କେତେଗୁଡ଼ିଏ ପୁସ୍ତକ ପ୍ରଣୟନ କରିଥିଲେ । ବର୍ତ୍ତମାନ ତାଙ୍କ ପୂର୍ବପୁରୁଷଙ୍କ ରଚିତ 'ଚନ୍ଦ୍ରାବତୀ ପରିଣୟ' ଗୀତି କାବ୍ୟ ମୁଦ୍ରିତ କରାଉ ଅଛନ୍ତି । ପୁରୀ ସମ୍ବନ୍ଧୀୟ 'ନୀଳାଦ୍ରି ମହୋଦୟ' ଓ କ୍ଷତ୍ରିୟମାନଙ୍କର ସ୍ମୃତି 'ବୀର ସର୍ବସ୍ୱ' ନାମକ ଅମୁଦ୍ରିତ ସଂସ୍କୃତ ପୁସ୍ତକ ଦ୍ୱୟ ଶୀଘ୍ର ମହାରାଜାଙ୍କଦ୍ୱାରା ପ୍ରକାଶିତ ହେବ । ଅବଗତ ହେଲି ଯେ ପଣ୍ଡିତ ହରିହର ରଥ ଖଣ୍ଡିଏ ସଂକ୍ଷିପ୍ତ ମହାଭାରତ ଓଡ଼ିଆ ସରଳ ପଦ୍ୟରେ ରଚନା କରି

ମହାରାଜଙ୍କ ନାମରେ ଉତ୍ସର୍ଗ କି ଭଣିତା କରି ମହାରାଜାଙ୍କୁ ଉପହାର ଦେଇଥିବାରୁ ମହାରାଜା ତାହା ଆମୂଳ ସଂଶୋଧିତ ଓ ସ୍ଥାନ ବିଶେଷରେ ମାର୍ଜିତ ଓ ପରିବର୍ଦ୍ଧିତ କରି ମୁଦ୍ରିତ କରିବାର ଭାର ଗ୍ରହଣ କରିଅଛନ୍ତି ଓ ତହିଁର ଉପସ୍ୱତ୍ୱ ରଚୟିତା ପଣ୍ଡିତଙ୍କୁ ଦେଇ ଅଛନ୍ତି । ପଣ୍ଡିତ ମହାଶୟ ଉକ୍ତ ଗ୍ରନ୍ଥର 'ବୀର ମିତ୍ରୋଦୟ-ମହାଭାରତ' ନାମକରଣ କରିଅଛନ୍ତି । ଯଦି କୌଣସି ପ୍ରାଚୀନ ସଂସ୍କୃତ ଗ୍ରନ୍ଥଦ୍ୱାରା ଉତ୍କଳର ଉପକାର ବା ଗୌରବ ବୃଦ୍ଧି ହୋଇପାରେ, ସେପରି ଗ୍ରନ୍ଥ ମୁକ୍ତିମଣ୍ଡପ ପଣ୍ଡିତ ସଭା ମୁଦ୍ରିତ କରିବାକୁ ବାସନା କଲେ ମହାରାଜା ତାହା କରିଦେବାକୁ ଇଚ୍ଛା ପ୍ରକାଶ କରିଅଛନ୍ତି । ଏଥର ବଡ଼ଲାଟଙ୍କ କଟକ ବିଜୟ ଦ୍ୱାରା ଉତ୍କଳର ଅନେକ ଅବାନ୍ତର ଉପକାର ହେଲା - ଉତ୍କଳ ରାଜଧାନୀସ୍ଥ ବ୍ୟକ୍ତିମାନେ ସମ୍ବଲପୁର ଅଞ୍ଚଳର ରାଜାମାନଙ୍କ (ସୋନପୁର, ବାମଣ୍ଡା, ଗାଙ୍ଗପୁର, ବଣାଇ) ସହିତ ବିଶେଷ ଆଳାପ ପରିଚୟ କରିବାକୁ ସୁବିଧା ପାଇଲେ ଓ ଉତ୍କଳରେ ଏତେଗୁଡ଼ିଏ ପ୍ରଚ୍ଛନ୍ନ ଧନ ଅଛି, ଏହା ହୃଦୟଙ୍ଗମ ଓ ଅନୁଭବ କରିବାର ସୁବିଧା ଆମ୍ଭମାନଙ୍କୁ ମିଳିଲା । ଏହା ଆମ୍ଭମାନଙ୍କ ପ୍ରତି ପରମ ଆହ୍ଲାଦର ବିଷୟ ଅଟେ । ମୁଁ ପୂର୍ବରୁ ଅନେକଥର କହିଅଛି ଯେ, ଉତ୍କଳ ଗରିବ ନାଉରିଆମାନଙ୍କ ଦେଶ - ଏହିପରି ଦରବାର ଫରବାର ହେଲେ ଉତ୍କଳର ପେଡ଼ିଲୁଗା ଦୁଇ ଚାରିଖଣ୍ଡ ଯାହା ଥାଏ, ସେଗୁଡ଼ିକ ଦାଣ୍ଡକୁ ବାହାରିବାର ସୁବିଧା ମିଳେ ! ସେଥିମଧ୍ୟରୁ ଅଧିକାଂଶ ପୋରିହା, ପୋକଖିଆ ଓ ଦରପୋଡ଼ା । ବାଦ ବାକି ଯେଉଁ କେତେଖଣ୍ଡ ଅଛି, ସେ ଯେ ଅସଲ ସଚ୍ଚା ଜରିଦାର, ଏହା ଦେଖିଲେ କାହାର ମନରେ ହର୍ଷ ଓ ଆନନ୍ଦ ନ ହେବ ? (ନୋଟ୍ - ପାଠକ ଅବଧାନ, ଉପରେ ତ ଶୁଣିଗଲେ, ସୋନପୁର ମହାରାଜା ସମାଜର ଓ ସାହିତ୍ୟର କି ଉପକାର କରିଅଛନ୍ତି । ଆପଣମାନେ କେହି କେହି ବ୍ୟକ୍ତିଗତ କୌତୂହଳର ବଶବର୍ତ୍ତୀ ହୋଇ ମୋ ଆଡ଼କୁ ଅନାଉ ଅଛନ୍ତି  କିନ୍ତୁ ସେଗୁଡ଼ାକ ମୋର 'ଆୟୁର୍ବିତ୍ତ', ଅତଏବ ଆପଣମାନଙ୍କ କୌତୂହଳ ଚରିତାର୍ଥ ଇତି । ଯାହାହେଉ, ଏଠାରେ ତହିଁର ଟିକିଏ ଆଭାସର ଅବତାରଣା କରିଦିଏଁ - ଗତ ପାଞ୍ଚ-ଛ ବର୍ଷ ହେଲା ମୁଁ ସୋନପୁର ମହାରାଜଙ୍କର କଟକର ଏଜେଣ୍ଟ । କାର୍ଯ୍ୟଟା ମହାରାଜଙ୍କ ଜାଣିବାକୁ ଅନାହାରୀ - କିନ୍ତୁ ଫଳତଃ ମହାରାଜାଙ୍କ ଏଜେଣ୍ଟ ପଦ ଆମ ଦେଶର ଏକାଦଶୀ ଦିନର ଫଳାହାରୀ ପଦଟିଏ । ଆମ ଦେଶର ଫଳାହାରୀ ଅନାହାର ବ୍ରତ ପାଇଁ ଲୋକଙ୍କର ଯେଉଁପରି ଆଗ୍ରହ, ମୋର ସେ ଆଗ୍ରହରୁ କଣିକାଏ ବି ମତ ଦେବାର କୌଣସି ଆଇନ ସଙ୍ଗତ କାରଣ ନାହିଁ । ଯାହାହେଉ, ଏ କଥା ଥାଉ । ମୋର ଘନିଷ୍ଠ ଓ ତରଳିଷ୍ଟ ସମ୍ପର୍କୀୟ ବାଇ ମାହାନ୍ତିଙ୍କ 'ପାଞ୍ଜି'କୁ ମହାରାଜା ମୁଦ୍ରିତ କରାଇ ଦେଇ ଅଛନ୍ତି । ଏଥର ଲାଟ ଦରବାର ଉପଲକ୍ଷରେ ଶ୍ରୀ ମହାରାଜାସାହେବ ମୋର କଟକସ୍ଥ ଘରେ ଆତିଥ୍ୟ ସ୍ୱୀକାର କରିଥିଲେ । ଅବଶ୍ୟ ବସାର ଭଡ଼ା ଦାବି ହୋଇ ନ ଥିଲା କି ନାହିଁ; କିନ୍ତୁ ତାଙ୍କର ଦୟା ଓ ସ୍ନେହ ଯୋଗୁଁ ଏଥର ମୁଁ ମହାରାଜାଙ୍କ ଠାରୁ ଯେତେ ପ୍ରକାର କାୟିକ, ବାଚିକ, ବ୍ୟବସାୟଗତ, ଆର୍ଥିକ ଓ ଅନ୍ୟାନ୍ୟ ରାଜାମାନଙ୍କ

ସଙ୍ଗେ ଆଳାପ, ପରିଚୟ ଇତ୍ୟାଦି ସୁବିଧା ପ୍ରାପ୍ତ ହୋଇଅଛି, ତାହା ଚାଣକ୍ୟଙ୍କ ନୀତି ଅନୁସାରେ ଏଠାରେ ବାକ୍ୟତଃ ପ୍ରକାଶ କରିପାରୁ ନାହିଁ । ମହାରାଜାଙ୍କ ସଙ୍ଗେ କେତେ ଦିନ ବାସ କରି ତାଙ୍କର ଅମାୟିକତା, ସୌଜନ୍ୟ, ଧର୍ମନିଷ୍ଠା, ଦାନଶୀଳତା, ସାହିତ୍ୟ ଓ ସମାଜ ପ୍ରତି ଆଦର, ଉତ୍କଳ ପ୍ରୀତିର ଯେଉଁ ନିଦର୍ଶନ ପାଇଲି, ତାହା ଶୀଘ୍ର ବିସ୍ମୃତ ହେବାର ନୁହେଁ ।)

ଏଥର ବାମଣ୍ଡାର ରାଜା ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନଦେବ ମହୋଦୟଙ୍କ ସଙ୍ଗେ ଆଳାପ କରିବାର ସୁବିଧା ପାଇଲି । ରାଜାସାହେବଙ୍କର ଖ୍ୟାତି ପ୍ରତିପତ୍ତି ପ୍ରଭୂତ । ପୂର୍ବେ ରାଜାସାହେବଙ୍କୁ ମୁଁ ପରୋକ୍ଷ ଭାବରେ ଜାଣୁଥିଲି । ଏଥର ବ୍ୟକ୍ତିଗତ ପରିଚୟ ଲାଭ ହେଲା । ସମୟକ୍ରମେ ତାଙ୍କର ଯୋଗ୍ୟତା, ବିଦ୍ୱତ୍ତା, ଉତ୍କଳ-ପ୍ରୀତି ଓ ସୌଜନ୍ୟ ଇୟତ୍ତା କରିବାର ଢେର ସୁବିଧା ମିଳିବ ବୋଲି ଆଶା କରେଁ । ରାଜାସାହେବ ବର୍ତ୍ତମାନ ଇଂଲଣ୍ଡ ଭ୍ରମଣ କରିବା ନିମନ୍ତେ ଉତ୍ସୁକ ଅଛନ୍ତି ଓ ସେଥି ନିମନ୍ତେ ଉତ୍କଳୀୟ ରାଜ-ସମାଜ ଓ ପଣ୍ଡିତ ମଣ୍ଡଳୀର ମତକୁ ଅପେକ୍ଷା କରୁଅଛନ୍ତି । ରାଜାସାହେବଙ୍କର ଉତ୍କଳ ସାହିତ୍ୟପ୍ରୀତି ଉତ୍କଳରେ ସୁବିଦିତ, କିନ୍ତୁ ଉତ୍କଳୀୟ-ପ୍ରୀତି କେତେଦୂର, ତାହା ଜାଣିବା ଲାଗି ଏଣିକି ବୋଧହୁଏ ଆମ୍ଭମାନଙ୍କୁ ସୁବିଧା ମିଳିବ ।

ଉତ୍କଳର ଖ୍ୟାତଯଶା ଶ୍ରୀ ମହାରାଜା ବୈକୁଣ୍ଠନାଥ ସେଦିନ ବଡ଼ଲାଟଙ୍କ ଦରବାରରେ ଲାଟଙ୍କ ଶ୍ରୀହସ୍ତରୁ ମହାରାଜା ପଦର ସନନ୍ଦ ପାଇଥିଲେ । ପୂର୍ବେ ଉତ୍କଳର ସାହିତ୍ୟ ଓ ପାଠ୍ୟପୁସ୍ତକ ପ୍ରକାଶ ନିମନ୍ତେ ମହାରାଜା ବହୁତ ଯତ୍ନ କରିଥିଲେ ଓ ସେଥି ନିମନ୍ତେ ଉତ୍କଳ ତାଙ୍କ ନିକଟରେ ଋଣୀ । ସେ ଲାଟ ବ୍ୟବସ୍ଥାପକସଭାରେ ଉତ୍କଳର ପ୍ରଥମ ସଭ୍ୟ ଥିଲେ । ସାଧାରଣ କାର୍ଯ୍ୟରେ ସେ ଅନେକ ଦାନ କରିଅଛନ୍ତି ଓ ଏପରି ଉଦାହରଣ ଶୁଣାଯାଇଅଛି ଯେ ଅନେକ ସ୍ଥଳରେ ଅର୍ଥ ସ୍ୱଚ୍ଛଳତା ନ ଥିଲେ ସୁଦ୍ଧା କୌଣସି ସାଧାରଣ ଅନୁଷ୍ଠାନ ପାଇଁ ଅର୍ଥ ଦେବାକୁ ସେ କୁଣ୍ଠିତ ହେଉନଥିଲେ । ଉତ୍କଳ ସମ୍ମିଳନୀ ସଭାପତି ପଦରେ ସେ ଥରେ ବରିତ ହୋଇଥିଲେ । ଉତ୍କଳରେ ତାଙ୍କର ଭାରି ପ୍ରଭାବ ବା (Influence) ଥିଲା ଓ ଉତ୍କଳୀୟ ସ୍ଥାୟୀ ବଙ୍ଗାଳୀଙ୍କର ସେ ମୁଖପାତ୍ର ଏବଂ ସେମାନଙ୍କ ସଭାର ସଭାପତି ଥିଲେ । ତାହାଙ୍କ ଉଦାହରଣ ଉତ୍କଳୀୟମାନଙ୍କର ଅନୁକରଣପ୍ରିୟ ବାଲେଶ୍ୱର 'ଦେ ପ୍ରେସ' ଏବଂ 'ଓଡ଼ିଆ ନବସଂବାଦ' ପତ୍ରିକା ତାଙ୍କ ଆନୁକୂଲ୍ୟ ଯୋଗୁଁ ପ୍ରତିଷ୍ଠିତ ଓ ପରିପୋଷିତ ହେଉଥିଲା । ସ୍ଥାୟୀ ବଙ୍ଗାଳୀ ସମାଜର ପ୍ରତିନିଧି ରୂପେ ଗଭର୍ଣ୍ଣମେଣ୍ଟ ଏବେ ତାଙ୍କୁ ବ୍ୟବସ୍ଥାପକ ସଭାର ସଭ୍ୟ ମନୋନୀତ କରିଥିଲେ । ଉତ୍କଳର ରାଜନୀତିକ କ୍ଷେତ୍ରରେ ସେ ଜଣେ ଓସ୍ତାଦ୍ ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ ବର୍ଷ ପୁରୀ ସମ୍ମିଳନୀ ମହାରାଜାଙ୍କ ମୃତ୍ୟୁରେ, ଭକ୍ତକବି ଋଷିପ୍ରାଣ ମଧୁସୂଦନଙ୍କ ପରଲୋକରେ ଓ ଗଞ୍ଜାମର ପ୍ରାଣଧନ ନରସିଂହ ଦାସଙ୍କ ବିୟୋଗରେ ଦୁଃଖ ପ୍ରକାଶ କରିଅଛନ୍ତି । ଏ ତିନିଜଣ ଓଡ଼ିଶାର ତିନିଗୋଟି କ୍ଷେତ୍ରରେ ସ୍ୱନାମଧନ୍ୟ ହୋଇଥିଲେ - ଏ ତିନିଗୋଟିଙ୍କୁ

ହରାଇ ଉତ୍କଳ ନିର୍ଦ୍ଧନ ହେଲା । ଗୋଟିକ ପରେ ଗୋଟିଏ ଲେଖାଏଁ ନକ୍ଷତ୍ର ଉତ୍କଳାକାଶରୁ ଖସି ପଡୁଅଛନ୍ତି ଓ ତାଙ୍କ ସ୍ଥାନଟିମାନ ଅପୂର୍ଣ୍ଣ ରହିଅଛି, ଆଉ ଧନଜନ ଗୋପଲକ୍ଷ୍ମୀ ସହିତ ମୋ ଭଳି ଜଣକେତେ ନୀଚ, ଖୋସାମଦିଆ, ଈର୍ଷାପର, କପଟାଚାରୀ ଓ କପଟଭାଷୀ, ଭଣ୍ଡ ଓ ପରର ଛିଦ୍ରାନ୍ୱେଷୀ, ଆପ୍‌କେ ବାସ୍ତେ ମହାପୁରୁଷ ଉତ୍କଳ ଭୂମିରେ ସ୍ୱାର୍ଥ ଖେଳା କସରତ୍ ଦେଖାଇ ମୂର୍ଖ ଓଡ଼ିଆଙ୍କୁ କୁହୁକ ଲଡୁ ଖୁଆଇବାରେ ମାତିଅଛୁଁ । ଉତ୍କଳର ଉଲ୍ଲେଖଯୋଗ୍ୟ ଯେତେଗୁଡ଼ିଏ ଅନୁଷ୍ଠାନ ଦେଖ, ତହିଁ ମୂଳରେ କପଟତା (Insincerity) ଓ ନାମ ପାଇବାର ଆକାଂକ୍ଷା ପୂର୍ଣ୍ଣମାତ୍ରାରେ ରହିଅଛି । ମୋ ଭଳିଆ ଜଣେ ଲେଖକ ପ୍ରବନ୍ଧ ଲେଖୁଛି; ତା ମୂଳରେ ଉଦ୍ଦେଶ୍ୟ, ଯା ତା ନାମରେ ଦୁଇପଦ ଖୋସାମଦ କରି କିଛି ବ୍ୟକ୍ତିଗତ ପସରା ପୂର୍ଣ୍ଣ କରିବି । ମୁଁ ଦେଶହିତୈଷୀ ବୋଲି ଆପଣାକୁ ପରିଚୟ ଦେଇ ବକ୍ତୃତାର ଲହରୀରେ ଘରଦ୍ୱାର ଭାଙ୍ଗୁଅଛି ଭିତରେ ଉଦ୍ଦେଶ୍ୟ, ବେଶୀ ଲୋକ ମୋ ବକ୍ତୃତା ଶୁଣି ହାତତାଳି ଦେଲେ ମୋର କିପରି ଓକିଲାତିରେ ପ୍ରସାର ବଢ଼ିବ । ମୁଁ ସ୍କୁଲଟିଏ କରିଅଛି, ଭିତରର କଥା ହାକିମହୁକୁମାଙ୍କୁ ପଟେଇବାର ଓ ସ୍ତୁତି କରିବାର ଗୋଟାଏ ଅବସର ପାଇବି ମୁଁ ଦେଶର ବଢ଼ିଆ ବଢ଼ିଆ ଆନ୍ଦୋଳନରେ ଯୋଗ ଦେଉଅଛି, ଉଦ୍ଦେଶ୍ୟଟା କିପରି ଦେଶର କ୍ଷମତାଶାଳୀ ଓ ବିଶିଷ୍ଟ ବ୍ୟକ୍ତିମାନଙ୍କ ସଙ୍ଗେ ଘଷର ପସର ହୋଇ ସେମାନଙ୍କୁ ମକ୍‌କେଲ କରିବି । ରାଜଦରବାରିଆ ହେବାକୁ ଯା' ତା' ବାଡ଼ିପନ୍ଦାଡ଼ରେ ପଡ଼ି ଯା' ତା' ଅଧମାଙ୍ଗ ଉତ୍ତମାଙ୍ଗ ମର୍ଦ୍ଦନ କରି କାମ ହାସଲ କରୁଅଛି, ସରକାର ଜାଣୁଛନ୍ତି ମୁଁ ଲୋକଙ୍କର ଗେଲବସରିଆ ମୁଖିଆ ପୁଅ, ଲୋକେ ଜାଣୁଛନ୍ତି ମୁଁ ସରକାରଙ୍କର ଦିହଲଗା ମାମଲତକାର । ଏସବୁ ବାହାଦୁରି ଓଡ଼ିଶାରେ ମୋର କେବଳ ଏକଚାଟିଆ ନୁହେଁ, ମୋ ଭଳି ଜଣକେତେ ଦେଶ-ମାତୃକାସେବୀ ଓଡ଼ିଶାର ଖଟିରେ ନିରାପଦରେ ଓ ନିର୍ଦ୍ୱନ୍ଦ୍ୱରେ ବିହାର କରୁଅଛନ୍ତି । ମୋ ସାର୍ଟିଫିକେଟ ତୁ, ତୋ ସାର୍ଟିଫିକେଟ ମୁଁ, ଓଡ଼ିଶାଟା ବର୍ତ୍ତମାନ ହୋଇଅଛି Mutual admiration society (ପରସ୍ପରକୁ ପରସ୍ପର ବାହାଦୁରି ଦେବା ସମାଜ) । ଏଥିରେ ଯେ ଯୋଗ ନ ଦେବ, ତାକୁ ପଗଡ଼ିବା ଓ କାମୁଡ଼ିବା, କାମୁଡ଼ିବାକୁ ଥରେ ଇଚ୍ଛାହେଲେ ସ୍ଥାନ ପଡୁ, ଅସ୍ଥାନ ପଡୁ, ଛାଡ଼ିବା ନାହିଁ ।

କଟକରେ ଦେଶର ହିତକର ଅନୁଷ୍ଠାନ, ରାଜନୀତିକ ଆନ୍ଦୋଳନ, ଦେଶସେବାରେ ମାତି ମୋର ଢେର୍ ଅଭିଜ୍ଞତା ବଢ଼ିଅଛି । ମୋ ଶ୍ରେଣୀର ଦେଶଦ୍ରୋହୀଙ୍କ ସଂଖ୍ୟା ଯେ ନିତାନ୍ତ କମ୍ ନୁହେଁ, ଏହି ଧାରଣା ମୋର ଦୃଢ଼ତର ହୋଇଅଛି । କଟକରେ 'ଜନସାଧାରଣ ମତ' (Public opinion) ଅଛି । ପୁରୀରେ ତାହା ନଦାରଦ । ପୁରୀରେ ଦୋମୁଣ୍ଡିଆ, ଶଙ୍କରା ଧଣ୍ଡଙ୍କ ସଂଖ୍ୟା ବେଶି, ଏକଥା କହିଥିଲି ବୋଲି ମୁଁ ପୁରୀରେ ପଦାର୍ପଣ କରିବା ଦିନଠାରୁ ମୋ ହିତ ସାଧନକୁ ମୋର ଯେଉଁ ଜଣକେତେ ବନ୍ଧୁ ତାଙ୍କ ଜୀବନର ମହାବ୍ରତ କରିଅଛନ୍ତି, ସେମାନଙ୍କୁ ଦିନରାତି ନିଦ ହେଲା ନାହିଁ । କିନ୍ତୁ ଇତିମଧ୍ୟରେ ଦେଖିଲି ଯେ

ସାଧାରଣ ସାପଗୁଡ଼ାକଙ୍କ ମୁହଁ ମଣିଷ ଭଳି ଓ ଅଧସ୍ଥନାଙ୍ଗଗୁଡ଼ାକ ପୋଷାକରେ ଘୋଡ଼ା । ବିଚାରିଛି, ଏଠାରେ ଗୋଟିଏ ସମାଜ ପ୍ରତିଷ୍ଠା କରି କେତେଗୁଡ଼ିଏ ନଗଦ-କାଟତି-ଯୋଗ୍ୟ ସୁଗୁଣ ଦେଶଯାକ କିପରି ବିଞ୍ଛିଡ଼ି ହୋଇ ପଡ଼ିବ, ତହିଁ ପାଇଁ ଚେଷ୍ଟା କରିବି ।' ସେଥିରେ ହିନ୍ଦୁଧର୍ମ, କେଲ୍‌ନର ହୋଟେଲ, ଜଗନ୍ନାଥ ମନ୍ଦିର, ସରକାରୀ ଚାକିରି, ଗ୍ରାମଦେବତା, ସ୍ୱାଧୀନ ବ୍ୟବସାୟ, ପଣ୍ଡା ପଡ଼ିହାରୀ, ସନ୍ଥ ମହନ୍ତ, ସ୍ତ୍ରୀଲିଙ୍ଗ, ପୁଂଲିଙ୍ଗ ମକାରାଦି ଓ ମକାରାନ୍ତ ପଦାର୍ଥ ଓ ଗୁଣ, ଇସ୍କୁଲ ଚାହାଳି, ସ୍ତ୍ରୀ ସ୍ୱାଧୀନତା ଓ ସ୍ୱାଧୀନଭର୍ତ୍ତୃକତା ସବୁଥିରୁ ଉପାଦାନ ଶିକ୍ଷା ଦିଆଯିବ । କେତେଗୁଡ଼ିଏ ଅନ୍ୟାନ୍ୟ ସାଧାରଣ ଗୁଣ ଓ ବିଷୟ, ଯଥା - ଋଷି ଶରୀରରେ ରାକ୍ଷସତା, ସ୍ୱାଧୀନ ବ୍ୟବସାୟରେ ପରାଧୀନ ବୃତ୍ତି, ସ୍ପଷ୍ଟବାଦିତା ପୋଷାକରେ ନୀଚ ଚାଟୁକାରିତା, ବୃଦ୍ଧାବସ୍ଥାରେ ଯୁବକତ୍ୱ, ପାଶ୍ଚାତ୍ୟ ସ୍ତ୍ରୀ ସ୍ୱାଧୀନତା ସଙ୍ଗେ ରାସ-ରସିକତା, ରାଜା ସଙ୍ଗେ ବାରବୁଲା ବାସ୍ତୁରା କୁତାପଣିଆ, ମାନ୍ୟବରତ୍ୱ ସଙ୍ଗେ ଭୁଆବିରାଡ଼ି ପଣିଆ, ଉଦର ପୂର୍ତ୍ତି ସଙ୍ଗେ କୁମ୍ଭୀରତ୍ୱ, ସଂସ୍କାରତ୍ୱ ସଙ୍ଗେ ଇନ୍ଦ୍ରିୟ ଲାଳସା ମେଣ୍ଟନ, ଜାତ୍ୟଭିମାନ ସଙ୍ଗେ ପିତୃନିର୍ଦ୍ଦେଶାକ୍ଷ ସ୍ୱତ୍ୱ, ଦେଶହିତୈଷିତା ସଙ୍ଗେ ବାହାଦୁରି ଓ କରତାଳି ପାଇବା ଇଚ୍ଛା, ଏହିପରି Syllabus ବା ପାଠ୍ୟକ୍ରମ କରାଯିବ ଓ ଏ ସମାଜରେ ତାଲିମ ହୋଇ ଉପଯୁକ୍ତ ଇନତାନ୍ ଦେଇ ଉତ୍ତୀର୍ଣ୍ଣ ହୋଇପାରିଲେ ଦେଶର ଓ ଜାତିର ନେତୃତ୍ୱ ସନନ୍ଦ ଦିଆଯିବ । ତୋ ସାର୍ଟିଫିକେଟ ମୁଁ, ମୋ ସାର୍ଟିଫିକେଟ ତୁ । ତୁ ମୋ ପାଇଁ ସାନ୍ଧ୍ୟ ସମ୍ମିଳନ ଆୟୋଜନ କର, ମୁଁ ତୋ ପାଇଁ ଉଦ୍ୟାନ ମିଳନର ବନ୍ଦୋବସ୍ତ କରିବି । ତୁ ମୋ ପାଇଁ ଉପରକୁ ଟେଲିଗ୍ରାମ କର, ମୁଁ ତୋ ପାଇଁ ଖେତାବର ବନ୍ଦୋବସ୍ତ କରିବି । ନିତାନ୍ତ ବାହାରେ ଲୋକ କେହି ଏ ସଂଘରେ ନ ମିଳିଲେ ନିତାନ୍ତ ପକ୍ଷରେ ଗୋଟିଏ 'ପାରସ୍ପରିକ ଚାଟୁକାରିଣୀ ସଭା (Mutual admiration Society) ସଙ୍ଗଠନ କରିବା । ଏପରି ନ ହେଲେ ଏ ଦେଶଟା ଓ ଏ ଜାତିଟା ସହଜରେ ସ୍ୱର୍ଗକୁ ଉଠିବ ନାହିଁ ଓ ମୋ ପିଲାପିଲିଙ୍କର ଅନ୍ନ, ବସ୍ତ୍ର ଓ ଆଭରଣର ସଂସ୍ଥାନ ହୋଇପାରିବ ନାହିଁ । ପାଠ ଡାକୁଛି - 'ଯା ଲୋକଦ୍ୱୟଂ ସାଧୀନାତନୁଭୁତାଂସା ଚାତୁରୀ ଚାତୁରୀ ।' ଅର୍ଥାତ୍ ବହିର୍ଜଗତରେ ନାମ ଲାଭ ଓ ଅନ୍ତର୍ଜଗତରେ କାମଲାଭ । ଏ ଦୁଇ କାମ ଫଏର ହେବ, ଏ ମତଟା ଯେପରି orihodon (ଖାଣ୍ଟି) ଏବଂ Heterodon (ଦରପେଲା) ସମାଜରେ ବହୁତ ଲୋକ ଗ୍ରହଣ କରିବେ, ଏଥିପାଇଁ ଆଗେ canvassing (ତଦବୀର) କରିବା ଦରକାର । ଏଇଟା accomplished fact (ଅର୍ଥାତ୍ ସିଦ୍ଧାର୍ଥ) ହୋଇଗଲେ ମୁଁ ମୋର ନୀତି ଦେଶରେ ଚଳାଇବି । ପୁରୀଠାରେ ଏ ଉପାଦାନର ଅଭାବ ନାହିଁ । ଅନାହାରୀଙ୍କ ସଂଖ୍ୟା କମ୍ ନୁହେଁ କିମ୍ୱା ଫଳାହାର ସାମଗ୍ରୀର ଅଭାବ ନାହିଁ । କେବଳ ବାନା ଧରି ବାନା ପଟା ଖେଳି ପାରିଲେ ପଟ୍‌ପାଟ୍ Leader (ଦେଶର ନେତା) ଗଠନ ହୋଇ ଘରେ ଘରେ ବିରାଜମାନ ହେବେ । ଚୁଗୁଲି, ପରୋକ୍ଷ କୁତ୍ସା, ସ୍ୱାର୍ଥତ୍ୟାଗର ଦୋହା, ଚାଟୂକ୍ତି ଓ ଅଇଁଠାଚଟା ଏଗୁଡ଼ାକ ଜାତୀୟ ଉନ୍ନତି ପ୍ରତି ଭାରି ସହାୟ ହୁଏ । ଯାହା ହେଉ, ଆଜି ଏହିଠାରେ ଥାଉ ।

ତପ୍‌ର କଥା, ପୁରୀରେ ଉତ୍କଳ ସମ୍ମିଳନୀର ନବମ ଅଧିବେଶନ ୧୯୧୩ ସାଲ ଡିସେମ୍ବର ମାସ ୨୯ ଓ ୩୦ ତାରିଖ ହୋଇଗଲା । ଗତବର୍ଷ କେହି ସଭାପତି ହେବାକୁ ନାରାଜ ହେବାରୁ ଅଗତ୍ୟା ପୁରୀଠାରେ ସମ୍ମିଳନୀର ଅଧିବେଶନ ହୋଇପାରିଲା ନାହିଁ । ଏ ବର୍ଷ ମଧ ତାହା ଘଟିବ ବୋଲି ପ୍ରଥମରେ ଭୟ ଉଠିଥିଲା । ମାନ୍ୟବର ମଧୁସୂଦନ ଦାସ C.I.E. ମହୋଦୟ ପ୍ରଥମେ ସଭାପତି ହେବାକୁ ଅସ୍ୱୀକୃତ ହୋଇ ପୁରୀର ବନ୍ଧୁମାନଙ୍କୁ ଦୀର୍ଘ ପତ୍ର ଲେଖିଥିଲେ ଓ ଉକ୍ତ ପତ୍ର ପାଠକରି ମୁଁ ହତାଶ ହୋଇଥିଲି; କିନ୍ତୁ ପୁରୀର ବନ୍ଧୁମାନେ ସେହି ଅସମ୍ମତିର ଘର୍ଘର ନାଦ ମଧରେ ସମ୍ମତିର ରୁଣୁଝୁଣୁର କ୍ଷୀଣାଭାସ ପାଇ ବେଳକାଳ ଉଣ୍ଡି ସରଜମିନରେ ପହଞ୍ଚି ତାଙ୍କୁ ଆମ୍ଭମାନଙ୍କ ଶୈଶବ ଅନୁଷ୍ଠାନର ସାନ୍ନିପାତିକ ଅବସ୍ଥା ଜଣାଇବାରୁ ସେ ମହାଶୟ ଜାତି ପ୍ରତି ଓ ପୁରୀଧାମ ପ୍ରତି ସଦୟ ହୋଇ ଏଥର ସଭାପତି ହେବାକୁ ସ୍ୱୀକୃତ ହୋଇ ଦେଶକୁ ଗୋଟାଏ ଆସନ୍ନ ବିପଦ୍‌ପାତରୁ ଉଦ୍ଧରି ନେଲେ, ନଚେତ୍‌ ଦେଶଟା ଚାହୁଁ ଚାହୁଁ ନରକକୁ ଗଡ଼ଗଡ଼ାଇ ଯାଇଥା'ନ୍ତା । ଯାହାଙ୍କର ତୀକ୍ଷ୍ଣବୁଦ୍ଧି ଯୋଗୁଁ ସମ୍ମିଳନୀର ଓଡ଼ିଶାରେ ଜନ୍ମ, ସମ୍ମିଳନୀ ନିମନ୍ତେ ଯେ ଅଜସ୍ର ଧନ, ଜୀବନ ଓ ସାମର୍ଥ୍ୟ ବ୍ୟୟ କରିବାକୁ କୁଣ୍ଠିତ ହୋଇ ନାହାନ୍ତି ଓ ତାହାଙ୍କର ଦୃଢ଼ ନେତୃତ୍ୱ ହରାଇବା ଦିନଠାରୁ ସମ୍ମିଳନୀ ନାଉଆରସି ମାଲଭଳିଆ ଏ ହାତ ସେ ହାତ ହେଉଥିଲା, ସେ ଫେର ଆଜି ସର୍ବସମ୍ମତିକ୍ରମେ ସମ୍ମିଳନୀର ସଭାପତିର ଆସନ ଅଲଂକୃତ କଲେ । ଏହାଠାରୁ ବଳି ଆଶା, ଆନନ୍ଦ ଓ ଆସ୍ଫାଳନର କଥା କ'ଣ ହୋଇପାରେ ? ଆଜି ଜନ୍ମଦାତାଙ୍କୁ Certificated Guardian (ମାର୍କାମରା ଅଭିଭାବକ) ହେବାର ଦେଖି ସମ୍ମିଳନୀର ବୃହସ୍ପତି ଏକାଦଶ ହେବାର ମୋର ଧାରଣା ହୋଇଅଛି । ଆଜିପର୍ଯ୍ୟନ୍ତ ସମ୍ମିଳନୀ ଆପଣାର ଜନ୍ମଦାତାଙ୍କୁ ହରାଇ ଘରଛୁଆଣିକୁ ଘରଛୁଆଣି ଯେନ ତେନ ପ୍ରକାରେଣ ଯଥାତଥା ଜୀଇ ଥିବାର ଚିହ୍ନ ଦେଖାଉଥିଲା । ବର୍ତ୍ତମାନ ସମ୍ମିଳନୀର ଭବିଷ୍ୟତ ବଦଳିଯିବ ବୋଲି ସମସ୍ତେ ଆଶାନ୍ୱିତ ନୟନରେ ଚାହିଁଅଛୁ । ଏଥରକ ସମ୍ମିଳନୀର ଆଗାମୀ ବର୍ଷକର କାର୍ଯ୍ୟ ପରିଚାଳନାର ଭାର ପୁରୀର ନେତାମାନଙ୍କ ଉପରେ ନ୍ୟସ୍ତ ହେବାରୁ ଆଶା ହେଉଛି ଯେ, ଏ ଅଧିବେଶନରେ ଯେଉଁ ଜାଗରଣ ଅଗ୍ନି ଲାଗିଲା, ତାହା ଖୁବ୍‌ ଦାଉ ଦାଉ ହୋଇ ଜଳିବ ଓ କେତେ ଲୋକଙ୍କୁ ପୋଡ଼ିବ । ଏମାର ମଠ ଓ ରାଧାକାନ୍ତ ମଠର ମହନ୍ତ ମହାରାଜାମାନେ ଯେତେବେଳେ ଏ କାର୍ଯ୍ୟରେ ଅଣ୍ଟା ଭିଡ଼ି ଅଛନ୍ତି, ସେତେବେଳେ ଅର୍ଥର ଅଭାବ ଘଟିବ ନାହିଁ । ତାଙ୍କର ସାହଚର୍ଯ୍ୟ କରିବା ଲାଗି ପୁରୀର ସ୍ୱନାମଧନ୍ୟ ଉଦ୍ୟମଶୀଳ କର୍ମବୀରମାନେ ଠିଆ ହୋଇଅଛନ୍ତି । ଏଥରକ ସମ୍ମିଳନୀ ଉପରେ ଖୋଦ ଶ୍ରୀକ୍ଷେତ୍ରର ମାଲିକଙ୍କର କୃପାଦୃଷ୍ଟି ଓ ଆଶୀର୍ବାଦ ପଡ଼ିବ, ଏଥିରେ ସନ୍ଦେହ ନାହିଁ ବା ଆଇନ ଅନୁସାରେ ସନ୍ଦେହ ହେବା ଉଚିତ ନୁହେଁ ।

ଏଥର ସତ୍ୟବାଦୀ ସ୍କୁଲ ପ୍ରତି ସାଧାରଣଙ୍କର ଯେଉଁ ପ୍ରଗାଢ଼ ଆସ୍ଥାର ନିଦର୍ଶନ ମିଳିଲା, ସେଥିରେ ସ୍ୱାର୍ଥତ୍ୟାଗୀ ଯୁବକମାନଙ୍କର ଅଦମ୍ୟ ଉତ୍ସାହକୁ ଦେଶବାସୀ ପୂର୍ଣ୍ଣ

ହୃଦୟରେ ଗ୍ରହଣ କରିଅଛନ୍ତି ବୋଲି ନିଃସନ୍ଦେହ ଭାବରେ ପ୍ରମାଣିତ ହେଲା ଓ ସ୍କୁଲର ଆସନ୍ନ ଆର୍ଥିକ ବିପଦ ଆପାତତଃ ଘୁଞ୍ଚିଗଲା । ସମ୍ମିଳନୀର ଅଧିବେଶନ ସ୍ଥଳରେ ସ୍କୁଲ ନିମନ୍ତେ ଚାରି ପାଞ୍ଚ ହଜାର ଟଙ୍କା ଚାନ୍ଦା ଉଦ୍‌ଘୋଷିତ ହେବା ଦେଶର ଶିକ୍ଷାର ଭବିଷ୍ୟଦ୍ ପ୍ରତି ଆଶାର ବିଷୟ । ମୋର ଧାରଣା ଯେ, ଏଥର ସମ୍ମିଳନୀ ଦ୍ୱାରା ଯେବେ କିଛି ପ୍ରକୃତ କାର୍ଯ୍ୟ ହୋଇଥାଏ, ତାହା ଏହି । ଏହାଛଡ଼ା ବାକି କଥାଗୁଡ଼ାକ 'ତୋ ପାଇଁ ମୁଁ ଓ ମୋ ପାଇଁ ତୁ' ଭଳିଆ ମୋତେ ଲାଗିଲା । କେତେକ କାର୍ଯ୍ୟରେ ଦେଖିଲି ଯେ, ଯେତେବେଳେ କାହାରି ଆପଣା କଥା ବଜାୟ ନ ରହିଲା, ସେତେବେଳେ 'ଦେଶକେ ବାସ୍ତେ' 'ଜାତିକେ ନାସ୍ତେ' ତୁହାଗୁଡ଼ାକ କେଉଁଆଡ଼େ ଚୂରମାର ହୋଇଗଲା । ତତେ ମୁଁ ପ୍ରଶଂସା କରି ବକ୍ତୃତା କଲି, ଆଇନ ଅନୁସାରେ ମତେ ବାହାଦୁରି ଦେଇ ତୁ ପଦେ ସାକୁଲେଇ କରି ମୁହଁ ଲେପେଡ଼ି କହିବାକୁ ବାଧ । ଏଥିରେ ଉଭୟ ପକ୍ଷଙ୍କର ଲାଭ । ମୁଁ କହିଲି, "ଆହା ! ପରମ ସ୍ନେହାସ୍ପଦ ଅମୁକଙ୍କ ପରି କର୍ମବୀର ଇହ ଜଗତରେ ନାହିଁ, ଧନ୍ୟ ତାଙ୍କର ପିତାମାତା, ଧନ୍ୟ ତାଙ୍କର ପୁତ୍ରକନ୍ୟା, ଧନ୍ୟ ତାଙ୍କର ଧର୍ମକନ୍ୟା ଓ ଧନ୍ୟ ଜାମାତା । ଉତ୍କଳର ବିପଦରେ ସେ ଏକମାତ୍ର ଭରସା, ଉତ୍କଳର ସମ୍ପଦରେ ସେ ଏକମାତ୍ର କାରଣ । ସେ ଦେଶଲାଗି ଯାହା କରିଗଲେ, ତାହା ତାଙ୍କ ମଲା ବାସିଦିନ ପର୍ଯ୍ୟନ୍ତ ଦାଉ ଦାଉ ହୋଇ ଜଳୁଥିବ ।" ମଞ୍ଚାରୁ ମୁଁ ଖସିଆସିଲି । ମୋର ପ୍ରଶଂସିତ ଅମୁକଙ୍କର ବକ୍ତୃତା ପାଳି ପଡ଼ିଲା, ସେ ଘନ ଗମ୍ଭୀର ସ୍ୱନରେ କ୍ୱଣନ କଲେ, "ଆହା ! ଗୋପାଳର (ଗୋପାଳବାବୁ ଓଡ଼ିଶାର ବରପୁତ୍ର ଥିବାରୁ ସେ ହିସାବରେ ମୁଁ ତାଙ୍କୁ 'ବାବୁ' ବୋଲି ନ କହି ଘରଆଡ଼େ ଡାକିଲା ଭଳି ମିଠା 'ଗୋପାଳ' ନାମରେ ସମ୍ବୋଧନ କରିବି) । କି ଜ୍ୱଳନ୍ତ ନିଃସ୍ୱାର୍ଥ ତ୍ୟାଗ । ଧନ୍ୟ ତାହାର ପିଉସା, ମଉସା, ପୁତୁରା, ଝିଆରୀ, ଧନ୍ୟ ତାହାର ବସୁଧୈବ କୁଟୁମ୍ବକ ଭ୍ରାତା, ଭଗିନୀ ଓ ଧନ୍ୟ ତାହାର ଏବଂ ବିଶେଷଣ ବିଶିଷ୍ଟ ଭ୍ରାତୃବଧୂ ଓ ଭଗିନୀପତି । ଗୋପାଳ ମତେ ଶତ୍ରୁ ବୋଲି ମନେକରେ ।" ମୁଁ ତାକୁ ମିତ୍ର ବୋଲି ମନେକରେ । ଏପରି ଆଦାନ ପ୍ରତିଦାନ ମଧୁପରି ଶ୍ରୁତିମଧୁର ଓ ଚୁମ୍ବନ ମଧୁର ଲାଗେ ଓ ଏଥିରେ କାହାରି ଆପତ୍ତି ଥାଇ ନ ପାରେ । କିନ୍ତୁ ସମ୍ମିଳନୀ ମଣ୍ଡପରେ ମାତାଙ୍କର ସୂତିକାଗାରରେ ଡିହ ମରାମରି, ଦାଇକା ବୋଲାବୋଲି, ଧକ୍କା ମରାମରି, ଏଗୁଡ଼ାକ ଭାରି ଅଖଣ୍ଡିଆ ଲାଗିବା କଥା । ଯାହାହେଉ କୌଣସି ଶାନ୍ତିଭଙ୍ଗ (Breach of the peace) ବା ବେଆଇନ ଜନତା (Unlawful assembly) ହୋଇ ନାହିଁ, ଏଥି ନିମନ୍ତେ କ୍ଷେତ୍ରପତି ଜଗନ୍ନାଥଙ୍କୁ ଧନ୍ୟବାଦ ।

ସମ୍ମିଳନୀର ଗତ ଅଧିବେଶନରେ ଗଞ୍ଜାମଠାରେ ଦେଶର ନେତାଯାକ ସ୍ଥିର କରିଥିଲେ ଯେ ସମ୍ମିଳନୀରେ ରାଜନୀତିକ ଚର୍ଚ୍ଚା ହେବ । 'God said, let there be light and there was light' । ନେତାମାନଙ୍କ ଆଦେଶ ବାଣୀ ସମସ୍ତେ ଶିରୋଧାର୍ଯ୍ୟ କଲୁଁ । ତଥାସ୍ତୁ ।

ଇତିମଧ୍ୟରେ ମୁଁ ଘଟନାକ୍ରମେ ସରକାରଙ୍କ ଦାନ ନିମକ ଖାଇଲି । ଆଗପରି ସ୍ୱାଧୀନ ଭାବରେ ଦେଶସେବା କରିବାର ଜୁ' ନାହିଁ - ଅତଏବ ରାଜନୀତିକ ଚର୍ଚ୍ଚାଯୁକ୍ତ ସଭାରେ ବିଶିଷ୍ଟ ଭାବରେ ଯୋଗଦେଇ ବକ୍ତୃତା ଆଦି କରିବାର ସାମର୍ଥ୍ୟ ମୋର ନାହିଁ । ଏଥିପାଇଁ କାଳେ ପଛେ ଚାକିରି ଖଣ୍ଡିକ ଯାଏ, ଏହି ଭୟରେ ସମ୍ମିଳନୀରେ ରାଜନୀତିକ ଚର୍ଚ୍ଚା ହେବ କି ନାହିଁ, ଏକଥା ଅନୁସନ୍ଧାନ କଲି । ଦେଶର ଓ ପୁରୀର ନେତାମାନଙ୍କୁ ପଚାରିଲି । ସେମାନେ କହିଲେ ଯେ, ଆର ବର୍ଷର ରାଜନୀତିକ ଚର୍ଚ୍ଚାର ପ୍ରସ୍ତାବଟା କାଞ୍ଚନିକ ଆକାଶ କୁସୁମ ମାତ୍ର । ଅର୍ଥାତ୍ ସମ୍ମିଳନୀ ରାଜନୀତିକ ଚର୍ଚ୍ଚାର କ୍ଷେତ୍ର ନୁହେଁ । ହେଉ, ଧଳା ବଳଦଟା ହେଲା କଳା । ତଥାସ୍ତୁ, ତଥାସ୍ତୁ । ପ୍ରଥମ ଦିନ ଅଭ୍ୟର୍ଥନା-ସମିତିର ସଭାପତି ମଧ୍ୟ ଗାଇ ବଜାଇ ଏ କଥାଟା ତାଙ୍କ ବକ୍ତୃତାରେ ବୁଝାଇ ଦେଲେ ଓ ଦ୍ୱିତୀୟ ଦିନ ଖୋଦ ସଭାପତି ମଧ୍ୟ ଏକଥା ବିଶଦ ଭାବରେ ବୁଝାଇ ଦେଇ ସରକାରୀ କର୍ମଚାରୀମାନଙ୍କ ହୃଦୟରେ ଅଭୟବାଣୀ ଢାଳି ଦେଲେ । ଫଳତଃ ଦେଖିଲି ଯେ, ପାର୍ଲିଆମେଣ୍ଟ, ଲର୍ଡ ହାର୍ଡ଼ିଞ୍ଜ, ଲର୍ଡ୍ ପେଣ୍ଟଲାଣ୍ଡ, ଇଣ୍ଡିଆ ଗଭର୍ଣ୍ଣମେଣ୍ଟ, ବେଙ୍ଗଲ ଗଭର୍ଣ୍ଣମେଣ୍ଟ କମିଶନର, କିଲଟର ସମସ୍ତଙ୍କ କାର୍ଯ୍ୟ ଓ ମତର ସମାଲୋଚନା ହେଲା, ଆନ୍ଦୋଳନ ହେଲା, ଚର୍ଚ୍ଚା ହେଲା । ମୋ କ୍ଷୁଦ୍ର ବୁଦ୍ଧିରେ ବିଚାରିଲି, 'ରାଜନୀତିଟା କେଉଁଠାରେ ଗଳିପୁଛି ରହିଗଲା ପରା ? ମୋ ମୋଟା ବୁଦ୍ଧିରେ ମୁଁ ବୁଝି ନ ପାରିଲି ବୋଲି ମନକୁ ଏହି ଆଶ୍ୱାସନା ଦେଇ ସଭାମଣ୍ଡପରୁ ଘରକୁ ଫେରିଲି ।

ଏଥର ସମ୍ମିଳନୀରେ ସଭାପତି ଗଞ୍ଜାମ ମିଶ୍ରଣ ଆଜିପର୍ଯ୍ୟନ୍ତ କାହା ଦୋଷରେ ନ ହେଲା, ସେ ସମ୍ବନ୍ଧରେ ଯେଉଁ ଗୃହଚିତ୍ରଟି ଦେଖାଇ ଗଞ୍ଜାମ ଭାଇମାନଙ୍କୁ ମୋହିତ କରାଇଲେ, ତହିଁରେ ଯୁଗପତ୍ ହର୍ଷ-ବିଷାଦ, ଆଶା-ନିରାଶା, ସ୍ନେହ-ଘୃଣା ମନରେ ଉଇଁଲା । ହୁଏତ ଗଞ୍ଜାମ ଭାଇଗୁଡ଼ାକ ନିପଟ ଓଲୁ, ନ ହେଲେ ଆମେ କଟକିଆ ଭାଇଯାକ ସାପ ମାରି ପରଗଳାରେ ବେଶ୍ ପକାଇ ଦେଇପାରୁଁ ।

ପାଠ ଡାକିଲା -

''ସିଦ୍ଧେ କାର୍ଯ୍ୟେ ଫଳଂ ମମ୍<br>
ଯଦ କାର୍ଯ୍ୟେ ବିପତ୍ତିଃ ସ୍ୟାତ୍<br>
ଗଞ୍ଜାମ ସ୍ତତ୍ର ହନ୍ୟତେ ।''

କଥାଟା କିନ୍ତୁ ସେହିପରି ହେଲା । ଏହାକୁ କହନ୍ତି ଶିରଃ ନ ଥାଇ ଶିରୋବ୍ୟଥା ।

ଏ ବର୍ଷ ସମ୍ମିଳନୀରେ ଆଉ ଗୋଟିଏ ନୂଆ କଥା ହେଲା । ଶ୍ରୀମତୀ ସଦାନନ୍ଦ ସରସ୍ୱତୀ ନାମ୍ନୀ ଜଣେ ମାତାଜୀ ସ୍ତ୍ରୀ ଶିକ୍ଷା ସମ୍ବନ୍ଧରେ ଦୁଇପଦ କହିବାକୁ ଇଚ୍ଛା ପ୍ରକାଶ କରିବାକୁ ସଭାପତି ସ୍ୱୀୟ କୋମଳତା ଗୁଣରେ ତାହାଙ୍କୁ କିଛି କହିବା ସକାଶେ ଅନୁମତି ଦେଲେ । ସେ ଓଜସ୍ୱିନୀ ଭାଷାରେ ଛାତ୍ର ଜୀବନ ଓ ବ୍ରହ୍ମଚର୍ଯ୍ୟ ସମ୍ବନ୍ଧରେ ଶାସ୍ତ୍ରାଦି

ଉଦ୍ଧାର କରି କେତେଗୁଡ଼ିଏ କଥା କହି ଆଧୁନିକ ଶିକ୍ଷା ବେଳେବେଳେ କିପରି ସ୍ତ୍ରୀରତ୍ନ ଗଠନ କରୁଅଛି, ତାହା ମଧ୍ୟ ବୁଝାଇ ଦେଲେ । ମନେହେଲା ଯେ ବକ୍ତୃତାକାରିଣୀ ବକ୍ତୃତା କଲାବେଳେ ତାଙ୍କ କଳ୍ପିତ ଶିକ୍ଷିତା ଲେଡ଼ିଙ୍କ ଚିତ୍ରକୁ ସମ୍ମୁଖରେ କି ପଛଆଡ଼େ ନଚାଉଥିଲେ । ଶେଷରେ କହିଲେ ଯେ ଜାତୀୟ ଉନ୍ନତି ନିମନ୍ତେ ସୁପୁତ୍ର ଦରକାର । ସୁପୁତ୍ର ପ୍ରସବ ଓ ଲାଳନ କରିବା ନିମନ୍ତେ ସୁମାତା ଦରକାର, ସର୍ଫନୀ ଦରକାର ନାହିଁ ।

ଏଥର ସମ୍ମିଳନୀରେ ଗଞ୍ଜାମ ଅଞ୍ଚଳର ଧରାକୋଟ, ସୁରଙ୍ଗୀ ରାଜାମାନେ ଓ କେତେଗୁଡ଼ିଏ ଯୁବରାଜ ସଭାସ୍ଥଳକୁ ଅଳଂକୃତ କରିଥିଲେ । ମାନ୍ୟବର ଧରାକୋଟ, ମାନ୍ୟବର ମଧୁସୂଦନ, ମାନ୍ୟବର କନିକା, ମାନ୍ୟବର ନାୟକ, ମାନ୍ୟବର ଚଉଧୁରୀ ଉପସ୍ଥିତ ଥିଲେ, ମଧୁପୁରର ରାଜା ମଧ୍ୟ ଉପସ୍ଥିତ ଥିଲେ, ପୁରୀର ମହନ୍ତ ମହାରାଜାମାନେ ମଧ୍ୟ ଉପସ୍ଥିତ ଥିଲେ । ଓଡ଼ିଶା ଗଡ଼ଜାତର ରାଜାମାନଙ୍କର ଏଥରକ ଖଡ଼ି ପଡ଼ିଲା ନାହିଁ । କାରଣଟା କିନ୍ତୁ ନେତାମାନଙ୍କର ଅଭିସନ୍ଧେୟ । ଏମନ୍ତ କି, ଲାଟ ଦରବାର ସମୟରେ ଆଠଗଡ଼ର ରାଜା ବାହାଦୁର ପ୍ରସ୍ତାବିତ ଇଞ୍ଜିନିଅରିଙ୍ଗ ସ୍କୁଲ ନିମନ୍ତେ କୋଡ଼ିଏ ହଜାର ଟଙ୍କା, ସୋନପୁରର ମହାରାଜା ଉଚ୍ଚ ଡାକ୍ତରୀ ଶିକ୍ଷା ନିମନ୍ତେ ମାସିକ ୫୫ ଟଙ୍କା ବୃତ୍ତି ଉପଯୋଗୀ ସ୍ଥାୟୀ ପାଣ୍ଠି ନିମନ୍ତେ ଆବଶ୍ୟକ ଟଙ୍କା, ବାମଣ୍ଡାର ରାଜା ଓ ସୋନପୁରର ମହାରାଜା, ଆଠଗଡ଼ର ରାଜା ବାହାଦୁର ଉତ୍କଳ ସାହିତ୍ୟ ସମାଜର ସ୍ଥାୟୀ ପାଣ୍ଠି ନିମନ୍ତେ ସାତହଜାର ଟଙ୍କା ଦେବାପାଇଁ ପ୍ରତିଶ୍ରୁତ ହୋଇଥିଲେହେଁ, ସେମାନଙ୍କୁ ସାଧୁ ସଙ୍କଳ୍ପ ନିମନ୍ତେ ଗୋଟାଏ ଲେଖାଏଁ ଧନ୍ୟବାଦ ଦିଆଗଲା ନାହିଁ । ଏହିଟା ବେଶ ଦୂରଦର୍ଶିତାର କାର୍ଯ୍ୟ ହୋଇଛି । ରାଜାଗୁଡ଼ାକ ଏଥର ସମ୍ମିଳନୀକୁ ନ ଆସିବାରୁ ପାରସ୍ପରିକତା ଧନ୍ୟବାଦ - ସମାଜର (Mutual admiration Society) ଅନ୍ତର୍ଭୁକ୍ତ ହୋଇପାରିଲେ ନାହିଁ । ସେମାନଙ୍କୁ ଧନ୍ୟବାଦ ଦେଲେ କାଳେ ସେମାନଙ୍କ ମନଟାମାନ ମୋଟା ହୋଇଯିବ । ଭଲ କଥା, କିନ୍ତୁ ମାନ୍ୟବର କନିକାର ରାଜା ମହୋଦୟ ରେଭନ୍‌ସା କଲେଜର ଉନ୍ନତି କଳ୍ପେ ପଚାଶ ହଜାର ଟଙ୍କା ଦେବାକୁ ପ୍ରସ୍ତୁତ ଅଛନ୍ତି ବୋଲି ଶୁଣିଲୁଁ । ସେ ଏଥରକ ତ ସମ୍ମିଳନୀରେ ଯୋଗ ଦେଇଥିଲେ । ତାଙ୍କର ଏ ସାଧୁସଂକଳ୍ପ ଯୋଗେ ସମ୍ମିଳନୀ ପକ୍ଷରୁ ଗୋଟାଏ ଧନ୍ୟବାଦ ଦେବାର ଉଚିତ ଥିଲା । ଯାହାହେଉ, ଶୁଣିଲି ଯେ ସଭାପତି ମହୋଦୟ କହିଲେ, ସମ୍ମିଳନୀଟା Prize distribution ବା ପୁରସ୍କାର ବିତରଣୀ ସଭା ନୁହେଁ । ଦେଶ ପାଇଁ ଯେ କାମ କଲା, ସେ ଯେବେ ଧନ୍ୟବାଦ ପାଇବା ଆଶାରେ ତାହା କରିଥାଏ, ତେବେ ତାକୁ ଧନ୍ୟବାଦ ଦେବାର ନୁହେଁ; ଅନ୍ୟଥା ସେ ଯେବେ ଧନ୍ୟବାଦର ପ୍ରୟାସୀ ନୁହେଁ, ତାକୁ ଧନ୍ୟବାଦ ଦେଲେ ସେ ବିରକ୍ତ ହେବ । ଅତଏବ ଉଭୟତଃ ଧନ୍ୟବାଦ ନଦାରଦ ।

ସର୍ବଶେଷରେ ସର୍ବଶକ୍ତିମାନ୍ ସର୍ବନିୟନ୍ତା ଭଗ ଜଗବନ୍ଧୁଙ୍କଠାରେ ପ୍ରାର୍ଥନା ଯେ, ଆମ ସମ୍ମିଳନୀଟି ଚିରଂଜୀବିନୀ ହୋଇ ଓଡ଼ିଆଙ୍କୁ ଜାତୀୟ ଜୀବନ ପ୍ରଦାନ କରନ୍ତୁ ବା

ଦେଶର ନେତାମାନଙ୍କର କ୍ରୀଡ଼ନକ କିମ୍ବା କ୍ରୀଡ଼ାକ୍ଷେତ୍ର ହୋଇ ଉତ୍କଳର ବିଶିଷ୍ଟ ଜାତୀୟତାକୁ କ୍ରମବିକାଶ ପଥରେ ଅଗ୍ରସର କରୁ ଓ ଉତ୍କଳଟା ବାଏଁ ବାଏଁ ସ୍ୱର୍ଗକୁ ଭୁଷ୍‌କିନି ହାବିଳି ଭଳିଆ ଉଠିଯାଉ ?

ପୁରୀର ହାଲଚାଲରେ ପୁରୀର ପୂର୍ବତନ ମାଜିଷ୍ଟ୍ରେଟ କଲେକ୍‌ଟର ଶ୍ରୀ ରମାବଲ୍ଲଭ ମିଶ୍ରଙ୍କର ବାଲେଶ୍ୱର ବଦଳି ହେବାର ସଂବାଦ ଉଲ୍ଲେଖଯୋଗ୍ୟ । ପଣ୍ଡିତ ମହାଶୟ ବିଦାୟ ବେଳେ ତାଙ୍କର ବିଦ୍ୱତ୍ତା ଯୋଗୁଁ ପୁରୀର ମୁକ୍ତିମଣ୍ଡପ ସଭାରୁ 'ବିଦ୍ୟାବିଶାରଦ' ଉପାଧି ପାଇଥିଲେ । ସତ୍ୟବାଦୀ ସ୍କୁଲ ପ୍ରତି ସେ ଯେଉଁ ବାସ୍ତବିକ ସହାନୁଭୂତି ଦେଖାଇ ଅଛନ୍ତି, ତାହା ସ୍କୁଲର ଉଦ୍ୟୋକ୍ତାମାନେ ଭୁଲିବେ ନାହିଁ । ସ୍କୁଲର କର୍ତ୍ତୃପକ୍ଷମାନେ ପଣ୍ଡିତ ମହୋଦୟଙ୍କୁ ସାକ୍ଷିଗୋପାଳଙ୍କ ବକୁଳବନରେ ଭେଟି ଆସନ୍ନ ବିଚ୍ଛେଦର ଦୁଃଖ ଗୀତ ଶୁଣାଇଥିଲେ । ପଣ୍ଡିତ ମହାଶୟ ନିଜର ଔଦାର୍ଯ୍ୟ ଗୁଣରେ ପୁରୀ ଜିଲ୍ଲାକୁ ନିଜର ଘରୋଇ ସମ୍ପତ୍ତି କରିନେଇଥିଲେ । କିଏ ଜାଣିଥିଲା ଯେ ପଣ୍ଡିତଙ୍କ ବାହେଲି ବିଜୁଳି ବାସି ଦିନ ବଦଳି ଘଡ଼ଘଡ଼ିଟା ପଡ଼ିଯିବ । ଘଡ଼ଘଡ଼ିଟା କେତେ ଲୋକଙ୍କର ହୃଦୟ ଭେଦ କରିଗଲା । ପଣ୍ଡିତ ମହୋଦୟଙ୍କର ଓଡ଼ିଆଙ୍କ ପ୍ରତି ବିଶେଷ ପ୍ରୀତି ଓ ଅନୁଗ୍ରହ ଥିଲା । ପୁଣି ସେ ଏଠାରେ କେତେକ ଲୋକଙ୍କୁ 'ମଣିଷ' କରି ଯାଇଅଛନ୍ତି । ବର୍ତ୍ତମାନ ତାଙ୍କୁ ପାଇ ବାଲେଶ୍ୱରର ଓଡ଼ିଆମାନେ କୃତକୃତ୍ୟ ହେବେ ଓ ସେଠାରେ ମଧ୍ୟ କେତେକ ଲୋକ ତାଙ୍କର ଦେବତୁଲ୍ୟ ସାହଚର୍ଯ୍ୟ ଲାଭ କରି ମନୁଷ୍ୟ ହେବେ । ବ୍ୟକ୍ତିଗତ ଭାବରେ ସେ ମୋତେ ଯେତେଗୁଡ଼ିଏ ଉପଦେଶ ଦେଇ ଯାଇଅଛନ୍ତି, ସେଗୁଡ଼ିକ ମୁଁ ଜୀବନରେ ଭୁଲିବି ନାହିଁ ।

୧. Be straight forward and sincere - ଅର୍ଥାତ୍ ସରଳ ଓ ଅକପଟ ହୁଅ ।

୨. A man who wants to please everybody pleases none - ଯେଉଁ ଲୋକ ସମସ୍ତଙ୍କୁ ସନ୍ତୁଷ୍ଟ କରିବାକୁ ଇଚ୍ଛା କରେ, ସେ କାହାକୁ ସନ୍ତୁଷ୍ଟ କରିପାରେ ନାହିଁ ।

୩. Reconcile East with West - ପ୍ରାଚ୍ୟ ପାଶ୍ଚାତ୍ୟର ମିଳନ କର ।

୪. Forgive your enemy - ତୁମ୍ଭର ଶତ୍ରୁକୁ କ୍ଷମା କର ।

୫. ଓଡ଼ିଆ ବଙ୍ଗାଳୀଙ୍କ ସମ୍ବନ୍ଧରେ କ'ଣ ଗୋଟାଏ ଉପଦେଶ ଦେଇ ଯାଇଥିଲେ, ଲେଖିଲା ବେଳେ ମନେ ନ ପଡ଼ିବାରୁ ଛାଡ଼ିଗଲି - ପାଠକ ଉପପାଠକମାନେ କ୍ଷମା କରିବେ ।

ଉପରୋକ୍ତ ଉପଦେଶଗୁଡ଼ାକ ସ୍କୁଲରେ ପଢ଼ିଲାବେଳେ ବହିରେ ପଢ଼ିଥିଲି; କିନ୍ତୁ ୧୦ ବର୍ଷ ହେଲା ସଂସାରରେ ପଶି ତାକୁ ସବୁ ପାସୋରି ପକାଇଥିଲି । ପଣ୍ଡିତ ମହୋଦୟଙ୍କ ଭଳି ଜଣେ ଅଭିଭାବକ ପାଇ ସେ ଉପଦେଶଗୁଡ଼ିକ କଣ୍ଠସ୍ଥ କରିବାର ସୁବିଧା ମିଳିଲା । ବ୍ୟକ୍ତିଗତ ଭାବରେ ମଧ୍ୟ ଏ ଉପଦେଶମାନଙ୍କର ସାମାନ୍ୟ କଥନ,

ବିଶେଷ କଥନ, କ୍ରିୟା, ଅନୁଶୀଳନୀ ସବୁ ମତେ ବୁଝାଇ ଦେଇ ଯାଇ ଅଛନ୍ତି - ଯାହା ତାଙ୍କ ଉପଦେଶରୁ ବାକି ଥିଲା, ତାହା ତାଙ୍କ କାର୍ଯ୍ୟ ଓ ବ୍ୟବହାର ଦ୍ୱାରା ମୁଁ ଉପଲବ୍ଧି କରିବାର ସୁବିଧା ପାଇ ଆପଣାକୁ ଧନ୍ୟ ମଣିଅଛି । ଯାହାହେଉ ପଣ୍ଡିତ ମହୋଦୟଙ୍କ ଯୋଗ୍ୟତା ଓ ଗୁଣଗ୍ରାହିତା କ୍ରମଶଃ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ଉତ୍ତରୋତ୍ତର ପୁରସ୍କୃତ ହେଉ, ଏହାହିଁ ଜଗନ୍ନାଥଙ୍କ ନିକଟରେ ମୋର ଓ ମୋ ଭଳି ଉପକୃତ ଅନ୍ତେବାସୀଙ୍କର ଭିକ୍ଷା । 'ଅନ୍ତେବାସୀ' ଶବ୍ଦଟାର ଅର୍ଥ, ହେ ପାଠକ ଅବଧାନ, 'ଛାତ୍ର' ଅଟେ । ଇଂରାଜୀ ପଢୁଆ ପାଠକ ତାକୁ 'Survivor' ଏପରି ଯୌଗିକ ଅର୍ଥ କରି ବସିବେ ନାହିଁ । ପଣ୍ଡିତ ରମାବଲ୍ଲଭଙ୍କର ବିଶାଳ ମନ କଣ ହୋଇ ଯାଇଥିବ, ତାହା ସେ ଜାଣନ୍ତି । କିନ୍ତୁ ମୋ ଭଳି କେତେ ଲୋକଙ୍କ ଆଖିରୁ ସେ ପାଣି ବୁହାଇ ଦେଇ ଏଠାରୁ ଯାଇଅଛନ୍ତି । ସେ ଅତି ଲୋକପ୍ରିୟ ଥିଲେ । କେତେ ଜାଗାରେ (ଯଥା - ଅତି ଲେମ୍ବୁ) ଅତି ଶବ୍ଦଟା ଅଖଣ୍ଡିଆ ହୁଏ । କିନ୍ତୁ ଏ ସ୍ଥଳରେ ହଳୀଶା ଲାଙ୍ଗଳୀଶାବତ୍ ନିପାତନାତ ସିଦ୍ଧଃ - ଇତି ପାଣିନି ବଚନାତ୍ । ଆଜି ଥାଉ ।

ଉତ୍କଳ ସାହିତ୍ୟ/୧୭ ଭାଗ/୧୦ମ ସଂଖ୍ୟା/୧୩୨୧ ସାଲ ।

## ।। ପଚାଶ ।।

ସମ୍ପାଦକ ଅବଧାନ, ନମସ୍କାର - ଅର୍ଥାତ୍ ଅୟମାରମ୍ଭଃ । କଥାଟା କଣ କି, ଆପଣ ଆଶା, ନିରାଶା, ପ୍ରଶଂସା, ଭର୍ତ୍ସନା, ଏଣୁ ତେଣୁ ଏପରି ହରେକ କିସମର ଗୋଟାକେତେ କଥା ଶୁଣି ମନେ କରୁଥିବେ ଯେ, ଏହିଥରକ ଦୁନିଆର ହାଲଚାଲ ସାଙ୍ଗ ହେବ ପରା ? କିନ୍ତୁ ଅବଧାନ, ତାହା ନୁହେଁ । ଓଡ଼ିଶାରେ ଲେଖକ ହେବାକୁ ହେଲେ ଓ ସାଧାରଣ ମନୁଷ୍ୟ (Public manର ଅନ୍ୟ କୌଣସି ତର୍ଜମା ହାବୁଡ଼ରେ ପଡ଼ିଲା ନାହିଁ, ମାଫ୍ କରିବେ) ହେବାକୁ ଗଲେ କାକ ଭୋଜନ, କୁମ୍ଭକର୍ଣ୍ଣ ନିଦ୍ରା, ଗଧ ରଡ଼ି, ଛେଳି ସ୍ନାନ ଓଗେର କେତେଗୁଡ଼ିଏ କାର୍ଯ୍ୟ ଯେପରି ଦରକାର, ସେହିପରି କାଠମୁହାଁ, ଛାଲବନ୍ଧା ପିଠି, ଓଦାକନା ପକା ପେଟ, ବଧିରା କାନ, ଏଥିରୁ ଗୁଡ଼ିଏ ଅଙ୍ଗ, ଉପାଙ୍ଗ, ଅପାଙ୍ଗ ଦରକାର । ଅତଏବ ସେଥି ନିମନ୍ତେ ଆପଣ ନିଶ୍ଚିନ୍ତ ଥାଆନ୍ତୁ । ଆଧୁନିକ ଶିକ୍ଷିତମାନେ ଜାଣନ୍ତି ଯେ, ନିଶ ଦାଢ଼ିରେ କିଛି ନାହିଁ, କିନ୍ତୁ ତଥାପି ସେଥିରୁ ପୁଞ୍ଜାଏ ଲେଖାଏଁ ରଖନ୍ତି । ପ୍ରତିଦିନ ତେଲ ସାଉଁଳିଆ ଖିଅରରେ କିଛି ଲାଭ ନାହିଁ; ତଥାପି ପ୍ରତିଦିନ ଦର୍ପଣଟାଏ ଆଗରେ ରଖି ପଟାଏ ଲେଖାଏଁ ଏପାଖ ସେପାଖ କରି ମୋ ଭଳି ଖିଅର ହୁଅନ୍ତି । ଅନାହାରୀ ପଦରେ କିଛି ଉପନ୍ନ ନାହିଁ, ତଥାପି ସେଇତା ପାଇବା ଲାଗି ଯା' ତା ପିଛା ଅନୁସରଣ କରନ୍ତି ଓ ସେଗୁଡ଼ାକ ଛାଡ଼ିଲା ବେଳେ ମୋହରି ଭଳିଆ ଆମ୍ବୁଲଖିଆ ମୁହଁ କରନ୍ତି । ଲୋକେ ଜାଣନ୍ତି ଯେ ଅର୍ଥ ଅର୍ଜ୍ଜନ, ସଞ୍ଚୟ ଓ ବ୍ୟୟ ସବୁଥିରେ କଷ୍ଟ, ତଥାପି

ସଂସାରଟାଯାକ ସେହି ଅର୍ଥକୁ ଦିବାନିଶି ସ୍ତବ କରୁଅଛନ୍ତି । ଆମର ସାହିତ୍ୟ ସେବା ମଧ ସେହି ଧରଣର । ଜାଣୁଛୁଁ ଯେ, ଆମ ଲେଖାକୁ ଲୋକେ ମାଗଣା ପଢ଼ିବାକୁ ମଧ ନାରାଜ । ଜାଣୁଛୁଁ ଯେ, ତାହା ପଢ଼ିବା ଲାଗି ଅନେକଙ୍କର ବହୁମୂଲ୍ୟ ସମୟ ନଷ୍ଟ ହେଉଅଛି । ଲେଖା ଲାଗି କେତେକ ଲୋକଙ୍କଠାରୁ ଉତ୍ତମ ମଧମ ମିଳିଅଛି । ତଥାପି ସେ ବଦ ଅଭ୍ୟାସଟା ଛାଡ଼ି ହେଉ ନାହିଁ । ଅତଏବ ସେ ସମ୍ବନ୍ଧରେ ଆପଣଙ୍କର ନିରାଶ ହେବାର କିଛି କଥା ନାହିଁ ।

ଜଣେ ମୋତେ ଅନେକ ଦିନ ପୂର୍ବେ କହିଥିଲେ ଯେ, ଅନ୍ଧାର ଘରକୁ ଅଲକ୍ଷିତ ଭାବରେ ଟେକା ମାରିଲା ବେଳେ ଯେତେବେଳେ ଅନ୍ଧାର ଘର ଭିତରର ଜୀବଙ୍କର କେଁ କାଁ ରଡ଼ି ଶୁଭେ, ସେତେବେଳେ ଟେକା ମାରିଲା ବ୍ୟକ୍ତି ମନରେ ଆନନ୍ଦ ଉପଭୋଗ ହୁଏ । କାରଣ ଅଲକ୍ଷିତ ଭାବରେ ଢେଲା ମାରୁ ମାରୁ ତାହା ଉଦ୍ଦିଷ୍ଟ ଜୀବଙ୍କ କଲିଜାରେ ଲାଗିଛି ।

ଫଳକଥା ଏହିକି, ସତକଥାଗୁଡ଼ାକ ସାଧାରଣତଃ ଅପ୍ରିୟ ହୁଏ ଓ ଔଷଧଗୁଡ଼ାକ ସଚରାଚର ପିତା ହୁଏ । ତେବେ ଯେଉଁ ବୈଦ୍ୟଙ୍କର କୁଇନାଇନ୍ ଉପରେ ମିଶ୍ରି ପ୍ରଲେପ ବୋଳି ଦେବାର ଓସ୍ତାତି ଅଛି, ସେମାନେ ଅବଶ୍ୟ ଧନ୍ୟ; କିନ୍ତୁ ଆମ ଗାଉଁଲି ଲୋକଙ୍କ କପାଳକୁ ରାମ ନାହାକ ଅବଧାନଙ୍କ ହରଗଙ୍ଗୀ ବଟୁଆ ଓ ତନ୍ମଧ୍ୟସ୍ଥ ଚିତ୍ରକୁମ୍ଭି ମଧ୍ୟସ୍ଥ କଟୁତିକ୍ତ କଷାୟାଦି ବିଶିଷ୍ଟ ବଟିକା ଛଡ଼ା ଅନ୍ୟ କଥା ନଦାରଦ । ଏପରି ସ୍ଥଳରେ ମିଶ୍ରି ପୁଟଦିଆ ବଟିକା ଆଶା କରିବା ଆମ ପକ୍ଷରେ ମଧ ଦୁରାଶାର କଥା । ଛାଡ଼ ସେ କଥା ।

Bechams Pillର (ଅଂରେଜ କମ୍ପାନୀର ବଟିକା) ଖବରକାଗଜ ପଢ଼ା ଗ୍ରାହକ ଅଛନ୍ତି । ଏଣେ ରାମ ଅବଧାନଙ୍କର ପିତା, ମୁହଁ ନିକୁଟା 'ବଡ଼ି'ର ମଧ ଗରାଖ ଅଛନ୍ତି କେହି କାହା ଇଲାକାକୁ ଆଖି ନ ଦେଲେ ହେଲା ।

ସାହିତ୍ୟର କେତେ ପାଠକ ମନେକରନ୍ତି ଯେ, ସେମାନେ ସାହିତ୍ୟକୁ ଟଙ୍କା ଯୋଡ଼ିଏ ବର୍ଷକେ ଦିଅନ୍ତି । ଅତଏବ ଖାଲି ଛଙ୍କାଛଙ୍କା ମିଠାକଥା ଗୁଡ଼ିଏ ସାହିତ୍ୟ ସେମାନଙ୍କୁ ଆଇନ ଅନୁସାରେ ଶୁଣାଇବାକୁ ବାଧ । ଏ ହେଲା ସମ୍ପାଦକ ଓ ପାଠକଙ୍କ ମଧରେ ସମ୍ବନ୍ଧ । କିନ୍ତୁ ସମ୍ପାଦକ ଅବଧାନ ସେ ସମ୍ପର୍କଟାକୁ ଲେଖକଙ୍କ ସଙ୍ଗରେ ଲଗାଇଲେ ଚଳିବ କାହୁଁ ? ଆପଣଙ୍କୁ ଆଠକାଳି ବାରମାସ ମାଲ ଲାଗୁଆ ଦେବୁଁ । ସେଥିରେ ଫେର ଧାଡ଼ି କଥା ଦୂରେ ଥାଉ, ଅର୍ଦ୍ଧସ୍ତମ୍ଭ କଥା ତେଣିକି ଥାଉ, ସ୍ତମ୍ଭ କଥା ଦୂରେ ଥାଉ, ପ୍ରବନ୍ଧ ହିସାବରେ ମଧ ଆପଣ ଆମକୁ ଫଳେ ପୁଷ୍ପେ କିଛି ଦେବାକୁ ନାରାଜ । ଏପରି ସ୍ଥଳରେ ଆପଣ ଆମକୁ ଜଗିଲା ବେଳକୁ ଗ୍ରାହକ ଖସିଲେ, ଏଣେ ଗ୍ରାହକଙ୍କୁ ଜଗିଲା ବେଳକୁ ଆମେ ଚଲ୍ । ଆମେ ଚଲ୍ ଦେଲା ବେଳକୁ ଯେ ଆପଣଙ୍କ ଚୁଲିରେ ବୁଢ଼ିଆଣୀ ବସା କରିବେ । ଅତଏବ ଆପଣ ଫି ପ୍ରବନ୍ଧ ତଳେ ଗୋଟାଏ ଲେଖାଏଁ ଭଲଲୋକିଆ ଉ: ସା:

ସ: ଶୀର୍ଷକ ମନ୍ତବ୍ୟ ଟିପନ୍ତୁ । ତାହାହେଲେ ଲେଖକଙ୍କର ତର୍ପଣ ହେବ ଓ ପାଠକଙ୍କର ସନ୍ତର୍ପଣ ହେବ । ଇତି ଲେଖକଙ୍କର ଟିପ୍‌ପଣୀ ପ୍ରକରଣଃ ।

ମୋ ଉପରେ ବିରକ୍ତ ହୋଇଥିବା ମହାଶୟମାନଙ୍କ ବାଦ୍ ବାକି ଅଦିଆ ଓ ମହରଗିଆ ପାଠକ ଅବଧାନମାନେ ! ପୂର୍ବରୁ ଆପଣମାନଙ୍କୁ ଡାକିହାକି କହି ଆସିଛି ଯେ, 'ଦୁନିଆର ହାଲଚାଲ'ଟା ହେଲା ମୋର ବ୍ୟବସାୟ ବଢ଼ାଇବାର ପସରା । ଏପରି ସ୍ଥଳରେ ଏଥିରେ ମୁଁ ଗୁଡ଼ିଏ ନିଜର ବ୍ୟକ୍ତିଗତ କଥା କହି ପାଠକମାନଙ୍କର ସମୟ ନଷ୍ଟ କରିଥାଏ, ତଦ୍ଦ୍ୱାରା ମୋର ଅନେକ ସମୟରେ ଓକିଲାତି ପସରା ବଢ଼ିଥାଏ । ସେହି ହିସାବରେ ଦେଖିବାକୁ ଗଲେ ମୋର ବର୍ତ୍ତମାନ ପୁରୀ ସମ୍ପର୍କଟା କ୍ରମଶଃ ଦୃଢ଼ତର ହେବାକୁ ବସିଲାଣି । ପୂର୍ବେ କଟକରେ ଥିବାବେଳେ ଅନାହାରୀ ମେଜେଷ୍ଟର, ଡିଷ୍ଟ୍ରିକ୍ଟ ବୋର୍ଡ଼ ମେମ୍ବର, ମ୍ୟୁନିସିପାଲ କମିସନର ଥିଲି । ପୁରୀ ଆସିବା ଦିନଠାରୁ କଟକର ସମ୍ପର୍କ ଗୋଟି ଗୋଟି ହୋଇ ଛିଣ୍ଡି ପଡୁଅଛି । ଏଥିରୁ ଗାଣିତିକ ଅନୁପାତ ଅନୁସାରେ ମନେ କରୁଅଛି ଯେ, କଟକ ସମ୍ପର୍କଟା ଯେତିକି କମିଯାଉଥିବ, ପୁରୀ ସମ୍ପର୍କଟା ସେତିକି ବଢ଼ିବ । ଏଇଥିପାଇଁ ଏଡ଼େବଡ଼ ସ୍ପର୍ଦ୍ଧାସୂଚକ କଥାଟାଏ କହିଲି, ନଚେତ୍ ଯଥୈବାସ୍ତେ ତଥୈବାସ୍ତାଂ । ବରଞ୍ଚ କଟକରୁ ଆସିଲା ବେଳେ ଡାକଘର ସେଭିଂସ୍ ବ୍ୟାଙ୍କରେ ଜମା ଥିଲା ୫୦୦ ଟଙ୍କା । ବର୍ତ୍ତମାନ ତାହା ପୁରୀକୁ ଆସିବା ଦ୍ୱାରା ବଢ଼ିବଢ଼ି ହେଲାଣି ପଚାଶ ଟଙ୍କା, ଏଥିରୁ ମୋର ଏଠାର ଦଣ୍ଡଛତ୍ରଧରା ଆଧିଟା ଆପଣମାନେ ସମଝି ପାରିବେ । ଯାହାହେଉ, ଛାଡ଼ ସେ କଥା ।

ବର୍ତ୍ତମାନ ଓଡ଼ିଶାର ହାଲଚାଲ ମଧ୍ୟରେ କଟକରେ ନବ ପ୍ରତିଷ୍ଠିତ 'Peoples' Economical Development Company Limited, Cuttack' ନାମକ ଗୋଟିଏ ଯୌଥ କାରବାରର ଉଦ୍ୟମ । ଏ ଅନୁଷ୍ଠାନଟି ଶ୍ରୀଯୁକ୍ତ ଆର.କେ. ମୂର୍ତ୍ତିଙ୍କ ଜ୍ୱଳନ୍ତ ଉଦ୍ୟମର ଫଳ । ଏ ମହାଶୟ ଉତ୍କଳରେ ସୁପରିଚିତ ଶ୍ରୀଯୁକ୍ତ ଆର. ଗୁନ୍ନେୟା ଶାସ୍ତ୍ରୀଙ୍କ (ବ୍ରହ୍ମପୁର) କନିଷ୍ଠ । ଶ୍ରୀଯୁକ୍ତ ଗୁନ୍ନେୟା ଶାସ୍ତ୍ରୀ ବ୍ରହ୍ମପୁରଠାରେ 'ଗଞ୍ଜାମ ଓଡ଼ିଆ-ହିତବାଦିନୀ' ପତ୍ରିକା ସମ୍ପାଦନ କରି ଓଡ଼ିଆମାନଙ୍କର ଅନେକ ଦେଶହିତକର ଜାତୀୟ ଅନୁଷ୍ଠାନରେ ଯୋଗ ଦେଇ ଉତ୍କଳ ପ୍ରୀତିର ପରାକାଷ୍ଠା ଦେଖାଇଥିଲେ । ତାଙ୍କର କନିଷ୍ଠ ସହୋଦର ଗତ କେତେ ବର୍ଷ ହେଲା ଉତ୍କଳରେ ସ୍ୱଦେଶୀ ଯୌଥଭଣ୍ଡାର ସ୍ଥାପନ କରିବାକୁ ଚେଷ୍ଟା କରି ବର୍ତ୍ତମାନ ଉକ୍ତ କମ୍ପାନୀ ପ୍ରତିଷ୍ଠା କରି ତହିଁର କାର୍ଯ୍ୟ ଆରମ୍ଭ କରିଅଛନ୍ତି, 'ଆଶା କରାଯାଏ ଯେ, ତଦ୍ଦ୍ୱାରା ଉତ୍କଳୀୟମାନଙ୍କର ବହୁ ପରିମାଣରେ ବୈଷୟିକ ଉନ୍ନତି ହେବ । ଦେଶର କେତେଗୁଡ଼ିଏ ନେତୃସ୍ଥାନୀୟ ବ୍ୟକ୍ତି ଏ ଉଦ୍ୟମର ପରିଚାଳକ ଓ ଡାଇରେକ୍ଟର ହୋଇଅଛନ୍ତି । ପୁରୀରେ ପ୍ରତିଷ୍ଠିତ ଓ ମୃତ ରାଧାକୃଷ୍ଣ ବିଳାସ ପ୍ରଭିଡେଣ୍ଟ କମ୍ପାନୀ ଉତ୍କଳୀୟଙ୍କ ମନରେ ଯୌଥ କାରବାର ପ୍ରତି ଯେଉଁ ବିରକ୍ତିର ଉଦ୍ରେକ କରାଇଅଛି, ତାହା ଏହି ନୂତନ ପ୍ରତିଷ୍ଠିତ କମ୍ପାନୀ ଲୋପ କରାଇ ଥରେ ଏହାର କାର୍ଯ୍ୟକାରିତା ଆମ୍ଭମାନଙ୍କୁ ଦେଖାଇପାରିଲେ ଓ ଏଥିରେ ଦେଶର ଅନେକ ପ୍ରକାର ବୈଷୟିକ ଲାଭ

ହେବ । ଏହା ଆମ୍ଭେମାନେ ବୁଝିପାରିଲେ ଦେଶରେ ଯୌଥ କାରବାରର ବୀଜ ଚିର ପ୍ରତିଷ୍ଠିତ ହୋଇ ରହିବ । ଦେଶର ଧନ ଦେଶରେ ର‌ହି ତହିଁରେ ଦେଶର ଲାଭ ହୋଇ କମ୍ପାନୀର ଅଂଶୀଦାରମାନଙ୍କର ଲାଭ ହେବ । ନବ ପ୍ରତିଷ୍ଠିତ କମ୍ପାନୀର ଉଦ୍ଦେଶ୍ୟ ସୁସାଧିତ ହେଲେ ଦେଶର ସମୃଦ୍ଧି ଅବଶ୍ୟମ୍ଭାବୀ । ଗଭର୍ଣ୍ଣମେଣ୍ଟଙ୍କ କର୍ତ୍ତୃତ୍ୱାଧୀନରେ ସ୍ଥାନେ ସ୍ଥାନେ ଯେଉଁ 'Co-operative Credit Society' (ଅନ୍ୟୋଽନ୍ୟ ଋଣଭଣ୍ଡାର) ସ୍ଥାପନ କରିବାର ଚେଷ୍ଟା ଲାଗିଅଛି, ଏ କମ୍ପାନୀ ସେହି ଛାଞ୍ଚରେ ଢଳା ଓ ତାହା ଆଇନ୍ ଅନୁସାରେ ରେଜେଷ୍ଟିରି ହୋଇଅଛି । କମ୍ପାନୀର ଟଙ୍କା କମ୍ପାନୀର ଅଂଶୀଦାରମାନଙ୍କ ଛଡ଼ା ଅନ୍ୟ କାହାରିକୁ ଋଣ ଦିଆଯିବ ନାହିଁ ଓ ଅଂଶୀଦାରମାନେ ଆପଣା ଅଂଶରେ ଦଶ ଗୁଣ ପରିମାଣ ଟଙ୍କା ନିମନ୍ତେ ଦାୟୀ ରହିବେ । ଏ ଦିଓଟି ବିଧି ଦ୍ୱାରା ଅଂଶୀଦାରମାନେ ନିଜ ନିଜ ସ୍ୱାର୍ଥରେ ପରସ୍ପର ଆବଦ୍ଧ ହୋଇ ଅଛନ୍ତି ଏବଂ ଏ ବିଧି ଦ୍ୱାରା ଲୋକସାନ ହେବାର ସମ୍ଭାବନା ଅଳ୍ପ । ଏହି କମ୍ପାନୀ ଶିଳ୍ପ, ବାଣିଜ୍ୟ, କୃଷି ଏହି କେତେଗୋଟି ବିଷୟରେ ଉନ୍ନତି ଉଦ୍ଦେଶ୍ୟରେ ପ୍ରତିଷ୍ଠିତ ହୋଇଅଛି । ଏପରି ସ୍ଥଳରେ ଏ ନବଗଠିତ ଯୌଥ ବ୍ୟବସାୟଟି ଯେପରି ସଫଳ ହେବ, ଏଥିଲାଗି ପ୍ରତ୍ୟେକ ଦେଶବାସୀଙ୍କର ଚେଷ୍ଟା କରିବା କର୍ତ୍ତବ୍ୟ ।

ଆଜି ଏତିକି, ଅବଧାନ ।

ଉତ୍କଳ ସାହିତ୍ୟ/୧୭ଶ ଭାଗ/୧୧ଶ ସଂଖ୍ୟା/୧୩୨୧ ସାଲ ।

## ।। ଏକାବନ ।।

ସମ୍ପାଦକ ମହାଶୟ, ଆପଣ ଅବଶ୍ୟ ଜାଣନ୍ତି ଯେ ସଂକୀର୍ତ୍ତନରେ ହାଉଡ଼ାଟା ମଧ ଆଁ କରିଦିଏ ଓ କରିଦେବା ସ୍ୱାଭାବିକ । ଏପରି ସ୍ଥଳରେ ବର୍ତ୍ତମାନ ପ୍ରସ୍ତାବିତ ଓଡ଼ିଆ ବର୍ଣ୍ଣ, ଭାଷା ଓ ଲିପିର ସଂସ୍କାର ଆନ୍ଦୋଳନରେ ମୁଁ ମଧ ଘଡ଼ିଏ ଖଣ୍ଡେ କସରତ କରିବାର ଇଚ୍ଛା କରୁଅଛି । ଉତ୍କଳରେ ନାମ ହେବାର ଗୋଟାଏ ସହଜ ଉପାୟ ଅନେକଦିନ ହେଲା ଭାବୁଥିଲି, ଦୈବଯୋଗକୁ ଏ ଆନ୍ଦୋଳନଟା ଚଳିବାର ଦେଖି ମୁଁ ଏ ସମ୍ବନ୍ଧରେ ଗୋଟାଏ ସଂସ୍କାର ପ୍ରସ୍ତାବ କରି ଦେଶରେ ମୋ ନାମଟା ଖେଳାଇ ଦେବି ବୋଲି ଅଣ୍ଟା ଭିଡୁଛି । ଏହି ସମୟରେ ଆପଣଙ୍କର ଫାଲ୍‌ଗୁନ ମାସର ଉତ୍କଳ ସାହିତ୍ୟରେ ଆପଣଙ୍କ କଟାକ୍ଷ ଓ କୁରୁଚି ସଙ୍ଗତ ପ୍ରହାରର ତୋଡ଼ ଉଠିଲା । ପ୍ରଥମେ ବିଚାରିଲି, ଆପଣଙ୍କର ମସ୍ତିଷ୍କ ଟିକିଏ ବିକୃତ ହୋଇଅଛି । କିନ୍ତୁ ବିଶ୍ୱସ୍ତ ସୂତ୍ରରୁ ଖବର ନେଲି ଯେ, ଆପଣ ଆପଣଙ୍କର ପୂର୍ବର ପ୍ରଚକ୍ଷୁ, ମସ୍ତିଷ୍କ ଓ ଅଧରାଧସ୍ଥ କେଶପୁଞ୍ଜ କେଶରଞ୍ଜନ ତୈଳ, ଟେରି ଏ ସବୁ କିଛି ଛାଡ଼ି ନାହାନ୍ତି । ଏଣେ ମୁଁ ନିଜକୁ ଚାହିଁ ଦେଖିଲି ଯେ, ମୋର ଉତ୍ତମାଙ୍ଗରୁ କେଶଗୁଚ୍ଛ କ୍ରମଶଃ ଖସୁଛନ୍ତି । ଅଧରାଧସ୍ଥ କେଶପୁଞ୍ଜାକ କ୍ଷୌରାଭ୍ୟାସରୁ ନଦାରଦ । ରାତିବେଳେ ପ୍ରଚକ୍ଷୁ ଦରକାର । ମୋ ମସ୍ତିଷ୍କ ଶୀତଳ ରଖିବାକୁ ବାଥଗେଟ୍ କମ୍ପାନୀର ଜଡ଼ା ତେଲ ଦରକାର

ହେଉଅଛି । ଏପରି ସ୍ଥଳରେ ଭାବିଲି ଯେ ଆପଣଙ୍କର ଅଙ୍ଗବିଶେଷଟା ବିକୃତ । ଏ ପ୍ରଶ୍ନ ଉଠିଲେ ମୋର ସର୍ବନାଶ । ଅତଏବ ମନକୁ ଆଶ୍ୱାସନା ଦେଲି ଯେ ଆପଣଙ୍କ କଟାକ୍ଷଟାକୁ ତ ସର୍ବସାଧାରଣ ପାଠ କଲେଣି; ବର୍ତ୍ତମାନ ମୋ ପ୍ରସ୍ତାବଟା ସର୍ବସାଧାରଣଙ୍କ ସମ୍ମୁଖରେ ସଜାଡ଼ି କରି ରଖିଦିଏ । ତାହା ହେଲେ କଥାଟା ଛିଣ୍ଡିଯିବ ଓ ଉତ୍କଳର ଜନସାଧାରଣ ମୋର ପ୍ରସ୍ତାବର ଅନୁସରଣ କରି ଆପଣଙ୍କୁ ପରାସ୍ତ କରିଦେବେ । ପ୍ରସିଦ୍ଧ ଆମେରିକା ଲେଖକ Holmes ଠାଏ ଲେଖିଛନ୍ତି ଯେ 'Stupidity of ten saves a man from going mad'. ଅର୍ଥାତ୍ Stupidity (ଗଧାପଣିଆ) ଅନେକ ଲୋକଙ୍କର ଉପକାର କରେ । ନଚେତ୍ ଲୋକେ ତାଙ୍କୁ ବାତୁଳାଶ୍ରମକୁ ବିଦା କରନ୍ତେ । ଅତଏବ ମୋ ପ୍ରସ୍ତାବିତ ସଂସ୍କୃତ ଲିପି ସଂସ୍କାର ଯେବେ କେହି ବୁଝିବାକୁ ଅକ୍ଷମ, ତେବେ ତାଙ୍କୁ ବାତୁଳ ବୋଲି ସୁମାରି କରିବା‌କୁ ହେବ । କେବଳ ତାଙ୍କର ବୁଦ୍ଧିହୀନତା ଯୋଗୁଁ ତାଙ୍କୁ ବାତୁଳାଶ୍ରମକୁ ଯିବାକୁ ହେଉ ନାହିଁ । ଯେବେ କେହି ପାଠକ ମୋର ସଂସ୍କାର ପ୍ରସ୍ତାବକୁ ହସରେ ଉଡ଼ାଇ ଦେବେ, ତେବେ ତାଙ୍କୁ ମଧ ମୁଁ ସେହି ସଂଜ୍ଞା ଦେବାକୁ କୁଣ୍ଠିତ ନୁହେଁ । ଅତଏବ ମୁଁ ଠିକ୍ ଧରିନେଲି ଯେ ଯେଉଁମାନେ ମୋ ସଂସ୍କାରକୁ ଝଟ୍ ଗିରଫ୍ କରିପାରୁ ନାହାନ୍ତି, ଅଥଚ ଆପତ୍ତି କରୁଅଛନ୍ତି  ସେମାନେ ବାତୁଳ, ବାଚାଳ ଓ ବାଳ ଅର୍ଥାତ୍ ନଗଣ୍ୟ । ଆପଣଙ୍କର ମନେ ଅଛି କି ନାହିଁ  ଥରେ ଆପଣ ଓ ମୁଁ ସାଙ୍ଗ ହୋଇ କୌଣସି ରାଜଦ୍ୱାରରେ ଉତ୍କଳ ସାହିତ୍ୟ ପତ୍ରିକା ପାଇଁ ଝୁଲି ଧରି ଉପସ୍ଥିତ ହୋଇଥିଲୁଁ । ମହାରାଜା ପଣ୍ଡିତ ସଭାରେ ପଣ୍ଡିତ-ଷଣ୍ଢ-ଗଣ୍ଡ-ମଣ୍ଡିତ ହୋଇ ଉପବିଷ୍ଟ ହେବା ସମୟରେ ଆପଣ ଓ ମୁଁ ଛାମୁ ଦର୍ଶନ ଲାଭ କଲୁଁ । ସେତେବେଳେ 'ସମାଜ ସଂସ୍କାର' ବିଷୟ ଛାମୁଙ୍କ ଦ୍ୱାରା ଆଲୋଚିତ ହେଲା । ଛାମୁରୁ ନିମ୍ନଲିଖିତ ଭାବରେ ପ୍ରଶ୍ନ ଆଜ୍ଞା ହେଲା -

''ଆମ୍ଭମାନଙ୍କର ଦେହତ୍ୟାଗ ପରେ ଯେପରି ସଂସ୍କାରାଦି ହୁଏ, ସମାଜ ସଂସ୍କାର ସେହିପରି ହେବ ?'' ରାଜଦରବାରରେ ମୁହଁ ଲେପଡ଼ିବାର ଜୋ ନାହିଁ, ଅତଏବ ମୁଁ ଆପଣଙ୍କୁ ଆଖିମାରି ଦେଇ ଛାମୁଙ୍କ ପ୍ରଶ୍ନର ଉତ୍ତର ନିମ୍ନଲିଖିତ ଭାବରେ ଦେଲି -

''ଛାମୁରୁ ଯାହା ଆଜ୍ଞା ହେଲେ, ତାହା ଯଥାର୍ଥ । ଯେପରି ଜଣେ ରାଜା ସ୍ୱର୍ଗଗାମୀ ହେଲେ ତାଙ୍କର ସଂସ୍କାର ହୋଇ ନୂତନ ରାଜଗାଦିରେ ବିଜେ କରନ୍ତି, ସେହିପରି ସମାଜ ସଂସ୍କାର ହେଲେ ପୁରାତନ ସମାଜକୁ ପୋଡ଼ି ପାଉଁଶ କରିବାକୁ ହେବ ଓ ନୂତନ ସମାଜଟିଏ ଆଣି ବିଜେ କରାଇବାକୁ ହେବ ।'' ଛାମୁ ଏକଥା ଶୁଣି ଖୁସିଟାଏ ହେଲେ ଓ ଆମେ ଦୁହେଁ ବାଟଖରଚ, ପାଟଜଥା, ସିଧା ସଞ୍ଚା ପାଇ ରାଜଦ୍ୱାରରୁ ବିଦା ହୋଇ ଆସିଲୁଁ । ମହାରାଜା ତାଙ୍କ ସଂସ୍କାର ଉଦ୍ୟମରେ ଲାଗି ବିଜେ ହେଲେ । ଆଜି 'ଲିପି ସଂସ୍କାର' ପ୍ରସ୍ତାବ ସମ୍ବନ୍ଧରେ ସେହି ରାଜସଭା ବିଷୟ ମୋ ମନେ ପଡ଼ିଲା । 'ଲିପି ସଂସ୍କାର'ର

ଅର୍ଥ ଏହି ଯେ ଆମ ମରହଟ୍ଟିଆ ଲିପିଗୁଡ଼ାକୁ ଏକଦମ ସଂସ୍କାର କରି ପାଉଁଶ କରିବାକୁ ହେବ ଓ ତାହା ସ୍ଥଳରେ ଗୋଟିଏ ନୂତନ ଲିପିମାଳା ଆରମ୍ଭ କରିବାକୁ ହେବ ।

ଅତଏବ ଭକ୍ତ ପାଠକ ଅବଧାନଗଣ ! ପ୍ରଥମେ ଦେଖି ଆଜ୍ଞା ହେଉନ୍ତୁ ଯେ, ଓଡ଼ିଆ ଅକ୍ଷରଗୁଡ଼ାକ ଓଡ଼ିଶୀ ମେଣ୍ଢାମୁଣ୍ଡ ଭଳିଆ ଗୋଲ । ସେଗୁଡ଼ାକ ପ୍ରଥମେ ବଦଳାଇବାକୁ ହେବ । ଅତଏବ ମୋର ପ୍ରଥମ ପ୍ରସ୍ତାବ ମୁଣ୍ଡକାଟ । ସେଥିରୁ ମଧ ସେହି ମରହଟିଆ ସଂସ୍କୃତ ଭାଷା ବା ଅକ୍ଷରର ପିଛା ଧରିବାକୁ ହେବ ନାହିଁ ।

ଯଥା, କ ନ' ଲେଖି ,ଚ ନ ଲେଖି ,ଟ ନ ଲେଖି ,ତ ନଲେଖି. ,ପ ନ ଲେଖି । ଏହିପରି ଲେଖିବାକୁ ହେବ ।

ଦ୍ୱିତୀୟ ପ୍ରସ୍ତାବ - ବଂଶକାଟ ।

ମରହଟ୍ଟିଆ ସଂସ୍କୃତ ଲିପିମାଳା ଆମ ଦେଶରେ ବାଲ୍ୟ ବିବାହ ଜନିତ ବଂଶବୃଦ୍ଧି ଭଳିଆ ଅନେକ ଗୁଡ଼ାଏ । ସେଗୁଡ଼ାକ କମ୍‌ତି କରିଦେବା ଦରକାର । ଏହି ଉଦ୍ଦେଶ୍ୟରେ ଈ, ଋ, ୠ, , , ଙ, ଞ, ଅବର୍ଗ୍ୟ ବ, ଯ, ଶ, ଷ, ଳ, ଡ,,, କ୍ଷ ଏଗୁଡ଼ାକ ଲୋପ କରିବାକୁ ହେବ ।

ତୃତୀୟ ପ୍ରସ୍ତାବ - ଯୁକ୍ତାକ୍ଷର କାଟ ଅର୍ଥାତ୍ ଅବନାବନ ସଂସ୍କାର । ମରହଟ୍ଟିଆ ଧରଣର ୧୦ହାତି ପିନ୍ଧା ଓ ୬ହାତି ଦେ'ପଟା ଦୋସଡ଼ା ପରିବର୍ତ୍ତରେ ଆଧୁନିକ କୋଟ, ପେଣ୍ଟଲୁନ, ରୁଚିସଙ୍ଗତ ଓ ଏଥିରେ ବ୍ୟୟଲାଘବ । ଅତଏବ 'ଠ' ଅନୁସ୍ୱାର ଓ ହଳନ୍ତ ' ୍ ' ସାହାଯ୍ୟରେ ଯୁକ୍ତାକ୍ଷରଗୁଡ଼ାକ ବିବାକ ଉଠାଇ ଦିଆଯାଉ । ଯଥା -

ଆଂଭେ ଆପଣଂକୁ ନିବେଦନ କରୁଅଛୁ ଯେ ଆପଣ ଉତ୍‌କଳରେ ଆପଣଂକ ଲିପି ସଂସ୍‌କାର ପରିବର୍‌ତନ କରି ଭାରତ ବର୍‌ଷରେ ସ୍‌ଉଅନାମ ଧନ୍‌ଇଅ ହୁଅଂତୁ । (ନୋଟ୍ - 'ଉ' ଓ 'ଇ' ରେ ହଳନ୍ତ ଯୋଗ ହେଲା) ।

ଚତୁର୍ଥ ପ୍ରସ୍ତାବ - ବ୍ୟଞ୍ଜନରେ ସ୍ୱର ସଂଯୋଗ ପଦ୍ଧତିଟା ସଂସ୍କାର କରିବା ଦରକାର । ଏ ପ୍ରସ୍ତାବରେ ହର୍‌ କିସମର ଉପପ୍ରସ୍ତାବ ଅଛି । ଗୋଟାଏ ପ୍ରସ୍ତାବ ପାଠକମାନଙ୍କ ଉଆକବ୍‌ଦାରି ନିମନ୍ତେ ଏଠାରେ ନମୁନା ସ୍ୱରୂପ ଦିଆଗଲା । ଯଥା -

ସ୍ୱରବର୍ଣ୍ଣଗୁଡ଼ାକ ବ୍ୟଞ୍ଜନର ପରେ କିମ୍ବା ଏକାଧାଡ଼ିକେ ଲଗାଇବାକୁ ହେବ । ମୁଣ୍ଡରେ କିମ୍ବା ତଳେ ଲେଖିବାକୁ ହେବ ନାହିଁ । କ ଆକାର କା, କ ଈକାର କୀ, କ ଉକାର କୁ, କ ଏକାର କେ), କ ଐକାର କୈ, କ ଓକାର କୋ, କ ଔକାର କୌ ।

ଏହାଛଡ଼ା ଆଉ ଗୋଟିଏ ପ୍ରସ୍ତାବ ଅଛି, ତାହା ଏହି - ବର୍ଗର ପ୍ରଥମ ଅକ୍ଷର ସଙ୍ଗେ କ୧, କ୨, କ୩, କ୪ ଚ୧, ଚ୨, ଚ୩, ଚ୪ ଟ୧, ଟ୨, ଟ୩, ଟ୪, ଟ୫ ତ୧, ତ୨, ତ୩, ତ୪, ତ୫, ପ୧, ପ୨, ପ୩, ପ୪, ପ୫ ର, ଲା, ବ, ସ, ହ, । ୧ । ୨ । ୩ । ୪ । ୫ ପରିବର୍ତ୍ତରେ ।, ।।, ।।।, ।।।।, ।।।।।, କରିବାକୁ ହେବ । ଏ ପ୍ରସ୍ତାବଗୁଡ଼ିକ

କାର୍ଯ୍ୟରେ ପରିଣତ ହୋଇଗଲେ ଆପଣ ଦେଖିପାରିବେ ଯେ ଓଡ଼ିଆ ଭାଷାଟା ଧାଡ଼ିମୂଳିଆ ହେବ - ଓଡ଼ା, ଟୋପି, ଆଙ୍କୁଶି, ଢୋତା, ଛତା, ମାତ୍ରା ଏଗୁଡ଼ାକ ଉଠିଗଲେ ଭାଷା ବିରୋଳ ହେବ । ପୂର୍ବରେ କହିଅଛି ଯେ ସମ୍ପାଦକଙ୍କର ତଥା ତାଙ୍କ ଶ୍ରେଣୀର ନିର୍ବୁଦ୍ଧିଆଙ୍କ ମସ୍ତିଷ୍କରେ ଏ ସୂକ୍ଷ୍ମ ପ୍ରସ୍ତାବ ପଶିପାରୁ ନାହିଁ ବୋଲି ସେମାନେ ଏଗୁଡ଼ାକ ପାଣି ପରି ମାଡ଼ି ଯାଉ ନାହାନ୍ତି । ଅତଏବ ସେଗୁଡ଼ାକ ଖୋଲାସା କରି ଲେଖିବାକୁ ହେବ ।

ଏତିକିରେ ସମସ୍ତ ଲିପିଗୁଡ଼ାକର ସଂସ୍କାର ହୋଇଗଲା । କେବଳ ମରହଟ୍ଟୀ ହରଫରୁ ରହିଲା ହଳନ୍ତ । ଏହିପରି ମଧ ହଳନ୍ତ ଯୋଗରେ ଯୁକ୍ତାକ୍ଷର ବସାଇଯିବାକୁ ହେବ । ପ୍ର ପ୍‌ର ସ୍କ ସ୍‌କ ଦ୍ଗ ଦ୍‌ଗ ଙ୍କ ଙ୍‌କ । ମନେ କରନ୍ତୁ ଲେଖିବାକୁ ହେବ - 'ଉତ୍କଳ ଲିପି ସଂସ୍କାର ସମାଜ' ନୂତନ ସଂସ୍କୃତି ପଦ୍ଧତି ଅନୁସାରେ ଏହିପରି ଲେଖିବାକୁ ହେବ-

ଏଥିରେ ଟୋପି, ଛତା, ଓଡ଼ା, ମାତ୍ରା ଆଦି କିଛି ରହିଲା ନାହିଁ । ଅକ୍ଷରଗୁଡ଼ାକ ଗୋଲ ହେବାରୁ ଆମ ନବ୍ୟସଭ୍ୟମାନଙ୍କ ଆଖିକୁ ଯେପରି ବିଚିକିଟିଆ ଦିଶେ, ଏଥିରେ ତାହା ନହୋଇ ଚକ୍ଷୁର ଆରାମ ହେବ । କଥା କଣ କି, ଏ ପ୍ରସ୍ତାବଗୁଡ଼ାକ ମୋ ମସ୍ତିଷ୍କରେ ତରଳିଆ ହୋଇ ଥଲ ଥଲ ହେଉଅଛି । ବସି ନାହିଁ । ଦିନାକେତେ ବାଦ [illegible] ବସିଗଲେ ତଳତଳିଆ ମାଲ ଉତ୍କଳର ସାଧାରଣଙ୍କୁ ଉପହାର ଦେବି ।

ମୋର ମନରେ ସ୍ଥିର କରିଛି ଯେ ପ୍ରଥମେ ଗୋଟିଏ ବିଦ୍ୟାଳୟ କରିବି । ସେଥିରେ ଗୁଡ଼ିଏ ପିଲାଙ୍କୁ ସଂସ୍କୃତ ଲିପିରେ ତାଲିମ କରିବି ।

ଦ୍ୱିତୀୟ - ଗୋଟିଏ ଛାପାଖାନା କରି ଏ ଲିପି ଅନୁସାରେ ଛାପା ଉପାଦାନ ସଂଗ୍ରହ କରିବି ।

ତୃତୀୟ - ଗୋଟିଏ ସମ୍ବାଦପତ୍ରର ସମ୍ପାଦକଙ୍କୁ ରଖି ତାଙ୍କ ଦ୍ୱାରା ଏ ଲିପି ପ୍ରଚାରିତ କରିବି ।

ଚତୁର୍ଥ - ଗୋଟିଏ ସଂସ୍କୃତ-ସାହିତ୍ୟ-ସମାଜ କରି ଉତ୍କଳବ୍ୟାପୀ ଆନ୍ଦୋଳନ ଲଗାଇବି ।

ପଞ୍ଚମ - ଗୋଟିଏ ପ୍ରଚାରକ ଦଳ 'Servant of Alphabet Society' କରି ଉତ୍କଳଭାଷୀ ଅଞ୍ଚଳରେ ଏହା ପ୍ରବର୍ତ୍ତନ କରାଇବି - ଏ ସବୁ ହୋଇଗଲେ ଅନ୍ୟ ଜାତିମାନଙ୍କୁ ଦେଖାଇପାରିବି ଯେ ଲିପିମାଳା ମରହଟ୍ଟୀ ପୋଷାକ ଛାଡ଼ି କିପରି ନୂତନ ଆକାରରେ ଭାବ ବିନିମୟ ହୋଇପାରେ । ଏ ସଂସ୍କାର ଶେଷ ହେଲେ ତତ୍‌ପରେ ଧରାଯିବ ଜାତି ସଂସ୍କାର, ତତ୍‌ପରେ ସମାଜ ସଂସ୍କାର, ସର୍ବଶେଷରେ ଲିଙ୍ଗ ସଂସ୍କାର । ଅର୍ଥାତ୍ ସଂସ୍କାରରୁ ଲିଙ୍ଗଭେଦ ଅନୁସାରେ ଅଧିକାର ପାର୍ଥକ୍ୟଟା ଉଠାଇ ଦିଆଯିବ- ସ୍ତ୍ରୀମାନେ ଚାକିରି ପାଇବା, ଭୋଟ ଦେବା, ଦାଢ଼ି ନିଶ ରଖିବା, କ୍ଷୌର ହେବା, ଘୋଡ଼ା ଚଢ଼ିବା, ଲଣ୍ଡା ହେବା ଆଦି ଅଧିକାର ପାଇବେ ଓ ପୁରୁଷମାନେ ଜନ୍ମ କରିବା, ଘୋଡ଼ା

ହେବା, ପାକ କରିବା, ଖୋଷା ପାରିବା, ଖେମଟା ନାଚିବା, ବିଧବା ହେବା ଆଦି ଅଧିକାର ପାଇବେ ।

ସମ୍ପାଦକ ଆଜ୍ଞା ! କ୍ଷମା କରିବେ - ମନ କ୍ଷୋଭରେ କଥାଟା ଆଉ ଲୁଚାଇ ରଖିହେଲା ନାହିଁ । 'ଗାଁ କନ୍ୟା ସିଂଘାଣିନାକୀ' ଏ ପ୍ରବାଦଟା ଅକ୍ଷରେ ଅକ୍ଷରେ ସତ୍ୟ । ଦଶବର୍ଷ ବିତିଗଲା, ଅନେକ ଲୋକ ଆସି ମୋର ଶିଷ୍ୟତ୍ୱ ଗ୍ରହଣ କଲେ, କିନ୍ତୁ କେହି Genies ଅର୍ଥାତ୍ ପ୍ରତିଭା ଚିହ୍ନି ପାରିଲେ ନାହିଁ । ଏହି କୋଟି-ସନ୍ତାନ-ପରିବୃତ ନିମକହାରାମ ଓ କୃତଘ୍ନ ଦେଶରେ ଜଣେ କେହି ମତେ ଚିହ୍ନି ପାରିଲେ ନାହିଁ କିମ୍ବା ମୋ ପ୍ରତିଭାର ପୂଜା କରିପାରିଲେ ନାହିଁ । ଅତଏବ ଅଗତ୍ୟା ଦିନେ ଦିନେ ନିର୍ଜଳ, ନିରନ୍ନ, ନିରାଭରଣ ଓ ଚିରାବରଣ (ସନ୍ଧି - ଚିରା ଆବରଣ) ବ୍ରତ ଧାରଣ କରିବାକୁ ପଡୁଅଛି । ଆଜି ମୁଁ ଏହି ଯେ ଲିପି ସଂସ୍କାରଟା ଏତେ ଖୋଲିକରି ବ୍ୟାଖ୍ୟା କରିଦେଲି, ଅନ୍ୟ କୌଣସି ଦେଶ ହୋଇଥିଲେ ମତେ ଲୋକେ ବିମାନରେ ବସାଇ ବାରଦୁଆର ବୁଲାଇ ଭୋଗ ଖୁଆଇ ସାରନ୍ତେଣି । କିନ୍ତୁ ଏ ଅଧମ ଦେଶ ବୋଲି ମୋ କଥାକୁ କେହି ଆସ୍ଥା କରୁ ନାହାନ୍ତି । ଏପରିକି ଅତ୍ୟୁଗ୍ର ପ୍ରତିଭାବିଶିଷ୍ଟ ଓରଫ୍ ବାତୁଳ ବୋଲି ସୁଦ୍ଧା କେହି ମତେ କହିଲେ ନାହିଁ । ସେଥିପାଇଁ କହିଛି, ବାଉରି ସାଇରେ ମାଣିକ ପଡ଼ିଲେ ଗୋରୁ ହାଡ଼ ଘେନି ବାଡ଼ାଇ ଗୋଡ଼ାନ୍ତି ।

ଏଥିରେ ଫେର ଆପଣା ନିମନ୍ତେ ପଦେ ଅଧେ ସୂତ୍ରସାତ୍ରରେ ଲେଖି ବସିଲେ ଆପଣ ଆମ ଲେଖାକୁ ବେରିଙ୍ଗ୍ ଡାକରେ ଫେରାଇ ଦେବେ । କହିବେ ଯେ ସାହିତ୍ୟ କ୍ଷେତ୍ରରେ ଓକିଲାତି ଚଳିବ ନାହିଁ । ସମ୍ପାଦକ, ସମାଜ ସଂସ୍କାରକ, ସ୍କୁଲମାଷ୍ଟର, ସମସ୍ତଙ୍କର ସବୁ କ୍ଷେତ୍ରରେ ଓକାଲତି ଚଳିଲା, କିନ୍ତୁ ଲେଖକଙ୍କର ଏପରି କି ଜଘନ୍ୟ ଅପରାଧ ଯେ ତାଙ୍କୁ ସବୁ ସୁବିଧାଯାକ ମନା ? ସମ୍ପାଦକଗୁଡ଼ାକ ଯେତେବେଳେ 'ପରଲୁଗା ପିନ୍ଧି ଯାତକୁ ଯାଏ' ହୁଅନ୍ତି, ଯେତେବେଳେ ସମ୍ପାଦକୀୟ ସ୍ତମ୍ଭ ପୂର୍ଣ୍ଣ କରିବାକୁ ମୋ ଭଳିଆ ଲେଖକଙ୍କୁ ବାଡ଼ି ଦୁଆରେ ସ୍ତୁତି କରନ୍ତି, ସେକଥା ସମାଲୋଚନା କଲାବେଳେ ପାସୋରି ପକାନ୍ତି ପରା ? ସେତେବେଳେ ଯେଉଁ ଓକିଲଙ୍କୁ ପ୍ରତିନିଧି ବନାଇ ତାଙ୍କ ଲେଖାରେ ଆପଣା ସମ୍ପାଦକୀୟ ଛାପା ମାରିଦିଅନ୍ତି, ସେ ଓକିଲାତି ନୁହେଁ । କିନ୍ତୁ ଯେବେ ଲେଖକ ବିଚାରା ଖାଲିପେଟେ, ଚିରାକନା, ଲୁଖୁରା କେଶ ନେଇ ଗୋଟିଏ ପ୍ରବନ୍ଧ ଲେଖି ସେଥିରେ ଆପଣାର ଲାଭ ଓ ନାମ ପାଇବା ଆଶାରେ ଦି'ପଦ ଘରକଥା ଲେଖିଦିଏ, ତାକୁ ସମ୍ପାଦକଗୁଡ଼ାକ କିଲିବିଲି କରି ଖାଇଯିବେ ।

ଖବରକାଗଜର ସମ୍ପାଦକ ହେଲେ ସ୍ୱକୃତ ଓ ସ୍ୱପ୍ରତିଷ୍ଠିତ ବହୁବଚନାନ୍ତ । ସମ୍ପାଦକ ଯାହା ସମ୍ପାଦକୀୟ ମନ୍ତବ୍ୟ ପ୍ରକାଶ କରିବେ, ସେଗୁଡ଼ାକ ସବୁ ବହୁବଚନ - 'ଆମ୍ଭେମାନେ ଅବଗତ ହେଲୁଁ', 'ଆମ୍ଭମାନଙ୍କର ମତ' 'ଆମ୍ଭମାନଙ୍କର ଧାରଣା' - ସଂସ୍କୃତ - ଉକ୍ତ ଭାଷା ହୋଇଥିଲେ ଏହି 'ଆମ୍ଭେମାନେ' ପ୍ରୟୋଗରେ ରକ୍ଷା ନ ଥା'ନ୍ତା । କାରଣ

ସଂସ୍କୃତରେ ଦ୍ୱିବଚନ ପ୍ରୟୋଗ ଅଛି । ଆଧୁନିକ ଭାଷାରେ 'ଆମ୍ଭେମାନେର ଅର୍ଥ ଦ୍ୱିବଚନ ଓ ବହୁବଚନ । 'ଆମ୍ଭେମାନେ'ର ଅର୍ଥ ସମ୍ପାଦକୀୟ ଅଭିଧାନରେ ଉହ୍ୟ ଅର୍ଥ - ଆମ୍ଭେ ଦୁହେଁ (ବିବାହିତ ସମ୍ପାଦକ ନିଜେ ଓ ତାଙ୍କ ଘରଆଡ଼େ) କିମ୍ବା ଆମ୍ଭର ସମ୍ବାଦପତ୍ରକୁ ଯେଉଁ ଭକ୍ତମାନେ ସମ୍ପାଦକୀୟ ମନ୍ତବ୍ୟ ଯୋଗାନ୍ତି ସେହିମାନେ, ପ୍ରକଟାର୍ଥ - ଆମ୍ଭେ ଯେଉଁ ପାମର ସାଧାରଣଙ୍କର ପ୍ରତିନିଧି, ସେହି ବାକ୍‌ଶକ୍ତି ବିରହିତ ଜନସଂଘ ।

ଏଗୁଡ଼ାକ ସିନା ମୋ ଭଳି ଲେଖକଯାକ ନ ଧରନ୍ତି ବୋଲି ଆପଣମାନଙ୍କ ହାତରେ ଛାପାଖାନା ଥିବାରୁ ଆପଣମାନେ (ସମ୍ପାଦକୀୟ ବହୁବଚନ) ନିରୀହ ଲେଖକ ଉପରେ ପୁଷ୍ପ (ସମ୍ପାଦକୀୟ ପ୍ରୟୋଗ) ବୃଷ୍ଟି କରିପକାନ୍ତି । ଆପଣମାନଙ୍କୁ ତିନି ଖୁଣି ମାଫ । କିନ୍ତୁ ସମ୍ପାଦକଙ୍କ ପୋଷଣାହାରୀ ଜାତିଙ୍କର ହାରିଗୁହାରି ନାହିଁ ! ଇତି । ଲିପିସଂସ୍କାରକଙ୍କ ଆତ୍ମରକ୍ଷା ପ୍ରସଙ୍ଗଃ ।

ହଁ ଅବଧାନ ! ଗୋଟିଏ କଥା ଛାଡ଼ିଗଲି - ପାଠକମାନେ ଓ ଅଭକ୍ତମାନେ ବିଚାରୁଥିବେ ଯେ ଲେଖକ ମହାଶୟ ସଂସ୍କାରର ଏତେ ଘନଘଟା ଲଗାଇ ଦେଲେ; କିନ୍ତୁ ଆପେ ନିଜେ ସେହି ମରହଛିଆ ଲିପି ଓ ବର୍ଣ୍ଣ ଯୋଜନାରେ ପ୍ରବନ୍ଧ ଲେଖିଛନ୍ତି କିଆଁ ? ଏଥିପାଇଁ କହନ୍ତି, 'ନଗ୍ନକ୍ଷପଣକେ ଦେଶେ ରଜକଃ କିଂ କରିଷ୍ୟତି' । ଆପଣଙ୍କ ଛାପାଖାନାରେ ମୋ ସଂସ୍କୃତ ଲିପିର ଟାଇପ୍ ନାହିଁ, ଆପଣଙ୍କ ପାଠକମାନେ ସଂସ୍କୃତ ଲିପି ଗିରଫ କରିପାରିବେ ନାହିଁ ବୋଲି ଅଗତ୍ୟା ସେହି ପୁରୁଣା ଲିପିର ଆଶ୍ରୟ ନେବାକୁ ହେଉଅଛି । କିନ୍ତୁ ଏତଦ୍ୱାରା ଆପଣଙ୍କୁ ନୋଟିସ୍ ଦେଇଅଛି ଯେ ଆପଣଙ୍କର ବର୍ଣ୍ଣମାଳା ନ ବଦଳାଇଲେ ପ୍ରକାଶ୍ୟରେ ଓ ଗୋପନରେ ଆପଣଙ୍କୁ ଏଣିକି ସାହାଯ୍ୟ କରିବାକୁ ଆମ୍ଭେମାନେ (ଲେଖକୀୟ ବହୁବଚନ) ଆଇନ ଅନୁସାରେ ଦାୟୀ ନୋହୁଁ । ଯାହା ହେଉ, ବେଶିଗୁଡ଼ାଏ ଲେଖି ଲେଖକୀୟ Fountain pen (ପ୍ରସ୍ରବଣ ଲେଖନୀ) ଖରାପ କରିବା ଆବଶ୍ୟକ ନାହିଁ ।

ସଂସ୍କାର କଥା ପଡ଼ିବାରୁ ଆଉ ଗୋଟାଏ ସଂସ୍କାର ବିଷୟ ମନେ ପଡ଼ିଗଲା - ଅନେକ ଦିନ ପୂର୍ବେ ଗୋଟିଏ ତୁଆ ଉଠିଥିଲା ଯେ 'କଚେରିଆ ଭାଷା'କୁ 'ସାହିତ୍ୟିକ ଭାଷା'ରେ ପରିଣତ କରିବାକୁ ହେବ । କିନ୍ତୁ ସେଗୁଡ଼ାକ ବର୍ତ୍ତମାନ ବଦଳାଇବାର ଆବଶ୍ୟକ ମନେ କରୁ ନାହୁଁ । ତହିଁର କେତେକ କାରଣ ନିମ୍ନରେ ଦଫା ଉଆରିରେ ଜାହେର କରାଗଲା, ଯଥା -

୧. କଚେରିରେ ଲିପିମାଳାରେ ଗୋଟିଏ 'ସ' ଗୋଟିଏ 'ଜ' ଗୋଟିଏ 'ଇ' ଗୋଟିଏ 'ଉ' ଇତ୍ୟାଦି - ସେଗୁଡ଼ିକ ଆମ ପ୍ରସ୍ତାବିତ ଲିପି ସଂସ୍କାରର ଅନୁକୂଳ ।

୨. କଚେରିଆ ଭାଷାକୁ ସାହିତ୍ୟିକ କରିବାକୁ ଗଲେ ସାହିତ୍ୟ-ଶିକ୍ଷିତ ଓକିଲ-ମୋହରି ଓ ମୁକ୍ତାରମୋହରିର ରଖିବାକୁ ହେବ । ଶିକ୍ଷିତ ମୋହରିର ରଖିବାକୁ ହେବ ।

ଶିକ୍ଷିତ ମୋହରିର ରଖିଲେ କଚେରି ବ୍ୟବସାୟୀଙ୍କର ସମୂହ କ୍ଷତି । ମୋହରିରମାନେ ଯେଉଁ ସମସ୍ତ ଉପାୟ ଓ ପେଞ୍ଚ ଅବଲମ୍ବନ କରି ମକ୍‌କେଲମାନଙ୍କୁ ଚରା ଧରାଇ ଆମ ବନ୍‌ଶୀ କଣ୍ଟାରେ ଲଗାନ୍ତି, ଶିକ୍ଷାପ୍ରାପ୍ତ ମୋହରିର ମାନେ ତାହା କରିବେ କି ନାହିଁ, ଏ ବିଷୟରେ ମୋର ଗଭୀର ସନ୍ଦେହ । ତଦ୍‌ପରେ ମଧ ଅନେକ ଜବାବ ଦେହି ଓ ଲୁଙ୍ଗରା କାମରେ ଆମ୍ଭେମାନେ ସାପ ମାରି ଆମ ମୋହରିରମାନଙ୍କ ଗଳାରେ ପକାଇ ଦେଇ ମକ୍‌କେଲମାନଙ୍କ ଠାରୁ ନିଷ୍କୃତି ଲାଭ କରୁଁ । ଶିକ୍ଷିତ ଲୋକ ଅନନ୍ୟୋପାୟ ହେଲେ ତାଙ୍କ ପାଇଁ ଓକିଲାତି ଓ ମୁକ୍ତାରୀ ବ୍ୟବସାୟର ଦ୍ୱାର ମୁକୁଳା - ସେହିପରି ଅଶିକ୍ଷିତମାନେ ଅନନ୍ୟୋପାୟ ହେଲେ ତାଙ୍କ ପାଇଁ ମୋହରିର ବ୍ୟବସାୟର ଦ୍ୱାର ମୁକୁଳା । ଏପରି ସ୍ଥଳରେ ଶୁଦ୍ଧ ଭାଷା ପ୍ରୟୋଗ କରିବାକୁ ଯାଇ ଶିକ୍ଷିତ ମୋହରିରକୁ ଆଣି ସିରସ୍ତାରେ ପୂରାଇବା ଆତ୍ମଘାତିନୀ ନୀତି ହେବ । ଏହିପରି କେତେଗୁଡ଼ିଏ ଗୁରୁତର ପ୍ରତିବନ୍ଧକ ଥିବାରୁ ଆପାତତଃ କଚେରିରେ ଶୁଦ୍ଧ ସାହିତ୍ୟିକ ଭାଷା ପ୍ରଚଳନ ଆନ୍ଦୋଳନ ସ୍ଥଗିତ ରଖିବାକୁ ହେଲା ।

ଗତଥର ଦୁନିଆର ହାଲଚାଲରେ 'ପିପଲସ୍ ଇକନମିକେଲ ଡେଭେଲପ୍‌ମେଣ୍ଟ କମ୍ପାନୀର ଗୋଟିଏ ଶାଖା ପୁରୀରେ ପ୍ରତିଷ୍ଠିତ ହେବାର ସମ୍ବାଦ ଲେଖିଥିଲି ବୋଲି ମୋର କେତେକ ବନ୍ଧୁ ସେଥିପାଇଁ ମୋ ଉପରେ ଟିକିଏ ବିରାଗ ଭାବ ଧାରଣ କରିଥିବାର ସମ୍ବାଦପତ୍ରରୁ ଅବଗତ ହେଲି । ସେଥିପାଇଁ ଏଥରକ ସେ ସମ୍ବନ୍ଧରେ କିଛି ଲେଖିଲି ନାହିଁ କିନ୍ତୁ 'ଦୁନିଆର ହାଲଚାଲ' ପ୍ରବନ୍ଧ ଛଳନାରେ ଓକିଲାତି ବା ବିଜ୍ଞାପନ ପ୍ରକାଶ କରିବାର ଯେ ଚିରାଭ୍ୟାସଟା (ପ୍ରଥମ ସ୍ୱରସନ୍ଧି ୨ କିସମ ଏଠାରେ ଲଗାଇବାକୁ ହେବ) ରହିଅଛି, ସେହିଟା ଛାଡ଼ି ହେଉ ନାହିଁ । ଇତିମଧ୍ୟରେ ଏ କମ୍ପାନୀର ଗୋଟିଏ ଶାଖା ପୁରୀଠାରେ ପ୍ରତିଷ୍ଠିତ ହେବାର ଆନୁପୂର୍ବିକ ବନ୍ଦୋବସ୍ତ ହୋଇ ଯାଇଅଛି । ଶ୍ରୀଯୁକ୍ତ ଏମାର ମଠ ମହନ୍ତ, ଶ୍ରୀଯୁକ୍ତ ମିଚ୍ଛୁ ମିଶ୍ର, ଶ୍ରଯୁକ୍ତ ଜଗବନ୍ଧୁ ସିଂହ, ଶ୍ରୀଯୁକ୍ତ ପୀତବାସ ପଟ୍ଟନାୟକ ପ୍ରମୁଖ କେତେଜଣ ବିଶିଷ୍ଟ ବ୍ୟକ୍ତି ଏ ଶାଖାର ସ୍ଥାନୀୟ ଡାଇରେକ୍‌ଟର ପଦ ଗ୍ରହଣ କରିଅଛନ୍ତି ଓ ଶ୍ରୀଯୁକ୍ତ ମିଚ୍ଛୁ ମିଶ୍ର କୋଷାଧ୍ୟକ୍ଷ ପଦ ଗ୍ରହଣ କରିବାକୁ ସ୍ୱୀକୃତ ହୋଇଅଛନ୍ତି । ଗଭର୍ଣ୍ଣମେଣ୍ଟଙ୍କ ଅନୁଷ୍ଠିତ Co-operative Credit Society (ସମବାୟ ଋଣ ସମିତି) ମାନଙ୍କ ଅନୁକରଣରେ ଏ କମ୍ପାନୀ ସ୍ଥାପିତ ହୋଇଥିବା ବିଷୟ ଗତଥର କହିଥିଲି । ପୁରୀର ସ୍ଥାନୀୟ ନେତୃବୃନ୍ଦ ଏହି ଦେଶହିତକର ଅନୁଷ୍ଠାନରେ ଅନ୍ତର ସହିତ ଯୋଗ ଦେଇ ଦେଶର ବୈଷୟିକ ଉନ୍ନତି ସାଧନରେ ସଫଳକାମ ହୁଅନ୍ତୁ, ଏହାହିଁ ଭଗବାନ୍‌ଙ୍କ ନିକଟରେ ପ୍ରାର୍ଥନା । ଅତଏବ ଗତଥର କମ୍ପାନୀ ସମ୍ବନ୍ଧରେ ଯାହା ଲେଖିଥିଲି, ତାହା କେବଳ ଓକିଲାତି ହିସାବରେ ଲେଖା ହୋଇ ନ ଥିଲା । ପ୍ରବନ୍ଧ ଲେଖାରେ କାହିଁକି, ସବୁଥିରେ ଅଳ୍ପ ବହୁତ ଓକାଲତି ଚଳେ, ପ୍ରଭେଦ ଏତିକି, ଜଣକେତେ ସ୍ୱନାମଧନ୍ୟ ବ୍ୟକ୍ତି ସେ କଥାଟା ମାନନ୍ତି ନାହିଁ । ମୋ ଭଳି ନିପଟ ଓଲୁଗୁଡ଼ାକ ଏକରାର କରି ପକାନ୍ତି । ଛାଡ଼ ସେ କଥା ।

ସମ୍ପାଦକ ଅବଧାନ ! ଅନେକ ଦିନରୁ ବିଚାରୁଛି ଯେ ଏଣିକି 'ଦୁନିଆର ହାଲଚାଲ'ଟା ବନ୍ଦ କରିବାକୁ ହେବ । କିନ୍ତୁ ସବୁଲୋକ ପ୍ରକୃତିତଃ ତୋଷାମଦପ୍ରିୟ - ଅର୍ଥାତ୍ ପିଠି ଆଉଁଶା ପାଇଲେ ସମସ୍ତଙ୍କର ରୁମ ଟାଙ୍କୁରି ଉଠେ । ମୁଁ ମଧ ସେ ନିୟମରୁ ବାହାର ନୁହେଁ । ବହୁବଚନ ବିଶିଷ୍ଟ ସମ୍ପାଦକ ଦୁନିଆର ହାଲଚାଲ ପଢ଼ି ଭାରି ଖପ୍‌ପା - ଏଣେ ଅନେକ ଗୁଡ଼ିଏ ପାଠକ ଦୁନିଆର ହାଲଚାଲ ପଢ଼ି ପ୍ରତିଥର ଦୁଇ ପଇସା ଡାକ ଟିକେଟ ଖରଚ କରିଥାନ୍ତି, ଏପରି ସ୍ଥଳରେ ମୁଁ ଧନ୍ଦି ହୋଇ ଲେଖାଟା ଛାଡ଼ିପାରୁ ନାହିଁ । ଦୁନିଆର ନିୟମ - ''ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକିର ।' ଆପଣାର ଡିଗ୍ରୀ ହେଲାବେଳେ ଯେଉଁମାନେ କହୁଥାନ୍ତି, A Daniel is come to judgement' ମକଦ୍ଦମା ଡିସ୍‌ମିସ୍ ହେଲା ବେଳକୁ ସେହିମାନଙ୍କ ମୁହଁ ଶୁକୁଟି ଯାଏ । ଏ ହେଲା ସଂସାରର ନିୟମ । ଏ ଦୁଇ ପଇସା ଡାକଟିକଟ ଖରଚ କଲାବାଲା ମଧ୍ୟରେ ରାଜା ମହାରାଜା, ଓକିଲ ବାରିଷ୍ଟର, ଶିକ୍ଷକ ଛାତ୍ର, ସ୍ୱାଧୀନତାପ୍ରାପ୍ତା ଲେଡିଙ୍କ ଠାରୁ ଆରମ୍ଭକରି ଅନ୍ତଃପୁରନିବଦ୍ଧା ଅବଗୁଣ୍ଠନବତୀ ପର୍ଯ୍ୟନ୍ତ ଅଛନ୍ତି; ନାହାନ୍ତି କେବଳ ଘାଉଆମାନେ ।

ଦୋଷ ସମସ୍ତଙ୍କର ଥାଏ । ମୋ ଲେଖାଟା ମୋ ରୁଚି, ମୋ ଶିକ୍ଷା, ମୋ କ୍ଷମତାର ଅନୁରୂପ ହେବା ସ୍ୱାଭାବିକ । ନିଜର ସାଂସାରିକ ଓକାଲତି ଓ ବିଜ୍ଞାପନ ମଧ ମୋ ଲେଖାରେ ଥାଏ - ତା ବୋଲି ଅନେକ ସମୟରେ ସାନ୍ନିପାତିକ ବିକାରର ଦାନ୍ତ ନିକୁଟା ଭୂ-ନିମ୍ବାଦି ପାଚନ ମଧ ଥାଏ ଓ କେତେ ସନ୍ନିପାତ ମନ୍ଦୁ ମଧ ସେ ପାଚନ ପାନେ ଲେଖାଏଁ ଗିଳି ଝାଡ଼ିଝୁଡ଼ି ହୋଇ ବସିଥିବାର ମୁଁ ଓ ମୋ ବନ୍ଧୁମାନେ ଦେଖିଅଛୁଁ । ସେଥିପାଇଁ ଲେଖାର ମମତା ଛାଡ଼ି ହେଉ ନାହିଁ । ମୁଁ ଭଗବାନ୍‌ଙ୍କୁ ହୃଦୟରେ କୃତଜ୍ଞତା ଅର୍ପଣ କରିଥାଏ । କାରଣ ମୋ ଭଳି ନଗଣ୍ୟ ଅକର୍ମାର ଧାଡ଼ିଏ କଲମରେ ଯାହା ହୋଇଥାଏ, ଅନେକ ସମୟରେ ବଡ଼ ବଡ଼ ଲୋକଙ୍କ ହୁକୁମରେ ମଧ ତାହା ହୋଇ ନ ଥାଏ । ଏଥିପାଇଁ ଭଗବାନ୍‌ଙ୍କୁ ସାକ୍ଷୀ ରଖି କଲମଟା ଧରେଁ । ବୃଥାରେ କାହାରି ମନରେ କଷ୍ଟ ଦେବା ମୋର ଅଭିପ୍ରାୟ ନୁହେଁ । ଏପରି ଯେବେ କାହା ମନରେ କଷ୍ଟ ହୋଇଥାଏ, ତାଙ୍କ ପଦତଳେ ଶତବାର କ୍ଷମା ଭିକ୍ଷା କରିବାକୁ ମୁଁ ପ୍ରସ୍ତୁତ । କିନ୍ତୁ ବଡ଼ କ୍ଷମତା, ବଡ଼ ପଦ, ବେଶି ଧନ, ଭାରି ଗଳାବାଜି, ଭାରି ଲମ୍ବା ମାର୍କାମରା ଆଧୁନିକ ଓ ମରହଟ୍ଟି ଛାପା ଓ ଭେକ ଘେନି ଯେଉଁମାନେ ଦେଶର ଓ ସମାଜର ଦୋହି ଦେଇ ଆପଣାର ଟେକ ଓ ନାମ କରିବାକୁ ମୁଣ୍ଡେଇ, ସେମାନଙ୍କୁ ସମୟ ସମୟରେ ମୁଥଟାଏ, ବିଧାଟାଏ, ଚିମୁଟାଟାଏ ଦେବା ଦରକାର । ସେ କର୍ତ୍ତବ୍ୟ ସାଧନ ଯେ କରୁଛି, ସେ ଓକିଲ ହେଉ, ଭିକାରି ହେଉ, ମୂର୍ଖ ହେଉ, ଶିକ୍ଷକ ହେଉ, ତା ନିକଟରେ ସମାଜ କୃତଜ୍ଞ । ଯାର ପୁରସ୍କାରର ପ୍ରତ୍ୟାଶା ନାହିଁ, ସେ କାଦୁଅରେ ପଶିବାର ଆବଶ୍ୟକ ନାହିଁ, ଯେ କାଦୁଅରେ ପଶେ, ସେ ମଧ ତା ଗୋଡ଼ ମଇଳା ହେବା ପାଇଁ ପ୍ରସ୍ତୁତ ରହିବା ଦରକାର ।

Homles କହିଛନ୍ତି - Every real thought on every real subject knocks the wind out of some body or other. As soon as his breath comes back he very probably begins to extend it in hard words. These are the best evidence a man can have that he has said something it was time to say. Dr. Johnson was disappointed in the effect of one of his pamphlets. I think I have not been attacked enough for it. He said, 'attack is the reaction; I never think I have hit hard unless it rebounds'.

ଅର୍ଥାତ୍ ହକ୍ କଥାଟା ଅନେକ ସମୟରେ ଅପ୍ରିୟ ହୁଏ । କିନ୍ତୁ ଯେଉଁ ଉଦ୍ଦେଶ୍ୟରେ ତାହା ପ୍ରଯୁକ୍ତ ହୋଇଥାଏ, ତହିଁର ଫଳ ହେଲେ ଗଲା । ଯେ ଅସ୍ତ୍ର ପ୍ରୟୋଗ କରିବାକୁ ଯାଏ, ସେ ଆପଣା କଳିଜାକୁ ଅପର ପକ୍ଷର ପ୍ରତ୍ୟୁତ୍ତରାସ୍ତ୍ର ନ କାଟିବା ଲାଗି ହକମତ କରିଥାଏ; କିମ୍ବା କରିଥିବା ଉଚିତ । ସେଥିରେ ଦୁଃଖିତ ବା ବ୍ୟଥିତ ହେବା କାପୁରୁଷତା । ମୁଁ ଯେବେ କୌଣସି ଦୁର୍ଗୁଣକୁ ଠେଙ୍ଗାଏ ପକାଏଁ ସେ ଦୁର୍ଗୁଣଟା ମୂର୍ତ୍ତିମନ୍ତ ହୋଇ ମତେ କାମୁଡ଼ିବାକୁ ଆସିବ, ଏଥିଲାଗି ସବର୍ମ ହୋଇ ଘରୁ ବାହାରିବା ଦରକାର, ତା ନ କରି ଯେ ବାହାରେ ସେ ଅମନୁଷ୍ୟ । ଆଘାତର ପରିଣାମ ପ୍ରତିଘାତ, ଆଲୋଚନାର ପରିଣାମ ପ୍ରତ୍ୟାଲୋଚନା, ଦୋଷର ପରିଣାମ ଦଣ୍ଡ, ଇତ୍ୟାଦି, ଇତ୍ୟାଦି, ଏହା ଐଶ୍ୱରିକ ନିୟମ - ଏ ନିୟମକୁ ଏଡ଼ିବାର ଛାର ମନୁଷ୍ୟର ଇ୍ଛୁ' ନାହିଁ, ଅତଏବ "ରେ ଆମ୍ବନ୍ ! ଥୟଧର ।" ହେ ପାଠକ ଓ ସମାଲୋଚକ ଅବଧାନମାନେ ! ସମାଲୋଚନା କରନ୍ତୁ ।

ଆଜି ପୋଥିଟା ଟିକିଏ ବେଶି ବଢ଼ିଗଲା । କାରଣ ସେ ଦିନ ଜଣେ ଭାୟା ମତେ ଘୋଷାରି ଘୋଷାରି ନେଇ Voltaireଙ୍କ ପାଖରେ ଠିଆ କରାଇଦେଲେ ଓ ଆଜି ସେହି ଶ୍ରେଣୀର ଜଣେ ବନ୍ଧୁ ଆଣି ମତେ ବାତୁଳାଶ୍ରମରେ ପୂରାଇ ଦେଲେ । ସେଇଥିପାଇଁ ତ ଟିକିଏ ସାଫିଆନା ଦେଖାଇବା ଦରକାର - ସେହି ସାଫିଆନାର ଫଳ ଏତିକି ହେଲା ଯେ ମୋର ଭକ୍ତ ପାଠକଙ୍କର ବହୁମୂଲ୍ୟ ସମୟ ଲୁଚାକ ନଷ୍ଟ କଲି । ଉତ୍କଳଟା କୋଟି ଜନାକୀର୍ଣ୍ଣ - ଭକ୍ତକବି ରାଓ ଏ କୋଟିଙ୍କ ମଧ୍ୟରେ ଗୋଟିଏ 'ମଣିଷ' ଦେଖି ନ ପାରି ନିଉଟନ, ବିସ୍‌ମାର୍କ, ଗ୍ଲାଡ଼ଷ୍ଟୋନ୍, ପାଞ୍ଜେପେ, ବିଦ୍ୟାସାଗର, ଡାମିଏନ, ଗୋଖଲେ, ତିଳକ, ରାନାଡ଼େ, ରାମମୂର୍ତ୍ତି, ରବୀନ୍ଦ୍ରନାଥ ଏ ସମସ୍ତଙ୍କର ଉତ୍କଳୀୟ ସଂସ୍କରଣ ଯେତେବେଳେ ଯନ୍ତ୍ରସ୍ଥ ଥିଲା ବୋଲି ସେ ଯନ୍ତ୍ରପଟଳ ଭେଦ କରି ସେ ଭିତରକୁ ପଶି ନ ପାରି ଆପଣାର ଅଜ୍ଞତା ଦେଖାଇଗଲେ, ଏଣିକି କ୍ରମଶଃ ସବୁ ଦେଖା ପଡ଼ିବ, ଆଜି ଥାଉ ।

ଉତ୍କଳ ସାହିତ୍ୟ/୧୭ଶ ଭାଗ/୧୨ଶ ସଂଖ୍ୟା/୧୩୨୧ ସାଲ ।

## ।। ବାଉନ ।।

ଭଗବାନ୍‌ଙ୍କ ମେହରବାନିରୁ ମୋର ଏହି ଶସ୍ୟଶ୍ୟାମଳା ଉତ୍କଳ ଭୂମିରେ ଅନେକ ପ୍ରକାର ନାମ ହେଲା ।

| | | | |
|---|---|---|---|
| ପ୍ରଥମ | ସଂସ୍କରଣ | - | ଦେଶହିତୈଷୀ । |
| ଦ୍ୱିତୀୟ | ସଂସ୍କରଣ | - | ବକ୍ତା । |
| ତୃତୀୟ | ସଂସ୍କରଣ | - | ଶିକ୍ଷା ସଂସ୍କାରକ । |
| ଚତୁର୍ଥ | ସଂସ୍କରଣ | - | ସମାଜ ସଂସ୍କାରକ । |
| ପଞ୍ଚମ | ସଂସ୍କରଣ | - | ଜାତି ସଂସ୍କାରକ । |
| ଷଷ୍ଠ | ସଂସ୍କରଣ | - | ସାହିତ୍ୟ ସଂସ୍କାରକ । |
| ସପ୍ତମ | ସଂସ୍କରଣ | - | ଭାଷା ସଂଜ୍ଞା ସଂସ୍କାରକ । |
| ଅଷ୍ଟମ | ସଂସ୍କରଣ | - | ଲିପି ସଂସ୍କାରକ । |

ଏଥିରେ ଟିକିଏ ଟିକିଏ Marginal note ଅର୍ଥାତ୍ ପାରିପାର୍ଶ୍ୱିକ ଟିପ୍‌ପଣୀ ଦରକାର । ତାହା ନ ହେଲେ ପାଠକମାନେ ଭୁଲକରି ନିଦ ବାଉଳାରେ ହାଉଳି ଖାଇ ଅନ୍ୟ କୌଣସି ସ୍ୱନାମଧନ୍ୟ ବ୍ୟକ୍ତିଙ୍କୁ ଆଣି ଠିଆ କରାଇ କହିବେ ଯେ ଲେଖକ ଏ ମନ୍ତବ୍ୟ ଦ୍ୱାରା କୌଣସି ସିଦ୍ଧପୁରୁଷଙ୍କ ପ୍ରତି Indecent assault (ଅଶିଷ୍ଟ ଆକ୍ରମଣ) ପ୍ରୟୋଗ କରୁଅଛି । ସେଥିପାଇଁ ଟିକିଏ ଖୋଲାଖୋଲି କରି ଲେଖିଲେ ଏ ଟିପ୍‌ପଣୀଟା ଆପଣାର ସଫେଇ ସ୍ୱରୂପ ଗ୍ରହଣ କରାଯିବ ଓ ଲେଖକ ବେକସୁର ଖଲାସ ପାଇବାର ଭିତ୍ତି ଆଗରୁ ସଜଡ଼ା ହୋଇ ରହିବ ।

ମୋର ପ୍ରଥମ ସଂସ୍କରଣ ଦେଶହିତୈଷୀ - ଏଗୁଡ଼ାକ ବ୍ୟକ୍ତିଗତ କଥା - ଏଠାରେ ସ୍ପଷ୍ଟ ରୂପେ ସୁବିଜ୍ଞ ଓ ବିଦ୍ୱାନ୍ ପାଠକମାନଙ୍କୁ ଜଣାଇ ଲେଖିଲି ଯେ ମୋର ବ୍ୟକ୍ତିଗତ ସଂସ୍କରଣକୁ କେହି ଯେପରି ଆଗୁଳି ପଡ଼ି ଆପଣା ଦିହକୁ ନ ନିଅନ୍ତି । କୌଣସି ସଂସ୍କାର ଆନ୍ଦୋଳନରେ ମୋ ସଙ୍ଗରେ ଅନେକ ସଙ୍ଗୀ ଅବଶ୍ୟ ଥିଲେ; କିନ୍ତୁ ଏ ଆଠ ଗୋଟି ସଂସ୍କାରରେ Common element (ବା ସାଧାରଣ ଉପ୍ାଦନ) ମୁଁ । ଅତଏବ ଏ ସଂସ୍କାରଗୁଡ଼ିକ ମିଳାଇ ନେଲେ ଦେଖାଯିବ ଯେ ଏ ସମସ୍ତେ ମୋ ନିଜର ବାହାଦୁରି । ଆହୁରି ମଧ୍ୟ ଏତେଗୁଡ଼ିଏ ସଂସ୍କାରରେ ଅନ୍ୟ କୌଣସି ଏକ ବ୍ୟକ୍ତିଙ୍କୁ ବାହାଦୁରି ଦେଲେ ତାହା ମୋ ପକ୍ଷରେ Suicidal policy (ଆତ୍ମଘାତୀ ନୀତି) ହେବ । ପୁଣି ନିଜେ ସମଗ୍ର ଉତ୍କଳରେ ଉଚ୍ଚାସନ ପାଇ ଅନ୍ୟ ବ୍ୟକ୍ତିଙ୍କୁ ସେ ଆସନ ଦେବା ମୋର ସ୍ୱାର୍ଥସିଦ୍ଧି ପକ୍ଷରେ ଅନ୍ତରାୟ । ଅତଏବ ପ୍ରିୟ ଓ ଅପ୍ରିୟ ପାଠକ ମହୋଦୟଗଣ ଓ ପାଠିକା ମହୋଦୟାଗଣ ଶୁଣିବାକୁ ସାବଧାନ ଓ ସାବଧାନା ହୁଅନ୍ତୁ ।

ମୋର ପ୍ରଥମ ସଂସ୍କରଣ - ଦେଶହିତୈଷୀ । ପ୍ରଥମେ ଯେତେବେଳେ ପଢ଼ା ଛାଡ଼ି ସଂସାର କ୍ଷେତ୍ରରେ ପଶିଲି, ସେତେବେଳେ ଦେଖିଲି ଯେ ଦେଶର ଜଣକେତେ ମୁଖିଆ ବ୍ୟକ୍ତି ଉତ୍କଳ ସମ୍ମିଳନୀ, ଦେଶ ମିଶ୍ରଣ, ହର ଗୁଣ ଓ ଫେଡ଼ା ମିଶା ଆନ୍ଦୋଳନରେ ଲାଗିଅଛନ୍ତି । ଦେଖିଲି ଯେ ମୋ ଭଳି ଜଣେ ମହାପୁରୁଷ ଦେଶରେ ଉତ୍ତମ ରୂପେ ଚିହ୍ନିତ ହେବାର ଗୋଟାଏ ସହଜ ଉପାୟ ଅଛି । ସବୁ ଆନ୍ଦୋଳନରେ ଓ ବାଦୀ ପାଲାରେ ଦୁଇ ପଞ୍ଝା ନାଟୁଆ ଥାଆନ୍ତି । ଦିନାକେତେ ଠଉରାଇଲି କାହାର ସାଜସଜ୍ଜା ଓ ଭକ୍ତ ବେଶି । ଯେଉଁ ଦଳକୁ ବଳୁଆ ଦେଖିଲି, ସେହି ଦଳରେ ଯୋଗ ଦେଲି । ସେହି ଆନ୍ଦୋଳନମାନଙ୍କରେ ବଳବାନ୍ ଦଳଙ୍କ ନେତାମାନଙ୍କ ପିଛାଧରି ତାଙ୍କ ଘୋଡ଼ା ଗାଡ଼ିରେ ଚଢ଼ି, ପ୍ରସ୍ତାବମାନ ଚିଠା, ସାଫି, ପ୍ରୁଫ୍‌ସିଟ୍ ସଂଶୋଧନ, ଛାପାଖାନାକୁ ହରକରା ସ୍ୱରୂପ ଯିବାଆସିବା କାର୍ଯ୍ୟ, ଅକ୍ଷମତା ସତ୍ତ୍ୱେ ବକ୍ତୃତାର ସାରାଂଶ ଆହରଣ, ସମ୍ମିଳନୀକୁ ସମାଗତ ଅତିଥିମାନଙ୍କର ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟର ବନ୍ଦୋବସ୍ତ, ସମ୍ମିଳନୀର ନିମନ୍ତ୍ରଣ ପତ୍ର ଘେନି ରାଜଦ୍ୱାରମାନଙ୍କରେ ପ୍ରବେଶ, ଦେଶହିତକର ପ୍ରସ୍ତାବମାନଙ୍କର ସମର୍ଥନାନୁମୋଦନ କଲି । ଏହିପରି କରି ଦେଖିଲି ଯେ ଦେଶହିତୈଷୀ ବୋଲି ଗୋଟାଏ ପ୍ରତିଷ୍ଠା ହୋଇଗଲା । ଏଣେ ପେପର କଥାଟା ଠିକ୍ ଥାଏ । ଗାଣିତିକ ରୀତି ଅନୁଯାୟୀ ମୋର ନୂତନ ପ୍ରସାରଟା ବଢ଼ିଲା ଓ ଖବରକାଗଜମାନଙ୍କରେ ମୋ ମନଟା ବାଜିଗଲା । ମୋ ଦଳପତିଙ୍କ ଠାରୁ ଲମ୍ବା ଚଉଡ଼ା ବହଳ । ଏପରିକି, ବିଟ୍‌ବଜାର ଓ ବିଟ୍ ମଞ୍ଚରେ ଦଳପତି ଗାଇ ବଜାଇ କହିଲେ ଯେ 'My mantle will fall upon this young man', ଅର୍ଥାତ୍ 'ଉତ୍କଳର ଆଗାମୀ ଯୁଗରେ ଏ ବ୍ୟକ୍ତି ମୋ ପୋଷାକ ପିନ୍ଧି ସୁଆଙ୍ଗ ଯାତ୍ରା କରିବ । କଥାଟା ଶୁଣି ମଣିଷ ମନ ତ, ମୋ ମନଟା କୁଣ୍ଢେମୋଟ ହୋଇଗଲା । ପୂର୍ବେ ଦେଖିଥିଲି ଯେ ଗ୍ରାମର ଭାଇଗ ମିଶ୍ରେ, ରାମ ଓଝା, ଅଗଣା ଭାଇନା, କୁପି ଆଚାର୍ଯ୍ୟେ, ଦୀନ ରାଉଳ, ଏମାନଙ୍କ ସଙ୍ଗେ ମୋର ମିଳାମିଶା ହେଉଥିଲା । ହଠାତ୍ ଦେଖିଲି ଯେ ଦେଶହିତୈଷୀ ବନିଯିବାରୁ ରାଜା, ମହାରାଜା, ଜଜ୍, କିଲଟର ଉପାଧିଧାରୀ ଓ ଅପବ୍ୟାଧିଧାରୀ ଓ ଦେଶର ଶିଷ୍ଟ ଓ ବିଶିଷ୍ଟ ବ୍ୟକ୍ତିମାନଙ୍କ ସଙ୍ଗେ ଭାରି ଘମାଘୋଟିଆ ସମ୍ବନ୍ଧ ଲାଗିଲା । ଏହି ଅବସ୍ଥାରେ ବିଲାତରୁ ସମାଗତ ସମ୍ପାଦକ ନେଭିନ୍‌ସନ୍, ପାର୍ଲିଆମେଣ୍ଟର ମେମ୍ବର ଡାକ୍ତର ରଥରଫୋର୍ଡ଼ ଆସି ପହଞ୍ଚିଲେ ଏବଂ ସେମାନଙ୍କୁ ଭାରି ଚର୍ଚ୍ଚାଟାଏ କଲି । ସମସ୍ତେ ଦେଖିଲେ ଓ ପଢ଼ିଲେ ଯେ ଗୋଟାଏ ଭାରି ଦେଶ ହିତୈଷୀ । କିନ୍ତୁ ଭିତରେ ଯେ ଆର୍ଥିକ ଅବସ୍ଥାଟା କ'ଣ, ତାହା ମୋ ହୃଦୟରେ ଓ ମୋ ବନ୍ଧୁଙ୍କ ହୃଦୟପୁଟରେ ଲୁଚି ରହିଲା । କେହି କେହି କହିଲେ, ମୋର ଅଭ୍ୟର୍ଥନାଟା ବେନାମି ଓ ବିନା ଟଙ୍କା ନେଣଦେଣରେ ସମ୍ପାଦିତ ହୋଇଥିଲା; କିନ୍ତୁ ଯେଉଁ କେତେଜଣ ବନ୍ଧୁଙ୍କଠାରୁ, ଅଭ୍ୟର୍ଥନା ଚର୍ଚ୍ଚା ନିମନ୍ତେ ହାତ ଉଧାରି କରିଥିଲି, ମୋର ଆର୍ଥିକ ସ୍ୱଚ୍ଛଳତା ହେତୁରୁ ସେଗୁଡ଼ିକ ଅବଧି ବନ୍ଧୁମାନଙ୍କ ଉଧାରି ଖାତାରେ 'ଉଧାରି' ତଳେ ଗଡୁଅଛି ଓ ବୋଧହୁଏ

ବନ୍ଧୁମାନଙ୍କୁ ତମାଦି ଆଇନର ବିଧାନ ଜଣା ନ ଥିଲେ ଇହ ଜୀବନରେ ଗଡ଼ୁଥିବ । ଦେଶ ହିତୈଷୀ ହେଲେ ସେଥିପାଇଁ ମଧ ଟିକସ ଅଛି, ବିନା ଅର୍ଡ଼ରରେ ସମ୍ବାଦପତ୍ରମାନ ଆସିଲା । ଅଗତ୍ୟା ସେଗୁଡ଼ିକ ଗ୍ରହଣ କଲି ଓ ୧ ୨ ୩ ଅଙ୍କ (Digits) ପର୍ଯ୍ୟନ୍ତ ବସାଇଲି ଓ 'ଅମୁକ' ଆମ୍ଭମାନଙ୍କର ପୃଷ୍ଠପୋଷକ ଓ ଉଦର ପୋଷାକ ବୋଲି ଦେଶ ଗୋଟାକ ନାମ ବାଜିଗଲା । ଏହି ଦେଶ ହିତୈଷଣା ବୃଦ୍ଧି ସଙ୍ଗେ ସଙ୍ଗେ ମକ୍‌କେଲ ଓ ପୋଷଣାହାରୀଙ୍କ ସଂଖ୍ୟା ବୃଦ୍ଧି ହେଲା ଓ ଭଗବାନ୍‌ଙ୍କ କୃପାରୁ କଟକଠାରେ ଖଣ୍ଡେ ବାସଗୃହ, ଗୃହର ସାଜସଜ୍ଜା, ଗୃହଦେବତାଙ୍କ ସାଜସଜ୍ଜା ହୋଇଗଲା - ଏହି ସମୟରେ ଅନେକ ଅନାହାରୀ ପଦର ଯୋଗାଡ଼ ମଧ କରିନେଲି । ଅତଏବ ଏବଂବିଧ ଉପାୟ ଆୟୋଜନରେ ପ୍ରୟୋଜନ ସାଧନ ହୋଇଗଲାରୁ ଗୋଟିକେତେ ରାଜା, ମହାରାଜା ମକ୍‌କେଲ ହେଲେ ଓ ଭିତରେ ଭିତରେ ସେମାନଙ୍କ ଅନୁଗୃହୀତ ପାଖ ଲୋକଙ୍କର ତୈଳ ବ୍ୟୟ ଲାଘବ କରୁଥାଉଁ; କିନ୍ତୁ ଏଣେ ବାହାରେ ଖୋଦ ମକ୍‌କେଲମାନଙ୍କୁ ଅନ୍ୟ ବ୍ୟକ୍ତିମାନଙ୍କ ସମ୍ମୁଖରେ ଦୁଇପଦ ଲେଖାଏଁ ଅପ୍ରିୟ ହକ କଥା ଶୁଣାଇବାକୁ ଛାଡ଼େ ନାହିଁ । ଆସନ ଛାଡ଼ି ଅନ୍ତରାଳକୁ ଉଠିଗଲା ବାଦ୍ ଫେର୍ ତାଙ୍କ ଗୋଡ଼ ହାତ ଧରି କ୍ଷମା ମାଗେଁ ।

ଦ୍ୱିତୀୟ ସଂସ୍କରଣ - ପ୍ରଥମ ସଂସ୍କରଣ ପରେ ଗଳାରେ ଟିକିଏ କଣ୍ଡୁୟନ ଉପସ୍ଥିତ ହେଲା । ତାକୁ ତ ଫେର ବୋଧ କରିବା ଦରକାର । ସେଥିପାଇଁ ଦିନାକେତେ ମଞ୍ଚ ଉପରେ ଠିଆହୋଇ ପ୍ରଥମେ ଦୋମିଶା ଭାଷା, ତପୂରେ ଇଂରେଜୀ, ତପୂରେ ଦେଢ଼ାମିଶା ଓ ତପୂରେ ସାହିତ୍ୟିକ ଓଡ଼ିଆ, ତା ବାଦ୍ ଶୁଦ୍ଧ ଓଡ଼ିଆରେ ବକ୍ତୃତା କରିବାକୁ ଚେଷ୍ଟାକଲି - ସେଥିରେ କ୍ରମଶଃ କେତେଗୁଡ଼ିଏ ବୋଲି (ଯଥା - ଭାଇମାନେ, ସମବେତ ଭ୍ରାତୃବୃନ୍ଦ, ଉପସ୍ଥିତ ଭଦ୍ରମଣ୍ଡଳି, ଭଗିନୀଗଣ ଇତ୍ୟାଦି), କେତେଗୁଡ଼ିଏ ଢଙ୍ଗ (ଯଥା - ବକ୍ତୃତା ପୂର୍ବରୁ ଆଖି ବୁଜି ଭଜନ ସ୍ମରଣ), କେତେଗୁଡ଼ିଏ ଭଙ୍ଗିମା (ଯଥା - ହାତହଲା, କାନ୍ଦଣା, ଅନୁନାସିକ ସ୍ୱର, ତୋଡ଼ିମୁହଁ, ଘୁଷୁରି ଥୋମଣି, ମସ୍ତକ ଚାଳନା  ସ୍ୱର ଗାମ୍ଭୀର୍ଯ୍ୟ, ମୂଛରେ ତାଉଦେବା, ଦୋଳାୟମାନ ଅଙ୍ଗଚାଳନା ଇତ୍ୟାଦି ଓ ପରିଶେଷରେ ମୂର୍ଚ୍ଛା) ଇତ୍ୟାଦିରେ ତାଲିମ ନେବାକୁ ହେଲା । ତପୂରେ ଜଣକେତେ ଲୋକଙ୍କୁ ରଖି ସେହି ପାର୍ଶ୍ୱଚରମାନଙ୍କ ଦ୍ୱାରା ମୋ ବକ୍ତୃତା ସମୟରେ କରତାଳି, ଆହା Hear Hear, ଧନ୍ୟ ଧନ୍ୟ, Shame, Shame ଆଦି ହେବାର ବନ୍ଦୋବସ୍ତ କଲି । ଦିନାକେତେ ପରେ ଦେଖିଲି ଯେ ଜାତୀୟ ସମ୍ମିଳନୀ ମଣ୍ଡପ, ସ୍ମୃତି ସଭା, ବିବାହ ସଂସ୍କାର ସଭା, ବିଦ୍ୟାଳୟ ପ୍ରତିଷ୍ଠା ଓ ପୁରସ୍କାର ବିତରଣ ମଠ, ମାଦକ ନିବାରିଣୀ ସଭା, ଧର୍ମ ସଭା, ସାହିତ୍ୟ ସଭା, ଗୋରକ୍ଷିଣୀ ସଭା, ଯେଉଁଠାରେ ଗଳାବାଜି ଦରକାର, ସେଠାରେ ମୋତେ ଖୋଜା ପଡ଼ିଲା ।

ତତ୍‌ପରେ ହେଲା ତୃତୀୟ ସଂସ୍କରଣ - ଶିକ୍ଷା ସଂସ୍କାର । ପିଲାଦିନେ ପିତୃଦେବ ଗ୍ରାମରେ ଗୋଟିଏ ମଧଇଂରାଜୀ ବିଦ୍ୟାଳୟ ସ୍ଥାପନ କରିଥିଲେ । ଏ ଆଜକୁ ୬୦ ବର୍ଷ ତଳର କଥା । ସେତେବେଳେ ସାଧାରଣଙ୍କର ଶିକ୍ଷା ପ୍ରତି ଆଦର ବା ଆସ୍ଥା ନ ଥିଲା ।

ନାନା ଅଭାବ ଓ ଅସୁବିଧା ସତ୍ତ୍ୱେ ପିତା ଉକ୍ତ ବିଦ୍ୟାଳୟଟିକୁ ବଞ୍ଚାଇରଖି ପାରିଥିଲେ ଓ ସେଥିଲାଗି ଅନେକ ଅର୍ଥବ୍ୟୟ କରିଥିଲେ । ଏହିପରି ୨୦।୫୦ ବର୍ଷ ବିଦ୍ୟାଳୟଟି ଚାଲିଥିଲା ଓ ବିଦ୍ୟାଳୟରୁ କେତେଗୁଡ଼ିଏ ଛାତ୍ର ବୃତ୍ତି ସହିତ ଉତ୍ତୀର୍ଣ୍ଣ ହୋଇ ଉଚ୍ଚ ଶିକ୍ଷା ପଥରେ ଅଗ୍ରସର ହୋଇଥିଲେ । ଏବେ ଦେଖିଲି ଯେ ଶିକ୍ଷା ପ୍ରତି ଲୋକଙ୍କର ଆସ୍ଥା ଜନ୍ମିଅଛି । ଏବେ ଅଭିଭାବକମାନେ ଆପଣା ପିଲାଙ୍କୁ ଦରମା ଦେଇ ବୋର୍ଡ଼ିଙ୍ଗରେ ରଖାଇ ପାଠ ପଢ଼ାଇବାକୁ ଶିଖି ଅଛନ୍ତି । ଦେଖିଲି ଯେ ଦେଶରେ ଶିକ୍ଷାର ସ୍ରୋତ ବହିବାକୁ ଯେପରି ଆରମ୍ଭ ହୋଇଅଛି, ଶୀଘ୍ର ସ୍କୁଲଟାକୁ ଆପଣା ପିଠିରେ ବାନ୍ଧିଦେଲେ ଶିକ୍ଷାକ୍ଷେତ୍ରରେ ଗୋଟିଏ ପ୍ରତିପତ୍ତି ହୋଇଯିବ ଓ ମାଛ ତେଲରେ ମାଛ ଭଜା ଯାଇ ପାରିବ । ବେଳକାଳ ଉଣ୍ଡି ପିତାଙ୍କ ନିକଟରେ ପ୍ରସ୍ତାବ କଲି - ଏଣିକି ଆପଣ ବୃଦ୍ଧ ହେଲେଣି, ଏ ବୟସରେ ବିଦ୍ୟାଳୟର ସମ୍ପାଦକ ପଦର ଗୁରୁଭାର ଆପଣଙ୍କ ପ୍ରତି ବଳି ପଡୁଅଛି । ପାଠ ଡାକୁଛି 'ସର୍ବ ତେଜୟ ମନ୍ବିଛେଦ୍ ପୁତ୍ରାଦିଚ୍ଛେଦ୍ ପରାଜୟଂ । ବାପା ଅଗତ୍ୟା 'ହଁ' କଲେ ଓ ମୁଁ ସ୍କୁଲର ସମ୍ପାଦକ ହେଲି । ଆଗେ ବିଦ୍ୟାଳୟ ନିମନ୍ତେ ବର୍ଷକୁ ବର୍ଷ ବହୁ-ଶତ ଟଙ୍କା ଖରଚ କରି ପିତା ହୋଇଥିଲେ ସ୍କୁଲର 'ସମ୍ପାଦକ' । ଆମ ବେଳକୁ ସ୍କୁଲ ନିମନ୍ତେ ଅଧଲାଟିଏ ଖରଚ କରିବାକୁ ପଡ଼ିଲା ନାହିଁ । ଏଣେ କିଣ୍ଡରଗାର୍ଟନ ପଦ୍ଧତି ଅନୁସାରେ ସ୍କୁଲ ସଙ୍ଗେ ଖଣ୍ଡେ ବଗିଚା ଯୋଖା ହେବାରୁ ଆମେ ବେଳେ ବେଳେ ହେଡ଼ ମାଷ୍ଟରଙ୍କ ପ୍ରସାଦରୁ ଶାଗଟାଏ, କଖାରୁଟାଏ, ମୂଳାଟାଏ, କଦଳୀ ପେଣାଏ ପାଇଲୁ ଓ ଆପଣାର ବହୁମୂଲ୍ୟ ସମୟ ନଷ୍ଟ କରି ମାସକେ, ପକ୍ଷକେ, ହପ୍ତାକେ ସ୍କୁଲ ପରିଦର୍ଶନ କରିବାକୁ ଯିବାରୁ ସେଥିପାଇଁ କିଛି ଭଡ଼ା ବା ପାଥେୟ ପାଇଲୁଁ । ଆମେ ହେଲୁଁ ବିଦ୍ୟାଳୟର Honourary Secretary ଅର୍ଥାତ୍ 'ଅବୈତନିକ ସମ୍ପାଦକ' । ସ୍କୁଲରେ

Direct method (ପ୍ରତ୍ୟକ୍ଷଭାବ)
Indirect method (ପରୋକ୍ଷ ଭାବ)
Right hand writing
Left hand writing
Free hand drawing
Crooked hand drawing
Kindergarten System.

ଇତ୍ୟାଦି ଅନେକ ଶିକ୍ଷା ସଂସ୍କାର ପଦ୍ଧତି ମୋ ସ୍କୁଲରେ ଚଳାଇଲି । ସଙ୍ଗେ ସଙ୍ଗେ ଗୋଟିଏ ବାଳିକା ବିଦ୍ୟାଳୟ ଓ ଗୋଟିଏ ଅନ୍ତ୍ୟଜ ବିଦ୍ୟାଳୟ ପ୍ରତିଷ୍ଠା କଲି । ପାଠକ ଅବଧାନ ! ଏ ଗୁଡ଼ିକ କଟାକ୍ଷ ବା ବ୍ୟଙ୍ଗୋକ୍ତି ନୁହେଁ । ଏଗୁଡ଼ିକ ମୋ ଗ୍ରାମର ପ୍ରତ୍ୟକ୍ଷ ଘଟଣା । ଏ ବିଦ୍ୟାଳୟ ଗୋଟିକେତେ ହାତରେ ରହିବାକୁ ହାକିମ ହୁକୁମା, ସାହେବ ସୁବା, ଶିକ୍ଷା ବିଭାଗ, ଅଶିକ୍ଷା ବିଭାଗ, ପୂର୍ତ୍ତ ବିଭାଗ, ଡାକ ବିଭାଗ, ମହାଜନୀ ବିଭାଗ, ଖାତକୀ

ବିଭାଗ, ଅନେକ ବିଭାଗ ସଙ୍ଗେ ଆଳାପ ପରିଚୟ ହେଲା ଆଉ ଏ ବିଦ୍ୟାଳୟଗୁଡ଼ିକରେ ଯେଉଁ ପିଲାଗୁଡ଼ାକ ପଢ଼ିଲେ ଓ ବୋର୍ଡିଙ୍ଗରେ ରହିଲେ, ସେମାନଙ୍କ ଅଭିଭାବକମାନେ ମୋର ମକ୍‌କେଲ ହେଲେ । ବାପା ଦେଖି ପାରିଲେ ଯେ ସେ ପଇସା ଖରଚ କରି ହାତରୁ ଖାଇ ଘୋଡ଼ା ଆଗରେ ନାଚି ଯେଉଁ ମରହଟ୍ଟୀ ଥିଲେ, ସେହି ମରହଟ୍ଟୀ ରହିଲେ । କିନ୍ତୁ ଆମର ବୁଦ୍ଧିଖର୍ଚ୍ଚ ଯୋଗୁଁ ମାଛ ତେଲରେ ମାଛ ଭାଜି, ଅନାହାରୀ ପଦ ମଧ୍ୟରେ ଆହାରର ପନ୍ଥା ଲାଭ କରି, କର୍ତ୍ତୃପକ୍ଷ ଓ କର୍ତ୍ତ୍ରୀପକ୍ଷମାନଙ୍କ ନିକଟରେ ସୁପରିଚିତ ହୋଇ, ପ୍ରସାର ବଢ଼ାଇ ଦେଶରେ ଜଣେ ବଢ଼ିଆ ଶିକ୍ଷା ସଂସ୍କାରକ ନାମ ପାଇଲୁ ।

ତତ୍‌ପରେ ହେଲା ଚତୁର୍ଥ ସଂସ୍କରଣ - ଏଇଠୁଁ ଆରମ୍ଭ ହେଲା ଆମର Revised Edition ଅର୍ଥାତ୍ ସଂସ୍କୃତ ସଂସ୍କରଣ । ବିଦ୍ୟାଳୟ ସଙ୍ଗେ ସଙ୍ଗେ ଗୋଟାଏ ସଭା ସ୍ଥାପିତ ହେଲା । ସେ ସଭାର ନାମ ହେଲା 'ହରିଭକ୍ତି ପ୍ରଦାୟିନୀ ଓ ଶିକ୍ଷା ବିବର୍ଦ୍ଧିନୀ ସଭା' । ତହିଁର ଗୋଟିଏ ଉପସଭା ହେଲା । 'ସମାଜ ସଂସ୍କରଣୀ ସଭା ।' ସେଥିରେ ଆମ ମରହଟ୍ଟିଆ ସମାଜଟାକୁ କିପରି ସଂସ୍କାର କରିବାକୁ ହେବ, ସେଥିରେ ଉଦ୍ୟମ ଲାଗିଲା । ପ୍ରଥମ ତୋଡ଼ ପଡ଼ିଲା ଗ୍ରାମର ବୁଢ଼ା ବୁଢ଼ୀଙ୍କ ଉପରେ, ଆବହମାନ କାଳରୁ ଶାଶୂ ଶଶୁରମାନେ ବଧୂମାନଙ୍କୁ ଚା' ବଗିଚାର କୁଲିଙ୍କ ଠାରୁ ହୀନ ବୋଲି ମଣୁଥିଲେ ଓ ସେମାନଙ୍କୁ ଗୋଟାଏ ମାଂସପିଣ୍ଡ ବିଶିଷ୍ଟ ଯନ୍ତ୍ରବିଶେଷ ବୋଲି ବିଚାର କରିଆସୁଥିଲେ । ସେହି କଳ ଆଗରେ ପାଣିପଶା ଚାଉଳ, ଓଦା କାଠ, ଗୋଡ଼ା ଦରପୋଡ଼ା ଡାଲି, ପୋକରା ବାଇଗଣ ଓ କଞ୍ଚା ପରିବା ଥୋଇଦେଲେ ଘଣ୍ଟାକ ବାଦ୍ ସାମାଜିକ ଆଇନ୍ ଅନୁସାରେ ଉତ୍କୃଷ୍ଟ ଅନ୍ନ ବ୍ୟଞ୍ଜନ ପ୍ରସ୍ତୁତ ହୋଇପାରୁଥିଲା । ସେହିପରି ମଧ୍ୟ ହୋମ ସାମଗ୍ରୀ, ଖଇ, ନଡ଼ିଆ, ଦୂବ, ବରକୋଳି ପତ୍ର, ଚୁଆ, ଚନ୍ଦନ, ହଳଦୀ ରଖିଦେଇ ସେଗୁଡ଼ିକର ସେ କଳ ସଙ୍ଗେ ସମ୍ବନ୍ଧ ଲାଗିଲେ ଆଇନ୍ ଅନୁସାରେ ବର୍ଷ ଖଣ୍ଡକ ମଧ୍ୟରେ ହୃଷ୍ଟପୁଷ୍ଟ ଆୟୁରାରୋଗ୍ୟୈଶ୍ୱର୍ଯ୍ୟ ବିଶିଷ୍ଟ ଜୀବିତ ସନ୍ତାନ ସନ୍ତତି ସେହି କଳରୁ ଆଦାୟ କରାଯାଇ ପାରୁଥିଲା । ସାଧାରଣ କଳ ଓ ଜୀବିତ କଳ ମଧ୍ୟରେ ପ୍ରଭେଦ ଏତିକି ଯେ ସାଧାରଣ କଳର ଉପକରଣ କାଷ୍ଠ ଓ ଲୌହ, ଏ କଳଗୁଡ଼ିକ ଉପାଦାନ ରକ୍ତ ମାଂସ । ନଚେତ୍ ଆଉ ସବୁ ଏକ, ସମାନ ଥିଲା । ସାଧାରଣ କଳ ଚଳିବା ନିମନ୍ତେ ସମୟ ସମୟରେ ମରାମତି ଓ ଚରକି ଇତ୍ୟାଦି ଆବଶ୍ୟକ । ସେହିପରି ଏଗୁଡ଼ିକ ନିମନ୍ତେ ସାମୟିକ ଗୋଇଠାଟାଏ, ଝଙ୍କାଟାଏ, ବିଧାଟାଏ, ଚଟକଣାଟାଏ, ସପ୍ତ ପୁରୁଷ ଉଝୁଳାଟାଏ, ହଳଦୀ ମେଞ୍ଚା, ଚୁଆ ପାଏ ଖଣ୍ଡେ, ମେଥି, ମହଣ, ସିନ୍ଦୂର, ହାଣ୍ଡିକଳା ଏସବୁ ଦରକାର ହେଉଥିଲା - ଖରଚା କିନ୍ତୁ ଉଭୟତ୍ର ପ୍ରାୟ ସମାନ । ଆମର ସମାଜ ସଂସ୍କାରର ପ୍ରଥମ ହପ୍‌ପା ଉଠିଲା - ଏହି କଳଗୁଡ଼ିକୁ ବୁଢ଼ାବୁଢ଼ୀଙ୍କ ଦାଉ ଘାତରୁ ଓ ରୌପ୍ୟ, ପିତଳ, କଂସା ଆଦି ଧାତୁ ସଂସ୍ରବରୁ ରକ୍ଷା କରିବା । ଏଥି ନିମନ୍ତେ ଦିନା କେତେ ଖୁବ୍ ବକ୍ତୃତା ଆଦି କଲୁଁ - ସ୍ତ୍ରୀ ସ୍ୱାଧୀନତା ବାହିଖଡ୍ଡୁ, ପଞ୍ଚୁବର୍ଣ୍ଣି କାଚ ଆଦିର ସଂସ୍କାର, ବିବାହାଦିରେ

ବ୍ୟୟ ସଂକୋଚ ଆଦିରେ ଦିନାକେତେ ମାତିଲୁଁ । ଏହି ସମାଜ ସଂସ୍କାର ମଧ୍ୟରେ ଗୋଟିଏ ଗୋଟିଏ ପ୍ରଧାନ ଅଙ୍ଗ ବିଧବା ବିବାହ । ସେଥିପାଇଁ ଜଣେ ବିଧବା ଦରକାର । ଦୈବଯୋଗକୁ ମୋର ଦଦେଇପୁଅ ଭାଇ ଭିକାରିଭାଇନାଙ୍କର ଗୃହଭଗ୍ନ ହେଲା । ତାଙ୍କର ପୁଅଟିଏ ଓ ଝିଅଟିଏ, ଦ୍ୱିତୀୟ ସଂସାର କରିବାକୁ ସେ ଭାରି ନାରାଜ । କାରଣ ଦ୍ୱିତୀୟ ସଂସାରଟା ସାଧାରଣତଃ ସୌଖୀନ୍‌ର ସଂସାର । ସେଥିରେ କୁମ୍ଭକର୍ଣ୍ଣୀ ଶାଢ଼ି, ହଳଦୀ, ବାହିଖଡ଼ୁ, ମଥାଘଷାର ପାଶ୍ଚାତ୍ୟ ସଂସ୍କରଣ ବେଶି ଲୋଡ଼ା । ସେଗୁଡ଼ିକ ଯୋଗାଇବା ନିମନ୍ତେ ଧନ ବଳ ଓ ଅର୍ଜନ ବଳ ଦରକାର । ଭିକାରିଭାଇନାଙ୍କର ଏ ଦୁଇ କଥା ନଦାରଦ; କିନ୍ତୁ ତାଙ୍କୁ ଦିନେ ବିଶ୍ୱସ୍ତ ଭାବରେ ସମଜାଇ ଦେଲି ଯେ 'ବିଧବା ବିବାହ କରିବାକୁ ମୁଁ ପ୍ରସ୍ତୁତ ଅଛି' ବୋଲି କହିଦେଲେ ଯେ ବିଭା ହେବା ପାଇଁ ବିଧବା ଦଉଡ଼ି ଆସିବେ, ତାହା ନୁହେଁ; କିନ୍ତୁ ସମାଜ ସଂସ୍କାରକ ହେବାକୁ ବାହାରି, ଶେଷରେ ଲୋକେ ଯେପରି ଆମକୁ ଦୋଷ ନ ଦିଅନ୍ତି । ଏଥିରେ ଯୋଗାଡ଼ କରି ରଖିବା ଦରକାର । ଭିକାରିଭାଇନାଙ୍କୁ ସଙ୍ଗେ ସଙ୍ଗେ ସଂସ୍କାରକ ଭାୟା ନୀଳମଣିନନା* ଓ ଶ୍ରୀବସ୍ତନନା** ପାଖରେ ପହଞ୍ଚାଇଲି । ପୂର୍ବର ବିଶ୍ୱସ୍ତ ବୁଝାବୁଝିରେ ଭିକାରିଭାଇନା ମୋଠାରୁ ଦ୍ୱିତୀୟ ସଂସାର ନ ହେବାର ସ୍ଥିର ଜବାବ ପାଇଥିବାରୁ, ସେହି ଦମ୍ଭରେ ପ୍ରଚାର କଲେ ଯେ, ଉପଯୁକ୍ତା ବିଧବା ପ୍ରାପ୍ତ ହେଲେ ମୁଁ ବିଧବା ବିବାହ କରିବି । ଏ ବିଷୟ ସମ୍ବାଦପତ୍ରମାନଙ୍କରେ ପ୍ରଚାରିତ ହେଲା । ସମାଜ ସଂସ୍କାରକ ଦଳ ତାଲିକାରେ ସର୍ବପ୍ରଥମେ ଆମ ନାମରେ ଖଡ଼ି ଗଡ଼ିଲା । ଭିକାରିଙ୍କର ସୁଯୋଗରୁ ହେଉ, କି ଆମ କପାଳକୁ ହେଉ ଦ୍ୱିତୀୟ ବିବାହଯୋଗ୍ୟ ଗୋଟିଏ ସୁଦ୍ଧା ବିଧବା ମିଳିଲେ ନାହିଁ । ଶେଷକୁ ଦୋଷଟା ସେହି ଅବଳା 'ବିଧବା' ଜାତିଟା ଉପରେ ପଡ଼ି, ଆମେ ସଂସ୍କାରକଯାକ ସେ ଯାତ୍ରାରୁ ରକ୍ଷା ପାଇଲୁଁ । ନଚେତ୍ ଭିକାରିଚରଣ ବର୍ତ୍ତମାନ ଆମ ଉପରେ ଆଶୀର୍ବାଦ ମୁଣି ଝାଡୁଥାନ୍ତେ ଓ ସଂସ୍କାରକ ବଂଶ ବୃଦ୍ଧି ହେଉଥାନ୍ତା ।

ତପ୍ଉରେ ଖାଇବା ପିଇବା ସଂସ୍କାର । ଏହିଠାରେ ଆଉ ଗୋଟିଏ ସଂସ୍କରଣର ଧୋକା ଲାଗିଲା । ପଞ୍ଚମ ସଂସ୍କରଣ ଜାତି ସଂସ୍କରଣ । ଦେଖିଲୁଁ ଯେ ଜାତି ସଂସ୍କାର ନ ହେଲେ ସମାଜ ସଂସ୍କାର ଅସମ୍ଭବ । ଏହିଠାରେ କହି ରଖିବା ଉଚିତ ଯେ ଜାତି ସଂସ୍କାରକ ଦଳଙ୍କୁ ପ୍ରଧାନତଃ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ । ପ୍ରଥମ ପ୍ରାଚ୍ୟ ସଂସ୍କାରକ ଓ ଦ୍ୱିତୀୟ ପାଶ୍ଚାତ୍ୟ ସଂସ୍କାରକ । ପ୍ରାଚ୍ୟ ସଂସ୍କାରକଙ୍କ ମତରେ ପଇତା ଓ ମାଳି ହେଲା Universal (ବିଶ୍ୱଜନୀନ) ହଜମୀ ଗୁଳା । ସେଥିରୁ ଖଣ୍ଡେ କିଛି ଦେହରେ ଲାଗିଥିଲେ ଅର୍ଥାତ୍ 'ଜାତି'ର ମାର୍କାଟା ବାହାରେ ଥିଲେ କେଲ୍‌ନରଠାରୁ ଆରମ୍ଭ କରି ଶ୍ରୀ ଲିଙ୍ଗରାଜ ମହାପ୍ରଭୁଙ୍କ ଶକ୍ତି ପର୍ଯ୍ୟନ୍ତ ସବୁଠାରେ ପ୍ରବେଶ ଅଧିକାର । ସାହେବଙ୍କ ଖାନାରେ

---

* ଶ୍ରୀ ନୀଳମଣି ବିଦ୍ୟାରତ୍ନ ** ଶ୍ରୀବସ୍ତ ପଣ୍ଡାଙ୍କ

ଯୋଗଦେଲା ବେଳକୁ ବାହାରେ କୋଟ, ପେଣ୍ଟଲୁନ୍, ନେକଟାଇ ଓ ଜାତୀୟ ପଗଡ଼ି (ନୋଟ୍ - ତଦନ୍ତରାଳରେ ଚୁରକି), ଏଣେ ଲିଙ୍ଗରାଜ ମହାପ୍ରଭୁଙ୍କ ଚକଡ଼ାରେ ପହଞ୍ଚିଲା ବେଳକୁ ଚିତା ପଇତା, ପୀତ କୌଷେୟ ବାସ, ଊର୍ଦ୍ଧ୍ୱପୁଣ୍ଡ୍ର ଛାପ ଓ ଗଣ୍ଠିରା ଚୈତନ ଚୁରକି ଗୋଷ୍ପଦ । ଏଥିରେ ମହାଦେବ ତ ମହାଦେବ, ମହାଦେବଙ୍କ ବାପାଙ୍କର ମଧ୍ୟ ଅକଲ ଗୁଡୁମ ହେବ । ପ୍ରଥମେ ମୁଁ ଏହି ଶ୍ରେଣୀର ଜାତି ସଂସ୍କାରକ ଥିଲି । ବାପା ଉପସ୍ଥିତ ଥିଲାବେଳେ ସନ୍ଧ୍ୟା, ପୂଜା, ବୈଶ୍ୱଦେବ ଓ ନିରାମିଷ ହବିଷ୍ୟ ଛଡ଼ା ଅନ୍ୟ କଥା ନାହିଁ । ଏଣେ ବାପାଙ୍କୁ ବାଟେଇ ଦେବାକୁ ଯାଇ ତେଣୁ ଫେରି ସିଧା ସିଧା କେଲନର ହୋଟେଲକୁ ଅନୁକୂଳ । ଏଥିରେ ସୁବିଧା ଯେତିକି, ଅସୁବିଧା ସେତିକି । ସୁବିଧା ମଧ୍ୟରେ - ସବୁଠାରେ ନିର୍ଦ୍ୱନ୍ଦ୍ୱରେ ପ୍ରବେଶାଧିକାର । ଅସୁବିଧା ମଧ୍ୟରେ - ବଗୁଲିଆ ନିନ୍ଦୁକଙ୍କ ହାବୁଡ଼ରେ କ୍ୱଚିତ୍ ପଡ଼ିଗଲେ ଦୁର୍ନାମ ରଟନା । ଏହି ଦୁର୍ନାମ ରଟନାର ଆକ୍ରମଣରୁ ରକ୍ଷା ପାଇବାର ଏକମାତ୍ର ଉପାୟ-ଭୁରୁଡ଼ । କିନ୍ତୁ ଏ ଉପାୟଟା ସବୁବେଳେ ସୁବିଧାଜନକ ନୁହେଁ । ଆମ ଭଳିଆ ସ୍ୱନାମଧନ୍ୟ ପୁରୁଷଙ୍କର ଶତ୍ରୁ ଅନେକ । ସେହି ନିନ୍ଦୁକ ମସ୍କରାଗୁଡ଼ାକ ଗୋଟାଏ କଥା ଦେଖିଲେ ସହି ନ ପାରି ଦଶଟା କଥା ଲଗାଇ ଦାଣ୍ଡରେ କହି ବୁଲନ୍ତି । ଏଣେ ବରାବର ସବୁକଥା ଭୁରୁଡ଼ାଇଲା ବେଳକୁ ବଡ଼ ବଡ଼ ହାକିମ ହୁକୁମା, ଦାଢ଼ିଆ, ପାଚକ, ନମାଜ କଲା ବାଲା ପୂଜକ ଆସି ହଲପାନ ଇଜହାର କରିବେ, ହୁଏତ ମିଛୁଆ ହେବାକୁ ହେବ । ନଚେତ୍ ସମାଜରେ ଏକଘରକିଆ ହେବାକୁ ହେବ । ଏଥିରୁ ଜଗି ଦିହଛପା ଦେଇ କାମ କରିବାକୁ ଓସ୍ତାଦି ଦରକାର । ଉଦାହରଣସ୍ୱରୂପ ପାଠକମାନଙ୍କ ଆଗରେ ମୋର ବ୍ୟକ୍ତିଗତ ଅନୁଭବରୁ ଗୋଟାଏ କଥା ବୁଝାଇ ଦିଏଁ । ପିଲାଦିନେ ବାପା ସନ୍ଧ୍ୟା ବୈଶ୍ୱଦେବ ଖେଦା କଣ୍ଠସ୍ଥ କରାଉଥିଲା ବେଳେ କହିଥିଲେ ଯେ ଆମ୍ଭେମାନେ 'ଶାକ୍ତ' ଅର୍ଥାତ୍ ଶକ୍ତି ଉପାସକ । ଦୁର୍ଗା ଆମର ଇଷ୍ଟ ଦେବତା । ଦୁର୍ଗାଙ୍କ ସଙ୍ଗେ ସେହି ଥରେ ମୁଲାକାତ୍, ଆଉ ଥରେ ମୁଲାକାତ୍ ପୂଜ୍ୟପାଦ ଗୁରୁଦେବ ମାଣିଆବନ୍ଧି ଜଥା ହଳେ ପିନ୍ଧି କାନରେ 'ଓଁ' ଐଂ ହ୍ରୀଂ ଶ୍ରୀଂ ଉତ୍ତିଷ୍ଠପୁରୁଷି' ମନ୍ତ୍ର ଫୁଙ୍କିଲା ଦିନ । ତା'ପରେ 'ଶକ୍ତି'ଙ୍କ ସଙ୍ଗେ ଆମର ଆଉ ମୁଲାକାତ୍ ନଦାରଦ । ସଭ୍ୟ ସମାଜରେ ସଂସ୍କାରକ ଦଳ ପଚାରନ୍ତି, ''କିହେ ମହାପ୍ରଭୁ ! ତୁମେ ପରା ପ୍ରତିମା ପୂଜକ ?'' ତହିଁରୁ ଆମେ ଜବାବ ଦେଉଁ, ଶକ୍ତିର ଅର୍ଥ ପିତଳ ଦିଅଁ ଦେବତା ନୁହନ୍ତି । ଶକ୍ତିର ଆଧ୍ୟାତ୍ମିକ ଅର୍ଥ ବିଶ୍ୱଜନୟିତ୍ରୀ ଶକ୍ତି (Universal Generative Force) । ଆମେ ସେହି Generative Forceର ଉପାସକ । ଏଥିରୁ ଆମେ ଅଦ୍ୱୈତବାଦୀ ଥିବାର ପ୍ରମାଣ କରିନେଇ ଆଧ୍ୟାତ୍ମିକ ଶକ୍ତି ଉପାସନାରେ କେତେବେଳେ ହୋଟେଲରେ, କେତେବେଳେ Evening Party (ସନ୍ଧ୍ୟା ସମ୍ମିଳନୀ) ହିଲ୍ଲୋଳରେ, କେତେବେଳେ କ୍ଲବ ଘରେ ଦାଢ଼ିଆ ଖାନସମାଙ୍କ ମୁଦୁମନ୍ଦ ମଧୁର ସ୍ମିତ ବଦନ ପାଖରେ ଲାଗିଥାଉଁ । ଏହି ସମୟରେ ଭୁବନେଶ୍ୱର ମନ୍ଦିର କମିଟିର ଜନୈକ ମେମ୍ବର ପଦ ଖାଲି ହେଲା । ଭୁବନେଶ୍ୱର କମିଟିର ଯେ ମେମ୍ବର ହେବ, ଯେ ଲିଙ୍ଗରାଜ ମହାପ୍ରଭୁଙ୍କର

ମାର୍କାମରା କ୍ଷମତାପନ୍ନ କାରପରଦାଜ ହେବେ । ସେ ଫେର ତ ଲିଙ୍ଗରାଜ ମହାପ୍ରଭୁଙ୍କର କିମ୍ବା ତାଙ୍କ 'ଘରଆଡ଼'ଙ୍କର ଭକ୍ତ ହେବା ଦରକାର । ତାହା ନ ହେଲେ ଆଇନ ଅନୁସାରେ ଲିଙ୍ଗରାଜ ମହାପ୍ରଭୁଙ୍କର ପରିଛାପଣକୁ ପ୍ରବେଶାଧିକାର ହେବ ନାହିଁ । ଏଥିପାଇଁ ନଜିର ଖୋଜାଗଲା । ବାପା ସେତେବେଳକୁ ବାହାରିପଡ଼ି କହିଲେ, 'ଆରେ, ହଇ ହୋ ! ଆମେ ତ ଶାକ୍ତ । ଶାକ୍ତ କିଏ ? ଶୈବ କିଏ ? ସାଆନ୍ତାଣୀଙ୍କୁ ଯେ ସେବା କରେ, ସେ କ'ଣ ସାଆନ୍ତଙ୍କୁ ସେବା କରିବା ଯୋଗ୍ୟ ନୁହେଁ ?' ପିତାଙ୍କର ଏ ଆଦେଶ ଶୁଣି ଶକ୍ତିର ଆଧ୍ୟାତ୍ମିକ ଅର୍ଥ କେଉଁଆଡ଼େ ଉଭେଇ ଗଲା । ପିତୃଭକ୍ତି ଓ ପିତୃ ବାକ୍ୟରେ ଆସ୍ଥା ୧୦ ବର୍ଷ ହେଲା କେଉଁ କନ୍ଦିରେ ଉଭେଇ ଯାଇଥିଲେ । ବେଳ କାଳ ଉଣ୍ଡି ବାହାରି ପଡ଼ିଲେ । ଅତଏବ ଆଇନ ଅନୁସାରେ ମୁଁ ଶାକ୍ତ ଥିବାର ଓ ତଥା ଶିବ ଭକ୍ତ ଥିବାର ପ୍ରମାଣିତ ହେଲା ଏବଂ ମୁଁ ଭୁବନେଶ୍ୱର କମିଟିର ମେମ୍ବର ହେଲି । ଏହିପରି ଆମ ଘରେ ରାଧାକୃଷ୍ଣ ମୂର୍ତ୍ତି ପୁରୁଷାନୁକ୍ରମେ ପ୍ରତିଷ୍ଠିତ ଥାଇ ଆମ ଘରେ ପରମ୍ପରାକ୍ରମେ ଦୋଳଯାତ୍ରା ହେଉଥିବାର ପ୍ରମାଣିତ ହେଲା । ମୁଁ ସତ୍ୟବାଦୀ, ସାକ୍ଷୀ-ଗୋପାଳଙ୍କ ମନ୍ଦିର କମିଟିର ମେମ୍ବର ମୁକରର ହୋଇଗଲି । ସେଥିପାଇଁ କହୁଥିଲି ଯେ, ଆମ 'ପଇତା' 'ମାଳି' ହେଲା ହଜମୀ ଗୁଳା । ସେ ଖଣ୍ଡିମାନ ଥିବାରୁ ସମୟରେ ଭାରି କାମରେ ଆସେ । ଏ କମିଟିମାନଙ୍କରେ ମେମ୍ବର ହେବା କେବଳ ସେହି ହଜମୀ ଗୁଳା ପ୍ରସାଦରୁ ହୋଇଅଛି । ଏ ସବୁ ଅବଶ୍ୟ ଅନାହାରୀ କାର୍ଯ୍ୟ । ତେବେ 'ଯଥା ଦେହେ ତଥା ଦେବେ' - ଏହି ଉକ୍ତିଟାକୁ vice versa (ଆଣ୍ଠୁଆଡୁଆ) କରି ସମୟ ସମୟରେ କାମ ଚଳାଇ ନେବାକୁ ହୁଏ । ମହାପ୍ରଭୁ ଖାଇବେ । ଆମେ ତାଙ୍କର ଚଳନ୍ତି ପ୍ରତିମା ହୋଇ ଉପବାସ କରିବୁଁ ? ଉପବାସ ଯୋଗୁଁ ଦିହ ଦୁଃଖ ହେଲେ ଆମ କଥା ବୁଝିବ କିଏ ? ଏ ସତ୍ୟ ଠାକୁର ଅବଶ୍ୟ ଉପଲବ୍ଧି କରୁଅଛନ୍ତି । କିନ୍ତୁ ଏ କଳି ଯୁଗରେ ତାଙ୍କ ପାଟି କାଠୁଆ ବା ପଥୁରିଆ ପାଲଟି ଯିବାରୁ ସେ ଏ କଥା ଜନସାଧାରଣରେ ଘୋଷଣା କରିପାରୁ ନାହାନ୍ତି । ଏଥିର ଫଳ ଏହି ହେଉଛି ଯେ, ଠାକୁରଙ୍କ ବଗିଚାରୁ ପରିବାଟାଏ, ପୋଖରୀରୁ ମାଛଟାଏ, ତହବିଲରୁ ଆପଣା ଓକାଲତି ଫିସ୍ ପାଇଁ ମୋହର ଗୋଟାକେତେ, ତାଙ୍କ ଷ୍ଟେଟରେ କାମ କରିବାକୁ ଉପସ୍ଥିତ ହେବା ଉମେଦବାରଙ୍କ ଠାରୁ କିଛି ଅଣ୍ଡାସଲଖା ନେଲା ବେଳକୁ ଲୋକେ ସହି ନ ପାରି ଆମକୁ ପଦେ ଅଧେ ଝାଡ଼ିବାକୁ ଛାଡୁ ନାହାନ୍ତି । ଶେଷ କଥାଟା ଏହି ହେଲା ଯେ ଏହି 'ଜାତି'ର ବାନା ଧରି ଅନାହାରୀ ପଦଟିମାନ ଯୋଗାଡ଼ କରିବାରୁ ସରକାର ବାହାଦୁର ବୁଝିଲେ- ଦେଖ, ଗୋଟାଏ ମଣିଷ ଦେଶ ପାଇଁ, ଧର୍ମ ପାଇଁ କେତେ ତ୍ୟାଗ ସ୍ୱୀକାର କରୁଛି । କେତେ ଦାତବ୍ୟ କାର୍ଯ୍ୟରେ ଅବୈତନିକ ଭାବରେ ଯୋଗ ଦେଉଛି । ଖଇରାତି ସଦାବର୍ତ୍ତି ସମ୍ପତ୍ତିର ଜମାଖରଚ, ଆମର ଘରୋଇ ଜମାଖରଚ ଓ ଲୁହା ସିନ୍ଦୁକର ଚାବି ସରକାରଙ୍କ କଥା ଦୂରେ ଥାଉ, ସରକାରଙ୍କ ବାପାଙ୍କୁ ମଧ୍ୟ ବେମାଲୁମ । ଆମର ଏହି ସବୁ କାର୍ଯ୍ୟ ପାଇଁ ଦାତବ୍ୟ ଅନୁଷ୍ଠାନମାନଙ୍କରେ ବିଶେଷ ଆସ୍ଥା (The interest he

takes in charitable movements) ଥିବା ଯୋଗୁଁ ଲାଟ୍‌ସାହେବ ରାଜଦରବାରରେ ଆମକୁ ବେଲମ୍ବ ମୁଠୁଣିଏ ଓସାର ଖଣ୍ଡେ ସାର୍ଟିଫିକେଟ ବଢ଼ାଇ ଦେଲେ । ଏତିକିରେ ବିଚାରିଲି ଯେ, ଏଣିକି ସରକାରଙ୍କର ଠାର ଚିହ୍ନିତ 'ମାନ୍ୟ' ପାଇବା ସକାଶେ ମୋର ଏଇଟା ହେଲା ଛାଡ଼ ଚିଠି । ପାଠକ ଅବଧାନ ବିଚାରୁଥିବେ, ଏ ଲେଖକଟା ବାତୁଳ କି ଗପୁଡ଼ି । ତାହା ନ ହେଲେ ପ୍ରଥମେ ଶ୍ରେଣୀର ପ୍ରାଚ୍ୟ (ଜାତି) ସଂସ୍କାରକ କଥାରୁ ଆଣି ଲାଟସାହେବଙ୍କ (Certificate of Honour) ମହତ୍ତ୍ୱ ଛାଡ଼ଚିଠିଠାରେ ଲଗାଇଲାଣି । ବୁଝିବା ହେଲେକି ନା, ଅବତରଣିକା ସକାଶେ ଏଠାରେ ସୂଚିତ ହେଲା ମାତ୍ର । ମୋର କହିବାର ମତଲବ ଏହିକି, ପ୍ରାଚ୍ୟ ପଇତାରଖା ସଂସ୍କାର ନୀତି ଅନୁସରଣ କରି କରି ଆସି ଦେବ-ସେବା କମିଟି ମେମ୍ବର ପଦରେ ପହଞ୍ଚିଲି । ବର୍ତ୍ତମାନ ଦେଖୁଛି ଯେ ଦେବୋତ୍ତର ସମ୍ପତ୍ତି ଆଇନ (Religious Endowment Act) ଅନୁସାରେ ମେମ୍ବରୀ ପଦ ଜୀବନ ସ୍ଥାୟୀ - ଅର୍ଥାତ୍ ଥରେ ଆସନଟା ଜମି ବସିଲେ ସେଥିରୁ ଟଳିବା କାଠିକର ପାଠ । ଭିତରର ବିଶ୍ୱାସଟା ଯାହା ଥାଉ, ପରଦା ଅନ୍ତରାଳରେ ଯେତେ ଗୁଣୁଗୁଣୁ ଶବ୍ଦ ଶୁଭୁଥାଉ, ବାହାରେ 'ଜାତି'ର ଦ୍ୱାହି ଦେଇ ଗୋଟାଏ ଠାବ ମିଳିଲା । ତତ୍‌ପରେ ଆରମ୍ଭ ହେଲା ଦ୍ୱିତୀୟ ସୋପାନ । ଅର୍ଥାତ୍ ପାଶ୍ଚାତ୍ୟ ଜାତି ସଂସ୍କାର । ସେଥି ନିମନ୍ତେ ଆଉ ଏଣିକି ଲୁଚାଚୋରା କିଛି କରିବାକୁ ହେଲା ନାହିଁ । ସଫା ସଫା ବିଦ୍ ବଜାରରେ ସଂସ୍କାର ଆରମ୍ଭ କଲି । ବକ୍ତୃତା ଦ୍ୱାରା ଦେଖାଇ ଦେଲି ଯେ ଯେତେବେଳେ ଜଗନ୍ନାଥ ମ[illegible]ପ୍ରଭୁଙ୍କ ମନ୍ଦିରରେ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରସାଦରେ ଜାତି ଭେଦର ବିଚାର ନାହିଁ, ଜଗନ୍ନାଥ ସର୍ବ ଘଟରେ ସର୍ବ ଠାବରେ ବିରାଜମାନ ଥିବା ସ୍ଥଳରେ ଅନ୍ୟତ୍ର କାହିଁକି ଜାତିଭେଦଟା ରହିବ ? ସେଥିର ଅୟମାରମ୍ଭ ଜାତି ନିର୍ବିଶେଷରେ ଏକ ପଂକ୍ତିରେ ଭୋଜନ, ତତ୍‌ପରେ ଏକାସନରେ, ତତ୍‌ପରେ ଏକ ପାତ୍ରରେ ଭୋଜନ ପାନ । 'ଜାତିଭେଦଟା' ଥିବାରୁ ବିବାହ ଆଦିରେ ନାନା ବିଭ୍ରାଟ ଘଟୁଅଛି । ବିଭିନ୍ନ ଜାତି ମଧ୍ୟରେ ବୈବାହିକ ସମ୍ବନ୍ଧ ପ୍ରସ୍ତାବଟା ମୋ ମନଗଢ଼ା କଥା ନୁହେଁ । ଏଥିରେ ଅଷ୍ଟକୌଶଳୀ ନଜିର ରହିଅଛି । ଚାଣକ୍ୟଙ୍କର 'ସ୍ତ୍ରୀରତ୍ନଂ ଦୁଷ୍କୁଳାଦପି' ଏ ନଜିରଟା ଚତୁର୍ଥ ସଂସ୍କରଣ ବେଳେ ହାବୁଡ଼ରେ ପଡ଼ିଥିଲେ ଆମ ଭିକାରିଭାଇନାଙ୍କ ସଙ୍ଗେ ଗୋଟିଏ ଅନ୍ୟ ଜାତୀୟ ବିଧବା ଆଣି ଥୁଆଥୋଇ କରି ହେଇଥାନ୍ତା । ଗତସ୍ୟ ଶୋଚନା ନାସ୍ତି । ବର୍ତ୍ତମାନ ବୈବାହିକ ସଂସ୍କାର ସମ୍ବନ୍ଧରେ ଏତିକି ବକ୍ତବ୍ୟ ଯେ ଦାରିଦ୍ରାଣାଂ ମନୋରଥାଃ ଓ ବଣର ମାଳତୀ ମଧ୍ୟରେ ତଫାତ୍ ଅତି କମ୍ । ନଚେତ୍ ଏକଶାସନାଧୀନରେ ଏକ ଧର୍ମ ଆଉ ଏକ ଦେଶକୁ ଯାଇ ଆଉ ଏକ ଧର୍ମ ଓ ସାମାଜିକ ପନ୍ଥା ଅବଲମ୍ବନ କରି ଆଉ ଏକ କିସମର ବ୍ୟବସ୍ଥା କରି ପକାନ୍ତି । କିନ୍ତୁ ସେ ତାକତ୍ ନାହିଁ ବୋଲି ସେ କଳ୍ପନାରେ ଜଳାଞ୍ଜଳି ଦେବାକୁ ହେଲା - ମୋର ସିନା ଧନ ନାହିଁ, ମାନ ନାହିଁ, ସ୍ଥାନ ନାହିଁ, ଜନ ନାହିଁ, ଜ୍ଞାନ ନାହିଁ; କିନ୍ତୁ ମୋହରି ମାନସିକ ଅବସ୍ଥାପନ୍ନ କେହି କେହି ସୁପୁତ୍ର ଆମ ଦେଶରେ ଥିଲେ ବିବାହ ସଂସ୍କାରର ଏ ଇଲାକାଟା ସରଜମିନ ତଦନ୍ତ କରିଥାଇପାରନ୍ତି । ଫଳେନ ପରିଚୟତେ । କିନ୍ତୁ ଆମ ଜାତିର ମାନସିକ ଅବଚେତନ

ଅବସ୍ଥା ଦୁଷ୍କର । ଏପରି ଗୋଟାଏ ଗୋଟାଏ ହରକିସମ୍ ଘଟିତ ବିବାହ ପନ୍ଥା ରହିବା ଆବଶ୍ୟକ । ତାହା ନ ହେଲେ ସେ ପୁରୁଣା କଥାଗୁଡ଼ାକ ରୋମନ୍ଥନ କରିବାକୁ ଭଲ ଲାଗେ ନାହିଁ ।

ତତ୍‌ପରେ ଅବତାର - ଷଷ୍ଠ ସଂସ୍କରଣ - ସାହିତ୍ୟ ସଂସ୍କାରକ । ଅନେକ ଚିନ୍ତା ଓ ତର୍କ ବିତର୍କ ପରେ ସ୍ଥିର କଲି ଯେ ଓଡ଼ିଆ ଭାଷାରେ ସାହିତ୍ୟ ପଦବାଚ୍ୟ କିଛି ଜିନିଷ ନାହିଁ । ଅତଏବ ଗୋଟାଏ ନୂଆ ସାହିତ୍ୟ ସୃଷ୍ଟି କରିବାକୁ ହେବ । ନୂଆ ସାହିତ୍ୟ କରିବାକୁ ହେଲେ କିଛି ଅଦ୍ଭୁତ ତାମସା ନ ଦେଖାଇଲେ ଲୋକେ ପୁରାତନ ମରହଛିଆ ପୋଥି ଛାଡ଼ି ଆମ ସାହିତ୍ୟକୁ ରଖିବେ କିଆଁ । ଏଥିପାଇଁ ଦିନାକେତେ ଭଞ୍ଜୀୟ ଆନ୍ଦୋଳନ ଓ ବିଚ୍ଛୁଳି, ଇନ୍ଦ୍ରଧନୁ ଝଟକରେ ପଶିଲି ଓ ବେଳକାଳ ଉଣ୍ଡି ଆଧୁନିକ 'ଉପାଧି' ବିଭ୍ରାଟ ବିରୋଧରେ ଅସ୍ତ୍ର ଧାରଣ କରି ଉତ୍କଳ ସାହିତ୍ୟରେ 'ଶିକାଙ୍କ ଉପରେ ଘଡ଼ିଙ୍କ ଭିତରେ' ଯୁଗର ପରିବର୍ତ୍ତନ କରି କାହାଣୀ, ନାନାବାୟା ଗୀତ ଆଦି ଆରମ୍ଭ କରି ଦେଖିଲି ଯେ ବଡ଼ବଡ଼ୁଆରୁ ଜଣେକେତେ ମୋ କୁଡ଼ିଆ ପର୍ଯ୍ୟନ୍ତ ଆସି ମୋ ଉପରେ ଆଶୀର୍ବାଦ ମୁଣି ଝାଡ଼ିଦେଇଗଲେ । ସେଥିରୁ ମନଟାକୁ ଲଙ୍ଗଳ ଦଉଡ଼ି ପାଇଲା ନାହିଁ - ସାହିତ୍ୟ କ୍ଷେତ୍ରରେ ଗୋଟାଏ ନାମ ହୋଇଗଲା । ତତ୍‌ପରେ ସଙ୍ଗେ ସଙ୍ଗେ ଧରିଲି ଭାଷା ସଂସ୍କାର । ଅର୍ଥାତ୍ ଓଡ଼ିଆ ଭାଷାଟା ବୁଢ଼ାବାପାଙ୍କ ଅମଳରୁ ସଂସ୍କୃତମୂଳକ ଥିଲା । ତାକୁ ବଦଳାଇ ଓଡ଼ିଆ ଭାଷାକୁ ହିନ୍ଦୁସ୍ଥାନୀମୂଳକ, ମରହଟ୍ଟୀମୂଳକ, ତେଲଙ୍ଗୀମୂଳକ ଓ ଇଂରେଜୀମୂଳକ କରିବାକୁ ବସିଲି ଓ ଦରଖଣ୍ଡିଆ ଭାଷାଟା ଭାରି ମଧୁର ଲାଗିଲା । ଆମ ବାପା ସୁଦ୍ଧା ମରହଟ୍ଟୀ ଭାଷାର ଧାର ଧାରନ୍ତି ନାହିଁ । କିନ୍ତୁ ଆମ ଭାଷା ସଂସ୍କାରରେ ସବୁ ଭାଷାରେ ମୋର ପାଣ୍ଡିତ୍ୟ ଅଛି ବୋଲି ପ୍ରକାଶ କରି ଦୁନିଆରେ ବାହାବା ନେଲି ।

ତତ୍‌ପରେ ହାଲକୁ ଲିପି ସଂସ୍କାରରେ ହାତ ଦେଇ ଯେଉଁ କସରତ କରିଅଛି, ତାହା ଦୁନିଆର ହାଲଚାଲ ପାଠକମାନେ ଗତ ସଂଖ୍ୟା ସାହିତ୍ୟରେ ଥୋଡ଼ା ଥୋଡ଼ା ମାଲୁମ କରିଅଛନ୍ତି । ବର୍ତ୍ତମାନ କଳ୍ପନାଟା ଟିକିଏ ବିଶେଷ ଗାଢ଼ ହୋଇ ଯାଇଅଛି । ଭାବୁଛି ଯେ ଓଡ଼ିଶାରେ ଆଉ କି ପ୍ରକାର ନାମ କରିବି - ଆଇନ୍ ବ୍ୟବସାୟର ବାନା ଧରିଛି । ବିଚାରୁଛି ଯେ ଓଡ଼ିଶାରେ ଗୋଟାଏ ଆଇନ୍ ସଂସ୍କାର ଆରମ୍ଭ କରି ବ୍ୟବସାୟର ଉନ୍ନତି କରିନେବି । ଏ ସଂସ୍କାରଟା କଳ୍ପନାଧୀନ । ଏଥିନିମନ୍ତେ ଅଗତ୍ୟା ପାଠକ ମଉସୁଫମାନେ କିଛିଦିନ ଅପେକ୍ଷା କରିବାକୁ ଅବଧାନ କହିବେ - ମାତାଙ୍କୁ ସଂସ୍କାର କଲି - ଭାଇଭଉଣୀ କେତୋଟିଙ୍କୁ ସଂସ୍କାର କଲି । ଭାଷା, ସାହିତ୍ୟ, ଲିପି ସବୁ ଅଚ୍ଛ ବହୁତ ସଂସ୍କାର କଲି । ଏଣିକି ସଂସ୍କାରଟା ଚଳିବ ଦେଶର ଆଇନ କାନୁନ ଉପରେ - ଅତଏବ ଆଗାମୀ ସଂଖ୍ୟାକୁ ଶୁଣିବାକୁ ସାବଧାନ ମଣିମା ।

ଉତ୍କଳ ସାହିତ୍ୟ/୧୮ଶ ଭାଗ/୧ମ ସଂଖ୍ୟା/୧୩୨୧ ସାଲ ।

## ।। ତେପନ ।।

ପୂର୍ବଥରକ କହିଥିଲି ଯେ, ମୋର ଶେଷ ସଂସ୍କରଣଟା ପାଠକମାନଙ୍କୁ ଦେଖାଇବି । ସେହିଟା ହେଲା ଆଇନ୍ ସଂସ୍କରଣ । ଉତ୍କଳଭୂମିଟି ବର୍ତ୍ତମାନ ମଣାଣିରେ ଡାହାଣୀ ଚିରଗୁଣୀ ଚେଇଁଲା ଭଳିଆ ଚେଇଁ ଉଠୁଛି । ଏପରି ସ୍ଥଳରେ ଏ ନବୋନ୍ନତ ଦେଶ ପାଇଁ ଆଉ ମରହଟ୍ଟୀ ଆଇନ୍‌ଗୁଡ଼ାକ ଚଳିବ ନାହିଁ, ଏଥିଯୋଗୁଁ ଖାସ୍ ଉତ୍କଳ ପାଇଁ ଖାସ୍ ଉତ୍କଳୀୟ ଆଇନ୍ ଦରକାର । ସେଗୁଡ଼ିକ ଆଜିଠାରୁ ପାଣ୍ଡୁଲିପି, ଧୂସରଲିପି ଓ ପିଙ୍ଗଳଲିପି ଆଦି କରି ରଖିଥିଲେ ଖୋଦ୍ ଜଗନ୍ନାଥଙ୍କ ଯେବେ ଲାଟ୍‌ସାହେବଙ୍କ ବ୍ୟବସ୍ଥାପକସଭାରେ ଆରାମଚଉକିରେ ଘୁମୁରିବାକୁ ମତେ ଦିନେ ସୁବିଧା ମିଳିବ, ତେବେ ଏ ପାଣ୍ଡୁଲିପିଗୁଡ଼ାକ ନେଇ ନିଜର କସରତ ଦେଖାଇ ସରକାରଙ୍କଠାରୁ ଖେତାବ ପାଇପାରିବି । ଏଣେ ଅଣବାବୁଆ (ନୋଟ୍ - ପାଠକ ଅବଧାନ ! 'ଅଣବାବୁଆ ଦେଶର ଅର୍ଥ, ଯେଉଁ ଦେଶରେ ବାବୁ ନାହାନ୍ତି, ଏ ବିଶେଷଣଟା ଓଡ଼ିଆ କୁଲିଙ୍କ ଦେଶ' ପ୍ରବାଦ ଉପରେ ରଚିତ ହେଲା) ଦେଶର Uncrowned King (ପାଳଚୁଣ୍ଡା ରାଜା) ଧ୍ୱଜା ଉଡ଼ାଇ ପାରିବି; କିନ୍ତୁ ପୂର୍ବରୁ ଆପଣମାନଙ୍କୁ କହିଅଛି ଯେ, ମୋ ଭାବଗୁଡ଼ାକ ବର୍ତ୍ତମାନ ମୋ ମସ୍ତିଷ୍କରେ ଆକୁଳ ଥାପୁଲ ହେଉଛି । ସେଗୁଡ଼ାକ ବସି ଯାଇ ନାହିଁ, ଏପରି ସ୍ଥଳରେ ସେଗୁଡ଼ାକ ଗାଳି ପକାଇଲେ କାଳେ ଇଡ଼ି ହୋଇ ନାନାଦି ଜନ୍ତୁଙ୍କ ପୋଷାକ ପରିଚ୍ଛଦରେ ଦାଗ ଲାଗିଯିବ । ଏହି ଭୟରେ ସେଗୁଡ଼ାକ ପଦାକୁ ବାହାର କରିବାକୁ ମୁଁ ଭାବି ନାରାଜ ହେଲି । କିନ୍ତୁ ଏଠାକୁ ଆସିବା ଦିନଠାରୁ ମୁଁ ଏଠାରେ ଯେତେଗୁଡ଼ିଏ ଅକୃତ୍ରିମ ବନ୍ଧୁଙ୍କ ସଙ୍ଗେ ଦୋସ୍ତି - ମୂଳଦୁଆ ଓ ମହାପ୍ରସାଦ-ନିର୍ବନ୍ଧ ବାନ୍ଧି ସାରିଲିଣି, ସେମାନେ ସନ୍ଧ୍ୟା ବୈଠକ ଚଙ୍ଗି ମାଡ଼ (ପାଠକ ଅବଧାନେ ଓ ବନ୍ଧୁ ସାଆନ୍ତମାନେ ଚଙ୍ଗି ମାଡ଼ଟା ଆଉ କିଛି ନୁହେଁ, ଆପଣମାନେ ସନ୍ଧ୍ୟାବେଳେ ନିଜ ନିଜ ଜାଗା ଟୁଙ୍ଗି ଓ ବୈଠକ ବେଳେ ଯେଉଁ ଲମ୍ୱଡ଼ଟାମାନ ଧରି ଗଦ ଗଦ କରି ଟାଣି ଧୂମପାନ କରନ୍ତି, ସେଗୁଡ଼ାକୁ ବାହୁଣିଆ ଲବଜରେ ଚଙ୍ଗି ମାଡ଼ ବୋଲି ବୋଲାଗଲା । ଚଙ୍ଗିକୁ ବୋତଲର ଚୁଙ୍ଗି ବୋଲି ଧରି ନେବେ ନାହିଁ, କ୍ଷମା କରିବେ ।) ବେଳେ ମୋର ଥଲଥଲିଆ କଥାଗୁଡ଼ାକ ଶୁଣି ଏଡ଼େ ଖୁସି ହୋଇଗଲେ ଯେ, ସେଗୁଡ଼ିକ ଅତି ଶୀଘ୍ର ଦେଶରେ ପ୍ରକାଶିତ ଓ ପ୍ରକଟିତ ନ ହେଲେ ଉତ୍କଳଟା ଝଡ଼ରେ ଡୁବିଯିବ, ଏହି ଆଶଙ୍କା କରିବାରୁ ଅଗତ୍ୟା ସେମାନଙ୍କ ପ୍ରସ୍ତାବରେ ବାଧ ହୋଇ ମୁଁ ମୋ ମସ୍ତିଷ୍କକୁ ସଜା ଦେବାକୁ ମନ ବଳାଇଲି ।

ବର୍ତ୍ତମାନ ଉତ୍କଳଭାଷୀ ଅଞ୍ଚଳରେ ତୀବ୍ର ଆନ୍ଦୋଳନ (ଅବଶ୍ୟ ଓଡ଼ଶୀ ଭାଷାରେ 'ତୀବ୍ର' ଶବ୍ଦର ଅର୍ଥ ଯେତେଦୂର କଡ଼ା ହୋଇପାରେ ସେତିକି ଦୂର and no further ଏବଂ ତହୁଁ ଅଧିକା ନୁହେଁ) ଲାଗିଅଛି ଯେ, ସମସ୍ତ ଉତ୍କଳଭାଷୀ ଅଞ୍ଚଳ ଏକ ରାଜନୀତିକ ଶାସନର ଅଧୀନ ହେଉ ଓ ଆମ ଦେଶର ହାଓଆ ଗୁଣରୁ ଏ ପ୍ରସ୍ତାବଟା ଯେତେବେଳେ କାର୍ଯ୍ୟରେ ପରିଣତ ହେବ ସେତେବେଳକୁ ନୂତନ ଶାସନ ବିଭାଗ ନିମନ୍ତେ ନୂତନ ଆଇନ

ପଦ୍ଧତି ଦରକାର ହେବ । ସେଗୁଡ଼ାକ ଆଗରୁ ଆନ୍ଦୋଳନ କରି ଠିକ୍‌ଠାକ୍ କରି ରଖିଲେ ଏହା ବହୁଦର୍ଶିତାର କାର୍ଯ୍ୟ ହେବ । ଏତେବେଳେ ସିନା ମୁଁ ଓ ମୋ ବୈଠକଖାନା ବନ୍ଧୁମାନେ କେବଳ ଏ ଦୂରଦର୍ଶିତାର ଅର୍ଥ ବୁଝିବୁଁ; କିନ୍ତୁ ଉତ୍କଳର ଭବିଷ୍ୟତ୍ ଇତିହାସକାର ମୋ ମନଟାକୁ ଇତିହାସ ବୁଢ଼ୁଲା ଉପରେ ଥନଫଡ଼ା ଲୁଗା ଉପରେ ମାର୍କା ମାରିବା ଭଳିଆ ମାରିଦେବେ ।

ଏ ସମ୍ବନ୍ଧରେ ପ୍ରଥମ ବିଚାର୍ଯ୍ୟ ଏହି ଯେ ଏତେବେଳେ ସିନା ଖଣ୍ଡ କେତେ ଚାକିରି ଏକଚେଟିଆ କରିବା ବୋଲି ମୋ ଭଳିଆ ଗୋଟାକେତେ ଡାକ ପକାଇଛୁଁ; କିନ୍ତୁ ସବୁ ଉତ୍କଳଭାଷୀ ପ୍ରଦେଶଯାକ ମିଶିଗଲେ ବର୍ତ୍ତମାନ 'Orissa for Oriyas' (ଓଡ଼ିଆଙ୍କ ପାଇଁ ଓଡ଼ିଶା) ବୋଲି ଯେପରି ଡାକ କୁହାଟ ଶୁଣୁଛୁ, ସେତେବେଳେ ମନୁଷ୍ୟେତର ଉନ୍ନତ ଜନ୍ତୁମାନଙ୍କ ମଧ୍ୟରେ, 'Cuttack for Cuttackees' (କଟକିଆଙ୍କ ପାଇଁ କଟକ) 'Puri for Purias' (ପୁରିଆଙ୍କ ପାଇଁ ପୁରୀ) 'Sambalpur for Sambalpurees' (ସମ୍ବଲପୁରିଆଙ୍କ ପାଇଁ ସମ୍ବଲପୁର) 'Gurjat for Gurjatees' (ଗଡ଼ଜାତିଆଙ୍କ ପାଇଁ ଗଡ଼ଜାତ) 'Jungle for Junglees' (ଜଙ୍ଗଲିଆଙ୍କ ପାଇଁ ଜଙ୍ଗଲ) 'Water for fishes' (ମାଛଙ୍କ ପାଇଁ ପାଣି) ଏହିସବୁ ରୋଳ ଉଠିବ । ଅତଏବ ଆଜିଠାରୁ ଏସବୁ ନିମନ୍ତେ ଆସ୍ଥାନ ସଜାଡ଼ି ରଖିବାର ନାମ ମନୁଷ୍ୟତା । ଫଳତଃ ଆମ ଜାଗା ଘର ବୈଠକରେ ଏହି କଥା ସ୍ଥିର ହେଲା ଯେ ପ୍ରଥମେ ପରୀକ୍ଷାସ୍ୱରୂପ ବିଭିନ୍ନ ଅଞ୍ଚଳର ମନୁଷ୍ୟେତର ଜନ୍ତୁମାନଙ୍କ ପାଇଁ ବିଭିନ୍ନ ଆଇନ୍ ପ୍ରଣୟନ କରିବାକୁ ହେବ ଓ ସେ ଆଇନ୍‌ଗୁଡ଼ିକ ପରୀକ୍ଷିତ ହୋଇ ସଫଳ ହେବାର ଦେଖାଗଲେ ମନୁଷ୍ୟଙ୍କ ପାଇଁ ଆଇନ୍ ପ୍ରଣୀତ ହୋଇ ପ୍ରକଟିତ ହେବ । କାଳେ ଉତ୍କଳଟା ଏକଶାସନାଧୀନ ହେବା ପୂର୍ବରୁ ମୋର ଭଲମନ୍ଦ ହୋଇଯିବ, ତାହାହେଲେ ମୋର ବର୍ବର ମସ୍ତିଷ୍କର ବାମ୍ଫୁଆଣିର ଫଳ ପୁରୀବାସୀ ଜନ୍ତୁ ପାଇବେ ନାହିଁ । ଏଥିପାଇଁ ବନ୍ଧୁମାନଙ୍କର ଫରମାସ ଯେ, ଆଗେ ମୁଁ ପୁରୀ ପାଇଁ ବ୍ୟବସ୍ଥାପତ୍ର ଟିପେ । ତେଣିକି ଯେବେ ବଡ଼ଠାକୁରେ ଆୟୁଷ ଦିଅନ୍ତି, ତାହାହେଲେ ଅନ୍ୟାନ୍ୟ ଅଞ୍ଚଳ ଓ ପ୍ରତ୍ୟାଞ୍ଚଳ ଓ ମାନବ ସମାଜ ପାଇଁ ସ୍ୱତନ୍ତ୍ର ବିଧି ଲିପିବଦ୍ଧ କରାଯିବ, ନଚେତ୍ ଏତିକି । ପ୍ରସ୍ତାବଟା କିନ୍ତୁ ମୋତେ ଭାରି ରୁଚିକର ଲାଗିଲା । ଭାବିଲି, ପୁରୀକୁ ଆସିବା ଦିନଠାରୁ ମୁଁ ପୁରୀର ଦାନାରେ, ପୁରୀବାସୀଙ୍କ ଖୋଷଣି ଫିଟା ଧନରେ, ପୁରୀ ବନ୍ଧୁଙ୍କ ସ୍ନେହାତିଶଯ୍ୟରେ ଯଥାକ୍ରମେ ଉଦର, ବାକ୍‌ସ ଓ ହୃଦୟକୁ ପୂର୍ଣ୍ଣ କରୁଅଛି; ପୁଣି ଜଗନ୍ନାଥଙ୍କ ପ୍ରସାଦ, ଯାତ୍ରା ଓ ଚନ୍ଦନରେ ଏଠାରେ ଯଥାକ୍ରମେ ପେଟ, ସମୟ ଓ ଚିତା କାଟୁଅଛି । ଏପରି ସ୍ଥଳରେ ମୋ କଲମ, ବୁଦ୍ଧି ଓ କଳ୍ପନା ଉପରେ ପୁରୀର ଯଥାକ୍ରମେ ବଇନା, ଲାଗୁଆ ଓ ଦାବୀ ସର୍ବାଗ୍ରଗଣ୍ୟ । ଅତଏବ ପ୍ରଥମ ଉଚ୍ଛ୍ୱାସ ପୁରୀର ଇତିହାସ ହାଲଚାଲ ଓ ଭବିଷ୍ୟତ୍ ପ୍ରତି ଦୃଷ୍ଟି ରଖି ପୁରୀ ନିମନ୍ତେ ଆଇନ୍, ଉପବିଧି ଓ ଅପବିଧି ପ୍ରଣୟନ । ତେବେ ସ୍ମୃତିକାରମାନେ ଯେପରି ସ୍ମୃତି ଓ

ସଂହିତାରେ ଆପଣାର ବୁଦ୍ଧି ଦେଖାଇ ମଝିରେ ଗୋଟାଏ ଗୋଟାଏ ଟୀକା, ଟିପ୍ପଣୀ ଓ ଫେଉ ମାରି ଦିଅନ୍ତି, ପାଠକମାନେ ଏ ଆଇନରେ ମଝିରେ ମଝିରେ ସେହି ଶ୍ରେଣୀର ଗୋଟାଏ ଗୋଟାଏ କାନୁନ୍, ଉପବିଧି ଓ ଅପବିଧି ପାଇବେ ଓ ସେଗୁଡ଼ାକ ଯଥାକ୍ରମେ ଆର୍ଷ, ବହୁମୂତ୍ର ଓ ସାନ୍ନିପାତିକ ପ୍ରୟୋଗ ବୋଲି ଧରି ନେବାକୁ ହେବ । (ପାଠକ ଅବଧାନ ! ଆଜିକାଲି ଇଂରେଜୀ ସଙ୍ଗେ ପଟ ପକାଇ ଆପଣମାନଙ୍କ ସଙ୍ଗେ କଥା କହିବା ଦରକାର । ସେଥିପାଇଁ ବୁଝିବେ, ଆଇନ୍ ହେଲା ଇଂରେଜୀରେ Law ବା 'ଲ', କାନୁନ୍ ହେଲା Regulation, ରେଗୁଲେସନ୍ ଉପବିଧି ହେଲା By-law, 'ବାଇ ଲ' ଉପବିଧି ହେଲା - By-Stroke (ବାଇ ଷ୍ଟ୍ରୋକ୍) ଅତଏବ ଆୟମାରମ୍ଭଃ -

Model Bye-laws for the Saluation of the animals of Shreekhetra.

ଏ ଆଇନ୍‌କୁ ଶ୍ରୀକ୍ଷେତ୍ର ପିଙ୍ଗଳବିଧି (ସତର ସାଲର ୧୫୨ ବାଦଶହେ ଆଇନ୍) ବୋଲାଯିବ ।

(ନୋଟ୍ - ଏଠାରେ ଅନ୍ୟ ସନ ଓ ଅନ୍ୟ ସଂଖ୍ୟା ନ ଦିଆଯାଇ ମାଳିକାର ଡାକ 'ତରକି ଥିବୁ ତେରକୁ ଚଉଦ ପନ୍ଦର କେହି ନ ଥିବେ, ସତ ଉପୁଯିବ ସତରକୁ' ଅନୁସାରେ ସତର ସାଲ କରାଗଲା ଓ ମରହଟ୍ଟୀମାନଙ୍କ କଥିତ 'ଉଣେଇଶ ଅଷ୍ଟା ବାନା ଶହେ', ହିସାବ ଅନୁସାରେ ଏ ବିଧିର ସଂଖ୍ୟା ୧୫୨ ରଖାଗଲା । Preamble - ଆକ୍ରମଣିକା -

ଯେହେତୁ ଶାସ୍ତ୍ରୋକ୍ତ ଶ୍ରୀକ୍ଷେତ୍ର ଅର୍ଥାତ୍ ଶଙ୍ଖନାଭିମଣ୍ଡଳ ମଧ୍ୟକୁ ଘଟନାଚକ୍ରରେ ଆସୁଥିବା ସରକାରୀ, ବେସରକାରୀ ଓ ଅର୍ଦ୍ଧ ସରକାରୀ ମନୁଷ୍ୟେତର ଜନ୍ତୁମାନଙ୍କର ଅପବର୍ଗଟା ଉଦ୍ଧାର ନିମନ୍ତେ ଗୋଟିଏ ସାନ୍ନିପାତିକ ବିଧି ପ୍ରସ୍ତୁତ ହେବା ବାଞ୍ଛନୀୟ, ଅତଏବ ନିମ୍ନଲିଖିତମତେ ବ୍ୟବସ୍ଥା କରାଗଲା - (ନୋଟ୍ - ଗତ କେତେକ ଦିନ ହେଲା ଏହି କ୍ଷେତ୍ରରୁ ପଶୁବଧଶାଳା, (କଂସାଇଖାନା) ଉଠାଇ ନେଇ ଶଙ୍ଖନାଭିମଣ୍ଡଳର ବାହାରେ ତାହା ସ୍ଥାପନ କରିବା ନିମନ୍ତେ ଗଭର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା ଓ ଆନ୍ଦୋଳନ ଆଦି ହୋଇଥିଲା ସେଥିରେ ସମସ୍ତ ସନାତନୀ ଧର୍ମାବଲମ୍ବୀ ବ୍ୟକ୍ତି ଜୋର୍ ଦେଇଥିବାରୁ ଶଙ୍ଖନାଭିମଣ୍ଡଳର ଶାସ୍ତ୍ରୀୟ ବା ଅଶାସ୍ତ୍ରୀୟ ବ୍ୟାଖ୍ୟାରୁ ଏଠାରେ ଲେଖନକାର ବିରତ ହେଲା, ତେବେ ତହିଁର ସୀମା ଯଥାସ୍ଥାନରେ ସାମାନ୍ୟ ରୂପେ ଡିଆଯିବ ।

ଉଦାହରଣ - ସରକାରୀ କାର୍ଯ୍ୟରେ ଆସୁଥିବା ଜନ୍ତୁ, ଯଥା - ଘୋଡ଼ା, ହାତୀ, ଶଗଡ଼, ବଳଦ ଇତ୍ୟାଦି । ବେସରକାରୀ କାର୍ଯ୍ୟରେ ଆସୁଥିବା ଜନ୍ତୁ - ବାଘ, ବିଲୁଆ, ସାପ ଇତ୍ୟାଦି - ଅର୍ଦ୍ଧ ସରକାରୀ କାର୍ଯ୍ୟରେ ଆସୁଥିବା ଛାରପୋକ, ମଶା, ଉଇ, ପିମ୍ପୁଡ଼ି ଇତ୍ୟାଦି ।

୧. ଏ ଆଇନର ନାମ ଶ୍ରୀକ୍ଷେତ୍ର ପିଙ୍ଗଳବିଧି ବୋଲାଯିବ ଓ ଯେଉଁ ସ୍ଥାନମାନ ପୂର୍ବରୁ ଶଙ୍ଖନାଭିମଣ୍ଡଳ ଥିଲା କିମ୍ବା ବର୍ତ୍ତମାନ ଅଛି କିମ୍ବା ଭବିଷ୍ୟତ୍‌ରେ ମୁକ୍ତିମଣ୍ଡପ

ପଣ୍ଡିତ ସଭା ଓ ସନାତନ ଧର୍ମସଭାର ସଭ୍ୟମାନଙ୍କଦ୍ୱାରା କିମ୍ବା ବନମାଳୀ ଅବଧାନଙ୍କ ମାଳିକାଦ୍ୱାରା ସେମାନଙ୍କର ଆକ୍ରାନ୍ତ ଇଲାକା ବୋଲି ସ୍ଥିରୀକୃତ ହେବ, ସେହି ସ୍ଥାନମାନଙ୍କରେ ପ୍ରବର୍ତ୍ତନ ଏବଂ ଏହି ଆଇନ୍ ନୂତନ ଉତ୍କଳ ବିଭାଗରେ ସତର ସାଲର ଅମୃତଯୋଗ ସମୟରେ ବଳବତ୍ ଓ ଫଳବତ୍ ହେବ । (ନୋଟ୍ - ପାଠକମାନଙ୍କ ସୁବିଧା ପାଇଁ ଲେଖନକାର ଆପଣାର କାର୍ଯ୍ୟ ଛାଡ଼ି ସେମାନଙ୍କ ନିମନ୍ତେ ସ୍ୱାର୍ଥତ୍ୟାଗ କରି Pooree District Gazetter (ପୁରୀ ସରକାରୀ ସମ୍ବାଦ ପୁସ୍ତକ) ତଲାସ କରି ତହିଁରେ ନିର୍ଦ୍ଦିଷ୍ଟ ଥିବା ଶ୍ରୀକ୍ଷେତ୍ରର ଚଉହଦି ଏଠାରେ ଉଲ୍ଲେଖ କଲା ଓ ଏ ଆଇନ୍ ସେହି ସୀମାକୁ ଟପିବ ନାହିଁ ।

ପଶ୍ଚିମେ - ଲୋକନାଥ, ପୂର୍ବେ - ବାଲେଶ୍ୱର ।

ଦକ୍ଷିଣେ - ସ୍ୱର୍ଗଦ୍ୱାର, ଉତ୍ତର ପୂର୍ବେ - ମାଟିଆ ନଈ ।

୨. ଏହି ଆଇନ୍ ପୁରୀ ଅଞ୍ଚଳର ମନୁଷ୍ୟେତର ଜନ୍ତୁମାନଙ୍କ ପ୍ରତି - ସେମାନେ ନୂତନ ଉତ୍କଳ ବିଭାଗର ଯେଉଁଠି ଇଚ୍ଛା ସେ ସ୍ଥାନରେ ଥିବେ ସେହି ସ୍ଥାନରେ ସ୍ୱକୀୟ ବଳରେ ଖଟିବ ଏବଂ ସେମାନେ ଅନ୍ୟ କୌଣସି ଆଇନ୍‌ର ବଶବର୍ତ୍ତୀ ହୋଇପାରିବେ ନାହିଁ । ସେମାନେ ଏହି ଆଇନ୍ ଅନୁସାରେ ଲାଳିତ, ପାଳିତ, ଚାଳିତ, ଜଳିତ, ଗଳିତ ଓ ପଳିତ ହେବେ ।

୩. ଏ ଆଇନର ତଳଲିଖିତ ଶବ୍ଦମାନ ଯଥାକ୍ରମେ ତଳଲିଖିତ ଅର୍ଥରେ ବ୍ୟବହୃତ ହେବ ।

(କ) 'ହାକିମ (worker) ଶବ୍ଦର ଅର୍ଥ - ଯେଉଁ ଜନ୍ତୁଙ୍କର ଅନ୍ୟ ଜନ୍ତୁ ପ୍ରତି ଅଦଉତି ସାଧିବାର, କାମୁଡ଼ିବାର, ଅନିଷ୍ଟ କରିବାର, ନାତ ମାରିବାର, ଏକଗୋଠିଆ କରିବାର କ୍ଷମତା ଆଇନ୍ ଅନୁସାରେ ଅଛି । ସେ ଫଳାହାରୀ, ଜଳାହାରୀ, ନଳାହାରୀ, ମଳାହାରୀ, ଅନାହାରୀ ହେଲେ ସୁଦ୍ଧା 'ହାକିମ୍' ପଦବାଚ୍ୟ ହେବେ । ଯଥା - ନାତୁଆ ଘୋଡ଼ା, ତମ୍ପ ସାପ, ବାୟା ବିଲୁଆ, କାମୁଡ଼ା କୁତୀ, ଭୁଆ ବିରାଡ଼ି, ଗୋଧି ସାପ, ଏକଦନ୍ତା ବାହ୍ୱା ।

(ଖ) ଆପଣା ଇଲାକା (Own Jurisdiction) ଅର୍ଥ ହାକିମ ଜନ୍ତୁ ବିଶେଷଙ୍କର ପାଟି, ଦାନ୍ତ, ଲାଞ୍ଜ, ନଖ, ନାତ ଯେତେ ଦୂର ପର୍ଯ୍ୟନ୍ତ ଆଇନ୍ ଅନୁସାରେ ବଢ଼ା ଯାଇପାରେ, ସେହି ସ୍ଥାନମାନ ତତ୍ତତ୍ ହାକିମମାନଙ୍କର ଆପଣା ଇଲାକା ବୁଝାଇବ ଓ ଏହା ଉତ୍କଳୀୟ ଜନ୍ତୁ ମହାସଭାରେ ସତର ସାଲ ପ୍ରାରମ୍ଭର ୬ ମାସ ପୂର୍ବରୁ ସ୍ଥିରୀକୃତ ହୋଇ ସରକାରୀ କାଗଜରେ ପ୍ରକଟିତ ହେବ ।

(ଗ) ସ୍ଥାୟୀ ଅଧିବାସୀ, (Permanent resident) ଅର୍ଥ ଯେଉଁ ଜନ୍ତୁ ତାଙ୍କ ମାତାଙ୍କ ଅନୁଗ୍ରହରୁ ଯେଉଁ ଅଞ୍ଚଳରେ ଜନ୍ମଗ୍ରହଣ କରି ଅଛନ୍ତି, ସେହି ଅଞ୍ଚଳରେ ସେମାନଙ୍କର ବସବାସ ନ ଥିଲେ ମଧ୍ୟ ତହିଁର ସେମାନେ ସ୍ଥାୟୀ ଅଧିବାସୀ ବୋଲି ବିବେଚିତ ହେବେ ।

(ଘ) ନୈତିକ ଉନ୍ନତି (Moral improvement) ଯେଉଁ ଜନ୍ତୁଙ୍କ ନୀତିରେ ଯେତିକି ବେଶି ସମୟ ଲାଗେ ସେହି ଜନ୍ତୁଙ୍କର ସେତିକି ବେଶି ନୈତିକ ଉନ୍ନତି ହୋଇଅଛି ବୋଲି ଧରାଯିବ ।

(ଙ) 'ନୀତି' । ନୀତି ଅର୍ଥାତ୍ ପ୍ରତିଦିନ ଅଭ୍ୟାସ ଗୁଣରୁ ଯେଉଁ ଯେଉଁ କାର୍ଯ୍ୟ ଜନ୍ତୁ ବିଶେଷର ଅବଶ୍ୟ କର୍ତ୍ତବ୍ୟ ବୋଲି ପଡ଼ିଅଛି, ସେହି ଜନ୍ତୁଙ୍କର ଉକ୍ତ କାର୍ଯ୍ୟ ନୀତି ବୋଲାଯିବ । ଯଥା - କାମୁଡ଼ା ଘୋଡ଼ାର ଦାନ୍ତ ନିକୁଟା, ସାପଙ୍କର ଚୋଟ, ଛେଳିଙ୍କର ପଲ ବାନ୍ଧି ବୁଲିବା, ଘୁଷୁରିଙ୍କର ମଇଳା ସାଫ୍ କରିବା, ମଶାଙ୍କର କାନ ପାଖରେ ଗୁଣୁ ଗୁଣୁ ହେବା, ମାଗୁର ମାଛଙ୍କର କଣ୍ଟା ଫୋଡ଼ିବା ଇତ୍ୟାଦି ଇତ୍ୟାଦି ।

(ଚ) ଅଯୋଗ୍ୟ (Unfit) ଯେଉଁ ଜନ୍ତୁ ସ୍ଥାନୀୟ ଅଭ୍ୟାସ ଓ କ୍ଷେତ୍ର ମାହାତ୍ମ୍ୟକୁ ଗ୍ରହଣ କରିବାକୁ ଅପାରଗ ବା ଅନିଚ୍ଛୁକ, ସେହି ଜନ୍ତୁ ତତ୍ତଦ୍ କାର୍ଯ୍ୟର ଅଯୋଗ୍ୟ ।

(ଛ) 'ଦଳପତି' ବା ଦଳପତ୍ନୀ - (Leader or Leaderess) କୌଣସି ଶ୍ରେଣୀର ଜନ୍ତୁମାନଙ୍କ ବୈଠକସଭାରେ ଯେ ପତି ରୂପେ ବା ପତ୍ନୀ ରୂପେ ବିବେଚିତ ହୁଅନ୍ତି ଓ ଯାହାଙ୍କୁ ତତ୍ତଦ୍ ରୂପରେ ପ୍ରତିଦିନ ସନ୍ଧ୍ୟା ବୈଠକରେ ନ ପାଇବା ପର୍ଯ୍ୟନ୍ତ ତାଙ୍କ ସଙ୍ଗୀ ଜନ୍ତୁଙ୍କର ମନ, ମୁନ ଓ ଚଇତନ ଥୟ ହୁଏ ନାହିଁ, ତାକୁ ଦଳପତି ବା ଦଳପତ୍ନୀ ବୋଲାଯିବ ।

(ଜ) 'ସ୍ଥାୟୀ ଜବର ସ୍ୱତ୍ୱ' (Permanent abiding interest) କୌଣସି ଏକ ହାକିମଙ୍କ ଇଲାକାରେ ଯେଉଁ ଯେଉଁ ଜନ୍ତୁଙ୍କ ଜନ୍ମସ୍ଥାନ ବା ଚରାଭୂମି ଓ କୌଣସି ଏକ ଦଳପତି ବା ଦଳପତ୍ନୀଙ୍କ ନୀତି ଦ୍ୱାରା ଯେଉଁ ଯେଉଁ ଜନ୍ତୁମାନେ ଲାଳିତ ପାଳିତ, ସେହି ସେହି ଜନ୍ତୁଙ୍କର ତତ୍ତଦ୍ ହାକିମ ବା ଦଳପତିଙ୍କ ଇଲାକାରେ 'ସ୍ଥାୟୀ ଜବର ସ୍ୱତ୍ୱ' ପ୍ରବର୍ତ୍ତିବାର ବୋଲାଯିବ ।

(ଝ) 'ନିଃସ୍ୱାର୍ଥ ଓ ସାଧୁ ଜନ୍ତୁ' (Honest and disinterested worker) ଯେଉଁ ଜନ୍ତୁ କୌଣସି ହାକିମଙ୍କ ଇଲାକାର ସ୍ଥାୟୀ ଅଧିବାସୀ ନ ହୋଇ ସୁଦ୍ଧା ସେହି ଇଲାକାର ହାକିମଙ୍କ ଅନୁମତି ସହିତ ଚରି ବୁଲିବାକୁ ଚାହାନ୍ତି ଓ ସେହି ଇଲାକାକୁ ତାଙ୍କ ଛଡ଼ା ଅନ୍ୟ କୌଣସି ବାହାର ଇଲାକା ଜନ୍ତୁ ଚରିବାକୁ ବା ରହିବାକୁ ଆସିଲେ ବା ସେହି ଜନ୍ତୁମାନଙ୍କୁ ସ୍ଥାୟୀ ଅଧିବାସୀ ହାକିମମାନେ ଏକଗୋଠିଆ କଲେ ଯେଉଁମାନେ ସ୍ଥାୟୀ ଅଧିବାସୀଙ୍କ ହୁକୁମ ବରଦାର ହୋଇ ବାହାରେ ଗାଁ ଅଯୋଗ୍ୟ ଜନ୍ତୁଙ୍କ ପ୍ରତି ନାତ ପ୍ରୟୋଗ କରନ୍ତି, ସେମାନଙ୍କୁ ସାଧୁ ଓ ନିଃସ୍ୱାର୍ଥ ଜନ୍ତୁ ବୋଲାଯିବ । ଏ ଆଇନ ଅନୁସାରେ ପ୍ରତି ହାକିମଙ୍କ ବିଚାର କୁଡ଼ିଆରେ ୨ ଜଣ ଲେଖାଏଁ ନିଃସ୍ୱାର୍ଥ ସାଧୁ ଜୀବ ଅପରାଧୀମାନଙ୍କୁ ଦଣ୍ଡ ପ୍ରୟୋଗ କରିବା ନିମନ୍ତେ ରଖାଯିବ ।

୪. ଏ ଆଇନରେ ଦଣ୍ଡବିଧି ନିମ୍ନଲିଖିତ ଶ୍ରେଣୀରେ ବିଭକ୍ତ ହେବ ।

(କ) କାମୁଡ଼ା (Biting) - ଏହା ଦୁଇ ପ୍ରକାରର । Simple ଅର୍ଥାତ୍ ସାଧା (କେବଳ ଦାନ୍ତ ଲଗାଇବା) । Rigorous ଅର୍ଥାତ୍ ପଛୁଆ (ପିଠିଆଡ଼ୁ କାମୁଡ଼ି ସଙ୍ଗେ ସଙ୍ଗେ ଦାନ୍ତ ଦ୍ୱାରା ଝିଙ୍କିବା) ।

(ଖ) ନାତ (Kicking) - ଏହା ମଧ ଦୁଇ ପ୍ରକାର, ୧ - ଅଗାଡ଼ି । ଜନ୍ତୁଙ୍କର ଆଗ ଦୁଇଗୋଡ଼ର ନାତ ଅର୍ଥାତ୍ ବିଧା ଚାପୁଡ଼ା । ୨ - ପିଛାଡ଼ି । ପଛଆଡୁଆ ଅର୍ଥାତ୍ ଜନ୍ତୁଙ୍କର ପଛ ଗୋଡ଼ ଦ୍ୱାରା ନାତ ଓ ଗୋଇଠା ।

(ଗ) ଏକଗୋଠିଆ - ଅର୍ଥାତ୍ ଦଣ୍ଡିତ ଜନ୍ତୁଙ୍କୁ ଗୋଠରେ ନ ମିଶାଇବା । ପ୍ରଥମ ଶ୍ରେଣୀ - ଦଣ୍ଡିତ ଜନ୍ତୁ ଯେଉଁ ତୁଠରେ ପାଣି ପିଇବାକୁ ଯିବ, ସେ ତୁଠର ପାଣିକୁ ମଇଳା କିମ୍ବା ଗୋଳିଆ କରିବାକୁ ହେବ । ଦ୍ୱିତୀୟ ଶ୍ରେଣୀ - ସେ ଯେଉଁ ଜାଗାରେ ଚରିବ, ସେ ଜାଗାରେ ବିଷ ଗାଳିବାକୁ ହବ । ତୃତୀୟ ଶ୍ରେଣୀ - ସେ ଯେଉଁ ଜାଗାରେ ଠିଆହେବ, ସେ ଜାଗାରେ ତଳେ ଗାଡ଼ ଖୋଳି ତା ଉପରେ ଠିଆ ହେବା ନିମନ୍ତେ ତାକୁ ଡାକି ନେବାକୁ ହେବ । ଚତୁର୍ଥ ଶ୍ରେଣୀ - ସେ ଯେଉଁ ଜାଗାରେ ରହିବ, ସେ ଜାଗା ଓ ଚାରି ପାଖରେ ରାତିରେ କାନକୋଲି ଓ ନାଗଫେଣିଆ କଣ୍ଟାର ବାଡ଼ ବୁଜି ସେ ବାଡ଼ରେ ଦୋମୁଣ୍ଡିଆ ଓ ବୋଡ଼ା ସାପ ଛାଡ଼ିବାକୁ ହେବ ।

(ନୋଟ୍ - ଏଥିରୁ କେତେଗୁଡ଼ିଏ କାର୍ଯ୍ୟ ଜନ୍ତୁମାନଙ୍କ ଅସାଧ ବୋଲି ପାଠକେ ମନେକରି ପାରନ୍ତି, କିନ୍ତୁ ଯେଉଁ ପାଠକମାନେ ସିମାଞ୍ଜି ଓ ବଣ ମନୁଷ୍ୟମାନଙ୍କ କାର୍ଯ୍ୟମାନ ପାଠ କରିଅଛନ୍ତି, ସେମାନେ ଏ କଥା ସହଜରେ ବୁଝି ପକାଇବେ) ।

୫. ହାକିମମାନଙ୍କୁ ଏ ବିଧି ନିମନ୍ତେ ୩ ଶ୍ରେଣୀର ବିଭାଗ କରାଯିବ ।

ପ୍ରଥମ ଶ୍ରେଣୀ ଅର୍ଥାତ୍ ଏକଶିଙ୍ଗା ହାକିମ । ସେ ସବୁ ପ୍ରକାର ସଜା ଦେଇ ପାରିବେ । (ସାଧା କାମୁଡ଼ା, ପଛୁଆ କାମୁଡ଼ା, ଆଗାଡ଼ି ପିଛାଡ଼ି ନାତ, ଚତୁର୍ଥ ଶ୍ରେଣୀର ଏକଗୋଠିଆ) । କିନ୍ତୁ ଚତୁର୍ଥ ଶ୍ରେଣୀର ଏକଗୋଠିଆ ଦଣ୍ଡ ଦେବାର କ୍ଷମତା ପରିଚାଳନା କରିବା ପୂର୍ବରୁ ସେ ସରକାରୀ ପରୀକ୍ଷାରେ 'ଆଣ୍ଠୁ ଆଡୁଆ ବୁଝାମଣା' ପାସ୍ କରିଥିବେ ଓ ଦଳପତ୍ନୀ ସଭାର ସାର୍ଟିଫିକେଟ୍ ପାଇଥିବେ ।

ଦ୍ୱିତୀୟ ଶ୍ରେଣୀ ଅର୍ଥାତ୍ ଦୁଇଶିଙ୍ଗା ହାକିମ । ସେ କାମୁଡ଼ା ଓ ନାତ ଦଣ୍ଡ ଦେଇପାରିବେ ଏବଂ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ଏକଗୋଡ଼ିଆ ଦଣ୍ଡ ଦେଇପାରିବେ । ତୃତୀୟ ଶ୍ରେଣୀ ଅର୍ଥାତ୍ ତିନିଶିଙ୍ଗା ହାକିମ । ସେ କେବଳ କାମୁଡ଼ା ଦଣ୍ଡ ଦେଇ ପାରିବେ ।

୬. ତୃତୀୟ ଶ୍ରେଣୀ ହାକିମଙ୍କ ରାୟ ବିରୋଧରେ ପ୍ରଥମ ଶ୍ରେଣୀ ହାକିମଙ୍କ ନିକଟରେ ଅପିଲ ହେବ । ଦ୍ୱିତୀୟ ଶ୍ରେଣୀ ହାକିମଙ୍କ ରାୟ ବିରୋଧରେ ପ୍ରଥମ ଶ୍ରେଣୀ ହାକିମଙ୍କ ନିକଟରେ ଧର୍ମ ଅପିଲ ବା ମଧୁସୂଦନ କରିବାକୁ ହେବ ।

ପ୍ରଥମ ଶ୍ରେଣୀ ହାକିମଙ୍କ ବିରୋଧରେ ଅପିଲ ବା ମଧୁସୂଦନ ନାହିଁ । ଦୁଇ ମାସ ମଧରେ ତାଙ୍କ ରାୟ ବିରୋଧରେ ଦୁଇ ଜଣ ପ୍ରଥମ ଶ୍ରେଣୀ ହାକିମଙ୍କ ନିକଟରେ 'ଆଣ୍ଟୁ ଆଡୁଆ' ପ୍ରଣାଳୀରେ ସଜା ବିଚାର ହୋଇ ପାରିବ ।

୭. ମାଗୁର, ଚିଲ, ଗଧିଆ, ଶୃଗାଳ, କେଶରୀ, କମ୍ପକମ୍ପିଆ (ଏକ ଜାତୀୟ ବୁଢ଼ିଆଣୀ), ଖଚର, ସିଂହ, ବଗ, କାଣୀବିରାଡ଼ି, ବାୟାଚଢ଼େଇ, ଯୋକ ଏ ଶ୍ରେଣୀର ଜୀବମାନେ ପିଙ୍ଗଳ ବିଧି ଅନୁସାରେ କୌଣସି ଅପରାଧ କରିବେ ନାହିଁ । ଅର୍ଥାତ୍ ଏମାନେ କୌଣସି ଅପରାଧ କଲେ ଦଣ୍ଡନୀୟ ହେବେ ନାହିଁ ।

୮. ଯେଉଁ ଜନ୍ତୁ ୫୦ ବର୍ଷରୁ ଉର୍ଦ୍ଧ୍ୱ ବୟସ୍କ ଓ ଯେଉଁ ଜନ୍ତୁମାନେ ଘର ଛାଡ଼ି ବୈରାଗ୍ୟ ଅବଲମ୍ବନ କରିଅଛନ୍ତି ଓ ଯେଉଁ ଜନ୍ତୁଙ୍କର ମାର୍କାମରା ସନ୍ତାନସନ୍ତତି ନାହାନ୍ତି, ସେମାନଙ୍କର ବିଚାର ସେହି ଶ୍ରେଣୀର ହାକିମଙ୍କ ଛଡ଼ା ଅନ୍ୟ ହାକିମଙ୍କ ଦ୍ୱାରା ହୋଇପାରିବ ନାହିଁ ।

୯. କୌଣସି ଅଞ୍ଚଳର ସ୍ଥାୟୀ ଅଧିବାସୀଙ୍କ ଛଡ଼ା କିମ୍ବା ସେହି ସ୍ଥାନରେ ସ୍ଥାୟୀ ଜବର ସ୍ୱତ୍ୱ ଥିବା ଜନ୍ତୁମାନଙ୍କ ଛଡ଼ା ଅନ୍ୟ କେହି ସେହି ଅଞ୍ଚଳରେ ହାକିମ ହୋଇ ପାରିବେ ନାହିଁ ।

୧୦. ପାଟି, ଦାନ୍ତ, ଲାଞ୍ଜ, ନଖ, ଖୁରାର ସଂଖ୍ୟା, ସୀମା ଓ ଦାଉର କମ୍ ବେଶି ଅନୁସାରେ ହାକିମମାନଙ୍କୁ ଶ୍ରେଣୀ କ୍ଷମତା ଦିଆଯିବ । ସମସ୍ତେ ହାକିମ ପ୍ରଥମେ ତୃତୀୟ ଶ୍ରେଣୀ କ୍ଷମତାରୁ ଆରମ୍ଭ କରିବେ ଓ ଛ' ମାସ ଅନ୍ତର ଯୋଗ୍ୟତା ଦୃଷ୍ଟିରେ ଗ୍ରେଡ଼ ଉନ୍ନତି ଲାଭ କରିବେ ।

୧୧. ସ୍ଥାୟୀ ଅଧିବାସୀମାନେ ସାନ୍ଧ୍ୟ ବୈଠକୀରେ ପ୍ରାର୍ଥୀମାନଙ୍କର ନୀତି ଓ ନୈତିକ ଉନ୍ନତି ପରୀକ୍ଷା କରି ଦଳପତି ବା ପତ୍ନୀଙ୍କ ମଞ୍ଜୁରିରେ ହାକିମମାନଙ୍କୁ ଯୋଗ୍ୟତା ଅନୁସାରେ ନିଯୁକ୍ତି ପତ୍ର ଦେବେ ।

୧୨. ହାକିମ ହେବା ପୂର୍ବରୁ ପ୍ରାର୍ଥୀମାନେ ହାକିମ କାର୍ଯ୍ୟ ନିମନ୍ତେ ପ୍ରାର୍ଥୀ ନିଜର ପାଟିରେ ବା ଅଙ୍ଗଭଙ୍ଗୀ ଦ୍ୱାରା ପ୍ରକାଶ କରିବେ ନାହିଁ । ସେମାନେ 'ନିଃସ୍ୱାର୍ଥ' ଓ 'ସାଧୁ ଜନ୍ତୁ' ଥିବାର ସାର୍ଟିଫିକେଟ ଦଳପତି ଓ ଦଳପତ୍ନୀଙ୍କଠାରେ ରେଜିଷ୍ଟରୀ ଡାକରେ ବେନାମି ପହଞ୍ଚାଇଲେ ତଦନୁସାରେ ଯୋଗ୍ୟତା ପରୀକ୍ଷିତ ହୋଇ ହାକିମ ନିଯୁକ୍ତ କରାଯିବ ।

୧୩. ଯେଉଁ ଜନ୍ତୁ ଆପଣା ମାପର ପରିଚୟ ଦେଇ କୌଣସି ଅଞ୍ଚଳରୁ ଆସି ବସବାସ କରି ରହିବେ; ସେ ପ୍ରଥମ ଏକ ବର୍ଷ ମଧରେ ତତ୍ତଦ୍ ଅଞ୍ଚଳର ନୀତି ପରୀକ୍ଷାରେ ପାସ୍ କରିଥିବାର ସାର୍ଟିଫିକେଟ ଦଳପତିଙ୍କ ଦସ୍ତଖତରେ ଆପଣା ଇଲାକା ହାକିମଙ୍କ ହଜୁରରେ ଦାଖଲ କରିବେ । ଏହା ନ କରିପାରିଲେ ସେ ଏକ ସପ୍ତାହ ସକାଶେ ଦୁଇଓଳି ଦୁଇ ପ୍ରକାର କାମୁଡ଼ା ଓ ଆରୁଆ ନାତ ଦଣ୍ଡର ଭାଗୀ ହେବେ ।

୧୪. ଦେଢ଼ବର୍ଷ ମଧ୍ୟରେ ଉକ୍ତ ଜନ୍ତୁ ଆପଣା ବସବାସ ଅଞ୍ଚଳରେ ସ୍ଥାୟୀ ଅଧିବାସୀ ହେବାର ଯୋଗ୍ୟ ବୋଲି ଦଳପତି ବା ଦଳପତ୍ନୀଙ୍କଠାରୁ ସାର୍ଟିଫିକେଟ ହାସଲ ନ କରି ପାରିଲେ ସେ ୩ ସପ୍ତାହ ସକାଶେ ଦୁଇ ପ୍ରକାର କାମୁଡ଼ା, ଦୁଇ ପ୍ରକାର ନାତ ଓ ପ୍ରଥମ ଶ୍ରେଣୀର ଏକଗୋଠିଆ ଦଣ୍ଡ ପାଇବେ ।

୧୫. ଦୁଇ ବର୍ଷ ମଧ୍ୟରେ ସ୍ଥାୟୀ ଅଧିବାସୀ ବା ସ୍ଥାୟୀ ଜବର ସ୍ୱତ୍ୱଭାଗୀ ବୋଲି ଦଳପତି ବା ଦଳପତ୍ନୀଙ୍କଠାରୁ ସାର୍ଟିଫିକେଟ ହାସଲ ନ କଲେ ସେ ୨ ମାସ ପର୍ଯ୍ୟନ୍ତ ତୃତୀୟ ଶ୍ରେଣୀର ଏକଗୋଠିଆ ଦଣ୍ଡ ଭୋଗ କରିବେ ।

୧୬. ଦୁଇ ବର୍ଷ ପରେ କୌଣସି ପ୍ରକାର ସାର୍ଟିଫିକେଟ ହାସଲ ନ କଲେ ଉକ୍ତ ଜନ୍ତୁଙ୍କୁ 'ଅଯୋଗ୍ୟ' ବୋଲି ବିବେଚନା କରାଯିବ ଓ ଉକ୍ତ ଅପରାଧୀଙ୍କୁ ଦ୍ୱିତୀୟ ଶ୍ରେଣୀର ଦୁଇଜଣ ହାକିମଙ୍କ ହୁକୁମରେ ବୈଜ୍ଞାନିକ ପ୍ରକ୍ରିୟାଦ୍ୱାରା ଲୋମଶୂନ୍ୟ କରାଯାଇ ତାଙ୍କୁ ହାକିମଙ୍କ ଅଞ୍ଚଳରୁ ଗର୍ଦ୍ଦଭ-ଗଜ ଦ୍ୱାରା ସୀମା ପାର କରାଇବାକୁ ହେବ ଓ ତଦ୍‌ପରେ ତାଙ୍କର ଉକ୍ତ ଅଞ୍ଚଳକୁ ପ୍ରବେଶ କରିବାର ଅଧିକାର ରହିବ ନାହିଁ ।

୧୭. ଏପରି ସୀମା ପାର ହୋଇଥିବା ଜନ୍ତୁ ପୁନର୍ବାର ସୀମା ମଧ୍ୟରେ ଦେଖାଗଲେ ତାଙ୍କୁ ପ୍ରଥମ ଶ୍ରେଣୀ ହାକିମଙ୍କ 'ଆଣ୍ଡୁ ଆଡୁଆ' ବୁଝାମଣା ବିଚାରରେ ୬ ମାସ କାମୁଡ଼ା ଓ ନାତ ଦଣ୍ଡ ଦିଆଯିବ ଓ ଚତୁର୍ଥ ଶ୍ରେଣୀ ଏକଗୋଠିଆ ଦଣ୍ଡ ଦ୍ୱାରା ଯାବଜ୍ଜୀବନ ଗୋଠାନ୍ତର କରାଯିବ ।

(ନୋଟ୍ - ଉଦାହରଣସ୍ୱରୂପ ଏଠାରେ ପିଙ୍ଗଳ ବିଧିର ସାମାନ୍ୟ କେତୋଟି ଧୂସର ଲିପି ନମୁନା ଦିଆଗଲା । ଏଗୁଡ଼ାକର ବର୍ତ୍ତମାନ ଥଳଥଳିଆ ଅବସ୍ଥା । ପାଠକ ଓ ଜନ୍ତୁମାନଙ୍କର ଏଗୁଡ଼ାକ ନମୁନା ସ୍ୱରୂପ ଅନୁମୋଦିତ ହେଲେ ବାରାନ୍ତରେ ପରିବର୍ତ୍ତିତ ସଂସ୍କରଣ ବାହାରିବ) ।

ଉତ୍କଳ ସାହିତ୍ୟ/୧୮ଶ ଭାଗ/୨ୟ ସଂଖ୍ୟା/୧୩୨୧ ସାଲ ।

## ।। ଚଉବନ ।।

ପାଠକ ଅବଧାନ ! ପୁରୀ ନିମନ୍ତେ ଶ୍ରୀକ୍ଷେତ୍ର ପିଙ୍ଗଳ ବିଧିର ପାଣ୍ଡୁ ଓ ଧୂସର ଲିପି ଆପଣମାନଙ୍କ ହଜୁରରେ ଗୁଜାରିଥିଲି । ଆପଣମାନଙ୍କର କିମ୍ବା ପୁରୀର ଜନ୍ତୁମାନଙ୍କର ଉକ୍ତ ବିଧି ପ୍ରତି କେତେଦୂର ମମତା ତାହା ଅବଧି ଜାଣି ନାହିଁ । ପୂର୍ବର ଶାସ୍ତ୍ରକାରମାନେ କାକଚରିତ ଇତ୍ୟାଦି କେତେଗୁଡ଼ିଏ ଶାସ୍ତ୍ର ରଚନା କରିଯାଇଛନ୍ତି । ସେଗୁଡ଼ିକ ଆଲୋଚନା କରିବାର ତାକତ ଥିଲେ ସ୍ଥାନୀୟ ପଶୁଙ୍କର ରାବ ଠଉରାଇ ସେମାନଙ୍କର ମତ ବୁଝିବାକୁ ସମର୍ଥ ହୋଇଥାନ୍ତି । କିନ୍ତୁ ସେ ଶାସ୍ତ୍ରଗୁଡ଼ାକର ସଭ୍ୟଜଗତରେ କାଟତି ଭାରି କମ୍ । ଏଣେ ସଭ୍ୟଜଗତରେ ପ୍ରାଣିତତ୍ତ୍ୱବିତ୍ ପଣ୍ଡିତମାନେ ବାନର, ମାଛି, ମଶା, ଭଅଁର ପକ୍ଷୀ

ଏମାନଙ୍କ ଶବ୍ଦର ଅର୍ଥ ନିର୍ଣ୍ଣୟ କରିବାକୁ ଜୀବନବ୍ୟାପୀ ସାଧନା କରୁଅଛନ୍ତି; କିନ୍ତୁ ସେମାନେ ଆଫ୍ରିକାର ଜଙ୍ଗଲକୁ ଯାଇ ସେଠାରେ ବାନରମାନଙ୍କର ଗତିବିଧି, ସୋରଶବ୍ଦ ଆଲୋଚନା ନ କରି ଯେବେ ଏଠାକୁ ଆସନ୍ତେ, ତାହେଲେ ଏଠାର ମନୁଷ୍ୟ ପରି ବୁଦ୍ଧିବିଶିଷ୍ଟ ଅସଂଖ୍ୟ ଜୀବଙ୍କର ତତ୍ତ୍ୱ ବଡ଼ ସୁବିଧାରେ ଆବିଷ୍କାର କରିପାରନ୍ତେ । ଉଦାହରଣସ୍ୱରୂପ ଆପଣମାନେ ଦେଖନ୍ତୁ ଯେ, ଏ କ୍ଷେତ୍ରରେ ଯେଉଁ ପାତିମାଙ୍କଡ଼ଗୁଡ଼ାକ ହାଉଯାଉ ହେଉଛନ୍ତି, ସେମାନଙ୍କର ବୁଦ୍ଧି ଓ ଚାତୁରୀ ଦେଖିଲେ ଅନେକ ସମୟରେ ବିସ୍ମିତ ହେବାକୁ ହୁଏ । ସେମାନେ ଜାଣନ୍ତି ଯେ, ଶ୍ରୀକ୍ଷେତ୍ରର ସୀମା ମଧ୍ୟରେ ବାନରବଧ ହେଲେ ସନାତନ ଧର୍ମାବଲମ୍ବୀମାନେ ତୀବ୍ର ଆନ୍ଦୋଳନ କରିବେ । ଅତଏବ ଶ୍ରୀକ୍ଷେତ୍ର ସୀମା ମଧ୍ୟରେ ରହିଲେ ସେମାନଙ୍କୁ କେହି ବଧ କରିବେ ନାହିଁ । ଏହା ଜାଣି ସେମାନେ ନିର୍ବିରୋଧରେ ସହର ମଧ୍ୟରେ ବିଚରଣ କରୁଅଛନ୍ତି ଏବଂ ଖାଦ୍ୟ ଲାଭ ନିମନ୍ତେ ନାନା ପ୍ରକାର ସ୍ଥାନୀୟ ବାସିନ୍ଦା, ହିନ୍ଦୁ ଓ ଯାତ୍ରୀମାନଙ୍କୁ ବ୍ୟତିବ୍ୟସ୍ତ କରୁଅଛନ୍ତି ।

ସହର ମଧ୍ୟ ଛାଡ଼ି ଦେଇ ବାଲୁଖଣ୍ଡକୁ ଆସିଲେ । ବାଲୁଖଣ୍ଡ ନିବାସୀ ଅହିନ୍ଦୁମାନେ ସେମାନଙ୍କୁ ବନ୍ଧୁକ ଟିପିବାର ଭୟ ଥିବାରୁ ବାନରମାନେ ବାଲୁଖଣ୍ଡକୁ ଆସନ୍ତି ନାହିଁ । ଯେ ଏଠାରେ ପାତିମାଙ୍କଡ଼ମାନଙ୍କର କାର୍ଯ୍ୟକଳାପ ପର୍ଯ୍ୟବେକ୍ଷଣ କରିଅଛି, ସେ ନିଶ୍ଚୟ ବୁଝିବ ଯେ, ମନୁଷ୍ୟଙ୍କ ପରି ଏମାନଙ୍କର ଦୁଃଖ, ସୁଖ, ବୁଦ୍ଧି, ବିବେକ, ଜ୍ଞାନ, ବିଚାର, ମନ୍ତ୍ରଣା, ଯନ୍ତ୍ରଣା, ବୈଠକୀ, ପୈଠକୀ ସବୁ ଅଛି ଓ ମନୁଷ୍ୟଙ୍କ ପରି ଗଲୁବାଜିରେ (wantonly) ଏମାନେ ବେଳେବେଳେ ନାଚି ଉଠନ୍ତି । ଏମାନଙ୍କର କେବଳ ନାହିଁ ଲୁଗାପଟା ଓ ଆଇନ କାନୁନ୍ । ଲୁଗା ପିନ୍ଧିବାକୁ ଏମାନଙ୍କର ଯେ ବେଳେବେଳେ ଇଚ୍ଛା ହୁଏ ତାହାର ସନ୍ଦେହ ନାହିଁ । କାରଣ ବେଳେ ବେଳେ ଯାତ୍ରୀମାନଙ୍କର ଗୃହସ୍ଥଙ୍କର ଲୁଗାପଟା ଖଣ୍ଡମାନ ସୂତା ସୂତ୍ରୀରେ ଝାମ୍ପି ନିଅନ୍ତି, ଏହା ଏକ ଆକାଙ୍‌କ୍ଷାର ପ୍ରଧାନ ପ୍ରମାଣ । ଯାହାହେଉ ମୁଁ କହୁଥିଲି ଯେ ଏଠାରେ ସାପ, ବିରାଡ଼ି, ଗଧିଆ ହେରିକାଙ୍କ କାର୍ଯ୍ୟକଳାପ ପର୍ଯ୍ୟବେକ୍ଷଣ କଲେ ସେମାନେ ମନୁଷ୍ୟ ସଙ୍ଗେ ପ୍ରକୃତି, ବିକୃତି, ଆକୃତି ପ୍ରଭୃତି ଅନୁକୃତି ସକୃତି ଆଦି କେତେକ ବିଷୟରେ ସମାନ ହେବେ, ଏଥିରେ ସନ୍ଦେହ ନାହିଁ । ସେଦିନ ଗୋଟାଏ ସମ୍ବାଦପତ୍ରରେ ଦେଖୁଥିଲି ଯେ, ଗୋଟିଏ ବଡ଼ ସାପ ଆଗରେ ସାନ ସାପ ଖେଳୁଥିଲା । ପ୍ରଥମେ ସାନ ସାପଟି ବଡ଼ ସାପ ଆଗରେ ବେଙ୍ଗଟିଏ ଆଣି ଦେଲା, ବଡ଼ ସାପ ତାକୁ ଖାଇଲା ନାହିଁ । ପରେ ପରେ ଗୋଟିଏ ମାଛ ଆଣି ଦେଲା । ବଡ଼ ସାପ ତାହାକୁ ଛୁଇଁଲା ନାହିଁ । ପରେ ଆଉ ଗୋଟିଏ ମାଛ ଆଣି ଦେଲା, ବଡ଼ ସାପ ତାକୁ ଛୁଇଁଲା ନାହିଁ । ଶେଷରେ ସାନ ସାପଟି ନିଜେ ତାହା ସମ୍ମୁଖରେ ଉପସ୍ଥିତ ହେଲା । ବଡ଼ ସାପଟି ସାନ ସାପଟିକୁ ଖାଇ ଉଦର ପୂର୍ତ୍ତି କଲା । ଜୀବଜଗତ୍‌ରେ ଭଗବାନ୍‌ଙ୍କର ଏହିପରି କେତେ ବିଚିତ୍ର ଲୀଳା ଘଟୁଅଛି । ଅନେକ ଘଟଣା ମନୁଷ୍ୟ ପ୍ରକୃତିର ସମଭାବାପନ୍ନ । କେତେକ ଉଚ୍ଚ ଭାବାପନ୍ନ ଓ ଇତର ଜଗତର କେତେକ ଘଟଣାବଳୀରୁ

ଅନେକ ସମୟରେ ମନୁଷ୍ୟର ଅନେକ କଥା ଶିଖିବାର ଉପାଦାନ ଥାଏ । ମନୁଷ୍ୟତାକୁ ବାଛିନେଲେ ହେଲା । ଏଗୁଡ଼ିକ ପର୍ଯ୍ୟବେକ୍ଷଣ କରି ଜ୍ଞାନୀ ଓ ବିଚକ୍ଷଣ ବ୍ୟକ୍ତି ଜୀବମାନଙ୍କର ପ୍ରକୃତି ଠଉରାଇ ନିଅନ୍ତି । ଗତ ଥର ଯେ ଜୀବଜଗତ୍ ପାଇଁ ଗୋଟାଏ ପିଙ୍ଗଳ ବିଧି କରିଥିଲି, ସେଥିରୁ ପାଠକମାନେ ଠଉରାଇ ନେବେ ନାହିଁ ଯେ କ୍ଷେତ୍ରତତ୍ତ୍ୱ ଅନୁସାରେ ଲେଖନକାର ଜ୍ଞାନୀ ଓ ବିଚକ୍ଷଣ, ପ୍ରକୃତରେ ତାହା ନୁହେଁ । ଏଗୁଡ଼ିକ ଜୀବ ପ୍ରକୃତି ତଥା ମାନବ ପ୍ରକୃତି ଠଉରାଇବା ବିଷୟରେ କସରତ୍ ମାତ୍ର । ଗତ ଥର ହାଲଚାଲ ପଢ଼ି ମୋର କୌଣସି ବନ୍ଧୁ କହୁଥିଲେ ''ପ୍ରହରାଜେ ! ସିଂହ, ମାଗୁର, ବୁଢ଼ିଆଣୀ, ନାଡୁଆ ଘୋଡ଼ୀ, ତମ୍ପସାପ, କାମୁଡ଼ା କୁତ୍ତୀ, ଯାଙ୍କୁ ସବୁ ଚିହ୍ନି ହେଲା; କିନ୍ତୁ ଅନ୍ୟ କେତେକ ଜନ୍ତୁଙ୍କୁ ଚିହ୍ନି ହେଲା ନାହିଁ । ବନ୍ଧୁ ପୁଣି କହିଲେ, ମନୁଷ୍ୟମାନେ ବୈରାଗ୍ୟ ଅବଲମ୍ବନ କରନ୍ତି; କିନ୍ତୁ ଜନ୍ତୁମାନେ ତ ଏପରି କରିବାର ଦେଖା ନାହିଁ । ଏଥିର ଉତ୍ତରରେ ପିଙ୍ଗଳ ବିଧି କଥିତ 'କେତେକ ଜନ୍ତୁଙ୍କର ଅଙ୍ଗ, ପ୍ରତ୍ୟଙ୍ଗ, ଅପାଙ୍ଗ, ଉପାଙ୍ଗ ସଙ୍ଗେ ମନୁଷ୍ୟର ସୌସାଦୃଶ୍ୟ ବନ୍ଧୁଙ୍କୁ ଦେଖାଇ ଦେବାରୁ ସେ ମୁରୁକି ହସଟାଏ ଦେଲେ । ବନ୍ଧୁଙ୍କୁ ମଧ୍ୟ 'କୁଞ୍ଚ କୁଞ୍ଚିଆ ମାଗୁର ନିଶୁଆ' ଚିଲା ଆଖିଆ ବଇଜାମା ''ବଡ଼ବୋଉ ବଡ଼ିଆ କାଙ୍କ' ଇତ୍ୟାଦି କେତେଗୁଡ଼ିଏ ମରହଟ୍ଟିଆ ଢଗ ମନେପକାଇ ଦେଲି । ବନ୍ଧୁ ଏସବୁ ଶୁଣି ଟିକିଏ ବୁଝାମଣା ମଣିଷ ଭଳି କଥାବାର୍ତ୍ତା କଲେ । ତତ୍ପରେ ସେ ବନ୍ଧୁ ବୈରାଗୀ ଜନ୍ତୁଙ୍କୁ ଦେଖି ନ ଥିଲେ । ତାଙ୍କୁ ଗୋଟି କେତେ ଖାସି ଆଙ୍କି, ଘୋଡ଼ା ଓ ଆମ ଜୀବନ ସଙ୍ଗୀ ବଳଦ ଫଳଦ ବାପୁଡ଼ାକୁ ଦେଖାଇ ତାଙ୍କ କାର୍ଯ୍ୟକଳାପ ବୁଝାଇ ଦେଲି । ବନ୍ଧୁ ପଛକୁ ସ୍ୱୀକାର କଲେ ଯେ, ଏଗୁଡ଼ିକ ବୈରାଗୀ । ବନ୍ଧୁଙ୍କ ଗୀତାର -

''ବାହ୍ୟେନ୍ଦ୍ରିୟାଣି ସଂଯମ୍ୟ' ଯ ଅସ୍ତେ ମନସା ସ୍ମରନ୍ ।
ଇନ୍ଦ୍ରିୟାର୍ଥନ୍ ବିମୂଢ଼ାତ୍ମା ମିଥ୍ୟାଚାରଃ ସ ଉଚ୍ୟତେ ।''

ଶ୍ଳୋକ ପିଟାଇ ଅର୍ଥ କରାଇ ଦେଲେ ମଧ୍ୟ ଆମ ଦେଶର 'ବିରାଡ଼ି ବୈଷ୍ଣମ' ଶବ୍ଦଟା ମରହଟ୍ଟୀ ଅମଳରୁ ପ୍ରଚଳିତ ଥିବାର ବନ୍ଧୁଙ୍କୁ ସମଜାଇ ଦେଲି । ଇତିହାସର ପୃଷ୍ଠା ଖୋଲି ବତାଇ ଦେଲି ଯେ ମୁସଲମାନ ନବାବ ଓ ବାଦଶାହମାନଙ୍କ ଅନ୍ତଃପୁରରେ ଜଗୁଆଳ ରହିବା ନିମନ୍ତେ ପୂର୍ବେ Eunochମାନଙ୍କୁ ରଖା ଯାଇଥିଲା - ବସ୍ତୁତଃ ଏପରି ମନୁଷ୍ୟ ସହସ୍ରକର ଗୋଟିଏ ଦୁଇଟା ମିଳିବା କଥା କଷ୍ଟ । ଏଥିପାଇଁ ପିଲାଦିନୁ ମନୁଷ୍ୟମାନଙ୍କୁ ଅନ୍ତଃପୁର ଜଗୁଆଳୀ କରିବା ଉଦ୍ଦେଶ୍ୟରେ ଜବରଦସ୍ତି 'ବୈରାଗୀ' କରି ଦିଆଯାଉଥିଲା । ବାଦଶାହମାନେ ବୁଝିପାରୁ ନ ଥିଲେ ଯେ, ମନୁଷ୍ୟର ପଞ୍ଚମନ, ପଚିଶ ପ୍ରକୃତି, ଅଙ୍ଗପ୍ରତ୍ୟଙ୍ଗ, ଷଡ଼ରିପୁ, ପଞ୍ଚେନ୍ଦ୍ରିୟ, ପଦ, ବସ୍ତ୍ର, ଅଙ୍ଗୁଳି ମଧ୍ୟରୁ ବଡ଼ ଜୋର୍ ଗୋଟାଏ ଖଣ୍ଡେ ଅନ୍ତର କରିଦେଲେ, ବାକି ତ ସବୁ ରହିଲା । ବାହାରର କାଇଦା କଟକଣା ସିନା ଲୋକେ ଦେଖିବାକୁ ଜବର ହେଲା; କିନ୍ତୁ ଅସଲ ମାନବ ପ୍ରକୃତି ଯେଉଁଠାରେ ଥିଲା, ଫଳତଃ ସେହିଠାରେ ରହିଲା । ସଂସାରରେ ଅନାସକ୍ତ ହେବାକୁ ହେଲେ କେବଳ

କର୍ମେନ୍ଦ୍ରିୟମାନଙ୍କୁ ନିୟନ୍ତ୍ରିତ କଲେ ଚଳିବ ନାହିଁ, ମନକୁ ମଧ୍ୟ ନିବୃତ୍ତି ମାର୍ଗରେ ନେବାକୁ ହେବ । ବନ୍ଧୁ ଏଗୁଡ଼ାକ ଶୁଣି ଦେଖିଲେ ଯେ କୁରୁପାଣ୍ଡବ ଯୁଦ୍ଧରେ କୃଷ୍ଣାର୍ଜୁନ ସମ୍ବାଦର ଫେର ଅଭିନୟ ଆରମ୍ଭ ହେବ । ଗତି ଭଲ ନୁହେଁ ବୋଲି ମୁଁ ମଧ୍ୟ ବନ୍ଧୁଙ୍କର ଆକାର ଇଙ୍ଗିତ ଗତିରୁ ବୁଝିପାରି ମୋ ଉପଦେଶାମୃତର ଫୁଆରକୁ ବନ୍ଦ କଲି । ପାଠ ପରା ଡାକୁଛି, 'ଗୁରୁର୍ଭକ୍ତାୟ ଦାତବ୍ୟଂ ନ ଦେୟଂ ଯସ୍ୟ କସ୍ୟଚିତ୍ ।' ଭକ୍ତ ଦେଖି ଏ ଜ୍ଞାନ ସମୟ କ୍ରମେ ବିତରଣ କରାଯିବ । ଆଜି ଥାଉ ।

ନୋଟ୍ - ପାଠକ ଅବଧାନ ! ଆପଣମାନେ ମୋ ଲେଖାରେ 'ବନ୍ଧୁ' ଶବ୍ଦଟାର ବହୁତ ପ୍ରୟୋଗ ଦେଖିଥିବେ । ଏପରି ସ୍ଥଳରେ 'ବନ୍ଧୁ' ଶବ୍ଦଟା ଥରେ ଆପଣମାନଙ୍କ ନିକଟରେ ବ୍ୟାଖ୍ୟା କରି ଦେଲେ ଅନେକ ଅଳିଆ ଭବିଷ୍ୟଦ୍ ପାଇଁ ସାଫ୍ ସୁତୁରା ହୋଇଯିବ । ଆଧୁନିକ ବନ୍ଧୁ ଶବ୍ଦର ସାଧାରଣ ଇଂରାଜୀ Friend (ଫ୍ରେଣ୍ଡ) କିନ୍ତୁ ମରହଟ୍ଟୀମାନେ ଓ ପୁରୁଣା ହିନ୍ଦୁ ଶାସ୍ତ୍ରକାରମାନେ ବନ୍ଧୁ ଶବ୍ଦକୁ ଅନେକ କିସମରେ ବ୍ୟବହାର କରିଅଛନ୍ତି । ପ୍ରଥମେ ଦେଖିବା ହୁଅନ୍ତୁ ଯେ, ଶାସ୍ତ୍ରକାରମାନେ ବନ୍ଧୁ ଶବ୍ଦକୁ ବୈବାହିକ ସମ୍ପର୍କ ବିଶିଷ୍ଟ ଅସଗୋତ୍ର ଓ ସପିଣ୍ଡ ଦାୟାଧିକାରୀ ଅର୍ଥରେ ବ୍ୟବହାର କରିଅଛନ୍ତି । ଯଥା : ଆପଣାର ଓ ଆପଣାର ପିତା ମାତାଙ୍କର ବୈବାହିକ ସମ୍ପର୍କ ବିଶିଷ୍ଟ ପିଣ୍ଡାଧିକାରୀମାନେ (ଭଣଜା, ମାତାମହ, ପିଉସୀପୁଅ, ମାଉସୀପୁଅ, ମାମୁପୁଅ ଇତ୍ୟାଦି) ଶାସ୍ତ୍ରରେ ବନ୍ଧୁ ନାମରେ ଅଭିହିତ । ଓକିଲମାନେ କୌଣସି ହିନ୍ଦୁ ଆଇନ୍ ବହିରୁ ଏଥିର ପ୍ରମାଣ ପାଇବେ । ଯେଉଁମାନେ ଯେ ପର୍ଯ୍ୟନ୍ତ ଝପଟ ମାରି ନାହାନ୍ତି, ସେମାନେ ଦାୟଭାଗ ଏକାଦଶ ଅଧ୍ୟାୟ, ଦାୟ କ୍ରମ ସଂଗ୍ରହ - ପ୍ରଥମ ଅଧ୍ୟାୟ, ମିତାକ୍ଷରା - ପ୍ରଥମ ଅଧ୍ୟାୟ, ଯାଜ୍ଞବାକ୍ୟ - ପ୍ରଥମ ଅଧ୍ୟାୟ ଇତ୍ୟାଦି ଦେଖିଲେ ବନ୍ଧୁ ଶବ୍ଦର ସଂଜ୍ଞା ବୁଝିପାରିବେ । ଏହି ଶାସ୍ତ୍ର ଲିଖିତ ବନ୍ଧୁମାନଙ୍କୁ ମାନ୍ଦ୍ରାଜ, ବମ୍ବେ ଓ କଲିକତା ହାଇକୋର୍ଟ ଓ ଅଷ୍ଟକୌଶଳ (Privy Council) ମଧ୍ୟ ନଜିର ଦ୍ୱାରା ସ୍ୱୀକାର କରି ଅଛନ୍ତି । ଏ ଗଲା ସଂସ୍କୃତିଆ ଶାସ୍ତ୍ରଯୁଗର ବ୍ୟାଖ୍ୟା । ପରଯୁଗର ସଂସ୍କୃତରେ ବନ୍ଧୁ ଶବ୍ଦର ଅବୈବାହିକ ପ୍ରୟୋଗ ଦେଖାଯାଏ । ତତ୍ପରେ ଆମ ମରହଟ୍ଟୀ ଓଡ଼ିଆ ଭାଷାରେ ବନ୍ଧୁର ତିନୋଟି ପ୍ରୟୋଗ ଦେଖାଯାଏ (୧) ବୈବାହିକ ସମ୍ପର୍କୀୟ । (୨) ପ୍ରିୟ ବ୍ୟକ୍ତି ସଖା, ଦୋସ୍ତ, ପ୍ରିୟାପ୍ରୀତି, ଏହି ଅର୍ଥରେ ଓଡ଼ିଶୀ ସଙ୍ଗୀତରେ ବନ୍ଧୁ, ବାନ୍ଧବୀ ଶବ୍ଦର ବହୁତ ପ୍ରୟୋଗ ଦେଖାଯାଏ । (୩) ବିପଦରେ ସହାୟ, ପ୍ରାଣର ସହୃଦୟଙ୍କୁ ବନ୍ଧୁ ବୋଲାଯାଏ ।

କ୍ରମଶଃ ସଭ୍ୟତା ଯେତିକି ବଢୁଅଛି, ବୈବାହିକ ସମ୍ପର୍କଟା ମଧ୍ୟ ସେତିକି କମୁଅଛି । ଏପରି ସ୍ଥଳରେ ବନ୍ଧୁ ଶବ୍ଦ ବିଶେଷ ଭାବରେ ଦୋସ୍ତ ଅର୍ଥରେ ପ୍ରୟୋଗ ହେଉଅଛି ଓ କ୍ୱଚିତ୍ ମଫସଲିଆ ମଧ୍ୟରେ ବୈବାହିକ ସମ୍ପର୍କ ଅର୍ଥରେ ବ୍ୟବହୃତ ହେଉଅଛି । ମଫସଲରେ ଅମୁକ ଅମୁକଙ୍କର ବନ୍ଧୁ କହିଲେ, 'ଅମୁକ ଅମୁକଙ୍କ ସଙ୍ଗେ ପଟେ ବୈବାହିକ ସମ୍ପର୍କ ପକାଇ ଅଛନ୍ତି ବୋଲି ବୁଝାଯିବ । ଯେତିକି ସଭ୍ୟଜଗତକୁ ଆସିବ ସେତିକି ଏହି

'ଘର ଅଡୁଆ' ବୈବାହିକ ସମ୍ପର୍କ ରହିତ ହୋଇ ବନ୍ଧୁ ଶବ୍ଦ ପ୍ରଣୟ, ସୁହୃଦ୍ ଅର୍ଥରେ ବ୍ୟବହୃତ ହେଉଅଛି । ବ୍ୟବସାୟ କ୍ଷେତ୍ରକୁ ଆସି ପହଞ୍ଚିଲା ବେଳକୁ ବନ୍ଧୁ ବା ଫ୍ରେଣ୍ଡର ଅର୍ଥ ସମବ୍ୟବସାୟୀ ବା ପ୍ରତିଦ୍ୱନ୍ଦ୍ୱୀ ବା ଶତ୍ରୁ । ଓକିଲମାନେ ଜବାବ ସୁଆଲ କରୁ କରୁ ଅପର ପକ୍ଷରେ ଓକିଲଙ୍କୁ ଲକ୍ଷ୍ୟ କରି କହନ୍ତି - "My learned friend on the other side" ଅର୍ଥାତ୍ ମୁଁ ଯେଉଁ ପକ୍ଷ ପାଇଁ ଏଠାରେ ଠିଆ ହୋଇଅଛି, ତହିଁର ଅପର ପକ୍ଷରୁ ନିଯୁକ୍ତ ହୋଇଥିବା ମୋର ପ୍ରତିଦ୍ୱନ୍ଦ୍ୱୀ ଓକିଲ । ଏ କ୍ଷେତ୍ରରେ ବନ୍ଧୁ ଶବ୍ଦର ଅର୍ଥ ଶତ୍ରୁ । ବିଦ୍ୱାନ୍‌ର ଅର୍ଥ ମୂର୍ଖ, ଯୋଗ୍ୟତାର ଅର୍ଥ ଅଯୋଗ୍ୟତା, ଇତ୍ୟାଦି ଇତ୍ୟାଦି । ଏଗୁଡ଼ିକ ବ୍ୟବସାୟଗତ ଆର୍ଷ ପ୍ରୟୋଗ । ଯେତିକି ଯେତିକି ସଭ୍ୟତାର ସୋପାନ ଆରୋହଣ କରୁଥିବ, ସେତିକି ସେତିକି ବନ୍ଧୁ'ର ଅର୍ଥ ବିପରୀତାର୍ଥବୋଧକ ହେଉଥିବ । ରାଜନୀତିକ କ୍ଷେତ୍ରରେ ମୁଁ ଜଣକୁ My dearest friend (ମୋର ପ୍ରିୟତମ ବନ୍ଧୁ) ବୋଲି ସମ୍ବୋଧନ କଲେ ବୁଝିବାକୁ ହେବ ଯେ, ସେ ବ୍ୟକ୍ତି ମୋର ରାଜନୀତିକ କ୍ଷେତ୍ରରେ ପ୍ରତିଦ୍ୱନ୍ଦ୍ୱୀ ବା ଶତ୍ରୁ ଏବଂ ଯାହାକୁ ମନ ମଧ୍ୟରେ ଘୃଣା କରାଯାଏ ଏବଂ ବାହାରେ ଆଦବ କାଇଦାର ବଶବର୍ତ୍ତୀ ହୋଇ କୁଣ୍ଢାଇ ପକାଇବାକୁ ହୁଏ । ସେ ହେଲା ମୋର ରାଜନୀତିକ ବନ୍ଧୁ । ଇତି ବ୍ୟାଖ୍ୟାଧ୍ୟାୟଃ ।

ମୁଁ ଏଥରକ ଯେ କଥା ପ୍ରସଙ୍ଗରେ ଉପରେ ଲେଖିଅଛି, ମୋର ଜଣେ ବନ୍ଧୁ ମୋତେ ପଚାରିଲେ ବୋଲି । ସେ ବନ୍ଧୁ ମୋର ରାଜନୀତିକ, ବ୍ୟାବସାୟିକ ବା ବୈବାହିକ ବନ୍ଧୁ ନୁହନ୍ତି । ସେ ବନ୍ଧୁ ମୋର ଜଣେ ଅବୈବାହିକ ଦୋସ୍ତ ଅଟନ୍ତି । ଅତଏବ ପାଠକ ଅବଧାନ ! ଗୋଟିଏ କିଛି ଅଖଡ଼ିଆ ସମ୍ପର୍କ କଳ୍ପନା କରିବେ ନାହିଁ । ଅତଏବ ରାଜନୀତିକ ପ୍ରସଙ୍ଗରେ ଯେବେ ମୁଁ ଆପଣମାନଙ୍କୁ କହେଁ ଗୋଟାଏ କଥା, ତାକୁ ଆପଣମାନେ ଠିକ୍ ତହିଁରେ ଓଲଟା ଅର୍ଥଟା କରିନେବେ । କେବଳ 'ଫ୍ରେଣ୍ଡ୍' ଶବ୍ଦ ପ୍ରୟୋଗରେ ଏହା ଦେଖାଯାଏ ନାହିଁ । ରାଜନୀତିକ ଅନେକ କସରତ୍‌ରେ ଏହା ଦେଖାଯାଏ । ଆଧୁନିକ ଆଦବ କାଇଦା ଆମ୍ଭମାନଙ୍କୁ ମିଛୁଆ ଓ କପଟାଚାରୀ କରି ପକାଏ । ଏଥିଲାଗି ଆଧୁନିକ ସମାଜରେ ଯେ ବେଶି କପଟାଚାରୀ, ତାହାରି ପ୍ରସାର ବେଶି । ଯେ କହେ ମୁଁ ସଂସାରୀ ନୁହେଁ, ଯେ କହେ ମୁଁ 'ଦୁଃଖେଷ୍ୱନୁ ବିଗ୍ନମନା ସୁଖେଷୁ ବିଗତ ସ୍ପୃହାଃ' ତାର ଅନ୍ତ ଚିରି ଦେଖିଲେ ଦେଖାଯିବ ଯେ, ସେ ଜଣେ ପ୍ରଧାନ ସଂସାରୀ । ଆଧୁନିକ ସଭ୍ୟତାର ଏ ଅବସ୍ଥା ଭାଷାକୁ ମଧ୍ୟ ସଂକ୍ରମଣ କରୁଅଛି । ଚିତା କାଟିବାର ଅର୍ଥ ଧପା ମାରିବା । 'ମୌନୀର ଅର୍ଥ ଚୁପ୍‌ସଇତାନ୍, ବୈରାଗୀର ଅର୍ଥ ବଦ୍‌ରାଗୀ । ଭାଷାଟା ଏତଦ୍ୱାରା ବେଶି କ୍ଷମତାଶାଳୀ ହେଉଅଛି । ଅନେକ ଶବ୍ଦ ପ୍ରଥମେ ମୁଖ୍ୟାର୍ଥରେ ବ୍ୟବହୃତ ହେଉଅଛି । ତତ୍‌ପରେ ଦେଶର ଅବସ୍ଥା ଅନୁସାରେ ଉକ୍ତ ଶବ୍ଦ ମୁଖ୍ୟାର୍ଥ ଓ ଗୌଣାର୍ଥରେ ବ୍ୟବହୃତ ହେଉଅଛି । କିଛିଦିନ ପରେ ମୁଖ୍ୟ ଅର୍ଥ ଉଭେଇ ଯାଇ ଗୌଣ ଅର୍ଥ ଭାଷା ପ୍ରୟୋଗରେ ରହି ଯାଉଅଛି । ଗୌଣ ଅର୍ଥ ଭାଷାର ଚିରସ୍ଥାୟୀ ଭାବରେ ବସି ଜମାଟ ହୋଇ ନ ଯିବାଯାକେ

ଲେଖକମାନଙ୍କ ଲେଖାରେ ଦୁଇ ପ୍ରକାର ଅର୍ଥ କରାଯାଇ ପାରେ । ଲେଖକର ମିତ୍ରମାନେ ଭଲ ଅର୍ଥ କରନ୍ତି ଓ ଲେଖକର 'ଫ୍ରେଣ୍ଡ'ମାନେ ଗୋଟାଏ ବିଟିକିଟିଆ ଅର୍ଥ ବ୍ୟବହାର କରି ଦାନ୍ତ ନିକୁଟନ୍ତି ଓ ସେ ତିନି ତୁଣ୍ଡରେ ଛେଳି କୁକୁର ହୋଇ ଶବ୍ଦ ଅମୋକ୍ଷ ପ୍ରେତ ପରି ବୁଲୁଥାଏ । ପୁରୀକୁ ଆସିବା ଦିନଠାରୁ ଶ୍ରୀ ଜଗନ୍ନାଥଙ୍କ କୃପାରୁ ମୋର କେତେଗୁଡ଼ିଏ ନୂତନ ଅନୁଭବ ଲାଭ ହୋଇଅଛି । ସେଗୁଡ଼ିକ ଆଜି ପର୍ଯ୍ୟନ୍ତ ଲିପିବଦ୍ଧ କରିବା ପାଇଁ ଜଗନ୍ନାଥେ ସୁବିଧା ଦେଇ ନାହାନ୍ତି । ନିଜର ଅନୁଭବ ଲିପିବଦ୍ଧ କରିବାକୁ ଯାଇ କାଳେ ଫ୍ରେଣ୍ଡମାନଙ୍କୁ ବୈରାଗୀ କରି ପକାଇବି, ଏହି ଭୟରେ ଏଠାରେ ଏ ମର୍ତ୍ତ୍ୟ-ବୈକୁଣ୍ଠର ଅନୁଭବଗୁଡ଼ିକ ପାଞ୍ଜିରେ ଟିପି ରଖୁଅଛି । ଜଗନ୍ନାଥେ ଦିନେ କୈଫିୟତ ଦେବାକୁ ସୁବିଧା ଦେଲେ ଫ୍ରେଣ୍ଡମାନଙ୍କର ମୋ ପ୍ରତି ସଦୟ ବ୍ୟବହାରର ନମୁନା ପାଠକମାନଙ୍କୁ ଉପହାର ଦେବି । ଇତି ମଧ୍ୟରେ ମୁଁ ଖଣ୍ଡିଏ ଇଂରାଜୀ ପୁସ୍ତକ "The World of Today" (ଆଧୁନିକ ଦୁନିଆ) ପାଠ କରୁଅଛି । ସେ ପୁସ୍ତକରେ ଭିନ୍ନ ଭିନ୍ନ ଲେଖକ, ପର୍ଯ୍ୟଟକ, ସମ୍ବାଦପତ୍ର ଆଦିଙ୍କ ଦ୍ୱାରା ସଂଗୃହୀତ ସମଗ୍ର ପୃଥିବୀର ହାଲଚାଲ ସନ୍ନିବେଶିତ ହୋଇଅଛି । ଏଥିରେ ଏସିଆ, ଇଉରୋପ, ଆମେରିକା, ଆଫ୍ରିକା, ଅଷ୍ଟ୍ରେଲିଆ, ନର୍ଥ ପୋଲ, ସାଉଥ୍ ପୋଲ ଆଦି ଭୂ-ପୃଷ୍ଠର ବିଭିନ୍ନ ସ୍ଥାନର ଅନେକ ବିବରଣ ଅତି ସୁନ୍ଦର ଭାବରେ ଲିଖିତ ହୋଇଅଛି । ସେଗୁଡ଼ିକରୁ କେତେଗୁଡ଼ିଏ ଜ୍ଞାତବ୍ୟ ବିଷୟ ସାଉଁଟି ପାଠକମାନଙ୍କୁ ଉପହାର ଦେବାକୁ ଇଚ୍ଛା କରିଅଛି । ଦୁର୍ଭାଗ୍ୟକୁ ଯେବେ କୌଣସି ସ୍ଥାନର ରୀତି ନୀତି ସଙ୍ଗେ କିମ୍ବା କୌଣସି ଦ୍ୱୀପପୁଞ୍ଜର ଅଧିବାସୀଙ୍କ ସଙ୍ଗେ ଏ ସ୍ଥାନର କିଛି ସାମଞ୍ଜସ୍ୟ ଦେଖାଯିବ, ତାହେଲେ ମୋର ଅକୃତ୍ରିମ ଫ୍ରେଣ୍ଡମାନେ ମୋ ଉପରେ ଭାରି 'ଅନୁରାଗ' ହେବେ । ଯାହାହେଉ ସେ ପର୍ଯ୍ୟନ୍ତ ତାକତ ଅନୁସାରେ 'ହୁସିଆରି'ରେ ଚଳୁ ଚଳୁ ଯାହା କର୍ମରେ ଥିବ ।

ଉତ୍କଳ ସାହିତ୍ୟ/୧୮ଶ ଭାଗ/୪ର୍ଥ ସଂଖ୍ୟା/୧୩୨୧ ସାଲ ।

## ।। ପଞ୍ଚାବନ ।।

ବର୍ତ୍ତମାନ ସମଗ୍ର ଦୁନିଆର ହାଲଚାଲ ଉପସ୍ଥିତ ଯୁଦ୍ଧ । ଜର୍ମାନ୍ ଓ ଅଷ୍ଟ୍ରିଆ ସଙ୍ଗେ ସମ୍ମିଳିତ ବ୍ରିଟିଶ, ଫରାସୀ, ରୁଷ, ବେଲଜିୟମ ରାଜ୍ୟମାନଙ୍କର ସମାହାର । ଏହି ବିଂଶ ଶତାବ୍ଦୀର ସଭ୍ୟତାର ଆଲୋକ ମଧ୍ୟରେ ଏପରି ଲୋମହର୍ଷଣ ଅଭିନୟ ହେବା ବିଷୟ କେତେ ମାସ ପୂର୍ବେ କାହାରି କଳ୍ପନାକୁ ଆସୁ ନ ଥିଲା । ହଠାତ୍ ଇଉରୋପରେ ଭୀଷଣ ଯୁଦ୍ଧ କାଳାନଳ ପ୍ରଜ୍ୱଳିତ ହୋଇ ଉଠିଲା । ଚାଣକ୍ୟ ତାକିଛନ୍ତି - "ଅସନ୍ତୁଷ୍ଟା ଦ୍ୱିଜ ନଷ୍ଟା ସନ୍ତୁଷ୍ଟାଇବ ପ୍ରାର୍ଥିବାଃ । ରାଜା ହେଲେ ରାଜ୍ୟ ଲାଭ ଓ ଦେଶ ଜୟର ଆଶା ଅବଶ୍ୟମ୍ଭାବୀ । ଦୁଇ ରାଜ୍ୟ ମଧ୍ୟରେ ଯୁଦ୍ଧ ହେବା ସମୟ ସମୟରେ ଅନିବାର୍ଯ୍ୟ ହୋଇପଡ଼େ । କିନ୍ତୁ ଉପସ୍ଥିତ କ୍ଷେତ୍ରରେ୍ ଘଟଣାନିଚୟ ନୈପାତନିକ ବୋଲି ପ୍ରତୀୟମାନ ହୁଏ । କେତେଦିନ

ପୂର୍ବେ ଅଷ୍ଟ୍ରିଆର ଯୁବରାଜ ସର୍ବିୟା ଠାରେ ଘାତକ ହସ୍ତରେ ପ୍ରାଣ ହରାଇ ଅଷ୍ଟ୍ରିଆକୁ ଶୋକାକୁଳ କରିଥିଲେ । ଏହି ଉପଲକ୍ଷରେ ଅଷ୍ଟ୍ରିଆ ସର୍ବିୟା ଉପରେ ଦାଉ ସାଧିବାକୁ ବସିଲାରୁ ରୁଷିଆ ସର୍ବିୟାର ପକ୍ଷ ନେବାକୁ ପ୍ରସ୍ତୁତ ହେଲେ ଓ ଜର୍ମାନ୍ ଅଷ୍ଟ୍ରିଆର ମିତ୍ରସ୍ୱରୂପ ଅଷ୍ଟ୍ରିଆର ପକ୍ଷ ସମର୍ଥନ କଲେ । ରୁଷିଆ ଓ ଫ୍ରାନ୍ସ ବନ୍ଧୁ ସୂତ୍ରରେ ପରସ୍ପର ମିତ୍ର । ଏପରି ସ୍ଥଳରେ ଫ୍ରାନ୍ସ, ଜର୍ମାନ୍ ଓ ଅଷ୍ଟ୍ରିଆ ବିରୋଧରେ ରୁଷିଆଙ୍କ ସଙ୍ଗେ ଯୋଗଦେଲେ । ଏକ ପକ୍ଷରେ ଜର୍ମାନ୍ ଓ ଅଷ୍ଟ୍ରିଆ ଅପର ପକ୍ଷରେ ରୁଷିଆ ଓ ଫ୍ରାନ୍ସ । ଏହି ଘୂର୍ଣ୍ଣିବାୟୁରେ ସର୍ବିୟା କେଉଁଆଡ଼େ ଉଭେଇ ଗଲା । ଫ୍ରାନ୍ସ ରୁଷିଆ ସଙ୍ଗେ ଯୋଗ ଦେବାରୁ ସେହି ଆକ୍ରୋଶରେ ଜର୍ମାନ୍ ଫ୍ରାନ୍ସ ଆକ୍ରମଣ କରିବାକୁ ବସିଲେ । ପ୍ରକୃତ ପକ୍ଷରେ ଉପସ୍ଥିତ ଘଟଣାଟା ହେଲା କେବଳ ଜର୍ମାନ୍‌ଙ୍କ ପକ୍ଷରେ ଛଳନା ମାତ୍ର । ଫଳତଃ ଜର୍ମାନ୍ ଫ୍ରାନ୍ସ ପ୍ରତି ଅନେକ ଦିନରୁ ଆଖେଇ ରହି ଅଛନ୍ତି । ୧୮୭୦ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସ ଓ ଜର୍ମାନ୍ ମଧ୍ୟରେ ଲଢ଼େଇ ହୋଇଥିଲା ଓ ଜର୍ମାନ୍‌ମାନେ ଫ୍ରାନ୍ସର ରାଜଧାନୀ ପ୍ୟାରିସ ନଗର ଆକ୍ରମଣ କରିଥିଲେ । ସେଥିରେ ଫ୍ରାନ୍ସ ପରାଜୟ ସ୍ୱୀକାର କରି ଜର୍ମାନ୍‌ଙ୍କୁ ଆଲସେସ ଓ ଓରେନ ନାମକ ପ୍ରଦେଶ ଦ୍ୱୟ ଦେଇ ଜର୍ମାନ୍‌ଙ୍କ ସଙ୍ଗେ ସନ୍ଧି ସ୍ଥାପନ କରିବାକୁ ବାଧ ହେଲେ । ଜର୍ମାନ ସମ୍ରାଟ୍‌ଙ୍କ ପାଟିରେ ସେ ମିଠାଟା ଲାଗିଅଛି ଓ କୌଣସି ଘଟନାକ୍ରମେ ଗୋଟାଏ କିଛି ଓର ମିଳିଲେ ସେ ଟିକିଏ ପାଟି ସୁଆଦିଆ କରିବେ ବୋଲି ଅନେକ ଦିନରୁ ପାଟି ଚାକୁ କରୁଥିଲେ ଓ ଆଖିମିଟିକା ମାରୁଥିଲେ । ସମଗ୍ର ପୃଥିବୀରେ ଶାନ୍ତି ବିରାଜମାନ କରିଥିଲା, ତଥାପି ଜର୍ମାନ ସମ୍ରାଟ୍ ଆପଣା ସୈନ୍ୟବଳ ଓ ନୌବଳ ବଢ଼ାଇବାରେ ବ୍ୟସ୍ତ ଥିଲେ ଓ ସଭ୍ୟ ଜଗତ ଏଥିର କିଛି ଅର୍ଥ ଠଉରାଇ ପାରୁ ନ ଥିଲା । ଘଟଣା ଚକ୍ରରେ ଗୋଟାଏ ସୁଯୋଗ ମିଳିଗଲା - ରୁଷିଆର ଆମର କଳି ଲାଗିଗଲା । ତୁମ୍ଭେ (ଫ୍ରେଞ୍ଚ) କାହିଁକି ଚାଲିଲା ଶଗଡ଼ରେ ହାତ ପୂରାଇଲ ? ଏହିଟା ହେଲା ଜର୍ମାନ ସମ୍ରାଟ୍‌ଙ୍କର ଗୋଟାଏ ଓସ୍ତାଦି ଫେଉ । ଯାହାହେଉ ଏ ପର୍ଯ୍ୟନ୍ତ କଥାଟା ଠିକଣାରୁ ଟପି ନ ଥିଲା । ଜର୍ମାନ ସମ୍ରାଟ୍ ରୁଷିଆ ଓ ସର୍ବିୟାକୁ ଛାଡ଼ି ଦେଇ ଫ୍ରାନ୍ସକୁ ଶିକ୍ଷା ଦେବା ଲାଗି ଫ୍ରାନ୍ସକୁ ଆକ୍ରମଣ କରିବାକୁ ବସିଲେ । ଫ୍ରାନ୍ସର ଉତ୍ତରରେ ବେଲଜିୟମ ଓ ଉତ୍ତର ପୂର୍ବରେ ଜର୍ମାନ୍ । ଅର୍ଥାତ୍ ଫ୍ରାନ୍ସ ଉତ୍ତର ପୂର୍ବ ସୀମା ଜର୍ମାନ୍‌କୁ ଲାଗିଅଛି । ଏହି ଉତ୍ତର ପୂର୍ବ ସୀମାରେ ଅବସ୍ଥିତ ଆଲସେସ୍ ଓ ଲରିଏନ୍ ପ୍ରଦେଶ ଦ୍ୱୟକୁ ବିଗତ ଫ୍ରାଙ୍କୋ ଜର୍ମାନ୍‌ଙ୍କୁ ଛାଡ଼ିଦେଇ ଅଛନ୍ତି । ଫ୍ରାନ୍ସକୁ ଆକ୍ରମଣ କରିବାକୁ ହେଲେ ଫ୍ରାନ୍ସ ଉତ୍ତର ପୂର୍ବ ସରହଦ ବାଟେ ଜର୍ମାନ୍ ଫ୍ରାନ୍ସକୁ ଆକ୍ରମଣ କରିବାର କଥା । କିନ୍ତୁ ବିଗତ ଫ୍ରାଙ୍କୋ-ଜର୍ମାନ-ଯୁଦ୍ଧରେ ଫ୍ରାନ୍ସ ତାଙ୍କର ଉତ୍ତର ପୂର୍ବ ସୀମାନ୍ତବର୍ତ୍ତୀ ପ୍ରଦେଶ ଦିଓଟି ଜର୍ମାନ୍‌ଙ୍କୁ ଦେଇ ଜର୍ମାନ୍‌ଙ୍କ ପାଟି ଲାଳସାପଣିଆରେ ଟିକିଏ ନିଦର୍ଶନ ପାଇଥିବାରୁ ଜର୍ମାନ୍‌ଙ୍କ ପକ୍ଷରେ କାଠିକରପାଠ । ଜର୍ମାନ ସେ ବାଟେ ଫ୍ରାନ୍ସକୁ ଆକ୍ରମଣ କରିବାକୁ ଗଲେ ଜୟଲାଭ କରିବା କଥା ଦୂରେ ଥାଉ. ନିଜେ ନହୁନୁହାଣ ହୋଇଯିବେ । ଏଣେ କିନ୍ତୁ ପାଟିଲାଳସା

ଓ ଜୟ କଣ୍ଟୁଟାକୁ ତ ଥଣ୍ଡା କରିବା ଦରକାର । ଏଥିପାଇଁ ଜର୍ମାନ୍ ସମ୍ରାଟ୍ ସ୍ଥିର କଲେ ଯେ, ପିଠିଆଡୁଆ କରି ନାକ ଛୁଇଁବେ । ଅର୍ଥାତ୍ ବେଲଜିୟମ୍ ବାଟେ ଯାଇ ଫ୍ରାନ୍ସକୁ ଉତ୍ତର ସୀମା ଆଡୁ ଆକ୍ରମଣ କରିବେ । ଆମେ ଓଡ଼ିଆ ପଞ୍ଜାକ ବର୍ତ୍ତମାନ ବାଙ୍କପୁର ବା ସମ୍ବଲପୁର ଗଲାବେଳକୁ ବାରବାଙ୍କରେ ଗଲାଭଳି ଜର୍ମାନ ସମ୍ରାଟ୍ ମଧ୍ୟ ସେହି ସୂତ୍ରରେ ଫ୍ରାନ୍ସ ଆକ୍ରମଣ କଲେ । ବେଲଜିୟମ ଖଣ୍ଡେ କ୍ଷୁଦ୍ର ରାଜ୍ୟ, ସୈନ୍ୟ ସଂଖ୍ୟା ମୁଷ୍ଟିମେୟ । ଏଣେ ଜର୍ମାନ୍‌ଙ୍କର ପୁଞ୍ଜୀକୃତ ସୈନ୍ୟସଂଖ୍ୟା ପ୍ରାୟ ସାଢ଼େ ୪ କୋଟି । ବେଲିଜିୟମର ରାଜ୍ୟାଧିକାର ଅକ୍ଷୁଣ୍ଣ ରଖିବେ ବୋଲି ଜର୍ମାନ୍ ସମ୍ରାଟ୍ ଓ ଜର୍ମାନ ଯୁଦ୍ଧସଚିବ ଏକାଧିକ ଥର ପ୍ରକାଶ୍ୟରେ ଘୋଷଣା କରିଥିଲେ । ଜର୍ମାନ୍ ସମ୍ରାଟ୍ (କୌଶର କେଶରୀ ନୁହନ୍ତି, କି କିଶୋର ନୁହନ୍ତି) ବେଲଜିୟମର ରାଜାଙ୍କୁ ଅନୁରୋଧ କଲେ ଯେ, ଆମର ସୈନ୍ୟ ତୁମ ରାଜ୍ୟ ବାଟେ ଫ୍ରାନ୍ସକୁ ଆକ୍ରମଣ କରିବାକୁ ଯିବେ । ଅତଏବ ତୁମେ ଆମକୁ ଆମ ସୈନ୍ୟଙ୍କ ଗମନାଗମନ ନିମନ୍ତେ ଖଣ୍ଡେ ପାସ୍‌ପୋର୍ଟ (ଅର୍ଥାତ୍ ଛାଡ଼ ଚିଠି) ଦିଅ । ଏହିଠାରେ ଆଇନ ଅପାଠୁଆ ପାଠକମାନଙ୍କୁ କହିରଖିବା ଦରକାର ଯେ ଆଧୁନିକ ସଭ୍ୟ ଜାତି ମଧ୍ୟରେ - ସଭ୍ୟଜଗତର ରାଜାମାନଙ୍କ ମଧ୍ୟରେ କେତେଗୁଡ଼ିଏ ଆନ୍ତର୍ଜାତୀୟ ଆଇନ (International law) ସର୍ବସମ୍ମତିକ୍ରମେ ଲିପବଦ୍ଧ ହୋଇଅଛି । ରାଜାମାନେ ଯେ ନିୟମଗୁଡ଼ାକ ପାଳନ କରିବାକୁ ବାଧ୍ୟ । (ଉଦାହରଣସ୍ୱରୂପ ଆନ୍ତର୍ଜାତୀୟ ଆଇନର ଗୋଟିକେତେ ବିଧି ପାଠକମାନଙ୍କ କୌତୂହଳ ନିବାରଣାର୍ଥେ ଦିଆଗଲା । ଯଥା - ୧. ଯୁଦ୍ଧ ସମୟରେ ପ୍ରତିଦ୍ୱନ୍ଦ୍ୱୀ ରାଜାଙ୍କ ନିକଟକୁ ଯିବା ଆସିବା କରୁଥିବା ବାର୍ତ୍ତାବହ ଦୂତମାନେ ଅବଧ୍ୟ । ସେମାନେ ଯେଉଁ ପତାକା ଧରନ୍ତି, ସେହି ପତାକାରୁ ସେମାନେ ବାର୍ତ୍ତାବହ ଦୂତ ଥିବାର ଜଣାପଡ଼େ । ଘୋର ସଂଗ୍ରାମ ଲାଗିଥିଲେ ମଧ୍ୟ ସେମାନଙ୍କୁ କେହି ଆକ୍ରମଣ ବା ବଧ କରିବେ ନାହିଁ । ୨. ନିରସ୍ତ୍ର ସ୍ତ୍ରୀ ବାଳକମାନେ ଅବଧ୍ୟ । ୩. ଯୁଦ୍ଧ ଘୋଷଣା ନ କରି କେହି ରାଜା ଯୁଦ୍ଧ ଆରମ୍ଭ କରିବେ ନାହିଁ । ୪. କୌଣସି ରାଜା ଯୁଦ୍ଧରେ ଲିପ୍ତ ହେଲେ ତାଙ୍କ ସଙ୍ଗେ ସନ୍ଧିସୂତ୍ରରେ ଆବଦ୍ଧ ରାଜା ତାଙ୍କର ପକ୍ଷ ନେଇ ତାଙ୍କୁ ସାହାଯ୍ୟ କରିବେ ଇତ୍ୟାଦି । ପୁରାକାଳରେ ସଭ୍ୟଜଗତରେ ମଧ୍ୟ ଏହିପରି କେତେଗୁଡ଼ିଏ ଆନ୍ତର୍ଜାତୀୟ ନିୟମ ଥିଲା) । ଗୋଟିଏ ଆନ୍ତର୍ଜାତୀୟ ନିୟମ ଅଛି ଯେ, କୌଣସି ଦୁଇ ରାଜ୍ୟ ମଧ୍ୟରେ ଯୁଦ୍ଧ ଘୋଷଣା ହେଲେ ଅନ୍ୟ କୌଣସି ଅପକ୍ଷପାତୀ (Neutral) ରାଜାଙ୍କ ରାଜ୍ୟ ବାଟେ କୌଣସି ଯୋଦ୍ଧା (Belligerent) ସେନା ଯୁଦ୍ଧ ନିମନ୍ତେ ଯାତାୟାତ କରି ପାରିବେ ନାହିଁ । ଆନ୍ତର୍ଜାତୀୟ ଆଇନର ଉପର୍ଯ୍ୟୁକ୍ତ ନିୟମକୁ ପାଳନ କରି ବେଲଜିୟମ୍‌ର ରାଜା କହିଲେ, ତୁମ ଦୁହିଁଙ୍କ ମଧ୍ୟରେ ଯୁଦ୍ଧ ଚାଲିଅଛି, ମୁଁ ଅପକ୍ଷପାତୀ (Neutral) । ଅତଏବ ଜର୍ମାନ ସେନା ମୋ ରାଜ୍ୟ ଦେଇ ଫ୍ରାନ୍ସ ଆକ୍ରମଣ କରିବାକୁ ମୁଁ ଅନୁମତି (Pass-port) ଦେଇ ପାରିବି ନାହିଁ । ଏପରି ଅନୁମତି ଦେଲେ ମୁଁ ଆନ୍ତର୍ଜାତୀୟ ଆଇନ ଭଙ୍ଗ କରିବାରେ ଅପରାଧୀ ହେବି । ଏହା ଶୁଣି ଜର୍ମାନ କୈଶରଙ୍କର କେଶର ଟଙ୍କୁରିତ

ହୋଇଗଲା । ଏଡ଼େ କ୍ଷୁଦ୍ର ରାଜ୍ୟ ବକଟେ, ସେ ମୋ ଆଦେଶ ଲଙ୍ଘନ କରିବାକୁ ସ୍ପର୍ଦ୍ଧା କରୁଅଛି । ଅତଏବ ତାହାର ଦର୍ପ ଚୂର୍ଣ୍ଣ କରିବାକୁ ହେବ । ଏହି ଉଦ୍ଦେଶ୍ୟରେ ଜର୍ମାନୀଙ୍କ ବଳ କ୍ଷୁଦ୍ର ବେଲଜିୟମ୍ ରାଜ୍ୟ ଉପରେ ପତିତ ହେଲା । ବେଲଜିୟମ୍ କ୍ଷୁଦ୍ର ରାଜ୍ୟ, ତାହାର ସୈନ୍ୟବଳ ଅଳ୍ପ । ସେ ସ୍ୱପ୍ନରେ ସୁଦ୍ଧା ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ନ ଥିଲା । ତଥାପି କ୍ଷୁଦ୍ର ହୋଇ ସୁଦ୍ଧା ନ୍ୟାୟର ଅନୁରୋଧରେ ବେଲଜିୟମ୍ ପ୍ରବଳ ପରାକ୍ରାନ୍ତ ଜର୍ମାନୀଙ୍କର ଭ୍ରୂକୁଟିକୁ ଭ୍ରୂକ୍ଷେପ କଲା ନାହିଁ । ବେଲଜିୟମ୍ ରାଜାଙ୍କର ଏ ଅଟଳ ବିଧିରକ୍ଷା ଓ ସ୍ୱାର୍ଥତ୍ୟାଗ ଦେଖି ସମଗ୍ର ସଭ୍ୟ ଜଗତ ତାଙ୍କର ଭୂୟସୀ ପ୍ରଶଂସା କରୁଅଛି । ବର୍ତ୍ତମାନ ସନ୍ଧିସୂତ୍ରରେ ବେଲଜିୟମ ଆମ ବ୍ରିଟିଶ ସମ୍ରାଟ୍‌ଙ୍କ ସଙ୍ଗେ ମିତ୍ରତା ପାଶରେ ଆବଦ୍ଧ । ବ୍ରିଟିଶ କହିଲେ - ବେଲଜିୟମ୍‌କୁ ତାହାର Neutrality (ଅପକ୍ଷପାତିତ୍ୱ) ରକ୍ଷା କରିବା ବିଷୟରେ ଅମେ ସାହାଯ୍ୟ ଦେବୁଁ ଓ ସମଗ୍ର ସଭ୍ୟଜଗତ ବେଲଜିୟମ୍‌ର ସହାୟ ହେବେ । ଜର୍ମାନ୍ ବେଲଜୟିମ ବିରୋଧରେ ଯୁଦ୍ଧ ଘୋଷଣା କଲେ । ବେଲଜିୟମ ଗ୍ରେଟ୍ ବ୍ରିଟେନ୍ ଠାରୁ ଅଭୟବାଣୀ ପାଇ ଆପଣା ପ୍ରତିଜ୍ଞା ପାଳନ କରିବା ସକାଶେ ବଦ୍ଧପରିକର ହେଲେ ଓ ଜର୍ମାନ ଆକ୍ରମଣକୁ ସମ୍ଭାଳିବା ପାଇଁ ଦମ୍ଭବାନ୍ଧି ଠିଆହେଲେ । ବର୍ତ୍ତମାନ ସମସ୍ତ ସଭ୍ୟ ଜଗତର ଆଗ୍ରହାନ୍ୱିତ ଦୃଷ୍ଟି ବେଲଜିୟମ୍ ଉପରେ । ସମସ୍ତେ ବେଲଜିୟମ୍‌କୁ ଧନ୍ୟ ଧନ୍ୟ କହୁଅଛନ୍ତି । ଯେ ପ୍ରାଣପଣରେ ଆପଣା ପ୍ରତିଜ୍ଞା ରକ୍ଷାକରେ ଓ ନ୍ୟାୟ ପଥରେ ଚଳେ, ସେ ମନୁଷ୍ୟ ପ୍ରକୃତ ମନୁଷ୍ୟ ଓ ସେ ଜାତି ପ୍ରକୃତ ଜାତି । ସେଥିପାଇଁ ଡାକୁଛି -

ନିନ୍ଦନ୍ତୁ ନୀତିନିପୁଣା ଯଦି ବା ସ୍ତୁବନ୍ତୁ
ଲକ୍ଷ୍ମୀଃ ସମାବିଷ୍ଟକୁ ଗଚ୍ଛତୁଃ ନୋ ଯଥେଚ୍ଛଂ ।
ଅଦ୍ୟୈବ ବା ମରଣ ମସ୍ତୁ ଯୁଗାନ୍ତରେ ବା
ନ୍ୟାୟାତ୍ ପଥଃ ପ୍ରବିଚଳନ୍ତି ପଦଂ ନ ଧୀରାଃ

ଏହି ଶ୍ଳୋକକୁ ଗଛିଗାଛି ଆମର ଜଣେ ଦକ୍ଷିଣୀ ଅଷ୍ଟାବଧାରୀ ପଣ୍ଡିତ ସମସ୍ୟା ପୂରଣ କରିଅଛନ୍ତି -

ସମ୍ପଦ୍ ବିନଶ୍ୟତୁ ବିନଶ୍ୟତୁ ରାଜମୈତ୍ରୀ
ଭାର୍ଯ୍ୟା ଚ ଗର୍ହିତୁ ବିନିନ୍ଦତୁ ପୁତ୍ରବର୍ଗଃ
ବାନ୍ଧୋସ୍ତୁ ମୃତ୍ୟୁରଥିବା ସକଳସ୍ୟ ନାଶଃ
ନ୍ୟାୟାତ୍ ପଥଃ ପ୍ରବିଚଳନ୍ତି ପଦଂ ନ ଧୀରାଃ ।

ଉପସ୍ଥିତ କ୍ଷେତ୍ରରେ ବେଲଜିୟମ୍ ରାଜାଙ୍କର କର୍ତ୍ତବ୍ୟନିଷ୍ଠା ଆଜି ସମଗ୍ର ଜଗତକୁ ସ୍ତମ୍ଭିତ, ମୋହିତ, ଚକିତ ଓ ଉତ୍ସାହିତ କରିଅଛି । ଆଜି ଲୋକମୁଖରେ ବେଲଜିୟମ୍‌ର ପୌରୁଷ ଉଦ୍‌ଘୋଷିତ ହେଉଅଛି । ବେଲଜିୟମ୍‌ର ଦୃଢ଼ କର୍ତ୍ତବ୍ୟନିଷ୍ଠାରୁ ଜର୍ମାନ ସମ୍ରାଟ୍ ମଧ୍ୟ କେତେକ ଶିକ୍ଷାଲାଭ କରିଅଛନ୍ତି । ବେଲଜିୟମ୍ ପ୍ରତି ଜର୍ମାନ ଅବୈଧ ଅତ୍ୟାଚାର କରି ଆନ୍ତର୍ଜାତୀୟ ବିଧିବିଧାନ ଲଙ୍ଘନ କରି ସମସ୍ତ ସଭ୍ୟଜଗତର ବିରାଗଭାଜନ

ହୋଇଅଛନ୍ତି । ଜାପାନ ମଧ୍ୟ ଜର୍ମାନ ବିରୋଧରେ ଯୁଦ୍ଧ ଘୋଷଣା କରିଅଛନ୍ତି ଓ ବର୍ତ୍ତମାନ ଜର୍ମାନସେନା ଚାରିଆଡ଼େ ଇଂରାଜ, ଫ୍ରାନ୍‌ସ, ରୁଷିଆ, ବେଲଜିୟମ୍, ଜାପାନ ସୈନ୍ୟବଳଦ୍ୱାରା ପରିବେଷ୍ଟିତ ହୋଇଅଛନ୍ତି । ମାନୁଷୀ କଳନା ଦ୍ୱାରା ଦେଖା ଯାଉଅଛି ଯେ, ଏ ବୃହତ ସମ୍ମିଳନୀ ଆଗରେ ଜର୍ମାନୀଙ୍କ ବଳ ପରାଭୂତ ଓ ଚୂର୍ଣ୍ଣ ହେବ । ଜର୍ମାନ ବେଲଜିୟମ୍ ରାଜ୍ୟ ଆକ୍ରମଣ କରି, ବେଲଜିୟମ୍‌ର ପ୍ରଧାନ ନଗର, ବ୍ରସେଲସ୍ ଅଧିକାର କରି, ବେଲଜିୟମର ଅଧାଅଧି ମାଡ଼ିବସି ନାନା ଅତ୍ୟାଚାର କରୁଅଛନ୍ତି ଓ କେତେଗୁଡ଼ିଏ ପ୍ରାଚୀନ କୀର୍ତ୍ତିପୂର୍ଣ୍ଣ ମହାନଗରୀ ଧ୍ୱଂସ କରିଅଛନ୍ତି ଓ ବର୍ତ୍ତମାନ ଫ୍ରାନ୍‌ସର ପ୍ରଧାନ ନଗରୀ ପ୍ୟାରିସ୍ ନଗରୀ ଅଭିମୁଖରେ ଅଭିଯାନ କରୁଅଛନ୍ତି । ସମ୍ମିଳିତ ମିତ୍ରସେନା ବର୍ତ୍ତମାନ ଫ୍ରାନ୍‌ସ ଭୂମିରେ ଜର୍ମାନ୍ ସେନାଙ୍କ ସଙ୍ଗେ ଘୋର ଯୁଦ୍ଧରେ ମାତିଅଛନ୍ତି ଓ ଇତି ମଧ୍ୟରେ ଗୋଟିକେତେଖଣ୍ଡ ସମରର ଅଭିନୟ ହୋଇ ଯାଇଅଛି । ଅଧିକାଂଶ ସ୍ଥଳରେ ଜର୍ମାନ ସୈନ୍ୟ ଜୟଲାଭ କଲେ ମଧ୍ୟ ବିଶେଷ କ୍ଷତି ସହ୍ୟ କରୁଅଛନ୍ତି । ଜର୍ମାନଙ୍କର ଅନେକ ଜାହାଜ ସମ୍ମିଳିତ ରାଜାମାନଙ୍କର ହସ୍ତଗତ ହୋଇଅଛି । ଜର୍ମାନମାନେ ବ୍ୟୋମଯାନରେ ଚଢ଼ି ବୋମା ପକାଉ ଅଛନ୍ତି ଓ ଉକ୍ତ ବୋମା ନିର୍ମିତ ବ୍ୟୋମଯାନ (zeppllin) ମଝିରେ ମଝିରେ ସମ୍ମିଳିତ ରାଜାଙ୍କ ବଳ ଦ୍ୱାରା ଧୃତ ହେଉଅଛି । ଏଣେ ଜର୍ମାନ୍‌ର ପୂର୍ବ ସୀମାନ୍ତରେ ରୁଷ ସେନା ରଗଡ଼ ଲଗାଇ ଅଷ୍ଟ୍ରିଆଙ୍କୁ ପରାସ୍ତ କରି ଜର୍ମାନ୍ ଓ ଅଷ୍ଟ୍ରିଆ ମଧ୍ୟରେ ପ୍ରବେଶ ଲାଭ କରୁଅଛନ୍ତି । ପଶ୍ଚିମରେ ଜର୍ମାନ ପର ରାଜ୍ୟକୁ ମାଡ଼ିବାରେ ବ୍ୟସ୍ତ । ଏଣେ ପୂର୍ବରେ ରୁଷିଆ ଜର୍ମାନୀଙ୍କ ଅନ୍ତୁଡ଼ିଶାଳ କୋଡ଼ିବାରେ ବ୍ୟସ୍ତ । ଏଥିପାଇଁ ମାଇପେ କହନ୍ତି - ଗୋଦର କୋଡ଼େ ଯେତେ ମାଡ଼େ ତେତେ । ଜର୍ମାନ୍ ଭୟ କରୁଅଛନ୍ତି, କି କେତେ କଣ ପାଉ ଅଛନ୍ତି କିଛି ଜଣା ପଡୁ ନାହିଁ ।

ଯାହାହେଉ ବର୍ତ୍ତମାନ ଉପସ୍ଥିତ ମହାଯୁଦ୍ଧ ଭାରତବାସୀଙ୍କ ପକ୍ଷରେ ଗୋଟିଏ ଶୁଭଯୋଗ ଘଟାଇଛି । ଭାରତବାସୀମାନେ ଏ ସୁଯୋଗରେ ଧନ, ମନ, ପ୍ରାଣ, ଜନ ଦେଇ ବ୍ରିଟିଶ ସମ୍ରାଟ୍‌ଙ୍କଠାରେ ପ୍ରଗାଢ଼ ରାଜଭକ୍ତି ଢାଳିବାକୁ ସୁବିଧା ପାଇଅଛନ୍ତି । ଲକ୍ଷ ଲକ୍ଷ ଟଙ୍କା ଭାରତୀୟ ଯୁଦ୍ଧ ସାହାଯ୍ୟ ଫଣ୍ଡ (Indian War Relief Fund) ନିମନ୍ତେ ପ୍ରତିଦିନ ଉଠୁଅଛି । ଭାରତୀୟ ନରପତିମାନେ ଆପଣାର ଦେହ, ଅର୍ଥ ଏବଂ ଜନମାନଙ୍କୁ ବ୍ରିଟିଶ ସମ୍ରାଟ୍‌ଠାରେ ଉପସ୍ଥିତ ମହାସମର ନିମନ୍ତେ ସମର୍ପଣ କରିଅଛନ୍ତି । ଭାରତୀୟ ସେନାମାନଙ୍କ ମଧ୍ୟରୁ ଲକ୍ଷାବଧି ସୈନ୍ୟ ଅବଲୀଳାକ୍ରମେ ଇଂରେଜଙ୍କ ପକ୍ଷରୁ ଏହି ମହାସମରରେ ଯୋଗଦେବା ନିମନ୍ତେ ଆଗ୍ରହ ସହକାରେ ସମରାଙ୍ଗଣକୁ ଯାତ୍ରା କରିଅଛନ୍ତି ଓ ଆବଶ୍ୟକ ହେଲେ ପ୍ରତ୍ୟେକ ସମର୍ଥ ଭାରତବାସୀ ଇଂରେଜଙ୍କ ସଙ୍ଗେ ମିଳି ଇଂରେଜଙ୍କ ନିମନ୍ତେ ଆପଣା ଜୀବନ ଦେବାଲାଗି ପ୍ରସ୍ତୁତ ହୋଇ ଅଛନ୍ତି । ସ୍ୱଜାତୀୟମାନଙ୍କ ମଧ୍ୟରେ ଯେଉଁ ଯୁଦ୍ଧ ଲାଗିଅଛି, ସେଥିରେ ଶ୍ୱେତାଙ୍ଗ ଇଂରାଜ ସୈନ୍ୟଙ୍କ ସହିତ ଏକତ୍ର ଠିଆ ହୋଇ ଜର୍ମାନଙ୍କ ବିରୋଧରେ ଯୁଦ୍ଧ କରିବାକୁ କୃଷ୍ଣକାୟ ଭାରତୀୟ ସେନାଙ୍କୁ ଭାରତ

ସମ୍ରାଟ୍ ସୁବିଧା ଦେଇଅଛନ୍ତି । ସେଥିପାଇଁ ଆଜି ସମଗ୍ର ଭାରତ ଗର୍ବ ବିସ୍ଫାରିତ ହୋଇଅଛି ଓ ଭାରତୀୟ ଜାତି ଆପଣାକୁ ବୀର ବୋଲି ପରିଗଣିତ କରିବାକୁ ଅବସର ପାଇବେ ବୋଲି ଭାବି ଆନନ୍ଦରେ ଉତ୍‌ଫୁଲ୍ଲ ହେଉଅଛନ୍ତି । ଏହି ମହାସମରରେ ଆଉ ଗୋଟିଏ ମହାଶିକ୍ଷା ବ୍ରିଟିଶ ଜାତି ଆମ୍ଭମାନଙ୍କୁ ଦେଉଅଛି । ଯେତେବେଳେ ଇଉରୋପରେ ଶାନ୍ତି ବିରାଜୁଥିଲା, ସେତେବେଳେ ଆୟର୍‌ଲାଣ୍ଡର ସ୍ୱାୟତ୍ତ-ଶାସନ (Home Rule) ବ୍ୟାପାର ଘେନି ବ୍ରିଟିଶ ରାଜନୀତିକ କ୍ଷେତ୍ରରେ ମହାଗଣ୍ଡଗୋଳ ଓ କୋଳାହଳ ଉପସ୍ଥିତ ହୋଇଥିଲା । ଏପରିକି, ଆଭ୍ୟନ୍ତରୀଣ ବିପ୍ଳବର ଆଶଙ୍କା ହୋଇଥିଲା । କିନ୍ତୁ ଇଉରୋପର ସମରାଗ୍ନି ଜଳି ଉଠିଲା ବ୍ରିଟିଶ ଜାତି ଓ ଜର୍ମାନ ଜାତି ମଧ୍ୟରେ ଯୁଦ୍ଧ ଘୋଷଣା ହେଲା ଓ ବ୍ରିଟିଶ ଜାତି ବହିଃଶତ୍ରୁ ବିରୋଧରେ ଦଣ୍ଡାୟମାନ ହେଲେ । ମାତ୍ର ତତ୍‌କ୍ଷଣାତ୍ ଇନ୍ଦ୍ରଜାଲ ପରି ଆଭ୍ୟନ୍ତରୀଣ ବିବାଦ ବିସମ୍ବାଦ କେଉଁଆଡ଼େ ଉଭେଇଗଲା ଓ ସମସ୍ତ ଆୟର୍‌ଲାଣ୍ଡ ଏକଯୋଗ ହୋଇ ବହିଃଶତ୍ରୁ ବିରୋଧରେ ଦଣ୍ଡାୟମାନ ହେଲେ । ସେଥିପାଇଁ କହନ୍ତି - ମଇଁଷି ଶିଙ୍ଗ ଫଟା, ଯୁଝିବା ବେଳକୁ ଗୋଟା । ଏ ଇଉରୋପୀୟ ମହାସମର ବହ୍ନି ନିର୍ବାପିତ ନ ହେବା ପର୍ଯ୍ୟନ୍ତ ଗ୍ରେଟ ବ୍ରିଟେନରେ କୌଣସି ଅନ୍ତର୍ବିବାଦର ଚିହ୍ନ ଦେଖାଯିବ ନାହିଁ । ଯେଉଁ ଜାତି ସଭ୍ୟତାର ଏ ଗୂଢ଼ ମନ୍ତ୍ରକୁ ପୁରଶ୍ଚରଣ କରି ସିଦ୍ଧି ଲାଭ କରିଅଛି, ସେ ଜାତି ମହା ମହୀୟାନ୍ । ସେ ଜାତି ସମ୍ମୁଖରେ ଜଗତ ପରାଜିତ ଓ ପ୍ରକୃତି ପରାହତ । ଏକତା ମନ୍ତ୍ରରେ ଦୀକ୍ଷିତ ହୋଇ ଆଜି ବ୍ରିଟିଶ ଜାତି ଜଗତରେ ପୂଜିତ ଓ ବ୍ରିଟିଶ ପ୍ରଭା ଜଗତରେ ବ୍ୟାପ୍ତ । କି କାନେଡ଼ା, କି ଅଷ୍ଟ୍ରେଲିଆ ଯେଉଁଠାରେ ବ୍ରିଟିଶ ଜାତି ଉପନିବେଶ ସ୍ଥାପନ କରିଅଛନ୍ତି, ସେଠାରେ ପୂର୍ଣ୍ଣ ସ୍ୱାୟତ୍ତ-ଶାସନ ଥିଲେ ମଧ୍ୟ ବ୍ରିଟିଶ ଜାତିର ହୃଦୟ-ତନ୍ତ୍ରୀ ସଙ୍ଗେ ସେମାନଙ୍କ ହୃଦୟତନ୍ତ୍ରୀ ନିନାଦିତ ହୋଇଅଛି । ଏହାକୁ କହନ୍ତି ଜାତୀୟତା, ଏହାକୁ କହନ୍ତି ସଭ୍ୟତାଭିମାନ, ଏହାକୁ ହିଁ କହନ୍ତି ଜାତୀୟ ଜୀବନର ସାର୍ଥକତା । ଧନ୍ୟ ସଭ୍ୟ ବ୍ରିଟିଶ ଜାତି । ଧନ୍ୟ ତୁମ୍ଭର ନିୟମ ନିଷ୍ଠା । ଆଜି ଭାରତ ତୁମ୍ଭଙ୍କୁ ଗୁରୁ ପଦରେ ପାଇ ଆପଣାକୁ ଧନ୍ୟ ମଣିଅଛି ।

ଏଠାରେ ଆଉ ଗୋଟିଏ ବିଷୟ ଉଲ୍ଲେଖଯୋଗ୍ୟ । ଇଂଲଣ୍ଡରେ କେତେକ ବର୍ଷ ହେଲା Suffragist movement ଅର୍ଥାତ୍ ସ୍ତ୍ରୀମାନଙ୍କର ରାଜନୀତିକ ଅଧିକାର ବଢ଼ାଇବା ନିମନ୍ତେ ବିଶେଷ ଆନ୍ଦୋଳନ ଲାଗିଥିଲା ଓ ସ୍ତ୍ରୀମାନେ ପୁରୁଷମାନଙ୍କ ସମକକ୍ଷ ହୋଇ ରାଜନୀତିକ କ୍ଷମତାପ୍ରାପ୍ତ ହେବା ପାଇଁ ସମାଜ ଉପରେ ନାନାପ୍ରକାର ଗୋଳମାଳ ଓ ଅତ୍ୟାଚାର ଆରମ୍ଭ କରିଥିଲେ । ଏପରି କି ଉକ୍ତ ଉଚ୍ଛୃଙ୍ଖଳା ବୀରା ବାଳାମାନଙ୍କ ଆନ୍ଦୋଳନ କିପରି ସ୍ଥଗିତ ହେବ ଓ ନେତ୍ରୀମାନଙ୍କ ଅବାଧ୍ୟତା କିପରି ସଂଯତ ହେବ, ଏଥିପାଇଁ ବ୍ରିଟିଶ ରାଜପୁରୁଷମାନେ ଚିନ୍ତିତ ହୋଇ ଉଠିଥିଲେ । କିନ୍ତୁ ଇଉରୋପରେ ମହାସମର ଉପସ୍ଥିତ ହେବା ସଙ୍ଗେ ସଙ୍ଗେ, ବ୍ରିଟେନ ବହିଃଶତ୍ରୁ ସଙ୍ଗେ ଯୁଦ୍ଧ କରିବାକୁ ବାଧ୍ୟ ହେବା ସଙ୍ଗେ ସଙ୍ଗେ ସେ Suffragist movement କେଉଁଆଡ଼େ ମିଳାଇ ଯାଇଅଛି । ଜାତି

ମଧ୍ୟରେ ଏହି ସବୁ ଜାତୀୟତାର ଅମୂଲ୍ୟ ଉପାଦାନମାନ ଥିବାରୁ ଆଜି ଇଂରେଜ ଜାତି ଧନ୍ୟ ହୋଇ ଅଛନ୍ତି ଓ ସମଗ୍ର ସଭ୍ୟ ଜଗତରେ ମଉଡ଼ମଣିର ସ୍ଥାନ ଅଧିକାର କରିଅଛନ୍ତି ।

ଯାହାହେଉ, ଜଣେ ଜଣେ ଅକଡ଼ବାଇ୍ ଲୋକଙ୍କ ଏକଜିଗିରିଆ ଓ ଜିଦିବାଦି କଥାରେ ସମଗ୍ର ଜଗତ କିପରି ଛାରଖାର ହୋଇପାରେ, ତାହା ପୂର୍ବେ ଇତିହାସରେ ପାଠ କରିଥିଲୁଁ ଓ ବର୍ତ୍ତମାନ ବିଂଶ ଶତାବ୍ଦୀରେ ଏ ଯୁଦ୍ଧ ଉତ୍ତମ ରୂପେ ଶିଖାଇ ଦେଲା । ଜର୍ମାନ ସମ୍ରାଟ୍‌ଙ୍କ ଯୁଦ୍ଧ ଘୋଷଣା ଦ୍ୱାରା ବର୍ତ୍ତମାନ ସମସ୍ତ ଜଗତର ଶାନ୍ତି ଲୁପ୍ତ ହୋଇଅଛି । ସମଗ୍ର ଜଗତର ବାଣିଜ୍ୟ ବିଚଳିତ ହୋଇଅଛି । ପୂର୍ବ ଗୋଲାର୍ଦ୍ଧ ଓ ପଶ୍ଚିମ ଗୋଲାର୍ଦ୍ଧ ଉଭୟତ୍ର ଘୋର ଆତଙ୍କ ଉପସ୍ଥିତ ହୋଇଅଛି । ଅନେକ ମହାପ୍ରାଣୀ ଏ ଯଜ୍ଞରେ ଆହୁତି ପାଉଅଛନ୍ତି ଓ ପାଇବେ । ସହସ୍ର ସହସ୍ର ପରିବାର କର୍ତ୍ତବ୍ୟଶୂନ୍ୟ ହେଉଅଛି ଓ ହେବ, ଲକ୍ଷ ଲକ୍ଷ ପ୍ରାଣୀ ସଙ୍ଗୀଶୂନ୍ୟ, ଅନାଥ ଓ ବାସଶୂନ୍ୟ ହେବେ । ରଣଚଣ୍ଡୀଙ୍କର ଲାଲ ଜିହ୍ୱାର ରକ୍ତ ପିପାସା କେବେ ନିର୍ବାରିତ ହେବ, ତାହା ବିଶ୍ୱନିୟନ୍ତା ମହେଶ୍ୱରଙ୍କୁ ଜଣା । କିନ୍ତୁ ଆମ୍ଭମାନଙ୍କର ଏହି ଧାରଣା ଯେ ଶେଷରେ ଧର୍ମର ଜୟ ହେବ, ପାପର ପରାଜୟ ହେବ, ଅତ୍ୟାଚାର ଓ ଅପରାଧର ଦଣ୍ଡବିଧାନ ହେବ । ଗର୍ବିତର ଗର୍ବ, ଘାତୁକର ଜିଘାଂସା, ସ୍ୱାର୍ଥାନ୍ଧର ସ୍ୱାର୍ଥ ଲାଳସା, ଲୋଭୀର ପର ବୃତ୍ତି ଲିପ୍‌ସା, ସବୁ ଚୂର୍ଣ୍ଣ ବିଚୂର୍ଣ୍ଣ ହେବ । ଜଗତରେ ଶାନ୍ତି ବିରାଜମାନ କରିବ । ଭଗବାନ୍ ଯେ ଶାନ୍ତିମୟ, ସୁଦିନ ଶୀଘ୍ର ଆନୟନ କରନ୍ତୁ - ଏହା ହିଁ ଆନ୍ତରିକ ପ୍ରାର୍ଥନା ।

ଏହି ମହାସମରରେ ମୋର ଶ୍ରୀକ୍ଷେତ୍ର ଅନୁଭୂତି ଅକିଞ୍ଚିତ୍‌କର ହୋଇ ପଡ଼ିଅଛି । ଭାରତରେ ସମସ୍ତେ ମୋ ପରି ନିଜ ନିଜର ଅକିଞ୍ଚନତ୍ୱ ଅନୁଭବ କରିପାରୁଅଛନ୍ତି । ଏତିକି ହେଲେ ହେଲା ।

ଉତ୍କଳ ସାହିତ୍ୟ/୧୮ଶ ଭାଗ/୬ଷ୍ଠ ସଂଖ୍ୟା/୧୩୨୨ ସାଲ ।

## ।। ଛପନ ।।

ସହୃଦୟ ଲାଗୁଆ ପାଠକ ଅବଧାନ ! ବହୁକାଳ ପରେ ଽବଧାନ । ଅର୍ଥାତ୍ ଉତ୍କଳ ସାହିତ୍ୟସେବୀମାନେ ମଝିରେ ମଝିରେ ଫଲ୍‌ଗୁନଦୀ ଭଳିଆ ଅନ୍ତଃସଲିଳା (ଶବ୍ଦଟା କିନ୍ତୁ ସ୍ତ୍ରୀଲିଙ୍ଗାନ୍ତ) ହୋଇ ଗୁମ୍ ଖାଇଯା'ନ୍ତି । ଫେର ଉତ୍କଳ ସରସ୍ୱତୀଙ୍କ ବହୁ ଭାଗ୍ୟରୁ ଓ ସମ୍ପାଦକଙ୍କ ଦୃକ୍‌ପାତ ଅନୁଗ୍ରହରୁ ଲେଖକଯାକ ଚେଇଁ ଉଠନ୍ତି । ଉପସ୍ଥିତ ଲେଖକ ଖୋଦ୍ ଏହି ଶ୍ରେଣୀର ଜଣେ ଅନୁଭବୀ । ସମ୍ପାଦକଙ୍କ ଅଭିମାନ ପ୍ରତି ତାଙ୍କର ଗୋଟାଏ ଭୟ ବରାବର ରହି ଯାଇଅଛି, ସେଥିଲାଗି ସରସ୍ୱତୀଙ୍କ ଡୋରିଟା ବେଳେ ବେଳେ ଟଣା ଭିଡ଼ା ଲାଗେ । ନଚେତ୍ ଏତକ ଡର ନ ଥିଲେ ସରସ୍ୱତୀ ତ ସରସ୍ୱତୀ, ତାଙ୍କ ଗୋସେଇଁବାପା ମଧ୍ୟ କିଛି କରିପାରନ୍ତେ ନାହିଁ । ଯାହାହେଉ ଏ କଥାଟା ସମ୍ପାଦକଙ୍କ

ଆଗରେ ସ୍ୱୀକାର କଲେ ଭବିଷ୍ୟତ୍‌କୁ ଆମର ତ୍ରାହି ନାହିଁ । କାରଣ ତାହା ନ ହେଲେ ସମ୍ପାଦକ ସବୁବେଳେ ଆଖି ନାଲି କରି ଆମକୁ ଲେଖା ତଲବ କରିବେ ଓ ଆଇନ୍‌ର estoppe ଓ admission (ଏକରାରି) ଧାରା ଅନୁସାରେ ଆମକୁ କାଲୁବାଲୁ କରିବେ । ଏଥିପାଇଁ କେତେକ ଦିନ ଲେଖନୀ ନ ଧରିବାର କୈଫିୟତ ସମ୍ପାଦକଙ୍କ ନିକଟରେ ଅନ୍ୟ ପ୍ରକାରେ ଦେବାକୁ ହୁଏ । ଫଳ କଥା ଏହି କି, ଗତ ସଂଖ୍ୟାର ସାହିତ୍ୟରେ 'ହାଲଚାଲ' ନାମରେ ଖଡ଼ି ପଡ଼ି ନ ଥିବାରୁ ଏ ସଂଖ୍ୟା ପାଇଁ ସମ୍ପାଦକ ମଉସୁଫଙ୍କର ତଲବ ଓ ତାକିଦ ଆସିଲା । ଇତି ମଧ୍ୟରେ ମୋର ପିତୃଦେବଙ୍କର ବିୟୋଗ ହୋଇଥିବାରୁ ସେହି କୈଫିୟତ୍‌ଟା ଦେଇ ଖଲାସ ପାଇଲି । ପାଠ ଡାକୁଛି, ବାପଥିଲା ପୁଅ ସଭାରେ ହାରେ ନାହିଁ । ବାପାଙ୍କ ଅସ୍ତିତ୍ୱ ସଙ୍ଗେ ସଭାରେ ହାରଜିତର ଯେ ଗୋଟାଏ ଅବିଚ୍ଛେଦ୍ୟ କାର୍ଯ୍ୟ କାରଣ ସମ୍ପର୍କ ଅଛି, ଏ ଢଗର ଅର୍ଥ ତାହା ନୁହେଁ । ମତଲବ୍‌ଟା ଏହି କି ଜୀବତ୍ - ପିତୃକ ବ୍ୟକ୍ତିର ଆପଣା ଉପରୁ ଦାୟିତ୍ୱ ଖଲାସ କରିବାକୁ ଗୋଟାଏ ସୁବିଧା ଥାଏ । ମୋ ଉପରେ କୌଣସି ଗୁରୁଭାର, କୌଣସି ଦୋଷ, କୌଣସି କାଇଲ୍ ମାକୁଲ ଆରୋପ, କୌଣସି ବିପଦ ହେଲେ ତାହା ଖଲାସ କରିବା ନିମନ୍ତେ ମୁଁ ଯେତେ ଦୂର ତତ୍‌ପର, ଆଉ ଜଣେ ମାତେ ବେଲସୁ ଖଲାସ କରିବା ବିଷୟରେ ମୋ ଅପେକ୍ଷା ବେଶି ତତ୍‌ପର । ମନରେ ଏହି ଦମ୍ଭ ବା ହେମତ୍ ଥିବାଯାକେ ଲୋକ କାହାକୁ ଖାତିର କରେ ନାହିଁ ଓ ଆପଣା ଇଚ୍ଛାନୁରୂପ ସ୍ୱାଧୀନ ଭାବରେ କାର୍ଯ୍ୟ କରିଥାଏ । ପିତୃ ବିୟୋଗ ହେବା ସଙ୍ଗେ ସଙ୍ଗେ ମନରୁ ସେ ଦମ୍ଭ, ସେ ହେମତ୍, ସେ ବଳ, ସେହି ବେପରୁଆ ଭାବ କେଉଁଆଡ଼େ ମିଳାଇଯାଏ । ପିତା ଥିବାଯାକେ ପୁଅର ପକ୍ଷ ସମର୍ଥନ କରିବାକୁ, ପୁଅକୁ ବିପଦରୁ ରକ୍ଷା କରିବାକୁ ପୁଅ ନିଜେ ସ୍ୱତଃ ପ୍ରସ୍ତୁତ ଓ ପିତା ମଧ୍ୟ ସେଥିପାଇଁ ତିଆର । ସେତେବେଳେ ଦୁଇଜଣଙ୍କ ବଳରେ ବଳୀୟାନ୍ ହୋଇ ବାପ ଥିଲା ପୁଅ ହେଣ୍ଡିମାରି ସଂସାରରେ ବୁଲୁଥାଏ । ମୁଁ ମଧ୍ୟ ଗତ ସେପ୍‌ଟେମ୍ବର ମାସ ୫୪ ତାରିଖ ପର୍ଯ୍ୟନ୍ତ ସଂସାରରେ ସେହିପରି ଉଦାଖାଇ ବେପରୁଆ ହୋଇ ବୁଲୁଥିଲି । ୧୯୧୪ ସେପ୍‌ଟେମ୍ବର ମାସ ୫୪ ତାରିଖ ଠାରୁ ଭଗବାନ୍ ମୋର ସେହି ଲୀଳାଖେଳା ଚୂରମାର କରିଦେଲେ । ଭଗବାନ୍‌ଙ୍କ ଉପରେ ଖେସର କ୍ଷତିପୂରଣ ଆଦି ମକଦ୍ଦମା ଚଳେ ନାହିଁ ବୋଲି ଭଗବାନ୍ ଏ ଯାତ୍ରାରୁ ରକ୍ଷା ପାଇଗଲେ । ମୋର ପୂଜ୍ୟପଦ ପିତୃଦେବ ଆମ୍ଭମାନଙ୍କୁ ଶୋକସନ୍ତପ୍ତ ଓ ଏକାକୀ କରି ଆମ୍ଭମାନଙ୍କ ମାୟାଡୋରି କାଟି ଚାଲିଗଲେ । ପିତାଙ୍କ ବିଦ୍ୟମାନତାରେ, ଜ୍ୟେଷ୍ଠପୁତ୍ର ପିତାଙ୍କର ଗେଲବସରିଆ ଗେହ୍ଲାପୁଅ ହୋଇ ପିତାଙ୍କ ଆଦର ଓ ଚଳନ୍ତି ସମ୍ପତ୍ତିରୁ କନିଷ୍ଠମାନଙ୍କ ଅପେକ୍ଷା ବେଶି କିସମତ୍ ପାଇଥାଏ । ପିତାଙ୍କ ଅନ୍ତର୍ଦ୍ଧାନ ପରେ ସେହି ବେଶି ଭାଗଟା କନିଷ୍ଠ ଭାଇମାନଙ୍କ ଠାରୁ ଜ୍ୟେଷ୍ଠ ଭାଇ ସୁଧ ମୂଳ ସହିତ ଆଦାୟ କରିବାକୁ ବାଧ୍ୟ ହୁଏ । ଅର୍ଥାତ୍ ସମସ୍ତଙ୍କ ଉପରେ ନଜର କରିବାର ଭାର ତାହାରି ଉପରେ ପଡ଼େ । ସେଥିପାଇଁ କୌଣସି ଅବଶ୍ୟ କର୍ତ୍ତବ୍ୟ କାର୍ଯ୍ୟ କରିବା ପ୍ରସଙ୍ଗ ପଡ଼ିଲେ ଲୋକେ କହନ୍ତି - ଅମୁକ ବାପର ସୁପୁତ୍ର ହୋଇ ଅମୁକ କାର୍ଯ୍ୟ କରିବ ।

ପାଠକ ଅବଧାନ ! ଏହିଠାରେ ଆପଣମାନଙ୍କ ସଙ୍ଗେ ଗୋଟାଏ କଥା ଖୋଲାସା ହୋଇ କଥା ଭାଷା ହୋଇଯିବା ଦରକାର । ମୋର କେହି ବନ୍ଧୁ କହିଥାନ୍ତି ଯେ, ମୁଁ ମୋର ଦୁନିଆର ହାଲଚାଲ ଲେଖାକୁ ଅର୍ଥପ୍ରସୂ କରିବାର ପ୍ରୟାସରେ ଥାଏଁ । ଏ ହିସାବରେ ଧରିବାକୁ ଗଲେ ମୋର ପିତୃବିୟୋଗ ସମ୍ବାଦଟାକୁ 'ଚିଟାଉ' ଅର୍ଥରେ କେହି କେହି ପାଠକଙ୍କ ନିକଟରେ ପ୍ରୟୋଗ କରିବା ମୋର ଆନ୍ତରିକ ଉଦ୍ଦେଶ୍ୟ ଅଛି ବୋଲି ମୋର କେହି ହିତାକାଙ୍କ୍ଷୀ ବନ୍ଧୁ ଆରୋପ କରିପାରନ୍ତି । ତତ୍ତଦ୍ ବନ୍ଧୁ ଓ ତଦାଶଙ୍କିତ ପାଠକମାନଙ୍କ ସନ୍ଦେହ ଦୂରୀକରଣାର୍ଥ ଏ ପ୍ରସଙ୍ଗରେ ପିତୃ ବିୟୋଗର ତାରିଖ ଦେବାକୁ ହେଲା; ଅର୍ଥାତ୍ ଏ ଘଟଣା ଆଜକୁ ଦୁଇ ମାସରୁ ଉର୍ଦ୍ଧ୍ୱ ହେଲାଣି । ଇତି ମଧ୍ୟରେ ପିତୃକ୍ରିୟା ଓ ପିତୃଶ୍ରାଦ୍ଧ ଇତ୍ୟାଦି ଯଥାବିଧି ଯଥାଶକ୍ତି ସମ୍ପନ୍ନ ହୋଇଅଛି ଓ ସେଥି ନିମନ୍ତେ ପାଠକ ଓ ଉପପାଠକମାନଙ୍କୁ କିଛି ଟିକସ ଦେବାକୁ ପଡ଼ିବ ନାହିଁ । ଏହିପରି ଅବସରରେ ଜମିଦାରମାନେ ପ୍ରଜାମାନଙ୍କଠାରୁ, ବନ୍ଧୁମାନେ ବାନ୍ଧବ ଓ ପ୍ରୀତିବନ୍ଧୁମାନଙ୍କଠାରୁ, ଓକିଲମାନେ ମକ୍‌କେଲମାନଙ୍କଠାରୁ, ହାକିମମାନେ ଅନୁସରଣିଆ ଓ ଗୁହାରିଆଙ୍କଠାରୁ କିଛି କିଛି ଟିକସ ଫଳେ ପୁଷ୍ପେ, ସୂତ୍ରେ ଓ ଅର୍ଥେ ଆଦାୟ କରିଥାନ୍ତି ଓ ଏ କ୍ଷେତ୍ରରେ ମୋ ଠାରେ ମଧ୍ୟ ତାହା ଘଟିଅଛି । କିନ୍ତୁ ଲେଖକ ଓ ପାଠକମାନଙ୍କ ସଙ୍ଗରେ ଏ କ୍ଷେତ୍ରରେ ଅବଧି ପର୍ଯ୍ୟନ୍ତ ବାଧ୍ୟବାଧକତା ସମ୍ପର୍କ ଓଡ଼ିଶାରେ ଆଇନ୍ ଅନୁସାରେ ପ୍ରତିଷ୍ଠିତ ହୋଇ ନାହିଁ । ଏପରି ଗୋଟାଏ ପ୍ରତିଷ୍ଠା ହୋଇଥିଲେ ମୋର ସହୃଦୟ ପାଠକମାନେ ଅବଶ୍ୟ ଏ ସମ୍ବାଦଟା ଗତ ଅକ୍‌ଟୋବର ମାସ ୯ ତାରିଖ ମଧ୍ୟରେ ପାଇଥାନ୍ତେ ଓ ଭେଟି ବେଭାର ନେଇ ଶ୍ରାଦ୍ଧ ସମୟରେ ହାଜର ଦାଖଲ କରିଥାନ୍ତେ, ଯାହାହେଉ ଛାଡ଼ ସେ କଥା ।

ବର୍ତ୍ତମାନ ଏ ଅବାନ୍ତର କଥାଗୁଡ଼ିକର ଅବତାରଣା କରିବାରେ ମୋର ଗୋଟିଏ ଉଦ୍ଦେଶ୍ୟ ଅଛି । ଆଜି ପର୍ଯ୍ୟନ୍ତ ମୋର ଜୀବଦ୍ ପିତୃକ ଅବସ୍ଥାରେ ମୋର ଦେଖଣାହାରିର ସ୍ଥାନ ଥିଲା । ଦୁନିଆର ହାଲଚାଲ ଯାହା ଦେଖୁଥିଲି, ତାହା ଦେଖଣାହାରିସ୍ୱରୂପ ପାଠକମାନଙ୍କୁ ଉପହାର ଦେଉଥିଲି । ସେଥିରେ ଯଥା ଦୃଷ୍ଟଂ ଯଥା ଶ୍ରୁତଂ ତଥା ଲିଖିତଂ କରୁଥିଲି । କୌଣସି ଖଞ୍ଜା ଅଖଞ୍ଜା ହେଲେ ତାକୁ ସୁଧାରିବା ପାଇଁ ଈଶ୍ୱର ଜଣେ ମଜବୁତ ଓସ୍ତାଦଙ୍କୁ ଦିନରାତି ମୋ ପିଛା ଖଡ଼ା ପହରା କରାଇଥିଲେ । ବର୍ତ୍ତମାନ ଆଉ ଦେଖଣାହାରିର ସ୍ଥାନ ଅଧିକାର କରିବାକୁ ମୋର ବଳ ଓ ବୟସ ନାହିଁ । ଏଣିକି ସଂସାରରେ ଘାଣ୍ଟି ହେବାକୁ ହେବ, ସଂସାର କ୍ରୀଡ଼ାଭୂମିରେ ନିଜେ ଅଣ୍ଟା ଭିଡ଼ି କସରତ୍ କରିବାକୁ ହେବ । ଆଗେ ଯାହା ପୋଥି ବାଇଗଣ ଥିଲା, ତାହା ବର୍ତ୍ତମାନ 'ବାଡ଼ି ବାଇଗଣ'ରେ ପରିଣତ କରିବାକୁ ହେବ । ସଂସାରଟା ଆଗେ ମୋ ପକ୍ଷରେ ହାଓଆ ଗାଡ଼ି ଥିଲା । ବର୍ତ୍ତମାନ ତାହା ଶଗଡ଼ ବଳଦ ରୂପରେ ପରିଣତ ହୋଇଅଛି । ଆଗେ ଆମ ବୋକଚା ବାପା ବୋହୁଥିଲେ ଓ ଆମେ ଥିଲୁ ଖାଇବା ପିଇବାର ମାଲିକ । ବର୍ତ୍ତମାନ ବାପାଙ୍କ ବୋକଚା ଆମକୁ ବହିବାକୁ ପଡ଼ିବ ଓ ଆପଣା ଖାଇବା ପିଇବା ଖବର ଦୂରେ

ଥାଉ, ବେଶି ସମୟ ଖୋଇବା ପେଇବାରେ ନିୟୋଜିତ ହେବ । ଏଥିପାଇଁ ବର୍ତ୍ତମାନ ସଙ୍କଳ୍ପ ଏହି କି ଦୁନିଆର ହାଲଚାଲ 'ଇତି' କରି ସଂସାର କାର୍ଯ୍ୟରେ ପଶିବାକୁ ହେବ । ଘୋର ସଂସାରୀ ହେବାକୁ ହେବ ଓ ସଂସାରର ତୋଡ଼ ଏକାକୀ ସମ୍ଭାଳିବାକୁ ହେବ । ସମ୍ପାଦକ ଅବଧାନ ! ଏତେ କୈଫିୟତ୍ ଶୁଣି ସୁଦ୍ଧା ଆପଣ ଅବୁଝା ହେଲେ ଚଳିବ କିପରି ? ସେଦିନ ଏ କଥାଟା ମୁହେଁ ମୁହେଁ ଇସାରା ଦେଇଥିଲି ବୋଲି, ଆପଣଙ୍କ ନିକଟରୁ ମାମୁଲି ମିଳୁଥିବା ପାନଖଣ୍ଡକ ସୁଦ୍ଧା ଆପଣ ବାଜ୍ୟାପ୍ତ କରିଦେଲେ; କିନ୍ତୁ କୌଣସି କୈଫିୟତ ନ ଶୁଣିଲେ ଲେଖକ ବିଚାରାର ଚାରା କଣ ? ଲେଖକର ସବୁବେଳେ ଗୋଟାଏ ସାନ୍ତ୍ୱନା ଥାଏ ଯେ, ସେ ସଢ଼ୁ, ମରୁ, ତଳିତଳାନ୍ତ ହେଉ, ନିନ୍ଦା ପାଉ, ଦୁଃଖ ପାଉ, କୈଫିୟତ୍ ଦେଇ ଦେଇ ମରୁଥାଉ ପଛକେ କିନ୍ତୁ ଲେଖା ଯୋଗୁଁ ତା'ଠାରେ ଯେଉଁ ନିଶାଟା ଜନ୍ମିଥାଏ, ତାକୁ ସେ କେବେ ହେଁ ଛାଡ଼ିବ ନାହିଁ । ସରସ୍ୱତୀଙ୍କୁ ଆବାହନ କରି କବି କହି ଅଛନ୍ତି -

And though for* ଶ୍ରୀବତ୍ସ ପଣ୍ଡାଙ୍କ her sake I am crost,
Though my best hopes I have lost.
And know she would make my trouble,
Ten times more than ten times double.
I should love and veeg her too,
Spite of all the world can do.
× × × ×
She doth tell me where to borrow,
Comfort in the midst of sorrow.
Makes the desolatest place,
To her presence be a grace.

(ନୋଟ୍ - କଳି ପଣରେ ବାରପଣିଆ ହେଲେ ପିଲାକାଳର ଘୋଷା ପାଠ ଯାକ ମସ୍ତିଷ୍କରୁ ଉଭେଇ ଯାଏ । ଆହୁରି ମଧ୍ୟ ଜଣେ କବି ଭାରି ଅଭିମାନ କରି କହିଅଛନ୍ତି)

ମାତଃ ସରସ୍ୱତୀ ଯଦି ନ କୃପ୍ୟସି ଚେତ୍ ବଦାମି
ନାରାୟଣସ୍ୟ ବନିତା କମନୈବ ନାନ୍ୟା
ନୋଚେତ୍ କଥଂ କଥୟ ରାଜସଭାସୁ ମଧ୍ୟେ
ମୂକା ବୟଂ କଥମହେ ! ଧନିନଃ ପ୍ରଗଲ୍ଭାଃ ।

ତଥାପି ଲେଖକ ତା ଅଟା ଛାଡ଼େ ନାହିଁ । କେହି ଶୁଣୁ ନ ଶୁଣୁ, ସେ ରାବୁଥାଏ ଓ ଲେଖନ ମୁନକୁ ଦନ୍ଥରା କରୁଥାଏ । ଏ ତ ଅନୁଭବ କଥା । ଆପଣ ନିଜେ କେତେଥର ଦୁନିଆର ହାଲଚାଲ ଲେଖକଙ୍କୁ ଘଣ୍ଟ ଘୋଡ଼ାଇ ନେଇଅଛନ୍ତି । ଏହି ଲେଖା ଲାଗି ଲେଖକ

କେତେ ଲୋକଙ୍କ ବନ୍ଧୁତା ହରାଇ ଅଛି, କେତେ ଲୋକଙ୍କର ଅନୁଗ୍ରହରୁ ବଞ୍ଚିତ ହୋଇଅଛି, କେତେଥର 'ବତିଶ ବଖରା ଦୁଆର ପର୍ଯ୍ୟନ୍ତ ଆଖି ବୁଲାଇ ଅଛି, ତଥାପି ତା ଖୋଇ ଛାଡ଼ିପାରି ନାହିଁ । ପିତୃଦେବ ମୃତ୍ୟୁର କିଛି ଦିନ ପୂର୍ବରୁ ପତ୍ର ଲେଖିଥିଲେ । ଦୁନିଆର ହାଲଚାଲ ଲେଖା ଉପସ୍ଥିତ ବିପଦର ଗୋଟିଏ ପ୍ରଧାନ କାରଣ । ତଥାପି ପିତୃଦେବଙ୍କ ଶେଷ ଉପଦେଶ ଥିଲା - ସତ୍ୟର ଜୟ ହୁଏ ଓ ହେବ । ଏହା ଚିରକାଳ ସତ୍ୟ ।

ଏଥିପାଇଁ କହୁଥିଲି, ଆପୁଖୋର ଓ ସାହିତ୍ୟଖୋର ଏକ ଶ୍ରେଣୀର । ଥରେ ନିଶାଟା ଧଇଲେ, କଲମ ଥୟ ହୋଇ ରହେ ନାହିଁ । ଯାହାହେଉ ଛାଡ଼ ସେ କଥା ।

ଅନେକ ଭାବି ଚିନ୍ତି ସ୍ଥିର କଲି ଯେ 'ହାଲଚାଲ' ଲେଖାରୁ ବିଦାୟ ନେବାକୁ ହେବ । ପିତୃବିୟୋଗ ପରେ ସାନଭାଇମାନଙ୍କ ପରାମର୍ଶରେ ସ୍ଥିର ହେଲା ଯେ ବାପାଙ୍କ ବସ୍ତାନି ଖୋଳିବାର ଭାର ଜ୍ୟେଷ୍ଠଙ୍କ ଅଂଶରେ ପଡୁ । ଜ୍ୟେଷ୍ଠାଂଶର ଲୋଭ ମଧ ଛାଡ଼ିବା ସହଜ କଥା ନୁହେଁ । ଅତଏବ ମୁଁ ବାଧ ହୋଇ ସେ ଭାରଟା ଗ୍ରହଣ କଲି । ଏଣିକି ଦୁନିଆର ହାଲଚାଲ ପରିବର୍ତ୍ତେ ପାଠକମାନେ ବାପାଙ୍କ ବସ୍ତାନିର ନିଦର୍ଶନ ସମୟ ସମୟରେ ଉପହାର ପାଇବେ । ତେବେ ସେ କିମ୍ଭୂତକିମାକାର, ତହିଁର ଗୋଟାକେତେ ନମୁନା ଆଗରୁ ନ ଦେଖାଇଲେ ଗହକି ଜୁଟିବ କିଆଁ । ଦରଦାମ ହେବା ଆଗରୁ ସମସ୍ତେ ମଜା ଦେଖିଥା'ନ୍ତି । କେବଳ ବଡ଼ିଆ ମହାଜନଙ୍କଠାରେ ଏ ନିୟମର ନିପାତନ ଘଟିଥାଏ । ପାଠକମାନେ ଅବଶ୍ୟ ଜାଣନ୍ତି ଯେ, ବାପା ପୁରୁଣା, ମରହଟିଆ ଶ୍ରେଣୀର ଥିଲେ । ତାଙ୍କଠାରେ ଆଧୁନିକ ଆଦବ କାଏଦା ନ ଥିଲା, ଆଧୁନିକ ସଭ୍ୟତା ନ ଥିଲା, ଥିଲା ପୁରୁଣାକାଳିଆ ସରଳତା, ଥିଲା ପ୍ରକୃତବାଦିତା, ଥିଲା ଧର୍ମନିଷ୍ଠା ଓ ଥିଲା ବିପଦ-ଧୈର୍ଯ୍ୟ । ଆମ୍ଭେମାନେ ଆଧୁନିକ ଶିକ୍ଷା ଓ ସଭ୍ୟତାର ଢେଉରେ ଭାସି ଆସି ପୂର୍ବ ପୁରୁଷଙ୍କର ସୁଗୁଣଯାକ ଛାଡ଼ି, ଆଧୁନିକ ସଭ୍ୟତାର ଗୁଣଯାକ ଧରି ନ ପାରି ମଝିମଝିକିଆ ହୋଇ 'ନା ଏ କୂଳ, ନା ସେ କୂଳ' ହୋଇଅଛୁ । ଅଛି କେବଳ ବାହାରର ଡଙ୍ଗ ବାହାରର ଚାକଚକ୍ୟ । ଏପରି ସ୍ଥଳରେ ପୁରୁଣା ମରହଟିଆ କଥାଗୁଡ଼ାକ ସବୁ ସମୟରେ ଆମ୍ଭମାନଙ୍କୁ ମିଠା ବା ଆଖି ରୁଚିଆ ଲାଗେ ନାହିଁ । ଫଳତଃ ଦେଖିଲି ଯେ, ପିତୃଦେବ ୨୦ ବର୍ଷ ତଳେ ଯେଉଁ ଉପଦେଶଗୁଡ଼ାକ ଦେଇଥିଲେ ସେଗୁଡ଼ିକ ସେତେବେଳେ ଭାରି ବିଚକଟିଆ ଲାଗୁଥିଲା । ୨୦ ବର୍ଷ ପରେ ବର୍ତ୍ତମାନ ଦେଖିଅଛି ଯେ, ଆଗହୁଁ ତାଙ୍କ ଉପଦେଶ ପାଳନ କରିଥିଲେ, ଏତେବେଳେ ଏତେ ଘାଣ୍ଟି ହେବାକୁ ପଡୁ ନ ଥାନ୍ତା । ସେଥିପାଇଁ ପାଠ ଡାକୁଛି, 'ଆପେ ଅର୍ଜିଲା କର୍ମମାନ ଆଗେ ହୁଅନ୍ତି ସାବଧାନ, ଆଉ ସେକଥା ପସ୍ତାଇଲେ ନାହିଁ ।

ତାଙ୍କର ପ୍ରଥମ ଉପଦେଶ ଥିଲା - ଲୋକଙ୍କର ପେଟ ଓ ମନ ଚିହ୍ନିବା ସର୍ବାଗ୍ରେ ଦରକାର । କବି କହିଅଛନ୍ତି- ''ଚିହ୍ନିବାକୁ ଶିଖି ନାହିଁ ପର ମନ - ସେ କି କେବେ ପ୍ରଭୁ ପଣକୁ ଭାଜନ'' ? କୌଣସି ବ୍ୟକ୍ତି ତାଙ୍କ ନିକଟରେ ଆସି ପହଞ୍ଚିଲେ ତାଙ୍କର ପ୍ରଥମ

ପ୍ରଶ୍ନ ଥିଲା 'ତୁମେ ଖାଇଛ' ଓ ସର୍ବାଦୌ ଆଗନ୍ତୁକଙ୍କର ଭୋଜନ ବ୍ୟବସ୍ଥା କରିସାରି ତତ୍‌ପରେ ଉପସ୍ଥିତ ହେବାର ଅନ୍ୟ କାରଣ ପ୍ରଶ୍ନ କରୁଥିଲେ । ପାଠ ଡାକୁଛି, ''ଆଦର ନ ଥାଇ ଯେଉଁ ଭୋଜନ'' । ଆଗନ୍ତୁକ ବ୍ୟକ୍ତି ଭୋଜନ ସାମଗ୍ରୀର ତାଲିକାରେ ଯେତେ ସନ୍ତୁଷ୍ଟ ନ ହୁଅନ୍ତି, ସାମାନ୍ୟ ଭୋଜନଦ୍ରବ୍ୟ ସଙ୍ଗେ ଯେବେ ଦାତାଙ୍କର ସ୍ନେହ ଓ ଆଦର ମିଶିଥାଏ, ତେବେ ତାହା ଅମୃତ ଭୋଜନ ହୁଏ । ସେଥିପାଇଁ ପିତୃଦେବ ଯାହାଙ୍କୁ ମୁଠିଏ ଶାକାନ୍ନ ଖାଇବାକୁ ଦେଇଅଛନ୍ତି, ସେ ଯେତେ ସନ୍ତୁଷ୍ଟ ହୋଇଅଛନ୍ତି, ମୁଁ ସେହି ବ୍ୟକ୍ତିଙ୍କ ନିମନ୍ତେ 'ସାତ ତିଅଣ ଆଠ ଭଜା'ର ବ୍ୟବସ୍ଥା କରି ସୁଦ୍ଧା ସେ ପରିମାଣ ସନ୍ତୋଷର ନିଦର୍ଶନ ପାଇପାରେ ନାହିଁ ।

ତାଙ୍କର ଆଉ ଗୋଟିଏ ଉପଦେଶ ଥିଲା - 'ହକ କହେଗା, ଗୁରୁ ଚିଢ଼େଗା ତ ଚିଢ଼େଗା', ହକ କଥା କହିବାକୁ ଯାଇ ସେ ଜୀବନରେ ଅନେକ କଷ୍ଟ ଓ ଅନେକ ଯାତନା ଭୋଗ କରି ଅଛନ୍ତି । ତଥାପି ସେ ପ୍ରକୃତ କଥା କହିବାକୁ କଦାପି ପଶ୍ଚାତ୍‌ପଦ ହୋଇ ନାହାନ୍ତି । ମୁଁ ତାଙ୍କ ଜୀବନରୁ ଏ ଗୋଟିକ ପ୍ରଧାନ ଉପଦେଶ ପାଇଥିଲି । ସେ ମଧ ଫଳତଃ ମତେ ଦେଖାଇ ଦେଇଥିଲେ ଯେ, ଶେଷରେ ଧର୍ମର ଜୟ, ସତ୍ୟର ଜୟ । ପ୍ରକୃତ କଥା କହିବାକୁ ଯାଇ ସେ ଯେତେବେଳେ ବିପଦରେ ପଡୁଥିଲେ, ସେତେବେଳେ ମୁଁ ତାଙ୍କର ଧୈର୍ଯ୍ୟ ଦେଖି କେବେ କେବେ ଅବାକ୍ ହୋଇଅଛି । ସତ୍ୟର ଶେଷରେ ଜୟ, ସେ ଏହି ଜୟରେ କୌଣସି ବିପଦ୍‌ପାତ ପ୍ରତି ଭ୍ରୂକ୍ଷେପ କରୁ ନଥିଲେ । ଫଳତଃ ଶେଷରେ ତାଙ୍କର ଜୟ ହେଉଥିଲା । ନୈତିକ ଦମ୍ଭ (ଯାହାକୁ କି ଆମେ ଆଧୁନିକ ଶିକ୍ଷିତ ବାବୁମାନେ କହୁଁ Moral courage, କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ଯାହା ସଙ୍ଗେ ଆମ୍ଭମାନଙ୍କ ମୁଲାକାତ୍ ନଦାରଦ) ଯୋଗୁଁ ସେ ସଭାସମିତିରେ, କର୍ତ୍ତୃପକ୍ଷମାନଙ୍କ ନିକଟରେ ନିର୍ଭୀକ ଅଥଚ ସଂଯତ ଭାବରେ ଆପଣାର ସ୍ୱାଧୀନ ମତ ପ୍ରକାଶ କରିବାକୁ କୁଣ୍ଠିତ ହେଉ ନ ଥିଲେ । ଏଥିଲାଗି ସେ ମୋର ବନ୍ଧୁମାନଙ୍କଦ୍ୱାରା ବିଶେଷ ସମ୍ମାନିତ ହେଉଥିଲେ । ଏହିପରି କେତେଗୁଡ଼ିଏ ଆଦର୍ଶ ଗୁଣ ଦ୍ୱାରା ସେ ସଂସାରରେ ନିର୍ଲିପ୍ତ ଭାବରେ କାର୍ଯ୍ୟ କରୁଥିଲେ ଓ ତାଙ୍କ ବସ୍ତାନିରେ ଅବଶ୍ୟ କିଛି ଗ୍ରହଣୀୟ କଥା ଥିବ । ଏହି ବିଶ୍ୱାସରେ ମୁଁ ଭାଇ ଭାଗ ବେଳେ ସେ ବସ୍ତାନିଟି ଆଦରି ଅଛି । ମୁଁ ସେଥିରୁ ଯାହା ପାଇବି, ସେଥିରେ ମୋର ଓ ମୋ ଭକ୍ତମାନଙ୍କର ସାହିତ୍ୟିକ ଦାବି ଅଛି । ଦେଖାଯାଉ, କ'ଣ ହେଉଅଛି । ଆଜି କିନ୍ତୁ ଆପଣମାନଙ୍କଠାରୁ ଖଞ୍ଜାଖାଞ୍ଜରେ ଓର ଉଣ୍ଡି ବିଦାୟ ନେଲି ।

ଉତ୍କଳ ସାହିତ୍ୟ/୧୮ଶ ଭାଗ/୮ମ ସଂଖ୍ୟା/୧୩୨୨ ସାଲ ।

ତାଙ୍କ ରକ୍ତରେ - ସାମନ୍ତବାଦର ଉପସର୍ଗ । ଜୀବିକା - ଓକିଲାତି । ପ୍ରେମ - ଭାଷା, ସାହିତ୍ୟ ଓ ସଂସ୍କୃତି । ମାତ୍ର ମୃତ୍ୟୁରେ ଦାରିଦ୍ର୍ୟ, ଅବିଶ୍ୱାସ ଓ ବିଷର ଉପହାସ ।

ତାଙ୍କ ଜାତି ପ୍ରୀତିବୋଧର ଅଲିଭା ଅଭିବ୍ୟକ୍ତି ଉତ୍କଳର କାହାଣୀ, ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ, ଢଗ-ଢମାଳି-ବଚନ ଏବଂ ବହୁ ରମ୍ୟରଚନା ।

ତାଙ୍କ ସମ୍ପର୍କରେ ଚୁମ୍ବକରେ ଏତିକିମାତ୍ର କୁହାଯାଇପାରେ ଯେ, ଗତ ଶତାବ୍ଦୀର ପ୍ରଥମ ପାଦରେ ସଂଘଟିତ ଓଡ଼ିଆ ଜାତି ଓ ସାହିତ୍ୟର ନବ-ନିର୍ମାଣ ଅୟନରେ ସେ ଅନ୍ୟତମ ଅୟସ୍କାନ୍ତ । ଉତ୍କଳ ସମ୍ମିଳନୀର ଜନ୍ମ-ଜାତକ ସଂରଚନାର ସେ ତରୁଣତମ ଓ ବିଚକ୍ଷଣ ଗଣକ ଏବଂ ରାଜନୀତି-ଖେଳରେ ପରାଜିତ ସ୍ୱପ୍ନଚାରୀ ।

ତାଙ୍କ ବ୍ୟକ୍ତିକ ଜୀବନ, ବହୁ ପରସ୍ପର ବିରୋଧୀ ବିଚାରାଦର୍ଶର ପରୀକ୍ଷାଗାର: ତେଣୁ ରହସ୍ୟମୟ ଓ ହୃଦ୍ୟ । ଅଳ୍ପରେ କହିଲେ - ସେ ଓଡ଼ିଆ ଜାତିର ଏକ ବିକଳ୍ପହୀନ ଆବଶ୍ୟକତା, ଏକ ଚମକ ।

## ପ୍ରହରାଜ ଗ୍ରନ୍ଥାବଳୀ

**ରମ୍ୟରଚନା ୧ମ ଖଣ୍ଡ**

ତାଙ୍କୁ ପଢ଼ିଲାବେଳେ ଲାଗେ, ସତେଅବା ମୁଁ ନିଜକୁ ପଢୁଛି, ନିଜକୁ ଦେଖୁଛି ଏବଂ ମୋ ଭିତରେ କେବଳ ମୁଁ ନାହିଁ, ସେ ଅଛନ୍ତି; ସମୟ, ସମାଜ ଓ ସମସ୍ୟାମାନେ ବି ଅଛନ୍ତି । ଏବଂ, ସର୍ବୋପରି ନିହିତ ରହିଛି ସମାଜ ଗଢ଼ଣ, ସମସ୍ୟା ସମାଧାନ ଓ ସମୟ ଅତିକ୍ରମଣର ବହୁ ବିକଳ୍ପ ନିଦାନ ।

ଲାଗେ, ସେଗୁଡ଼ିକ ଧର୍ମ, ସମାଜ, ସଂସ୍କୃତି, ବିଜ୍ଞାନ ଓ ମନର ଅଗମ୍ୟ ଅନୁଭବର କଳାତ୍ମକ କୋଲେଜ, ଯାହା ସମାଲୋଚନା ପରିଭାଷାରେ କବିତା, ଗପ, ନାଟକ, ଉପନ୍ୟାସ ଓଁ ସମୀକ୍ଷା ଆଦି ସକଳ ପ୍ରକରଣର ସମୀକୃତ ରୂପ, ରମ୍ୟରଚନା ।

ତାଙ୍କ ଶବ୍ଦବସାଣ କଳା-କାରିଗରୀରେ ସମାହିତ ହୋଇଯାଆନ୍ତି ପାଠକମାନେ । ତାହା ସତେଯେପରି ଗ୍ରାମ୍ୟ ଓ ଅଭିଜାତ ଅନୁଭବର ଅନୁପମ ଦ୍ରବଣ, ଅରମ୍ୟର ରମ୍ୟାୟନ ।

---

**ବିଦ୍ୟାପୁରୀ**

ବାଲୁବଜାର, କଟକ ୭୫୩୦୦୨

ISBN 81-7411-531-5 ଟ ୨୮୦.୦୦